# ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ

[୧୭୫୭ର ପଲାସୀ ଅବସାନଠାରୁ ୧୯୪୬ର ନୌ-ବିଦ୍ରୋହ
ପର୍ଯ୍ୟନ୍ତ ଦୁଇଶହ ବର୍ଷର ରୋମାଞ୍ଚକର ଓ ରକ୍ତରଂଜିତ
ସଂଗ୍ରାମର ଅଶ୍ରୁସିକ୍ତ ଆଲେଖ୍ୟ]

ଲେଖକ :
**ପ୍ରଫୁଲ୍ଲ ଦାସ**
ଅଗ୍ନିଯୁଗ ଆଶ୍ରମ, ରାଜକନିକା

**ଗ୍ରନ୍ଥମନ୍ଦିର**

ପ୍ରକାଶକ :
ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ଡି.ଟି.ପି. ଓ ମୁଦ୍ରଣ :
ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍**
ସୂତାହାଟ, କଟକ-୧

ପ୍ରଚ୍ଛଦ ଚିତ୍ର : ଅସୀମ ବସୁ

(ଲେଖକଙ୍କଦ୍ୱାରା ପ୍ରକାଶିତ)
ପ୍ରଥମ ସଂସ୍କରଣ : ୧୯୮୦

**'ଗ୍ରନ୍ଥମନ୍ଦିର'**ଦ୍ୱାରା ପ୍ରଥମ ସଂସ୍କରଣ : ୨୦୦୩
(୭୦୦)

ମୂଲ୍ୟ : ଟ ୩୦୦.୦୦

ସାଦାବନ୍ଧେଇ : ଟ ୨୮୦.୦୦

# ମୁଖବନ୍ଧ

ଡକ୍ଟର୍ ହରେକୃଷ୍ଣ ମହତାବ

ଏକାମ୍ର ନିବାସ
ଭୁବନେଶ୍ୱର
୧.୧୧.୧୯୮୦

'ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ' ନାମରେ ଏକ ତଥ୍ୟପୂର୍ଣ୍ଣ ଉପାଦେୟ ପୁସ୍ତକ ବହୁ ପରିଶ୍ରମ ଏବଂ ଗବେଷଣା କରି ଶ୍ରୀ ପ୍ରଫୁଲ୍ଲ ଦାସ, ଅଗ୍ନିଯୁଗ ଆଶ୍ରମ, ରାଜକନିକା, ଲେଖିଛନ୍ତି ଏବଂ ମୋତେ ଏହାର ମୁଖବନ୍ଧ ଲେଖିବାପାଇଁ ଅନୁରୋଧ କରିଛନ୍ତି । ଗାନ୍ଧିଜୀଙ୍କଠାରେ ମୁଁ ଥିଲି ଜଣେ ପ୍ରମାଣିତ ଅହିଂସବାଦୀ ଏବଂ ଅହିଂସାତ୍ମକ ଆନ୍ଦୋଳନରେ ନିଜର ଜୀବନ ବିତିଛି । ମୋତେ ଯେ କାହିଁକି ମୁଖବନ୍ଧ ଲେଖିବାପାଇଁ ଲେଖକ ଅନୁରୋଧ କଲେ ମୁଁ ଜାଣିପାରୁନାହିଁ । ଏହା କେବଳ ତାଙ୍କର ମୋ ପ୍ରତି ଅହେତୁକ ଶ୍ରଦ୍ଧାର ନିଦର୍ଶନ ।

ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନକୁ ମୁଁ ବରାବର ରାଜନୈତିକ ଦୃଷ୍ଟିକୋଣରୁ ବିଚାର କରି ଆସିଛି । ଗାନ୍ଧିଜୀ ଥିଲେ ଜଣେ ଅଦ୍ୱିତୀୟ ରାଜନୈତିକ ନେତା । ସେ ରୁଷିଆର ଲେନିନ ବା ଚୀନ୍‌ର ମାଓସେତୁଙ୍ଗଙ୍କ ସହିତ ତୁଳନୀୟ । ଏହାକୁ ପ୍ରତିପାଦନ କରିବାକୁ ଚେଷ୍ଟା କରିଛି ମୋର *"Gandhi, the Political Leader"* ପୁସ୍ତକରେ । ଭାରତୀୟ ପରମ୍ପରା ଅନୁସାରେ ଯେକୌଣସି ବ୍ୟାବହାରିକ ପ୍ରୟୋଗକୁ ଉଚ୍ଚ ନୈତିକ ଏବଂ ଆଧ୍ୟାତ୍ମିକ ଦିଗରୁ ବିଚାର କରାଯାଇଥାଏ । ତଦନୁସାରେ ଗାନ୍ଧିଜୀଙ୍କ ଅହିଂସାକୁ ମଧ୍ୟ ଅନେକ ଆଲୋଚନା କରୁଛନ୍ତି । ଏ ଆଲୋଚନାରେ ପୂର୍ବସୂରିମାନଙ୍କ ଅହିଂସାଠାରୁ ଗାନ୍ଧିଜୀଙ୍କ ଅହିଂସାର ପ୍ରଭେଦକୁ ଗୁରୁତ୍ୱ ଦିଆହେଉନାହିଁ । ଗାନ୍ଧିଜୀଙ୍କ ଅହିଂସା ଏକ ନାସ୍ତିବାଚକ ତତ୍ତ୍ୱ ନୁହେଁ – ଏହା ଏକ ସକ୍ରିୟ କାର୍ଯ୍ୟ ପଦ୍ଧତି । ଅନ୍ୟାୟର ବିରୋଧ ହେଉଛି ଗାନ୍ଧିଜୀଙ୍କ ଅହିଂସାର ମୂଳତତ୍ତ୍ୱ । ଏ ତତ୍ତ୍ୱକୁ ଛାଡ଼ିଦେଇ ଅହିଂସା ନାମରେ ବିନୋବା ବାଭେ ଏବଂ ତାଙ୍କ ନେତୃତ୍ୱରେ ପରିଚାଳିତ ସର୍ବସେବା ସଂଘ ବା ସର୍ବୋଦୟ ଯେଉଁ କାର୍ଯ୍ୟ ପଦ୍ଧତି ଅବଲମ୍ବନ କରିଛନ୍ତି, ତାହାର ବିଫଳତା ବର୍ତ୍ତମାନ ପ୍ରମାଣିତ । ସୁଖର ବିଷୟ, ଜୟପ୍ରକାଶ ନାରାୟଣ ଅବଶେଷରେ ନିଷ୍କ୍ରିୟ ଅହିଂସାର ପରିସର ମଧ୍ୟରୁ ବାହାରିଆସି ସକ୍ରିୟ ଅହିଂସା ପରିଚାଳନାକରି ଗାନ୍ଧିଜୀଙ୍କ ଅହିଂସାର ମହତ୍ତ୍ୱକୁ ରକ୍ଷାକଲେ ।

ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ମୁଁ କେତୋଟି ଆନ୍ଦୋଳନ ପରିଚାଳନା କରିଛି । ସେ ସ୍ପଷ୍ଟଭାବରେ ନିର୍ଦ୍ଦେଶ ଦେଇଥିଲେ – ଅହିଂସା ଏକ କାର୍ଯ୍ୟକାରୀ ଶକ୍ତି । ଯଦି ଏହାର କାର୍ଯ୍ୟକାରୀତା ପ୍ରମାଣିତ ନହୁଏ, ତେବେ ହିଂସାର ଆଶ୍ରୟ ନେବା ବରଂ ଶ୍ରେୟସ୍କର । ଅହିଂସାର ଦ୍ୱାହିଦେଇ

ବିରୋଧରୁ ନିବୃତ୍ତ ହେବା ହେଉଛି ନିକୃଷ୍ଟ କାପୁରୁଷତା । ଭାରତୀୟଙ୍କ ଅବସ୍ଥା ଏବଂ ଜନତାର ଶକ୍ତି ବିଚାରକରି ଗାନ୍ଧିଜୀ ଅହିଂସାତ୍ମକ ଆନ୍ଦୋଳନ ହିଁ କାର୍ଯ୍ୟକାରୀ ହେବ ବୋଲି ସ୍ଥିରକରିଥିଲେ । ସେ ବଙ୍ଗର ବିପ୍ଳବୀମାନଙ୍କୁ ସ୍ପଷ୍ଟ କହିଥିଲେ, ''ମୋତେ ସୁଯୋଗଦିଅ – ମୁଁ ଯଦି ବ୍ୟର୍ଥହୁଏ ମୁଁ ତୁମମାନଙ୍କ ସହିତ ଯୋଗଦେବି ।''

ଗାନ୍ଧିଜୀଙ୍କ ଅହିଂସାକୁ ରାଜନୈତିକ ଦୃଷ୍ଟିରୁ ବିଚାରକଲେ କେତୋଟି ବିଷୟ ବର୍ତ୍ତମାନ ବୁଝାପଡ଼ିବ । ସ୍ୱରାଜ୍ୟ ପାଇଁ ଅସହଯୋଗ ଆନ୍ଦୋଳନ ସହିତ ଖିଲାଫତ୍ ଆନ୍ଦୋଳନ ଯୋଗ କରିବା ଉଚିତ ନଥିଲା ବୋଲି ଷାଠିଏ ବର୍ଷ ପରେ ଜଣାପଡୁଛି । କିନ୍ତୁ ସେ ସମୟରେ ମୁସଲମାନମାନଙ୍କ ସକ୍ରିୟ ସହଯୋଗ ଲାଭ କରିବାକୁ ହେଲେ ସେମାନଙ୍କ ଅନ୍ଧବିଶ୍ୱାସକୁ ମଧ୍ୟ ଗ୍ରହଣ କରିବାକୁ ହୋଇଥିଲା । ସେ ସମୟଠାରୁ, ଅର୍ଥାତ୍ ୧୯୧୮ ସାଲରୁ, ଆଜିକୁ ପ୍ରାୟ ଷାଠିଏ ବର୍ଷ ଦୂରରେ ରହି ଏହା ମଧ୍ୟ ମନକୁ ଆସିପାରେ ସ୍ୱରାଜ୍ୟପାଇଁ କୌଣସି ଆନ୍ଦୋଳନର ଆବଶ୍ୟକତା ନଥିଲା, କାରଣ କୌଣସି ଆନ୍ଦୋଳନ ନକରି ପୃଥିବୀର ବହୁ ଦେଶ ସ୍ୱାଧୀନ ହୋଇଗଲେ ଅବସ୍ଥାଚକ୍ରରେ । ଶିଳ୍ପବିପ୍ଳବର ପରିଣତି ହେଲା ସାମ୍ରାଜ୍ୟ ବିସ୍ତାର । ଏଥିରେ ପ୍ରତିଦ୍ୱନ୍ଦ୍ୱିତା ଉତ୍କଟ ହେଲା ଶିଳ୍ପପ୍ରଧାନ ଦେଶମାନଙ୍କ ମଧ୍ୟରେ । ପ୍ରଥମ ବିଶ୍ୱଯୁଦ୍ଧ ଏହି ପ୍ରତିଦ୍ୱନ୍ଦ୍ୱିତା ଯୋଗୁଁ । ସେ ଯୁଦ୍ଧର ପରିଣତି ହେଲା ରୁଷିଆରେ ସମାଜବାଦ ଏବଂ ଜର୍ମାନୀରେ ନାଜିବାଦ । ଅବଶେଷରେ ଦ୍ୱିତୀୟ ମହାଯୁଦ୍ଧ ପରେ ସାମ୍ରାଜ୍ୟ ସବୁ ଧ୍ୱଂସ ପାଇଗଲା । ସବୁ ଦେଶର ସ୍ୱାଧୀନତା ପାଇଁ ଜର୍ମାନୀ ଓ ପାଶ୍ଚାତ୍ୟ ଦେଶମାନଙ୍କ ସହିତ ଆମରଣ ସଂଗ୍ରାମର ପରିଣତି ବୋଲି ବର୍ତ୍ତମାନ ଜଣାପଡୁଛି । ନିଜ ପୋଷାକରେ ଟିକିଏ ହେଲେ ମଳି ନ ଲଗାଇ ଜିନ୍ନା ହୋଇଗଲେ ଏକ ସ୍ୱାଧୀନ ଦେଶର ସ୍ରଷ୍ଟା ଏବଂ ଅଧିନାୟକ । ଏସିୟା ଓ ଆଫ୍ରିକାର କୌଣସି ଦେଶ ସ୍ୱାଧୀନତାପାଇଁ ଉଦ୍ୟମ କରିନାହିଁ ଯେପରି ଭାରତ କରିଥିଲା । ତାହାହେଲେ ଭାରତର ଉଦ୍ୟମ କ'ଣ ବ୍ୟର୍ଥ ପ୍ରଯତ୍ନ ଥିଲା ? ବର୍ତ୍ତମାନ ଜଣାଯାଉଛି ଭାରତରେ ଅହିଂସାତ୍ମକ ଆନ୍ଦୋଳନ ଫଳରେ ଜନତା ମଧ୍ୟରେ ଯେଉଁ ରାଜନୈତିକ ଚେତନା ଯେପରି ଜାଗ୍ରତ ହେଲା ଏବଂ ସେହି ଆନ୍ଦୋଳନ ମାଧ୍ୟମରେ ବସ୍ତୁତଃ ଗୋଟିଏ ପୁରୁଷ ରାଷ୍ଟ୍ର ପରିଚାଳନା ପାଇଁ ଯେପରି ତିଆରିହୋଇପାରିଲେ, ସେପରି ସ୍ୱାଧୀନ ହୋଇଯାଇଥିବା ଅନ୍ୟ କୌଣସି ଦେଶରେ ହୋଇନାହିଁ । ଫଳରେ କୌଣସି ନୂତନ ସ୍ୱାଧୀନ ଦେଶରେ ଶାସନ ସ୍ଥିରରହିପାରୁନାହିଁ । ସାମରିକ ଶାସନ ଏକ ପ୍ରଚଳିତ ପ୍ରଥା ହୋଇଗଲାଣି ।

ଏସବୁ ବିଚାର ଷାଠିଏ ବର୍ଷ ଦୂରରେ ରହି କରାହୋଇଛି । ଏହା ମଧ୍ୟ ଇତିହାସକୁ ସ୍ୱୀକାର କରିବାକୁ ହେବ – ଅହିଂସାତ୍ମକ ଆନ୍ଦୋଳନ ପୂର୍ବରୁ ଏବଂ ତତ୍ ସଙ୍ଗେ ସଙ୍ଗେ ମଧ୍ୟ ଯେଉଁ ସଶସ୍ତ୍ର ସଂଗ୍ରାମ ଯେକୌଣସି ଆକାରରେ ହେଉ ପଛକେ ହୋଇଥିଲା, ସେ ସବୁ ଗଣଆନ୍ଦୋଳନ ପାଇଁ କ୍ଷେତ୍ର ପ୍ରସ୍ତୁତ କରୁଥିଲା । ବିପ୍ଳବର ମଧ୍ୟ ବୈଜ୍ଞାନିକ ଅର୍ଥ ଅଛି । ଚୀନ୍‌ର ଉଦାହରଣରୁ ଜଣାପଡ଼େ ଯେତେବେଳେ ଜନତା ଜଡ଼, ସବୁ ଅନ୍ୟାୟ ଅତ୍ୟାଚାର ସହିଯାଇ ଭାଗ୍ୟକୁ ଆଦରିବାରେ ବିଶ୍ୱାସ କରୁଛନ୍ତି, କୌଣସି ପରିବର୍ତ୍ତନର ସମ୍ଭାବନା

ନାହିଁ, ସେତେବେଳେ କୌଣସି ପଦସ୍ଥ ଅତ୍ୟାଚାରୀକୁ ହତ୍ୟାକରିବାଦ୍ୱାରା ମଧ୍ୟ ଚାଞ୍ଚଲ୍ୟ ସୃଷ୍ଟି କରାଯାଇପାରେ । ସିପାହୀ ବିଦ୍ରୋହକୁ ଯେପରି ଦୃଢ଼ ଭାବରେ ଦମନକରାହେଲା, ସେଥିରେ ପ୍ରାୟ ପଚାଶ ବର୍ଷ ପର୍ଯ୍ୟନ୍ତ ଦେଶ ମ୍ରିୟମାଣ ହୋଇଯାଇଥିଲା । ଏପରିକି ଗୋପାଳକୃଷ୍ଣ ଗୋଖଲେଙ୍କଦ୍ୱାରା ପ୍ରତିଷ୍ଠିତ ସର୍ଭେଣ୍ଟ ଅଫ୍ ଇଣ୍ଡିଆ ସୋସାଇଟିର ଉଦ୍ଦେଶ୍ୟରେ ଲିପିବଦ୍ଧ ହେଲା– "ଭାରତରେ ବ୍ରିଟିଶ୍ ଶାସନ ହେଉଛି ବିଧିନିର୍ଦ୍ଦିଷ୍ଟ । ଏଣୁ ସେହି ଶାସନ ମଧ୍ୟରେ, ଇଂଲଣ୍ଡର ସାମ୍ରାଜ୍ୟ ଭିତରେ ଭାରତର ସ୍ୱାତନ୍ତ୍ର୍ୟ ପାଇଁ ବୈଧାନିକ ଉଦ୍ୟମ କରିବାହିଁ ଏକମାତ୍ର ପନ୍ଥା ।" ଏ ମତକୁ ଆଘାତକଲା ଉନବିଂଶ ଶତାବ୍ଦୀର ଶେଷପାଦ ଓ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ବଙ୍ଗ, ମହାରାଷ୍ଟ୍ର ଓ ପଞ୍ଜାବରେ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ । ପୁଣି ଶାସନର ଦୃଢ଼ ଦମନ ଫଳରେ ନିଷ୍କ୍ରିୟତା ଆସିଗଲା । ଏହି ପଟ୍ଟଭୂମିକାରେ ଗାନ୍ଧିଜୀଙ୍କ ଅହିଂସାତ୍ମକ ଆନ୍ଦୋଳନ, ଏହାର ପରିପୂରକ ହୋଇ ସୁଭାଷ ବୋଷଙ୍କ ଆଜାଦ ହିନ୍ଦ ଫୌଜ ସଙ୍ଗଠନ । ଏହି ସଙ୍ଗଠନ ଫଳରେ ସୈନ୍ୟବାହିନୀ ମଧ୍ୟରେ ସ୍ୱାଧୀନତାର ଭାବ କାର୍ଯ୍ୟକଲା । ସରକାରୀ ସର୍ଭିସ୍ ମଧ୍ୟରେ ଅସନ୍ତୋଷ ଜାତହେଲା । ଏସବୁଥିରୁ ସ୍ପଷ୍ଟ ଜଣାପଡ଼ିବ ଯେ ହିଂସାତ୍ମକ ବିଦ୍ରୋହ ଓ ଅହିଂସାତ୍ମକ ଆନ୍ଦୋଳନ ପରସ୍ପରବିରୋଧୀ ହେଲେ ମଧ୍ୟ ଉଭୟଙ୍କ ମଧ୍ୟରେ ଏକ ସୂକ୍ଷ୍ମ ଅଲକ୍ଷିତ ସଂଯୋଗ ରହିଆସିଛି ।

ପ୍ରାଦେଶିକ ବା ଆଞ୍ଚଳିକ ବିଦ୍ରୋହ ମଧ୍ୟ ଜାତୀୟ ସଂଗ୍ରାମକୁ ଇନ୍ଧନ ଯୋଗାଇଛି । ବିନ୍ଦୁ ବିନ୍ଦୁ ବର୍ଷା ଯେପରି ପ୍ରବଳ ବନ୍ୟା ସୃଷ୍ଟିକରେ ସେହିପରି ଆଞ୍ଚଳିକ ବିଦ୍ରୋହର ମଧ୍ୟ ଐତିହାସିକ ଭୂମିକା ଅଛି ।

ଅହିଂସାତ୍ମକ ମୁକ୍ତିସଂଗ୍ରାମ ସମ୍ବନ୍ଧରେ ବହୁ ପୁସ୍ତକ ପ୍ରକାଶିତ ହେଲାଣି । କିନ୍ତୁ ସଶସ୍ତ୍ର ମୁକ୍ତିସଂଗ୍ରାମ ସମ୍ବନ୍ଧରେ ଧାରାବାହିକ ଐତିହାସିକ ବିବରଣୀ ପ୍ରକାଶିତ ହୋଇନାହିଁ । ଶ୍ରୀମାନ୍ ପ୍ରଫୁଲ୍ଲ ଦାସ ଏ ଅଭାବ ଦୂରକରିଛନ୍ତି । ଅତୀତର ଇତିହାସ ଯୁବ ମନରେ ଆଶା ଓ ଉତ୍ସାହ ସଂଚାରକରୁ । ଅନ୍ୟାୟର ବିରୋଧ କରିବାର ମନୋବୃତ୍ତି ଜାଗରିତ ହେଉ – ତା'ହେଲେ ପ୍ରଫୁଲ୍ଲଙ୍କ ଉଦ୍ୟମ ସାର୍ଥକ ହେବ ।

୧.୧୧.୧୯୮୦

# ପଦେ

**ଡକ୍ଟର କୁଞ୍ଜବିହାରୀ ଦାଶ**

ପ୍ରଫୁଲ୍ଲଚନ୍ଦ୍ର ଦାସ କଟକ ଜିଲ୍ଲାର କନିକାଗଡ଼ବାସୀ । ସେ ଆଜୀବନ ଜଣେ ସଂଗ୍ରାମୀ । ତାଙ୍କ ସଂଗ୍ରାମ ବ୍ୟକ୍ତିଗତ ସ୍ତରରେ ରୋଗ, ବ୍ୟାଧି ଓ ଦୈବଦୁର୍ବିପାକ ବିରୁଦ୍ଧରେ, ଜାତୀୟ ସ୍ତରରେ ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ । ଚିର ଶାନ୍ତ ସମାହିତ ତାଙ୍କ ବ୍ୟକ୍ତିତ୍ୱ ଦୁର୍ଜ୍ଜୟ, ଦୁର୍ଦ୍ଧର୍ଷ । ଏଇ କ୍ରିୟାଶୀଳ ବ୍ୟକ୍ତିତ୍ୱ ବଳରେ ହିଁ ସେ ଘୋର ପ୍ରତିକୂଳ ପରିବେଶକୁ ସାଧନମୁଖୀ କରିଛନ୍ତି । ଭଙ୍ଗପ୍ରବଣତା ଭିତରୁ ନୂତନ ସୃଷ୍ଟିର ରଙ୍ଗୀନ ସ୍ୱପ୍ନ ଦେଖିଛନ୍ତି ସେ, ଘନ କୁଜ୍‌ଝଟିକା ମଧ୍ୟରେ ପାଇଛନ୍ତି ଚିରନ୍ତନ ଆଲୋକର ସନ୍ଧାନ ।

ଶୈଳେନ୍ଦ୍ରନାରାୟଣ ମହାବିଦ୍ୟାଳୟର ଜଣେ ମୁଖ୍ୟ ସ୍ରଷ୍ଟା ସେ । ଶିକ୍ଷା ବିସ୍ତାର ତାଙ୍କ ଜୀବନର ଏକ ବ୍ରତ । କିନ୍ତୁ ତାଙ୍କ କର୍ମ ପରିସର ଏଥିରେ ସୀମାବଦ୍ଧ ହୋଇଯାଇନାହିଁ । ଜଣେ ଲେଖକ ହେବା ତାଙ୍କ ଜୀବନର ଏକ ଉଚ୍ଚାକାଙ୍‌କ୍ଷା । ସେଥିଲାଗି ତାଙ୍କ ସାଧନାର ଅନ୍ତନାହିଁ । ସେ ଜଣେ ବହୁପାଠୀ, ଗ୍ରନ୍ଥ ଅଧ୍ୟୟନ ତାଙ୍କର ଏକ ବିଳାସ । ମଧୁବ୍ରତ ପରି ସାରସଂଗ୍ରହ ତାଙ୍କର ବ୍ରତ । ରାଜନୀତି ଓ ଇତିହାସ ପ୍ରତି ତାଙ୍କର ଆଗ୍ରହ ଆବାଲ୍ୟ । ତାଙ୍କ ସଂଗ୍ରହକୁ ଯାଦୁଘରେ ସାଇତି ରଖିବାରେ ନୁହେଁ, ତାକୁ ବ୍ୟବହାର କରିବାରେ ତାଙ୍କର ଆନନ୍ଦ ବେଶି । ''ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ'' ହିଁ ତା'ର ପ୍ରମାଣ । ଏଥିରେ ହିଁ ସେ ଜଣେ ଲେଖକଭାବରେ ଏକ ନିର୍ଦ୍ଦିଷ୍ଟ ମାଇଲ ଖୁଣ୍ଟରେ ପହଞ୍ଚିପାରିଛନ୍ତି । ତାଙ୍କ ଶକ୍ତିମତ୍ତା ବିଷୟରେ ଆଉ ସନ୍ଦିହାନ ହେବାର କୌଣସି କାରଣ ନାହିଁ ।

ଭାରତବର୍ଷ ହିଂସା ବା ଅହିଂସ ଉପାୟରେ ସ୍ୱାଧୀନତା ଲାଭକଲା, ଏଘେନି ତାଙ୍କ ସହିତ କାହାର କାହାର ମତଦ୍ୱୈଧ ହୋଇପାରେ । କେହି କହନ୍ତି, ମହାତ୍ମାଗାନ୍ଧିଙ୍କ ଅହିଂସ ଅସହଯୋଗ ଆନ୍ଦୋଳନ, କେହି କହନ୍ତି ନେତାଜୀଙ୍କ ମୁକ୍ତି ଫଉଜର ପ୍ରତ୍ୟକ୍ଷ ହିଂସ୍ର-ସଂଗ୍ରାମ, ଭାରତୀୟ ନୌ, ଆକାଶ ଓ ପଦାତିକ ବାହିନୀର ବିପ୍ଳବ ଫଳରେ, କେହି କହନ୍ତି ହିଂସ୍ର ଓ ଅହିଂସ୍ର ଉଭୟ ଉପାୟରେ ଭାରତ ସ୍ୱାଧୀନତା ହାସଲକଲା । କିନ୍ତୁ ପ୍ରଫୁଲ୍ଲବାବୁଙ୍କ ବିଶ୍ୱାସ – ହିଂସାହିଁ ସାମ୍ରାଜ୍ୟବାଦୀଙ୍କୁ ଅଧିକ ପ୍ରଭାବିତକଲା । କାରଣ ହିଂସ୍ରକ ହିଂସାର ଭାଷା ବୁଝେ, ବିପକ୍ଷର ଶକ୍ତି ସାମର୍ଥ୍ୟ କଳନାକରେ, ତୁଳନାରେ ନିଜକୁ ଦୁର୍ବଳତର ମନେକଲେ ସେ ରଣକ୍ଷେତ୍ର ପରିତ୍ୟାଗକରେ । ଦ୍ୱିତୀୟ ମହାଯୁଦ୍ଧରେ ବିଧ୍ୱସ୍ତ ଇଂରେଜଙ୍କ ଅବସ୍ଥା ଅତ୍ୟନ୍ତ ସଙ୍କଟଜନକ ହୋଇଥିଲା । ବିପ୍ଳବୀଙ୍କଦ୍ୱାରା ଅପମାନଜନକ ବିତାଡ଼ନ ଅପେକ୍ଷା ଶାନ୍ତିପ୍ରିୟ ନେତାଙ୍କ ସହିତ ଏକ ସସମ୍ମାନ ସନ୍ଧିକୁ ସେମାନେ ଅଧିକ ଶ୍ରେୟସ୍କର ମନେକରିଥିଲେ ।

ସ୍ୱାଧୀନତା, ଚିର ଅନୁଦାର, ଚକ୍ରାନ୍ତକାରୀ ସାମ୍ରାଜ୍ୟବାଦୀଙ୍କର ଏକ ଉଦାର ଦାନ ଭଳି ଭାରତୀୟଙ୍କୁ ମିଳିଲା । ସମରକ୍ଳାନ୍ତ ସାମ୍ରାଜ୍ୟବାଦୀ ବିତାଡ଼ନ ଭାରତ ପକ୍ଷରେ ଅଧିକ ସମ୍ମାନଜନକ ଓ ମଙ୍ଗଳପ୍ରଦ ହୋଇଥାନ୍ତା, ଭାରତର ଇତିହାସ ଭିନ୍ନତର ହୋଇଥାନ୍ତା, ହୁଏତ ଦେଶ ବିଭାଗ ଫଳରେ କଳିର ମଞ୍ଜି ପୋତାହୋଇନଥାନ୍ତା – ନେତାଜୀ-ଭକ୍ତ ବଙ୍ଗର କେତେକ ନେତାଙ୍କ ମତ ଏଇଆ । ଏ ମତ ପକ୍ଷରେ ବହୁ ଶାଣିତ ଯୁକ୍ତି ରହିଅଛି । ଆଜିର ଇତିହାସ ଭିନ୍ନତର ହୋଇଥିଲେ ବି ତାକୁ ଉଡ଼ାଇଦିଆଯାଇନପାରେ ।

ଓଡ଼ିଆରେ ଏ ପୁସ୍ତକଟି ଅଭିନବ ସ୍ୱାଧୀନତା ପରବର୍ତ୍ତୀ ଯୁଗର ଜାତକମାନଙ୍କୁ ଭାରତର ସଶସ୍ତ୍ର ବିପ୍ଳବ ଓ ସ୍ୱାଧୀନତା ସଂଗ୍ରାମର ଏକ ପୂର୍ଣ୍ଣାଙ୍ଗ ଧାରଣାଦେବ । ପ୍ରଫୁଲ୍ଲବାବୁ ଯାହିତାହି ନିଜର କର୍ତ୍ତବ୍ୟ କର୍ମ ଶେଷକରିନାହାନ୍ତି । ସେ ପରିଶ୍ରମ ସହକାରେ ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କାଳରେ ରଚିତ ଅଧିକାଂଶ ଉପାଦେୟ ଗ୍ରନ୍ଥ ଅଧ୍ୟୟନ କରିଛନ୍ତି ଓ ସରଳ ଶୈଳୀରେ ନିଜର ଭାବସମ୍ଭାର ପରିବେଷଣ କରିଛନ୍ତି ।

ଗ୍ରନ୍ଥଟିକୁ ସେ ଚାରୋଟି ଭାଗରେ ବିଭକ୍ତ କରିଛନ୍ତି– ପାରମ୍ପରିକ ବିଦ୍ରୋହ ପର୍ଯ୍ୟାୟ, ବ୍ୟକ୍ତି ନିଧନ ପର୍ଯ୍ୟାୟ ବା ଉଦ୍‌ଯୋଗ ପର୍ବ, ଖଣ୍ଡ ବିପ୍ଳବ ପର୍ଯ୍ୟାୟ ଓ ଗଣବିପ୍ଳବ ।

ପୁସ୍ତକଟି ଆମୂଳଚୂଳ ସୁଖପାଠ୍ୟ ହୋଇଅଛି । ଦେଶକୁ ରାଜନୀତି ସଚେତନ କରିବାରେ ଏହା ସହାୟକ ହେବ ।

ଉଦୟଶ୍ରୀ, ମହତାବରୋଡ୍, କଟକ-୩
୧.୧୧.୮୦

# ସବିନୟ ନିବେଦନ. . .

ମୁଁ ଐତିହାସିକ ନୁହେଁ, ବହୁ ଭାଷାବିତ୍ ପଣ୍ଡିତ ନୁହେଁ, ଏପରିକି କୌଣସି ବିଶ୍ୱବିଦ୍ୟାଳୟର ଡିଗ୍ରୀଧାରୀ ମଧ୍ୟ ନୁହେଁ – ଜଣେ ସାମାନ୍ୟ ରାଜନୈତିକ କର୍ମୀ ମାତ୍ର, ଖୁବ୍ ବେଶୀରେ ଜଣେ ଇତିହାସର ଛାତ୍ର ହୋଇପାରିଥାଏ । କିନ୍ତୁ ଯେଉଁ କ୍ଷେତ୍ର ବଡ଼ ବଡ଼ ପଣ୍ଡିତ ଓ ରାଜନୀତି ବିଜ୍ଞାନୀମାନଙ୍କ ପାଇଁ ଉଦ୍ଦିଷ୍ଟ ମୁଁ ସେହି କ୍ଷେତ୍ର ଭିତରେ ଦୁଃସାହସିକ ଅନୁପ୍ରବେଶ କରିଛି । ଛୋଟ ମୁହଁରେ ଯଦି ବଡ଼କଥା କହିଦେଇଥାଏ ସହୃଦୟ ପାଠକ ପାଠିକା ମୋର ସେହି ଧୃଷ୍ଟତା ମାର୍ଜନା କରିବେ ।

ପିଲାଦିନୁଁ ବିପ୍ଳବୀମାନଙ୍କୁ ଭଲପାଇଆସିଛି – ସ୍ୱାମୀ ବିବେକାନନ୍ଦଙ୍କଠାରୁ ଆରମ୍ଭ କରି ଗାନ୍ଧିଜୀଙ୍କ ପର୍ଯ୍ୟନ୍ତ । ସାଧାରଣ କ୍ଷେତ୍ରରେ ପ୍ରବେଶ କଲାଦିନୁ 'ସାମ୍ୟବାଦୀ' ଦର୍ଶନ ମୋତେ ସର୍ବାଧିକ ଆକୃଷ୍ଟ କରିଆସିଛି, ଆଜି ବି ତା' ଉପରେ ଅନନ୍ୟ ନିଷ୍ଠା । ମଝିରେ ଥୋଡ଼ାଏ ଦିନ 'ଭୂଦାନ' କାମ ଭିତରେ ପଶିଯାଇଥିଲି । ମେହନତୀ ଜନତାର କିଛି ପ୍ରତ୍ୟକ୍ଷ ସେବା ବା ଉପକାର କରିବା ଲକ୍ଷ୍ୟରେ ତା' ଭିତରେ ପଶିଥିଲି । ଗାନ୍ଧି ଓ ସର୍ବୋଦୟ ଦର୍ଶନର ପ୍ରୟୋଗ ନିଜ ଆଖିରେ ଦେଖିବି, ନିଜେ ଅଙ୍ଗେ ନିଭେଇବି – ଏ ଆଶା ମଧ୍ୟ ଥିଲା । କିନ୍ତୁ ନିରାଶହେଲି । କିଛି କିଛି ସେବାର ସୁଯୋଗ ମିଳିଲା – ଗରିବଲୋକେ କିଛି କିଛି ଉପକାର ହୁଏତ ପାଇଲେ, କିନ୍ତୁ ଲାଭ ଅପେକ୍ଷା କ୍ଷତି କଲି ଅଧିକ । ଯେଉଁ ମେହନତୀ ଜନତାଙ୍କ ଜୀବନର ଆମୂଳ ପରିବର୍ତ୍ତନ ପାଇଁ ଏକ ସର୍ବାତ୍ମକ ବିପ୍ଳବ ଅପରିହାର୍ଯ୍ୟ, ଭୂଦାନ ଆନ୍ଦୋଳନ ଫଳରେ ସେହିମାନଙ୍କର ଲାଭ ପରିବର୍ତ୍ତେ କ୍ଷତି ହେଲା ବୋଲି ଅଭିଯୋଗହେଲା । ଅଭିଯୋଗ ହୁଏତ ଠିକ୍ – କିନ୍ତୁ ବ୍ୟକ୍ତିଗତ ଭାବରେ କେତେକ ପରିମାଣରେ ଲାଭହେଲା । ଜଳ ଓ ମୃଗତୃଷ୍ଣା ଭିତରେ ପାର୍ଥକ୍ୟ ବୁଝିପାରିଲି । ବହୁ ମନୀଷୀ, ସଂଗ୍ରାମୀ, ପଣ୍ଡିତ, କବି, ରାଷ୍ଟ୍ରନାୟକ ଓ ଚିନ୍ତାଶୀଳ ବ୍ୟକ୍ତିଙ୍କ ସହ ମିଶିବାର ଓ ଏକତ୍ର କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା ସେହି କେତୋଟି ବର୍ଷ ଭିତରେ । ଫଳରେ ନିଜର ବହୁତ ଭ୍ରମ ସଂଶୋଧନ ହେଲା । ନିଜର ବିଚାର ଅଧିକ ପରିଷ୍କାରହେଲା । ଜୀବନ ଭିତରେ ତାହା ସବୁଠାରୁ ମୂଲ୍ୟବାନ୍ ସମୟ ଥିଲା ବୋଲି ମୋର ମନେହୁଏ ଏବେ ବି ।

ସ୍ୱାଧୀନତା ଯୁଦ୍ଧବେଳେ କୌଣସି ବିଶିଷ୍ଟ ସଶସ୍ତ୍ର ବିପ୍ଳବୀଙ୍କୁ ଦେଖିବାର ସୌଭାଗ୍ୟ ହୋଇନାହିଁ । ବାରବର୍ଷ ବୟସରେ କଟକ ହସ୍‌ପିଟାଲ୍‌ରେ ଦେଖିଥିଲି ରଣପୁର ବିଦ୍ରୋହୀ ପ୍ରଜାଙ୍କ ହାତରେ ପ୍ରାଣଦେଇଥିବା ବେଜଲଗେଟ ସାହେବଙ୍କ ମୃତ ଦେହ । ମୃତ ସାହେବଙ୍କୁ ପୋଷ୍ଟମର୍ଟମ କରିବାପାଇଁ 'ନେଟିଭ୍' ଡାକ୍ତରଙ୍କୁ ଅନୁମତି ଦିଆଯାଇନଥିବା ବିଷୟ ମଧ୍ୟ

ଶୁଣିଥିଲି । ସେତେବେଳେ ମନରେ 'ବିଦ୍ରୋହ' ସୃଷ୍ଟି ହୋଇଥିଲା କି ନା ମନେନାହିଁ, କିନ୍ତୁ ଘଟଣାଟି ସ୍ପଷ୍ଟ ମନେଅଛି । 'ଅଗଷ୍ଟ ବିପ୍ଳବ'ବେଳେ ସ୍କୁଲ (ରାଣୀହାଟ) ବନ୍ଦହୋଇନଥିଲେ ହୁଏତ ସେଥିରେ ଭାଗନେବାର ସୁଯୋଗ ମିଳିଥାନ୍ତା । ମଫସଲିଆ ପିଲା ହୋଇଥିବାରୁ ଗାଁକୁ ପଳେଇଆସିଲୁ – ସ୍କୁଲରୁ ତଡ଼ାଖାଇ । ୧୯୪୪-୪୫ରେ ସୁଭାଷଙ୍କ ମୁକ୍ତିବାହିନୀକୁ ଖଲାସ ପାଇଁ ହୋଇଥିବା ଗଣ-ଆନ୍ଦୋଳନରେ ଆଗୁଆ ହେବାର ସୌଭାଗ୍ୟ ମିଳିଥିଲା– ବେଶ୍ ସେତିକି ।

''କନିକା ପ୍ରଜାବିଦ୍ରୋହ'' ମୋ' ଜନ୍ମ ପୂର୍ବର ଘଟଣା, କିନ୍ତୁ ସେହି ଐତିହାସିକ ବିଦ୍ରୋହ କଥା ମନ ଉପରେ ଗଭୀର ପ୍ରଭାବ ପକାଇଥିଲା । ତାହା ଏତେ ଅସ୍ଥିମଜ୍ଜାଗତ ହୋଇଗଲା ଯେ ଶହିଦ ବାସୁ ବିସୁନି ଯେମିତି ହୋଇଗଲେ ମୋ ପଥପ୍ରଦର୍ଶକ ଗୁରୁ, ମୋର ଅଲକ୍ଷ୍ୟରେ ଓ ଅଜ୍ଞାତରେ । ରାଜନୀତିକ ଜୀବନ ସେହି ଦୁଇଜଣଙ୍କର ଆଦର୍ଶରେ ପ୍ରଭାବିତ-ହେଲା ।

କିନ୍ତୁ ଗତ ୩୦/୩୨ ବର୍ଷ ହେବ ସାଧାରଣ କ୍ଷେତ୍ରରେ କାର୍ଯ୍ୟକରି ଅଧିକରୁ ଅଧିକ ଅନୁଭବ କରୁଅଛି ଯେ ଆମ ସ୍ୱାଧୀନତା ସଂଗ୍ରାମରେ ଥିବା କେତେକ ମୌଳିକ ତ୍ରୁଟି – ଉଭୟ ତାତ୍ତ୍ୱିକ ଓ କୌଶଳଗତ ଯୋଗୁଁ ଦେଶର ଆଜି ଏ ଦୁରବସ୍ଥା – ଯାହାର ସମାଧାନ ବେଳେ ବେଳେ ଅସମ୍ଭବ ମନେହେଉଛି । ତା' ଅପେକ୍ଷା ଅଧିକ ଦୁଃଖର କଥା ସ୍ୱାଧୀନତା ସଂଗ୍ରାମରେ ପ୍ରକୃତରେ ଯାହା ଯାହା ଘଟିଯାଇଛି – ସେସବୁ ଘଟନାକୁ ଲୋକଲୋଚନର ଅନ୍ତରାଳରେ ରଖିବାର ପ୍ରଚେଷ୍ଟା । ଇଂରେଜ ଐତିହାସିକମାନେ ପ୍ରଥମ ସ୍ୱାଧୀନତା ଯୁଦ୍ଧକୁ 'ସିପାହୀ ବିଦ୍ରୋହ' ବୋଲି ଚିତ୍ରଣ କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, କାରଣ ତାହା ଥିଲା ଉଭୟ ସୈନ୍ୟ ବାହିନୀ ଓ ଜନସାଧାରଣଙ୍କର ଇଂରେଜମାନଙ୍କ ବିରୁଦ୍ଧରେ ପ୍ରଥମ ସଶସ୍ତ୍ର ଚାଲେଞ୍ଜ । ଯେକୌଣସି ସାମ୍ରାଜ୍ୟବାଦୀ ଦେଶ ସେଭଳି ଚାଲେଞ୍ଜକୁ ବିକୃତଭାବେ ବ୍ୟାଖ୍ୟା କରିବହିଁ କରିବ । କିନ୍ତୁ ଅନ୍ୟ କେଉଁ ସରକାର ତା'ର ସ୍ୱାଧୀନତା ସଂଗ୍ରାମୀଙ୍କୁ କ'ଣ ଏ ଭଳି ହୀନ ପ୍ରତିପନ୍ନ କରିବାକୁ ଉଦ୍ୟମ କରେ ଯେମିତି ଆମ ସରକାର ଗତ ତିରିଶ ବର୍ଷ ଧରି କରିଆସିଛି ? କେତେ ଜଣ ସଶସ୍ତ୍ର ବିପ୍ଳବୀଙ୍କ ଜନ୍ମଦିବସ ବା ମୃତ୍ୟୁବାର୍ଷିକୀ ପାଳିତହୁଏ ଋକାରୀ ସ୍ତରରେ ? ବାର ଦିନରେ ତେର ଛୁଟି କରୁଥିବା ସରକାର କେତେଜଣ ସଶସ୍ତ୍ର ାଧୀନତା ଯୋଦ୍ଧାଙ୍କର ଜନ୍ମ ବା ପ୍ରୟାଣ ଦିବସକୁ ଛୁଟି ଦିବସ ରୂପେ ଘୋଷଣା କରନ୍ତି ? ''ଟାଇମ୍ କ୍ୟାପସୁଲ୍''ରେ ପୋତାହୋଇଥିବା 'ସ୍ୱାଧୀନତା ଇତିହାସ' ସମ୍ପର୍କରେ ଯେତେ ବିକୃତ ବିବରଣୀ ଓ ମନଗଢ଼ା ତଥ୍ୟ ଖୋଳାହୋଇ ବାହାରିଲା ତାହା ଏ ଦେଶର ସମ୍ମାନ ବଢ଼ାଇଲା ନା ବୁଡ଼ାଇଲା ?

ଦୁର୍ଭାଗ୍ୟର କଥା ଏଭଳି ଲୋକଙ୍କ ହାତରେ 'ସ୍ୱାଧୀନତା ସଂଗ୍ରାମ'ର ଇତିହାସ ଲେଖିବା ଦାୟିତ୍ୱ ପଡ଼ିଲା ଯେଉଁମାନେ ପ୍ରକୃତିଗତ ଓ ଶ୍ରେଣୀଗତ ସ୍ୱାର୍ଥ ଦୃଷ୍ଟିରୁ ବିପ୍ଳବ ଆଦର୍ଶର ବିରୋଧୀ । ସରକାରୀ ପୃଷ୍ଠପୋଷକତା ଲାଭ ଆଶାରେ ହେଉ ବା ଶାସକ ଦଳକୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ

ହେଉ, ସେମାନେ ଇତିହାସ ରଚନାର ନିରପେକ୍ଷତା ଅବଲମ୍ବନ କରିପାରିନାହାନ୍ତି । ଫଳରେ ଅଧିକାଂଶ ଇତିହାସ ବହିରେ ଗାନ୍ଧିଜୀଙ୍କର ତଥାକଥିତ ଅହିଂସ ଆନ୍ଦୋଳନକୁ ସ୍ୱାଧୀନତା ଲାଭର ସମସ୍ତ ଶ୍ରେୟ ଦିଆଯାଇ ସଶସ୍ତ୍ର ବିପ୍ଳବକୁ ହୀନ ପ୍ରତିପନ୍ନ କରିବାର ଉଦ୍ୟମ ହୋଇଛି । ଏପରିକି ବହୁ ଗୁରୁତ୍ୱପୂର୍ଣ୍ଣ ଓ ସୁଦୂରପ୍ରସାରୀ ସଶସ୍ତ୍ର ମୁକ୍ତି ଆନ୍ଦୋଳନକୁ ଏଥିରେ ଏକାବେଳକେ ବ୍ଲାକ୍‌ଆଉଟ୍ କରିଦିଆଯାଇଛି । ଭାରତ ବ୍ୟତୀତ ଅନ୍ୟ କୌଣସି ସ୍ୱାଧୀନ ଦେଶ ସଶସ୍ତ୍ର ମୁକ୍ତି ଯୋଦ୍ଧାଙ୍କୁ ଏଭଳି ଲାଞ୍ଛନା କରିଥିବାର ନଜିର ମିଳିବ ନାହିଁ । ଭାରତ ସରକାରଙ୍କଦ୍ୱାରା ପ୍ରକାଶିତ ଡକ୍ଟର ତାରାଚାନ୍ଦଙ୍କ ଦୁଇହଜାର ପୃଷ୍ଠାର 'ଇତିହାସ' ବହି ଏହାର ଜ୍ୱଳନ୍ତ ନିଦର୍ଶନ । ବହୁ ମୂଲ୍ୟବାନ୍ ଓ ଦୁଷ୍ପ୍ରାପ୍ୟ ତଥ୍ୟ ସମ୍ବଳିତ ଓ ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟାରେ ପୂର୍ଣ୍ଣ ଏହି ବିରାଟ ଇତିହାସ ଗ୍ରନ୍ଥରେ ସଶସ୍ତ୍ର ବିପ୍ଳବକୁ ଯେଭଳି ଛୋଟ କରାଯିବାର ଏବଂ ଗାନ୍ଧି-ନେହେରୁ-ପଟେଲଙ୍କୁ (ତିଳକ ନୁହନ୍ତି) ଅଯଥା ଟେକିବାର ଯେଉଁ ଚତୁର ଉଦ୍ୟମ ହୋଇଅଛି, ତାହା ପାଠକଲେ ଯେକୌଣସି ଦେଶପ୍ରେମୀ ଭାରତୀୟର ମୁଣ୍ଡ ଲଜ୍ଜାରେ ନଇଁଯିବ । ତାରାଚାନ୍ଦ ତାଙ୍କ ବହିରେ ଜିନ୍ନାଙ୍କୁ ଯେତିକି ପୃଷ୍ଠା ଦେଇଛନ୍ତି ତାହାର ଦଶଭାଗରୁ ଭାଗେ ସେ ସୁଭାଷଙ୍କୁ ଦେଇପାରିଲେନାହିଁ । ସଶସ୍ତ୍ର ମୁକ୍ତିଯୋଦ୍ଧାମାନଙ୍କ ପ୍ରତି ତତ୍କାଳୀନ ନେତୃତ୍ୱର ଅସହିଷ୍ଣୁତାର ଏହି ଗୋଟିଏ ଉଦାହରଣ ଯଥେଷ୍ଟ ବୋଲି ମୋର ମନେହୁଏ ।

ପୁରୀ ଶ୍ରୀରାମକୃଷ୍ଣ ମିସନ ଲାଇବ୍ରେରୀ ଦାୟିତ୍ୱରେ ପ୍ରାୟ ଦୁଇବର୍ଷକାଳ ରହିବାର ସୁଯୋଗ ମିଳିଥିଲା ଏବଂ ସେହି ଅବକାଶରେ ବହୁ ଉପାଦେୟ ପୁସ୍ତକ ପଢ଼ିବାର ସୁଯୋଗ ମଧ୍ୟ ମିଳିଲା । ଦେଖିଲି ଇଂରେଜ ଐତିହାସିକମାନେ ଆମ 'ସଶସ୍ତ୍ର ବିପ୍ଳବ' ସମ୍ପର୍କରେ ଯେତିକି ଲେଖିଛନ୍ତି ଭାରତୀୟ ଐତିହାସିକମାନେ ତାହାର କାଣିଚାଏ ବି କରିନାହାନ୍ତି । *F.G.Hutchins*ଙ୍କର *'Spontaneous Revolution'* ଏହି ଶ୍ରେଣୀର ଖଣ୍ଡେ ବହି । ସିପାହୀ ବିଦ୍ରୋହ ବିଷୟରେ ମଧ୍ୟ ବହୁ ଇଂରେଜ ଐତିହାସିକ ଉପାଦେୟ ବହି ସବୁ ଲେଖିଛନ୍ତି । ସେମାନେ ଏହାକୁ ଭାରତର ପ୍ରଥମ ସ୍ୱାଧୀନତା ଯୁଦ୍ଧ ବୋଲି ମଧ୍ୟ ପ୍ରତିପାଦିତ କରିଛନ୍ତି । ମନୀଷୀ କାଲମାର୍କ୍ସ ତ ଅତି ସ୍ପଷ୍ଟ ଭାଷାରେ ଏହା ଲେଖିଛନ୍ତି ।

ହିନ୍ଦି, ଓଡ଼ିଆ ଓ ବଙ୍ଗଳା ଭାଷାରେ ସଶସ୍ତ୍ର ବିପ୍ଳବ ସମ୍ପର୍କରେ ବହୁ ଚମତ୍କାର ଗ୍ରନ୍ଥମାନ ରହିଛି । ବଙ୍ଗଳା ଭାଷାରେ ଏହା ସର୍ବାଧିକ ହୋଇପାରେ, କାରଣ ବଙ୍ଗାଳୀମାନେ ଆରମ୍ଭରୁ ସଶସ୍ତ୍ର ବିପ୍ଳବର ପୁରୋଭାଗରେ ଥିଲେ । ସେହି ଅନୁପାତରେ ଓଡ଼ିଆ ଭାଷାରେ ଏ ସମ୍ପର୍କରେ ସେମିତି ନିର୍ଭରଯୋଗ୍ୟ ବହି ନାହିଁ କହିଲେ ଚଳେ । ଓଡ଼ିଆମାନେ ସଶସ୍ତ୍ର ବିପ୍ଳବରେ ସେମିତି କିଛି ଅଂଶ ନେଇନଥିବାରୁ ସେଥିପ୍ରତି ଓଡ଼ିଆମାନେ ଉଦାସୀନ ଓ ସେହି ଦୃଷ୍ଟିରୁ ଏ ସମ୍ପର୍କୀୟ ଓଡ଼ିଆ ପୁସ୍ତକ ପ୍ରତି ଆଗ୍ରହୀ ନହେବା ସ୍ୱାଭାବିକ । କିନ୍ତୁ ମୋର ଦୃଢ଼ ଧାରଣା ଯେ ସ୍ୱାଧୀନତା ଯୁଦ୍ଧର ଏହି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଶିକ୍ଷାପ୍ରଦ ତଥା ତ୍ୟାଗପୂତ ବର୍ଣ୍ଣାଢ଼୍ୟ ବିବରଣୀ ବିଷୟରେ ସଂପୂର୍ଣ୍ଣ ଅବହିତ ନହେଲେ ଓଡ଼ିଆମାନଙ୍କର ରାଜନୈତିକ ଭବିଷ୍ୟତ ଯେଉଁ ତିମିରେ ସେହି ତିମିରେ ବୁଡ଼ିରହିବ ।

ଦୁର୍ଭାଗ୍ୟର କଥା ଐତିହାସିକ କାରଣରୁ ସିପାହୀ ବିଦ୍ରୋହ ପରେ କୌଣସି ଓଡ଼ିଆ ସଶସ୍ତ୍ର ବିପ୍ଳବରେ ଭାଗ ନେଇପାରିଲେ ନାହିଁ । ଚୈତନ୍ୟଦେବଙ୍କର ପ୍ରେମଧର୍ମ ପ୍ରଚାର, ବିଶେଷତଃ ପ୍ରତାପରୁଦ୍ର ଦେବଙ୍କ ଅମଳରେ ଏହା ଓଡ଼ିଶାର ରାଜଧର୍ମରେ ପରିଣତ ହେବାରୁ, ଏହା ଓଡ଼ିଆ ଚରିତ୍ରକୁ ବିଶେଷ ପ୍ରଭାବିତ କଲାବୋଲି କୁହାଯାଇପାରେ । ମୋର ''ଅଗ୍ନିଯୁଗର ଆହ୍ୱାନ'' ବହିରେ କୌଣସି ଓଡ଼ିଆ ବିପ୍ଳବୀଙ୍କ ଜୀବନୀ ନଥିବାରୁ ବହୁ ପାଠକ ମୋତେ ପ୍ରଶ୍ନ କରିଛନ୍ତି, ଆକ୍ଷେପ ଓ ସମାଲୋଚନା ମଧ କରିଛନ୍ତି । କିନ୍ତୁ ମୁଁ ନିରୁପାୟ ! ବୀର ସୁରେନ୍ଦ୍ର ସାଏ ଓ ଚାଖି ଖୁଣ୍ଟିଆ ବା କନିକାର ବାମଦେବ ପଟ୍ଟଯୋଶୀ ପ୍ରଭୃତିଙ୍କ ପରେ ଓଡ଼ିଶାର ସଶସ୍ତ୍ର ବିପ୍ଳବ କ୍ଷେତ୍ରରେ ମହାଶୂନ୍ୟତା ହିଁ ଦେଖାଦେଲା । ଚାଖିଖୁଣ୍ଟିଆ ମଧ ବିପ୍ଳବୀ ନଥିଲେ ବୋଲି ହକ୍କର ମହତାବ ପ୍ରଭୃତି ଐତିହାସିକଙ୍କ ମତ । 'ଅଗ୍ନିଯୁଗ' (ବିଂଶ-ଶତାବ୍ଦୀର ପ୍ରଥମାର୍ଦ୍ଧ)ରେ ଜଣେ ତ ମିଳିବା କଷ୍ଟ । ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଓ ପରେ ଜଲାଲବାଦ ପାହାଡ଼ ଲଢ଼େଇ (ଏହି ଗ୍ରନ୍ଥର ତୃତୀୟ ଭାଗ)ରେ ମୁଖ୍ୟ ଭାଗ ନେଇଥିବା ବିପ୍ଳବୀ ଲୋକନାଥ ବଳ ଯଦିଓ ଓଡ଼ିଆ ବୋଲି ପ୍ରମାଣ କରିବାକୁ ମୁଁ ଚେଷ୍ଟାକରିଛି ତଥାପି ତାହା ବିବାଦଶୂନ୍ୟ ନୁହେଁ । ସଶସ୍ତ୍ର ବିପ୍ଳବ ପ୍ରତି ଓଡ଼ିଆମାନଙ୍କର ଏହି ଉଦାସୀନତା ଆଜି ପ୍ରତ୍ୟେକ କ୍ଷେତ୍ରରେ ପ୍ରତିଫଳିତ । ସବୁ କ୍ଷେତ୍ରରେ ଓଡ଼ିଶା ଯେ ପଛରେ ପଡ଼ିଛି ଏହା ତା'ର ସର୍ବପ୍ରଧାନ କାରଣ ବୋଲି ମୋର ଧାରଣା ।

ଏଭଳି ଏକ ବିବାଦୀୟ ଓ ଯୁକ୍ତିତର୍କସାପେକ୍ଷ ଗ୍ରନ୍ଥ ପ୍ରଣୟନ କରିବାପାଇଁ ଆବଶ୍ୟକୀୟ ଗ୍ରନ୍ଥାଗାରର ସୁବିଧା ମୋର ନଥିଲା । ବିଭିନ୍ନ ସୂତ୍ରରୁ ବହି ସଂଗ୍ରହ କରି, କିଛି ପରିମାଣରେ କ୍ରୟକରି ଓ ଘରେ ପଢ଼ାପଢ଼ି କରି ଯେତିକି ପାରିଛି ସେତିକି କରିଛି । ଯଦିଓ ବହୁ ଦୁଷ୍ପ୍ରାପ୍ୟ ଓ ଦୁର୍ଲ୍ଲଭ ତଥ୍ୟ ଏହି ଗ୍ରନ୍ଥରେ ସନ୍ନିବେଶିତ କରିବାକୁ ମୁଁ ଚେଷ୍ଟାକରିଛି, ତଥାପି ବହୁ ତଥ୍ୟ ସ୍ଥାନାଭାବରୁ ପ୍ରକାଶ କରିପାରିଲିନାହିଁ । ପରବର୍ତ୍ତୀ ସଂସ୍କରଣରେ ସେହି ତଥ୍ୟ ସବୁ ଉଲ୍ଲେଖ କରିବାର ବାସନା ରହିଛି ।

ହକ୍କର ମହତାବଙ୍କ ସହ ମୋର ରାଜନୈତିକ ଭିନ୍ନ ମତ ଥିଲେ ମଧ ଏହି ଗ୍ରନ୍ଥ ପ୍ରଣୟନରେ ମୋତେ ସେ ଆରମ୍ଭରୁ ସର୍ବାଧିକ ଉତ୍ସାହ ଓ ପ୍ରେରଣା ପ୍ରଦାନ କରିଅଛନ୍ତି ଏବଂ ଆବଶ୍ୟକୀୟ ପରାମର୍ଶ ଓ ନିର୍ଦ୍ଦେଶ ଦେଇଅଛନ୍ତି । ସେ ନିଜେ ଗାନ୍ଧି ଆନ୍ଦୋଳନର ପୁରୋଭାଗରେ ଜୀବନ ବିତାଇଥିଲେ ମଧ ଗାନ୍ଧି ନୀତି ବିରୋଧୀ ସଂଗ୍ରାମ ଇତିହାସରେ ମୁଖବନ୍ଧ ଲେଖିବାକୁ ମୁଁ ତାଙ୍କୁ ସେଥିପାଇଁ ଅନୁରୋଧ କରିଥିଲି । ସେ ଅନୁରୋଧ ସେ ରକ୍ଷାକରିଥିବାରୁ ମୁଁ ତାଙ୍କ ନିକଟରେ ବିଶେଷଭାବେ କୃତଜ୍ଞ ।

ବଙ୍ଗଳାର ପ୍ରଖ୍ୟାତ ବିପ୍ଳବୀ ଗଣେଶ ଘୋଷଙ୍କଠାରୁ ମୋ ବହି ସମ୍ପର୍କରେ ଅଭିମତ ଆଣିବି ବୋଲି ଆଶା କରିଛି ବହୁଦିନୁ । ଗଣେଶ ଘୋଷ କେବଳ ଯେ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଓ ପାହାଡ଼ ଯୁଦ୍ଧର ଅନ୍ୟତମ ସେନାପତି ଥିଲେ, ସେତିକି ନୁହେଁ; ଓଡ଼ିଆ ବିପ୍ଳବୀ ଲୋକନାଥ ବଳଙ୍କର ସେ ଥିଲେ ଜନୈକ ଅନ୍ତରଙ୍ଗ ସହକର୍ମୀ । ସେ ଦୃଷ୍ଟିରୁ ଗଣେଶ

ଘୋଷଙ୍କ ପ୍ରତି ମୋର ବିଶେଷ ଆକର୍ଷଣ ଥିଲା । ସେ ବଙ୍ଗଭାଷୀ, ତଥାପି ଓଡ଼ିଆ ବହିରେ ଅଭିମତ ଦେବାକୁ ରାଜିହେଲେ । ଏହା ମୋ ପକ୍ଷରେ ଗୌରବଜନକ ବୋଲି ମୁଁ ମନେକରେ ।

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ମୋର ପ୍ରଥମ ବହି 'ଅଗ୍ନିଯୁଗର ଆହ୍ୱାନ'ର ମୁଖବନ୍ଧ ଲେଖିଥିଲେ । ଏହି ବହିର ପାଣ୍ଡୁଲିପିର କେତେକାଂଶ ମଧ୍ୟ ଶୁଣିଥିଲେ ଏବଂ କୃଷକ ବିଦ୍ରୋହ ସମ୍ପର୍କରେ ଉଲ୍ଲେଖ କରିବାକୁ ପରାମର୍ଶ ଦେଇଥିଲେ । ଦୁଃଖର କଥା ତାଙ୍କର ଅସୁସ୍ଥତା ଏବଂ ମୋର ଅକ୍ଷମତା ପାଇଁ ତାଙ୍କ ସହ ଯୋଗସୂତ୍ର ରହିପାରିଲାନାହିଁ ।

ମୁଁ ଏ ବିଷୟରେ ସମ୍ପୂର୍ଣ୍ଣ ସଚେତନ ଯେ ମୋର ଏହି ପୁସ୍ତକ ଭିନ୍ନ ଭିନ୍ନ ଶ୍ରେଣୀର ପାଠକଙ୍କ ମନରେ ଭିନ୍ନ ଭିନ୍ନ ପ୍ରତିକ୍ରିୟା ସୃଷ୍ଟିକରିବ । ଯେଉଁମାନେ ସ୍ୱାଧୀନତା ସଂଗ୍ରାମର ଏହି ସବୁଠାରୁ ମୂଲ୍ୟବାନ୍ ଅଧ୍ୟାୟ ସମ୍ପର୍କରେ ଅଜ୍ଞ ବା ଯେଉଁମାନଙ୍କର ଧାରଣା ଯେ କେବଳ ଅହିଂସ ଆନ୍ଦୋଳନ ହିଁ ସ୍ୱାଧୀନତା ଆଣିଲା, ସେମାନେ ହୁଏତ ଯୁଗପତ୍ ବିସ୍ମୟ ଅନୁଭବ କରିବେ । ଯେଉଁମାନେ କଂଗ୍ରେସର ସବିନୟ ଆଇନ ଆନ୍ଦୋଳନର ପରମ୍ପରାରେ ଲାଳିତ ପାଳିତ ସେମାନେ ହୁଏତ ମାନସିକ ବ୍ୟଥା ଅନୁଭବ କରିବେ କିମ୍ବା ରୁଷ୍ଟ ହେବେ । ଇତିହାସର ବଡ଼ ବଡ଼ ପଣ୍ଡିତମାନେ ହୁଏତ ଏହାକୁ ଉପହାସ କରିବେ । କିନ୍ତୁ କହିରଖେଁ ଯେ ଏହି ଗ୍ରନ୍ଥରେ ଦିଆଯାଇଥିବା ତଥ୍ୟ ବା ଘଟଣାଗୁଡ଼ିକରୁ ଗୋଟିଏ ବି ମୋର ମନଗଢ଼ା ନୁହେଁ– ସମସ୍ତ ତଥ୍ୟ ବିଭିନ୍ନ ନିର୍ଭରଯୋଗ୍ୟ ସୂତ୍ରରୁ ସଂଗୃହୀତ ହୋଇଛି ଏବଂ ତାହା ଯଥାସ୍ଥାନରେ ଉଲ୍ଲେଖ କରିଛି । ଅବଶ୍ୟ ଏହାକୁ ପ୍ରକାଶ କରିବାର ଦୃଷ୍ଟିଭଙ୍ଗୀ ମୋର ନିଜସ୍ୱ ।

ଜାତିର ଜନକ ଗାନ୍ଧିଜୀଙ୍କୁ ଏହି ପୁସ୍ତକରେ ବିଭିନ୍ନ ସ୍ଥାନରେ ବେଳେ ବେଳେ ମୁଁ ଯେଉଁ କଠୋର ସମାଲୋଚନା କରିଛି ତାକୁ ପାଠକରି ମୋତେ ଗାନ୍ଧିବିରୋଧୀ ବୋଲି ଯଦି କେହି ମନେକରନ୍ତି ତାହା ମୋ ପ୍ରତି ଅନ୍ୟାୟ ହେବ । ଗାନ୍ଧିଜୀଙ୍କ ଅନୁଗାମୀମାନଙ୍କ ଅପେକ୍ଷା ମୋର ତାଙ୍କ ପ୍ରତି କମ୍ ଭକ୍ତି ବା ଶ୍ରଦ୍ଧା ନାହିଁ । ଗାନ୍ଧିନୀତି ଓ କାର୍ଯ୍ୟକଳାପ ଯେଉଁଠି ସ୍ୱାଧୀନତାର ଲାଭ ଅପେକ୍ଷା କ୍ଷତି ଅଧିକ କରିଛି ବୋଲି ମୁଁ ଅନୁଭବ କରିଛି, ମୁଁ ସେହିଠାରେ ତାଙ୍କର ନିର୍ମମ ବିରୋଧୀ । ବସ୍ତୁତଃ ଗାନ୍ଧିନୀତିରେ ପ୍ରଭାବିତ ହୋଇ ମୁଁ ସାଧାରଣ କ୍ଷେତ୍ରକୁ ଆସିଥିଲି ଏବଂ ସାମ୍ୟବାଦୀ ଦର୍ଶନର ପ୍ରୟୋଗବେଳେ ମୁଁ ମାର୍କସ୍‌ଙ୍କ ଅପେକ୍ଷା ଗାନ୍ଧିଜୀଙ୍କୁ ଅଧିକ ଅନୁସରଣ କରିଛି । ମୋର ରାଜନୀତିକ ଜୀବନରେ ତାହାକୁ ଏକ ଦୁର୍ବଳତା ବୋଲି କେହି କେହି କହନ୍ତି । ସ୍ୱରାଜ୍ୟ ଆନ୍ଦୋଳନ ସହ ଖିଲାଫତକୁ ମିଶାଇଦେଇ ଗାନ୍ଧିଜୀ ଗୁରୁତର ଭୁଲ୍ କଲେ ବୋଲି ମୁଁ ଖିଲାଫତ ବିଷବୃକ୍ଷ ଅଧ୍ୟାୟରେ ପ୍ରତିପାଦିତ କରିବାକୁ ଚେଷ୍ଟାକରିଛି । ଦେଖି ଖୁସି ହେଲି ଯେ ଡକ୍ଟର ମହତାବ ମଧ୍ୟ ମୋର ସେହି ଅଭିମତକୁ ସମର୍ଥନ କରିଅଛନ୍ତି ତାଙ୍କର ମୁଖବନ୍ଧରେ । 'ସଶସ୍ତ୍ର ବିପ୍ଳବ'ରେ ଭାରତୀୟ ମୁସଲମାନମାନେ ଅଧିକ ଭାଗ ନେଇନପାରିବା ମଧ୍ୟ ସେହି ଗୋଟିଏ କାରଣରୁ । 'ସିପାହୀବିଦ୍ରୋହ'ରେ ମୁସଲମାନମାନେ ଯେତେ ସଂଖ୍ୟାରେ ସକ୍ରିୟ ଭୂମିକା ନେଇଥିଲେ, ପରବର୍ତ୍ତୀ ଅବସ୍ଥାରେ ତାହା ହୋଇପାରିଲା ନାହିଁ । ବଙ୍ଗ ବିଚ୍ଛେଦ ଆନ୍ଦୋଳନ ସମୟଠାରୁ ଜାତି ହିସାବରେ ମୁସଲମାନମାନେ ସ୍ୱାଧୀନତା

ଆନ୍ଦୋଳନରେ ବିଶେଷ କିଛି କରିପାରିଲେ ନାହିଁ, ସେଥିପାଇଁ ଇଂରେଜମାନେ ଯେତିକି ଦାୟୀ 'ବଙ୍ଗବିଚ୍ଛେଦ' ଆନ୍ଦୋଳନର ନେତାମାନେ କମ୍ ଦାୟୀ ନୁହନ୍ତି। ଅଗ୍ନିଯୁଗର ପ୍ରାକ୍‌କାଳରେ ତିଳକଜୀଙ୍କ କଳ୍ପନାପ୍ରସୂତ 'ଶିବାଜୀଉତ୍ସବ' ଜନମାନସରୁ ହୀନମନ୍ୟତା ଦୂରକରି ଜାତୀୟ ଭାବ ସୃଷ୍ଟି କରିବାକୁ ଉଦ୍ଦିଷ୍ଟ ହୋଇଥିଲେ ମଧ୍ୟ, ତାହା ଅଲକ୍ଷ୍ୟରେ ତଥାକଥିତ ହିନ୍ଦୁତ୍ୱକୁ ପରିପୁଷ୍ଟ କଲା। ଶିବାଜୀଙ୍କୁ ହିନ୍ଦୁ ନେତା ବୋଲି ପ୍ରମାଣିତ ନକରି 'ଜାତୀୟ ନେତା'ଭାବେ ପ୍ରତିପାଦିତ କରିବାର ସୁଯୋଗ ଥିଲା, କାରଣ ମୋଗଲମାନଙ୍କ ବିରୁଦ୍ଧରେ ତାଙ୍କର ଲଢ଼େଇ ସଂକୀର୍ଣ୍ଣ ସଂପ୍ରଦାୟର ଗଣ୍ଡି ମଧ୍ୟରେ ଆବଦ୍ଧ ନଥିଲା, ତାହା ଥିଲା ଏକ ଅତ୍ୟାଚାରୀ ଧର୍ମାନ୍ଧ ସମ୍ରାଟ ବିରୁଦ୍ଧରେ ଏକ ସଶସ୍ତ୍ର ଅଭିଯାନ। ସେଥିପାଇଁ ଜନୈକ ମୁସଲମାନ ସେନାପତିଙ୍କୁ ଶିବାଜୀ ତାଙ୍କର ଅସ୍ତ୍ରାଗାର ଦାୟିତ୍ୱରେ ଅବସ୍ଥାପିତ କରିବାକୁ କୁଣ୍ଠା ବୋଧ କରିନଥିଲେ, ଅଥଚ ମୁସଲମାନଙ୍କ ସମ୍ମୁଖରେ ଶିବାଜୀଙ୍କୁ ଏକ ହିନ୍ଦୁନେତା-ଭାବରେ ଚିତ୍ରଣ କରାଗଲା। ଫଳରେ ଜାତୀୟ ଆନ୍ଦୋଳନରୁ ମୁସଲମାନମାନେ ଦୂରେଇ-ରହିଲେ। ସେଥିପାଇଁ ସଶସ୍ତ୍ର ବିପ୍ଳବରେ ବେଶୀ ସଂଖ୍ୟାରେ ମୁସଲମାନ ବିପ୍ଳବୀ ନଥିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

ପ୍ରକୃତରେ କହିବାକୁ ଗଲେ ବହିଟି ଲେଖିବାର ପରିକଳ୍ପନା ବହୁଦିନର– ୨୫/୨୬ ବର୍ଷ ତଳର। କିନ୍ତୁ ପ୍ରାୟ ଦଶବର୍ଷ ତଳେ ଏଥିପାଇଁ ବିଧିବଦ୍ଧ ଯତ୍ନ ଆରମ୍ଭକଲି। ଲେଖା ଆରମ୍ଭ ହେଲା ୧୯୭୪ରେ। ଥୋଡ଼ାଏ ବାଟ ଆସି କଲେଜ କାମରେ ଅଟକିଗଲି, ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ଆଉ ଗୋଟାଏ ଧାଡ଼ି ବି ଯୋଡ଼ିବାକୁ ବେଳ ପାଇଲି ନାହିଁ। ୧୯୭୮ ଜାନୁୟାରୀ ୩୦ରେ ଲେଖା ଶେଷହେଲା। ତା'ପରେ ଉଠିଲା ପ୍ରକାଶ କରିବାର ସମସ୍ୟା।

୧୯୭୪ରେ ପ୍ରକାଶିତ ମୋର 'ଅଗ୍ନିଯୁଗର ଆହ୍ୱାନ' ବହିର ପଛ କଭରରେ 'ସଶସ୍ତ୍ର ମୁକ୍ତି ସଂଗ୍ରାମ'ର ବିଜ୍ଞାପନଟି ବାହାରିଥିଲା। ଶ୍ରୀଯୁକ୍ତ ବିଜୁପଟ୍ଟନାୟକ ଏହା ପ୍ରକାଶ କରିବାକୁ ରାଜି ଅଛନ୍ତି ବୋଲି ମୋର ଜଣେ ବନ୍ଧୁଙ୍କ ନିକଟରେ ସମ୍ମତି ଜଣାଇଥିଲେ। ମୁଁ ଏହି ସମ୍ବାଦରେ ବିଶେଷ ଉତ୍ସାହ ବୋଧକରିନଥିଲି, କାରଣ ଏକେତ ରାଜନୀତି ଦୃଷ୍ଟିରୁ ବିଜୁବାବୁଙ୍କ ସହ ମୋର କୌଣସି ସମ୍ପର୍କ ନଥିଲା, ଦ୍ୱିତୀୟତଃ ସେତେବେଳକୁ ବହି ଲେଖା ମଧ୍ୟ ଶେଷ-ହୋଇନଥିଲା କିମ୍ବା କେବେ ଶେଷ ହେବ ତାହାର ସ୍ଥିରତା ନଥିଲା। ଇମରଜେନ୍ସିରେ ସେ ବନ୍ଦୀହେଲେ ଏବଂ ଦୁଇବର୍ଷ ପରେ ଖଲାସହେଲେ। ଅବସ୍ଥାଚକ୍ରରେ ରାଜନୀତି କ୍ଷେତ୍ରରେ ଗୋଟିଏ ମଞ୍ଚରେ ପୁଣି ଏକାଠିହେଲୁ। କଲେଜପାଇଁ ଘନିଷ୍ଠତା ବଢ଼ିଗଲା। କିନ୍ତୁ ବହି ଲେଖା ଶେଷବେଳକୁ ରାଜନୀତି ପୁଣି ଭିନ୍ନ ହୋଇସାରିଥିଲା। ତେଣୁ ତାଙ୍କଠାରୁ ସାହାଯ୍ୟ ଆଣିବାକଥା ପ୍ରାୟ ଭୁଲିଯାଇଥିଲି। କିନ୍ତୁ ସେ ତାଙ୍କର ପ୍ରତିଶ୍ରୁତି ଭୁଲିନଥିଲେ। 'କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ' ପ୍ରକାଶନର ବ୍ୟୟଭାର ବହନ କରିବେ ବୋଲି ସ୍ଥିରହେଲା। ଶ୍ରୀଯୁକ୍ତ ବିଜୁବାବୁଙ୍କର ଏହି ଅକପଟ ଓ ନିଃସ୍ୱାର୍ଥ ବଦାନ୍ୟତା ପାଇଁ ମୁଁ ଅଶେଷ କୃତଜ୍ଞ। 'ଟ୍ରଷ୍ଟ'ର ସାହାଯ୍ୟ ମିଳିନଥିଲେ

ଏହାକୁ ପ୍ରକାଶକରିବା ମୋ ପକ୍ଷରେ କଷ୍ଟକର ହୋଇଥାନ୍ତା । ଏଦିଗରେ ଶ୍ରୀଯୁକ୍ତ ବିଶ୍ୱନାଥ ପଣ୍ଡିତ, ଶ୍ରୀ ଭାଗବତ ବେହେରା ଓ ଶ୍ରୀ କୃଷ୍ଣଚନ୍ଦ୍ର ପାତ୍ରଙ୍କର ଚେଷ୍ଟା ମୁଁ ଭୁଲିପାରିବିନାହିଁ ।

ଛାପାଖର୍ଚ୍ଚର ବ୍ୟବସ୍ଥା ହେଲା ପରେ ପ୍ରେସ୍ ଖୋଜିଲି । କଟକରେ ନିଜେ ନରହିଲେ ଏତେ ବଡ଼ ବହି ଛାପିବା ସୁବିଧାଜନକ ହେବନାହିଁ । କଟକରେ ମଧ ଦୀର୍ଘଦିନ ରହିବାର ସୁବିଧାନଥିଲା । ମଫସଲରେ ବି ସେ ସୁବିଧା କାହିଁ ? ଉତ୍କଳ ଆର୍ଟ ପ୍ରେସ୍ ପ୍ରତିଷ୍ଠା ହେବା ସେହି ସମୟର ଘଟନା । ଏଇଠି ଚେଷ୍ଟା କରିବି ବୋଲି ଭାବିଲି । ପ୍ରେସ୍‌ର ମାଲିକ ଶ୍ରୀ ନରହରି ଦାଶ ଏକ କରିତ୍‌କର୍ମା ବ୍ୟକ୍ତି । କଲିକତାରେ ପ୍ରେସ୍ କାମରେ ବହୁ ଦିନର ଅଭିଜ୍ଞତା— ସେଇଠି ରହନ୍ତି । କିନ୍ତୁ ଗାଁରେ ପ୍ରେସ୍‌ଟିଏ କରିବାର ଝୁଙ୍କ । ସେହି ଝୁଙ୍କରେ ପ୍ରେସ୍‌ଟି କରିଛନ୍ତି, ଏକ ଦୁଃସାହସିକ ପ୍ରଚେଷ୍ଟା । ଟ୍ରେଡଲ୍ ମେସିନ୍‌ରେ ଏତେ ବଡ଼ ବହି କେବେ ଛାପିନାହାନ୍ତି କହିଲେ, 'ତଥାପି ଚେଷ୍ଟା କରାଯାଉ' ବୋଲି କହିଲେ । ମୁଁ ବି 'ହଁ' ମାରିଲି । କାମ ଆରମ୍ଭହେଲା ଓ ବହୁ ବାଧାବିଘ୍ନ, ବିଜୁଳି ବିଭ୍ରାଟ ଓ ଦି'ଦିଟା ନିର୍ବାଚନ ସତ୍ତ୍ୱେ ବହି ଛାପା ଶେଷହେଲା । ପ୍ରେସ୍‌ର ମୁଖ୍ୟକର୍ମୀ ଶ୍ରୀ ଜୟଗୁରୁ ପଣ୍ଡା, ହେଡ୍ କମ୍ପୋଜିଟର ଶ୍ରୀ ରମେଶ ଚନ୍ଦ୍ର ଶତପଥୀ ଓ ଶ୍ରୀ ନାରାୟଣ ଦାଶଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେ ଏହା ସମ୍ଭବ ହୋଇଛି । ମୁଁ ସେମାନଙ୍କ ନିକଟରେ ବିଶେଷ କୃତଜ୍ଞ । ଛାପାରେ ଯେଉଁ ଭୁଲ୍ ରହିଲା ତାହା ପ୍ରେସ୍‌ର ନୁହେଁ, ମୋର, କାରଣ ଲେଖା ମୋର— ପ୍ରୁଫ୍ ରିଡ଼ର୍ ମଧ ମୁଁ । ମୁଁ ଏହା ଭଲ ଭାବରେ ଜାଣେ ଯେ ବଡ଼ ପ୍ରେସ୍‌ରେ ଆହୁରି ସୁନ୍ଦର ଓ ଆହୁରି ନିର୍ଭୁଲ ଛାପା ହୋଇଥା'ନ୍ତା । କିନ୍ତୁ ତାହା ହୋଇଥିଲେ ''ସବୁ କାମ ଗାଁରେ କଲି'' ବୋଲି କହିପାରିନଥାନ୍ତି । ପ୍ରଚ୍ଛଦପଟ ଛବି କଥା ମଧ ସେୟା । ଆମ ଏଠା ଆର୍.ଏନ୍. ହାଇସ୍କୁଲର ଡ୍ରଇଁ ଶିକ୍ଷକ ଶ୍ରୀ ରବୀନ୍ଦ୍ର ନାଥ ବେହେରାଙ୍କ କଳ୍ପନାରେ ତୁଳୀ ଚଳାଇଲେ ପ୍ରତିବେଶୀ ଗ୍ରାମର ଶିଳ୍ପୀଛାତ୍ର ବାସୁଦେବ ସାମଲ । ପୋଖତ ଆଖି ସେଥିରୁ କିଛି ଦୋଷ ବାହାରକଲେବି ତାହା ମୋତେ ଭାରୀ ସୁନ୍ଦର ଦିଶିଲା ।

ବହି ଅଧାଲେଖା ହୋଇଥିଲା, ସାକ୍ଷାତ୍ ହେଲେ ବିପ୍ଳବୀ ଅମରନାଥ ଚଟ୍ଟୋପାଧ୍ୟାୟ । ମେଦିନୀପୁରରେ ମାମୁଁଘରେ ଥିବାବେଳେ ଦୀନଶେ ଗୁପ୍ତ ପ୍ରଭୃତିଙ୍କ ସାଙ୍ଗରେ କାମ କରିଥିଲେ । ବିପ୍ଳବୀ ପ୍ରଦ୍ୟୋତ ହେଉଛନ୍ତି ଅମରବାବୁଙ୍କର ସହକର୍ମୀ ବ୍ରଜ ଚକ୍ରବର୍ତ୍ତୀ, ରାମକୃଷ୍ଣ ରାୟ ତାଙ୍କର ସହପାଠୀ । ମୋର 'ଅଗ୍ନିଯୁଗ ଆହ୍ୱାନ' ବହି ଦେଖି ଭାରୀ ଖୁସି ହୋଇ ମୋତେ ଭେଟିଲେ, ଏବେ କଲ୍ୟାଣପୁରରେ ଅଛନ୍ତି । ତାଙ୍କଠାରୁ ବହୁ ସଦୁପଦେଶ ପାଇଛି ।

ଆଉ କାହାକୁ ଧନ୍ୟବାଦ ଦେବି, କାହାକୁ ଛାଡ଼ିବି ଭାବିପାରୁନି । ଯେଉଁମାନେ ସ୍ନେହବଶତଃ ସାହାଯ୍ୟକଲେ ସେମାନଙ୍କ ନାମ ଉଲ୍ଲେଖ କଲେ ସେମାନଙ୍କୁ ଛୋଟ କରିଦେବା ଭଳି କଥାଟା ହେବ । ଥରେ ବହି ଲେଖା ଶେଷକରି ପ୍ରେସ୍ କପି କରିବା ମୋ ପକ୍ଷରେ ବଡ଼ ଦୁଃସାଧ ବ୍ୟାପାର । ସେ କାମଟି କରିବାରେ ସାହାଯ୍ୟ କରିଛନ୍ତି ପୁତ୍ରସମ ବଦ୍ରିକାପ୍ରସାଦ ବିଶ୍ୱାଳ, କପିଳ ଚରଣ ମିଶ୍ର ଓ ସାନଭାଇ ବିଧାନ । ସେମାନେ ଖାଲି ନକଲ କରିନାହାନ୍ତି,

ଅକଲ ବି ଖଟାଇଛନ୍ତି । ସେମାନେ ଦୀର୍ଘାୟୁ ହୁଅନ୍ତୁ, ସଶସ୍ତ୍ର ବିପ୍ଳବୀମାନଙ୍କର ଆଦର୍ଶ ସେମାନଙ୍କୁ ଉଦ୍‌ବୁଦ୍ଧ କରୁ । ସହକର୍ମୀ ଲକ୍ଷ୍ମୀନାରାୟଣ ସାହୁ, ରମାକାନ୍ତ ବଳ ଓ କୃଷ୍ଣଭାଇ-କେତେ ସାହାଯ୍ୟ କରିଛନ୍ତି, ପରାମର୍ଶ ଦେଇଛନ୍ତି । ବହିର ଶ୍ରେୟ ସେମାନଙ୍କର ପ୍ରାପ୍ୟ । ପୂଜ୍ୟାସ୍ପଦ ଶିକ୍ଷକ ଡକ୍ଟର କୁଞ୍ଜବିହାରୀ ଦାଶଙ୍କର ଉତ୍ସାହ ଓ ପ୍ରେରଣା ଏହି ଦୁଃସାହସିକ ପ୍ରଚେଷ୍ଟା ସମ୍ପୂର୍ଣ୍ଣ କରିବାରେ ମୋତେ ବିଶେଷ ସାହାଯ୍ୟ କରିଛି ।

'ଅଗ୍ନିଯୁଗର ଆହ୍ୱାନ' ଲୋକପ୍ରିୟ ହୋଇଛି । ବିଭିନ୍ନ ପତ୍ରପତ୍ରିକା ଏହାର ଉଚ୍ଛ୍ୱସିତ ପ୍ରଶଂସା କରିଅଛନ୍ତି । 'ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ'କୁ ସାଧାରଣ ପାଠକ ଓ ଇତିହାସ ଅନୁସନ୍ଧିତ୍ସୁମାନେ କେତେଦୂର ଗ୍ରହଣକରିବେ ତାହା ଦେଖିବାର କଥା । ପ୍ରଥମରୁ କହିଛି ମୁଁ ଐତିହାସିକ ନୁହେଁ, ଜଣେ ସାଧାରଣ ରାଜନୈତିକ କର୍ମୀମାତ୍ର । ସଶସ୍ତ୍ର ବିପ୍ଳବ ଓ ବିପ୍ଳବୀମାନଙ୍କ ସମ୍ପର୍କରେ ଯାହା ପଢ଼ିଛି ଓ ଶୁଣିଛି ତାକୁ ମୋର ସାମାନ୍ୟ ଭାଷାସମ୍ପଦ ଦେଇ ପ୍ରକାଶ କରିବାକୁ ଉଦ୍ୟମ କରିଛି । ଏହାକୁ ସୁଖପାଠ୍ୟ କରିବାପାଇଁ ଏହାର ଶୈଳୀ କେତେକ ସ୍ଥାନରେ ସାମାନ୍ୟ ଔପନ୍ୟାସିକ ହୋଇଯାଇଥିଲେ ମଧ୍ୟ ଏହା ଉପନ୍ୟାସ ଭଳି କାଳ୍ପନିକ ନୁହେଁ, ସମ୍ପୂର୍ଣ୍ଣ ବାସ୍ତବ ତଥ୍ୟ ଓ ଘଟଣା ଉପରେ ଆଧାରିତ ।

ଏହାପରେ ଆଣ୍ଡାମାନରେ ବିପ୍ଳବୀ ବନ୍ଦୀଜୀବନ ସମ୍ପର୍କରେ ''କଳାପାଣିରେ ଅଗ୍ନିଶିଖା'' ଓ ସଶସ୍ତ୍ର ନାରୀ ବିପ୍ଳବୀମାନଙ୍କର ଜୀବନାଲେଖ୍ୟ ''ରକ୍ତସ୍ନାତା'' ପ୍ରକାଶ କରିବାର ବାସନା ରହିଛି ।

ଅଗ୍ନିଯୁଗ ଆଶ୍ରମ
ସେବାସାହି (ରାଜକନିକା)
ତା ୨୧ । ୧୨ । ୮୦

**ପ୍ରଫୁଲ୍ଲ ଦାସ**

# ଦ୍ୱିତୀୟ ସଂସ୍କରଣ ସମ୍ପର୍କରେ

''ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ''ର ଦ୍ୱିତୀୟ ସଂସ୍କରଣ ଏହାର ଅଗଣିତ ପାଠକ ଓ ଶୁଭେଚ୍ଛୁମାନଙ୍କ ପାଖରେ ପହଞ୍ଚିଥିବାରୁ ଲେଖକ ବିଶେଷ ଆନନ୍ଦ ଅନୁଭବ କରୁଅଛି । ଏହାର ପୁନଃ ପ୍ରକାଶନ 'ଗ୍ରନ୍ଥମନ୍ଦିର'ର ଆନ୍ତରିକ ପ୍ରଚେଷ୍ଟା ଫଳରେ ସମ୍ଭବ ହୋଇଥିବାରୁ ଶ୍ରୀଯୁକ୍ତ ଅଭିରାମ ମହାପାତ୍ର ଓ ସ୍ନେହାସ୍ପଦ ମନୋଜଙ୍କ ନିକଟରେ ଲେଖକ ଚିରକୃତଜ୍ଞ । ଏହାର ପ୍ରଥମ ପ୍ରକାଶନର ସମସ୍ତ ବ୍ୟୟଭାର ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ 'କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ' ପକ୍ଷରୁ ସ୍ୱେଚ୍ଛାରେ ବହନକରିନଥିଲେ, ପ୍ରାୟ ହଜାରେ ପୃଷ୍ଠାର ଏହି ଗ୍ରନ୍ଥଟି ଏପର୍ଯ୍ୟନ୍ତ ହୁଏତ ଅପ୍ରକାଶିତ ହୋଇ ରହିଥାନ୍ତା । ସେହିପରି ଡକ୍ଟର ହରେକୃଷ୍ଣ ମହତାବ ଏହି ଗ୍ରନ୍ଥ ରଚନାରେ କେବଳ ପରାମର୍ଶ ଓ ତଥ୍ୟ ଯୋଗାଇନଥିଲେ, ଏଥିରେ ଏକ ଯଥୋପଯୁକ୍ତ ଭୂମିକା ମଧ୍ୟ ଲେଖିଥିଲେ । କେବଳ ସେତିକି ନୁହେଁ, ଏହି ବହି ପ୍ରକାଶିତ ହେବା ପୂର୍ବରୁ ଏହାର ଏକ ବିସ୍ଫୋରକ ଅଧ୍ୟାୟ 'ବୋମାତତ୍ତ୍ୱ'କୁ 'ଝଙ୍କାର' ମାସିକ ପତ୍ରିକାରେ ପ୍ରକାଶକରି ସମସ୍ତଙ୍କୁ ବିସ୍ମିତ କରିଦେଇଥିଲେ, ଶ୍ରୀରାମଚନ୍ଦ୍ର ଭବନରେ ସ୍ୱୟଂ ଏହି ଗ୍ରନ୍ଥକୁ ଉନ୍ମୋଚନ କରିଥିଲେ ଓ 'ଝଙ୍କାର'ର 'ଗ୍ରନ୍ଥବିଚାର' ସ୍ତମ୍ଭରେ ଏହି ପୁସ୍ତକର ଉଚ୍ଛ୍ୱସିତ ପ୍ରଶଂସା ମଧ୍ୟ କରିଥିଲେ । ସେମାନେ ଆଜି ସ୍ୱର୍ଗବାସୀ । ଲେଖକର ଅନ୍ୟାନ୍ୟ ପ୍ରୋତ୍ସାହକ ଓ ପୃଷ୍ଠପୋଷକ, ଯଥା– ଲୋକରତ୍ନ କୁଞ୍ଜବିହାରୀ ଦାଶ, ଚିରସଂଗ୍ରାମୀ ବିଶ୍ୱନାଥ ପଣ୍ଡିତ, ଭାଗବତ ବେହେରା, ରମାକାନ୍ତ ବଳ, କୃଷ୍ଣ ପରିଡ଼ା, ମା' କୃଷ୍ଣପ୍ରିୟା, ଗୁରୁଜୀ ଅମରନାଥ ଚଟ୍ଟୋପାଧ୍ୟାୟ, ବିପ୍ଳବୀ ଗଣେଶ ଘୋଷ, ପଦ୍ମଭୂଷଣ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଜଷ୍ଟିସ୍ ହରିହର ମହାପାତ୍ର, ହାସ୍ୟରସିକ ଫତୁରାନନ୍ଦ ପ୍ରଭୃତିଙ୍କ ମଧ୍ୟରୁ କେହି ଜଣେ ହେଲେ ଆଜି ଇହଜଗତରେ ନାହାଁନ୍ତି । ସେମାନେ ସମସ୍ତେ ଲେଖକର ପ୍ରଣମ୍ୟ ଓ ପ୍ରାତଃସ୍ମରଣୀୟ ।

ପ୍ରଥମ ସଂସ୍କରଣରେ ଭୁଲବଶତଃ ଛାଡ଼ିଯାଇଥିବା ଓଡ଼ିଶାରେ କେତେକ ବିପ୍ଳବର ସଂକ୍ଷିପ୍ତ ବିବରଣୀ ଦ୍ୱିତୀୟ ସଂସ୍କରଣରେ ସ୍ଥାନିତ ହୋଇଅଛି । ଏତଦ୍‌ବ୍ୟତୀତ ଏଥିରେ ଅନ୍ୟ କୌଣସି ବିଷୟଗତ ପରିବର୍ତ୍ତନ କରାଯାଇନାହିଁ । ଅବଶ୍ୟ ଏହାର କଳେବରକୁ ଯଥାସମ୍ଭବ ହ୍ରାସ କରିବା ପାଇଁ ଓଡ଼ିଆ ଉଦ୍ଧୃତିଗୁଡ଼ିକର ମୂଳ ଇଂରାଜୀ ଦିଆଯାଇନାହିଁ ଏବଂ ଫଟୋ ମଧ୍ୟ ଦିଆଯାଇନାହିଁ । ଏହି ଅନିଚ୍ଛାକୃତ ତ୍ରୁଟି ପାଇଁ ଲେଖକ କ୍ଷମାମାଗୁଛି ।

ପ୍ରଥମ ସଂସ୍କରଣରେ ହୋଇଥବା ମୁଦ୍ରଣଜନିତ ତ୍ରୁଟି ଏଥିରେ ନରହିବାପାଇଁ ଯତ୍‌ପରୋନାସ୍ତି ଉଦ୍ୟମ କରାଯାଇଅଛି । ଏହା ପାଠକମାନଙ୍କଠାରୁ ପୂର୍ବ ଭଳି ଆଦର ଲାଭ କରିବ ବୋଲି ଆଶା କରୁଛି ।

ଡିସେମ୍ବର ୯ ତାରିଖ
୨୦୦୩ ମସିହା

**ପ୍ରଫୁଲ୍ଲ ଦାସ**

# ବିଷୟ ସୂଚୀ

## [ପ୍ରଥମ ଭାଗ]

### ପାରମ୍ପରିକ ବିଦ୍ରୋହ ପର୍ଯ୍ୟାୟ

## [ଦ୍ୱିତୀୟ ଭାଗ]

## ବ୍ୟକ୍ତି ନିଧନ ପର୍ଯ୍ୟାୟ ବା ଉଦ୍‌ଯୋଗ ପର୍ବ

## [ତୃତୀୟ ଭାଗ]

### ଖଣ୍ଡବିପ୍ଳବ ପର୍ଯ୍ୟାୟ – ୧୯୩୦-୩୪

## [ଚତୁର୍ଥ ଭାଗ]

### ଗଣବିପ୍ଳବ



—

# ଅଧ୍ୟାୟ - ଏକ

## ସଶସ୍ତ୍ର ବିପ୍ଳବର ପରମ୍ପରା

ପୁରାଣ ଯୁଗରୁ ଭାରତର ଇତିହାସ ସଶସ୍ତ୍ର ଯୁଦ୍ଧର ପରମ୍ପରାରେ ପୁଷ୍ଟ ହୋଇ ଆସିଅଛି ଏବଂ ଯଦିଓ ଆମ ସାହିତ୍ୟରେ 'ବାକ୍‌ଯୁଦ୍ଧ', 'ସ୍ନାୟୁଯୁଦ୍ଧ' ବା 'ଶୀତଳ ଯୁଦ୍ଧ' ଭଳି ଅସଂଖ୍ୟ ଶବ୍ଦ ପ୍ରବେଶ କରିଅଛି; ତଥାପି ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ପ୍ରତିପକ୍ଷ ଉପରେ ଆକ୍ରମଣ କରି ତାହାକୁ ଆହତ ବା ନିହତ କରିବା ସବୁ ଦେଶରେ, ସବୁ ଯୁଗରେ ଯୁଦ୍ଧର ସାଧାରଣ ସଂଜ୍ଞା ଭାବରେ ଗ୍ରହଣ କରାଯାଇଅଛି । ରାମାୟଣ, ମହାଭାରତ ଭଳି ପୌରାଣିକ ଇତିହାସ ଭାରତୀୟ ଜନମାନସ ଉପରେ ଯେଉଁ ଅସାମାନ୍ୟ ପ୍ରଭାବ ବିସ୍ତାର କରିଅଛି, ଏଥିରେ ଥିବା ପିତୃଭକ୍ତି ବା ଭ୍ରାତୃଭକ୍ତି ତାହାର ଏକମାତ୍ର କାରଣ ନୁହେଁ, ବରଂ ତାହା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ କାରଣ ହେଉଛି – ଏଥିରେ ବର୍ଣ୍ଣିତ ଆସାଧାରଣ ଶୌର୍ଯ୍ୟ ଏବଂ ଅବିଶ୍ୱାସ୍ୟ ବୀରତ୍ୱ । ଭୀମ, ଦୁଃଶାସନ, ଅର୍ଜ୍ଜୁନ ବା ଲକ୍ଷ୍ମଣ, ହନୁମାନ ବା ଇନ୍ଦ୍ରଜିତ ପ୍ରଭୃତିଙ୍କ ବୀରତ୍ୱ ଭାରତୀୟ ମାନସ ରାଜ୍ୟକୁ ଏଭଳି ପ୍ରଭାବିତ କରିଅଛି ଯେ ବୀରତ୍ୱର ପରାକାଷ୍ଠା ସଂପର୍କରେ ଆଲୋଚନା କଲାବେଳେ ଆମ୍ଭେମାନେ କେବଳ ସେହି ପୌରାଣିକ ବୀରମାନଙ୍କ ଉଦାହରଣ ଦେଇଥାଉଁ । ଶ୍ରୀମଦ୍‌ଭଗବତ୍ ଗୀତାରୁ ଗାଂଧିଜୀଙ୍କ ଭଳି ସତ୍ୟାନୁସଂଧାନୀମାନେ ଯେମିତି ଅହିଂସା ସପକ୍ଷରେ ନାନା ଅକାଟ୍ୟ ଯୁକ୍ତି ଉପସ୍ଥାପିତ କରୁଅଛନ୍ତି, ତିଳକଜୀ ଓ ଅରବିନ୍ଦଙ୍କ ଭଳି ସ୍ୱାଧୀନତା ସଂଗ୍ରାମର ଯୋଦ୍ଧାମାନେ ମଧ୍ୟ ସଶସ୍ତ୍ର ସଂଗ୍ରାମ ପାଇଁ ସେମିତି ସେହି ଗୀତାରୁ ଯଥେଷ୍ଟ ପ୍ରେରଣା ପାଇଅଛନ୍ତି ।

ତିଳକଙ୍କ 'ଗୀତାରହସ୍ୟ'ରେ ଓ ଶ୍ରୀ ଅରବିନ୍ଦଙ୍କ 'ଗୀତାନିବଂଧମାଳା' ରେ ଭଗବତ୍ ଗୀତାର ଯେଉଁ ବ୍ୟାଖ୍ୟା କରାଯାଇଛି, ତାହା ସଶସ୍ତ୍ର ଯୁଦ୍ଧକୁହିଁ ସମର୍ଥନ କରୁଅଛି । ଶଙ୍କରଙ୍କର ଜ୍ଞାନବାଦ ଓ ରାମାନୁଜଙ୍କର ଭକ୍ତିବାଦ ପର୍ଯ୍ୟାପ୍ତ ନୁହେଁ ବୋଲି ଗୀତାରହସ୍ୟରେ ଦୃଢ଼ଭାବରେ ପ୍ରତିପାଦିତ କରାଯାଇଛି । ତିଳକଙ୍କ ମତରେ, 'ଜ୍ଞାନ ଓ ଭକ୍ତି' ଅତିରିକ୍ତ ଗୀତାର ବାର୍ତ୍ତା ଆଉକିଛି ଅଧିକ ଏବଂ ଏହା ହେଉଛି, 'ନିଷ୍କାମ କର୍ମଯୋଗ', ଅର୍ଥାତ୍ ଗୀତାର ବାର୍ତ୍ତା ହେଉଛି – 'ଜ୍ଞାନ-ଭକ୍ତି-ସମନ୍ୱିତ କର୍ମଯୋଗ' ବା ନିଷ୍କାମ କର୍ମଯୋଗକୁ ବାଦ୍ ଦେଇ ମନୁଷ୍ୟ କେବଳ ଭକ୍ତି ବା ଜ୍ଞାନଦ୍ୱାରା ପୂର୍ଣ୍ଣତା

ପାଇପାରିବ ନାହିଁ ବୋଲି ତିଳକଙ୍କର ମତ । ତାଙ୍କ ମତରେ ଏହି ଦୃଷ୍ଟିରୁହିଁ କୌରବମାନଙ୍କ ବିରୋଧରେ ଅସ୍ତ୍ରୋତ୍ତୋଳନ କରିବାକୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନିର୍ଦ୍ଦେଶ ଦେଇଅଛନ୍ତି । "Karmayoga fused with spiritual knowledge and devotion is the true purpose of the Gita."

ଶ୍ରୀ ଅରବିନ୍ଦଙ୍କ ଗୀତା ଭାଷ୍ୟ ଆହୁରି ସ୍ପଷ୍ଟ । ଶତ୍ରୁ ଉପରେ ପ୍ରତ୍ୟକ୍ଷ ଆକ୍ରମଣକୁ ଯେଉଁମାନେ ପାପ ବୋଲି ମନେକରନ୍ତି ଅରବିନ୍ଦ ସେମାନଙ୍କ ସହ ଏକମତ ନୁହଁନ୍ତି । "The teaching of the Bhagabat Gita is an adequate reply to those who avoid battle as a sin and aggression as lowering of morality." ଯେଉଁମାନେ ଯୁଦ୍ଧକୁ ପାପ କିମ୍ବା ଆକ୍ରମଣକୁ ଏକ ଅଧର୍ମ କାର୍ଯ୍ୟବୋଲି ବିଚାର କରନ୍ତି ଭଗବତ୍‌ଗୀତା ସେମାନଙ୍କୁ ଯଥାର୍ଥ ଜବାବ ଦେଇଛି । ଶ୍ରୀ ଅରବିନ୍ଦ ପୁଣି କହିଛନ୍ତି, ‘‘ରାଜନୀତି କେବେହେଲେ ବ୍ରାହ୍ମଣ ବା ଶୂଦ୍ର ବୃତ୍ତିର ଧ୍ୟେୟ ହୋଇପାରେନା । ଏହା କ୍ଷାତ୍ରଧର୍ମର ଆଦର୍ଶ । ସୁତରାଂ କ୍ଷାତ୍ରଧର୍ମର ଆଦର୍ଶ ଆମର ରାଜନୈତିକ କାର୍ଯ୍ୟକଳାପକୁ ପରିଚାଳିତ କରିବା ଉଚିତ । ରାଜନୀତିରେ ବ୍ରାହ୍ମଣ୍ୟ ଧର୍ମୋପଯୋଗୀ କୃଚ୍ଛ୍ରସାଧନା ବର୍ଣ୍ଣସଙ୍କରକୁ ଉତ୍ସାହିତ କରେ’’ । ଯୁଦ୍ଧବିମୁଖ ବୀର ଅର୍ଜୁନଙ୍କୁ ଯୁଦ୍ଧରେ ପ୍ରବୃତ୍ତ କରିବାହିଁ ଗୀତାର ଉଦ୍ଦେଶ୍ୟ । ଭୀରୁତା, କ୍ଳୈବ୍ୟ ଓ ମୋହ ତ୍ୟାଗକରି ଅନ୍ୟାୟ ବିରୋଧରେ ସଂଗ୍ରାମ କରିବା ପାଇଁ ମାନବ ସମାଜକୁ ପ୍ରେରଣା ଦେବା ଉଦ୍ଦେଶ୍ୟରେ ହିଁ ବ୍ୟାସଦେବ ଗୀତା ଶାସ୍ତ୍ରର ପରିକଳ୍ପନା କରିଅଛନ୍ତି । ସେଥିପାଇଁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଅଛନ୍ତି.....

‘‘ହତୋ ବା ପ୍ରାପ୍‌ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷସେ ମହୀମ୍
ତସ୍ମାଦୁତ୍ତିଷ୍ଠ କୌନ୍ତେୟ, ଯୁଦ୍ଧାୟ କୃତନିଶ୍ଚୟ ।୩୭
ସୁଖଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ,
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପମ ବାପ୍‌ସ୍ୟସି ।୩୮

ଶ୍ରୀମଦ୍‌ଭଗବତ୍‌ଗୀତା—୨ୟ ଅଧ୍ୟାୟ’’

ମରିଲେ ସ୍ୱର୍ଗଲାଭ କରିବ ବା ଜୟ କଲେ ରାଜ୍ୟ ଭୋଗ କରିବ । ହେ କୌନ୍ତେୟ, ଯୁଦ୍ଧ ପାଇଁ କୃତସଂକଳ୍ପ ହୁଅ । ସୁଖ ଦୁଃଖକୁ ସମାନ ଜ୍ଞାନକରି, ଲାଭାଲାଭ ଓ ଜୟ-ପରାଜୟ ପ୍ରତି ନିର୍ବିକାର ହୋଇ ଯୁଦ୍ଧରେ ଉଦ୍‌ଯୋଗୀ ହୁଅ । ତାହା ହେଲେ ତୁମକୁ ପାପ ଲାଗିବ ନାହିଁ !

ଏହିପରି ଗୀତୋକ୍ତ ଅସଂଖ୍ୟ ଉପଦେଶ ଶେଷରେ ମୋହପୀଡ଼ିତ ଅର୍ଜୁନଙ୍କୁ ଏକ ରକ୍ତକ୍ଷୟୀ ଯୁଦ୍ଧରେ ପ୍ରବୃତ୍ତ କରିଅଛି । ସ୍ୱୟଂ ଭଗବାନ ବୋଲି ବିଶ୍ୱାସ କରାଯାଉଥିବା ଶ୍ରୀକୃଷ୍ଣଙ୍କର ସାନୁନୟ ଅନୁରୋଧ, ପ୍ରବର୍ତ୍ତନା ଓ ଦୌତ୍ୟ ମଧ୍ୟ ବଳଦର୍ପୀ କୌରବ ରାଜାଙ୍କ ଉପରେ କୌଣସି ପ୍ରଭାବ ବିସ୍ତାର କରିପାରି ନାହିଁ । ପାଣ୍ଡବ ପାଞ୍ଚଭାଇଙ୍କ

ପାଇଁ ମାତ୍ର ପାଞ୍ଚଖଣ୍ଡି ଗ୍ରାମଦାନ ଭଳି ଶ୍ରୀକୃଷ୍ଣଙ୍କର ଏକ ସର୍ବନିମ୍ନ ନିରୀହ ପ୍ରସ୍ତାବ ମଧ୍ୟ ଅବଜ୍ଞାସହକାରେ ପ୍ରତ୍ୟାଖ୍ୟାତ ହୋଇଅଛି । ଫଳରେ ଅନିବାର୍ଯ୍ୟ ହୋଇଉଠିଛି ଏକ ରକ୍ତକ୍ଷୟୀ ସଂଗ୍ରାମ ଏବଂ ଶେଷରେ ବିପୁଳ ଅସ୍ତ୍ରସମ୍ଭାର ଓ ଦୁର୍ଦ୍ଧର୍ଷ ସୈନ୍ୟ ସେନାପତିଙ୍କ ବଳରେ ବଳୀୟାନ୍ ଦୁର୍ଯୋଧନ ପରାଭୂତ ହୋଇଅଛି । ସବୁ ଦେଶରେ, ସବୁ ଯୁଗରେ ଏହାହିଁ ହୋଇଅଛି । କାରଣ ଏହା ଏକ ଐତିହାସିକ ଓ ବୈଜ୍ଞାନିକ ସତ୍ୟ । ଅସ୍ତ୍ରଶସ୍ତ୍ର ବଳ ଉପରେ ପ୍ରତିଷ୍ଠିତ ସ୍ୱେଚ୍ଛାଚାରୀ ଶାସକ ଅସ୍ତ୍ରଶସ୍ତ୍ରର ଭାଷା ଛଡ଼ା ଅନ୍ୟ କୈଣସି ଭାଷା ଯେ ବୁଝିବାକୁ ଅକ୍ଷମ, ଏହା ପୁରାଣ ଯୁଗରୁ ଇତିହାସ ଯୁଗ ପର୍ଯ୍ୟନ୍ତ ବାରମ୍ବାର ପରୀକ୍ଷିତ ଓ ପ୍ରମାଣିତ ହୋଇଅଛି । ଫଳରେ ମନୁଷ୍ୟ ହିଂସାକୁ ବେଳେ ବେଳେ ଘୃଣା କରୁଥିଲେ ସୁଦ୍ଧା ଏହାକୁ ଆଜିଯାଏ ଏକ ସର୍ବପ୍ରଧାନ ଅସ୍ତ୍ରଭାବରେ ଗ୍ରହଣକରି ଆସିଅଛି । ବିଶେଷତଃ ଏକ ଶକ୍ତିଦର୍ପୀ ଶାସକ ବା ଏକ ସ୍ୱେଚ୍ଛାଚାରୀ ରାଜା ବିରୋଧରେ ଲଢ଼ିବାକୁ ଗଲାବେଳେ କିମ୍ବା ଏକ ସାମାଜିକ ଅନ୍ୟାୟର ପ୍ରତିବାଦ କରିବାକୁ ଯିବାବେଳେ ଶାଣିତ ଖଡ୍‌ଗ ଉତ୍ତୋଳନ କରିବା ବ୍ୟତୀତ ଅତ୍ୟାଚାରିତ ମଣିଷ ସମାଜକୁ ଅନ୍ୟ କୌଣସି ପନ୍ଥା ଦିଶେ ନାହିଁ ।

ଚାର୍ଲସ୍ ମାକେ (Charles Mackay) ଯଥାର୍ଥରେ କହିଛନ୍ତି —

"While oppression lifts its head;
Or a tyrant would be a lord,
Though we may thank him for the plough.
Will not forget the sword."

(ଆଦିମ ଲୌହ କାରିଗର 'ଟିଉବାଲ୍ କେନ୍' ଯେତେବେଳେ ଦେଖିଲେ ଯେ ତାଙ୍କ ସୃଷ୍ଟ ତରବାରି ସମାଜର ଉପକାର କରିବା ପରିବର୍ତ୍ତେ ସମାଜକୁ ଭ୍ରାତୃ ରକ୍ତରେ ପ୍ଲାବିତ କରିଦେଲା, ସେତେବେଳେ ତାଙ୍କ ମନରେ ଆସିଲା ଦାରୁଣ ଦୁଃଖ, ଅନୁତାପ ଓ ଅନୁଶୋଚନା । ତରବାରି ତିଆରି ବନ୍ଦ କରିଦେଇ ସେ ଲଙ୍ଗଳର ଫାଳ ପ୍ରସ୍ତୁତ କଲେ ଏବଂ ସେଥିରେ ତାଙ୍କୁ ମିଳିଲା ଅସୁମାରି ଧନସଂପତ୍ତି ଓ ଯଶ ଗୌରବ । କାରଣ ଏହି ଫାଳରେ ଭୂମିକର୍ଷଣ କରି ମଣିଷ ମାଟିକୁ ସୁନା କରିଦେଇ ପାରିଲା ଏବଂ ତା'ର ବାଲ୍ୟସାଥୀ ତରବାରି ନିର୍ଜୀବ ଗୃହକାନ୍ଥର ଶୋଭାବର୍ଦ୍ଧନ କଲା । କିନ୍ତୁ ସେ ଚିରଦିନ ପାଇଁ ତା'ର ପ୍ରିୟ ତରବାରିକୁ ଭୁଲିଯାଇ ନ ଥିଲା । ଯେତେବେଳେ ଅତ୍ୟାଚାରୀ ଶାସକର ଲୌହ ମୁଦ୍‌ଗର ସମାଜକୁ ଥରହର କରେ, ସ୍ୱେଚ୍ଛାଚାରୀ ଶାସକ ଯେତେବେଳେ ଶାନ୍ତିପ୍ରିୟ ମଣିଷକୁ ତ୍ରସ୍ତ କରେ, ସେତେବେଳେ ମଳିନ କଳଙ୍କିଲଗା ତରବାରି ନିଷ୍ପ୍ରାଣ ଗୃହକାନ୍ଥରୁ ଅବତରଣ କରି ବିଦ୍ରୋହୀର ବଳିଷ୍ଠ ବଜ୍ରମୁଷ୍ଟିକୁ କରେ ଅଳଂକୃତ ଏବଂ ଅତ୍ୟାଚାରୀକୁ ସ୍ତବ୍ଧ କଲାପରେ ଯାଇ ବିଦ୍ରୋହୀର ତରବାରି ଶାନ୍ତ ହୁଏ ।)

ପରମାର୍ଥ ବା ଆଧ୍ୟାତ୍ମିକ ଜୀବନର ବିକାଶ ପଥରେ 'ହିଂସା' ଏକ ପ୍ରତିବନ୍ଧକ ହୋଇପାରେ, କିନ୍ତୁ ସାମୂହିକ 'ହିଂସା' ବିରୋଧରେ ହିଂସାତ୍ମକ ଅସ୍ତ୍ର ବ୍ୟତୀତ ଅନ୍ୟ

କୌଣସି ଅସ୍ତ୍ରର ପ୍ରୟୋଗ ସାଧାରଣ ମନୁଷ୍ୟପକ୍ଷରେ ଏକ ଅସମ୍ଭବ ବ୍ୟାପାର । ପାଶବିକ ସାମରିକ ଶକ୍ତି ଉପରେ ପ୍ରତିଷ୍ଠିତ ଜଣେ ଶାସକ ବା ଶାସକଗୋଷ୍ଠୀ ବିରୋଧରେ ଅହିଂସ ସଂଗ୍ରାମ କୁତ୍ରାପି ଜୟଯୁକ୍ତ ହୋଇନାହିଁ । ସେ କ୍ଷେତ୍ରରେ ସହିଂସ ପ୍ରତିରୋଧହିଁ ଏକମାତ୍ର ପନ୍ଥା । ରୋମ୍‌ସମ୍ରାଟ ଅତ୍ୟାଚାରୀ ନିରୋର ପୈଶାଚିକ ଅତ୍ୟାଚାର ବିରୋଧରେ 'ଅହିଂସା ପ୍ରତିରୋଧ' କରୁଥିବା ମୁଷ୍ଟିମେୟ ପ୍ରାର୍ଥନାରତ ଖ୍ରୀଷ୍ଟିଆନମାନଙ୍କୁ ଧରିନେଇ ନିରୋର ସୈନିକମାନେ କ୍ଷୁଧିତ ସିଂହ ବା ବ୍ୟାଘ୍ର ମୁଖରେ ନିକ୍ଷେପ କରିବା କିମ୍ବା ସେମାନଙ୍କୁ ମସାଲକରି ଜଳାଇବାର ଦୃଶ୍ୟ ଯେତେ ଲୋମହର୍ଷଣକାରୀ ହେଲେସୁଦ୍ଧା, ଏକ ବଳଦର୍ପୀ ଶାସକ ପକ୍ଷରେ ଏହା ଏକ ନିରୀହ ନିରୁପଦ୍ରବ ବିଳାସ ମାତ୍ର । ହିଟ୍‌ଲର, ସ୍ମଟ୍‌ସ, ଡାୟାର, ଚର୍ଚ୍ଚିଲ, ଆୟୁବ କିମ୍ବା ୟାହିଆ ଖାଁ ପ୍ରଭୃତି ଶାସକମାନେ ସାମରିକ ବଳରେ ଏଭଳି ବଳୀୟାନ୍ ଓ ମତ୍ତ ଯେ ମାନବ ଜୀବନ ବିଶେଷତଃ ତାହା ଯଦି ଶାସିତ ଶ୍ରେଣୀର କେହି ହୋଇଥାଏ ତାହା ପ୍ରତି ସାମାନ୍ୟ ଦୟା ପ୍ରଦର୍ଶନ କରିବା ମଧ୍ୟ ସମ୍ଭବ ନୁହେଁ । ସେମାନଙ୍କର ଅହଂକୃତ ଶାସନ ବିରୋଧରେ କ୍ଷୀଣତମ ଗୁଂଜନ ଶୁଣିବା ମଧ୍ୟ ସେମାନଙ୍କ ପକ୍ଷରେ ଅସହ୍ୟ ଏବଂ ସେହି ବିରୋଧକୁ ସ୍ତବ୍ଧ କରିଦେବାକୁ ଅସ୍ତ୍ରଭଣ୍ଡାରର ଶ୍ରେଷ୍ଠତମ ମାରଣାସ୍ତ୍ର, ଦୁଷ୍ଟବୁଦ୍ଧିପ୍ରସୂତ ସର୍ବବିଧ ଉପାୟ ଓ ଶୟତାନି କୌଶଳ ପ୍ରୟୋଗ କରିବାବେଳେ ଏବଂ ପ୍ରତିବାଦୀର କଣ୍ଠରୋଧ କରିବାବେଳେ ମାନବିକ ବିବେକର ସାମାନ୍ୟ ଦଂଶନ ମଧ୍ୟ ସେମାନେ ଅନୁଭବ କରନ୍ତି ନାହିଁ । ଆଇକ୍‌ମାନ୍‌ର ଗ୍ୟାସ୍ ଚେମ୍ବରରେ ପଚିଶ ଲକ୍ଷ ଇହୁଦୀଙ୍କର ଶ୍ୱାସରୋଧଜନିତ ମୃତ୍ୟୁ, ସ୍ମଟ୍‌ସର କଳାଆଇନ୍ ବିରୋଧରେ ଆନ୍ଦୋଳନ କରୁଥିବା ଅହିଂସ ସତ୍ୟାଗ୍ରହୀମାନଙ୍କ ଉପରେ ଗୁଳିଚାଳନା, ଚର୍ଚ୍ଚିଲ୍‌ର ନିର୍ଦ୍ଦେଶରେ "ଭାରତଛାଡ଼" ବିପ୍ଳବୀଙ୍କ ଉପରେ ଅତ୍ୟାଚାର କିମ୍ବା ୟାହିଆ ଖାଁର ଅଙ୍ଗୁଳି ନିର୍ଦ୍ଦେଶରେ ତିରିଶ ଲକ୍ଷ ବାଂଲାଦେଶବାସୀଙ୍କର ଜୀବନ୍ତସମାଧି ପ୍ରଭୃତି ଘଟଣାରେ ପ୍ରକୃତି ଓ ପରିମାଣରେ ସାମାନ୍ୟ ତାରତମ୍ୟ ଥିଲେ ସୁଦ୍ଧା ଏହାଦ୍ୱାରା ପ୍ରତ୍ୟେକ କ୍ଷେତ୍ରରେ ଶାସକର ଔଦ୍ଧତ୍ୟ ଓ ମଣିଷଜୀବନ ପ୍ରତି ତାହାର ଚରମ ଅବଜ୍ଞାହିଁ ପ୍ରକଟିତ ହୋଇଅଛି ଏବଂ ଏହି ଔଦ୍ଧତ୍ୟ ଓ ଅବଜ୍ଞା କସ୍ମିନକାଳେ ସେମାନଙ୍କ ପ୍ରତି ପ୍ରେମ ବା ଅହିଂସା ପ୍ରଦର୍ଶନରେ ଦୂର ହୋଇପାରେନା । ଅତ୍ୟାଚାରୀ ଯେତେବେଳେ ଦେଖେ ଯେ ତାହା ଅପେକ୍ଷା ଅଧିକ ବଳଶାଳୀ ବା ଶକ୍ତିଧର ବ୍ୟକ୍ତି ବା ଗୋଷ୍ଠୀଦ୍ୱାରା ସେ ପରାଭୂତ ହେବାକୁ ଯାଉଛି, କେବଳ ସେତିକିବେଳେ ଯାଇ ତା'ର ଗର୍ବୋନ୍ନତ ମସ୍ତକ ଅବନତ ହୋଇପାରେ; ତା ପୂର୍ବରୁ ନୁହେଁ । ହିଟ୍‌ଲର୍ କେଉଁ କଳ୍ପନା କରି ନ ଥିଲା ଯେ 'ଧଳାଭାଲୁ' ସୋଭିଏତ ରୁଷିଆର ସ୍ୱାଧୀନତାପିପାସୁ ଓ ମୃତ୍ୟୁପାଗଳ ଲାଲ ଫୌଜର ଅସ୍ତ୍ରସମ୍ଭାର ଓ ଯୁଦ୍ଧକୌଶଳ ନାଜୀବାହିନୀର ତଥାକଥିତ ତୋଫାନୀ ସୈନ୍ୟ ଅପେକ୍ଷା ବହୁଗୁଣରେ ଦୃଢ଼ ଓ ଉତ୍କୃଷ୍ଟ ବୋଲି । ସୁତରାଂ ଲାଲଫୌଜର ମରଣ ମାଡ଼ଖାଇ ତୋଫାନୀ ସୈନ୍ୟ

ଯେତେବେଳେ ନିଜର ସାମରିକ ନିକୃଷ୍ଟତାକୁ ଉପଲବ୍ଧି କଲା, ସେତେବେଳେ ହିଟ୍‌ଲର ତା'ର ଅଣ୍ଡରଗ୍ରାଉଣ୍ଡ ବଂକରରେ ଆତ୍ମହତ୍ୟା କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା ।

ଗତକାଲି ବାଂଲାଦେଶରେ ଯାହା ଘଟିଗଲା ତାହାକୁ ସୂକ୍ଷ୍ମରୂପେ ବିଶ୍ଳେଷଣ କଲେ ଜଣାଯାଏ ଯେ ମିଲିଟାରୀ ଶକ୍ତି ମତ୍ତ ଡିକ୍ଟେଟର ଯାହିଆର ହୃଦୟରେ ସାମୂହିକ ଅହିଂସ ଅସହଯୋଗ ସାମାନ୍ୟ ରେଖାପାତ କରିବାକୁ ସମର୍ଥ ସୁଦ୍ଧା ହେଲା ନାହିଁ, କିନ୍ତୁ ଶେଷରେ 'ମୁକ୍ତିବାହିନୀ'ର ସହିଂସ ପ୍ରତିରୋଧ ସମ୍ମୁଖରେହିଁ ପରାଜିତ ହେଲା ।

ରାଜନୀତି କ୍ଷେତ୍ରରେ ବିଶେଷତଃ ସ୍ୱାଧୀନତା ସଂଗ୍ରାମରେ ଅହିଂସାର ପ୍ରୟୋଗ ବିଶ୍ୱ ଇତିହାସରେ ପ୍ରଥମେ ଗାନ୍ଧିଜୀହିଁ କରିଥିଲେ । ସେଥିପାଇଁ ସେ ଇତିହାସରେ ମହାତ୍ମା ନାମରେ ପରିଚିତ ହେଲେ । ଗାନ୍ଧିଜୀଙ୍କର ବିଚାର ହେଲା ଏହା ଯେ ମନୁଷ୍ୟ ମଧ୍ୟରେ ଥିବା ସ୍ନେହ, ପ୍ରେମ ପ୍ରଭୃତି ଈଶ୍ୱରୀୟ ଗୁଣଗୁଡ଼ିକୁ ସତ୍ୟ, ଅହିଂସା, ପ୍ରେମଦ୍ୱାରା ଜାଗ୍ରତ କରାଯାଇପାରିବ । ଏହି ବିଚାରକୁ ସେ ବ୍ରିଟିଶ୍ ସରକାର ଓ ଭାରତୀୟ ଜନସାଧାରଣ ଉଭୟଙ୍କ ଉପରେ ପ୍ରୟୋଗ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ସାଧାରଣ ଦୋଷ ଦୁର୍ବଳତାରେ ଅଭ୍ୟସ୍ତ ସାଧାରଣ ମନୁଷ୍ୟଠାରେ ଏହି ମହାନ୍ ଗୁଣଗୁଡ଼ିକ ଆଶା କରିବା ବୃଥା । ଗାନ୍ଧିଜୀ ଏହି ଦୁର୍ଲଭ ଅତିମାନବୀୟ ଗୁଣଗୁଡ଼ିକ, ଜଣେ ଦୁଇଜଣ ନୁହେଁ, କୋଟି କୋଟି ଭାରତବାସୀଙ୍କଠାରୁ ଆଶା କରୁଥିଲେ । ଦକ୍ଷିଣ-ଆଫ୍ରିକାରେ ଭାରତୀୟମାନଙ୍କ ପାଇଁ କେତେକ ନାଗରିକ ଅଧିକାର ଆଦାୟ କରିବାକୁ ଏବଂ କେତେଗୋଟି ବୈଷମ୍ୟମୂଳକ ଆଇନର ବିରୋଧରେ 'ଅହିଂସ ଆଇନ ଅମାନ୍ୟ ଆନ୍ଦୋଳନ' କରି ଯେଉଁ ସୀମିତ ସଫଳତା ଅର୍ଜନ କରିଥିଲେ, ସେଥିରେ ସେ ଉତ୍ସାହିତ ହୋଇ ବିରାଟ ଭାରତବର୍ଷର 'ସ୍ୱାଧୀନତା' ଭଳି ଏକ କଠିନ ସଂଗ୍ରାମରେ ସେହି ଅହିଂସାକୁ ପ୍ରୟୋଗ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ତାଙ୍କର ସେହି ଉଦ୍ୟମ ବ୍ୟର୍ଥ ହେଲା । ଏହା ଅବଶ୍ୟ ସତ୍ୟ ଯେ ତାଙ୍କର ଅସାଧାରଣ ନେତୃତ୍ୱ ଦେଶର ଦରିଦ୍ରତମ ଓ ଦୁର୍ବଳତମ ବ୍ୟକ୍ତିକୁ ମଧ୍ୟ ସ୍ୱାଧୀନତା ସଂଗ୍ରାମ ଭିତରକୁ ଟାଣିଆଣିଲା । ଆକୁମାରୀ ହିମାଚଳ ଅଭୂତପୂର୍ବ ଜନଜାଗରଣ ସୃଷ୍ଟିକରି ସାରା ବିଶ୍ୱକୁ ଚମତ୍କୃତ କରିଦେଲା । ଏପରି କି ଯୁଗଯୁଗଧରି ଅଜ୍ଞାନ ଅନ୍ଧକାର ଓ କୁସଂସ୍କାରରେ ସଢୁଥିବା ଅସୂର୍ଯ୍ୟଂପଶ୍ୟା ରମଣୀ ଭିତରେ ଆଣିଦେଲା ନୂତନ ଜୀବନ ଓ ନୂତନ ସ୍ପନ୍ଦନ । ଦେଶପାଇଁ ଚରମ ଆତ୍ମତ୍ୟାଗ କରିବାର ନିର୍ଭୀକତା ଏବଂ ଉଚ୍ଚ ନୈତିକ ଗୁଣର ମୂଲ୍ୟବୋଧ ଶିକ୍ଷାଦେଲା ଗାନ୍ଧିଜୀଙ୍କର ନେତୃତ୍ୱ । କିନ୍ତୁ ସେମାନେ ଅହିଂସାକୁ କେବେହେଲେ ସ୍ୱାଧୀନତା ସଂଗ୍ରାମର ଏକମାତ୍ର ସାଧନରୂପେ ଗ୍ରହଣ କରିପାରି ନ ଥିଲେ । ଏପରିକି ଗାନ୍ଧିଜୀଙ୍କର ନେତୃତ୍ୱାଧୀନ କଂଗ୍ରେସ ଦଳ ମଧ୍ୟ ଅହିଂସାକୁ ଏକ ଧର୍ମ ବା CREED ରୂପେ ଗ୍ରହଣ କରିପାରି ନ ଥିଲା ଯଦିଓ କଂଗ୍ରେସକୁ ଅହିଂସା ଧର୍ମରେ ଦୀକ୍ଷିତ କରିବାକୁ ଗାନ୍ଧିଜୀଙ୍କର ଉଦ୍ୟମର ଅନ୍ତ ନ ଥିଲା । ପ୍ୟାରେଲାଲ୍

ଲେଖିଛନ୍ତି, "There had been a steady drift in the congress organisation from the ideals which Gandhiji set before it when he took its leadership at the beginning of the satyagraha era in the early twenties. It had adopted truth and non-violence as a policy, not as a creed." Mahatma Gandhi-last phase Vol-2, Page 77- Pyarelal ଅର୍ଥାତ୍ କଂଗ୍ରେସ ଦଳ ସତ୍ୟ ଅହିଂସାକୁ ଏକ କୌଶଳରୂପେ ଗ୍ରହଣ କରିଥିଲା, ଧର୍ମରୂପରେ ନୁହେଁ ।

କଂଗ୍ରେସ ସଂବିଧାନରେ ମୂଳରୁ ଥିଲା ଯେ ଏହାର ନୀତି Peaceful and legitimate means (ଶାନ୍ତିପୂର୍ଣ୍ଣ ଓ ଆଇନସମ୍ମତ) । ଗାନ୍ଧିଜୀ ଏହି ଦୁଇଟି ଶବ୍ଦ ପରିବର୍ତ୍ତେ 'ସତ୍ୟ ଓ ଅହିଂସା' ଶବ୍ଦ କଂଗ୍ରେସ ସଂବିଧାନରେ ଯୋଡ଼ିବାକୁ ୧୯୩୪ ମସିହା ବମ୍ବେ କଂଗ୍ରେସ ଅଧିବେଶନରେ ପ୍ରସ୍ତାବ କରିଥିଲେ, କିନ୍ତୁ ସେହି ପ୍ରସ୍ତାବ ପ୍ରତ୍ୟାଖ୍ୟାତ ହୋଇଥିଲା । ଗାନ୍ଧିଜୀ ବାଧ ହୋଇ ସ୍ୱୀକାର କରିଥିଲେ "ମୁଁ ଯଦି ରାଜନୀତିରେ ଅହିଂସା ପ୍ରୟୋଗ କରିଥା'ନ୍ତି କିମ୍ବା କେବଳ ଅହିଂସାରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନଙ୍କୁ ନେଇ କାମ ଆରମ୍ଭ କରିଥା'ନ୍ତି, ତାହା ମୋ' ପାଖରେ ଆରମ୍ଭ ହୋଇ ମୋ' ପାଖରେ ଶେଷ ହୋଇଥା'ନ୍ତା । ଯେହେତୁ ମୁଁ ନିଜେ ଅପୂର୍ଣ୍ଣ ତେଣୁ ଅପୂର୍ଣ୍ଣ ଲୋକମାନଙ୍କୁ ନେଇ ମୁଁ କାମ ଆରମ୍ଭ କଲି ।" (Harijan, dated 12-9-39.)

ଏଥିରୁ ଏହାହିଁ ପ୍ରମାଣିତ ହେଉଅଛି ଯେ, ଗାନ୍ଧିଜୀ ଭାରତୀୟମାନଙ୍କ କଥା ତେଣିକି ଥାଉ, କଂଗ୍ରେସ ଦଳକୁ ମଧ ଅହିଂସା ନୀତିରେ ଦୀକ୍ଷିତ କରିପାରି ନ ଥିଲେ । କଂଗ୍ରେସର ଇତିହାସକାର ଡକ୍ଟର ପଟ୍ଟାଭି ସୀତାରାମାୟା ଗାନ୍ଧିଜୀଙ୍କର ଏକ ଉକ୍ତି ଉଦ୍ଧାର କରି ଲେଖିଛନ୍ତି, "ଆମ ଭିତରେ ଅହିଂସା ପ୍ରତି ଯଦି ପୂର୍ଣ୍ଣବିଶ୍ୱାସ ଥାଆନ୍ତା, ଲୋକଚକ୍ଷୁରେ ତାହା ସ୍ପଷ୍ଟ ପ୍ରତୀୟମାନ ହୁଅନ୍ତା ଏବଂ ଏହା ସରକାରର ଦୃଷ୍ଟି ମଧ ଏଡାଇ ପାରି ନ ଥା'ନ୍ତା । ସଶସ୍ତ୍ର ବିପ୍ଳବୀମାନଙ୍କୁ ଆମ୍ଭେମାନେ ଏହା ଦେଖାଇଦେବାକୁ ମଧ୍ୟ ଅସମର୍ଥ ହୋଇଅଛୁ ଯେ ସେମାନଙ୍କର 'ହିଂସା' ଉପରେ ଯେତିକି ବିଶ୍ୱାସ ରହିଛି, ଆମ୍ଭମାନଙ୍କର ଅହିଂସା ଉପରେ ମଧ୍ୟ ସେହି ପରିମାଣରେ ବିଶ୍ୱାସ ରହିଛି; ବରଂ ଆମ୍ଭମାନଙ୍କ ଭିତରେ ବହୁଲୋକ ଅନୁଭବ କରୁଅଛନ୍ତି ଯେ ହିଂସାବାଦୀ ମାନଙ୍କ ଭଳି ଆମ ଭିତରେ ହିଂସାବାଦ ପ୍ରତି ସମାନ ପରିମାଣରେ ବିଶ୍ୱାସ ଭରି ରହିଅଛି । ସୁତରାଂ କିଏ ହିଂସାକୁ ପଲିସି ବା ଧର୍ମରୂପେ ଗ୍ରହଣ କଲା ବା ନ କଲା ସେ'ଟା ବଡ଼ କଥା ନୁହେଁ ।

[ History of the Indian National Congress - Vol.1 Page 976 by Dr. P. Sitaramaya.]

ପଶୁବଳରେ ମତୁଆଲା ଓ କ୍ଷମତାଗର୍ବିତ ଶାସକବର୍ଗ ଉପରେ ଅହିଂସାର ଯେ କୌଣସି ପ୍ରଭାବ ପଡ଼େ ନାହିଁ, ତାହା ସେହି ଗାନ୍ଧିଜୀଙ୍କ ଜୀବନରେହିଁ ପ୍ରମାଣିତ ହୋଇଅଛି । ସ୍ୱେରାଚାରୀ ଶାସକ ଉପରେ ଅହିଂସାର ଯଦି କୌଣସି ପ୍ରଭାବ ଥା'ନ୍ତା

ତେବେ ଦକ୍ଷିଣ ଆଫ୍ରିକା ସରକାର ନିଶ୍ଚୟ ବଦଳିଯାଇଥା'ନ୍ତା, "The whites were not converted and did not abandon their racialism, as they should have done if the claim of satyagraha was true". The History of Freedom Movement in India-Vol- III. Page 220 Dr. Tarachand. କଂଗ୍ରେସ ସରକାରଙ୍କର ବରାଦୀ ଐତିହାସିକ ଡକ୍ଟର ତାରାଚାନ୍ଦଙ୍କ ଉପରୋକ୍ତ ଅଭିମତ ବିଶେଷ ପ୍ରଣିଧାନଯୋଗ୍ୟ । ଅହିଂସ ସତ୍ୟାଗ୍ରହର କୌଣସି ଶକ୍ତି ଥିଲେ 'ରଓ୍ୱାଲଟ୍ ଆଇନ' ବିରୋଧରେ ୧୯୧୯ ଆନ୍ଦୋଳନକୁ ଗାନ୍ଧିଜୀ Himalayan miscalculation' 'ହିମାଳୟ ପରି ଭୁଲ' ବୋଲି କହିନଥା'ନ୍ତେ । ଅସହଯୋଗ ଆନ୍ଦୋଳନ ଚୌରୀଚୌରା ଦୁର୍ଘଟଣାରେ ଶେଷ ହୋଇ ନ ଥା'ନ୍ତା, ୧୯୩୦ର ଲବଣ ସତ୍ୟାଗ୍ରହ ଗାନ୍ଧି-ଇରଉଇନ ଚୁକ୍ତିର କଳଙ୍କିତ ଅଧ୍ୟାୟରେ ପରିସମାପ୍ତ ହୋଇ ନ ଥା'ନ୍ତା, ୧୯୪୨ର ଭାରତଛାଡ଼ ବିପ୍ଳବ ରକ୍ତାକ୍ତ ସଂଘର୍ଷରେ ପରିଣତ ହୋଇ ନ ଥା'ନ୍ତା । କେବଳ ଅହିଂସ ସତ୍ୟାଗ୍ରହରେ ଯଦି ଭାରତର ସ୍ୱାଧୀନତାପ୍ରାପ୍ତି ହୋଇଥା'ନ୍ତା ତେବେ ତାହା ୧୯୨୦ର ଅସହଯୋଗ ଆନ୍ଦୋଳନ ବା ୧୯୩୦ର ଲବଣ ସତ୍ୟାଗ୍ରହ ପରେ ପରେ ହିଁ ମିଳିଥା'ନ୍ତା ଏବଂ ତାହା ୧୯୪୨ର ସଶସ୍ତ୍ର ବିପ୍ଳବ ଓ ୧୯୪୫ର ଆଜାଦ୍ ହିନ୍ଦ୍ ଯୁଦ୍ଧ ପର୍ଯ୍ୟନ୍ତ ଅପେକ୍ଷା କରିନଥା'ନ୍ତା ।

ଗାନ୍ଧିଜୀ ଓ ଅହିଂସାକୁ ଇଂରେଜମାନେ କେଉଁ ଦୃଷ୍ଟିରେ ଦେଖୁଥିଲେ ଜନୈକ ଇଂରେଜ ଐତିହାସିକ ତାହାର ଏକ ଚମତ୍କାର ବ୍ୟାଖ୍ୟା କରିଅଛନ୍ତି– "The British felt that they have little to fear from Gandhi himself, for they soon recognised him for what he was, an anti-western reformer. As long as Gandhi was in control of Congress, they knew they have an Ally. As long as civil disobedience remained non-violent, it did not greatly worry the Government.

Who was hurt by non-violence any way? Only the Indians. Gandhi's whole aim was to minimize violence, the Govt's aim was same. They were still capable of suppressing a few outbreak of small scale violence, but if once Gandhi ceased to dominate Congress, the machine he had built up might well be used by more dynamic and violent type. A full scale rebellion could not be crushed.

So the Government obliged Gandhi by treating him with considerable respect jailing him occasionally to keep up appearance, while they took much more positive action against terrorist and western type revolutionaries whom they really feared–Last years of British Rule. Page-69.

ଗାନ୍ଧିଜୀଙ୍କ ଅପେକ୍ଷା ସଶସ୍ତ୍ର ବିପ୍ଳବୀଙ୍କୁ ଯେ ଇଂରେଜ ସରକାର ଅଧିକ ଭୟ କରୁଥିଲା ଏହାର ଅସଂଖ୍ୟ ପ୍ରମାଣ ରହିଛି । ଇଂରେଜମାନଙ୍କ ବିପଦବେଳେ ଗାନ୍ଧିଜୀ ସେମାନଙ୍କୁ ଯେ ଅଡୁଆରେ ପକାଇବେ ନାହିଁ ଏ ଦୃଢ଼ ଧାରଣା ସେମାନଙ୍କର ରହିଥିଲା ।

ଗାନ୍ଧିଜୀଙ୍କର 'ଭାରତଛାଡ଼' ଆନ୍ଦୋଳନ ଏକ ବ୍ୟତିକ୍ରମ । କେଉଁ ପରିସ୍ଥିତିରେ ଏହା ହୋଇଥିଲା ଏବଂ ଗାନ୍ଧିଜୀ କେଉଁ ପରିସ୍ଥିତିରେ ଏ ଡାକରା ଦେଇଥିଲେ, ଏହାର ବିସ୍ତୃତ ଆଲୋଚନା ଯଥାସ୍ଥାନରେ କରାଯାଇଅଛି । ପ୍ରଥମ ବିଶ୍ୱଯୁଦ୍ଧବେଳେ ଗାନ୍ଧିଜୀ ବ୍ରିଟିଶ୍ ସରକାରଙ୍କୁ ସବୁମତେ ସାହାଯ୍ୟ କରିଥିଲେ; ଏପରିକି ଭାରତରୁ ସୈନ୍ୟ ସଂଗ୍ରହ କରିବାପର୍ଯ୍ୟନ୍ତ ଗଲେ । ଜଣେ ଐତିହାସିକଙ୍କ ମତରେ – Gandhi bacame the self-appointed recruiting-sergent of the Army. - W. Coupland.

ଏହି ମହାଯୁଦ୍ଧରେ ଭାରତରୁ କୋଡ଼ିଏ କୋଟି ଟଙ୍କା, ନଅ ଲକ୍ଷ ପଚାଶ ହଜାର ସୈନ୍ୟ ଓ ଅପର୍ଯ୍ୟାପ୍ତ ଯୁଦ୍ଧୋପକରଣ ସଂଗୃହୀତ ହୋଇଥିଲା । ଏହି ସାହାଯ୍ୟ ନେଇ ପ୍ରଥମ ବିଶ୍ୱଯୁଦ୍ଧରେ ଇଂରେଜମାନେ ବିଜୟଲାଭ କଲେ ଏବଂ ଫଳରେ ଭାରତରେ ବ୍ରିଟିଶ ସାମ୍ରାଜ୍ୟବାଦ ଆହୁରି ଦୃଢ଼ ହେଲା । ''ଯୁଦ୍ଧ ପରେ ଭାରତକୁ ସ୍ୱାଧୀନତା ମିଳିବ'' ବୋଲି ଆଶାକରି ଦିନ ଗଣୁଥିବା ଭାରତବାସୀ ପାଇଲେ ରଓ୍ୱାଲଟ୍ ଆଇନ୍ ଓ ଜାଲିଆନାଓ୍ୱାଲାବାଗ୍‌ର ଲୋମହର୍ଷଣକାରୀ ହତ୍ୟାକାଣ୍ଡ । କିନ୍ତୁ ଏହି ତିକ୍ତ ଅଭିଜ୍ଞତାରୁ ନା ଗାନ୍ଧିଜୀ ନା କଂଗ୍ରେସ କାହାକୁ ହେଲେ କିଛି ଶିକ୍ଷା ମିଳିଲା ? ମିଳିଥିଲେ ପୁଣି ଦ୍ୱିତୀୟ ମହାଯୁଦ୍ଧବେଳେ ବ୍ରିଟିଶ୍‌ର ବିଜୟପାଇଁ ଗାନ୍ଧିଜୀ ଓ କଂଗ୍ରେସ ଲାଳାୟିତ ହୋଇ ନ ଥା'ନ୍ତେ । ତତ୍‌କାଳୀନ ବ୍ରିଟିଶ୍ ଭାଇସରାୟଙ୍କ ସହ ଗାନ୍ଧିଜୀଙ୍କର କଥୋପକଥନ ଏ ସଂପର୍କରେ ବଡ଼ କୌତୂହଳପ୍ରଦ ।

''ମାନବିକତା ଦୃଷ୍ଟିରୁ ଇଂଲଣ୍ଡ ଓ ଫ୍ରାନ୍ସପାଇଁ ମୋ'ର ପୂର୍ଣ୍ଣ ସହାନୁଭୂତି ରହିଛି । ମୁଁ ତାଙ୍କୁ (ଲିନଲିଥଗୋ) କହିଲି, ଆଜିଯାଏ ଅଜେୟ ବୋଲି ବିଚାର କରାଯାଉଥିବା ଲଣ୍ଡନ ସହର ଧ୍ୱଂସହେବା କଥା କଳ୍ପନା କରି ମୁଁ ଭୀଷଣ ଭାବେ ବିଚଳିତ ହୋଇଯାଇଅଛି । ପାର୍ଲିଆମେଣ୍ଟ ଭବନ ବା ଓ୍ୱେଷ୍ଟମିନିଷ୍ଟର ଏବିର ଦୃଶ୍ୟ ଏବଂ ସେଗୁଡ଼ିକର ଆସନ୍ନଧ୍ୱଂସ କଥା କହିବାବେଳେ ଦୁଃଖରେ ମୁଁ ପ୍ରାୟ ଭାଙ୍ଗିପଡ଼ିଲି ଏବଂ ଧୈର୍ଯ୍ୟ ହରାଇଦେଲି । ସେଥିପାଇଁ ଭାରତବର୍ଷର ସ୍ୱାଧୀନତା କଥା ମୁଁ ବର୍ତ୍ତମାନ ଚିନ୍ତା କରୁ ନାହିଁ । ତାହା ତ ନିଶ୍ଚୟ ଆସିବ । କିନ୍ତୁ ଇଂଲଣ୍ଡ ଓ ଫ୍ରାନ୍ସର ଧ୍ୱଂସାବଶେଷ ଉପରେ ଏହି ସ୍ୱାଧୀନତାର ମୂଲ୍ୟ ରହିବ ନା ଧ୍ୱସ୍ତବିଧ୍ୱସ୍ତ ଓ ପରାଜିତ ଜର୍ମାନି ଉପରେ ତା'ର ଅଧିକ ମୂଲ୍ୟ ରହିବ ?''

ଗାନ୍ଧିଜୀଙ୍କ ଉପରୋକ୍ତ ମନୋଭାବ ହୁଏତ 'ଅହିଂସା' ରୁ ସୃଷ୍ଟି ହୋଇଅଛି କିନ୍ତୁ ଏହା ବିପ୍ଳବୀର ଆଦର୍ଶ ନୁହେଁ । ଶତ୍ରୁର ଶତ୍ରୁହିଁ ବିପ୍ଳବୀର ବନ୍ଧୁ ଅଟେ ଓ ଶତ୍ରୁର ମିତ୍ରହିଁ ବିପ୍ଳବୀର ଶତ୍ରୁ ଅଟେ । ଶତ୍ରୁର ବିପଦର ସୁଯୋଗ ନେବା ବିଜୟର ମୂଳମନ୍ତ୍ର । ଯୁଦ୍ଧକ୍ଷେତ୍ରରେ ଏହାହିଁ ସର୍ବବାଦୀସମ୍ମତ ନୀତି । ମହାବୀର କର୍ଣ୍ଣଙ୍କର ରଥଚକ୍ର ମାଟିତଳେ ପଶିଯାଇଥିବା ବେଳେହିଁ ତାଙ୍କୁ ନିହତକରିବା ଉଚିତ ବୋଲି ସ୍ୱୟଂ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ନିର୍ଦ୍ଦେଶ ଦେଲେ । ଏହା ବୀରୋଚିତ କାର୍ଯ୍ୟ ନୁହେଁ ବୋଲି ଯଦି ଅର୍ଜ୍ଜୁନ ଯୁକ୍ତି କରିଥା'ନ୍ତେ

ଏବଂ କର୍ଣ୍ଣଙ୍କ ଉପରେ ମାରଣାସ୍ତ୍ର ପ୍ରୟୋଗ କରି ନ ଥାନ୍ତେ, ତେବେ ହୁଏତ ଆଜିପର୍ଯ୍ୟନ୍ତ କର୍ଣ୍ଣ ଅପରାଜିତ ଥା'ନ୍ତେ, କାରଣ ସେ ସେହି ବର ଲାଭ କରିଥିଲେ ବୋଲି ମହାଭାରତରେ ଉଲ୍ଲେଖ ରହିଛି ।

ସେହି ଦୃଷ୍ଟିରୁହିଁ ସୁଭାଷଙ୍କର ନିମ୍ନଲିଖିତ ବିବୃତି ପ୍ରତି ଦୃଷ୍ଟି ଆକୃଷ୍ଟ ହୁଏ । "ୟୁରୋପରେ ବ୍ରିଟେନ୍ ଯେତିକି ଧକ୍କା ଖାଉଛି, ଭାରତ ଉପରୁ ତା'ର ହାତମୁଠା ସେତିକି ଢିଲା ହେଉଛି । ସୁତରାଂ ବ୍ରିଟେନ୍‌କୁ ରକ୍ଷାକରିବା କଥା କହିବା ଆମ୍ଭେମାନେ ବର୍ତ୍ତମାନ ବନ୍ଦ କରିଦେବା ଉଚିତ । ଏଭଳି ଗମ୍ଭୀର ପରିସ୍ଥିତିରେ ଭାରତ ତା'ର ନିଜକଥା ଚିନ୍ତାକରିବା ଦରକାର । ଏକ ଅସ୍ଥାୟୀ ଭାରତ ସରକାର ପ୍ରତିଷ୍ଠା କରି ତା' ହାତରେ କ୍ଷମତା ଅର୍ପଣ କରିବାକୁ ଭାରତୀୟମାନେ ଦାବି କରନ୍ତୁ ।"

'ଅହିଂସ-ଅସହଯୋଗ' କିମ୍ବା ଶାନ୍ତିପୂର୍ଣ୍ଣ ସାମ୍ବିଧାନିକ ଆନ୍ଦୋଳନ ଏବଂ ବିପ୍ଳବବାଦ ଏକା ଜିନିଷ ନୁହେଁ । ପ୍ରଥମଟିରେ ମିଳେ ପ୍ରଚୁର କରତାଳି, ଫୁଲହାର, ଜୟ-ଜୟକାର ଓ ପ୍ରଶଂସାପତ୍ର ବା ଖୁବ୍ ବେଶୀରେ କାରାଦଣ୍ଡ, ପରେ ସେହି ସାର୍ଟିଫିକେଟ୍ ବଳରେ ମିଳେ ଶାସନ କ୍ଷମତା ଓ ତା'ପରେ ଖାଲି ଭୋଗ ଆଉ ଭୋଗ । କିନ୍ତୁ, ଦ୍ୱିତୀୟଟିରେ ନା ଅଛି ଫୁଲହାର ନା କରତାଳି । ଅଛି କେବଳ ଦୁର୍ବିସହ ନିର୍ଯାତନା, କ୍ଲେଶ, ପୋଲିସର ଲାଠି ବୁଟ୍ ବୟନଟ୍‌ର ଭୁସା, ରାଇଫଲ୍‌ର ଗୁଳି ଏବଂ ଏଥିରୁ ବଞ୍ଚିଗଲେ ମିଳେ ଯାବଜ୍ଜୀବନ ଦ୍ୱୀପାନ୍ତର ନଚେତ୍ ଫାଶୀଦଣ୍ଡର ପୁରସ୍କାର । ପ୍ରଥମଟିରେ କୌଣସିମତେ ଜେଲ୍‌ରୁ ଖଲାସ ହୋଇ ପଳାଇ ଆସିଲେ 'ସ୍ୱାଧୀନତା ସଂଗ୍ରାମ' ଜୟଯୁକ୍ତ ହେଲାବୋଲି ମନେକରାଯାଏ । କିନ୍ତୁ ସଶସ୍ତ୍ର ବିପ୍ଳବୀ ଏଥିରେ ବିଶ୍ୱାସ କରେ ନାହିଁ । ସେ ଏହାକୁ ଏକ ନିରର୍ଥକ ଓ ହାସ୍ୟାସ୍ପଦ କାର୍ଯ୍ୟ ବୋଲି ବିଚାର କରେ ଏବଂ ସ୍ୱାଧୀନତା ଭଳି ଅମୂଲ୍ୟ ଜିନିଷ ବିନା ରକ୍ତଦାନରେ ଓ ବିନା ଆତ୍ମୋତ୍ସର୍ଗରେ ମିଳେ ନାହିଁ ବୋଲି ତା'ର ଦୃଢ଼ ବିଶ୍ୱାସ ଥିବାରୁ ସେ ଶାରୀରିକ କ୍ଲେଶ ଓ ଦୁଃଖକୁ ଅମ୍ଳାନ ବଦନରେ ଗ୍ରହଣ କରେ । ଏପରିକି 'ଫାଶୀଦଣ୍ଡକୁ ଜଜ୍‌ର ରସିକତା' ବୋଲିମନେକରେ ଏବଂ ପରମ ଆନନ୍ଦ ସହକାରେ ତାହା ଗ୍ରହଣକରି ସେଥିପାଇଁ ଗର୍ବବୋଧକରେ । ମନୋବଳ କେତେ ଦୃଢ଼ ହେଲେ ମଣିଷ ଫାଶୀଦଣ୍ଡ ଭଳି ଭୟାବହ ଦଣ୍ଡକୁ ହସିହସି ବରଣ କରିବ ଏବଂ ଫାଶୀରଜ୍ଜୁକୁ ଗଳାରେ ଧାରଣ କରିପାରିବ ଅହିଂସାବାଦୀମାନଙ୍କର ତାହା କଳ୍ପନାତୀତ । "ପରାକ୍ରମଦ୍ୱାରା ଜବଦ କରିବାକୁ ଯେଉଁମାନେ ସମର୍ଥ ନୁହନ୍ତି, ସେମାନଙ୍କୁ ଅହିଂସା ନୀତି ସୁହାଇବ; ମାତ୍ର ଏଥିରେ ଅଗଣିତ ଭୟାଳୁଲୋକ ଦେଶପ୍ରେମୀ ବୋଲାଇବାର ସୁଯୋଗ ପାଇବେ । ଦେଶପାଇଁ ତାହା ହେବ ଦୁର୍ଯୋଗ । ଯେଉଁ ଗୌରବ ବୀରର ପ୍ରାପ୍ୟ, ତାକୁ ଲୁଣ୍ଠନ କରି ନେଇଯିବେ ସୁବିଧାବାଦୀମାନେ । ଯୋଗ୍ୟତମ ସନ୍ତାନମାନଙ୍କର ସଚ୍ଚାତ୍ୟାଗ ଦ୍ୱାରା ଭାରତମାତା ତୁଷ୍ଟ ହୁଅନ୍ତେ ସିନା, ଏପରି ନକଲି ଅର୍ଘ୍ୟ ସେ ଗ୍ରହଣ କରିବେ କି ?"

କେହି କେବେ ପ୍ରକାଶ୍ୟ ସଭାରେ ପ୍ରସ୍ତାବ ପାଶ୍ କରି ଗୋପନ ବିପ୍ଳବ କରେ ନାହିଁ । ଫଳରେ ଆମ ଦେଶରେ ସଶସ୍ତ୍ର ମୁକ୍ତିସଂଗ୍ରାମର କୌଣସି ଧାରାବାହିକ ବା ବିଧିବଦ୍ଧ ଇତିହାସ ନାହିଁ । କାରଣ ଏହି ସଂଗ୍ରାମର ଅଧିକାଂଶ କାର୍ଯ୍ୟ ଗୋପନରେହିଁ କରାଯାଇଛି । ଏହି ମରଣଜୟୀ ବିପ୍ଳବୀମାନଙ୍କର ଲୋମହର୍ଷଣକାରୀ ଅଭିଯାନର ଅଲୌକିକ କାହାଣୀରୁ ଯେତିକି ଅଂଶ ଲୋକଲୋଚନକୁ ଆସିଅଛି ତାହାହିଁ ଆମ ଦେଶରେ ବିଭିନ୍ନ ଭାଷାରେ ଲିଖିତ ସଶସ୍ତ୍ରବିପ୍ଳବର ପ୍ରଧାନ ଉପଜୀବ୍ୟ । କିନ୍ତୁ ଏହା ବ୍ୟତୀତ ଆହୁରି କେତେ ଦୁର୍ଜୟ ବିପ୍ଳବୀଙ୍କର ଜୀବନ ଲୋକଲୋଚନର ଅନ୍ତରାଳରେ ସମସ୍ତଙ୍କ ଅଜ୍ଞାତରେ, ପୋଲିସ୍ - ମିଲିଟାରୀର ଶିକାର ହୋଇଛନ୍ତି, କେତେ ମରଣଜୟୀ ବିପ୍ଳବୀ ଯେ ପୋଲିସ୍ ଲକ୍‌ଅପ୍ ବା ଜେଲଖାନାରେ ବନ୍ଧୁକର ଶିକାର ହୋଇଅଛନ୍ତି ଓ କେତେ ବିପ୍ଳବୀଙ୍କର ଜୀବନ ବିନାବିଚାରରେ ଶେଷ ହୋଇଛି ତାହା କିଏ କହିବ ? ଇତିହାସରେ ସେମାନଙ୍କର ନାମ ନାହିଁ । ପ୍ରସ୍ତରଫଳକ ବା ପ୍ରତିମୂର୍ତ୍ତିରେ କିମ୍ବା ତାମ୍ରପତ୍ରରେ ସେମାନଙ୍କର ସ୍ମାରକୀ ନାହିଁ । ସେମାନଙ୍କ ପାଇଁ ଦେଶବାସୀ ଅଶ୍ରୁ ବିସର୍ଜନ କରିନାହାନ୍ତି, ଶୋକସଭା କରିନାହାନ୍ତି, ସେମାନଙ୍କର ଜନ୍ମ ବା ମୃତ୍ୟୁବାର୍ଷିକୀ ପାଳିତ ହୁଏ ନାହିଁ । ସେମାନେ ଚିରଦିନ ଅଜ୍ଞାତ ଅଶ୍ରୁତ ଓ ଅପରିଚିତ । କିନ୍ତୁ ସେହିମାନଙ୍କର ଅମର ତ୍ୟାଗରେ ଏ ଦେଶ ଗର୍ବିତ, ଇତିହାସ ଆଲୋକିତ । ସୁତରାଂ ଯେଉଁ 'ସ୍ୱାଧୀନତା ଇତିହାସରେ' ସେମାନଙ୍କୁ ଉପଯୁକ୍ତ ସ୍ଥାନ ଦିଆଯାଇ ନାହିଁ, ତାହାକୁ ଆଉକିଛି କୁହାଯାଇପାରେ 'ସ୍ୱାଧୀନତା ସଂଗ୍ରାମର ଇତିହାସ' ବୋଲି କଦାପି କୁହାଯାଇ ପାରିବ ନାହିଁ । ଭାରତମାତାର ସେହି ଅଜ୍ଞାତ ସନ୍ତାନମାନଙ୍କୁ ଇତିହାସରେ ଯଥୋପଯୁକ୍ତ ସ୍ଥାନଦେଇ ସେମାନଙ୍କ ପ୍ରତି ଆଜିଯାଏ ହୋଇଥିବା ଅନ୍ୟାୟ ଓ ଅବିଚାରଜନିତ ପାପର ପ୍ରାୟଶ୍ଚିତ୍ତ କରିବାହିଁ ଏହି ଗ୍ରନ୍ଥର ଉଦ୍ଦେଶ୍ୟ ।

'ସଶସ୍ତ୍ର ବିପ୍ଳବ'ର ଇତିହାସକାରମାନେ ବିଂଶ ଶତାବ୍ଦୀ ପ୍ରାରମ୍ଭରୁ ସ୍ୱାଧୀନତାପ୍ରାପ୍ତି ପର୍ଯ୍ୟନ୍ତ ହୋଇଥିବା 'ସଶସ୍ତ୍ର ବିପ୍ଳବ'କୁ ମୁଖ୍ୟସ୍ଥାନ ଦେଇ ତାହାକୁ ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ କରିଅଛନ୍ତି । ଅଷ୍ଟାଦଶ-ଊନବିଂଶ ଶତାବ୍ଦୀରେ ହୋଇଥିବା ସଶସ୍ତ୍ରବିପ୍ଳବକୁ ଗୌଣସ୍ଥାନ ଦିଆଯାଇଛି । ଇଂରେଜ ଶାସନର ଆରମ୍ଭରୁ ଶେଷପର୍ଯ୍ୟନ୍ତ ହୋଇଥିବା ବିଭିନ୍ନ ବିପ୍ଳବକୁ ବିଚାରକଲେ ଏହା ପାଞ୍ଚଗୋଟି ପର୍ଯ୍ୟାୟରେ ପଡ଼ିବ । (Conventional Stage) (୧) ଗତାନୁଗତିକ ବା ପାରମ୍ପରିକ ବିଦ୍ରୋହ ପର୍ବ— ଅଷ୍ଟାଦଶ ଶତାବ୍ଦୀରେ ମୀରକାଶିମଙ୍କ ବିଦ୍ରୋହଠାରୁ ୧୮୫୭ର ମହାବିଦ୍ରୋହ ପର୍ଯ୍ୟନ୍ତ ଏହା ବ୍ୟାପ୍ତ ବୋଲି ଧରିନିଆଯାଇପାରେ । ଗତାନୁଗତିକ ରୀତିରେ ଏହି ବିପ୍ଳବ ସଂଗଠିତ ହୋଇଥିବାରୁ ଏହାର ଏଭଳି ନାମକରଣ କରାଯାଇଛି । (୨) ବ୍ୟକ୍ତିଗତ ହତ୍ୟାପର୍ବ (Stage of individual murder) — ୧୮୯୭ରେ ମହାରାଷ୍ଟ୍ରର ର୍‍ୟାଣ୍ଡସଆର୍ଯ୍ୟାଷ୍ଟ ନିଧନଠାରୁ ଆରମ୍ଭ କରି ଆଣ୍ଡରସନ୍ ସୁଟିଂ କେଶ୍ ପର୍ଯ୍ୟନ୍ତ

ହୋଇଥିବା ବ୍ୟକ୍ତିନିଧନ କାର୍ଯ୍ୟକୁ ଏହିପର୍ବରେ ଅନ୍ତର୍ଭୁକ୍ତ କରାଯାଇଛି । ଏହାକୁ ଉଦ୍‌ଯୋଗ ପର୍ବ ମଧ୍ୟ କୁହାଯାଇପାରେ ।

(୩)(୪) ବାଧ୍ୟତାମୂଳକ ଖଣ୍ଡଯୁଦ୍ଧ ପର୍ବ – Stage of forced fight ଏବଂ ଖଣ୍ଡବିପ୍ଳବ ପର୍ବ – (Insurrection) ରାସବିହାରୀଙ୍କ ଆୟୋଜିତ ସେନାବିଦ୍ରୋହ ଏବଂ ବାଘାଯତିନଙ୍କର ବାଲେଶ୍ୱର ଯୁଦ୍ଧକୁ ବାଧ୍ୟତାମୂଳକ ଖଣ୍ଡଯୁଦ୍ଧ ପର୍ବ ଏବଂ 'ଚଟ୍ଟଗ୍ରାମ ମୁକ୍ତି ସଂଗ୍ରାମ' କୁ ଖଣ୍ଡବିପ୍ଳବ ପର୍ବ କୁହାଯାଉଥିବାରୁ ଏହି ଗ୍ରନ୍ଥରେ ଉଭୟ ପର୍ବକୁ ମିଶାଇ ତା'ର ନାମ 'ଖଣ୍ଡ ବିପ୍ଳବ ପର୍ବ' ଦିଆଯାଇଛି । ଏହି ପର୍ବଟି ସଶସ୍ତ୍ର ମୁକ୍ତିସଂଗ୍ରାମ ଇତିହାସରେ ବିଶେଷ ଗୁରୁତ୍ୱପୂର୍ଣ୍ଣ । କାରଣ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନର ସୈନ୍ୟ, ସେନାପତି ଓ ମହାନାୟକମାନଙ୍କର ଅଲୌକିକ ବୀରତ୍ୱ ଓ ନିର୍ଭୀକତା ଏବଂ ମହାଶକ୍ତିଶାଳୀ ଇଂରେଜ ସୈନ୍ୟମାନଙ୍କର ସେମାନଙ୍କ ନିକଟରେ ଶୋଚନୀୟ ପରାଜୟହିଁ ବିଦ୍ରୋହୀ ଭାରତ ମନରେ ଆଣିଥିଲା ଅପୂର୍ବ ସାହସ ଓ ପ୍ରେରଣା ଏବଂ ସର୍ବଶେଷ ସଂଗ୍ରାମକୁ ଜୟଯୁକ୍ତ କରିବାର ପଥ ଏହା ଫଳରେ ହେଲା ଉନ୍ମୁକ୍ତ ।

(୫) ଗଣବିପ୍ଳବ ପର୍ବ –(Revolution) ୧୯୪୨ର 'ଭାରତ ଛାଡ଼' ବିପ୍ଳବ ଏବଂ ନେତାଜୀଙ୍କର 'ଦିଲ୍ଲୀଚଲୋ' ଅଭିଯାନକୁ 'ସଶସ୍ତ୍ର ମୁକ୍ତି ସଂଗ୍ରାମର' ଚରମ ବିପ୍ଳବ ବୋଲି ବିବେଚନା କରାଯାଇଛି; କାରଣ ଏହା ଯଥାର୍ଥରେ ଥିଲା 'ଗଣବିପ୍ଳବ' ଏବଂ ତା'ର ଫଳ ହେଲା ଭାରତର ସ୍ୱାଧୀନତା ।

ଦୁର୍ଭାଗ୍ୟର ବିଷୟ 'ଦିଲ୍ଲୀଚଲୋ' ଏବଂ ଭାରତଛାଡ଼ ବିପ୍ଳବ Synchronise ବା ଏକକାଳୀନ ହୋଇପାରି ନାହିଁ । ହୋଇଥିଲେ ଯେଉଁ ସ୍ୱାଧୀନତା ମିଳିଥା'ନ୍ତା, ତା'ର ତେଜସ୍ୱୀତା, ତୀକ୍ଷ୍ଣତା ଓ ସ୍ୱାଦ ହୋଇଥାନ୍ତା ସଂପୂର୍ଣ୍ଣ ଭିନ୍ନଧରଣର । ସେ ସ୍ୱାଧୀନତା ଭ୍ରାତୃରକ୍ତରେ ରଂଜିତ ହୋଇ ନ ଥା'ନ୍ତା, କିମ୍ୱା ବିଭାଜନର କଳଙ୍କରେ ହୋଇ ନ ଥା'ନ୍ତା କଳଙ୍କିତ । ଆଜି ସେ ସ୍ୱାଧୀନତାର ଅମୃତ ସ୍ୱାଦ ଉପଭୋଗ କରୁଥା'ନ୍ତେ ଆଚାଣ୍ଡାଳ ବ୍ରାହ୍ମଣ, ଆପାମର ଜନତା । ସେ ସ୍ୱାଧୀନ ଭାରତରେ ଆଜିର ଦୁର୍ନୀତି, ଦୁର୍ଭାଗ୍ୟ ଓ ଦୁଶ୍ଚିନ୍ତା ଦୁଷ୍ପ୍ରାପ୍ୟ ହୋଇଥା'ନ୍ତା । ମଣିଷ ମଣିଷର ସମ୍ମାନ ପାଉଥା'ନ୍ତା । ପଶୁତ୍ୱର ହୀନତାରେ ମଣିଷର ଜୀବନ ଆଜିଭଳି ଦୁର୍ବିସହ ହୁଅନ୍ତାନାହିଁ କିମ୍ବା ମୁଷ୍ଟିମେୟର ସୀମାହୀନ ଶୋଷଣରେ ସଂଖ୍ୟାଗୁରୁ ହାହାକାର କରୁ ନ ଥା'ନ୍ତେ । ଶାସନ ନାମରେ ବେପରୱା ଅତ୍ୟାଚାର ସେ ଭାରତରେ ହୋଇଥା'ନ୍ତା ସ୍ୱପ୍ନ । ଅହିଂସାର ଦ୍ୱାହିଦେଇ ଦେଶବ୍ୟାପୀ ଯେଉଁ ଭୀରୁତା ଓ ଛଳନାର ପୃଷ୍ଠପୋଷକତା କରାଗଲା ତାହାରି ପରିଣାମ ହେଲା ଭାରତର ବିଭାଜନ ତଥା ସାଂପ୍ରଦାୟିକ ରକ୍ତପାତ । "ଅହିଂସା ଆଚରଣ କରିବା ପାଇଁ ଲୋଡ଼ା ଯେଉଁ ଆଧ୍ୟାତ୍ମିକ ସାଧନା, ତା'ର କାଣିଚାଏ ବି ନ ଥାଇ ଏ ଦେଶରେ ଅହିଂସାର ଢୋଲ ବାଡ଼ା ହେଲା । ଏହି ଆତ୍ମଘାତୀ ପ୍ରତାରଣା ଓ ଅଭିନୟ ଦେଖି ସାଂପ୍ରଦାୟିକ ହିଂସାର ସୈତାନ ଯେଉଁ ଅଟ୍ଟହାସ୍ୟ କରୁଥିଲା, ଅହିଂସା

ଢୋଲର ଆବାଜରେ ସେ ଶବ୍ଦ ଶୁଣାଗଲା ନାହିଁ । ଅସଲ ସମୟରେ ସେ ସୈତାନ ଏ ଦେଶକୁ ହାସ୍ୟାସ୍ପଦ ବନାଇ ଛାଡ଼ିଲା ।''

'ସଶସ୍ତ୍ର ବିପ୍ଳବ'କୁ ଆମର ସ୍ୱାଧୀନତା ସଂଗ୍ରାମର ଘଟଣାବଳୀ ବର୍ଣ୍ଣିତ ଗ୍ରନ୍ଥମାନଙ୍କରେ ହୀନ ପ୍ରତିପନ୍ନ କରାଯାଇ ଏବଂ ତଥାକଥିତ ଅହିଂସା ଓ ମିଥ୍ୟାଚାରକୁ ଉଚ୍ଚସ୍ଥାନ ଦିଆଯାଇ ଯେଉଁ ଜାତୀୟ ପାପ ଅର୍ଜନ କରାଯାଇଛି ସେହି ପାପର ପ୍ରାୟଶ୍ଚିତ୍ତ କରିବାର ବେଳ ଆଜି ଆସିଛି ।

ପ୍ରସିଦ୍ଧ ଐତିହାସିକ ଡକ୍ଟର ରମେଶଚନ୍ଦ୍ର ମଜୁମଦାରଙ୍କ ଭାଷାରେ, ଆଜି ଯେହେତୁ ଗାନ୍ଧିଜୀଙ୍କ ଅହିଂସାନୀତିକୁ ଭାରତର ସ୍ୱାଧୀନତାପ୍ରାପ୍ତିର କାରଣ ବୋଲି ପ୍ରଚାର କରାଯିବାର ଫେସନ ଦେଖାଦେଇଛି; ସେଥିପାଇଁ ଉଗ୍ର-ଜାତୀୟତାବାଦକୁ ଏକ ଅନାବଶ୍ୟକ ପାପ ବୋଲି ବିଚାର କରାଯାଉଛି । କିନ୍ତୁ ମୁଁ ଦୃଢ଼ ନିଶ୍ଚିତ ଯେ ଇତିହାସର ରାୟ ଏ ସଂପର୍କରେ ସଂପୂର୍ଣ୍ଣ ଓଲଟା ହେବ ଏବଂ ଭାରତରେ ସ୍ୱାଧୀନତାର ଉଗ୍ରଜାତୀୟତାବାଦର ଅବଦାନ ନିଶ୍ଚୟ ସ୍ୱୀକୃତ ହେବ (୧) ।

❑❑❑

(୧) Dr. R.C. Majumdar – Three Phases of India's Struggle for Freedom Page. 44.

## ଅଧ୍ୟାୟ - ଦୁଇ

# ହାୟରେ ଦୁର୍ଭାଗା ଦେଶ !

ଇଂରେଜମାନଙ୍କଦ୍ୱାରା ଭାରତ ଅଧିକୃତ ହେବାର ବିଭିନ୍ନ କାରଣ ବିଶିଷ୍ଟ ଐତିହାସିକମାନେ ନିର୍ଦ୍ଧାରଣ କରିଅଛନ୍ତି । ସେଥିମଧ୍ୟରୁ କାର୍ଲମାର୍କ୍ସଙ୍କର ବିଶ୍ଳେଷଣ ପ୍ରଣିଧାନଯୋଗ୍ୟ । ମହାବିଦ୍ରୋହର ପୂର୍ବରୁ ଏହା ପ୍ରକାଶିତ ହୋଇଥିଲା ।

''ଭାରତବର୍ଷରେ ଇଂରେଜର ସାର୍ବଭୌମତ୍ୱ କପରି ପ୍ରତିଷ୍ଠିତ ହୋଇଥିଲା ? ମୋଗଲ ଶାସକମାନଙ୍କଦ୍ୱାରା ମୋଗଲ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହେଲା । ମରହଟ୍ଟାମାନଙ୍କଦ୍ୱାରା ମୋଗଲ ଶାସକମାନଙ୍କର କ୍ଷମତା ଓ ପୁଣି ଆଫଗାନମାନଙ୍କଦ୍ୱାରା ମରହଟ୍ଟାମାନଙ୍କର ଶକ୍ତି ଛିନ୍ନଭିନ୍ନ ହେଲା ଏବଂ ଏହିଭଳି ଯେତେବେଳେ ପ୍ରତ୍ୟେକ ପ୍ରତ୍ୟେକ ବିରୋଧରେ ଲଢୁଥିଲେ, ବ୍ରିଟିଶ୍‌ମାନେ ଭାରତବର୍ଷରେ ପ୍ରବେଶ କଲେ ଏବଂ ସମସ୍ତଙ୍କୁ ପରାଜିତ କରିବାକୁ ସମର୍ଥ ହେଲେ । ହିନ୍ଦୁ, ମୁସଲମାନ, ଜାତି-ଜାତି ଓ ଧର୍ମ-ଧର୍ମ ଭିତରେ ବିଭକ୍ତ ହୋଇଥିବା ଭାରତର ସମାଜ ଯାହାକି ବିଭିନ୍ନ କାରଣରୁ ପରସ୍ପରଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ । ଏଭଳି ଦେଶ ଓ ଏଭଳି ସମାଜ ଦେଶଜୟର ଶିକାର ହେବାକୁ ଦୈବ ନିର୍ଦ୍ଦେଶିତ ନୁହେଁକି ? ଇଂରେଜମାନଙ୍କଦ୍ୱାରା ଭାରତ ଅଧିକୃତ ହେବା ଏବଂ ତାହା ଭାରତୀୟଙ୍କ ଅର୍ଥବ୍ୟୟରେ ସୁରକ୍ଷିତ ହେବା ଓ ପୁଣି ସେହି ଭାରତୀୟ ସୈନ୍ୟମାନଙ୍କଦ୍ୱାରା ଶାସିତ ହେବା ଫଳରେ ବିଜିତ ହେବାଛଡ଼ା ଭାରତର ଅନ୍ୟଗତି କାହିଁ ? ହିନ୍ଦୁସ୍ଥାନର ଯଦି କିଛି ଇତିହାସ ଥାଏ ତାହା କେବଳ ପରାଜୟର ଇତିହାସ । ଭାରତୀୟ ସମାଜର କୌଣସି ଇତିହାସ ଆମକୁ ଜଣାନାହିଁ । ଯାହାକୁ ଆମେ ଇତିହାସ ବୋଲି ଜାଣୁ, ତାହା କେବଳ ବିଦେଶୀମାନଙ୍କଦ୍ୱାରା ଆକ୍ରମଣ ଓ ଦେଶଜୟର ଇତିହାସ, ସେହି ସମାଜ ବା ଦେଶ ଉପରେ ଯେ କି ଏକ ନିର୍ବିରୋଧ ଓ ଅପରିବର୍ତ୍ତନୀୟ ସମାଜ । ସୁତରାଂ ଇଂରେଜମାନଙ୍କଦ୍ୱାରା ଭାରତ ଅଧିକୃତ ହୋଇ ରହିବ କି ନା ତାହା ଏକ ଅବାନ୍ତର ପ୍ରଶ୍ନ । ବରଂ ପ୍ରଶ୍ନ ହେଉଛି ଆମେ ଭାରତରେ ଆଫଗାନ୍, ତୁର୍କୀ ବା ରୁଷିୟାନ୍ ଶାସନକୁ ପସନ୍ଦ କରିବା ନା ଇଂରେଜ ଶାସନକୁ ପସନ୍ଦ କରିବା ।''

ମାର୍କ୍‌ସଙ୍କର ଉପରୋକ୍ତ ମନ୍ତବ୍ୟ ଭଳି ଭାରତରେ ଇଂରେଜ ଶାସନ ପ୍ରତିଷ୍ଠା କେତେ

ଦୁଃଖଦାୟକ ଓ ଅପ୍ରୀତିକର ସ୍ମୃତିରେ ଜଡ଼ିତ, ତାହା କେତେ ରାଜା, ଜମିଦାର ନବାବ ଓ ସର୍ଦ୍ଦାରମାନଙ୍କର ଅବିମୃଶ୍ୟକାରିତା, କେତେ କୁଳାଙ୍ଗାର ଉମିଚାନ୍ଦ, ମୀରଜାଫରଙ୍କର ଦେଶଦ୍ରୋହିତା, ମାତୃଦ୍ରୋହିତା ଓ ବିଶ୍ୱାସଘାତକତା, ପୁଣି ଭାରତବାସୀଙ୍କର କେତେ ଅଦୂରଦର୍ଶିତା ଓ ନିଶ୍ଚେଷ୍ଟତାର ଉଦାହରଣରେ କଳଙ୍କିତ । ତାହାର ସୁବିସ୍ତୃତ ଆଲୋଚନା ଅବାନ୍ତର ହେଲେ ବି ସଶସ୍ତ୍ର ମୁକ୍ତିସଂଗ୍ରାମର ରକ୍ତରଂଜିତ ଇତିହାସ ବର୍ଣ୍ଣନା କରିବା ପୂର୍ବରୁ ସେ ସଂପର୍କରେ ସମ୍ୟକ୍ ଆଲୋଚନା କରିବା ଅବାନ୍ତର ହେବ ନାହିଁ ।

ବେପାର କରିବାକୁ ଆସି ଇଂରେଜମାନେ ଭାରତବର୍ଷରେ କିପରି କ୍ରମେ କ୍ରମେ ନିଜ ଆସ୍ଥାନ ଜମେଇ ନେଲେ ଏବଂ ମାତ୍ର ଶହେ ବର୍ଷ ଭିତରେ ଏଠାରେ କିପରି ନିଜର ଶାସନକର୍ତ୍ତୃତ୍ୱ ପ୍ରତିଷ୍ଠାକଲେ ତାହାର ଇତିହାସ ବଡ଼ କରୁଣ ଓ ହୃଦୟବିଦାରକ । ଭାରତବର୍ଷ ଭଳି ଏକ ସୁପ୍ରାଚୀନ ଓ ସଭ୍ୟତା-ସଂସ୍କୃତିସଂପନ୍ନ ଦେଶକୁ ବ୍ରିଟିଶ୍ ଭଳି ଏକ ଅସଭ୍ୟ ଓ ଜଳଦସ୍ୟୁ ବ୍ୟବସାୟୀ ଜାତି କିପରି ପଦାନତ କଲା ତା'ର ଅସଂଖ୍ୟ କାରଣ ରହିଛି । କିନ୍ତୁ ସେଥିମଧ୍ୟରୁ ଦୁଇଟି କାରଣ ହେଲା — ରାଜା ଓ ନବାବମାନଙ୍କର ସ୍ୱାର୍ଥପରତା ଏବଂ ଇଂରେଜ ବଣିକମାନଙ୍କ ପ୍ରତି ସେମାନଙ୍କର ଅହେତୁକ ଉଦାରତା । ତାତ୍କାଳିକ ଓ ସାମୟିକ ଲାଭର ଲୋଭରେ ସେମାନେ ସେମାନଙ୍କର ସ୍ୱାଧୀନତା ଚିରଦିନ ପାଇଁ ହରାଇ ବସିଲେ । ବିଦେଶୀ ବଣିକମାନଙ୍କ ପ୍ରତି ଉଦାରତା ପ୍ରଦର୍ଶନ ଭାରତୀୟ ନରେଶମାନଙ୍କର ଏକ ସାଧାରଣ ପ୍ରବୃତ୍ତି ଥିଲା । ଏପରିକି ଆଉରଙ୍ଗଜେବ୍ ଭଳି ଜଣେ ନିଷ୍ଠୁର ଓ ଅନୁଦାର ମୋଗଲ ସମ୍ରାଟର ହୃଦୟ ମଧ୍ୟ ଏହି ବିଦେଶୀମାନଙ୍କ ପ୍ରତି ଅତ୍ୟଧିକ ସହାନୁଭୂତିଶୀଳ ଥିବାର ପ୍ରମାଣ ରହିଛି । କଲିକତାରେ କେବଳ ଗୋଦାମଘର ତିଆରି କରିବାର ଅନୁମତି ନେଇଥିବା ଇଂରେଜମାନେ ଯେତେବେଳେ ଏକ ସୁଦୃଢ଼ ଦୁର୍ଗ ତିଆରି କରିବାକୁ ବସିଲେ ଏବଂ ସ୍ଥାନୀୟ ମୋଗଲ କର୍ମଚାରୀମାନେ ଯେତେବେଳେ ମୋଗଲ ସମ୍ରାଟଙ୍କ ନିକଟରେ ଏ ସଂପର୍କରେ ଅଭିଯୋଗ କଲେ, ସେତେବେଳେ ଇଂରେଜମାନଙ୍କୁ ତାଗିଦ୍ କରିବା ପରିବର୍ତ୍ତେ ଆଉରଙ୍ଗଜେବ୍ ଓଲଟି ନିଜ କର୍ମଚାରୀମାନଙ୍କୁ ତାଗିଦ୍ କରି କହିଲେ, "ୱେ ବେଚାରେ ପରଦେଶୀ, ବହୁତ ଦୂରସେ ଆୟେ ହେଁ ଔର ବହୁତ ମେହେନତୀ ହେଁ !" (୧) ଇଂରେଜୀ ଐତିହାସିକ କର୍ଣ୍ଣେଲ ମାଲେସନଙ୍କ ଭାଷାରେ, "ଭାରତୀୟ ରାଜାମାନଙ୍କର ଇଂରେଜମାନଙ୍କ ପ୍ରତି ଅକୃତ୍ରିମ ଶ୍ରଦ୍ଧା ଓ ବିଶ୍ୱାସ ଯୋଗୁଁ ସେମାନେ ଶେଷରେ ଭାରତୀୟମାନଙ୍କୁ ତଡ଼ି ଏଠାରେ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ଯେଉଁ ପଲାସୀ ଯୁଦ୍ଧରେ ସିରାଜୌଦ୍ଦଲାଙ୍କର ପରାଜୟ ପରେ ଏ ଦେଶରେ ଇଂରେଜ ସାମ୍ରାଜ୍ୟର ମୂଳଦୁଆ ପଡ଼ିଲା, ସେଠାରେ ଇଷ୍ଟଇଣ୍ଡିଆ କମ୍ପାନୀର ଗୋଟିଏ ପେନି ସୁଦ୍ଧା ଖର୍ଚ୍ଚ ହୋଇ ନାହିଁ । ସିରାଜୌଦ୍ଦଲାଙ୍କର ସରଳତା ଓ ଉଦାରତା ମଧ୍ୟ ବ୍ରିଟିଶ୍ ବିଜୟର ଅନ୍ୟ ଏକ କାରଣ ହେଲା । ସିରାଜୌଦ୍ଦଲାଙ୍କର

(୧) ସୁନ୍ଦରଲାଲ — ଭାରତମେ ଅଙ୍ଗରେଜୀ ରାଜ - ପୃଷ୍ଠା-୬୨

କଲିକତା ବିଜୟ ପରେ ଅଭିଯୁକ୍ତ ଇଂରେଜମାନଙ୍କର ବିଚାର ପାଇଁ ଫୋର୍ଟଉଇଲିୟମ୍ ଦୁର୍ଗ ଭିତରେ ଏକ ଦରବାର ବସିଲା ଏବଂ ବନ୍ଦୀ ଇଂରେଜମାନଙ୍କୁ ନବାବଙ୍କ ଆଗରେ ହାଜର କରାଗଲା । ସେମାନେ ସମସ୍ତେ ନବାବଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ । ଏ ସଂପର୍କରେ ଜଣେ ଐତିହାସିକ ଲେଖିଛନ୍ତି, ''ଯେତେବେଳେ ହଲ୍‌ଓ୍ୱେଲଙ୍କୁ (ଫୋର୍ଟଉଇଲିୟମ୍ ଦୁର୍ଗର ମୁଖ୍ୟ) ହାତକଡ଼ି ଲଗାଇ ନବାବଙ୍କ ଆଗରେ ପେଶ୍ କରାଗଲା, ନବାବ ସଙ୍ଗେ ସଙ୍ଗେ ହାତକଡ଼ି ଖୋଲିଦେବାକୁ ନିର୍ଦ୍ଦେଶ ଦେଲେ ଏବଂ ହଲ୍‌ଓ୍ୱେଲଙ୍କୁ ଶପଥ କରି କହିଲେ ଯେ ତୁମର ତଥା ତୁମର ସାଥୀମାନଙ୍କର ମୁଣ୍ଡର କେଶ ମଧ୍ୟ କେହି ସ୍ପର୍ଶ କରିପାରିବେ ନାହିଁ । (୧)

ପଲାସୀ ବିଜୟର ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି– ଏହା ଭାରତୀୟମାନଙ୍କର ଜୀବନ ବିନିମୟରେ ହୋଇଥିଲା, ଅର୍ଥାତ୍ ଇଂରେଜମାନେ ଭାରତୀୟ ସୈନ୍ୟମାନଙ୍କ ସାହାଯ୍ୟରେ ଭାରତୀୟମାନଙ୍କୁ ପରାଜିତ କରିବାକୁ ସମର୍ଥ ହୋଇଥିଲେ । ଉଦାହରଣସ୍ୱରୂପ ଦାକ୍ଷିଣାତ୍ୟ ଯୁଦ୍ଧରେ (୧୭୪୪-୫୪) ମାତ୍ର ତିନି ଶହ ଗୋରାସୈନ୍ୟ ଯୋଗଦେଇଥିବା ସ୍ଥଳେ ସେଥିରେ ଭାରତୀୟ ସୈନ୍ୟଙ୍କ ସଂଖ୍ୟା ଥିଲା ଚାରି ହଜାର । ପଲାସୀ ଯୁଦ୍ଧରେ କ୍ଲାଇବ୍ ମାତ୍ର ନଅ ଶହ ପଚାଶ ଗୋରା ପଦାତିକ ସୈନ୍ୟ ନେଇ ବିଜୟ ହାସଲ କରିଥିଲେ ଏବଂ ସେହି ସ୍ୱଳ୍ପସଂଖ୍ୟକ ଗୋରା ସୈନ୍ୟଙ୍କୁ ସାହାଯ୍ୟ କରୁଥିଲେ ଦୁଇ ହଜାର ଏକ ଶହ ଭାରତୀୟ ସୈନ୍ୟ । ଐତିହାସିକ ତାରାଚାନ୍ଦଙ୍କ ମତରେ, ''ଏତେ ଶସ୍ତାରେ ଏଡ଼େ ବିରାଟ ସାମ୍ରାଜ୍ୟ ପ୍ରତିଷ୍ଠାର ପଟାନ୍ତର ଇତିହାସରେ ନାହିଁ ।'' ପଲାସୀ ଯୁଦ୍ଧରେ ମାତ୍ର ସାତ ଜଣ ୟୁରୋପୀୟ ସୈନ୍ୟ ନିହତ ଓ ସତର ଜଣ ଆହତ ହୋଇଥିଲେ । ଅର୍ଥାତ୍ ସାତ ଜଣ ଗୋରା ସୈନ୍ୟଙ୍କ ପ୍ରାଣ ବିନିମୟରେ ଇଂରେଜମାନେ ଭାରତବର୍ଷର ସବୁଠାରୁ ଉର୍ବରଶାଳୀ ଓ ସାଢ଼େ ପଚିଶ ନିୟୁତ ଟଙ୍କା ବାର୍ଷିକ ଆୟ ହେଉଥିବା ବଙ୍ଗ, ବିହାର, ଓଡ଼ିଶା ପ୍ରଦେଶକୁ ଲାଭ କରିଥିଲେ ଏବଂ ଏହିଠାରେ ଆସ୍ଥାନ ଜମେଇସାରି ସେମାନେ ସମଗ୍ର ଦେଶକୁ ଗ୍ରାସ କରିଥିଲେ ।

ପଲାସୀ ପରେ ଶହେ ବର୍ଷର ଇତିହାସ ଅଶ୍ରୁସିକ୍ତ ଓ ବେଦନାଦାୟକ ଏବଂ ଏହି ଶହେ ବର୍ଷ ଭିତରେ ସମଗ୍ର ଭାରତ ହୋଇଛି ଶୃଙ୍ଖଳବଦ୍ଧ । ସାମରିକ ଦୃଷ୍ଟିରେ ଏହାର ଗାଥା ବି ବଡ଼ କୌତୂହଳଜନକ । ଏହାର ପ୍ରତ୍ୟେକ ଯୁଦ୍ଧରେ ମୁଖ୍ୟଯୋଦ୍ଧା ହୋଇଛନ୍ତି ଭାରତୀୟ । ''ସେ ସମୟର ଘଟଣାକୁ ଆଜି ଐତିହାସିକ ସିନା କଲମ କାଳିରେ ଆଖିର ଲୁହ ମିଶାଇ ଲେଖିବ । ସେତେବେଳେ ରାଜାମାନଙ୍କ ଅଧୀନରେ ଫରାସୀ, ଜର୍ମାନୀ ଓ ଇଂରେଜ ଜାତିର ଲୋକ ମଧ୍ୟ ବେତନଭୋଗୀ ହୋଇ ସୈନ୍ୟବିଭାଗରେ କାମ କରୁଥିଲେ । ବଡ଼ ଗଡ଼ଜାତ ଦୂରର କଥା, ସମ୍ବଲପୁର ଭଳି ଛୋଟ ରାଜ୍ୟର ରଜା ମଧ୍ୟ ଜର୍ମାନୀ ଓ ଫରାସୀ କର୍ମଚାରୀ ସୈନ୍ୟବିଭାଗରେ ରଖିଥିବା କଥା ପାଠକ ମଟଙ୍କ

(୧) James Mill– History of India- Vol. III Page-117

ଭ୍ରମଣ ବୃତ୍ତାନ୍ତରୁ ଜାଣିଥିବେ । ସିନ୍ଧିଆଙ୍କ ଅଧୀନରେ ଅନେକ ଇଂରେଜ ସୈନ୍ୟବିଭାଗରେ କାମକରୁଥିଲେ, ମାତ୍ର ଯେତେବେଳେ ଇଂରେଜଙ୍କ ସାଙ୍ଗରେ ଯୁଦ୍ଧଲାଗେ, ସେତେବେଳେ ତାଙ୍କର ଇଂରେଜ କର୍ମଚାରୀଯାକ କାମ ଛାଡ଼ି ଚାଲିଯା'ନ୍ତି । ଏପରିକି ଯେଉଁ ଆଙ୍ଗ୍ଲୋ-ଇଣ୍ଡିଆନ୍‌ମାନେ କାମ କରୁଥିଲେ ସେମାନେ ମଧ ପାଣିଠାରୁ ରକ୍ତ ବେଶୀ ବହଳିଆ ବୋଲି ପ୍ରମାଣ କରି କାମ ଛାଡ଼ି ଚାଲିଗଲେ । ମାତ୍ର ଅନ୍ୟ ଦିଗରେ ଦୃଶ୍ୟ କ'ଣ ? ମରହଟ୍ଟାମାନଙ୍କଦ୍ୱାରା ନିଯୁକ୍ତ ହୋଇ ଯେଉଁ ଧର୍ମ, ଯେଉଁ ଜାତି, ଯେଉଁ ଦେଶର ଲୋକ ଯୁଦ୍ଧ କରୁଥିଲେ ସେମାନଙ୍କ ବିରୋଧରେ ଇଂରେଜମାନଙ୍କଦ୍ୱାରା ନିଯୁକ୍ତ ହୋଇ ସେହି ଧର୍ମ, ସେହି ଜାତି ଓ ସେହି ଦେଶରେ ଲୋକେ ଯୁଦ୍ଧ କରୁଥିଲେ । ଏହାହିଁ ଭାରତର ପୁରାତନ ରୋଗ ଓ ସେଥିରୁ ଆଜିଯାଏ ଦେଶ ମୁକ୍ତହୋଇ ନାହିଁ । (୧)

ଭାରତୀୟ ରାଜା-ମହାରାଜା ଓ କମ୍ପାନୀ ଭିତରେ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ନେଇ ଆକାଶପାତାଳ ପାର୍ଥକ୍ୟ ଥିଲା । ରାଜା-ମହାରାଜା ଲଢୁଥିଲେ ନିଜପାଇଁ ଓ ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ । କିନ୍ତୁ କମ୍ପାନୀ ଲଢୁଥିଲା ତା'ର ମାର୍କେଟ ପାଇଁ ଓ ଇଂଲଣ୍ଡ ପାଇଁ ଏକ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ । ଫଳରେ ଯୁଦ୍ଧରେ କଂପାନୀର ପରାଜୟ ହେଲେ ତାହାର କିଛି କ୍ଷତି ହେଉ ନ ଥିଲା । କିନ୍ତୁ ଭାରତୀୟମାନଙ୍କର ପରାଜୟର ଅର୍ଥ ହେଉଥିଲା ଭାରତର ଗୋଟିଏ ଗୋଟିଏ ଅଂଶର ସ୍ୱାଧୀନତା ଲୋପ । ପଲାସୀର ପରାଜୟ ଫଳରେ ବଙ୍ଗ, ବିହାର, ଓଡ଼ିଶାର ପତନ । ଶ୍ରୀରଙ୍ଗପତ୍ତନ ଯୁଦ୍ଧରେ ଆମେ ମହୀଶୂରକୁ ହରାଇଲୁ । ସେହିପରି ଅସେୟ, ଆରଗାଁ ଓ ଅଲିଓ୍ୟାଲ୍ ଏବଂ ସୋବ୍ରାଓଁ ଯୁଦ୍ଧରେ ପରାଜୟ ଫଳରେ ହୋଲକାର, ସିନ୍ଧିଆ, ଭୋନ୍‌ସ୍‌ଲେ ଓ ଶିଖ୍ ରାଜ୍ୟ ଚିରଦିନ ପାଇଁ ସେମାନଙ୍କର ସ୍ୱାଧୀନତା ହରାଇଲେ ।

ଏକ ଦିଗରେ ଭାରତୀୟମାନଙ୍କ ମଧ୍ୟରେ ନ ଥିଲା କୌଣସି ଜାତୀୟତା କିମ୍ବା ସମୂହସ୍ୱାର୍ଥର ପ୍ରଶ୍ନ । ସୁତରାଂ ପରିଣତି କଥା ବିଚାର ନ କରି ସେମାନେ ଆରମ୍ଭ କରିଦେଇଥିଲେ ଆତ୍ମକଳହ ଏବଂ ପରସ୍ପରକୁ ଜବଦ କରିବାକୁ ସେମାନେ ଇଂରେଜ ଓ ଫରାସୀମାନଙ୍କ ପାଖରେ ଶରଣ ପଶିବାକୁ ଲଜ୍ଜାବୋଧ କଲେନାହିଁ । ପଲାସୀ ବିଜୟ ପରେ ଇଷ୍ଟଇଣ୍ଡିଆ କଂପାନୀର ବୋର୍ଡ଼ ଅଫ୍ ଡାଇରେକ୍‌ଟର୍‌ସ ତାଙ୍କର ଭାରତୀୟ କର୍ମଚାରୀମାନଙ୍କୁ ଯଥାର୍ଥରେ ନିର୍ଦ୍ଦେଶ ଦେଇଥିଲେ, "It is not for the company to take the part of unifiers in Indosthan. We wish to see the Indian princes remain as check upon one another without our interfering." ହିନ୍ଦୁସ୍ଥାନର ସଂହତି ପ୍ରତିଷ୍ଠାକରିବା ଦାୟିତ୍ୱ କମ୍ପାନୀର ନୁହେଁ । ଆମର ବିନା ହସ୍ତକ୍ଷେପରେ ଭାରତୀୟ ରାଜାମାନେ ଯେପରି ପରସ୍ପରକୁ ଦବେଇ

(୧) ଓଡ଼ିଶା ଇତିହାସ (୨ୟ ଭାଗ) ଡକ୍ଟର ହରେକୃଷ୍ଣ ମହତାବ । – ପୃଷ୍ଠା- ୯୩

ରଖନ୍ତି, ତାହା ଆମର ଲକ୍ଷ୍ୟ ହେବା ଉଚିତ ।'' ୧୬୦୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ରାଣୀ ଏଲିଜାବେଥ୍ ଇଷ୍ଟଇଣ୍ଡିଆ କମ୍ପାନୀକୁ (For the honour of our nation, the wealth of our people) ଜାତିର ସମ୍ମାନ ଓ ଲୋକମାନଙ୍କ ସଂପଦ ବୃଦ୍ଧି କରିବା ପାଇଁ ଇଂରେଜ ସନନ୍ଦ ଦେଇଥିଲେ । କିନ୍ତୁ, ହଣ୍ଟରଙ୍କ ମତରେ କ୍ରମେ ଏହା armed sea trade on its largest scale and with fullest powers of expansion and self-defence. ''ବ୍ୟାପକ ଭାବରେ ସଶସ୍ତ୍ର ସାମୁଦ୍ରିକ ବାଣିଜ୍ୟ ଏବଂ ରାଜ୍ୟସଂପ୍ରସାରଣ ଓ ଆତ୍ମରକ୍ଷା ପାଇଁ ପୂର୍ଣ୍ଣକ୍ଷମତାପ୍ରାପ୍ତ ଏକ ରାଜନୈତିକ ବ୍ୟବସାୟୀ ଅନୁଷ୍ଠାନରେ ପରିଣତ ହେଲା । ଏହିପରି ଭାବରେ ଏକ ବ୍ୟବସାୟୀ ପ୍ରତିଷ୍ଠାନ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ବିସ୍ତାରର ପ୍ରତିଷ୍ଠାନ ପାଲଟିଗଲା ।

❒ ❒ ❒

## ଅଧ୍ୟାୟ - ତିନି

# ବିକ୍ଷୁବ୍ଧ ଭାରତ

ପଲାସୀ ଯୁଦ୍ଧ (୧୭୫୭) ଠାରୁ ୧୮୫୭ର ମହାବିଦ୍ରୋହ ପର୍ଯ୍ୟନ୍ତ ପ୍ରାୟ ଶହେ ବର୍ଷକାଳ ଭାରତରେ ଇଂରେଜ ଶାସନର ଯେଉଁ କ୍ରମବିକାଶ ହୋଇଥିଲା ତା'ର ବିସ୍ତୃତ ଆଲୋଚନା କରିବାର କ୍ଷେତ୍ର ଏଠାରେ ସୀମାବଦ୍ଧ; କିନ୍ତୁ ଇଂରେଜ ଶାସନ ବିରୋଧରେ ଆରମ୍ଭରୁ ଭାରତୀୟମାନେ କିପରି ବିଦ୍ରୋହର ସ୍ୱର ଉତ୍ତୋଳନ କରିଥିଲେ ତାହାର ସମ୍ୟକ୍ ଆଲୋଚନା କରିବା ଏହି ପରିଚ୍ଛେଦର ଉଦ୍ଦେଶ୍ୟ । ଭାରତୀୟମାନଙ୍କର ଯୁଗ ଯୁଗର ଚାଲିଚଳନ, ଆଚାର ବ୍ୟବହାର, ଧର୍ମୀୟ ବିଶ୍ୱାସ ଓ ସଂସ୍କାର ସହ ଏକ ବିଜାତୀୟ ଓ ଅସଭ୍ୟ ମଧ୍ୟଯୁଗୀୟ ସଂସ୍କୃତିର ଯେଉଁ ମୁହାଁମୁହିଁ ସଂଘର୍ଷ ହେଲା, ସେଥିରେ ଜନବିଦ୍ରୋହ ବ୍ୟାପକ ଜନଯୁଦ୍ଧରେ ପରିଣତ ହେବାକୁ ଓ ଇଂରେଜ ଶାସନକୁ ଏ ଦେଶରୁ ମୂଳୋତ୍ପାଟିତ କରିବାକୁ ପ୍ରାୟ ଦେଢ଼ ଶହ ବର୍ଷ ଲାଗିଲା । ଇଂରେଜ୍ ଶାସନର ପ୍ରକୃତ ସ୍ୱରୂପ ଏଭଳି ଧୀରେ ଧୀରେ ପ୍ରକାଶ ପାଉଥିଲା ଏବଂ ପ୍ରାଚୁର୍ଯ୍ୟ ଭିତରେ ଜୀବନଯାପନ କରୁଥିବା ଶାନ୍ତିପ୍ରିୟ ଭାରତବାସୀ ତା'ର ଭୟାବହତା ଉପଲବ୍ଧିକରି ବିଦ୍ରୋହର ଖଡ୍ଗ ଉତ୍ତୋଳନ କରିବାକୁ ଏତେ ଦୀର୍ଘଦିନ ଲାଗିଲା ଯେ ସେଥିପାଇଁ ସେମାନଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିଲା । (The manners in which the English people ventured to India's shore, waited patiently for a hundred and fifty years, plying their trade as humble merchants, till its political fortunes began to wane and then subjugated the country is an amazing phenomenon of human History. (1))

ଇଂରେଜ ଶାସନକୁ ଖୋଲାଖୋଲି ଚାଲେଂଜ୍ କରି ଏହାର ନିଷ୍ଠୁରତା ଓ ଜାଲିଆତିର ଶିକାର ହୋଇଥିବା ନନ୍ଦକୁମାରଙ୍କୁ ଐତିହାସିକମାନେ ସହିଦର ସମ୍ମାନ ଦିଅନ୍ତି । "ଇଷ୍ଟଇଣ୍ଡିଆ କଂପାନୀର ସାମାନ୍ୟ କିରାଣି ଓ ପରେ ବଙ୍ଗ ନବାବଙ୍କ ଦରବାରରେ କଂପାନୀ ପକ୍ଷରୁ ସହକାରୀ ଓକିଲ କାର୍ଯ୍ୟ କରୁଥିବା ୱାରେନ୍ ହେଷ୍ଟିଙ୍ଗ୍ସ କିପରି ପ୍ରଥମେ ବଙ୍ଗର ଓ ପରେ କଂପାନୀ ଅଧିକୃତ ସମସ୍ତ ଅଞ୍ଚଳର ଗଭର୍ଣ୍ଣର ଜେନେରାଲ୍ ହେଲେ,

(1) Tarachand – The History of Freedom Movement in India . Vol - I, Page- 196

ତାହାର ବର୍ଣ୍ଣନା ଏଠାରେ ନିଷ୍ପ୍ରୟୋଜନ । କିନ୍ତୁ ଜାଲ୍, ଜୁଆଚୋରି, ଫିସାଦୀ, ମିଥ୍ୟା, କପଟତା ଓ କୃତଘ୍ନତା ଯେ ଏହି ସାଫଲ୍ୟର ଚାବିକାଠି, ଏ ବିଷୟରେ ପ୍ରାୟ ସବୁ ଐତିହାସିକ ଏକମତ । କୁହାଯାଏ ଯେ ମୁର୍ଶିଦାବାଦର ନାଏବ ମହମ୍ମଦ ରଜା ଖାଁଙ୍କୁ ଜବଦ କରିବାକୁ ହେଷ୍ଟିଙ୍ଗ୍‌ସ ପ୍ରଥମେ ନନ୍ଦ କୁମାରଙ୍କ ସାହାଯ୍ୟ ନେଇଥିଲେ ଏବଂ ପରେ ହେଷ୍ଟିଙ୍ଗ୍‌ସଙ୍କ ସହ ତାଙ୍କର ମତଭେଦ ହେବାରୁ ସେ ତାଙ୍କ ବିରୋଧରେ ଗଲେ । ସେ ଯାହାହେଉ ନନ୍ଦକୁମାର ବ୍ରିଟିଶ୍ ଜାଲିଆତିର ଶିକାର ହୋଇଥିବାରୁ କେତେକାଂଶରେ ଇତିହାସରେ ସହିଦର ସମ୍ମାନ ପାଇଛନ୍ତି । ନନ୍ଦକୁମାର ଇଷ୍ଟଇଣ୍ଡିଆ କଂପାନୀର କାଉନ୍‌ସିଲ ନିକଟରେ ଅଭିଯୋଗ କରିଥିଲେ ଯେ ହେଷ୍ଟିଙ୍ଗ୍‌ସ ବଙ୍ଗଳାର ରାଜା ଜମିଦାରଙ୍କଠାରୁ ପ୍ରଚୁର ଟଙ୍କା ଲାଞ୍ଚ ନେଇଛନ୍ତି, ଏପରିକି ମୁର୍ଶିଦାବାଦର ରାଜମାତା ମୁନିବେଗମଙ୍କଠାରୁ ବଳପୂର୍ବକ ଅର୍ଥ ସଂଗ୍ରହ କରିଅଛନ୍ତି ଏବଂ ମିଥ୍ୟା ପ୍ରତିଶ୍ରୁତି, କୃତଘ୍ନତା ଓ ଜୁଆଚୋରିରେ ଲିପ୍ତ ଅଛନ୍ତି । ଏହି ଅଭିଯୋଗପତ୍ରରେ ସମସ୍ତଙ୍କ ନାମଧାମ ଏବଂ ସମସ୍ତ ପ୍ରମାଣ ମଧ ସେ ଦାଖଲ କରିଥିଲେ । କାଉନ୍‌ସିଲର ସଦସ୍ୟମାନେ ଏହି ଅଭିଯୋଗଗୁଡ଼ିକର ସତ୍ୟତାର ମଧ ପ୍ରମାଣ ପାଇଥିଲେ । କିନ୍ତୁ ହେଷ୍ଟିଙ୍ଗ୍‌ସଙ୍କ ବିରୋଧରେ କିଛି କରାଗଲା ନାହିଁ । ଓଲଟି ହେଷ୍ଟିଙ୍ଗ୍‌ସଙ୍କ ପ୍ରରୋଚନାରେ ନନ୍ଦକୁମାରଙ୍କ ନାମରେ ଏକ କପୋଳକଳ୍ପିତ ଜାଲ୍‌ଦଲିଲର ଅଭିଯୋଗ ଅଣାଗଲା କଲିକତାର ସୁପ୍ରିମ୍ କୋର୍ଟରେ । ଚିଫ୍ ଜଷ୍ଟିସ୍ ଥିଲେ ହେଷ୍ଟିଙ୍ଗ୍‌ସଙ୍କର ବନ୍ଧୁ ସାର୍‌ଏଲିଜା ଏମ୍ପେ । ସେ ହେଷ୍ଟିଙ୍ଗ୍‌ସଙ୍କୁ ରକ୍ଷାକରିବାକୁ ଏବଂ ନନ୍ଦକୁମାରଙ୍କୁ ଦଣ୍ଡ ଦେବାକୁ ଯେମିତି ବଦ୍ଧପରିକର ଥିଲେ । କିନ୍ତୁ ସେତେବେଳେ ଜାଲ୍‌ଦଲିଲର ଅପରାଧର ଦଣ୍ଡବିଧାନ ପାଇଁ ଭାରତୀୟ ବା କମ୍ପାନୀ ଆଇନ୍‌ରେ ମୃତ୍ୟୁଦଣ୍ଡର ବ୍ୟବସ୍ଥା ନ ଥିବା ସତ୍ତ୍ୱେ ଇଂଲଣ୍ଡରେ ଚଳୁଥିବା ଆଇନ ଅନୁସାରେ ୧୭୭୭ ଅଗଷ୍ଟ ୫ ତାରିଖରେ ନନ୍ଦକୁମାରଙ୍କୁ ଫାଶୀ ଦିଆଗଲା । ଇଂରେଜ ଐତିହାସିକ ମିଲ୍‌ସାହେବ ଏ ସମ୍ପର୍କରେ ଲେଖିଛନ୍ତି, "ନନ୍ଦକୁମାରଙ୍କ ବିରୋଧରେ ଅଣାଯାଇଥିବା ଜାଲ୍‌ଦଲିଲ ଅଭିଯୋଗ ସଂପୂର୍ଣ୍ଣ ମିଥ୍ୟା ଓ ଭିତ୍ତିହୀନ ଥିଲା" (୧) ଭାରତରେ ଇଂରେଜ ଶାସନର ସର୍ବମୟକର୍ତ୍ତାଙ୍କ ବିରୋଧରେ ପ୍ରକାଶ୍ୟ ଅଭିଯୋଗ କରିବାର ସତ୍‌ସାହସ ଥିବା ମହାରାଜା ନନ୍ଦକୁମାର ଅମ୍ଲାନ ବଦନରେ ଫାଶୀଦଣ୍ଡକୁ ଗ୍ରହଣ କରିଥିଲେ । ମିଲ୍‌ସାହେବ ପୁଣି ଲେଖିଛନ୍ତି, "ମହାରାଜା ନନ୍ଦକୁମାର ଅପୂର୍ବ ଶାନ୍ତି ଓ ଧୈର୍ଯ୍ୟ ସହକାରେ ମୃତ୍ୟୁର ସମ୍ମୁଖୀନ ହୋଇଥିଲେ ।" ଏହିଭଳି ଭାବରେ ମୁକ୍ତିସଂଗ୍ରାମର ପ୍ରାକ୍‌କାଳରେ ବୀର ନନ୍ଦକୁମାର ସହିଦର ମୃତ୍ୟୁବରଣ କଲେ ।

ତା'ପରେ ପ୍ରକାଶ୍ୟ ବିଦ୍ରୋହ କଲେ ମୀରକାଶିମ୍ । କୃତଘ୍ନ ମୀରଜାଫରଙ୍କୁ ବଙ୍ଗ ସିଂହାସନରୁ ବିତାଡ଼ିତ କରି ମୀରକାଶିମ ବଙ୍ଗର ନବାବ ନାଜିମ ଦାୟିତ୍ୱ ଗ୍ରହଣ

(୧) ସୁନ୍ଦର ଲାଲ – ଭାରତମେ ଅଙ୍ଗରେଜୀ ରାଜ୍ (୧ମ ଭା. ପୃ- ୨୩୨)

କରିଥିଲେ । ଇଂରେଜମାନେ ପ୍ରଥମେ ତାଙ୍କୁ ବଡ଼ ନିରୀହ ମନେକରୁଥିଲେ । ହେଷ୍ଟିଙ୍ଗସଙ୍କ ଭାଷାରେ, "ଭୀରୁ ଓ ଯୁଦ୍ଧପ୍ରତି ସଂପୂର୍ଣ୍ଣ ନିସ୍ପୃହ (His timidity, the little inclination he had ever shown for war) କିନ୍ତୁ ମୀରକାଶିମଙ୍କ ସ୍ୱାଧୀନତା ପିପାସା ଓ ଇଂରେଜମାନଙ୍କ ସାମ୍ରାଜ୍ୟଲିପ୍‌ସା ପ୍ରତି ତାଙ୍କର ବିରୋଧ ତାଙ୍କୁ ଅଳ୍ପଦିନ ମଧ୍ୟରେ ଇଂରେଜମାନଙ୍କର କଟ୍ଟର ଶତ୍ରୁରେ ପରିଣତ କଲା । ନବାବ ସୁଜାଉଦ୍ଦୁଲା ଓ ସମ୍ରାଟ ସାହାଆଲାମଙ୍କ ସାହାଯ୍ୟରେ ସେ ବିଦ୍ରୋହ ଘୋଷଣା କଲେ । କିନ୍ତୁ କମ୍ପାନୀର ପ୍ରତିଆକ୍ରମଣ ଆଗରେ ସେ ବେଶୀଦିନ ତିଷ୍ଠି ପାରିଲେ ନାହିଁ । ବିପ୍ଳବୀ ମୀରକାଶିମ ଶେଷପର୍ଯ୍ୟନ୍ତ ଆତ୍ମସମର୍ପଣ ନ କରି ପଳାୟନ କଲେ ଏବଂ ସେହି ପଳାତକ ଅବସ୍ଥାରେ ସେ ୧୭୭୭ରେ ମୃତ୍ୟୁବରଣ କଲେ ।

ମୀରକାଶିମଙ୍କର ମୃତ୍ୟୁ ହେଲା ସତ୍ୟ କିନ୍ତୁ ବିହାର ଓ ଛୋଟନାଗପୁର ଲୋକେ ବିଦ୍ରୋହ କଲେ । ବଙ୍ଗଳାର ବିଷ୍ଣୁପୁର ଓ ବୀରଭୂମର ରାଜାମାନେ ସେହି ବିଦ୍ରୋହରେ ଯୋଗଦେଲେ । ସେଠାରେ ଇଂରେଜ ଶାସନ ପୂରାପୂରି ଅଚଳ ହୋଇପଡ଼ିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଶେଷରେ କମ୍ପାନୀର ସୁଶିକ୍ଷିତ ଓ ଆଧୁନିକ ସେନାବାହିନୀ ଆଗରେ ଏହି ବିଦ୍ରୋହ ଅଧିକଦିନ ତିଷ୍ଠି ପାରିଲା ନାହିଁ ।

### ଆଦିବାସୀ ବିଦ୍ରୋହ –

ବଣଜଙ୍ଗଲରେ ବାସକରୁଥିବା ଗିରିଜନମାନେ ଚିରଦିନ ସ୍ୱାଧୀନତାପ୍ରିୟ । ସେମାନଙ୍କର ପରଂପରା, ସଭ୍ୟତା ଓ ସଂସ୍କୃତି ଆରମ୍ଭରୁ ସେମାନଙ୍କୁ ଇଂରେଜ ବିରୋଧୀ କରିଦେଇଥିଲା । ବିଶେଷତଃ ଇଂରେଜୀ ଆଇନ୍‌କାନୁନ ଓ ଶୃଙ୍ଖଳା ମାନିବାକୁ ସେମାନେ ଆଦୌ ପ୍ରସ୍ତୁତ ନଥିଲେ । ଅଥଚ ଏହାସବୁ ବଳପୂର୍ବକ ସେମାନଙ୍କ ଉପରେ ଲଦି ଦିଆଯିବାକୁ ଉଦ୍ୟମ ହୋଇଥିଲା । ଫଳରେ ବାରମ୍ବାର ହୋଇଥିଲା ଆଦିବାସୀ ବିଦ୍ରୋହ ।

ମେଦିନୀପୁରର ଭୂମିଜ ବା ଚୁଆରମାନେ ବିଦ୍ରୋହ କଲେ ୧୭୬୮ରେ । ଧଳଭୂମିର ରାଜା ଜଗନ୍ନାଥ ଧଳ, କାରଲା ପାଳ, ଧୋଲକା ଓ ବଡ଼ଭୂମି ରାଜାଙ୍କ ନେତୃତ୍ୱରେ ଭୂମିଜମାନେ ଇଂରେଜଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ ଏବଂ ଖଜଣା ଦେବା ବନ୍ଦ କରିଦେଲେ । ଦେଖିବାକୁ ଗଲେ ଏହି ବିଦ୍ରୋହ ପ୍ରାୟ ୩୦ ବର୍ଷ ପର୍ଯ୍ୟନ୍ତ ଲାଗିରହିଥିଲା । ୧୮୩୨ରେ ଆଦିବାସୀ ନେତା ଗଙ୍ଗା ନାରାୟଣଙ୍କ ନେତୃତ୍ୱରେ ଏକ ବିଦ୍ରୋହ ଘୋଷିତ ହୋଇଥିଲା । ବିଦ୍ରୋହୀମାନେ ବଡ଼ବଜାରରେ ଥିବା ସରକାରୀ ଅଫିସ ଦଖଲ କରିଗଲେ । ସିଂହଭୂମିରେ ହୋ'ମାନେ ଏହି ବିଦ୍ରୋହରେ ଯୋଗ ଦେବାରୁ ଅବସ୍ଥା ବଡ଼ ଭୟଙ୍କର ହୋଇଉଠିଥିଲା । ବହୁଦିନ ଯୁଦ୍ଧ ପରେ ଇଂରେଜମାନେ କୋହ୍ଲଣ ଦଖଲ କରିଯିବାରୁ ବିଦ୍ରୋହ ଅଳ୍ପଦିନ ପାଇଁ ସ୍ତିମିତ ହୋଇଥିଲା । କିନ୍ତୁ 'ହୋ' ମାନଙ୍କୁ ସଂପୂର୍ଣ୍ଣ ପରାଜିତ କରିବା ଇଂରେଜମାନଙ୍କ ପକ୍ଷରେ ଅସମ୍ଭବ ଥିଲା । ସେମାନେ ଧଳଭୂମି ଓ ବାମନଘାଟି ଦଖଲ କରି ଛୋଟନାଗପୁର ପର୍ଯ୍ୟନ୍ତ ମାଡ଼ିଗଲେ ।

୧୮୩୧ରେ ଛୋଟନାଗପୁରର ମୁଣ୍ଡାମାନେ ମଧ୍ୟ 'ହୋ' ମାନଙ୍କ ସହ ଯୋଗଦେଇ ଏକ ଭୟାବହ ଅବସ୍ଥା ସୃଷ୍ଟି କଲେ ।

୧୮୩୧-୩୨ରେ ରାଂଚି, ସିଂହଭୂମ, ହଜାରିବାଗ, ପାଲାମୁ ଓ ମାନଭୂମରେ କୋହ୍ଲମାନେ ବିଦ୍ରୋହ କଲେ । ଫଳରେ ବ୍ୟାପକ ସୈନ୍ୟଚାଳନା କରି ଇଂରେଜମାନଙ୍କୁ ଏହି ବିଦ୍ରୋହ ଦବାଇବାକୁ ପଡ଼ିଲା । ସାନ୍ତାଳମାନେ ମଧ୍ୟ ଏହି ବିଦ୍ରୋହରେ ପଛରେ ପଡ଼ିନଥିଲେ । କମ୍ପାନୀ ପକ୍ଷରୁ ଅତ୍ୟଧିକ ହାରରେ ଖଜଣା ଆଦାୟ ଦେଖି ସାନ୍ତାଳମାନେ ବଡ଼ ବିବ୍ରତ ଓ ଉତ୍ତ୍ୟକ୍ତ ହୋଇପଡ଼ିଥିଲେ । ଫଳରେ ୧୮୩୬ରେ ବିଦ୍ରୋହ ହେଲା । ଧର୍ମନୀଖୋ ଅଞ୍ଚଳରେ ପ୍ରାୟ ୪୦୦ ଗ୍ରାମ ବିଦ୍ରୋହୀମାନେ ଦଖଲ କରି ଇଂରେଜଶାସନକୁ ସେଠାରୁ ମୂଳପୋଛ କରିଦେଲେ । ସେତେବେଳେ ଭାରତରେ ନୂଆକରି ରେଳରାସ୍ତା ତିଆରି ଚାଲିଥାଏ । ଗରିବ ସାନ୍ତାଳ ମଜୁରିଆମାନେ ରେଳରାସ୍ତାରେ କାମ କରୁଥା'ନ୍ତି । କିନ୍ତୁ ସେମାନଙ୍କର ସରଳତାର ସୁଯୋଗ ନେଇ କଂପାନୀ କର୍ମଚାରୀମାନେ ସେମାନଙ୍କୁ ନିୟମିତ ଉପଯୁକ୍ତ ମଜୁରି ଦେଲେ ନାହିଁ ବରଂ ବେଳେବେଳେ ସାନ୍ତାଳ ସ୍ତ୍ରୀଲୋକମାନଙ୍କ ପ୍ରତି ବଡ଼ ଅଶୋଭନୀୟ ବ୍ୟବହାର କଲେ । ସାନ୍ତାଳମାନେ ଆଉ ସହିପାରିଲେ ନାହିଁ । ଏହିସବୁ କାରଣରୁ ୧୮୫୫ରେ ସାନ୍ତାଳ ବିଦ୍ରୋହ ଭୟଙ୍କର ରୂପ ଧରିଥିଲା । ହଜାର ହଜାର ସାନ୍ତାଳ ଧନୁଶର ଓ ବର୍ଚ୍ଛାଧରି ଇଂରେଜମାନଙ୍କୁ ଆକ୍ରମଣ କଲେ । କିନ୍ତୁ ବଂଧୁକ ଓ ତୋପ ଆଗରେ ସେମାନେ ଅଧିକ ସମୟ ତିଷ୍ଠି ପାରିଲେ ନାହିଁ, ବିଦ୍ରୋହ ଦବିଗଲା । ଶାସନର ସୁବିଧା ପାଇଁ ସ୍ୱତନ୍ତ୍ର ସାନ୍ତାଳ ପ୍ରଗନ୍ନା ଗଠିତ ହେଲା ।

ଆସାମର ଅହମୀ ରାଜବଂଶ ସ୍ୱାଧୀନ ରାଜାରୂପେ ରହୁଥିଲେ । ଫଳରେ ଇଂରେଜମାନଙ୍କଦ୍ୱାରା ଆସାମ ଏବଂ ଅହମୀମାନଙ୍କ ସ୍ୱାଧୀନତା ଲୋପ ହେବା ଦିନଠାରୁ ସେମାନେ ବିଶେଷ ଅସନ୍ତୁଷ୍ଟ ଥିଲେ । ସୁତରାଂ ୧୮୨୮ରେ ଗନ୍ଦର କନୱାର୍‌ଙ୍କୁ ରାଜାବୋଲି ଘୋଷଣା କରି ଅହମୀମାନେ ବିଦ୍ରୋହ ଘୋଷଣା କଲେ । କିନ୍ତୁ ଇଂରେଜମାନେ ଅନାୟାସରେ ସେହି ବିଦ୍ରୋହ ଦବାଇ ଦେଇଥିଲେ । ୧୮୩୦ରେ ପୁଣି ଥରେ ବିଦ୍ରୋହ ହୋଇଥିଲା । ଏଥର ଅନ୍ୟାନ୍ୟ ଉପଜାତି– ଖାମିତି, ସିଙ୍ଗଫସ, ମୋଆମାରି, ମଣିପୁରୀ, ନାଗା, ଖାସି ଓ ଗାରୋମାନେ ମଧ୍ୟ ଏହି ବିଦ୍ରୋହରେ ଯୋଗ ଦେଲେ । ମିଳିତ ବିଦ୍ରୋହୀ ଦଳ ରଙ୍ଗପୁରଆଡ଼େ ଆଗେଇ ଚାଲିଲେ ବୀରଦର୍ପରେ ଇଂରେଜଶାସନକୁ ଲୋପ କରିବା ଉଦ୍ଦେଶ୍ୟରେ । କିନ୍ତୁ ବ୍ରିଟିଶ୍ ଶକ୍ତିର ସମ୍ମୁଖୀନ ହେବାକୁ ସେମାନେ ଅସମର୍ଥ ହେଲେ । ବିଦ୍ରୋହୀନେତା ପାଲିବଡ଼ ପୁଙ୍ଖା ଓ ଢେଉରାମ ଧରାହେଇ ଫାଶୀ ପାଇଲେ ଏବଂ ଅନ୍ୟମାନଙ୍କୁ ଦିଆଗଲା ଜେଲ୍‌ଦଣ୍ଡ ।

ଖାସି ବିଦ୍ରୋହ ମୁକ୍ତିସଂଗ୍ରାମ ଇତିହାସରେ ଅବିସ୍ମରଣୀୟ । ଖାସି ପର୍ବତାଞ୍ଚଳର ଲୋକପ୍ରିୟ ଶାସକ ତିରତ ସିଂଙ୍କୁ ପରାଜିତ କରିବା ଇଂରେଜମାନଙ୍କ ପକ୍ଷରେ ଅସମ୍ଭବ

ଥିଲା । ଇଂରେଜମାନେ ତିରତ ସିଂଙ୍କର ରାଜ୍ୟ ଭିତରଦେଇ ଏକ ରାସ୍ତା ନିର୍ମାଣ କରିବାକୁ ତାଙ୍କର ଅନୁମତି ନେଇଥିଲେ । କିନ୍ତୁ ଇଂରେଜମାନଙ୍କର୍ କାର୍ଯ୍ୟକଳାପରେ ସନ୍ଦେହ ପ୍ରକାଶ କରି ତିରତ ସିଂ ସୈନ୍ୟସାମନ୍ତ ନେଇ ତାଙ୍କ ରାଜ୍ୟ ଭିତରେ ଆଶ୍ରୟ ନେଇଥିବା ଇଂରେଜମାନଙ୍କ ଉପରେ ଅତର୍କିତ ଆକ୍ରମଣ କରିଥିଲେ । ଯୁଦ୍ଧ ହେଲା । ଯେଉଁ ଅମିତ ବିକ୍ରମ ଓ ସାହସ ସହକାରେ ତିରତ ସିଂ ଏହି ଯୁଦ୍ଧର ପରିଚାଳନା କରିଥିଲେ ତାହା ଇଂରେଜମାନଙ୍କୁ ମଧ ମୁଗ୍ଧ କରିଦେଇଥିଲା । ଯାହାହେଉ, ଶେଷରେ ବୀର ତିରତ ସିଂ ବନ୍ଦୀ ହୋଇ ଢାକାଠାରେ ନିର୍ବାସିତ ଜୀବନଯାପନ କଲେ । ତାଙ୍କର ଲୋକପ୍ରିୟତା ଦୃଷ୍ଟିରୁ ତାଙ୍କୁ ପ୍ରାଣଦଣ୍ଡ ଦେବାକୁ ଇଂରେଜମାନେ ସାହସ କରିପାରି ନ ଥିଲେ । ସେ ଏତେ ସ୍ୱାଧୀନତାପ୍ରିୟ ଥିଲେ ଯେ ଇଂରେଜମାନଙ୍କର ବଶ୍ୟତା ସ୍ୱୀକାର କରିବା ସର୍ତ୍ତରେ ତାଙ୍କୁ ତାଙ୍କର ରାଜ୍ୟ ଫେରାଇ ଦେବାକୁ ଇଂରେଜମାନେ ଯେତେବେଳେ ତାଙ୍କୁ ପ୍ରସ୍ତାବ ଦେଲେ ସେ ତାହା ଅସମ୍ମାନଜନକ ମନେକରି ଜବାବ ଦେଇଥିଲେ, "ଗୋଟାଏ ଗୋଲାମ ରାଜାର ଜୀବନ ଅପେକ୍ଷା ଜଣେ ସ୍ୱାଧୀନ ପ୍ରଜାର ମୃତ୍ୟୁ ଅଧିକ ଶ୍ରେୟସ୍କର । (୧)"

ମଧ-ଭାରତୀୟ ଭିଲ୍‌ଉପଜାତୀୟ ଲୋକେ ମଧ୍ୟ ବିଦ୍ରୋହ କରିଥିଲେ । ଆଉରଙ୍ଗାବାଦ ଓ ଖାନ୍ଦେଶ ଅଞ୍ଚଳରେ ବାସକରୁଥିବା ଭିଲ୍‌ମାନେ ଉତ୍ତର ଓ ଦକ୍ଷିଣ ଭାରତ ଭିତରେ ଥିବା ଗିରିପଥରେ ଜଗୁଆଳି ଭାବରେ କାର୍ଯ୍ୟ କରୁଥିଲେ ଏବଂ ଏହି ଗିରିପଥ ଉପରେ ଇଂରେଜମାନଙ୍କର ତୀକ୍ଷ୍ଣ ନଜର ଥିଲା । ୧୮୧୮ରେ ପହି ଅଞ୍ଚଳ ଇଂରେଜମାନଙ୍କ ଅଧୀନକୁ ଗଲା । ପୂର୍ବରୁ ମରହଟ୍ଟା ଓ ପିଣ୍ଡାରୀମାନଙ୍କ ଆକ୍ରମଣରେ ତ ସେମାନେ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲେ, ତା' ପରେ ପୁଣି ଇଂରେଜମାନଙ୍କ ଆକ୍ରମଣ ସେମାନଙ୍କୁ ବିବ୍ରତ କରିଦେଲା । ଏହି ବିଦ୍ରୋହ ଉଣାଅଧିକେ ପ୍ରାୟ ୩୦ ବର୍ଷ ଧରି ଲାଗି ରହିଥିଲା । ଏହି ବିଦ୍ରୋହକୁ ସଂପୂର୍ଣ୍ଣ ଦମନ କରିବାକୁ ଇଂରେଜମାନଙ୍କୁ ଅଜସ୍ର ଧନଜନ ବ୍ୟୟ କରିବାକୁ ପଡ଼ିଲା ।

ଭିଲମାନଙ୍କର ପ୍ରତିବେଶୀ ହେଉଛନ୍ତି କୋଲି ଉପଜାତୀୟ ଲୋକ । ସ୍ୱଭାବରେ କୋଲିମାନେ ବଡ଼ ଭୟଙ୍କର ସମରପ୍ରିୟ ଜାତି । ପୂର୍ବେ ରାଜାମାନେ ସେମାନଙ୍କୁ ଦୁର୍ଗ ରକ୍ଷକରୂପେ ନିଯୁକ୍ତ କରିଥିଲେ । ଇଂରେଜ ଆଗମନ ଓ ରାଜାମାନଙ୍କ ପରାଜୟ ଫଳରେ କୋଲିମାନଙ୍କର ସେହି ମୌଳିକ ପେଶା ବନ୍ଦ ହୋଇଗଲା । ସୁତରାଂ ବିଦ୍ରୋହ ଅନିବାର୍ଯ୍ୟ ହୋଇପଡ଼ିଲା । ୧୮୨୭, ୧୮୩୯ ଓ ୧୮୪୮ରେ କୋଲିମାନେ ବିଦ୍ରୋହ କରିଥିଲେ । ୧୮୫୦ ମସିହାରେ ଯାଇ ବିଦ୍ରୋହ ପ୍ରଶମିତ ହୋଇଥିଲା ।

ଓଡ଼ିଶାର କନ୍ଧ ବିଦ୍ରୋହ 'ଆଦିବାସୀ ବିପ୍ଳବ' ଇତିହାସରେ ବିଶେଷ ଉଲ୍ଲେଖଯୋଗ୍ୟ । ୧୮୧୫ରେ ଘୁମୁସର ରାଜା ଧନଂଜୟ ଭଞ୍ଜ ଇଂରେଜମାନଙ୍କଦ୍ୱାରା

(୧) ଡଃ ମହତାବ – ଓଡ଼ିଶା ଇତିହାସ (୨ୟ ଭାଗ)

ଗିରଫ ହେବା ଫଳରେ ଏହି ବିଦ୍ରୋହର ସୂତ୍ରପାତ ହୋଇଥିଲା । ୧୮୩୫ରେ ଘୁମୁଷର ଶାସନକୁ ଇଂରେଜମାନେ ବଳପୂର୍ବକ ଦଖଲ କରିବାରୁ ଏହି ବିଦ୍ରୋହ ତେଜିଉଠିଲା । କନ୍ଧନେତା ଦୋରାବିଶୋଇଙ୍କ ନେତୃତ୍ୱରେ କନ୍ଧମାନେ ବିଦ୍ରୋହ ଘୋଷଣା କଲେ । ଇଂରେଜସୈନ୍ୟଙ୍କ ସହ ସେମାନଙ୍କର ମୁହାଁମୁହିଁ ସଂଘର୍ଷ ହେଲା । କିନ୍ତୁ କନ୍ଧମାନେ ଦବିଗଲେ । ୧୮୪୬ରେ ଚକ୍ର ବିଶୋଇଙ୍କ ନେତୃତ୍ୱରେ ପୁଣି ବିଦ୍ରୋହାଗ୍ନି ଜଳିଉଠିଲା । ଅନୁଗୁଳ ରାଜା ବିଦ୍ରୋହୀମାନଙ୍କ ପ୍ରତି ସହାନୁଭୂତିଶୀଳ ଥିବାରୁ ଇଂରେଜମାନେ ଅନୁଗୁଳ ରାଜାଙ୍କୁ ଗବନ୍ଦ କରିବାକୁ ତାଙ୍କ ରାଜ୍ୟକୁ ଖାସ୍ କରିଦେଲେ । ଚକ୍ର ବିଶୋଇ ବୌଦରେ ଆଶ୍ରୟ ନେଇ ବାରମ୍ବାର ସୈନ୍ୟଙ୍କ ଉପରେ ଆକ୍ରମଣ କରିଥିଲେ । ସେହି ଅଭିଯୋଗରେ ବୌଦରାଜ୍ୟ ମଧ୍ୟ ଇଂରେଜ ଦଖଲକୁ ଆସିଲା । ବିପ୍ଳବୀ ଚକ୍ର ବିଶୋଇ ପଳାତକ ଜୀବନଯାପନ କରିବାକୁ ବାଧ୍ୟ ହେଲେ । ତାଙ୍କର ଶେଷଜୀବନ ସଂପର୍କରେ ବିଶେଷ କିଛି ଜଣାଯାଏ ନାହିଁ । ୧୮୫୫ରେ ବିଦ୍ରୋହରେ ସହଯୋଗ କରିଥିବା ଅଭିଯୋଗରେ ବୌଦରାଜାଙ୍କୁ ଗିରଫ କରାଯାଇ ହଜାରୀବାଗ ଜେଲକୁ ପଠାଯାଇଥିଲା ।

### ଓଡ଼ିଶାରେ ଗଣବିପ୍ଳବ –

୧୮୦୩ ମସିହାରେ ଇଂରେଜମାନଙ୍କଦ୍ୱାରା ଓଡ଼ିଶା ଅଧିକୃତ ହେଲା । ସେତେବେଳେ ଓଡ଼ିଶା ମରହଟ୍ଟାମାନଙ୍କ ଶାସନାଧୀନ ଥିଲା, କିନ୍ତୁ ମରହଟ୍ଟା ଶାସକ ରଘୁଜୀ ଭୋନ୍ସଲା ଓଡ଼ିଶାର ସୁରକ୍ଷା ପାଇଁ ବିଶେଷ ଦୃଷ୍ଟି ଦେଇ ନ ଥିଲେ ଅଥଚ ସେତେବେଳକୁ ଓଡ଼ିଶାର ଦକ୍ଷିଣରେ ଥିବା ମାଦ୍ରାଜ ଏବଂ ଉତ୍ତରରେ ଥିବା ବଙ୍ଗପ୍ରଦେଶରେ ଇଂରେଜଶାସନ ଦୃଢ଼ଭାବେ ପ୍ରତିଷ୍ଠିତ ହୋଇସାରିଥିଲା । ଫଳରେ ଓଡ଼ିଶା ଦଖଲ କରିବାକୁ ଇଂରେଜମାନଙ୍କ ପକ୍ଷରେ ଅତି ସହଜ ହୋଇଥିଲା । "ଇଂରେଜମାନଙ୍କୁ ଓଡ଼ିଶା ବିଜୟ ପାଇଁ ଯୁଦ୍ଧ କରିବାକୁ ପଡ଼ି ନାହିଁ ବୋଲି କହିଲେ ଚଳେ । ଦୁଇ ତିନି ମାସ ଭିତରେ ଓଡ଼ିଶା ବିଜୟ ଶେଷ ହୋଇଥିଲା । ଏଥିରେ ଇଂରେଜମାନଙ୍କର ମୋଟେ ତିନି ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା ଓ ୫ ଜଣ ମାତ୍ର ସୈନ୍ୟ ନିହତ ହୋଇଥିଲେ ।" କିନ୍ତୁ ବ୍ରିଟିଶ୍ ବିଜୟର ପ୍ରଥମାବସ୍ଥାରୁହିଁ ଇଂରେଜଶାସନ ବିରୋଧରେ ଓଡ଼ିଶାବାସୀଙ୍କର ଅସନ୍ତୋଷ ପ୍ରକଟିତ ହୋଇଥିଲା । ବିଶେଷତଃ ଖୋର୍ଦ୍ଧାରେ ଥିବା ପୁରୀରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ପରାଜୟ ଓ ଶ୍ରୀଜଗନ୍ନାଥ ମନ୍ଦିର ଉପରେ ଇଂରେଜମାନଙ୍କର କର୍ତ୍ତୃତ୍ୱ ଜାରି ହେବା ଫଳରେ ଅସନ୍ତୋଷ କୁହୁଳିବାକୁ ଲାଗିଲା । ପୁରୀ 'ଠାକୁର ରାଜା'ଙ୍କୁ ଓଡ଼ିଶା ଲୋକେ 'ଚଳନ୍ତିବିଷ୍ଣୁ' ଭାବରେ ପୂଜା କରୁଥିଲେ । ସୁତରାଂ ସେ ଇଂରେଜମାନଙ୍କଦ୍ୱାରା ବନ୍ଦୀ ହେବା ଓ ହିନ୍ଦୁଧର୍ମାବଲମ୍ବୀମାନଙ୍କର ସର୍ବଶ୍ରେଷ୍ଠ ଧର୍ମମନ୍ଦିର ଶ୍ରୀମନ୍ଦିର ଉପରେ ବିଜାତୀୟ ଖ୍ରୀଷ୍ଟିଆନ ସରକାରର ହସ୍ତକ୍ଷେପକୁ ଲୋକେ ସହଜରେ ବରଦାସ୍ତ କରିପାରିଲେ ନାହିଁ ।

ଓଡ଼ିଶା ଦଖଲ ପରେ ଇଂରେଜମାନେ ଏଠାରେ ଯେଉଁ ଭୂରାଜସ୍ୱନୀତି ଜାରିକଲେ ସେଥିରେ ସାଧାରଣ ଚାଷୀ, ଜାଗିରଦାର ଓ ଜମିଦାରମାନେ ଉଚ୍ଛନ୍ନ ହୋଇଗଲେ । ଏହା ସାଙ୍ଗକୁ ପୁଣି ଲୁଣମରା ଅଧିକାର ଉପରେ ଇଂରେଜମାନଙ୍କର ଏକଚାଟିଆ କର୍ତ୍ତୃତ୍ୱ ଅବସ୍ଥାକୁ ବଡ଼ ସଂଗୀନ କରିଦେଲା ।

ଓଡ଼ିଶାର ଧର୍ମବିଶ୍ୱାସର କେନ୍ଦ୍ର ଜଗନ୍ନାଥ ମନ୍ଦିରକୁ ପ୍ରଥମେ ଇଂରେଜ ଶାସନ ଦୃଢ଼ଭାବରେ ଗ୍ରାସ କରିଥିଲା । ବନ୍ଦୋବସ୍ତ ଫଳରେ ଧନୀ ଦରିଦ୍ର ସମସ୍ତେ ସର୍ବସ୍ୱାନ୍ତ ହୋଇଗଲେ । ପରଂପରାକ୍ରମେ ଯେଉଁମାନେ ସମାଜରେ ସମ୍ମାନାସ୍ପଦ ଥିଲେ ସେମାନେ ନଗଣ୍ୟ ସଦୃଶ ପରିଗଣିତ ହେଲେ । ଧର୍ମବିଶ୍ୱାସ ମଧ୍ୟ ଶାସନ ଯନ୍ତ୍ର ଦ୍ୱାରା ନିୟନ୍ତ୍ରିତ ହେଲା । ଜୀବନର ଏପରି କୌଣସି ଅଂଶ ବାକୀ ରହିଲା ନାହିଁ, ଯାହା ବ୍ରିଟିଶ୍ ଶାସନମୁଠାର ବାହାରେ ରହିପାରିଥିଲା । ସେମାନେ ହେଲେ ବିଦେଶୀ, ଏ ଦେଶର ଚାଲିଚଳନ ସେମାନଙ୍କୁ ଜଣା ନ ଥିଲା । ତା' ଛଡ଼ା ଶାସକ ହୋଇ ଯେଉଁମାନେ ଆସିଲେ ସେମାନେ ଉଚ୍ଚ ଦରର ଲୋକ ନ ଥିଲେ । ଏସବୁ ସତ୍ତ୍ୱେ ସେମାନେ ଏ ଦେଶବାସୀଙ୍କ ସମସ୍ତ ଜୀବନକୁ ସେମାନଙ୍କ ଶାସନ ବାଡ଼ ଭିତରେ ରଖିବାପାଇଁ ବଳପୂର୍ବକ ଚେଷ୍ଟା କଲେ । ଫଳରେ ଶତବର୍ଷର ମୋଗଲ ମରହଟ୍ଟା ଶାସକ ଲୋକଙ୍କୁ ଯେତେ ବାଧି ନ ଥିଲା ବାର ତେର ବର୍ଷର ଇଂରେଜ ଶାସନ ତା'ଠାରୁ ବହୁଗୁଣରେ ବାଧିଲା । ତା'ର ପରିଣାମ ହେଲା ୧୮୧୭ ଖ୍ରୀଷ୍ଟାବ୍ଦର ସମଗ୍ର ଓଡ଼ିଶାବ୍ୟାପୀ ବିଦ୍ରୋହ ।''

ଏହି ଗଣ ବିଦ୍ରୋହର କେନ୍ଦ୍ରସ୍ଥଳ ହେଲେ ତିନିଜଣ— ଖୋର୍ଦ୍ଧାରଜା ଦ୍ୱିତୀୟ ମୁକୁନ୍ଦଦେବ, ତାଙ୍କର ପୁରୁଷାନୁକ୍ରମ ମନ୍ତ୍ରୀ ଗଦାଧର ରାଜଗୁରୁଙ୍କ ପୁତ୍ର ଜୟକୃଷ୍ଣ ମହାପାତ୍ର ରାଜଗୁରୁ ଓ ସେନାପତି ବକ୍‌ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ । ୧୮୦୪ ମସିହା ସେପ୍‌ଟେମ୍ବର ମାସରେ ମୁକୁନ୍ଦଦେବଙ୍କ ଉପରେ ନିଷେଧାଜ୍ଞା ଇଂରେଜମାନଙ୍କଦ୍ୱାରା ଜାରି ହୋଇଥିଲା ଯେ ମୋଗଲବନ୍ଦୀର କୌଣସି ପ୍ରଜାକୁ ସେ କୌଣସି ନିର୍ଦ୍ଦେଶ ଦେଇପାରିବେ ନାହିଁ । ତା' ବିରୋଧରେ ଖୋର୍ଦ୍ଧାରେ ବିଦ୍ରୋହ ଦେଖା ଦେଇଥିଲା । ପାଇକମାନେ ଉତ୍ତ୍ୟକ୍ତ ହୋଇ ପିପିଲିଠାରେ ଗୋଟିଏ ଗ୍ରାମ ଲୁଣ୍ଠନ କଲେ । ଇଂରେଜମାନେ ଗଂଜାମରୁ ସୈନ୍ୟ ମଗାଇ ଏହି ବିଦ୍ରୋହ ଦମନ କରିଥିଲେ । ମୁକୁନ୍ଦଦେବ ବନ୍ଦୀ ହେଲେ, ଏବଂ ଓଡ଼ିଶାର ସ୍ୱନାମଧନ୍ୟ ବିପ୍ଳବୀ ଓଡ଼ିଶାର ଗଣବିଦ୍ରୋହର ପ୍ରଥମ ସହିଦ ଜୟକୃଷ୍ଣ ରାଜଗୁରୁ ଫାଶୀ ପାଇଲେ । ଖୋର୍ଦ୍ଧାରାଜାଙ୍କୁ ବାଧ୍ୟକରି ମାସିକ ୨୧୩୩ ଟଙ୍କା ପାଞ୍ଚଅଣା ଚାରିପାହୁଲା ଭତ୍ତାଦେଇ ତାଙ୍କ ଇଲାକାକୁ ଛଡ଼ାଇ ନିଆଗଲା ।

କିନ୍ତୁ ଏଥିରେ ଓଡ଼ିଶାବାସୀ ଦବି ଯାଇ ନ ଥିଲେ । ଏହାର ଅଳ୍ପଦିନ ପରେ ଜନ-ଅସନ୍ତୋଷ ଜୁହୁଳି ଜୁହୁଳି ପ୍ରଜ୍ୱଳିତ ହେଲା ଏବଂ ସାରା ଓଡ଼ିଶାରେ ଉଣାଅଧିକ ଗଣ-ବିପ୍ଳବ ଦେଖାଦେଲା । ପୁରୀରଜାଙ୍କ ପୁରୁଷାନୁକ୍ରମିକ ସେନାପତି ବକ୍‌ସି ଜଗବନ୍ଧୁ

ଏହି ବିପ୍ଳବର ପୁରୋଧା ଥିଲେ । ପାଇକମାନେ ଓଡ଼ିଶାର ସ୍ଥାୟୀ ସୈନ୍ୟବାହିନୀ । ଯୁଦ୍ଧବେଳେ ସେମାନେ ରାଜାଙ୍କ ପାଇଁ ଲଢୁଥିଲେ, ଅନ୍ୟ ସମୟରେ ଚାଷବାସ କରୁଥିଲେ ଏବଂ ଏହି କାର୍ଯ୍ୟପାଇଁ ସେମାନେ ବହୁ ପରିମାଣରେ ଜମି ନିଷ୍କର ଜାଗିରି ରୂପେ ଭୋଗ କରୁଥିଲେ । ଇଂରେଜମାନେ ଏହି ଜାଗିରି ଉପରେ ପାହାର ପକାଇଥିଲେ । ଏକା କଲମଗାରରେ ଜାଗିରିପ୍ରଥା ଲୋପ ହେବାରୁ ଯୁଗଯୁଗର ଧନ୍ଦା ଲୋପ ପାଇଗଲା ଏବଂ ଏହା ଫଳରେ ପାଇକମାନେ ଦାଣ୍ଡର ଭିକାରି ହୋଇଗଲେ କହିଲେ ଚଳେ । "ପାଇକମାନଙ୍କ ପକ୍ଷରେ ବିଦ୍ରୋହ ଓ ଅନାହାରରେ ମୃତ୍ୟୁ, ଏହି ଦୁଇଟି ଭିତରୁ ଗୋଟିକୁ ବାଛିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ସେତେବେଳେ ଦେଶରେ ଜୀବନ ଥିଲା । ତେଣୁ ପାଇକମାନେ ଅନାହାରରେ ମୃତ୍ୟୁ ମୁଖରେ ପତିତହେବା ଅପେକ୍ଷା ବିଦ୍ରୋହରେ ଜୀବନଦାନ କରିବାକୁ ଶ୍ରେୟସ୍କର ମନେକଲେ ।"

ଏଥିରେ ଅଗ୍ନିସଂଯୋଗ କଲା ଘୁମୁଷରର କନ୍ଧ ବିଦ୍ରୋହ । ଘୁମୁଷରର ରାଜା ଧନଞ୍ଜୟ ଭଞ୍ଜ ୧୮୧୫ରେ ଇଂରେଜମାନଙ୍କଦ୍ୱାରା ଗିରଫ ହେବାରୁ କନ୍ଧମାନେ ବିଦ୍ରୋହ କଲେ । ୧୮୧୬ ମାର୍ଚ୍ଚରେ ପ୍ରାୟ ଚାରିଶହ କନ୍ଧ ଖୋର୍ଦ୍ଧା ଅଭିମୁଖେ ଅଭିଯାନ ଆରମ୍ଭ କରିଥିଲେ । ପାଇକମାନେ ସେମାନଙ୍କସହ ଯୋଗ ଦେବାରୁ ବିଦ୍ରୋହ ଭୀଷଣ ଆକାର ଧାରଣ କଲା । ବିଦ୍ରୋହୀମାନେ ବାଣପୁରର ଥାନା ଆକ୍ରମଣ କରି ସରକାରୀ ଘର ପୋଡ଼ିଦେଲେ ଏବଂ ଶତାଧିକ ଲୋକଙ୍କୁ ହତ୍ୟା କଲେ । ସରକାରୀ ଖଜଣାଖାନା ଓ ଚିଲିକାର ଲୁଣ ସାହେବଙ୍କ ନୌକା ଲୁଟିହେଲା । ତା'ପରେ ବିପ୍ଳବୀମାନେ ଖୋର୍ଦ୍ଧା ଅଭିମୁଖେ ଅଭିଯାନ ଆରମ୍ଭ କଲେ । ବାଟରେ ସାଧାରଣ ଲୋକ ମଧ୍ୟ ବହୁସଂଖ୍ୟାରେ ସେମାନଙ୍କସହ ଯୋଗ ଦେଲେ । ଖୋର୍ଦ୍ଧାରେ ଥିବା ସରକାରୀ କର୍ମଚାରୀ ଭୟରେ ପଳାଇଗଲେ । ଖଜଣାଖାନା ଲୁଟି ହୋଇଗଲା ଏବଂ ସମସ୍ତ ସହର ଲୁଣ୍ଠିତ ହେଲା । ଆଉଦଳେ ବିଦ୍ରୋହୀ ଲୁମ୍ବାଇ ପ୍ରଗନ୍ନାକୁ ଗଲେ ଏବଂ ସେଠାରେ ଇଂରେଜଙ୍କ ଦଲାଲୀ କରୁଥିବା ଚରଣ ପଟ୍ଟନାୟକଙ୍କୁ ହତ୍ୟାକଲେ ।

୧୮୧୭ରେ କଟକ କଲେକ୍ଟରଙ୍କ ଅଧୀନରେ ଦଳେ ସୈନ୍ୟ ବିଦ୍ରୋହ ଦମନ କରିବାକୁ ଖୋର୍ଦ୍ଧା ଯାଇଥିଲେ । କିନ୍ତୁ ବିଦ୍ରୋହୀଙ୍କ ସଂଖ୍ୟା (ପ୍ରାୟ ତିନି ହଜାର) ଅଧିକ ହେବାରୁ କଲେକ୍ଟର ବାଳକାଟିରେ ଲୁଚିଲେ । ବିଦ୍ରୋହୀମାନେ ଏ ଖବର ପାଇ ବାଳକାଟି ଆଡ଼କୁ ଛୁଟିଲେ । ଫଳରେ କଲେକ୍ଟର କଟକ ଫେରିଆସିବାକୁ ବାଧ୍ୟ ହେଲେ । ଖୋର୍ଦ୍ଧାକୁ ଯାଇଥିବା ଇଂରେଜ ସୈନ୍ୟମାନେ ପାଇକମାନଙ୍କଦ୍ୱାରା ପରାସ୍ତ ହେଲେ ଏବଂ ଜଣେ ଇଂରେଜ ସେନାପତି ସେଠାରେ ନିହତ ହେଲେ । ପିପିଲିଠାରେ ମଧ୍ୟ ଇଂରେଜମାନେ ପରାସ୍ତ ହେଲେ । ଏପ୍ରିଲ ୧୨ ତାରିଖରେ ପାଇକମାନେ ପୁରୀ ଆକ୍ରମଣ କରିବାରୁ ମୁକୁନ୍ଦଦେବ ସେମାନଙ୍କ ସହ ଯୋଗଦେଲେ । ଫଳରେ ଇଂରେଜ ଶାସନ ବସ୍ତୁତଃ ଲୋପ ପାଇଲା । ଇଂରେଜ ଅଫିସର ଓ ସୈନ୍ୟମାନେ ପ୍ରାଣଭୟରେ

କିଏ କୁଆଡ଼େ ଲୁଚିଲେ ତା'ର ପତ୍ତା ମିଳିଲା ନାହିଁ । ଶେଷରେ ଅଧିକସଂଖ୍ୟକ ସୈନ୍ୟ ପୁରୀ ଓ ଖୋର୍ଦ୍ଧା ପଠାଗଲେ । ସେମାନେ ରାସ୍ତାରେ ବହୁସଂଖ୍ୟକ ଗ୍ରାମ ପୋଡ଼ି ଦେଲେ ଓ ସମ୍ପତ୍ତି ନଷ୍ଟ କଲେ । ଫଳରେ ଏକପ୍ରକାର ଆତଙ୍କରାଜ ଖେଳିଗଲା । ଖୋର୍ଦ୍ଧାରେ ସାମରିକ ଆଇନ ଜାରି ହେଲା । ପୁରୀରେ ପାଇକ ଓ ଇଂରେଜସୈନ୍ୟଙ୍କ ଭିତରେ ଯୁଦ୍ଧ ହେଲା । ଯୁଦ୍ଧରେ ପାଇକମାନେ ପରାସ୍ତ ହେଲେ । ମୁକୁନ୍ଦଦେବ ବନ୍ଦୀହେଲେ । କିନ୍ତୁ ବିଦ୍ରୋହ ସଂପୂର୍ଣ୍ଣରୂପେ ଦମନ କରାଯାଇ ପାରି ନ ଥିଲା । ପାଇକମାନେ ଜଙ୍ଗଲରେ ଲୁଚିଛପି ଯୁଦ୍ଧ ଚଳାଇଲେ ।

କେବଳ ପୁରୀ ଜିଲା ନୁହେଁ, କଟକ ଜିଲାରେ ମଧ୍ୟ ବ୍ୟାପକ ବିଦ୍ରୋହ ଘଟିଥିଲା । ସାରଙ୍ଗଗଡ଼ ଦୀର୍ଘଦିନ ପାଇକମାନଙ୍କ ଅଧୀନରେ ରହିଥିଲା । କୁଜଙ୍ଗ ଓ କନିକା ଜମିଦାରମାନେ ଆରମ୍ଭରୁ ଇଂରେଜଶାସନର ବିରୋଧ କରୁଥିଲେ । କିନ୍ତୁ ଇଂରେଜମାନେ ଏହି ଜମିଦାରୀ ଦଖଲ କରି ଦୁର୍ଗସବୁ ଧ୍ୱଂସ କରିଦେଲେ ଓ କେତେକ ତୋପ ଓ କମାଣ କଟକ ନେଇଯାଇଥିଲେ । ଏହି ପରାଜୟ ପରେ କନିକା ଜମିଦାର ସମ୍ଭବତଃ ଭୟଭୀତ ହୋଇଗଲେ ଏବଂ ଇଂରେଜମାନେ ଏ ଦେଶରୁ ଯିବାପର୍ଯ୍ୟନ୍ତ କନିକା ଜମିଦାର ଇଂରେଜମାନଙ୍କର ଏକାନ୍ତ ଅନୁଗତ ହୋଇ ରହିଲେ । ଇଂରେଜମାନେ ଓଡ଼ିଶା ଦଖଲ ପରେ ଯେତେବେଳେ ଜମିଦାରମାନଙ୍କଠାରୁ ବଶ୍ୟତାସୂଚକ ଅଙ୍ଗୀକାର ପତ୍ର ଲେଖାଇ ନେବାକୁ ଚାହିଁଲେ, କନିକା ଜମିଦାର ଆଗହୋଇ ବାହାରି ପଡ଼ିଲେ ଏବଂ ତତ୍‌କାଳୀନ କନିକା ରାଜା ବଳଭଦ୍ର ଭଂଜ ସର୍ବପ୍ରଥମେ ଏଥିରେ ସ୍ୱାକ୍ଷର କଲେ । କିନ୍ତୁ କନିକା ଓ କୁଜଙ୍ଗର ପାଇକମାନେ ଇଂରେଜ ଶାସନର ଘୋର ବିରୋଧ କଲେ ଏବଂ କନିକାର ପାଇକନେତା ଶ୍ରୀବାମଦେବ ପଟ୍ଟଯୋଷୀ ଓ କୁଜଙ୍ଗର ଶ୍ରୀ ନାରାୟଣ ପରମଗୁରୁ ପ୍ରତ୍ୟକ୍ଷ ବିଦ୍ରୋହ ଘୋଷଣା କଲେ ଏବଂ କେତେକ ସରକାରୀ ଅଫିସ ଦଖଲ କରିଥିଲେ । କିନ୍ତୁ ଶେଷ ସୁଦ୍ଧା ସେମାନେ ପରାସ୍ତ ହେଲେ । ପରମଗୁରୁ ଓ ପଟ୍ଟଯୋଷୀଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା । କୁଜଙ୍ଗ ରାଜା ଆତ୍ମସମର୍ପଣ କଲେ । ଇଂରେଜମାନଙ୍କର ପ୍ରଭୂତ ଅର୍ଥ ଓ ଲୋକବଳ ଏବଂ ଓଡ଼ିଶାର କେତେକ ନିମକହାରାମ ଫତେ ମହମ୍ମଦ୍‌ଙ୍କର ବିଶ୍ୱାସଘାତକତା ଫଳରେ ଏତେ ବଡ଼ ବିଦ୍ରୋହ ଦବିଗଲା ।

୧୮୧୭ରେ ଖୋର୍ଦ୍ଧାରେ ଏକ ବିଚାର ପ୍ରହସନ କରାଯାଇ ବହୁସଂଖ୍ୟକ ବିଦ୍ରୋହୀ ନେତାଙ୍କୁ ପ୍ରାଣଦଣ୍ଡ ଓ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା । ବିଦ୍ରୋହୀ ନେତା ବିପ୍ଳବୀ ବକ୍‌ସି ଜଗବନ୍ଧୁ ଇଂରେଜମାନଙ୍କ ହାତରେ ଯୁଦ୍ଧରେ ନିହତ ହୋଇଥିଲେ ବୋଲି କୁହାଯାଏ । ଡଃ ମହତାବ ତାଙ୍କର ଓଡ଼ିଶା ଇତିହାସର ୨ୟ ସଂସ୍କରଣରେ ମଧ୍ୟ ଏହା ଉଲ୍ଲେଖ କରିଯାଇଛନ୍ତି । ପରେ ମହତାବଙ୍କ ସଂପାଦନାରେ ପ୍ରକାଶିତ 'ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସ'ରେ ସଂଶୋଧିତ ମତ ପ୍ରକାଶିତ ହୋଇଅଛି ଯେ ବକ୍‌ସି

ବର୍ଷ ବର୍ଷ ଧରି ବଣ ଜଙ୍ଗଲରେ ଗରିଲା ଯୁଦ୍ଧକରି ଶେଷରେ ଧରାପଡ଼ିଥିଲେ'' । ହୁଏତ ତାଙ୍କର ଅସାଧାରଣ ଲୋକପ୍ରିୟତା ଦୃଷ୍ଟିରୁ ତାଙ୍କୁ ପ୍ରାଣଦଣ୍ଡ ଦେବାକୁ ଇଂରେଜମାନେ ସାହସ କରି ନ ଥିଲେ ଏବଂ ତାଙ୍କପାଇଁ ଆଜୀବନ ମାସିକ ଶହେ ଟଙ୍କା ଲେଖାଁ ପେନ୍‌ସନ୍ ଖଂଜି ଦେଇଥିଲେ । ତାରାଚାନ୍ଦ ମଧ ଏହି ଶେଷୋକ୍ତ ମତକୁ ଗ୍ରହଣ କରି ଲେଖିଛନ୍ତି, "After a long pursuit Jagabandhu surrendered at last in 1825. But owing to his former position, he was pensioned off and was allowed to reside in Cuttack."(1) ସେ ଯାହାହେଉ ନିର୍ଦ୍ଧନ ଅବସ୍ଥାରେ ଏବଂ ନାନା ପ୍ରତିକୂଳ ପରିସ୍ଥିତିରେ ବକ୍‌ସି ଯେପରି ଅପୂର୍ବ ସାହସିକତା ସହକାରେ ପାଇକ ବିଦ୍ରୋହ ପରିଚାଳନା କରିଥିଲେ ତାହା ତାଙ୍କୁ ଓଡ଼ିଶାର ଅନ୍ୟତମ ଶ୍ରେଷ୍ଠ ବିପ୍ଳବୀ ଆସନରେ ପ୍ରତିଷ୍ଠିତ କରିଅଛି ।

ମୁକୁନ୍ଦଦେବଙ୍କୁ ହତ୍ୟା କରା ନ ଯାଇ କାରାଦଣ୍ଡ ଦିଆଯାଇଥିଲା । ସେ ୧୮୧୭ରେ ପ୍ରାଣତ୍ୟାଗ କରିଥିଲେ । ସୁତରାଂ ''ପାଇକ ବିଦ୍ରୋହର ପ୍ରକୃତ ସହିଦ ହେଉଛନ୍ତି ଜୟୀରାଜଗୁରୁ ଯେ କି ଫାଶୀ ପାଇଥିଲେ ।''

''ଓଡ଼ିଶାରେ ପାଇକ ବିଦ୍ରୋହ ବାସ୍ତବରେ ଏକ ଗଣଆନ୍ଦୋଳନ ଥିଲା । ଏଥିରେ ରାଜା ଜମିଦାର କେହି ଯୋଗଦେଇ ନ ଥିଲେ । ବକ୍‌ସି ଜଗବନ୍ଧୁ ଓ ରାଜା ମୁକୁନ୍ଦଦେବ ନିଜେ ସର୍ବହରା ହୋଇଯାଇଥିବାରୁ ଏ ବିଦ୍ରୋହ ଆରମ୍ଭ ହେବା ପରେ ଆସି ଯୋଗଦେଲେ ଓ ସେମାନଙ୍କର ପୂର୍ବସ୍ଥିତି ଯୋଗୁ ସେମାନେ ନେତା ବୋଲି ଗୃହୀତ ହୋଇଥିଲେ । ତଥାପି ଏଇ ଦୁଇଜଣଙ୍କ ଛଡ଼ା ଅନ୍ୟକେହି ଜମିଦାର ଏଥିରେ ଯୋଗ ଦେଇ ନ ଥିଲେ । କନିକା ଓ କୁଜଙ୍ଗ ଜମିଦାର ପରୋକ୍ଷ ଭାବରେ ସାହାଯ୍ୟ କରିଥିଲେ । ସାଧାରଣ ଭାବରେ ପୁରାତନ ରାଜା ଜମିଦାରମାନଙ୍କର ଏ ବିଦ୍ରୋହରେ କିଛି ହାତ ନ ଥିଲା । ଏହା ଅତ୍ୟାଚାରିତ ଜନତାର ବିଦ୍ରୋହ ଥିଲା ଏବଂ ଏହାର ଉଦ୍ଦେଶ୍ୟ ବାସ୍ତବିକ ଥିଲା ଇଂରେଜଶାସନର ମୂଳୋତ୍ପାଟନ । ଏହା ପରିବର୍ତ୍ତେ ଅବଶ୍ୟ ପ୍ରଜାତନ୍ତ୍ର ଶାସନ ବିଦ୍ରୋହୀମାନେ ହୁଏତ କଳ୍ପନା କରି ନ ଥିଲେ । ପୂର୍ବକାଳରେ ଗଜପତି ରାଜତ୍ୱର ସୁଖ ଓ ଶାନ୍ତି ହୁଏତ ସେମାନଙ୍କ ସ୍ମୃତିକ୍ଷେତ୍ରରେ ସେମାନଙ୍କର ଲକ୍ଷ୍ୟହୋଇ ଛିଡ଼ା ହୋଇଥିବ । କିନ୍ତୁ ଏଥିରେ କୌଣସି ସନ୍ଦେହ ନାହିଁ ଯେ ୧୫୬୮ ପରେ ପାଇକ ବିଦ୍ରୋହହିଁ ଓଡ଼ିଶାର ସ୍ୱାଧୀନତା ପାଇଁ ଏକମାତ୍ର ଗଣଆନ୍ଦୋଳନ ।'' ବାଣପୁର ବିଦ୍ରୋହରେ ବିପ୍ଳବୀ କୃତ୍ତିବାସ ପାଟଶାଣୀକୁ କଳାପାଣି ଦଣ୍ଡ ହୋଇଥିଲା ।

୧୮୫୭ର ମହାବିଦ୍ରୋହ ପର୍ଯ୍ୟନ୍ତ ଏଭଳି ବ୍ୟାପକ ଗଣବିପ୍ଳବ ଭାରତର ଅନ୍ୟକୌଣସି ପ୍ରଦେଶରେ ହୋଇ ନାହିଁ ।

(1) Tarachand – The Histroy of Freedom Movement in India, Vol- II, Pg - 6

## ନେପାଳରେ ବିଦ୍ରୋହ ପ୍ରଚେଷ୍ଟା –

ଊନବିଂଶ ଶତାବ୍ଦୀର ଶେଷଭାଗକୁ ସିନା ନେପାଳୀମାନଙ୍କ ଭିତରେ ବ୍ରିଟିଶ୍ ଅନୁରକ୍ତି ବୃଦ୍ଧି ପାଇଲା, କିନ୍ତୁ ଇଂରେଜଶାସନର ପ୍ରାୟ ଆରମ୍ଭରୁ ନେପାଳୀମାନେ ଏହାର ବିରୋଧ କରୁଥିଲେ । ୧୮୧୬ର ସାଗୌଲି ସନ୍ଧି ଅନୁସାରେ ନେପାଳର ସାର୍ବଭୌମତ୍ୱ ବହୁ ପରିମାଣରେ କ୍ଷୁଣ୍ଣ ହେଲା ଏବଂ ନେପାଳ ଦରବାର ଶେଷରେ ଇଂରେଜ ରାଜଦୂତଙ୍କୁ ସ୍ଥାନ ଦେବାକୁ ବାଧ୍ୟହେଲେ । ଏହା ଦରବାର କିମ୍ବା ଜନସାଧାରଣ କାହାକୁ ହେଲେ ଭଲ ଲାଗୁ ନ ଥିଲା । ନେପାଳ ରାଜା ବିଭିନ୍ନ ଭାରତୀୟ ରାଜାଙ୍କ ସହାୟତାରେ ଇଂରେଜଶାସନ ବିରୋଧରେ ଏକ ବ୍ୟାପକ ବିଦ୍ରୋହର ପରିକଳ୍ପନା କରିଥିଲେ । ପଂଜାବର ରାଜା ରଣଜିତ ସିଂ, ଉଦୟପୁରର ରାଣା, ଯୋଧପୁରର ଆପ୍ପାସାହେବ ଭୋନ୍ସଲା, ସାହାପୁର ଓ ଜୟପୁରର ମହାରାଜା, ଆସାମର ରାଜା, ବୁନ୍ଦେଲଖଣ୍ଡର ପାନ୍ନା ଏପରିକି ପାରସ୍ୟ ରାଜାଙ୍କ ନିକଟକୁ ମଧ୍ୟ ବିପ୍ଳବର ଯୋଜନା ଏବଂ ଏଥିରେ ସହଯୋଗ କରିବାକୁ ନିବେଦନ ପତ୍ର ନେପାଳ ପକ୍ଷରୁ ପଠାଯାଇଥିଲା । କିନ୍ତୁ କୌଣସି ସୂତ୍ରରୁ ଇଂରେଜମାନେ ଏହି ଷଡ଼ଯନ୍ତ୍ରର ସୁରାକ ପାଇ ବନ୍ସରାଜ ନାମକ ଜନୈକ ନେପାଳୀ ପତ୍ରବାହକକୁ ଉଦୟପୁର ଯିବା ବାଟରେ ଖାନତଲାସକରି ସାତଖଣ୍ଡ ଆପତ୍ତିଜନକ ପତ୍ର ତାଙ୍କଠାରୁ ଜବଦ କରିଥିଲେ । କିନ୍ତୁ ନେପାଳ ଦରବାରରେ ବିଦ୍ରୋହବାର୍ତ୍ତା ବହନ କରି ବହୁସଂଖ୍ୟକ ଗୁର୍ଖାବାର୍ତ୍ତାବହ ଭାରତର ଗଳିକନ୍ଦିରେ ଖେଦିଯାଇଥିବାର ପ୍ରମାଣ ମିଳୁଛି । ତତ୍‌କାଳୀନ ଭାରତ ସରକାରଙ୍କର ଅସ୍ଥାୟୀ ସେକ୍ରେଟାରୀ ସାର୍ ଟମାସ୍ ଏ ସଂପର୍କରେ ଏକ ରିପୋର୍ଟରେ ଉଲ୍ଲେଖ କରିଥିଲେ, "ନେପାଳ ଦରବାର ପୂର୍ବାପେକ୍ଷା ଅଧିକ ଶତ୍ରୁତା ଆଚରଣ କରୁଅଛନ୍ତି । ଗୋସାଇଁ ପଣ୍ଡିତ ଓ ହରକରାମାନଙ୍କୁ ବିଭିନ୍ନ ବିଦ୍ରୋହାତ୍ମକ କାର୍ଯ୍ୟପାଇଁ ନିଯୁକ୍ତ କରାଯାଇଛି ଏବଂ ବହୁସଂଖ୍ୟକ ନେପାଳୀ ଭାରତର ସମତଳ ଅଞ୍ଚଳରେ ଓଜାଡ଼ି ହୋଇ ପଡୁଥିବାର ଲକ୍ଷ୍ୟ କରାଯାଇଛି । ଗତମାସରେ ପ୍ରାୟ ୫୦୦ ନେପାଳୀ ତୀର୍ଥଯାତ୍ରୀ ବାଣିଜ୍ୟ ବ୍ୟବସାୟ ନାମରେ କେବଳ ବନାରସକୁ ଆସିଥିବାର ଜଣାଯାଏ ଏବଂ ଏହା ଅପେକ୍ଷା ଅଧିକସଂଖ୍ୟକ ଲୋକ ପାଟଣା ଯାଇଥିବାର ସନ୍ଦେହ କରିବାର ଯଥେଷ୍ଟ କାରଣ ଅଛି । ନେପାଳୀମାନେ ପୂର୍ବରୁ ଏତେ ସଂଖ୍ୟାରେ କେବେଁ ଭାରତକୁ ଆସୁ ନ ଥିଲେ ବୋଲି ପୋଲିସ୍ ସୂତ୍ରରୁ ପ୍ରକାଶ (1)

କିନ୍ତୁ ଦୁର୍ଭାଗ୍ୟବଶତଃ ଏହି ବ୍ୟାପକ ବିଦ୍ରୋହର ପରିକଳ୍ପନା ଫଳପ୍ରଦ ହୋଇପାରିଲା ନାହିଁ, କାରଣ ଭାରତୀୟ ରାଜା ମହାରାଜାମାନଙ୍କଠାରୁ ଏଥିପାଇଁ ଯଥେଷ୍ଟ ସହାନୁଭୂତି

(1) Thomas H to Torens H; Secretary to the Govt, India, Foreign secret consultation No, 16 Dt. 14-2-1839

ମିଳି ନ ଥିଲା । ଇଂରେଜମାନେ ମଧ୍ୟ ଷଡ଼ଯନ୍ତ୍ରର ସୁରାକ ପାଇ ଏହାକୁ ଭଣ୍ଡୁର କରିଦେବାକୁ ମୂଳରୁ ସବୁପ୍ରକାର ଉଦ୍ୟମ କରିଥିଲେ । କାଠମାଣ୍ଡୁରେ ଥିବା ବ୍ରିଟିଶ୍ ଦୂତଙ୍କର ବିଚକ୍ଷଣତା ଏବଂ ଇଂରେଜୀ ଶାସନ କଳର ଧୂର୍ତ୍ତତା ଆଗରେ ଏହି ବିଦ୍ରୋହ ପ୍ରଚେଷ୍ଟା ଫଳବତୀ ହୋଇ ନ ଥିଲା ।

## ମୁସ୍ଲିମ୍ ବିଦ୍ରୋହ –

ଇଂରେଜମାନଙ୍କ ବିରୋଧରେ ମୁସଲମାନମାନଙ୍କର ସଂଗଠିତ ବିଦ୍ରୋହ ଅଷ୍ଟାଦଶ ଶତାବ୍ଦୀର ଏକ ଉଲ୍ଲେଖଯୋଗ୍ୟ ଘଟଣା । ମୁସଲମାନମାନଙ୍କର ଇଂରେଜ ବିରୋଧୀ ମନୋଭାବର କ୍ରମବିକାଶ ହୋଇ ୧୮୫୭ ମସିହା ମହାବିଦ୍ରୋହ ସମୟରେ କିପରି ପୂର୍ଣ୍ଣତା ପାଇଥିଲା ଏବଂ ହିନ୍ଦୁ-ମୁସଲମାନ ମିଳିତଭାବେ ଇଂରେଜ ଶାସନ ବିରୋଧରେ କିଭଳି ଅସ୍ତ୍ର ଉତ୍ତୋଳନ କରିଥିଲେ ଇତିହାସରେ ତା'ର ଦୃଷ୍ଟାନ୍ତର ଅଭାବ ନାହିଁ । ଏକ ଜାତି ହିସାବରେ ମୁସଲମାନମାନେ ମହାଭାରତୀୟ ଜାତୀୟସ୍ରୋତରୁ କ୍ରମେ ଦୂରେଇଯିବା ଏବଂ ସେମାନଙ୍କର ବ୍ରିଟିଶ୍‌ତୋଷଣ ମନୋଭାବ ବୃଦ୍ଧିପାଇବା ସ୍ୱଦେଶୀ ଯୁଗର ଘଟଣା । ତା' ପୂର୍ବରୁ ସେମାନେ ହିନ୍ଦୁମାନଙ୍କ ଭଳି ଏବଂ ହୁଏତ ସେମାନଙ୍କଠାରୁ ଅଧିକ ବ୍ରିଟିଶ୍ ବିରୋଧୀ ଥିଲେ । ଏହା ସପକ୍ଷରେ ମଧ ଅସଂଖ୍ୟ ପ୍ରମାଣ ରହିଛି ।

ଇଂରେଜଶାସନର କର୍ତ୍ତୃତ୍ୱ ପ୍ରତିଷ୍ଠିତ ହେବା ସଂଗେ ସଂଗେ ଖ୍ରୀଷ୍ଟିଆନ ପାଦ୍ରୀମାନଙ୍କର ଉଗ୍ର ପ୍ରଚାର ଓ ମୁସ୍ଲିମଧର୍ମ ଉପରେ ସେମାନଙ୍କର ଅନଧିକାର ହସ୍ତକ୍ଷେପକୁ ନୈଷ୍ଠିକ ମୁସଲମାନମାନେ ବରଦାସ୍ତ କରିପାରିଲେ ନାହିଁ । ଭାରତୀୟ ରାଜା ଓ ନବାବମାନଙ୍କର ସେନାବାହିନୀରେ ଚାକିରିକରି ପେଟ ପୋଷୁଥିବା ମୁସ୍ଲିମମାନେ ରାଜା ଓ ନବାବମାନେ ରାଜ୍ୟ ହରାଇବା ସଂଗେ ସଂଗେ ଚାକିରି ହରାଇଲେ । ହସ୍ତଶିଳ୍ପ ବିଶେଷତଃ ସୂକ୍ଷ୍ମ ବସ୍ତ୍ରଶିଳ୍ପର ବିପର୍ଯ୍ୟୟ ମଧ୍ୟ ଇଂରେଜ ଶାସନର କୁଫଳ ସ୍ୱରୂପ ଅନୁଭୂତ ହେଲା । ବଙ୍ଗଳା ଓ ଉତ୍ତର ଭାରତରେ ସୂକ୍ଷ୍ମ ବସ୍ତ୍ରଶିଳ୍ପୀମାନେ ଏହି ସମ୍ମାନଜନକ ଧନ୍ଦା ହରାଇ ବେକାର ହେଲେ । ଫଳରେ ଚାରିଆଡ଼େ ଅସନ୍ତୋଷ ଦେଖାଦେଲା । ମୁସ୍ଲିମ ଧର୍ମଗୁରୁ ଉଲେମା ଓ ଫକୀରମାନେ ଏହି ଅସନ୍ତୋଷକୁ ସଂଗଠିତ କରି ବିଦ୍ରୋହର ବାର୍ତ୍ତା ପ୍ରଚାର କଲେ । ସେମାନଙ୍କର ନେତା ଥିଲେ ମଜ୍‌ନୁନ ସାହା । ସେ ହିମାଳୟର ତରାଇ ଅଞ୍ଚଳରେ କେନ୍ଦ୍ର ସ୍ଥାପନ କରି ବଙ୍ଗଳାରେ ଇଂରେଜ ବିରୋଧୀ ପ୍ରଚାର ଆରମ୍ଭ କରିଥିଲେ । ମଦରଗଞ୍ଜ ଓ ମହସ୍ଥାନରେ ଗୋଟିଏ ଲେଖାଁ ଦୁର୍ଗ ମଧ ସ୍ଥାପିତ ହୋଇଥିଲା । ଜନସାଧାରଣଙ୍କରଠାରୁ ପ୍ରଚୁର ସାହାଯ୍ୟ ଓ ଅକୁଣ୍ଠ ସମର୍ଥନ ମିଳିଥିଲା ସେମାନଙ୍କୁ । ଏହାଫଳରେ ଗାଁଗହଳରୁ ଇଂରେଜର ଅସ୍ତିତ୍ୱ ମଧ୍ୟ ଲୋପ ପାଇଗଲା କହିଲେ ଚଳେ । ମଜ୍‌ନୁନଙ୍କର ମୃତ୍ୟୁ ପରେ ତାଙ୍କର ପୁତ୍ର ଚିରାଗ ଅଲ୍ଲୀସାହା ଏହି ଆନ୍ଦୋଳନ ଚଳାଇଥିଲେ । ତାଙ୍କ ସହ ସେ ଯୁଗର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଭବାନୀ ପାଠକ ଓ ବିପ୍ଳବିଣୀ ଦେବୀ ଚୌଧୁରାଣୀ ଯୋଗଦେଇ ଇଂରେଜ ଶାସନକୁ

ବିପର୍ଯ୍ୟସ୍ତ କରିଦେଲେ । ଇଂରେଜ ପରିଚାଳିତ କଳକାରଖାନା ଦଖଲହୋଇ ଧନସମ୍ପତ୍ତି ଓ କମାଣ ବନ୍ଧୁକ ମଧ୍ୟ ଲୁଟ୍‌ହେଲା । କ୍ରମେ ସେନାବାହିନୀରୁ କର୍ମଚ୍ୟୁତ ପଠାଣ ଓ ରାଜପୁତ୍‌ମାନେ ମଧ୍ୟ ସେମାନଙ୍କ ସହ ଯୋଗଦେଲେ । ୧୭୩୮ରୁ ୧୮୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସେମାନେ ଇଂରେଜ ଶାସନକୁ ବ୍ୟତିବ୍ୟସ୍ତ କରି ଦେଇ ପାରିଥିଲେ । କିନ୍ତୁ ଶେଷ ସୁଦ୍ଧା ଆଧୁନିକ ଅସ୍ତ୍ର-ସଜ୍ଜିତ ଇଂରେଜ ସୈନ୍ୟମାନଙ୍କର ତୀବ୍ର ଆକ୍ରମଣ ସମ୍ମୁଖରେ ତିଷ୍ଠିପାରିଲେ ନାହିଁ ।

ପାଗଳପନ୍ଥୀ ସଂପ୍ରଦାୟର ନେତା ଟିପୁଙ୍କର ପୁତ୍ର କରମ ସାହା ୧୮୧୩ଠାରୁ ସଶସ୍ତ୍ର ବିଦ୍ରୋହ ଆରମ୍ଭକରିଦେଇଥିଲେ । ଟିପୁ ସତ୍ୟ, ସାମ୍ୟ ଓ ଭ୍ରାତୃତ୍ୱର ପ୍ରଚାରକ ଥିଲେ । କିନ୍ତୁ କରମ୍ ଏକ ବିରାଟ ସୈନ୍ୟ ଦଳ ଗଢ଼ି ପ୍ରତ୍ୟକ୍ଷ ଯୁଦ୍ଧର ଆହ୍ୱାନ ଦେଇଥିଲେ । ସେରପୁର ଜମିଦାରୀ ଦଖଲକରି ସେଠାରେ ସେ ଦୀର୍ଘଦିନ ସ୍ୱାଧୀନ ସରକାର ପ୍ରତିଷ୍ଠା କରିଥିଲେ । ୧୮୩୧ରେ କରମ୍‌ପନ୍ଥୀମାନେ ଇଂରେଜମାନଙ୍କଦ୍ୱାରା ପରାଜିତ ହେଲେ ।

ଆଉ ଏକ ସନାତନୀ ମୁସ୍ଲିମ ଆନ୍ଦୋଳନ ମଧ୍ୟ ଇଂରେଜମାନଙ୍କ ବିରୋଧରେ ମୁଣ୍ଡଟେକିଥିଲା । ଫରିଦପୁରର ହାଜୀ ସାରିଉତୁଲ୍ଲାଥିଲେ ଏହି ସଂପ୍ରଦାୟର ନେତା । ସେ ଇସଲାମର ପବିତ୍ରତା ଉପରେ ଜୋର ଦେବା ସଙ୍ଗେ ସଙ୍ଗେ ଜମିଦାର ଓ ସରକାରର ଶୋଷଣରୁ ଚାଷୀମାନଙ୍କୁ ରକ୍ଷାକରିବାକୁ ଆନ୍ଦୋଳନ ଆରମ୍ଭ କରିଥିଲେ । ଭାରତରୁ ଇଂରେଜମାନଙ୍କୁ ତଡ଼ି ଇସ୍ଲାମଶାସନ ପ୍ରତିଷ୍ଠା କରିବା ତାଙ୍କର ଲକ୍ଷ୍ୟ ଥିଲା । ତାଙ୍କର ପୁଅ ମହମ୍ମଦ ମହସି ଓରଫ ଦାଦୁମିଆଁ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରି ଦେଇଥିଲେ । ୧୮୩୮ରୁ ପ୍ରାୟ ୨୦ ବର୍ଷ ପର୍ଯ୍ୟନ୍ତ ଏହି ବିଦ୍ରୋହ ଲାଗିରହିଥିଲା । ଏହା 'ଫେରାଜୀ' ଆନ୍ଦୋଳନ ନାମରେ ଖ୍ୟାତ । ବଙ୍ଗର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ୧୮୫୭ରେ ସ୍ୱୀକାର କରିଥିଲେ, "It will thus be seen that hardly a single district under the Government of Bengal has escaped either actual danger or serious apprehension of danger."

ମୁସଲମାନମାନଙ୍କର ସବୁଠାରୁ ବଡ଼ ଆନ୍ଦୋଳନ ହୋଇଥିଲା ସୟଦ ଅହମ୍ମଦଙ୍କର ଓ୍ୱାଲିଉଲ୍ଲାହି ଆନ୍ଦୋଳନ । ଏହା ଏକ ନିଛକ ଧର୍ମୀୟ ଆନ୍ଦୋଳନ ହୋଇଥିଲେ ମଧ୍ୟ ଏହା ଇଂରେଜମାନଙ୍କର ବିରୋଧରେ ଅଭିପ୍ରେତ ହୋଇଥିଲା, ଅନ୍ତତଃ ଇଂରେଜମାନେ ତାକୁ ସେହି ଦୃଷ୍ଟିରେ ଦେଖିଥିଲେ । ଉତ୍ତର ପ୍ରଦେଶର ରାୟବେରିଲୀରେ ସୟଦ ଅହମ୍ମଦଙ୍କ ଜନ୍ମ ହୋଇଥିଲା ଏକ ନୈଷ୍ଠିକ ମୁସଲମାନ ପରିବାରରେ, ଯେଉଁମାନେ ନିଜକୁ ହଜରତ ମହମ୍ମଦଙ୍କ ବଂଶଧର ବୋଲି ମନେକରନ୍ତି । ସୟଦ ଅହମ୍ମଦ ମୁସ୍ଲିମ ଧର୍ମକୁ ଅନ୍ୟ ଧର୍ମର ପ୍ରଭାବରୁ ମୁକ୍ତରଖିବାକୁ ଉଦ୍ୟମ କରିଥିଲେ ଏବଂ ସେହି ଉଦ୍ଦେଶ୍ୟରେ ମହମ୍ମଦଙ୍କ ପ୍ରବର୍ତ୍ତିତ ପନ୍ଥା 'ତରିକା-ଇ-ମହମ୍ମଦିଆ' ପ୍ରତିଷ୍ଠା କରିଥିଲେ । ପ୍ରଥମାବସ୍ଥାରେ ସେ ଅମୀର ଖାଁଙ୍କର ସେନାବାହିନୀରେ କିଛି ଦିନ କାର୍ଯ୍ୟକରି ସାମରିକ

ଅଭିଜ୍ଞତା ଅର୍ଜନ କରିଥିଲେ । ତାହା ପରେ ସେ ଉତ୍ତରପ୍ରଦେଶ ଓ ରୋହିଲାଖଣ୍ଡରେ ବ୍ୟାପକ ଗସ୍ତକରି ସମର୍ଥନ ସଂଗ୍ରହ କରିଥିଲେ । ସରଳ ନିରାଡ଼ମ୍ବର ଜୀବନ ଓ କୋରାନ୍ ଉପରେ ତାଙ୍କର ଅନନ୍ୟ ନିଷ୍ଠା ତାଙ୍କୁ ଖୁବ୍ ଲୋକପ୍ରିୟ କରିଥିଲା । ହଜାର ହଜାର ମୁସଲମାନ ତାଙ୍କ ପଛରେ ଏକାଠି ହେଲେ । ତାଙ୍କର ଆରବ ଯାତ୍ରା ବେଳେ ସେ ଉପଲବ୍ଧି କଲେ ଯେ ପାଶ୍ଚାତ୍ୟ ରୀତିନୀତି ଓ ଖ୍ରୀଷ୍ଟିୟାନ ଧର୍ମର ପ୍ରଭାବହିଁ ମୁସ୍ଲିମ ପବିତ୍ରତାକୁ ନଷ୍ଟକରୁଛି । ସୁତରାଂ ଭାରତରୁ ଇଂରେଜ ଶାସନକୁ ଲୋପ ନ କଲେ ପାଶ୍ଚାତ୍ୟ ପ୍ରଭାବରୁ ଦେଶକୁ ମୁକ୍ତ କରିବା ସମ୍ଭବ ନୁହେଁ । ଫଳରେ ସେ ମକ୍କା ଯାତ୍ରାରୁ ଫେରି ତାଙ୍କର ସୈନ୍ୟ ଦଳ ଗଢ଼ିବାରେ ଲାଗିପଡ଼ିଲେ । 'ଭାରତ ଇତିହାସରେ ସେପର୍ଯ୍ୟନ୍ତ ହୋଇଥିବା ସବୁଠାରୁ ଦୃଢ଼ ଆନ୍ଦୋଳନ ସେ ଆରମ୍ଭ କରିଦେଇଥିଲେ ଯାହାକି ପ୍ରାୟ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ ଭାରତରେ ବିରୋଧୀମନୋଭାବ ଜାଗ୍ରତ କରିବାରେ ସାହାଯ୍ୟ କରିଥିଲା ।'' (୧) ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଏକ ବିରାଟ ସେନାବାହିନୀ ଗଠନ କରି ସେ ଧର୍ମଯୁଦ୍ଧର ଡାକରା ଦେଇଥିଲେ । କିନ୍ତୁ ସୟଦ୍ ଅହମ୍ମଦ ଟିକେ ଭାବପ୍ରବଣ ଲୋକ ହୋଇଥିବାରୁ ସେ ବିଚାରିଲେ ଯେ ଉତ୍ତର ପ୍ରଦେଶରେ ଏହି ଧର୍ମଯୁଦ୍ଧ ଆରମ୍ଭ ନ କରି ମୁସ୍ଲିମ୍ ସଂଖ୍ୟାଗରିଷ୍ଠ ସୀମାନ୍ତ ପ୍ରଦେଶରୁ ଆରମ୍ଭ କଲେ ତାହା ଅଧିକ ସୁବିଧାଜନକ ହେବ ଏବଂ ସେହି ଉଦ୍ଦେଶ୍ୟରେହିଁ ସେ ତାଙ୍କର ଛ'ଶହ ସଶସ୍ତ୍ର ଅନୁଗାମୀଙ୍କୁ ନେଇ ସୀମାନ୍ତ ପ୍ରଦେଶ ଉପଲକ୍ଷେ ଏକ ବିରାଟ ଶୋଭାଯାତ୍ରା ଆରମ୍ଭ କଲେ । ପେଶୱାରରେ ପହଞ୍ଚିବାକୁ ତାଙ୍କୁ ପ୍ରାୟ ଦଶମାସ ସମୟ ଲାଗିଯାଇଥିଲା । ଅବଶ୍ୟ ରାସ୍ତାରେ ତାଙ୍କୁ ବିପୁଳ ସାହାଯ୍ୟ ଓ ସମର୍ଥନ ମିଳିଯାଇଥିଲା । କିନ୍ତୁ ସୀମାନ୍ତ ପ୍ରଦେଶର ରକ୍ଷଣଶୀଳ ପଠାଣ ଉଲେମାମାନେ ସୟଦ୍ ଅହମ୍ମଦଙ୍କର ଧର୍ମସଂସ୍କାର ପ୍ରଭୃତି ଧ୍ୱନି ପ୍ରତି ଆଦୌ କାନ ଦେଲେ ନାହିଁ । ସେ ଯାହାହେଉ, ପଞ୍ଜାବର ଶିଖମାନଙ୍କ ସହ ୱାଲିଉଲ୍ଲା ଆନ୍ଦୋଳନକାରୀଙ୍କର ମୁହାଁମୁହିଁ ସଂଘର୍ଷ ହୋଇଥିଲା । କିନ୍ତୁ ସୟଦ ଅହମ୍ମଦ ତାଙ୍କର ସଂଗଠନକୁ ଏଭଳି ଦୃଢ଼ ଭାବରେ ଗଢ଼ିଥିଲେ ଯେ ତାଙ୍କର ମୃତ୍ୟୁ ପରେ ମଧ୍ୟ ଏହା ଭାଙ୍ଗିଯାଇ ନ ଥିଲା ଏବଂ ଏହା ଦୃଢ଼ତା ସହକାରେ ସବୁ ସଂଘର୍ଷର ମୁକାବିଲା କଲା । ଉତ୍ତର ଭାରତରେ ପ୍ରତ୍ୟେକ ସ୍ଥାନରେ ଏହାର ଶାଖାମାନ ଖୁବ୍ ଦୃଢ଼ ଏବଂ ଶୃଙ୍ଖଳିତ ଭାବେ ପରିଚାଳିତ ହେଉଥିଲା ।

ପଞ୍ଜାବ ରାଜା ରଣଜିତ ସିଂଙ୍କର ମୃତ୍ୟୁ ଏବଂ ପଞ୍ଜାବ ଦଖଲ ପରେ ସେଠାରେ ଇଂରେଜମାନଙ୍କର ପ୍ରଭାବ ବୃଦ୍ଧି ପାଇବାରୁ ୱାଲିଉଲା ଆନ୍ଦୋଳନକାରୀମାନେ ଇଂରେଜ ଶକ୍ତିର ମୁହାଁମୁହିଁ ହେଲେ । ଏହା ଇଂରେଜ ସରକାରର ଦୃଷ୍ଟି ଆକର୍ଷଣ କଲାବେଳକୁ ଏହାର ଶାଖା ଏବଂ ସଂଗଠନ ସୀମାନ୍ତ ପ୍ରଦେଶଠାରୁ ବିହାର ପର୍ଯ୍ୟନ୍ତ ଏମିତି ଚେର ମାଡ଼ି ଯାଇଥିଲା ଯେ ସରକାର ଏହାକୁ ଏକ ବିଷମ ବିପଦ ବୋଲି ମନେକଲେ ଓ

(1) W. W. Hunter – The Indian Mussalmans Page- 61-62

ଏହାକୁ ନିର୍ମୂଳ କରିବାକୁ ଲାଗିପଡ଼ିଲେ । ଦଳେ ସ୍ୱତନ୍ତ୍ର ପୋଲିସ ସେମାନଙ୍କ ଗତିବିଧି ଉପରେ ତୀକ୍ଷ୍ଣ ନଜର ରଖିଲେ । ୧୮୫୦ ରୁ ୧୮୬୩ ଭିତରେ ଖୁବ୍ କମ୍‌ରେ କୋଡ଼ିଏ ଥର ସାମରିକ ଅଭିଯାନ ହୋଇଥିଲା ଏବଂ ଏଥିରେ ପ୍ରାୟ ଷାଠିଏ ହଜାର ବ୍ରିଟିଶ୍ ସୈନ୍ୟ ଅଂଶଗ୍ରହଣ କରିଥିଲେ; ତଥାପି ୱାଲିଉଲା ବିଦ୍ରୋହ ଦମିତ ହୋଇ ନ ଥିଲା । ଏଥିରୁ ଆନ୍ଦୋଳନର ବ୍ୟାପକତା ଓ ଶକ୍ତିର ପରିମାପ କରିହେବ । ଶେଷରେ ସେମାନଙ୍କ ବିରୋଧରେ ବହୁମୁଖୀ ଅଭିଯାନ ଆରମ୍ଭ କରିଦେଲେ । ବିଦ୍ରୋହୀ ନେତାମାନଙ୍କୁ ଗୋଟି ଗୋଟି ଧରି ଜେଲ, ଦ୍ୱୀପାନ୍ତର ଓ ଫାଶୀଦଣ୍ଡ ଦିଆଯିବା ସଙ୍ଗେ ସଙ୍ଗେ ବିଦ୍ରୋହ କେନ୍ଦ୍ର ଉପରେ ନିଷ୍ଠୁର ଅମାନୁଷିକ ସାମରିକ ଅଭିଯାନ କରାଗଲା । ଏହାକୁ ମୁଖ୍ୟତଃ ଏକ 'ଜେହାଦ' ବା ଧର୍ମଯୁଦ୍ଧ କୁହାଯାଉଥିବାରୁ ଚତୁର ଇଂରେଜମାନେ ଏହାକୁ ସେହି ଅସ୍ତ୍ରରେ ଲୋପ କରିବାକୁ ମଧ୍ୟ ଆୟୋଜନ କଲେ, ଅର୍ଥାତ୍ ଏହା 'ଧର୍ମଯୁଦ୍ଧ' ନୁହେଁ ବୋଲି ସେହି ମୁସ୍ଲିମ୍ ଧର୍ମୀୟ ନେତାମାନଙ୍କ ଜରିଆରେ ପ୍ରଚାର କରିବା ଆରମ୍ଭ କଲେ । ମକ୍‌କାର ପ୍ରଧାନ ମୁସ୍ଲିମ ଧର୍ମଗୁରୁ ସୁଫ୍ରିଙ୍କ ଜରିଆରେ ଏହି ଆନ୍ଦୋଳନର ନିନ୍ଦା କରାଗଲା । ଭାରତର ସିହା ସଂପ୍ରଦାୟର ମୁସଲମାନମାନେ ଘୋଷଣା କଲେ ଯେ, 'ଭାରତ ଦାରୁ-ଉଲ-ଇସଲାମ' (ମୁସ୍ଲିମ ଧର୍ମପୀଠ) ହୋଇଥିବାରୁ ଏଠାରେ ଜେହାଦ ଅବୈଧାନିକ ଅଟେ । କଲିକତାରେ ମହମଡ଼ାନ ଲିଟରାରୀ ସୋସାଇଟି ଏକ ତର୍କସଭା ଡକାଇ ୱାଲିଉଲ ଆନ୍ଦୋଳନ ବିରୋଧରେ ପ୍ରଚାରପତ୍ର ବାଣ୍ଟିଲେ ଏବଂ ଇଂରେଜମାନଙ୍କ ବିରୋଧରେ ଏହି ଆନ୍ଦୋଳନ ମୁସ୍ଲିମ ଧର୍ମବିରୋଧୀ ବୋଲି ପ୍ରଚାର କଲେ । ଏହାସବୁ ଯେ ଚତୁର ଇଂରେଜମାନଙ୍କ କାରସାଦି ଏହାର ଉଲ୍ଲେଖ ନିଷ୍ପ୍ରୟୋଜନ ।

ତଥାପି ଏହାକୁ ସଂପୂର୍ଣ୍ଣରୂପେ ଦମନ କରିବାକୁ ୧୮୮୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚେଷ୍ଟା ଅବ୍ୟାହତ ଥିଲା । ଐତିହାସିକମାନଙ୍କ ମତରେ ୱାଲିଉଲା ଆନ୍ଦୋଳନ ମୁଖ୍ୟତଃ ଏକ ସାଂପ୍ରଦାୟିକ ଆନ୍ଦୋଳନ ହୋଇଥିଲେ ମଧ୍ୟ ଏହାର ରାଜନୈତିକ ପ୍ରଭାବ ସୁଦୂରପ୍ରସାରୀ ହୋଇଥିଲା । ଏହି ବିଦ୍ରୋହ ନିର୍ଭୁଲଭାବେ ପ୍ରମାଣିତ କରିଦେଲା ଯେ ଇଂରେଜଶାସନର ଗୋଏନ୍ଦା ଓ ପୋଲିସର ଦୃଷ୍ଟିକୁ ଫାଙ୍କିଦେଇ ଏକ ବ୍ୟାପକ ସଶସ୍ତ୍ର ବିପ୍ଳବର ଆୟୋଜନ ଅସମ୍ଭବ ବ୍ୟାପାର ନୁହେଁ ଏବଂ ଏକ ରାଜନୈତିକ ଆଦର୍ଶ ଉପରେ ପ୍ରତିଷ୍ଠିତ ସଶସ୍ତ୍ର ବିପ୍ଳବ କଷ୍ଟସାଧ୍ୟ ହେଲେ ମଧ୍ୟ ଅସାଧ୍ୟ ନୁହେଁ ।

ଏଥିରୁ ଆହୁରି ଏକ ପ୍ରମାଣ ମିଳିଲା ଯେ ଧର୍ମୀୟ ଓ ସାଂପ୍ରଦାୟିକ ଆଦର୍ଶ ଉପରେ ପ୍ରତିଷ୍ଠିତ କୌଣସି ବିପ୍ଳବ କେବେଁ ସ୍ଥାୟୀ ହୋଇପାରିବ ନାହିଁ, ବିଶେଷତଃ ଭାରତ ଭଳି ବହୁଧର୍ମୀୟ ରାଷ୍ଟ୍ରରେ ସଂପୂର୍ଣ୍ଣ ସାଫଲ୍ୟ ଲାଭ କରିପାରିବନି । ସୟଦ ଅହମ୍ମଦଙ୍କ ଭଳି ଅସାଧାରଣ ପ୍ରତିଭା ଓ ସାଂଗଠନିକ ଶକ୍ତିସଂପନ୍ନ ବ୍ୟକ୍ତି ଯଦି ସଂକୀର୍ଣ୍ଣ ଧର୍ମାନ୍ଧତାର ବଶବର୍ତ୍ତୀ ନ ହୋଇ ସବୁ ସଂପ୍ରଦାୟର ସମର୍ଥନ ଅର୍ଜନ କରିପାରିଥାନ୍ତେ, ତେବେ

ତାଙ୍କର ଆନ୍ଦୋଳନ ଯେ ବାସ୍ତବରେ ଫଳପ୍ରସୂ ହୋଇପାରିଥା'ନ୍ତା, ଏଭଳି ଆଶାକରିବାର ଯଥେଷ୍ଟ କାରଣ ରହିଛି ।

**ସନ୍ନ୍ୟାସୀ ବିଦ୍ରୋହ –**

ହିନ୍ଦୁ ସନ୍ନ୍ୟାସୀମାନଙ୍କର ସଂଗଠିତ ବିଦ୍ରୋହ ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମର ଇତିହାସରେ ଏକ ସ୍ମରଣୀୟ ବର୍ଣ୍ଣାଢ଼୍ୟ ଘଟଣା । ଅଷ୍ଟମ ଶତାବ୍ଦୀର ବିଖ୍ୟାତ ବେଦାନ୍ତ ଧର୍ମପ୍ରଚାରକ ଆଦିଶଙ୍କର ବା ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ଏହି ସନ୍ନ୍ୟାସୀ ଦଳର ସୃଷ୍ଟି ବୋଲି ବିଶ୍ୱାସ କରାଯାଏ । ଶଙ୍କରାଚାର୍ଯ୍ୟଙ୍କର ଦେହରକ୍ଷା ପରେ ତାଙ୍କର ସଂପ୍ରଦାୟ ଯେଉଁ ଦଶଗୋଟି ଉପଦଳରେ ବିଭକ୍ତ ହୋଇଥିଲେ ଉପରୋକ୍ତ ଦଳଟି ସେଥିମଧ୍ୟରୁ ଗୋଟିଏ ବୋଲି ଜଣାଯାଏ । ଏମାନେ 'ଗିରିସନ୍ନ୍ୟାସୀ' ନାମରେ ମଧ୍ୟ ପରିଚିତ । ତେବେ ସେମାନେ କେବେ ଅସ୍ତ୍ରଶସ୍ତ୍ର ଧରି ପ୍ରତ୍ୟକ୍ଷ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ, ତା'ର ସଠିକ କାଳ ନିରୂପଣ କରାଯାଇ ପାରୁନାହିଁ । ସେ ଯାହାହେଉ, ୧୮ଶ ଶତାବ୍ଦୀରେ ବିଭିନ୍ନ ରଣକ୍ଷେତ୍ରରେ ସଶସ୍ତ୍ର ସନ୍ନ୍ୟାସୀମାନେ ଅଂଶଗ୍ରହଣ କରିଥିବାର ପ୍ରମାଣ ମିଳୁଛି । ଇଂରେଜମାନଙ୍କ ସହ ଏମାନଙ୍କର ମୁହାଁମୁହିଁ ସଂଘର୍ଷ ହୋଇଥିଲା ବକ୍‌ସାର ରଣକ୍ଷେତ୍ରରେ । ମୀରକାଶିମଙ୍କ ସପକ୍ଷରେ ପ୍ରାୟ ପାଞ୍ଚ ହଜାର ସନ୍ନ୍ୟାସୀ ଇଂରେଜମାନଙ୍କ ବିରୋଧରେ ଲଢ଼ିଥିଲେ । ଇଂରେଜଶାସନ ଫଳରେ ଦେଶରେ ଯେଉଁ ଅର୍ଥନୈତିକ ଦୁର୍ଗତି ଆରମ୍ଭ ହୋଇଥିଲା ଏବଂ ତା' ଫଳରେ ବ୍ୟାପକ ଜନଅସନ୍ତୋଷ ସୃଷ୍ଟି ହୋଇଥିଲା ତା'ର ସୁଯୋଗ ନେଇ ସନ୍ନ୍ୟାସୀମାନେ ବଙ୍ଗଳାର ଗାଁଗହଳିରେ ଖେଦିଯାଇଥିଲେ ଏବଂ ବାରମ୍ବାର ଇଂରେଜ ସୈନ୍ୟ ଓ ଶାସକମାନଙ୍କ ଉପରେ ଚଢ଼ାଉ କରିଥିଲେ । ଇଷ୍ଟଇଣ୍ଡିଆ କଂପାନୀ ବୋର୍ଡ଼ ଅଫ୍ ଡିରେକ୍‌ଟର୍ସ ନିକଟକୁ କଂପାନୀର କାଉନ୍ସିଲ ୧୭୭୩ ମସିହା ଜାନୁୟାରୀ ୧୫ ତାରିଖରେ ଏକ ଗୁପ୍ତ ରିପୋର୍ଟରେ ଲେଖିଥିଲେ, "ପ୍ରାୟ ପଚାଶ ହଜାର ସନ୍ନ୍ୟାସୀ ବିପ୍ଳବୀମାନଙ୍କର ଏ ଦଳ :ଗୃହଦାହ, ଲୁଣ୍ଠନ ଓ ହତ୍ୟାକାଣ୍ଡ ଚଳାଇ ବଙ୍ଗଳାରେ ଆତଙ୍କରାଜ ସୃଷ୍ଟି କରିଅଛନ୍ତି ।" ୧୭୭୦ର ବଙ୍ଗଳାର ଭୟାବହ ଦୁର୍ଭିକ୍ଷ ପରେ ପରେ ବଙ୍ଗଳାରେ ଯେଉଁ ଅସନ୍ତୋଷ ଓ ଅରାଜକତା ସୃଷ୍ଟି ହୋଇଥିଲା ସନ୍ନ୍ୟାସୀମାନେ ତା'ର ପୂର୍ଣ୍ଣ ସଦୁପଯୋଗ କରିଥିଲେ ବୋଲି ଏହି ରିପୋର୍ଟରୁ ଜଣାଯାଉଛି ।

'ସନ୍ନ୍ୟାସୀ ବିଦ୍ରୋହକୁ' ଦମନ କରିବାକୁ ସରକାର ବହୁସଂଖ୍ୟକ ସୈନ୍ୟ ନିଯୁକ୍ତ କଲେ ସତ୍ୟ କିନ୍ତୁ ତାହା ଏତେ ସହଜକଥା ନ ଥିଲା । କାରଣ ସନ୍ନ୍ୟାସୀ ବିଦ୍ରୋହୀମାନେ ଇଂରେଜ ସୈନ୍ୟମାନଙ୍କ ମୁହାଁମୁହିଁ ନ ହୋଇ ଲୁଚିଛପି ଗରିଲା ଯୁଦ୍ଧ ଚଳାନ୍ତି । ଏହିପରି ଭାବରେ ଊନବିଂଶ ଶତାବ୍ଦୀର ୩ୟ ଦଶକ ପର୍ଯ୍ୟନ୍ତ ଇଂରେଜ ସରକାର ସହ ଯୁଦ୍ଧକରି 'ସନ୍ନ୍ୟାସୀ ବିଦ୍ରୋହ' କ୍ରମେ ମଉଳି ଆସିଲା । କିନ୍ତୁ ଇତିହାସରେ ରହିଗଲା ସେମାନଙ୍କର ନିର୍ଭୀକ ଅଭିଯାନ ଓ ଦୁର୍ଜ୍ଜୟ ସାହସର ଅଲିଭା ସ୍ୱାକ୍ଷର ।

## ବିଜୟନଗର ବିଦ୍ରୋହ –

ଅଷ୍ଟାଦଶ ଶତାବ୍ଦୀରେ ଦକ୍ଷିଣଭାରତରେ ଯେତେଗୁଡ଼ିଏ ସଶସ୍ତ୍ର ବିଦ୍ରୋହ ହୋଇଥିଲା, ସେଥିମଧ୍ୟରୁ ବିଜୟନଗର ବିଦ୍ରୋହ ଅନ୍ୟତମ । ଇଷ୍ଟଇଣ୍ଡିଆ କଂପାନୀର ନିର୍ମମ ଭୂରାଜସ୍ୱ ଓ ରାଜ୍ୟବିସ୍ତାର ନୀତି ଦାକ୍ଷିଣାତ୍ୟରେ ଗୁରୁତର ପ୍ରଭାବ ପକାଇଥିଲା । ହାଇଦର ଅଲ୍ଲୀ ଓ ଟିପୁଙ୍କର ମୃତ୍ୟୁ ପରେ ଦକ୍ଷିଣ ଭାରତରେ ଇଂରେଜମାନଙ୍କର କଟେଦାର ପଡ଼ିଥିଲା । ସେତେବେଳେ ଇଂରେଜ ଶାସନକୁ ଟକ୍କର ଦେବାକୁ କେହି ନ ଥିଲେ କହିଲେ ଚଳେ । ପ୍ରଥମେ ବିଜୟନଗର ରାଜାଙ୍କର ଶାନ୍ତିଭଙ୍ଗ କରିଥିଲେ ଇଂରେଜମାନେ । ସେତେବେଳେ ଭାଇଜାଗ୍‌ପଟମ, କାଶୀମକୋଟା, ଚିକାକୋଲ ଓ ପାରଳାଖେମୁଣ୍ଡି ପ୍ରଭୃତି ବିଜୟନଗର ଅଧୀନରେ ଥିଲା । ୧୭୬୫ରେ ଇଂରଜମାନେ 'ଉତ୍ତର ସରକାର'ର ସନନ୍ଦ ପାଇବା ପରେ ବିଜୟନଗର ରାଜାଙ୍କଠାରୁ ତିନି ଲକ୍ଷ ଟଙ୍କା ସେପକିସ୍ ଦାବି କଲେ । ଏହି ତିନି ଲକ୍ଷ କ୍ରମେ ବଢ଼ି ବଢ଼ି ଦଶ ଲକ୍ଷ ଟଙ୍କାରେ ପହଞ୍ଚିଲା । ରାଜା ଏହା ଦେବାକୁ ଅସ୍ୱୀକାର କରି ବିଦ୍ରୋହକଲେ । ଯୁଦ୍ଧହେଲା । ରାଜା ଏ ଯୁଦ୍ଧରେ ନିହତ ହେଲେ ।

ତିନେଭେଲୀ, ପଞ୍ଚାଲାମକୁରୁଚି, ଶିବାଗିରି, ରାମନାଡ଼ ଓ ଡିଡ଼ିଙ୍ଗଲରେ ମଧ୍ୟ ବିଦ୍ରୋହ ହୋଇଥିଲା । ଉତ୍ତର ଆର୍କଟରେ ୧୮୦୩ –୧୮୦୫ ଏବଂ ପାରଳାଖେମୁଣ୍ଡିରେ ୧୮୧୩ –୧୪ ରେ ବିଦ୍ରୋହ ହୋଇଥିଲା । ୧୮୩୦ ରେ ଭାଇଜାଗପଟମର ବୀରଭଦ୍ର ରାଜା ଓ ଜଗନ୍ନାଥ ରାଜାଙ୍କର ବିଦ୍ରୋହ, ୧୮୩୫ର କୁର୍ନୁଲର ନରସିଂହ ରେଡ଼ିଙ୍କ ବିଦ୍ରୋହ, ୧୭୯୬ର କେରଳ ବିଦ୍ରୋହକୁ ମଧ୍ୟ ଇଂରେଜମାନେ ଦବେଇ ଦେଇଥିଲେ ।

## ଭେଲୁତାମ୍ପି ବିଦ୍ରୋହ –

ତ୍ରିଭାଙ୍କୁଡ଼ ରାଜ୍ୟକୁ ୧୮୦୫ରେ ବଳପୂର୍ବକ ଇଂରେଜ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରାଯାଇଥିଲା । କିନ୍ତୁ ଦେୱାନ ଭେଲୁତାମ୍ପି ଷଡ଼ଯନ୍ତ୍ର କରିଥିଲେ । ବ୍ରିଟିଶ୍ ସେନାବହିନୀରେ ଥିବା 'ନାୟାର' ସଂପ୍ରଦାୟ ଲୋକେ ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ । କିନ୍ତୁ ଇଂରେଜମାନେ ଅନୁଗତ ଓ ପ୍ରଭୁଭକ୍ତ ଭାରତୀୟ ସୈନ୍ୟଙ୍କ ସାହାଯ୍ୟରେ ଏହି ବିଦ୍ରୋହ ଦମନ କରିବାକୁ ସମର୍ଥ ହେଲେ । ଦେୱାନ ଆତ୍ମହତ୍ୟା କଲେ । ଏହାକୁ 'ନାୟାର ବିଦ୍ରୋହ' ମଧ୍ୟ କୁହାଯାଏ ।

## ଧୋଣ୍ଡଜୀଙ୍କ ବିଦ୍ରୋହ –

ଧୋଣ୍ଡଜୀ ୱାଗ ଟିପୁ ସୁଲତାନଙ୍କର ରାଜନୈତିକ ବନ୍ଦୀମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଖଲାସ ହେବା ପରେ କିଛି ସୈନ୍ୟ ସଂଗ୍ରହ କରି ଏକ ବିଦ୍ରୋହ ଘୋଷଣା କରିଥିଲେ । ବ୍ରିଟିଶ୍ ସେନାପତି ୱେଲସଲିଙ୍କ ସହ ତାଙ୍କର ସଂଘର୍ଷ ହୋଇଥିଲା । ଅସୀମ

ବୀରତ୍ୱ ସହକାରେ ଲଢ଼ି ଧୋଣ୍ଡଜୀ ଯୁଦ୍ଧକ୍ଷେତ୍ରରେ ପ୍ରାଣତ୍ୟାଗ କଲେ । ୧୮୩୧ରେ ମହୀଶୂରରାଜା ମଧ୍ୟ ବିଦ୍ରୋହ କରିଥିଲେ । କୁର୍ଗର ରାଜା ବୀରରାଜଙ୍କର ବିଦ୍ରୋହ ୧୮୩୪ରେ ଏବଂ ମହୀଶୂର ରାଜାଙ୍କ ବିଦ୍ରୋହ ଦମନ କରିବାକୁ ଇଂରେଜମାନେ ସମର୍ଥ ହେଲେ ।

## ରାଜା ମହୀପତଙ୍କ ବିଦ୍ରୋହ –

୧୮୦୦ ଖ୍ରୀଷ୍ଟାବ୍ଦରେ ହାଇଦ୍ରାବାଦ ନିଜାମଙ୍କ ସହ ଯେଉଁ ଚୁକ୍ତି ହୋଇଥିଲା ତଦନୁଯାୟୀ ନିଜାମ ଇଂରେଜମାନଙ୍କର 'ବିଶ୍ୱସ୍ତ ବନ୍ଧୁ' ଆସନରେ ପ୍ରତିଷ୍ଠିତ ହୋଇସାରିଥିଲେ । କିନ୍ତୁ ହାଇଦ୍ରାବାଦର ସାମନ୍ତ ଏବଂ ଜମିଦାରମାନେ ଏହି ଚୁକ୍ତି ସଂପର୍କରେ ଅସନ୍ତୁଷ୍ଟ ଥିବାରୁ ବିଦ୍ରୋହ ଘୋଷଣା କରିଥିଲେ । ନିଜାମଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ର ସିକନ୍ଦରଝା ଏହି ଚୁକ୍ତି ପ୍ରକାଶ୍ୟ ଭାବରେ ଅମାନ୍ୟ କଲେ ଏବଂ ବେରାର ଶାସକ ମହୀପତ ସିକନ୍ଦରଝାଙ୍କୁ ସମର୍ଥନ କରିଥିଲେ । ଫଳରେ ଇଂରେଜମାନଙ୍କ ସହ ତାଙ୍କର ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିଲା ଏବଂ ଯୁବକ ନିଜାମକୁ ମହୀପତଙ୍କ ପ୍ରଭାବରୁ ମୁକ୍ତ କରିବା ପାଇଁ ଇଂରେଜମାନେ ଲାଗିପଡ଼ିଲେ; କିନ୍ତୁ ବିଦ୍ରୋହୀ ମନୋଭାବ ବଦଳିଲା ନାହିଁ । ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଏହି ବିଦ୍ରୋହ ଲାଗିରହିଥିଲା ।

## ମୁଜାବରିଜୌଦୁଲା ବିଦ୍ରୋହ –

ସୟଦ ଅହମ୍ମଦଙ୍କ ଓ୍ୱାଲିଉଲା ଆନ୍ଦୋଳନ ବେଳେ ଦକ୍ଷିଣ ଭାରତରେ ମୁଜାବରିଜୌଦୁଲା ଏହି ଆନ୍ଦୋଳନର ସୂତ୍ରପାତ କରିଥିଲେ । ଫଳରେ ହାଇଦ୍ରାବାଦସ୍ଥ ବ୍ରିଟିଶ୍ ରେସିଡ଼େଣ୍ଟଙ୍କ ସନ୍ଦେହ ଦୃଷ୍ଟି ପଡ଼ିଲା ତାଙ୍କ ଉପରେ । ତାଙ୍କର ଉଗ୍ର ବ୍ରିଟିଶ୍ ବିରୋଧୀ ପ୍ରଚାର ତାଙ୍କୁ ଖୁବ୍‌ଶୀଘ୍ର ଇଂରେଜମାନଙ୍କର ଚକ୍ଷୁଶୂଳ କରିଦେଲା । ନିଜାମଙ୍କ ସହାୟତାରେ ମୁଜାବରୀଙ୍କୁ ଗିରଫ କରାଯାଇ ଗୋଲକୁଣ୍ଡା ଦୁର୍ଗରେ ବନ୍ଦୀ କରାଗଲା । ୧୮୫୪ରେ ତାଙ୍କର ମୃତ୍ୟୁ ହୋଇଥିଲା ।

୧୮୧୮ରେ ପେଶବାଙ୍କ ପରାଜୟ ସତ୍ତ୍ୱେ ମରହଟ୍ଟା ସାମ୍ରାଜ୍ୟ ଭିତରେ ଶାନ୍ତି ପ୍ରତିଷ୍ଠାକରି ସୁରୁଖୁରରେ ଶାସନ ଚଳାଇବା ଇଂରେଜମାନଙ୍କ ପକ୍ଷରେ ଅସମ୍ଭବ ଥିଲା । ଉମାଜୀ ନାୟକ ଓ ବାପୁ ତ୍ରିମ୍ବକଜୀ ସବନ୍ତଙ୍କ ନେତୃତ୍ୱରେ ଇଂରେଜମାନଙ୍କ ବିରୋଧରେ ବ୍ୟାପକ ବିଦ୍ରୋହ ସୃଷ୍ଟି ହୋଇଥିଲା । କିନ୍ତୁ ଇଂରେଜମାନେ ତାହା ଦବେଇ ଦେଇଥିଲେ । ତେଣେ ସତାରାର ଗାଦିଚ୍ୟୁତ ରାଜା ପ୍ରତାପ ସିଂଙ୍କୁ ପୁଣି ରାଜଗାଦିରେ ବସାଇବାକୁ ନିମ୍ବାଜିଂକ ନେତୃତ୍ୱରେ ବିଦ୍ରୋହ ଦେଖାଦେଲା । ବିଦ୍ରୋହୀମାନେ ରାଇଚୁର୍ ଦୁର୍ଗ ଦଖଲକରି ଇଂରେଜଶାସନର ଅବସାନ ଘଟାଇଲେ । ଏହି ବିଦ୍ରୋହ ୧୮୪୧ରେ ଦମନ ହୋଇଥିଲା ।

ଏହା ପରେ ପରେ ୧୮୪୪ରେ କୋଲ୍ଲାପୁରରେ 'ଗଦକାରୀ ବିଦ୍ରୋହ' ହେଲା । ଗଦକାରୀମାନେ ମରହଟ୍ଟା ରାଜପରିବାରର ପୁରୁଷାନୁକ୍ରମେ କର୍ମଚାରୀ ଥିଲେ ।

ସେମାନେ କର୍ମଚ୍ୟୁତ ହେବାରୁ ବିଦ୍ରୋହ କରିଥିଲେ । ସମାନଗଡ ଓ ଭୂଧରଗଡ଼ ଦୁର୍ଗ ସେମାନଙ୍କ ହାତରେ ପଡ଼ିଥିଲା । ଏହି ବିଦ୍ରୋହକୁ ଦମନ କରିବା ପାଇଁ ଇଂରେଜମାନଙ୍କୁ ବହୁ ଧନଜନ ବ୍ୟୟ କରିବାକୁ ପଡ଼ିଥିଲା । ସାମନ୍ତ ବାଡ଼ିର ସର୍ଦ୍ଦାର ଫଳସାମନ୍ତଙ୍କ ନେତୃତ୍ୱରେ ବିଦ୍ରୋହ ହୋଇଥିଲା । ସେମାନେ ଇଂରେଜମାନଙ୍କର କେତେଗୁଡ଼ିଏ ଦୁର୍ଗ ଦଖଲ କରିଥିଲେ । ଶେଷରେ ତାହା ଦମନ କରି ବିଦ୍ରୋହୀ ନେତାମାନଙ୍କୁ କଠୋର ଦଣ୍ଡଦେବାକୁ ଇଂରେଜମାନେ ସମର୍ଥ ହୋଇଥିଲେ ।

**ପଶ୍ଚିମ ଭାରତର ବିଦ୍ରୋହ –**

କାପଟେନ୍ ଆଉଟ୍‌ରାମ ୧୮୩୫ରେ ଗୁଜୁରାଟ ଓ ସୌରାଷ୍ଟ୍ର ଗସ୍ତକରି କମ୍ପାନୀକୁ ରିପୋର୍ଟ ଲେଖିଥିଲେ । "ଗୁଜୁରାଟ ଜନସାଧାରଣଙ୍କର ଏକ ଦୃଢ଼ବିଶ୍ୱାସ ସୃଷ୍ଟି ହୋଇଅଛି ଯେ ସେମାନେ ଆମ୍ଭମାନଙ୍କୁ (ଇଂରେଜମାନଙ୍କୁ) ମନଇଚ୍ଛା ଅପମାନିତ ଓ ହଇରାଣ କରି ଏପରିକି ଲୁଣ୍ଠନ ସୁଦ୍ଧା କରି ଖସିଯିବାକୁ ସମର୍ଥ ହେବେ । କିଛି ବ୍ୟବସ୍ଥା ନ ହେଲେ ମୁଷ୍ଟିମେୟ ଇଂରେଜସୈନ୍ୟଙ୍କୁ ଲକ୍ଷ ଲକ୍ଷ ଭାରତବାସୀ ସବୁବେଳେ ଡରେଇ ରଖିବା ଅସମ୍ଭବ ନୁହେଁ ।" ଏହାହିଁ ଥିଲା ସେତେବେଳେ ଗୁଜୁରାଟ ଓ ସୌରାଷ୍ଟ୍ରର ଆଦର୍ଶ ।

କଚ୍ ପ୍ରଦେଶର ୱାଘେରା ମୂଳରୁ ଇଂରେଜ ଶାସନର ବିରୁଦ୍ଧାଚରଣ କରିଥିଲେ । ଇଂରେଜମାନଙ୍କର ସହାୟତା ପାଇଁ ବରୋଦାର ଗାଇକୋବାଡ଼ ଯେଉଁ 'ମୁଲ୍କଗିରି' ଟ୍ୟାକ୍ସ ଆଦାୟ କରୁଥିଲେ ତା' ବିରୋଧରେ ଜନଅସନ୍ତୋଷ ବଢ଼ିଲା । ସୁରାଟ ବ୍ୟବସାୟୀମାନେ ଲୁଣ କର ଦେବାକୁ ଓ ଇଂରେଜ ପ୍ରବର୍ତ୍ତିତ ମାପ ଓ ଓଜନ ଚଳାଇବାକୁ ରାଜି ନ ହୋଇ ଦୋକାନ ବଜାର ବନ୍ଦ କରିଥିଲେ । ବିଶେଷତଃ ବ୍ୟବସାୟୀମାନେ ଇଂରେଜ ଲୋକଙ୍କୁ କୌଣସି ସଉଦା ପତ୍ର ବିକିଲେ ନାହିଁ । ବିଦ୍ରୋହ କ୍ରମେ ଉଗ୍ରରୂପ ଧାରଣ କଲା । ଶେଷରେ ଇଂରେଜମାନେ ସେହିସବୁ ଜନବିରୋଧୀ ଆଇନକୁ ଉଠାଇଦେବାକୁ ବାଧ୍ୟ ହୋଇଥିଲେ । ଭିଲ୍ ଓ କୋଲି ଆଦିବାସୀମାନଙ୍କର ବିଦ୍ରୋହ ଅନ୍ୟତ୍ର ବର୍ଣ୍ଣିତ ହୋଇଛି ।

**ରାଜପୁତ ଦେଶର ବିଦ୍ରୋହ –**

ଇଂରେଜମାନେ ଆସିବାବେଳେ ରାଜପୁତନା ଅଞ୍ଚଳ ମରହଟ୍ଟାମାନଙ୍କ ଅଧୀନରେ ଥିଲା । ମରହଟ୍ଟାମାନେ ରାଜପୁତମାନଙ୍କୁ ବହୁଦିନୁ ଶୋଷଣ କରି ଚାଲିଥିଲେ । ସେ ଶୋଷଣର ସୀମା ନ ଥିଲା । ଇଂରେଜମାନଙ୍କଦ୍ୱାରା ରାଜପୁତାନା ଦଖଲ ହେବା ପରେ ମରହଟ୍ଟା ଶୋଷଣ ବନ୍ଦ ହେଲା ସତ୍ୟ କିନ୍ତୁ ଇଂରେଜମାନଙ୍କର ଚତୁର ଓ କୌଶଳପୂର୍ଣ୍ଣ ଶୋଷଣରେ ଲୋକ ଅତିଷ୍ଠ ହୋଇପଡ଼ିଲେ । ଅର୍ଥନୈତିକ ଶୋଷଣ ସାଙ୍ଗକୁ ସାମାଜିକ ଓ ଧର୍ମୀୟ ବିଶ୍ୱାସ ଉପରେ ହସ୍ତକ୍ଷେପ ଫଳରେ ନୂଆ ବିପଦ ଦେଖାଦେଲା । ରାଜପୁତ

ଜାତି ସ୍ୱଭାବତଃ ସ୍ୱାଧୀନତାପ୍ରିୟ । ଘଟଣାଚକ୍ରରେ ଏବଂ ଖାସ୍‌କରି ଆତ୍ମକଳହ ଯୋଗୁଁ ସେମାନେ ସ୍ୱାଧୀନତା ହରାଇଥିଲେ ସୁଦ୍ଧା ସେମାନଙ୍କ ଭିତରେ ଜୀବନ ଥିଲା । ସେମାନେ ଇଂରେଜମାନଙ୍କୁ ମରହଟ୍ଟାମାନଙ୍କ ଅପେକ୍ଷା ଅଧିକ ଭୟଙ୍କର ମନେକଲେ । ଫଳରେ ସଂଘର୍ଷ ଓ ବିଦ୍ରୋହ ଅନିବାର୍ଯ୍ୟ ହୋଇପଡ଼ିଲା । ଯୋଧପୁରର ରାଜା ମାନସିଂ ଥିଲେ ବିଦ୍ରୋହର କେନ୍ଦ୍ରବିନ୍ଦୁ । ଜୁଠାରାମ ଓ ମହାରାଜା କିଶେନ ସିଂ ମଧ୍ୟ ବିଦ୍ରୋହର ନେତୃତ୍ୱ ନେଇଥିଲେ । ବହୁ ଆୟାସ ସ୍ୱୀକାରକରି ଇଂରଜମାନେ ଏହି ବିଦ୍ରୋହକୁ ସଂପୂର୍ଣ୍ଣ ଦମନ କରିବାକୁ ପ୍ରାୟ ଉନବିଂଶ ଶତାବ୍ଦୀ ଶେଷ ଭାଗ ପର୍ଯ୍ୟନ୍ତ ବ୍ୟସ୍ତ ରହିଥିଲେ ।

ଉତ୍ତର ଭାରତ –

ବିହାର ଓ ପଞ୍ଜାବ ମଧ୍ୟରେ ଥିବା ଗଙ୍ଗା ଯମୁନା ଅବବାହିକାର ବିସ୍ତୃତାଂଶ ଅଯୋଧ୍ୟା ନବାବଙ୍କ ହାତରୁ ଇଂରେଜମାନଙ୍କ ଅଧିକାରକୁ ଆସିଲା ୧୮୫୬ରେ । କିନ୍ତୁ ୧୭୭୮ରେ କର୍ଣ୍ଣେଲହାନେ ଗୋରଖପୁରର ବାହାରିଚ୍ ଓ ବସ୍ତିଜିଲା ଶାସକରୂପେ ନିଯୁକ୍ତ ହୋଇଥିଲେ । ହାନେ ରାଜସ୍ୱ ଆଦାୟ କରିବାକୁ ଏଭଳି ନିଷ୍ଠୁର ଉପାୟ ଅବଲମ୍ବନ କଲେ ଯେ ଲୋକେ ତ୍ରାହି ତ୍ରାହି ଡାକ ଛାଡ଼ିଲେ । କମ୍ପାନୀର କ୍ରମବର୍ଦ୍ଧମାନ ଦାବି ପୂରଣ କରୁ କରୁ ସେମାନେ ସର୍ବସ୍ୱାନ୍ତ ହୋଇଗଲେ । ଜନଅସନ୍ତୋଷର ନେତୃତ୍ୱ ନେଲେ ଛୋଟ ଛୋଟ ଜମିଦାରମାନେ । ବିଦ୍ରୋହୀ ପ୍ରଜା ଇଂରେଜମାନଙ୍କର କେତେଗୁଡ଼ିଏ ଦୁର୍ଗ ଦଖଲ କରିଗଲେ । ସେତେବେଳେ ଇଂରେଜ ଶାସକ ଥିଲେ କୁଖ୍ୟାତ ଗଭର୍ଣ୍ଣର ୱାରେନ୍ ହେଷ୍ଟିଙ୍ଗ୍‌ସ । ଅଯୋଧ୍ୟାର ବେଗମ୍ ଏହି ବିଦ୍ରୋହକୁ ଉସ୍‌କାଉଛନ୍ତି ବୋଲି ତାଙ୍କୁ କୁହାଗଲା । ଫଳରେ ବହୁସଂଖ୍ୟକ ସୈନ୍ୟ ନେଇ ହେଷ୍ଟିଙ୍ଗ୍‌ସଙ୍କୁ ଏହି ବିଦ୍ରୋହର ମୁକାବିଲା କରିବାକୁ ପଡ଼ିଲା ।

ନବାବ ୱାଜିର ଅଲ୍ଲୀ ଇଂରେଜମାନଙ୍କର ଦାବି ମାନି ନ ଥିବାରୁ ୧୭୯୯ରେ ତାଙ୍କୁ ଗାଦିଚ୍ୟୁତ କରାଯାଇଥିଲା । ସେ ଅସନ୍ତୁଷ୍ଟ ହୋଇ ରାଜପୁତ୍, ମରହଟ୍ଟା, ସିନ୍ଧିଆ ଓ କାବୁଲର ଜମାନ ସାହା ଏପରିକି ଢାକା ଓ ମୁର୍ଶିଦାବାଦର ଅସନ୍ତୁଷ୍ଟ ନବାବମାନଙ୍କୁ ଏକତ୍ରିତ କରି ଇଂରେଜମାନଙ୍କ ବିରୋଧରେ ଏକ ଷଡ଼ଯନ୍ତ୍ର ଆୟୋଜନ କରୁଥିଲେ ବୋଲି ଜଣାଯାଏ । ଏ ଖବର ପାଇ ଇଂରେଜମାନେ ୱାଜିର ଅଲ୍ଲୀଙ୍କୁ ଜବନ୍ଦ କରିବାକୁ ଉଦ୍ୟମ କରିବାରୁ ସେ ପଳାଇଗଲେ । ଯାହାହେଉ, ଶେଷରେ ଇଂରେଜମାନେ ତାଙ୍କୁ ଧରି ଭେଲୋର ଜେଲରେ ବନ୍ଦୀ କଲେ ଏବଂ ସେ ସେହି ବନ୍ଦୀଶାଳାରେ ପ୍ରାଣତ୍ୟାଗ କଲେ ।

ରୋହିଲାଖଣ୍ଡରେ ଜନଅସନ୍ତୋଷ ଦେଖାଦେଇଥିଲା ଇଂରେଜମାନଙ୍କର ଏକ ଉତ୍ତେଜନାକାରୀ ଆଇନ ବିରୋଧରେ । ବେରିଲୀ ସହରରେ ପୋଲିସ୍ ମୁତୟନ କରିବା ଖର୍ଚ୍ଚ ବାବଦ କମ୍ପାନୀ ପକ୍ଷରୁ ୧୮୧୪ ଖ୍ରୀଷ୍ଟାବ୍ଦରେ ୧୬ ନମ୍ବର

ରେଗୁଲେସନ ଅନୁସାରେ 'ଚୌକିଦାରୀ ଟ୍ୟାକ୍ସ' ଆଦାୟ କରାଗଲା । ପୂର୍ବରୁ ତ କମ୍ପାନୀର ଭୂ-ରାଜସ୍ୱ ନୀତି ଲୋକଙ୍କୁ ଉତ୍ତ୍ୟକ୍ତ କରି ରଖିଥିଲା, ସୁତରାଂ ଚୌକିଦାରୀ ଟ୍ୟାକ୍ସ ଏହି ଅଗ୍ନିରେ ଘୃତ ବର୍ଷଣ କଲା । ବେରିଲୀରେ ଥିବା ଇଂରେଜ ସୈନ୍ୟମାନେ ଏହି ବିଦ୍ରୋହକୁ ଦମନ କରିବାକୁ ସମର୍ଥ ହୋଇ ନ ଥିଲେ । ଶେଷରେ ଅଧିକ ସଂଖ୍ୟକ ସୈନ୍ୟ ସାହାଯ୍ୟରେ ଏହାର ମୁକାବିଲା କରାଯାଇଥିଲା ।

ଆଲିଗଡ଼ ଜିଲାର ଜନୈକ ଜମିଦାର ଶ୍ରୀ ଦୟାରାମ ଅତ୍ୟଧିକ ଭୂ-ରାଜସ୍ୱ ଦେବାକୁ ଅସ୍ୱୀକାର କରି ବିଦ୍ରୋହ କରିଥିଲେ । ଶହ ଶହ ଛୋଟ ଜମିଦାର ଓ ବଡ଼ ବଡ଼ ଚାଷୀ ଅତ୍ୟଧିକ ଭୂ-ରାଜସ୍ୱ ଦେଇ ସର୍ବସ୍ୱାନ୍ତ ହୋଇଯାଇଥିଲେ । ସେମାନେ ମଧ୍ୟ ଏହି ବିଦ୍ରୋହରେ ଯୋଗ ଦେଇଥିଲେ । ଦୟାରାମଙ୍କର ସୁଦୃଢ଼ ଦୁର୍ଗକୁ ଦଖଲ କରିବା ପ୍ରଥମେ ଇଂରେଜମାନଙ୍କ ପକ୍ଷରେ ଅସମ୍ଭବ ହୋଇଥିଲା । ଫଳରେ ପ୍ରାୟ ଏକ ଡିଭିଜନ ସୈନ୍ୟ ନେଇ ଏହି ଦୁର୍ଗ ଅଧିକାର କଲେ । ଦୟାରାମ ଧରାହୋଇ ପେନ୍‌ସନ୍ ପାଇଲେ । ବିଦ୍ରୋହ ଥଣ୍ଡା ପଡ଼ିଲା ।

ଏହିପରି ଭାବରେ ପ୍ରାୟ ଶହେବର୍ଷ ପର୍ଯ୍ୟନ୍ତ ସାରା ଦେଶରେ ସ୍ଥାନୀୟ ବେସାମରିକ ବିଦ୍ରୋହ ହୋଇଥିଲା । କିନ୍ତୁ ବିଦ୍ରୋହୀମାନଙ୍କ ଭିତରେ କୌଣସି ସଂହତି ନ ଥିବାରୁ ଓ ଇଂରେଜମାନଙ୍କ ଧୂର୍ତ୍ତତା ଯୋଗୁ ସେମାନେ ଏହି ବିଦ୍ରୋହ ଦବାଇ ଦେବାକୁ ସମର୍ଥ ହେଲେ ।

❒ ❒ ❒

# ଅଧ୍ୟାୟ - ଚାରି

## ବିକ୍ଷିପ୍ତ ସାମରିକ ବିଦ୍ରୋହ

ଆଧୁନିକ ପରିଭାଷାରେ ଯାହାକୁ ସାମରିକ ବିଦ୍ରୋହ ବୋଲି କୁହାଯାଉଛି, ଇଂରେଜ ଅମଳରେ ସେଭଳି ସାମରିକ ବିଦ୍ରୋହ ୧୮୫୭ର ମହାବିଦ୍ରୋହ ପର୍ଯ୍ୟନ୍ତ ହୋଇଥିବା ଜଣାଯାଏ ନାହିଁ । ଇଂରେଜ ଅଧୀନରେ ଥିବା ଭାରତୀୟ ସିପାହିମାନଙ୍କଦ୍ୱାରା ପରିଚାଳିତ ବିଦ୍ରୋହ କଥା ବିଚାରିବା ବେଳେ ଆମ୍ଭମାନଙ୍କୁ ସିପାହିମାନଙ୍କ ସାମାଜିକ ସ୍ଥିତି ଓ ପରିବେଶ କଥା ବିଚାରିବାକୁ ପଡ଼ିବ । ଭାରତକୁ ଛାଡ଼ିଦେଲେ ଅନ୍ୟ କୌଣସି ଦେଶରେ ସୈନ୍ୟମାନେ ବୋଧହୁଏ ବିଦେଶୀମାନଙ୍କ ପାଇଁ ରକ୍ତଦାନ କରି ନିଜ ଦେଶର ସ୍ୱାଧୀନତାକୁ ଚିରଦିନ ପାଇଁ ହରାଇ ନାହାନ୍ତି । ଭାରତରେ ତାହା ହୋଇ ଥିଲେ, ସାତ ସମୁଦ୍ର ତେର ନଈ ପାରିହୋଇ ଆସିଥିବା ମୁଷ୍ଟିମେୟ ବେପାରୀ କେଇଜଣ ୩୦ କୋଟି ଲୋକଙ୍କର ଦେଶକୁ ବର୍ଷ କେଇଟାରେ ଦଖଲ କରି ବସିବାର ହିମ୍ମତ କରିପାରି ନ ଥାନ୍ତେ । ପେଟ ପୋଷିବାକୁ ହେଉ କିମ୍ବା ଅର୍ଥଲୋଭରେ ହେଉ ହଜାର ହଜାର ଭାରତୀୟ ଇଂରେଜ ସେନାବାହିନୀରେ ଚାକିରି କରିବାକୁ ଲାଇନ ଦେଇ ନ ଥିଲେ ଇଂରେଜର ଚଉଦ ପୁରୁଷ ବି ଏ ଦେଶକୁ ପଦାନତ କରିବାକୁ ସାହସ କରି ନ ଥାନ୍ତା । ଅଧିକନ୍ତୁ ଭାରତୀୟ ସିପାହିମାନେ ଏମିତି ନିମକସଚ୍ଚା ଥିଲେ ଯେ ସେମାନେ ଯାହାର ଲୁଣ ଖାଉଥିଲେ ତା'ର ଗୁଣ ଗାଉଥିଲେ । କିନ୍ତୁ ଏସବୁ ସତ୍ତ୍ୱେ ସେନାବାହିନୀରେ ଏଭଳି ବହୁତ ସିପାହି ଥିଲେ ଯେଉଁମାନେ ପେଟଲାଗି ଇଂରେଜ ଅଧୀନରେ କାମ କରୁଥିଲେ ବି ସର୍ବଦା ମାନସିକ ଅସ୍ୱସ୍ତି ଅନୁଭବ କରୁଥିଲେ । ବିଶେଷତଃ ଇଂରେଜ ଭଳି ଏକ ବିଜାତୀୟ ସରକାରରୁ ଅହମିକା ଓ ବିଜେତା ଜାତିର ଦମ୍ଭ ସେମାନଙ୍କୁ ବେଳେ ବେଳେ ଅତିଷ୍ଠ କରିଦେଇଥିଲା । ଯେଉଁଦିନଠାରୁ ଇଂରେଜମାନେ ସେମାନଙ୍କ ଧର୍ମ, ଚାଲିଚଳନ ଓ ଆଚାର ବ୍ୟବହାର ଉପରେ ହସ୍ତକ୍ଷେପ କଲେ ବିଶେଷତଃ ଭାରତୀୟ ସାମରିକ ଅଫିସରମାନଙ୍କ ପ୍ରତି ଗୋରା ଅଧସ୍ତନ କର୍ମଚାରୀଙ୍କ ତୁଚ୍ଛତାଚ୍ଛଲ୍ୟ ବ୍ୟବହାର ସାମାନ୍ୟ ବିବେକ ଥିବା ଭାରତୀୟ ସିପାହିମାନଙ୍କ ମଧ୍ୟରେ ବିରକ୍ତି ଓ ଅସନ୍ତୋଷ ସୃଷ୍ଟି କଲା । ଅବଶ୍ୟ ସେହି ବିରକ୍ତି ଓ ଅସନ୍ତୋଷ ବେଳେ ବେଳେ ସ୍ଥାନୀୟ ସାମରିକ ବିଦ୍ରୋହର ରୂପ ନେଇଥିଲା । କିନ୍ତୁ ଇଂରେଜ ବଦଳରେ କୌଣସି ବିକଳ୍ପ ଶାସନ ପ୍ରତିଷ୍ଠା ବିଦ୍ରୋହୀମାନଙ୍କର କଳ୍ପନାତୀତ ଥିଲା ।

ପ୍ରାୟ ଶହେବର୍ଷ ଧରି ସେନାବାହିନୀରେ ଏହି ସାମରିକ ଓ ସ୍ଥାନୀୟ ବିଦ୍ରୋହ ଲାଗିରହିଥିଲା, କିନ୍ତୁ ଏହିସବୁ ଖଣ୍ଡ ବିଦ୍ରୋହ ଧର୍ମଗତ ଆଦର୍ଶ ପ୍ରଣୋଦିତ ନ ହୋଇ ଯଦି କୌଣସି ରାଜନୈତିକ ଆଦର୍ଶ ଉପରେ ପ୍ରତିଷ୍ଠିତ ହୋଇଥା'ନ୍ତା ଏବଂ ସୁସଂହତ ଭାବରେ ପରିଚାଳିତ ହୋଇପାରିଥାନ୍ତା, ତେବେ ଖୁବ୍ କମ୍‌ରେ କେତେକ ତାତ୍‌କାଳିକ ସୁବିଧା ସୁଯୋଗ ହୁଏତ ହାସଲ ହୋଇପାରିଥା'ନ୍ତା, ତାହା ହୋଇପାରିଲା ନାହିଁ। ବରଂ ଅଧିକ ସୈନ୍ୟବଳ ନେଇ ଇଂରେଜମାନେ ସେହିସବୁ ବିକ୍ଷିପ୍ତ ବିଦ୍ରୋହକୁ ସହଜରେ ଦମନ କରି ପାରିଥିଲେ। ଭାରତୀୟ ସିପାହିମାନେ ସେମାନଙ୍କର ମାତୃଭୂମିର ସ୍ୱାଧୀନତା ଲୋପ କଥା ଯେତେ ଉପଲବ୍ଧି କରୁ ନ ଥିଲେ ତା' ଅପେକ୍ଷା ଧର୍ମୀୟ ସ୍ୱାଧୀନତା ଲୋପ କଥା ଅଧିକ ଗୁରୁତର ଭାବରେ ଉପଲବ୍ଧି କରୁଥିଲେ। ସୁତରାଂ ଚତୁର ଇଂରେଜମାନେ କେଉଁଠି କେମିତି କୋହଳ ନୀତି ଓ ସାମାନ୍ୟ ସୁବିଧା ସୁଯୋଗର ଲୋଭ ଦେଖାଇ ଏହି ବିଦ୍ରୋହକୁ ପ୍ରଶମିତ କରିବାକୁ ସମର୍ଥ ହୋଇଥିଲେ।

ବିଭିନ୍ନ ବିଶ୍ୱାସଯୋଗ୍ୟ ଐତିହାସିକ ତଥ୍ୟରୁ ଜଣାଯାଏ ଯେ ପଲାସୀ ଯୁଦ୍ଧରେ ମାତ୍ର ୬।୭ ବର୍ଷ ଭିତରେ ସିପାହିମାନଙ୍କର ଅସନ୍ତୋଷ ପଦାକୁ ବାହାରିପଡ଼ିଲା। ମୀରକାଶିମଙ୍କ ସହ ଇଂରେଜମାନଙ୍କର ସଂଘର୍ଷ ହେଲାବେଳେ କର୍ଣ୍ଣେଲ ମନ୍‌ରୋ ଥିଲେ ଇଂରେଜ ସେନାପତି। ହଠାତ୍ ଦଳେ ସିପାହି ମନରୋ ବିରୋଧରେ ବିଦ୍ରୋହ ଘୋଷଣା କରି ନବାବ ମୀରକାଶିମଙ୍କ ସେନାଦଳରେ ଯୋଗଦେଲେ। ଏହି ଅପ୍ରତ୍ୟାଶିତ ଘଟଣା ମନ୍‌ରୋଙ୍କୁ ବିବ୍ରତ କରିଦେଲା। ଏହି ଖବର ପାଇ କଲିକତାରୁ ଅଧିକସଂଖ୍ୟକ ଅନୁଗତ ନିମକସଚ୍ଚା ସିପାହିମାନଙ୍କୁ ଅଣାଗଲା ଏବଂ ବିଦ୍ରୋହୀ ସୈନ୍ୟମାନେ ପରାସ୍ତ ହେଲେ। ସାମରିକ ଅଦାଲତରେ ବିଚାର କରାଯାଇ ୨୪ ଜଣଙ୍କୁ ଗୁଳିରେ ଉଡ଼ାଇ ଦିଆଗଲା।

ଇଂରେଜମାନଙ୍କର ଏହି ନିର୍ମମତା ଆଗରେ ସିପାହିମାନଙ୍କର ମନୋବଳ ଭାଙ୍ଗିଗଲା। ଦୀର୍ଘଦିନ — ପ୍ରାୟ ୪୦ ବର୍ଷ ପର୍ଯ୍ୟନ୍ତ ସିପାହିମାନଙ୍କ ଅସନ୍ତୋଷ ଆଉ ପଦାକୁ ପ୍ରକାଶ ପାଇପାରିଲା ନାହିଁ। ପାଇଲା ଯାଇ ୧୮୦୬ ଖ୍ରୀଷ୍ଟାବ୍ଦରେ ଭେଲୋରଠାରେ। ଭେଲୋର ଦୁର୍ଗରେ ନଜରବନ୍ଦୀ ଅବସ୍ଥାରେ ଥାଆନ୍ତି ବିପ୍ଳବୀ ଟିପୁ ସୁଲତାନଙ୍କର ପୁଅ। ସେ ନିରୁପାୟ ଓ ନିଃସହାୟ ଅବସ୍ଥାରେ ଥିଲେ ସୁଦ୍ଧା ଇଂରେଜ ବିରୋଧରେ ଲଢ଼ିବାକୁ ସୁଯୋଗ ଖୋଜୁଥା'ନ୍ତି। ହାଇଦର ଅଲ୍ଲୀ, ଟିପୁ ସୁଲତାନ ଓ ମରହଟ୍ଟାମାନଙ୍କୁ ପରାଜିତ କରି ଇଂରେଜମାନେ ଦକ୍ଷିଣ ଭାରତରେ ଏକାଧିପତ୍ୟ ବିସ୍ତାର କରିଥା'ନ୍ତି। ବିଜେତାର ଅହଂକାରରେ ସ୍ଫୀତ ହୋଇ ସେମାନେ ଆଉ ଇନ୍ଦ୍ର ଚନ୍ଦ୍ର ମାନୁ ନ ଥାନ୍ତି। ହାକିମ ମିଜାଜ୍‌ରେ ସେନାବାହିନୀରେ ନାନାପ୍ରକାର ଉଦ୍‌ଭଟ ଓ ବିଚିତ୍ର ସଂସ୍କାର ସବୁ କରୁଥା'ନ୍ତି। ସିପାହିମାନଙ୍କୁ ସେମାନଙ୍କ ଦାଢ଼ି ନିଶ କାଟିଦେବାକୁ, ଚିତା ଚଇତନ ନ ହେବାକୁ ଏବଂ ପଗଡ଼ି ବଦଳରେ ଏକପ୍ରକାର ଚମଡ଼ା ଟୋପି

ପିନ୍ଧିବାକୁ ନିର୍ଦ୍ଦେଶ ଦିଆଯାଇଥାଏ । ଅଥଚ ବହୁ ଭାରତୀୟ ନିଶ ଦାଢ଼ି ରଖିବା ବା ଚିତା କାଟିବା ଏକ ଅନିବାର୍ଯ୍ୟ ଧର୍ମୀୟ କାର୍ଯ୍ୟ ଏବଂ ନିଜ ନିଜ ଧର୍ମ ସଂପ୍ରଦାୟର ପ୍ରତୀକ ବୋଲି ବିଚାର କରୁଥିଲେ । ବିଶେଷତଃ ପଗଡ଼ି ବଦଳରେ ଚମଡ଼ାଟୋପି ପିନ୍ଧିବା ଧର୍ମବିରୋଧୀ ବୋଲି ମନେକରୁଥିଲେ । କାରଣ ଏହା ଘୁଷୁରି ବା ଗୋରୁ ଚମଡ଼ାରେ ତିଆରି ବୋଲି ସନ୍ଦେହ କରାଯାଉଥିଲା । ଏହା ଉପରେ ପୁଣି ହେଲା-ଗୋରା ସିପାହିମାନଙ୍କର ଭାରତୀୟ ଅଫିସରମାନଙ୍କ ପ୍ରତି ଅଶୋଭନୀୟ ବ୍ୟବହାର । ଅଧସ୍ତନ ଇଂରେଜୀ ସିପାହି ମଧ ବଡ଼ ବଡ଼ ଭାରତୀୟ ଅଫିସରମାନଙ୍କୁ ବେଖାତିର କରୁଥିଲେ । ଏହା ଅସନ୍ତୋଷର ପ୍ରଧାନ କାରଣ ହେଲା । ଫଳରେ ୧୮୦୬ ଖ୍ରୀଷ୍ଟାବ୍ଦରେ ଦଳେ ସିପାହି ବିଦ୍ରୋହ ଘୋଷଣା କଲେ । କିନ୍ତୁ ଏହି ମୁଷ୍ଟିମେୟ ବିଦ୍ରୋହୀଙ୍କୁ ଦବେଇଦେବା ଆଦୌ କଷ୍ଟକର ହେଲା ନାହିଁ । ବିଦ୍ରୋହୀଙ୍କ ସଂଖ୍ୟା ନଗଣ୍ୟ ହୋଇଥିବାରୁ ସେମାନଙ୍କ ନେତାମାନଙ୍କୁ ଧରି କୋରଡ଼ାମାଡ଼ ଦେଇ ଓ ଅନ୍ୟାନ୍ୟ କଠିନ ଦଣ୍ଡଦେଇ ଜବତ କରାଗଲା । କିଛିଦିନ ପାଇଁ ଏହି ବିଦ୍ରୋହ ଶାନ୍ତହେଲା ପରି ଜଣାଗଲା । କିନ୍ତୁ ଜୁଲାଇ ମାସରେ ବିଦ୍ରୋହ ପୁଣି ଆରମ୍ଭ ହେଲା । ଅର୍ଦ୍ଧରାତ୍ରରେ ହଠାତ୍ ବିଦ୍ରୋହୀ ସିପାହିମାନେ ଅନ୍ୟମାନଙ୍କ ନିଦ୍ରିତ ଥିବା ଅବସ୍ଥାରେ ଜଗୁଆଳି ଓ ଅନ୍ୟାନ୍ୟ ଅଫିସରମାନଙ୍କୁ ଆଖିବୁଜା ହତ୍ୟା କରିବାକୁ ଲାଗିଲେ । ଏହି ଉନ୍ମାଦନା ଭିତରେ ବିଦ୍ରୋହୀମାନେ ହୁଏତ ଭୁଲିଗଲେ ଯେ ବ୍ରିଟିଶ୍ ଶାସନର ଅବସାନ ସେମାନଙ୍କର ଲକ୍ଷ୍ୟ ବୋଲି । ହତ୍ୟା, ଲୁଟତରାଜ ତାଣ୍ଡବଲୀଳା ଭିତରେ ସମସ୍ତେ ଯେମିତି ଲକ୍ଷ୍ୟଭ୍ରଷ୍ଟ ହେଇଗଲେ । ବିଦ୍ରୋହ ସଂବାଦ ଆର୍କଟରେ ପହଞ୍ଚିବା ସଙ୍ଗେ ସଙ୍ଗେ ଗିଲେସପି ସାହେବଙ୍କ ଅଧୀନରେ ଏକ ବିରାଟ ସେନାବାହିନୀ ବିଦ୍ରୋହ ଦମନ କରିବାକୁ ଭେଲୋରକୁ ପଠାଗଲେ । ସେମାନେ ବି ସେମିତି ରାତ୍ରିର ଅନ୍ଧକାର ଭିତରେ ଭେଲୋର ଦୁର୍ଗ ଉପରେ ଚଢ଼ାଉକଲେ । ଦୁର୍ଗଦ୍ୱାର ଭାଙ୍ଗି ଓ ପାଚେରି ଡେଇଁ ଇଂରେଜ ସୈନ୍ୟ ଦୁର୍ଗଭିତରେ ପଶିବା ସମୟରେ ବିଜୟୋନ୍ମତ୍ତ ବିଦ୍ରୋହୀମାନେ ଛିନ୍ନଭିନ୍ନ ବିଶୃଙ୍ଖଳିତ ଅବସ୍ଥାରେ ଥିଲେ । ଏହାର ପରିଣତି ଯାହା ହେବାର କଥା ସେୟା ହେଲା । ଇଂରେଜମାନେ ବିଦ୍ରୋହୀମାନଙ୍କ ଉପରେ ଲମ୍ଫପ୍ରଦାନକଲେ । ନାରକୀୟ ହତ୍ୟାର ସ୍ରୋତ ଛୁଟିଲା । କେତେକ ପଳେଇଗଲେ, ଆଉ କେତେକ ନିରୁପାୟ ହୋଇ ଶରଣ ପଶିଲେ । ବିଦ୍ରୋହ ନିର୍ବାପିତ ହେଲା ।

ବେଙ୍ଗଲ ରେଜିମେଣ୍ଟରେ ବିଦ୍ରୋହ ହେଲା ୧୮୨୪ରେ ସେହି ସମାନ କାରଣରୁ । ଇଂରେଜ ଓ ଭାରତୀୟ ସୈନ୍ୟମାନଙ୍କ ଭିତରେ ବେତନ, ଭତ୍ତା ଓ କ୍ଷମତା ଭିତରେ ଆକାଶ ପାତାଳ ପ୍ରଭେଦ ଓ ସିପାହିମାନଙ୍କ ଉପରେ ଗୋରା ହାକିମମାନଙ୍କର ତୁଚ୍ଛ-ତାଚ୍ଛଲ୍ୟ ବ୍ୟବହାର ଏବଂ ବର୍ମାଯୁଦ୍ଧକୁ ଯିବା ପାଇଁ ନିର୍ଦ୍ଦେଶ ସିପାହିମାନଙ୍କୁ ଉତ୍ତ୍ୟକ୍ତ କରିଦେଲା । ବିଶେଷତଃ ଯାନବାହନ ଅଭାବରୁ ଯେତେବେଳେ ନିଜ ନିଜ ଜିନିଷ

ନିଜ ନିଜ କାନ୍ଧରେ ବହିନେବାକୁ ହୁକୁମ ଦିଆଗଲା ସେତେବେଳେ ସିପାହିମାନେ ରାଗରେ ଫାଟିପଡ଼ିଲେ । ଦରମାର ଦୁଇଗୁଣ ନ ଦେଲେ ସେମାନେ ବର୍ମାଯୁଦ୍ଧକୁ ଯିବେ ନାହିଁ ବୋଲି ୪୭ ବେଙ୍ଗଲ ରେଜିମେଣ୍ଟ ସଫା ମନାକରିଦେଲେ । କିନ୍ତୁ କମାଣ୍ଡର ମଧ୍ୟ ସେମିତି ଜିଦ୍‌ଖୋର ଥିଲେ । ସେ ସିପାହିମାନଙ୍କର ମନୋଭାବ ନ ବୁଝି ଶୃଙ୍ଖଳାକୁ କଠୋର ଭାବରେ ପ୍ରୟୋଗ କଲେ । ଫଳରେ ବିଦ୍ରୋହ ଆହୁରି ତୀବ୍ର ହେଲା । ଖବର ପାଇ ବାରାକ୍‌ପୁର କାଣ୍ଟନମେଣ୍ଟରୁ ଛୁଟିଆସିଲେ ଦୁଇ ଡିଭିଜନ ଗୋରା ସୈନ୍ୟ । ବିଦ୍ରୋହୀମାନଙ୍କୁ ପାରେଡ଼ ଗ୍ରାଉଣ୍ଡକୁ ଆସିବାକୁ ନିର୍ଦ୍ଦେଶ ଦିଆଗଲା ଏବଂ ଅସ୍ତ୍ରଶସ୍ତ୍ର ଶୀଘ୍ର ଜମା କରିଦେବାକୁ ନିର୍ଦ୍ଦେଶ ଦିଆଗଲା । କିଛି ଫଳ ହେଲା ନାହିଁ, ତା' ପରେ ଛୁଟିଲା ବିଦ୍ରୋହୀମାନଙ୍କ ଉପରେ ଆଖିବୁଜା ଗୁଳି ବର୍ଷଣ । କେତେ ଯେ ମଲେ, ତା'ର ହିସାବ ନାହିଁ । ଯେଉଁମାନେ ବଞ୍ଚିଲେ ସେମାନଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇଦିଆଗଲା । ୪୭ ନମ୍ବର ବେଙ୍ଗଲ ରେଜିମେଣ୍ଟକୁ ସଂପୂର୍ଣ୍ଣ ଲୋପକରିଦିଆଗଲା ।

ଏହାର ୨୦ ବର୍ଷ ପରେ ଅର୍ଥାତ୍ ୧୮୪୪ରେ ପଞ୍ଜାବର ଫିରୋଜପୁରଠାରେ ଅବସ୍ଥାପିତ ୩୪ ନମ୍ବର ବେଙ୍ଗଲ ରେଜିମେଣ୍ଟରେ ବିଦ୍ରୋହ ହେଲା । ପ୍ରଥମ ଆଫଗାନ ଯୁଦ୍ଧରେ ଇଂରେଜମାନଙ୍କର ପରାଜୟ ଫଳରେ ଭାରତରେ ସେନାବାହିନୀ ଭିତରେ ଇଂରେଜମାନଙ୍କର ସମ୍ମାନ କମିଯାଇଥିଲା । ବିଶେଷତଃ ସିନ୍ଧୁ ପ୍ରଦେଶ ଇଂରେଜ ସାମ୍ରାଜ୍ୟଭୁକ୍ତ ହେବା ସଙ୍ଗେ ସଙ୍ଗେ ସେଠାରେ ଯେଉଁ ଭାରତୀୟ ସୈନ୍ୟ ଆଗରୁ ଯାଇ ଲଢୁଥିଲେ ଏବଂ ଯେଉଁମାନଙ୍କର ସାହସିକ ଅଭିଯାନ ଫଳରେ ସିନ୍ଧୁ ପ୍ରଦେଶ ଇଂରେଜ ଅଧୀନକୁ ଆସିବା ସମ୍ଭବ ହେଲା, ସେମାନଙ୍କୁ ପୂର୍ବରୁ ଦିଆଯାଉଥିବା ବିଶେଷ ଭତ୍ତା ବନ୍ଦ କରି ଦିଆଗଲା । ଫଳରେ ସିପାହିମାନେ ବିଶେଷ ଅସନ୍ତୁଷ୍ଟ ହେଲେ । ୩୪ ନମ୍ବର ରେଜିମେଣ୍ଟ ସହ ଯୋଗଦେଲା ୭ମ ଅଶ୍ୱାରୋହୀ ଦଳ ଓ ୬୪ ତମ ପଦାତିକ ଦଳ ଏବଂ ସମସ୍ତେ ସିନ୍ଧୁ ପ୍ରଦେଶରେ ରହିବାକୁ ଅସ୍ୱୀକାରକଲେ । ନିରୁପାୟ ହୋଇ ସିପାହିମାନଙ୍କୁ ସେହିଠାରୁ ଫେରାଇ ଅଣାଗଲା । କିନ୍ତୁ ଫେରିବାବେଳେ କୌଶଳକ୍ରମେ କେତେକଙ୍କୁ ଫାଶୀ ଓ ଅନ୍ୟାନ୍ୟ କଠିନ ଦଣ୍ଡ ଦିଆଯାଇ ବିଦ୍ରୋହକୁ ସଂପୂର୍ଣ୍ଣ ଦବେଇ ଦିଆଗଲା ।

ଏହି ବିଦ୍ରୋହ ସଂପୂର୍ଣ୍ଣ ଦମନ ହେବା ପୂର୍ବରୁ ଏହାର ଝଲକ ପଡ଼ିଲା ପାଟନାରେ । ସେତେବେଳେ ସୟଦ ଅହମ୍ମଦଙ୍କର ଧର୍ମଯୁଦ୍ଧ ଡାକରାର କେନ୍ଦ୍ରସ୍ଥଳ ହୋଇଥାଏ ପାଟନା । ସେମାନଙ୍କ ପକ୍ଷରୁ ସିପାହିମାନଙ୍କ ଭିତରେ ପ୍ରଚାର କରାଗଲା ଯେ ସେମାନେ କମ୍ପାନୀ ଚାକିରି ଛାଡ଼ିଦେଲେ ସେମାନଙ୍କୁ ନବାବଙ୍କ ଅଧୀନରେ ଚାକିରି ଦିଆଯିବ, କାରଣ କମ୍ପାନୀ ଅଧୀନରେ ଚାକିରି କରି ସେମାନଙ୍କ ଧର୍ମ ନଷ୍ଟ ହେଉଛି । ଏହି ପ୍ରଚାର ସେନାବାହିନୀ ଭିତରେ ନିଶ୍ଚିତ ଭାବରେ ଆଲୋଡ଼ନ ସୃଷ୍ଟି କରିଥିଲା । କିନ୍ତୁ ଏ ଖବର ଅଧିକଦିନ ସରକାର ଦୃଷ୍ଟିରୁ ଲୁଚିପାରି ନ ଥିଲା ଏବଂ ସେମାନେ କୌଶଳକ୍ରମେ

ନେତାମାନଙ୍କୁ ଧରି ଦଣ୍ଡ ଦେଲେ କିନ୍ତୁ ବଙ୍ଗ ସରକାର ବାଧ୍ୟହୋଇ ଘୋଷଣା କଲେ ଯେ ଭାରତୀୟମାନଙ୍କର ଧର୍ମୀୟ ବିଶ୍ୱାସରେ ହସ୍ତକ୍ଷେପ କରିବା ସରକାରଙ୍କର ନୀତି ନୁହେଁ ଏବଂ ଏହି ନୀତିରେ କେହି ଖିଲାପ କଲେ କଠିନ ଦଣ୍ଡ ପାଇବ । ଫଳରେ ଏହି ଅସନ୍ତୋଷ ଦୂରହେଲା ।

ପଞ୍ଜାବ ହେଲା ପରବର୍ତ୍ତୀ ବିଦ୍ରୋହସ୍ଥଳ । ବେଙ୍ଗଲ ରେଜିମେଣ୍ଟର ଅଦ୍ୱିତୀୟ ସାହସିକତା ଓ ଯୁଦ୍ଧ ଫଳରେ ପଞ୍ଜାବର ଶିଖମାନେ ପରାସ୍ତ ହୋଇଥିଲେ ଏବଂ ପଞ୍ଜାବ ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । କିନ୍ତୁ ବେଙ୍ଗଲ ରେଜିମେଣ୍ଟର ସିପାହିମାନଙ୍କର ବେତନଭତ୍ତା ବଢ଼ାଇବାର କୌଣସି ବ୍ୟବସ୍ଥା କରାଗଲା ନାହିଁ । ଫଳରେ ସେମାନେ ଅସନ୍ତୁଷ୍ଟ ହେଲେ ଏବଂ ଏହି ଅସନ୍ତୋଷକୁ କେବଳ ବେଙ୍ଗଲ ରେଜିମେଣ୍ଟରେ ନୁହେଁ, ଅନ୍ୟ ରେଜିମେଣ୍ଟରେ ମଧ୍ୟ ପ୍ରଚାର କରାଗଲା । ରାଓଲପିଣ୍ଡି, ୱାଜିରାବାଗ ଓ ଝେଲମ୍‌ର ସୈନ୍ୟମାନେ ସେମାନଙ୍କର ବେତନ ପ୍ରତ୍ୟାଖ୍ୟାନ କଲେ । ବିଦ୍ରୋହ ପଦାକୁ ବାହାରି ପଡ଼ିଲା । କିନ୍ତୁ କମାଣ୍ଡର ଇନ୍-ଚିଫ୍ ଚାର୍ଲସ ନାପିଅର୍ କଠୋର ହାତରେ ଏହାକୁ ଦବେଇଦେଲେ ।

ଏହିପରି ଭାବରେ ପଲାସୀ ଯୁଦ୍ଧଠାରୁ 'ମହାବିଦ୍ରୋହ' ପର୍ଯ୍ୟନ୍ତ ଛୋଟ ବଡ଼ ବହୁତ ଘଟଣା ଘଟୁଥିଲା ସେନାବାହିନୀ ଭିତରେ, ଯାହାକି ବ୍ୟାପକ ଅସନ୍ତୋଷର ନିଶ୍ଚିତ ଲକ୍ଷଣ ବୋଲି କୁହାଯାଇପାରେ । କିନ୍ତୁ "ଭାରତବର୍ଷଟା ନ୍ୟାୟତଃ ଇଂରେଜମାନଙ୍କର ଏବଂ ଯେକୌଣସି ଉପାୟରେ ଏହାକୁ ପାଦତଳେ ରଖିବା ସେମାନଙ୍କର ଏକ ଡିଭାଇନ୍ ରାଇଟ୍ ବୋଲି ଇଂରେଜମାନେ ଭାବୁଥିବାରୁ ସବୁପ୍ରକାର ବିରୋଧକୁ ସେମାନେ ନିର୍ମମତା ସହକାରେ ଦବାଇଦେଇଥିଲେ ।"

ଇଂରେଜମାନେ ଭୁଲିଯାଉଥିଲେ ଯେ ଏକ ବିଜିତ ରାଜ୍ୟର ଅସନ୍ତୋଷକୁ କେବଳ ପାଶବିକ ବଳ ପ୍ରୟୋଗ କରି ଚିରଦିନ ଅଟକାଇ ରଖିହେବ ନାହିଁ । ଦିନେନା ଦିନେ ତାହା ଆତ୍ମ ପ୍ରକାଶ କରିବ ଏବଂ ସେ ଦିନ ତାହା ସାମାନ୍ୟ ଅଗ୍ନିକଣା ରୂପରେ ବାହାରିବ ନାହିଁ, ବାହାରିବ ଆଗ୍ନେୟଗିରିରୁ ଉତ୍‌କ୍ଷିପ୍ତ ଉତପ୍ତ ଲାଭାସ୍ରୋତ ପରି ।

୧୮୫୭ର ମହାବିଦ୍ରୋହ ସେହି ତରଳ ଲାଭା ।

❑ ❑ ❑

## ଅଧ୍ୟାୟ - ପାଞ୍ଚ

# ସିପାହିବିଦ୍ରୋହ

### ସିପାହି ବିଦ୍ରୋହ ନା ସ୍ୱାଧୀନତା ସଂଗ୍ରାମ ?

ଇଂରେଜ ଶାସନ ବିରୋଧରେ ୧୮୫୭ରେ ହୋଇଥିବା ଭାରତବ୍ୟାପୀ ସଶସ୍ତ୍ର ଆନ୍ଦୋଳନକୁ 'ଭାରତର୍ ପ୍ରଥମ ସ୍ୱାଧୀନତା ଯୁଦ୍ଧ' ବୋଲି କୁହାଯିବ କି ନାହିଁ, ସେ ବିଷୟରେ ଯେତେ ମତଭେଦ ଥାଉନା କାହିଁକି, ଏହାକୁ କେବଳ 'ସିପାହି ବିଦ୍ରୋହ' କହିବା ନିଛକ ଇଂରେଜ ପ୍ରୀତି ଓ ଭାରତର ମୁକ୍ତିସଂଗ୍ରାମରେ ସଶସ୍ତ୍ର ବିପ୍ଳବର ଭୂମିକାକୁ ଲଘୁକରି ଦେଖିବାର ମନୋଭାବରୁ ଉଦ୍‌ଭୂତ । 'ସିପାହି ବିଦ୍ରୋହ' ଶବ୍ଦଟି ତତ୍‌କାଳୀନ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ ଆର୍ଲଷ୍ଟାନଲି ଇଂଲାଣ୍ଡ ପାର୍ଲାମେଣ୍ଟକୁ ଦେଇଥିବା ତାଙ୍କର ରିପୋର୍ଟରେ ପ୍ରଥମେ ଉଲ୍ଲେଖ କରିଥିଲେ ଏବଂ ତାଙ୍କ ପରେ ଅନ୍ୟାନ୍ୟ ଐତିହାସିକ ଯଥା – ଚାର୍ଲସବଲ୍, ଜି.ଡବ୍‌ଲ୍ୟୁ ଫରେଷ୍ଟ, ଟି. ଆର. ହୋମ୍‌ସ, ଏମଇନ୍ସ, ଜେ.ଡବଲ୍ୟୁ କେ, ଜି. ଏଫ. ମାକମନ୍, ଜି.ବି ମାଲେସନ, ସି. ଟି. ମେଟାକାଫ ଓ ଆର୍ଲ ରବର୍ଟସ୍ ପ୍ରଭୃତି ଐତିହାସିକମାନେ ଏହି 'ସିପାହି ବିଦ୍ରୋହ' ଶବ୍ଦକୁ ପ୍ରସିଦ୍ଧ କଲେ ଏବଂ ସେମାନଙ୍କ ଦେଖାଦେଖି ଆଜିଯାଏ ବି ଦଳେ ଭାରତୀୟ ଐତିହାସିକ ଏହି ଶବ୍ଦକୁ ଘୋଷୁଛନ୍ତି ।

ଇଂରେଜ ଶାସନ ବିରୋଧରେ ଭାରତୀୟ ସୈନ୍ୟମାନଙ୍କର ଅସଂଖ୍ୟ ଅଭିଯୋଗ ଥିବାରୁ ସେହିମାନେ ଏହି ବିଦ୍ରୋହର ଶୁଭଶଙ୍ଖ ବଜାଇଥିଲେ ମଧ୍ୟ ଏହା କେବଳ ସିପାହିମାନଙ୍କ ଭିତରେ ସୀମାବଦ୍ଧ ନ ଥିଲା । ଏହା ଯଥାର୍ଥରେ ଏକ ଗଣବିଦ୍ରୋହ ଥିଲା । ଇତିହାସରେ ଏହାର ଅସଂଖ୍ୟ ପ୍ରମାଣ ରହଛି । ଯେଉଁ ବ୍ରିଟିଶ୍ ଐତିହାସିକ ଓ ପ୍ରଶାସକମାନେ ସେତେବେଳେ ଭାରତରେ ଥିଲେ, ସେହିମାନେ ହିଁ ଏହାକୁ ଗଣବିଦ୍ରୋହ ବୋଲି କହୁଛନ୍ତି । ତତ୍‌କାଳୀନ ବ୍ରିଟିଶ୍ ପାର୍ଲିଆମେଣ୍ଟ ସଭ୍ୟ ଡିସ୍ରାଇଲଙ୍କ ଭାଷାରେ, ''ଏହା କେବଳ ସାମରିକ ବିଦ୍ରୋହ'' ନୁହେଁ, ଏହା ଏକ ''ଜାତୀୟ ବିଦ୍ରୋହ'' । ଜଷ୍ଟିନ ମ୍ୟାକର୍ଥି ଏହାକୁ ''ଇଂରେଜ ଶାସନ ବିରୋଧରେ ସାମରିକ ବାହିନୀର ଅସନ୍ତୋଷ, ଜାତୀୟ ଘୃଣା ଓ ଧର୍ମାନ୍ଧତାର ସମ୍ମିଶ୍ରଣ ବୋଲି କହିଛନ୍ତି । (It was a combination of military grievances, national hatred and

religious fanaticism against the British occupation of India) (1) ଅଯୋଧ୍ୟା ବିଦ୍ରୋହ ସଂପର୍କରେ ଜନୈକ ସ୍କଟ୍‌ଲାଣ୍ଡ ମିଶନାରୀ ଆଲେକଜାଣ୍ଡର ଡଫ୍ ଯଥାର୍ଥରେ କହିଥିଲେ "That it is a rebellion. and a rebellion too. of no recent or mushroom growth, every fresh revealation tends more and more to confirm a rebellion which has been able to array the Hindus and Mahammadan in an unnatural confederacy."(2) ସେତେବେଳେ ଏ ଦେଶରେ ସାମରିକ ବିଭାଗରେ କାର୍ଯ୍ୟ କରୁଥିବା ଜନୈକ ଅଫିସରଙ୍କ ମତରେ, "ପ୍ରଥମାବସ୍ଥାରେ ଯାହାକି ଏକ ସାମନ୍ୟ ସାମରିକ ବିଦ୍ରୋହ ଭଳି ଦିଶୁଥିଲା ଖୁବ୍ ଶୀଘ୍ର ତା'ର ଚରିତ୍ର ବଦଳିଗଲା ଏବଂ ଏହା ଏକ ଜାତୀୟ ଅଭ୍ୟୁତ୍‌ଥାନରେ ପରିଣତ ହେଲା ।" (At first, apparently a mere military mutiny, it speedily changed its character and became national insurrection.)(3) କେବଳ ସିପାହି ନୁହଁନ୍ତି, ସାଧାରଣ ଜନତା ଯେ ଏହି ବିଦ୍ରୋହରେ ସାମିଲ ହୋଇଥିଲେ, ତା'ର ଏହିଭଳି ଅସଂଖ୍ୟ ପ୍ରମାଣ ଇତିହାସର ପ୍ରତି ପୃଷ୍ଠାରେ ଭରିରହିଛି । ପାଟନା ଡିଭିଜନର ତତ୍‌କାଳୀନ କମିଶନର ବଙ୍ଗସରକାରଙ୍କୁ ଦେଇଥିବା ଏକ ରିପୋର୍ଟରେ ସ୍ପଷ୍ଟ ସ୍ୱୀକାର କରିଥିଲେ ଯେ, ସାହାବାଦ ଜିଲାର ଆନ୍ଦୋଳନରେ' ଜାତୀୟ ବିଦ୍ରୋହର ସମସ୍ତ ଲକ୍ଷଣ ପ୍ରକାଶିତ ହୋଇଥିଲା । (The movement in Sahabad District assured all the dignity of national revolt.) ସାହାବାଦରେ ଯାହା, ଝାନ୍ସିରେ ସେୟା, ଉତ୍ତର ପ୍ରଦେଶରେ ଯାହା, ସାରା ଭାରତରେ ବିଦ୍ରୋହର ସେହି ଲକ୍ଷଣ, ସେହି ଚରିତ୍ର । "The outbreak in Merrut on May 1857 was a signal for general uprising all over the province. In some places where there was no troop of the Company the civil populace took the lead, in other places the Indian sepoy regiment rebelled first and was immediately followed by the civilians"4 ଅର୍ଥାତ୍ ମଇ ୧୦ ତାରିଖ ୧୮୫୭ରେ ମୀରଟ ବିଦ୍ରୋହ ଜନବିଦ୍ରୋହର ଶୁଭଶଙ୍ଖରେ ପରିଣତ ହେଲା । ଯେଉଁଠାରେ କମ୍ପାନୀ ସେନାବାହିନୀ ନ ଥିଲେ ସେଠାରେ ଆଗେଇ ଆସିଲା ଜନତା । କେଉଁଠାରେ ବା ପ୍ରଥମେ ସିପାହିମାନେ ବିଦ୍ରୋହ ଘୋଷଣା କରିବା ପରେ ଜନତା ସେମାନଙ୍କ ପଛରେ ଛିଡ଼ାହେଲେ ।

ବିଦେଶୀ ଏବଂ ସଂପୂର୍ଣ୍ଣ ଅପରିଚିତ ଏକ ସରକାର ପାଖରେ ସଂପଦ ଓ ପ୍ରାଚୁର୍ଯ୍ୟରେ ଭରପୂର ଏକ ଦେଶର ୩୦ କୋଟି ଲୋକ ଶାନ୍ତି ଓ ସନ୍ତୋଷରେ ମୁଣ୍ଡ ନୁଆଁଇବେ ବୋଲି ନିଜେ ଗଭର୍ଣ୍ଣର ଜେନେରାଲ ଲର୍ଡ଼ କ୍ୟାନିଂ ମଧ୍ୟ ଅସମ୍ଭବ ମନେକରୁଥିଲେ । ("We must not forget that in the sky of India serene, as it is. small

(1) Justis Mc. Arthy - A Short History of our own Times. Page - 170
(2) A. Duff. The Indian Rebellion. Page - 90
(3) G.B. Malleson- The Mutiny of the Bengal Army. page- 170
(4) Tarachand- The Histroy of the Freedom Movement in India Vol- II. Pg- 79.

cloud may arise at first no bigger than a man's hand but which growing larger that in the sky of India, may at last threaten to burst and overwhelm us with ruin.(1))

କ୍ୟାନିଂଙ୍କର ଏହି ଆଶଙ୍କା ସଂପୂର୍ଣ୍ଣ ନ ହେଲେ ବି ଆଂଶିକ ଭାବରେ ସତ୍ୟରେ ପରିଣତ ହେଲା । ଅର୍ଥାତ୍ 'ମଣିଷ ହାତ' ଆକାରର ସ୍ଥାନୀୟ ବିଦ୍ରୋହ ଅଚିରେ 'ମହାବିଦ୍ରୋହ'ରେ ପରିଣତ ହେଲା ସତ୍ୟ କିନ୍ତୁ ଏହା ଲର୍ଡ଼ କ୍ୟାନିଂ କିମ୍ବା ତାଙ୍କର ବିରାଟ ସାମ୍ରାଜ୍ୟକୁ ସେତେବେଳେ ଧ୍ୱଂସ କରିପାରିଲା ନାହିଁ ।

ଦୁଇଜଣ ଫରାସୀ ଐତିହାସିକ ମତ ପ୍ରକାଶ କରିଥିଲେ, "Discontentment has invaded all classes of the Indian population, they are going to make common cause with the sepoys" (ଭାରତର ସବୁ ଶ୍ରେଣୀର ଲୋକମାନଙ୍କ ଭିତରେ ଅସନ୍ତୋଷ ଭରିରହିଛି ଏବଂ ସେମାନେ ଖୁବ୍ ଶୀଘ୍ର ସିପାହିମାନଙ୍କ ସହ ଏକାଠି ହୋଇଯିବେ ।) 'ମହାବିଦ୍ରୋହ'ର ମୁଖ୍ୟନାୟକ ମୋଗଲ ସମ୍ରାଟ ବାହାଦୁରସାହାଙ୍କର ବିଚାରବେଳେ ଆଡ଼ଭୋକେଟ ଜେନେରାଲ୍ ଥିଲେ ମେଜର୍ ହାରିଅଟ୍ । ବିଚାରବେଳେ ସେ କହିଥିଲେ, "The conspiracy from its very commencement was not confined to the sepoys and did not even originate with them, but had its ramification throughout the city and the palace"(2) ସେଥିପାଇଁ ଲର୍ଡ଼ କ୍ୟାନିଂ ଏହାକୁ କେବଳ Mutiny ବା ବିଦ୍ରୋହ ବୋଲି ନ କହି revolt ବା ବିପ୍ଳବ ଆଖ୍ୟା ଦେଇଥିଲେ । ଉପରୋକ୍ତ ଅସଂଖ୍ୟ ଐତିହାସିକ ତଥ୍ୟ ଦୃଷ୍ଟିରୁ ଏହାକୁ କେବଳ 'ସିପାହି ବିଦ୍ରୋହ' ବୋଲି ଆଖ୍ୟା ଦେବାର କୌଣସି ଅର୍ଥ ହୁଏନା ।

ଅବଶ୍ୟ ଏହା ଭାରତର ପ୍ରଥମ ସ୍ୱାଧୀନତା ଯୁଦ୍ଧ କି ନା ସେ ବିଷୟରେ ଯୁକ୍ତିତର୍କର ଅବକାଶ ରହିଛି । ବିଶେଷତଃ ଯେଉଁ ଯୁଗରେ ଭାରତରେ 'ଜାତୀୟତା' ଶବ୍ଦର ସୃଷ୍ଟି ପର୍ଯ୍ୟନ୍ତ ହୋଇ ନ ଥିଲା, ଯେଉଁ ଯୁଗରେ ଭାରତ ଅସଂଖ୍ୟ 'ସ୍ୱାଧୀନ' ରାଜ୍ୟରେ ବିଭକ୍ତ ଥିଲା, ଯେତେବେଳେ 'ମୋଗଲ ରାଜାଙ୍କୁ' 'ଭାରତ ସମ୍ରାଟ' ବୋଲି ବୁଝାଯାଉଥିଲେ ସୁଦ୍ଧା ବହୁ ରାଜା ତାଙ୍କୁ ସମ୍ରାଟ ବୋଲି ସ୍ୱୀକାର କରୁ ନ ଥିଲେ, ଏକ କେନ୍ଦ୍ରୀୟ ଶାସନ ନ ଥିବାରୁ ଯେତେବେଳେ ଜାତୀୟ ସଂହତି ବା 'ରାଜନୈତିକ ଏକତ୍ରୀକରଣ' (Political unification)ର ସମ୍ଭାବନା ସୁଦ୍ଧା ନ ଥିଲା, ସେ ଯୁଗରେ 'ଜାତୀୟ ସ୍ୱାଧୀନତା' ବା National Independence କଥା କିଏ ବା କାହିଁକି ଚିନ୍ତାକରନ୍ତା ? ଜାତୀୟତା ବା Nationalismର ସୃଷ୍ଟି ମହାବିଦ୍ରୋହର ଅର୍ଦ୍ଧଶତାବ୍ଦୀ ପରେ । ଗଣତନ୍ତ୍ର ବା ଲୋକତନ୍ତ୍ର କଥା ସେତେବେଳେ ପାଶ୍ଚାତ୍ୟ ଦେଶ ଭିତରେହିଁ ସୀମାବଦ୍ଧ ଥିଲା ବୋଲି କୁହାଯାଇପାରେ । ସଂକ୍ଷେପରେ କୁହାଯାଇପାରେ ଯେ

(1) Kay and Malleson– History of the Indian Mutiny, Vol- 1 Pg. 271-78.

(2) Proceeding of the Trial of Bahadur Saha.

ସେତେବେଳେ ଭାରତ ଗୋଟିଏ ରାଜନୈତିକ ଏକକ ଭାବରେ ନ ଥିବାରୁ ବିଦ୍ରୋହୀମାନଙ୍କ ଭିତରେ ଜାତୀୟ ଆନୁଗତ୍ୟ ଅପେକ୍ଷା ସ୍ଥାନୀୟ ବା ଆଞ୍ଚଳିକ ଆନୁଗତ୍ୟ ଅଧିକରୂପେ ପ୍ରକଟିତ ହୋଇଥିଲା । କିନ୍ତୁ ୧୮୫୭ର ବିଦ୍ରୋହକୁ 'ମହାବିଦ୍ରୋହ' ବୋଲି କହିବାର ମୁଖ୍ୟକାରଣ ଏହା ଯେ ଧନୀ ନିର୍ଦ୍ଧନ, ରାଜା ପ୍ରଜା ନିର୍ବିଶେଷରେ ବିଦେଶୀ ଶାସନ ଫଳରେ ଏଭଳି ଅତିଷ୍ଠ ହୋଇଯାଇଥିଲେ ଯେ ସମସ୍ତଙ୍କ ଆଖିଆଗରେ ଗୋଟିଏ ମାତ୍ର ଲକ୍ଷ୍ୟ ଥିଲା ବିଦେଶୀ ଶାସନର ଅବସାନ । ବ୍ରିଟିଶ୍‌ର ବିକଳ୍ପ ଶାସନ କ'ଣ ହେବ ସେ କଥା ଚିନ୍ତାକରିବା ଆବଶ୍ୟକ ନ ଥିଲା । 'ପ୍ରଜାତନ୍ତ୍ର' ବା 'ଗଣତନ୍ତ୍ର' କଥା ସେତେବେଳେ ସ୍ପଷ୍ଟରୂପେ ନଥିବାରୁ ସେମାନେ 'ରାଜା' କିମ୍ବା ନବାବମାନଙ୍କ ଶାସନର ପୁନଃପ୍ରତିଷ୍ଠା ଚାହୁଁଥିଲେ । କିନ୍ତୁ ଇଂରେଜ ଶାସନର ବିଲୋପ ସାଧନ ବିଷୟରେ ସେମାନଙ୍କ ମତଭେଦ ନ ଥିଲା ।

"High and low, rich and poor, had only one idea of improving their political condition. The upper class lived upon the prospect of regaining their former pre-eminence and the lower upon that of having the avenues to wealth and distinction replaced to them by the establishment of native Government(1) (ଉଚ୍ଚ-ନୀଚ, ଧନୀ-ଦରିଦ୍ର ସମସ୍ତେ ସେମାନଙ୍କର ରାଜନୈତିକ ଅବସ୍ଥାର ଉନ୍ନତି ବିଧାନ ପାଇଁ ଗୋଟିଏ ମାତ୍ର ରାସ୍ତା ଦେଖିପାରିଥିଲେ । ଉଚ୍ଚଶ୍ରେଣୀର ଲୋକ ସେମାନଙ୍କ ହୃତଗୌରବ ଫେରିପାଇବାର ସମ୍ଭାବନା ଦେଖୁଥିଲେ ଏବଂ ତଳଶ୍ରେଣୀର ଲୋକେ ଏକ ଦେଶୀ ଶାସନର ଅଧୀନରେ ସେମାନଙ୍କର ସଂପଦ ଓ ଗୌରବ ଅର୍ଜ୍ଜନ କରିବାର ପଥ ସୁଗମ ହେବବୋଲି ଭାବୁଥିଲେ ।

କିନ୍ତୁ ଇଂରେଜ ଶାସନ ବିରୋଧରେ ଏ ଯେଉଁ ବ୍ୟାପକ ଜନଅସନ୍ତୋଷ ସୃଷ୍ଟି ହୋଇଥିଲା ତାହାକୁ ଲଘୁକରି ଦୁନିଆରେ ଦେଖାଇବା ପାଇଁ ଇଂରେଜୀ ଐତିହାସିକମାନେ ଜାଣିଶୁଣି ଓ ଭାବିଚିନ୍ତି ଏହାକୁ ''ସିପାହି ବିଦ୍ରୋହ'' ବୋଲି ଆଖ୍ୟା ଦେଇଥିଲେ । କିନ୍ତୁ ଏହା ନିଶ୍ଚିତ ଭାବରେ ଏକ ଗଣ ବା ମହାବିଦ୍ରୋହ ଏବଂ ସେହି ଦୃଷ୍ଟିରୁ ଆମ୍ଭେମାନେ ଏହାକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବା ମହାସଂଗ୍ରାମ – ୧୮୫୭ ବୋଲି ବର୍ଣ୍ଣନା କରୁଅଛୁଁ ।

**କାରଣ :**

ଭାରତୀୟମାନଙ୍କୁ କୁସଂସ୍କାରଗ୍ରସ୍ତ ଧର୍ମାନ୍ଧ ବୋଲି ପ୍ରତିପାଦିତ କରିବା ପାଇଁ ଇଂରେଜ ଐତିହାସିକମାନେ ଏହି ମହାବିଦ୍ରୋହ ନିଛକ ଧର୍ମଗତ କାରଣରୁ ଉଦ୍‌ଭୂତ ବୋଲି ଆଜିଯାଏ ପ୍ରଚାର କରି ଆସିଛନ୍ତି; ସତେଯେପରି ଧର୍ମଗତ ଅସନ୍ତୋଷ ଛଡ଼ା

1. C. Trevelyan- On the Education of the People of India- Pg. 199.

ଅନ୍ୟ କୌଣସି କ୍ଷେତ୍ରରେ ଭାରତୀୟମାନଙ୍କ ଭିତରେ ଅସନ୍ତୋଷ ନ ଥିଲା । ଚର୍ବିବୋଳା ଏନ୍‌ଫିଲଡ୍ ଗୁଳିକୁ ଦାନ୍ତରେ ଛିଣ୍ଡାଇବା ପାଇଁ ସୈନ୍ୟମାନଙ୍କୁ ବାଧ୍ୟ କରିବା ବିଦ୍ରୋହର ଏକ ତାତ୍‌କାଳିକ କାରଣ ହୋଇପାରିଥାଏ, କିନ୍ତୁ ଇଂରେଜମାନଙ୍କ ବିରୋଧରେ ପୁଂଜୀଭୂତ ଶହେବର୍ଷର କ୍ରୋଧ ଯେ ଏହି ମହାବିଦ୍ରୋହରେ ଆତ୍ମପ୍ରକାଶ କରିଥିଲା ଏଥିରେ କୌଣସି ସଂଦେହ ନାହିଁ । ପୃଥିବୀରେ ଆଜିଯାଏ ହୋଇଥିବା ସାମରିକ ବିଦ୍ରୋହମାନ ଯେଉଁ ଯେଉଁ କାରଣରୁ ହୋଇଛି, ମହାବିଦ୍ରୋହ ପୂର୍ବରୁ ଭାରତୀୟ ସମାଜରେ ଠିକ୍ ସେହି ଅବସ୍ଥା ରହିଥିଲା । ଶାସକଶ୍ରେଣୀ ବିରୋଧରେ ଶାସିତଶ୍ରେଣୀ ସେତିକିବେଳେ ବିଦ୍ରୋହିର ଖଡ୍‌ଗ ଉତ୍ତୋଳନ କରେ, ଯେତେବେଳେ ଦୁର୍ନୀତି, ବ୍ୟଭିଚାର ଓ କପଟତା ଶାସକଶ୍ରେଣୀକୁ କରିଦିଏ କଳୁଷିତ, ଶୋଷଣ ଓ ଅତ୍ୟାଚାରରେ ଶାସିତ ଯେତେବେଳେ ଅତିଷ୍ଠ ହୋଇଉଠେ । ସବୁ ଯୁଗରେ, ସବୁ ଦେଶରେ ଓ ସବୁ ପ୍ରକାର ଶାସନ ବ୍ୟବସ୍ଥାରେ ପୋଲିସ୍ ଓ ସେନାବାହିନୀ ହିଁ ଅପ୍ରିୟ ଶାସକର ଏକମାତ୍ର ରକ୍ଷାକର୍ତ୍ତା । ବଂଧୁକ ଓ ଲାଠିର ଆଘାତରେ ଜନଅସନ୍ତୋଷକୁ ଦବେଇ ରାଜସିଂହାସନକୁ ଚିରଦିନ ନିରାପଦ ରଖିବା ଉଦ୍ଦେଶ୍ୟରେହିଁ ସେନାବାହିନୀର ସୃଷ୍ଟି କହିଲେ ଅତ୍ୟୁକ୍ତି ହେବନାହିଁ । ଦେଶରକ୍ଷା କିମ୍ବା ରାଜ୍ୟଜୟ ଏହାର ଅନ୍ୟ ଏକ କାର୍ଯ୍ୟ ହୋଇପାରିଥାଏ, ନ ହୋଇ ମଧ୍ୟ ପାରିଥାଏ । ସୁତରାଂ ପୋଲିସ୍ ଓ ସୈନ୍ୟମାନଙ୍କୁ ଯଥାସମ୍ଭବ ସନ୍ତୁଷ୍ଟ ରଖିବା ସବୁ ସରକାରର ପ୍ରଧାନ ଲକ୍ଷ୍ୟ । କାରଣ ସୈନ୍ୟ ବା ପୋଲିସ୍ ଅସନ୍ତୁଷ୍ଟ ହେଲେ ଏବଂ ସେମାନଙ୍କ ସହ ଅସନ୍ତୁଷ୍ଟ ଦେଶବାସୀ ଏକାଠି ହୋଇଗଲେ ସ୍ଥାନୀୟ ବିଦ୍ରୋହ 'ମହାବିଦ୍ରୋହ'ରେ ପରିଣତ ହୁଏ ଏବଂ ସେହି ବିପ୍ଳବର ଲେଲିହାନ ଅଗ୍ନିଶିଖା ନିକଟରେ ରାଜା, ନବାବ ବା ସରକାର ତିଷ୍ଠି ରହିପାରନ୍ତି ନାହିଁ । 'ମହାବିଦ୍ରୋହ'ରେ ତାହାହିଁ ହୋଇଥିଲା । ସେନାବାହିନୀର ଅସନ୍ତୋଷ ସାଙ୍ଗକୁ ମିଶିଗଲା ଜନଅସନ୍ତୋଷ ।

ଭାରତରେ ସାମ୍ରାଜ୍ୟ ପ୍ରତିଷ୍ଠା ଗର୍ବରେ ସ୍ଫୀତ ଇଂରେଜମାନଙ୍କ ପ୍ରକୃତିକୁ ବ୍ୟଙ୍ଗ କରି ବର୍ଣ୍ଣାଡ଼ଶ, "The Maker of Destiny" ଯାହା ଲେଖିଛନ୍ତି ତାର ମର୍ମ ହେଲା - ପ୍ରତ୍ୟେକ ଇଂରେଜ କେତେକ ଅଲୌକିକ ଗୁଣ ନେଇ ଜନ୍ମ ହୋଇଥାଏ ଯାହାକି ତାକୁ ଦୁନିଆର ପ୍ରଭୁ ଆସନରେ ପ୍ରତିଷ୍ଠିତ କରିଛି । ସେ ଯାହା ପାଇବାକୁ ଇଚ୍ଛା କରେ, ତାହା ତା'ର ନିଜ ପାଖରେ ମଧ୍ୟ କେଉଁ ପ୍ରକାଶ କରେନାହିଁ । ଯେଉଁମାନଙ୍କ ପାଖରେ ତା'ର ଈପ୍ସିତ ଦ୍ରବ୍ୟ ରହିଅଛି ସେମାନଙ୍କୁ ପରାଭୂତ କରି ତାହା ହାସଲ କରିବା ତା'ର ନୈତିକ ଓ ଧାର୍ମିକ ଅଧିକାର ବୋଲି ତା' ମନରେ ଦୃଢ଼ବିଶ୍ୱାସ ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ ଧୈର୍ଯ୍ୟ ସହକାରେ ଅପେକ୍ଷା କରେ ଏବଂ ଯାହା ଅଭିଳାଷ କରେ ତାହା ଯେକୌଣସି ମତେ ହାତପଇଠ କରେ । ଧର୍ମୀୟ ନିଷ୍ଠା ଓ ନୈତିକ ଦାୟିତ୍ୱବୋଧରେ ଉଦ୍‌ଭୂତ ବ୍ୟବସାୟୀସୁଲଭ ଦୃଢ଼ତା ଓ ଦକ୍ଷତା ନେଇ ସେ ତା'ର ଲକ୍ଷ୍ୟ ସାଧନରେ

ବ୍ରତୀ ହୁଏ । ସେ ଏକ ନୈତିକ ଦୃଷ୍ଟିକୋଣ ଗ୍ରହଣ କରିବାକୁ କେଉଁଠି ହେଲେ ପଶ୍ଚାଦ୍‌ପଦ ହୁଏ ନାହିଁ । ଜଣେ ଇଂରେଜ ପକ୍ଷରେ କୌଣସି କାର୍ଯ୍ୟ ଅତିଭଲ ବା ଅତିମନ୍ଦ ନ ଥାଏ । ସେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ତୁମ ସହ ଯୁଦ୍ଧ କରିବ, ବ୍ୟବସାୟୀର ଆଦର୍ଶ ନେଇ ତୁମକୁ ସେ ଲୁଟ୍ କରିବ, ସାମ୍ରାଜ୍ୟବାଦୀ ଆଦର୍ଶରେ ସେ ତୁମକୁ ଦାସତ୍ୱ ଶୃଙ୍ଖଳରେ ଆବଦ୍ଧ କରିବ ଏବଂ ତୁମ ଉପରେ ଜୁଲମ କରିବ । ସେ ରାଜକୀୟ ନୀତିରେ ରାଜାଙ୍କୁ ସମର୍ଥନ କରିବ ଏବଂ ଗଣତନ୍ତ୍ର ନୀତିରେ ସେହି ରାଜାଙ୍କର ଶିରଚ୍ଛେଦ କରିବ ।

ଶ'ଙ୍କ ଭାଷାରେ ଇଂରେଜମାନେ ନିଜକୁ ଅଲୌକିକଗୁଣସଂପନ୍ନ ବୋଲି ମନେ କରୁଥିବାରୁ ଭାରତରେ ସେମାନେ ଇନ୍ଦ୍ର ଚନ୍ଦ୍ର ମାନିଲେ ନାହିଁ ଏବଂ ଭାରତୀୟ ସିପାହିମାନଙ୍କୁ ସୁଅର ବା ଘୁଷୁରି ବୋଲି ସମ୍ବୋଧନ କରିବାକୁ ଛାଡୁନଥିଲେ । ମହାବିଦ୍ରୋହ ସମୟର ଏକ ପ୍ରଚାରପତ୍ରରେ ଜଣେ ଚାକ୍ଷୁସ ସାକ୍ଷୀ ଲେଖିଥିଲେ, "I have heard the vilest language used on a parade ground by a commanding officer while excercising his troops" (1)

## ବିପନ୍ନ ଧର୍ମ :

ଏହା ବ୍ୟତୀତ ଭାରତୀୟମାନଙ୍କ ଧର୍ମ ଉପରେ ହସ୍ତକ୍ଷେପ ଫଳରେ ଜନଅସନ୍ତୋଷ କିପରି ମହାବିଦ୍ରୋହର ଅନ୍ୟତମ କାରଣ ହୋଇଥିଲା ତାହା ଜଣାଶୁଣା କଥା ଏବଂ ତାହାର ଫଳସ୍ୱରୂପ ପଲାସୀ ଯୁଦ୍ଧ ପରଠାରୁ କିପରି ବିକ୍ଷିପ୍ତ ସାମରିକ ବିଦ୍ରୋହ ହୋଇଥିଲା ତାହା ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ସେନାବାହିନୀର ଅସନ୍ତୋଷ ଯେତେବେଳେ କାଣ୍ଟନମେଣ୍ଟ ପାଚେରି ଅତିକ୍ରମ କରି ସାଧାରଣ ଜୀବନକୁ ଆଘାତ କଲା ସେତେବେଳେ ଯାଇ ଜନସାଧାରଣ ବିଦ୍ରୋହରେ ଯୋଗଦେଲେ । ଆଜିଯାଏ ଐତିହାସିକମାନେ କହିଆସିଛନ୍ତି ଯେ ଭାରତୀୟମାନେ ସ୍ୱଭାବରେ ରକ୍ଷଣଶୀଳ ହୋଇଥିବାରୁ ଇଂରେଜ ଅମଳରେ ହୋଇଥିବା ବିଭିନ୍ନ ପ୍ରଗତିମୂଳକ ବା ସଂସ୍କାରମୂଳକ ଓ ଲୋକହିତକର ଆଇନକୁ ଭୁଲବୁଝିଲେ ।

ବେଣ୍ଟିଙ୍କଙ୍କ ଅମଳରେ ସତୀଦାହ ପ୍ରଥାର ବିଲୋପ ସାଧନ ହେବାରୁ ଅବଶ୍ୟ ରକ୍ଷଣଶୀଳ ହିନ୍ଦୁ ସମାଜରେ ବିରୋଧୀ ପ୍ରତିକ୍ରିୟା ସୃଷ୍ଟିହୋଇପାରିଥାଏ ଏବଂ ଏହି ଦୃଷ୍ଟିରୁ ମୁସଲମାନମାନେ ହୁଏତ ସଂଦେହକଲେ ଯେ ଇଂରେଜମାନେ କ୍ରମେ ସେମାନଙ୍କ ଧର୍ମଉପରେ ମଧ୍ୟ ହସ୍ତକ୍ଷେପ କରିବେ । ହିନ୍ଦୁ ବିଧବା ଆଇନକୁ ମଧ୍ୟ କେତେକ ସନ୍ଦେହ ଦୃଷ୍ଟିରେ ଦେଖିଥାଇପାରିଥା'ନ୍ତି । ଅବଶ୍ୟ ଏହାକୁ ଭାରତୀୟମାନଙ୍କର ଧର୍ମାନ୍ଧତା ବୋଲି କହିଦେଲେ ଚଳିବ ନାହିଁ । କାରଣ ରାଜା ରାମମୋହନ ରାୟ ବା ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଭଳି ସାମାଜିକ ବିପ୍ଳବୀମାନେ ଏହି ନୂତନ ସଂସ୍କାର ବ୍ୟବସ୍ଥାଗୁଡ଼ିକୁ ସମର୍ଥନ କରିଥିବାବେଳେ ଉପଯୁକ୍ତ ପ୍ରଚାର ଅଭାବରୁ ସାଧାରଣ ଲୋକେ ଏହି ସଂସ୍କାରଗୁଡ଼ିକର ମହତ୍ତ୍ୱ ଉତ୍ତମରୂପେ ବୁଝିପାରିଲେନାହିଁ । ଓଲଟି ଦାୟିତ୍ୱହୀନ

1. Bulletin of year's campaigning in India from March 1857 to March 1858.

ସରକାରୀ କର୍ମଚାରୀମାନେ ଲୋକମାନଙ୍କର ବିଚାର ପରିବର୍ତ୍ତନ, ଯାହାକି ସାମାଜିକ ସଂସ୍କାର ପାଇଁ ବିଶେଷ ପ୍ରୟୋଜନ – ନ କରି ଜୋର୍‌ଜବରଦସ୍ତି ଏହା ଲଦିବାକୁ ଚେଷ୍ଟାକରିବାରୁ ଏହାର ଖରାପ ପ୍ରତିକ୍ରିୟା ଦେଖାଦେବା କିଛି ଅସ୍ୱାଭାବିକ ନୁହେଁ । ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଉପରେ ବିଜାତୀୟମାନଙ୍କର ଅନଧିକାର ହସ୍ତକ୍ଷେପ ହିନ୍ଦୁ ଜଗତରେ ନିଶ୍ଚୟ ଅସନ୍ତୋଷ ସୃଷ୍ଟିକରୁଥିଲା, ଯଦିଓ ଖାସ୍ ଇଂଲଣ୍ଡରେ କମ୍ପାନୀ ବିରୋଧରେ ଓଲଟା ଅଭିଯୋଗ ହୋଇଥିଲା ଯେ କମ୍ପାନୀର ସମସ୍ତେ ଖ୍ରୀଷ୍ଟିଆନ ହୋଇଥିବାରୁ ଜଗନ୍ନାଥ ମନ୍ଦିର ମୂର୍ତ୍ତିପୂଜାର ଦାୟିତ୍ୱନେବା ଖ୍ରୀଷ୍ଟିଆନ ଧର୍ମବିରୋଧୀ କାର୍ଯ୍ୟ ଅଟେ । ଏହି ଚାପଫଳରେ ଅବଶ୍ୟ କମ୍ପାନୀ ଶ୍ରୀମନ୍ଦିର ଉପରୁ ହାତ ଉଠାଇ ନେଲେ; କିନ୍ତୁ ଇଂରେଜମାନେ ଯେ ଭାରତୀୟ ଧର୍ମ ଉପରେ କ୍ରମେ ଅଧିକରୁ ଅଧିକ ହସ୍ତକ୍ଷେପ କରୁଛନ୍ତି, ଏହି ସନ୍ଦେହ ଦୃଢ଼ ହେଲା ।

ଏହା ସାଙ୍ଗକୁ ଯୋଡ଼ାହେଲା ଖ୍ରୀଷ୍ଟିଆନ ମିସନାରୀମାନଙ୍କର କ୍ରମବର୍ଦ୍ଧମାନ ଔଦ୍ଧତ୍ୟ । ଖ୍ରୀଷ୍ଟିଆନ ମିସନାରୀମାନେ ଏ ଦେଶକୁ ପ୍ରଥମେ ଆସିଲେ ପର୍ତ୍ତୁଗୀଜମାନଙ୍କ ସହ ପଞ୍ଚଦଶ ଶତାବ୍ଦୀର ଶେଷ ଦଶକରେ । କିନ୍ତୁ ପର୍ତ୍ତୁଗୀଜମାନେ ଭାରତବର୍ଷରେ ସାମ୍ରାଜ୍ୟ ବିସ୍ତାର ପ୍ରତିଯୋଗିତାରେ ଇଂରେଜମାନଙ୍କ ସହ ଅଧିକ ଦିନ ଛିଡ଼ା ହୋଇ ନ ପାରିବାରୁ ମିସନାରୀମାନେ ସେମାନଙ୍କ ପୃଷ୍ଠପୋଷକତା ଅଧିକ ଦିନ ପାଇପାରିଲେ ନାହିଁ । କିନ୍ତୁ ଇଂରେଜମାନଙ୍କ ବଙ୍ଗଳା ଦଖଲ ପରେ ମିସନାରୀମାନଙ୍କର କାର୍ଯ୍ୟକଳାପ ବୃଦ୍ଧି ପାଇଲା । ଭାରତୀୟମାନେ ପ୍ରଥମ ଅବସ୍ଥାରେ ଏଥିପ୍ରତି ବେଶ୍ ଉଦାସୀନ ଥିଲେ । କାରଣ ଦୁଇଟି ମୁଖ୍ୟ ଭାରତୀୟ ଧର୍ମ – ହିନ୍ଦୁ ଓ ମୁସଲମାନ ଭିତରେ ଖ୍ରୀଷ୍ଟିଆନ ଧର୍ମ ପ୍ରତି ବିଶେଷ ବିରୋଧ ନ ଥିଲା । ଅନ୍ତତଃ ପ୍ରଥମାବସ୍ଥାରେ ଶିକ୍ଷିତ ଭାରତୀୟମାନେ ଏଥିପ୍ରତି ଉଦାସୀନ ଭାବ ପୋଷଣ କରୁଥିଲେ । କିନ୍ତୁ ମିଶନାରୀମାନଙ୍କ ପ୍ରଚାରର ଚତୁର କୌଶଳ ଓ ସେମାନଙ୍କ ପ୍ରତି ସରକାରୀ ପୃଷ୍ଠପୋଷକତା, ବିଶେଷତଃ ଅନ୍ୟ ଧର୍ମ ଉପରେ ଅହେତୁକ ଅବମାନନା, ଏବଂ ଲୋକମାନଙ୍କର ଦାରିଦ୍ର୍ୟ ଏବଂ ଅଜ୍ଞତାର ସୁଯୋଗ ନେଇ ସେମାନଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇବା ଦେଖି ଉଭୟ ହିନ୍ଦୁ ଓ ମୁସଲମାନମାନଙ୍କର ଉଦାସୀନତା ସନ୍ଦେହରେ ପରିଣତ ହେଲା । ମିସନାରୀମାନଙ୍କ ପ୍ରଚାର ସଭାରେ ପୋଲିସ୍ ଓ ସରକାରୀ କର୍ମଚାରୀମାନଙ୍କର ଉପସ୍ଥିତି ଯୋଗୁଁ ଏହି ସନ୍ଦେହ ଦୃଢ଼ୀଭୂତ ହେବାକୁ ଲାଗିଲା ଯେ ସରକାର ଓ ମିସନାରୀମାନେ ଗୋଟିଏ ସଂସ୍ଥାର ଅନ୍ତର୍ଭୁକ୍ତ ।

ସାର୍ ସୟେଦ ଅହମ୍ମଦଙ୍କ ଭାଷାରେ, "It has been commonly believed that the Government appointed missionaries and maintained them at his own cost"(1) ବାଇବେଲ ପାଠ ଯେ କେବଳ ମିଶନାରୀ ଅନୁଷ୍ଠାନମାନଙ୍କରେ

1. S. Ahamed– The Causes of Indian Mutiny- Page- 14

ହେଉଥିଲା ତାହା ନୁହେଁ, ଅନ୍ୟାନ୍ୟ ସାଧାରଣ ସ୍କୁଲ ଏପରିକି କେତେକ ହସ୍‌ପିଟାଲ ଓ ଜେଲ ଖାନାରେ ମଧ୍ୟ ତାହା ଏକପ୍ରକାର ବାଧ୍ୟତାମୂଳକ ଭାବରେ ଚାଲୁଥିଲା । ଦୁର୍ଭିକ୍ଷ ବେଳେ ଅନ୍ନଛତ୍ର ଓ ଅନାଥାଶ୍ରମ ଖୋଲିବା ବାହାନାରେ ଦରିଦ୍ର ନିଃସହାୟ ପିଲାମାନଙ୍କୁ ସେଠାରେ ଖ୍ରୀଷ୍ଟିଆନ କରାଯାଉଥିଲା । ଏହି ପରିପ୍ରେକ୍ଷୀରେ ୧୮୫୩ର ଉତ୍ତରାଧିକାରୀ ଆଇନକୁ ବିଚାରିବାକୁ ପଡ଼ିବ । ଏଇ ଆଇନ ଫଳରେ ହିନ୍ଦୁ ବା ମୁସଲମାନ କେହି ଅନ୍ୟ ଧର୍ମ ଗ୍ରହଣ କଲେ ସୁଦ୍ଧା ସେମାନେ ପୈତୃକ ସଂପତ୍ତିରୁ ବଂଚିତ ହେଲେ ନାହିଁ, କିନ୍ତୁ ପୂର୍ବରୁ ସାଧାରଣ ଚଳଣି ଥିଲା ଯେ ପୁତ୍ର ଅନ୍ୟଧର୍ମ ଗ୍ରହଣକଲେ ତାହାର ପୈତୃକ ସଂପତ୍ତିରେ ଅଧିକାର ରହୁ ନ ଥିଲା । ଅବଶ୍ୟ ଏଭଳି ଘଟଣା ଖୁବ୍ ବେଶୀ ଘଟୁ ନ ଥିଲା । କାରଣ ସେତେବେଳେ ଧର୍ମୀୟନିଷ୍ଠା ଏତେ ପ୍ରଖର ଥିଲା ଯେ ଖୁବ୍ କମ୍ ଲୋକ ଧର୍ମାନ୍ତର ଗ୍ରହଣ କରୁଥିଲେ । ଖ୍ରୀଷ୍ଟିଆନ ଧର୍ମର ପ୍ରଚାର ପରେ ଯାଇ ଏହି ଧର୍ମାନ୍ତର କଥାଟା ବିଶେଷଭାବେ ଚାଲୁହେଲା । ସୁତରାଂ ଉତ୍ତରାଧିକାରୀ ଆଇନ ଫଳରେ କେବଳ ମାତ୍ର ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରୁଥିବା ଲୋକେ ଉପକୃତ ହେଲେ ଏବଂ ଏହା ଭାରତୀୟମାନଙ୍କୁ ନିଃସନ୍ଦେହ କରିଦେଲା ଯେ ଧର୍ମ ଉପରେ ହସ୍ତକ୍ଷେପ ହିଁ ବିଦେଶୀ ଶାସନର ମୁଖ୍ୟ ଉଦ୍ଦେଶ୍ୟ । ଏତଦ୍‌ବ୍ୟତୀତ ରେଳଗାଡ଼ି, ହସ୍‌ପିଟାଲ, ଜେଲ୍ ଓ ବିଚାରାଳୟରେ ଜାତି ଧର୍ମ ନିର୍ବିଶେଷରେ ସମସ୍ତେ ସମାନ ବ୍ୟବହାର ପାଉଥିବା କଥା ଲୋକେ ଅନୁଭବ କରିବାରୁ ସନ୍ଦେହ ଆହୁରି ବଢ଼ିଗଲା । ଅବଶ୍ୟ ଏହା ସତ୍ୟ ଯେ, ସମ୍ଭ୍ରାନ୍ତ ଶ୍ରେଣୀର ଲୋକମାନଙ୍କ ଦୃଷ୍ଟିକୁ ଏହି ତଥାକଥିତ ସମାନତା ଭଲ ଦିଶିଲା ନାହିଁ । ମଝିରେ ମଝିରେ ଏଭଳି କେତେକ ଘଟଣା ଘଟୁଥିଲା, ଯାହା ଫଳରେ ଇଂରେଜୀ ଔଦ୍ଧତ୍ୟର ଚରମ ପରିଚୟ ଲୋକେ ଅନୁଭବ କଲେ । ୧୮୫୫ ମସିହା ସେପ୍‌ଟେମ୍ବର ୨୦ ତାରିଖରେ ହାଇଦ୍ରାବାଦରେ ଏଭଳି ଗୋଟିଏ ଅପ୍ରୀତିକର ଘଟଣା ଘଟିଥିଲା । ହାଇଦ୍ରାବାଦର ବଲରାମ ନାମକ ସ୍ଥାନରେ ମୁସଲମାନମାନଙ୍କର ଏକ ମହରମ ଶୋଭାଯାତ୍ରା ଯିବାର ଥିଲା । କିନ୍ତୁ ଏହା ଫଳରେ ଗୋରା ଅଫିସରମାନଙ୍କର ମାନସିକ ଶାନ୍ତିଭଙ୍ଗ ହେବ ବୋଲି କହି ଶୋଭାଯାତ୍ରାରେ ବାଦ୍ୟଯନ୍ତ୍ର ନ ବଜାଇବାକୁ ବା କୌଣସି ଶବ୍ଦ ନ କରିବାକୁ ତାଗିଦ୍‌କରି ଗୋରା ସେନାପତି କର୍ଣ୍ଣେଲ କଲିନ ମାକେଂଜି ଏକ ନିର୍ଦ୍ଦେଶ ଦେଲେ । କିନ୍ତୁ ଏ ନିର୍ଦ୍ଦେଶକୁ ଏକ ଅନଧିକାର ହସ୍ତକ୍ଷେପ ମନେକରି ଶୋଭାଯାତ୍ରା ଯଥାସମୟରେ ବାହାରିଥିଲା । ଏଥିରେ ମାକେଂଜି ଉତ୍ତେଜିତ ହୋଇ ଶୋଭାଯାତ୍ରା ପାଖରେ ପହଞ୍ଚି ଜଣେ ଶୋଭାଯାତ୍ରୀଙ୍କଠାରୁ ଗୋଟିଏ ପତାକା ଛଡ଼ାଇନେଇ ସମସ୍ତଙ୍କୁ ଫେରିଯିବାକୁ ଅର୍ଡ଼ର କଲେ । ଶୋଭାଯାତ୍ରା ସେହିଠାରୁ ଫେରିଗଲା । କିନ୍ତୁ ଅଳ୍ପସମୟ ଭିତରେ ଚଢ଼ାଉହେଲା ମାକେଂଜି ଓ ଅନ୍ୟାନ୍ୟ ଗୋରା ଅଫିସରମାନଙ୍କ ଉପରେ । ମାକେଂଜି ଓ ଅନ୍ୟ କେତେଜଣ ୟୁରୋପୀୟ ଅଫିସର ଏପରିକି କେତେଜଣ ଇଂରେଜ ମହିଳା ମଧ୍ୟ ବିଦ୍ରୋହୀମାନଙ୍କ କ୍ରୋଧର ଦୟନୀୟ

ଶିକାରରେ ପରିଣତି ହେଲେ । ପରେ ଏହି ଅଭିଯୋଗରେ କେତେକ ବିଦ୍ରୋହୀ ଦଣ୍ଡିତ ହେଲେ ସତ୍ୟ, କିନ୍ତୁ ଏହି ଘଟଣାରେ ଇଂରେଜ ଔଦ୍ଧତ୍ୟ ଏବଂ ଖାଲି ହିନ୍ଦୁ ଧର୍ମ ନୁହେଁ ମୁସ୍ଲିମଧର୍ମ ଉପରେ ମଧ୍ୟ ସରକାର ଅନଧିକାର ହସ୍ତକ୍ଷେପ କରୁଛି, ବୋଲି ଧାରଣା ଦୃଢ଼ ହେଲା । ସେଥିପାଇଁ ଧର୍ମ ବିପନ୍ନ ବୋଲି ସାରା ଦେଶ ଓ ସିପାହି ଲାଇନରେ ଏକ ସାଧାରଣ ଧ୍ୱନିରେ ପରିଣତ ହେଲା । (Religion in danger became a common cry in the country side and in the sepoy line.) (1)

୧୮୫୩ ମସିହାରେ ହୋଇଥିବା ଭୟାବହ ଦୁର୍ଭିକ୍ଷ ବେଳେ କିଭଳି ଶହ ଶହ ବୁଭୁକ୍ଷୁ ଶିଶୁଙ୍କୁ ଅନାଥାଶ୍ରମକୁ ଧରିନେଇ ସେମାନଙ୍କୁ ଖ୍ରୀଷ୍ଟିଆନ କରାଯାଇଥିଲା ତା'ର ରୋମାଞ୍ଚକର ବର୍ଣ୍ଣନା କମ୍ପାନୀର ଭାରତୀୟ କର୍ମଚାରୀ ସାର୍ ସୟଦ ଅହମ୍ମଦ ତାଙ୍କର 'ଭାରତୀୟ ବିଦ୍ରୋହର କାରଣ' ଶୀର୍ଷକ ଗ୍ରନ୍ଥରେ ପ୍ରକାଶ କରିଅଛନ୍ତି । ଶେଷରେ ସେ ଲେଖିଛନ୍ତି, "At length the Hindustanees fell into the habit of thinking that all the laws were passed with a view to degrade and ruin them and to deprive them and thier fellows of their religion."(2) (ହିନ୍ଦୁସ୍ଥାନୀମାନଙ୍କର ଏଭଳି ଧାରଣା କରିବାର ପ୍ରାୟ ଅଭ୍ୟାସ ହୋଇଗଲା ଯେ ସେମାନଙ୍କୁ ହୀନ ପ୍ରତିପ୍ରନ୍ନ କରି ଧ୍ୱଂସ କରିବା ଏବଂ ସେମାନଙ୍କୁ ଓ ଦେଶବାସୀଙ୍କୁ ସେମାନଙ୍କର ଧର୍ମରୁ ବଞ୍ଚିତ କରିବା ସମସ୍ତ ପ୍ରକାର ଆଇନର ଏକମାତ୍ର ଲକ୍ଷ୍ୟ ।)

**ଅସନ୍ତୁଷ୍ଟ ସୈନିକ :**

ବ୍ରିଟିଶ୍ ଭାରତ ଇତିହାସ ସଂପର୍କରେ ସମ୍ୟକ୍ ଧାରଣା ଥିବା ଲୋକ ବି ଜାଣେ ଯେ ବ୍ରିଟିଶ୍ ଭାରତ ସେନାବାହିନୀରେ ଅଧିକାଂଶ ଥିଲେ ଭାରତୀୟ । କାର୍ଲମାର୍କସଙ୍କ ଭାଷାରେ, ''ଭାରତର କୋଡ଼ିଏ କୋଟି ଲୋକଙ୍କୁ (୧୮୫୭ର ହିସାବ ଅନୁସାରେ) ଦବେଇ ରଖିବାକୁ ଦୁଇଲକ୍ଷ ଭାରତୀୟ ସୈନ୍ୟ ନିଯୁକ୍ତ ହୋଇଥିଲେ ଏବଂ ସେହି ଦୁଇଲକ୍ଷ ଭାରତୀୟଙ୍କୁ ଜଗିରହିଥିଲେ ମାତ୍ର ଚାଳିଶ ହଜାର ଗୋରା ସୈନ୍ୟ ।'' ଏହିଭଳି ଭାବରେ ମାତ୍ର ଚାଳିଶ ହଜାର ୟୁରୋପୀୟ କୋଡ଼ିଏ କୋଟି ଭାରତୀୟଙ୍କୁ ଅସ୍ତ୍ରବଳରେ ପଦାନତ କରି ରଖିଥିଲେ ।

ମୁଖ୍ୟତଃ ତିନିଗୋଟି ରେଜିମେଣ୍ଟ, ଯଥା – ବେଙ୍ଗଲ କମାଣ୍ଡ, ବମ୍ବେ କମାଣ୍ଡ ଓ ମାଡ୍ରାସ କମାଣ୍ଡ ଭିତରୁ ବେଙ୍ଗଲ କମାଣ୍ଡ ଥିଲା ବୃହତ୍ତମ; କିନ୍ତୁ 'ବେଙ୍ଗଲ କମାଣ୍ଡ'ର ଦେଢ଼ଲକ୍ଷ ସୈନ୍ୟଙ୍କ ମଧ୍ୟରୁ ଗୋରା ସୈନ୍ୟ ଥିଲେ ମାତ୍ର ତିରିଶ ହଜାର । ଏହି ତିରିଶ ହଜାରର ଅଧା ସୈନ୍ୟ ଥିଲେ କେବଳ ପଞ୍ଜାବରେ । ସୁତରାଂ ଉତ୍ତର ଭାରତରେ ଯେତେ ସୈନ୍ୟ ଥିଲେ, ସେଥିମଧ୍ୟରୁ ଏକ ଲକ୍ଷ ୩୫ ହଜାର କେବଳ ଭାରତୀୟ ସିପାହି ଥିଲେ । ସେଥିରେ ପୁଣି ପ୍ରତି ଦଶଜଣରେ ନଅଜଣ ଥିଲେ ହିନ୍ଦୁ ଓ ଜଣେ

1. SEN– Eighteen Fiftyeven– Page- 16.
2. Ahmed– The causes of the Indian Mutiny, Page- 14.

ଥିଲେ ମୁସଲମାନ । ବମ୍ବେ ରେଜିମେଣ୍ଟରେ ଷାଠିଏ ହଜାର ସୈନ୍ୟଙ୍କ ମଧ୍ୟରୁ ଏକ-ତୃତୀୟାଂଶ ଥିଲେ ଉତ୍ତରଭାରତୀୟ ହିନ୍ଦୁ ଓ ମୁସ୍ଲିମ୍ । ଅବଶିଷ୍ଟ ବେଲୁଚି, ମରହଟ୍ଟା ଓ ମାହାର (ନୀଚ ଶ୍ରେଣୀର ହିନ୍ଦୁ) । କିନ୍ତୁ ମାଡ୍ରାସ ରେଜିମେଣ୍ଟ ବିଭିନ୍ନ ଅସ୍ପୃଶ୍ୟ ଜାତିର ଲୋକମାନଙ୍କୁ ନେଇ ଗଠିତ ହୋଇଥିଲା । ମାନ୍ଦ୍ରାଜରେ ସାଧାରଣତଃ କେହି ଯୋଦ୍ଧା ଜାତି ନ ଥିବାରୁ ଏବଂ ବ୍ରାହ୍ମଣମାନେ ଯୁଦ୍ଧ ପ୍ରତି ବୀତସ୍ପୃହ ଥିବାରୁ, ମୁସଲମାନ ଓ ଉତ୍ତରଭାରତୀୟ ହିନ୍ଦୁମାନେ ମାଡ୍ରାସ ରେଜିମେଣ୍ଟରେ ସଂଖ୍ୟାଗରିଷ୍ଠ ଥିଲେ ।

ସେନାବାହିନୀର ଶ୍ରେଣୀବିଭାଗ ଓ ଶ୍ରେଣୀଚରିତ୍ରକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଦକ୍ଷିଣ ଓ ପଶ୍ଚିମ ଭାରତୀୟ ଅଳ୍ପ କେତେକ ସୈନ୍ୟଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତଙ୍କ ଭିତରେ ଅସନ୍ତୋଷ ଅଧିକମାତ୍ରାରେ ବ୍ୟାପିବାର ସମ୍ଭାବନା ଥିଲା । କାରଣ ଉଭୟ ହିନ୍ଦୁ ଓ ମୁସଲମାନ ସୈନ୍ୟମାନଙ୍କର ଇଂରେଜ ଶାସନ ବିରୋଧରେ ଅସଂଖ୍ୟ ଅଭିଯୋଗ ଥିଲା । ସିପାହିମାନଙ୍କର ଏହି ଗୋଟିଏ ଅଭିଯୋଗ ସର୍ବଦା ଅନୁରଣିତ ହେଉଥିଲା ଯେ, "ଆମେ ତୁମ ପାଇଁ ରାଜ୍ୟ ପରେ ରାଜ୍ୟ ଜିତି ଆସିଲୁ, ଏପରିକି ଶେଷରେ ଜିତିବାକୁ ଆଉ ଗୋଟିଏ ସୁଦ୍ଧା ରାଜ୍ୟ ବାକି ରହିଲା ନାହିଁ । କିନ୍ତୁ ତା ବଦଳରେ ପାଇଲୁ କ'ଣ ତୁମଠାରୁ ?"

ଦରମା, ଭତ୍ତା, ପେନ୍‌ସନ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଛଡ଼ା ଯେକୌଣସି ସୈନିକର ବଡ଼ ଆକର୍ଷଣ – ତା'ର ପଦୋନ୍ନତି, ବୀରତ୍ୱର ସ୍ୱୀକୃତି ଓ ପ୍ରଶଂସାପତ୍ର । କିନ୍ତୁ ଭାରତୀୟ ସିପାହି ପକ୍ଷରେ ସେଗୁଡ଼ିକ ଥିଲା ସ୍ୱପ୍ନ ସଦୃଶ । "Though he might give the signs of military genious of a Hyder, he knew that he could never attain the pay of an English Subaltern"(1) ଅର୍ଥାତ୍ ଯୁଦ୍ଧକ୍ଷେତ୍ରରେ ସେ 'ହାଇଦର' ସୁଲଭ ଦକ୍ଷତା ପ୍ରଦର୍ଶନ କରୁଥିଲେ ସୁଦ୍ଧା ସେ ଜାଣିଥିଲା ଯେ ଜଣେ ସାଧାରଣ ଇଂରେଜ ସୈନିକର ବେତନ ସ୍ତର ପର୍ଯ୍ୟନ୍ତ ମଧ୍ୟ ସେ ଉନ୍ନୀତ ହୋଇପାରିବ ନାହିଁ । କାରଣ ଇଂରେଜମାନେ ଭାରତୀୟ ସିପାହିର ବୀରତ୍ୱ ଓ ସାହସିକତା ଅପେକ୍ଷା ତା'ର ଶସ୍ତାମୂଲ୍ୟକୁ ଅଧିକ ପସନ୍ଦକରୁଥିଲେ । ଜଣେ ସାଧାରଣ ସିପାହିର ମାସିକ ଦରମା ଥିଲା ମାତ୍ର ସାତ ଟଙ୍କା । 'ବିଦ୍ରୋହୀ ବାଙ୍ଗାଲୀ' ବହିର ଲେଖକ ଶ୍ରୀ ଦୁର୍ଗା ଦାସ ବନ୍ଦୋପାଧ୍ୟାୟଙ୍କ ତଥ୍ୟ ଅନୁସାରେ ଖାଦ୍ୟପେୟ ଓ ପୋଷାକ ପରିଚ୍ଛଦ ଖର୍ଚ୍ଚ କଟାଯାଇ ମାସ ଶେଷରେ ଜଣେ ଭାରତୀୟ ସିପାହି ମାତ୍ର ଟଙ୍କାଏ ବା ଦେଢ଼ଟଙ୍କା ବଞ୍ଚାଇପାରୁଥିଲା, ବେଳେବେଳେ କେତୋଟି ପଇସା ମାତ୍ର । ଭାରତର ଯେଉଁ ରାଜ୍ୟଗୁଡ଼ିକ ସେତେବେଳେ ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ନ ଥିଲା, କଂପାନୀ ସେହି ରାଜ୍ୟଗୁଡ଼ିକୁ 'ବିଦେଶ' ବୋଲି ବିବେଚନା କରୁଥିଲେ ଏବଂ ସେସବୁ ରାଜ୍ୟକୁ ଯୁଦ୍ଧ କରିବାକୁ ଯାଉଥିବା ସିପାହିମାନଙ୍କୁ 'ସ୍ୱତନ୍ତ୍ର ବିଦେଶୀ ଭତ୍ତା' ଦିଆଯାଉଥିଲା ।

1. Sen– Eighteen Fiftyseven- Page- 1

କିନ୍ତୁ ମଜାର କଥା ଏହି ଯେ, ରାଜ୍ୟଜୟ ସଙ୍ଗେ ସଙ୍ଗେ ,ଅର୍ଥାତ୍ ଉକ୍ତ ରାଜ୍ୟଗୁଡ଼ିକ ଇଂରେଜ ଅଧୀନକୁ ଆସିବା ମାତ୍ରେ, ସେହି ତଥାକଥିତ 'ବିଦେଶୀ ଭତ୍ତା'କୁ ବନ୍ଦ କରି ଦିଆଯାଉଥିଲା । ଏଥିରେ ସିପାହିମାନେ ଅସନ୍ତୁଷ୍ଟ ହେବା ସ୍ୱାଭାବିକ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ସିପାହିମାନେ ଏହାକୁ ସରକାର ପକ୍ଷର ଏକ ନିର୍ମମ ବିଶ୍ୱାସଘାତକତା ବୋଲି ମନେକରିଥିବେ ଏବଂ ଏଥିରେ ଅସନ୍ତୁଷ୍ଟ ହୋଇଥିବେ ।

ଅପର ପକ୍ଷରେ ୟୁରୋପୀୟ ସୈନ୍ୟମାନଙ୍କ ପାଇଁ ଖର୍ଚ୍ଚ ହେଉଥିଲା ସର୍ବାଧିକ ଅର୍ଥ । ସମଗ୍ର ସେନାବାହିନୀରେ ସେତେବେଳେ ତିନି ଲକ୍ଷ ପନ୍ଦର ହଜାର ପାଞ୍ଚ ଶହ କୋଡ଼ିଏ ସୈନ୍ୟ ଥିଲେ ଓ ସେମାନଙ୍କ ପାଇଁ ବ୍ୟୟ ହେଉଥିଲା ପ୍ରାୟ ୯୮ଲକ୍ଷ ପାଉଣ୍ଡ । କିନ୍ତୁ ଏହି ଅର୍ଥରୁ ପ୍ରାୟ ୫୭ ଲକ୍ଷ ପାଉଣ୍ଡ ମାତ୍ର ୫୧ ହଜାର ଜଣ ୟୁରୋପୀୟ ସୈନ୍ୟଙ୍କ ପାଇଁ ଖର୍ଚ୍ଚ ହେଉଥିଲା, ଅର୍ଥାତ୍ 'ଛ' ଭାଗରୁ ଏକ ଭାଗ ସୈନ୍ୟଙ୍କ ପାଇଁ ଅଧେରୁ ବେଶୀ ଟଙ୍କା ଖର୍ଚ୍ଚ ହୋଇ ଅବଶିଷ୍ଟ ୫ ଭାଗ ସୈନ୍ୟଙ୍କ ପାଇଁ ଅବଶିଷ୍ଟ ୪୭ ହଜାର ପାଉଣ୍ଡ ଖର୍ଚ୍ଚ ହେଉଥିଲା । ଭାରତୀୟ ସିପାହିମାନେ କେମିତି 'ଅତି ଶସ୍ତା' (Damn Cheap) ଥିଲେ ତାହାର ପ୍ରମାଣ ପାଇଁ ଏହି ଗୋଟିଏ ହିସାବ ଯଥେଷ୍ଟ । ସୁତରାଂ ଏହା ଭାରତୀୟ ସିପାହିମାନଙ୍କ ଭିତରେ ଅସନ୍ତୋଷ କୁହୁଳାଉଥିଲା ।

ଏହାଛଡ଼ା ଇଂରେଜମାନେ ଭାରତୀୟମାନଙ୍କ ଧର୍ମ ଉପରେ ଯେଉଁଭଳି ଅସହ୍ୟ ହସ୍ତକ୍ଷେପ କରୁଥିଲେ ସେନାବାହାନୀ ଉପରେ ତା'ର ସବୁଠାରୁ ବେଶୀ ଧକ୍‌କା ବାଜୁଥିଲା । ମୁଷ୍ଟିମେୟ ସୈନ୍ୟଙ୍କୁ ଛାଡ଼ିଦେଲେ ସେନାବାହିନୀର ଅଧିକାଂଶ ଥିଲେ ଉଚ୍ଚବର୍ଣ୍ଣୀୟ ହିନ୍ଦୁ ଓ ମୁସଲମାନ । ହିନ୍ଦୁମାନଙ୍କ ଭିତରେ ରକ୍ଷଣଶୀଳତା ଅପେକ୍ଷାକୃତ ଅଧିକ ଥିବାରୁ ସେମାନେ ଏଥିରେ ବେଶୀ କ୍ଷତିଗ୍ରସ୍ତ ହେଲେ । ନିଜ ନିଜ ଜନ୍ମସ୍ଥାନରୁ ହଜାର ହଜାର ମାଇଲ ଦୂରରେ ଯୁଦ୍ଧକରି ସେମାନେ ଉପଯୁକ୍ତ କ୍ଷତିପୂରଣ ପାଉ ନ ଥିଲେ । ବିଶେଷତଃ ଆଫଗାନିସ୍ଥାନ ବା ସୀମାନ୍ତ ପ୍ରଦେଶ ଭଳି ମୁସ୍ଲିମ୍ ପ୍ରଧାନ ପ୍ରଦେଶରେ ଅବସ୍ଥାପିତ ହିନ୍ଦୁ ସୈନିକମାନେ ଅତି ପ୍ରତିକୂଳ ପରିସ୍ଥିତିରେ ରହୁଥିଲେ । ମୁସଲମାନମାନଙ୍କ ସହ ଏକତ୍ର ବାସକରିବା, ରାନ୍ଧିବା, ଖାଇବା ଆଦି ସବୁକାର୍ଯ୍ୟ ସେମାନଙ୍କୁ ବାଧ୍ୟହୋଇ କରିବାକୁ ପଡୁଥିଲା । ଫଳରେ ଘରକୁ ଫେରିବା ପରେ କିମ୍ବା ଚାକିରିରୁ ଅବସର ନେବା ପରେ ସେମାନେ ଚିରଦିନ ସମାଜରୁ ବାଛନ୍ଦ ହେଉଥିଲେ । ଅନ୍ୟ ଜାତି ଲୋକଙ୍କ ସହ ବିଶେଷତଃ ମୁସଲମାନ ବା ଖ୍ରୀଷ୍ଟିଆନ ସହ ଏକତ୍ର ଖାଇବା ପିଇବାକୁ ସେ ଯୁଗରେ କେଉଁ ରକ୍ଷଣଶୀଳ ହିନ୍ଦୁସମାଜ ସିପାହିକୁ ଅନୁମତି ଦିଅନ୍ତା ? ଫଳରେ ସେମାନଙ୍କ ଶେଷଜୀବନ ହେଉଥିଲା ଦୁର୍ବିସହ ।

ସେନାବାହିନୀରେ ଥିବା ଦୁର୍ନୀତି, ବ୍ୟଭିଚାର ଓ ଲାଞ୍ଚ ମିଛ ମଧ୍ୟ ଅଶାନ୍ତିର ଆଉ ଏକ କାରଣ ହୋଇଥିଲା । ଆମ ଦେଶରେ ଆଜି ବହୁ ଶିକ୍ଷିତ ଲୋକଙ୍କର ଧାରଣା

ଯେ ଇଂରେଜମାନେ ବଡ଼ ସାଧୁ ଓ ସଚ୍ଚୋଟ ଥିଲେ । କିନ୍ତୁ ଐତିହାସିକତଥ୍ୟ ବିପରୀତ ପ୍ରମାଣ ଦିଏ । ଏପରିକି ସେନାବାହିନୀରେ ଚାକିରିଖଣ୍ଡେ ପାଇବାକୁ ଭାରତୀୟ ସିପାହିମାନେ ୟୁରୋପୀୟାନ୍ ସାମରିକ ଅଫିସରମାନଙ୍କୁ ଲାଞ୍ଚ ଦେଉଥିଲେ । ସୁବେଦାର ସୀତାରାମ ଯେ କି ଜଣେ ଅନୁରକ୍ତ ସୈନିକରୂପେ ଦୀର୍ଘକାଳ ସେନାବାହିନୀରେ କାର୍ଯ୍ୟକରୁଥିଲେ, ଏବଂ ସିପାହିରୁ ସୁବେଦାର ହୋଇଥିଲେ, ସେ ଏହି ଲାଞ୍ଚ ସମ୍ପର୍କରେ ଲେଖିଛନ୍ତି; "This fee was Rs.16/-, some five or six of which went to the European sergent of the company the recruit was posted to" (1) ଏହି ଲାଞ୍ଚ ଟଙ୍କା ସୁଝିବାକୁ ପ୍ରଥମ କେତେମାସର ଦରମା ତାକୁ ହରାଇବାକୁ ପଡୁଥିଲା । ଜଣେ ଜଣେ ଗୋରା ଅଫିସର ଏତେ ବିଳାସବ୍ୟସନରେ ଜୀବନ ଯାପନ କରୁଥିଲେ ଯେ ସେମାନଙ୍କୁ ଦରମା ଅଣ୍ଟୁ ନ ଥିଲା । ଜନ୍ ଜାକବ୍ ନାମକ ଜଣେ ସାମରିକ ଅଫିସର ୟୁରୋପୀୟାନ୍ ସେନାଧ୍ୟକ୍ଷମାନଙ୍କର ବିଳାସ ବର୍ଣ୍ଣନା କରି ଲେଖିଛନ୍ତି, "He must not go out in sunshine , he must travel in a palki instead of on horse back, he must be pankaed and tattied and God knows what else. He must have a khansama, a khidmatgar, a sirdar bearer and bearers and a host of other servants, one for his pipe, another for his umbrella, another for his bottle, another for chair etc. all to do the work of one man."(2) ଫଳରେ ହାକିମମାନଙ୍କୁ ବି ବେଳେ ବେଳେ ତଳିଆ କର୍ମଚାରୀମାନଙ୍କଠାରୁ ଧାର କରିବାକୁ ପଡୁଥିଲା ଏବଂ ସେ ଧାର ଶୁଝିବାକୁ ସେହି ତଳିଆ କର୍ମଚାରୀମାନଙ୍କୁ ଶୋଷଣ କରିବାକୁ ପଡୁଥିଲା । ଏତଦ୍‌ବ୍ୟତୀତ ୟୁରୋପୀୟାନ ଅଫିସରମାନଙ୍କର ଚରିତ୍ରହୀନତା ମଧ୍ୟ ଦାଣ୍ଡରେ ପଡ଼ି ହାଟରେ ଗଡୁଥିଲା । ବେଣ୍ଟିକ୍ ଅମଳରେ ଖର୍ଚ୍ଚକାଟ କରିବାକୁ ଯାଇ କମ୍ପାନୀ ଯେତେବେଳେ ସେମାନଙ୍କଠାରୁ କେତେକ ସୁବିଧା ସୁଯୋଗ ପ୍ରତ୍ୟାହାର କରିନେଲା, ସେତେବେଳେ ଗୋରା ଅଫିସରମାନଙ୍କ ଭିତରେ ବି ଅସନ୍ତୋଷ ସୃଷ୍ଟିହୋଇଗଲା । ଏପରିକି ସେମାନଙ୍କ ଭିତରେ ମିଟିଂହୋଇ କମ୍ପାନୀକୁ ଖୋଲା ଖୋଲି ସମାଲୋଚନା ହେଉଥିଲା ବୋଲି ସୁବେଦାର ସୀତାରାମ ତାଙ୍କର 'ସିପେଇ ଟୁ ସୁବାଦାର' ବହିରେ ଲେଖିଛନ୍ତି । ଗୋରା ସୈନ୍ୟମାନଙ୍କ ଭିତରେ ଏହି ବିଶୃଙ୍ଖଳିତ ପରିସ୍ଥିତିର ପ୍ରଭାବ ଭାରତୀୟ ସିପାହିମାନଙ୍କ ଉପରେ ନ ପଡ଼ିବାର କୌଣସି କାରଣ ନ ଥିଲା । "If mutiny by white officer was morally justified and if they found nothing wrong in seeking the support of their men in their fight for pay., could not the sepoys argue that he has greater justification when he rose in defence of a better cause his religion ?(3)

1. Sitaram- From Sepoy to Subadar- Page- 16
2. A few remarks on the Bengal Army. Page- 7.
3. Sen– Eighteen Fifty Seven- 25

## ଶୋଷଣର ପ୍ରତିଧ୍ୱନି :

କେବଳ ସେନାବାହିନୀରେ ଅସନ୍ତୋଷ କେବେହେଁ କୌଣସି ରାଷ୍ଟ୍ରରେ ସର୍ବାତ୍ମକ ବିପ୍ଳବର କାରଣ ହୋଇ ନ ପାରେ । ବିଶେଷତଃ ଭାରତବର୍ଷ ଭଳି ବିରାଟ ରାଷ୍ଟ୍ରରେ କେବଳ ସେନାବାହିନୀ ଅସନ୍ତୁଷ୍ଟ ହେଲେ ଏକ ସଫଳ ସାମରିକ ଅଭ୍ୟୁତ୍‌ଥାନ କଦାପି ସମ୍ଭବ ହୋଇପାରିବନାହିଁ । ଏହା ବର୍ତ୍ତମାନ ସର୍ବବାଦୀସମ୍ମତ ଯେ ୧୮୫୭ର ସିପାହି ବିଦ୍ରୋହ ସାଙ୍ଗକୁ ସାଧାରଣ ଜନଅସନ୍ତୋଷ ମିଶି ନ ଥିଲେ 'ମହାବିଦ୍ରୋହ' କଦାପି ସମ୍ଭବ ହୋଇ ନ ଥାନ୍ତା ଏବଂ ଏଇ ଜନଅସନ୍ତୋଷ ଯେ ସାମ୍ରାଜ୍ୟବାଦୀ ଔପନିବେଶିକ ଶୋଷଣର ଅବଶ୍ୟମ୍ଭାବୀ ପରିଣତି, ଏଥିରେ ଯୁକ୍ତିତର୍କର ଅବକାଶ ନାହିଁ ।

ଏହି ବିଦେଶୀ ଶାସନର ପ୍ରଥମ ପାହାର ପଡ଼ିଲା ଜମି ଉପରେ । ପୂର୍ବରୁ ଜମିର ମାଲିକାନା ନେଇ କିଛି ଦ୍ୱନ୍ଦ୍ୱ ନ ଥିଲା, କାରଣ ଏହାର ମାଲିକାନା ନିର୍ଦ୍ଧାରଣ କରିବାର କୌଣସି ଆବଶ୍ୟକତା ନ ଥିଲା । ଯେ ଚାଷ କରୁଥିଲା ଜମି ତା'ର । ରାଜା ବା ଶାସକ କିଛି ରାଜସ୍ୱ ନେଉଥିଲେ ମାତ୍ର । ଏହି ରାଜସ୍ୱର ପରିମାଣ ବିଭିନ୍ନ ଶାସନ ସମୟରେ ଭିନ୍ନ ଭିନ୍ନ ହେଉଥିଲେ ସୁଦ୍ଧା ଚାଷୀକୁ ତାହା ବାଧୁ ନ ଥିଲା । କିନ୍ତୁ ଇଂରେଜ ଶାସନ ଫଳରେ ଯୁଗଯୁଗର ସେହି ଆପୋଷ ବ୍ୟବସ୍ଥା ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇପଡ଼ିଲା । ୱାରେନ ହେଷ୍ଟିଙ୍ଗସ ଓ ପରେ କର୍ଣ୍ଣୱାଲିସଙ୍କର ଚିରସ୍ଥାୟୀ ବନ୍ଦୋବସ୍ତ ନୀତି ଫଳରେ ଜମିଜମା ବ୍ୟବସ୍ଥା ଓଲଟପାଲଟ ହୋଇଗଲା । ବିଶେଷତଃ ଜମିଦାରୀ ନିଲାମ ବ୍ୟବସ୍ଥା ପ୍ରବର୍ତ୍ତନ ପରେ ଚାଷୀର ଦୁରବସ୍ଥା ଚରମସୀମାରେ ପହଞ୍ଚିଲା । କମ୍ପାନୀର କ୍ରମବର୍ଦ୍ଧମାନ ରାଜସ୍ୱ ଦାବି ଜମିଦାରମାନଙ୍କର ଯାହା କ୍ଷତି କରୁ ନ କରୁ ଚାଷୀକୁ ଶେଷକରିଦେଲା । କାରଣ ଶେଷ ସୁଦ୍ଧା ସେହିମାନେହିଁ ଏହି ଶୋଷଣର ଶିକାର ହେଲେ । "The revolution in property relations was a fact of great consequences of the country. It led to the emergence of new social classes.(1) The rich landlords who looked upon the land as their private property to be used for the maximum monetary return and(2) the dispossessed cultivators who were left with nothing but their labour to sell to earn their livilhood. (3) ବମ୍ବେ ଓ ମାନ୍ଦ୍ରାଜରେ ରଇତୱାରୀ ବ୍ୟବସ୍ଥା ଦକ୍ଷିଣ ଓ ପଶ୍ଚିମ ଭାରତରେ ମଧ୍ୟ ଘୋର ବିପର୍ଯ୍ୟୟ ସୃଷ୍ଟି କରିଥିଲା । "It is disheartening to contemplate and yet it would be weakness to conceal the fact that this antagonism of classes and degradation of the people, which is fast spreading over the land is the work of our laws and our rule." (3)

---

1. Tarachand's Histroy of the Freedom Movement in India- Vol-1. Pg- 296.
2. Captain Wingate's report to the courts of Sadar Dewani Adalat
3. Karl Marx– The British Rule in India ( Marx- Engles Selected Works Vol-1. Page- 317.

ଏହିସବୁ ଆଇନ ବା ବ୍ୟବସ୍ଥାର ମୂଳ ଲକ୍ଷ୍ୟ ଥିଲା ଭାରତକୁ ସର୍ବାଧିକ ଶୋଷଣ କରି ଇଂଲଣ୍ଡକୁ ସର୍ବାଧିକ ସମୃଦ୍ଧ କରିବା । ଫଳରେ ଜମିଚ୍ୟୁତ ଚାଷୀ, ଗ୍ରାମ୍ୟଶିଳ୍ପୀ– ଗ୍ରାମ୍ୟଜୀବନର ସ୍ୱୟଂଭରତା ଲୋପପାଇବା ଯୋଗୁଁ ଛିନ୍ନମୂଳ ହୋଇଗଲେ ଏବଂ ଯୁଗଯୁଗର ପାରସ୍ପରିକ ସହଯୋଗ ସ୍ଥାନରେ ପ୍ରତିଯୋଗିତାମୂଳକ ଆର୍ଥିକ ବ୍ୟବସ୍ଥା ପ୍ରବେଶ କରିବାରୁ ଏହି ଶ୍ରେଣୀ କ୍ରମେ ଭୂମିହୀନ ଶ୍ରମିକ ଗୋଷ୍ଠୀରେ ପରିଣତ ହେଲେ । ସେମାନଙ୍କୁ ଆଧୁନିକ ପରିଭାଷାରେ ସର୍ବହରା ବା Proletariat କହିଲେ ଅତ୍ୟୁକ୍ତି ହେବ ନାହିଁ । କାର୍ଲମାର୍କ୍ସଙ୍କ ଭାଷାରେ,(1) "In India it was the change in the property relation which caused the social revolution." (ସଂପତ୍ତି ସଂବନ୍ଧରେ ପରିବର୍ତ୍ତନ ହିଁ ଭାରତରେ ସାମାଜିକ ବିପ୍ଳବର କାରଣ ହେଲା ।) ଜମି-ଜମା ବ୍ୟବସ୍ଥା ଓ ମାଲିକାନାର ପରିବର୍ତ୍ତନ ଫଳରେ ଏ ଯେଉଁ ଭୂମିହୀନ ଶ୍ରମିକଶ୍ରେଣୀ ସୃଷ୍ଟିହେଲେ ସେମାନଙ୍କ ସଂଖ୍ୟା ଆଜି ବି ଏଭଳି ଦ୍ରୁତଗତିରେ ବଢ଼ିଚାଲିଛି ଯେ, ଯେକୌଣସି ସଶସ୍ତ୍ର ବିପ୍ଳବ ପାଇଁ ସେହିମାନେ ହିଁ ସବୁଠାରୁ ବଡ଼ କାରଣରୂପେ ଦେଖାଦେବାର ଆଶଙ୍କା ରହିଛି ।

ସ୍ୱାବଲମ୍ବନଶୀଳ ଗ୍ରାମ୍ୟ ଅର୍ଥନୀତି ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ଯୁଗଯୁଗ ଧରି ରହିଥିବା ପାରସ୍ପରିକ ବଂଧନ ମଧ୍ୟ ହେଲା ବିପର୍ଯ୍ୟସ୍ତ । ଉତ୍ପାଦନ ପ୍ରଣାଳୀ ଓ ଗ୍ରାମ୍ୟ-ଅର୍ଥନୀତିରେ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତହେଲା । କୃଷି ଉତ୍ପାଦନ ପୂର୍ବଭଳି ଗ୍ରାମାଭିମୁଖୀ ନ ହୋଇ ରପ୍ତାନୀ ଅଭିମୁଖୀ ହେଲା । ନଗଦ ଟଙ୍କା ଉପରେ ଗ୍ରାମ୍ୟଚାଷୀ ଅଧିକ ନିର୍ଭରଶୀଳ ହେବା ଫଳରେ ଅର୍ଥକରୀ ଫସଲର ଉତ୍ପାଦନ ବଢ଼ିଲା । ବୈଦେଶିକ ବାଣିଜ୍ୟର ଦ୍ୱାର ଅଧିକ ପ୍ରଶସ୍ତ ହେବାରୁ ବିଶ୍ୱବଜାରର ଚଢ଼ାଉତାର ଦ୍ୱାରା ସୁଦୂର ଭାରତୀୟ ଗ୍ରାମର କୃଷି ଅର୍ଥନୀତି ମଧ୍ୟ ପ୍ରଭାବିତ ହେଲା । ସେଥିରେ ପୁଣି ଏକ ଦିଗରେ କ୍ରମବର୍ଦ୍ଧମାନ ଭୂରାଜସ୍ୱ ଏବଂ ଅନ୍ୟ ଦିଗରେ କୃଷିଜାତ ଦ୍ରବ୍ୟର ମୂଲ୍ୟ ଉପରେ କମ୍ପାନୀର ସ୍ୱେଚ୍ଛାଚାରୀ ନିୟନ୍ତ୍ରଣ ଭାରତୀୟ କୃଷକକୁ ବିଦେଶୀମାନଙ୍କ ଦୟା ଉପରେ ଅଧିକରୁ ଅଧିକ ନିର୍ଭରଶୀଳ କଲା । ଫଳରେ ଚାଷୀ ହେଲା ଦିନକୁ ଦିନ ଗରିବ ଓ ମଧ୍ୟବର୍ତ୍ତୀ ଦଲାଲ ଶ୍ରେଣୀ ଚାଷୀକୁ ଶୋଷଣ କରି ଅଧିକ ପୁଷ୍ଟ ହେଲେ । ତେଣେ ପୁଣି ଦୁର୍ଗମ ଗାଁଗହଳକୁ ବିଦେଶୀମାନଙ୍କର ବାଟ ଫିଟିଯିବାରୁ ଗ୍ରାମ୍ୟଶିଳ୍ପୀ ବିଶେଷତଃ କୁଟୀରଶିଳ୍ପୀ ଉଚ୍ଛନ୍ନ ହୋଇଗଲା । ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଇଂରେଜମାନେ ଭାରତର ବୟନଶିଳ୍ପର ବିକାଶ ପାଇଁ ଚେଷ୍ଟାକରିଥିଲେ; କାରଣ ଭାରତୀୟ ସୂକ୍ଷ୍ମ ବସ୍ତ୍ରଶିଳ୍ପ ଇଂଲଣ୍ଡ ଓ ୟୁରୋପରେ ଏତେ ଲୋକପ୍ରିୟ ହୋଇଥିଲା ଯେ କମ୍ପାନୀ ଏହି ସୂକ୍ଷ୍ମବସ୍ତ୍ର ବହୁପରିମାଣରେ ରପ୍ତାନୀ କରି ପ୍ରଚୁର ଲାଭକରୁଥିଲେ ।

1. Karl Marx– The British Rule in India ( Marx- Engles Selected Works Vol-1. Page- 317.

ପରିସ୍ଥିତି ଏତେଦୂର ଯାଇଥିଲା ଯେ ଏହା ଫଳରେ ଇଂଲଣ୍ଡର ବସ୍ତ୍ରଶିଳ୍ପ ମଧ୍ୟ ବିପତ୍ତିର ସମ୍ମୁଖୀନ ହେଲା ଏବଂ ହଜାର ହଜାର ବସ୍ତ୍ରଶିଳ୍ପୀ ବେକାର ହେଲେ । ଭାରତୀୟ ବସ୍ତ୍ରର ଏହି ଲୋକପ୍ରିୟତାକୁ ବ୍ୟଙ୍ଗକରି ଜନୈକ ବ୍ରିଟିଶ୍ ଅର୍ଥନୀତିବିଦ୍ ଲେଖିଥିଲେ, "Almost everything that used to be made of wool or silk relating either to dress of the women or furnitures of our houses was supplied by the Indian trade." (1) ''ସ୍ତ୍ରୀଲୋକମାନଙ୍କର ପୋଷାକଠାରୁ ଆରମ୍ଭ କରି ଆମ ଆସବାବ ପର୍ଯ୍ୟନ୍ତ ସିଲ୍କ ବା ପଶମ ନିର୍ମିତ ପ୍ରତ୍ୟେକ ପଦାର୍ଥ ଭାରତୀୟ ବାଣିଜ୍ୟ ଯୋଗାଇଦେଉଛି ।''

ଏହା ଫଳରେ ଅଷ୍ଟାଦଶ ଶତାବ୍ଦୀରେ ଆରମ୍ଭ ହେଲା ଭାରତୀୟ ବସ୍ତ୍ର ବିରୋଧରେ ଇଂଲଣ୍ଡରେ ଦେଶବ୍ୟାପୀ ଆନ୍ଦୋଳନ ଏବଂ ବାଧ୍ୟ ହୋଇ କମ୍ପାନୀ ଭାରତରୁ ବସ୍ତ୍ର ଆମଦାନୀ କମେଇଦେଲେ । ଅବସ୍ଥା ଏତେଦୂର ଗଲା ଯେ ଇଂଲଣ୍ଡବାଲାଙ୍କ ଫେସନ ଅନୁସାରେ ଭାରତୀୟ ବସ୍ତ୍ରକୁ ରଙ୍ଗ କରିବାକୁ ଯେଉଁ ରଙ୍ଗ କାରିଗରମାନେ ଇଂଲଣ୍ଡରୁ ଭାରତକୁ ପଠାଯାଇଥିଲେ ସେମାନଙ୍କୁ ମଧ୍ୟ ଫେରାଇ ଅଣାଗଲା । ଇଂଲଣ୍ଡର ଏହି ପରିବର୍ତ୍ତିତ ନୀତି ପ୍ରବର୍ତ୍ତନ ହେବାର କେଇବର୍ଷ ମଧ୍ୟରେ ଭାରତୀୟ ବସ୍ତ୍ରଶିଳ୍ପର ଅବନତି ଘଟିଲା । ଭାରତୀୟ ବସ୍ତ୍ରଶିଳ୍ପ ପ୍ରତି କମ୍ପାନୀର ଆଭିମୁଖ୍ୟ ବଦଳିଗଲା ଏବଂ ତିଆରି ବସ୍ତ୍ର ଆମଦାନୀ କରିବା ପରିବର୍ତ୍ତେ ଇଂଲଣ୍ଡ ଭାରତରୁ ଅଧିକ ତୁଳା ଆମଦାନୀ କରି ଇଂଲଣ୍ଡର ଲୁଗାକଳଗୁଡ଼ିକୁ ଅଧିକ ଦମ୍‌ରେ ଚଳାଇବାକୁ ସମର୍ଥ ହେଲେ । ଫଳରେ କ୍ରମେ ଭାରତର ବସ୍ତ୍ର ରପ୍ତାନିକାରୀ ଦେଶର ଭୂମିକା ଲୋପପାଇଲା ଏବଂ ସେ ହେଲା କଞ୍ଚାମାଲ ରପ୍ତାନିକାରୀ ରାଷ୍ଟ୍ର । ଏପରିକି ଭାରତୀୟ ସୂକ୍ଷ୍ମ ବସ୍ତ୍ରଶିଳ୍ପୀମାନଙ୍କର ଅଙ୍ଗୁଳି ମଧ୍ୟ କାଟିଦିଆଗଲା ଯେପରିକି ସେମାନେ ଆଉ ବିଲାତୀ ଲୁଗା ସହ ପ୍ରତିଯୋଗିତା କରିନପାରିବେ । ଭାରତରୁ କଞ୍ଚାମାଲ ବହୁପରିମାଣରେ ଇଂଲଣ୍ଡକୁ ଯିବାଫଳରେ ସେଠାରେ ଶିଳ୍ପ ବିପ୍ଳବ ସଫଳହେଲା । ଏଥିପାଇଁ ପ୍ରମାଣର କୌଣସି ଆବଶ୍ୟକତା ନାହିଁ ଯେ ପଳାସୀ ଯୁଦ୍ଧ ପରେ ଇଂଲଣ୍ଡରେ ଶିଳ୍ପସୌଧ ଭାରତର ଶୋଷଣ ଉପରେହିଁ ପ୍ରତିଷ୍ଠିତ ହେଲା । ଇଂରେଜ ଐତିହାସିକମାନେ ମଧ୍ୟ ସ୍ୱୀକାର କରିଅଛନ୍ତି ଯେ ଇଂଲଣ୍ଡର ଶିଳ୍ପ ସମୃଦ୍ଧି ଓ ଭାରତ ଅଧିକାର ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିଛି । ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତକୁ ଆଖିବୁଜା ଲୁଟ୍ କରିନଥିଲେ ଶିଳ୍ପପ୍ରଧାନ ଇଂଲଣ୍ଡ ଆଜି ସ୍ୱପ୍ନର ବସ୍ତୁ ହୋଇଥା'ନ୍ତା । "Very soon after Plassey, the Bengal plunder began to arrive in London x x x x possibly since the world began, no investment has ever yielded the profit reaped from the Indian plunder, because for nearly fifty years Great Britain stood without a competitor." (2) ଅର୍ଥାତ୍ ପଳାସୀ ଯୁଦ୍ଧରେ ପତନ ପରେ ପରେ ବଙ୍ଗଳାର ଲୁଣ୍ଠିତ ସଂପଦ

---

1. Weekly Review– London– January, 31. 1706

2. Adam Brooks– The Law of Civilisation and Decay- Pg. 25, 42, 60

ଇଂଲଣ୍ଡରେ ପହଞ୍ଚିବାକୁ ଆରମ୍ଭ କଲା x x x x ଭାରତରେ ଖଟାଯାଇଥିବା ମୂଳଧନର ଯେଉଁ ପରିମାଣରେ ଲାଭ ଇଂଲଣ୍ଡ ଲୁଣ୍ଠନ କରିପାରିଲା, ସମ୍ଭବତଃ ପୃଥିବୀ ସୃଷ୍ଟିର ଆରମ୍ଭହେବାଦିନଠାରୁ ଏଭଳି ଲାଭ ଆଉ କେହି କେଭେଁ ପାଇ ନ ଥିବ; କାରଣ ପ୍ରାୟ ପଚାଶ ବର୍ଷ ପର୍ଯ୍ୟନ୍ତ ଗ୍ରେଟ୍‌ବ୍ରିଟେନ୍‌ର କେହି ପ୍ରତିଦ୍ୱନ୍ଦୀ ନ ଥିଲେ ।) ଭାରତୀୟ ଅର୍ଥନୀତିରେ ଏ ଯେଉଁ ବିପର୍ଯ୍ୟୟ ସୃଷ୍ଟି ହେଲା, ତାହାର ପ୍ରତିକ୍ରିୟା ସ୍ୱରୂପ ଆରମ୍ଭ ହେଲା ସାମାଜିକ ଆଲୋଡ଼ନ । କାର୍ଲମାର୍କ୍ସ ଏହି ସାମାଜିକ ଆଲୋଡ଼ନକୁ ମାନବ ଜାତି ପକ୍ଷରେ ମଙ୍ଗଳଜନକ ବୋଲି ଉଲ୍ଲେଖ କଲେ । "England, it is true, in causing a social revolution in Hindustan was actuated only by the vilest interests and was stupid in her manner of enforcing them. But that is not the question. The question is, can mankind fulfil its destiny without a fundamental revolution in the social State of Asia ? If not whatever may have been the crimes of England she was the unconscious tool of history in bringing about that revolution. (1) ଅର୍ଥାତ୍ ଏହା ସତ୍ୟ ଯେ ଏହି ସାମାଜିକ ବିପ୍ଳବ ସଂଘଟିତ କଲାବେଳେ ଇଂଲଣ୍ଡ ନିଜକ ସ୍ୱାର୍ଥର ବଶବର୍ତ୍ତୀ ହୋଇଅଛି ଏବଂ ଏହି ସ୍ୱାର୍ଥକୁ ପ୍ରୟୋଗ କଲାବେଳେ ଚରମ ବୋକାମି ପ୍ରଦର୍ଶନ କରିଅଛି । କିନ୍ତୁ ଏହା ଅସଲ ପ୍ରଶ୍ନ ନୁହେଁ । ଅସଲ ପ୍ରଶ୍ନ ହେଉଛି, ମାନବ ସମାଜ ଏସିଆର ସାମାଜିକ ବ୍ୟବସ୍ଥାର ବୈପ୍ଳବିକ ପରିବର୍ତ୍ତନ ନ କରି ତା'ର ଭାଗ୍ୟ ବଦଳାଇ ପାରିବ କି ? ଯଦି ତାହା ନ ହୁଏ, ତେବେ ଇଂଲଣ୍ଡର ଯେତେ ଅପରାଧ ଥାଉନା କାହିଁକି ସେ ଏହି 'ବିପ୍ଳବ' ଆଣିବାରେ ଏକ ଅଜ୍ଞାତ ଅସ୍ତ୍ରରୂପେ ଇତିହାସରେ ଚିହ୍ନିତ ହୋଇ ରହିବ ।''

ସୁତରାଂ ଭାରତରେ ଆର୍ଥନୀତିକ ଅବସ୍ଥା ଓ ଶୋଷଣ ଫଳରେ ଏକ 'ଗଣ-ବିଦ୍ରୋହ' ନ ହୋଇ ବା ଆଉ କ'ଣ ହୋଇଥା'ନ୍ତା ?

**ଜୁଲମ ଓ ଅତ୍ୟାଚାର :**

ଭାରତୀୟ ଜନତାକୁ ଆଖିବୁଜା ଶୋଷଣ, ଅତ୍ୟଧିକ ରାଜସ୍ୱ ବୃଦ୍ଧି ଏବଂ ସେହି କର ଆଦାୟରେ ପାଶବିକ ଜୁଲମ ପ୍ରଭୃତି ସବୁ ମିଶି ମଧ୍ୟଯୁଗୀୟ ଲୁଣ୍ଠନକୁ ମଧ୍ୟ ଟପିଗଲା । ଇଂରେଜ ରାଜତ୍ୱ ପୂର୍ବରୁ ଯେ ଶୋଷଣ ହେଉ ନ ଥିଲା ତା' ନୁହେଁ, କିନ୍ତୁ ତାହା ଥିଲା କ୍ଷଣସ୍ଥାୟୀ । ସର୍ବପ୍ରଥମେ ଇଂରେଜମାନେହିଁ ଅର୍ଥନୈତିକ ଶୋଷଣକୁ ଶାସନ ବ୍ୟବସ୍ଥାର ଏକ ଅଙ୍ଗରେ ପରିଣତକଲେ । କାର୍ଲମାର୍କ୍ସଙ୍କ ଭାଷାରେ ''ଚେଙ୍ଗିଜ ଖାଁ କିମ୍ବା ନାଦିର ସାହା ପ୍ରଭୃତି ଲୁଣ୍ଠନକାରୀ ଓ ଇଂରେଜମାନଙ୍କ ଭିତରେ ପାର୍ଥକ୍ୟ ଥିଲା ଏତିକି ଯେ ସେମାନେ ଲୁଟତରାଜ କରି ନିଜ ଦେଶକୁ ଫେରି ଯାଉଥିଲେ, କିନ୍ତୁ ଇଂରେଜମାନେ ଏହି ଲୁଟକୁ ଏଠାରେ ଖାଲି ଯେ ଚିରସ୍ଥାୟୀ କଲେ ସେତିକି

1. Karl Max– The British Rule in India (Marx and Engles Selected Works- Vol-1. page- 313.

ନୁହେଁ, ଏହାକୁ ଏକ ପ୍ରଣାଳୀ ବା 'ସିଷ୍ଟମ୍'ରେ ପରିଣତ କରିଦେଲେ ।'' ଇଂରେଜୀ ଐତିହାସିକମାନେ ମଧ୍ୟ ଏହା ସ୍ୱୀକାର କରିଅଛନ୍ତି । କ୍ରମବର୍ଦ୍ଧମାନ ରାଜସ୍ୱ ଦେବାକୁ ଅସମର୍ଥ କୃଷକମାନଙ୍କଠାରୁ ବଳ ପ୍ରୟୋଗ କରିବା ଛଡ଼ା କମ୍ପାନୀର ଗତ୍ୟନ୍ତର ନ ଥିଲା, ଫଳରେ କୃଷକର ଅବସ୍ଥା ଥିଲା "Perfectly appalling prostrate physically and mentally, pressed down by destitution--exhibiting a dead lelvel of squallid pauperism, misery and starvation."(1) ଋଣଭାର ଓ ଅସହାୟତାରେ ପିଷ୍ଟ ହୋଇ ମାନସିକ ଓ ଶାରୀରିକ ଅବନତି ଥିଲା ତା'ର ଅବଶ୍ୟମ୍ଭାବୀ ପରିଣତି– ସଂପୂର୍ଣ୍ଣ ହୃଦୟବିଦାରକ ଅବସ୍ଥା ଦାରିଦ୍ର୍ୟ ଓ କପର୍ଦ୍ଦକଶୂନ୍ୟତା, ଦୁଃଖ ଓ ଅନାହାରର ମୂର୍ତ୍ତ ପ୍ରତୀକ ।

ଇଂରେଜ ଅତ୍ୟାଚାର ସଂପର୍କରେ ବିଲାତ ପାର୍ଲିଆମେଣ୍ଟ ସାକ୍ଷ୍ୟଦେଇ ମିଷ୍ଟର ଅଟଓ୍ୱେ କହିଥିଲେ, "Almost every vice and abuse flourishes in India. Your discovery of the practice of torture is no news to me. I believe it is practised in every lock-up house in Calcutta. In the Mofosil. I have personal proof of it not long ago. (2) ଭାରତବର୍ଷରେ ପ୍ରତ୍ୟେକ ପ୍ରକାର ପାପ ଏବଂ ଅବମାନନା ଚାଲିଛି । ସୁତରାଂ ଅତ୍ୟାଚାର ସଂପର୍କରେ ଆପଣଙ୍କ ଆବିଷ୍କାର ମୋ' ପକ୍ଷରେ କିଛି ନୂଆଖବର ନୁହେଁ । କଲିକତାର ପ୍ରତ୍ୟେକ ଥାନା ହାଜତରେ ଏହା ଘଟୁଛି । ମଫସଲ ଅଞ୍ଚଳରେ ଏଭଳି ଘଟଣାର ସଦ୍ୟ ବ୍ୟକ୍ତିଗତ ପ୍ରମାଣ ମୋ' ନିକଟରେ ଅଭାବ ନାହିଁ ।

'ମହାବିଦ୍ରୋହ' ପୂର୍ବରୁ କମ୍ପାନୀ କର୍ମଚାରୀମାନଙ୍କର ଅତ୍ୟାଚାର ସଂପର୍କରେ ଯେଉଁ ତଦନ୍ତ ହୋଇଥିଲା ତାହାର ରିପୋର୍ଟରେ ଅଭିଯୋଗର ସତ୍ୟତାକୁ ମୁକ୍ତକଣ୍ଠରେ ସ୍ୱୀକାର କରାଯାଇଅଛି, ''ଏହି ତଦନ୍ତ ପରେ ହାଓ୍ୱାର୍ଡ଼ ଓ ଉଇଲବରଫୋର୍ସର ଇଂଲଣ୍ଡ ଦେଶକୁ ଏହା ସ୍ୱୀକାର କରିବାକୁ ପଡ଼ିଅଛି ଯେ ଅଦ୍ୱିତୀୟ ଅସଭ୍ୟତା ସହକାରେ କଂପାନୀ କର୍ମଚାରୀମାନେ କଂପାନୀ ଅଧିକୃତ ଭାରତୀୟ ଅଞ୍ଚଳରେ ଅତ୍ୟାଚାର କରିଅଛନ୍ତି ।'' ଭାରତୀୟମାନଙ୍କ ପ୍ରତି ଘୃଣା ଓ ଅବମାନନା ଯେ ସରକାରଠାରୁ ଭାରତୀୟମାନଙ୍କୁ ଦୂରେଇ ନେଇ ଯାଇଥିଲା ଏହାର ଅସଂଖ୍ୟ ପ୍ରମାଣ ଇତିହାସରେ ରହିଅଛି । ଏଭଳି ପରିସ୍ଥିତିରେ କୌଣସି ସରକାର ତାହା ସାମ୍ରାଜ୍ୟବାଦୀ ହେଉ ବା ଗଣତାନ୍ତ୍ରିକ ହେଉ, କଦାପି ଶାସିତ ଶ୍ରେଣୀର ବିଶ୍ୱାସଭାଜନ ହୋଇପାରିବ ନାହିଁ । ସୈନ୍ୟବଳରେ ଲୋକମାନଙ୍କୁ କିଛି ଦିନ ଦବେଇ ରଖାଯାଇପାରେ କିନ୍ତୁ ସେମାନଙ୍କ ମନ କିଣିହେବ ନାହିଁ । ସେଭଳି ସରକାରକୁ ଚିରଦିନ କେହି ବରଦାସ୍ତ କରି ପାରିବ ନାହିଁ । ୧୮୧୮ରେ ସାର୍ ମନ୍‌ରୋ ଲର୍ଡ଼ ହେଷ୍ଟିଂସ୍‌ଙ୍କୁ ଲେଖିଥିଲେ, "Foreign conquerors have treated the native with violence and often with great cruelty, but

---

1. Hansaras– Parliamentary Debates- Vol– CXXXV, Col-50
2. Hansaras– Parliamentary Debates- Vol– CXXX, Col-89

none has treated them with so much scorn as we, none has stigmatized the whole people as unworthy of trust, as incapable of honesty and as fit to be employed only where we cannot do without them, It seems to be not only ungenerous but impolitic to debase the character of a people fallen under our dominion" (1) ବିଦେଶୀ ବିଜେତାଗଣ ଭାରତୀୟମାନଙ୍କ ସହ ହିଂସା ଏବଂ ନିଷ୍ଠୁରତାର ବ୍ୟବହାର ପ୍ରଦର୍ଶନ କରିଅଛନ୍ତି, କିନ୍ତୁ ଆମ ଭଳି ଘୃଣା ଓ ଅବଜ୍ଞାପୂର୍ଣ୍ଣ ବ୍ୟବହାର କରିନାହାନ୍ତି । ସେମାନଙ୍କୁ ଅବିଶ୍ୱାସ କରିବା, ସାଧୁତା ପ୍ରଦର୍ଶନରେ ସେମାନଙ୍କୁ ଅଯୋଗ୍ୟ ଭାବିବା ଏବଂ କେବଳ ଆମେ କରିପାରୁ ନ ଥିବା କାର୍ଯ୍ୟ ପାଇଁ ସେମାନଙ୍କୁ ଯୋଗ୍ୟ ମନେକରିବା, ଆମ ଭଳି ଆଉ କେହି କରିନାହାନ୍ତି । ଏହା ଆମ ପକ୍ଷରେ କେବଳ ଅନୁଦାରତା ନୁହେଁ, ଏହା ଆମ ଶାସନ ଅଧୀନରେ ଥିବା ଲୋକମାନଙ୍କ ଚରିତ୍ରକୁ ଜାଣିଶୁଣି ହୀନ ପ୍ରତିପନ୍ନ କରିବା ।

'ମହାବିଦ୍ରୋହ' ସମୟରେ ଏ ଦେଶରେ କାର୍ଯ୍ୟ କରୁଥିବା ଜନୈକ ସିଭିଲିୟାନ୍ କର୍ମଚାରୀ ମାଇକେଲ ଏଡ୍‌ୱାର୍ଡ଼ସ୍ ଭାରତୀୟମାନଙ୍କଠାରୁ କଂପାନୀ ଶାସନ କିଭଳି କ୍ରମେ ଦୂରେଇଯାଉଥିଲା ତାହାର ସୁନ୍ଦର ବର୍ଣ୍ଣନା କରିଅଛନ୍ତି ! ସେ ଲେଖିଛନ୍ତି :

"In the eighteenth century, intercourse between Indians and English was between equals, between country powers. But as the century closed the tensions that were to lead to the Mutiny of 1857 appeared on the surface. As the English became conscious of their powers they became more aloof and inaccessible, and that necessary commitant of an imperial Government; contempt for an inferior and conquered people, show more and more as a characteristic of the ruling class." (2) (ଅଷ୍ଟାଦଶ ଶତାବ୍ଦୀରେ ଭାରତୀୟ ଓ ଇଂରେଜମାନଙ୍କ ଭିତରେ ମିଳନ ଦୁଇ ସମାନ ଶକ୍ତିଶାଳୀରାଷ୍ଟ୍ର ଭିତରେ ଥିବା ମିଳନ ସଦୃଶ ଥିଲା; କିନ୍ତୁ ଶତାବ୍ଦୀ ଶେଷ ହେବା ସଙ୍ଗେ ସଙ୍ଗେ ୧୮୫୭ ବିଦ୍ରୋହର ମୁଖ୍ୟ କାରଣ ହୋଇଥିବା ଅଶାନ୍ତିଗୁଡ଼ିକ ମୁଣ୍ଡ ଟେକିଲା । ଇଂରେଜମାନେ ସେମାନଙ୍କର ଶକ୍ତି ସଂପର୍କରେ ସଚେତନ ହେବା ସଙ୍ଗେ ସଙ୍ଗେ ସେମାନେ ଉଦାସୀନ ହେବାକୁ ଲାଗିଲେ ଏବଂ ଏକ ସାମ୍ରାଜ୍ୟବାଦୀ ଶକ୍ତିର ଅହମିକା ଓ ବିଜିତ ଜାତିମାନଙ୍କ ପ୍ରତି ସେମାନଙ୍କ ଅବଜ୍ଞା ଯାହାକି ଏକ ଶାସକ ଶ୍ରେଣୀର ବିଶେଷତ୍ୱ, ତାହା ଅଧିକରୁ ଅଧିକ ପ୍ରକଟିତ ହେବାକୁ ଲାଗିଲା ।

**ଲୋଲୁପଦୃଷ୍ଟି :**

ଉର୍ବରା ଓ ଶସ୍ୟଶ୍ୟାମଳା ରାଜ୍ୟଗୁଡ଼ିକ ଉପରେ ଇଷ୍ଟଇଣ୍ଡିଆ କମ୍ପାନୀର ଲୋଲୁପ ଦୃଷ୍ଟି ଇତିହାସର ଗୋଟିଏ କଳଙ୍କିତ ଅଧ୍ୟାୟ । ରାଜା ବା ନବାବମାନଙ୍କଦ୍ୱାରା ଶାସିତ

1. K.C. Mitra– The Mutinies, the Government and the People by a Hindu- Page- 37.
2. M.E. dwards– My Indian Mutiny Diary- Page- 20

ବିଭିନ୍ନ ସ୍ୱାଧୀନ ରାଜ୍ୟଗୁଡ଼ିକୁ ଇଂରେଜ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବାକୁ ଇଂରେଜମାନେ ଆରମ୍ଭରୁ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ ଏବଂ ସୁଯୋଗ ପାଇବା ସଂଗେ ସଂଗେ କୌଣସି ନା କୌଣସି ଆଳରେ ତାହା ଦଖଲ କରିଗଲେ । ଲର୍ଡ଼ ଓ୍ୱେଲସେଲି ପ୍ରବର୍ତ୍ତିତ ରାଜ୍ୟସ୍ୱତ୍ୱ ଲୋପ ନୀତି ବା Doctrine of Lapse କମ୍ପାନୀ ହାତରେ ଏକ 'ଅମୋଘ ଅସ୍ତ୍ର'ରେ ପରିଣତ ହେଲା ।

ପ୍ରଥମ ପାହାର ପଡ଼ିଲା ମୋଗଲ ସମ୍ରାଟ ବାହଦୁର ସାହାଙ୍କ ଉପରେ । ମୋଗଲ ଓ ସମ୍ରାଟଙ୍କ ପ୍ରତି ସାରା ଭାରତର ଯେଉଁ ସମ୍ମାନ ଓ ଅନୁରକ୍ତି ଥିଲା ଇଂରେଜମାନେ ପ୍ରଥମାବସ୍ଥାରେ ତାହାର ପୂର୍ଣ୍ଣ ସୁଯୋଗ ନେଇଥିଲେ ଏବଂ ସେହି ସମ୍ମାନ ଓ ରାଜଭକ୍ତି ଉପରେ ଯେପରି କୌଣସି ଆଞ୍ଚ ନ ଆସେ ସେଥିପ୍ରତି ସେମାନେ ବିଶେଷ ଦୃଷ୍ଟି ଦେଉଥିଲେ । ସମ୍ରାଟ ଶାହା ଆଲାମଙ୍କଠାରୁ ବଙ୍ଗ, ବିହାର ଓ ଓଡ଼ିଶାର ଦେଓ୍ୱାନି ନେଲାବେଳେ କ୍ଲାଇବ୍ ତାଙ୍କ ପ୍ରତି ଯେଉଁ ଆନୁଗତ୍ୟ ପ୍ରଦର୍ଶନ କରୁଥିଲେ ତାହା ସେ ସଂପର୍କୀୟ ଏକ ଚିତ୍ରରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ମୋଗଲ ଦରବାରରୁ କମ୍ପାନୀ ନିକଟକୁ ଯେଉଁ ଚିଠି ଯାଉଥିଲା ସେଥିରେ ନବାବ ସେମାନଙ୍କୁ ସ୍ନେହର ପୁତ୍ର (beloved son) ଏବଂ ଇଂରେଜମାନେ ମଧ୍ୟ ସେମାନଙ୍କ ଚିଠିରେ ଦିଆଯାଉଥିବା ସିଲ୍‌ରେ 'ବିଶ୍ୱସ୍ତ ଭୃତ୍ୟ' (humble servant) ବୋଲି ଉଲ୍ଲେଖ କରୁଥିଲେ । ୧୮୦୩ ମସିହାରୁ ମୋଗଲ ସମ୍ରାଟ କାର୍ଯ୍ୟତଃ ଇଂରେଜମାନଙ୍କ ଅଧୀନରେ ଥିଲେ ସୁଦ୍ଧା ଏଭଳି ସମ୍ବୋଧନ ବ୍ୟବହାର କରିବାକୁ କେହି ଅସଙ୍ଗତ ମନେକରୁ ନ ଥିଲେ । ପ୍ରଥମେ ଲର୍ଡ଼ ଆମର୍ହଷ୍ଟ ଏହି ପରଂପରାରେ ପୂର୍ଣ୍ଣଚ୍ଛେଦ ପକାଇବାକୁ ଉଦ୍ୟମ କରିଥିଲେ । ମୋଗଲ ସମ୍ରାଟଙ୍କୁ କମ୍ପାନୀର କର୍ମଚାରୀମାନେ ସାକ୍ଷାତ କଲାବେଳେ ଯେଉଁ ଦର୍ଶନି (ଭେଟି) ଦେବାର ବ୍ୟବସ୍ଥା ଥିଲା ତାହା ଲର୍ଡ଼ ଆକଲାଣ୍ଡ ଅମଳରେ ବନ୍ଦକରିଦିଆଗଲା । ଭେଟି ଓ ଦରବାର କ୍ରମେ ବନ୍ଦହୋଇଗଲା । ଏପରିକି 'ସମ୍ରାଟ' ଉପାଧି ଆଉ ବ୍ୟବହାର ନ କରିବାକୁ ଏବଂ 'ଲାଲକିଲା'ରେ ବାସ ନ କରିବାକୁ ମଧ୍ୟ ବାହାଦୁର ସାହାଙ୍କୁ କମ୍ପାନୀ ତାଗିଦ କରିଦେଲା । ରସେଲଙ୍କ ଭାଷାରେ, "The position of the king was one of the most intolerable miseries long ere the Revolt broke out" (ବିଦ୍ରୋହର ବହୁ ପୂର୍ବରୁ ରାଜାଙ୍କର ସ୍ଥିତି ଅସହନୀୟ ଦୁଃଖଦାୟକ ହୋଇଯାଇଥିଲା) ପେନସନ୍ ପରିମାଣ ବଢ଼ାଇବାକୁ ବାହାଦୁର ସାହାଙ୍କର ଆବେଦନ ଅବଜ୍ଞା ସହକାରେ ପ୍ରତ୍ୟାଖ୍ୟାତ ହେଲା । ମାରକ୍ୱିସ ଅଫ୍ ଓ୍ୱେଲସଲି ଯେଉଁ ସମ୍ରାଟଙ୍କୁ ନମ୍ରତା ସହ ଲେଖିଥିଲେ, "Your Majesty and your Royal Family." ସେହି 'ମହାମାନ୍ୟ ସମ୍ରାଟ'ଙ୍କୁ 'ଅଦରକାରୀ ଏବଂ ଅନାବଶ୍ୟକ' ଅନୁଷ୍ଠାନ ବୋଲି ଇଷ୍ଟଇଣ୍ଡିଆ କମ୍ପାନୀର ଡାଇରେକ୍ଟରମାନେ ଉଲ୍ଲେଖ କରିବାକୁ ଛାଡ଼ିଲେନାହିଁ । 'ସମ୍ରାଟ' ପଦବୀକୁ ସଂପୂର୍ଣ୍ଣ ଲୋପ କରିବାକୁ କମ୍ପାନୀ କେବଳ ଅପେକ୍ଷା କରିଥିଲା ବାହାଦୁର ସାହାଙ୍କର ମୃତ୍ୟୁ ପର୍ଯ୍ୟନ୍ତ, କାରଣ ତାଙ୍କର କେହି ଉତ୍ତରାଧିକାରୀ ନ ଥିଲେ ।

ଅଯୋଧ୍ୟା ଦଖଲ ଆହୁରି ଏକ ମର୍ମାନ୍ତିକ ଘଟଣା । ୧୭୬୪ର ବକ୍‌ସାର ଯୁଦ୍ଧ ସମୟରୁ ଅଯୋଧ୍ୟା ନବାବଙ୍କ ଉପରେ କମ୍ପାନୀର କ୍ରମାଗତ ଚାପ ପଡୁଥିଲା । ନବାବ ସୁଜାଉଦ୍ଦୁଲା ଓ ତାଙ୍କ ପରେ ନବାବ ସାଦତ୍ ଅଲ୍ଲୀ ଖାଁଙ୍କ ଉପରେ ଯାବତୀୟ ଅନ୍ୟାୟ ପ୍ରଭାବ ପକାଗଲା ଏବଂ ଇଂରେଜ ସେନାବାହିନୀଙ୍କ ଖର୍ଚ୍ଚ ପାଇଁ ସାଦତ ଅଲ୍ଲୀଙ୍କୁ ବାର୍ଷିକ ଛସ୍ତରି ଲକ୍ଷ ଟଙ୍କା ଦେବାକୁ ପଡ଼ିଲା । ତାଙ୍କର ଉତ୍ତରାଧିକାରୀ ଘାଜିଉଦ୍ଦିନ ହାଇଦରଙ୍କଠାରୁ ଲର୍ଡ୍ ହେଷ୍ଟିଙ୍ଗ୍‌ସ ନେପାଳ ଯୁଦ୍ଧ ପାଇଁ ୩୫ ଲକ୍ଷ ଟଙ୍କା ଋଣ ଆଦାୟ କଲେ । ଏହିଭଳି ଭାବରେ ନାସିରୁଦ୍ଦିନ, ମହମ୍ମଦ ଅଲ୍ଲୀ ସାହା, ଅମଜାଦ ଅଲ୍ଲୀ ପ୍ରଭୃତି ନବାବ ଥିବା ସମୟରେ ଅଯୋଧ୍ୟା ଉପରେ କମ୍ପାନୀର ଚାପ ବଢ଼ିବାକୁ ଲାଗିଲା । ଲର୍ଡ୍ ଡେଲହାଉସି ଏହି ଚାପକୁ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚାଇଦେଲେ । ୱାଜିଦ୍ ଅଲ୍ଲୀଙ୍କୁ ଗାଦିଚ୍ୟୁତ କରାଯାଇ ଅଯୋଧ୍ୟାକୁ ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରାଗଲା । ଏହି ଅନ୍ତର୍ଭୁକ୍ତି ପଛରେ କମ୍ପାନୀର ଯାହା ଯୁକ୍ତି ଥାଉନା କାହିଁକି ତାହା ଭାରତୀୟମାନଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । "But that measure itself made a very bad impression on the minds of the people of India, is not to be doubted. (1) (ଏହି ପଦକ୍ଷେପ ଯେ ଭାରତୀୟମାନଙ୍କ ଉପରେ ବଡ଼ ଖରାପ ପ୍ରତିକ୍ରିୟା ସୃଷ୍ଟିକଲା, ଏଥିରେ ସନ୍ଦେହର ଅବକାଶ ନାହିଁ ।) ଏହି ଅସନ୍ତୋଷ ଯେ ଅଯୋଧ୍ୟାରେ ଅବସ୍ଥାପିତ ସିପାହିମାନଙ୍କୁ ମିରଟ ବିଦ୍ରୋହର ମାତ୍ର ଚାରିଦିନ ପରେ (୭ ମଇ ୧୮୫୭) ବିଦ୍ରୋହୀ କରିଥିଲା, ଏହା ଅନସ୍ୱୀକାର୍ଯ୍ୟ ।

ଊନବିଂଶ ଶତାବ୍ଦୀର ପ୍ରଥମ ତିନି ଦଶକ ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳରେ ଦ୍ରୁତଗତିରେ ବଢୁଥିବା ରୁଷିୟାର ପ୍ରଭାବ ଇଂରେଜମାନଙ୍କୁ ବଡ଼ ବିବ୍ରତ କରିଥିଲା । ଇରାନ୍‌ର ପରାଜୟ ଏବଂ ଆଫଗାନିସ୍ଥାନ ଉପରେ ତାହାର ଦାବି ଫଳରେ ରୁଷିୟା ଆଡୁ ବିପଦ ଇଂରେଜ ସାମ୍ରାଜ୍ୟର ସୀମା ପର୍ଯ୍ୟନ୍ତ ମାଡ଼ିଆସିଲା ବୋଲି ଇଂରେଜମାନେ ଅନୁଭବ କଲେ । ତେଣୁ ପଂଜାବକୁ ଯେକୌଣସିମତେ ହାତପଇଠ କରିବା ଆବଶ୍ୟକ ବୋଲି ସେମାନେ ପ୍ରାୟ ସ୍ଥିର କରି ସାରିଥିଲେ । ରାଜା ରଣଜିତ ସିଂହଙ୍କ ମୃତ୍ୟୁ ପରେ ପଂଜାବରେ ଯେଉଁ ଅନ୍ତଃର୍ଯୁଦ୍ଧ ହେଲା ତାହାର ସୁଯୋଗ ନେଇ ଇଂରେଜମାନେ ପଂଜାବକୁ ଦଖଲକଲେ । ଏହାଫଳରେ ପ୍ରାୟ ପଚାଶ ହଜାର ବର୍ଗମାଇଲ ଅଂଚଳର ଏକ ଉର୍ବର ରାଜ୍ୟ ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଏହି ପରାଜୟର ଗ୍ଳାନି ଶିଖମାନଙ୍କୁ ଯେତେ ବାଧି ନ ଥିଲା ତାହା ଅପେକ୍ଷା ବେଶୀ ବାଧିଲା ଇଂରେଜମାନଙ୍କର ଔଦ୍ଧତ୍ୟ । ରାଜା ରଣଜିତ୍ ସିଂଙ୍କ ପୁଅ ଦିଲପ୍ ସିଂଙ୍କୁ ଯେ ଇଂଲଣ୍ଡକୁ ନିର୍ବାସିତ କରାଗଲା ସେତିକି ନୁହେଁ ତାଙ୍କୁ ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ କରାଗଲା । ଲାହୋର ରାଜଦରବାରର ଯାବତୀୟ ମୂଲ୍ୟବାନ୍ ସଂପଦକୁ ନିଲାମକରିଦିଆଗଲା । ପ୍ରସିଦ୍ଧ କୋହିନୂର ହୀରାକୁ ପଠାଇଦିଆଗଲା ଇଂଲଣ୍ଡ ରାଣୀଙ୍କ ମୁକୁଟ ଅଲଙ୍କୃତ କରିବା ପାଇଁ । ଏପରିକି ଲର୍ଡ୍

1 KAY & MALLESON– History of Indian Mutiny Vol- 1 Page- 110

ଡେଲହାଉସି ଅମୃତସର ଗସ୍ତ କଲାବେଳେ ଶିଖମାନଙ୍କର ପବିତ୍ର ଧର୍ମମନ୍ଦିର 'ସ୍ୱର୍ଣ୍ଣମନ୍ଦିର' ପ୍ରାଙ୍ଗଣରେ ଜୋତା ପିନ୍ଧି ବୁଲିବାକୁ ଛାଡ଼ିଲେ ନାହିଁ। ଏସବୁ ମିଶି ଶିଖମାନଙ୍କ ଅସନ୍ତୋଷ ନିଆଁରେ ଘୃତ ବର୍ଷଣକଲା ।

ନାଗପୁର ଦଖଲ ମଧ୍ୟ ଜନଅସନ୍ତୋଷର ଆଉ ଏକ ପ୍ରଧାନ କାରଣ ବୋଲି କୁହାଯାଇପାରେ । କର୍ଣ୍ଣେଲ ଲୋ ଏବଂ ଉଇଲିୟମ୍ ମାନ୍‌ସେଲଙ୍କର ବାରମ୍ବାର ସତର୍କବାଣୀ ସତ୍ତ୍ୱେ ଡେଲହାଉସି ନାଗପୁରକୁ ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । ଯଦିଓ ଲର୍ଡ଼ ଡେଲହାଉସି ଏହାକୁ kind and generous sentiment 'ଦୟା ଏବଂ ଉଦାର ମନୋଭାବ' ବୋଲି ବୁଝାଇବାକୁ ଚେଷ୍ଟା କରିଅଛନ୍ତି ତଥାପି ନାଗପୁର ଦଖଲ "ଆମ୍ଭଙ୍କୁ ୮୦ ହଜାର ବର୍ଗମାଇଲ ରାଜ୍ୟ, ବାର୍ଷିକ ଚାଳିଶ ଲକ୍ଷ ଟଙ୍କା ଆୟ ଏବଂ ୪୦ ଲକ୍ଷ ଅଧିବାସୀ ଆଣିଦେବ" ବୋଲି ସେ କଂପାନୀକୁ ଗୁପ୍ତ ରିପୋର୍ଟରେ ଉଲ୍ଲେଖ କରିଥିଲେ । ନାଗପୁରର କୃଷ୍ଣକାର୍ପାସ ମୃତ୍ତିକା ଉପରେ ଇଂରେଜମାନଙ୍କ ଲୋଲୁପ ଦୃଷ୍ଟି ଯେ ନାଗପୁର ଦଖଲର ମୁଖ୍ୟ କାରଣ ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।

ସିନ୍ଧୁ ପ୍ରଦେଶ ଦଖଲ ରାଜନୈତିକ ଭଣ୍ଡତା ଓ ସାମ୍ରାଜ୍ୟବାଦୀ ଔଦ୍ଧତ୍ୟର ଚରମ ପରିଚୟ ଦିଏ । ଜେନେରାଲ୍ ସାର୍ ଚାର୍ଲସ୍ ନାପିଅରଙ୍କ ଭାଷାରେ, "We have no right to seize Sind, Yet we shall do it, and a very advantageous useful humane piece of rascality it will be." (ସିନ୍ଧୁ ପ୍ରଦେଶ ଦଖଲ କରିବାକୁ ଆମର କୌଣସି ଅଧିକାର ନାହିଁ, ତଥାପି ଆମେ ଏହା ଦଖଲ କରିବୁ । ଏହା ଏକ 'ସୁବିଧାଜନକ', 'ନିହାତି ଆବଶ୍ୟକ' ଏବଂ 'ଚରମ ବଦମାସୀ 'ମାନବୀୟ କାର୍ଯ୍ୟ') । ସିନ୍ଧୁ ପ୍ରଦେଶର ଅମୀରଙ୍କ ବିରୋଧରେ କେତେଗୁଡ଼ିଏ ଜାଲ୍ ଚିଠିଦ୍ୱାରା ଅବାନ୍ତର ଅଭିଯୋଗ କରାଯାଇ ଏହାକୁ ଯେଉଁଭଳି ଭାବରେ ଦଖଲକରାଗଲା ତାହା ଦେଖି ଭାରତୀୟମାନଙ୍କ ମନରେ କୌଣସି ସନ୍ଦେହ ରହିଲା ନାହିଁ ଯେ ଛଳେ-ବଳେ-କୌଶଳେ ସମଗ୍ର ଭାରତକୁ କୁକ୍ଷିଗତ କରିବା ଇଂରେଜମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ।

ରାଜ୍ୟସ୍ୱତ୍ୱ ଲୋପ ନୀତି ଫଳରେ ସତାରା, ରାଇଚୁର, ଲାଲ୍‌ଦୁର୍ଗ, କର୍ଣ୍ଣାଟକ, ତାଞ୍ଜୋର, ଝାନ୍‌ସି, କାରଉଲି ଏବଂ ସମ୍ବଲପୁର ପ୍ରଭୃତି ଛୋଟ ଛୋଟ ରାଜ୍ୟ ଇଂରେଜ ଶାସନର ଅନ୍ତର୍ଭୁକ୍ତ ହୋଇଯିବାରୁ ଭାରତୀୟମାନଙ୍କର ଧୈର୍ଯ୍ୟ ଶେଷ ସୀମାରେ ପହଞ୍ଚିଗଲା । ସତାରା, ଝାନ୍‌ସି ଓ ତାଂଜୋର ରାଜସିଂହାସନର କେହି ଉତ୍ତରାଧିକାରୀ ଜନ୍ମ ହୋଇ ନ ଥିବାରୁ ଉପରୋକ୍ତ ରାଜ୍ୟ ଲୋଲୁପ ନୀତି ସେମାନଙ୍କ ଉପରେ ନିର୍ମମଭାବେ ପ୍ରୟୋଗ କରାଗଲା କେବଳ ସେତିକି ନୁହେଁ, ଅଧିକୃତ ରାଜ୍ୟଗୁଡ଼ିକର ଦରବାର ସଂପତ୍ତି ମଧ୍ୟ ପ୍ରକାଶ୍ୟ ନିଲାମ କରାଯିବାରୁ ପଦଚ୍ୟୁତ ରାଜବଂଶ ହୃଦୟରେ ଲାଗିଲା ଘୋର ଆଘାତ । ଐତିହାସିକ କେ' ନାଗପୁର ରାଜସଂପତ୍ତି ନିଲାମ ସଂପର୍କରେ ଲେଖିଅଛନ୍ତି, "And I have heard it said that these seizures, these

sales, created a worse impression not only in Berar but in the surrounding provinces than the seizure of the kingdom itself." (1) (ଲୋକେ ଏହା କହିଥିବାର ମୁଁ ଶୁଣିଛି ଯେ ସଂପତ୍ତିଗୁଡ଼ିକୁ ଏହିପରି ଜବଦ୍ କରିବା ଏବଂ ବିକ୍ରୟ କରିବା କେବଳ ବେରାର ନୁହେଁ, ତା'ର ଆଖପାଖ ପ୍ରଦେଶଗୁଡ଼ିକରେ ମଧ୍ୟ ରାଜ୍ୟଦଖଲ ଅପେକ୍ଷା ଅଧିକ ଖରାପ ଧାରଣା ସୃଷ୍ଟି କଲା ।)

**ବାରୁଦଗଦାରେ ନିଆଁ :**

ମହାରାଷ୍ଟ୍ରଠୁଁ ଆସାମ ଓ ପଂଜାବଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ସାରା ଭାରତ ଯେତେବେଳେ ରାଜନୈତିକ, ସାମାଜିକ, ଅର୍ଥନୈତିକ କାରଣରୁ ଏକ ବାରୁଦଗଦାରେ ପରିଣତ ହୋଇ ରହିଥିଲା, ସେତେବେଳେ ସେହି ବାରୁଦଗଦାରେ ଅଗ୍ନିସଂଯୋଗ କଲା ସେହି କୁଖ୍ୟାତ ଏନଫିଲଡ୍ ବଂଧୁକର ଚର୍ବିଗୋଳା ଗୁଳି । ଆଜିଯାଏ ଯଦିଓ କେତେକ ଇଂରେଜ ଐତିହାସିକ ଏବଂ ସେମାନଙ୍କ ଦେଖାଦେଖି ଭାରତୀୟ ଐତିହାସିକମାନେ ଏହି ତଥାକଥିତ ଗୁଳିକୁ 'ମହାବିଦ୍ରୋହ'ର ପ୍ରଧାନ କାରଣ ବୋଲି କହିଆସିଅଛନ୍ତି, ଏହାକୁ ଖୁବ୍ ବେଶୀହେଲେ ଏକ ତାତ୍କାଳିକ କାରଣ ବୋଲି କୁହାଯାଇପାରେ । କାରଣ ଭାରତର ପ୍ରାୟ ସବୁଶ୍ରେଣୀର ଲୋକମାନଙ୍କ ଭିତରେ ଶହେବର୍ଷଧରି ଇଂରେଜ ବିରୋଧରେ ଯେଉଁ ସନ୍ଦେହ ଓ ଅସନ୍ତୋଷ ପୁଂଜୀଭୂତ ହୋଇ ରହିଥିଲା ତାହା ଏନ୍‌ଫିଲ୍ଡ ଗୁଳି ବାଟ ପଦାକୁ ବାହାରିପଡ଼ିଲା । ମାତ୍ର ପୁଂଜୀଭୂତ ଅସନ୍ତୋଷ ନ ଥିଲେ ସାମାନ୍ୟ ଗୋଟିଏ ଗୁଳି 'ମହାବିଦ୍ରୋହ' ସୃଷ୍ଟିର କାରଣ ହୋଇପାରି ନ ଥାନ୍ତା । ତଥାପି ଏନ୍‌ଫିଲ୍ଡ ରାଇଫେଲ୍‌ର ଗୁଳି ଏଭଳି ଇତିହାସପ୍ରସିଦ୍ଧ ହୋଇଯାଇଅଛି ଯେ ମହାବିଦ୍ରୋହରେ ତାହାର କୌତୂହଳପୂର୍ଣ୍ଣ ଭୂମିକାର ସମ୍ୟକ୍ ଆଲୋଚନା ଏଠାରେ ବୋଧହୁଏ ଅବାନ୍ତର ହେବ ନାହିଁ ।

ଏହି ନୂଆ ରାଇଫେଲ ପ୍ରଥମେ ବ୍ୟବହୃତ ହୁଏ ୧୮୫୩ରେ କ୍ରିମିୟା ଯୁଦ୍ଧରେ ଏବଂ ୧୮୫୬ରେ ଏହା ଭାରତରେ ସିପାହିମାନଙ୍କ ବ୍ୟବହାର ପାଇଁ ସୁପାରିସ୍ ହୁଏ । ତା'ପରେ କଲିକତାର ଦମ୍‌ଦମ୍ ଅସ୍ତ୍ରକାରଖାନାରେ ଏହାର ତିଆରି ଆରମ୍ଭ ହେଲା । ଯାହାହେଉ ହଠାତ୍ ସିପାହିମାନେ କୌଣସି ସୂତ୍ରରୁ ଖବରପାଇଲେ ଯେ ଏନ୍‌ଫିଲ୍ଡ ରାଇଫେଲ୍ ଗୁଳିରେ ଯେଉଁ ଗ୍ରିଜ୍ (Grease) ବୋଳାଯାଇଅଛି ତାହା ଆପତ୍ତିଜନକ ଚର୍ବିରେ ପ୍ରସ୍ତୁତ । ରାଇଫେଲ ଭିତରେ ଗୁଳିକୁ ପୂରାଇବା ସହଜ କରିବା ସକାଶେ ସାଧାରଣତଃ ସେଥିରେ ଚିକ୍କଣିଆ ଜିନିଷ ବୋଳାଯାଇଥାଏ । ଯାହାହେଉ, ଏହି ଚର୍ବି ଖବର ପଦାରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଚାରିଆଡ଼େ ଆଲୋଡ଼ନ ସୃଷ୍ଟିହେଲା । ୧୮୫୭ ଜାନୁୟାରୀ ୨୨ ରେ ପ୍ରଥମେ ସିପାହିମାନେ ଏହି ଗୁଳି ସଂପର୍କରେ ଆପତ୍ତି ଜଣାଇଥିଲେ । ଦମ୍‌ଦମ୍ ମସ୍କେଟ୍ରି ଡ଼ିପୋଟର ଏହି ସିପାହିମାନେ ଅତି ନମ୍ରତା

---

1. Kay– A Histroy of Sepoy the War Vol- 1 page 83-84

ସହକାରେ ସେମାନଙ୍କର ଅସମ୍ମତ ଜ୍ଞାପନ କରଥିଲେ । "It is clear that the first reaction among the sepoys was one of fear and not of angers." (1) (ସିପାହିମାନଙ୍କ ଭିତରେ ହୋଇଥିବା ପ୍ରଥମ ପ୍ରତିକ୍ରିୟା ଭୟରୁ ସୃଷ୍ଟିହୋଇଥିଲା, କ୍ରୋଧରୁ ନୁହେଁ ।) ଭୟର ମୁଖ୍ୟ କାରଣ ଥିଲା ଯେ ଗୁଳିରେ ବୋଳାହୋଇଥିବା ଚକଚକିଆ ଜିନିଷ ଗୋରୁ କିମ୍ବା ଘୁଷୁରିମାନଙ୍କର ଚର୍ବି । ଏହି ସଂଦେହ ଦୂର କରିବାକୁ କର୍ତ୍ତୃପକ୍ଷ ବିଶେଷ ଉଦ୍ୟମ କଲେନାହିଁ, ବରଂ ସିପାହିମାନଙ୍କର ଆପତ୍ତିକୁ ଯଦି ଗ୍ରହଣ କରାଯାଏ ତାହା ସେନାବାହିନୀର ଶୃଙ୍ଖଳା ବ୍ୟାହତ କରିବ ବୋଲି ସେମାନେ ବିଚାରକଲେ । କିନ୍ତୁ ଉପରୋକ୍ତ ଆପତ୍ତିଜନକ ଜିନିଷଟି ବାସ୍ତବରେ କି ଚର୍ବି ତାହା ଜାଣିବା ସହଜ ନ ଥିଲା । ତତ୍‌କାଳୀନ କମାଣ୍ଡର ଇନ୍ ଚିଫ୍ କଲୋନେଲ୍ କିଥୟଂକର କହିବା ଅନୁସାରେ, "I enquired at the arsenal as to the nature of the composition that had been used and found that it was precisely that which the instruction received from the court of Directors directed to be used viz. a mixture of tallow and wax." (ଅର୍ଥାତ୍ ମୁଁ ଏହି ମିଶ୍ରଣରେ କ'ଣ କ'ଣ ଅଛି ବୋଲି ଜାଣିବାକୁ ଅନୁସଂଧାନ କରିବାରୁ ଜାଣିଲି ଯେ କୋର୍ଟ ଅଫ୍ ଡିରେକ୍ଟର ଏଥିପାଇଁ ପ୍ରାଣୀଜ ଚର୍ବି ଓ ମହମର ମିଶ୍ରଣ ବ୍ୟବହାର କରିବାକୁ ଯେଉଁ ନିର୍ଦ୍ଦେଶ ଦେଇଥିଲେ, ସେ ନିର୍ଦ୍ଦେଶ ପାଳନ କରାଯାଇଛି ।) ସେତେବେଳେ କଂପାନୀ କର୍ତ୍ତୃପକ୍ଷ ଏହି ପ୍ରାଣୀଜ ଚର୍ବି ବାସ୍ତବରେ କେଉଁ ପ୍ରାଣୀର ଚର୍ବି ତାହା ପରିଷ୍କାର କରି ନ କହିଲେ ମଧ୍ୟ ଇଂଲଣ୍ଡର ପ୍ରସିଦ୍ଧ 'ଟାଇମ୍‌ସ' ପତ୍ରିକାରେ ସେହିବର୍ଷ ଫେବୃୟାରୀ ୨୩ ତାରିଖରେ ପ୍ରକାଶିତ ହୋଇଥିଲା ଯେ, "The cartridge of the new Enfield Rifle are greased at one end to make them slip readily into the barrel, the Government ordered mutton fat for the purpose. Some contractors to save a few shillings gave pigs and bullocks, (ନୂଆ ଏନ୍‌ଫିଲ୍‌ଡ ରାଇଫଲର ନଳୀ ଭିତରେ ସହଜରେ ପଶିବା ପାଇଁ ଗୁଳିର ଗୋଟିଏ ପାଖରେ ଚିକଣ ଦ୍ରବ୍ୟ ବୋଳି ଦିଆଯାଇଥାଏ । ସରକାର ଏଥିପାଇଁ ଛେଳି ଚର୍ବି ବ୍ୟବହାର କରିବାକୁ ନିର୍ଦ୍ଦେଶ ଦେଇଥିଲେ । କେତେକ କଣ୍ଟ୍ରାକ୍ଟର କେଇପଇସା ଲାଭ ଆଶାରେ ଛେଳି ଚର୍ବି ପରିବର୍ତ୍ତେ ଘୁଷୁରି ଓ ଗୋରୁ ଚର୍ବି ବ୍ୟବହାର କରିଥିଲେ ।) ଏହି ସଂବାଦଟି ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ସିପାହିମାନଙ୍କ ମନରେ ଆଉ କୌଣସି ସଂନ୍ଦେହ ରହିଲା ନାହିଁ ଯେ ସରକାର ସେମାନଙ୍କର ଧର୍ମ ନଷ୍ଟକରି ସେମାନଙ୍କୁ ଖ୍ରୀଷ୍ଟିଆନ କରିଦେବା ପାଇଁ ଏହି ଷଡ଼ଯନ୍ତ୍ର କରିଅଛନ୍ତି । କାରଣ ମୁସଲମାନମାନଙ୍କ ପକ୍ଷରେ ଘୁଷୁରି ଚର୍ବି ଓ ହିନ୍ଦୁମାନଙ୍କ ପକ୍ଷରେ ଗୋରୁଚର୍ବି ନିଷିଦ୍ଧ ଓ ଧର୍ମବିରୋଧୀ ଦ୍ରବ୍ୟ ଭାବରେ ପରିଗଣିତ ହେଉଥିଲା, ଅଥଚ ଖ୍ରୀଷ୍ଟିଆନମାନଙ୍କ ପକ୍ଷରେ ଏହା ଆପତ୍ତିଜନକ ନ ଥିଲା । ଏଠାରେ ଆଉ ଏକ ବିଷୟ ବିଶେଷ ପ୍ରଣିଧାନଯୋଗ୍ୟ ଯେ

1. Sen– Eighteen Fifty Seven- page- 41

ଏହି ତଥାକଥିତ ଆପତ୍ତିଜନକ ଚର୍ବି କର୍ତ୍ତୃପକ୍ଷଙ୍କ ଅଜ୍ଞାତସାରରେ ହୋଇଥିଲା ନା କେହି ଦୁଷ୍ଟବୁଦ୍ଧିସଂପନ୍ନ ବ୍ୟକ୍ତି କୌଣସି ଅସତ୍ ଅଭିସନ୍ଧି ରଖି ଜାଣିଶୁଣି ଏଥିରେ ଗୋରୁ ବା ଘୁଷୁରି ଚର୍ବି ବୋଳିଥିଲେ, ଏ ସଂପର୍କରେ କୌଣସି ନିର୍ଭରଯୋଗ୍ୟ ତଥ୍ୟ ମିଳିବା ମୁସ୍କିଲ; କିନ୍ତୁ କେତେକ ଆନୁଷଙ୍ଗିକ ପ୍ରମାଣକୁ ବିଶ୍ଳେଷଣ କଲେ ଦେଖାଯାଉଛି ଯେ କମ୍ପାନୀରେ ଥିବା ଯେଉଁ କେତେକ ଖ୍ରୀଷ୍ଟିଆନ୍‌ପ୍ରେମୀ ସାମରିକ ଅଫିସର ଭାରତୀୟମାନଙ୍କ ଧର୍ମ ନଷ୍ଟକରି ସେମାନଙ୍କୁ ଖ୍ରୀଷ୍ଟିଆନ କରିବାର କୁମତଲବରେ ଥିଲେ, ସେମାନଙ୍କର ଏହି 'କାର୍ତ୍ତୁଜ' ତିଆରିରେ କିଛି ହାତ ଥାଉ ବା ନ ଥାଉ ସେମାନେ ସିପାହୀମାନଙ୍କ ଭୟ ଓ ଆତଂକ ଦେଖି ଆନନ୍ଦପାଉଥିଲେ ଏବଂ ସେହି କୁଖ୍ୟାତ କାର୍ତ୍ତୁଜ୍ ଅନ୍ତତଃ କେତେକ ହିନ୍ଦୁ ବା ମୁସଲମାନମାନଙ୍କର ଧର୍ମ ନଷ୍ଟ କରିପାରିଛି ଜାଣି ଖୁସିହେଉଥିଲେ । ବାରାକ୍‌ପୁରଠାରେ ଅବସ୍ଥାପିତ କଲୋନେଲ ହୁଇଲର ଏହିଭଳି ଜଣେ ସାମରିକ ଅଫିସର ଥିଲେ । ସେ ସ୍ପଷ୍ଟ ସ୍ୱୀକାର କରିଥିଲେ ଯେ, "As to the question whether I have endeavoured to convert Sepoys and others to Chritstianity, I would humbly reply that this has been my object and I conceive is the aim and end of every Christian who speaks the word of God to another merely that the lord would make him the happy instrument of converting his neighbour or God or in other words rescuing him from eternal destruction"(1) (ସିପାହି ଓ ଅନ୍ୟମାନଙ୍କୁ ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ କରିବାକୁ ମୋର ଉଦ୍ୟମ ବିଷୟରେ ମୋର ନମ୍ର ଉତ୍ତର ଏହା ଯେ ମୋର ଏବଂ ଭଗବାନ୍‌ଙ୍କ ନାମ ସ୍ମରଣ କରୁଥିବା ପ୍ରତ୍ୟେକ ଖ୍ରୀଷ୍ଟିଆନର ଏହା ଏକ ପବିତ୍ର କର୍ତ୍ତବ୍ୟ, କାରଣ ପ୍ରତିବେଶୀକୁ ଅନ୍ୟଧର୍ମରେ ଦୀକ୍ଷିତ କରାଇବା ବା ତାକୁ ଧ୍ୱଂସମୁଖରୁ ରକ୍ଷା କରିବା ପାଇଁ ପରମପିତାଙ୍କଦ୍ୱାରା ସେ ନିର୍ଦ୍ଦେଶିତ) ।

ଏହିଭଳି ମନୋଭାବାପନ୍ନ ଦାୟିତ୍ୱହୀନ ସାମରିକ ଅଫିସରମାନଙ୍କ ଅଧୀନରେ ଥିବା ସମସ୍ତ ହିନ୍ଦୁ ଓ ମୁସଲମାନ ସିପାହି କେଉଁ ପରିସ୍ଥିତିରେ ପଡ଼ିଥିବେ ତାହା ସହଜେ ଅନୁମେୟ ।

ସତକୁ ସତ ସେହି ହୁଇଲର ସାହେବଙ୍କ ୩୪ ନମ୍ବର ନେଟିଭ ଇନ୍‌ଫାଣ୍ଟ୍ରି (N.I.) ରେ ହିଁ ବିଦ୍ରୋହର ପ୍ରଥମ ସ୍ଫୁଲିଙ୍ଗ ଦେଖାଦେଲା । ବାରକପୁରର ଆଖପାଖରେ ରହସ୍ୟଜନକ ଅଗ୍ନିକାଣ୍ଡ ଓ ଗୃହଦାହ ହେଲା ବିଦ୍ରୋହର ପ୍ରଥମ ସୂଚନା । ଯାହାହେଉ ୩୪ ନମ୍ବର ସହ ଯେତେବେଳେ ବହରମପୁରରେ ଥିବା ୧୯ ନମ୍ବର ଏନ୍. ଆଇ. ଯୋଗଦେଲେ ସେତେବେଳେ ଅବସ୍ଥା କ୍ରମେ ଜଟିଳ ହୋଇପଡ଼ିଲା । ହଠାତ୍ ସେଠାରେ ଏକ ଜନରବ ସୃଷ୍ଟି ହେଲା ଯେ ଯେଉଁମାନେ ଏନ୍‌ଫିଲ୍‌ଡ କାର୍ତ୍ତୁଜ୍‌କୁ ବ୍ୟବହାର କରିବାକୁ ଅସମ୍ମତ ହେବେ ସେମାନଙ୍କୁ ଚୀନ୍ କିମ୍ବା ବ୍ରହ୍ମଦେଶ ଯୁଦ୍ଧକୁ ପଠାଇଦିଆଯିବ ଯେଉଁଠାରେ ସେମାନଙ୍କୁ ନିଶ୍ଚିତ ମୃତ୍ୟୁବରଣ କରିବାକୁ ହେବ । ଏହି ପରୋକ୍ଷ ଧମକ ସିପାହିମାନଙ୍କ ସନ୍ଦେହକୁ ଆହୁରି ଦୃଢ଼ୀଭୂତ କରିଦେଲା ଏବଂ ଜାନୁୟାରୀ ମାସ ୧୯

1. Kay- A Histroy of the Sepoy War Vol- 1 480- 418 page

ତାରିଖ ସକାଳେ ଅସନ୍ତୁଷ୍ଟ ସିପାହିମାନେ ସକାଳ ପାରେଡ଼ର ବହୁପୂର୍ବରୁ ଅସ୍ତ୍ରାଗାର ଭିତରେ ପଶି କେତେକ ବନ୍ଧୁକ ନେଇଆସିଲେ । ଲାଇନ୍‌ରେ ଉତ୍ତେଜନା ଭରି ଉଠିଲା । ଯାହାହେଉ ଅବସ୍ଥା ଅଧିକ ଖରାପ ହେବା ପୂର୍ବରୁ ମିଳିତ କମାଣ୍ଡର ମିଚେଲ ସାହେବ ଅସନ୍ତୁଷ୍ଟ ସିପାହିମାନଙ୍କ ମୁହାଁମୁହିଁ ନ ହୋଇ ଚୁପ୍ ରହିଲେ । ଫଳରେ ଅନ୍ୟ କୌଣସି ଅପ୍ରୀତିକର ଘଟଣା ଘଟିଲାନାହିଁ ଏବଂ ସଂଧ୍ୟାବେଳକୁ ଉତ୍ତେଜନା କମିଗଲା ଏବଂ ସିପାହିମାନେ ବିପଦ ଆଶଙ୍କାରେ ଚୁପ୍ ରହିଗଲେ । ଏହି 'ବିଦ୍ରୋହ' ଆପାତତଃ ପ୍ରଶମିତ ହୋଇଗଲେ ସୁଦ୍ଧା ଏହାକୁ କଂପାନୀ କର୍ତ୍ତୃପକ୍ଷ ସେମାନଙ୍କ ଶାସନ ବ୍ୟବସ୍ଥା ପ୍ରତି ପ୍ରତ୍ୟକ୍ଷ ଅବମାନନା ବୋଲି ବିବେଚନା କଲେ ଏବଂ ସିପାହିମାନଙ୍କୁ 'ଶିକ୍ଷା' ଦେବାକୁ ଦୃଢ଼ସଂକଳ୍ପ ହେଲେ ଏବଂ ଅଳ୍ପ ଦିନ ଭିତରେ ଅନୁରକ୍ତ ୮୪ ନମ୍ବର ରେଜିମେଣ୍ଟ ସାହାଯ୍ୟରେ ବିଦ୍ରୋହୀ ରେଜିମେଣ୍ଟକୁ ଜବଦ କରିବା ଉଦ୍ଦେଶ୍ୟରେ ସମସ୍ତ ସିପାହିଙ୍କୁ ବରଖାସ୍ତ କରିଦିଆଗଲା· ଏବଂ ୧୯ ନମ୍ବର ରେଜିମେଣ୍ଟକୁ ସଂପୂର୍ଣ୍ଣ ଭାଙ୍ଗି ଦିଆଗଲା । କିନ୍ତୁ ଏହାର ପ୍ରତିକ୍ରିୟା ସଚରାଚର ଯାହା ହୋଇଥାଏ ତାହାହିଁ ହେଲା । ବରଖାସ୍ତ ସିପାହିମାନେ ଘରକୁ ଫେରିବା ବାଟରେ ସେମାନଙ୍କ ଧର୍ମ ଉପରେ ହେଉଥିବା ହସ୍ତକ୍ଷେପ ଏବଂ ତା'ର ପ୍ରତିବାଦ କରିବାକୁ ଯାଇ ସେମାନଙ୍କ ଦୁରବସ୍ଥା ପ୍ରଚାରକଲେ । ଏହାଦ୍ୱାରା ସେମାନେ ସାଧାରଣ ଲୋକଙ୍କ ସହାନୁଭୂତି ଅର୍ଜନ କରିବା ସଙ୍ଗେ ସଙ୍ଗେ ଗାଁଗହଳରେ ସରକାର ପ୍ରତି ଅସନ୍ତୋଷ ବଢ଼ିବାକୁ ଲାଗିଲା । ସାରା ଦେଶ ସେତେବେଳେ ଯେଉଁ ବାରୁଦଗଦା ଉପରେ ବସିଥିଲା ୧୯ ନମ୍ବର ନେଟିଭ୍ ଇନ୍‌ଫାଣ୍ଟ୍ରିର ବରଖାସ୍ତ ସେଥିରେ ଅଗ୍ନିସଂଯୋଗକଲା ।

ବହରମପୁରର ଘଟଣା ଘଟିଲା ୨୬ ତାରିଖ ଫେବୃୟାରୀରେ । କିନ୍ତୁ 'ମହାବିଦ୍ରୋହ'ର ପ୍ରଥମ ଗୁଳି ଫୁଟିଲା ମାର୍ଚ୍ଚ ୨୯ ତାରିଖରେ କୁଖ୍ୟାତ ହୁଇଲର୍ ସାହେବଙ୍କ ୩୪ ନମ୍ବର ରେଜିମେଣ୍ଟରେ । ସେଦିନ ହିନ୍ଦୁ ସିପାହି ମଙ୍ଗଳ ପାଣ୍ଡେ ଭୀଷଣ ଚିନ୍ତିତ "କ'ଣ ଏମିତି ଚାହୁଁ ଚାହୁଁ ଫିରିଙ୍ଗୀ ଆମର ଧର୍ମ ନେଇଯିବ ? ଆମକୁ ସବୁ ଖୀରସ୍ତାନ ହେବାକୁ ପଡ଼ିବ ? ଏହାର କ'ଣ ପ୍ରତିକାର ନାହିଁ ? ଭାବିଭାବି କିଛି କୂଳକିନାରା ପାଆନ୍ତି ନାହିଁ ମଙ୍ଗଳ ପାଣ୍ଡେ । ଚାରିଆଡ଼କୁ ଅନାନ୍ତି, ଅନାନ୍ତି ସାଥୀ ସିପାହି ବ୍ରିଜମୋହନ ଆଡ଼କୁ । ଈଶ୍ୱରୀ ପାଣ୍ଡେଙ୍କ ଆଡ଼କୁ । କାହାରି ମୁହଁରୁ କିଛି କଥା ବାହାରେ ନାହିଁ । ମନେହୁଏ କୁଦାଟାଏ ମାରନ୍ତେ ସେ ବଡ଼ ସାହେବ ହୁଇଲ୍‌ର ଉପରକୁ, ତା' ଛାତି ଚିରି କଲିଜାଟା ଟାଣିଆଣନ୍ତେ । "ଏଡ଼େ ହିମ୍ମତ ତା'ର, ସେ ଆମର ଧର୍ମନଷ୍ଟ କରିବ ? ଆମେ ତୁମପାଇଁ କ'ଣ ନ କରିଛୁ ? ରାଜ୍ୟ ପରେ ରାଜ୍ୟ ଜୟକଲୁ ତୁମରି ପାଇଁ । ଘରଦ୍ୱାରର ମୋହ, ପିଲାପିଲିଙ୍କ ସ୍ନେହ ସବୁ ଛାଡ଼ି ତୁମପାଇଁ ଲଢ଼ିଲୁ । କିନ୍ତୁ ତୁମେ ଶେଷରେ ଆମ ଧର୍ମ ନେବାକୁ ବସିଲ ? ନା, ଆଉ ନୁହେଁ, "ଶୀର୍ ଦେଙ୍ଗେ ସାର୍ ନେହିଁ ଦେଙ୍ଗେ ।" ଏହାର ଫୟସଲା ଦରକାର– ଫୟସଲା ! ଫୟସଲା !!!"

ଫୟସଲା କରିଦେଲେ ମଙ୍ଗଳ ପାଣ୍ଡେ । ମାର୍ଚ୍ଚ ୨୯ ତାରିଖ ଅପରାହ୍ଣରେ ଖବର ପାଇଲେ ୩୪ ନମ୍ବର (N.I.)ର ଲେଫଟନାଣ୍ଟ ବାଗ୍ ଯେ ଜନୈକ ସିପାହି କାନ୍ଧରେ ରାଇଫେଲ ପକାଇ 'ପାଗଳ' ହୋଇଯାଇଛି । ସାହେବଙ୍କୁ ଖୁନ୍ କରିବାକୁ ସେ ବାରାକ୍‌ରେ ଚିତ୍କାର କରି ଏପଟ୍ ସେପଟ ଦୌଡୁଥିବାବେଳେ ସାମନାରେ ରେଜିମେଣ୍ଟର ସର୍ଜେଣ୍ଟ ମେଜରଙ୍କୁ ପାଇ ଗୁଳି କରି ଦେଇଛି । ଲେଫ୍‌ଟନାଣ୍ଟ ବାଗ୍ ଏ ଖବର ପାଇବା ସଙ୍ଗେସଙ୍ଗେ ବାରାକ୍ ଆଡ଼କୁ ଘୋଡ଼ା ଛୁଟାଇଲେ । କିନ୍ତୁ ପାଗଳକୁ ଜବଦ୍ କରିବା ପୂର୍ବରୁ ତା'ର ଆଉ ଗୋଟାଏ ଗୁଳି ବାଜିଲା ଘୋଡ଼ା ଉପରେ । ଘୋଡ଼ା ଓଲଟି ପଡ଼ିବା ସଙ୍ଗେ ସଙ୍ଗେ ଲେଫ୍‌ଟନାଣ୍ଟ ନିଜେ ବି ଓଲଟି ପଡ଼ିଲେ । ପଳାଇବା ଛଡ଼ା ଅନ୍ୟ ଉପାୟ ରହିଲା ନାହିଁ ତାଙ୍କର । ଭାଗ୍ୟକୁ ଆଉ ଜଣେ ସର୍ଜେଣ୍ଟ ଦଉଡ଼ି ଆସିଲେ ଲେଫ୍‌ଟନାଣ୍ଟକୁ ସାହାଯ୍ୟ କରିବା ପାଇଁ । କିନ୍ତୁ ପାଗଳ ସିପାହିଜଣକ ଉଭୟଙ୍କୁ ଆହତ କଲା । ପାଗଳ ସାଙ୍ଗରେ ଗୋରା ହାକିମମାନଙ୍କର ଏ ଖଣ୍ଡଯୁଦ୍ଧ ଦେଖିବାକୁ ସେଠାରେ ସିପାହିମାନଙ୍କର ଅଭାବ ନ ଥିଲା, କିନ୍ତୁ କେହି ଜଣେହେଲେ ପାଗଳକୁ ଜବଦ୍ କରିବାକୁ ବାହାରିଲେ ନାହିଁ ଲେଫ୍‌ଟନାଣ୍ଟଙ୍କ ନିବେଦନ ସତ୍ତ୍ୱେ । ବରଂ ଯେଉଁଜଣକ ବାହାରିଲା ସେ ଅର୍ଦ୍ଧମୃତ ସର୍ଜେଣ୍ଟ ମେଜରଙ୍କ ଠେଙ୍ଗରେ ଆଉ ଠେଙ୍ଗାଏ ଦେଇ ତାଙ୍କୁ ଶେଷକରିଦେଲା । ଉଲ୍ଲେଖ ନିଷ୍ପ୍ରୟୋଜନ ଯେ ଏ ପାଗଳ ଜଣକ ଆଉ କେହି ନୁହଁନ୍ତି – ସେ ହେଉଛନ୍ତି ମହାବିଦ୍ରୋହର ପ୍ରଥମ ବିପ୍ଳବୀ ସହୀଦ ମଙ୍ଗଳ ପାଣ୍ଡେ ।

'ମହାବିଦ୍ରୋହ'ର ପ୍ରଥମ ଶୁଭଶଙ୍ଖ ବଜାଇ ଶତ୍ରୁରକ୍ତର ତର୍ପଣ ନେବାକୁ ସତକୁ ସତ ସେ ପାଗଳ ହୋଇଯାଇଥିଲେ । ଯାହାର ବୈପ୍ଳବିକ ପାଞ୍ଚଜନ୍ୟ ଶୁଣି ତାଙ୍କ ପରେ ହଜାର ହଜାର, ଲକ୍ଷ ଲକ୍ଷ ମୁକ୍ତିସଂଗ୍ରାମୀ ପାଗଳ ହୋଇଯାଇଥିଲେ । ତାଙ୍କୁ ପାଗଳ ନ କହି କ'ଣ କୁହାଯିବ ? ଐତିହାସିକ ସୁରେନ୍ଦ୍ର ସେନ୍ ସେଥିପାଇଁ ଲେଖିଛନ୍ତି, "He ran amuck" (ସେ ପାଗଳ ହୋଇଗଲା ।)

ବିଦ୍ରୋହ ସଂବାଦ ପାଇ ଜେନେରାଲ ହେର୍ସି ଯେତେବେଳେ ବିପୁଳସଂଖ୍ୟକ ଗୋରାସୈନ୍ୟ ନେଇ ବାରାକ୍ ମଇଦାନରେ ପ୍ରବେଶକଲେ ସେତେବେଳେ ମଙ୍ଗଳ ପାଣ୍ଡେଙ୍କର ଆଉ ସନ୍ଦେହ ରହିଲା ନାହିଁ ଯେ ତାଙ୍କର ଶେଷ ସମୟ ପହଞ୍ଚିଗଲା । ଭାବିବାକୁ ଲାଗିଲେ– "ମୋ' କାମ ଶେଷହୋଇଯାଇଛି । ବହୁଦିନର ଅଭିଳାଷ ମୋର ପୂର୍ଣ୍ଣହୋଇଛି । ଯେଉଁ ରାଇଫେଲ ଜୀବନସାରା କେବଳ ଭ୍ରାତୃ ରକ୍ତରେ କଳଙ୍କିତ ହୋଇଥିଲା ତାହା ଆଜି ଶତ୍ରୁ ରକ୍ତରେ ରଂଜିତ ହେଲା । ବେଶ୍ ସେତିକି ଯଥେଷ୍ଟ । ବଂଧୁକର ନଳି ନିଜଆଡ଼କୁ ଘୂରାଇଦେଲେ ମଙ୍ଗଳ, କିନ୍ତୁ ନାଃ ହେଲା ନାହିଁ, ମରିପାରିଲେ ନାହିଁ ସେ । ସେ ଆହତ ହେଲେ ଏବଂ ଧରାହେଲେ । ମଙ୍ଗଳ ପାଣ୍ଡେଙ୍କୁ ଫାଶୀହେଲା । ମଙ୍ଗଳ ପାଣ୍ଡେ 'ମହାବିଦ୍ରୋହ'ର ପ୍ରଥମ ସହିଦ ହେବାର ଗୌରବ ଅର୍ଜନ କରି ପରମ ଆନନ୍ଦରେ ଫାଶୀ ଖୁଣ୍ଟରେ ଆରୋହଣକଲେ ।

ସେ ବର୍ଷ ମଇ ୫ ତାରିଖରେ ମଙ୍ଗଳ ପାଣ୍ଡେଙ୍କ ୩୪ ନମ୍ବର ରେଜିମେଣ୍ଟକୁ ଭାଙ୍ଗି ଦିଆଗଲା ଏବଂ ସବୁ ସିପାହିଙ୍କୁ ବିଦ୍ରୋହୀ ବୋଲି ଧରିନେଇ ସମସ୍ତଙ୍କୁ ଚାକିରିରୁ ବରଖାସ୍ତ କରିଦିଆଗଲା । କଂପାନୀର ଏହି ଅବିଚାରିତ ନିଷ୍ପତ୍ତି ବିପ୍ଳବ ପାଇଁ ସବୁଠାରୁ ବେଶୀ ଆବଶ୍ୟକ ହେଉଥିବା ଇନ୍ଧନଟି ଯୋଗାଇଦେଲା । କାରଣ ଏହା ଫଳରେ ୩୪ ନମ୍ବରରେ ଯେଉଁ କେତେଜଣ ଅନୁରକ୍ତ ସିପାହି ଥିଲେ ସେମାନେ ମଧ୍ୟ ଇଂରେଜ ଶାସନର ଶତ୍ରୁ ପାଲଟିଗଲେ । ସିପାହିମାନଙ୍କୁ ସେମାନଙ୍କ ପୋଷାକ ନେବାକୁ ଅନୁମତି ଦିଆଯାଇନଥିଲା କିନ୍ତୁ ଯେଉଁ କିଲ୍‌ମାର୍‌ନକ ଟୋପିପାଇଁ ସେମାନେ ପଇସା ଦେଇଥିଲେ, କଂପାନୀ ପ୍ରତି ସେମାନଙ୍କର ପୂର୍ବ ଅନୁରକ୍ତିର ସେହି ଶେଷ ସଂକେତକୁ ଘୃଣା ଓ ଅବଜ୍ଞା ସହକାରେ ଗୋଡ଼ରେ ଦଳି ଦେଲେ ଏବଂ ସେମାନଙ୍କ ପ୍ରତି ହୋଇଥିବା ସେହି ତଥାକଥିତ ଦଣ୍ଡକୁ ପରାଧୀନତା ଶୃଙ୍ଖଳରୁ ମୁକ୍ତି ବୋଲି ବିଚାର କରି ମୁକ୍ତ ହୃଦୟରେ ଆମର ଶତ୍ରୁପକ୍ଷରେ ଯୋଗଦେଲେ ବୋଲି ଇଂରେଜ ଐତିହାସିକ ହୋମ୍‌ସ ଲେଖିଛନ୍ତି । (1)

୧୯ ନମ୍ବର ଓ ୩୪ ନମ୍ବର ନେଟିଭ୍ ଇନ୍‌ଫାଣ୍ଟ୍ରି ଭାଙ୍ଗିଦିଆଯିବାଦ୍ୱାରା ଓ ସମସ୍ତ ସିପାହିଙ୍କୁ ବରଖାସ୍ତ କରି ଦିଆଯିବା ଖବର ଅନ୍ୟ ସିପାହିମାନଙ୍କଠାରୁ ଅଧିକ ଦିନ ଲୁଚି ରହିପାରିଲା ନାହିଁ । ଫଳରେ ଚାରିଆଡ଼େ ଅସନ୍ତୋଷ ବ୍ୟାପିଗଲା ଏବଂ ଇଂରେଜ ସରକାର ଯେ ଭାରତୀୟମାନଙ୍କର ଧର୍ମନଷ୍ଟ କରିବାକୁ ବଦ୍ଧପରିକର ଏବଂ ତା'ର ପ୍ରତିବାଦ କଲେ କଠିନ ଦଣ୍ଡ ଭୋଗ କରିବାକୁ ପଡ଼ିବ, ଏ ବିଷୟରେ ଆଉ କାହାରି ଟିକେ ହେଲେ ସନ୍ଦେହ ରହିଲା ନାହିଁ । ବିଦ୍ରୋହ ଅଗ୍ନି ପ୍ରାୟ ସମସ୍ତ ରେଜିମେଣ୍ଟ ଭିତରେ ବିଛୁଡ଼ି ହୋଇଗଲା । କର୍ଣେଲ କାରମିକେଲ୍ ସ୍ମିଥ ଥିଲେ ମିରଟରେ ଅବସ୍ଥାପିତ ୩ ନମ୍ବର ନେଟିଭ୍ କାଭାଲାରୀ ବା ଅଶ୍ୱାରୋହୀ ବାହିନୀର ସେନାପତି । ଅବଶ୍ୟ ତାଙ୍କୁ ଅଜଣା ନ ଥିଲା ଯେ ଏନ୍‌ଫିଲ୍‌ଡ କାର୍ଟ୍ରିଜ୍‌କୁ ଦାନ୍ତରେ କାମୁଡ଼ି ବ୍ୟବହାର କରିବାକୁ ତାଙ୍କର ସୈନ୍ୟମାନେ ରାଜି ନୁହନ୍ତି । ତଥାପି ଦମ୍ଭ ଓ ଅହମିକାର ବଶବର୍ତ୍ତୀ ହୋଇ ସେ ଏପ୍ରିଲ ୨୩ ତାରିଖ ଦିନ ସକାଳ ପ୍ୟାରେଡ଼ରେ ୯୦ ଜଣ ସବାର (Sowar) ସୈନ୍ୟଙ୍କୁ କୁଖ୍ୟାତ ରାଇଫେଲ ନେଇ ପ୍ୟାରେଡ଼ରେ ଯୋଗଦେବାକୁ ନିର୍ଦ୍ଦେଶଦେଲେ । ଅବଶ୍ୟ ପ୍ରଥମେ ସେ ଉକ୍ତ କାର୍ଟ୍ରିଜ ଯେ 'ନିର୍ଦ୍ଦୋଷ' ଏବଂ ଏଥିରେ କାହାରି ଧର୍ମ ନଷ୍ଟ ହେବ ନାହିଁ ବୋଲି କହି ଏକ ନାତିଦୀର୍ଘ ଭାଷଣଦେଲେ । କିନ୍ତୁ ଏହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଯେ ସୱାରମାନେ ସେକଥା ଆଉ ବିଶ୍ୱାସ କରିବାକୁ ପ୍ରସ୍ତୁତ ନ ଥିଲେ । ଏପରିକି ୧୯ ଓ ୩୪ ନମ୍ବର ଏନ୍. ଆଇ. ସେମାନଙ୍କର ସହକର୍ମୀମାନଙ୍କ ଦୁରବସ୍ଥା ଦେଖି ସୁଦ୍ଧା ସେମାନେ ଭୀତ ହେଲେ ନାହିଁ । ଫଳରେ ୫ ଜଣ ସୱାରଙ୍କ ଛଡ଼ା ଅନ୍ୟ କେହି କମାଣ୍ଡରଙ୍କର ନିର୍ଦ୍ଦେଶ ମାନିଲେ ନାହିଁ । କମାଣ୍ଡର ସ୍ମିଥ୍ ସିପାହିମାନଙ୍କର ଏହି

1. Holmes– A Histroy of the Indian Mutiny- Page- 95.

ଅବଜ୍ଞା ଓ ଦୃଢ଼ତା ଦେଖି ଅଧିକଦୂର ଆଗେଇବାକୁ ସାହସ କଲେ ନାହିଁ । ପ୍ୟାରେଡ଼ ବନ୍ଦରହିଲା, କିନ୍ତୁ ସିପାହିମାନଙ୍କର ଏହି ଅବାଧ୍ୟତାର ବିଚାର କରିବାକୁ ସଙ୍ଗେ ସଙ୍ଗେ ସାମରିକ ଅଦାଲତ ବସିଲା ଏବଂ ଏଥିରେ ବିସ୍ମିତ ହେବାର କିଛି ନାହିଁ ଯେ ସମସ୍ତ ସିପାହିଙ୍କୁ ଦଶବର୍ଷ ଲେଖାଏଁ କଠିନ କାରାଦଣ୍ଡର ଆଦେଶ ମିଳିଲା ।

ପହଞ୍ଚିଗଲା ମଇ ୯ ତାରିଖ । 'ମହାବିଦ୍ରୋହ'ର ରୋମାଞ୍ଚକର ଇତିହାସର ଏକ ରକ୍ତରଂଜିତ ପୃଷ୍ଠା । ସେଦିନ ସକାଳେ ଦଣ୍ଡିତ ସିପାହିମାନଙ୍କଠାରୁ ଅନ୍ୟ ଅନୁରକ୍ତ ସିପାହିମାନଙ୍କ ଆଗରେ ପୋଷାକପତ୍ର ଛଡ଼ାଇନିଆଯାଇ ହାତକଡ଼ି ଓ ଗୋଡ଼କଡ଼ି ପିନ୍ଧାଇଦିଆଗଲା । ଇଂରେଜମାନେ ଭାବିଥିଲେ ଯେ ଅନ୍ୟ ସିପାହିମାନେ ଏହାଦ୍ୱାରା ମହାବିକ୍ରମୀ ଇଂରେଜଶକ୍ତିର ଚାକ୍ଷୁଷ ପରିଚୟ ପାଇବେ; କିନ୍ତୁ ଫଳ ଓଲଟାହେଲା । ନିଜ ଧର୍ମ ଓ ଜାତିକୁ ରକ୍ଷା କରିବାକୁ ଯାଇ ଦଣ୍ଡ ପାଇଥିବା ସିପାହିମାନେ ଅନ୍ୟମାନଙ୍କ ଦୃଷ୍ଟିରେ ଅପରାଧୀ ବିବେଚିତ ନ ହୋଇ 'ବୀର' ବୋଲି ବିବେଚିତ ହେଲେ । ଅବଶ୍ୟ ସାଙ୍ଗେ ସାଙ୍ଗେ ଏହି ଅସନ୍ତୋଷ ବାହାରକୁ ପ୍ରକାଶିତ ହେଲାନାହିଁ । କିନ୍ତୁ ସେହି ନୀରବଦ୍ରଷ୍ଟା ସିପାହିମାନେ କ'ଣ ଅନୁଭବ କରୁଥିଲେ ତାହା ଜେନେରାଲ ଗଫ୍‌ଙ୍କ ବିବରଣୀରୁ ଜଣାଯାଏ । ସେ ଲେଖିଛନ୍ତି, "There was a good deal of murmuring in our ranks and had it not been for the presence of British troops, it is impossible to say what might not have taken place. (1) (ମୋ ସୈନ୍ୟଦଳ ଭିତରେ ଯଥେଷ୍ଟ ଅସନ୍ତୋଷ ଥିବାର ଜଣାଯାଉଥିଲା ଏବଂ ୟୁରୋପୀୟାନ୍ ସୈନ୍ୟମାନେ ଉପସ୍ଥିତ ନ ଥିଲେ ସେଠାରେ ସେଦିନ ଯେ କ'ଣ ଘଟିଥା'ନ୍ତା କହିବା ଅସମ୍ଭବ ।)(1) ପ୍ୟାରେଡ଼ ଶେଷ ହେଲା । ସିପାହିମାନେ ଭରା ହୃଦୟରେ ବାରାକ୍‌କୁ ଫେରିଲେ । ଦଣ୍ଡିତ ସିପାହିମାନଙ୍କୁ ସିଭିଲ୍ ଜେଲ୍‌କୁ ପଠାଗଲା । ବାରାକ୍‌ରେ ଅସନ୍ତୋଷର କ୍ଷୀଣତମ ଗୁଂଜନ ମଧ୍ୟ ଶୁଣିବାକୁ ମିଳିଲା ନାହିଁ । ପୂର୍ବାହ୍ନ ଓ ଅପରାହ୍ନ ସ୍ୱାଭାବିକ ରୀତିରେ ଅତିକ୍ରମ କଲା । କଲୋନେଲ କାର୍ମିକେଲଙ୍କ କାନରେ ଯଦିଓ 'ଆସନ୍ନ ବିଦ୍ରୋହ'ର ଜନରବ ପହଞ୍ଚିଥିଲା ସେ ତାକୁ ବାଜେକଥା (Idle words) ବୋଲି କହି ହସି ଉଡ଼ାଇଦେଇଥିଲେ । ବ୍ରିଗ୍ରେଡ଼ିଅର ଉଇଲ୍‌ସନ ମଧ୍ୟ ଛାତିରେ ଛେପ ପକାଇ ବସିଥିଲେ । ସଂଧ୍ୟା ୫ଟା ପରେ ଗୋଳମାଳ ଆରମ୍ଭ ହେଲା । ହଠାତ୍ କେହି ଜଣେ ସିପାହି ଲାଇନ୍‌ରେ ଖବରଦେଲା ଯେ ୟୁରୋପୀୟାନ ଅଶ୍ୱାରୋହୀ ଓ ଆର୍ଟିଲେରୀ ସୈନ୍ୟମାନେ ସିପାହିଲାଇନ୍‌କୁ ଆସୁଛନ୍ତି । ଉଦ୍ଦେଶ୍ୟ "ସମସ୍ତ ଭାରତୀୟ ସୈନ୍ୟଙ୍କୁ ନିରସ୍ତ୍ର କରାଯାଇ ବନ୍ଦୀକରାଯିବ ।" ସିପାହିମାନେ ଏହି ସଂବାଦରେ ପ୍ରଥମେ ଆତଙ୍କିତ ଓ ପରେ କ୍ରୋଧରେ ଜର୍ଜରିତ ହୋଇଗଲେ । ବର୍ଷ ବର୍ଷର ରୁଦ୍ଧ ଅସନ୍ତୋଷ ପଦାକୁ ବାହାରିପଡ଼ିଲା ଏବଂ ରାଗ ଓ ପ୍ରତିହିଂସାର ଚିନ୍ତାରେ ସିପାହିମାନେ ଫାଟି-ପଡ଼ିଲେ । ୩ ନମ୍ବର ଅଶ୍ୱାରୋହୀ ବାହିନୀ ସିଧା ଚାଲିଲେ ଜେଲଖାନାଆଡ଼େ ଏବଂ ସେମାନଙ୍କ

1. Gough– Old Memories- page- 19

ପ୍ରଥମ କାର୍ଯ୍ୟହେଲା ଜେଲ କବାଟ ଭାଙ୍ଗି ଦଣ୍ଡିତ ସିପାହିମାନଙ୍କୁ ମୁକ୍ତକରିବା ଓ ୨୦ ନମ୍ବର N.C. ପ୍ୟାରେଡ଼ ଗ୍ରାଉଣ୍ଡରେ ଥିବା ଅସ୍ତ୍ରଭଣ୍ଡାର ଦଖଲ କରିବା ।

ଏହି ଅପ୍ରତ୍ୟାଶିତ ଘଟଣା ପାଇଁ ଇଂରେଜ ଅଫିସରମାନେ ତ ଆଦୌ ପ୍ରସ୍ତୁତ ନ ଥିଲେ । କାର୍ମିକେଲ୍‌ଙ୍କ ବାଜେକଥା ଏତେ ଶୀଘ୍ର ସତ୍ୟରେ ପରିଣତ ହେବ ବୋଲି କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା । ଫଳରେ ବିଦ୍ରୋହ ସଂବାଦରେ ତାଙ୍କର ପ୍ରଥମ ପ୍ରତିକ୍ରିୟା ହେଲା ଭୟମିଶ୍ରିତ । ସେ ଦୌଡ଼ିଲେ କମିସନ୍‌ରଙ୍କ ପାଖକୁ, ସେଠୁ ଦୌଡ଼ିଲେ ବ୍ରିଗେଡ଼ିଅର୍‌ଙ୍କ ବଙ୍ଗଳୋକୁ ଏବଂ ଶେଷରେ ଆଶ୍ରୟ ନେଲେ ଜେନେରାଲ୍‌ଙ୍କ ବଙ୍ଗଳୋରେ । ସତକୁ ସତ ସେ ସେଠାରେ ରାତ୍ରୀଯାପନକଲେ, କାରଣ ବିଦ୍ରୋହୀମାନଙ୍କ ଗତିବିଧି ଓ ସଂଖ୍ୟା ସଂପର୍କରେ ସଠିକ୍ କଳନା କରିବା ତାଙ୍କ ପକ୍ଷରେ ବା ଅନ୍ୟ କାହା ପକ୍ଷରେ ସେତେବେଳେ ସମ୍ଭବ ନ ଥିଲା । ସୁତରାଂ କିପରି ବିଦ୍ରୋହର ସମ୍ମୁଖୀନ ହେବାକୁ ପଡ଼ିବ ତାହା କେହି ସ୍ଥିର କରିପାରିଲେ ନାହିଁ । ଫଳରେ ନିର୍ବିଘ୍ନରେ 'ବିଦ୍ରୋହୀମାନେ ଫିରିଙ୍ଗୀନିଧନ' (Slaughter of Europeans) ଯଜ୍ଞରେ ଆହୁତି ଦେବାକୁ ଲାଗିଲେ । ବିଦ୍ରୋହର କୌଣସି ପୂର୍ବନିର୍ଦ୍ଧାରିତ ଯୋଜନା ବା ପରିକଳ୍ପନା ନ ଥିବାରୁ ଯାହାକୁ ଯେମିତି ଦିଶିଲା ବା ଯେ ସେମିତି ପାରିଲା ସେ ତାହା ଅବିଚାରିତ ଭାବରେ କରିଚାଲିଲା । କେହି କହିବାକୁ ନାହିଁ । କେହି ବାଧା ଦେବାକୁ ନାହିଁ । ସମଗ୍ର ମୀରଟ ସହରରେ ବିଦ୍ରୋହୀମାନଙ୍କ ଅଖଣ୍ଡ ରାଜୁତି ଚାଲିଲା; କହିଲେ ଅତ୍ୟୁକ୍ତି ହେବନାହିଁ । ଶହ ଶହ ଗୋରା ଅଫିସର ସପରିବାର ବିଦ୍ରୋହର ଶିକାର ହେଲେ । ଲୁଣ୍ଠନ, ଗୃହଦାହ ଓ ହତ୍ୟା ଏକ ସାଧାରଣ ଘଟଣାରେ ପରିଣତ ହେଲା । କିନ୍ତୁ ଲୁଣ୍ଠନ ଓ ଗୃହଦାହ ପ୍ରଭୃତି କାର୍ଯ୍ୟ ମୁଖ୍ୟତଃ ସମାଜବିରୋଧୀ ଗୁର୍ଜାର ଜାତିର ଲୋକମାନଙ୍କଦ୍ୱାରା ହୋଇଥିଲା, ସିପାହିମାନଙ୍କଦ୍ୱାରା ନୁହେଁ । ଯେଉଁ ବିଶିଷ୍ଟ ସାମରିକ ଅଫିସରମାନେ ବିଦ୍ରୋହରେ ଆହୁତି ହୋଇଥିଲେ, ସେମାନଙ୍କର ବିସ୍ତୃତ ବିବରଣୀ ଦେବା ଏଠାରେ ଅନାବଶ୍ୟକ । କିନ୍ତୁ କେବଳ ୟୁରୋପୀୟାନ ନୁହଁନ୍ତି, ଯେଉଁ ଭାରତୀୟମାନେ ଇଂରେଜ ଶାସନକୁ ସମର୍ଥନ କରୁଥିଲେ, ସେମାନେ ମଧ୍ୟ ବିଦ୍ରୋହୀମାନଙ୍କ ଶିକାର ହୋଇଥିଲେ । ବାବୁ ବୀରବଲ୍ ଓ କଲିକତାର ମଦ୍ୟ ବ୍ୟବସାୟୀ କୈଳାସ ଚନ୍ଦ୍ର ଘୋଷ ସେମାନଙ୍କ ଭିତରୁ ଅନ୍ୟତମ ।

ପ୍ରାୟ ୧୫୦୦ ୟୁରୋପୀୟାନ ସୈନ୍ୟ ସେତେବେଳେ ମୀରଟରେ ଅବସ୍ଥାପିତ ହୋଇଥିଲେ, କିନ୍ତୁ କେହି ବିଦ୍ରୋହୀ ଭାରତୀୟ ସୈନ୍ୟଙ୍କ ମୁକାବିଲା କରିବାକୁ ସମର୍ଥ ହେଲେ ନାହିଁ ବରଂ ସେନାପତିବିହୀନ ସେହି ୟୁରୋପୀୟାନ ସୈନ୍ୟମାନଙ୍କ ଭିତରୁ କେତେକ ବିଦ୍ରୋହୀମାନଙ୍କର ଶରବ୍ୟ ହୋଇଥିଲେ । ପୂରା ଦୁଇଦିନ କାଳ ବିଦ୍ରୋହୀମାନେ ମୀରଟରେ ଧ୍ୱଂସଲୀଳା ଚଳାଇ ସାରି ମୀରଟ ତ୍ୟାଗ କଲେ । କାରଣ ଇଂରେଜମାନେ କଲିକତା ବା ଅନ୍ୟଆଡୁ ଅଧିକ ଅନୁରକ୍ତ ସୈନ୍ୟ ସଂଗ୍ରହ କରି

ସେମାନଙ୍କ ଉପରେ ଆକ୍ରମଣ କରିବାର ଯଥେଷ୍ଟ ଆଶଙ୍କା ଥିଲା । ଦ୍ୱିତୀୟତଃ ବିଦ୍ରୋହୀଙ୍କ ସଂଖ୍ୟା ପ୍ରକୃତରେ କେତେ ତାହା ସେହି ବିଦ୍ରୋହୀମାନଙ୍କୁ ବି ଜଣା ନ ଥିଲା । ଏଭଳି ଅନିଶ୍ଚିତ ପରିସ୍ଥିତିରେ ଅନିର୍ଦ୍ଦିଷ୍ଟକାଳ ମୀରଟରେ ରହିବା ନିରାପଦ ନୁହେଁ ବିଚାରକରି ବିଦ୍ରୋହୀମାନେ ମୀରଟ ତ୍ୟାଗ କରିବେ ବୋଲି ସିଦ୍ଧାନ୍ତ କଲେ । କେତେକ ହାପୁର, କେତେକ ବାରପଟ ଆଉ କେତେକ ମୁରି ଓ ମୁରାଦପୁର ଆଡ଼କୁ ଚାଲିଲେ । କିନ୍ତୁ ଅଧିକାଂଶଙ୍କର ଲକ୍ଷ୍ୟସ୍ଥଳ ହେଲା ମାତ୍ର ୪୦ ମାଇଲ ଦୂରରେ ଥିବା ସ୍ୱାଧୀନ ଭାରତର ଶେଷ ସମ୍ରାଟ ଏବଂ ଜାତୀୟତାର ମୁମୂର୍ଷୁ ପ୍ରତୀକ ମୋଗଲ ନବାବ ସ୍ଥବିର ବାହାଦୁର ସାହାଙ୍କ ରାଜଧାନୀ ଦିଲ୍ଲୀ ସହର । ମୀରଟର ଅଧିକାଂଶ ବାରାକ୍‌କୁ ଜାଳିପୋଡ଼ି ଛାରଖାର କରିଦେଇ ଓ ଅଧିକାଂଶ ୟୁରୋପୀୟ ଅଫିସରଙ୍କ ରକ୍ତରେ ତର୍ପଣ କରିସାରି ବିଜୟୀ ବିଦ୍ରୋହୀ ସେନା ଦିଲ୍ଲୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ ଏବଂ ସେହିଦିନ ଶେଷ ହେଲା 'ସିପାହି ବିଦ୍ରୋହ' ଏବଂ ଆରମ୍ଭ ହେଲା ୧୮୫୭ର ଗଣବିଦ୍ରୋହ ବା ମହାବିଦ୍ରୋହ । ବିଦ୍ରୋହ, ଗଣଜୀବନରେ ପ୍ରବେଶ କଲା ।

❐❐❐

## ଅଧ୍ୟାୟ - ଛଅ

# ସିପାହି ବିଦ୍ରୋହରୁ ମହାବିଦ୍ରୋହ

**'ଲାଲ୍‌କିଲ୍ଲା ଖୋଲ୍‌ଦୋ'. –**

୧୮୫୭ର ମଇ ମାସ ୧୧ ତାରିଖ ସକାଳର ଦିଲ୍ଲୀ ସହର । କି ସୁନ୍ଦର କମନୀୟ ସକାଳ ସେ ! କିନ୍ତୁ The summer morning that began so peacefully witnessed a horrible massacre...." (ଗ୍ରୀଷ୍ମଋତୁର ସେ ଶୀତଳ ପ୍ରଭାତ ଭୟାବହ ଓ ଲୋମହର୍ଷଣକାରୀ ହତ୍ୟାକାଣ୍ଡରେ ପରିସମାପ୍ତ ହେଲା ।) ହାୟରେ !

''ଦିଲ୍ଲୀ କଲେଜର ଅଧ୍ୟାପକ ରାମଚନ୍ଦ୍ରନ ସେଦିନ ସକାଳେ ଠିକ୍ ସମୟରେ କଲେଜରେ ପହଞ୍ଚିଥିଲେ । ପରିବ୍ରାଜକ ମୁନ୍ସୀ ମୋହନ ଲାଲ ତାଙ୍କର ନୂତନ ଗବେଷଣା ସଂପର୍କରେ ବଂଧୁଙ୍କ ସହ ସେଦିନ ଯୁକ୍ତିତର୍କରେ ରତ । କଲିକତାରୁ ପୂର୍ବଦିନର ସଂବାଦପତ୍ର ମଧ୍ୟ ଯଥାସମୟରେ ପହଞ୍ଚିଯାଇଥିଲା । ଜୀବନଲାଲ ମୁନ୍ସୀ କାପଟେନ୍ ଡଗଲାସ୍ ସାଇବଙ୍କୁ ତାଙ୍କ ଡାକବଙ୍ଗଳାରେ କୁର୍ଣ୍ଣିସ ଜଣାଇସାରି କୋର୍ଟକୁ ଯିବା ପାଇଁ 'ପାଲକୀ' ଠିକ୍ କରି ସାରିଥିଲେ । ପାହାଡ଼ଗଞ୍ଜ ଥାନାର ପୋଲିସ୍ ଏସ୍.ଆଇ. ମନିଉଦ୍ଦିନ ହାସାନ କଲେକ୍ଟରଙ୍କ କୋର୍ଟରେ ପହଞ୍ଚିଯାଇଥିଲେ । କମିସନର୍ ସାହେବ ସାଇମନ୍ ଫ୍ରେଜର କିନ୍ତୁ ସେପର୍ଯ୍ୟନ୍ତ ବିଛଣା ଛାଡ଼ିନାହାନ୍ତି । ଏ ସବୁ ଆନନ୍ଦ ଓ ହର୍ଷକଲ୍ଲୋଳରେ ଛନ୍ଦପତନ ଘଟାଇ ହଠାତ୍ ସଂବାଦ ପହଞ୍ଚିଗଲା, ''ମୀରଟ ବିଦ୍ରୋହୀ ଘୋଡ଼୍‌ସବାର ସୈନ୍ୟମାନେ ଯମୁନା ପୋଲ ଅତିକ୍ରମ କରି ଦିଲ୍ଲୀ ସହରରେ ପ୍ରବେଶକରିଛନ୍ତି । କେବଳ ପ୍ରବେଶ ନୁହେଁ, ଟ୍ୟାକ୍ସ କଲେକ୍ଟର ବିଦ୍ରୋହୀମାନଙ୍କଦ୍ୱାରା ନିହତ ଏବଂ ତାଙ୍କର ଅଫିସ ଭସ୍ମୀଭୂତ ହୋଇଯାଇଛି'' । ହାୟ ଭଗବାନ୍, ଏ କ'ଣ ହେଲା !

''ମୋଗଲ ବାଦଶା ଭାରତ ରାଜ ହୈ । ଲାଲକିଲା ଭାରତ କୀ ରାଜଧାନୀ ହୈ'' ସ୍ଲୋଗାନ୍‌ରେ ଦିଲ୍ଲୀ ଆକାଶ ହଠାତ୍ ଭାରାକ୍ରାନ୍ତ ହୋଇଗଲା । ରାଜପ୍ରାସାଦର ମେଘନାଦ ପାଚେରିକୁ ଭେଦକରି ବିପ୍ଳବୀ ସିପାହିମାନଙ୍କର ଏ ସ୍ଲୋଗାନ୍ ସ୍ଥବିର ଏବଂ ମୃତ୍ୟୁଅପେକ୍ଷମାଣ ନାମକୁମାତ୍ର ମୋଗଲସମ୍ରାଟ ବାହାଦୁର ସାହଙ୍କ କର୍ଣ୍ଣକୁହରରେ ପ୍ରବେଶ କଲାବେଳେ ସେ ଚକିତ, ଇତସ୍ତତଃ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ହୃତ ସାମ୍ରାଜ୍ୟ ଫେରିପାଇବାର ରୁଦ୍ଧ ଆଶା ପ୍ରକାଶପାଇବାକୁ ଯେମିତି ଭାଷା ପାଇଲା

ଏ ସ୍ଲୋଗାନ୍ ଭିତରେ । କିନ୍ତୁ ପରମୁହୂର୍ତ୍ତରେ ପରାଜୟର ଆଶଙ୍କା ଓ ସମ୍ଭାବ୍ୟ ପରିଣତି କଥା ଚିନ୍ତାକରି ସେ ଆତଂକିତ ହୋଇପଡ଼ିଲେ । ରାଜମହଲର ଉପରମହଲାର ଝରକାରୁ ଅନେଇ ଶୁଣିଲେ ବାହାଦୁର ସାହା, ବିଦ୍ରୋହୀ ସୈନ୍ୟମାନଙ୍କର କାନଫଟା ଗର୍ଜନ । ସେ ଆଉ ଠିଆ ହୋଇପାରିଲେ ନାହିଁ, ନିଜର ଶୟନକକ୍ଷକୁ ଫେରିଗଲେ ।

ବିଦ୍ରୋହୀମାନେ କିନ୍ତୁ ବାଦସାହାଙ୍କୁ ଫେରିବାକୁ ଦେବାପାଇଁ ପ୍ରସ୍ତୁତ ନୁହନ୍ତି । ‘‘ଆପଣଙ୍କୁହିଁ ଆମର ନେତୃତ୍ୱ ନେବାକୁ ପଡ଼ିବ । ଆପଣ ଆମର ନେତା, ଆପଣ ଆମର ସେନାପତି, ଆପଣ ଆମର ରାଜା, ଆପଣ ଆମର ସମ୍ରାଟ, ଭାରତର ସମ୍ରାଟ; ମୋଗଲ ବାଦସାହା ଜିନ୍ଦାବାଦ । ଫିରଂଗୀ ଶାସନ ମୁର୍ଦ୍ଦାବାଦ୍’’ ଦିଲ୍ଲୀ ରାଜପଥରେ ବିଦ୍ରୋହୀମାନଙ୍କ ପଟୁଆର !

ଅନିଚ୍ଛୁକ ବାହାଦୁର ସାହା ବିଦ୍ରୋହୀମାନଙ୍କର ନେତା ହେଲେ । ମହାବିଦ୍ରୋହରେ ନୂତନ ଅଧ୍ୟାୟ ଆରମ୍ଭ ହେଲା । କାର୍ଲମାର୍କ୍ସଙ୍କ ଭାଷାରେ, ‘‘ବ୍ରାହ୍ମଣ ମଙ୍ଗଳ ପାଣ୍ଡେଠାରୁ ଆରମ୍ଭ ହୋଇଥିବା ବିଦ୍ରୋହରେ ମୁସ୍ଲିମ୍ ବାହାଦୁର ସାହା ହେଲେ ପ୍ରଧାନ ପୁରୋଧା ।’’ ବାସ୍ତବରେ ଏହାହିଁ ଥିଲା ମହାବିଦ୍ରୋହର ଅନ୍ୟତମ ବିଶେଷତ୍ୱ । ଜାତି ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସେ ଦିନ ଗୋଟିଏ ମାତ୍ର ଲକ୍ଷ୍ୟ ସମସ୍ତଙ୍କ ଆଗରେ ‘‘ଫିରଙ୍ଗୀ ରାଜ ମୁର୍ଦ୍ଦାବାଦ ।’’

୩୮ ନମ୍ବର ରେଜିମେଣ୍ଟର ସିପାହିମାନେ ବିଦ୍ରୋହ ଘୋଷଣା କଲେ । ଖାଲି ବିଦ୍ରୋହ ନୁହେଁ, ବିଦ୍ରୋହୀମାନେ ସେମାନଙ୍କର ଗୋରା ସେନାପତି ଓ ଅଫିସରମାନଙ୍କୁ ନିର୍ବିଚାରରେ ହତ୍ୟାକରିବାକୁ ଲାଗିଲେ । ଦିଲ୍ଲୀର ଦରିଆଗଂଜ ଅଞ୍ଚଳ ଯେଉଁଠାରେ ମୁଖ୍ୟତଃ ବିଦେଶୀ ଅଫିସର ଓ ସ୍ୱଦେଶୀ ଖ୍ରୀଷ୍ଟିଆନମାନେ ବାସକରୁଥିଲେ ସେଠାରେ ହତ୍ୟାର'ତାଣ୍ଡବଲୀଳା ଚାଲିଲା । ଏକାବେଳକେ ସଫା କହିଲେ ଚଳେ ।

ଯୁଦ୍ଧ ଓ ଶାସନ ପରିଚାଳନା ପାଇଁ ଏକ ପରିଚାଳନା କମିଟି (Mutiny Court) ଗଠିତ ହେଲା ଏବଂ ତାହାର ନିର୍ଦ୍ଦେଶରେହିଁ ବିଦ୍ରୋହ ଏବଂ ଶାସନ ନିୟନ୍ତ୍ରିତ ହେଲା । ଦିଲ୍ଲୀରୁ ଇଂରେଜ ଶାସନର ଅବସାନହେଲା, ସ୍ୱାଧୀନ ସରକାର ପ୍ରତିଷ୍ଠିତ ହେଲା ।

‘ଦିଲ୍ଲୀ ସ୍ଲୋଗାନ’ ପ୍ରତିଧ୍ୱନିତ ହେଲା ଆକୁମାରୀ ହିମାଚଳ । ସାରଧନା ଓ ବାଘପେଟ ମଇ ୧୧ ତାରିଖ ଏବଂ ରୁରକି ୧୩ ତାରିଖରେ ମଧ୍ୟ ସ୍ୱାଧୀନତା ଘୋଷଣା କଲେ । ମୁଜାଫର ନଗର, ଆଲିଗଡ଼ ଓ ସାହାରନପୁର ମଧ୍ୟ ସ୍ୱାଧୀନ ହେଲେ । ରୋହିଲାଖଣ୍ଡରେ ସ୍ୱାଧୀନ ପ୍ରଶାସକ ହେଲେ ବିଦ୍ରୋହୀ ନେତା ଖାଁ ବାହାଦୁର ଖାଁ । ଏହାପରେ ଉତ୍ତର ଭାରତରେ ଅନ୍ୟାନ୍ୟ ମୁଖ୍ୟକେନ୍ଦ୍ର ଯଥା – ବରେଲୀ, ରାମପୁର, ମୋରାଦାବାଦ, ଅମରୋହ, ବିଜନୁର୍ ଓ ସାହାଜାନପୁରରେ ବିଦ୍ରୋହ ହୋଇ ଶାସନ ଗାଦି ଭାରତୀୟମାନଙ୍କଦ୍ୱାରା ଅଧିକୃତ ହେଲା ।

ଆଗ୍ରା ଡିଭିଜନର ବିଭିନ୍ନ ସଦରମହକୁମାରେ ବିଦ୍ରୋହ ସଂବାଦ ପହଞ୍ଚିବା ସଙ୍ଗେ

ସଙ୍ଗେ ସେନବାହିନୀ ବିଦ୍ରୋହ ଘୋଷଣା କଲେ, ଫଳରେ ମଇ ୨୦ ତାରିଖରେ ଆଗ୍ରାର ପତନ ହେଲା । ଏଲାହାବାଦରେ ବିଦ୍ରୋହର ନେତୃତ୍ୱ ନେଇଥିଲେ ଜନୈକ ମୁସଲମାନ ସନ୍ନ୍ୟାସୀ । ସେ ସନ୍ନ୍ୟାସୀ ହେଉଛନ୍ତି ମୌଲବୀ ଲିଆକତ୍ ଅଲ୍ଲୀ । ଜଣେ ଐତିହାସିକ ତାଙ୍କ ସଂପର୍କରେ ଲେଖିଛନ୍ତି, ଜାତିରେ ଲୁଗାବୁଣାଳୀ ଓ ଶିକ୍ଷକତା କରିଥିବା ଏହି ବ୍ୟକ୍ତିଜଣକ ତାଙ୍କର କଠୋର ସାଧୁତା ଗୁଣରେ ପ୍ରଭୂତ ସମ୍ମାନର ଅଧିକାରୀ ଥିଲେ । ତାଙ୍କରି ନେତୃତ୍ୱରେ ଏଲାହାବାଦ ଅଭିଯାନ ସଫଳ ହୋଇଥିଲା । ଫତେପୁର, ବାନ୍ଦା ଓ ହମିରପୁର ମଧ୍ୟ ବିଦ୍ରୋହୀମାନେ ଦଖଲ କରିଗଲେ ।

କାନପୁରର ବିଦ୍ରୋହ କିନ୍ତୁ ଅନ୍ୟସବୁକୁ ଟପିଗଲା କହିଲେ ଚଳେ । ବିଦ୍ରୋହର ପ୍ରଧାନ ସେନାପତି ଥିଲେ ପେଶବା ନାନା ସାହେବ । ପେଶବା ଦ୍ୱିତୀୟ ବାଜିରାଓ ୧୮୧୭ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହକରି ଏବଂ ସେଥିରେ ପରାଜିତ ହୋଇ ରାଜ୍ୟ ହରାଇଥିଲେ । ସେହିଦିନୁ ସୁଦୂର ଉତ୍ତର ଭାରତରେ କାନପୁର ନିକଟସ୍ଥ ବିଥୁରଠାରେ ସେ ଏକପ୍ରକାର ନିର୍ବାସିତ ଜୀବନ ଯାପନ କରୁଥିଲେ । ତାଙ୍କର ତିନିଗୋଟି ପୋଷ୍ୟପୁତ୍ର ମଧ୍ୟରୁ ଧୋଣ୍ଡୁ ପନ୍ଥ ଓରଫ୍ ନାନା ସାହେବ ହେଉଛନ୍ତି ସିପାହି ବିଦ୍ରୋହର ଅନ୍ୟତମ ସାରଥି । କାନପୁର ବିଦ୍ରୋହ ୨୪ ମଇ ଇଦ୍ ପର୍ବ ଦିନ ହେବ ବୋଲି ଆଶଙ୍କା କରାଯାଉଥିଲା । କିନ୍ତୁ ବାରୁଦଗଦାରେ ନିଆଁ ଲାଗିବାକୁ ସମୟ ଡେରିହେଲା । ଜୁନ୍ ୧୪ ତାରିଖରେ ବିଦ୍ରୋହୀମାନେ ସରକାରୀ ଟ୍ରେଜରୀ, ଜେଲଖାନା ଓ ମୁଖ୍ୟ ଅଫିସ ଦଖଲକରି ଦିଲ୍ଲୀ ଅଭିମୁଖେ ଅଗ୍ରସରହେଲେ । କାପ୍ଟେନ୍ ହୁଇଲାରଙ୍କ କୋଠି ଉପରେ ପ୍ରାୟ ତିନି ସପ୍ତାହ ପର୍ଯ୍ୟନ୍ତ ଚଢ଼ାଉହେଲା । ଶେଷରେ ସାହେବ ସେନାପତି ଆତ୍ମସମର୍ପଣକଲେ ।

କାନପୁର ପରେ ବିଦ୍ରୋହର କେନ୍ଦ୍ରସ୍ଥଳୀ ହେଲା ବୁନ୍ଦେଲଖଣ୍ଡର ଅନ୍ୟତମ ଅଂଶ ଝାନ୍ସିରେ । ଏହି ଝାନ୍ସିହିଁ ଦେଖିଛି ବିପ୍ଳବିଣୀ ଝାନ୍ସିରାଣୀ ଲକ୍ଷ୍ମୀବାଈଙ୍କର ଅଲୌକିକ ବୀରତ୍ୱ । ଲକ୍ଷ୍ମୀବାଈଙ୍କ ସ୍ୱାମୀ ଗଙ୍ଗାଧର ରାଓ ନିଃସନ୍ତାନ ଅବସ୍ଥାରେ ପରଲୋକ ଗମନ କରିବାରୁ ଲର୍ଡ ଡେଲହାଉସି 'ରାଜ୍ୟସ୍ୱତ୍ୱ ଲୋପ ନୀତି' ବଳରେ ଝାନ୍ସିକୁ ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କଲେ । ବିଧବା ଲକ୍ଷ୍ମୀବାଈ ଇଂରେଜମାନଙ୍କ ଏହି ଜୁଲମକୁ ମୁଣ୍ଡପାତି ଗ୍ରହଣ କରିବା ଛଡ଼ା ସେତେବେଳେ ଅନ୍ୟବାଟ ପାଇଲେ ନାହିଁ । ବିଦ୍ରୋହ କରିବାର ସୁଯୋଗ ସେତେବେଳେ ନ ଥିଲା । ସେ ସୁଯୋଗ ଆସିଲା ବର୍ତ୍ତମାନ । ପ୍ରଥମ ଅବସ୍ଥାରେ ଇଂରେଜମାନଙ୍କ ସହ ବନ୍ଧୁତାର ଛଳନା କରି ଲକ୍ଷ୍ମୀବାଈ ସେମାନଙ୍କୁ ବଡ଼ ଅଡୁଆରେ ପକାଇଦେଲେ । କିନ୍ତୁ ଇଂରେଜମାନେ ତାଙ୍କୁ ସନ୍ଦେହ କରିବା ପୂର୍ବରୁ ବୀରାଙ୍ଗନା ଲକ୍ଷ୍ମୀବାଈ ଝାମ୍ପିପଡ଼ିଲେ ଇଂରେଜ ସୈନ୍ୟମାନଙ୍କ ଉପରେ । ଝାନ୍ସି ସ୍ୱାଧୀନହେଲା ।

ଇଂରେଜ ସେନାପତି ସାର୍ ହ୍ୟୁଗଙ୍କ ନେତୃତ୍ୱରେ ଏକ ବିରାଟ ବାହିନୀ ଝାନ୍ସି ଅବରୋଧକଲେ । ଏକ ଭୟଙ୍କର ଯୁଦ୍ଧ ହେଲା । ଝାନ୍ସି ଦୁର୍ଗରେ କେବଳ ପୁରୁଷ ନୁହନ୍ତି

ଏକ ବିରାଟ ନାରୀବାହିନୀ ମଧ୍ୟ ଥିଲେ ଦୁର୍ଗରକ୍ଷା ଦାୟିତ୍ୱରେ । ଝାନ୍ସି ଯୁଦ୍ଧ ସଂପର୍କରେ ଇତିହାସରେ ବର୍ଣ୍ଣିତ ହୋଇଛି, "The battle now raged furious from street to street, from house to house and from room to room and the defenders fought like tigers."(1) (ପ୍ରତି ରାସ୍ତା, ପ୍ରତି ଘର, ଏପରିକି ପ୍ରତି କୋଠରି ଭିତରେ ବର୍ତ୍ତମାନ ଭୟଙ୍କର ଯୁଦ୍ଧ ହେଲା ।)

ଲକ୍ଷ୍ମୀବାଈଙ୍କ ନେତୃତ୍ୱରେ ସୈନ୍ୟମାନେ ସେଠାରେ ଯେଉଁ ଅଲୌକିକ ବୀରତ୍ୱ ପ୍ରଦର୍ଶନ କଲେ, ତାହା ପାଠକଲେ ଆଜି ବି ଆମର ଛାତି ଫୁଲିଉଠେ । ଶେଷରେ ଝାନ୍ସିର ପତନହେଲା ସତ୍ୟ କିନ୍ତୁ ରାତ୍ରିର ଅନ୍ଧକାର ଭିତରେ ବିପ୍ଳବିଣୀ ଲକ୍ଷ୍ମୀବାଈ କେତେବେଳେ ପୁରୁଷବେଶରେ ଦୁର୍ଗ ପରିତ୍ୟାଗ କରି ଚାଲିଯାଇଥିଲେ ତାହା ଶତ୍ରୁପକ୍ଷ ଜାଣିପାରିଲେନାହିଁ । ଜାଣିଲେ ପରଦିନ ସକାଳେ ଯେତେବେଳେ ରାଣୀ ଅନ୍ୟତମ ବିଦ୍ରୋହ କେନ୍ଦ୍ର କଲ୍ପିର ଅଳ୍ପ କେତେ ମାଇଲ ଦୂରରେ । ସାଙ୍ଗରେ ଏକମାତ୍ର ପୋଷ୍ୟ ପୁତ୍ର ଓ ବୃଦ୍ଧ ପିତା ମାମା ସାହେବ । ଇଂରେଜମାନେ ଦ୍ରୁତଗାମୀ ଘୋଡାନେଇ ରାଣୀଙ୍କର ଅନୁଧାବନ କଲେ । କିନ୍ତୁ ରାଣୀ ନିଜେ ଦକ୍ଷ ଘୋଡାସବାର ଥିବାରୁ ତାଙ୍କୁ ଧରିବା ଏତେ ସହଜ ନ ଥିଲା । ବିପ୍ଳବୀ ନେତା ତାନ୍ତିଆଟୋପେଙ୍କ ସହ ଆଲୋଚନା କରି ସେମାନେ ଅନ୍ୟ ଏକ ନିରାପଦ ସ୍ଥାନକୁ ପଳାଇଯିବାକୁ ସ୍ଥିର କଲେ । ବିଭିନ୍ନ ସ୍ଥାନ ଅତିକ୍ରମ କରି ଗୋୟାଲିୟର୍‌ରେ ପହଞ୍ଚି ସେଠାରେ ଦରବାର ସୈନ୍ୟଙ୍କ ଭିତରେ ବିଦ୍ରୋହ ସୃଷ୍ଟି କଲେ । କାରଣ ଗୋୟାଲିୟର୍ ରାଜା ଚିରଦିନ ବ୍ରିଟିଶ୍ ଭକ୍ତ ଥିଲେ ଏବଂ ବିଦ୍ରୋହ ଦମନ କରିବାକୁ ସେମାନଙ୍କୁ ସବୁବେଳେ ସାହାଯ୍ୟ କରୁଥିଲେ । କିନ୍ତୁ ତାନ୍ତିଆଙ୍କ ଦକ୍ଷତା ଓ କୌଶଳ ଫଳରେ ସେନାବାହିନୀରେ ବିଦ୍ରୋହର ସୂତ୍ରପାତ ହେଲା । ରାଜା ପଳାଇଯାଇ ନିରାପଦ ସ୍ଥାନରେ ଇଂରେଜମାନଙ୍କ ପାଖରେ ରହିଲେ । ୧୮୫୮ ମାର୍ଚ୍ଚ ମାସରେ ଗୋୟାଲିୟର୍ ଦଖଲ ପାଇଁ ଇଂରେଜମାନଙ୍କ ପକ୍ଷରୁ ବ୍ୟାପକ ଉଦ୍ୟମ ହେଲା । ୧୭ ତାରିଖ ଜୁନ୍‌ରେ ବ୍ରିଗେଡିଅର ସ୍ମିଥଙ୍କ ହିସାର ସୈନ୍ୟମାନଙ୍କଦ୍ୱାରା ରାଣୀ ଲକ୍ଷ୍ମୀବାଈ ଯୁଦ୍ଧ କରୁଥିବା ଅବସ୍ଥାରେ ନିହତହେଲେ । ତାଙ୍କର ମୃତ୍ୟୁ ସଂପର୍କରେ ମାକ୍‌ଫରସନ୍ ଓ ସାର୍ ରବର୍ଟ ହାମିଲଟନଙ୍କର ଭିନ୍ନ ଭିନ୍ନ ବିବରଣୀ ଥିଲେ ମଧ୍ୟ ଅସୀମ ବୀରତ୍ୱ ଓ ଦେଶବତ୍ସଳତା ପ୍ରଦର୍ଶନ କରୁଥିବା ଅବସ୍ଥାରେ ସେ ବୀରରେ ମୃତ୍ୟୁ ବରଣ କରିଥିଲେ ବୋଲି ତାଙ୍କର ଶତ୍ରୁମାନେ ମଧ୍ୟ ସ୍ୱୀକାର କରନ୍ତି । ସେଥିପାଇଁ ଆଜି ଶହେବର୍ଷ ପରେ ରାଣୀ ଲକ୍ଷ୍ମୀବାଈ ଏକ ମହାନ୍ ବିପ୍ଳବିଣୀ ଓ ଦୁର୍ଦ୍ଧର୍ଷ ସ୍ୱାଧୀନତା ଯୋଦ୍ଧା ରୂପେ ସାରା ଦେଶରେ ପୂଜାପାଉଅଛନ୍ତି ।

ଝାନ୍ସି ପରେ ଲକ୍ଷ୍ନୌ ଓ ଅଯୋଧ୍ୟା ସବୁଠାରୁ ବଡ଼ ବିଦ୍ରୋହ କେନ୍ଦ୍ର ଭାବରେ ଚିହ୍ନିତ ହେବାର ଅଧିକାରୀ । ଅଯୋଧ୍ୟା ନବାବ ୱାଜିଦ ଅଲ୍ଲୀ ସାହାଙ୍କ ନିର୍ବାସନ ପରେ ତାହା କିପରି ଅନ୍ୟାୟ ଭାବରେ ଇଂରେଜ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ହୋଇଥିଲା, ତାହା

1. S. N. Sen– 1857 Page- 287.

ଇଂରେଜଶାସନର ଆଉ ଏକ କଳଙ୍କିତ ଅଧ୍ୟାୟ ଏବଂ ସେଥିପାଇଁ ରାଜ୍ୟବ୍ୟାପୀ ଅସନ୍ତୋଷ ସୃଷ୍ଟି ହୋଇଥିଲା । ମୌଲବୀ ମହମ୍ମଦ ଉଲ୍ଲାସାହା ନାମକ ଜଣେ ବିଦ୍ରୋହୀନେତା ସେହି ଜନ ସନ୍ତୋଷର ସୁଯୋଗ ନେଇ ଚାରିଆଡ଼େ ବିଦ୍ରୋହର ବାର୍ତ୍ତା ପ୍ରଚାର କଲେ । ନାନାସାହେବ ଓ ଅନ୍ୟତମ ବିପ୍ଳବୀ ଆଜିମୁଲ୍ଲା ମଧ୍ୟ ସେହି ସମୟରେ ଲକ୍ଷ୍ନୌକୁ ଗୁପ୍ତ ଗସ୍ତ କରିଥିଲେ ବୋଲି ଜଣାଯାଏ । 'ଦିଲ୍ଲୀ ବିଦ୍ରୋହ'ର ସଂବାଦ ସେଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ ଲକ୍ଷ୍ନୌ ସୈନ୍ୟ ଦଳରେ ବିଦ୍ରୋହ ସୃଷ୍ଟି ହେଲା । ଚାହୁଁ ଚାହୁଁ ଜୁନ୍‌ମାସ ଶେଷ ସୁଦ୍ଧା ଲକ୍ଷ୍ନୌ, ସୀତାପୁର, ମହମଦୀ, ଲକ୍ଷ୍ମୀପୁର, ଖେରି, ଫୈଜାବାଦ, ବାହାରିନ୍, ସୁଲତାନପୁର ଓ ଗୋନ୍ଧା ବିଦ୍ରୋହୀମାନଙ୍କଦ୍ୱାରା ଅଧିକୃତ ହେଲା । ଲକ୍ଷ୍ନୌ ନବାବଙ୍କ ଏଗାର ବର୍ଷ ବୟସ୍କ ପୁତ୍ରକୁ ଲକ୍ଷ୍ନୌର ଶାସକ ରୂପେ ଘୋଷଣା କରାଗଲା । ରାଜମାତା ହଜରତ୍ ମହଲ ହେଲେ ତାଙ୍କର ରିଜେଣ୍ଟ । ପ୍ରାୟ ବର୍ଷେକାଳ ସେଠାରେ ଇଂରେଜ ଶାସନର ଅସ୍ତିତ୍ୱ ଲୋପପାଇଥିଲା । ଶେଷରେ ୧୮୫୮ ମାର୍ଚ୍ଚ ମାସରେ ଇଂରେଜମାନେ ଲକ୍ଷ୍ନୌ ଅବରୋଧ କଲେ । ଲକ୍ଷ୍ନୌର ପତନ ହେଲା । କିନ୍ତୁ ମୌଲବୀ ମହମ୍ମଦ ଉଲ୍ଲା ସାହା ହାରିଯିବାର ପାତ୍ର ନ ଥିଲେ । ଲକ୍ଷ୍ନୌର ବିଭିନ୍ନ ଅଞ୍ଚଳରେ ସେ ଦୀର୍ଘଦିନ ଗରିଲା ଯୁଦ୍ଧ ଚଳାଇଥିଲେ । ଶେଷରେ ଅନ୍ୟ ଜଣେ ଭାରତୀୟ ପାଓ୍ୱାନିର ରାଜାଙ୍କଦ୍ୱାରା ସେ ନିହତ ହେଲେ । ବେଗମ୍ ହଜରତ୍ ମହଲ କିନ୍ତୁ ଶେଷପର୍ଯ୍ୟନ୍ତ ଅପରାଜିତ ରହିଲେ । ନେପାଳର ଘନ ଅରଣ୍ୟହିଁ ହେଲା ତାଙ୍କର ଶେଷ ଆଶ୍ରୟସ୍ଥଳ । (୧)

ଫୈଜବାଦର ୨୨ ନମ୍ବର ନେଟିଭ୍ ରେଜିମେଣ୍ଟ ଓ ୧୫ ନମ୍ବର ଅଶ୍ୱାରୋହୀ ଦଳ ବିଦ୍ରୋହରେ ଯୋଗଦେବା ଫଳରେ ବିଦ୍ରୋହର ଗତି ଶତଗୁଣିତ ହେଲା । ଇଂରେଜ ଶାସନ ଅଚଳ ହୋଇଗଲା । କିନ୍ତୁ ବିଦ୍ରୋହୀ ନେତାମାନଙ୍କ ମଧ୍ୟରେ କୌଣସି ସମନ୍ୱୟ ନ ଥିବାରୁ ତା'ର ପୂର୍ଣ୍ଣ ସୁଯୋଗ ସେମାନେ ନେଇପାରିଲେନାହିଁ ।

ତେଣେ ଆସାମରେ ୧୮୩୩ ମସିହାରୁ ଆସାମର ରାଜା ପୁରନ୍ଦର ସିଂହଙ୍କ ପରାଜୟ ସମୟରୁ ଜନଅସନ୍ତୋଷ କୁହୁଳୁଥିଲା । ଆସାମର ଦେଓ୍ୱାନ ମଣିରାମ କଲିକତାରେ ଥିଲାବେଳେହିଁ ମହାବିଦ୍ରୋହ ସୂତ୍ରପାତ ହୋଇଥିଲା । କାଳବିଳମ୍ବ ନ କରି ମଣିରାମ ବିଦ୍ରୋହରେ ଝାମ୍ପଦେଲେ । କିନ୍ତୁ ବିଦ୍ରୋହ ସଂର୍ପକରେ ତାଙ୍କର ସମସ୍ତ ଗୁପ୍ତ ଯୋଜନା ପଦାରେପଡ଼ିଯିବାରୁ ତାଙ୍କୁ ଇଂରେଜମାନେ ଅତର୍କିତ ଭାବରେ ଆରେଷ୍ଟ କଲେ । ପରେ ପରେ ତାଙ୍କୁ ଫାଶୀ ଦିଆଗଲା ।

ମହାବିଦ୍ରୋହକୁ ଓଡ଼ିଶାର ଅବଦାନ ସଂପର୍କରେ ଆଲୋଚନା କଲେ ବୀର ସୁରେନ୍ଦ୍ର ସାଏ ଏବଂ ଚାଖି ଖୁଣ୍ଟିଆଙ୍କ କଥା ସର୍ବ ପ୍ରଥମେ ମନକୁ ଆସେ । ସମ୍ବଲପୁର ଭଳି ଅନାମଧେୟ ଅଞ୍ଚଳରେ ଜନ୍ମ ହୋଇନଥିଲେ ଏବଂ 'ମହାବିଦ୍ରୋହ'ର ଶତ

(୧) ଭାରତର ନାରୀ ବିପ୍ଳବୀ 'ରକ୍ତସ୍ନାତା' ଦ୍ରଷ୍ଟବ୍ୟ

ଶତ ମହାନ୍ ବିପ୍ଳବୀଙ୍କ ଭିତରେ କୋଳାହଳମୟ ହୋଇ ନ ଥିଲେ ହୁଏତ ଏହି ଦୁଇଜଣ ଶ୍ରେଷ୍ଠ ବିପ୍ଳବୀ ଇତିହାସକାରମାନଙ୍କଦ୍ୱାରା ଉପଯୁକ୍ତଭାବେ ସ୍ୱୀକୃତି ଲାଭକରିଥା'ନ୍ତେ । ତାହା ହୋଇଥିବାରୁ ସୁରେନ୍ଦ୍ର ଓ ଚାଖି ଇଂରେଜ ଐତିହାସିକମାନଙ୍କ ଦୃଷ୍ଟିର ଅନ୍ତରାଳରେ ରହିଗଲେ । ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଏତେ ବ୍ୟାପକ ଓ ଶକ୍ତିଶାଳୀ ଥିଲା ଯେ ତାହା ଦମନ କରିବାକୁ ଇଂରେଜମାନଙ୍କୁ ବହୁ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । ତତ୍‌କାଳୀନ ମଧ୍ୟପ୍ରଦେଶ ଚିଫ୍ କମିଶନରଙ୍କର ସେକ୍ରେଟାରୀ ଲେଖିଥିଲେ ଯେ, ''ବୋଧହୁଏ ଭାରତର ସମ୍ବଲପୁର ଜିଲ୍ଲାରେ ସର୍ବଶେଷରେ ୧୮୫୭ ମସିହା ବିଦ୍ରୋହର ଶିଖା ନିର୍ବାପିତ ହୋଇଥିଲା ।''(୧) ସୁରେନ୍ଦ୍ର ସର୍ବମୋଟ ୩୨ ବର୍ଷ କାରାବରଣ କରିଥିଲେ । କ୍ଷତ୍ରିୟ (ଛାତ୍ରୀ) ଚୌହାନ ରାଜବଂଶଜ ସୁରେନ୍ଦ୍ର ଆବାଲ୍ୟ ଜଣେ ଯୋଦ୍ଧା ଥିଲେ । ୧୮୪୦ରେ ଏକ ପାରିବାରିକ ମକଦ୍ଦମାରେ ଜଡ଼ିତ ହେବା ଅଭିଯୋଗରେ ତାଙ୍କୁ ହଜାରିବାଗ ଜେଲ୍‌ରେ ରଖିଥିବା ଅବସ୍ଥାରେ ହଜାରିବାଗରେ ଅବସ୍ଥାପିତ ଅଷ୍ଟମ ବେଙ୍ଗଲ ଇନଫାଣ୍ଟ୍ରି ଦଳ ବିଦ୍ରୋହ କରି ସୁରେନ୍ଦ୍ରଙ୍କୁ କିଭଳି ଜେଲଭାଙ୍ଗି ମୁକ୍ତ କରିଥିଲେ, ସେ ବିବରଣୀ ବଡ଼ ରୋମାଞ୍ଚକର । ପରେ ଅଟକ ବନ୍ଦୀ ଥିବା ଅବସ୍ଥାରେ ମଧ ସେ ପୁଲିସ୍‌କୁ ଫାଙ୍କି ପଳାଇଯାଇ ବିଦ୍ରୋହ ପରିଚାଳନା କରିଥିଲେ । ଦୀର୍ଘଦିନ ବିଦ୍ରୋହ ଚଳାଇବା ପରେ ତାଙ୍କୁ ଗିରଫ କରାଗଲା ଏବଂ ଅସିରଗଡ଼ ଦୁର୍ଗରେ ବନ୍ଦୀ ଅବସ୍ଥାରେ ବୀର ସୁରେନ୍ଦ୍ର ଦେହତ୍ୟାଗକଲେ । ଚାଖି ଖୁଣ୍ଟିଆ ଝାନ୍ସିରାଣୀଙ୍କର ପୈତୃକ ପଣ୍ଡା ଥିବା ସଙ୍ଗେ ସଙ୍ଗେ ସିପାହିମାନଙ୍କର ମଧ ପଣ୍ଡା ଥିଲେ ଏବଂ ସେହି ସୁଯୋଗରେ ସେ ଉତ୍ତର ଭାରତରେ ବିଭିନ୍ନ ସୈନ୍ୟ ଶିବିରମାନଙ୍କରେ ବୁଲି ବୁଲି ଜଗନ୍ନାଥ ଦର୍ଶନାର୍ଥୀ ଯୋଗାଡ଼ କରୁଥିଲେ । ଲକ୍ଷ୍ନୌରେ ଥିବା ୧୩ ନମ୍ବର ନେଟିଭ୍ ଇନ୍‌ଫାଣ୍ଟ୍ରି ସହ ତାଙ୍କର ଘନିଷ୍ଠ ଯୋଗସୂତ୍ର ଥିଲା । ତେଣୁ ସେନାବାହିନୀ ଭିତରେ ବିଦ୍ରୋହ ବାର୍ତ୍ତା ପ୍ରଚାର କରିବା ତାଙ୍କ ପକ୍ଷରେ ସୁବିଧାଜନକ ହେଲା । ଓଡ଼ିଶାରେ ମଧ୍ୟ ସେ ବିଦ୍ରୋହ ସଂଗଠିତ କରିଥିଲେ । ସେହି ଅପରାଧରେ ସରକାର ତାଙ୍କୁ ଓଡ଼ିଶାରୁ ବହିଷ୍କାର ନିର୍ଦ୍ଦେଶ ଦେଇଥିଲେ ଓ ସେ ତାହା ଅମାନ୍ୟ କରିବାରୁ ସମସ୍ତ ସମ୍ପତ୍ତି ହରାଇଥିଲେ ଏବଂ ଶେଷ ଜୀବନରେ ଅଟକବନ୍ଦୀ ଜୀବନ ଯାପନ କରିଥିଲେ । ଏତଦ୍‌ବ୍ୟତୀତ କନ୍ଧ ସର୍ଦ୍ଦାର ଚକ୍ର ବିଶୋଇ, କଟକ ଜିଲ୍ଲା ବାଲିଆର ଜମିଦାର ରାମକୃଷ୍ଣ ସାମନ୍ତସିଂହାର, ସୁରେନ୍ଦ୍ରଙ୍କ ଭାଇ ଉଦନ୍ତ, ଛବିଳ ଓ ଉଜ୍ଜଳ, ସାନ୍ତାଳ ନେତା ଆନନ୍ଦ ମାଝି ପ୍ରଭୃତି ବିପ୍ଳବୀମାନେ ମହାବିଦ୍ରୋହ ବେଳେ ଅଲୌକିକ ସାହସିକତା ପ୍ରଦର୍ଶନ କରି ଜେଲ୍, ଦ୍ୱୀପାନ୍ତର ଓ ଫାଶୀଦଣ୍ଡ ବରଣ କରିଥିଲେ । (୧)

ଛୋଟନାଗପୁରର ଆଦିବାସୀ ବିଦ୍ରୋହ 'ମହାବିଦ୍ରୋହ'ର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଘଟଣା । ପାଲାମୁ, ହଜାରିବାଗ, ରାଞ୍ଚି ଓ ସିଂହଭୂମ ଜିଲ୍ଲାର

୧. ତଥ୍ୟ– ପ୍ରଭାତ କୁମାର ମୁଖୋପାଧ୍ୟାୟ (ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ)

ଆଦିବାସୀମାନେହିଁ ଏହାର ନେତୃତ୍ୱ ନେଇଥିଲେ । ବିହାରର ଅନ୍ୟତମ ବିପ୍ଳବୀ ନେତା ବାବୁ କନୱାର ସିଂହଙ୍କ ସହ ମିଶିଯାଇ ଇଂରେଜ ବିରୋଧରେ ସମ୍ମିଳିତ ଅଭିଯାନ କରିବା ଥିଲା ଆଦିବାସୀ ଓ ସେମାନଙ୍କର ନେତା, ପୁରେହାଟ ରାଜାଙ୍କର ଉଦ୍ଦେଶ୍ୟ । ଏହି ବିଦ୍ରୋହ ଦମନ କରିବାକୁ ଇଂରେଜମାନଙ୍କୁ କେତେ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା ତାହାର ରୋମାଞ୍ଚକର ବର୍ଣ୍ଣନା ଦେଖିବାକୁ ମିଳେ ଐତିହାସିକ କେ' ଏବଂ ମାଲେସନ୍‌ଙ୍କର ବିବରଣୀରୁ ।

ଘେଁସ ଜମିଦାର ମାଧୋ ସିଂ ସୁରେନ୍ଦ୍ର ସାଏଙ୍କୁ ସମର୍ଥନ କରି ସପରିବାର ବ୍ରିଟିଶ୍ ବିରୋଧରେ ଲଢ଼ିଥିଲେ । ସେହି ଅଭିଯୋଗରେ ମାଧୋ ସିଂ ଫାଶୀ ପାଇଥିଲେ ଏବଂ ତାଙ୍କର ପୁତ୍ରଗଣ ଯଥା- ହାଟୀ, କୁଞ୍ଜଲ, ଐରୀ, ବୈରୀ ଓ ସମୁଦି, ଜାମାତା ନାରାୟଣ ଓ ଗୋବିନ୍ଦ ସିଂ ତଥା ବନ୍ଧୁ ସାଲିଗ ରାମ ବରିହା ଫାଶୀ, ଗୁଳି ବା ଦ୍ୱୀପାନ୍ତର ଦଣ୍ଡ ପାଇ ସହିଦ ହେଲେ ।

ମହାବିଦ୍ରୋହରେ ପୂର୍ବଭାରତର ଅବଦାନ କଥା ବିଚାରକଲାବେଳେ ମହାନ୍ ବିପ୍ଳବୀନେତା ବାବୁ କନଓ୍ୱାର ସିଂହଙ୍କ ଭୂମିକା ମହତ୍ୱପୂର୍ଣ୍ଣ । ସାହାବାଦ ଜିଲ୍ଲାର ଜଗଦୀଶପୁରରେ ଜନ୍ମଗ୍ରହଣ କରିଥିବା ଏହି ବୟୋବୃଦ୍ଧ ବିପ୍ଳବୀ ବିହାର ବିଦ୍ରୋହର କେନ୍ଦ୍ରବିନ୍ଦୁ ଥିଲେ । ଜନୈକ ଐତିହାସିକଙ୍କ ଭାଷାରେ, "His courage, organising skill and brilliant strategy impressed even his enemies. ଅର୍ଥାତ୍ ତାଙ୍କର ସାହସ, ସାଂଗଠନିକ ଦକ୍ଷତା ଓ ଚମତ୍କାର ଯୁଦ୍ଧକୌଶଳ ତାଙ୍କର ଶତ୍ରୁମାନଙ୍କୁ ମଧ ମୁଗ୍ଧ କରିଦେଇଥିଲା । ହିନ୍ଦୁ ମୁସଲମାନ ନିର୍ବିଶେଷରେ ସମସ୍ତ ବିପ୍ଳବୀ ତାଙ୍କର ଆହ୍ୱାନରେ ଏକତ୍ରିତ ହୋଇଥିଲେ । ପୀର ଅଲ୍ଲୀ, ଇସୁଫ୍ ଅଲ୍ଲୀ, ଇମାଦୁଦ୍ଦିନ, ଅଲ୍ଲୀ କରିମ୍, ଓ୍ୱାରିସ୍ ଅଲ୍ଲୀ ପ୍ରଭୃତି ମୁସଲ୍‌ମାନ ବିପ୍ଳବୀମାନେ ହିନ୍ଦୁ ନେତା କନଓ୍ୱାର ସିଂହଙ୍କର ନେତୃତ୍ୱକୁ ଅମ୍ଳାନ ବଦନରେ ସ୍ୱୀକାର କରି ବିଦେଶୀ ଶକ୍ତି ବିରୋଧରେ ଲଢ଼ିଥିଲେ । ଖାଲି ବିହାର ନୁହେଁ, ସୁଦୂର ରେଓ୍ୱା, କଲି ଓ ବାନ୍ଦାରେ ମଧ ତାଙ୍କର ନେତୃତ୍ୱ ପ୍ରତି ସ୍ୱୀକୃତି ମିଳିଥିଲା । ବିପ୍ଳବୀ ନାନାସାହେବ ଓ ତାନ୍ତିଆଙ୍କ ସହ ତାଙ୍କର ଘନିଷ୍ଠ ଯୋଗସୂତ୍ର ଥିବାର ଅସଂଖ୍ୟ ପ୍ରମାଣ ରହିଛି । ବୀର କନଓ୍ୱାର ସିଂହଙ୍କ ସଂପର୍କରେ ବିହାରର ଗାଁଗହଳରେ ବହୁ ଆଖ୍ୟାୟିକା ଆଜି ମଧ ଲୋକମୁଖରେ ଶୁଣାଯାଏ । ଯୁଦ୍ଧରେ ସାମୟିକ ପରାଜୟକୁ ସେ ପରାଜୟ ବୋଲି ସ୍ୱୀକାର କରୁ ନ ଥିଲେ । ''କୁଛ୍ ପରଓ୍ୱା ନେହିଁ'' ତାଙ୍କ ମୁଖର ଏକ ସାଧାରଣ କଥା ଥିଲା । ସେ ଦୀର୍ଘଦିନ ଇଂରେଜମାନଙ୍କ ସହ ଅସୀମ ସାହସିକତାପୂର୍ଣ୍ଣ ଯୁଦ୍ଧ କରି ଶେଷନିଶ୍ୱାସ ତ୍ୟାଗ କରିଥିଲେ । ତାଙ୍କର ଶେଷ ଜୀବନ ନିଜର ଜନ୍ମସ୍ଥାନ ଜଗଦୀଶପୁରରେ ବିତିଥିଲା । "The old lion went to his lair only to die." (ବୃଦ୍ଧ ସିଂହ ତା'ର ଗୁହା ମଧରେ ପଶି ମୃତ୍ୟୁବରଣ କଲା ।) କୁହାଯାଏ ସେ ଗଙ୍ଗାନଦୀ ପାର ହେଲାବେଳେ ତାଙ୍କର ବାମ ହାତରେ ଶତ୍ରୁପକ୍ଷର ଗୋଟିଏ ଗୁଳି ଆସି ବାଜିବାରୁ ସେଥିରେ ଏକ ଗଭୀର କ୍ଷତ ସୃଷ୍ଟି ହେଲା ।

ହାତଟି ଆଉ ଯୁଦ୍ଧ କାର୍ଯ୍ୟରେ ଲାଗିପାରିବ ନାହିଁ ବୋଲି ଅନୁଭବ କରି କନ୍‌ୱାର୍ ସିଂ ସଙ୍ଗେ ସଙ୍ଗେ ତରବାରିରେ ସେହି ହାତଟିକୁ ହାଣିପକାଇ ଗଙ୍ଗାନଦୀରେ ବିସର୍ଜନକଲେ । ୧୮୫୮ ମସିହା ଏପ୍ରିଲ୍ ୨୪ ତାରିଖରେ ବୀର କନ୍‌ୱାର୍ ସିଂ ଦେହରକ୍ଷାକଲେ । କଲୋନେଲ୍ ବିରଚିଙ୍କ ନିକଟକୁ କଲୋନେଲ କୋରଫିଲ୍‌ଡ ଦେଇଥିବା ଏକ ଚିଠିରୁ ଏହି ତାରିଖଟି ଜଣାପଡୁଛି । କନୱାରଙ୍କ ମୃତ୍ୟୁ ପରେ ତାଙ୍କର ଭାଇ ଅମର ସିଂ ବିଦ୍ରୋହର ନେତୃତ୍ୱ ନେଇଥିଲେ ।

ସେତେବେଳେ ପଞ୍ଜାବ ଏବଂ ସୀମାନ୍ତ ପ୍ରଦେଶରେ ଏକ ବିଚିତ୍ର ପରିସ୍ଥିତି ଥିଲା । ପଞ୍ଜାବ ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେବା ସଙ୍ଗେ ସୀମାନ୍ତ ପ୍ରଦେଶ ମଧ୍ୟ ଇଂରେଜମାନଙ୍କ ଅଧୀନକୁ ଆସିଥିଲା । 'ମହାବିଦ୍ରୋହ' ସମୟରେ ପରାଜିତ ଶିଖ ଜାତି ମନରେ ସେହି ପରାଜୟର ଗ୍ଲାନିହିଁ ସର୍ବାଧିକ ଉଙ୍କିମାରୁଥିବା ସମ୍ଭବ; ଅନ୍ତତଃ ଇଂରେଜମାନେ ସେହି ଆଶଙ୍କା କରୁଥିଲେ ।

ପଞ୍ଜାବରେ ଯେଉଁ ସେନାବାହିନୀ ଥିଲେ ସେମାନେ ଅଧିକାଂଶ ହିଁନ୍ଦୁସ୍ଥାନୀ । ସୁତରାଂ ମିରଟ ବିଦ୍ରୋହ ଓ ଦିଲ୍ଲୀ ଦଖଲ ସମ୍ବାଦରେ ସେମାନେ ଉତ୍ତେଜିତ ହୋଇଥିବା ଅସମ୍ଭବ ନୁହେଁ । କିନ୍ତୁ ପଞ୍ଜାବରେ ସେତେବେଳେ ନେତାର ସବୁଠାରୁ ବଡ଼ ଅଭାବ ଥିଲା । ଉତ୍ତର ଭାରତ ଓ ବଙ୍ଗଳା ଭଳି ସେଠାରେ ସେମିତି କେହି ରାଜା, ଜମିଦାର ବା ନବାବ ନ ଥିଲେ ଯେଉଁମାନେ କି ବିଦ୍ରୋହର ଡାକରା ଦେଇପାରିବେ । ଯେଉଁମାନେ ଥିଲେ ସେମାନଙ୍କୁ ଧନ, ସୁନା ଓ ଉପାଧିର ମୋହରେ ଇଂରେଜମାନେ ବଶୀଭୂତ କରି ସାରିଥିଲେ । ଆଫଗାନ୍ ଶାସକ ଦୋସ୍ତ ମହମ୍ମଦ ସେହି ଶ୍ରେଣୀର ଜଣେ ଶାସକ ଥିଲେ । ଐତିହାସିକ କେ' ଓ ମାଲେସନ୍‌ଙ୍କ ଭାଷାରେ, "To him love of English money was stronger than hatred of English race." (ଇଂରେଜ ଜାତିପ୍ରତି ଘୃଣା ଅପେକ୍ଷା ଇଂରେଜ ଧନର ଆକର୍ଷଣ ତାଙ୍କ ପକ୍ଷରେ ଅଧିକ ଟାଣ ଥିଲା) ଦ୍ୱିତୀୟତଃ ଯଦିଓ ପଂଜାବରେ ବହୁସଂଖ୍ୟକ ହିନ୍ଦୁସ୍ଥାନୀ ସିପାହି ଥିଲେ ୟୁରୋପୀୟ ସୈନ୍ୟ ମଧ୍ୟ କମ୍ ନ ଥିଲେ । ଇଂରେଜମାନଙ୍କର ସବୁଠାରୁ ବଡ଼ ସୁବିଧା ଥିଲା ଯେ ବିଦ୍ରୋହୀ ନେତାମାନଙ୍କ ମଧ୍ୟରେ କୌଣସି ସଂହତି ବା ସମନ୍ୱୟ ନ ଥିଲା ।

ଦିଲ୍ଲୀ ଦଖଲ ସମ୍ବାଦ ପଞ୍ଜାବରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେଠାରେ ଆଲୋଡ଼ନ ସୃଷ୍ଟି ହେଲା । କିନ୍ତୁ ବିଦ୍ରୋହୀ ନେତା ତାଜଉଦ୍ଦିନ, ବାହାଦୁର ସାହାଙ୍କଠାରୁ କୌଣସି ପ୍ରକାର ସାହାଯ୍ୟର ଭରସା ପାଇଲେ ନାହିଁ । ତାଙ୍କର ହିସାବ ଥିଲା ଯଦି ୫/୬ ହଜାର ବିଦ୍ରୋହୀ ସୈନ୍ୟଙ୍କୁ ପରିଚାଳନା କରାଯାଏ ତେବେ ସମୁଦାୟ ପଞ୍ଜାବ ଓ ପେଶୱାର ଦଖଲ ହୋଇଯିବ ।

ମୀରଟ ଓ ଦିଲ୍ଲୀର ଅଭିଜ୍ଞତା ଦୃଷ୍ଟିରୁ ଇଂରେଜମାନେ କୌଣସି ବିପଦ ନେବାକୁ ପ୍ରସ୍ତୁତ ନ ଥିଲେ । ଲାହୋର, ମିଆଁମୀର, ଫିଲାଉର, ଗୋବିନ୍ଦଗଡ଼, ଫିରୋଜପୁର, ଜଳନ୍ଧର, କାଙ୍ଗ୍ରା, ମୁଲତାନ, ପେଶୱାର, ନଉସେରା, ରାଓଲପିଣ୍ଡି, ଝେଲମ୍, ସିଆଲକୋଟ୍ ଓ

ଅମୃତସର୍ ପ୍ରଭୃତି ସବୁ ସେନାଛାଉଣୀରେ ପ୍ରାୟ ଏକା ସଙ୍ଗେ ଇଂରେଜମାନେ ଭାରତୀୟ ସିପାହିମାନଙ୍କୁ ଏକପ୍ରକାର ଅତର୍କିତ ଭାବରେ ନିରସ୍ତ୍ରକରିଦେଲେ ।

ତଥାପି ଏହା ଇଂରେଜମାନଙ୍କୁ ନିଶ୍ଚିନ୍ତ କରିପାରି ନ ଥିଲା । ୯ ନମ୍ବର ଅଶ୍ୱାରୋହୀ ଦଳ ହଠାତ୍ ବିଦ୍ରୋହ ଘୋଷଣା କଲେ । ସେମାନଙ୍କର ନେତା ଥିଲେ ଓ୍ୱଜିର ଖାଁ । କିନ୍ତୁ ସୈନ୍ୟମାନେ ପରାଜିତ ହେଲେ । ମିଆଁମୀରରେ ମଧ୍ୟ ସେହିଭଳି ବିଦ୍ରୋହ ହେଲା । ବିଦ୍ରୋହୀମାନେ ଶତାଧିକ ଇଂରେଜ ସୈନ୍ୟଙ୍କୁ ହତ୍ୟା କରିଥିଲେ । ଯେଉଁ ବିଦ୍ରୋହୀମାନେ ଦିଲ୍ଲୀ ବିଦ୍ରୋହୀମାନଙ୍କ ସହ ଯୋଗଦେବାକୁ ଯାଇଥିଲେ ସେମାନଙ୍କୁ ବାଟରେ ହତ୍ୟାକରାଗଲା, ଯେମିତି ୨୬ ନମ୍ବର ଇନଫାଣ୍ଟ୍ରି ଭାଗ୍ୟରେ ଘଟିଥିଲା । ୨୮୨ ଜଣ ବିଦ୍ରୋହୀ ସୈନ୍ୟଙ୍କୁ ଇଂରେଜମାନେ ବନ୍ଦୀ କରିବାକୁ ସମର୍ଥ ହୋଇଥିଲେ ଓ ପରେ ସେମାନଙ୍କୁ ନିର୍ମମ ଭାବରେ ହତ୍ୟାକରାଗଲା । "ଦଶଜଣ କରି ସିପାହି ଡକାହେଉଥିଲେ, ପଛକୁ ପଛ ସେମାନଙ୍କ ନାମ ଘୋଷଣା କରାଯାଉଥିଲା, ସେମାନଙ୍କ ହାତ ଗୋଡ଼ ବାନ୍ଧିଦିଆଯାଉଥିଲା । ଏକାଠି କରାଯାଉଥିଲା ଏବଂ ବଧଭୂମିକୁ ନିଆଯାଉଥିଲା, ସେଠାରେ ପ୍ରସ୍ତୁତ ହୋଇ ରହିଥିଲେ ଗୋଟିଏ ଗୁଳି ମାରିବାର ଦଳ ।"(୧) କିନ୍ତୁ ସେମାନେ ମରଣଭୀରୁ ନ ଥିଲେ, ତାହା ଥିଲା ପ୍ରକୃତ ସହିଦର ଆତ୍ମୋତ୍ସର୍ଗ......in most strict calmness, some singing, some dancing (କଠୋର ଗାମ୍ଭୀର୍ଯ୍ୟ ଭିତରେ, କେତେକ ଗୀତ ଗାଇ ଗାଇ ଓ କେତେକ ନାଚି ନାଚି)

ପଞ୍ଜାବ ବିଦ୍ରୋହ କେବଳ ସେନାବାହିନୀରେ ସୀମାବଦ୍ଧ ନ ଥିଲା, ଜନତା ମଧ୍ୟ ଏଥିରେ ସାମିଲ ହୋଇଥିଲା । ରାଜା ପ୍ରତାପ ସିଂହ ଓ ତାଙ୍କର ଭାଇ ବୀର ସିଂହ ଶେଷରେ ଇଂରେଜମାନଙ୍କଦ୍ୱାରା ବନ୍ଦୀ ହୋଇ ପ୍ରାଣଦଣ୍ଡ ପାଇଥିଲେ ମଧ୍ୟ ସେମାନେ ଦୀର୍ଘଦିନ ଜନବିଦ୍ରୋହ ଚାଲୁରଖିଥିଲେ । ଝେଲମ୍, ମିଆଁମୀର୍ ଓ ସିଆଲ୍‌କୋଟ୍‌ରେ ମଧ୍ୟ ଜନବିଦ୍ରୋହ ହୋଇଥିଲା ।

୧୮୫୭ ସେପ୍ଟେମ୍ବର ମାସରେ ପ୍ରାୟ ୩୦ ହଜାର ମୁସ୍ଲିମ୍ ବିଦ୍ରୋହୀ ଇଂରେଜମାନଙ୍କର କମ୍ କ୍ଷତି କରି ନ ଥିଲେ । ସମଗ୍ର ମୁଲତାନ ଜିଲ୍ଲା ସେମାନେ ଅଧିକାର କରିଯାଇଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ବହୁ ଧନଜୀବନ ବିନିମୟରେ ଏହି ବିଦ୍ରୋହୀମାନେ ପରାଜିତ ହୋଇଥିଲେ ।

ସିନ୍ଧୁ ପ୍ରଦେଶର ଅଧିବାସୀମାନଙ୍କର ମଧ୍ୟ ଇଂରେଜ ବିରୋଧରେ କମ୍ ଅଭିଯୋଗ ନ ଥିଲା । ସିନ୍ଧୁପ୍ରଦେଶର ଅମୀରଙ୍କୁ ଇଂରେଜମାନେ ଯେଭଳି ଗାଦିଚ୍ୟୁତ କରି ସିନ୍ଧୁ ପ୍ରଦେଶକୁ ଦଖଲ କରିଥିଲେ ତା'ର କରୁଣ ସ୍ମୃତି ସିନ୍ଧିମାନଙ୍କ ମନରେ ଜାଗ୍ରତ ରହିଥିବା ସ୍ୱାଭାବିକ । ସେହି ଅସନ୍ତୋଷର ସୁଯୋଗ ନେଇ ହେରାଟର ଜନୈକ ସମ୍ଭ୍ରାନ୍ତ ବ୍ୟକ୍ତି ସାହାଜାଦା ପୀର ମହମ୍ମଦ, ଇମାମ୍‌ବକ୍ସ ନାମକ ଜଣେ ସର୍ଦ୍ଦାର ଓ ଅଲିଫ୍ ଖାଁ ନାମକ

1. Cooper– The Crisis in the Punjab from the 10th of May until the fall of Delhi.– Page- 7

ଜନୈକ ପେନ୍‌ସନ୍‌ଭୋଗୀ ସେନାପତି ମିଳିତ ଭାବରେ ଇଂରେଜ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । କିନ୍ତୁ ଜନସମର୍ଥନ ଯଥେଷ୍ଟ ନ ମିଳିବାରୁ ସେମାନେ ପରାଜିତ ହୋଇଗଲେ ।

ବୀର ରାଜପୁତ୍‌ମାନଙ୍କର ଜନ୍ମସ୍ଥଳୀ ରାଜସ୍ଥାନ କିନ୍ତୁ ପାରମ୍ପରିକ କଳହ ଓ ଦ୍ୱନ୍ଦ୍ୱର କ୍ରୀଡ଼ାସ୍ଥଳୀ ଥିଲା । ତାହା ହୋଇ ନ ଥିଲେ ଇଂରେଜମାନେ ସେହି ବୀର ଜାତିକୁ ପଦାନତ କରିବାକୁ ସମର୍ଥ ହୋଇନଥାନ୍ତେ । ଇଂରେଜମାନଙ୍କ ଆଗମନ ପୂର୍ବରୁ ସେମାନେ ମରହଟ୍ଟାମାନଙ୍କଦ୍ୱାରା ଅବଶ୍ୟ ଖୁବ୍ ଅତ୍ୟାଚାରିତ ହେଉଥିଲେ । ବାରମ୍ବାର କ୍ରମବର୍ଦ୍ଧମାନ ରାଜସ୍ୱ ଦେଇ ଦେଇ ରାଜପୁତ୍‌ମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ, ସୁତରାଂ ଇଂରେଜ ଶାସନକୁ ସେମାନେ ପ୍ରାୟ ସ୍ୱାଗତ କରିଥିଲେ କହିଲେ ଚଳେ । କିନ୍ତୁ କ୍ରମେ ରାଜପୁତ୍‌ମାନେ ଅନୁଭବ କଲେ ଯେ ଇଂରେଜମାନେ ମରହଟ୍ଟାମାନଙ୍କ ଅପେକ୍ଷା ଅଧିକ ଅତ୍ୟାଚାରୀ ଏବଂ ଅତିଶୟ କୌଶଳ ସହକାରେ ସେମାନେ ଶୋଷଣ କରୁଛନ୍ତି । ଦ୍ୱିତୀୟତଃ ଇଂରେଜମାନେ ମରହଟ୍ଟାମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ଥିବାରୁ ରାଜପୁତ୍‌ମାନଙ୍କ ପକ୍ଷରେ ଅଧିକ ଏକ ବିପଦ ଦେଖାଦେଲା । ରାଜପୁତମାନେ ଭାଗ ଭାଗ ହୋଇଯାଇଥିବାରୁ ଇଂରେଜମାନଙ୍କ ବିରୋଧରେ ସମ୍ମିଳିତ ଅଭିଯାନ କରିବାର ସୁଯୋଗ ସେମାନେ ନେଇପାରିଲେନାହିଁ । ଉଦୟପୁରର ମହାରାଜା ସ୍ୱରୂପ ସିଂହ, ଯୋଧପୁରର ମହାରାଜା ତାଖତ ସିଂହ ରାଠୋର ପ୍ରଭୃତି ପରସ୍ପର ବିରୋଧରେ ସର୍ବଦା କହଳରେ ବ୍ୟାପୃତ ଥିଲେ । ଏମାନଙ୍କ ବ୍ୟତୀତ ଅସଂଖ୍ୟ ଜାଗିରଦାରମାନେ ମଧ୍ୟ ପରସ୍ପର ପ୍ରତି ସର୍ବଦା ଶତ୍ରୁତା କରୁଥିଲେ । କୌଶଳୀ ଇଂରେଜମାନେ ଜାଗିରଦାର ଓ ରାଜପୁତ ରାଜ୍ୟମାନଙ୍କ ଭିତରେ ସବୁବେଳେ କଳହକୁ ଜମେଇ ରଖିଥିଲେ । ଏହିଭଳି ପରିସ୍ଥିତିରେ ମିରଟ ବିଦ୍ରୋହ ସଂବାଦ ରାଜପୁତନାରେ ପହଞ୍ଚିଲା ଏବଂ ଏହାର ପ୍ରତିକ୍ରିୟା ସ୍ୱରୂପ କାଣ୍ଟନମେଣ୍ଟରେ ଓ ରାଜପୁତ୍ ସୈନ୍ୟମାନଙ୍କ ମଧ୍ୟରେ ବିଦ୍ରୋହ ଦେଖାଦେଇଥିଲା । ମଇ ମାସ ୨୮ ତାରିଖରେ ପ୍ରଥମେ ନାସିରବାଦଠାରେ ବିଦ୍ରୋହ ହେଲା ତା'ପରେ ହେଲା ନିମୋଚ ନାମକ ସ୍ଥାନରେ । ଆଜମୀର, ମାଉଣ୍ଟ ଆବୁ ଓ ଏରିନ୍‌ପୁରାରେ ମଧ୍ୟ ବିଦ୍ରୋହ ହେଲା ।

ବିଦ୍ରୋହର ପ୍ରଧାନ ନେତା ଥିଲେ ସାହାଜାଦା ଫିରୋଜ ସାହା । Rajstan's Role in the Struggle of 1857 ବହିରେ ନାଥୁରାମ ଖାଡୁଆତ୍ ନାମକ ଲେଖକ ବର୍ଣ୍ଣନା କରିଅଛନ୍ତି ଯେ ଯୋଧପୁରଠାରେ ଖାକି ସାଧୁମାନେ ପହଞ୍ଚିବା ଫଳରେ ଯୋଧପୁର ବିଦ୍ରୋହ ବଡ଼ ଭୟାବହ ହୋଇଥିଲା । ଠାକୁର କୁଶଳ ସିଂହ ଏଠାରେ ବିଦ୍ରୋହ ପରିଚାଳନା କରିଥିଲେ । ବିଦ୍ରୋହୀମାନେ ବହୁ ପରିମାଣର ସରକାରୀ ସଂପତ୍ତି ନଷ୍ଟକରି ଓ ବ୍ୟାପକ ହତ୍ୟାକାଣ୍ଡ ପରେ ଦିଲ୍ଲୀ ଅଭିମୁଖେ ଯାତ୍ରାକରିଥିଲେ, କିନ୍ତୁ ବାଟରେ ସେମାନେ ପରାଜିତ ହୋଇଥିଲେ । ରାଜସ୍ଥାନର କୋଟା 'ମହାବିଦ୍ରୋହ'ରେ ସର୍ବାଧିକ

ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଜୟଦୟାଲ ଓ ତାଙ୍କର ଭାଇ ହରଦୟାଲ ଇଂରେଜମାନଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ ସୁଦ୍ଧା ବିଦ୍ରୋହରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । କୋଟାରେ ଥିବା ପଲିଟିକାଲ ଏଜେଣ୍ଟ ନିହତ ହୋଇଥିଲେ ଓ ମହାରାଜା ବନ୍ଦୀ ହୋଇଥିଲେ । ବହୁଦିନ 'କୋଟା' ବିଦ୍ରୋହୀମାନଙ୍କ ହାତରେ ରହିଲା । ଶେଷରେ ଜେନେରାଲ ରବର୍ଟ ବହୁସଂଖ୍ୟକ ସୈନ୍ୟ ନେଇ ବିଦ୍ରୋହ ଦମନ କରିବାକୁ ସମର୍ଥ ହୋଇଥିଲେ । ବିଦ୍ରୋହ ଦମନ ହୋଇଥିଲେ ସୁଦ୍ଧା ବୀର ରାଜପୁତମାନେ ବହୁଦିନ ପର୍ଯ୍ୟନ୍ତ ଇଂରେଜମାନଙ୍କର ମୁଣ୍ଡବ୍ୟଥାର କାରଣ ହୋଇ ରହିଲେ ।

ମଧ୍ୟଭାରତ ମଧ୍ୟ 'ମହାବିଦ୍ରୋହ'ରେ ପଛରେ ପଡ଼ି ନ ଥିଲା । ସେତେବେଳେ ଗୋୟାଲିୟର, ଭୋପାଳ ଏବଂ ମୋଆଠାରେ ଅଧିକାଂଶ ସୈନ୍ୟ ଅବସ୍ଥାପିତ ହୋଇଥିଲେ । ବିଦ୍ରୋହ ସଂବାଦ ସେଠାରେ ପହଞ୍ଚିବା ସଂଗେ ସଂଗେ ସେନାବାହିନୀରେ ଆଲୋଡ଼ନ ସୃଷ୍ଟି ହେଲା । ଫଳରେ ସାଗର, ଜବଲପୁର, ନରସିଂହପୁର, ହୋସଙ୍ଗାବାଦ, ନଉଗଙ୍ଗ ଏବଂ ନାଗପୁରରେ ମଧ୍ୟ ବିଦ୍ରୋହ ଦେଖାଦେଲା । ସିପାହୀମାନଙ୍କ ସଂଗରେ ଠିଆହେଲେ ସାଧାରଣ ଜନତା ଏବଂ ସେମାନଙ୍କର ନେତା । ବାଣପୁରର ରାଜା ଏବଂ ଗଣ୍ଡରାଜା ସକର ସାହା ଏଠାରେ ବିଦ୍ରୋହର ନେତୃତ୍ୱ ନେଇଥିଲେ । ଗୋୟାଲିୟର ରାଜା ନିଜେ ବ୍ରିଟିଶ୍ ଭକ୍ତ ହୋଇଥିଲେ ସୁଦ୍ଧା ସେନାବାହିନୀରେ ଦେଶପ୍ରାଣତାର ଅଭାବ ନ ଥିଲା । ଝାନ୍ସି ବିଦ୍ରୋହ ସଂବାଦହିଁ ସେଠାରେ ବିଦ୍ରୋହ ନିଆଁ ଜାଳିଦେଲା । ଭୋପାଳର ସାମନ୍ତମାନେ ଶାସିକା ସିକନ୍ଦର ବେଗମଙ୍କୁ ଭଲ ପାଉ ନ ଥିଲେ । ମହାବିଦ୍ରୋହର ସୁଯୋଗ ନେଇ ସେମାନେ ସୈନ୍ୟମାନଙ୍କୁ ମତାଇ ସିକନ୍ଦର ବେଗମ ଓ ଇଂରେଜ ବିରୋଧରେ ବିଦ୍ରୋହ ଘୋଷଣା କଲେ । ବଡ଼ଲାଟଙ୍କର ଏଜେଣ୍ଟ କଲୋନେଲ ଡୁରାଣ୍ଡ ମଧ୍ୟପ୍ରଦେଶର ବିଦ୍ରୋହୀମାନଙ୍କ ଦ୍ୱାରା ପ୍ରଦର୍ଶିତ ହୋଇଥିବା ବହୁ ଅବିଶ୍ୱାସ୍ୟ ବୀରତ୍ୱ କାହାଣୀ ଉଲ୍ଲେଖ କରିଛନ୍ତି - "The whole of Northern India from the Himalayas to the Narbada and from Calcutta to Peswar was in revolutionary furore." (ଅର୍ଥାତ୍ ହିମାଳୟ ଠାରୁ ନର୍ମଦାନଦୀ ଏବଂ କଲିକତାଠାରୁ ପେଶୱାର ପର୍ଯ୍ୟନ୍ତ ସମସ୍ତ ଅଂଚଳ ବିଦ୍ରୋହରେ ନିନାଦିତ ହେଉଥିଲା ।)

ମହାରାଷ୍ଟ୍ରର ଇନ୍ଦୋର, ମାନ୍ଦାସାର, ମୋହା, ଧର ଓ ଆଜମୀରର ବିଦ୍ରୋହ ଇଂରେଜମାନଙ୍କୁ ବିଚଳିତ କରିଦେଇଥିଲା । ଇନାମ କମିଶନର ସୁପାରିସ୍ ଫଳରେ ପୁନା ରାଜବଂଶର ବିତାଡ଼ନ ମଧ୍ୟ ଜନଅସନ୍ତୋଷ ସୃଷ୍ଟି କରିଥିଲା । ସତାରାର ଶାସକ ଥିଲେ ଯୁବକ ପ୍ରତାପ ସିଂହ । ଇଂରେଜମାନେ ତାଙ୍କୁ ଶାନ୍ତ ନିରୀହ ବୋଲି ଭାବୁଥିଲେ ମଧ୍ୟ ବାସ୍ତବରେ ସେ ଥିଲେ ଜଣେ ବିପ୍ଳବୀ । ଠିକ୍ ଏହି ସମୟରେ ମହାବିଦ୍ରୋହର ସୂତ୍ରପାତ ହେଲା । ଅଶିରଗଡ଼ ବୁହାରନପୁର, ଆଉରଙ୍ଗାବାଦ, କୋହ୍ଲାପୁର, ବେଲଗାଁ

ଓ ବମ୍ବେରେ ଅବସ୍ଥାପିତ ହୋଇଥିବା ସୈନ୍ୟମାନେ ଏକ ଗୁପ୍ତ ଷଡ଼ଯନ୍ତ୍ର କରିଥିଲେ, କିନ୍ତୁ ତାହା ଧରାପଡ଼ିଗଲା । ସତାରାର ରାଙ୍ଗ ବାପୁଜୀ ଗୁପ୍ତେ ନାମକ ଶିବାଜୀଙ୍କ ଜନୈକ ବଂଶଧର ବିଦ୍ରୋହର ମଧ୍ୟ ଆୟୋଜନ କରିଥିଲେ । ମହାରାଷ୍ଟ୍ରର ଚାରିଆଡ଼ୁ ତାଙ୍କୁ ସମର୍ଥନ ମିଳିଥିଲା । କିନ୍ତୁ ବିଦ୍ରୋହ ବ୍ୟାପକ ଆକାର ଧାରଣ କରିବା ପୂର୍ବରୁ ଇଂରେଜମାନେ ତାହାର ସୁରାକ ପାଇ ନିର୍ମମ ଭାବରେ ଦବେଇ ଦେଲେ । ବମ୍ବେରେ ମଧ୍ୟ ମହରମ ଦିନ ଏକ ବିଦ୍ରୋହ ବ୍ୟର୍ଥ ହୋଇଥିଲା । ଏହିଭଳି ଭାବରେ ମହାରାଷ୍ଟ୍ରର ଅଧିକାଂଶ ବିଦ୍ରୋହ ବିଦ୍ରୋହୀ ନେତାମାନଙ୍କ ଭିତରେ ସଂହତି ଅଭାବରୁ ଏବଂ ଇଂରେଜମାନଙ୍କ ବିଚକ୍ଷଣତା ଯୋଗୁଁ ପଣ୍ଡ ହୋଇଯାଇଥିଲା । କାନପୁରରେ ନାନା ସାହେବଙ୍କ ଅଭ୍ୟୁତ୍‌ଥାନ ମଧ୍ୟ ମରହଟ୍ଟା ଜାତିକୁ ଏକତ୍ରିତ କରିପାରିଲାନାହିଁ ।

ଦିଲ୍ଲୀରେ ବାହାଦୁର ସାହଙ୍କର ଗାଦିନସୀନ ହେବା ସଂବାଦ ହାଇଦ୍ରାବାଦରେ ମୁସ୍ଲିମ୍ ସଂପ୍ରଦାୟ ଭିତରେ ଉତ୍ସାହ ଉଦ୍ଦୀପନା ସୃଷ୍ଟି କରିଥିଲା । ମୌଲବୀମାନେ ଏହାକୁ ଧର୍ମଯୁଦ୍ଧ ବା ଜେହାଦ ବୋଲି ଘୋଷଣା କଲେ । ଫଳରେ ଚାରିଆଡ଼େ ବିଦ୍ରୋହ ଆରମ୍ଭ ହୋଇଗଲା । କିନ୍ତୁ ବ୍ରିଟିଶ୍ ଅନୁରକ୍ତ ହାଇଦ୍ରାବାଦର ନିଜାମ ଓ ତାଙ୍କର ମନ୍ତ୍ରୀ ସଲରଜଙ୍ଗ ଏହି ବିଦ୍ରୋହ ଦମନ କରିଦେଲେ । ମାନ୍ଦ୍ରାଜ ରେଜିମେଣ୍ଟର ଅଧିକାଂଶ ସିପାହି ତଳଶ୍ରେଣୀରୁ ଆସିଥିବାରୁ ଉଚ୍ଚବର୍ଣ୍ଣର ହିନ୍ଦୁ ମୁସଲମାନଙ୍କ ଭଳି ସେମାନଙ୍କର କୌଣସି ଅଭିଯୋଗ ନ ଥିଲା ଏବଂ ସେମାନେ 'ମହାବିଦ୍ରୋହ'ର ଗୁରୁତ୍ୱ ବୁଝିପାରିଲେ ନାହିଁ । ରୟତଓ୍ୱାରି ବ୍ୟବସ୍ଥା ପ୍ରବର୍ତ୍ତନ ଫଳରେ ପାରମ୍ପରିକ ନେତା ମଧ୍ୟ କେହି ନ ଥିଲେ । ତଥାପି କୁର୍ଣ୍ଣୁଲ, କୁଡ଼ାପ୍ପା ଓ ମାଲବାରରେ ବିଦ୍ରୋହ ହୋଇଥିଲା । ୧୩ ନମ୍ବର ମାନ୍ଦ୍ରାଜ ରେଜିମେଣ୍ଟ ଭିତରେ କୌଶଳକ୍ରମେ ଜଣେ ସାଧୁ ପ୍ରବେଶକରି ବିଦ୍ରୋହ ବାର୍ତ୍ତା ପ୍ରଚାର କରିଥିଲେ । ସେପ୍ଟେମ୍ବର'୫୭ ବେଳକୁ ଅବସ୍ଥା ବଡ଼ ସଂଗୀନ ହୋଇ ଯାଇଥିଲା । ତଥାପି ଇଂରେଜମାନେ ଏହି ବିଦ୍ରୋହ କଠୋର ହସ୍ତରେ ଦମନ କରିବାକୁ ସମର୍ଥ ହୋଇଥିଲେ ।

'ମହାବିଦ୍ରୋହ'କୁ ଇଂରେଜମାନେ ଶେଷ ସୁଦ୍ଧା ସଂପୂର୍ଣ୍ଣ ଦମନ କରିବାକୁ ସମର୍ଥ ହୋଇଥିଲେ ସୁଦ୍ଧା ଏଥିପାଇଁ ସେମାନଙ୍କୁ ଦୀର୍ଘଦିନ ଅପେକ୍ଷା କରିବାକୁ ପଡ଼ିଥିଲା ଏବଂ ବହୁ ଧନଜନ ବ୍ୟୟକରିବାକୁ ପଡ଼ିଥିଲା । ଏପରିକି ଦିଲ୍ଲୀ ପୁନର୍ବାର ଦଖଲ କଲାବେଳକୁ ଲାଗ ଲାଗ ତିନିଜଣ ପ୍ରଧାନ ସେନାପତିଙ୍କୁ ହରାଇଥିଲେ ଇଂରେଜମାନେ । ସହରର ଉପକଣ୍ଠରୁ ଇଂରେଜମାନଙ୍କୁ ବିଦ୍ରୋହୀମାନେ ହଟାଇ ଦେଇ ପାରିଥିଲେ ହୁଏତ ଏତେ ଶୀଘ୍ର ବିଦ୍ରୋହର ପତନ ହୋଇ ନ ଥା'ନ୍ତା । ଏକ ଦିଗରେ ଯେମିତି ଇଂରେଜମାନେ ସମୟ ଟାଳିବା ବାହାନାରେ ନିଜର ଶକ୍ତି ବୃଦ୍ଧି କରିବାରେ ଲାଗିଲେ, ଅନ୍ୟ ଦିଗରେ ବିଦ୍ରୋହୀମାନେ ସେମିତି ବିଜୟୋନ୍ମତ୍ତ ହୋଇ ହିତାହିତ ଜ୍ଞାନ ହରାଇବସିଲେ । ଶତ୍ରୁପକ୍ଷ ସହ ସଂପର୍କ ରଖିଥିବା ସାମାନ୍ୟ ସନ୍ଦେହରେ ମଧ୍ୟ ଦୋଷୀ ନିର୍ଦ୍ଦୋଷ ନିର୍ବିଚାରରେ ହତ୍ୟା ଲୁଣ୍ଠନ ଚାଲିଲା । ବିଦ୍ରୋହୀମାନେ ଆଇନକୁ ନିଜ ହାତକୁ

ନେଇଗଲେ । ବୃଦ୍ଧ ବାହାଦୁର ସାହାଙ୍କର ଶତଚେଷ୍ଟା ସତ୍ତ୍ୱେ ଶୃଙ୍ଖଳା ପ୍ରତିଷ୍ଠା କରାଯାଇ ପାରିଲା ନାହିଁ । ଇଂରେଜମାନଙ୍କ ଗୁପ୍ତଚର ଦିଲ୍ଲୀ ସହରରରେ ଭରିଗଲେ । ଏପରିକି ବିଦ୍ରୋହୀମାନଙ୍କ ପ୍ରଧାନ ସେନାପତି ବଖତ ଖାଁ ମଧ୍ୟ ସନ୍ଦେହର ଊର୍ଦ୍ଧ୍ୱରେ ରହିପାରିଲେ ନାହିଁ । ବାହାଦୁର ସାହଙ୍କ 'ପାଟରାଣୀ' ଜିନତ ମହଲଙ୍କ ବିରୋଧରେ ମଧ୍ୟ ଇଂରେଜମାନଙ୍କ ସହ ଗୁପ୍ତ ସଂପର୍କ ଥିବାର ଅଭିଯୋଗ ହେଲା । ଜିନତ ମହଲ ଚାହୁଁଥିଲେ ଯେ ତାଙ୍କର ପୁତ୍ର ଜବାନ ବଖତ୍‌କୁ ଇଂରେଜମାନେ ସମ୍ରାଟଙ୍କର ଏକମାତ୍ର ଉତ୍ତରାଧିକାରୀ ରୂପେ ଗ୍ରହଣକଲେ ସେ ଦିଲ୍ଲୀ ଦଖଲ କରିବାକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ । ନିଜେ ବାହାଦୁର ସାହା କୁଆଡ଼େ ଇଂରେଜ ଶିବିରକୁ ଏହିଭଳି ପ୍ରସ୍ତାବ ଦେଇଥିଲେ ଏବଂ ତାହା ପ୍ରତ୍ୟାଖ୍ୟାତ ହୋଇଥିଲା । "The Governor General wish it to be understood that any concession to the king of which the king's restoration to his former position would be the basis, is one to which the Government (as at present advised) cannot for a moment give its consent."(1) (ବଡ଼ଲାଟ ଏହା ଜଣାଇଦେବାକୁ ଚାହାନ୍ତି ଯେ ସମ୍ରାଟଙ୍କ ପ୍ରତି କୌଣସି କୋହଳନୀତି, ଯେଉଁ ନୀତିର ମୂଳକଥା ହୋଇଥିବ– 'ସମ୍ରାଟ'ଙ୍କୁ ନିଜର ପୂର୍ବ ଆସନରେ ପୁଣି ବସାଇବା, ସେହି ନୀତି ବା ସର୍ତ୍ତପ୍ରତି ସରକାର ତାଙ୍କର ସ୍ୱୀକୃତି ଦେଇ ନ ପାରନ୍ତି) ଦିଲ୍ଲୀରୁ ଇଂରେଜମାନଙ୍କ ପ୍ରଭୁତ୍ୱ ସଂପୂର୍ଣ୍ଣ ଲୋପ ପାଇଯାଇଥିଲେ ସୁଦ୍ଧା ସେମାନେ କେତେ ବହପ ଦେଖାଉଥିଲେ, ଉପରୋକ୍ତ ଚିଠିରୁ ତାର ପ୍ରମାଣ ମିଳେ । ତା'ର ପ୍ରଧାନ କାରଣ 'ଦିଲ୍ଲୀ' ହରାଇବାର ବର୍ଷକ ଭିତରେ ତାକୁ ପୁନଃଦଖଲ କରିବାର ସମସ୍ତ ଆୟୋଜନ ଇଂରେଜମାନେ କରିସାରିଥିଲେ ।

୧୮୫୮ ଅଗଷ୍ଟ ୭ ତାରିଖରେ ଜନ୍ ନିକଲସନଙ୍କ ନେତୃତ୍ୱରେ ଦଳେ ଇଂରେଜୀ ସୈନ୍ୟ ଆସି ଦିଲ୍ଲୀ ଉପକଣ୍ଠରେ ଅପେକ୍ଷମାଣ ସୈନ୍ୟମାନଙ୍କ ସହ ଯୋଗ ଦେବାରୁ ଇଂରେଜମାନଙ୍କ ସାହସ ବଢ଼ିଗଲା । ଇଦ୍‌ପର୍ବଦିନ ଇଂରେଜମାନେ ଦିଲ୍ଲୀ ଅଭିଯାନ କରିବାକୁ ଯୋଜନା କରିଥିଲେ, କାରଣ ସେଦିନ ମୁସଲମାନମାନେ ଗୋରୁ ମାରିବାର ପ୍ରଥା ଥିବାରୁ ହିନ୍ଦୁମାନେ ତା'ର ବିରୋଧ କରିବେ ବୋଲି ଇଂରେଜମାନେ ଗୁପ୍ତଚରମାନଙ୍କ ଜରିଆରେ ଆୟୋଜନ କରିଥିଲେ । ସାଂପ୍ରଦାୟିକ ଦଂଗା ସୃଷ୍ଟି କରିବାକୁ ରକ୍ଷଣଶୀଳ ହିନ୍ଦୁ ମୁସଲମାନମାନଙ୍କର ଅଭାବ ନ ଥିଲା ସେତେବେଳେ । କିନ୍ତୁ ବୃଦ୍ଧ ବାହାଦୁର ସାହାଙ୍କୁ ଅଶେଷ ଧନ୍ୟବାଦ ଦେବାକୁ ହେବ ଯେ ସେ ''ଇଦ୍‌ଦିନ କେହି ଗୋବଧ କରିପାରିବେ ନାହିଁ, କଲେ ମୃତ୍ୟୁଦଣ୍ଡ ଭୋଗ କରିବାକୁ ହେବ'' ବୋଲି କଠୋର ନିର୍ଦ୍ଦେଶ ଜାରିକଲେ, ତାହାହିଁ ହେଲା, କୁଚକ୍ରୀ ଇଂରେଜମାନଙ୍କ ଷଡ଼ଯନ୍ତ୍ର ଫସଫାଟିଗଲା । ଏ ସଂପର୍କରେ ଇଂରେଜ ସେନାପତି କିଥ୍‌ୟଂଗ ତାଙ୍କ ସ୍ତ୍ରୀଙ୍କ ନିକଟକୁ

---

1. Coldstream and Muir– Records of the Intelligence Department of the Govt. of the North- West- Frontier Provinces.

ଯେଉଁ ଚିଠି ଲେଖିଥିଲେ ସେଥିରୁ ସେମାନଙ୍କର ମନୋଭାବର ସ୍ପଷ୍ଟ ପରିଚୟ ମିଳେ । "Our hopes of a grand row in the city yesterday at the Idd festival have not apparently been fulfilled." (ଗତକାଲି ଇଦ୍‌ପର୍ବରେ ଯେଉଁ ସଂଘର୍ଷଟା ହେବ ବୋଲି ଆମେ ଆଶାକରିବସିଥିଲୁ ତାହା ଆପାତତଃ ସଫଳ ହେଲାନାହିଁ ।)

ଯାହାହେଉ, ଲକ୍ଷ୍ନୌ ପୁନଃଦଖଲର ପ୍ରାୟ ତିନିମାସ ପରେ ଇଂରେଜ ସେନାପତି ସାର୍ ହେନ୍ରିଲରେନ୍ସ, କଲୋନେଲ ଇଂଲିଶ ଏବଂ କଲୋନେଲ ସାର୍ ଜେମ୍ସଆଉଟରାମ ମିଳିତ ଭାବରେ ଦିଲ୍ଲୀ ଅବରୋଧ କଲେ । ଦୀର୍ଘ ଛ'ଦିନ କାଳ ବିଦ୍ରୋହୀମାନେ ଅସାଧାରଣ ବୀରତ୍ୱ ସହକାରେ ଯୁଦ୍ଧ କଲେ ସୁଦ୍ଧା ଶେଷରେ ପରାଜିତ ହେଲେ । ଦିଲ୍ଲୀ ପୁନଃଦଖଲ ହେଲା ଏବଂ ବନ୍ଦୀ ହେଲେ ଭାରତର ଶେଷ ସ୍ୱାଧୀନ ସମ୍ରାଟ ବାହାଦୁର ସାହା । ଇଂରେଜ ସେନାପତି ମିଷ୍ଟର୍ ହଡ୍‌ସନ୍ ସ୍ୱହସ୍ତରେ ସମସ୍ତ ରାଜପୁତ୍ରଙ୍କୁ ହତ୍ୟାକରିଥିଲେ ।

ଦିଲ୍ଲୀ ପୁନଃଦଖଲ ହେବାଫଳରେ ସାରାଭାରତରେ ବିଦ୍ରୋହୀମାନଙ୍କ ମନୋବଳ ଭାଙ୍ଗିଗଲା । ୧୮୫୮ ଜୁନ୍ ମାସ ବେଳକୁ ବିଦ୍ରୋହ କ୍ରମେ ବିପର୍ଯ୍ୟସ୍ତ ହୋଇପଡ଼ିଲା । ତାନ୍ତିଆ ତୋପେ ଧରାହୋଇ ଫାଶୀ ପାଇଲେ । ନାନାସାହେବ ଜଙ୍ଗଲକୁ ପଳାଇଗଲେ । ତାଙ୍କର ଶେଷଜୀବନ ଅଜ୍ଞାତ । ୧୮୫୮ ଶେଷ ସୁଦ୍ଧା ଅଧିକାଂଶ ବିଦ୍ରୋହୀ ନେତା ହୁଏତ ଧରାପଡ଼ିଥିଲେ, ନଚେତ୍ ଯୁଦ୍ଧ କ୍ଷେତ୍ରରେ ପ୍ରାଣବଳୀ ଦେଇଥିଲେ । ବହୁସଂଖ୍ୟକ ବିଦ୍ରୋହୀସୈନ୍ୟଙ୍କୁ କୋର୍ଟମାର୍ସାଲ କରାଯାଇ ପ୍ରାଣଦଣ୍ଡରେ ଦଣ୍ଡିତ କରାଯାଇଥିଲା । ଏହିଭଳି ଭାବରେ ଭାରତର ପ୍ରଥମ ସଶସ୍ତ୍ର ମୁକ୍ତିସଂଗ୍ରାମର କରୁଣ ପରିସମାପ୍ତି ହୋଇଥିଲା । କିନ୍ତୁ ଏହି ମହାବିଦ୍ରୋହ ପରୀକ୍ଷା ନିରୀକ୍ଷା କଲାବେଳେ ସେହି ପ୍ରାତଃସ୍ମରଣୀୟ ଅମିତବିକ୍ରମୀ ସଶସ୍ତ୍ର ଯୋଦ୍ଧାମାନଙ୍କ ପ୍ରତି ଆନ୍ତରିକ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଇଚ୍ଛାହୁଏ, ଯେଉଁମାନେ ସେମାନଙ୍କର ରାଜନୈତିକ ଉତ୍ତରାଧିକାରୀମାନଙ୍କ ପାଇଁ ଆଦର୍ଶ ଓ ଆତ୍ମତ୍ୟାଗର ଉଜ୍ଜ୍ୱଳ ଦୃଷ୍ଟାନ୍ତ ରଖିଦେଇଯାଇଅଛନ୍ତି ।

ବୃଦ୍ଧ 'ମୋଗଲ ସମ୍ରାଟ' ବାହାଦୁର ସାହ ନାମକୁ ମାତ୍ର 'ସମ୍ରାଟ' ଥିଲେ ସୁଦ୍ଧା ତାଙ୍କୁ ସମଗ୍ର ଭାରତବର୍ଷର ଜାତୀୟ ପ୍ରତୀକରୂପେ ମନେକରାଯାଉଥିଲା । ଇଂରେଜଠାରୁ ନିର୍ଦ୍ଦିଷ୍ଟ ପେନ୍‌ସନ୍ ଭୋଗକରି ସେ ସେତିକିରେ ସନ୍ତୁଷ୍ଟ ରହିଥିଲେ ଏବଂ କଳା ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରି ଏକ ଶାନ୍ତିପ୍ରିୟ ଜୀବନଯାପନ କରୁଥିବାରୁ ଏବଂ ହୃତ ସାମ୍ରାଜ୍ୟ ଫେରିପାଇବାର ଆଶା ଚିରଦିନ ପାଇଁ ତ୍ୟାଗକରିଥିବାରୁ ସେ ବିଦ୍ରୋହୀମାନଙ୍କର ନେତୃତ୍ୱ ନେବାକୁ ପ୍ରଥମେ ଅନିଚ୍ଛୁକ ଥିଲେ, କାରଣ ସେ ତାଙ୍କର ପୂର୍ବଜ ବାବର କିମ୍ବା ଆକବରଙ୍କ ଭଳି ଅସୀମ ଶକ୍ତିର ଅଧିକାରୀ ନ ଥିଲେ । ତଥାପି ଏହା ସ୍ୱୀକାର କରିବାକୁ ପଡ଼ିବ ଯେ, ଯେଉଁ ମୁହୂର୍ତ୍ତରେ ବିଦ୍ରୋହର 'ନେତୃତ୍ୱ' ନେଲେ ସେହି ମୁହୂର୍ତ୍ତରୁ ପ୍ରାୟ ଶେଷପର୍ଯ୍ୟନ୍ତ ଅତିଶୟ ନିଷ୍ଠାସହକାରେ ତାହା ପରିଚାଳିତ କରିଥିଲେ । ହିନ୍ଦୁ-ମୁସଲମାନ ମଧ୍ୟରେ ଏକତା ରକ୍ଷାର ଗୁରୁତ୍ୱ ତାଙ୍କ ଅପେକ୍ଷା ବେଶୀ ବୁଝିବା ଲୋକ ସମ୍ଭବତଃ ସେ ଯୁଗରେ ଅନ୍ୟ କେହି ନ ଥିଲେ । ଇଦ୍ ପର୍ବରେ 'ଗୋବଧ

ନିଷେଧ' ସେହି କଠୋର ଓ ସମୟୋଚିତ ନୀତିର ଏକ ନିଦର୍ଶନ । ଦିଲ୍ଲୀ ପୁନର୍ଦଖଲ ପର୍ଯ୍ୟନ୍ତ ସେଠାରେ ଯେଉଁ ହତ୍ୟା, ଲୁଣ୍ଠନ ପ୍ରଭୃତି ଚାଲିଥିଲା ତାକୁ ବନ୍ଦ କରିବା ପାଇଁ ସେ ଯତ୍‌ପରୋନାସ୍ତି ଚେଷ୍ଟା କରିଛନ୍ତି, ଏପରିକି ସହରରେ ନିଜେ ବୁଲି ବୁଲି ଶାନ୍ତିରକ୍ଷା କରିବାକୁ ଲୋକମାନଙ୍କୁ ସେ ବାରମ୍ବାର ନିବେଦନ କରିଥିବାର ଅସଂଖ୍ୟ ପ୍ରମାଣ ରହିଛି । ଶେଷରେ ସେ ନିରୁପାୟ ହୋଇ ଇଂରେଜମାନଙ୍କ ସହ ସନ୍ଧି ପ୍ରସ୍ତାବ ଦେଇଥିଲେ । ଏହା ତାଙ୍କର ବିଶ୍ୱାସଘାତକତା ବୋଲି ଜୋର୍ ଦେଇ କହିହେବନାହିଁ । ଅବଶ୍ୟ ଅନ୍ୟାନ୍ୟ ବିଦ୍ରୋହୀ ନେତାଙ୍କ ଭଳି ସେ କେବଳ ବ୍ୟକ୍ତିଗତ ଲାଭ ପାଇଁ ଆନ୍ଦୋଳନରେ ଝାସଦେଇ ପାରିଥା'ନ୍ତି, କିନ୍ତୁ କେବଳ ସେଥିପାଇଁ ତାଙ୍କର ଭୂମିକାକୁ ଲଘୁକରି କହିହେବ ନାହିଁ ।

ସମ୍ମୁଖ ଯୁଦ୍ଧକ୍ଷେତ୍ରରେ ବ୍ୟକ୍ତିଗତ ବୀରତ୍ୱ ପ୍ରଦର୍ଶନ ତଥା ଯୁଦ୍ଧ କୌଶଳ ପ୍ରୟୋଗ ଦୃଷ୍ଟିରୁ ବିଚାରକଲେ ବିପ୍ଳବୀ ତାନ୍ତିଆ ଟୋପେ, ବୀରାଙ୍ଗନା ଝାନ୍ସିରାଣୀ ଓ ବୀର ସୁରେନ୍ଦ୍ର ସାଏଙ୍କ ନାମ ସର୍ବ ପ୍ରଥମେ ସ୍ମରଣ କରିବାକୁ ପଡ଼ିବ । ତାନ୍ତିଆ ଟୋପେଙ୍କ ଭଳି ମହାନ୍ ବିପ୍ଳବୀ ଏପର୍ଯ୍ୟନ୍ତ ଆଉ ଭାରତବର୍ଷରେ ଜନ୍ମଗ୍ରହଣ କରିଛନ୍ତି ବୋଲି କହିବା କଷ୍ଟ । ଜସଲାଙ୍ଗଙ୍କ ବର୍ଣ୍ଣନା ଅନୁସାରେ, "His eyes were expressive and full of winning." (ତାଙ୍କର ଚକ୍ଷୁ ଦୁଇଟି ଧୂର୍ତ୍ତତା ଓ ପ୍ରକାଶବ୍ୟଞ୍ଜକ) ରାମଚନ୍ଦ୍ର ପାଣ୍ଡୁରଙ୍ଗ ବା ତାନ୍ତିଆ ଟୋପେଙ୍କର ଆନୁଷ୍ଠାନିକ ମିଲିଟାରୀ ଟ୍ରେନିଂ ଥିଲା କି ନାହିଁ ଜଣା ନାହିଁ, କିନ୍ତୁ ସେ ମରହଟ୍ଟାମାନଙ୍କର ସ୍ୱଭାବସୁଲଭ ଗରିଲା ଯୁଦ୍ଧ ବିଦ୍ୟାରେ ବେଶ୍ ପାରଙ୍ଗମ ଥିଲେ । ତାହା ନ ହେଲେ ଦୀର୍ଘ ଦୁଇବର୍ଷକାଳ ସେ ଚତୁର ଇଂରେଜ ସେନାପତି ଓ ଗୋଯେନ୍ଦାମାନଙ୍କୁ ଚିତାକାଟି ପାରି ନ ଥାନ୍ତେ । ତାଙ୍କୁ ଇଂରେଜମାନେ ଯେତେ ଡରୁଥିଲେ ଅନ୍ୟ କାହାକୁ ଏତେ ନୁହେଁ । ରାଜପୁତ ରାଜା ମାନସିଂ ତାଙ୍କ ସହ ବନ୍ଧୁତାର ଛଳନା କରି ତାଙ୍କୁ ନିଦ୍ରିତ ଅବସ୍ଥାରେ ଧରାଇ ଦେଇ ନ ଥିଲେ ଏତେ ଶୀଘ୍ର ଏହି ମହାନ୍ ବିପ୍ଳବୀଙ୍କର ଜୀବନ ଅବସାନ ହୋଇ ନ ଥାନ୍ତା । ଆମ ଦେଶର ସଶସ୍ତ୍ର ମୁକ୍ତି ସଂଗ୍ରାମର ଇତିହାସ ଯେଉଁ କେତେଜଣ ନିମକ ହାରାମ ବିଶ୍ୱାସଘାତକଙ୍କଦ୍ୱାରା କଳଙ୍କିତ ହୋଇଛି, ମହାରାଜା ମାନସିଂ ସେମାନଙ୍କ ଭିତରୁ ଅନ୍ୟତମ । ତାନ୍ତିଆ ଟୋପେ 'ବ୍ରିଟିଶ୍ ଭାରତ'ର ନାଗରିକ ନ ଥିବା ସତ୍ତ୍ୱେ ତାଂକ ପ୍ରତି ବ୍ରିଟିଶ୍ ଆଇନ ଲାଗୁକରାଯାଇ 'ଦେଶଦ୍ରୋହୀ' ଅପରାଧରେ ତାଙ୍କୁ ଫାଶୀ ଦିଆଗଲା । 'ମହାବିଦ୍ରୋହ'ର ଅନ୍ୟାନ୍ୟ ନେତାଙ୍କ ଭଳି ବ୍ୟକ୍ତିଗତ ଲାଭ ବା ଉଦ୍ଦେଶ୍ୟ ସାଧନ ତାନ୍ତିଆଙ୍କର ଧ୍ୟେୟ ନ ଥିଲା । ସମ୍ଭବତଃ ସେହି ଜଣେ ମାତ୍ର ବିପ୍ଳବୀ ଯେ କି ବ୍ୟକ୍ତଗତ ସ୍ୱାର୍ଥ ବିନା ବାସ୍ତବରେ କାୟମନୋବାକ୍ୟରେ ଇଂରେଜ ସାମ୍ରାଜ୍ୟର ବିଲୋପ ସାଧନ ଚାହୁଁଥିଲେ ।

ଝାନ୍ସି ରାଣୀ ଲକ୍ଷ୍ମୀବାଈଙ୍କର ବୀରତ୍ୱ ଅଦ୍ୱିତୀୟ । ଅଳ୍ପ ବୟସରେ ବିଧବାହୋଇ ଏବଂ ରାଜ୍ୟହରାଇ ତାଙ୍କ ଭିତରେ ସ୍ୱଭାବତଃ ବ୍ରିଟିଶ୍ ବିରୋଧୀ ମନୋଭାବ ସୃଷ୍ଟି

ହୋଇଥିଲା । ସୁତରାଂ ଯଦିଓ ପ୍ରଥମାବସ୍ଥାରେ ସେ ଇଂରେଜମାନଙ୍କ ସହ କିଛି ଗୋଟାଏ ସାଲିସ୍ କରିବାକୁ ଉଦ୍ୟମ କରିଥିଲେ କିନ୍ତୁ ତାହା ବ୍ୟର୍ଥହେବା ସଙ୍ଗେ ସଙ୍ଗେ ଅମିତବିକ୍ରମରେ ଯୁଦ୍ଧରେ ଝାସଦେଇଥିଲେ ଏବଂ ନିପୁଣତା ସହକାରେ ସେ ଯୁଦ୍ଧକୁ ପରିଚାଳନା କରିଥିଲେ । ରାସ୍ତାରେ ତାଙ୍କର ଘୋଡ଼ାଟି ଗୋଟିଏ ଜଳସ୍ରୋତକୁ ଡେଇଁ ଗଲାବେଳେ ଝୁଣ୍ଟି ପଡ଼ି ନ ଥିଲେ ହୁଏତ ରାଣୀ ନିହତ ହୋଇନଥାନ୍ତେ ।

ବୀର ନାନାସାହେବ, କନଓ୍ୱାର ସିଂହ, ଓଡ଼ିଶାର ବୀର ସୁରେନ୍ଦ୍ର ସାଏ, ରାଜା ମାଧୋ ସିଂ ଓ ପୁତ୍ରଗଣ ମହାବିଦ୍ରୋହର ଗୋଟିଏ ଗୋଟିଏ ପ୍ରାତଃ ସ୍ମରଣୀୟ ନାମ ।

**ସିଂହାବଲୋକନ :**

'ମହାବିଦ୍ରୋହ'ର ବ୍ୟର୍ଥତାର କାରଣ ଓ ପରିଣତି ସଂପର୍କରେ ପ୍ରାୟ ସମସ୍ତ ଐତିହାସିକ ଏକମତ । ମୋଗଲ ସମ୍ରାଟଙ୍କର ସିଂହାସନ ଭାରତୀୟମାନଙ୍କୁ ଜାତିଧର୍ମ ନିର୍ବିଶେଷରେ ଏକତାବଦ୍ଧ କରି ରଖିବାର ଯେଉଁ ସୁବର୍ଣ୍ଣ ସୁଯୋଗ ଦେଇଥିଲା ତା'ର ଉପଯୋଗ ହୋଇପାରିଲାନାହିଁ । ନିଛକ ବ୍ୟକ୍ତିଗତ ସ୍ୱାର୍ଥହିଁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ପକ୍ଷରେ ଏକମାତ୍ର ପ୍ରେରଣାର ଉତ୍ସ ହୋଇଥିବାରୁ ଏ ଅବସ୍ଥା ଘଟିଲା । ତାହାର ଊର୍ଦ୍ଧ୍ୱକୁ କେହି ଯାଇପାରିଲେ ନାହିଁ । ଦ୍ୱିତୀୟତଃ ଏହାର ନେତୃତ୍ୱ ମୁଖ୍ୟତଃ ସାମନ୍ତବାଦୀ ହୋଇଥିବାରୁ ଏବଂ ଅର୍ଥନୈତିକ ଶୋଷଣ ଅପେକ୍ଷା ଧର୍ମଗତ ଅସନ୍ତୋଷକୁ ବଡ଼କରି ଦେଖାଇଦିଆଯିବାରୁ ଏହା ଆପାମର ଜନତାର ସ୍ୱତଃସ୍ଫୂର୍ତ୍ତ ସମର୍ଥନ ଲାଭ କରିପାରିଲା ନାହିଁ । ଧର୍ମ ନାମରେ ଯେ ଲୋକମାନଙ୍କୁ ଅଧିକଦିନ ମତେଇ ହେବ ନାହିଁ ତାହା ୧୮୫୭ର ମହାବିଦ୍ରୋହର ପ୍ରମାଣିତ କରିଦେଲା । 'ମହାବିଦ୍ରୋହ' ପାଇଁ ପୂର୍ବକଳ୍ପିତ ଯୋଜନା ଥିଲେ ହୁଏତ ଏହାକୁ ଏତେ ଶୀଘ୍ର ଦବେଇ ଦେବା ଇଂରେଜମାନଙ୍କ ପକ୍ଷରେ ସମ୍ଭବ ହୋଇ ନ ଥାନ୍ତା । ଯଦିବା 'ରୋଟି' ଆଖ୍ୟାୟିକାକୁ କେତେକ ପୂର୍ବକଳ୍ପନା ସପକ୍ଷରେ ପ୍ରମାଣ ବୋଲି ଭାବନ୍ତି, କିନ୍ତୁ ଏହା ଐତିହାସିକ ସତ୍ୟଦ୍ୱାରା ପରୀକ୍ଷିତ ନୁହେଁ । ଅବଶ୍ୟ ଏହା ସତ୍ୟ ଯେ, 'ମହାବିଦ୍ରୋହ'ର ବର୍ଷକ ପୂର୍ବରୁ କେତେକ ଅଟା ତିଆରି ରୋଟି ଉତ୍ତର ଭାରତରେ ବଣ୍ଟାହେଉଥିଲା, କିନ୍ତୁ ଏହା 'ମହାବିଦ୍ରୋହ'ର ବାର୍ତ୍ତାବହ ବୋଲି କହିବା କଠିନ । ସେମିତି ରାଣୀ ଲକ୍ଷ୍ମୀବାଈଙ୍କ ତଥାକଥିତ ପତ୍ର । କୁହାଯାଏ ଏହି ତଥାକଥିତ ପତ୍ରକୁ ରାଣୀ ପୁରୀ ପଣ୍ଡାଙ୍କ (ଚାଖିଖୁଣ୍ଟିଆ ?) ନିକଟକୁ ପଠାଇଥିଲେ ଏବଂ ସେ ଚିଠିରେ 'ମହାବିଦ୍ରୋହ'ର ପୂର୍ବ ସୂଚନା ଦିଆଯାଇଥିଲା । କିନ୍ତୁ ଏହି ଚିଠିର ବିଶ୍ଳେଷଣ କରି ଐତିହାସିକମାନେ ଏହାକୁ ଏକ ଜାଲ୍ ଚିଠି ବୋଲି କହୁଛନ୍ତି । କାରଣ ଏଥିରେ ବ୍ୟବହୃତ ଭାଷା, (ଯଥା- 'ମହାମାନ୍ୟ ପଣ୍ଡାଜୀ') ଲିପି ଏବଂ ତଥ୍ୟ ଏବଂ ସିଲ ପରସ୍ପରବିରୋଧୀ ଓ ଅବାନ୍ତର ।(୧) ସୁତରାଂ 'ମହାବିଦ୍ରୋହ' ପାଇଁ ପୂର୍ବ ପ୍ରସ୍ତୁତିନଥିଲା । ଏହା ମୁଖ୍ୟତଃ ସୈନିକ ଅସନ୍ତୋଷରୁ ଆରମ୍ଭ ହେଲା ଏବଂ ପରେ ଜନଅସନ୍ତୋଷ ଏଥିସହ ଯୁକ୍ତ ହେଲା । ସର୍ବମୋଟ ପ୍ରାୟ ସତୁରି ହଜାର ସୈନ୍ୟ

ବିଦ୍ରୋହରେ ଯୋଗଦେଇଥିଲେ ଏବଂ ପ୍ରାୟ ତିରିଶ ହଜାର ଶେଷପର୍ଯ୍ୟନ୍ତ ଇଂରେଜମାନଙ୍କ ସପକ୍ଷରେ ଲଢୁଥିଲେ । ସମସଂଖ୍ୟକ ସୈନ୍ୟ ହୁଏତ ନିରସ୍ତ୍ର ହେଲେ ବା ସଂପୂର୍ଣ୍ଣ ଉଦାସୀନ ଥିଲେ । ସତୁରି ହଜାର ବିଦ୍ରୋହୀ ସୈନ୍ୟ ଏକ ସଂଗେ ବିଦ୍ରୋହ କରିଥା'ନ୍ତେ ତ ତା'ର ପରିଣତି ହୋଇଥାନ୍ତା ବଡ଼ ଭୟାବହ ।

ଇଂରେଜୀପଢୁଆ ଭାରତୀୟ ମଧ୍ୟବିତ୍ତ ସମାଜ 'ମହାବିଦ୍ରୋହ' ପ୍ରତି ହୁଏତ ସଂପୂର୍ଣ୍ଣ ଉଦାସୀନ ଥିଲେ, ନଚେତ ବିପ୍ଳବ ବିରୋଧୀ ଥିଲେ । "The educated community unreservedly ranged itself on the side of law and order and condemned the rising in unambiguous terms.(1)"

ପ୍ରତ୍ୟେକ ଇତିହାସର ଛାତ୍ର ଓ ରାଜନୀତି ବିଜ୍ଞାନ ଅନୁସନ୍ଧିତ୍ସୁ 'ମହାବିଦ୍ରୋହ'ରୁ ଏହା ମହାନ୍ ଶିକ୍ଷା ଗ୍ରହଣ କରିବା ଉଚିତ ଯେ, ଶେଷରେ ଭାରତୀୟମାନଙ୍କ ସାହାଯ୍ୟରେ ହିଁ ଇଂରେଜମାନେ ଏହାକୁ ଦବେଇଦେଇଥିଲେ । ଆଜି ଯେମିତି ଗରିବ କ୍ଷେତ ମଜୁରିଆ ତା'ର ମଜୁରି ବୃଦ୍ଧିପାଇଁ କରୁଥିବା ଆନ୍ଦୋଳନକୁ ସେହି ଶ୍ରେଣୀର ସ୍ୱଳ୍ପବେତନ ଭୋଗୀ ଭୂମିହୀନ ପୁଲିସ କନଷ୍ଟେବଲ ବା ସିପାହିର ବୟନଟ୍ ମୁନ ଲଗାଇ ସରକାର ଦବେଇ ଦେଉଛି ଏବଂ ପୁଲିସ ବା ସେନାବାହିନୀକୁ ଜାତୀୟ ସ୍ରୋତରୁ ଏମିତି ଅଲଗାକରି ରଖାଯାଇଛି ଯେ ବିଚାରା ଗରିବ ପୁଲିସ ବା ସିପାହି ତାହା ବୁଝି ପାରୁ ନାହିଁ, 'ମହାବିଦ୍ରୋହ' ବେଳୁହିଁ ଇଂରେଜ ସରକାର ସେୟା କରିଆସିଛି । ସେଥିପାଇଁ 'ମେଡ଼ଲୀ' ଲେଖିଥିଲେ, "In fact for every whiteman in the camp there were certainly twenty black ones." (ଅର୍ଥାତ୍ ଜଣେ ଗୋରା ସିପାହି ପଛରେ ଅନ୍ତତଃ କୋଡ଼ିଏଜଣ କଳା ସିପାହି ଥିଲେ ।) 'ମେଡ଼ଲୀ' ଲେଖିଛନ୍ତି, "It was an Indian cook who brought the white soldier his dinner under the heaviest fire, it was the Indian Bhisti who brought him his drink in the thickest of the fight, it was the Indian dooly-bearer who carried the wounded out of the danger zone and the Indian servant who looked after his general comfort." (ଅବିଶ୍ରାନ୍ତ ଗୁଳି ଚାଳନା ଭିତରେ ଗୋରା ସୈନ୍ୟକୁ ଆହାର ଯୋଗାଇବା ବ୍ୟକ୍ତି ହେଉଛି ଭାରତୀୟ, ଯୁଦ୍ଧର ଘନଘଟା ଭିତରେ ଭାରତୀୟ ଭିସ୍ତି ହିଁ ତାକୁ ଜଳ ଯୋଗାଏ । ଭାରତୀୟ ପାଲକୀ ବାହକହିଁ ଗୋରା ସୈନ୍ୟକୁ ବିପଦପୂର୍ଣ୍ଣ ଅଞ୍ଚଳରୁ ନିରାପଦସ୍ଥାନକୁ ନେଇଯାଏ ଏବଂ ଭାରତୀୟ ଭୃତ୍ୟ ହିଁ ତାକୁ ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଯୋଗାଇ ଦେଇଥାଏ ।)

ଐତିହାସିକ ସୁରେନ୍ଦ୍ର ସେନ୍ ବଡ଼ ଦୁଃଖିତ ହୋଇ ଲେଖିଛନ୍ତି ଯେ, ''ଏହାକୁ କଳା ଗୋରା ଲଢ଼େଇ ବି କୁହାଯାଇ ପାରିବ ନାହିଁ । ଅବଶ୍ୟ ଭାରତରେ ଥିବା ସମସ୍ତ

---

1. Sen– Eighteen Fiftyseven

ଗୋରାଲୋକ ଗୋଟିଏ ପଟରେ ଥିଲେ, କିନ୍ତୁ ଅନ୍ୟ ପାଖରେ ସବୁ କଳାଲୋକ ରହି ପାରିଲେ ନାହିଁ ।'' "It was the case of one slave rivetting the fetters of another under the supervision of their common master."(1)

(ଏହା ଜଣେ କ୍ରୀତଦାସ ଆଉ ଜଣେ କ୍ରୀତଦାସ ପାଦରେ ଏକା ପ୍ରଭୁର ତତ୍ତ୍ୱାବଧାନରେ କଡ଼ି ପିନ୍ଧାଇବା ଭଳି ଘଟଣା ।)

ଯାହାହେଲେ ବି 'ମହାବିଦ୍ରୋହ'କୁ ଇଂରେଜ ଶାସନ ବିରୋଧରେ ପ୍ରଥମ ବ୍ୟାପକ ସଶସ୍ତ୍ର ଅଭିଯାନ ବୋଲି ଅଭିହିତ କରାଯିବ । କିନ୍ତୁ ଏହା ଗତାନୁଗତିକ ରୀତିରେ ହୋଇଥିବାରୁ ଏବଂ ଆଧୁନିକ ଜଗତର ରାଜନୈତିକ ବିଜ୍ଞାନ ଏଥିରେ ନ ଥିବାରୁ କିମ୍ବା ବିଂଶଶତାବ୍ଦୀର ଜାତୀୟତାଦ୍ୱାରା ଏହା ପ୍ରଭାବିତ ହୋଇ ନ ଥିବାରୁ ଓ ସଶସ୍ତ୍ର ବିପ୍ଳବର ଆଧୁନିକ କୌଶଳ ଓ ବିଚାରଧାରା ଏଥିରେ ନ ଥିବାରୁ, ଭାରତର ସ୍ୱାଧୀନତା ସଂଗ୍ରାମର ଏହି କାଳକୁ "The Stage of Conventional Rising" ବା 'ପାରମ୍ପରିକ ବିଦ୍ରୋହ' ପର୍ଯ୍ୟାୟ ବୋଲି କୁହାଯାଉଅଛି । ତେଣୁ ଏହାର ପରିଣତି ମଧ୍ୟ ସୀମିତ ହୋଇଛି ଏବଂ ଏହାର ପରବର୍ତ୍ତୀ ପର୍ଯ୍ୟାୟଗୁଡ଼ିକ ଅଧିକ ସୁସଂଗଠିତ, ପରିକଳ୍ପିତ ଓ ଅଧିକ ଉନ୍ନତ ବୋଲି ପ୍ରତିପାଦିତ ହୋଇଛି ।

❐❐❐

1. Sen– Eighteen Fifty Seven- Page- 282

# ଅଧ୍ୟାୟ - ସାତ

# ଜାଗ୍ରତ ଭାରତ

## କୃଷକ-ଶ୍ରମିକ ବିଦ୍ରୋହ –

ମହାବିଦ୍ରୋହ ପରଠାରୁ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ, ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଭାରତୀୟମାନଙ୍କର ରାଜନୈତିକ ବିଚାରଧାରାରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଘଟିଲା ଏବଂ ଯାହା ପୁଣି ବିଂଶଶତାବ୍ଦୀର ପ୍ରଥମ ଦୁଇଦଶକରେ ଯେଉଁ ପ୍ରଚଣ୍ଡ ରୂପ ପରିଗ୍ରହ କଲା, ତାହା ଭାରତର ସ୍ୱାଧୀନତା ଯୁଦ୍ଧ ବିଶେଷତଃ ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମକୁ ବିଜୟଶ୍ରୀମଣ୍ଡିତ କରିବାରେ ସର୍ବଶ୍ରେଷ୍ଠ ଉପାଦାନ ଯୋଗାଇ ଦେଇଛି । ଏହା ଅସ୍ୱୀକାର କରିବାର ଉପାୟ ନାହିଁ ଯେ 'ମହାବିଦ୍ରୋହ'ର ଏକ ହାତାହାତି ଫଳ ହେଲା ଯେ ଭାରତ ଶାସନ ଦାୟିତ୍ୱ ଇଷ୍ଟଇଣ୍ଡିଆ କମ୍ପାନୀ ହାତରୁ ଯାଇ ଖାସ୍ ବ୍ରିଟିଶ୍ ରାଜବଂଶ ହାତରେ ପଡ଼ିଲା । ଏହି ବାହାରିଆ ପରିବର୍ତ୍ତନ ଯେତେ ଶ୍ରୁତିମଧୁର ହେଲେ ମଧ୍ୟ ଅସଲରେ ଏହା ବ୍ରିଟିଶ୍ ସାମ୍ରାଜ୍ୟବାଦକୁ ଭାରତରେ ଆହୁରି ଦୃଢ଼ କରିବାକୁ ଅଭିପ୍ରେତ ହୋଇଥିଲା । ଫଳରେ ଭାରତ ଏକ ଶକ୍ତିଶାଳୀ ବ୍ରିଟିଶ୍ ଅମଲାତନ୍ତ୍ରର ଲୁହାପଂଝୁରି ଭିତରେ ପିଷ୍ଟ ହେଲା । ଏକ ଦିଗରେ କ୍ରମେ ଦୃଢ଼ରୁ ଦୃଢ଼ତର ହେଉଥିବା ଅମଲାତନ୍ତ୍ର ଓ ଅନ୍ୟଦିଗରେ କୋଟି କୋଟି ଅଜ୍ଞ, ନିରନ୍ନ, ମୂକଭାରତବାସୀ – ଏହାର ମଝିରେ ରହିଲା ନୂତନସୃଷ୍ଟ ମଧ୍ୟବିତ୍ତ ସମାଜ ଓ କମ୍ପାନୀର ଆର୍ଥନୀତିକ ଶୋଷଣ ଓ ବ୍ୟବସାୟ ସଂଗଠନରୁ ଏହି ଗୋଷ୍ଠୀ ଜନ୍ମନେଇଥିଲା । ମହାବିଦ୍ରୋହ ପର୍ଯ୍ୟନ୍ତ ଏହି ଶ୍ରେଣୀଟି ଜାତୀୟ ଅଭ୍ୟୁତ୍ଥାନରୁ ସଂପୂର୍ଣ୍ଣ ଅଲଗା ଏବଂ ବେଳେ ବେଳେ ତା'ର ବିରୋଧୀ ଭୂମିକାରେ ରହିଥିଲେ ମଧ୍ୟ 'ମହାବିଦ୍ରୋହ'ର ଆଲୋଡ଼ନ ସେମାନଙ୍କ ଚିନ୍ତା ରାଜ୍ୟରେ ଏକ ଗୁରୁତର ଧକ୍କାଦେଲା କହିଲେ ଚଳେ । ବାସ୍ତବତା ପ୍ରତି ଆଖିବୁଜି ରହିବା ସେମାନଙ୍କ ପକ୍ଷରେ ଆଉ ସମ୍ଭବ ହେଲା ନାହିଁ । ଫଳରେ ପରବର୍ତ୍ତୀ ଏକ ଶତାବ୍ଦୀପାଇଁ ଏହି ମଧ୍ୟବିତ୍ତ ସମାଜହିଁ ସ୍ୱାଧୀନତା ସଂଗ୍ରାମ ପାଇଁ ନେତୃତ୍ୱ ଯୋଗାଇଦେଲା । କେବଳ ରାଜନୀତି କ୍ଷେତ୍ରରେ ନୁହେଁ; ସାମାଜିକ, ଧାର୍ମିକ ଓ ସାଂସ୍କୃତିକ କ୍ଷେତ୍ରରେ ଯେଉଁ ପ୍ରଚଣ୍ଡ ବିପ୍ଳବର ସୂତ୍ରପାତ ହୋଇ ସମଗ୍ର ସମାଜକୁ ପ୍ଳାବିତ କରିଥିଲା, ତାହାର ପୁରୋଭାଗରେ ରହିଲା ଏହି ମଧ୍ୟବିତ୍ତ ସମାଜ ।

ମାର୍କ୍ସୀୟ ପରିଭାଷାରେ କୁହାଯାଉଥିବା ଏହି ବୁର୍ଜୋୟା ଓ ପେଟି ବୁର୍ଜୋୟା ଶ୍ରେଣୀ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେବାରୁ ଭାରତର ମୁକ୍ତି ସଂଗ୍ରାମରେ 'ସର୍ବହରା'ର ରାଜନୀତିକ ଦର୍ଶନ ପ୍ରତିଫଳିତ ହୋଇପାରିଲା ନାହିଁ ଏବଂ ତା'ର ପ୍ରତିକ୍ରିୟା ଓ ପରିଣାମ ସ୍ୱାଧୀନୋତ୍ତର ଭାରତବାସୀଙ୍କୁ ଭୋଗ କରିବାକୁ ପଡ଼ିଲା । ସାମ୍ୟବାଦର ବୈଜ୍ଞାନିକ ବିଶ୍ଳେଷଣ ଆମର ସ୍ୱାଧୀନତା ସଂଗ୍ରାମରେ ଅଭାବ ଥିବାରୁ ସାମ୍ୟବାଦ ଦର୍ଶନର ବିକାଶଲାଭ ସଂଭବ ହେଲା ନାହିଁ । ''କଂଗ୍ରେସ'' ସେ ଯୁଗର ଶ୍ରେଷ୍ଠ ଘଟଣା ।

ତଥାପି କୃଷକ ଓ ଶ୍ରମିକ ସମାଜ ଯେ ଜାତୀୟ ଆନ୍ଦୋଳନରୁ ସଂପୂର୍ଣ୍ଣ ଅଲଗା ରହିଥିଲା ଏହା କୁହାଯାଇ ପାରିବ ନାହିଁ । ୧୮୫୯-୬୦ ନୀଳଚାଷୀ ଆନ୍ଦୋଳନ ସେ ଯୁଗରେ ସବୁଠାରୁ ବଡ଼ କୃଷକ ଆନ୍ଦୋଳନ । ବିଦେଶୀ ନୀଳ ଉତ୍ପାଦନକାରୀମାନେ ନୀଳଚାଷୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ଭାରତୀୟ କୃଷକମାନଙ୍କୁ ନୀଳଚାଷ କରିବାକୁ ବାଧ୍ୟକରାଯାଉଥିଲାଏବଂ ଏହାର ମୂଲ୍ୟ ନିର୍ଦ୍ଧାରଣର ସଂପୂର୍ଣ୍ଣ ଅଧିକାର ଥିଲା ବିଦେଶୀ ନୀଳବ୍ୟବସାୟୀମାନଙ୍କ ଉପରେ । ଔପନିବେଶିକ ଶୋଷଣରଏହି ନିର୍ମମ ବ୍ୟବସ୍ଥାର ନୀଳଚାଷୀମାନେ ସଶସ୍ତ୍ର ବିଦ୍ରୋହ ଘୋଷଣାକଲେ । ସଶସ୍ତ୍ର ମୁକ୍ତିସଂଗ୍ରାମର ଲମ୍ବା ଇତିହାସରେ ଏହି ନୀଳଚାଷୀ ବିଦ୍ରୋହ ଏକ ସ୍ମରଣୀୟ ମାଇଲଖୁଣ୍ଟ । ଚାଷୀମାନେ ନୀଳଚାଷ କରିବାକୁ ଯେ କେବଳ ଅସ୍ୱୀକାର କଲେ ସେତିକି ନୁହେଁ, ନୀଳବ୍ୟବସାୟୀମାନଙ୍କ ଉପରେ ସଶସ୍ତ୍ର ଚଢ଼ାଉ କଲେ । ବହୁ ଗୋରା ବ୍ୟବସାୟୀ ଚାଷୀ କ୍ରୋଧର ଶିକାର ହେଲେ । ଏହି ସମୟରେ ହିଁ ବଙ୍ଗଳା ନାଟ୍ୟକାର ଦୀନବନ୍ଧୁ ମିତ୍ରଙ୍କର ପ୍ରସିଦ୍ଧ 'ନୀଳଦର୍ପଣ' ନାଟକ ସୃଷ୍ଟି ହୋଇଥିଲା, ଯାହାକୁ ଅନ୍ୟତମ ବିଶ୍ୱବିଶ୍ରୁତ ବଙ୍ଗଳା କବି ମାଇକେଲ୍ ମଧୁସୂଦନ ଦତ୍ତ ଇଂରେଜୀରେ ଅନୁବାଦ କରିଥିଲେ । 'ନୀଳଦର୍ପଣ' ନାଟକ ଏକ ମହାନ୍ ରାଜନୈତିକ ଗ୍ରନ୍ଥରେ ପରିଣତ ହେଲା ଏବଂ ଏହା ବଙ୍ଗଳାର ମଧ୍ୟବିତ୍ତ ସମାଜକୁ ସଶସ୍ତ୍ର ମୁକ୍ତିସଂଗ୍ରାମ ଭିତରକୁ ଟାଣି ଆଣିଥିଲା । ଶେଷରେ ସରକାର ଏକ ତଦନ୍ତ କମିଶନ ବସାଇ ନୀଳ ଅତ୍ୟାଚାରର ପ୍ରତିବିଧାନ କରିବାକୁ ବାଧ୍ୟ ହେଲେ । ନୀଳ ଚାଷୀମାନଙ୍କର 'ସଶସ୍ତ୍ର ବିଦ୍ରୋହ' ସରକାରୀ କଳକୁ ଏମିତି ପ୍ରଭାବିତ କରିଥିଲା ଯେ ଲର୍ଡ଼ ମାକଲେଙ୍କ ଭଳି ବିଦ୍ୱାନ୍ ଲୋକ ମଧ୍ୟ ଏହି ଚାଷ ବ୍ୟବସ୍ଥାକୁ Predial Slavery ବୋଲି ଅଭିହିତ କଲେ । ଫରିଦ୍‌ପୁରର ଜନୈକ ମାଜିଷ୍ଟ୍ରେଟ୍ କମିଶନ ଆଗରେ ସାକ୍ଷ୍ୟଦେଇ ଏହାକୁ 'a system of blood shed' ବା ରକ୍ତପାତର ବ୍ୟବସ୍ଥା ବୋଲି କହିଲେ । ଭାଇସରାୟ ଲର୍ଡ଼ କ୍ୟାନିଂ ସ୍ୱୀକାର କଲେ, "It had caused him more anxiety than he had felt since the days of Delhi." (1) (ଦିଲ୍ଲୀ ପରେ ଏହାହିଁ ମୋତେ ସବୁଠାରୁ ବେଶୀ ଉଦ୍‌ବେଜିତ କରିଛି ।) ନୀଳବିଦ୍ରୋହ ସଫଳ ହେଲା,

1. Canning Papers– Canning to wood 30 October 1860.

ନୀଳ ଅତ୍ୟାଚାରର ସାମୟିକ ଅବସାନ ହେଲା । ୧୮୬୬ ଓ ୧୮୬୮ରେ ବିହାରର ଚମ୍ପାରଣ ଓ ଦରଭଙ୍ଗାରେ ମଧ୍ୟ ନୀଳବିଦ୍ରୋହ ହୋଇଥିଲା । ୧୮୮୩ ଓ ୧୮୮୯-୯୦ ମସିହାରେ ପୂର୍ବବଙ୍ଗର ଯଶହର ଜିଲ୍ଲାର କୃଷକମାନେ ସ୍ଥାନୀୟ ଜମିଦାର ଓ ସରକାର ବିରୋଧରେ ସଶସ୍ତ୍ର ବିଦ୍ରୋହ କରିଥିବା କଥା ସରକାରୀ କାଗଜପତ୍ରରୁ ଦେଖିବାକୁ ମିଳୁଛି ।

କିନ୍ତୁ ୧୮୭୦ ରୁ ୧୮୮୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପୂର୍ବବଙ୍ଗରେ ହୋଇଥିବା ସଶସ୍ତ୍ର କୃଷକ ବିଦ୍ରୋହ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଆନ୍ଦୋଳନ । ବଙ୍ଗର ଶକ୍ତିଶାଳୀ ଜମିଦାରମାନେ କୃଷକମାନଙ୍କ ଉପରେ ଯେଉଁ ଜୁଲମ, ବେଠି, ବେଗାରି ଅତ୍ୟଧିକ ଖଜଣା ଆଦାୟ ପ୍ରଭୃତି କରୁଥିଲେ ତା' ବିରୋଧରେ ଏହି ବ୍ୟାପକ 'କୃଷକ ବିପ୍ଳବ' ହୋଇଥିଲା । ସରକାର ସ୍ୱଭାବତଃ ଜମିଦାରମାନଙ୍କୁ ସାହାଯ୍ୟ ସମର୍ଥନ କରୁଥିବାରୁ କୃଷକମାନେ ଉଗ୍ର-ସରକାରୀ-ବିରୋଧୀ ମଧ ହୋଇଯାଇଥିଲେ । ଜମିଦାର ଦେବୀ ସିଂହଙ୍କ ବିରୋଧରେ କୃଷକମାନଙ୍କର ଅସଂଖ୍ୟ ଅଭିଯୋଗ ଥିଲା । ୧୮୭୨ ରୁ ୭୬ ପର୍ଯ୍ୟନ୍ତ କୃଷକମାନେ ଖଜଣା ବନ୍ଦ କରିବା ସଙ୍ଗେ ସଙ୍ଗେ ଜମିଦାର ଓ ସରକାରୀ କର୍ମଚାରୀମାନଙ୍କ ଉପରେ ସଶସ୍ତ୍ର ଆକ୍ରମଣ କରିଥିଲେ । ସରକାର ଶେଷରେ ବାଧ ହୋଇ କୃଷକମାନଙ୍କର ଦାବି ଅନୁସାରେ ବିଭିନ୍ନ ଆଇନ ପ୍ରଣୟନ କରିବାରୁ ଏହି ଆନ୍ଦୋଳନ ସାମୟିକଭାବେ ବନ୍ଦହୋଇଥିଲା । ବଙ୍ଗଳାର ବୁଦ୍ଧିଜୀବୀ ଓ ମଧ୍ୟବିତ୍ତ ଶ୍ରେଣୀ ଏହି ଆନ୍ଦୋଳନ ଫଳରେ ଜାତୀୟ ଆନ୍ଦୋଳନର ଅଧିକ ନିକଟବର୍ତ୍ତୀ ହୋଇଥିଲେ ।

ବଙ୍ଗଳାକୁ ଛାଡ଼ିଦେଲେ ଏକମାତ୍ର ମହାରାଷ୍ଟ୍ରରେହିଁ ସେହିଭଳି ବ୍ୟାପକ କୃଷକ ବିଦ୍ରୋହ ସଂଘଟିତ ହୋଇଥିବାର ଦେଖାଯାଉଛି । ସମ୍ଭବତଃ ସେହି କାରଣରୁହିଁ ପରବର୍ତ୍ତୀ ଯୁଗରେ ବଙ୍ଗଳା ଓ ମହାରାଷ୍ଟ୍ର ସଶସ୍ତ୍ର ମୁକ୍ତିସଂଗ୍ରାମ ତଥା ଜାତୀୟ ଆନ୍ଦୋଳନର ପୁରୋଭାଗରେ ଦଣ୍ଡାୟମାନ ହୋଇଥିଲେ । ୧୮୭୫ ଖ୍ରୀଷ୍ଟାବ୍ଦର ପୁନା ଓ ଅହମ୍ମଦନଗରର କୃଷକ ବିଦ୍ରୋହର ପରିଣତି ସେହି ଦୃଷ୍ଟିରୁ ସୁଦୂରପ୍ରସାରୀ ବୋଲି କୁହାଯାଇପାରେ । ମହାରାଷ୍ଟ୍ରରେ ଇଂରେଜମାନେ ପ୍ରବର୍ତ୍ତନ କରିଥିବା ରୟତୱାରି ଭୂମି ବ୍ୟବସ୍ଥା ଏହି ଅସନ୍ତୋଷର କାରଣ ହୋଇଥିଲା । ସରକାର ସିଧା ସିଧା କୃଷକମାନଙ୍କ ଉପରେ ରାଜସ୍ୱ ଧାର୍ଯ୍ୟ କରିଥିଲେ । କିନ୍ତୁ ଏହି ରାଜସ୍ୱର ପରିମାଣ ଏତେ ବେଶୀ ଥିଲା ଯେ ତାହା ନିୟମିତ ପଇଠ କରିବା କୃଷକମାନଙ୍କ ପକ୍ଷରେ ସମ୍ଭବ ହେଉ ନ ଥିଲା । ଫଳରେ କୃଷକମାନଙ୍କୁ ଗ୍ରାମ୍ୟ ମହାଜନ ଓ ସାହୁକାରମାନଙ୍କର ଦ୍ୱାରସ୍ଥ ହେବାକୁ ପଡୁଥିଲା । ମହାଜନମାନେ ତତ୍କାଳୀନ ମହାଜନ ଆଇନର ସୁବିଧାନେଇ ଯଥେଚ୍ଛା ସୁଧ ଆଦାୟ କରୁଥିଲେ ଏବଂ ତାହା ଶୁଝିବା କୃଷକମାନଙ୍କ ପକ୍ଷରେ ସର୍ବଦା ସମ୍ଭବ ହେଉ ନ ଥିଲା । ଫଳରେ ସେମାନେ ଜମିବାଡ଼ି ହରାଉଥିଲେ । ଏହି ଉପାୟରେ କ୍ରମେ ଅଧିକାଂଶ ଜମି ମହାଜନମାନଙ୍କର କୁକ୍ଷିଗତ ହେଲା ଏବଂ କୃଷକର ଆର୍ଥିକ ଦୁରବସ୍ଥା ଚରମ ସୀମାରେ ପହଞ୍ଚିଲା; ସହ୍ୟ କରିବାର ଶକ୍ତି ମଧ୍ୟ ଶେଷ ହୋଇଗଲା ।

୧୮୭୫ ମସିହାରେ କୃଷକମାନେ ପ୍ରକାଶ୍ୟ ବିଦ୍ରୋହ ଘୋଷଣା କଲେ । ମହାଜନମାନଙ୍କୁ ଯେ କେବଳ ଋଣ ପରିଶୋଧ ବନ୍ଦକରିଦିଆଗଲା ସେତିକି ନୁହେଁ; କୃଷକମାନେ ଅସ୍ତ୍ରଶସ୍ତ୍ର ଧରି ମହାଜନମାନଙ୍କ ଘରେ ପଶିଲେ । ଋଣପତ୍ର ଓ ଜମି ହସ୍ତାନ୍ତର ସଂପର୍କୀୟ କାଗଜପତ୍ର ଦଲିଲସବୁ ସେମାନଙ୍କ ଘରୁ ବଳପୂର୍ବକ ନେଇଆସି ପ୍ରକାଶ୍ୟ ସଭାରେ ଜାଳିଦେଲେ । ମହାଜନମାନଙ୍କୁ ହତ୍ୟା କଲେ ଏବଂ ଘରଦ୍ୱାର ଜାଳି, ପୋଡ଼ି ଛାରଖାର କରିଦେଲେ । ସମଗ୍ର ମହାରାଷ୍ଟ୍ରର ଗାଁଗହଳିରେ ଏହି ସଶସ୍ତ୍ର ବିଦ୍ରୋହ ବ୍ୟାପିଗଲା । ଏହା ଏତେ ଶକ୍ତିଶାଳୀ ଆନ୍ଦୋଳନ ଥିଲା ଯେ ସାଧାରଣ ବ୍ରିଟିଶ୍ ପୁଲିସ୍ ବାହିନୀ ମଧ୍ୟ ଏହାକୁ ଦମନ କରିବାକୁ ସମର୍ଥ ହେଲା ନାହିଁ । ଶେଷରେ ବାଧ୍ୟହୋଇ ସରକାର ସେଠାରେ ସେନାବାହିନୀ ଏପରିକି ଅଶ୍ୱାରୋହୀ ସୈନ୍ୟଙ୍କୁ ମଧ୍ୟ ପ୍ରୟୋଗ କଲା । କିନ୍ତୁ କେବଳ ବଳ ପ୍ରୟୋଗଦ୍ୱାରା ଏହି ଅସନ୍ତୋଷ ଦୂର ହେବା ସମ୍ଭବ ହେଉ ନ ଥିବାରୁ ମହାଜନ ଓ ସରକାରୀ ଭୂ-ରାଜସ୍ୱର ବୋଝ ଲାଘବ କରିବାକୁ ସରକାର ବିଭିନ୍ନ ଆଇନ ପ୍ରଣୟନ କଲେ । ବଙ୍ଗଳା ଭଳି ମହାରାଷ୍ଟ୍ରର ମଧ୍ୟବିତ୍ତ ବୁଦ୍ଧିଜୀବୀ ସମାଜ ମଧ୍ୟ ଏହି ବିଦ୍ରୋହ ପ୍ରତି ଆକୃଷ୍ଟ ହୋଇଥିଲା । ୧୮୩୬ ରୁ ୧୮୫୪ ଭିତରେ ହୋଇଥିବା କେରଳର ମାଲବାର ଜିଲ୍ଲାର 'ମାପଲା ବିଦ୍ରୋହ' ପୂର୍ବ ଖଣ୍ଡରେ ବର୍ଣ୍ଣିତ ହୋଇଅଛି । 'ମାପଲା'ମାନଙ୍କର ବିଦ୍ରୋହ ସେତେବେଳେ ସର୍ବମୋଟ ୨୨ ଥର ହୋଇଥିଲା । ପୁନର୍ବାର ୧୮୭୩ ରୁ ୧୮୮୦ ମସିହା ଭିତରେ ପାଞ୍ଚଥର ସେମାନଙ୍କର ବିଦ୍ରୋହାତ୍ମକ କାର୍ଯ୍ୟକଳାପ ସଂଘଟିତ ହୋଇଥିବାର ଜଣାଯାଏ ।

୧୮୯୩-୯୪ରେ ଆସାମ ସମତଳ ଅଞ୍ଚଳରେ ମଧ୍ୟ କୃଷକ ବିଦ୍ରୋହ ହୋଇଥିବା କଥା ସରକାରୀ ରେକର୍ଡ଼ରୁ ଜଣାଯାଉଛି । କୃଷକମାନେ ଅଧିକ ହାରରେ ଖଜଣା ଦେବାକୁ ମନାକରିଦେବାରୁ ସରକାରୀ କଳ ସହ ସେମାନଙ୍କର ସଂଘର୍ଷ ହୋଇଥିଲା । ପୁଲିସ୍ ଓ ସେନାବାହିନୀ ସାହାଯ୍ୟରେ ଏହି ବିଦ୍ରୋହ ଦମନ କରାହୋଇଥିଲା । କିନ୍ତୁ ହଜାର ହଜାର କୃଷକ ବୀର ଭାବରେ ପୁଲିସ୍ ଗୁଳିର ସମ୍ମୁଖୀନ ହୋଇଥିଲେ ।

ସଶସ୍ତ୍ର ମୁକ୍ତିସଂଗ୍ରାମର ପରବର୍ତ୍ତୀ ପର୍ବର ଉଦ୍‌ଯୋଗ ଅଧ୍ୟାୟରେ 'କୃଷକ-ଶ୍ରମିକ' ସମାଜର ଏହି ରକ୍ତଦାନ ଓ ଅଲୌକିକ ସାହସକୁ ବିସ୍ମୃତ ହେଲେ ଚଳିବ ନାହିଁ ।

### ମହାରାଷ୍ଟ୍ରରେ ବିଦ୍ରୋହର ଝଲକ :

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭାରତୀୟମାନେ କ୍ରମେ ମଧ୍ୟ-ଯୁଗୀୟ ରକ୍ଷଣଶୀଳ ଚିନ୍ତାଧାରାରୁ ମୁକ୍ତହୋଇ ଜାତୀୟତା ଭାବରେ ପ୍ରଣୋଦିତ ହେବାକୁ ଆରମ୍ଭ କରିଥିଲେ ମଧ୍ୟ ଓ ବ୍ରିଟିଶ୍ ସାମ୍ରାଜ୍ୟବାଦ ଉନ୍ନତି ଓ ଐଶ୍ୱର୍ଯ୍ୟର ଚୂଡ଼ାନ୍ତ ଶିଖରରେ ପହଞ୍ଚି ଥିଲେ ସୁଦ୍ଧା, ଭାରତୀୟମାନଙ୍କର ଜାତ୍ୟାଭିମାନ ଏବଂ ଆତ୍ମ-ଗୌରବବୋଧ ମ୍ଳାନ ପଡ଼ିଲା ନାହିଁ । ଭାରତୀୟ ସଭ୍ୟତା ଓ ସାମରିକ ଶକ୍ତିର ଗୌରବମୟ ଅତୀତକୁ

ସେମାନେ ନୂଆକରି ସ୍ମରଣ କରିବାକୁ ଲାଗିଲେ । ନୂତନ ବୁଦ୍ଧିଜୀବୀ ମଧ୍ୟବିତ୍ତ ସମାଜ ଗୌରବମୟ ଇତିହାସକୁ ନୂତନ କରି ବ୍ୟାଖ୍ୟା କଲେ । କିନ୍ତୁ ତା ସଂଗେ ସଂଗେ ଏହା ମଧ୍ୟ ଭାରତୀୟ ଉପଲବ୍ଧି କଲା ଯେ କେବଳ ପୁରାତନ ଓ ଜୀର୍ଣ୍ଣ ଅତୀତ ଗୌରବକୁ ରୋମନ୍ଥନକରି କୌଣସି ଜାତି କେଉଁ ଅଗ୍ରଗତି କରିପାରେ ନାହିଁ । ସେଥିପାଇଁ ଓ ଖାସ୍ କରି ଏକ ସୁଦୃଢ଼ ବିଦେଶୀ ଶକ୍ତି ବିରୋଧରେ ସ୍ୱର ଉତ୍ତୋଳନ କରିବା ପାଇଁ ପ୍ରଭୂତ ଆତ୍ମଶକ୍ତିରେ ବଳୀୟାନ ହେବାକୁ ପଡ଼ିବ । ଏ କଥା ମଧ୍ୟ ଭାରତୀୟମାନେ ଉପଲବ୍ଧି କଲେ ଯେ ସେମାନଙ୍କର ଶାସକ ଆସନରେ ବସିଥିବା ବ୍ରିଟିଶ୍ ଜାତି ସଭ୍ୟତା, ସଂସ୍କୃତି, କଳା ଏପରିକି ଐଶ୍ୱର୍ଯ୍ୟରେ ମଧ୍ୟ ଭାରତୀୟମାନଙ୍କ ଅପେକ୍ଷା କୌଣସି ଗୁଣରେ ଗରୀୟାନ ନୁହେଁ । ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ, ''ଯେତେବେଳେ ଭାରତୀୟ ଆର୍ଯ୍ୟଋଷିମାନେ ବେଦ, ଉପନିଷଦ ଭଳି ମହାନ୍ ଦାର୍ଶନିକ ଗ୍ରନ୍ଥ ରଚନା କରୁଥିଲେ, ସେତେବେଳେ ୟୁରୋପୀୟାନମାନେ ବଣ ଜଙ୍ଗଲରେ ଆଦିମ ଅଧିବାସୀର ଜୀବନ ଯାପନ କରି ଦେହକୁ ଚିତ୍ର ବିଚିତ୍ର କରୁଥିଲେ ।'' ଭାରତୀୟମାନେ ସ୍ୱାମୀଜୀଙ୍କ କଣ୍ଠରୁ ଏହି ବଜ୍ରବାଣୀ ଶୁଣି ସମ୍ଭବତଃ ସେଦିନ ଚକିତ ଓ ସ୍ତମ୍ଭିତ ହୋଇଯାଇଥିଲେ । ଅପରପକ୍ଷେ ଇଂରେଜୀ ଶିକ୍ଷାର ମହତ୍ତ୍ୱ ପ୍ରତିପାଦିତ କରି ହିନ୍ଦୁସମାଜର ରକ୍ଷଣଶୀଳତା ଉପରେ ରାଜା ରାମମୋହନରାୟ ଯେତେବେଳେ କୁଠାରାଘାତ କଲେ ସେତେବେଳେ ମଧ୍ୟ ଭାରତୀୟଙ୍କ ମନରେ ଯୁଗପତ୍ ବିସ୍ମୟ ଓ କୌତୂହଳ ସୃଷ୍ଟି ହୋଇଥିବା ସ୍ୱାଭାବିକ । ସେଥିପାଇଁ ରାଜା ରାମମୋହନଙ୍କୁ ଭାରତୀୟ ନବଯୁଗର ପ୍ରଥମ ପ୍ରବକ୍ତା ଏବଂ ସ୍ୱାମୀଜୀଙ୍କୁ ଭାରତୀୟ ଜାତୀୟତାର ପ୍ରଥମ ପ୍ରବର୍ତ୍ତକ ବୋଲି କୁହାଯିବାରେ କୌଣସି ଅତିରଂଜନ ନାହିଁ ।

ଶକ୍ତି ପ୍ରୟୋଗଦ୍ୱାରା ଦେଶ ଅଧିକାର କରାଯାଇପାରେ, କିନ୍ତୁ ଏହି ଶକ୍ତି ସାହାଯ୍ୟରେ ଚିରଦିନ ସେହି ବିଜିତ ରାଜ୍ୟକୁ ଶାସନ କରିବା ଯେ ସମ୍ଭବ ନୁହେଁ, ଲୋକେ ଏହା ଉପଲବ୍ଧି କରିବାପାଇଁ ଅଧିକ ଦିନ ଲାଗିଲା ନାହିଁ । ଜନ-ଅସନ୍ତୋଷକୁ ପାଶବିକ ବଳ ପ୍ରୟୋଗକରି ଦବେଇଦେଲେ, ତାହା ଶତଗୁଣିତ ହୋଇ ଆତ୍ମପ୍ରକାଶ କରେ, ଏହାହିଁ ଐତିହାସିକ ସତ୍ୟ । ସୁତରାଂ ବିଦେଶୀ ଶାସନ ଭିତରେ ଏହାର ଧ୍ୱଂସର ଯେଉଁ ବୀଜ ଲୁକ୍କାୟିତ ହୋଇରହିଥିଲା, ଭିତରେ ଭିତରେ ତା'ର ଅଙ୍କୁରୋଦ୍‌ଗମ ହେବାକୁ ଲାଗିଲା ।

ନବଜାଗରଣର (Renaissance) କମ୍ପନ ପ୍ରଥମେ ବଂଗଳାରେ ଅନୁଭୂତ ହୋଇଥିଲେ ସୁଦ୍ଧା ମହାରାଷ୍ଟ୍ରରେହିଁ ଏହାର ପ୍ରଥମ ପ୍ରତିକ୍ରିୟା ଦେଖାଯାଇଥିଲା । ସେଥିପାଇଁ 'ନବଯୁଗ'ର ବିସ୍ତୃତ ଆଲୋଚନା କରିବା ପୂର୍ବରୁ ମହାରାଷ୍ଟ୍ରରେ ବିଦ୍ରୋହର ପ୍ରଥମ ଝଲକକୁ ନିରୀକ୍ଷଣ କରିବା ବାଞ୍ଛନୀୟ ।

୧୮୭୦ରେ ମହାରାଷ୍ଟ୍ରରେ ଗଠିତ ହେଲା 'ସାର୍ବଜନୀନ ସଭା' ଏବଂ ମହାଦେବ ଗୋବିନ୍ଦ ରାଣାଡ଼େ ଥିଲେ ଏହାର ମୁଖ୍ୟ ସଂଚାଳକ । ମୁଖ୍ୟତଃ ବ୍ୟବସାୟୀ, ଜମିଦାର

ଓ ବ୍ୟାଙ୍କର୍‌ମାନେ ଏହି ସଭାରେ ସଂଶ୍ଳିଷ୍ଟ ଥିଲେ; କିନ୍ତୁ ପରବର୍ତ୍ତୀ କାଳରେ 'ସାର୍ବଜନୀନ' ସଭା ଏକ ବୈପ୍ଳବିକ ସଂସ୍ଥାରେ ପରିଣତ ହେଲା ଏବଂ ଏହାକୁ କେନ୍ଦ୍ରକରି ମହାରାଷ୍ଟ୍ରରେ ଏକ ନୂତନ ବିପ୍ଳବୀ ଯୁବଗୋଷ୍ଠୀ ତିଆରିହେଲା ।

ବାସୁଦେବ ବଳବନ୍ତ ଫାଡ଼କେ, ମରହଟ୍ଟା ଜାତିର ଅନ୍ୟ ପାଞ୍ଚଜଣଙ୍କ ଭଳି ଆବାଲ୍ୟରୁ ଦେଶସେବାପାଇଁ ଉତ୍ସର୍ଗୀକୃତ । ସ୍ୱାଧୀନତାର ମୂଲ୍ୟ ସେମାନେ ବୁଝିଛନ୍ତି ଶିବାଜୀଙ୍କର ଉତ୍ତରାଧିକାରୀ ରୂପେ । ସୁତରାଂ ଇଂରେଜ ଶାସନ ଆରମ୍ଭରୁ ପ୍ରତ୍ୟେକ ମରହଟ୍ଟାବାସୀ ଏହି ଶାସନକୁ ସନ୍ଦେହ ଚକ୍ଷୁରେ ଦେଖିଆସିଛି । ବାସୁଦେବ ସେହି ବିପ୍ଳବୀ ମରହଟ୍ଟା ଆଦର୍ଶରେ ପୁଷ୍ଟ ଓ ସମୃଦ୍ଧ । ବିପ୍ଳବ ତାଙ୍କର ଅସ୍ଥିମଜ୍ଜାଗତ । ତାଙ୍କରି ନେତୃତ୍ୱରେ ଗଢ଼ିଉଠିଥିଲା ସେଦିନ ମହାରାଷ୍ଟ୍ରର ଉପଜାତି ସଂଗଠନ । ଅସ୍ତ୍ରଚାଳନାରେ ସିଦ୍ଧହସ୍ତ ତାଙ୍କର ଏହି ବିଦ୍ରୋହୀ ଦଳ ଆରମ୍ଭକଲେ ଚଢ଼ାଉ ଇଂରେଜ ଅଫିସ୍ ଓ ଅଫିସର୍‌ଙ୍କ ଉପରେ ଏବଂ ସେହି ଚଢ଼ାଉର ଶିକାର ହେଲେ କେତେ ଇଂରେଜ ହାକିମ ଓ ସେମାନଙ୍କର ସମର୍ଥକ । କିନ୍ତୁ ସେତିକିରେ ସନ୍ତୁଷ୍ଟ ନୁହନ୍ତି ବାସୁଦେବ । 'ବମ୍ବେ ଗଭର୍ଣ୍ଣର ରିଚାର୍ଡ଼ ଟେମ୍ପଲକୁ ଖତମ କରିବାକୁ ହେବ, ''ଖାଲି ସେତିକି ନୁହେଁ—'' ହତ୍ୟାକାରୀକୁ ଦିଆଯିବ ପାଞ୍ଚଶହ ଟଙ୍କା ପୁରସ୍କାର । ବାସୁଦେବଙ୍କର ଏହି ଦୃପ୍ତ ଘୋଷଣା ବିପ୍ଳବୀ ମହଲରେ ସୃଷ୍ଟିକଲା ଅଭୂତପୂର୍ବ ଆଲୋଡ଼ନ- ଅର୍ଥଲୋଭରେ ନୁହେଁ, ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିବାର ଏହି ଅପୂର୍ବ ସୁଯୋଗ ମିଳିଥିବାରୁ । କିନ୍ତୁ ବିଦ୍ରୋହୀମାନଙ୍କର ଯୋଜନା କାର୍ଯ୍ୟକାରୀ ହେବା ପୂର୍ବରୁ ଜୁଲାଇ ତିନି ତାରିଖ ୧୮୬୯ରେ ବାସୁଦେବ ହାଇଦ୍ରାବାଦରେ ବନ୍ଦୀ ହେଲେ ଏବଂ ବିଚାରରେ ପାଇଲେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡର ପୁରସ୍କାର । ୧୮୮୩ ଫେବୃୟାରୀ ୧୩ ତାରିଖରେ ନିର୍ବାସିତ ହେଲେ ଆଫ୍ରିକାର ଏଡ଼େନ ବନ୍ଦରର ଏକ ଲୌହ ପାଚେରି ଘେରା ବନ୍ଦୀଶାଳାକୁ । ସେହିଠାରେହିଁ ଦେହରକ୍ଷାକଲେ ବାସୁଦେବ । ବିଦେଶର ବନ୍ଦୀଶାଳାରେ ସହିଦତ୍ୱ ବରଣ କରିଥିବା ପ୍ରଥମ ଭାରତୀୟ ହେବାର ଗୌରବ ଅର୍ଜନ କଲେ ବାସୁଦେବ ବଳବନ୍ତ ଫାଡ଼କେ ।

ଫାଡ଼କେଙ୍କର ଏହି ଆକସ୍ମିକ ଆତ୍ମୋତ୍ସର୍ଗ ମହାରାଷ୍ଟ୍ରର ବିପ୍ଳବୀ ମହଲରେ ନୈରାଶ୍ୟ ଖେଳାଇଦେଇଥିଲେ ସୁଦ୍ଧା ସେମାନେ ଭାଙ୍ଗିପଡ଼ି ନ ଥିଲେ । କିନ୍ତୁ ସେମାନଙ୍କୁ ପୁଣି ସଂଗଠିତ କରିବା ପାଇଁ ଫାଡ଼କେଙ୍କ ପରେ ଅନ୍ୟ କେହି ସୁଦକ୍ଷ ସେନାପତି ନ ଥିବାରୁ ସେମାନଙ୍କ ବୈପ୍ଳବିକ ଚିନ୍ତାଧାରା ସ୍ତିମିତ ହୋଇଥିଲା ତାହା ନୁହେଁ । ମହାରାଷ୍ଟ୍ର ଇତିହାସର ଏହି ସଂକଟଜନକ ମୁହୂର୍ତ୍ତରେ ରାଜନୈତିକ ଆକାଶରେ ଆବିର୍ଭୂତ ହେଲେ ଏକ ନୂତନ ସୂର୍ଯ୍ୟ- ଲୋକମାନ୍ୟ ବାଲଗଙ୍ଗାଧର ତିଲକ, ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏକ ବିରାଟ ଓ ଅବିସ୍ମରଣୀୟ ବ୍ୟକ୍ତିତ୍ୱ । ତିଲକ ମହାରାଜାଙ୍କ ପରି ତେଜସ୍ୱୀ ପଣ୍ଡିତ, ବାଗ୍ମୀ ଓ ଆପୋଷହୀନ ବିପ୍ଳବୀ ପୃଥିବୀରେ ଅଦ୍ୱିତୀୟ ।

ତିଲକଙ୍କର ଅଗ୍ନିବର୍ଷୀଭାଷଣ ଓ ରଚନାରେ ପ୍ରକୃତରେ ଅଗ୍ନିବୃଷ୍ଟି ହେଉଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତିଲକଙ୍କ ନିର୍ଦ୍ଦେଶରେ ମହାରାଷ୍ଟ୍ରରେ ସର୍ବତ୍ର ପାଳିତହେଲା, ଶିବାଜୀଜୟନ୍ତୀ ଓ ଗଣପତି ପୂଜା । ଶିବାଜୀଙ୍କର ଗଭୀର ଦେଶାତ୍ମବୋଧ ଓ ନିର୍ଭୀକତା ସାଙ୍ଗକୁ ଗଣଚେତନା ସୃଷ୍ଟିହିଁ ଥିଲା ଏହି ଗଣଉତ୍ସବର ଉଦ୍ଦେଶ୍ୟ ଏବଂ ସେ ଉଦ୍ଦେଶ୍ୟ ଅକ୍ଷରେ ଅକ୍ଷରେ ସାର୍ଥକ ହେଲା । ମହାରାଷ୍ଟ୍ରରେ ସର୍ବତ୍ର ଦେଶପ୍ରେମର ବନ୍ୟା ବହିବାକୁ ଲାଗିଲା ।

ନିୟତିର କ୍ରୂର ପରିହାସ ଯେ ସେତିକିବେଳେ ମହାରାଷ୍ଟ୍ରରେ ଆରମ୍ଭ ହେଲା— ଭୟାବହ ମହାମାରୀ ପ୍ଲେଗ୍‌ରୋଗ । ବିଶେଷତଃ ବମ୍ବେ ଓ ପୁନା ସହରରେ ଅସଂଖ୍ୟ ଲୋକ ଅଚିକିତ୍ସା ଓ ଅସହାୟ ଭାବରେ ପ୍ରାଣତ୍ୟାଗ କଲେ । ଏହି ହୃଦୟହୀନ ବିଦେଶୀ ଶୋଷକ ଗୋଷ୍ଠୀର ନିଶ୍ଚେଷ୍ଟତା ଓ ଉଦାସୀନତା ଏହାକୁ ଅଧିକ ଭୟାବହ କରିଦେଲା । ପ୍ରତିଷେଧକ ନାମରେ ସରକାର ଯାହା କଲା ତାହା ଲୋକମାନଙ୍କୁ କରିଦେଲା ଆହୁରି ଅସହାୟ । ସରକାରୀ ପ୍ରତିକାରଜନିତ ଯନ୍ତ୍ରଣା ପ୍ଲେଗ୍‌ରୋଗର ଯନ୍ତ୍ରଣାଠାରୁ ବଳିଗଲା । ପୁଲିସ ସହାୟତାରେ ପ୍ଲେଗରୋଗାକ୍ରାନ୍ତ ବ୍ୟକ୍ତିମାନଙ୍କୁ ସହରରୁ ତଡ଼ିବା କାର୍ଯ୍ୟ ଆରମ୍ଭହେଲା । ପୁଲିସ ଓ ସ୍ୱାସ୍ଥ୍ୟବିଭାଗ କର୍ମଚାରୀମାନଙ୍କ ଭିତରେ ମାନବିକତାର ନାମଗନ୍ଧ ନ ଥିଲା । ସୁତରାଂ ରୋଗୀମାନଙ୍କୁ ବଳପୂର୍ବକ ପୁଲିସ ଗାଡ଼ିରେ ଭର୍ତ୍ତିକରି ଅନ୍ୟତ୍ର ପଠାଇଦିଆଗଲା । ଫଳରେ ମହାରାଷ୍ଟ୍ରରେ ସର୍ବତ୍ର ପ୍ଲେଗ୍‌ଜନିତ ଭୟ ଓ ପୁଲିସ୍ ଜୁଲମଜନିତ ଆତଙ୍କ ଭରିଗଲା । ସାରା ଦେଶରେ ପୁଲିସ୍‌ର ଏହି ଅମାନୁଷିକତା ବିରୋଧରେ ପ୍ରତିବାଦ ହେଲା । ଖାଲି ବମ୍ବେ କିମ୍ବା ପୁନା ନୁହେଁ— ଦିଲ୍ଲୀ, କଲିକତା ଏପରିକି ଖାସ୍ ବିଲାତର ଖବରକାଗଜସବୁ ଏହି ନିର୍ମମତା ବିରୋଧରେ ଅଗ୍ରଲେଖା ପ୍ରକାଶ କଲେ । ତଥାପି ସରକାରର ଚେତା ପଶିଲା ନାହିଁ । ପୁନାର ଶ୍ୱେତାଙ୍ଗ ଆଡ଼ମିନିଷ୍ଟ୍ରେଟ୍‌ର ମିଷ୍ଟର ର୍ୟାଣ୍ଡସଙ୍କ ଅଦୂରଦର୍ଶିତା ଓ ଭାରତୀୟମାନଙ୍କର ଜୀବନ ପ୍ରତି ଚରମ ଅବଜ୍ଞା ଥିଲା ଏହି ଲୋମହର୍ଷଣକାରୀ ଜୁଲମର ମୂଳକାରଣ । ସୁତରାଂ ତା' ବିରୋଧରେ ଜନମତ ଉତ୍‌କ୍ଷିପ୍ତ ହୋଇଉଠିଲା ।

ପୁନାର ଏକ ବ୍ରାହ୍ମଣ ପରିବାର – ଚାପେକାର ପରିବାର । ସେହି ଚାପେକାର ପରିବାରର ଏକ ସ୍ୱର୍ଣ୍ଣଗର୍ଭା ଜନନୀଙ୍କର ତିନିଗୋଟି ପୁତ୍ର ସନ୍ତାନ ଦାମୋଦର (ଜନ୍ମ-୧୮୬୯), ବାସୁଦେବ (୧୮୭୦), ବାଳକୃଷ୍ଣ (୧୮୭୩) । ପ୍ରତ୍ୟେକ ଆବାଲ୍ୟରୁ ଦେଶପ୍ରେମର ମହାନ୍ ବ୍ରତରେ ଉଦ୍‌ବୁଦ୍ଧ । ବିପ୍ଳବୀ ଫାଡ଼କେଙ୍କର ବିଦ୍ରୋହୀ ସଂଗଠନ ସହ ସମସ୍ତେ ସଂପୃକ୍ତ । ସପରିବାର ସଶସ୍ତ୍ର ବିଦ୍ରୋହ ଆଦର୍ଶରେ ମସଗୁଲ୍ । ଏଭଳି ଉଦାହରଣର ଯୋଡ଼ି ଅନ୍ୟ କେଉଁଠାରେ ସଚରାଚର ଦେଖାଯାଏନା । ସେମାନଙ୍କର ସହ ଆଉ ଜଣେ ଦୁର୍ଜ୍ଜୟ ବିପ୍ଳବୀ ଆସି ଜୁଟିଲେ— ମହାଦେବ ବିନାୟକ ରାଣାଡେ । ସୁନାରେ ସୋହାଗା ଭଳି ବିଦ୍ରୋହୀ ସଂସ୍ଥା ଦିନକୁ ଦିନ ହୋଇଉଠିଲା ଦୃଢ଼ ଓ ସଂଗଠିତ ।

ଏଥର ସମସ୍ତଙ୍କ ଲକ୍ଷ୍ୟସ୍ଥଳ ହେଲା ଆଡ଼ମିନିଷ୍ଟ୍ରେଟ୍‌ର ମିଷ୍ଟର ର୍ୟାଣ୍ଡ୍‌ସ । ର୍ୟାଣ୍ଡ୍‌ସର ଗତିବିଧି ଉପରେ ଲକ୍ଷ୍ୟ ରଖିବାକୁ ଓ ତାହାକୁ ଭଲକରି ଚିହ୍ନି ରଖିବାକୁ ଦାୟିତ୍ୱନେଲେ ବାସୁଦେବ ।

''ଯେକୌଣସିମତେ ର୍ୟାଣ୍ଡ୍‌ସର ବଜ୍ଜାତିକୁ ସ୍ତବ୍ଧକରିବାକୁ ହେବ,''– ଏହାହିଁ ଥିଲା ସେଦିନ ମହାରାଷ୍ଟ୍ରର ବିପ୍ଳବୀମାନଙ୍କର ଏକମାତ୍ର ସ୍ଲୋଗାନ । କାହାରି ମନରେ ଟିକିଏ ହେଲେ ସନ୍ଦେହ ନ ଥିଲା ଯେ ର୍ୟାଣ୍ଡ୍‌ସକୁ ହତ୍ୟାକଲେ ଭାରତର ସ୍ୱାଧୀନତା ସଂଗ୍ରାମର ସ୍ୱର୍ଣ୍ଣଫାଟକ ଉଦ୍‌ଘାଟିତ ହେବ । ରକ୍ତଦାନର ପ୍ରତିଦାନରେ ଯେଉଁ ସ୍ୱରାଜ୍ୟ ଆସିବ, ସେ ସ୍ୱରାଜ୍ୟ ହେବ ଆବାଳ-ବୃଦ୍ଧ-ବନିତାର ସ୍ୱରାଜ୍ୟ, ଆଚାଣ୍ଡାଳ ବ୍ରାହ୍ମଣର ସ୍ୱାଧୀନତା । କାରଣ ସ୍ୱାଧୀନତା ସଂଗ୍ରାମୀ ଦୃଷ୍ଟିରେ ର୍ୟାଣ୍ଡ୍‌ସ କେବଳ ଜଣେ ବ୍ୟକ୍ତି ବିଶେଷ ନ ଥିଲା; ସେ ଥିଲା ଅତ୍ୟାଚାରୀ ଇଂରେଜ ଶାସନର ପ୍ରତିଭୂ । ସ୍ୱାଧୀନତା ସଂଗ୍ରାମୀଙ୍କ ମନରେ ଟିକିଏ ହେଲେ ସଂଦେହ ନ ଥିଲା ଯେ ଗୋଟାଏ ର୍ୟାଣ୍ଡ୍‌ସର ନିଧନରେ ଶତ ଶତ ର୍ୟାଣ୍ଡ୍‌ସ ମନରେ ହୃତ୍‌କମ୍ପ ଜାତହେବ ଏବଂ ତା' ସାଙ୍ଗେ ସାଙ୍ଗେ କୋଟି କୋଟି ଭୀତତ୍ରସ୍ତ ଭାରତବାସୀଙ୍କ ମନରେ ସୃଷ୍ଟିହେବ ସାହସ ଓ ନିର୍ଭୀକତା । ଇଂରେଜମାନଙ୍କ ପ୍ରତି ଥିବା ଅହେତୁକ ଭୟ ମଧ୍ୟ ଦୂରହୋଇପାରିବ ଏହି ଗୋଟାଏ ଶ୍ୱେତାଙ୍ଗ ଶାସକକୁ ଖତମ କରି ପାରିଲେ । ସୁତରାଂ ଆଉ ବିଳମ୍ବ ଅସହ୍ୟ । 'ଫରଓ୍ୱାର୍ଡ୍ ମାର୍ଚ୍ଚ !'

୧୮୯୭ର ୨୨ ଜୁନ୍ । ପୁନାର ଭିକ୍ଟୋରିଆ ଜୁବୁଲି ହଲ୍‌ରେ ଏକ ଆଭିଜାତ୍ୟ ପୂର୍ଣ୍ଣ ସମାବେଶ । ମୁଖ୍ୟ ଅତିଥି ମିଷ୍ଟର ର୍ୟାଣ୍ଡ୍‌ସ । ସଶସ୍ତ୍ର ଦାମୋଦର, ବାଳକୃଷ୍ଣ ଓ ମହାଦେବ- ତିନିହେଁ ସେଠାରେ ଉପସ୍ଥିତ । କିନ୍ତୁ ନାଃ, ଏଠାରେ ସମ୍ଭବ ନୁହେଁ । ବଂଧୁକ ରେଞ୍ଜର ବାହାରେ ବସିଛି ର୍ୟାଣ୍ଡ୍‌ସ, ସୁତରାଂ ଅନ୍ୟ ରାସ୍ତା ଦେଖିବାକୁ ହେବ ।'' ଜୁବୁଲି ହଲ୍‌ରେ ଏହି କେତେଗୋଟି କଥା ଶେଷକରି ସେଠାରୁ ଫେରି ଆସିଲେ ତିନିଜଣଯାକ ବିପ୍ଳବୀ ।

ଜଗିଗଲେ ଫେରନ୍ତା ରାସ୍ତାରେ । ପ୍ରଥମେ ରହିଲେ ଦାମୋଦର, ଟିକିଏ ଦୂରରେ ଜଗିରହିଲେ ବାଳକୃଷ୍ଣ ଏବଂ ଆହୁରି ଦୂରରେ ମହାଦେବ ବିନାୟକ ରାଣାଡ଼େ । ଯଥାସମୟରେ ପ୍ରାୟ ଅର୍ଦ୍ଧରାତ୍ରିରେ ଫେରିଲା ର୍ୟାଣ୍ଡ୍‌ସ ଯୋଡ଼ିଘୋଡ଼ାଗାଡ଼ିରେ ନିଜ ବଙ୍ଗଳାକୁ । ଗୋପନ ସ୍ଥାନରୁ ବାହାରିଆସି ଗାଡ଼ି ପଛେ ପଛେ କିଛି ବାଟ ଦୌଡ଼ିଲେ ଦାମୋଦର । ଲକ୍ଷ୍ୟ ସ୍ଥିରକରି ଏବଂ ର୍ୟାଣ୍ଡ୍‌ସ ବୋଲି ନିଶ୍ଚିତ ହୋଇ ରିଭଲ୍‌ଭର ନଳୀଟା ର୍ୟାଣ୍ଡ୍‌ସ ପିଠିରେ ପ୍ରାୟ ଲଗାଇଦେଇ ଦାମୋଦର ଲାଗ ଲାଗ ଗୁଳି ଫୁଟାଇଲା । ଦୁଇଟିଯାକ ଗୁଳି ର୍ୟାଣ୍ଡ୍‌ସର ବକ୍ଷଭେଦକଲା । ର୍ୟାଣ୍ଡ୍‌ସ ଏକ ଆର୍ତ୍ତଚିତ୍କାର କରି ଗାଡ଼ି ଭିତରେ ଢଳିପଡ଼ିଲା । ସଂଗେ ସଂଗେ ଗାଡ଼ିବାଲା ଓ ଦେହରକ୍ଷୀ ଗାଡ଼ିକୁ ସେମିତି ଅସହାୟ ଅବସ୍ଥାରେ ଛାଡ଼ିଦେଇ କିଏ କୁଆଡ଼େ ଅନ୍ଧାରରେ ଅନ୍ତର୍ଦ୍ଧାନ ହେଲେ ।

ର୍ୟାଣ୍ଡ୍‌ସ ଗାଡ଼ିର ପଛେ ପଛେ ଛୁଟିଚ୍ଛି ଲେଫ୍‌ଟନାଣ୍ଟ ଆର୍ୟଷ୍ଟର ଗାଡ଼ି । ର୍ୟାଣ୍ଡ୍‌ସର ପ୍ରଧାନ ସହକାରୀ ମିଷ୍ଟର ଆର୍ୟଷ୍ଟ, ସୁତରାଂ ତାଙ୍କୁ ବି ଏହି ସୁଯୋଗରେ ଖତମ କରିବାକୁ ହେବ, କାରଣ ସେ ବି ଏକୁଟିଆ । କିନ୍ତୁ ଆର୍ୟଷ୍ଟଙ୍କୁ ସେପର୍ଯ୍ୟନ୍ତ ମାଲୁମ ନାହିଁ ଯେ ମାତ୍ର କେଇ ଗଜ ଦୂରରେ ଯାଉଥିବା ତା'ର ପ୍ରଭୁ ସେତେବେଳକୁ ଭୂଲୁଣ୍ଠିତ ହେଲାଣି । ଆର୍ୟଷ୍ଟ ଗାଡ଼ିକୁ ଫଲୋ କଲେ ବାଳକୃଷ୍ଣ । ଅଳ୍ପ କେଇ ସେକେଣ୍ଡ ଭିତରେ ଶୁଭିଲା ବାଳକୃଷ୍ଣର ନିର୍ମମ ରିଭଲଭରର ନିଷ୍ଠୁର ଗର୍ଜନ ଏବଂ ସେହି ଗର୍ଜନ ପଛେ ପଛେ ଶୁଭିଲା ପ୍ରତାପୀ ଆର୍ୟଷ୍ଟର ଅସହାୟ ଚିତ୍କାର ।

ହତ୍ୟାକାରୀ ସମସ୍ତେ ରାତ୍ରିର ଘନ ଅନ୍ଧକାର ଭିତରେ ଅନ୍ତର୍ଦ୍ଧାନ । ଏଭଳି ଏକ ଦୁଃସାହସିକ ହତ୍ୟାକାଣ୍ଡ ଘଟିବ ବୋଲି ସରକାରୀ ମହଲ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ସୁତରାଂ ଏହି ଖବରଟି ପ୍ରଚାରିତ ହୋଇଯିବା ସଙ୍ଗେ ସଙ୍ଗେ ସାରାଦେଶରେ ଘୋର ଆଲୋଡ଼ନ ଓ ଚାଞ୍ଚଲ୍ୟ ସୃଷ୍ଟିହେବା ସ୍ୱାଭାବିକ । ସଶସ୍ତ୍ର ମୁକ୍ତି ସଂଗ୍ରାମର ଦ୍ୱିତୀୟ ପର୍ବରେ ଏହି ପ୍ରଥମ ପାଞ୍ଚଜନ୍ୟ ଶବ୍ଦରେ ନିନାଦିତ ହୋଇଗଲା ଆକୁମାରୀ ହିମାଚଳର ଆକାଶ ବତାସ । ଧନ୍ୟ ମହାରାଷ୍ଟ୍ରର ବୀର ଯୋଦ୍ଧା ? ଦେଖାଇଲ ତୁମ୍ଭମାନେ ଏକ ଅଚିନ୍ତନୀୟ କାର୍ଯ୍ୟର ସଫଳ ରୂପାୟନ – "ନା, ଇଂରେଜ ଅଜେୟ ନୁହେଁ । ତଥାକଥିତ ବ୍ରିଟିଶ୍ ସିଂହ ଜୀବନ୍ତ ପଶୁରାଜ କେଶରୀ ନୁହେଁ; ନିଛକ କାଗଜ ତିଆରି ଛବି ମାତ୍ର ।"

ସାରା ଭାରତରେ ଖୋଜାଚାଲିଲା ଆତତାୟୀ ତିନିଜଣଙ୍କୁ । ଦୁଇଟି ହତ୍ୟାକାଣ୍ଡର ପ୍ରକୃତି, ପରିବେଶ ଓ ପରିଣତିକୁ ବିଶ୍ଳେଷଣ କରି ଏବଂ ଗାଡ଼ିବାଲା ପ୍ରଭୃତିଙ୍କଠାରୁ ତଥ୍ୟ ସଂଗ୍ରହକରି ପୁଲିସ ନିଃସନ୍ଦେହ ହେଲା ଯେ ଏହି ହତ୍ୟାକାଣ୍ଡ ରାଜନୈତିକ ଏବଂ ଏହା ପଛରେ ଏକାଧିକ ବିପ୍ଳବୀଙ୍କ ହାତ ରହିଛି । ସୁତରାଂ ଯେକୌଣସିମତେ ଜବତ୍ କରିବାକୁ ହେବ ଏହି ବିପ୍ଳବୀ ଦଳକୁ ଏବଂ ସ୍ତବ୍ଧ କରିବାକୁ ହେବ ଏହି ବିପ୍ଳବୀ ପ୍ରଚେଷ୍ଟା ।

ଦୀର୍ଘ ତିନି ମାସ ଘଣ୍ଟାଚକଟା ପରେ ପ୍ରଥମେ ଧରାହେଲେ ବିପ୍ଳବୀ ଦାମୋଦର । ଧରାହେବା ସଙ୍ଗେ ସଙ୍ଗେ ସରକାର ତାଙ୍କର ବିଚାର ଆରମ୍ଭ କରିଦେଲା । ବିଚାର ପ୍ରହସନର ଫଳାଫଳ ଯାହା ହେବାର କଥା ସେୟା ହେଲା, ଅର୍ଥାତ୍ ଦାମୋଦରଙ୍କୁ ଫାଶୀଦଣ୍ଡ ଦିଆଗଲା । ଏଥିରେ ଦାମୋଦର ଡରିଯିବାର କୌଣସି କାରଣ ନ ଥିଲା । କାରଣ ସେ ବହୁଦିନୁ ଏଥିପାଇଁ ନିଜକୁ ପ୍ରସ୍ତୁତ କରିସାରିଥିଲେ । ସୁତରାଂ ତାଙ୍କର ତଥାକଥିତ ବିଚାରବେଳେ ସେ ଯେଉଁ ଦୃପ୍ତ ଜମାନବନ୍ଦୀ ଦେଇଥିଲେ ତାହା ଆମର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏକ ସ୍ମରଣୀୟ ଅଧ୍ୟାୟ । ଦାମୋଦରଙ୍କ ପରେ ପ୍ରାୟ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ ଅସଂଖ୍ୟ ମୁକ୍ତିସଂଗ୍ରାମୀ ତାଙ୍କ ପଦାଙ୍କ ଅନୁସରଣ କରି ସେଭଳି ନିର୍ଭୀକ ଉକ୍ତି ବିଚାରାଳୟରେ ପ୍ରକାଶ କରିଅଛନ୍ତି । ଏହି ଗ୍ରନ୍ଥଟି ସେହି

ପ୍ରାତଃସ୍ମରଣୀୟ ବିପ୍ଳବୀମାନଙ୍କ ଐତିହାସିକ ଜମାନବନ୍ଦୀରେ ପୂର୍ଣ୍ଣହୋଇରହିଛି । ୧୯୨୦ର ଅସହଯୋଗ ବା ୧୯୩୦ର ଲବଣ ସତ୍ୟାଗ୍ରହ ସମୟରେ ଗାନ୍ଧିଜୀଙ୍କ ଜମାନବନ୍ଦୀ ଯାହାକୁ କି ସକ୍ରେଟିସ୍‌ଙ୍କ ପରେ ଏକ ସ୍ମରଣୀୟ ଜମାନବନ୍ଦୀ ବୋଲି କୁହାଯାଉଅଛି, ତାହା ଯେ ଦାମୋଦରଙ୍କ ଭଳି ବିପ୍ଳବୀମାନଙ୍କର ଜମାନବନ୍ଦୀଦ୍ୱାରା ପ୍ରଭାବିତ ଓ ପୁଷ୍ଟ ତାହା ସପକ୍ଷରେ ଯଥେଷ୍ଟ ଯୁକ୍ତି ରହିଛି ।

କି ଜମାନବନ୍ଦୀ ଦେଇଥିଲେ ବିପ୍ଳବୀ ଦାମୋଦର ? କ'ଣ ଅନୁତାପ ଓ ଅନୁଶୋଚନାର ସ୍ୱୀକୃତି ନା ଅପରାଧର ସ୍ୱୀକାରୋକ୍ତି ? ନା, ସେଭଳି ହୀନ ଦେଶଦ୍ରୋହୀର ଭାଷା ଦାମୋଦର ଉଚ୍ଚାରଣ କରି ନ ଥିଲେ । ସେ ଯାହା କହିଥିଲେ ତାହା ନିର୍ଭୀକ ଦେଶସେବା ଓ ଉଜ୍ଜ୍ୱଳ ଦେଶପ୍ରେମରେ ଯେମିତି ଭାସ୍ୱର, ଆଗାମୀ ବିପ୍ଳବର ବାର୍ତ୍ତାବହମାନଙ୍କ ପାଇଁ ଓ ଦାମୋଦରଙ୍କର ଉତ୍ତରସାଧକମାନଙ୍କ ପାଇଁ ସେମିତି ପ୍ରେରଣାଦାୟକ ।

ଦାମୋଦର କହିଲେ, ''ରିଫର୍ମ (Reform)ବା ଆପୋଷରେ କେବେହେଁ ପ୍ରକୃତ ସ୍ୱାଧୀନତା ଆସେନା, ଯେଉଁ ସ୍ୱାଧୀନତା ଆସେ ତାହା ପରାଧୀନତାର ନାମାନ୍ତର ମାତ୍ର । ନତଜାନୁ ହୋଇ କେହି କେବେହେଁ ଆତ୍ମସମ୍ମାନ ଭିକ୍ଷା କରେ ନାହିଁ । ନିଜର ଶକ୍ତି ଓ ସାମର୍ଥ୍ୟର ବିନିମୟରେ ଆତ୍ମସମ୍ମାନ ଅର୍ଜନ କରାଯାଏ । ଇଂରେଜର ଅବିମୃଷ୍ୟକାରିତା ଯୋଗୁଁ ମୋର ଦେଶବାସୀ ଆଜି ସେମାନଙ୍କର ଆତ୍ମସମ୍ମାନ ଓ ମାନବିକ ମର୍ଯ୍ୟାଦା ହରାଇବସିଛନ୍ତି । ମୁଁ ଏହି ସଶସ୍ତ୍ର ଅଭିଯାନଦ୍ୱାରା ସେହି ହୃତ ମର୍ଯ୍ୟାଦାକୁ ଫେରାଇ ଆଣିବାକୁ ଉଦ୍ୟମ କରିଛି ମାତ୍ର । ମୋର ପରମ ଆନନ୍ଦ ଯେ ମୁଁ ସେହି ମହାନ୍ ଦାୟିତ୍ୱ ସଂପାଦନ କରିବାକୁ ଯାଇ ମୃତ୍ୟୁଦଣ୍ଡ ଭଳି ସର୍ବୋଚ୍ଚ ପୁରସ୍କାର ପାଇଅଛି – ହରହର ମହାଦେବ ।''

ଶ୍ରୀମଦ୍‌ଭଗବତ୍‌ଗୀତାର ଏକ ମରାଠୀ ସଂସ୍କରଣ ହାତରେ ଧରି ଦାମୋଦର ପରମ ଆନନ୍ଦରେ ଫାଶୀମଞ୍ଚକୁ ଆରୋହଣକଲେ । ଅନାଗତ ଶତ ଶତ ବିପ୍ଳବୀଙ୍କ ପାଇଁ ଫାଶୀଦ୍ୱାର ଉନ୍ମୋଚନ କରି ସହିଦ ଦାମୋଦର ଚାପେକାର ଦେହରକ୍ଷାକଲେ ଏକ ସୁନ୍ଦର ଶାନ୍ତ ପ୍ରଭାତରେ ପୁନାର ସେଣ୍ଟ୍ରାଲ ଜେଲରେ ।

ସରକାର କିନ୍ତୁ କେବଳ ତାଙ୍କୁ ଫାଶୀ ଦେଇ ସନ୍ତୁଷ୍ଟ ନୁହେଁ, ବିପ୍ଳବୀ ଦଳର ଅନ୍ୟମାନଙ୍କୁ ଖୋଜି ବାହାର କରିବାକୁ ସରକାରୀ ଉଦ୍ୟମର ଅନ୍ତ ନ ଥିଲା । ପ୍ରାୟ ଦୁଇବର୍ଷର ଅକ୍ଳାନ୍ତ ଚେଷ୍ଟା ପରେ ପୁଲିସ୍ ସନ୍ଧାନ ପାଇଲା ମଝିଆଁ ଭାଇ ବାଳକୃଷ୍ଣ ଚାପେକାରଙ୍କର- କିନ୍ତୁ ଖାସ୍ ବ୍ରିଟିଶ୍ ଭାରତରେ ନୁହେଁ, ପାଇଲା କରଦ ରାଜ୍ୟ ହାଇଦ୍ରାବାଦରେ । ହାଇଦ୍ରାବାଦର ନିଜାମ ଚିରଦିନ ବ୍ରିଟିଶ୍ ଭକ୍ତ - Faithfulally of the British Empire – ବ୍ରିଟିଶ୍ ସମ୍ରାଟଙ୍କର ବିଶ୍ୱସ୍ତବନ୍ଧୁ । ଏକ କରଦରାଜ୍ୟର ଆସାମୀକୁ ଆରେଷ୍ଟ କରିବା ଚୁକ୍ତି ଓ ସନନ୍ଦ ବିରୋଧୀ । କିନ୍ତୁ ଚତୁର ଇଂରେଜ ଓ

ଦେଶଦ୍ରୋହୀ ନିଜାମ ନିକଟରେ ଚୁକ୍ତିର ଖିଲାପ କରିବାକୁ ରାସ୍ତା ପ୍ରଶସ୍ତ ଥିଲା, ସୁତରାଂ ବାଳକୃଷ୍ଣକୁ ଧରିଦେବାକୁ ଯେଉଁ କୋଡ଼ିଏ ହଜାର ଟଙ୍କାର ପୁରସ୍କାର ବ୍ରିଟିଶ୍ ପୁଲିସ୍ ପୂର୍ବରୁ ଘୋଷଣା କରିଥିଲା, ତାକୁ ଦୁଇଭାଗ କରି ଦଶ ହଜାର ଟଙ୍କା ନିଜାମ ପୁଲିସ୍‌କୁ ଦିଆଗଲା ଏବଂ ତାହାର ବିନିମୟରେ ହାଇଦ୍ରାବାଦର ନିଜାମ ନିର୍ଲଜ୍ଜ ଭାବେ ବିକ୍ରୟ କରିଦେଲା ଭାରତମାତାର ସେହି ବରପୁତ୍ର ବିପ୍ଳବୀ ବାଳକୃଷ୍ଣଙ୍କୁ । ତାଙ୍କୁ ଅଣାଗଲା ପୁନାର ସେଣ୍ଟ୍ରାଲ ଜେଲକୁ ।

ବଡ଼ଭାଇ ଦାମୋଦରଙ୍କର ଫାଶୀ ଓ ମଝିଆ ଭାଇ ବାଳକୃଷ୍ଣଙ୍କର ଆରେଷ୍ଟ ବିବ୍ରତ କରିଦେଲା ଚାପେକାର ପରିବାରର କନିଷ୍ଠ ସନ୍ତାନ ବାସୁଦେବଙ୍କୁ । ପ୍ରତିଶୋଧ ପିପାସାରେ ସେ ଅଥୟ ହୋଇପଡ଼ିଲେ । ଅନ୍ୟତମ ବିପ୍ଳବୀ ରାଣାଡ଼େ ମଧ୍ୟ ଥୟଧରି ପାରିଲେ ନାହିଁ । ଅତି ଅଳ୍ପ ବୟସରୁ ମହାଦେବ ବିନାୟକ ରାଣାଡ଼େ ପୁନାର ସରକାରୀ ଛାପାଖାନାରେ ଟ୍ରେନିଂ ପାଇଁ ଭର୍ତ୍ତି ହୋଇଥିଲେ ମଧ୍ୟ ତାଙ୍କର ପ୍ରକୃତ ଟ୍ରେନିଂ ଥିଲା ଅନ୍ୟଆଡ଼େ । ର୍ୟାଣ୍ଡସ ହତ୍ୟାକାଣ୍ଡ ପରେ ସେ ଟ୍ରେନିଂ ସେଣ୍ଟରରୁ ଫେରାର ହୋଇ ଯିବାରୁ ପୁଲିସ ତାଙ୍କୁ ସେହି ହତ୍ୟାକାଣ୍ଡରେ ଜଡ଼ିତ ବୋଲି ସଂଦେହ କଲା ଏବଂ ତାଙ୍କୁ ଧରିବାକୁ ଲାଗିପଡ଼ିଲା । ସୁତରାଂ ଉଭୟଙ୍କ ମନରେ ଦୃଢ଼ଧାରଣା ହେଲା ଯେକୌଣସି ମୁହୂର୍ତ୍ତରେ ସେମାନେ ଆରେଷ୍ଟ ହୋଇପାରନ୍ତି ଏବଂ ଶେଷ ସୁଦ୍ଧା ସେମାନଙ୍କୁ ଦାମୋଦରଙ୍କ ସହଯାତ୍ରୀ ହେବାକୁ ପଡ଼ିବ । କିନ୍ତୁ ତା' ପୂର୍ବରୁ ଆଉ ଦୁଇଟା ସୟତାନଙ୍କୁ ସଫାକରିବାକୁ ହେବ ।

କିଏ ସେହି ସୟତାନ ଦୁଇଜଣ ? ଜଣେ ହେଉଛନ୍ତି କୁଖ୍ୟାତ ଗଣେଶଶଙ୍କର ଦ୍ରେଭିଡ୍ ଓ ଅନ୍ୟଜଣକ ତାଙ୍କର ସାନଭାଇ ରାମଚନ୍ଦ୍ର ଦ୍ରେଭିଡ୍ । ପୁଲିସର ଦଲାଲୀ କରି କରି ଦିହକ ଗଲାଣି ଏବଂ ସେହି ଦଲାଲୀ ପଇସାରେ ଦ୍ରେଭିଡ୍ ବ୍ରଦର୍ସ ଚବିଶ ଘଣ୍ଟା ମଦ ଜୁଆରେ ମସଗୁଲ୍ । ଏହି ଦୁଇ ଭାଇଙ୍କର ସାହାଯ୍ୟ ମିଳି ନ ଥିଲେ ଦାମୋଦର ଓ ବାଳକୃଷ୍ଣଙ୍କୁ ଆରେଷ୍ଟ କରିବା କିମ୍ବା ଦାମୋଦରଙ୍କୁ ମୃତ୍ୟୁଦଣ୍ଡ ଦେବା ପୁଲିସ୍ ପକ୍ଷରେ କଦାପି ସମ୍ଭବ ହୋଇ ନ ଥାନ୍ତା । ସୁତରାଂ ଏ ଦୁଇଜଣ ଯେ ମୁକ୍ତିସଂଗ୍ରାମର ଶତ୍ରୁ, ଏଥିରେ ସନ୍ଦେହ କରିବାର କ'ଣ ଅଛି ?

ସେଦିନ ରାତି ପ୍ରାୟ ଦଶଟା ହେବ । ଅମାବାସ୍ୟାର ନିବିଡ଼ ଅନ୍ଧକାର । ପୁନା ସହରତଳିର ଏହି ଅନ୍ଧକାର ଗଳିଟାକୁ ଆହୁରି ଅନ୍ଧାରିଆକରି ଦେଇଥାଏ । ରାମଚନ୍ଦ୍ର ଓ ଗଣେଶ କିନ୍ତୁ ସେ ଅନ୍ଧକାରକୁ ଲଣ୍ଠନ ଆଲୁଅରେ ଦୂର କରି ସେହି ଆଲୁଅରେ ତାସ ଖେଳରେ ମସ୍ତ ଥାନ୍ତି । ମଳିମୁଣ୍ଡିଆ ଗ୍ରାମବାସୀର ଛଦ୍ମବେଶରେ ପ୍ରବେଶ କଲେ ବାସୁଦେବ । "ଥାନା ଦାରୋଗାବାବୁ ଆପଣ ଦି'ଜଣଙ୍କୁ ଡକେଇଛନ୍ତି । କ'ଣ ଜରୁରୀ କଥାବାର୍ତ୍ତା ଅଛି, ଟିକେ ଶୀଘ୍ର ଯିବେ ।" ଅଭିନୟ କୁଶଳୀ ବାସୁଦେବ ହାତ ମଳି ମଳି ବିନମ୍ର ନିବେଦନ କଲେ ଦୁଇଭାଇଙ୍କୁ ।

ହଠାତ୍ ତାସ ଖେଳ ଉଷ୍ଣୁମଟା ଭାଙ୍ଗିଗଲା ଯେମିତି; କିନ୍ତୁ କାହାରି ମନରେ ଟିକିଏ ହେଲେ ସନ୍ଦେହ ହେଲା ନାହିଁ । ଏମିତି ରାତିଅଧରେ କେତେଥର ସେମାନଙ୍କୁ ଥାନାକୁ ଯିବାକୁ ପଡ଼େ । ଏଥିରେ ଆଉ ଭାବିବାର କ'ଣ ଅଛି ? ସରକାରବାହାଦୁରଙ୍କର ସାମାନ୍ୟ ସେବାଟିକେ କରିପାରିଲେ ସେମାନଙ୍କର ଜୀବନ ଧନ୍ୟହେବ ବୋଲି ସେମାନେ ଭାବନ୍ତି । ସେହି ସରକାର ବାହାଦୁରଙ୍କ ପାଇଁ ଏ 'ଧନ-ଜୀବନ ଓ ଯୌବନ' । ଏକାଥରେ ଦୁଇଭାଇଯାକ ଜବାବ ଦେଲେ, ''ଦାରୋଗାବାବୁ, ତ ? ଠିକ୍ ଅଛି, ପରବା ନାହିଁ ଭାଇସା'ବ । ଜରୁର ଯିବା, ତୁମେ ଯାଇ ଦାରୋଗାବାବୁଙ୍କୁ କୁହ ହେଇ ପହଞ୍ଚିଲୁ ବୋଲି— ବାସ୍ ।''

ବାସୁଦେବ ଚାଲିଗଲେ ସେମିତି ପଲ୍ଲୀବାସୀର ଅଭିନୟ କରି । ଦଶ ପନ୍ଦର ମିନିଟ୍ ଭିତରେ ପୋଷାକପତ୍ର ପିନ୍ଧି ବାହାରିପଡ଼ିଲେ ଦୁଇଭାଇ ଥାନା ଉଦ୍ଦେଶ୍ୟରେ । କିନ୍ତୁ ଏ କ'ଣ ହେଲା ? ବାରଣ୍ଡାରେ ଗୋଡ଼ ଦେଉ ନ ଦେଉଣୁ ଅନ୍ଧାର ଭିତରୁ ଗର୍ଜିଉଠିଲା ଦୁଇଟା ରିଭଲ୍‌ଭର ଦୁଇଜଣଙ୍କ ଛାତିକୁ ଲକ୍ଷ୍ୟ କରି ଏବଂ ଅବ୍ୟର୍ଥ ଗୁଳିମାଡ଼ରେ ଦୁଇଭାଇ ଆର୍ତ୍ତଚିତ୍କାର କରି ସେଇଠି ବାରଣ୍ଡାରେ ଓଲଟି ପଡ଼ିଲେ । ଗୁଳି ଶବ୍ଦ ଶୁଣି ଘରଲୋକମାନେ ସେଠାରେ ପହଞ୍ଚିବାର ବହୁପୂର୍ବରୁ ହତ୍ୟାକାରୀ ପବନରେ ଯେମିତି ଅନ୍ତର୍ଦ୍ଧାନ ହୋଇଗଲେ ।

ରାମଚନ୍ଦ୍ର ସଙ୍ଗେ ସଙ୍ଗେ ମୃତ୍ୟୁବରଣ କରିଥିଲେ । ଗଣେଶ ଶେଷନିଶ୍ୱାସ ତ୍ୟାଗକରିବାକୁ ଆଉ କେତେ ମିନିଟ୍ ସମୟ ଲାଗିଲା । ଯାହାହେଉ, ରାତିପାହିଲାବେଳକୁ ଦୁଇ ଦଲାଲ ବ୍ରିଟିଶ ସମ୍ରାଟଙ୍କ ଦୁଇଟିଯାକ ଦୁଲାଳଙ୍କ ଶବକୁ ଅଣାଗଲା ଥାନାକୁ । ଚାଲିଲା ହତ୍ୟାକାରୀମାନଙ୍କର ସନ୍ଧାନ ଏବଂ ଶେଷସୁଦ୍ଧା ଉଭୟ ବାସୁଦେବ ଓ ରାଣାଡ଼େ ଆରେଷ୍ଟ ହେଲେ ।

କିନ୍ତୁ ଆଶ୍ଚର୍ଯ୍ୟଜନକ ବିପ୍ଳବୀର ଜୀବନ, ଅଚିନ୍ତନୀୟ ସେମାନଙ୍କ ସାହସ, ଧୈର୍ଯ୍ୟ ଓ ନିର୍ଭୀକତା । ଥାନା ହାଜତ ଭିତରେ ଥାଇ ସୁଦ୍ଧା ବାସୁଦେବ ପୁଲିସ୍‌କୁ ହତ୍ୟା କରିବା ଉଦ୍ୟମରୁ ତିଳେ ହେଲେ ବିଚ୍ୟୁତ ହେଲେନାହିଁ । କି ଉପାୟରେ ଯେ ସେ ତାଙ୍କର ରିଭଲ୍‌ଭରକୁ ଥାନା ଭିତରକୁ ନେଇପାରିଥିଲେ, ତାହା ଭାବିଲେ ଅବାକ୍ ହେବାକୁ ହୁଏ । କିନ୍ତୁ ତାଙ୍କର ସେ ଦୁଃସାହସିକ ଉଦ୍ୟମ ସଫଳ ହେବା ପୂର୍ବରୁ ପୁଲିସ ତା'ର ସୁରାକ ପାଇ ରିଭଲ୍‌ଭରଟା ଜବତକରିନେଲା ।

ଚାଲିଲା ବିଚାରର ପ୍ରହସନ ଏବଂ ଶେଷରେ ଉଭୟଙ୍କୁ ଦିଆଗଲା ପ୍ରାଣଦଣ୍ଡର ପୁରସ୍କାର । ସେତେବେଳକୁ ବିପ୍ଳବୀ ବାଳକୃଷ୍ଣଙ୍କର ବିଚାର ମଧ୍ୟ ଶେଷ ହୋଇ ଯାଇଥିଲା । ଫଳରେ ଆଗପଛ ହୋଇ ତିନିଜଣଯାକ ପବିତ୍ର ଫାଶୀ ଖୁଣ୍ଟକୁ ଆରୋହଣ କଲେ ଅଗ୍ରଜ ଦାମୋଦରଙ୍କର ପଦାଙ୍କ ଅନୁସରଣ କରି । କିନ୍ତୁ ଫାଶୀ ପାଇବା ପୂର୍ବରୁ ଏହି ତିନିଜଣ ବିପ୍ଳବୀ ପୂର୍ବଗାମୀ ଦାମୋଦରଙ୍କ ଭଳି ନିର୍ଭୀକ ଜବାବ ଦେଇ ଭବିଷ୍ୟତ୍

ବଂଶଧରଙ୍କ ପାଇଁ ସେହି ଯେଉଁ ଉଜ୍ଜ୍ୱଳ ଆଦର୍ଶ ଓ ଦେଶାତ୍ମବୋଧର ପରାକାଷ୍ଠା ପ୍ରଦର୍ଶନ କରିଗଲେ ତାହା ଯେକୌଣସି ଦେଶରେ ମୁକ୍ତିସଂଗ୍ରାମର ଇତିହାସରେ ଗୋଟିଏ ଗୋଟିଏ ଗୌରବମଣ୍ଡିତ ଅଧ୍ୟାୟ ।

୧୮୯୮ ଏପ୍ରିଲ ୧୮ରେ ଦାମୋଦର, ମଇ ୮ ତାରିଖରେ ବାସୁଦେବ, ୧୮୯୯ ମଇ ୧୨ ତାରିଖରେ ବାଳକୃଷ୍ଣଙ୍କର ଅମୂଲ୍ୟ ଶରୀରକୁ ଆଲିଙ୍ଗନ କରି ପୁନା ସେଣ୍ଟ୍ରାଲ ଜେଲର ଫାଶୀଖୁଣ୍ଟ ଧନ୍ୟହେଲା ।

ହରି ଚାପେକାରଙ୍କର ତିନିଗୋଟିଯାକ ସନ୍ତାନଙ୍କୁ ଅଳ୍ପ କେତେଦିନର ବ୍ୟବଧାନରେ ଦେଶ ପାଇଁ ନିବେଦନ କରି ଚାପେକାର ପରିବାରକୁ କରିଗଲେ ନିଃସନ୍ତାନ । କିନ୍ତୁ ତାଙ୍କର ରକ୍ତଦାନରେ ପରବର୍ତ୍ତୀ ଯୁଗରେ ଯେଉଁ ହଜାର ହଜାର ମୃତ୍ୟୁପାଗଳ ବିପ୍ଳବୀ ଜନ୍ମଲାଭକଲେ, ସେମାନଙ୍କର ମହନୀୟ ଆତ୍ମତ୍ୟାଗରେ ଦୁଃଖିନୀ ଭାରତମାତା ବନ୍ଧନମୁକ୍ତ ହେଲା । ଧନ୍ୟ ତାଙ୍କର ଜନକ ଜନନୀ, ଯେଉଁ ଜନନୀ ଏଭଳି ବୀର ସନ୍ତାନମାନଙ୍କୁ ନିର୍ବିକାର ଚିତ୍ତରେ ଜନ୍ମଭୂମିର ପୂଜାପୀଠରେ ବଳି ଭାବରେ ସମର୍ପଣ କଲେ । ଗୋଟିଏ ପରିବାରର ସମସ୍ତ ପୁତ୍ରସନ୍ତାନ ମୁକ୍ତିସଂଗ୍ରାମରେ ଏଭଳି ସହିଦ ହେବାର ଉଦାହରଣ ଘେଁଷ ରାଜା ମୋଧୋ ସିଂଙ୍କ ପରିବାର ଛଡ଼ା ଅନ୍ୟତ୍ର କେଉଁଠି ମିଳିବା ଅସମ୍ଭବ ।

ସମ୍ଭବତଃ ଏହି କାରଣରୁହିଁ ସ୍ୱାମୀ ବିବେକାନନ୍ଦଙ୍କର ମାନସକନ୍ୟା ବିପ୍ଳବିଣୀ ସନ୍ନ୍ୟାସିନୀ ଭଗିନୀ ନିବେଦିତା ସୁଦୂର କଲିକତାରୁ ଦୌଡ଼ିଯାଇଥିଲେ ପୁନା ଚାପେକାର ଜନନୀଙ୍କର ଦର୍ଶନ ଲାଭ କରିବାକୁ । ନିବେଦିତାଙ୍କ ମାତୃହୃଦୟରେ ଅଜସ୍ର ପ୍ରଶ୍ନ- "କିଏ ସେ ଜନ୍ମଦାତ୍ରୀ ଯେ କି ନିଜର ତିନିଗୋଟି ପୁତ୍ର ସନ୍ତାନକୁ ଦେଶସେବା ପାଇଁ ବଳିଦେଇପାରିଲା ? କେତେ ଦୃଢ଼, କେତେ ସ୍ଥିତପ୍ରଜ୍ଞ ସେ, ଯେ କି ତିନିଗୋଟି ପୁତ୍ରସନ୍ତାନର ବିୟୋଗ ପରେ ମଧ୍ୟ ଧୈର୍ଯ୍ୟ ଧରି ରହିଛି ! କି ଉପାଦାନରେ ସେ ଗଢ଼ା ? କେଉଁ ମହାନ୍ ମନ୍ତ୍ରରେ ସେ ଦୀକ୍ଷିତ ? କେଉଁ କଠିନ ବ୍ରତରେ ସେ ବଳବତୀ ?

ନିବେଦିତା ଯାଇ ଦେଖିଲେ–ଚାପେକାର ବାସଭବନର ଅଭ୍ୟନ୍ତର ଗୃହରେ ଯୋଗାସନରେ ଉପବିଷ୍ଟା ସେହି ମହୀୟସୀ ମହିଳାଙ୍କୁ, ଏକ ବିରାଟ ଶିବ ପ୍ରତିକୃତି ସମ୍ମୁଖରେ । ଚକ୍ଷୁରେ ତାଙ୍କର କରୁଣାର ଜିଜ୍ଞାସା, ମୁଖମଣ୍ଡଳ ପରମତୃପ୍ତିରେ ଭାସ୍ୱର । ସମଗ୍ର ଶରୀରରେ ଯେମିତି ଏକ ସର୍ବତ୍ୟାଗିନୀ ସନ୍ନ୍ୟାସିନୀର ଆଧ୍ୟାତ୍ମିକ ସାଫଲ୍ୟଜନିତ ଉଜ୍ଜ୍ୱଳଛଟା । ମୁଗ୍ଧା ଓ ବିସ୍ମୟବିମୂଢ଼ା ନିବେଦିତା ଚାପେକାର ଜନନୀଙ୍କର ପାଦ ସ୍ପର୍ଶ କଲେ ।



## ଅଧ୍ୟାୟ - ଆଠ

# ମୁକ୍ତିସଂଗ୍ରାମର ନୂତନ ଯୁଗ

ପରାଧୀନତା ମନୁଷ୍ୟ ଜୀବନରେ ସବୁଠାରୁ ବଡ଼ ଅଭିଶାପ; ବିଶେଷତଃ ବିଜେତା ଯଦି ବିଦେଶୀ ଲୋକ ବା ଜାତିର ହୋଇଥାଏ । ମୋଗଲ ଓ ମୁସଲମାନମାନେ ଭାରତକୁ ଦୀର୍ଘଦିନ ନିଜ ଅଧୀନରେ ରଖିଥିଲେ ସତ୍ୟ, କିନ୍ତୁ ସେମାନେ ଆଉ ବିଦେଶୀ ହୋଇ ରହି ନ ଥିଲେ । ସେମାନେ ନିଜର ସଭ୍ୟତା, ସଂସ୍କୃତି ଓ ସ୍ୱାତନ୍ତ୍ର୍ୟକୁ ବିସର୍ଜନ ଦେଇ ଏ ଦେଶର ପାଣିପବନରେ ସଂପୂର୍ଣ୍ଣ ମିଶିଯାଇଥିଲେ । ସେଥିପାଇଁ ସେମାନଙ୍କ ବିରୋଧରେ ଭାରତୀୟମାନଙ୍କର ଅଭିଯୋଗ ସେତେ ତୀବ୍ର ନ ଥିଲା । ଥିଲେ, ମହାବିଦ୍ରୋହ ବେଳେ ବିପ୍ଳବୀମାନେ ମୋଗଲସମ୍ରାଟ ବାହାଦୁର ସାହାଙ୍କୁ ସ୍ୱାଧୀନ ଭାରତର ସମ୍ରାଟ ବୋଲି ସ୍ୱୀକାର କରି ନ ଥାନ୍ତେ । କିନ୍ତୁ ଇଂରେଜମାନେ ସେ ଶ୍ରେଣୀର ପ୍ରଭୁ ନ ଥିଲେ । ସେମାନେ ଦୀର୍ଘ ଦେଢ଼ଶହ ବର୍ଷକାଳ ଏ ଦେଶକୁ ଶାସନ କରିଥିଲେ ସୁଦ୍ଧା ମାତୃଭୂମି ଇଂଲଣ୍ଡ ସହ ସଂପର୍କ ତୁଟାଇ ନ ଥିଲେ । ବରଂ ମାତୃଭୂମି ଇଂଲଣ୍ଡର ସମୃଦ୍ଧି ପାଇଁ ଭାରତକୁ ସର୍ବାଧିକ ଶୋଷଣ କରିବା ସେମାନଙ୍କର ଏକମାତ୍ର ଧ୍ୟେୟ ଥିଲା । ଏହା ହିଁ ଯେକୌଣସି ସାମ୍ରାଜ୍ୟବାଦୀ ଶକ୍ତିର ସାଧାରଣ ଚରିତ୍ର । ଫଳରେ ଇଂରେଜମାନେ ଏ ଦେଶକୁ ଆସିବା ଦିନଠାରୁ ପୁଣି ବିଦାୟ ନେବା ପର୍ଯ୍ୟନ୍ତ ଏକ ବିଜାତୀୟ ବିଦ୍ରୂପ ଭଳି ଅପାଂକ୍ତେୟ ହୋଇ ରହିଲେ ।

ମନୁଷ୍ୟ ତାହାର ସ୍ୱାଧୀନତା ହରାଇଲେ ସବୁକିଛି ହରାଏ । ତା'ର ସୂକ୍ଷ୍ମ ମାନବୀୟ ବୃତ୍ତି ଲୋପପାଏ । ସେ ନୈତିକତାକୁ ଖାଇଦିଏ । ତାହାର ସମସ୍ତ ପ୍ରକାର ଉଦ୍ୟମଶୀଳତା ମଧ୍ୟ କ୍ରମେ ଲୋପପାଏ । ଇଂରେଜ ଶାସନ ତା'ର ସୁସଂଗଠିତ ଅମଲାତାନ୍ତ୍ରିକ ଶାସନ କଳ, ସାମ୍ରାଜ୍ୟବାଦୀ ଶୋଷଣଯନ୍ତ୍ରକୁ ଏଭଳି ନିପୁଣତା ସହକାରେ ଏ ଦେଶରେ ବିଛେଇ ଦେଇଥିଲା ଯେ କ୍ରମେ ଭାରତୀୟମାନେ ତା'ର ପ୍ରଭାବରେ ସମସ୍ତ ଶକ୍ତି ଓ ସାମର୍ଥ୍ୟ ହରାଇ ହୀନବୀର୍ଯ୍ୟ ହୋଇପଡ଼ିଲେ । ବାହାରକୁ ଶାନ୍ତି ଶୃଙ୍ଖଳା ପରିସ୍ଥିତି ଏଭଳି ଦିଶୁଥିଲା ଯେ ଲୋକେ କ୍ରମଶଃ ଭୁଲିଯିବାକୁ ଆରମ୍ଭ କଲେ ଯେ ସେମାନେ ଏକ ବୈଦେଶିକ ଶକ୍ତିଦ୍ୱାରା ପରାଜିତ ବୋଲି । ଦାରିଦ୍ର୍ୟ,

କ୍ଷୁଧା ଓ ଦୁର୍ଭିକ୍ଷ ପ୍ରଭୃତି ସାମ୍ରାଜ୍ୟବାଦୀ ଶୋଷଣର ଅବଶ୍ୟମ୍ଭାବୀ ପରିଣତି ଦେଶରେ ତା'ର କରାଳ ମୁଖ ବ୍ୟାଦାନ କରି ସବୁକିଛି ଗ୍ରାସକରିଗଲା । ଦାସସୁଲଭ ହୀନ ମନୋବୃତ୍ତି ଭାରତୀୟ ଜନଜୀବନକୁ ଆଛନ୍ନ କରିଦେଲା ଏବଂ ସେହି ଦାସତ୍ୱର ଲୌହଶୃଙ୍ଖଳରୁ ମୁକ୍ତ ହେବା ଅସମ୍ଭବ ବୋଲି ସେ ବିଚାରିବାକୁ ଲାଗିଲା ।

ଠିକ୍ ଏହି ସମୟରେ 'ମହାବିଦ୍ରୋହ'ର ଦାରୁଣ ଧକ୍କା ତାହାର ସ୍ୱପ୍ନଭଙ୍ଗ କରିଥିଲା । ଯେଉଁମାନେ 'ମହାବିଦ୍ରୋହ'ରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରି ସରକାରୀ କ୍ରୋଧର ଶିକାର ହୋଇଥିଲେ, ସେମାନେ ଯେମିତି ଉପଲବ୍ଧି କଲେ ଯେ ସ୍ୱାଧୀନତା ସେମାନଙ୍କର ଅବଶ୍ୟ ପ୍ରାପ୍ୟ ଏବଂ ସେଥିପାଇଁ ସେମାନଙ୍କୁ ଅଧିକ ମୂଲ୍ୟ ଦେବାକୁ ପଡ଼ିବ । ଯେଉଁମାନଙ୍କର 'ମହାବିଦ୍ରୋହ' ସହ କୌଣସି ସମ୍ପର୍କ ନ ଥିଲା ବା ଯେଉଁମାନେ ଏହି ମହାଆଲୋଡ଼ନ ପ୍ରତି ସଂପୂର୍ଣ୍ଣ ଉଦାସୀନ ଥିଲେ, ସେମାନେ ମଧ୍ୟ ଏହି ଧକ୍କାରୁ ରକ୍ଷା ପାଇପାରିଲେ ନାହିଁ ।

ଇଂରେଜୀ ଶିକ୍ଷାପ୍ରାପ୍ତ ମଧ୍ୟବିତ୍ତ ସମାଜ ଯେ କି ସାଧାରଣ ଭାବରେ 'ମହାବିଦ୍ରୋହ'ର ବିରୋଧୀ ଭୂମିକା, ଏପରିକି ଇଂରେଜ ଶାସନର ସମର୍ଥକ ଭୂମିକାରେ ଆଜିଯାଏ ରହିଆସିଥିଲେ, ସେମାନେ 'ମହାବିଦ୍ରୋହ' ଫଳରେ ଅଶ୍ୱସ୍ତି ଅନୁଭବ କଲେ ଏବଂ ଦେଶରେ ସ୍ୱାଧୀନତା ସଂଗ୍ରାମରୁ ସେମାନେ ଯେ ସଂପୂର୍ଣ୍ଣ ନିର୍ଲିପ୍ତ ହୋଇ ପାରିବେ ନାହିଁ, ଏହା କ୍ରମେ ଅଧିକରୁ ଅଧିକ ଉପଲବ୍ଧି କରିବାକୁ ଲାଗିଲେ ।

ସେହି ଉଦାସୀନ ଶ୍ରେଣୀ ଭିତରେ ଯେଉଁ ନୂତନ ଦାୟିତ୍ୱବୋଧ ସୃଷ୍ଟିହେଲା ତାହା ବିଂଶ ଶତାବ୍ଦୀର ପ୍ରଥମ ଦଶବର୍ଷକାଳ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଏବଂ ତାହା କ୍ରମେ ଏଭଳି ଉଗ୍ର ଓ ଉତ୍କଟ ଆକାର ଧାରଣ କଲା ଯେ ଇଂରେଜମାନଙ୍କୁ ଏ ଦେଶରୁ ବିଦାୟ ନେବାକୁ ପଚାଶଟା ବର୍ଷ ବି ଲାଗିଲା ନାହିଁ । ସେଥିପାଇଁ ଏହି ପ୍ରଥମ ଦଶକକୁ ଭାରତରେ ସ୍ୱାଧୀନତାସଂଗ୍ରାମର 'ନୂତନ ଯୁଗ' ବୋଲି କୁହାଯିବା କିଛି ଅତିରଞ୍ଜନ ନାହିଁ । ବିଶେଷତଃ 'ସଶସ୍ତ୍ର ମୁକ୍ତିସଂଗ୍ରାମ ଇତିହାସ'ରେ ଏହା ଗୁରୁତ୍ୱପୂର୍ଣ୍ଣ ସମୟ ।

ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀରେ ଇଂରେଜ ସାମ୍ରାଜ୍ୟବାଦ ଏବଂ ତା'ର ବ୍ୟବସାୟ ବାଣିଜ୍ୟ ଯେପରି ଉନ୍ନତିର ଚରମଶିଖରରେ ପହଞ୍ଚିଥିଲା, ବିଂଶ ଶତାବ୍ଦୀର ଆରମ୍ଭରେ ତା'ର ଅଧୋଗତି ଆରମ୍ଭ ହୋଇଗଲା । ବ୍ରିଟିଶ୍ ଶକ୍ତି ବିଶ୍ୱରେ ଆଉ ଅପ୍ରତିଦ୍ୱନ୍ଦ୍ୱୀ ହୋଇ ରହିଲା ନାହିଁ । ପୃଥିବୀର ପ୍ରାୟ ଅଧେ ଅଂଶରେ ଉପନିବେଶ କରି ମାଡ଼ିବସିଥିବା ଇଂରେଜମାନେ କ୍ରମେ କ୍ରମେ ଚାରିଆଡୁ ବିରୋଧର ସମ୍ମୁଖୀନ ହେବାକୁ ଲାଗିଲେ । ଫଳରେ ସେମାନେ ଔପନିବେଶକ ଶାସନକୁ ଆହୁରି ଦୃଢ଼ କରିବାକୁ ଉଦ୍ୟମ କଲେ, କାଳେ ଏହି ଜମିଦାରୀଗୁଡ଼ିକ ହାତରୁ ଖସିଯିବ, ଏହି ଆଶଙ୍କାରେ । ଭାରତ ଇଂରେଜ ସାମ୍ରାଜ୍ୟ ଭିତରେ ସବୁଠାରୁ ବଡ଼ ଓ ସମୃଦ୍ଧିଶାଳୀ ଉପନିବେଶ ହୋଇଥିବାରୁ ଏଠାରେ ଇଂରେଜ ଶାସନର ଦୃଢ଼ତାକୁ ସାମାନ୍ୟ କୋହଳ

କରିବାକୁ ସେମାନେ ପ୍ରସ୍ତୁତ ନ ଥିଲେ । କିନ୍ତୁ ଇତିହାସର ନିୟମ ଏହା ଯେ ପ୍ରତ୍ୟେକ କ୍ରିୟାର ସମାନ ଓ ବିପରୀତ ପ୍ରତିକ୍ରିୟା ହୋଇଥାଏ । ଏହା ମଧ୍ୟ ଏକ ବୈଜ୍ଞାନିକ ସିଦ୍ଧାନ୍ତ । ଫଳରେ ସାମ୍ରାଜ୍ୟବାଦୀ ଶୋଷଣ ଏ ଦେଶରେ ଯେତିକି ଯେତିକି ଉଗ୍ର ଆକାର ଧାରଣକଲା ଭାରତୀୟମାନଙ୍କ ଭିତରେ ଏହାର ବିରୋଧ ମଧ୍ୟ କ୍ରମେ କ୍ରମେ ସେତିକି ତୀବ୍ର ହେବାକୁ ଲାଗିଲା । ବିଶେଷତଃ ଇଂରେଜୀପଢୁଆ ଭାରତୀୟମାନେ କ୍ରମେ କ୍ରମେ ଦେଶର ଦୁରବସ୍ଥା ସମ୍ପର୍କରେ ଅଧିକରୁ ଅଧିକ ସଚେତନ ହେବାକୁ ଲାଗିଲେ । ପ୍ରଥମ ଅବସ୍ଥାରେ ଏହି ଆଧୁନିକ ଶିକ୍ଷାପ୍ରାପ୍ତ ଶ୍ରେଣୀଟି ଇଂରେଜ ଅଧୀନରେ ଭଲ ଚାକିରି ଖଣ୍ଡେ ପାଇବା କିମ୍ବା ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ସେମାନଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରି ସମୃଦ୍ଧ ହେବା ପ୍ରଭୃତି ନିଛକ ବ୍ୟକ୍ତିଗତ ସ୍ୱାର୍ଥସାଧନ ପାଇଁ ଚିନ୍ତିତ ଥିଲେ । ଦେଶର ସାମୂହିକ ସ୍ୱାର୍ଥ କଥା ଚିନ୍ତାକରିବା ପାଇଁ ହୁଏତ ସେତେବେଳେ ସେମାନଙ୍କର ଅବସର ନ ଥିଲା । କିନ୍ତୁ 'ମହାବିଦ୍ରୋହ'ର ବିଫଳତା ତଥା ବିଦ୍ରୋହୀମାନଙ୍କର ବ୍ୟକ୍ତିଗତ ବୀରତ୍ୱର ପରାକାଷ୍ଠାରେ ଅଭିଭୂତ ହୋଇ ସେମାନଙ୍କ ଦୃଷ୍ଟିକୋଣ ବଦଳିଗଲା । ବିଳମ୍ବରେ ହେଲେ ମଧ୍ୟ ପରାଧୀନ ଭାରତୀୟ ଉପଲବ୍ଧି କଲା ଯେ ଇଂରେଜ ଶାସନର ଲୌହଶୃଙ୍ଖଳରୁ ତାକୁ ଯେକୌଣସିମତେ ମୁକ୍ତ ହେବାକୁ ପଡ଼ିବ ଏବଂ ଦେଶର ହୃତଗୌରବ ଫେରାଇ ଆଣିବାକୁ ପଡ଼ିବ । ଏହିଭଳି ଭାବରେ ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରଥମ କେତେବର୍ଷ ଭିତରେ ଭାରତର ମୁକ୍ତିସଂଗ୍ରାମ ନୂଆ ମୋଡ଼ ନେଲା ।

କୌଣସି ବିପ୍ଳବ ବା ମୂଲ୍ୟବୋଧର ପରିବର୍ତ୍ତନ ଆପଣାଛାଏଁ ହୋଇଯାଏନାହିଁ । ସେହି ବିପ୍ଳବର ସହାୟକ ଏକ ପରିସ୍ଥିତି ଯେମିତି ଦରକାର, ସେଇଥିପାଇଁ ଏକ ନିର୍ଭୁଲ ଏବଂ ବୈଜ୍ଞାନିକ ରାଜନୈତିକ ଦର୍ଶନ ଏବଂ ସେହି ଦର୍ଶନର ବାହକ ମହାନ୍ ନେତୃତ୍ୱ ମଧ୍ୟ ସେମିତି ପ୍ରୟୋଜନ । ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମର ଇତିହାସର ଏହି ଘଡ଼ିସନ୍ଧି ସମୟରେ ବିପ୍ଳବ ପାଇଁ ଉପଯୋଗୀ ପରିସ୍ଥିତି ଯେ ଖାଲି ସୃଷ୍ଟିହୋଇଥିଲା ତାହା ନୁହେଁ; ସେତେବେଳେ ଭାରତର ଧର୍ମ, ସାହିତ୍ୟ, ଦର୍ଶନ ଓ ରାଜନୀତି କ୍ଷେତ୍ରରେ ବହୁ ଦିଗ୍‌ଦର୍ଶକ ଓ ଯୁଗପୁରୁଷମାନଙ୍କ ଆବିର୍ଭାବ ହୋଇ ସଶସ୍ତ୍ର ବିପ୍ଳବର ଗତି ତ୍ୱରାନ୍ୱିତ କରିଥିଲା । ବଙ୍ଗଦେଶ ଓ ମହାରାଷ୍ଟ୍ରରେ ଏହି ଯୁଗପ୍ରବର୍ତ୍ତକମାନଙ୍କ ଭିତରୁ ଅଧିକାଂଶ ଆବିର୍ଭୂତ ହୋଇଥିବାରୁ ପରବର୍ତ୍ତୀକାଳରେ ଏହି ଦୁଇଟି ରାଜ୍ୟହିଁ ସଶସ୍ତ୍ର-ବିପ୍ଳବର ପୁରୋଭାଗରେ ଦଣ୍ଡାୟମାନ ହୋଇଥିଲେ ଓ ତା'ର ପ୍ରଭାବରେ ସାରା ଭାରତବର୍ଷରେ ବିପ୍ଳବର ନିଆଁ ଜଳିଉଠିଥିଲା ।

ଭାରତୀୟ ନବଯୁଗର ବାର୍ତ୍ତାବହମାନଙ୍କ ତାଲିକା ଦୀର୍ଘ ଅଟେ । ସଶସ୍ତ୍ର ମୁକ୍ତିସଂଗ୍ରାମ କହିଲେ ଆଧୁନିକ ଯୁଗରେ ଯାହା ବୁଝାଯାଉଅଛି, ସେହି ଅର୍ଥରେ ନବଯୁଗ ବା ଜାଗରଣ ଯୁଗର (Renaissance) ମନୀଷୀମାନଙ୍କର ଅବଦାନ ସଶସ୍ତ୍ର ସଂଗ୍ରାମର ଦର୍ଶନକୁ

ସ୍ପଷ୍ଟ ନ କଲେ ବି ଭାରତୀୟ ଜାତୀୟତାର ପ୍ରବକ୍ତାର ଭୂମିକାରେ ସେମାନଙ୍କର ଅବଦାନ ସର୍ବବାଦୀସ୍ୱୀକୃତ । ପୃଥିବୀ ଇତିହାସରେ ଯେତେ ବିପ୍ଲବ ସଂଘଟିତ ହୋଇଛି ସମସ୍ତ ବିପ୍ଲବ ପଛରେ କେତେକ ଯୁଗସ୍ରଷ୍ଟା ମନୀଷୀଙ୍କର ଦର୍ଶନତତ୍ତ୍ୱର ଅବଦାନ ରହିଛି । ରୁଷୋ ବା ଭଲଟେୟାର ଜନ୍ମହୋଇ ନ ଥିଲେ ଫରାସୀ ବିପ୍ଲବ ଯେମିତି ସଫଳ ହୋଇନଥାନ୍ତା, ମାର୍କ୍ସ-ଏଙ୍ଗଲ୍‌ସ ବା ଲେନିନ୍‌ଙ୍କ ଦାର୍ଶନିକ ନେତୃତ୍ୱ ନ ମିଳିଥିଲେ ରୁଷିୟାର ବଲ୍‌ସେଭିକ୍ ବିପ୍ଲବ ମଧ୍ୟ ସ୍ୱପ୍ନର ବସ୍ତୁ ହୋଇ ରହିଥା'ନ୍ତା । ଜର୍ମାନୀ ବା ଇଟାଲୀ ବିପ୍ଲବ ସେହି ଦୃଷ୍ଟିରୁ ଗେଟ୍ ହେଗଲ ଓ ମାଜିନିଙ୍କଠାରେ ଚିରଋଣୀ । ଭାରତୀୟ ସଶସ୍ତ୍ର ବିପ୍ଲବ ମୁଖ୍ୟତଃ ସେହିଭଳି ବହୁ ଦାର୍ଶନିକଙ୍କର ମନୀଷାଦ୍ୱାରା ପୁଷ୍ଟ ହୋଇଛି । ସଶସ୍ତ୍ର ବିପ୍ଲବ ମୁଖ୍ୟତଃ ତିଲକ, ଅରବିନ୍ଦ ଓ ନେତାଜୀ ସୁଭାଷଙ୍କ ବୈପ୍ଲବିକ ଦର୍ଶନଦ୍ୱାରା ଅନୁପ୍ରାଣିତ ହୋଇଥିଲେ ମଧ୍ୟ ଏଥିରେ ରାଜା ରାମମୋହନଙ୍କଠାରୁ ଆରମ୍ଭ କରି ସ୍ୱାମୀ ବିବେକାନନ୍ଦଙ୍କ ପର୍ଯ୍ୟନ୍ତ ମନୀଷୀମାନଙ୍କ ଅବଦାନ୍ ଅସ୍ୱୀକାର କରିବାର ଉପାୟ ନାହିଁ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମହାରାଷ୍ଟ୍ରର ଗୋପାଳ ରାଓ ଦେଶମୁଖ, ଭାସ୍କର ପାଣ୍ଡୁରଙ୍ଗ ତାରଖାଡ଼କର୍, ବିଷ୍ଣୁକୃଷ୍ଣ ଚିପ୍ଲୁଙ୍କର, ମହାଦେବ ଗୋବିନ୍ଦ ରାଣାଡ଼େ ଓ ଗୋପାଳ ଗଣେଶ ଅଗରକର ଓ ପ୍ରାୟ ସେହି ସମୟରେ ବଙ୍ଗଳାର ବଙ୍କିମଚନ୍ଦ୍ର, ଦ୍ୱିଜେନ୍ଦ୍ର ଲାଲ ରାୟ, ଦୀନବନ୍ଧୁ ମିତ୍ର ପ୍ରଭୃତିଙ୍କ ସାହିତ୍ୟ ସାଧନା ଭାରତୀୟ ଜାତୀୟତାକୁ ଯେମିତି ନବଜୀବନ ଦାନକରିଥିଲା, ବିପ୍ଲବୀ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦଙ୍କର ଆଗ୍ନେୟ ଆହ୍ୱାନ ସେହିଭଳି ମୁମୂର୍ଷୁ ଭାରତୀୟଙ୍କ ଭିତରେ ଫେରାଇଆଣିଥିଲା ଆତ୍ମସମ୍ବିତ୍ ।

ସମ୍ଭବତଃ ବଙ୍କିମଚନ୍ଦ୍ରହିଁ ସର୍ବପ୍ରଥମେ ଦେଶକୁ ମା' ରୂପରେ ପୂଜା କରିବାକୁ ଭାରତବାସୀଙ୍କୁ ଶିଖାଇଲେ । ତାଙ୍କର ଦର୍ଶନତତ୍ତ୍ୱ ପାଶ୍ଚାତ୍ୟ ଦାର୍ଶନିକମାନଙ୍କଦ୍ୱାରା ବହୁଳାଂଶରେ ପ୍ରଭାବିତ ହୋଇଥିଲେ ମଧ୍ୟ 'ସ୍ୱଦେଶ ପ୍ରୀତି' କଥାଟାର ପ୍ରଚାର ତାଙ୍କରି ଦ୍ୱାରାହିଁ ହୋଇଥିଲା । ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ଆନନ୍ଦମଠ' (୧୮୮୧ ଖ୍ରୀ.) ପରବର୍ତ୍ତୀ ଯୁଗରେ ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ଦର୍ଶନ ଗ୍ରନ୍ଥରେ ପରିଣତ ହେଲା ।

**ତିଲକ :**

ଲୋକମାନ୍ୟ ତିଳକ କିନ୍ତୁ ସଶସ୍ତ୍ର ସଂଗ୍ରାମକୁ ପୁଷ୍ଟକଲେ । ଏହି ମହାରାଷ୍ଟ୍ରୀୟ ବ୍ରାହ୍ମଣ ତିଲକ ଆବାଲ୍ୟ ଉଗ୍ରଜାତୀୟବାଦୀ ଥିଲେ । ସେ ଜଣେ ପ୍ରତିଭାବାନ୍, ତୀକ୍ଷ୍ଣ ବୁଦ୍ଧିସଂପନ୍ନ ଅଧ୍ୟବସାୟୀ ଛାତ୍ର ଥିଲେ । ୧୮୭୬ରେ ବି.ଏ ପାସ୍ କରି ସେ ଆଇନ ଶାସ୍ତ୍ର ପଢ଼ିଲେ, କିନ୍ତୁ ମାତୃଭୂମିର ସ୍ୱାଧୀନତା ପାଇଁ ତାଙ୍କ ମନରେ ଯେଉଁ ଅସ୍ଥିରତା ଥିଲା ତାହା ତାଙ୍କୁ ଅଧିକଦିନ ପଢ଼ାଇ ଦେଲା ନାହିଁ । ମରହଟ୍ଟା ଜାତିର ବୀରତ୍ୱ ଓ ସ୍ୱାଧୀନତା ପିପାସାର ଇତିହାସ ତାଙ୍କୁ ପିଲାଦିନୁ ଅଭିଭୂତ କରିଦେଇଥିଲା । ପୁଣି 'ମହାବିଦ୍ରୋହ'ର ବିଫଳତା

ତାଙ୍କୁ କରିଦେଇଥିଲା ବିଚଳିତ । ସେ ଭାରତର ସ୍ୱାଧୀନତା ସଂଗ୍ରାମକୁ ନୂତନ ଛାଞ୍ଚରେ ପକାଇବାକୁ ଉଦ୍ୟମ ଆରମ୍ଭ କରିଦେଲେ । ରାଜା ରାମମୋହନ, କେଶବଚନ୍ଦ୍ର ସେନ, ଦୟାନନ୍ଦ, ବଙ୍କିମଚନ୍ଦ୍ର, ରାମକୃଷ୍ଣଓ ବିବେକାନନ୍ଦ ଭାରତର ଜାତୀୟ ଜୀବନକୁ ଯେଉଁ ଦିଗ୍‌ଦର୍ଶନ ଦେଇଥିଲେ, ସେଥିପ୍ରତି ତାଙ୍କର ଅଶେଷ ଶ୍ରଦ୍ଧା ଥିଲା । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପାଇଁ ଯୋଗ୍ୟତା ହାସଲ କରିବାକୁ ବ୍ୟକ୍ତିଜୀବନର ବିକାଶ ସର୍ବାଦୌ ଆବଶ୍ୟକ ଏବଂ ଏହି ବିକାଶପାଇଁ ଗଭୀର ଦାର୍ଶନିକ-ତତ୍ତ୍ୱର ଅନୁସନ୍ଧାନ ଅପରିହାର୍ଯ୍ୟ । ଏହି ଅନୁସନ୍ଧାନ କରୁ କରୁ ସେ ଶ୍ରୀମଦ୍‌ଭଗବତ୍‌ଗୀତା ନିକଟରେ ପହଞ୍ଚିଲେ । ତାଙ୍କୁ ଜଣାଗଲା ଯେ ଏକମାତ୍ର ଭଗବତ୍‌ଗୀତାର ନିର୍ଭୁଲ ବ୍ୟାଖ୍ୟା ଉପରେ ହିଁ ଭାରତର ସ୍ୱାଧୀନତା ସଂଗ୍ରାମର ସାଫଲ୍ୟ ନିର୍ଭର କରେ । କାରଣ ଭଗବତ୍‌ଗୀତା ଭାରତୀୟ ଜନମାନସ ଉପରେ ଏଭଳି ପ୍ରଭାବ ବିସ୍ତାର କରିଅଛି ଯେ ଏହାର ଉପଯୁକ୍ତ ଅର୍ଥ ବୁଝାଇଦିଆଯାଇପାରିଲେ ଭାରତୀୟ ଜନତା ସ୍ୱାଧୀନତା ସଂଗ୍ରାମରେ ବ୍ରତୀ ହୋଇପାରିବ ।

ତିଲକଜୀ ମନେକରୁଥିଲେ ଯେ ଗୀତାର ଯେତେ ଭାଷ୍ୟ ଲେଖାଯାଇଅଛି ତାହା ପର୍ଯ୍ୟାପ୍ତ ନୁହେଁ, ବିଶେତଃ ଭାରତବାସୀ ସମ୍ମୁଖୀନ ହୋଇଥିବା ଆଧ୍ୟାତ୍ମିକ ଓ ବିଚାର ସଂକଟର ସମାଧାନ କରିବାକୁ ଏହା ସମର୍ଥ ନୁହେଁ । ଉଦାହରଣ ସ୍ୱରୂପ ଶଙ୍କରଙ୍କ ଗୀତାଭାଷ୍ୟ ମୁଖ୍ୟତଃ ଜ୍ଞାନମାର୍ଗ ଉପରେ ପ୍ରତିଷ୍ଠିତ । ତାଙ୍କ ମତରେ ଆତ୍ମାସହ ବ୍ରହ୍ମର ମିଳନଦ୍ୱାରାହିଁ ମାନବ ଜୀବନର ସାର୍ଥକତା ସମ୍ଭବ ଓ ମାୟାଜଡ଼ିତ ସଂସାର ତ୍ୟାଗ ହିଁ ନିର୍ବାଣର ଏକମାତ୍ର ପଥ ।

ସେହିପରି 'ରାମାନୁଜ'ଙ୍କର ଭକ୍ତିବାଦ ମଧ୍ୟ ତିଲକଜୀଙ୍କୁ ସନ୍ତୋଷ ଦେଇ ପାରି ନ ଥିଲା । ଶ୍ରୀ ରାମାନୁଜ ତାଙ୍କର ଗୀତାଭାଷ୍ୟରେ ଭକ୍ତିବାଦକୁ ପ୍ରାଧାନ୍ୟ ଦେଇଅଛନ୍ତି । ଭକ୍ତିଦ୍ୱାରା ପରଂବ୍ରହ୍ମଙ୍କ ନିକଟରେ ଆତ୍ମସମର୍ପଣ ମନୁଷ୍ୟ ଜୀବନର ଧ୍ୟେୟ ହେବା ଉଚିତ ବୋଲି ରାମାନୁଜଙ୍କର ମତ । ଏତଦ୍‌ବ୍ୟତୀତ ମାଧବ, ବଲ୍ଲଭ ଓ ନିମ୍ବାର୍କଙ୍କର ଗୀତାଭାଷ୍ୟ ମଧ ତିଲକଜୀଙ୍କୁ ସନ୍ତୁଷ୍ଟ କରିପାରି ନ ଥିଲା । ସେ ଭାବୁଥିଲେ ଯେ ସେମାନେ କେହି ଗୀତାକୁ ଠିକ୍‌ରୂପେ ବୁଝିପାରିନାହାନ୍ତି ।

ତେଣୁ ସେ ଗୀତାର ଏକ ନୂତନ ଭାଷ୍ୟ ଲେଖିଲେ ଯାହାକି 'ଗୀତାରହସ୍ୟ' ନାମରେ ପ୍ରସିଦ୍ଧି ଲାଭ କରିଛି । ନିଷ୍କାମ କର୍ମଯୋଗହିଁ 'ଗୀତାରହସ୍ୟ'ର ପ୍ରଧାନ ଉପଲବ୍ଧି । ଅନ୍ୟ ଭାଷାରେ କହିବାକୁ ଗଲେ ଏହା ହେଉଛି ଜ୍ଞାନଭକ୍ତି ସମନ୍ୱିତ କର୍ମଯୋଗ । ଧନୀ-ନିର୍ଦ୍ଧନ ନିର୍ବିଶେଷରେ ସମସ୍ତେ କର୍ମକରିବାକୁ ବାଧ୍ୟ । କର୍ମବିନା କେବଳ ଭକ୍ତି ଓ ଜ୍ଞାନ କେବେହେଁ ମନୁଷ୍ୟ ଜୀବନର ଧ୍ୟେୟ ହୋଇ ନ ପାରେ । ପୁଣି କର୍ମଯୋଗ 'ବ୍ୟବସାୟତ୍ମିକା' ବୁଦ୍ଧି ଓ ସ୍ଥିତପ୍ରଜ୍ଞାରୁ ଉପଲବ୍ଧ ହୋଇପାରେ । 'କର୍ମଯୋଗ' ଗୀତାର ଏକମାତ୍ର ବାର୍ତ୍ତା ହୋଇଥିବାରୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କୌରବମାନଙ୍କ ବିରୋଧରେ

ଅସ୍ତ୍ରୋତ୍ତୋଳନ କରିବାକୁ ଅନୁପ୍ରାଣିତ କରିଛନ୍ତି ବୋଲି ତିଳକଜୀ ଦୃଢ଼ତା ସହକାରେ ପ୍ରତିପାଦିତ କଲେ । ତାଙ୍କ ମତରେ ଅର୍ଜୁନ ଶ୍ରୀକୃଷ୍ଣଙ୍କର ଏହି ନିର୍ଦ୍ଦେଶ ପାଳନ କରି ପ୍ରମାଣିତ କରିଯାଇ ଅଛନ୍ତି ଯେ ନିଷ୍କାମ କର୍ମଯୋଗହିଁ ସର୍ବଶ୍ରେଷ୍ଠ ମାନବିକ ଧର୍ମ ।

ଗୀତୋକ୍ତ ଏହି ମହାନ୍ ମାନବିକ ଧର୍ମଦୃଷ୍ଟିରୁ ତିଳକଜୀ ଭାରତୀୟ ସମସ୍ୟାକୁ ନୂତନ କରି ବ୍ୟାଖ୍ୟା କଲେ । ସାମାଜର ସର୍ବାଙ୍ଗୀନ ଉନ୍ନତି ଓ ବ୍ୟକ୍ତିର ସୁସ୍ଥ ବିକାଶ ପାଇଁ ସ୍ୱାଧୀନତା ସର୍ବାଦୌ ପ୍ରୟୋଜନ ହୋଇଥିବାରୁ ସେ ପ୍ରଚାର କଲେ ଯେ ଏହି ସ୍ୱାଧୀନତା ପାଇଁ 'କର୍ମଯୋଗର' ଆବଶ୍ୟକତା ସର୍ବାଧିକ; ଭକ୍ତିଯୋଗ ବା ଜ୍ଞାନଯୋଗ ନୁହେଁ । କିନ୍ତୁ ଦୀର୍ଘଦିନ ପରାଧୀନ ରହିବା ଫଳରେ ଭାରତୀୟମାନଙ୍କ ଭିତରେ ହୀନମନ୍ୟତା ବା ଇନ୍‌ଫିରିଅରିଟି କମ୍ପ୍ଲେକ୍ସ ସୃଷ୍ଟିହୋଇ ସେ ଆତ୍ମବିଶ୍ୱାସ ହରାଇ ବସିଥିବାରୁ ତିଳକଜୀ ତାହା ଦୂରକରିବାକୁ ଯତ୍‌ପରୋନାସ୍ତି ଉଦ୍ୟମ ଆରମ୍ଭ କଲେ । ସେହି ଲକ୍ଷ୍ୟରେ ସେ ନିଉ ଇଂଲିସ ସ୍କୁଲ ଓ ପୁନାର ଫର୍ଗୁସନ କଲେଜ ପ୍ରତିଷ୍ଠାର ନେତୃତ୍ୱ ନେଇଥିଲେ ଆଧୁନିକ ବୈଜ୍ଞାନିକ ଶିକ୍ଷାରେ ଭାରତୀୟ ଯୁବକଙ୍କୁ ଶିକ୍ଷିତ କରିବା ପାଇଁ । ୧୮୮୪ ଖ୍ରୀଷ୍ଟାବ୍ଦରେ ତାଙ୍କରି ନେତୃତ୍ୱରେ ଗଠିତ 'ଡେକାନ୍ ଇଣ୍ଡିଆନ୍ ସୋସାଇଟି' ମଧ୍ୟ ଏହି ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ହୋଇଥିଲା । ଏପରିକି ତିଳକଜୀ ନିଜେ ସେଠାରେ ସଂସ୍କୃତ ଓ ଗଣିତ ପଢ଼ାଇବାର ଦାୟିତ୍ୱ ନେଇଥିଲେ ।

ଶିକ୍ଷାଦାନର ବ୍ୟବସ୍ଥା କରିସାରି ତିଳକଜୀ ଆଉ ଏକ ଗୁରୁତ୍ୱପୂର୍ଣ୍ଣ କାମରେ ହାତଦେଲେ । ତାଙ୍କ ବିଚାରର ପ୍ରଚାର ଓ ଇଂରେଜୀ ସ୍ୱେଚ୍ଛାଚାରିତାର ମୁଖା ଖୋଲିଦେବାକୁ ପ୍ରକାଶକଲେ ସେ ଯୁଗର ଦୁଇଟି ପ୍ରସିଦ୍ଧ ପତ୍ରିକା 'କେଶରୀ' ଓ 'ମରାଠା' । ମରାଠୀ ଭାଷାରେ ପ୍ରକାଶିତ 'କେଶରୀ' ଓ ଇଂରେଜୀ ଭାଷାରେ ପ୍ରକାଶିତ 'ମରାଠା' ଉଗ୍ରଜାତୀୟତାବାଦର ବାର୍ତ୍ତାବହ ଥିଲା । 'କେଶରୀ' ଓ 'ମରାଠା'ର ଅଗ୍ନିବର୍ଷୀ ଇଂରେଜ ବିରୋଧୀ ଲେଖାମାନ, ଉଗ୍ରଜାତୀୟତାବାଦର ବିକାଶରେ ସର୍ବାଧିକ ସାହାଯ୍ୟ କରିଥିଲା । ସେ ପ୍ରତ୍ୟକ୍ଷ ଭାବରେ ହିଂସାବାଦକୁ ଉତ୍ସାହିତ କରୁଥିଲେ କି ନା ତାହା ଏକ ବିବାଦୀୟ ବିଷୟ, ଯଦିଓ 'ଟାଇମ୍‌ସ୍ ଅଫ୍ ଇଣ୍ଡିଆ' ଓ 'ଲଣ୍ଡନ ଟାଇମ୍‌ସ୍' ପ୍ରଭୃତି ପତ୍ରିକା ର୍‍ୟାଣ୍ଡସ ହତ୍ୟାରେ ତାଙ୍କୁ ଜଡ଼ିତକରି ଅଗ୍ରଲେଖାମାନ ପ୍ରକାଶ କରିଥିଲେ । କିନ୍ତୁ ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ଯେ ତିଳକଜୀ ଭାରତୀୟମାନଙ୍କର ହୀନମନ୍ୟତା ଦୂରକରି ସେମାନଙ୍କ ଭିତରେ ଐକ୍ୟବୋଧ, ଜାତୀୟତାବୋଧ, ଶକ୍ତି ଓ ସାହସ ବଢ଼ାଇବା ପାଇଁ ଯେତେବେଳେ ଶିବାଜୀ ଜୟନ୍ତୀ ଓ ଗଣପତି ପୂଜା ବ୍ୟାପକଭାବେ ପାଳନକଲେ, ତାହା ମହାରାଷ୍ଟ୍ରର ଉଗ୍ରଜାତୀୟତାବାଦୀଙ୍କ ଭିତରେ ନବଜାଗରଣ ସୃଷ୍ଟିକରିଥିଲା । ଶିବାଜୀଙ୍କଦ୍ୱାରା ଆଫଜଲ୍ ଖାଁ ହତ୍ୟାକୁ ସେ କେବଳ ସମର୍ଥନ କରି ନ ଥିଲେ, ସେ ଏହାକୁ ଏକ ମହତ୍‌କାର୍ଯ୍ୟ ବୋଲି ପ୍ରତିପାଦିତ କରିଥିଲେ । ସେ ଶିବାଜୀଙ୍କୁ ସମର୍ଥନ କରି କହିଥିଲେ,

"Greatmen are above the common principles of morality." (ମହାପୁରୁଷମାନେ ସାଧାରଣଲୋକଙ୍କର ନୈତିକ ଆଦର୍ଶର ବହୁ ଉର୍ଦ୍ଧ୍ୱରେ ।) ଚାପେକାର ଭ୍ରାତୃତ୍ରୟଙ୍କ ଦ୍ୱାରା ର୍‌ୟାଣ୍ଡ୍‌ସ ହତ୍ୟା ସଂପର୍କରେ 'କେଶରୀ'ରେ ଲେଖିଥିଲେ ଯେ, ଏହି ହତ୍ୟାକାଣ୍ଡଗୁଡ଼ିକ ସାଧାରଣ ହତ୍ୟାଠାରୁ ସଂପୂର୍ଣ୍ଣ ପୃଥକ୍; କାରଣ ଏକ ମହତ୍ ଉଦ୍ଦେଶ୍ୟ ସଂପାଦନ କରିବାକୁ ଏହି ହତ୍ୟା କରାଯାଏ ବୋଲି ହତ୍ୟାକାରୀମାନେ ମନେକରନ୍ତି ।(୧) ''ସ୍ୱାଧୀନତା ମୋ' ଜନ୍ମଗତ ଅଧିକାର'' ସ୍ଲୋଗାନର ସ୍ରଷ୍ଟା ହେଉଛନ୍ତି ତିଳକ ଏବଂ ତାହା ସେ ଯୁଗର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବିଶେଷଭାବେ ଉଦ୍‌ବୁଦ୍ଧ ଓ ଉତ୍ସାହିତ କରିଥିଲା । ସର୍ବଭାରତୀୟ ନେତାମାନଙ୍କ ଭିତରୁ ତିଳକଜୀହିଁ ପ୍ରଥମ ବ୍ୟକ୍ତି ଯେ କି ସଶସ୍ତ୍ର ମୁକ୍ତିସଂଗ୍ରାମୀଙ୍କ ସହ ପ୍ରତ୍ୟକ୍ଷ ସଂପର୍କ ଥିବା ଅଭିଯୋଗରେ ଦଣ୍ଡିତହୋଇଥିଲେ । ଲଣ୍ଡନ ଟାଇମ୍‌ସ୍ ସମ୍ପାଦିକ ଭାଲେଣ୍ଟିନା ସିରୋଲାଙ୍କ ଭାଷାରେ, "An attempt to terrorise Government by threats open or concealed to the effect that bombs will be thrown."(2) ଗାନ୍ଧୀଯୁଗରେ ପୂର୍ଣ୍ଣ ଅହିଂସାକୁ କୌଶଳ ବୋଲି ଗ୍ରହଣକରିବାକୁ କଂଗ୍ରେସର ପ୍ରାଣପ୍ରତିଷ୍ଠାତା ଲୋକମାନ୍ୟ ତିଳକ ଏହିଭଳି ଭାବରେ ସଶସ୍ତ୍ର ମୁକ୍ତିସଂଗ୍ରାମର ଦର୍ଶନତତ୍ତ୍ୱକୁ ସମୃଦ୍ଧ କରିଥିଲେ ।

**ଅରବିନ୍ଦ :**

ତିଳକଜୀଙ୍କୁ ଛାଡ଼ିଦେଲେ ଶ୍ରୀ ଅରବିନ୍ଦଙ୍କୁ ସଶସ୍ତ୍ର ମୁକ୍ତିଯୁଦ୍ଧର ଅନ୍ୟତମ ପ୍ରବକ୍ତା ବୋଲି କୁହାଯାଇପାରେ । ଶ୍ରୀ ଅରବିନ୍ଦ ପରବର୍ତ୍ତୀ ଯୁଗରେ ଯୋଗୀ ଅରବିନ୍ଦ ବା ଋଷି ଅରବିନ୍ଦ ନାମରେ ବିଶ୍ୱବିଶ୍ରୁତ ହୋଇଥିଲେ ବି ତାଙ୍କର ପ୍ରଥମ ରାଜନୈତିକ ଜୀବନ ସଂନ୍ତ୍ରାସବାଦର ଦର୍ଶନଦ୍ୱାରା ଗଭୀରଭାବେ ପ୍ରଭାବିତ ହୋଇଥିଲା । କହିବାକୁ ଗଲେ ଶ୍ରୀ ଅରବିନ୍ଦ ଯେଉଁ ସ୍ୱଳ୍ପ ସମୟ ପ୍ରତ୍ୟକ୍ଷ ରାଜନୀତିରେ ଭାଗ ନେଇଥିଲେ ତାହା ସଂପୂର୍ଣ୍ଣ ରୂପେ ଏହି ଚରମ ଜାତୀୟତାବାଦ ଛଡ଼ା ଆଉ କିଛି ନ ଥିଲା । 'ବାସୁଦେବଙ୍କ ଦର୍ଶନ' – ଯାହାକି ତାଙ୍କର ଆଧାତ୍ମିକ ଜୀବନର ପରମ ଓ ଚରମ ଉପଲବ୍ଧି ଭାବରେ ପରିଚିତ – ତାଙ୍କୁ ଜେଲଖାନାରୁହିଁ ମିଳିଥିଲା ଏବଂ ଜେଲଦଣ୍ଡ ସେ ଭୋଗିଥିଲେ 'ଅଲ୍ଲୀପୁର ବୋମା ଷଡ଼ଯନ୍ତ୍ରରେ ତାଙ୍କର ସକ୍ରିୟ ସଂବନ୍ଧଯୋଗୁଁ' । ଶ୍ରୀ ଅରବିନ୍ଦଙ୍କ ଜୀବନକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମଟି ହେଲା ୧୮୮୯ରୁ ୧୯୦୫ ପର୍ଯ୍ୟନ୍ତ ଛାତ୍ରଜୀବନ ଯାହାର ଅଧିକାଂଶ ସମୟ ଇଂଲଣ୍ଡରେ ଅତିବାହିତ ହୋଇଥିଲା । ୧୯୦୫ରୁ ୧୯୧୦ ପର୍ଯ୍ୟନ୍ତ ତାଙ୍କର ସକ୍ରିୟ ରାଜନୀତି କାଳ । ଏହା ସ୍ୱଳ୍ପକାଳ ପାଇଁ ହୋଇଥିଲେ ମଧ୍ୟ ଶ୍ରୀ ଅରବିନ୍ଦ ତଥା ଭାରତର ଜାତୀୟ ଜୀବନରେ ଏହା ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ସମୟ, ("Short stormy but

1. New Spirit in India– by Nevinson H.W. page- 201
2. Chirolvlentine– Indian Unrest page- 48.

extraordinarily important in the history of India."– (ନାତିଦୀର୍ଘ, ଝଡ଼ଝଞ୍ଜାମୟ, କିନ୍ତୁ ଭାରତ ଇତିହାସରେ ଏହା ଖୁବ୍ ପ୍ରସିଦ୍ଧ ।)

ଶ୍ରୀ ଅରବିନ୍ଦଙ୍କ ଶେଷଜୀବନ ଅର୍ଥାତ୍ ୧୯୧୦ରେ ତାଙ୍କର କଲିକତା ତ୍ୟାଗ ଓ ପଣ୍ଡିଚେରୀରେ ଅବସ୍ଥାନ ଭାରତର ରାଜନୈତିକ ଇତିହାସରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ, କାରଣ ଏହି ସମୟରେ ଶ୍ରୀ ଅରବିନ୍ଦଙ୍କ ଅବଦାନର ସଶସ୍ତ୍ର ମୁକ୍ତିସଂଗ୍ରାମର ଇତିହାସ ଉପରେ କୌଣସି ପ୍ରଭାବ ନାହିଁ କହିଲେ ଚଳେ । ରାଜନୀତିରୁ ସଂପୂର୍ଣ୍ଣ ଅବସର ଗ୍ରହଣକରି ଆଧ୍ୟାତ୍ମିକ ଓ ଯୌଗିକ ସାଧନାରେ ସେ ନିଜକୁ ହଜାଇଦେଇଥିଲେ ଏହି ସମୟରେ । ଏ ସଂପର୍କରେ ଐତିହାସିକଙ୍କର ମତ ହେଉଛି, "For while during this period India was engaged in a fierce battle 'to do or die' this lustrous genious whose magic words had once stirred India from the mountains to the seas was immersed in his lonely quest in the almost complete isolation of his Ashram very much like an ancient sage immursed in a cave in the Himalayas."(1) ଯେତେବେଳେ ଏହି ସମୟରେ ସାରା ଭାରତ 'କର ଅବା ମର' ଭଳି ଭୟଙ୍କର ଯୁଦ୍ଧରେ ବ୍ୟାପୃତ ଥିଲା, ସେତେବେଳେ ଏହି ମହାନ୍ ପ୍ରତିଭାଧର ଯାହାର କୁହୁକଭାଷା ଏକଦା ଆକୁମାରୀ ହିମାଚଳ ଭାରତକୁ ଥରହର କରିଦେଇଥିଲା, ସେ ହିମାଳୟ କନ୍ଦରରେ ତପସ୍ୟାରତ ଋଷିଭଳି ସମାଜରୁ ବହୁଦୂରରେ ନିର୍ଜନତା ଭିତରେ ନିଜକୁ ହଜାଇ ଦେଇଥିଲେ ।) ଏହିଭଳି ଭାବରେ "The prophet of the *karmayoga* of the Bhagabat Gita had bacome an adept in *yoga* without *karma*." ଭଗବତ୍‌ଗୀତାର କର୍ମଯୋଗୀ ସାଧକ କର୍ମବିହୀନ ସାଧକରେ ପରିଣତହେଲେ ।'' ସୁତରାଂ ୧୯୦୫ରୁ ୧୯୧୦ ପର୍ଯ୍ୟନ୍ତ ଶ୍ରୀ ଅରବିନ୍ଦଙ୍କୁ ପର୍ଯ୍ୟାଲୋଚନାକଲେ ତାହା ଆମ୍ଭମାନଙ୍କ ପକ୍ଷରେ ଯଥେଷ୍ଟ ହେବ ।

ଦାର୍ଶନିକ ଅରବିନ୍ଦଙ୍କୁ ବୁଝିବା ଯେତେ କଠିନ, ରାଜନୀତିଜ୍ଞ ଅରବିନ୍ଦ ସେତେ ଦୁର୍ବୋଧ ନୁହନ୍ତି । ଦୀର୍ଘ ଚଉଦବର୍ଷକାଳ ବିଶେଷତଃ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୟସ ତାଙ୍କର ଇଂଲଣ୍ଡରେ ଅତିବାହିତ ହୋଇଥିବାରୁ ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା ଓ ଭାଷାର ପ୍ରଭାବ ତାଙ୍କ ଉପରେ ଗଭୀର ଭାବରେ ପଡ଼ିବା କିଛି ବିଚିତ୍ର ନୁହେଁ । ଇଂରେଜୀ ତାଙ୍କର ମାତୃଭାଷା ଭଳି ପ୍ରିୟ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଇଂରେଜୀ ଭାଷା ସମେତ ଲାଟିନ୍, ଫ୍ରେଞ୍ଚ୍ ଓ ଗ୍ରୀକ୍ ଭାଷାରେ ମଧ୍ୟ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ସୁତରାଂ ଯୁବକ ବୟସରେ ତାଙ୍କର ବିଚାରଧାରା ମୁଖ୍ୟତଃ ପାଶ୍ଚାତ୍ୟ ବିଚାରଧାରା ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଅସାଧାରଣ ମେଧା, ପ୍ରତିଭା ଓ ପାଣ୍ଡିତ୍ୟର ଅଧିକାରୀ ହୋଇଥିବା ବ୍ୟକ୍ତି ବିରଳ । ତାଙ୍କର ଆଧ୍ୟାତ୍ମିକ ଚିନ୍ତାଧାରା ଓ ବିଚାରର ଆଲୋଚନା କ୍ଷେତ୍ର ଏହା ନୁହେଁ । ତାଙ୍କର ରାଜନୈତିକ ଦର୍ଶନ, ଭାରତର ସଶସ୍ତ୍ର

1. Tarachand– The Histroy of Freedom Movement in India Vol- III Pg- 79.

ବିପ୍ଳବ ପ୍ରତି ଅବଦାନହିଁ ଆମ୍ଭମାନଙ୍କର ପ୍ରଧାନ ବିଚାର୍ଯ୍ୟ । ପ୍ରାଚୀନ ଏଥେନିୟାନ୍ ଓ ରୋମାନ୍ ସଭ୍ୟତାର ଇତିହାସ ତାଙ୍କର ରାଜନୈତିକ ବିଚାରଧାରାକୁ ବିଶେଷଭାବେ ପ୍ରଭାବିତ କରିଥିଲା । ସେଥିପାଇଁ କ୍ଲଥେନ୍ସ ଓ ଗ୍ରାଚୀ ତାଙ୍କ ନିକଟରେ ଆଦର୍ଶ ବ୍ୟକ୍ତି ଥିଲେ । ଫରାସୀ ଇତିହାସର 'ଯୋଆନ ଅଫ୍ ଆର୍କ'ର ସାହସିକତା ତାଙ୍କୁ ମୁଗ୍ଧକରିଥିଲା । ଆମେରିକା ଓ ଆଇରିସ୍ ବିପ୍ଳବ ମଧ୍ୟ ତାଙ୍କୁ କମ୍ ପ୍ରଭାବିତ କରି ନ ଥିଲା । କିନ୍ତୁ ଫରାସୀ ବିପ୍ଳବହିଁ ଶ୍ରୀ ଅରବିନ୍ଦଙ୍କ ଆଗରେ ଥିଲା ଶ୍ରେଷ୍ଠ ବିପ୍ଳବ । ଇଂରେଜୀ ଭାଷାରେ ସେ ଏକ ଧୁରନ୍ଧର ପଣ୍ଡିତ ଥିଲେ ସୁଦ୍ଧା ସେ ଇଂରେଜୀ ସଭ୍ୟତାର ତଥାକଥିତ ଶ୍ରେଷ୍ଠତ୍ୱକୁ ସ୍ୱୀକାର କରୁ ନ ଥିଲେ । ସେ ଏହାକୁ ଯେ କେବଳ ଜଡ଼ବାଦୀ ବୋଲି ମନେକରୁଥିଲେ ତାହା ନୁହେଁ, ସେ କହୁଥିଲେ, ଏହା ମାନବସଭ୍ୟତା ଏବଂ ସଂସ୍କୃତିର ହତ୍ୟାକାରୀ । ସେ ଉପଲବ୍ଧି କରିଥିଲେ ଯେ ଫରାସୀ ସଂସ୍କୃତି ଇଂରେଜୀ ସଂସ୍କୃତି ଅପେକ୍ଷା ଉତ୍କୃଷ୍ଟତର, ତାହା ହୋଇ ନ ଥିଲେ ଇଂଲଣ୍ଡକୁ ଗଣତନ୍ତ୍ର ଶାସନ ଲାଭକରିବାକୁ ଦୀର୍ଘ ବାରଶହ ବର୍ଷ ଲାଗି ନ ଥାନ୍ତା, ଅଥଚ ଫ୍ରାନ୍ସ ଗୋଟିଏ ମାତ୍ର ବିପ୍ଳବ ଭିତରେ ତାହା ଲାଭକରି ପାରିଲା । ଆଉ ଭାରତରେ ଥିବା ଇଂରେଜ ଶାସକମାନେ ତ ତାଙ୍କ ବିଚାରରେ 'କ୍ଷୁଦ୍ରାଦପି କ୍ଷୁଦ୍ର ବାମନ' ଥିଲେ ଫରାସୀ ବିପ୍ଳବର ମନୀଷୀମାନଙ୍କ ତୁଳନାରେ ।

ଫଳରେ ଇଂରେଜୀ ଶିକ୍ଷିତ ଅରବିନ୍ଦ ଘୋର ଇଂରେଜୀ ବିଦ୍ୱେଷୀ ହୋଇ ଭାରତରେ ପହଞ୍ଚିଲେ ୧୯୦୫ ଖ୍ରୀଷ୍ଟାବ୍ଦରେ । ବଙ୍କିମସାହିତ୍ୟ ତାଙ୍କୁ ଭାରତବର୍ଷର ପରାଧୀନତା ସଂପର୍କରେ ଚିନ୍ତା କରିବାକୁ ଯଥେଷ୍ଟ ଖୋରାକ ଯୋଗାଇଥିଲା । ବେଦାନ୍ତ ଓ ଭଗବତ୍‌ଗୀତାର ଗଭୀର ଅନୁଶୀଳନ ତାଙ୍କର ଚିନ୍ତାଧାରାରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା । ବଙ୍କିମଙ୍କର 'ଆନନ୍ଦମଠ', 'କୃଷ୍ଣଚରିତ' ଓ 'ଧର୍ମତତ୍ତ୍ୱ' ତାଙ୍କୁ ମୋହିତ କରିଦେଇଥିଲା । ସେ ସ୍ୱୀକାର କରିଛନ୍ତି, "Bankim seemed to me to have achieved that perfection in his own way as Plato in his or Cicero or Tacitus in theirs, or in French literature Voltaire, Flaubert or Anatole France." (ପ୍ଲେଟୋ ବା ସିସେରୋ ଓ ଟ୍ରାସିଟସ୍ ଫରାସୀ ସାହିତ୍ୟର, ଭଲଟାୟର, ଫ୍ଲଉବର୍ଟ ବା ଆନାଟୋଲା ଫ୍ରାନ୍ସ ସେମାନଙ୍କ ନିଜ ନିଜ କ୍ଷେତ୍ରରେ ଯେଭଳି ପୂର୍ଣ୍ଣତା ପ୍ରାପ୍ତ ହୋଇଥିଲେ ବଙ୍କିମ ମଧ୍ୟ ସେଭଳି ପୂର୍ଣ୍ଣତା ଲାଭ କରିଛନ୍ତି ବୋଲି ମୋ'ର ମନେହେଲା) । ଭଗିନୀ ନିବେଦିତାଙ୍କର ବିଚାରଧାରାର ପ୍ରଭାବ ମଧ୍ୟ ତାଙ୍କ ଉପରେ ବିଶେଷ ଭାବରେ ପଡ଼ିଥିଲା ବୋଲି ସେ ସ୍ୱୀକାର କରିଛନ୍ତି । ବିଲାତରେ ପଢୁଥିବାବେଳେ ସେ 'ବେଙ୍ଗଲୀ' ପତ୍ରିକାର ଅଂଶବିଶେଷ ପଢ଼ିବାର ସୁଯୋଗ ପାଇଥିଲେ ଏବଂ ସମ୍ଭବତଃ ତାହାହିଁ ତାଙ୍କ ମନରେ ବୈପ୍ଳବିକ ପ୍ରେରଣା ଓ ଭାରତର ସ୍ୱାଧୀନତା ସଂପର୍କରେ ଧାରଣା ସୃଷ୍ଟି କରିଥିଲା । ବିଲାତରେ ଥିଲାବେଳେହିଁ ସେ 'ଲୋଟସ୍ ଏଣ୍ଡ୍ ଡାଗର୍' (Lotus and Dagger) ନାମକ ଏକ ଚରମପନ୍ଥୀ ଅନୁଷ୍ଠାନରେ ଯୋଗ ଦେଇଥିଲେ । କଂଗ୍ରେସର କାର୍ଯ୍ୟକଳାପ ଓ ଆଦର୍ଶ ଅରବିନ୍ଦଙ୍କୁ କେବେହେଲେ ସନ୍ତୋଷ ଦେଇ ପାରି

ନ ଥିଲା । ଏହା କେବଳ ବିଟ୍ରିଶ୍ ସିଭିଲିୟାନମାନଙ୍କଦ୍ୱାରା ଗଠିତ ହୋଇ ନ ଥିଲା, ବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ କଂଗ୍ରେସ ମୁଷ୍ଟିମେୟ ଇଂରେଜୀ ଶିକ୍ଷିତ ଭାରତୀୟଙ୍କର ଏକ ମଜଲିସ୍ ଛଡ଼ା ଆଉ କିଛି ନ ଥିଲା । ଇଂରେଜ ସରକାର ପାଖରେ ହାରି ଗୁହାରି କରି ଭାରତୀୟମାନଙ୍କ ପାଇଁ ବିଶେଷତଃ ଚାକିରିପ୍ରାର୍ଥୀ ଇଂରେଜପଢୁଆ ଭାରତୀୟଙ୍କ ପାଇଁ ସୁବିଧା ସୁଯୋଗ ହାସଲ କରିବା ଛଡ଼ା କଂଗ୍ରେସ ଅଧିକ ଆଗକୁ ଚିନ୍ତା କରିବା ଅବସ୍ଥାରେ ନ ଥିଲା । ସୁତରାଂ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଚରମବ୍ୟାକୁଳତାର କାର୍ଯ୍ୟକ୍ରମରେ ଯେଉଁ ଅରବିନ୍ଦଙ୍କ ହୃଦୟରେ ଭରିଯାଇଥିଲା ସେ କଂଗ୍ରେସ ସନ୍ତୁଷ୍ଟ ହୁଅନ୍ତେ କିପରି ? ବମ୍ବେରୁ ପ୍ରକାଶିତ 'ଇନ୍ଦୁପ୍ରକାଶ' ପତ୍ରିକାରେ ସେ କଂଗ୍ରେସକୁ କଠୋର ସମାଲୋଚନା କରିବା ଆରମ୍ଭ କରିଦେଇଥିଲେ ୧୮୯୩-୯୪ ମସିହାରୁ । ସେ କହିଲେ, "କଂଗ୍ରେସ କେବଳ ବ୍ରିଟିଶ୍ ଢାଞ୍ଚାର ସମାଜ ବା ସମାନତା କଥା ଚିନ୍ତା କରୁଛି, ଯେଉଁ ଆଦର୍ଶ କେବଳ ରାଜନୈତିକ ପରିବର୍ତ୍ତନରେହିଁ ସୀମାବଦ୍ଧ । ଭାରତର ବିରାଟ ସଂସ୍କୃତି ଓ ମହନୀୟ ସଭ୍ୟତା ଏହି ରାଜନୈତିକ ପରିବର୍ତ୍ତନ ଅପେକ୍ଷା ଅଧିକ କିଛି ଆଶାକରେ । ତାହା ଫ୍ରାନ୍ସ ବା ଏଥେନିୟାନଙ୍କଠାରୁ ଅଧିକ କିଛି ଚାହେଁ । ସେଥିପାଇଁ ସେ କହିଥିଲେ, "The Congress had thus reduced itself to insignificance and sterility."(1) ସମ୍ଭବତଃ ଶ୍ରୀ ଅରବିନ୍ଦହିଁ ପ୍ରଥମ ବ୍ୟକ୍ତି ଯେ କି କଂଗ୍ରେସକୁ ଏଭଳି କଠୋର ସମାଲୋଚନା କରିଥିଲେ, ତା'ର ଶତ୍ରୁ ରୂପରେ ନୁହେଁ ଶୁଭଚିନ୍ତକ ବନ୍ଧୁରୂପେ । ସେ କହୁଥିଲେ, "ଇଂରେଜବାଲାଙ୍କର ତଥାକଥିତ ଗଣତନ୍ତ୍ର ପ୍ରେମରେ ଉଦ୍‌ବୁଦ୍ଧ କଂଗ୍ରେସର ଦରଖାସ୍ତିଆ ମନୋଭାବ କେବେ ସ୍ୱାଧୀନତା ଆଣିବାକୁ ସମର୍ଥ ହେବ ନାହିଁ । ସେଥିପାଇଁ ଆବଶ୍ୟକ ଆପାମର ଜନତାର ସକ୍ରିୟ ସମର୍ଥନ ଉପରେ ପ୍ରତିଷ୍ଠିତ ଏକ ଶକ୍ତିଶାଳୀ ଦଳ ଏବଂ ସଂଗ୍ରାମୀ କାର୍ଯ୍ୟକ୍ରମ ଓ ଏକ ବୈପ୍ଳବିକ ଆଦର୍ଶ । ୧୮୯୩ ଅଗଷ୍ଟ ୨୮ ତାରିଖ 'ଇନ୍ଦୁପ୍ରକାଶ'ରେ ଅରବିନ୍ଦ ଲେଖିଥିଲେ, "In an era when democracy and similar big words slide so glibly from our tongues, a body like the Congress, which represents not the mass of the population, but a single and very limited class could not honestly be called national. I say, of the Congress then, thus that its aims are mistaken, that the spirit in which it proceeds towards their accomplishment is not a spirit of sincerity and whole-heartedness and the methods it has chosen are not the right methods and the leaders in whom it trusts, not the right sort of men to be leaders. In brief, that we are, at present, the blind led; if not by the blind, at any rate by the one-eyed." (2) (ଯେଉଁ ଯୁଗରେ ଆମ ମୁହଁରୁ ଗଣତନ୍ତ୍ର ଓ ସେହିଭଳି

1. Aurobindo Ghose– Essays– Vol- III. Page- 330
2. Prof. Haridas Mookherje and Prof. Uma Mookherje– Sri Aurobindo's Political Thoughts. Page- 40.

ଅନ୍ୟ ଶବ୍ଦସବୁ ସହଜରେ ବାହାରିପଡୁଛି, ସେତେବେଳେ କଂଗ୍ରେସ ଯେ କି ସମୁଦାୟ ଜନତାର ପ୍ରତିନିଧିତ୍ୱ କରୁନାହିଁ ଏବଂ ଅତି ବେଶୀ ହେଲେ ଏକ ସୀମିତ ଶ୍ରେଣୀର ପ୍ରତିନିଧିତ୍ୱ କରୁଛି, ତାହାକୁ କଦାପି 'ଜାତୀୟ' ବୋଲି କୁହାଯାଇ ପାରିବ ନାହିଁ । ତେଣୁ ମୁଁ କହେ କଂଗ୍ରେସର ଲକ୍ଷ୍ୟ ତ୍ରୁଟିପୂର୍ଣ୍ଣ ଏବଂ ସେ ଯେଉଁ ଉପାୟରେ ଲକ୍ଷ୍ୟ ହାସଲ କରିବାକୁ ଯାଉଛି ତାକୁ ନିଷ୍ଠା ବା ଆନ୍ତରିକତାର ଉପାୟ ·ବୋଲି କଦାପି କୁହାଯାଇ ପାରିବ ନାହିଁ । କାର୍ଯ୍ୟ କରିବାର ପ୍ରଣାଳୀ ମଧ୍ୟ ଠିକ୍ ନୁହେଁ ଏବଂ ଯେଉଁ ନେତାମାନଙ୍କ ଉପରେ ଏହା ବିଶ୍ୱାସ ସ୍ଥାପନ କରିଛି ସେମାନେ ମଧ୍ୟ ଉପଯୁକ୍ତ ମଣିଷ ନୁହନ୍ତି । ସଂକ୍ଷେପରେ କହିବାକୁ ଗଲେ ବର୍ତ୍ତମାନ ଅନ୍ଧମାନଙ୍କୁ ଅନ୍ଧମାନେ ନୋହିଲେ ଅନ୍ତତଃ କଣାମାନେ ବାଟ କଢ଼ାଇବା ଭଳି ଆମ୍ଭମାନଙ୍କର ଅବସ୍ଥା ।)

ଶ୍ରୀ ଅରବିନ୍ଦ ଜାତୀୟତା ସଙ୍ଗେ ସଙ୍ଗେ ସାମ୍ୟବାଦର ପ୍ରତିଷ୍ଠା ପାଇଁ ମଧ୍ୟ ଆଗ୍ରହୀ ଥିଲେ । ମନୁଷ୍ୟ ମନୁଷ୍ୟ ଭିତରେ ଥିବା କୃତ୍ରିମ ଭେଦାଭେଦରେ ଅରବିନ୍ଦ ଥିଲେ ଉଗ୍ରବିରୋଧୀ । ପ୍ରତ୍ୟେକ ମନୁଷ୍ୟ ଜାତି-ଧର୍ମ-ନିର୍ବିଶେଷରେ ଯେ ସେହି 'ବିରାଟ ପୁରୁଷ'ର ଅଂଶବିଶେଷ ଏହା ତିଳକଙ୍କ ପରି ଅରବିନ୍ଦ ମଧ୍ୟ ବିଶ୍ୱାସ କରୁଥିଲେ । ସାମ୍ୟବାଦର ରାଜନୈତିକ ତତ୍ତ୍ୱ ସଂପର୍କରେ ତାଙ୍କର ମତ ଥିଲା, "Without socialism, democracy would remain a tendency that never reached its fulfilment. Socialist democracy is the only true democracy, for without it, we can not get the equalized and harmonised distribution of function. (1)" 'ପୂର୍ଣ୍ଣ -ସ୍ୱାଧୀନତା'ର କୌଣସି ବିକଳ୍ପରେ ସେ ବିଶ୍ୱାସ କରୁ ନ ଥିଲେ । ଯେତେବେଳେ ଜାତୀୟକଂଗ୍ରେସ 'ପୂର୍ଣ୍ଣ-ସ୍ୱାଧୀନତା' କଥା ଚିନ୍ତା କରିବାକୁ ସୁଦ୍ଧା ହୁଏତ ଭୟକରୁଥିଲେ, ସେତେବେଳେ ଅରବିନ୍ଦ ତାକୁ ଦୃଢ଼ତା ସହକାରେ ପ୍ରଚାର କରୁଥିଲେ । ଗୋଖଲେ ତ ପୁଣି କହିଥିଲେ, "Only mad men outside the lunatic asylum could think or talk of independence. We owe it to the best interest of the country to resist the propaganda with all our energy and all our resources. There is no alternative to British Rule, not only now but for a long time to come and any attempt to distrub it, directly or indirectly are bound to recoil on our own heads." (2) କଂଗ୍ରେସର ଏହି ରକ୍ଷଣଶୀଳ ଏପରିକି ପ୍ରତିକ୍ରିୟାଶୀଳ ମନୋଭାବର ବିରୋଧ କରି ଅରବିନ୍ଦ ଜବାବ୍ ଦେଲେ – "There are some who fear to use the word Freedom, but I always used the word because it has been the mantra of my life to aspire towards the freedom of my nation." (କେତେକ ଅଛନ୍ତି ଯେଉଁମାନେ 'ସ୍ୱାଧୀନତା' ଶବ୍ଦ ବ୍ୟବହାର କରିବାକୁ ମଧ୍ୟ ଭୟବୋଧକରୁଛନ୍ତି । କିନ୍ତୁ ମୁଁ ଏହି ଶବ୍ଦକୁ ସର୍ବଦା ବ୍ୟବହାରକରେ, କାରଣ ମୋ ଦେଶକୁ ସ୍ୱାଧୀନତା ଆଡ଼କୁ ଆଗେଇ ନେବା ପାଇଁ ଏହା ମୋ ଜୀବନର ମନ୍ତ୍ର ସଦୃଶ ।)

1. Ifid- P-200
2. Ifid- P-220

ଏହି ସ୍ୱାଧୀନତା ଲାଭ କରିବାକୁ ଯେକୌଣସି ଉପାୟ ଅବଲମ୍ବନ କରାଯାଇପାରେ ହିଂସା ବା ଅହିଂସା । ("Violence as a means for achieving independence was not ruledout.") ଏକ ବିଦେଶୀ ଶାସନର ଅଧୀନରେ ଥିବା ଦେଶବାସୀଙ୍କୁ ପ୍ରକାଶ୍ୟ ବିଦ୍ରୋହ ବା ଅସ୍ତ୍ରଧାରଣର ସୁଯୋଗନଥିବାରୁ 'ଗୋପନ ସଂଗଠନ' କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା ବୋଲି ଅରବିନ୍ଦ ଅନୁଭବ କରିବାରୁ ସେ ଏହି ସଂଗଠନ ଗଢ଼ିବା କାର୍ଯ୍ୟରେ ମନୋନିବେଶ କରିଥିଲେ । ପ୍ରାୟ ଭାରତରେ ପହଞ୍ଚିବା ସଙ୍ଗେ ସଙ୍ଗେ ବରୋଦାରେ ଚାକିରି କରିଥିବାବେଳେ ସେ ସାନଭାଇ ବାରୀନ୍ଦ୍ରଙ୍କ ଉପରେ ଏକ ଗୋପନ ସଂଗଠନ ଗଢ଼ିବାର ଦାୟିତ୍ୱ ଦେଇଥିଲେ । ବରୋଦା ରାଜଦରବାରରେ ସେନାବାହିନୀରେ କାର୍ଯ୍ୟକରୁଥିବା ଯତୀନ୍ଦ୍ର ବାନାର୍ଜୀଙ୍କୁ ୧୯୦୨ ମସିହାରେହିଁ ସେ ବଙ୍ଗ ଦେଶକୁ ପଠାଇଥିଲେ ସେଠାରେ ସଶସ୍ତ୍ର ଆନ୍ଦୋଳନର କେତେ କ'ଣ ସୁବିଧା ସୁଯୋଗ ଅଛି ତା'ର ମୂଲ୍ୟାୟନ କରିବାପାଇଁ । ବାରୀନ୍ଦ୍ର ୧୯୦୪ରେ କଲିକତାରେ ପହଞ୍ଚି ଗୁପ୍ତ ସଂଗଠନଗୁଡ଼ିକର ଅନୁସଂଧାନରେ ଲାଗିଯାଇଥିଲେ । ସ୍ୱୟଂ ଅରବିନ୍ଦ ମଧ୍ୟ କଲିକତାରେ ପହଞ୍ଚିବା ପରେ ତତ୍‌କାଳୀନ ବିଶିଷ୍ଟ ସଶସ୍ତ୍ର ବିପ୍ଳବୀ 'ଯୁଗାନ୍ତର' ଦଳର ପ୍ରଧାନ ପରାମର୍ଶଦାତାରୂପେ କାର୍ଯ୍ୟ କଲେ । ସେ ନିଜେ ସ୍ୱୀକାର କରିଅଛନ୍ତି ଯେ ନିଷ୍କ୍ରିୟ ପ୍ରତିରୋଧ ଆନ୍ଦୋଳନ ବିଫଳ ହେଲେ ଯେଉଁ ପ୍ରକାଶ୍ୟ ବିଦ୍ରୋହର ଆବଶ୍ୟକତା ହେବ ସେଥିପାଇଁ ଏହା ହେବ ଏକ ପ୍ରସ୍ତୁତିପର୍ବ । ସୁରାଟ ଗସ୍ତବେଳେ ଅରବିନ୍ଦଙ୍କୁ ବୋମା ତିଆରି କେନ୍ଦ୍ର ଦେଖାଇଦିଆଯାଇଥିବାର ପ୍ରମାଣ ଅଛି । ଶେଷରେ ଅରବିନ୍ଦ 'ଅଲ୍ଲୀପୁର ବୋମା ଷଡ଼ଯନ୍ତ୍ର' ମକଦ୍ଦମାରେ ଜଡ଼ିତ ହୋଇ କିପରି ଗିରଫ ହୋଇଥିଲେ ଏବଂ ପରେ ଖଲାସହୋଇଥିଲେ, ତାହା ପରବର୍ତ୍ତୀ ଅଧ୍ୟାୟରେ ବିସ୍ତୃତ ଭାବରେ ଆଲୋଚିତ ହୋଇଅଛି ।

**ସୁଭାଷ :**

ତିଲକଜୀ ଓ ଅରବିନ୍ଦଙ୍କୁ ଛାଡ଼ିଦେଲେ ନେତାଜୀ ସୁଭାଷହିଁ ସଶସ୍ତ୍ର ବିପ୍ଳବର ବିଚାରଧାରାକୁ ସର୍ବାଧିକ ପ୍ରଭାବିତ କରିଅଛନ୍ତି ବୋଲି କହିଲେ ଭୁଲ ହେବ ନାହିଁ, ଯଦିଓ ସେ ତିଲକ ଓ ଅରବିନ୍ଦଙ୍କ ସମସାମୟିକ ନୁହନ୍ତି । କିନ୍ତୁ ନେତାଜୀଙ୍କର ଭୂମିକା ସଶସ୍ତ୍ର ବିପ୍ଳବ ଇତିହାସରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଏହି କାରଣରୁ ଯେ ଏହି ରାଜନୈତିକ ଦର୍ଶନରେ ଜାତୀୟ କଂଗ୍ରେସକୁ ବହୁଳାଂଶରେ ପ୍ରଭାବିତ କରିବାକୁ ସେ ସମର୍ଥ ହୋଇଥିଲେ ଓ ଶେଷରେ ନିଜେ ଏକ ବିରାଟ ବିଦ୍ରୋହୀ ସେନାବାହିନୀର ନେତୃତ୍ୱ ନେଇ ସମ୍ମୁଖ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଏବଂ ଇତିହାସର ଏଭଳି ବିଚାର ଯେ, ନେତାଜୀଙ୍କ ସଶସ୍ତ୍ର ଯୁଦ୍ଧର ପରିଣତି ହେଲା ଭାରତର ସ୍ୱାଧୀନତା, ତାହା ଯେତେ ଖଣ୍ଡିତ ରୂପରେ ହୋଇଥାଉନା କାହିଁକି । ଦେଖିବାକୁ ଗଲେ ତଥାକଥିତ ଅହିଂସାର ନିରର୍ଥକ କୋଳାହଳ ସେତେବେଳେ ଦେଶକୁ ଭାରାକ୍ରାନ୍ତ କରି ନ ଥିଲେ ଏବଂ

୧୯୪୨ର 'ଭାରତଛାଡ଼' ବିପ୍ଳବ ଓ ନେତାଜୀଙ୍କର ସଶସ୍ତ୍ର ଅଭିଯାନ ଏକାସଙ୍ଗରେ ହୋଇଥିଲେ, କେବଳ ସହିଦର ରକ୍ତତର୍ପଣରେ ଯେ ସ୍ୱାଧୀନତା ମିଳିଥାନ୍ତା, କଂଗ୍ରେସ ଓ ଇଂରେଜ ଭିତରେ ଦଲାଲୀ କଥାବାର୍ତ୍ତା ବା ଦରକଷାକଷି (Bargaining)ର ବିକୃତ ସ୍ୱାଧୀନତାଠାରୁ ତାହା ହୋଇଥା'ନ୍ତା ସଂପୂର୍ଣ୍ଣ ପୃଥକ୍ । 'ସଶସ୍ତ୍ର ମୁକ୍ତିସଂଗ୍ରାମ'ର ଇତିହାସରେ ନେତାଜୀଙ୍କର ଭୂମିକା ସଂପର୍କରେ ଏହି ଗ୍ରନ୍ଥର ୪ର୍ଥ ଖଣ୍ଡରେ ବିସ୍ତୃତଭାବେ ଆଲୋଚନା କରାଯାଇଛି ।

**ମହାତ୍ମା ଗାନ୍ଧି :**

ବିରୋଧାଭାସ ହେଲେ ମଧ୍ୟ ଏହା ଅନସ୍ୱୀକାର୍ଯ୍ୟ ଯେ ଗାନ୍ଧିଜୀଙ୍କର ଆଦର୍ଶ ସଶସ୍ତ୍ର ସଂଗ୍ରାମୀମାନଙ୍କୁ କେତେକାଂଶରେ ପ୍ରଭାବିତ କରିଥିଲା । ବସ୍ତୁତଃ ଗାନ୍ଧିଜୀଙ୍କ ଇଚ୍ଛାନୁସାରେ ସଶସ୍ତ୍ର ସଂଗ୍ରାମୀମାନେ ସମସ୍ତ ବୈପ୍ଳବିକ କାର୍ଯ୍ୟକଳାପକୁ ଗୋଟିଏ ବର୍ଷ ପାଇଁ ସ୍ଥଗିତ ରଖି ଅହିଂସ ଅସହଯୋଗ ଆନ୍ଦୋଳନରେ ଝାସଦେଇଥିଲେ । ବର୍ଷକ ଭିତରେ 'ସ୍ୱରାଜ୍ୟ' ନ ମିଳିବାରୁ ସେମାନେ ପୂର୍ବବତ୍ ବୈପ୍ଳବିକ ମାର୍ଗରେ ଅଗ୍ରସର ହେଲେ । ତଥାପି ପ୍ରଥମ ଜୀବନରେ କୌଣସି ନା କୌଣସି ବୈପ୍ଳବିକ କାର୍ଯ୍ୟରେ ସଂପୃକ୍ତ ଥିବା ବହୁ ମୁକ୍ତିସଂଗ୍ରାମୀ ସ୍ୱାଧୀନତା ସଂଗ୍ରାମର ମୁଖ୍ୟସ୍ରୋତରେ ରହିଥିଲେ । ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଯେଉଁ ସୋସଲିଷ୍ଟ, କମ୍ୟୁନିଷ୍ଟ ଓ ସୁଭାଷପନ୍ଥୀମାନେ କଂଗ୍ରେସ ଭିତରେ ରହିଥିଲେ, ସେମାନେ ଅଧିକାଂଶ ଥିଲେ ପୂର୍ବତନ ବିପ୍ଳବୀ, 'ଭାରତଛାଡ଼' ଆନ୍ଦୋଳନରେ ତାହା ପରୀକ୍ଷିତ ହୋଇଥିଲା । ସଶସ୍ତ୍ର ସଂଗ୍ରାମର କଠୋର କୃଚ୍ଛ୍ର ସାଧନାର ଅଗ୍ନିପରୀକ୍ଷାରେ ଦଗ୍ଧୀଭୂତ ସେମାନଙ୍କର ଜୀବନାଦର୍ଶ ଗାନ୍ଧୀବାଦର ବିଳାସବ୍ୟସନଶୂନ୍ୟ ନିରାଡ଼ମ୍ବର ଜୀବନଚର୍ଯ୍ୟା, ଖଦି ଓ ନିଃସ୍ୱାର୍ଥପର ଦେଶପ୍ରେମରେ ଅଧିକ ବିକଶିତ ହୋଇଥିଲା । ଜନଗଣଙ୍କ ଉପରେ ଅଖଣ୍ଡ ବିଶ୍ୱାସ ଏବଂ ସଂକୀର୍ଣ୍ଣ ଜାତୀୟତା ଓ ଧର୍ମୀୟ ରୂଢ଼ତାମୁକ୍ତ ସର୍ବଧର୍ମ ସମଆଦର୍ଶରେ ସେମାନେ ବିଶେଷଭାବେ ପ୍ରଭାବିତ ହୋଇଥିଲେ । ସେହିସବୁ ମହନୀୟ ମାନବିକ ଗୁଣର ଅଧିକାରୀ ହୋଇଥିବାରୁ ସେହି ଶ୍ରେଣୀର ସ୍ୱାଧୀନତା ସଂଗ୍ରାମୀଗଣ ସ୍ୱାଧୀନତା ପ୍ରାପ୍ତି ପରେ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ପେନ୍‌ସନ୍ ଓ ଅନ୍ୟାନ୍ୟ ସୁବିଧା ସୁଯୋଗକୁ ଅକାତରେ ପ୍ରତ୍ୟାଖ୍ୟାନ କରି ଅଧିକ ଦୁଃଖକଷ୍ଟପୂର୍ଣ୍ଣ ଜୀବନକୁ ସ୍ୱେଚ୍ଛାରେ ବରଣ କରିବାକୁ ସାହସ କରିପାରିଲେ । କେତେକ ନିଷ୍ଠାପର ଗାନ୍ଧିବାଦୀ ମଧ୍ୟ ସେହି ସୁବିଧା ସୁଯୋଗକୁ ପ୍ରତ୍ୟାଖ୍ୟାନ କରିପାରିଲେ ।

ଗାନ୍ଧିଜୀଙ୍କର 'ସଂଗ୍ରାମ ଓ ମିଳାମିଶା ନୀତି' ବ୍ରିଟେନ୍ ପ୍ରତି ତାଙ୍କର ଅହେତୁକ ଦୟାପ୍ରଦର୍ଶନ, ରାଜନୀତିକ ସମସ୍ୟାରେ 'ଭଗବାନ୍ ଓ ଧର୍ମ'କୁ ପୂରାଇବା ବା ଭାବବାଦୀ ବ୍ୟାଖ୍ୟା କରିବା, ଜନଗଣଙ୍କୁ ସଂଗ୍ରାମ ପାଇଁ ଆହ୍ୱାନ ଦେଇ ଚରମ ସଂଗ୍ରାମ ପୂର୍ବରୁ ସମଗ୍ର ସଂଗ୍ରାମକୁ ସ୍ଥଗିତ ରଖିବା ପ୍ରଭୃତି ଗାନ୍ଧିଜୀଙ୍କର ନୀତିକୁ ସେମାନେ

ଯେପରି କଠୋର ଭାଷାରେ ସମାଲୋଚନା କରୁଥିଲେ, ପ୍ରତି ପଦକ୍ଷେପରେ ପରିପୂର୍ଣ୍ଣ ଅହିଂସାକୁ ପ୍ରୟୋଗ କରିବାକୁ କହିବା ଅଥଚ ବାସ୍ତବକ୍ଷେତ୍ରରେ କଂଗ୍ରେସ ତାହାର ବିପରୀତ ଆଚରଣ ପ୍ରଦର୍ଶନ କରିବାକୁ ସେମାନେ ପ୍ରତାରଣା ବୋଲି କହୁଥିଲେ । ଗାନ୍ଧିଜୀଙ୍କ ଡାକରାରେ ଅକିଞ୍ଚନ ଓ ଅନାମଧେୟ ନରନାରୀ ଲକ୍ଷ ଲକ୍ଷ ସଂଖ୍ୟାରେ ସ୍ୱାଧୀନତା ସଂଗ୍ରାମରେ ଲମ୍ଫ ପ୍ରଦାନ କରିବା ଫଳରେ ଦେଶରେ ବିଶାଳ ଜନଶକ୍ତି ସୃଷ୍ଟି ହୋଇଥିଲା । ନଚେତ୍ ବିପ୍ଳବୀ ଆନ୍ଦୋଳନ କେବଳ ମୁଷ୍ଟିମେୟ ଲୋକଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିଥା'ନ୍ତା । ଅଗଷ୍ଟ ବିପ୍ଳବର ସ୍ୱତଃସ୍ଫୂର୍ତ୍ତ ବିସ୍ଫୋରଣ ବା ଆଜାଦ ହିନ୍ଦ୍ ଫୌଜର ବିଚାର ବିରୋଧରେ ହୋଇଥିବା ଆକୁମାରୀ ହିମାଚଳ ଗଣବିଦ୍ରୋହ କଦାପି ସମ୍ଭବ ହୋଇ ନ ଥାନ୍ତା । ସଶସ୍ତ୍ର ମୁକ୍ତିସଂଗ୍ରାମର ସାଫଲ୍ୟ ପାଇଁ ଏହାକୁ ଗାନ୍ଧିଜୀଙ୍କର ସର୍ବଶ୍ରେଷ୍ଠ ଅବଦାନ ବୋଲି କୁହାଯାଇପାରେ ।

□□□

## ଅଧ୍ୟାୟ - ନଅ

# ବଙ୍ଗର ବହ୍ନିଶିଖା

ଭାରତରେ ସଶସ୍ତ୍ର ମୁକ୍ତିଯୁଦ୍ଧ ଯେତେବେଳେ ବିବେକାନନ୍ଦ-ତିଳକ ଓ ଅରବିନ୍ଦଙ୍କ ରାଜନୈତିକ ଦର୍ଶନଦ୍ୱାରା ଅଗ୍ରଗତି ପଥରେ ଧାବିତହେଉଥିଲା, ଠିକ୍ ସେତିକିବେଳେ ଅଦୂରଦର୍ଶୀ ଭାଇସ୍‌ରାୟ ଲର୍ଡ଼ କର୍ଜନ ବଙ୍ଗ ବିଚ୍ଛେଦ ପ୍ରସ୍ତାବ ଦେଇ ମୁକ୍ତିସଂଗ୍ରାମ ଇତିହାସରେ ଏକ ନୂତନ ଓ ଗୌରବୋଜ୍ଜ୍ୱଳ ଅଧ୍ୟାୟ ଯୋଗ କରିବାର ନିମିତ୍ତ ହେଲା ।

ସଶସ୍ତ୍ର ବିପ୍ଳବ ପ୍ରତି ବୀତସ୍ପୃହ ଓ ଭୀତତ୍ରସ୍ତ ସାମନ୍ତବାଦୀ ସମାଜର ରାଜନୈତିକ ଆକାଙ୍‌କ୍ଷା ପୂରଣ କରିବାକୁ ୧୮୮୫ ଖ୍ରୀଷ୍ଟାବ୍ଦରେ 'ଜାତୀୟ କଂଗ୍ରେସ' ଜନ୍ମଲାଭ କରିଥିଲେ ସୁଦ୍ଧା ତାହା ଆପାମର ଜନତାର ଶ୍ରଦ୍ଧା ବା ବିଶ୍ୱାସଭାଜନ ହୋଇପାରି ନ ଥିଲା । ଅନ୍ୟ ପକ୍ଷରେ କ୍ଷୟିଷ୍ଣୁ ସାମ୍ରାଜ୍ୟବାଦର ପ୍ରଧାନ ପୃଷ୍ଠପୋଷକ ଇଂଲଣ୍ଡ ମଧ୍ୟ ବିଶ୍ୱଦରବାରରେ ଉଭୟ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱୀମାନଙ୍କଦ୍ୱାରା କଣ୍ଠାଗ୍ରତ ପ୍ରାଣ ହେବାକୁ ବସିବା ଫଳରେ ଭାରତବର୍ଷରେ ସାମ୍ରାଜ୍ୟବାଦୀ ଶୋଷଣ ଯନ୍ତ୍ର ଦିନକୁ ଦିନ ଅଧିକ ଦୃଢ଼ ଓ ତୀବ୍ର ହେବାକୁ ଲାଗିଲା । ପ୍ରକୃତିର ନିୟମ ଅନୁସାରେ ଏହି ଶୋଷଣର ପ୍ରତିକ୍ରିୟା ମଧ୍ୟ ସକଳ କ୍ଷେତ୍ରରେ ଅଧିକରୁ ଅଧିକ ଆତ୍ମପ୍ରକାଶ କଲା । ଊନବିଂଶ ଶତାବ୍ଦୀର ଶେଷଆଡ଼କୁ ସାରା ଏସିଆରେ ଏକ ନୂତନ ଜାଗରଣ ଦେଖା-ଦେଇଥିଲା । ସାମ୍ରାଜ୍ୟବାଦ କବଳରୁ ମୁକ୍ତିଲାଭପାଇଁ ଚାରିଆଡ଼େ ଏକ ନୂତନ ସ୍ପନ୍ଦନ ସୃଷ୍ଟି ହେବାକୁ ଲାଗିଲା । ଆୟାର୍ଲଣ୍ଡର ହୋମ୍‌ରୁଲ ଆନ୍ଦୋଳନ ଏଭଳି ତୀବ୍ର ହେଲା ଯେ ଇଂଲଣ୍ଡର ଉଦାରପନ୍ଥୀ ପ୍ରଧାନମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍ ମଧ୍ୟ ଏହାକୁ ସମର୍ଥନ କରିବାକୁ ବାଧ୍ୟ ହେଲେ । ଦ.ଆଫ୍ରିକାରେ ବୁଅର ବିଦ୍ରୋହ ମଧ୍ୟ ଏହି ସମୟର ଘଟଣା । ଜାପାନର କ୍ରମବର୍ଦ୍ଧିଷ୍ଣୁ ଶିଳ୍ପସମୃଦ୍ଧି ଏସିଆବାସୀଙ୍କ ଭିତରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଯୁଗଯୁଗର ହୀନମନ୍ୟତା ଉପରେ ଆଘାତ ହାଣିଲା । ଏପରିକି ଇଟାଲୀର ଏକତ୍ରିକରଣ ଆନ୍ଦୋଳନ ମଧ୍ୟ ଭାରତୀୟଙ୍କ ଭିତରେ ନୂତନ ଜାଗରଣ ଆଣିଦେଲା । ଏହି ପରିପ୍ରେକ୍ଷୀରେ ତିଳକ ଓ ଅରବିନ୍ଦଙ୍କ ଅଗ୍ନିବର୍ଷୀ ଭାଷଣ ଏ ଦେଶରେ କିଭଳି ପ୍ରଭାବ ବିସ୍ତାର କରିଥିବ ତାହା ସହଜରେ ଅନୁମାନ କରିହେବ ।

ଏହିଭଳି ଏକ ମାହେନ୍ଦ୍ର ସମୟରେ ଲର୍ଡ କର୍ଜନ ଭାରତକୁ ଭାଇସରାୟ ହୋଇ

ଆସିଲେ । କ୍ଷମତାମତ୍ତ ଅଦୂରଦର୍ଶୀ ଓ ଏକଜିଦିଆ କର୍ଜନଙ୍କର ପ୍ରଥମ କାର୍ଯ୍ୟ ହେଲା କ୍ରମବର୍ଦ୍ଧିଷ୍ଣୁ ଭାରତୀୟ ଜାତୀୟତାର ବିଲୋପସାଧନ ଏବଂ ତା'ର ପ୍ରଥମ ପଦକ୍ଷେପ ହେଲା 'ବଙ୍ଗ ବିଚ୍ଛେଦ' ପ୍ରସ୍ତାବ । ବଙ୍ଗଳାର ବିରାଟ ଆକାର ଦୃଷ୍ଟିରୁ ଏହାକୁ ଦୁଇଖଣ୍ଡ କରିବା ପ୍ରଶାସନିକ ସୁବିଧାଦୃଷ୍ଟିରୁ ଏକାନ୍ତ ଅପରିହାର୍ଯ୍ୟ ବୋଲି କୁହାଯାଉଥିଲେ ସୁଦ୍ଧା ଭାରତୀୟ ଜାତୀୟତାର ମୂଳପିଣ୍ଡ ବଙ୍ଗଦେଶକୁ ଖଣ୍ଡ ଖଣ୍ଡ କରି ଦୁର୍ବଳ କରିବା ଏହାର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା । ସେହି କାରଣରୁ ଏହି ପ୍ରସ୍ତାବକୁ ଅତୀବ ଗୋପନୀୟ ଭାବରେ ବିଚାରକରାଯାଉଥିଲା । ତତ୍‌କାଳୀନ ହୋମ୍ ସେକ୍ରେଟାରୀ ରିସ୍‌ଲେ କର୍ଜନଙ୍କୁ ଗୋପନ ରିପୋର୍ଟରେ ଲେଖିଥିଲେ, "Bengal United is a power, Bengal divided will pull several different ways. This is perfectly true and is one of the great merits of the scheme." (1) (ସମ୍ମିଳିତ ବଙ୍ଗଳା ଏକ ମହାନ୍ ଶକ୍ତି, ଖଣ୍ଡିତ ବଙ୍ଗଳାର ଶକ୍ତି ଛିନ୍ନଭିନ୍ନ ହୋଇପଡ଼ିବ । ଏହା ନିରାଟ ସତ୍ୟ ଏବଂ ଏହି ଯୋଜନାର ଏହାହିଁ ଏକ ମୁଖ୍ୟ ଲାଭ) । ଇଂଲଣ୍ଡ ପାର୍ଲିଆମେଣ୍ଟର ତତ୍‌କାଳୀନ ହୋମ୍ ମେମ୍ବର ଇବେଟ୍‌ସନ୍‌ଙ୍କର ଏକ ବିବରଣୀରୁ ସରକାରର ବାସ୍ତବ ଉଦ୍ଦେଶ୍ୟ ଆହୁରି ପ୍ରତ୍ୟକ୍ଷ ଭାବରେ ପ୍ରକଟିତ ହୋଇଅଛି । ବଙ୍ଗ ବିଚ୍ଛେଦ ବିରୋଧୀ ଆନ୍ଦୋଳନର ଜବାବରେ ସେ କହିଥିଲେ, "I think however that the agitators clearly perceive that the transfer will put an end to or at any rate, greatly weaken the existing preponderance in the provincial politics of Bengal proper which absolutely overshadows Bihar, Orissa and but this preponderance is an evil and it is most desirable to diminish it" (2) (ଯାହାହେଉ ମୁଁ ଭାବୁଛି ଯେ ଆନ୍ଦୋଳନକାରୀମାନେ ସ୍ପଷ୍ଟତଃ ଅନୁଭବ କଲେଣି ଯେ ବଙ୍ଗବିଚ୍ଛେଦ ପ୍ରସ୍ତାବ ବଙ୍ଗଳାର ପ୍ରାଦେଶିକ ରାଜନୀତିର ଗୁରୁତ୍ୱ, ଯାହାକି ବିହାର ବା ଓଡ଼ିଶାର ଭୂମିକାକୁ ନ୍ୟୂନ କରିଦେଇଛି ତାହା ସଂପୂର୍ଣ୍ଣରୂପେ ଲୋପ ନ ପାଇଲେ ବି ଖୁବ୍ ଦୁର୍ବଳ ହୋଇପଡ଼ିବ । କିନ୍ତୁ ବଙ୍ଗଳାର ଏହି ଶ୍ରେଷ୍ଠତ୍ୱର ଭୂମିକାହିଁ ଏକ ମହାନ୍ ବିପଦ ଏବଂ ଏହାକୁ ହ୍ରାସ କରିଦେବା ଉଚିତ ।)

ସୁତରାଂ ବଙ୍ଗବିଚ୍ଛେଦ ପ୍ରସ୍ତାବ ସରକାରର ଏକ ବିରାଟ ରାଜନୈତିକ ଷଡ଼ଯନ୍ତ୍ର । ଏହାର ଅସଂଖ୍ୟ ପ୍ରମାଣ ଇତିହାସରେ ରହିଛି । ଐତିହାସିକ ହେନ୍ରିକଟନ୍ ଏ ସଂପର୍କରେ ଯାହା ଲେଖିଛନ୍ତି, ତାହା ମଧ୍ୟ ବିଶେଷ ପ୍ରଣିଧାନଯୋଗ୍ୟ । ଲର୍ଡହାଡ଼ିଂଜ ସ୍ୱୀକାର କରିଛନ୍ତି, ''ବଙ୍ଗାଳୀମାନଙ୍କୁ ଧ୍ୱଂସକରିଦେବା ନୀତି ଆମକୁ ଅନ୍ୟଦିଗପ୍ରତି ପ୍ରାୟ ଅନ୍ଧ କରିଦେଇଥିଲା ।''

ବଙ୍ଗାଳୀ ଜାତିର କି ବିଶେଷତ୍ୱ ଥିଲା ଯେ ଇଂରେଜ ସରକାର ସେ ଜାତିକୁ ଏତେ ଭୟ କରୁଥିଲା, ଏହି ପ୍ରଶ୍ନ ସ୍ୱତଃ ମନରେ ଉଠେ । ବଙ୍ଗଳାର ଭୌଗୋଳିକ ଅବସ୍ଥିତି ଯୋଗୁଁ ବଙ୍ଗାଳୀମାନଙ୍କର ଏକ ସ୍ୱତନ୍ତ୍ର ସଂବନ୍ଧ ଇଂରେଜମାନଙ୍କ ସହ ସ୍ଥାପିତ

1,2. Curzon Papers– Curzon to Brodrick, 2nd Feb– 1905

ହୋଇଥିଲା । ପଣ୍ଡିତ ସୁନ୍ଦର ଲାଲ ତାଙ୍କର 'ଭାରତମେଁ ଅଂଗରେଜୀ ରାଜ' ଗ୍ରନ୍ଥରେ ଯଦିଓ ବଙ୍ଗାଳୀଙ୍କର 'ଆତ୍ମଭୋଳା' ପ୍ରକୃତିକୁ ଏଥିପାଇଁ ଦାୟୀ କରିଛନ୍ତି ଏହାର କାରଣ ଆହୁରି ଗଭୀରରେ ଲୁକ୍‌କାୟିତ । ଭୌଗୋଳିକ କାରଣ ଓ ବାଣିଜ୍ୟିକ ସୁବିଧା ଦୃଷ୍ଟିରୁ ଇଂରେଜମାନେ ବଙ୍ଗଳାରେ ପ୍ରଥମେ ଆସ୍ଥାନ ଜମେଇଥିଲେ । ସୁତରାଂ ଇଂରେଜୀ ସଭ୍ୟତାର ସୁଫଳ ଓ କୁଫଳ ପ୍ରଥମେ ବଂଗାଳୀମାନେହିଁ ଅନୁଭବ କରିଥିବା ସ୍ୱାଭାବିକ । ବଂଗଳାରେ ସଂଘଟିତ ପଲାସୀଯୁଦ୍ଧ ଯେମିତି ଭାରତରେ ଇଂରେଜ ସାମ୍ରାଜ୍ୟ ପ୍ରତିଷ୍ଠାର ମୂଳଦୁଆ ପକାଇଥିଲା, ବଙ୍ଗଳାର ବିପ୍ଲବୀହିଁ ପ୍ରଥମେ ସେ ମୂଳଦୁଆକୁ ହଲାଇ ଦେବାକୁ ସମର୍ଥ ହୋଇଥିଲା । ପଲାସୀ ଯୁଦ୍ଧରେ ବିଶ୍ୱାସଘାତକ ମୀରଜାଫର ବା ପରବର୍ତ୍ତୀ ଯୁଗରେ ନରେନ ଗୋସାଇଁ ବା ନେତ୍ରସେନ ଯେମିତି ସ୍ୱାଧୀନତା ସଂଗ୍ରାମ ଇତିହାସରେ କଳଙ୍କ ରଚନା କରିଥିଲେ, ବଂଗଳାର ନେତାଜୀ, ରାସବିହାରୀ, ବାଘା ଯତୀନ ବା ବିନୟ-ବାଦଲ-ଦୀନେଶ ମଧ୍ୟ ସେହିଭଳି ଇତିହାସକୁ ମହିମାମଣ୍ଡିତ କରିଅଛନ୍ତି । ଭାବପ୍ରବଣ ବଂଗାଳୀଜାତି ଯେତେବେଳେ ଅନୁଭବ କଲେ ଯେ ସେମାନଙ୍କ ଅଦୂରଦର୍ଶିତା ବା ଅନ୍ୟମନସ୍କତା ଯୋଗୁଁ ଦେଶର ସ୍ୱାଧୀନତା ଲୋପହୋଇଛି, ସେତେବେଳେ ସେମାନେ ଦୁର୍ବାର ଗତିରେ ଶତ୍ରୁ ଉପରେ ଲମ୍ଫ ପ୍ରଦାନ କଲେ ଏବଂ ସେହି ଅଭିଯାନର ଶୁଭ ଉଦ୍‌ଘାଟନ ହେଲା ବଂଗ ବିଚ୍ଛେଦ ଆନ୍ଦୋଳନରେ । ଇଂରେଜମାନେ ମୂଳରୁ ବଂଗାଳୀ ଜାତିକୁ ଭଲଭାବରେ ଚିହ୍ନିଥିଲେ ବୋଲିହିଁ ସେମାନଙ୍କର ଏକତାକୁ ଧ୍ୱସ୍ତବିଧ୍ୱସ୍ତ କରିବାକୁ ବଦ୍ଧପରିକର ହେଲେ ।

କର୍ଜନ ତତ୍‌କାଳୀନ ସେକ୍ରେଟାରୀ ଅଫ୍ ଷ୍ଟେଟ୍‌କୁ ଏକ ଚିଠିରେ ଜଣାଇଥିଲେ, "Calcutta is the centre from which the Congress Party is manipulated throughout the whole of Bengal and indeed the whole of India. Its best wirepullers and its most frothy orators all reside here. The whole of their activity is directed to creating an agency so powerful that they may one day be able to force a weak Government to give them what they desire."(1) (କଲିକତା ହେଉଛି କେନ୍ଦ୍ର ଯେଉଁଠାରୁ କଂଗ୍ରେସ ଦଳର କାର୍ଯ୍ୟକଳାପ ଖାଲି ବଂଗଳାରେ କାହିଁକି ସମଗ୍ର ଦେଶରେ ନିୟନ୍ତ୍ରିତ ହେଉଛି । ତାହାର ସମସ୍ତ କାରପଟଦାର ଓ କୁହାଳିଆ ନେତାମାନେ ଏହିଠାରେ ହିଁ ବାସ କରନ୍ତି । ସେମାନଙ୍କର ସମସ୍ତ କାର୍ଯ୍ୟକଳାପ ଏକ ଶକ୍ତିଶାଳୀ ଏଜେଣ୍ଟ ନିର୍ମାଣ କରିବାକୁ ଅହରହ ଉଦ୍ୟମ କରୁଛି ଯେ କି ଦିନେନା ଦିନେ ଏକ ଦୁର୍ବଳ ସରକାରଠାରୁ ଯାହାଇଚ୍ଛା କରିବ ତାହା ଆଦାୟ କରିବାକୁ ସମର୍ଥ ହେବ ।) କର୍ଜନଙ୍କ ଢାକା ଗସ୍ତ ପୂର୍ବରୁ ସେ ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ଙ୍କ ନିକଟକୁ ଯେଉଁ ରିପୋର୍ଟ ଦେଇଥିଲେ ତାହା ହୀନ ଇଂରେଜୀ ଷଡ଼ଯନ୍ତ୍ରର ଆଉ ଏକ ପ୍ରମାଣ । ସେଥିରେ ସେ ଅନ୍ୟାନ୍ୟ କଥା ଭିତରେ

1. Curzon Papers– Curzon Brodrick. 2nd Feb. 1905

ଏହା ମଧ୍ୟ ଲେଖିଥିଲେ ଯେ, "If we are weak enough to yield to their clamour now, we shall not be able to dismember or reduce Bengal again, and you will be cementing and solidifying in the eastern flank of India a force already formidable and certain to be a source of increasing trouble in future. (ସେମାନଙ୍କର ଦାବିକୁ ବର୍ତ୍ତମାନ ଯଦି ଆମ୍ଭେମାନେ ମାନିନେବା ତେବେ ଆମେ ଆଉ କେବେହେଲେ ବଂଗଳାକୁ ଖଣ୍ଡ ଖଣ୍ଡ କରିପାରିବା ନାହିଁ ଏବଂ ଏହାଦ୍ୱାରା ପୂର୍ବଭାରତରେ ଏକଜୁଟ ହୋଇସାରିଥିବା ବିରାଟ ଶକ୍ତିକୁ ଆହୁରି ଦୃଢ଼ କରିବା ଭଳି କଥା ହେବ ଏବଂ ଭବିଷ୍ୟତ୍ ପାଇଁ ଏହା ଏକ ନିଶ୍ଚିତ ବିପଦ ।)

୧୯୦୫ ମସିହା ଜୁଲାଇ ୬ ତାରିଖରେ ବ୍ରିଟିଶ୍ ପାର୍ଲିଆମେଣ୍ଟ ବଙ୍ଗ ବିଚ୍ଛେଦ ପ୍ରସ୍ତାବ ଘୋଷଣାକଲେ । ତା' ପୂର୍ବରୁ ଭାରତୀୟମାନଙ୍କ ନିକଟରେ ଏହା ଯେ ଏକାବେଳକେ ଅଜ୍ଞାତ ଥିଲା ତାହା କୁହାଯାଇପାରିବନାହିଁ । କିନ୍ତୁ କର୍ଜନର ଏହି ପ୍ରସ୍ତାବ ବିରୋଧରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ମତ ପ୍ରକାଶ କରିଥିବାରୁ ସମସ୍ତେ ଆଶାକରୁଥିଲେ ଯେ ଶେଷପର୍ଯ୍ୟନ୍ତ ଏହି ପ୍ରସ୍ତାବ ହୁଏତ କାର୍ଯ୍ୟକାରୀ ହେବନାହିଁ, କିନ୍ତୁ ତାଙ୍କର (ସେକ୍ରେଟାରୀ ଅଫ୍ ଷ୍ଟେଟ୍) ବିରୋଧ ସତ୍ତ୍ୱେ ଏହା ଗ୍ରହଣକରାଗଲା । ନିଜେ କର୍ଜନ ସ୍ୱୀକାର କରିଅଛନ୍ତି, "The measure had been thrown as a step to soothe my wounded feeling rather than on grounds of political propriety or expediency." (1) (ଏହି ବ୍ୟବସ୍ଥାର ରାଜନୈତିକ ଉପଯୋଗିତା ଅପେକ୍ଷା ମୋର ଆହତ ସମ୍ମାନ ପ୍ରତି ଏକ ରିହାତି ଦୃଷ୍ଟିରୁ ଗ୍ରହଣକରାଯାଇଥିଲା ।)

ଆଶ୍ଚର୍ଯ୍ୟର କଥା, ଏହା ସେତେବେଳେ ଇଂଲଣ୍ଡରେ କେହି ବୁଝିପାରିଲେନାହିଁ ଯେ ଭାରତର ଏକ ଜାଗ୍ରତଗୋଷ୍ଠୀର ମତ ବିରୋଧରେ ଏହି ପ୍ରସ୍ତାବଟି ସହଜରେ କାର୍ଯ୍ୟକାରୀ ହୋଇପାରିବନାହିଁ ଏବଂ ଭାରତୀୟମାନଙ୍କର ଯେଉଁ ଏକତାକୁ ଖଣ୍ଡ ବିଖଣ୍ଡ କରିବା ଏହି ପ୍ରସ୍ତାବର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଏହାଦ୍ୱାରା ସେହି ଏକତା ଅଧିକ ଦୃଢ଼ୀଭୂତ ହେବ । ବାସ୍ତବରେହିଁ ତାହା ହେଲା ।

ପ୍ରସ୍ତାବଟି ପ୍ରକାଶିତ ହେବା ସଂଗେ ସଂଗେ ସାରା ଦେଶ ଏହାର ପ୍ରତିବାଦରେ ଫାଟିପଡ଼ିଲା । ବଂଗଳାର ପରମ ସୌଭାଗ୍ୟ ଯେ ଦେଶର ଭାଗ୍ୟ ଯେତେବେଳେ ଏହିଭଳି ବିପନ୍ନ ସେତେବେଳେ ତା' କୋଳରେ ଜନ୍ମଗ୍ରହଣ କରିଥିଲେ ବହୁ ପ୍ରାତଃସ୍ମରଣୀୟ ମନୀଷୀ ଯେଉଁମାନେ ଏହି ଚାଲେଂଜକୁ ବୀରଭାବରେ ଗ୍ରହଣ କରିଥିଲେ । ସେହି ମହାନ୍ ବିପ୍ଳବୀମାନଙ୍କର ଦୀର୍ଘ ତାଲିକା ମଧ୍ୟରୁ ଗୁରୁଦାସ ବାନାର୍ଜି, ସୁରେନ୍ଦ୍ରନାଥ ବାନାର୍ଜି, କବିଗୁରୁ ରବୀନ୍ଦ୍ରନାଥ, ସତୀଶ ମୁଖାର୍ଜି, ମୋତିଲାଲ ଘୋଷ, ଆନନ୍ଦ ମୋହନ ବୋଷ, ଐତିହାସିକ ରମେଶଚନ୍ଦ୍ର ଦତ୍ତ, ବିପିନଚନ୍ଦ୍ର ପାଲ, ଅଶ୍ୱିନୀ କୁମାର ଦତ୍ତ, ଅମ୍ବିକାଚରଣ ମଜୁମଦାର ଓ ଶ୍ରୀ କେ. କେ. ମିତ୍ରଙ୍କ ନାମଗୁଡ଼ିକ ଉଲ୍ଲେଖ

1. H.W. Nevinson– The New Spirit in India– Page- 13.

କରାଯାଇପାରେ । ଏହି କେ. କେ. ମିତ୍ରଙ୍କର 'ସଂଜୀବନୀ' ପତ୍ରିକାରେହିଁ ସର୍ବପ୍ରଥମେ ବଂଗ ବିଭାଜନ ସଂବାଦ ପ୍ରକାଶିତହେଲା ।

ସାରା ବଂଗଳା ହୁଲସ୍ଥୁଲ ହୋଇପଡ଼ିଲା । ପ୍ରତିବାଦ ସଭା ଓ ଶୋଭାଯାତ୍ରାରେ ଭରିଗଲା ବଂଗଳାର ଗାଁଗହଳ, ରାସ୍ତାଘାଟ ଓ ସହରବଜାର । ହଜାର ହଜାର ସ୍ୱାକ୍ଷର ସମ୍ବଳିତ ସ୍ମାରକପତ୍ର ବ୍ରିଟିଶ୍ ପାର୍ଲିଆମେଣ୍ଟକୁ ପଠାଗଲା । ଜମିଦାର ସଂଘ ଓ ଅନ୍ୟାନ୍ୟ ରକ୍ଷଣଶୀଳ ଅନୁଷ୍ଠାନସବୁ ବ୍ରିଟିଶ୍ ଶାସକମାନଙ୍କର ତଥାକଥିତ ସଦିଚ୍ଛା ଓ ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ନିବେଦନ କରିବାକୁ ଲାଗିଲେ । କଂଗ୍ରେସ ମଧ୍ୟ ଏହାଠାରୁ ଆଉ ଅଧିକ ଆଗକୁ ଯାଇପାରିଲା ନାହିଁ । ତତ୍କାଳୀନ କଂଗ୍ରେସ ନେତୃତ୍ୱ ଯେଉଁମାନଙ୍କ ଉପରେ ନ୍ୟସ୍ତଥିଲା ସେମାନେ ଆବେଦନ ନିବେଦନ ସ୍ତରକୁ ଅତିକ୍ରମ କରିବା ପାଇଁ ଚିନ୍ତା ସୁଦ୍ଧା କରିପାରୁ ନ ଥିଲେ । କିନ୍ତୁ ବଂଗୀୟ କଂଗ୍ରେସ ନେତାମାନଙ୍କର ଚିନ୍ତାଧାରା ଥିଲା ଅଧିକ ମୌଳିକ ଓ ପ୍ରଗତିଶୀଳ- ବୈପ୍ଲବିକ ନ ହେଲେ ବି । ସୁରେନ୍ଦ୍ର ନାଥ ବାନାର୍ଜି ବିଚ୍ଛେଦ-ବିରୋଧୀ ଆନ୍ଦୋଳନକୁ ଏକ ଜାତୀୟ ଆନ୍ଦୋଳନର ରୂପ ଦେବାକୁ ଏବଂ ଏହା ଯେ କେବଳ ବଂଗବାସୀଙ୍କର ସମସ୍ୟା ନୁହେଁ ସାରାଦେଶର ସମସ୍ୟା, ଏହା ବୁଝାଇବାକୁ ସାରା ଭାରତରେ ବକ୍ତୃତା-ଗସ୍ତ ଆରମ୍ଭକରିଦେଲେ । "୧୯୦୩ ମସିହା ଡିସେମ୍ବରଠାରୁ ୧୯୦୫ ଅକ୍ଟୋବର ପର୍ଯ୍ୟନ୍ତ କେବଳ ବଂଗଳାରେ ପ୍ରାୟ ଦୁଇ ହଜାର ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଯେଉଁ ସଭାମାନଙ୍କରେ ପାଞ୍ଚ ଶହରୁ ପଚାଶ ହଜାର ପର୍ଯ୍ୟନ୍ତ ଲୋକ ଯୋଗଦେଇଥିଲେ ।"

କିନ୍ତୁ ଏସବୁ ସତ୍ତ୍ୱେ ସରକାର ହଲିଲା ନାହିଁ । ଫଳରେ ୧୯୦୫ ଅଗଷ୍ଟ ୭ ତାରିଖରେ ବିଚ୍ଛେଦ-ବିରୋଧୀ ଆନ୍ଦୋଳନ ଏକ ନୂଆ ମୋଡ଼ ନେଲା । କଲିକତା ଟାଉନ୍ ହଲ୍‌ରେ ଆହୂତ ସାଧାରଣ ସଭାରେ ଏତେ ସଂଖ୍ୟାରେ ଲୋକ ଯୋଗଦେଇଥିଲେ ଯେ ଗୋଟିଏ ସଭାରେ ସେମାନଙ୍କୁ ସମ୍ଭାଳିବା ସମ୍ଭବ ହେଲା ନାହିଁ, ପାଖାପାଖି ତିନିଗୋଟି ସଭା କରିବାକୁ ପଡ଼ିଲା । ସେହି ସଭାରେ ସ୍ଥିରହେଲା, "To abstain from the purchase of British manufacturers so long as the Partition Resolution is not withdrawn." (1) (ବିଚ୍ଛେଦ ପ୍ରସ୍ତାବ ପ୍ରତ୍ୟାହୃତ ନ ହେବା ପର୍ଯ୍ୟନ୍ତ ବ୍ରିଟିଶ୍ ତିଆରି ଦ୍ରବ୍ୟର ବ୍ୟବହାରଠାରୁ ସମସ୍ତେ ଦୂରରେ ରହିବେ ।) ଉପରୋକ୍ତ ତିନିଗୋଟି ସାଧାରଣ ସଭା ମଧ୍ୟରୁ ଗୋଟିକରେ ସଭାପତିତ୍ୱ କରିଥିବା ଶ୍ରୀ ଅମ୍ବିକା ଚରଣ ମଜୁମଦାରଙ୍କ ଭାଷାରେ, "With the Partition of Bengal political agitation in this country enters upon a new phase. It has unmistakably demonstrated two things. First resolute despotism of the Government and secondly, the utter futility of the kind of agitation to which we have grown accustomed."(2) (ବଂଗବିଚ୍ଛେଦସହ ଏହି ଦେଶରେ ରାଜନୈତିକ ଆନ୍ଦୋଳନ ଏକ ନୂତନ ପର୍ଯ୍ୟାୟରେ ପହଞ୍ଚିଛି । ଏହା ନିର୍ଭୁଲ ଭାବେ

1. P. Mookherji– All About Partition. Page- 205
2. P. Mookherji- All About– Partition. page- 207

ଦୁଇଟି କଥା ପ୍ରମାଣିତ କରିଅଛି । ପ୍ରଥମତଃ ସରକାରର ଦୃଢ଼ପ୍ରତିଜ୍ଞ ଏକଛତ୍ରବାଦ ନୀତି ଏବଂ ଦ୍ୱିତୀୟତଃ ଆମ୍ଭେମାନେ ଆଜିଯାଏ ଅଭ୍ୟସ୍ତ ହୋଇଆସିଥିବା ଆନ୍ଦୋଳନ ପ୍ରଣାଳୀର ବ୍ୟର୍ଥତା ।) ଏହିଭଳି ଭାବରେ ମାତ୍ର କେଇମାସ ଭିତରେ ଭାରତ ଇତିହାସର ଗତିଧାରାର ଏକ ମୌଳିକ ପରିବର୍ତ୍ତନ ହେଲା । ସୁତରାଂ ୧୬ ତାରିଖ ଅକ୍ଟୋବରରେ ଯେତେବେଳେ ବଂଗ ବିଚ୍ଛେଦ ପ୍ରସ୍ତାବ ବାସ୍ତବରେ କାର୍ଯ୍ୟକାରୀ ହେଲା ଏବଂ ନୂଆ ପ୍ରଦେଶର ଗଭର୍ଣ୍ଣରଭାବେ ଫୁଲର୍ ସାହେବ କାର୍ଯ୍ୟଭାର ଗ୍ରହଣ କଲେ, ସେ ଦିନ ସାରା ବଂଗପ୍ରଦେଶ ବିକ୍ଷୋଭ ଓ ଅସନ୍ତୋଷରେ ଫାଟିପଡ଼ିଲା । ସେଦିନ ପ୍ରତ୍ୟୁଷରୁ ହଜାର ହଜାର ନରନାରୀ ଗଂଗାନଦୀରେ ସ୍ନାନକରି କାଳୀମନ୍ଦିରରେ ସାମୂହିକ ଶପଥ ପାଠକଲେ । ଶପ୍ପଥପତ୍ରରେ ଲେଖାଥିଲା, "I will not use foreign made goods as far as practicable, I will not buy at the foreign merchants' shops articles that are available at the shop of the people of this country, and I will not get anything done by a foreigner which can be done by a countryman of mine."(1) (ମୁଁ ଯେତେଦୂର ସମ୍ଭବ ବିଦେଶୀ ତିଆରି ଜିନିଷ ବ୍ୟବହାର କରିବି ନାହିଁ, ମୁଁ ଆମ ଦେଶବାସୀଙ୍କ ଦୋକାନରେ ମିଳୁଥିବା ଜିନିଷ କୌଣସି ବିଦେଶୀ ଦୋକାନରୁ କିଣିବି ନାହିଁ । ମୁଁ ଆମ ଦେଶବାସୀଙ୍କଦ୍ୱାରା ତିଆରି ହୋଇପାରୁଥିବା କୌଣସି ଜିନିଷ ବିଦେଶୀମାନଙ୍କଠାରୁ ଗ୍ରହଣ କରିବି ନାହିଁ ।)

ଏହିଭଳି ଏକା ସଂଗରେ ବିଦେଶୀ 'ବୟକଟ୍' ଅର୍ଥାତ୍ ବିଦେଶୀ ଜିନଷ ବର୍ଜନ ଓ ସ୍ୱଦେଶୀ ଜିନଷ ଗ୍ରହଣ ଭଳି ଦୁଇଟି ମହାନ୍ ଶକ୍ତିଶାଳୀ ଅସ୍ତ୍ର ଆନ୍ଦୋଳନର ଅସ୍ତ୍ରାଗାରରେ ଯୋଗକରାଗଲା ।

'ବନ୍ଦେ ମାତରମ୍' ସ୍ଲୋଗାନରେ ଆକାଶ ଫାଟିପଡ଼ିଲା ଯେମିତି । ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ସଭାପତିତ୍ୱରେ ସେଦିନ ଯେଉଁ ବିରାଟ ସଭା ହୋଇଥିଲା ସେଥିରେ ରବୀନ୍ଦ୍ରନାଥ ପ୍ରଭୃତି ମହାନ୍ ବ୍ୟକ୍ତିମାନେ ଯୋଗଦେଇଥିଲେ ଏବଂ ଆନ୍ଦୋଳନ ପାଣ୍ଠିକୁ ସଂଗେ ସଂଗେ ପଚାଶ ହଜାର ଟଙ୍କା ଦାନ ମିଳିଥିଲା । ଶିକ୍ଷା, ଶାସନ ଓ ବିଚାର ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ସରକାର ସହ ଅସହଯୋଗ କରିବାର ନିଷ୍ପତ୍ତି ନିଆଗଲା ସେହି ସଭାରେ ।

ଭାରତୀୟମାନଙ୍କର ଏହି ନ୍ୟାଯ୍ୟ ଦାବି ପ୍ରତି ବିଲାତଠାରୁ ଆରମ୍ଭକରି କଲିକତା ପର୍ଯ୍ୟନ୍ତ ସଂବାଦପତ୍ରମାନେ ସମର୍ଥନ ଜଣାଇଲେ । 'ଟାଇମ୍ସ୍', 'ମାଞ୍ଚେଷ୍ଟର ଗାର୍ଡ଼ିଆନ୍', 'ଇଂଲିସ୍ ମ୍ୟାନ୍' ଓ 'ଷ୍ଟେଟସ୍‌ମ୍ୟାନ୍' ପ୍ରଭୃତି ଇଂରାଜୀ କାଗଜ ଓ 'ଅମୃତ ବଜାର ପତ୍ରିକା', 'ବେଂଗଲୀ', 'ସଂଜୀବନୀ', 'ହିତବାଦୀ', 'ବସୁମତୀ', 'ଖୁଲନା ହିତୈଷୀ', ଢାକାର 'ଢାକାପ୍ରକାଶ' ମୈମନସିଂର 'ଚାରୁମିହିର' ଓ 'ସଂଧ୍ୟା' ପ୍ରଭୃତି ବଂଗଳା କାଗଜ ବିଚ୍ଛେଦ ପ୍ରସ୍ତାବର ତୀବ୍ର ସମାଲୋଚନାକଲେ । 'ବେଂଗଲୀ'

1. A. C. Mazumdar– Indian National Evolution. Page 206

ପତ୍ରିକାରେ ସୁରେନ୍ଦ୍ର ବାନାର୍ଜି ସତର୍କ କରାଇଦେଇଥିଲେ, ''ଏହି ଅନ୍ୟାୟର ପ୍ରତିକାର ପାଇଁ ଯେକୌଣସି ତ୍ୟାଗ କରିବାକୁ ଭାରତୀୟମାନେ ପ୍ରସ୍ତୁତ ଅଛନ୍ତି ।'' ଏହିଭଳି ଭାବରେ କ୍ରମେ 'ବିଚ୍ଛେଦ ବିରୋଧୀ ଆନ୍ଦୋଳନ' ଭିତରେ ଦୁଇଟି ମତବାଦ ସୃଷ୍ଟି ହୋଇଉଠିଲା, ଗୋଟିଏ ହେଲା କଂଗ୍ରେସ ନେତୃତ୍ୱରେ ଗୋଟିଏ ଦରଖାସ୍ତିଆ ଦଳ – ଯେଉଁମାନେ ସେପର୍ଯ୍ୟନ୍ତ ସୁଦ୍ଧା ଇଂରେଜମାନଙ୍କ ଉପରେ ବିଶ୍ୱାସକରୁଥିଲେ ଏବଂ ଖୁବ୍ ଆଳଙ୍କାରିକ ଭାଷାରେ ଖୁବ୍ ବଳିଷ୍ଠ ଯୁକ୍ତିସମ୍ବଳିତ ଦରଖାସ୍ତ ଓ ସ୍ମାରକପତ୍ର ଦାଖଲ କରୁଥିଲେ । କିନ୍ତୁ ବଂଗଳାର ପ୍ରଗତିଶୀଳ ନେତୃତ୍ୱ ଏହାର ଆଗକୁ ଯାଇ ସକ୍ରିୟ ଅସହଯୋଗ ଆନ୍ଦୋଳନରେ ଅବତୀର୍ଣ୍ଣ ହେଲା ଏବଂ ସେହି ଆଦର୍ଶ ଅନୁସାରେ ସ୍ୱଦେଶୀ ଜିନିଷର ପ୍ରସାର ବଢ଼ିଲା ଓ ବିଦେଶୀ ଜିନିଷ ପ୍ରତି ଘୃଣା ଓ ଅନାଦର ଭାବ ସୃଷ୍ଟି ହେଲା । ଖାଲି ସେତିକି ନୁହେଁ, ଇଂରେଜୀ ସ୍କୁଲ କଲେଜରେ ଶିକ୍ଷାଲାଭ କରିବା ମଧ ଦେଶବିରୋଧୀ କାର୍ଯ୍ୟରୂପେ ଗଣ୍ୟ ହେଲା । ଭାରତୀୟ ଶିକ୍ଷାର ବ୍ୟବସ୍ଥା ପାଇଁ ରବୀନ୍ଦ୍ରନାଥ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କଲେ । ସ୍ୱଦେଶୀ ଦ୍ରବ୍ୟକୁ ଉତ୍ସାହିତ କରିବାକୁ ଜାତୀୟ ଆନ୍ଦୋଳନର ନେତାମାନେ ମଧ ଦେଶୀ ଜିନିଷର ବିକ୍ରୟ ଭଣ୍ଡାର ସ୍ଥାପନ କଲେ । ବ୍ରିଟିଶ୍ ବିରୋଧୀ ଆନ୍ଦୋଳନର ନେତାମାନଙ୍କଦ୍ୱାରା ମଧ ଦେଶୀ ଜିନିଷର ବିକ୍ରୟ ଭଣ୍ଡାର ସ୍ଥାପନକଲେ । ବ୍ରିଟିଶ୍ ବିରୋଧୀ ଆନ୍ଦୋଳନ ଯେତିକି ତୀବ୍ର ହେଲା, କଂଗ୍ରେସର ମାଦ୍ଦାଳିଆ ନେତା ଗୋଖଲେ ଓ ଫିରୋଜସାହ ମେହେଟା ପ୍ରଭୃତି ଏହି ଦମନ ନୀତିର ପ୍ରତିବାଦକଲେ; କାରଣ ସେମାନଙ୍କର ଆଶଙ୍କା ହେଲା ଯେ କଂଗ୍ରେସର ମିଳାମିଶା ପ୍ରସ୍ତାବ ସରକାର ଗ୍ରହଣ ନ କଲେ ଦେଶର ଅଶାନ୍ତ ଯୁବଶକ୍ତି ନିଶ୍ଚିତ ରୂପେ ଚରମପନ୍ଥୀମାନଙ୍କ ଆଡ଼କୁ ଢଳିବେ । ସେ ମିଣ୍ଟୋଙ୍କୁ ଲେଖିଥିଲେ, "The younger generation of India is going over to extremist side." (1) (ଭାରତର ଯୁବଶକ୍ତି ଚରମବାଦ ଆଡ଼କୁ ଯାଉଛନ୍ତି ।) କିନ୍ତୁ କେଉଁଥିରେ କିଛି ହେଲା ନାହିଁ । କଂଗ୍ରେସର ବହୁ ତଥ୍ୟ ଓ ଯୁକ୍ତିସମ୍ବଳିତ ବଳିଷ୍ଠ ସ୍ମାରକପତ୍ର କିମ୍ବା ସୁରେନ୍ଦ୍ର ବ୍ୟାନାର୍ଜି ପ୍ରଭୃତିଙ୍କ 'ବୟକଟ୍' ଓ 'ସ୍ୱଦେଶୀ' ଆହ୍ୱାନ ବ୍ରିଟିଶ୍ ସିଂହାସନକୁ ଇଞ୍ଚେ ବି ଘୁଞ୍ଚାଇ ପାରିଲା ନାହିଁ । ବରଂ ବିଭକ୍ତ ବଙ୍ଗଳାର ନୂଆ ଗଭର୍ଣ୍ଣର ଫୁଲର ସାହେବ 'ଫୁଲସ୍କିଡ୍'ରେ ଦମନଲୀଳା ଚଳାଇଲେ । ଆନ୍ଦୋଳନକାରୀ ଛାତ୍ରମାନଙ୍କୁ ଜୋରିମାନା, ବେତମାଡ଼, ସ୍କୁଲରୁ ବହିଷ୍କାର ଏପରିକି ସଂପୃକ୍ତ ସ୍କୁଲର ବିଭାଗୀୟ ମଞ୍ଜୁରି ମଧ୍ୟ ପ୍ରତ୍ୟାହାର କରିନିଆଗଲା । ତେଣେ ହିନ୍ଦୁ ମୁସଲମାନମାନଙ୍କ ଭିତରେ ବିଭେଦ ସୃଷ୍ଟି କରାଗଲା । ନୂତନ ପୂର୍ବବଙ୍ଗ ପ୍ରଦେଶରେ ମୁସ୍‌ଲିମ୍‌ମାନଙ୍କର ଅଧିକା ସୁବିଧା ହେବ ବୋଲି ସେଠାରେ ଏକ ଧାରଣା ସୃଷ୍ଟି କରାଗଲା । ଏହି ହୀନ ଷଡ଼ଯନ୍ତ୍ରକୁ ସଫଳ କରିବାକୁ ନିଜେ ଫୁଲର କେତେ'ତଳକୁ ଓହ୍ଲାଇଯାଇଥିଲେ ଆଜି ସେ କଥା ଭାବିଲେ

1. Tarachand- History of Freedom Movement in India., Vol- III, Pg- 345.

ବିସ୍ମିତ ହେବାକୁ ହୁଏ । ନିଢେ ଫୁଲର୍ ଦିନେ ଏକ ମୁସ୍‌ଲିମ୍ ସଭାରେ ଭାଷଣ ପ୍ରସଙ୍ଗରେ କହିଥିଲେ ଯେ 'ତାଙ୍କର ଦୁଇଟି ସ୍ତ୍ରୀ ଭିତରୁ ସେ ମୁସ୍‌ଲିମ୍ ସ୍ତ୍ରୀକୁ ବେଶି ଭଲପାଆନ୍ତି ।' ଯାହାହେଉ, ଇଂରେଜମାନଙ୍କର ଏହି ଷଡ଼ଯନ୍ତ୍ର ବହୁ ପରିମାଣରେ ସଫଳ ହୋଇଥିଲା । ବିଚ୍ଛେଦ ବିରୋଧୀ ଆନ୍ଦୋଳନର ପ୍ରଥମ ଅବସ୍ଥାରେ ମୁସ୍‌ଲିମ୍‌ମାନେ ଯେମିତି ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିଲେ ତାହା ଆଉ ହେଲା ନାହିଁ । କ୍ରମେ ସେମାନେ ଏହି ସର୍ବଭାରତୀୟ ଆନ୍ଦୋଳନରୁ ଦୂରେଇଗଲେ । କଥା ଏତେଦୂର ଗଲା ଯେ ଧର୍ମାନ୍ଧ ମୁସ୍‌ଲିମ୍‌ମାନେ ପ୍ରଚାରକଲେ, "The Hindus have robbed us of wealth, honour and glory of Islam. They spread the swadeshi Islam to take our lives, O Mahammadan, give not your wealth to the House of Hindus. Lowest of all is he who cries Bande Mataram with Hindus.(1)

❒ ❒ ❒

1. Tarachand- History of Freedom Movement in India., Vol- III, Pg- 347.

## ଅଧ୍ୟାୟ - ଦଶ

# ବୋମାତତ୍ତ୍ୱର ଜନ୍ମ

ଯାହାହେଉ ମାନ୍ଦାଦଳିଆ ଓ ପ୍ରଗତିବାଦୀଙ୍କ ଭିତରେ ଚାଲିଥିବା ଏ ସଂଘର୍ଷ ଭିତରୁ ଜନ୍ମହେଲା ଚରମ ଜାତୀୟତାବାଦ ବା Militant Nationalism । ଗୋଖଲେ ଯେଉଁ ସତର୍କବାଣୀ ଶୁଣାଇଥିଲେ ମାସ କେଇଟାରେ ତାହା ସତ୍ୟରେ ପରିଣତ ହେଲା । ସ୍ୱଦେଶୀ ଓ ବୟକଟ୍‌ରୂପୀ ଯୁଗ୍ମ ଅସ୍ତ୍ର ସ୍ୱାଧୀନତା ଯୁଦ୍ଧକୁ ଯେମିତି ଆକୁମାରୀ ହିମାଚଳ ପରିବ୍ୟାପ୍ତ କଲା, ଚରମ ଜାତୀୟତାବାଦ ସେମିତି ତା'ର ଧାରାକୁ କଲା ଅଧିକ ତୀକ୍ଷ୍ଣ, ତୀବ୍ର ଓ କଠୋର । ସ୍ୱାଧୀନତା ସଂଗ୍ରାମରେ ଏକ 'ତୃତୀୟ ଶକ୍ତି'ର ଆବିର୍ଭାବ ଘଟିଲା । ବ୍ରିଟିଶ୍ ଅହମିକାରୁହିଁ ଏହା ଜନ୍ମଲାଭକରିଥିଲା । ଲର୍ଡ଼ ମିଣ୍ଟୋଙ୍କ ଭାଷାରେ, "The Raj will not disappear in India as long as the British Rule remains what it is because we shall fight for the Raj as hard as we have ever fought, and we shall win as we have always won." (ବ୍ରିଟିଶ୍ ଜାତି ଥିବା ପର୍ଯ୍ୟନ୍ତ ଭାରତରେ ବ୍ରିଟିଶ୍ ରାଜ କଦାପି ଲୋପପାଇପାରିବନାହିଁ । ଆମେ ଏହି ରାଜକୁ ରକ୍ଷା କରିବାକୁ ସବୁଦିନ ଯେମିତି ଜୋରସୋରରେ ଲଢ଼ିଛୁ, ସେଭଳି ଲଢ଼ିବୁ ଏବଂ ସବୁଦିନ ଯେମିତି ଜିତିଛୁ ସେଭଳି ଜିତିବୁ ।) ସମ୍ଭବତଃ ମିଣ୍ଟୋଙ୍କର ଏହି ଦମ୍ଭର ପ୍ରତ୍ୟୁତ୍ତର ଦେଇ ଚରମପନ୍ଥୀମାନେ କହିଲେ, 'ଅସ୍ତ୍ରଶସ୍ତ୍ରଦ୍ୱାରା ଯେ ରାଜ୍ୟଜୟ କରିଛି; ଅସ୍ତ୍ରଶସ୍ତ୍ର ଉପରେ ନିର୍ଭର କରି ଯେ ସେହି ରାଜ୍ୟକୁ ପରାଧୀନ କରି ରଖିଛି । ସେ ଅସ୍ତ୍ରଶକ୍ତିଦ୍ୱାରାହିଁ ପରାଜିତ ହେବ । ଆବେଦନ, ନିବେଦନ, ଦରଖାସ୍ତ, ସ୍ମାରକପତ୍ର କିମ୍ବା ସ୍ୱଦେଶୀ ଓ ବୟକଟ୍‌ଦ୍ୱାରା ନୁହେଁ ।

ପ୍ରାୟ ଦେଢ଼ଶହ ବର୍ଷ ତଳେ (୧୮୩୮)ରେ ଇଂଲଣ୍ଡ ପାର୍ଲିଆମେଣ୍ଟରେ କାନାଡ଼ା ଡିବେଟ୍ ବେଳେ ସାର୍ ଉଇଲିୟମ୍ ମୋଲ୍‌ସୱାର୍ଥ ଯଥାର୍ଥରେ କହିଥିଲେ, "Where, however responsibility is wanting, the experience of all ages had proved that abuses would exist and continue to exist unreddressed until at last they reached that amount which induced the people no longer to trust to prayer and humble petition, but raise the cry of war and have recourse to arms." (ଯେତେବେଳେ ଦାୟିତ୍ୱବୋଧ କମିଯାଏ

ସେତେବେଳେ ଅବଜ୍ଞା ରହିବହିଁ ରହିବ ଏବଂ ଶେଷରେ ଏମିତି ଏକ ଅବସ୍ଥା ପହଞ୍ଚିଯିବ ଯେତେବେଳେ କି ଆଉ ନିବେଦନ, ଆବେଦନ ବା ପ୍ରାର୍ଥନା ଉପରେ ଲୋକଙ୍କର ବିଶ୍ୱାସ ରହିବ ନାହିଁ । ଯୁଦ୍ଧ ଡାକରା ଶୁଭିବ ଏବଂ ଲୋକେ ଅସ୍ତ୍ରର ସାହାଯ୍ୟ ନେବେ, ଏହାହିଁ ଯୁଗଯୁଗର ଅଭିଜ୍ଞତା ।)

ବଙ୍ଗବିଚ୍ଛେଦ ଆନ୍ଦୋଳନ ଓ ତଜ୍ଜନିତ ପରିସ୍ଥିତିର ମୁକାବିଲା କରିବାକୁ ହୋଇଥିବା ସରକାରୀ ଜୁଲମବାଜୀର ଜବାବରେ କ୍ରମେ ସ୍ୱାଧୀନତା ସଂଗ୍ରାମରେ ଯେଉଁ ଉଗ୍ର ଜାତୀୟତାବାଦର ଉଦ୍ଭବ ହେଲା, ତାହା ମାତ୍ର ୪-୫ ବର୍ଷ ଭିତରେ ଚରମ ସନ୍ତ୍ରାସବାଦରେ ଉପନୀତ ହେଲା ଏବଂ ବହୁ ପ୍ରାତଃସ୍ମରଣୀୟ ବିପ୍ଳବୀ, ମନୀଷୀ, କବି, କଳାକାର ଓ ନିର୍ଭୀକ ସାମ୍ବାଦିକଙ୍କର ଅଗ୍ନିବର୍ଷୀ ଲେଖନୀଚାଳନା ଫଳରେ ଏହା ଏକ ବୈଜ୍ଞାନିକ ବା ରାଜନୀତିକ ତତ୍ତ୍ୱରେ ପରିଣତ ହେଲା । ତତ୍କାଳୀନ ଇତିହାସ, ସରକାରୀ ରିପୋର୍ଟ ଏବଂ ବିଭିନ୍ନ ସମ୍ବାଦପତ୍ର ଗୁଡ଼ିକ ଗଭୀର ଭାବରେ ଅନୁଶୀଳନ କଲେ ଏହା ସ୍ପଷ୍ଟ ପ୍ରତୀତ ହୁଏ ଯେ ଭାରତୀୟମାନଙ୍କ ମଧ୍ୟରୁ ମୃତ୍ୟୁଭୟ ଦୂରକରିବା, ଇଂରେଜ ଶାସନ ପ୍ରତି ଏକ ବେପରୱାଭାବ ସୃଷ୍ଟିକରିବା, ଦେଶର ମୁକ୍ତି ପାଇଁ ଚରମ ତ୍ୟାଗବରଣ କରିବାକୁ ସେମାନଙ୍କୁ ଉଦ୍‌ବୁଦ୍ଧ କରିବା ଏବଂ ଭାରତବର୍ଷ ଭଳି ଏକ ସର୍ବ-ପୁରାତନ ସଂସ୍କୃତିସମ୍ପନ୍ନ ଓ ସମୃଦ୍ଧିଶାଳୀ ଦେଶରେ ସମ୍ରାଜ୍ୟବାଦୀ ବ୍ରିଟିଶ୍ ଶାସନର ରାଜତ୍ୱକୁ ବରଦାସ୍ତ କରିବା ଯେ ଏକ ଧର୍ମବିରୋଧୀ କାର୍ଯ୍ୟ ଏହା ପ୍ରତିପାଦିତ କରିବା, ଏପରିକି ବିଦେଶୀ ଶାସନର ଧ୍ୱଂସସାଧନ ଏକ ଆଧ୍ୟାତ୍ମିକ ଆବଶ୍ୟକତା ବୋଲି ପ୍ରମାଣିତ କରିବା ଏହାର ଉଦ୍ଦେଶ୍ୟ ଥିଲା ।

ତିଲକଜୀଙ୍କ ସମ୍ପାଦିତ 'କେଶରୀ' ସଶସ୍ତ୍ର ମୁକ୍ତିସଂଗ୍ରାମୀଙ୍କୁ ଉଦ୍‌ବୁଦ୍ଧ କରିଥିଲା । କାଲ୍ (Kal) ନାମକ ଆଉ ଏକ ମରାଠୀ ସାପ୍ତାହିକ ପତ୍ରିକା ୧୮୯୮ ଖ୍ରୀଷ୍ଟାବ୍ଦ (ର୍‍ୟାଣ୍ଡସ ହତ୍ୟା ପରେ) ଶିବରାମ ମହାଦେଓ ପାରଂଜପେଙ୍କ ସଂପାଦନାରେ ପ୍ରକାଶିତ ହେଉଥିଲା । ସେ ସ୍ପଷ୍ଟରୂପେ ଘୋଷଣା କରିଥିଲା ଯେ 'ବ୍ରିଟିଶ୍ ଶାସନର ଧ୍ୱଂସସାଧନ ପାଇଁ ସଂଗ୍ରାମହିଁ ଏକମାତ୍ର ପନ୍ଥା' । ଶିବାଜୀ ଉତ୍ସବ ବେଳେ ପ୍ରତି ଦ୍ୱାରରେ ଯେଉଁ ବିଜୟ ପତାକା ପ୍ରୋଥିତ ହେଉଥିଲା ତାକୁ ବ୍ୟଙ୍ଗକରି 'କାଲ୍' ଲେଖିଥିଲେ, ''ତୁମ୍ଭେମାନେ କାହିଁକି ସେ 'ବିଜୟ ପତାକା' ଉଡ଼ାଉଛ ? କି ବିଜୟ ତୁମେ ହାସଲ କରିଛ ? ତୁମେ କ'ଣ ଆର୍ଯ୍ୟଜାତିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତକରିସାରିଲଣି ? ଯୁଦ୍ଧକ୍ଷେତ୍ରରେ ବିଜୟ ହାସଲ କରିସାରିଲଣି ? ତୁମେ କ'ଣ ଆଫଜଲ ଖାଁକୁ ହତ୍ୟା କରିସାରିଲଣି, ନା ଅତ୍ୟାଚାରୀ ଦୁରାନୀକୁ ବିତାଡ଼ିତ କରିସାରିଲଣି ? ତୁମେ କ'ଣ ଝାନ୍ସୀ ରାଣୀର ଦାୟାଦ ବୋଲି ନିଜକୁ ପ୍ରମାଣିତ କରିସାରିଲଣି ? ଯଦି କିଛି ନ କରିଛ, ଏ ବିଜୟ ଉତ୍ସବ କାହିଁକି ? ପ୍ରଥମେ ବିଜୟ ହାସଲ କର, ତା'ପରେ ବିଜୟ ପତାକା ଉଡ଼ାଇବ ।''

ସମ୍ଭବତଃ ଏହାସହ ତାଳଦେଇ 'ବରିଶାଲ ହିତୈଷୀ' ଲେଖିଲେ, ''ତୋଷାମଦକାରୀ ଓ ନପୁଂସକଙ୍କୁ ସ୍ୱାଧୀନତା ମିଳେନା । ହେ ବଙ୍ଗବାସୀବୃନ୍ଦ, ଯୁଦ୍ଧରେ ବିଜୟ ହାସଲ କର ନଚେତ୍ ଧରାବକ୍ଷରୁ ଲୋପପାଇଯାଅ । ଚାତକ ପକ୍ଷୀ ଭଳି ଇଂରେଜ ସରକାରକୁ ଅନାଇ ବସ ନାହିଁ । ନିଜ ଉପରେ ବିଶ୍ୱାସ କର । ନିଜ ଗୋଡ଼ରେ ଛିଡ଼ାହୁଅ ।''

୧୯୦୪ ମସିହାରେ ରୁଷିଆରେ ବିପ୍ଳବୀ ନିହିଲିଷ୍ଟମାନେ ଅତ୍ୟାଚାରୀ ଜାର୍ ଶାସନର ଜନୈକ ଉଚ୍ଚପଦସ୍ଥ ଅଫିସର୍ ପ୍ଲେଭିଙ୍କୁ ହତ୍ୟାକଲେ । ପୃଥିବୀର ସମସ୍ତ ସାମ୍ରାଜ୍ୟବାଦୀ ଗୋଷ୍ଠୀ ଏହି ହତ୍ୟାକାଣ୍ଡରେ ସ୍ତମ୍ଭିତ ହୋଇଯାଇଥିଲେ । କିନ୍ତୁ ସେହି ହତ୍ୟାକୁ ଅକୁଣ୍ଠ ସମର୍ଥନ କରି ସେପ୍‌ଟେମ୍ବର ୨ ତାରିଖରେ କାଲ୍, "The educative value of murder' (ହତ୍ୟାର ଶିକ୍ଷାଗତ ମୂଲ୍ୟ) ଶିରୋନାମାରେ ଲେଖିଲେ —

''ଏହା କୌଣସି ମାମୁଲି ହତ୍ୟାକାଣ୍ଡ ନୁହେଁ, ଯାହାର ବିଚାରଅଭିନୟ ଆମ୍ଭେମାନେ ପ୍ରତିଦିନ ଦେଖୁଛୁଁ । ଯେତେବେଳେ କୌଣସି ରାଜା କିମ୍ୱା ତା'ର କର୍ମଚାରୀଙ୍କୁ ହତ୍ୟାକରାଯାଏ, ସାରା ଦୁନିଆ ସେହି ସମ୍ବାଦରେ ମୁହୂର୍ତ୍ତେ ଅଟକିଯାଏ । ଏକ ଉଲ୍‌କାପାତ ଭଳି କିମ୍ବା ଏକ ସୁପ୍ତ ଆଗ୍ନେୟଗିରିର ଆକସ୍ମିକ ବିସ୍ଫୋରଣ ଭଳି ଏହା ସମସ୍ତଙ୍କୁ ସ୍ତମ୍ଭିତ କରିଦିଏ । ଏହି ହତ୍ୟାର ଗୁରୁତ୍ୱ ବିଷୟରେ ଲୋକେ ପରସ୍ପରକୁ ପ୍ରଶ୍ନକରନ୍ତି । କେହି କେହି ବା ଏହାକୁ ଭଗବାନ୍‌ଙ୍କ ଇଚ୍ଛା ବୋଲି କହନ୍ତି । କିନ୍ତୁ ଏଭଳି ହତ୍ୟାକାଣ୍ଡରେ ବ୍ୟକ୍ତିଗତ ଈର୍ଷା କିମ୍ୱା ଅହମିକାର ଗନ୍ଧ ନ ଥାଏ । ଶରୀରର ଗୋଟିଏ ଅଙ୍ଗ ବିଷାକ୍ତ ହୋଇଗଲେ ତାହା ସମଗ୍ର ଶରୀର ବା ସାରା ବିଶ୍ୱକୁ ବିଷାକ୍ତ କରିବା ପୂର୍ବରୁ ତାକୁ କାଟି ଫୋପାଡ଼ିଦେବା ଭଳି ଏହି ହତ୍ୟାକୁ ବିଚାର କରିବାର କଥା । ଯେତେବେଳେ ବିଳାସବ୍ୟସନରେ ବୁଡ଼ିରହିଥିବା ଶାସକଗୋଷ୍ଠୀ ଶାସିତବର୍ଗର ଦୁଃଖ ଯନ୍ତ୍ରଣା ପ୍ରତି ଉଦାସୀନ ହୁଏ ସେତିକିବେଳେ ଏହିଭଳି ଉଲ୍‌କାପାତ ହୁଏ । ଏହା ଅପରିହାର୍ଯ୍ୟ ଏବଂ ସମ୍ଭବତଃ ଅବଶ୍ୟମ୍ଭାବୀ ।''

ପ୍ଲେଭିଙ୍କର ଶାସନ ଅପେକ୍ଷା ଭାରତରେ ଲର୍ଡ଼ କର୍ଜନଙ୍କ ଶାସନ ଆହୁରି ଭୟାବହ ବୋଲି 'କାଲ୍' ଏବଂ ଅନ୍ୟତମ ପତ୍ରିକା 'ପଞ୍ଜାବୀ' ଦୃଢ଼ମତ ଦେଇ 'ପ୍ଲେଭି ହତ୍ୟା'ରୁ ଲର୍ଡ଼ କର୍ଜନ ଓ ଭାରତୀୟମାନେ ଶିକ୍ଷାଲାଭ କରନ୍ତୁ ବୋଲି ଆହ୍ୱାନଦେଲେ ।

ଅତ୍ୟାଚାରୀକୁ ଜବତ୍ କରିବାକୁ ତରବାରି ବ୍ୟତୀତ ଅନ୍ୟ ଅସ୍ତ୍ର ନାହିଁ ବୋଲି ପ୍ରାୟ ସମସ୍ତ ଜାତୀୟବାଦୀ ପତ୍ରିକା ପ୍ରଚାର ଆରମ୍ଭ କରିଥିଲେ । (୧୯୦୬ ଜୁଲାଇ ୨) 'ପ୍ରତିଜ୍ଞା' ନାମକ ପତ୍ରିକା ସ୍ୱାମୀ ରାମଦାସ ଓ ଛତ୍ରପତି ଶିବାଜୀଙ୍କର ଏକ କଥୋପକଥନ ବର୍ଣ୍ଣନା କରି ଲେଖିଥିଲେ ।

ରାମଦାସ– 'ଅନ୍ଧକାର ରାତ୍ରି' ମେଘାଚ୍ଛାଦିତ ଆକାଶ, କେବଳ ମଝିରେ ମଝିରେ ବିଦ୍ୟୁତ୍‌ର ଝଲକ ।''

ଶିବାଜୀ– 'ଏହି ଅଂଧକାରକୁ ଧ୍ୱଂସ କରିବାର ଉପାୟ କ'ଣ ଗୁରୁଦେବ ?)'

ଏହି ଅନ୍ଧକାର ଭିତରେ ତରବାରିହସ୍ତା ଭାରତମାତାର ଏକ ଉଜ୍ଜ୍ୱଳ ପ୍ରତିଛବି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ସ୍ୱାମୀ ରାମଦାସ ଶିବାଜୀଙ୍କୁ କହୁଛନ୍ତି, ''ଦେଖ, ଶୁଣ ମୋର ଉତ୍ତର ।''

ଭାରତମାତାଙ୍କର ସେହି ମୂର୍ତ୍ତି ଶିବାଜୀଙ୍କୁ ଆହ୍ୱାନ କରି କହୁଛନ୍ତି– 'ଏହି ତରବାରି ହିଁ ପୃଥିବୀର ଏକମାତ୍ର ରାସ୍ତା ।'

'ଜ୍ଞାନୋଦ୍ଦୀପକ' ନାମକ ପତ୍ରିକା ଭାରତୀୟଙ୍କୁ ଏକ ବିଶାଳକାୟ ହସ୍ତୀ ଏବଂ ଇଂରେଜମାନଙ୍କୁ ତା'ର ମାହୁନ୍ତ ବୋଲି ବର୍ଣ୍ଣନା କରି ଲେଖିଥିଲେ– ''ଯେତେଦିନ ପର୍ଯ୍ୟନ୍ତ ହାତୀ ପାଗଳ ନ ହୋଇଛି ସେତେଦିନଯାଏ ମାହୁନ୍ତ ନିରାପଦ; ଯେଉଁ ମୁହୂର୍ତ୍ତରେ ହାତୀ ଉନ୍ମାଦ ହେବ, ମାହୁନ୍ତର ଅତ୍ୟାଚାର ଯେତେବେଳେ ସୀମା ଲଂଘନ କରିବ, ସେତେବେଳେ ଆଉ ରକ୍ଷା ନାହିଁ । ହାତୀର ବୃଷାଳ ପାଦତଳେ ମାହୁନ୍ତ ମେଞ୍ଚାଏ ମାଂସରେ ପରିଣତ ହେବ । ଯେତେଦିନଯାଏ ଭାରତବାସୀ ଏହି ଶାସନକୁ ବରଦାସ୍ତ କରୁଥିବେ, ସେତେଦିନଯାଏ 'ଇଂରେଜ' ଏ ଦେଶରେ ନିରାପଦ ଏବଂ ଭାରତୀୟମାନେ କୌଣସି ନ୍ୟାୟ ପାଇବା ଅସମ୍ଭବ ।''

'ମାହୁନ୍ତ ଅତ୍ୟାଚାର'ର ମୁକାବିଲା କରିବାକୁ କଂଗ୍ରେସର ସାମ୍ବିଧାନିକ ଆନ୍ଦୋଳନକୁ ବ୍ୟଙ୍ଗ କରି ପଞ୍ଜାବର ଟ୍ରିବ୍ୟୁନ୍ (୧୯୦୫ ସେପ୍‌ଟେମ୍ବର ୧୬) ରେ ଲେଖିଲେ 'ଏକ ଅବୈଧାନିକ ଆନ୍ଦୋଳନ ନିଛକ ପ୍ରହସନ ଛଡ଼ା ଅନ୍ୟ କିଛି ନୁହେଁ । ବର୍ତ୍ତମାନ ସେହି ଚରମ ମୁହୂର୍ତ୍ତ ଉପସ୍ଥିତ ଯେତେବେଳେ କଂଗ୍ରେସର 'ଭିକ୍ଷାଂ ଦେହି ନୀତି' ଯାହାକୁ ସେମାନେ ଶ୍ରଦ୍ଧାରେ ସାମ୍ବିଧାନିକ ନୀତି ବୋଲି କହୁଛନ୍ତି– ତାକୁ ତ୍ୟାଗ କରିବାକୁ ହେବ ଏବଂ ବର୍ତ୍ତମାନ ପରିସ୍ଥିତି ଆବଶ୍ୟକ କରୁଥିବା ନୀତି ଭିତରୁ ଗୋଟିଏ ବାଛିବାକୁ ହେବ- କଂଗ୍ରେସ ନେତାମାନେ ଏହା ମନେରଖନ୍ତୁ ।''

ବିପ୍ଳବୀ ଶ୍ରୀଅରବିନ୍ଦ ଏବଂ ତିଳକଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ବଙ୍ଗଳା ଓ ମହାରାଷ୍ଟ୍ରର ସଶସ୍ତ୍ର ବିପ୍ଳବୀମାନେ 'ବଙ୍ଗ ବିଚ୍ଛେଦ' ଆନ୍ଦୋଳନକୁ ଉଗ୍ରବାଦଆଡ଼କୁ ପରିଚାଳନା କରିଥିଲେ । 'ସ୍ୱଦେଶୀ ଓ ବୟକଟ୍' ଅସ୍ତ୍ରରେ ବଳୀୟାନ୍ ବଙ୍ଗ ବିପ୍ଳବୀଙ୍କର ଆନ୍ଦୋଳନ ପ୍ରଥମ ଅବସ୍ଥାରେ ସଶସ୍ତ୍ର ସଂଗ୍ରାମ ରୂପ ନେଇନଥିଲା । ସରକାରୀ କଳର ଅବିମୃଶ୍ୟକାରିତାହିଁ କ୍ରମେ ଏହି ଆନ୍ଦୋଳନକୁ ହିଂସାତ୍ମକ ବିପ୍ଳବଆଡ଼କୁ ଟାଣିନେଲା ।

ବରିସାଲ ସଭାର ଗଣ୍ଡଗୋଳ ପରେହିଁ ଏହା ଦ୍ରୁତଗତିରେ ସେହିଆଡ଼କୁ ମୁହାଁଇଲା । ବରିସାଲର ଶ୍ରୀଅଶ୍ୱିନୀ କୁମାର ଦତ୍ତ ସେ ଯୁଗରେ ଜଣେ ବରେଣ୍ୟ ନେତା ଥିଲେ । ତାଙ୍କର ଉଦ୍ୟମରେହିଁ 'ବଙ୍ଗ ବିଚ୍ଛେଦ' ବିରୋଧରେ ବରିସାଲରେ ଏକ ସମ୍ମିଳନୀ ଆହୂତ ହୋଇଥିଲା । କିନ୍ତୁ ସରକାରୀ କଳ ଏଥିରେ ଘୋର ଉଦ୍‌ବିଗ୍ନ ଏବଂ ବିଚଳିତ ହୋଇପଡ଼ିଲା ଏବଂ ସଭାକୁ ଭଣ୍ଡୁର କରିବାକୁ ସବୁପ୍ରକାର ହୀନ ଉଦ୍ୟମ ଆରମ୍ଭ କରିଦେଲା । ଏପରିକି 'ବନ୍ଦେ ମାତରମ୍' ସ୍ଲୋଗାନ ଦେବା ମଧ୍ୟ ବେଆଇନ୍ ଘୋଷଣା

କରାଗଲା । ତେଣେ ସମ୍ମିଳନୀର ଉଦ୍ୟୋକ୍ତାମାନେ ମଧ୍ୟ ନଛୋଡ଼ବନ୍ଧା । ପୂର୍ବ-ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ସମ୍ମିଳନୀ ଏପ୍ରିଲ ୧୪ ତାରିଖ ୧୯୦୬ ମସିହାରେ ଆରମ୍ଭ ହେଲା । ହଜାର ହଜାର ଲୋକଙ୍କର ଗଗନପବନଭେଦୀ 'ବନ୍ଦେ ମାତରମ୍' ସ୍ଲୋଗାନରେ ସେଦିନ ବରିସାଲ ବାୟୁମଣ୍ଡଳ ହେଲା ଉତ୍ତପ୍ତ । ସରକାରୀ କଳର ଅହଙ୍କାର ଓ ଔଦ୍ଧତ୍ୟକୁ ଚୂରମାର କରି ସମ୍ମିଳନୀ ଜମିଉଠିଲା । ସଭାପତିତ୍ୱ କରିଥିଲେ ତତ୍‌କାଳୀନ ଭାରତର ମୁକୁଟବିହୀନ ସମ୍ରାଟ ସୁରେନ୍ଦ୍ର ନାଥ ବାନାର୍ଜି (ଇଂରେଜମାନଙ୍କର ଭାଷାରେ 'ସରେଣ୍ଡର ନଟ୍ ବାନାର୍ଜି) ସରକାରୀ କଳ ଆଉ କାଳବିଳମ୍ବ ନ କରି ସଭା ଉପରେ ଝାମ୍ପିପଡ଼ିଲେ । ଶହ ଶହ ଗୁର୍ଖା ଓ ଗୋରା ପୁଲିସ୍ ହଠାତ୍ ଶାନ୍ତିପୂର୍ଣ୍ଣ ସଭା ଉପରେ ଲାଠି ଚାର୍ଜ ଆରମ୍ଭ କଲେ । ଫଳରେ ସମ୍ମିଳନୀ ଅଧାରୁ ଭାଙ୍ଗିଗଲା । ନିରୀହ, ନିରସ୍ତ୍ର ଓ ଶାନ୍ତିପ୍ରିୟ ଜନତା ଉପରେ ଏହି ଅପ୍ରତ୍ୟାଶିତ ଲାଠିଚାଳନାରେ ସମସ୍ତେ ସ୍ତମ୍ଭୀଭୂତ ହୋଇପଡ଼ିଲେ ମଧ୍ୟ ତା'ର କୌଣସି ପ୍ରତିରୋଧ କରି ନ ଥିଲେ । ନିରବରେ ଏହି ଅତ୍ୟାଚାରକୁ ସହ୍ୟକରିଯିବା ଭାରତୀୟମାନଙ୍କର କାପୁରୁଷତା କିମ୍ବା 'ସ୍ୱଦେଶୀ ବୟକଟ୍' ଭଳି ଅହିଂସା ଅସହଯୋଗର ପ୍ରମାଣ ସେ ସଂପର୍କରେ ଦୁଇ ପ୍ରକାର ମତ ରହିଛି । ଏ ସଂପର୍କରେ ଜନୈକ ଐତିହାସିକ କାଳୀଚରଣ ଘୋଷ ମତ ଦେଇଛନ୍ତି, ବରିସାଲ ଅହିଂସା ଯୁଦ୍ଧର ମୂଳଦୁଆ ପକାଇଥିଲା ଯାହାକି ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତର ଭବିଷ୍ୟତ୍ ସ୍ୱାଧୀନତା ସଂଗ୍ରାମରେ ଗୁରୁତ୍ୱପୂର୍ଣ୍ଣ ଅଂଶଗ୍ରହଣ କରିଥିଲା ।

ସଭାରୁ ଶ୍ରୀଯୁକ୍ତ ଅଶ୍ୱିନୀବାବୁ ଓ ସୁରେନ୍ଦ୍ର ନାଥ ବାନାର୍ଜିଙ୍କୁ ଗିରଫ କରାଗଲା । କିନ୍ତୁ ଏହି ନିର୍ମମ ଅତ୍ୟାଚାର ସମ୍ବାଦରେ ସାରା ଦେଶରେ ଘୋର ଅଶାନ୍ତି ପ୍ରକାଶ ପାଇଲା । ତିଲକଜୀ ତାଙ୍କର ପ୍ରସିଦ୍ଧ 'କେଶରୀ' ପତ୍ରିକାରେ ଲେଖିଥିଲେ (ଏପ୍ରିଲ ୧୭, ୧୯୦୬) "Banerji's arrest, the treatment meted out to him and his sentence only proved that Bengal was once more under the rule of Shaista Khan." (ବାନାର୍ଜିଙ୍କ ଗିରଫଦାରୀ ଓ ତାଙ୍କ ପ୍ରତି କରାଯାଇଥିବା ଦୁର୍ବ୍ୟବହାର ଓ ଜେଲଦଣ୍ଡ କେବଳ ପ୍ରମାଣ କରୁଛି ଯେ ବଂଗଳାରେ ପୁଣି ଶାୟସ୍ତ ଖାଁ ଶାସନ ଚାଲିଲାଣି ।) ବରେଣ୍ୟ ନେତା ବିପିନ୍ ଚନ୍ଦ୍ର ପାଲ 'ବନ୍ଦେ ମାତରମ୍' ପତ୍ରିକାରେ ୧ ଅକ୍ଟୋବର ୧୯୦୬ରେ ଲେଖିଥିଲେ, "The old faith of the people in the British Government as the saviour of this country is almost dead. And in proportion as they have been losing their faith in the foreign agencies at work among them, in that proportion they have been acquiring a new and intrepid faith in themselves. (ବ୍ରିଟିଶ୍ ଏ ଦେଶର ତ୍ରାଣକର୍ତ୍ତା ବୋଲି ଲୋକଙ୍କର ଯେଉଁ ପୁରାତନ ବିଶ୍ୱାସ ଥିଲା ତାହା ପ୍ରାୟ ମରିଗଲାଣି । ସେମାନେ ଯେଉଁ ଅନୁପାତରେ ଏହି ବିଦେଶୀ ଶକ୍ତି ଉପରୁ ବିଶ୍ୱାସ ହରାଇ ବସିବେ, ସେହି ଅନୁପାତରେ ସେମାନଙ୍କର ଆତ୍ମବିଶ୍ୱାସ ବୃଦ୍ଧିପାଇବ ।)

ବଙ୍ଗାଳୀମାନେ ଗୋଟିଏ ଭାବପ୍ରବଣ ମାଇଚିଆଜାତି ବୋଲି ଇଂରେଜବାଲାଙ୍କର ବିଦ୍ରୂପର ଜବାବ ଦେବାକୁ ଗଢ଼ିଉଠିଲା ବହୁ 'ଗୁପ୍ତ ବିପ୍ଳବୀ ସଂଗଠନ', କୁସ୍ତିକସରତ୍, ଦଣ୍ଡବୈଠକ ଶିଖିବା ଛଳନାରେ ଏହି ଅନୁଷ୍ଠାନଗୁଡ଼ିକ କାମ ଆରମ୍ଭ କରିଦେଲେ । କିନ୍ତୁ ଅସଲରେ ସେଠାରେ ଖଣ୍ଡା ଓ ଲାଠି ଚାଳନା, ବୋମା ତିଆରି ଓ ବନ୍ଧୁକ ଚାଳନା ପ୍ରଭୃତି ଶିକ୍ଷାଦିଆଯାଉଥିଲା । ପ୍ରଧାନ ପାଠ୍ୟପୁସ୍ତକ ଥିଲା 'ଗୀତା' ଓ 'ଶ୍ରୀ ଶ୍ରୀଚଣ୍ଡୀ' ଏବଂ ଆରାଧ୍ୟ ଦେବୀ ଥିଲେ 'କାଳୀ' । ତିଳକଜୀ ଓ ଅରବିନ୍ଦଙ୍କ ଗୀତାର ସେ ପ୍ରସିଦ୍ଧ ବ୍ୟାଖ୍ୟା– "The most practical teaching of the Gita is not to give way to any morbid sentimentality when duty demands sternness and boldness to face terrible things."

ଏବଂ ସେହି ପ୍ରସିଦ୍ଧ ଶ୍ଳୋକ..........

''ହତୋବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱାବା ଭୋକ୍ଷସେ ମହୀମ୍
ତସ୍ମାଦୁତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ ନିଶ୍ଚୟ (୩୭)
ମା କ୍ଳୈବ୍ୟଂ ଗଚ୍ଛ କୌନ୍ତେୟ, ନୈତତ୍ୱୟ୍ୟୁପପଦ୍ୟତେ
କ୍ଷୁଦ୍ରଂ ହୃଦୟ ଦୌର୍ବଲ୍ୟ ''ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ।''

ବିପ୍ଳବୀମାନଙ୍କ ମୂଳମନ୍ତ୍ର ହେଲା । ଚଣ୍ଡୀରୁ ପଢ଼ାହେଉଥିଲା, ଏହି ଦୁଷ୍ଟ ରାକ୍ଷସମାନଙ୍କୁ ବଧକରିବାକୁ ମା' ଭୈରବୀ, ପୃଥିବୀକୁ ଆଗମନ କର, ମା' ଚଣ୍ଡୀ ଏହି ଚଣ୍ଡ ମୁଣ୍ଡଙ୍କୁ ଦଣ୍ଡ ଦେବାକୁ ପୃଥିବୀକୁ ଆଗମନ କର, ଏହି ଦୁଷ୍ଟଗଣ ଆମ୍ଭମାନଙ୍କୁ କ୍ରୋଧରେ ଟିକ୍ ଟିକ୍ କରିଦେଉଅଛନ୍ତି । ଶୁମ୍ଭ ନିଶୁମ୍ଭଙ୍କର କ୍ରୋଧରେ ପୃଥିବୀ ଥରହର ହେଲାଣି । ହିନ୍ଦୁ ପୁରାଣମାନଙ୍କରେ 'କାଳୀ' ବା ଶ୍ରୀଦୁର୍ଗାଙ୍କୁ ଅସୁରଶକ୍ତିଦଳନକାରୀ ଭାବେ ବର୍ଣ୍ଣନା କରାଯାଇଥିବାରୁ ସେ ସଶସ୍ତ୍ର ବିପ୍ଳବୀମାନଙ୍କର ଆରାଧ୍ୟା ଦେବୀରୂପେ ଗୃହୀତ ହୋଇଥିବାରେ କିଛି ବୈଚିତ୍ର୍ୟ ନାହିଁ । ବିଶେଷତଃ ବଙ୍ଗୀୟ ହିନ୍ଦୁମାନେ ମୁଖ୍ୟତଃ ଶକ୍ତିପୂଜକ ହୋଇଥିବାରୁ ଚଣ୍ଡୀପାଠ ଓ ଚଣ୍ଡୀପୂଜାକୁ ନିର୍ବିବାଦରେ ଗ୍ରହଣକରାଯାଇଥିଲା ।

ଢାକାର ପ୍ରସିଦ୍ଧ ବିପ୍ଳବୀ ଶ୍ରୀ ପୁଲୀନ ବିହାରୀ ଦାସଙ୍କଦ୍ୱାରା ସ୍ଥାପିତ 'ଅନୁଶୀଳନ ସମିତି' ଏକ ପ୍ରଧାନ ଗୁପ୍ତ ବିପ୍ଳବୀ ଅନୁଷ୍ଠାନ ଥିଲା । ଏହି ଅନୁଶୀଳନ ସମିତିଦ୍ୱାରା ଅସଂଖ୍ୟ ସଶସ୍ତ୍ର ଅଭିଯାନ ହୋଇଛି । ତାହାର ରୋମାଞ୍ଚକର ବର୍ଣ୍ଣନା ଏହି ପୁସ୍ତକର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳିବ । ପୁଲୀନ ବିହାରୀ ଦାସଙ୍କୁ ସରକାରୀ କାଗଜ ପତ୍ରରେ, "An ascetic disciplined ଏବଂ keenwitted' ବୋଲି ବର୍ଣ୍ଣନା କରାଯାଇଛି । ଅନୁଶୀଳନ ସମିତିର ବଙ୍ଗଳାର ବିଭିନ୍ନ ସ୍ଥାନରେ ୧୧୬ଟି ଶାଖା ଥିଲା ଏବଂ ପ୍ରାୟ ନଅ ହଜାର ସଶସ୍ତ୍ର ବିପ୍ଳବୀ ଥିଲେ । ବିପ୍ଳବୀମାନେ ନିମ୍ନଲିଖିତ ଦୁଇଟି ଶପଥ ନେଉଥିଲେ– (୧) ନେତାର ନିର୍ଦ୍ଦେଶ ପ୍ରତି ଅକୁଣ୍ଠ ଆନୁଗତ୍ୟ ଏବଂ (୨) ସମସ୍ତ ପ୍ରକାର ପାରିବାରିକବନ୍ଧନ ଛିନ୍ନକରିବା । ସେଥିପାଇଁ ଅଧିକାଂଶ ବିପ୍ଳବୀ

ଅବିବାହିତ ରହିବା ଏକ ସାଧାରଣ କଥା ଥିଲା । ଇଂରେଜମାନଙ୍କୁ ଆର୍ଥନୀତିକ ଓ ସାମାଜିକ ବାସନ୍ଦ, ମେଳା ମହୋତ୍ସବରେ ସାଧାରଣ ସ୍ୱେଚ୍ଛାସେବୀ କାର୍ଯ୍ୟ ଏବଂ ଶାରୀରିକ ଶିକ୍ଷା ଥିଲା ବାହାର କାର୍ଯ୍ୟକ୍ରମ; କିନ୍ତୁ ସଶସ୍ତ୍ର ଅଭିଯାନ, ସ୍ୱଦେଶୀ ଡକାୟତି (ଅନ୍ୟ ଅଧ୍ୟାୟରେ ଦ୍ରଷ୍ଟବ୍ୟ) ଏବଂ ମାରଣାସ୍ତ୍ର ଶିକ୍ଷା ଏହାର ପ୍ରଚ୍ଛନ୍ନ କାର୍ଯ୍ୟକ୍ରମରୂପେ ଗୃହୀତ ହୋଇଥିଲା ।

କଲିକତାରେ ଥିବା 'ଅନୁଶୀଳନ ସମିତି' ଶାଖାର ଦାୟିତ୍ୱ ଥିଲା ବାରିନ୍‌ଙ୍କ ଉପରେ । ଏତଦ୍‌ବ୍ୟତୀତ 'ଯୁଗାନ୍ତର ଦଳ', ବରିସାଲ୍‌ର 'ସ୍ୱଦେଶ ବାନ୍ଧବ ସମିତି', ମୈମନସିଂର 'ସାଧନ ସମାଜ' ଓ 'ପୂର୍ଣ୍ଣଦାସ' ଦଳ ପ୍ରଭୃତି ସଶସ୍ତ୍ର ବିପ୍ଳବୀ ଅନୁଷ୍ଠାନ ବଙ୍ଗବିଚ୍ଛେଦ ଆନ୍ଦୋଳନ ସମୟରେ ସୃଷ୍ଟିହୋଇଥିଲା । କେବଳ ବଙ୍ଗଳାରେ ନୁହେଁ, ଉତ୍ତର ଭାରତ, ଏପରିକି ସୁଦୂର ଦକ୍ଷିଣ ଭାରତରେ ମଧ୍ୟ, ବହୁ ବିପ୍ଳବୀ ଅନୁଷ୍ଠାନ ସ୍ଥାପିତ ହୋଇଥିଲା, ତାହା ଏହି ବହିରେ ଯଥାସ୍ଥାନରେ ବର୍ଣ୍ଣିତହୋଇଛି ।

ରାଜନୀତିକ ପରିଭାଷାରେ ଏହି ଚରମ ପନ୍ଥାକୁ Militant Nationalism ବା ଉଗ୍ରଜାତୀୟତାବାଦ କୁହାଯାଇପାରେ, ଯଦିଓ ସରକାରୀ ପରିଭାଷାରେ ଏହାକୁ ସନ୍ତ୍ରାସବାଦ ବା ଆତଙ୍କବାଦ ବୋଲି କୁହାଯାଏ । ଆମ ଦେଶରେ ଏବେ ବି ବହୁଲୋକ ଅଛନ୍ତି ଯେଉଁମାନେ ସରକାରୀ ପରିଭାଷାକୁ ବେଦର ଗାର ବୋଲି ମନେକରନ୍ତି । ପାଶ୍ଚାତ୍ୟ ଦେଶର ଆଭିମୁଖ୍ୟ କିନ୍ତୁ ସଂପୂର୍ଣ୍ଣ ଅଲଗା । ସେ ଦେଶରେ ରାଜନୈତିକ ହତ୍ୟାକାରୀକୁ 'ଖୁଣୀ' ବୋଲି କୁହାଯାଏନା, ସେଠାରେ ସେ ବୀରଭଳି ପୂଜାପାଏ । ପ୍ରାଣବଳି ଦେଲେ ସେ ହୁଏ 'ସହିଦ' । ୧୯୦୬ ମସିହାରେ ଯେତେବେଳେ Nihilist ବା 'ନକାରବାଦୀ'ମାନେ କେତେକ ରୁଷୀଙ୍କୁ ହତ୍ୟାକଲେ, ସେତେବେଳେ ଆହ୍ଲାବାଦର 'ପାଇଓନିୟର' ପତ୍ରିକା ଲେଖିଥିଲେ, "The horrors of such crimes is too great for words and yet it has to be ackn owledged almost, that they are the only methods of fighting left to a people who are at war with despotic rulers able to command great military forces against which it is impossible for the unarmed populace to make a start" (1) (ଏଭଳି ଅପରାଧର ଭୟାବହତା ବର୍ଣ୍ଣନା କରିବାକୁ ଭାଷା ପରାଜିତ ହୁଏ । ତଥାପି ଏହା ସ୍ୱୀକାର କରିବାକୁ ହେବ ଯେ ବିରାଟ ସୈନ୍ୟ ଶକ୍ତିରେ ବଳୀୟାନ ଏକ ସ୍ୱେଚ୍ଛାଚାରୀ ଶାସକ ବିରୋଧରେ ଲଢ଼ିବାକୁ ଏହାଛଡ଼ା ଅନ୍ୟ କୌଣସି ଅସ୍ତ୍ର ନାହିଁ ।) ଏପରିକି ଶ୍ରୀମତୀ ଆନିବେସାନ୍ତ ଯେ କି ଅରବିନ୍ଦଙ୍କୁ Fanatic ବୋଲି କହୁଥିଲେ, ତାଙ୍କ ମୁହଁରୁ ବି ଶୁଣାଗଲା ''ରାଜନୈତିକ ସଂସ୍କାର ସାଧନ ପାଇଁ ହିଂସା ଏକ ସ୍ୱୀକୃତ ପନ୍ଥା । ଜମିଦାରମାନଙ୍କୁ ଗୁଳି କରାଯାଇ ନ ଥିଲେ ଇଂଲଣ୍ଡରେ ହୋମ୍‌ରୁଲ୍ ବିଲ୍ ପାସ୍ ହୋଇନଥାନ୍ତା । ୧୮୩୨ର ସଂସ୍କାର 'ଆଇନ' ହିଂସାକାଣ୍ଡ ଓ ରକ୍ତପାତ ବିନା ସମ୍ଭବ ହୋଇନଥାନ୍ତା ।'

1. Dr R.C. Mazumdar– Three Phases of Freedom Movement. Pg- 36.

ବିପ୍ଳବୀ ବାରୀନ ଘୋଷଙ୍କ ଭାଷାରେ, "We did not mean or expect to liberate our country by killing a few Englishmen. We wanted to show people how to dare and die." (କେଇଜଣ ଇଂରେଜଙ୍କୁ ହତ୍ୟାକରି ଆମେ ଯେ ଦେଶକୁ ସ୍ୱାଧୀନ କରିଦେବୁ ଏକଥା କେଉଁ କହୁ ନାହୁଁ । ସାହସ କିଭଳି ପ୍ରଦର୍ଶନ କରିବାକୁ ହୁଏ, କିପରି ପ୍ରାଣଦେବାକୁ ହୁଏ, ତାହାହିଁ ଆମେ ଦେଶବାସୀଙ୍କୁ ଦେଖାଇ ଦେବାକୁ ଚାହୁଁ ।)

'ଇଣ୍ଡିଆନ୍ ଏମ୍ପାୟାର' ପତ୍ରିକା ସତର୍କବାଣୀ ଶୁଣାଇ ଲେଖିଲେ, ''ଏହି ଘଟଣା ଜନସାଧାରଣଙ୍କ ଆଗରେ ଏହି ପ୍ରଶ୍ନ ଉତ୍‌ଥାପିତ କରିଛି ଯେ, ସେମାନେ ସେହି ପୁରୁଣା 'ଭିକ୍ଷାଂଦେହୀ' ନୀତି ଚଳାଇଯିବେ ନା ଦକ୍ଷିଣ ହସ୍ତର ଶକ୍ତି ପରୀକ୍ଷା କରି ଜାତୀୟ ଆଶା-ଆକାଂକ୍ଷା ପୂରଣ କରିବାକୁ ପ୍ରତିଜ୍ଞା କରିବେ ।'' ବ୍ରହ୍ମବାନ୍ଧବ ଉପାଧ୍ୟାୟଙ୍କର 'ସନ୍ଧ୍ୟା' ଗର୍ଜନକଲେ, ''ଆମ୍ଭମାନେ ଗୋରୁ ବା ମେଣ୍ଢାଭଳି ନିରବରେ ସହିଯିବା ନା ଲାଠି ବଦଳରେ ଲାଠି ବ୍ୟବହାର କରି ଆତ୍ମରକ୍ଷାକରିବା ?''

'ଶ୍ରୀ ଶ୍ରୀ ବିଷ୍ଣୁପ୍ରିୟା ଓ ଆନନ୍ଦବଜାର ପତ୍ରିକା' ଲେଖିଲେ, ''ଦେଶ ଉପରେ ଏକ ଝଡ଼ ବହିଯାଉଛି । ଯଦି ଅନ୍ୟ କେଉଁଠାରେ ବରିସାଲ ଘଟଣାର ପୁନରାବୃତ୍ତି ହୁଏ ତେବେ ସେ କ୍ଷେତ୍ରରେ ଲୋକେ ହୁଏତ ନିଜ ଜୀବନକୁ ପରୱା କରିବେ ନାହିଁ ।''

୧୯୦୬ ମସିହା ଏପ୍ରିଲ ୨୦ ତାରିଖରେ 'ବେଙ୍ଗଲୀ' ଆଉ ଟିକିଏ ଆଗେଇଯାଇ କହିଲେ, ''ଏଠାରେ ଆଉ ଏକ ଆୟାର୍‌ଲାଣ୍ଡ ସୃଷ୍ଟିହୋଇଛି ଏବଂ ସାମ୍ବିଧାନିକ ଆନ୍ଦୋଳନ ଉପରେ ଥିବା ବିଶ୍ୱାସ ତୁଟିଯାଇଛି । ବୁଦ୍ଧିମତ୍ତା ଓ ରାଜନୀତିକ ବିଚକ୍ଷଣତା ପରିବର୍ତ୍ତେ ଶାସକବର୍ଗଙ୍କଠାରେ ଯେତେବେଳେ ପାଶବିକ ପ୍ରବୃତ୍ତି ଆତ୍ମପ୍ରକାଶ କରେ, ଜନସାଧାରଣ ସେତେବେଳେ ସାମ୍ବିଧାନିକ ଆନ୍ଦୋଳନ ଉପରୁ ବିଶ୍ୱାସ ହରାଇଦିଅନ୍ତି । ପୂର୍ବବଙ୍ଗ ସରକାର ଏଭଳି ଏକ ପରିସ୍ଥିତି ସୃଷ୍ଟି କଲେଣି ଯେତେବେଳେ ଲୋକେ ଯେସାକୁ ତେସା ନୀତି ଧରିବା ହୁଏତ ଅବଶ୍ୟମ୍ଭାବୀ ହୋଇପଡ଼ିବ ।'' 'ଯୁଗାନ୍ତର' ଲେଖିଲେ, ''ଭାରତର ତିରିଶ କୋଟି ଲୋକ ସେମାନଙ୍କର ଦୃଢ଼ହସ୍ତ ଉତ୍ତୋଳନ କରି ଏହି ଅତ୍ୟାଚାରକୁ ସ୍ତବଧକରିଦିଅନ୍ତୁ । ଶକ୍ତି ବଦଳରେ ଶକ୍ତିର ପ୍ରୟୋଗ ହେଉ ।''

ବରିସାଲ ଅତ୍ୟାଚାର ବିରୋଧରେ ଯେଉଁମାନେ କେବଳ ବାଚନିକ ପ୍ରତିବାଦ କରିଥିଲେ ସେମାନଙ୍କୁ ଲକ୍ଷ୍ୟକରି 'ସନ୍ଧ୍ୟା' ଲେଖିଲେ, ''ଏହିଭଳି ନିଷ୍ଫଳ ପ୍ରତିବାଦ ଜାତୀୟ ଅପମାନ ସଦୃଶ । ଧୈର୍ଯ୍ୟ ସବୁକ୍ଷେତ୍ରରେ ସ୍ପୃହଣୀୟ ନୁହେଁ, ଜୀବନ ସଂଗ୍ରାମରେ ପ୍ରତିଶୋଧର ମଧ ଏକ ବିଶିଷ୍ଟ ସ୍ଥାନ ରହିଛି । ପ୍ରତିଶୋଧହିଁ ଜାତୀୟ ଅସମ୍ମାନର ଏକମାତ୍ର ଔଷଧ । ବିଷଦ୍ୱାରାହିଁ ବିଷର ପ୍ରତିକାର କରିବା ସମ୍ଭବ । ଅପମାନରୂପୀ ବିଷର ପ୍ରତିକାର କେବଳ ପ୍ରତିଶୋଧ ବିଷଦ୍ୱାରା ସମ୍ଭବ ହେବ ।''

୧୯୦୬ ମସିହା ଏପ୍ରିଲ ୨୯ ତାରିଖ ସଂଖ୍ୟାରେ 'ହିତବାର୍ତ୍ତା' କହିଲେ, ''ପୃଥିବୀର ଅନ୍ୟ କୌଣସି ଦେଶ ହୋଇଥିଲେ ଇମରସନ୍ ସାହେବର (ବରିସାଲ ମାଜିଷ୍ଟ୍ରେଟ୍) ମୁଣ୍ଡଟା ତା' ଗଣ୍ଡିରୁ ଅଲଗା ହୋଇ ରାସ୍ତାରେ ଗଡୁଥା'ନ୍ତା ! ଦେଶର ସମ୍ମାନନୀୟ ଓ ବରେଣ୍ୟ ବ୍ୟକ୍ତିମାନଙ୍କ ସହ ସେଠାରେ ଯେଉଁ ଦୁର୍ବ୍ୟବହାର କରାଗଲା, ଅନ୍ୟ ଦେଶରେ ଏହା ଘଟିଥିଲେ ଏହି ନିର୍ଲଜ୍ଜ ଅଫିସରର ହାଡ଼ ଚୂନାହୋଇଯାଇଥା'ନ୍ତା ।'' ଏହାର ପରିଣତି ସମ୍ପର୍କରେ 'ହିତବାର୍ତ୍ତା' ପୁଣି ଲେଖିଥିଲେ, ''ଅସ୍ତ୍ର ବଦଳରେ ଅସ୍ତ୍ର ବ୍ୟବହୃତ ହେବ ଏବଂ ନିରୀହ ଶିଶୁମାନଙ୍କର ରକ୍ତରେ ପ୍ଲାବିତ ହେବ ଗୋରାଶାସକ ଓ ଅତ୍ୟାଚାରୀର ଶରୀର । ଆଘାତ ପାଇଲେ ସାମାନ୍ୟ କୀଟ ମଧ୍ୟ ଦଂଶନ କରେ । ଆଉ କେତେ ଦିନ ଏ ଦେଶବାସୀ ଧୈର୍ଯ୍ୟଧରି ରହିବେ ! ଆମର ଆଶଙ୍କା ଯେ ସ୍ୱଦେଶୀ ଆନ୍ଦୋଳନ ବର୍ତ୍ତମାନ ଏକ ନୂଆ ମୋଡ଼ ନେଉଛି । 'ବନ୍ଦେ ମାତରମ୍' ବଦଳରେ ଯଦି ଇମରସନ୍‌ର କଟାମୁଣ୍ଡକୁ ସେ ପତାକା ସ୍ତମ୍ଭରେ ଝୁଲାଇ ଦିଆଯାଏ— ତାହା ହୁଏତ ଶାସକ ଓ ଶାସିତ କାହାରି ପକ୍ଷରେ ସ୍ପୃହଣୀୟ ହେବନାହିଁ । ଆମେ ସରକାରକୁ ସତର୍କ କରାଇଦେଉଛୁ ଯଦି ଅଫିସରମାନଙ୍କର ପାଗଳାମିର ପତିବିଧାନ ନ କର, ସେମାନଙ୍କର ବଜ୍ଜାତିକୁ ବନ୍ଦନକର, ତେବେ ଯେଉଁ ଅଗ୍ନି ପ୍ରଜ୍ୱଳିତ ହେବ ତାହା ସହଜରେ ନିର୍ବାପିତ ହେବନାହିଁ ।''

ସନ୍ତ୍ରାସବାଦ ଓ ହିଂସାବାଦକୁ ଉତ୍ତେଜିତ କରୁଥିବା ଏହିସବୁ ପ୍ରଚାରରେ ସରକାର ଏଭଳି ବିଚଳିତ ହୋଇପଡ଼ିଲା ଯେ ଭବିଷ୍ୟତ୍‌ର 'ଗଣ୍ଡଗୋଳ'କୁ ରୋକିବା ଉଦ୍ଦେଶ୍ୟରେ ଘୋଷଣାନାମା ଜାରିହେଲା । ସେଥିରେ କୁହାଗଲା ଯେ ସୂର୍ଯ୍ୟାସ୍ତରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ କେହି ତିନି ଫୁଟ ଛ' ଇଞ୍ଚ ଲମ୍ବ ଓ ଏକ ଇଞ୍ଚ ବ୍ୟାସ ଅପେକ୍ଷା ଅଧିକ ଲମ୍ବ ଓ ମୋଟ ଠେଙ୍ଗା ସଙ୍ଗରେ ନେଇ ବୁଲିପାରିବେ ନାହିଁ ।'' ଏହି ଆଦେଶନାମାର ଜବାବରେ 'ବେଙ୍ଗଲୀ' ପୁଣି ଲେଖିଲେ, ''ନିଜେ ଗୁଣ୍ଡାମି ଶିକ୍ଷାକର । ପାଶବିକ ଶକ୍ତି ସଂଗ୍ରହ କର । ମନେରଖ, ଇଂରେଜମାନେ ଶକ୍ତିଶାଳୀକୁ ସମ୍ମାନ ଦିଅନ୍ତି ଏବଂ ଦୁର୍ବଳ ଅପେକ୍ଷା ବୀରକୁ ଅଧିକ ପସନ୍ଦକରନ୍ତି ।''

ବିପ୍ଳବୀ ନେତାମାନେ କହୁଥିଲେ, ''ଲୋକେ ଥରେ ଭୟ ପରିତ୍ୟାଗକଲେ ଏବଂ ଦାସତ୍ୱ ବନ୍ଧନରୁ ମୁକ୍ତ ହେବାକୁ ଥରେ ମାତ୍ର ପ୍ରତିଜ୍ଞାକଲେ, ସେମାନଙ୍କୁ ଆଉ କେହି ଦବେଇ ପାରିବେ ନାହିଁ ।''

ସେହି ଭୟ ପରିତ୍ୟାଗ କରିବାକୁ 'ଭାଇମାନେ ଉଠ, ଜାଗ୍ରତ ହୁଅ, ଶ୍ମଶାନରେ ଶବସାଧନା (ତନ୍ତ୍ର ଶାସ୍ତ୍ର ବର୍ଣ୍ଣିତ ଏକ ସାଧନା)ରେ ସଫଳତା ହାସଲ କର'— ବୋଲି 'ବଂଗବାସୀ' ପତ୍ରିକା ପରାମର୍ଶଦେଲେ ।

''ଆମର ଅଭିଳାଷ ହିମାଳୟ ଅପେକ୍ଷା ଉଚ୍ଚତର । ଆମର ଯନ୍ତ୍ରଣା ଏତେ ତୀବ୍ର ଯେପରିକି ଆମ ଭିତରେ ଏକ ଆଗ୍ନେୟଗିରି ପ୍ରଜ୍ୱଳିତ ହେଉଛି । ଆମେ ସ୍ୱର୍ଗ ଚାହୁଁ

ନା, ଆମେ ମୁକ୍ତ ମଧ୍ୟ ଚାହୁଁ ନା, ମା' ଆମକୁ ଆଶୀର୍ବାଦ କର ଯେପରି କି ଆମ୍ଭେ ତୋତେ ମୁକ୍ତି ନ କରିବା ପର୍ଯ୍ୟନ୍ତ ବାରମ୍ବାର ଜନ୍ମଗ୍ରହଣ କରିବୁ । ପ୍ରଥମେ ମା' ମୁକ୍ତି ଲାଭକରୁ ।'' ('ସନ୍ଧ୍ୟା' ୧୯୦୭, ଅଗଷ୍ଟ ୧୩ ସଂଖ୍ୟା ।)

ଜନତା ମଧ୍ୟରେ ସୃଷ୍ଟ ମୁକ୍ତିର ପିପାସା କେତେ ଶକ୍ତିଶାଳୀ ତା'ର ବର୍ଣ୍ଣନା କରି ସେହିବର୍ଷ ସେପ୍‌ଟେମ୍ବରରେ 'ଯୁଗାନ୍ତର' ଲେଖିଥିଲେ– ''ମୁକ୍ତିର ପିପାସା ଫ୍ରାନ୍ସକୁ ଥରହର କରିଦେଇଥିଲା ଏବଂ ତା'ର ଆଘାତରେ ଯୁଗ ଯୁଗ ଧରି ରହିଥିବା ଫରାସୀ ରାଜଶକ୍ତି ହୋଇଥିଲା ଭୂ-ଲୁଣ୍ଠିତ ଓ ମୁକ୍ତିପିପାସା ଛିନ୍ନମସ୍ତା ଭଳି ତା'ର ନିଜ ମସ୍ତକକୁ ଛେଦନ କରି ନିଜ ରକ୍ତ ପାନ କରି ଯେଉଁ ଭୟାବହ ନୃତ୍ୟ କଲା ସେଥିରେ ଥରହର ହୋଇଥିଲା ସାରା ୟୁରୋପ । ଭାରତବର୍ଷରେ ମଧ୍ୟ ସେହି ସମୟ ଆସି ପହଞ୍ଚି ଯାଇଛି । ଯେଉଁ ନୃତ୍ୟର ଭୟାବହ ଝଙ୍କାର ଆଜି ରୁଷିଆରେ ଅତ୍ୟାଚାରୀମାନଙ୍କୁ ତ୍ରସ୍ତ କରିଛି ସେ ନୃତ୍ୟ ଭାରତବର୍ଷରେ ମଧ୍ୟ ପ୍ରଦର୍ଶନ କରିବାକୁ ହେବ । ଶତ ଶତ ସହିଦର ରକ୍ତରେ କ୍ଷାଳିତ ହେବ ଯୁଗଯୁଗର ସଞ୍ଚିତ ଅନ୍ୟାୟ ।''

''ଯେଉଁ ରକ୍ତ ଆଜିଯାଏ ଏହି ଶରୀରକୁ ରକ୍ଷାକରି ଆସିଛି ସେହି ରକ୍ତରେ ହେବ ମାତୃବନ୍ଦନା । ଆଜି ଯେଉଁ ଶିଶୁ ହାସ୍ୟମୁଖର, ସେହି ଶିଶୁ ସେଦିନ ହୁଙ୍କାର ଦେବ । ଯେଉଁ କୋମଳ ହସ୍ତ ଆଜି ଖେଳନା ଧରିଛି ସେଠାରେ ଶୋଭାପାଇବ ମାରଣାସ୍ତ୍ର । ହେ ମହାକାଳୀ ! ତୁମେ ଯାହାର ମା' ତା'ର ମୃତ୍ୟୁ ଭୟ ନାହିଁ ।''

୧୯୦୭ ମସିହା ଡିସେମ୍ବର ୨୯ ତାରିଖରେ 'ଗୁଜରାଟୀ' ପତ୍ରିକା ଦେଶପ୍ରେମର ଏକ ଚମତ୍କାର ବ୍ୟାଖ୍ୟା ପ୍ରକାଶ କରିଥିଲେ- ''ବିଭିନ୍ନ ଦେଶରେ 'ଦେଶାତ୍ମବୋଧ'ର ବିଭିନ୍ନ ବ୍ୟାଖ୍ୟା ରହିଛି । ସେଥିମଧ୍ୟରୁ ନିଉସାଉଥଓ୍ୱେଲ୍‌ସର ବ୍ୟାଖ୍ୟା ସର୍ବୋତ୍କୃଷ୍ଟ ବୋଲି ଆମ୍ଭେମାନେ ମନେକରୁଁ । ସେଠାରେ ଦେଶପ୍ରେମର ଅର୍ଥ ହେଉଛି– 'ସିଧା ଗୁଳିକରିବା' ଏବଂ ଆହୁରି ଗୁରୁତ୍ୱପୂର୍ଣ୍ଣ କଥା ହେଉଛି– ଏହି ବ୍ୟାଖ୍ୟା ସେଠାକାର ସବୁ ସ୍କୁଲଘର କାନ୍ଥରେ ଖୋଦିତ ହୋଇ ରହିଛି । ଆମ ଦେଶରେ କୌଣସି ସ୍କୁଲ କାନ୍ଥରେ ଏହା ଲେଖାଯାଇଛି କି ? ଯଦି ସ୍ୱାଧୀନତା ରକ୍ଷାକରିବାକୁ ଏଭଳି ଦେଶପ୍ରେମ ଦରକାର ତେବେ ସ୍ୱାଧୀନତା ଅର୍ଜନ କରିବାକୁ ଆମେ ଏହି ଦେଶପ୍ରେମକୁ ପ୍ରୟୋଗ ନ କରିବୁ କାହିଁକି ?''

୧୯୦୭ ମସିହା ମାର୍ଚ୍ଚ ୨ ତାରିଖ ସଂଖ୍ୟା 'ସ୍ୱରାଜ୍ୟ'ରେ ପ୍ରକାଶପାଇଲା, ''ହେ ପ୍ରିୟ ତରବାରି ! ତୁମେ ବୀରବାହୁରେ ଝଲକ ସୃଷ୍ଟି କର । ସ୍ୱାଧୀନତା ରକ୍ଷା କରିବାକୁ ତୁମେ ହିଁ ଏକମାତ୍ର ସହାୟକ ।''

'ଗୁଜୁରାଟୀ'–(୧୧-୨-୧୯୦୮) ''ଧୈର୍ଯ୍ୟର ଏକ ସୀମା ଅଛି । ସରକାର ଜନସାଧାରଣଙ୍କ ପ୍ରତି ଯେଉଁଳି କଠୋର ହେଉଛି, ସେ ଦୃଷ୍ଟିରୁ ସନ୍ତ୍ରାସବାଦୀମାନେ ଯଦି ସରକାରୀ କର୍ମଚାରୀମାନଙ୍କ ଉପରକୁ ଝାମ୍ପିପଡ଼ନ୍ତି ତେବେ ସେଥିପାଇଁ କାହାକୁ

ଦୋଷ ଦିଆଯାଇ ପାରିବ ନାହିଁ ।''

'ନବସାରୀ ପତ୍ରିକା'(୯-୨-୧୯୦୮) ''ମିଲିଟାରୀ ଶକ୍ତି ଉପରେ ଭରସା କରି ଯଦି ବ୍ରିଟିଶ୍ ସରକାର ଭାରତୀୟଙ୍କ ଉପରେ ଜୁଲମ କରୁଥାଏ, ତେବେ ସେ ଗୁରୁତର ଭୁଲ କରିବ ।''

ରୁଷିଆର ପ୍ଲେଭି ହତ୍ୟା ପରେ ପର୍ତ୍ତୁଗାଲର ରାଜା କାର୍ଲସ ଓ ତାଙ୍କ ପୁତ୍ରମାନଙ୍କୁ ବିପ୍ଲବୀମାନେ ହତ୍ୟାକରିଥିଲେ । ଏ ସମ୍ପର୍କରେ 'ଅରୁଣୋଦୟ' (୯-୨-୧୯୦୭) ଲେଖିଲେ, ''ଅତ୍ୟାଚାରୀ ଶାସକମାନେ ପର୍ତ୍ତୁଗାଲ ଘଟଣାରୁ ଶିକ୍ଷାଲାଭକରନ୍ତୁ ।'' ଧର୍ମଭୀରୁ ଭାରତୀୟମାନେ କଦାପି କାହାକୁ ହତ୍ୟା କରିପାରିବେ ନାହିଁ ବୋଲି ଯେଉଁ ଧାରଣା ଅଛି, ତା' ପ୍ରତିବାଦରେ 'କାଲ' (୨୮-୨-୧୯୦୮) ଲେଖିଲେ– ଯେ ଯେତେ ଚିତ୍କାର କରୁ ପଛକେ ଭାରତବର୍ଷରେ ସେ ଯୁଗ ଆଉ ନାହିଁ ଯେ ଲୋକେ ନିରବରେ ଅତ୍ୟାଚାର ସହିଯିବେ । ଇତିହାସରେ ଭୂରି ଭୂରି ପ୍ରମାଣ ରହିଅଛି ଯେ ଏହିଭଳି ହତ୍ୟାକାଣ୍ଡର ପ୍ରଭାବ ସରକାର ଉପରେ ସୁଦୂରପ୍ରସାରୀ ।'' 'ହିନ୍ଦ୍ ସ୍ୱରାଜ' (୨୮-୮-୧୯୦୮) ''ଆମର ଅଧିକାର ସାବ୍ୟସ୍ତ କରିବାକୁ ଆମେ ସବୁକିଛି କରିପାରିବୁ । ହୁଏତ ଅଧିକାର ହାସଲ କରିବୁ, ନଚେତ ପ୍ରାଣ ବିସର୍ଜନ କରିବୁ । ପୁଲିସ ବା ମିଲିଟାରୀ ଭୟ ଦେଖାଇ ବିପ୍ଳବକୁ ଦବେଇବାର ଚେଷ୍ଟା ବୃଥା ମାତ୍ର । ବନ୍ଦୀଶାଳା ଆମ ପକ୍ଷରେ 'ଇଡ଼େନ ଉଦ୍ୟାନ' ଭଳି ଆନନ୍ଦଦାୟକ । ଅଧିକାର ସାବ୍ୟସ୍ତ କରିବାକୁ ପ୍ରାଣ ବିସର୍ଜନ କରିବା ଆମ ପକ୍ଷରେ ଏକ ମହୋତ୍ସବ ।''

ଯୁଗାନ୍ତର (୨-୮-୧୯୦୭) ''ଯଦି ସମଗ୍ର ଜାତିର ମିଳିତ ଅଭିଳାଷ ସ୍ୱାଧୀନତା ପାଇଁ ପାଗଳହୋଇଉଠେ, ଭଗବାନ୍ କାହା ସପକ୍ଷରେ ରାୟ ଦେବେ – ଫିରିଙ୍ଗୀ ନା ଭାରତବାସୀ ? – ନିଶ୍ଚୟ ଭାରତବାସୀ ! ସିଂହ ଶାବକ ଭିତରେ ସିଂହତ୍ୱ ସର୍ବଦା ବିରାଜମାନ ।''

'ରାଜଦ୍ରୋହ' ? ଅଷ୍ଟ୍ରିୟାନ ଶାସକମାନଙ୍କୁ ମାଜିନ କହିଥିଲେ, 'ତୁମ ଜାତୀୟ ସରକାର ନୁହଁ, ତୁମ ବିରୋଧରେ ଆମର ଯୁଦ୍ଧଘୋଷଣାର ତାହାହିଁ ଏକମାତ୍ର କାରଣ' । ଆଇରିଶ୍ ବିପ୍ଳବୀ ଓ ଲରିଙ୍କୁ ଯେତେବେଳେ 'ରାଜଦ୍ରୋହ' ଅଭିଯୋଗରେ ଗିରଫ କରାଗଲା, ସେ ଯଥାର୍ଥରେ କହିଥିଲେ, ''ଇଂଲଣ୍ଡ ମୋର ମାତୃଭୂମି ନୁହେଁ, ସୁତରାଂ ଆୟର୍ଲ୍ୟାଣ୍ଡରେ ଇଂରେଜ ଶାସନ ବିରୋଧରେ ଲଢ଼ିବା ରାଜଦ୍ରୋହ ହୋଇ ନ ପାରେ । ଯାହାର ରାଜା ନାହିଁ, ତା' ବିରୋଧରେ ପୁଣି ରାଜଦ୍ରୋହ ଅଭିଯୋଗ !

ମୃତ୍ୟୁଭୟ ? 'ଯୁଗାନ୍ତର' (୧୨-୮-୧୯୦୬) ରେ ପ୍ରକାଶିତ ହେଲା–

"How can a man die better than,
Facing fearful odds,
For the ashes of his father's
And temple of his God's.

ସେହି ବର୍ଷ ନଭେମ୍ବର ଏଗାର ତାରିଖରେ ପୁଣି ପ୍ରକାଶପାଇଲା ''ମାତୃଭୂମି ପାଇଁ ଜୀବନ ବିସର୍ଜନ କଲେ ତୁମେ ଅମର ଜୀବନ ଲାଭକରିବ ।''

ସଙ୍ଗେ ସଙ୍ଗେ ପ୍ରତିଶୋଧ ନ ନେଇ ଭବିଷ୍ୟତ୍‌କୁ ବାକିରଖିବା ନିର୍ବୋଧତା, ଯେସାକୁ ତେସା- ତୁମକୁ କେହି ଚାପଡ଼ା ମାରିଲେ ସଙ୍ଗେ ସଙ୍ଗେ ତାକୁ ଚୌକସ ନାତ ଦିଅ । ତାହାହେଲେ ତୁମର ମଣିଷପଣିଆ ପ୍ରକାଶିତ ହେବ । ମୃତ୍ୟୁକୁ ଭୟକରନାହିଁ । ସେହି କବିତା —"Let life depart (O'Mother) if it will while doing your work in the world and uttering Bande Mataram." (ମା' ତୁମ କାମ କରୁ କରୁ, ଯଦି ଯିବ ଯାଉ ଏ ଜୀବନ, ମୁଖ ଘୋଷୁ 'ବନ୍ଦେ ମାତରମ୍' ।)

ମାର୍ଚ୍ଚ ୫-୧୯୦୭ (ଯୁଗାନ୍ତର) ''ଇଂଲଣ୍ଡର ପ୍ରତିଶୋଧ ନେବାପାଇଁ କ'ଣ ଦଶ ହଜାର ବଙ୍ଗ ଯୁବକ ମିଳିବେ ନାହିଁ ? ସମଗ୍ର ଦେଶରେ ଇଂରେଜମାନଙ୍କ ସଂଖ୍ୟା ଲକ୍ଷେ ଦେଢ଼ଲକ୍ଷରୁ ଅଧିକ ହେବ ନାହିଁ । ପ୍ରତି ଜିଲାରେ ବା କେତେଜଣ ଇଂରେଜ ଅଛନ୍ତି ? ଦୃଢ଼ପ୍ରତିଜ୍ଞ ହେଲେ ଗୋଟିଏ ଦିନରେ ମଧ୍ୟ ଇଂରେଜ ଶାସନର ଅବସାନ ହୋଇପାରିବ । ଜୀବନ ବିନିମୟରେ ଜୀବନକୁ ଅମର କର, ସ୍ୱାଧୀନତା ବେଦିରେ ନିଜ ଜୀବନକୁ ଉତ୍ସର୍ଗ କର, ବିନା ରକ୍ତଦାନରେ ମାତୃ ବନ୍ଦନା ସଂପୂର୍ଣ୍ଣ ହେବ ନାହିଁ ।''

'ସ୍ୱାଧୀନତା ପ୍ରାପ୍ତି ପାଇଁ ମୃତ୍ୟୁବରଣକଲେ ତୁମେ ଅମର ଜୀବନ ଲାଭକରିବ । ଚାଲିଆସ, ବନ୍ଦିନୀ ମା' ମୁହଁରେ ହସ ଫୁଟାଇବାକୁ କିଏ ସର୍ବାଗ୍ରେ ପ୍ରାଣଦାନ କରି ପାରିବ, ଚାଲିଆସ ।' 'ସନ୍ଧ୍ୟା' ୧୫-୫-୧୯୦୭ — 'ଛିନ୍ନବସ୍ତ୍ର ପରିହିତା ଓ ଧୂଳି-ଧୂସରିତା ମା'ର ଦୁଃଖ ଅପନୋଦନ କରିବାକୁ ହେବ । ମା'ର ଲଜ୍ଜା ନିବାରଣ କରିବାକୁ ସର୍ବପ୍ରଥମେ କିଏ ପ୍ରାଣ ବିସର୍ଜନ କରିବ ତାହାକୁ ସମସ୍ତେ ଅନାଇ ରହିଛନ୍ତି । କର୍ତ୍ତବ୍ୟ ପଥ ପରିଷ୍କାର ରହିଛି । ଆବଶ୍ୟକ କେବଳ ଦୃଢ଼ପ୍ରତିଜ୍ଞା । ଅମରତ୍ୱର ଆଶୀର୍ବାଦ ଘେନି ମୃତ୍ୟୁ ଆମ୍ଭର ଦ୍ୱାରରେ କରାଘାତ କରୁଛି । ମୃତ୍ୟୁରେ କିଏ ବଞ୍ଚିବାକୁ ଚାହେଁ, ମା' ତାହା ଦେଖିବାକୁ ବ୍ୟଗ୍ର । ଆମ ଭିତରେ କ'ଣ ଜଣେ ସୁଦ୍ଧା ନାହିଁ ଯେ କି ବରିସାଲରେ ଯେଉଁମାନେ ଲାଠି ଚଳାଇଲେ ସେମାନଙ୍କ ମୁଣ୍ଡରେ ଲାଠି ପାହାର ଦେଇ ପାରିବ ?''

''ଜଣେ ବ୍ୟକ୍ତି ଆତ୍ମରକ୍ଷା କରିବାକୁ ଶକ୍ତି ପ୍ରୟୋଗ କରିବା ଯଦି ଆଇନସମ୍ମତ ହୁଏ, ଗୋଟିଏ ଜାତି ତାହା ପ୍ରୟୋଗ ନ କରିବ କାହିଁକି ? ଚୋର ଡକାୟତଙ୍କ ଆକ୍ରମଣରୁ ରକ୍ଷାପାଇବାକୁ ଯଦି ନରହତ୍ୟା କରିବା ପାପ ନୁହେଁ, ତେବେ ଗୋଟାଏ ଜାତିକୁ ମୁକ୍ତ କରିବାକୁ କେତେ ଜଣଙ୍କୁ ହତ୍ୟାକରାଗଲେ ତାହା ବେଆଇନ କାହିଁକି ହେବ ?'' (ଯୁଗାନ୍ତର ୯-୬-୧୯୦୭)

''ଆସ, ଯୁଦ୍ଧରେ ଝାସ ଦେବା । ଏତଦ୍ୱାରା ଆମେ ତୁମକୁ ଯୁଦ୍ଧ କ୍ଷେତ୍ରକୁ ଆହ୍ୱାନ କରୁଛୁ । ଦେଖ, ସାରାଦେଶରେ କିପରି ଯୁଦ୍ଧ ଲାଗିଗଲାଣି । ମା'ର ସନ୍ତାନମାନେ

ଅଗ୍ନି, ବରୁଣ ଓ ବାୟବ ଅସ୍ତ୍ର ପଠାଇସାରିଲେଣି । ମା'ର ଆହ୍ୱାନକୁ କାନଦେଇ ଶୁଣ । ଆମେ ତୁମର ତୋପ ବନ୍ଧୁକକୁ ଖାତିର କରୁନା । ଭାଇମାନେ, ଅସ୍ତ୍ର ଧର; ଅସ୍ତ୍ର ଧର, ମୁକ୍ତିର ଦିନ ପାଖେଇଆସିଛି । ଆମକୁ ସେ କଣ୍ଠସ୍ୱର ସ୍ପଷ୍ଟ ଶୁଭୁଛି । ଆମ ଜୀବଦ୍ଦଶା ଭିତରେ ମା'ର ଶୃଙ୍ଖଳମୁକ୍ତି ଆମେ ସ୍ପଷ୍ଟ ଦେଖିପାରୁଛୁ । ଆଉ ଅପେକ୍ଷା କରନାହିଁ । (ସନ୍ଧ୍ୟା ୨୩-୮-୧୯୦୭)

"ତୁମ ଧର୍ମକୁ ଯେ ହତ୍ୟାକରିଛି, ତୁମ ଦେଶକୁ ଯେ ଧ୍ୱଂସକରଛି, ତାକୁ ହତ୍ୟା କର । ଧନୀ ହେଉ ବା ଦରିଦ୍ର ହେଉ, ରାଜା ହେଉ ବା ଜମିଦାର ହେଉ, ସରକାରୀ ଅଫିସର ହେଉ ବା ସମ୍ରାଟ ହେଉ; ଯେ ତୁମର ପଥରେ ପ୍ରତିବନ୍ଧକ ସୃଷ୍ଟିକରୁଛି ତାକୁ ହତ୍ୟାକର ।" (ସନ୍ଧ୍ୟା ୭-୧୦-୧୯୦୭)

'ସଭାସମିତିର କୌଣସି ମୂଲ୍ୟ ନାହିଁ । ଏହା ସମସ୍ତେ ମନେରଖିବା ଉଚିତ ଯେ ମୃତ୍ୟୁ ପ୍ରତି ଭୟ ଓ ଜୀବନ ପ୍ରତି ମୋହ ତ୍ୟାଗ କରିବାକୁ ହେବ । ଆମେ ଯେହେତୁ କାହା ପ୍ରତି ଅତ୍ୟାଚାର କରୁନା, ଆମ ପ୍ରତି କାହାର ଅତ୍ୟାଚାର ମଧ୍ୟ ସହ୍ୟ କରିବୁ ନାହିଁ । ଯଦି ଇଂରେଜର ଦୁର୍ଗ ଭିତରୁ ବାହାରିଆସି କେହି ରକ୍ତମୁଖା ପୁଲିସ ବା ସୈନିକ ଆମ ଉପରେ ଅତ୍ୟାଚାର କରେ, ଆମେ ତାହାର ଗୋଟାଏ ଦି'ଟା ଅଙ୍ଗ ଛେଦନକରି ତାକୁ ବିଦାୟଦେବୁ ।" (ସନ୍ଧ୍ୟା-୭-୧୦-୧୯୦୭)

"ଆମର ସମସ୍ତ ଧର୍ମ ରକ୍ତରଞ୍ଜିତ । ମହାପୁରୁଷଙ୍କ ରକ୍ତସିକ୍ତ ମାଟିରୁ ସ୍ୱାଧୀନତାର ଯେଉଁ ବୀଜ ଅଙ୍କୁରିତ ହେବ ତାକୁ ବିଶ୍ୱର କୌଣସି ଶକ୍ତି ଦଳିଦେଇ ପାରିବ ନାହିଁ । ସହିଦତ୍ୱବରଣ କରିବା ଆମର ବର୍ତ୍ତମାନ ଏକମାତ୍ର ଧର୍ମ । ଆଗାମୀ କାଲି ଆମର ଧର୍ମ ହେବ ବିଜୟଲାଭ ।"

ଅସ୍ତ୍ରଶସ୍ତ୍ର ଦରକାର– ସ୍ୱାଧୀନତା ସଂଗ୍ରାମ ପାଇଁ ଅସ୍ତ୍ରଶସ୍ତ୍ର କେଉଁଠୁ ଆସିବ ସେ ସଂପର୍କରେ ମଧ୍ୟ ବିପ୍ଳବୀ ନେତାମାନଙ୍କର ସ୍ପଷ୍ଟ ବିଚାର ଥିଲା । 'ସନ୍ଧ୍ୟା' ୧୭-୫-୧୯୦୭ରେ ଲେଖିଲେ – "କିଭଳି ଭାବରେ ଆମେ ପ୍ରସ୍ତୁତ ହେବା ସେ ବିଷୟରେ ସ୍ପଷ୍ଟ ଧାରଣା ନ ରଖିଲେ ସାହସୀ ହେବା ସମ୍ଭବ ହେବ ନାହିଁ । ଏକପ୍ରକାର ବୋମା ତିଆରି ହେଉଛି ଯାହାକି ଆମର ଯୁଦ୍ଧାୟୋଜନରେ ବିପ୍ଳବ ଆଣିଦେଇଛି । ସେ ବୋମା ମଧ୍ୟ ଖୁବ୍ ଅଳ୍ପ ଖର୍ଚ୍ଚରେ ତିଆରିହୋଇପାରିବ ଏବଂ ସହଜରେ ନେଇଆଣିହେବ । ଦଳେ ଏହିଭଳି ଭାରତୀୟ ସନ୍ତାନ ଆବଶ୍ୟକ ଯେଉଁମାନେ ଆମର ସ୍ୱାଧୀନତା ଆସନ୍ନ ବୋଲି ବିଶ୍ୱାସକରିବେ ଏବଂ ଯେଉଁମାନେ ଉଚ୍ଚକଣ୍ଠରେ ଘୋଷଣାକରିବେ ଯେ ସେମାନେ ଭାରତକୁ ସ୍ୱାଧୀନ ନ କରି ମୃତ୍ୟୁବରଣ କରିବେ ନାହିଁ ।"

"ପ୍ରତି ଗୃହ, ପ୍ରତି ଗ୍ରାମ, ପ୍ରତି ହାଟ ଓ ବଜାର, ପ୍ରତି ହୃଦୟ ଗୋଟିଏ ଗୋଟିଏ ଦୁର୍ଗରେ ପରିଣତ ହେଉ । ସେଠାରେ ଲାଠି, ବର୍ଚ୍ଛା, ବଲମ ଓ ଛୁରାର ଭଣ୍ଡାର ତିଆରି ହେଉ ଏବଂ ସେଠାରେ ଧନୁତୀର ଏବଂ ମା' କାଳୀ ବୋମା ପ୍ରଚୁର ପରିମାଣରେ

ରହୁ । ସେହି ବୋମାକୁ କେବଳ ଫୋପାଡ଼ିଦେଲେ ହେଲା । ଦେଖିବ ତା'ର ବିସ୍ଫୋରଣରେ ସଙ୍ଗେ ସଙ୍ଗେ ଅନ୍ତତଃ ପନ୍ଦର କୋଡ଼ିଏ ଲୋକଙ୍କ ପ୍ରାଣନାଶ ହୋଇଥିବ । ଏହି ବୋମା ଖୁବ୍ କମ୍ ଖର୍ଚ୍ଚରେ ତିଆରିହୋଇପାରିବ ।''

ଯୁଗାନ୍ତର (୧୨-୮-୧୯୦୭) – 'ଅସ୍ତ୍ରଶସ୍ତ୍ର ସଂଗ୍ରହ କିମ୍ବା ତିଆରିକରିବା ଆଦୌ କଷ୍ଟକର ବ୍ୟାପାର ନୁହେଁ । ଏହା ତିଆରିକରିବା କେତୋଟି ନିର୍ଦ୍ଦିଷ୍ଟ ଜାତିର ଏକଚାଟିଆ ବୋଲି କାହିଁକି ଭାବୁଛ ? ଭାରତବର୍ଷ ଭଳି ବିରାଟ ଦେଶରେ ବଣ, ଜଙ୍ଗଲ ଓ ପାହାଡ଼ର ଅଭାବ ନାହିଁ । ସାବଧାନତା ସହକାରେ ସେଭଳି ଏକ ସ୍ଥାନ ବାଛିବାକୁ ପଡ଼ିବ । କୌଣସି ସରକାର ପକ୍ଷରେ ଏହି ଗୁପ୍ତ କାରଖାନାର ସମ୍ବାଦ ସଂଗ୍ରହକରିବା ସହଜ ନୁହେଁ । ରୁଷିଆରେ ଜାର୍ ସେନା ବାହିନୀ ଭିତରେ ଯେପରି ବିପ୍ଳବୀମାନେ ଅନୁପ୍ରବେଶ କରି ବିପ୍ଳବୀମାନଙ୍କୁ ସାହାଯ୍ୟ କରୁଅଛନ୍ତି ଆମକୁ ମଧ୍ୟ ବ୍ରିଟିଶ୍ ସେନାବାହିନୀ ଭିତରେ ପଶିବାକୁ ପଡ଼ିବ । ଫରାସୀ ବିପ୍ଳବରେ ମଧ୍ୟ ଏହି କୌଶଳ ଖୁବ୍ କାମଦେଇଥିଲା । ସେମାନେ ଯେ କେବଳ ଦରକାରବେଳେ ଆମ ପକ୍ଷରେ ଲଢ଼ିବେ, ସେତିକି ନୁହେଁ – ସୈନ୍ୟ ଛାଉଣୀରୁ ଆମେ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିପାରିବା, ଏହା ଫଳରେ ଶାସକ ଶ୍ରେଣୀ ଭିତରେ ଆମେ ଆତଙ୍କରାଜ ମଧ୍ୟ ସୃଷ୍ଟି କରିପାରିବା । ବନ୍ଧୁକ ବ୍ୟବସାୟୀମାନେ ମଧ୍ୟ ଆମକୁ ଅସ୍ତ୍ରଶସ୍ତ୍ର ଯୋଗାଇଦେଇପାରନ୍ତି । ସରକାରର ନିଜର କାରଖାନା ଥିବାରୁ ବ୍ୟବସାୟୀମାନେ ଆମକୁ କାହିଁକି ବନ୍ଧୁକ ବିକ୍ରୟ ନ କରିବେ ? କେବଳ ସରକାର ଉପରେ ନିର୍ଭର କଲେ ସେମାନଙ୍କ ବ୍ୟବସାୟ କଦାପି ଚାଲିପାରିବନାହିଁ ।

ଏ କ୍ଷେତ୍ରରେ 'ସନ୍ଧ୍ୟା', 'ଯୁଗାନ୍ତର'ଓ 'ବନ୍ଦେ ମାତରମ୍' ସବୁଠାରୁ ଶକ୍ତିଶାଳୀ ଥିଲା ଏବଂ ସେଗୁଡ଼ିକର ସଂପାଦକଗଣ ମଧ୍ୟ ସେ ଯୁଗରେ ପ୍ରତିଷ୍ଠିତ ଓ ବରେଣ୍ୟ ଜନନାୟକ ଥିଲେ । ସଂତ୍ରାସବାଦ ପ୍ରଚାର ଅଭିଯୋଗରେ ସେମାନଙ୍କୁ ବାରମ୍ବାର କାରାବରଣ କରିବାକୁ ମଧ୍ୟ ପଡ଼ିଥିଲା ।

'ସନ୍ଧ୍ୟା' ସଂପାଦକ ଶ୍ରୀ ବ୍ରହ୍ମବାନ୍ଧବ ଉପାଧ୍ୟାୟ ଜଣେ ନୈଷ୍ଠିକ ବ୍ରାହ୍ମଣ ଥିଲେ । ତାଙ୍କର ନିର୍ଭୀକ ଲେଖନୀନିଃସୃତ ବାଣୀ ଆଗ୍ନେୟଗିରିର ଉଦ୍‌ଗିରଣ ଭଳି ଦେଶରେ ଉତ୍ତପ୍ତ ଲାଭାର ସ୍ରୋତ ବୁହାଇଦେଇଥିଲା । ଏଭଳି ଜଣେ ଆପୋଷହୀନ ସଂଗ୍ରାମୀ ସାମ୍ବାଦିକ ଏ ଯୁଗରେ ଜନ୍ମହେବା କଳ୍ପନାତୀତ । ତାଙ୍କ ଉପରେ ଆସନ୍ନ ପୁଲିସ ଜୁଲମକୁ ଉପହାସ କରି ୨୯-୧-୧୯୦୭ରେ ସେ 'ସନ୍ଧ୍ୟା'ରେ ଲେଖିଥିଲେ, ''ଯେଉଁ ଜାତି ନିଜର ଶରୀର ଓ ଆତ୍ମାକୁ ଦୁଇଟି ଭିନ୍ନବସ୍ତୁ ବୋଲି ବିଚାରକରେ, ତା'ର ଶରୀର ଉପରେ ଅତ୍ୟାଚାର ହେଲେ ସେ ତାକୁ ଖାତିର କରିବ ନାହିଁ । ଯେ ଶରୀରକୁ ଖଣ୍ଡେ ଛିଣ୍ଡାକନା ବୋଲି ବିଚାରକରେ, ତା' ଉପରେ କିଏ ବା ଅତ୍ୟାଚାର କରିବ ? ଯେଉଁମାନେ ଶରୀର-ସର୍ବସ୍ୱ କେବଳ ସେହିମାନେ ପୁଲିସ ଅତ୍ୟାଚାରକୁ ଭୟକରନ୍ତି । ଯଦି ଫିରିଙ୍ଗୀ ମୋ ଶରୀର ଉପରେ କେବେ ଅତ୍ୟାଚାର କରିବାକୁ ସାହସକରେ ତେବେ

ମୁଁ ସେହି ଅତ୍ୟାଚାରୀ ସମ୍ମୁଖରେ ଏ ଦେହଟାକୁ ହଳେ ଛିଣ୍ଡା ଠନ୍ଠନିଆ ଚପଲ (ଶସ୍ତା ଚପଲ ତିଆରିହେଉଥିବା ଏକ ସ୍ଥାନର ନାମ ଠନ୍ଠନିଆ) ଭଳି ଫୋପାଡ଼ିଦେବି । 'ସନ୍ଧ୍ୟା'ର ସମ୍ବାଦ ଓ ସମ୍ପାଦକୀୟ ଶିରୋନାମା ସବୁଠାରୁ ବେଶି ବିପ୍ଳବାତ୍ମକ ଏବଂ ଆକର୍ଷଣୀୟ ଥିଲା । ଯେଉଁ ଶିରୋନାମା ପାଇଁ ୧୯୦୭ ସେପ୍ଟେମ୍ବର ୨୩ରେ ତାଙ୍କୁ କାରାଦଣ୍ଡ ଦିଆଯାଇଥିଲା, ତା'ର ଶିରୋନାମା ଥିଲା – 'ଏଖନ ଥେକେ ଗେଛି ପ୍ରେମେର ଦାଏ' ।

ସେହି ମକଦ୍ଦମା ବିଚାରବେଳେ ବ୍ରହ୍ମବାନ୍ଧବ ନିର୍ଭୀକ ଭାବରେ କହିଥିଲେ, "ମୁଁ ଉପରୋକ୍ତ ସମ୍ପାଦକୀୟର ଲେଖକ, ପ୍ରକାଶକ ଓ ମୁଦ୍ରାକର । ଏଥିପାଇଁ ଏକମାତ୍ର ମୁଁ ସମ୍ପୂର୍ଣ୍ଣ ଦାୟୀ । କିନ୍ତୁ ମୁଁ ଏହି ମକଦ୍ଦମାରେ କୌଣସି ଅଂଶ ଗ୍ରହଣ କରିବାକୁ ଚାହେଁନା; କାରଣ 'ସ୍ୱରାଜ୍ୟ' ଭଳି ଭଗବତ୍‌ପ୍ରେରିତ କାର୍ଯ୍ୟ ସଂପାଦନ କରିବା ସଂପର୍କରେ ଦୁର୍ଭାଗ୍ୟବଶତଃ ଏ ଦେଶକୁ ଶାସନକରିଥିବା ଏକ ବିଦେଶୀ ଶାସକ ନିକଟରେ କୌଣସି କୈଫିୟତ ଦେବାକୁ ମୁଁ ବାଧବୋଲି ବିଶ୍ୱାସ କରେନାହିଁ ।"

'ସନ୍ଧ୍ୟା'ର ଆଉ କେତେଗୋଟି 'ଶିରୋନାମା'ରୁ ବ୍ରହ୍ମବାଂଧବଙ୍କ ଲେଖନୀର ବୈପ୍ଳବିକ ଶକ୍ତି ଓ ରାଜନୈତିକ ବ୍ୟଙ୍ଗ ରଚନାର ଉତ୍କୃଷ୍ଟ ଉଦାହରଣ ଦେଖିବାକୁ ମିଳେ । 'ଯୁଗାନ୍ତରରେ ରକ୍ତାରକ୍ତି, ଫିରିଙ୍ଗୀଦେର ଫାଟ୍‌ଲୋ ପିଉି' (ଯୁଗାନ୍ତର ଅଫିସ୍‌ରେ ରକ୍ତାକ୍ତ ଯୁଦ୍ଧରେ ଫିରିଙ୍ଗୀଙ୍କର ପିତ୍ତ ଫାଟିଲା) 'ଡିଲେର ବଦ୍‌ଲୋ ପାଟକେଲ' (ଯେସାକୁ ତେସା), 'କାଳୀଘାଟେ ଜୋଡ଼ାପାଣ୍ଠା, ଏକଟା କାଲୋ ଏକଟା ସାଦା' (କାଳୀଘାଟେ ଦୁଇଟା ବୋଦା, ଗୋଟାଏ କଳା, ଗୋଟାଏ ଧଳା) 'ସେଡ଼ିସନେର୍ ହୁରୁମ ଦୁରୁମ ଫିରିଙ୍ଗୀଦେର ଅକଲ ଗୁଡୁମ୍' (ରାଜଦ୍ରୋହର ହେଲା ଜୁଲମ, ଫିରିଙ୍ଗୀର ଅକଲ୍ ଗୁଡୁମ୍), 'ଫିରିଙ୍ଗୀ ପରମ ଦୟାଲୁ, ଫିରିଙ୍ଗୀ କ୍ରିପାୟ ଦାଢ଼ି ଗଜାୟେ ଶୀତକାଲେ ଖାଇ ଶଙ୍ଖଆଲୁ' (ଫିରିଙ୍ଗୀ ପରମ ଦୟାଳୁ, ଫିରିଙ୍ଗୀ କୃପାରେ ଦାଢ଼ି ଉଠେ ଶୀତକାଳେ ଖାଉଁ ଶଙ୍ଖଆଳୁ) 'ବାଛା ସକଲ ନିୟେଯାଛେ ଶ୍ରୀବୃନ୍ଦାବନ'[ସବୁ ପିଲାଙ୍କୁ ଶ୍ରୀବୃନ୍ଦାବନ (ଜେଲଖାନା) ନିଆଯାଉଛି) ।]

ବିଚାରାଧୀନ ଥିବା ଅବସ୍ଥାରେ ବ୍ରହ୍ମବାଂଧବ ମୃତ୍ୟୁବରଣ କରିଥିଲେ । ଯୁଗାନ୍ତରର ସ୍ୱନାମଧନ୍ୟ ସମ୍ପାଦକ ଥିଲେ ସ୍ୱାମୀ ବିବେକାନନ୍ଦଙ୍କ ସାନଭାଇ ଭୂପେନ୍ଦ୍ର ନାଥ ଦତ୍ତ । ତାଙ୍କର ଯେଉଁ ଦୁଇଟି ପ୍ରବନ୍ଧ ରାଜଦ୍ରୋହମୂଳକ ବୋଲି ଅଭିଯୋଗ ହୋଇଥିଲା, ସେହି ପ୍ରସିଦ୍ଧ ପ୍ରବନ୍ଧ ହେଉଛି – 'ଭୟଭଂଗ' ଓ 'ଲାଠୌଷଧି' (ଠେଙ୍ଗା ଔଷଧ) । ଏହି ମକଦ୍ଦମାରେ ଶ୍ରୀଯୁକ୍ତ ଦତ୍ତ କୋର୍ଟରେ କହିଥିଲେ, "ମୁଁ ଯୁଗାନ୍ତର ପତ୍ରିକାର ସଂପାଦକ, ପ୍ରକାଶକ, ମୁଦ୍ରାକର । ଏଥିରେ ପ୍ରକାଶିତ ସମସ୍ତ ସମ୍ବାଦ ଓ ପ୍ରବନ୍ଧ ପାଇଁ ମୁଁ ଦାୟୀ । ମୋର ଦେଶର ସ୍ୱାର୍ଥ ପାଇଁ ମୁଁ ଯାହା ଉଚିତମନେକରିଅଛି ତାହା ଏଥିରେ ପ୍ରକାଶ କରିଅଛି । ଏ ସମ୍ପର୍କରେ ମୁଁ ଅଧିକ କିଛି କହିବାକୁ ଚାହେଁନା କିମ୍ବା ଏହି ବିଚାରରେ ଭାଗନେବାକୁ ଚାହେଁନା ।"

ଭୂପେନ୍ଦ୍ରନାଥ ଏଥିପାଇଁ ଦଣ୍ଡିତହୋଇଥିଲେ । କିନ୍ତୁ ଏହି ଦଣ୍ଡାଦେଶକୁ କଠୋର ଭାଷାରେ ସମାଲୋଚନା କରି 'ସନ୍ଧ୍ୟା' ଲେଖିଥିଲେ (୨୨-୭-୧୯୦୭) "ପଲାସୀର ଆମ୍ବତୋଟା ମଧ୍ୟରେ ଲୁଚିରହି, ଯୁଦ୍ଧର ସାମାନ୍ୟ ଲକ୍ଷଣ ମଧ୍ୟ ନ ଦେଖାଇ, କେବଳ ଠକାମି ଓ ଚୁଆଚୋରି କରି ସେମାନେ ବଂଗଳାକୁ ଅଧିକାର କରିଅଛନ୍ତି । ସେଥିପାଇଁ ଆମ୍ଭମାନଙ୍କର ପ୍ରକୃତ ପରିଚୟ ସେମାନେ ଏଯାଏ ପାଇନାହାନ୍ତି । ବର୍ତ୍ତମାନ ସେମାନେ ନାଗସାପ ଲାଞ୍ଜ ଉପରେ ଗୋଡ଼ ପକାଇ ଦେବାର ଦୁଃସାହସ କରିଅଛନ୍ତି । ଏହି ତଥାକଥିତ ରାଜଦ୍ରୋହ-ମକଦ୍ଦମା ନିଆଁ ଲଗାଇ ଦେଇଛି । ଆମେ ଜାଣୁ ତୁମ ଚମଡ଼ା ଏତେ ବଧଡ଼ା ଯେ କୋମଳ ବାକ୍ୟର କୌଣସି ପ୍ରଭାବ ତା' ଉପରେ ପଡ଼ିବ ନାହିଁ । ତୁମ ସହ ହିସାବନିକାଶ କରିବାର ବାଟ ବଂଗାଳୀଙ୍କୁ ଭଲଭାବେ ଜଣା । ତୁମେ ନାଗସାପ ଲାଞ୍ଜରେ ଗୋଡ଼ ମାରି ତା'ର ପରିଚୟ ଚାହୁଁଛ ? ତୁମେ ଯାହା ଚାହୁଁଛ ତାହା କର, କେବଳ ନାଗ ଓ ତା'ର ଚୋଟକୁ ମନେରଖ ।"

ଜାତୀୟତାବାଦୀ ଏବଂ ସନ୍ତ୍ରାସବାଦୀ ପତ୍ରପତ୍ରିକାଗୁଡ଼ିକ ଭଳି ଶ୍ରୀମଦଭଗବଦ୍‌ଗୀତା, ଶ୍ରୀ ଶ୍ରୀ ଚଣ୍ଡୀ, ବଙ୍କିମଚନ୍ଦ୍ରଙ୍କର 'ଆନନ୍ଦମଠ' ଶ୍ରୀ ଅରବିନ୍ଦଙ୍କର 'ଭବାନୀ ମନ୍ଦିର' ପ୍ରଭୃତି ଅମୂଲ୍ୟ ଗ୍ରନ୍ଥଗୁଡ଼ିକ ମଧ୍ୟ କିଭଳି ସଶସ୍ତ୍ର ବିପ୍ଳବୀଙ୍କୁ ଉଦ୍‌ବୁଦ୍ଧ କରିବାରେ ସାହାଯ୍ୟ କରିଥିଲା ଏବଂ ତିଲକଜୀଙ୍କର 'ଗୀତାରହସ୍ୟ' ଏବଂ ଶ୍ରୀ ଅରବିନ୍ଦଙ୍କ 'ଗୀତାନିବନ୍ଧ' (Essay on Gita) ସେମାନଙ୍କୁ କିଭଳି ପ୍ରେରଣା ଯୋଗାଇଥିଲା ତାହା ପୂର୍ବରୁ ସାମାନ୍ୟ ଆଲୋଚିତ ହୋଇଅଛି ।

**ଆନନ୍ଦମଠ :**

ଋଷି ବଙ୍କିମଚନ୍ଦ୍ର 'ଆନନ୍ଦମଠ'ରେ ଜନୈକ ସନ୍ନ୍ୟାସୀ ଭବାନନ୍ଦଙ୍କ ଚରିତ୍ର ମାଧ୍ୟମରେ ଯେଉଁ ଗୋପନ ବିପ୍ଳବର ସୂଚନା ଦେଇଥିଲେ ତାହା ଭାରତୀୟ ବିପ୍ଳବୀ ମାନସରେ ଗଭୀର ରେଖାପାତ କରିଥିଲା । ପ୍ରସିଦ୍ଧ 'ବନ୍ଦେ ମାତରମ୍' ସଂଗୀତକୁ ଏହି 'ଆନନ୍ଦମଠ'ରେ ସଂଯୋଜିତ କଲାବେଳେ ଋଷି ହୁଏତ କଳ୍ପନା କରି ନ ଥିଲେ ଯେ ସେହି ସଂଗୀତ ଦିନେ ଭାରତର ଜାତୀୟସଂଗୀତରୂପେ ଆଦୃତ ହେବ ଏବଂ 'ବନ୍ଦେ ମାତରମ୍' ସ୍ଲୋଗାନ ଜାତୀୟ ଆନ୍ଦୋଳନରେ ଏକ ସର୍ବାଧିକ ଲୋକପ୍ରିୟ ଯୁଦ୍ଧ ଡାକରାରେ ପରିଣତ ହେବ ।

'ଆନନ୍ଦମଠ' ପ୍ରକାଶିତ ହୋଇଥିଲା ୧୮୮୨ ଖ୍ରୀଷ୍ଟାବ୍ଦରେ । ସ୍ୱୟଂ ଅରବିନ୍ଦ ଏ ସଂପର୍କରେ ଲେଖିଥିଲେ, "ଏକ ନୂତନ ରାଜନୈତିକ ତତ୍ତ୍ୱ ପରିପ୍ରକାଶ ପାଇଁ ଏବଂ ଏକ କ୍ରମବର୍ଦ୍ଧିଷ୍ଣୁ ଦର୍ଶନର ପରିସ୍ଫୁଟନ ପାଇଁ ଏକ ଉପଯୁକ୍ତ ଭାଷା ସର୍ବାଧିକ ଆବଶ୍ୟକ । ଏ ଦିଗରେ ବଙ୍କିମଙ୍କର 'ଆନନ୍ଦମଠ' ଭାରତୀୟଙ୍କୁ ସର୍ବଶ୍ରେଷ୍ଠ ଅବଦାନ । ଜାତିର ମୁକ୍ତି ପାଇଁ ଦୂରଦୃଷ୍ଟିସଂପନ୍ନ ବଙ୍କିମଚନ୍ଦ୍ରଙ୍କର ଏହା ଏକ ଐତିହାସିକ କୃତିତ୍ୱ । ଶ୍ୱାନ-ପ୍ରବୃତ୍ତି ପରିବର୍ତ୍ତେ ଏହା ଭାରତୀୟମାନଙ୍କୁ ସିଂହବୃତ୍ତି ଶିକ୍ଷାଦେଇଛି ।" (ଶ୍ରୀ ଅରବିନ୍ଦ କୃତ ତିଲକ-ବଙ୍କିମ-ଦୟାନନ୍ଦ) ।

''ଦେଶକୁ ମା' ବୋଲି ପୂଜା କରିବାର ପ୍ରେରଣା ଦେଶବାସୀଙ୍କୁ ପ୍ରଥମେ ବଙ୍କିମଚନ୍ଦ୍ର ହିଁ ଦେଇଅଛନ୍ତି ଏବଂ ସେହି ପୂଜା ପାଇଁ ବୈରାଗୀ (ଫକିର) ହେବାକୁ ସେ ନିର୍ଦ୍ଦେଶ ଦେଇଥିଲେ । 'ଆନନ୍ଦମଠ'ର ବିପ୍ଳବୀ ସନ୍ନ୍ୟାସୀ ଭବାନନ୍ଦଙ୍କ ଭାଷାରେ – ''ଆମେ ଅନ୍ୟ କାହାକୁ ମା' ବୋଲି ସ୍ୱୀକାରକରୁନା, ଆମ ପକ୍ଷରେ ମା' ଏବଂ ମାତୃଭୂମି ସ୍ୱର୍ଗଠାରୁ ବଡ଼ ଅଟେ । ମାତୃଭୂମିହିଁ ଏକମାତ୍ର ମା' ବୋଲି ଆମେ ଘୋଷଣାକରୁଛୁ । ଆମର ଅନ୍ୟ ମା' ନାହିଁ, ବାପ ନାହିଁ, ଭାଇ ନାହିଁ, ବଂଧୁ ନାହିଁ, ପତ୍ନୀ ନାହିଁ, ପୁତ୍ର ନାହିଁ କିମ୍ବା ଗୃହ ନାହିଁ ।''

ସେହି ଅଧ୍ୟାୟରେ ପୁଣି ଭବାନନ୍ଦ କହିଛନ୍ତି, ''ଆମେ ସରକାରୀ ଧନ ଡକାୟତି କରୁ ନାହୁଁ । ଯେଉଁ ସରକାର ପ୍ରଜାଙ୍କର ମଙ୍ଗଳ ଉଦ୍ଦେଶ୍ୟରେ ରାଜକୋଷ ବ୍ୟୟ କରେ ନାହିଁ, ସେ ସରକାର ସରକାର ପଦବାଚ୍ୟ ନୁହେଁ, ସୁତରାଂ ତାହା ସରକାରୀ ଧନ କେମିତି ହେଲା ?''

ଶିଷ୍ୟ ମହେନ୍ଦ୍ର ଯେତେବେଳେ ପଚାରିଥିଲେ 'ଗୁରୁଦେବ ! ଏହା ଏକ ବିପଜ୍ଜନକ କାର୍ଯ୍ୟ ଏବଂ ଏଥିରେ ଜୀବନ ବିପନ୍ନ ହୋଇପାରେ' । ସଙ୍ଗେ ସଙ୍ଗେ ଭବାନନ୍ଦଙ୍କର ସିଧା ଉତ୍ତର– 'ମନୁଷ୍ୟ ଦୁଇଥର ମରେ ନାହିଁ ମହେନ୍ଦ୍ର' । ସମ୍ଭବତଃ ଭବାନନ୍ଦଙ୍କର ଏହି ନିର୍ଦ୍ଦେଶ ବହନକରି ପରବର୍ତ୍ତୀ ଯୁଗରେ ଶତ ଶତ ସ୍ୱାଧୀନତା ସଂଗ୍ରାମୀ 'ବନ୍ଦେ ମାତରମ୍' ଉଚ୍ଚାରଣ କରି ଅମ୍ଳାନ ବଦନରେ ଫାଶୀଖୁଣ୍ଟ ଆରୋହଣ କରିଅଛନ୍ତି ।

**ଭବାନୀ ମନ୍ଦିର :**

ଶ୍ରୀ ଅରବିନ୍ଦଙ୍କର 'ଭବାନୀ ମନ୍ଦିର' (୧୯୦୫)ରେ ବିପ୍ଳବୀମାନଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଂପର୍କରେ ବିସ୍ତୃତ ଆଲୋଚନା ହୋଇଅଛି । ମହାଶକ୍ତିଙ୍କର ଆଶୀର୍ବାଦପୁଷ୍ଟ ହୋଇ ବିପ୍ଳବୀ ଅଗ୍ରସର ହେବାକୁ ଏଥିରେ ପରାମର୍ଶ ଦିଆଯାଇଛି । ସଶସ୍ତ୍ର ବିପ୍ଳବ ପାଇଁ ଏଥିରେ ସ୍ପଷ୍ଟ ନିର୍ଦ୍ଦେଶ ଦିଆଯାଇଥିଲା । କିନ୍ତୁ ଧର୍ମର ଭିତ୍ତିଭୂମି ଉପରେ ଏହି ବିପ୍ଳବ ସୌଧ ନିର୍ମାଣ କରିବାକୁ 'ଭବାନୀ ମନ୍ଦିର'ରେ କୁହାଯାଇଅଛି । 'ବେଦାନ୍ତ' ହିଁ ଏହି ଧର୍ମୀୟ ବିଚାରକୁ ପୁଷ୍ଟ କରିବ ।

ବଙ୍ଗବିପ୍ଳବୀଙ୍କୁ 'ଭବାନୀ ମନ୍ଦିର' ମଧ୍ୟ ବହୁ ପରିମାଣରେ ପ୍ରଭାବିତ କରିଥିଲା । ସେମାନେ 'ଭବାନୀ ମନ୍ଦିର'ର ଆଦର୍ଶ ସହ ବଲସେଭିକ୍ ବିପ୍ଳବ ଆଦର୍ଶର ସମନ୍ୱୟ ସାଧନ କରିଥିଲେ ।

'ଗୀତା', 'ଶ୍ରୀ ଶ୍ରୀ ଚଣ୍ଡୀ', 'ଆନନ୍ଦମଠ' ଓ 'ଭବାନୀ ମନ୍ଦିର' ସାଙ୍ଗକୁ ଯୋଗେନ୍ଦ୍ରନାଥ ବିଦ୍ୟାଭୂଷଣ ବିରଚିତ 'ମାଜିନୀ ଓ ଗାରିବାଲ୍ଡ଼ିଙ୍କର ଜୀବନୀ' ଓ ଦୁର୍ଗାଚରଣ ସାନ୍ୟାଲ୍‌ଙ୍କର 'ସ୍ୱାଧୀନତାର ଇତିହାସ' ମଧ୍ୟ ଏହି ଯୁଗରେ ସଶସ୍ତ୍ର ବିପ୍ଳବୀଙ୍କୁ ବିଶେଷ ସାହାଯ୍ୟ କରିଥିବାର ଦେଖାଯାଏ । ଏତଦ୍‌ବ୍ୟତୀତ ଆଉ କେତେଗୋଟି ପୁସ୍ତକ ବଙ୍ଗଭାଷାରେ ପ୍ରକାଶିତ ହୋଇ ବିପ୍ଳବୀମାନଙ୍କୁ ବହୁ ପ୍ରେରଣା ଯୋଗାଇ ଥିଲା–ସେଥିମଧ୍ୟରୁ ନିମ୍ନଲିଖିତ ପୁସ୍ତକଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ ।

**ମୁକ୍ତି କୋନ୍ ପଥେ ? :**

'ମୁକ୍ତି କୋନ୍ ପଥେ ?' ପୁସ୍ତକରେ ସଶସ୍ତ୍ର ବିପ୍ଳବ ପାଇଁ ଆବଶ୍ୟକ ଅସ୍ତ୍ରଶସ୍ତ୍ର ସଂଗ୍ରହର ଉପାୟ, ସେଗୁଡ଼ିକର ପ୍ରୟୋଗ କୌଶଳ ଓ ବିପ୍ଳବ ପାଇଁ ପ୍ରସ୍ତୁତି ସଂପର୍କରେ ସମସ୍ତ ତଥ୍ୟ ବିସ୍ତୃତଭାବେ ବର୍ଣ୍ଣନା କରାଯାଇଛି । ଏଥିରେ କୁହାଯାଇଛି ଯେ ଜଣେ ୟୁରୋପୀୟାନ୍‌କୁ ହତ୍ୟାକରିବାକୁ ଖୁବ୍ ଅଧିକ ଶକ୍ତିର ଆବଶ୍ୟକତା ନାହିଁ ଏବଂ ସେଥିପାଇଁ ଯେଉଁ ଅସ୍ତ୍ରଶସ୍ତ୍ର ଆବଶ୍ୟକ ତାକୁ ସଂଗ୍ରହ କରିବା ମଧ୍ୟ ଖୁବ୍ କଷ୍ଟସାଧ୍ୟ ନୁହେଁ । ଗୋପନରେ ଏହା ସହଜରେ ତିଆରିକରାଯାଇପାରିବ । ସେନାବାହିନୀରୁ ମଧ୍ୟ ଆମେ ଏ ଦିଗରେ ସାହାଯ୍ୟ ପାଇପାରିବା । ରାଜନୈତିକ ଡକାୟତିକୁ ସମର୍ଥନ କରି 'ମୁକ୍ତି କୋନ୍ ପଥେ ?' ଲେଖିଥିଲେ – "So no sin but virtue is attached to destruction of small good for the sake of some higher good. Therefore, if revolutionaries extort money from the miserly or luxurious members of society by the application of force their conduct is perfectly correct." (ସୁତରାଂ ଏକ ବୃହତ୍ତର କାର୍ଯ୍ୟସାଧନ ପାଇଁ ଏକ କ୍ଷୁଦ୍ର ସ୍ୱାର୍ଥକୁ ଜଳାଞ୍ଜଳି ଦେବା କଦାପି ପାପ ନୁହେଁ । ତେଣୁ ଯଦି ବିପ୍ଳବୀମାନେ କୃପଣ ଓ ବିଳାସୀବ୍ୟକ୍ତିଙ୍କଠାରୁ ବଳପୂର୍ବକ ଧନ ଆଦାୟକରନ୍ତି, ସେମାନଙ୍କ କାର୍ଯ୍ୟ ସଂପୂର୍ଣ୍ଣ ଯୁକ୍ତିଯୁକ୍ତ ଅଟେ ।)

ଏଭଳି ନିର୍ଭୀକ ଓ ପ୍ରକାଶ୍ୟ ଭାବରେ ଏଥିରେ ସଶସ୍ତ୍ର ବିପ୍ଳବ ପାଇଁ ଆହ୍ୱାନ ଦିଆଯାଇଥିଲା । ପୁସ୍ତକଟି ବିପ୍ଳବୀ ମହଲରେ ବିଶେଷ ଲୋକପ୍ରିୟ ହୋଇଥିଲା ।

**ବର୍ତ୍ତମାନ ରଣନୀତି :**

୧୯୦୭ ଅକ୍ଟୋବର ମାସରେ ଏହି ପୁସ୍ତକଟି ପ୍ରକାଶିତ ହୋଇଥିଲା । ଏଥିରେ ବିପ୍ଳବୀମାନଙ୍କୁ ଲାଠି ଓ ତରବାରି ଚାଳନା ସଂପର୍କରେ ଆବଶ୍ୟକ ଶିକ୍ଷା ଦେବା ଉପରେ ଜୋର୍ ଦିଆଯାଇଥିଲା । ବଙ୍ଗଳା ସାହିତ୍ୟ କ୍ଷେତ୍ରରେ ଏହି ପୁସ୍ତକ ଏକ ବୈପ୍ଳବିକ ବ୍ୟତିକ୍ରମ ବୋଲି 'ବନ୍ଦେ ମାତରମ୍' ପତ୍ରିକା ମତ ପ୍ରକାଶ କରିଥିଲେ । ଏଥିରେ ଗରିଲା ଯୁଦ୍ଧ କୌଶଳ, ବୁଅର ଏବଂ ରୁଷୋ-ଜାପାନ ଯୁଦ୍ଧକୌଶଳର ଚିତ୍ର ସହ ଚମତ୍କାର ବର୍ଣ୍ଣନା ରହିଥିଲା । 'ବନ୍ଦେ ମାତରମ୍' ଭାଷାରେ, ''ସେ ଯୁଗ ଚାଲିଯାଇଛି, ଯେତେବେଳେ ଦାର୍ଶନିକ କାବ୍ୟକବିତା ଓ ଗଭୀର ସାହିତ୍ୟ ଚର୍ଚ୍ଚାରେ ବଂଗବାସୀ ମସଗୁଲ ରହୁଥିଲେ । ବର୍ତ୍ତମାନ ଲୋଡ଼ା ଜାତୀୟ ସଂଗୀତ, ଜାତୀୟ କବିତା, ଜାତୀୟ ଉପନ୍ୟାସ, ନାଟକ ଓ ଜାତୀୟ ଇତିହାସ । ଏହି ପୁସ୍ତକରୁହିଁ ଆଜି ଭାରତର ବୈପ୍ଳବିକ ଚିନ୍ତାଧାରାର ପରିଚୟ ମିଳେ ।''

ଏତଦ୍‌ବ୍ୟତୀତ ଗଣେଶ ଦାମୋଦର ସଭରକରଙ୍କର 'ଲଘୁ ଅଭିନବ ଭାରତ ଗାଥା' (ମରାଠୀ) ବଂଗଳାରେ 'ଦେଶେର କଥା', ଶୁମ୍ଭ ନିଶୁମ୍ଭ ବଧ ପ୍ରଭୃତି ନାଟକ, 'ଆନନ୍ଦ ପ୍ରଭୁ', 'ନବ ଉଦ୍ଦୀପନା', 'ରଣଜୀତେର ଜୀବନଯଜ୍ଞ' ପ୍ରଭୃତି କବିତା ପୁସ୍ତକ ମଧ୍ୟ ଦେଶରେ ବୈପ୍ଳବିକ ସ୍ରୋତ ବୁହାଇଦେଲା ।

ବିସ୍ଫୋରକ ଦ୍ରବ୍ୟ ପ୍ରସ୍ତୁତି ପ୍ରଣାଳୀ ଏବଂ ଯୁଦ୍ଧକୌଶଳ ସଂପର୍କୀୟ ବହୁ ପୁସ୍ତକ ବିପ୍ଳବୀ ଶିବିରରେ ପ୍ରବେଶ କରିଥିବାର ପ୍ରମାଣ ମିଳେ ।

Nitro Explosives (Stanford). The Swordsman (Alfred Hutton), A Hand Book of Modern Explosives (Eissler), Modern Weapons and Modern War (J.S. Block), Field Exercises, Manual of Military Engineering, Infantry Training, Cavalry Drill, Machine Gun Firing, Quick Training for War ପ୍ରଭୃତି ପୁସ୍ତକ ସେତେବେଳେ ସଶସ୍ତ୍ର ବିପ୍ଳବୀମାନେ ବ୍ୟବହାର କରୁଥିଲେ । ଉପରୋକ୍ତ ପୁସ୍ତକଗୁଡ଼ିକ ତତ୍‌କାଳୀନ ଯୁବଶକ୍ତି ଉପରେ କିଭଳି ପ୍ରଭାବ ବିସ୍ତାର କରିଥିଲା ତାହାର ପ୍ରମାଣ ଶ୍ରୀ ଜେ.ସି. କେରଙ୍କର ଖଣ୍ଡେ ପୁସ୍ତକରେ ଦେଖିବାକୁ ମିଳେ - "Those books inspired the young and impressionable mind with love of liberty and patriotism, hatred of foreign domination and showed the way to resist it." (ଏହି ପୁସ୍ତକଗୁଡ଼ିକ ସମ୍ବେଦନଶୀଳ ଯୁବମାନସରେ ସ୍ୱାଧୀନତା, ଦେଶାତ୍ମବୋଧ, ବିଦେଶୀ ଶାସକମାନଙ୍କ ପ୍ରତି ଘୃଣାଭାବ ସୃଷ୍ଟି କରିଥିଲା ଏବଂ ସେଥିପାଇଁ ଉପାୟ ମଧ୍ୟ ବତାଇଦେଲା ।)

ଐତିହାସିକ ଡକ୍ଟର ରମେଶ ଚନ୍ଦ୍ର ମଜୁମଦାରଙ୍କ ଭାଷାରେ, ''ସଶସ୍ତ୍ର ବିପ୍ଳବୀମାନଙ୍କର ଦୁଇଟି ଉଦ୍ଦେଶ୍ୟ ଥିଲା । ଭାରତୀୟମାନଙ୍କୁ ଆଳସ୍ୟ ଓ ଉଦାସୀନତାର ଅନନ୍ତ ଗର୍ଭରୁ ଉଠାଇ ସେମାନଙ୍କ ଭିତରେ ବୈପ୍ଳବିକ ପ୍ରେରଣା ଜାଗ୍ରତ କରାଇବା ହେଉଛି ପ୍ରଥମ ଉଦ୍ଦେଶ୍ୟ ଏବଂ ଦ୍ୱିତୀୟ ଉଦ୍ଦେଶ୍ୟ ହେଲା ପ୍ରଚଳିତ ସରକାରୀ କଳକୁ ଯେତେଦୂର ସମ୍ଭବ ଅଚଳକରିଦେବା ଏବଂ ଇଂରେଜ ଶାସନ ବିରୋଧରେ ଭାରତୀୟମାନଙ୍କ ଅସନ୍ତୋଷକୁ ବାରମ୍ବାର ସ୍ମରଣକରାଇଦେବା ।''

ଏପରିକି ତାରାଚାନ୍ଦଙ୍କ ଭଳି ସରକାରୀ ବରାଦୀ ଐତିହାସିକ, ଯାହାଙ୍କର ବହୁ ତଥ୍ୟସମ୍ବଳିତ ଇତିହାସକୁ ଭାରତର ସ୍ୱାଧୀନତା ସଂଗ୍ରାମ ସମ୍ବନ୍ଧରେ ଏକ ପ୍ରାମାଣିକ ଇତିହାସ ବୋଲି ମନେକରାଯାଉଅଛି ଏବଂ ଯେଉଁଥିରେ ମୂଳରୁ ଶେଷଯାଏ 'ଅହିଂସ ଆନ୍ଦୋଳନ'କୁ ଅନାବଶ୍ୟକ ଉଚ୍ଚସ୍ଥାନ ଦିଆଯାଇ 'ସଶସ୍ତ୍ର ବିପ୍ଳବ'କୁ ଜାଣିଶୁଣି ଗୌଣସ୍ଥାନ ଦିଆଯାଇଛି, ସେ ମଧ୍ୟ ସମ୍ଭବତଃ ଅଜ୍ଞାତରେ ସ୍ୱୀକାର କରିଛନ୍ତି – "The growth of terrorist activity was deplorable but in the circumstances almost inevitable... Their exploits spread hatred of British Rule and stiffened the will to be free". ସଶସ୍ତ୍ର ବିପ୍ଳବୀର ଅପୂର୍ବ ଆତ୍ମତ୍ୟାଗ ଫଳରେ ଲକ୍ଷ ଲକ୍ଷ ଭାରତୀୟ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇଅଛନ୍ତି ଏବଂ ଅସୀମ ଦୁଃଖ ଓ ଚରମ ତ୍ୟାଗ ସ୍ୱୀକାର କରିବାର ପ୍ରେରଣା ପାଇଅଛନ୍ତି ଏବଂ ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତମାନ ସୃଷ୍ଟିହୋଇଛି ବଙ୍ଗ-ବିଚ୍ଛେଦ ବିରୋଧୀ ଆନ୍ଦୋଳନ ସମୟରେ । ତାହା ହୋଇ ନ ଥିଲେ ୧୯୨୦ ମସିହାର ଅସହଯୋଗ ଆନ୍ଦୋଳନ ବେଳେ ଲକ୍ଷ ଲକ୍ଷ ଭାରତୀୟ ଗାନ୍ଧିଜୀଙ୍କ ପଛରେ ଛିଡ଼ା ହୋଇ ନ ଥାନ୍ତେ । "Unless this

(Revolutionary) background were prepared; thousands would not have rallied round Gandhi on 1920, when he had just begun his political career. In fact some of the exterrorists were his most energetic lieutenants." (1) (ଏହି ବୈପ୍ଳବିକ ପୃଷ୍ଠଭୂମି ଆଗରୁ ପ୍ରସ୍ତୁତ ହୋଇ ନ ଥିଲେ ୧୯୨୦ରେ ଗାନ୍ଧିଜୀଙ୍କ ପଛରେ ଏଭଳି ହଜାର ହଜାର ଲୋକ ଏକତ୍ରିତ ହୋଇନଥାନ୍ତେ । ଗାନ୍ଧିଜୀ ସେତେବେଳେ ରାଜନୀତିରେ ନୂତନ ଆଗନ୍ତୁକ । ବାସ୍ତବରେ ଦେଖିବାକୁ ଗଲେ କେତେକ ଉଗ୍ରପନ୍ଥୀହିଁ ଗାନ୍ଧିଜୀଙ୍କ ନିଷ୍ଠାବାନ୍ ଅନୁଗାମୀମାନଙ୍କ ମଧ୍ୟରୁ ଅନ୍ୟତମ ।(୧) ଏପରିକି ୧୯୦୯ ମସିହାର ମର୍ଲେମିଣ୍ଟୋ ଶାସନ ସଂସ୍କାର ଓ ୧୯୧୭ର ବିଭିନ୍ନ ସଂସ୍କାରମୂଳକ ବ୍ୟବସ୍ଥା କିପରି ଏହି ଉଗ୍ରବାଦଦ୍ୱାରା ପ୍ରଭାବିତ ହୋଇଥିଲା ତାହା ନିଜେ ଲର୍ଡ଼ ମିଣ୍ଟୋ ମଧ୍ୟ ସ୍ୱୀକାର କରିଛନ୍ତି । "Lord Minto's confidential reports show how much the Government were perturbed by the underground revolutionary activities. Once he remarked that he would rather prefer an open rebellion." (2) (ଗୋପନ ସଶସ୍ତ୍ର ଆନ୍ଦୋଳନ ଫଳରେ ଇଂରେଜ ସରକାର କିଭଳି ବିବ୍ରତ ହେଉଥିଲା, ତାହା ଲର୍ଡ଼ ମିଣ୍ଟୋଙ୍କର ଗୋପନୀୟ ରିପୋର୍ଟରୁ ସ୍ପଷ୍ଟ ଜଣାଯାଏ । ଥରେ ସେ ମନ୍ତବ୍ୟ ପ୍ରକାଶ କରିଥିଲେ ଯେ ସେ ବରଂ ପ୍ରକାଶ୍ୟ ବିଦ୍ରୋହକୁ ଅଧିକ ସ୍ପୃହଣୀୟ ବୋଲି ମନେକରିବେ ।)

ଭଗନୀ ନବେଦିତା ଯେ କ ସଶସ୍ତ୍ର ବପ୍ଳବ ସହ ପରୋକ୍ଷ ଭାବରେ ସଂପୃକ୍ତ ଥିଲେ ସେ ଥରେ ମନ୍ତବ୍ୟ କରିଥିଲେ – "In Ireland we have a saying that power has always been wrested from the Government and paid for by a handful of men. But Ireland is proud of its heroes. Where are the heroes produced by your generation ?" (3) (ଆମ ଆର୍ୟଲାଣ୍ଡରେ କୁହାଯାଏ ଯେ ସରକାର ହାତରୁ କ୍ଷମତା ବଳପୂର୍ବକ ଛଡ଼ାଇଅଣାଯାଏ ଏବଂ ମୁଷ୍ଟିମେୟ ବିପ୍ଳବୀଙ୍କୁ ତାହାର ମୂଲ୍ୟ ଦେବାକୁ ପଡ଼େ । କିନ୍ତୁ ଆର୍ୟଲାଣ୍ଡ ତା'ର ବୀରମାନଙ୍କ ପାଇଁ ଗର୍ବ କରେ । ତୁମ ଦେଶରେ ବର୍ତ୍ତମାନ ସେଭଳି କେତେଜଣ ବୀର ଜନ୍ମହୋଇଛନ୍ତି ?)

'ଭାରତର ସଶସ୍ତ୍ର ବିପ୍ଳବ'ର ଲେଖକ ବିପ୍ଳବୀ ଭୂପେନ୍ଦ୍ର କିଶୋର ରକ୍ଷିତ ରାୟ ଲେଖିଛନ୍ତି, ''ଅବଶ୍ୟ ଏହା ସତ୍ୟ ଯେ ସଶସ୍ତ୍ର ଓ ନିରସ୍ତ୍ର ବିପ୍ଳବର ଧାରା ପାଖାପାଖି ଚାଲିଆସିଥିଲା । ସେମାନେ ଚାଲିଆସିଥିଲେ ଅଭ୍ରାନ୍ତ ଗତିରେ, କେବେ କେବେ ପରସ୍ପର ପରିପୂରକ ଭାବେ । କଂଗ୍ରେସ କ୍ରମେ ଆବେଦନ ନିବେଦନର ବିତଣ୍ଡାରୁ ନିରସ୍ତ୍ର ଆଇନ ଅମାନ୍ୟ ଆନ୍ଦୋଳନକୁ ଅତିକ୍ରମକରି 'କ୍ୱିଟ୍ ଇଣ୍ଡିଆ' ସଂଗ୍ରାମରେ ଝାମ୍ପ ଦେବାକୁ ବାଧ୍ୟ ହେଲା । ଏହି ବିପ୍ଳବୀ ସଂସ୍ଥା ଓ ଚାପେକାର ଭାଇମାନଙ୍କର ଯେଉଁ ବହ୍ନିଶିଖାରେ କ୍ଷୁଦିରାମଠାରୁ ଉଦାମ ସିଂ ପର୍ଯ୍ୟନ୍ତ ସହିଦ କୁଳକୁ ଗୋଟିଏ ଗୋଟିଏ

1. Tarachand– The History of Freedom Movement in India Vol- III Pg- 336.
2. R.C. Mazumdar– Three Phases of India's Struggle for Freedom
3. Nivedita- The Dedicated- Page- 226.

ଅଗ୍ନିଶିଖାରେ ପରିଣତ କରିଥିଲା, ତା'ର ସ୍ପର୍ଶରେ ଅଗ୍ନିରଂଗରେ ରଂଗିନ୍ କରିଦେଲା ବର୍ମାର ସୀମାନ୍ତ । ଦକ୍ଷିଣ-ପୂର୍ବ ଏସିଆର ଭୂମି ପର୍ବତ, ଯତୀନ୍ଦ୍ର ନାଥ - ରାସବିହାରୀ - ସୂର୍ଯ୍ୟସେନଙ୍କର ସଶସ୍ତ୍ର ରାଇଜିଂର ଦୁର୍ଜୟ ପ୍ରତିଜ୍ଞାରୁ ରାଇଟର୍ସ ବିଲ୍‌ଡ଼ିଂର୍ ଅଳିନ୍ଦ ଯୁଦ୍ଧ ଓ 'ବ୍ଲାକ୍ ଆଣ୍ଡ ଟ୍ୟାନ୍' ନୀତିର ଜନକ ବଂଗଳାର ଲାଟ ଆଣ୍ଡରସନ୍ ଉପରେ ଆକ୍ରମଣ ତାର ପଟ୍ଟଭୂମି ପର୍ଯ୍ୟନ୍ତ ଯେଉଁ ଦୁର୍ଜୟ ବିପ୍ଳବ ଜିଜ୍ଞାସା ବିରାଜିତ ଥିଲା, ତା'ର ସଂପୂର୍ଣ୍ଣ ରୂପାୟନ ହୋଇଥିଲା ଶ୍ରେଷ୍ଠ ବିପ୍ଳବୀ ନେତାଜୀଙ୍କର ଆଜାଦ୍ ହିନ୍ଦ୍ ଫୌଜର ସଶସ୍ତ୍ର ଅଭିଯାନରେ, ଆଜାଦ୍ ହିନ୍ଦ୍ ହୁକୁମତ୍‌ର ବୈପ୍ଳବିକ ସଂଗଠନରେ ।''

X X X X

ବଂଗଳାର ଏହି ନବଜାଗରଣ ପଛରେ ବିପିନ୍ ଚନ୍ଦ୍ର ପାଲ୍, ଭୂପେନ୍ଦ୍ର ଦତ୍ତ, ବାରୀନ ଘୋଷ ଓ ଅରବିନ୍ଦଙ୍କ ଅବଦାନ ଚିରସ୍ମରଣୀୟ । 'ଯୁଗାନ୍ତର', 'ସନ୍ଧ୍ୟା' ଏବଂ 'ବନ୍ଦେ ମାତରମ୍' ପତ୍ରିକାରେ ଜ୍ୱାଳାମୟୀ ଅଗ୍ରଲେଖାର ପ୍ରଭାବ ମୁକ୍ତିସଂଗ୍ରାମ ଉପରେ କେତେ ସୁଦୂରପ୍ରସାରୀ ହୋଇଥିଲା ତା'ର ନିର୍ଭୁଲ ମୂଲ୍ୟାୟନ ଏବେ ବି କରିବା ଅସମ୍ଭବ । ତେଣେ 'କେଶରୀ' ଓ 'ମରହଟ୍ଟା'ରେ ତିଲକଙ୍କ ଅଗ୍ନିବର୍ଷୀ ଲେଖାମାନ ଖାଲି ପଶ୍ଚିମ ଭାରତରେ ନୁହେଁ ବଂଗଦେଶରେ ମଧ୍ୟ ବିଶେଷ ପ୍ରଭାବ ବିସ୍ତାର କରିଥିଲା ଏବଂ ଏହି ରଚନାଗୁଡ଼ିକ ପାଇଁ ବିପିନବାବୁ, ଅରବିନ୍ଦ ଓ ତିଲକଜୀଙ୍କୁ ବହୁବାର କାରାଦଣ୍ଡ ଭୋଗ କରିବାକୁ ପଡ଼ିଛି । ଅରବିନ୍ଦ ତାଙ୍କ କାର୍ଯ୍ୟକଳାପ କେବଳ ପତ୍ରପତ୍ରିକାରେ ସୀମାବଦ୍ଧ ରଖି ନ ଥିଲେ, ସେ ସଶସ୍ତ୍ର ବିପ୍ଳବରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିଥିଲେ । ସେହି ରୋମାଞ୍ଚକର ଅଧ୍ୟାୟର ଉଲ୍ଲେଖ ଏହି ଗ୍ରନ୍ଥରେ ବିସ୍ତୃତ ଭାବରେ କରାଯାଇଛି । ଏହା ଉଲ୍ଲେଖ କରିବା ସମ୍ଭବତଃ ନିଷ୍ପ୍ରୟୋଜନ ଯେ ମହାରାଷ୍ଟ୍ରରୁ ଆରମ୍ଭହୋଇଥିବା ସଶସ୍ତ୍ର ବିପ୍ଳବର ଅଗ୍ନିଶିଖା ବଂଗବିଚ୍ଛେଦ ବିରୋଧୀ ଆନ୍ଦୋଳନରେହିଁ ବ୍ୟାପକହେଲା । ନିଜେ ଗାନ୍ଧିଜୀ 'ହିନ୍ଦ୍ ସ୍ୱରାଜ୍ୟ'ରେ ଲେଖିଛନ୍ତି – "After the partition people saw that, petitions must be backed by force. The real awakening of India took place after the partition of Bengal. That day must be considered to be the day of partition of the British Empire. The demand for abrogation of the partition tantamounts to a demand for Home Rule. As the time passes the nation is being forged. Hither to we have considered that to redress grievance, we must approach the throne and if we get no redress we must sit still, except that we may still petition. After the partition people saw that they must be capable of suffering. This new spirit must be considered to be the chief result of partition.(1) (ବଙ୍ଗ ବିଚ୍ଛେଦ ପରେ ଲୋକେ ଦେଖିଲେ ଯେ ନିବେଦନ ପଛରେ ଶକ୍ତିର ପ୍ରୟୋଗ କରିବା ବାଞ୍ଛନୀୟ । ବଙ୍ଗ ବିଚ୍ଛେଦ ପରେହିଁ ଭାରତରେ ବାସ୍ତବ

1. Mahatma Gandhi– Hind Swaraj.

ଜାଗରଣ ସୃଷ୍ଟିହେଲା । ସେଦିନ ଇଂରେଜ ସାମ୍ରାଜ୍ୟ ମଧ୍ୟ ଖଣ୍ଡିତ ହେଲା ବୋଲି ବୁଝିବାକୁ ହେବ । ବିଚ୍ଛେଦ ପ୍ରସ୍ତାବକୁ ପ୍ରତ୍ୟାହାର କରିବାର ଦାବି- 'ହୋମ୍ ରୁଲ୍' ଦାବି ସହ ସମାନ । ସମୟ ବିତିବା ସଙ୍ଗେ ସଙ୍ଗେ ଦେଶ ଅଧିକରୁ ଅଧିକ ଜାଗ୍ରତ ହେଲା । ସେପର୍ଯ୍ୟନ୍ତ ଆମେ ଭାବୁଥିଲୁ କୌଣସି ଦୁଃଖର ନିରାକରଣ ପାଇଁ ଦରଖାସ୍ତ କରିବାକୁ ହେବ । ତଦ୍ୱାରା ଦୁଃଖର ନିରାକରଣ ନ ହେଲେ ଚୁପ୍ କରି ବସିବା ନଚେତ୍ ପୁଣି ଦରଖାସ୍ତ କରିବା । ବଙ୍ଗ ବିଚ୍ଛେଦ ପରେ ଲୋକେ ଅନୁଭବ କଲେ ଯେ ସେମାନଙ୍କୁ ଅସୀମ ଦୁଃଖ ବରଣ କରିବାକୁ ପଡ଼ିବ । ଏହା ବଙ୍ଗ ବିଚ୍ଛେଦ ଆନ୍ଦୋଳନର ମୁଖ୍ୟ ଲାଭ) ।

ଭାରତର ସଶସ୍ତ୍ର ବିପ୍ଳବୀମାନେହିଁ ଗାନ୍ଧିଜୀଙ୍କ ସେହି 'ଆଶା'କୁ ଅକ୍ଷରେ ଅକ୍ଷରେ ପାଳନ କରିଅଛନ୍ତି । ଗାନ୍ଧିଜୀ ତାହା ସ୍ୱୀକାର କରିଥା'ନ୍ତୁ ବା ନ କରିଥା'ନ୍ତୁ, ଆମର ସ୍ୱାଧୀନତା ସଂଗ୍ରାମର ଇତିହାସରେ ତାହା ଚିର ଅମ୍ଳାନ ଓ ଚିର ଭାସ୍ୱର ହୋଇ ରହିଛି ଓ ରହିଥିବ ।

''ସନ୍ତ୍ରାସବାଦୀମାନେ ଆମର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏକ ବର୍ଣ୍ଣାଢ଼୍ୟ ଓ ଉଦ୍ଦୀପନାମୟ ଅଧ୍ୟାୟ ସଂଯୁକ୍ତ କରିଥିଲେ । ସେମାନଙ୍କର ଚାରିଦଉଡ଼ିକଟା କାର୍ଯ୍ୟକଳାପ, ସାହସିକ କର୍ମଯୋଜନା, ଗମ୍ଭୀର କ୍ରିୟାଶୀଳତା ଓ ମୃତ୍ୟୁ ପ୍ରତି ନିର୍ଲିପ୍ତତା ଜାତିର ମନରେ ଚିରସ୍ମରଣୀୟ ।'' ଏପରି ମହାନ୍ ଆତ୍ମୋତ୍ସର୍ଗ କଦାପି ବ୍ୟର୍ଥ ହୋଇପାରେନା । ସେହି ସହିଦମାନଙ୍କ ସ୍ମୃତିରେ ଆଜି ବି ଦେଶ କହୁଛି, ''ସେହିମାନେହିଁ ଆମ ପୌରୁଷର ଗର୍ବ ଫେରାଇ ଆଣିଥିଲେ'' । ସେଡ଼ିସନ୍ କମିଟି ରିପୋର୍ଟରେ (ପୃ ୧୦୨) ଉଲ୍ଲେଖ ରହିଛି, ''ଏହିଭଳି ଭାବରେ ବଂଗଳା, ପଞ୍ଜାବ ଓ ମହାରାଷ୍ଟ୍ରରେ ସଶସ୍ତ୍ର ବିପ୍ଳବ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟିକରିବାରେ ତିଳକ, ଅରବିନ୍ଦ ପ୍ରଭୃତି ଜନନେତା ଓ ବ୍ରହ୍ମବାଂଧବ, ଭୂପେନ୍ଦ୍ର ଦତ୍ତ, ପାରଂଜପେ ଓ ବିପିନ ପାଲ ପ୍ରମୁଖ ସାମ୍ବାଦିକ ଜନନାୟକମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।''ମାତ୍ର ୨-୩ ବର୍ଷ ଭିତରେ ଭାରତର ଜାଗ୍ରତ ଯୁବଶକ୍ତି ସାମ୍ବିଧାନିକ ଓ ଶାନ୍ତିପୂର୍ଣ୍ଣ ଆନ୍ଦୋଳନର ପନ୍ଥା ପରିହାରକରି ସଶସ୍ତ୍ର ଯୁଦ୍ଧରେ ଝାସ ଦେବାକୁ ପ୍ରସ୍ତୁତ ହୋଇଗଲେ । ବୋମା-ବନ୍ଧୁକ ଡିନାମାଇଟ୍ ଭଳି ବିସ୍ଫୋରକ ମାରଣାସ୍ତ୍ର ସାହାଯ୍ୟରେ ଏ ଯେଉଁ ନୂତନ ରାଜନୈତିକ ମତବାଦ ସୃଷ୍ଟିହେଲା ତାକୁ 'ବୋମାତତ୍ତ୍ୱ' ବା Philosophy of the Bomb କହିବା ଯୁକ୍ତିଯୁକ୍ତ ହେବ ।

ଏ ସମ୍ପର୍କରେ 'କେଶରୀ' ଯଥାର୍ଥରେ ଲେଖିଥିଲେ — Neither the Jubilee murder of 1897 nor the reported deportation of Lala Lajpat Rai nor the reported tampering with the Sikh regiments had produced so much commotion and English public opinion seems inclined to regard birth of the bomb in India as the most extra-ordinary event since the Mutiny of 1857." (୧୮୯୭ର ଜୁବୁଲି ହତ୍ୟାକାଣ୍ଡ କିମ୍ବା ଲାଲା ଲଜପତ

ରାୟଙ୍କର ନିର୍ବାସନ କିମ୍ବା ଶିଖ୍ ରେଜିମେଣ୍ଟ ଉପରେ ହସ୍ତକ୍ଷେପ ମଧ୍ୟ ଏଭଳି ଉତ୍ତେଜନା ସୃଷ୍ଟି କରି ନ ଥିଲା । ଇଂଲଣ୍ଡବାସୀ ବର୍ତ୍ତମାନ ବିଶ୍ୱାସ କରିବାକୁ ଆରମ୍ଭ କରିଅଛନ୍ତି ଯେ 'ବୋମାର ଜନ୍ମ' ୧୯୫୭ର 'ମହାବିଦ୍ରୋହ' ପରେ ଏକ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା ।''

## ଲେଫ୍ଟ-ରାଇଟ୍, ଲେଫଟ୍-ରାଇଟ୍ :

ବଙ୍ଗ ବିଚ୍ଛେଦ ଆନ୍ଦୋଳନକୁ ଦବେଇବାକୁ ସରକାର ଯେତେଗୁଡ଼ିଏ ପଦକ୍ଷେପ ନେଇଥିଲା ସେଗୁଡ଼ିକ ମଧ୍ୟରୁ ଗୋଟିଏ ଥିଲା ଜାତୀୟବାଦୀ ଛାତ୍ରମାନଙ୍କୁ ଜବଦ କରିବା । ଯେଉଁମାନେ 'ବନ୍ଦେ ମାତରମ୍' ବିପ୍ଳବରେ ଯୋଗଦେଲେ, ଏପରିକି 'ବନ୍ଦେ ମାତରମ୍' ସ୍ଲୋଗାନ ଦେଲେ ସେମାନଙ୍କୁ ନାନା ଭାବରେ ହଇରାଣ କରାଗଲା । ସେଭଳି ଛାତ୍ରଙ୍କର ବୃତ୍ତି କାଟିଦେବାକୁ, ସ୍କୁଲ କଲେଜରୁ ବହିଷ୍କାର କରିଦେବାକୁ ବା ବାଧ୍ୟତାମୂଳକ ସାର୍ଟିଫିକେଟ ଦେଇଦେବାକୁ ସରକାର ଏକ ନିର୍ଦ୍ଦେଶନାମା ଜାରିକରିଦେଲା । ଫଳରେ ଦେଶପ୍ରେମୀ ଛାତ୍ରଛାତ୍ରୀମାନେ ଘୋର ଅସୁବିଧାର ସମ୍ମୁଖୀନ ହେଲେ । ଏହାର ପ୍ରତିକାର କରିବାକୁ ୧୯୦୫ ମସିହା ନଭେମ୍ବର ୧୬ ତାରିଖରେ 'ନ୍ୟାସନାଲ୍ କାଉନ୍‌ସିଲ ଅଫ୍ ଏଜୁକେସନ' ସଂସ୍ଥା ଗଠିତ ହୋଇଥିଲା ଏବଂ ସେହି ସଂସ୍ଥା ପକ୍ଷରୁ ୧୯୦୬ ମସିହାରେ 'ବେଙ୍ଗଲ ନ୍ୟାସନାଲ କଲେଜ' ଉଦ୍‌ଘାଟିତ ହୋଇଥିଲା । ଏହି ଅନୁଷ୍ଠାନରେ ତତ୍‌କାଳୀନ ବଂଗଳାର ବହୁ ବିଶିଷ୍ଟ ଶିକ୍ଷାବିତ୍ ଅଧ୍ୟାପକ ଓ ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ଏଥିରେ ଶିକ୍ଷାଲାଭ କରିଥିବା ବହୁ ଜାତୀୟବାଦୀ ଛାତ୍ର ରାଜନୀତି ବିଶେଷତଃ ସଶସ୍ତ୍ର ବିପ୍ଳବରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବାର ଦେଖାଯାଏ ।

ଏ ତ ଗଲା ଶିକ୍ଷାକ୍ଷେତ୍ର କଥା, ରାଜନୀତି କ୍ଷେତ୍ରରେ ମଧ୍ୟ ଉଗ୍ରମତବାଦର ବହୁ ସଂଗଠନ ଗଢ଼ିଉଠିଲା । ଜାତୀୟତା ବିରୋଧୀ ସରକାରୀ ସର୍କୁଲାର ବିରୋଧରେ ରମାକାନ୍ତ ରାୟ ନାମକ ଜନୈକ ଦେଶପ୍ରେମୀ ଇଂଜିନିୟର୍ ଗଠନ କଲେ 'ଆଣ୍ଟି-ସର୍କୁଲାର ସୋସାଇଟି' । ବରିସାଲ ସମ୍ମିଳନୀରେ ମୁଖ୍ୟତଃ ସ୍ୱେଚ୍ଛାସେବକ କାର୍ଯ୍ୟ ତୁଲାଇବାକୁ ଏହି ସୋସାଇଟି ଗଠିତ ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ 'ବ୍ରତୀ ସମିତି' ଓ 'ବନ୍ଦେ ମାତରମ୍ ସଂପ୍ରଦାୟ' ନାମକ ଦୁଇଟି ଉଗ୍ରବାଦୀ ସଂଗଠନ ଏଥିରୁ ସୃଷ୍ଟି ହୋଇଥିଲା । ବରିସାଲ ସମ୍ମିଳନୀରେ ହୋଇଥିବା ପୁଲିସ ଅତ୍ୟାଚାର 'ସୋସାଇଟି'ର ସ୍ୱେଚ୍ଛାସେବକମାନଙ୍କୁ ଅଧିକ ଦୃଢ଼ପ୍ରତିଜ୍ଞ ଏବଂ ସଂଗ୍ରାମୀ କରିଦେଇ ଥିଲା ।

ବରିସାଲ ସମ୍ମିଳନୀରୁ ସ୍ୱଦେଶୀ ବିପ୍ଳବୀମାନଙ୍କୁ ଏକ ଶିକ୍ଷା ମିଳିଲା ଯେ ଏଣିକି ସ୍ୱେଚ୍ଛାସେବକମାନଙ୍କୁ ଶୃଙ୍ଖଳିତ ଓ ବିଧିବଦ୍ଧ ଭାବରେ ଶାରୀରିକ ବ୍ୟାୟାମ, କୁସ୍ତିକସରତ ଟ୍ରେନିଂ ଦେବାକୁ ପଡ଼ିବ । ତାହାହିଁ ହେଲା । କେବଳ କୁସ୍ତିକସରତ ନୁହେଁ

ଡ୍ରିଲ ଓ ଅସ୍ତ୍ର ଚାଳନା ମଧ୍ୟ ଏହି ବିପ୍ଳବୀ ଅନୁଷ୍ଠାନଗୁଡ଼ିକର ମୁଖ୍ୟ କାର୍ଯ୍ୟକ୍ରମ ହେଲା । 'ଇଂଲିସମ୍ୟାନ' ଲେଖିଥିଲେ – 'ଏହାର ଯଥେଷ୍ଟ ପ୍ରମାଣ ମିଳିଲାଣି ଯେ ଏହି ଆଖଡ଼ା [Akras] ଗୁଡ଼ିକରେ 'ବନ୍ଦେ ମାତରମ୍' ଓ 'ବ୍ରତୀ' ସ୍ୱେଚ୍ଛାସେବକମାନଙ୍କୁ ଅସ୍ତ୍ରଶସ୍ତ୍ର ବିଶେଷତଃ ଲାଠି, ଛୁରି, ତରବାରି ଓ ଗୁପ୍ତି ଚାଳନା ଶିକ୍ଷାଦିଆଯାଉଅଛି । ଗୁପ୍ତି ଆଜିକାଲି ଚାରିଆଡ଼େ ପ୍ରକାଶ୍ୟ ଭାବରେ ତିଆରିହେଉଅଛି ଏବଂ ବିକ୍ରୟ ହେଉଅଛି ।''

୧୯୦୬ ମସିହାବେଳକୁ ସଶସ୍ତ୍ର ବିପ୍ଳବ ପାଇଁ ବ୍ୟାପକ ପ୍ରସ୍ତୁତି ଆରମ୍ଭ ହୋଇଯାଇଥିଲା । ଆତ୍ମୋନ୍ନତି ଓ ଅନୁଶୀଳନ ସମିତି ପ୍ରଭୃତି ଅନୁଷ୍ଠାନଗୁଡ଼ିକ ପକ୍ଷରୁ ବଂଗଳାରେ ଅସଂଖ୍ୟ ଶାଖା ପ୍ରତିଷ୍ଠିତ ହୋଇଗଲା । ପ୍ରଥମାବସ୍ଥାରେ ଅସ୍ତ୍ରଶସ୍ତ୍ର ସଂଗ୍ରହ ଏକ କଠିନ କାର୍ଯ୍ୟବୋଲି ମନେହେଉଥିଲେ ସୁଦ୍ଧା କ୍ରମେ ସେହି ସମସ୍ୟାର ସମାଧାନ ପାଇଁ ବିବିଧ ଉପାୟ ଅବଲମ୍ବନ କରାଗଲା । ସେନାବାହିନୀ, ଚୋରାବେପାରୀ ଏବଂ ଘରୋଇ ବନ୍ଧୁକ ମାଲିକଙ୍କଠାରୁ ଯେତିକି ଅସ୍ତ୍ରଶସ୍ତ୍ର ମିଳୁଥିଲା ତାହା ଯଥେଷ୍ଟ ନ ହେବାରୁ ଏହା ଡାକରେ ମଗାଇବାର ବ୍ୟବସ୍ଥାହେଲା । କଲିକତା ନିକଟସ୍ଥ ଚନ୍ଦନନଗର ଏକ ଫରାସୀ ଉପନିବେଶ ଥିବାରୁ ସେଠାରେ ବନ୍ଧୁକ ମିଳିବା ଅପେକ୍ଷାକୃତ ସହଜ ଥିଲା । କାରଣ ବ୍ରିଟିଶ୍-ଭାରତ ଭଳି ସେଠାରେ ବନ୍ଧୁକ ଉପରେ କଠୋର କଟକଣା ନ ଥିଲା । ଚନ୍ଦନନଗରରେ ରାସ୍ତାରେ ବନ୍ଧୁକ ନେବା ଆଣିବାରେ ମଧ ବିଶେଷ କିଛି ବାଧା-ନିଷେଧ ନ ଥିଲା । କେବଳ ନିୟମ ଥିଲା ଯେ ଯେକେହି ବାହାରକୁ ନ ଦେଖାଇ ବନ୍ଧୁକ ନେବା ଆଣିବା କରିପାରିବ । ଭାରତୀୟ ବିପ୍ଳବୀ ଏହାର ପୂର୍ଣ୍ଣ ସୁଯୋଗ ନେଇଥିଲେ ଏବଂ ଫ୍ରାନ୍ସରୁ ଡାକରେ ବନ୍ଧୁକ ମଗାଇବାକୁ ଆରମ୍ଭକରିଥିଲେ । ଗୋଟିଏ ହିସାବରୁ ଜଣାଯାଏ ଯେ ୧୯୦୬ ମସିହାରେ ୫-୬ଟି ବନ୍ଧୁକ ଡାକଯୋଗେ ମଗାଯାଇଥିବା ସ୍ଥଳେ ତା'ପର ବର୍ଷ ପ୍ରାୟ ୩୪ (ଚଉତ୍ରିଶ)ଟି ବନ୍ଧୁକ ପାର୍ଶଲ ଆସିଥିଲା । ଏହିସବୁ ପାର୍ଶଲଗୁଡ଼ିକ ମୁଖ୍ୟତଃ ଫ୍ରାନ୍ସର ସେଣ୍ଟ୍ ଏଣ୍ଟିନାରେ ଥିବା ସରକାରୀ ବଂଧୁକ କାରଖାନାରୁ ଆସିଥିଲା ।

ସଶସ୍ତ୍ର ବିପ୍ଳବର ସଂଗଠନ ମୁଖ୍ୟତଃ ଗୋପନୀୟ ହୋଇଥିବାରୁ ଏଥିରେ ଯେଉଁମାନେ ଯୋଗଦେଉଥିଲେ ସେମାନଙ୍କୁ ବହୁ କଠିନ ଅନୁଶାସନ ମାନି ଚଳିବାକୁ ହେଉଥିଲା । ସତର୍କତା, ଗୋପନୀୟତା, ଅନନ୍ୟନିଷ୍ଠା, ନେତା ପ୍ରତି ଅବିଚଳ ଆନୁଗତ୍ୟ, ନିୟମାନୁବର୍ତ୍ତିତା, ସାଧୁତା, ଗଭୀର ଦେଶପ୍ରେମ, ଅସାଧାରଣ କଷ୍ଟସହିଷ୍ଣୁତା, ମୃତ୍ୟୁପ୍ରତି ଚରମ ଅବଜ୍ଞା ପ୍ରଦର୍ଶନ ପ୍ରଭୃତି ଅତିମାନବୀୟ ଗୁଣବିଶିଷ୍ଟ ହୋଇ ନ ଥିଲେ କେହି ଏହି ଅନୁଷ୍ଠାନରେ ପ୍ରବେଶ କରୁ ନ ଥିଲେ । କିନ୍ତୁ ସେତେବେଳେ ଦେଶକୁ ''ଯେକୌଣସିମତେ ସ୍ୱାଧୀନ କରିବାର ଅଭିଳାଷ ଏଭଳି ଦୁର୍ବାର ହୋଇ ଉଠୁଥିଲା ଯେ ଏଭଳି ସବୁ ଅନୁଷ୍ଠାନରେ ଯୋଗଦେବା ପାଇଁ ଯୁବକମାନଙ୍କର ଅଭାବ ନ ଥିଲା । ଏହି ପଥ ଯେ ଘୋର କଣ୍ଟକାକୀର୍ଣ୍ଣ ଏବଂ ଆଇନର ସର୍ବୋଚ୍ଚ ଦଣ୍ଡ ଓ

ଶାସନକଳର ସବୁଠାରୁ ଭୟାବହ ଅତ୍ୟାଚାର ଯେ ସଶସ୍ତ୍ର ବିପ୍ଳବର ଅବଶ୍ୟମ୍ଭାବୀ ପରିଣତି ଦିବାଲୋକ ଭଳି ଏହା ସ୍ପଷ୍ଟ ଥିଲା ।''

ଅନୁଷ୍ଠାନରେ ପ୍ରବେଶ କରିବା ମାତ୍ରେ ପ୍ରତ୍ୟେକ କର୍ମୀଙ୍କୁ ନାନା ପରୀକ୍ଷା ନିରୀକ୍ଷା ଭିତରେ ଗତିକରିବାକୁ ପଡୁଥିଲା । ପ୍ରତ୍ୟେକଙ୍କୁ ନିଜନିଜର ରକ୍ତରେ ସ୍ୱାକ୍ଷର କରି ଶପଥ ନେବାକୁ ହେଉଥିଲା । ଏହି ଶପଥ ଗ୍ରହଣ ବ୍ୟବସ୍ଥା ରୁଷୀୟ ବିପ୍ଳବୀମାନଙ୍କ ବ୍ୟବସ୍ଥା ସହ ତୁଳନୀୟ ହୋଇପାରେ । ଏହା ଫଳରେ ବିପ୍ଳବୀମାନଙ୍କ ଭିତରେ ନିଷ୍ଠା ଓ ଦୃଢ଼ପ୍ରତିଜ୍ଞା ସୃଷ୍ଟିହେଉଥିଲା ଏବଂ ସରକାରୀ କଳର ଆଖିଆଗରେ ବହୁ ରୋମାଞ୍ଚକର ଯୋଜନା କାର୍ଯ୍ୟକାରୀ ହେଉଥିଲେ ସୁଦ୍ଧା ସେମାନେ ପୂର୍ବରୁ ତାହାର ସାମାନ୍ୟ ସୁରାକ୍ ମଧ୍ୟ ପାଉନଥିଲେ ।

ସମିତିର ଶାଖା ଓ ସଭ୍ୟ ଏବଂ କର୍ମକ୍ଷେତ୍ର ବୃଦ୍ଧି ହେବା ଫଳରେ ସେଗୁଡ଼ିକ ପରିଦର୍ଶନ ଓ ପରିଚାଳନା ପାଇଁ ମଧ୍ୟ ବ୍ୟାପକ ବ୍ୟବସ୍ଥା କରିବାକୁ ପଡ଼ିଲା । ସମିତିରେ ପ୍ରବେଶ କରିବା ବେଳେ ଏକ ପ୍ରାଥମିକ ଶପଥ ଏବଂ କିଛିଦିନ ସଫଳତା ଓ ଦକ୍ଷତା ସହକାରେ କାର୍ଯ୍ୟ ସଂପାଦନ କଲେ ଏକ ଚୂଡ଼ାନ୍ତ ଶପଥ ଗ୍ରହଣ କରିବାର ବ୍ୟବସ୍ଥା ଥିଲା । ସର୍ବୋଚ୍ଚ ନେତୃମଣ୍ଡଳୀଙ୍କ ପାଇଁ ସ୍ୱତନ୍ତ୍ର ଶପଥ ନିୟମ ଥିଲା ।

ପ୍ରାଥମିକ ଶପଥର ମୁଖ୍ୟ ବିଷୟ ଥିଲା – 'ସମିତି'ରୁ ଅନ୍ତର ନ ହେବା, ଏହାର ସ୍ୱାର୍ଥ ପ୍ରତି ଆନୁଗତ୍ୟ ପ୍ରଦର୍ଶନ, ଆଚରଣରେ କଠୋର ଆତ୍ମସଂଯମ ରକ୍ଷା, ବିନା ପ୍ରଶ୍ନରେ ଆଦେଶ ପାଳନ, କୁସ୍ତୀ କସରତରେ ଦକ୍ଷତା ଅର୍ଜନ, ବାହାରଲୋକଙ୍କ ନିକଟରୁ 'ସମିତି'ର ଗୋପନୀୟତା ରକ୍ଷା, ଆତ୍ମରକ୍ଷାରେ ଦକ୍ଷତା ଅର୍ଜନ ଏବଂ ଦେଶ ଓ ସାରା ବିଶ୍ୱର ମଙ୍ଗଳକାମନା । 'ଚୂଡ଼ାନ୍ତ ଶପଥ' ମୋଟାମୋଟି ଏହି ପ୍ରକାରରେ ନିଆଯାଉଥିଲା- ମୁଁ ଶପଥ କରୁଅଛି ଯେ ମୁଁ ''ସମିତିର ସଂବାଦ ବାହାରର କୈଣସି ଲୋକକୁ ଜଣାଇବିନାହିଁ । ଅନ୍ୟଥା ଏ ସଂପର୍କରେ କାହା ସହ ଆଲୋଚନା କରିବି ନାହିଁ । ପରିଚାଳକଙ୍କ ନିର୍ଦ୍ଦେଶକୁ ବିନା ପ୍ରଶ୍ନରେ ପାଳନକରିବି । ପରିଚାଳକ ଯେଉଁଠାରେ ଥା'ନ୍ତୁ ନା କାହିଁକି ତାଙ୍କୁ ମୋ'ର ରହଣି ସ୍ଥାନ ସଂପର୍କରେ ଅବହିତ କରିବି । ସମିତି ବିରୋଧରେ କେଉଁଠାରେ କୌଣସି ଷଡ଼ଯନ୍ତ୍ରର ସଂବାଦ ପାଇଲେ ସଙ୍ଗେ ସଙ୍ଗେ ତାଙ୍କୁ ଜଣାଇବି ଏବଂ ତା'ର ପ୍ରତିକାର କରିବି । ପରିଚାଳକ ଯେକୌଣସି କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେବେ ତାହା ତତ୍‌କ୍ଷଣାତ୍ ପାଳନକରିବି ଏବଂ କୌଣସି କାର୍ଯ୍ୟକୁ ଅସମ୍ମାନଜନକ ବୋଲି ମନେକରିବିନାହିଁ । ଚରମ ଆତ୍ମତ୍ୟାଗ ପାଇଁ ନିଜକୁ ସର୍ବଦା ପ୍ରସ୍ତୁତ ରଖିବି ।''

ସର୍ବୋଚ୍ଚ ନେତୃମଣ୍ଡଳୀ ଶପଥ କରୁଥିଲେ ''ଲକ୍ଷ୍ୟସ୍ଥଳରେ ନ ପହଞ୍ଚିବା ପର୍ଯ୍ୟନ୍ତ ମୁଁ 'ସମିତି' ସହ ସଂପୃକ୍ତ ରହିବି, ସମସ୍ତ ପ୍ରକାର ପାରିବାରିକ ବଂଧନରୁ ମୁକ୍ତ ରହିବି । ଗୃହ ଓ ସଂସାରବଂଧନ ଆଜିଠାରୁ ଛିନ୍ନକଲି । ସେନାପତିଙ୍କର ନିର୍ଦ୍ଦେଶ – ତାହା ଯେତେ

ବିପଦପୂର୍ଣ୍ଣ ଏବଂ କଠିନ ହେଲେ ସୁଦ୍ଧା ଅମ୍ଳାନ ବଦନରେ ପାଳନକରିବି ଏବଂ ସମସ୍ତ ପ୍ରକାର ବଦଭ୍ୟାସରୁ ମୁକ୍ତରହିବି ।''

ନେତାମାନେ.ଚୂଡ଼ାନ୍ତ ଶପଥ ନେବାବେଳେ କହୁଥିଲେ, ''ଦଳର ଲକ୍ଷ୍ୟ ହାସଲ କରିବାକୁ ମୋ'ର ସମସ୍ତ ପାର୍ଥିବ ସଂପଦ ଏପରିକି ଜୀବନ ମଧ୍ୟ ସମର୍ପଣ କରିବି । 'ମନ୍ତ୍ର'ର ଗୋପନୀୟତା ସର୍ବଦା ରକ୍ଷାକରିବି ଏବଂ ମୋ'ର ନେତା ବା ସେନାପତି ପାଖରୁ କୌଣସି କଥା ଲୁଚାଇବି ନାହିଁ କିମ୍ବା ମିଥ୍ୟାର ପ୍ରଶ୍ରୟ ନେବିନାହିଁ । ଅନନ୍ୟନିଷ୍ଠା ସହକାରେ ମୋ'ର ଧର୍ମ ପାଳନକରିବି ଏବଂ ସର୍ବ ସମୟରେ ଏକ ଆଦର୍ଶ ଜୀବନ ଯାପନ କରିବି ।''

ଏତଦ୍‌ବ୍ୟତୀତ ବିପ୍ଳବୀମାନଙ୍କର ଏକ ଆଚରଣ ବିଧି ମଧ୍ୟ ପ୍ରସ୍ତୁତ କରାଯାଇଥିଲା ଏବଂ ତାହା କଠୋର ଭାବରେ ପାଳନ କରାଯାଉଥିଲା । ସାଧାରଣତଃ ଏହି ବିପ୍ଳବୀମାନେ ଆଜୀବନ ଅବିବାହିତ ରହୁଥିଲେ ଏବଂ କଠୋର ଆତ୍ମସଂଯମ ଏବଂ ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲେ । ନେତାର ଅଜ୍ଞାତରେ କୌଣସି ଚିଠିପତ୍ର ଲେଖିବା ଏପରିକି ନିଜର ବଂଧୁମାନଙ୍କ ସହ ମଧ ନିଷିଦ୍ଧ ଥିଲା । ସମିତିର କୌଣସି ସଭ୍ୟ କୌଣସି ଧନ ଉପାର୍ଜନ କଲେ ତାହା ତାହାର ବ୍ୟକ୍ତିଗତ ସଂପତ୍ତି ନ ହୋଇ ସମିତିର ସଂପତ୍ତିରୂପେ ପରିଗଣିତ ହେଉଥିଲା । ସଭ୍ୟମାନଙ୍କର କୌଣସି ଚାରିତ୍ରିକ ଦୁର୍ବଳତା ପରିଲକ୍ଷିତ ହେଲେ ସଙ୍ଗେ ସଙ୍ଗେ ସେ ସଂପର୍କରେ ଆଲୋଚନା କରାଯାଇ ତା'ର ସଂଶୋଧନ କରାଯାଉଥିଲା । ସମିତିରେ ବିଭିନ୍ନ ବିଭାଗ ରହିଥିଲା ଏବଂ ଦଳର ଜଣେ ଜଣେ ମୁଖ୍ୟ କର୍ମୀଙ୍କର ଦାୟିତ୍ୱରେ ରହୁଥିଲା । ବିଭାଗଗୁଡ଼ିକ ହେଲା – (୧) ସଂବାଦ ସରବରାହ ବିଭାଗ – ସରକାରୀ କର୍ମଚାରୀ ବିଶେଷତଃ ବିପ୍ଳବବିରୋଧୀ କର୍ମଚାରୀମାନଙ୍କର ଗତିବିଧି ଉପରେ ନଜର ରଖିବା ଏବଂ ସମିତିକୁ ଜଣାଇବା ଏହାର କାର୍ଯ୍ୟଥିଲା । (୨) ଅସ୍ତ୍ରତିଆରି ଓ ସଂଗ୍ରହ ବିଭାଗ – ଗୋପନ ଅସ୍ତ୍ରଶସ୍ତ୍ର ବିଶେଷତଃ ବଂଧୁକ ଓ ବୋମା ତିଆରି ଓ ସଂଗ୍ରହ ଏହି ବିଭାଗର ମୁଖ୍ୟ କାର୍ଯ୍ୟ ଥିଲା । (୩) ଟ୍ରେନିଂ ବିଭାଗ – କୁସ୍ତିକସରତ ଓ ଡ୍ରିଲ ଏବଂ ତରବାରି, ବର୍ଚ୍ଛା, ଛୁରା ଓ ବଂଧୁକ ଚାଳନା ଓ ବୋମା ନିକ୍ଷେପ ବିଷୟରେ ଶିକ୍ଷାଦେବା । (୪) ଅର୍ଥ ସଂଗ୍ରହ ବିଭାଗ – ଦଳପାଇଁ ଯେକୌଣସିମତେ ପାଣ୍ଠି ସଂଗ୍ରହ ଥିଲା ଏହି ବିଭାଗର କାର୍ଯ୍ୟ । ଏହି ଅର୍ଥ ବନ୍ଧୁ ଓ ଶୁଭେଚ୍ଛୁମାନଙ୍କଠାରୁ ଭିକ୍ଷା ଆକାରରେ ମୁଖ୍ୟତଃ ସଂଗୃହୀତ ହେଉଥିଲେ ସୁଦ୍ଧା ସରକାରୀ ଟ୍ରେଜେରୀ ବା ବିପ୍ଳବ ବିରୋଧୀ ଧନୀବ୍ୟକ୍ତିମାନଙ୍କ ଘର ଲୁଣ୍ଠନ କରି ମଧ୍ୟ ସଂଗ୍ରହ କରାଯାଉଥିଲା । (୫) ଆକ୍ସନ ପ୍ରୋଗ୍ରାମ ବିଭାଗ – ସଶସ୍ତ୍ର ଅଭିଯାନର ଲକ୍ଷ୍ୟସ୍ଥଳ, ସ୍ଥାନ, ସମୟ ଏବଂ ଅଭିଯାନକାରୀ ବାଛିବା ଥିଲା ଏହି ବିଭାଗର ମୁଖ୍ୟକାର୍ଯ୍ୟ ଏବଂ ସାଧାରଣତଃ ଏହା ସର୍ବୋଚ୍ଚ ନେତୃମଣ୍ଡଳୀଦ୍ୱାରା କରାଯାଉଥିଲା । ସାଧାରଣ କର୍ମୀମାନେ ପୂର୍ବରୁ ଏହା ଜାଣିବା ସମ୍ଭବ ହେଉ ନ ଥିଲା । 'ଆକ୍ସନ' ବା

ଅଭିଯାନର ଗୋପନୀୟତା ରକ୍ଷା କରିବା ପାଇଁ ଏଭଳି କରାଯାଇଥିଲା । ଏତଦ୍‌ବ୍ୟତୀତ ଏକ ନକଲି ପ୍ରଚାର ବିଭାଗ ମଧ୍ୟ ଥିଲା । ଏହି ବିଭାଗ ନାନା ଉଦ୍‌ଭଟ ବିଷୟ ପ୍ରଚାର କରି ପୁଲିସକୁ ଭୁଲବାଟରେ ନେବାକୁ ଚେଷ୍ଟାକରୁଥିଲା ଏବଂ ଏହା ଫଳରେ ପୁଲିସର ଦୃଷ୍ଟି ଅନ୍ୟଆଡ଼କୁ ଆକର୍ଷିତ ହୋଇଯାଉଥିଲା । ଏକ ଗୋପନ ଚିକିତ୍ସା କେନ୍ଦ୍ର ଏବଂ ଆଇନ ପରାମର୍ଶଦାତା ମଣ୍ଡଳୀ ମଧ ଥିଲା; ଯେଉଁଠାରେ ଆହତ ବିପ୍ଳବୀଙ୍କୁ ଚିକିତ୍ସା କରିବା ଏବଂ ମାଲିମକଦ୍ଦମା ଲଢ଼ିବାରେ ସାହାଯ୍ୟ ମିଳୁଥିଲା । ଏହିଭଳି ଭାବରେ ବର୍ଷେ କେଇଟାରେ ବଙ୍ଗଳା, ବିହାର, ଉତ୍ତର ପ୍ରଦେଶ ଓ ପଞ୍ଜାବରେ ବହୁ ଗୋପନ ବିପ୍ଳବୀ ଅନୁଷ୍ଠାନ ଗଢ଼ିଉଠିଲା ଏବଂ କେଉଁଠି ନିର୍ଜନ ଅରଣ୍ୟ କିମ୍ବା ଜନବିରଳ ସ୍ଥାନର କୌଣସି ଗୋଟିଏ ପରିତ୍ୟକ୍ତ ଅର୍ଦ୍ଧଭଗ୍ନ ଗୃହ କିମ୍ବା ନିର୍ଜନ ବେଳାଭୂମିରୁ ଭାସିଆସିଲା 'ଲେଫ୍‌ଟ-ରାଇଟ୍, ଲେଫଟ୍-ରାଇଟ୍ ଧ୍ୱନି ।'

□□□

## ଅଧ୍ୟାୟ - ଏଗାର

# ବୋମାଯୁଗର ଅୟମାରମ୍ଭ

'ବନ୍ଦେ ମାତରମ୍' ପତ୍ରିକାର ସ୍ୱନାମଧନ୍ୟ ଲେଖକ ଶ୍ରୀ ବିପିନ ଚନ୍ଦ୍ର ପାଲ ଇଂରେଜ ସରକାରର ବିଷ-ଦୃଷ୍ଟିରେ ପଡ଼ିବାକୁ ବେଶୀ ସମୟ ଲାଗିଲା ନାହିଁ । ସରକାର ପ୍ରତି 'ଅସମ୍ମାନ' ପ୍ରଦର୍ଶନ ଅଭିଯୋଗରେ କଲିକତାର ଚିଫ୍ ପ୍ରେସିଡ଼େନ୍‌ସି କୋର୍ଟରେ ତାଙ୍କ ନାମରେ ମକଦ୍ଦମା କରାଗଲା । ବିପିନଚନ୍ଦ୍ର ପାଲ କେବଳ ଜଣେ ବିପ୍ଳବୀ ନ ଥିଲେ, ଇଂରେଜୀ ସାହିତ୍ୟ ଉପରେ ମଧ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା ଏବଂ ଜଣେ ଶକ୍ତିଶାଳୀ ଲେଖକରୂପେ ସେତେବେଳେ ସାରା ଦେଶର ଶିକ୍ଷିତ ସମାଜରେ ତାଙ୍କର ଯଥେଷ୍ଟ ସୁଖ୍ୟାତି ଥିଲା । ସୁତରାଂ ମକଦ୍ଦମାର ଶୁଣାଣି ଓ ରାୟ ଦିନ କୋର୍ଟ ଭିତରେ ଓ ବାହାରେ ବିରାଟ ଜନସମାଗମ ହେଇଥିଲା । ଉତ୍ସାହ ଓ ଉତ୍ତେଜନା ଭରିଉଠିଥିଲା ଚାରିଆଡ଼େ । ବିପିନ ଚନ୍ଦ୍ରଙ୍କୁ ସମର୍ଥନ ଜଣାଇ 'ବନ୍ଦେ ମାତରମ୍' ସ୍ଲୋଗାନରେ ଆକାଶ ବତାସ କମ୍ପି ଉଠୁଥିଲା । ସ୍ୱାଧୀନତା ଯୁଦ୍ଧର ସେନାପତି ତ୍ରୟୀ 'ଲାଲ-ବାଲ-ପାଲ' (ଲାଲା ଲଜପତ ରାୟ, ବାଲ ଗଙ୍ଗାଧର ତିଲକ ଓ ବିପିନ ଚନ୍ଦ୍ର ପାଲ) କେବଳ ବ୍ୟକ୍ତିବିଶେଷ ନ ଥିଲେ, ସେମାନେ ଥିଲେ ଗୋଟିଏ ଗୋଟିଏ ବଳିଷ୍ଠ ଅନୁଷ୍ଠାନ । କୋର୍ଟରେ ବିପିନ ଚନ୍ଦ୍ର ବଜ୍ରକଣ୍ଠରେ ଘୋଷଣା କଲେ – "I have conscientious objection against taking part in a prosecution which I believe to be unjust and injurious to the cause of popular freedom and the interest of the public. I have objection to swear in these proceedings. I refuse to answer any question in connection with this case. (ଜନସ୍ୱାର୍ଥ ବିରୋଧୀ ଓ ସ୍ୱାଧୀନତା ପ୍ରତି ବିପଜ୍ଜନକ କୌଣସି ମକଦ୍ଦମାରେ ଅଂଶଗ୍ରହଣ କରିବା ମୋର ବିବେକବିରୋଧୀ ଅଟେ । ଏ ମକଦ୍ଦମାର ଜମାନବନ୍ଦି ପାଇଁ ସତ୍ୟପାଠ କରିବାରେ ମୋ'ର ବିଶେଷ ଆପତ୍ତି ଅଛି । ସୁତରାଂ ଏହି ମକଦ୍ଦମା ସଂକ୍ରାନ୍ତରେ କୌଣସି ଜବାବ ଦେବାକୁ ମୁଁ ରାଜିନୁହେଁ ।) ଉଲ୍ଲେଖ ନିଷ୍ପ୍ରୟୋଜନ ଯେ ଏହି ତେଜସ୍ୱୀ ଓ ଓଜସ୍ୱିନୀ ଜବାବରେ କୋର୍ଟ ବାହାରେ ରୁଣ୍ଡ ହଜାର ହଜାର ବିମୁଗ୍ଧ ଦେଶବାସୀଙ୍କ ହୃଦୟରୁ ସ୍ପନ୍ଦିତହେଲା ସ୍ୱତଃସ୍ଫୂର୍ତ୍ତ ଜୟଧ୍ୱନି । 'ବନ୍ଦେ ମାତରମ୍', 'ବନ୍ଦେ ମାତରମ୍' ।

ଅଦାଲତ ଅବମାନନା ଅଭିଯୋଗରେ, ବିଶେଷତଃ ଶ୍ରୀ ଅରବିନ୍ଦଙ୍କ ବିରୋଧରେ ସାକ୍ଷୀ ଦେବାକୁ ନାହିଁକରିବାରୁ କିଂସଫୋର୍ଡ଼ ବିପିନଚନ୍ଦ୍ରଙ୍କୁ ଦେଲା ଛ'ମାସ ଜେଲଦଣ୍ଡ । ଏହି ରାୟ ଶୁଣି କ୍ଷୁବ୍‌ଧ ଦେଶବାସୀଙ୍କ କ୍ରୋଧ ଓ ଉତ୍ତେଜନା ଯେମିତି ସହସ୍ରଗୁଣିତ ହୋଇଗଲା । କୋର୍ଟ ବାହାରେ ରୁଣ୍ଡହୋଇଥିବା ଅସୁମାରି ଜନତା ଭିତରେ ଥିଲେ କିଶୋର ବିପ୍ଲବୀ ସୁଶୀଲ ସେନ । ଜାତୀୟ ବିଦ୍ୟାଳୟର ନାମଜାଦା ଛାତ୍ର ସୁଶୀଲ । ଯେମିତି ମେଧାବୀ, ସେମିତି ସ୍ୱାସ୍ଥ୍ୟବାନ୍, ସବଳ । ତା'ର ବଳିଷ୍ଠ କୁନ୍ଦିଲା ଚେହେରା ଦେଖିଲେ ଶତ୍ରୁର ହୃତ୍‌କମ୍ପ ହେବ । ସଶସ୍ତ୍ର ବିପ୍ଳବର ଅଗ୍ନି ସ୍ଫୁଲିଙ୍ଗରେ ସେ କେବେଠୁଁ ତେଜୀୟାନ୍ । କଂଗ୍ରେସର ରକ୍ଷଣଶୀଳ ନୀତିରେ ସେ କେବଳ ବିରକ୍ତ ନୁହଁନ୍ତି, ରୀତିମତ କ୍ରୁଦ୍ଧ ।

ବିପିନ ଚନ୍ଦ୍ରଙ୍କ ଭଳି ବରେଣ୍ୟ ନେତାଙ୍କ ପ୍ରତି କିଂସଫୋର୍ଡ଼ର ଏହି ଅନ୍ୟାୟ ଆଦେଶ ଶୁଣି ସୁଶୀଲଙ୍କ ରକ୍ତ ଯେମିତି ଟକମକ ହୋଇ ଫୁଟିଲା । ସେତେବେଳକୁ ସେହି ଉତ୍ତେଜିତ ଜନତାକୁ ଦବେଇଦେବାକୁ ପୁଲିସ ଲାଗିପଡ଼ିଲେଣି । ଜଣେ ଗୋରା ପୁଲିସ ସର୍ଜେଣ୍ଟ ସହ ସୁଶୀଲର କ'ଣ ଯୁକ୍ତିତର୍କ ହେଲା । ସୁଶୀଲ ପକ୍ଷରେ ତାହା ଅସହ୍ୟ ହେଲା । ସୁଶୀଲ ସର୍ଜେଣ୍ଟଙ୍କୁ ମାରିବାକୁ ବଜ୍ରମୁଷ୍ଟି ଉଞ୍ଚେଇ ଦଉଡ଼ିଗଲେ । କିନ୍ତୁ ଆଘାତ ପାଇବା ପୂର୍ବରୁ ସର୍ଜେଣ୍ଟଜଣକ ଧରିନେଲେ କିଶୋର ସୁଶୀଲଙ୍କୁ । ତାଙ୍କୁ ସଙ୍ଗେ ସଙ୍ଗେ କୋର୍ଟରେ ହାଜରକରାଗଲା । 'ଖୋଦ୍ ସରକାରବାହାଦୁରଙ୍କର ଗୋରା ପୁଲିସକୁ ମାରିବାର ଉଦ୍ୟମ କରିଛି ସାମାନ୍ୟ ଜଣେ ଭାରତୀୟ କିଶୋର ! ସୁତରାଂ ଅସହ୍ୟ ଓ ଅକ୍ଷମଣୀୟ ।'

ସୁଶୀଲଙ୍କର ବୟସ ଦୃଷ୍ଟିରୁ ତାଙ୍କୁ ଜେଲଦଣ୍ଡ ଦିଆଯାଇପାରିଲାନାହିଁ, ଦିଆଗଲା ପନ୍ଦରଟି ବେତ୍ରାଘାତ ଏବଂ ସଙ୍ଗେ ସଙ୍ଗେ ସେ ଆଦେଶ କାର୍ଯ୍ୟକାରୀ ହେଲା । ଶହ ଶହ ଲୋକ ରୁଣ୍ଡହୋଇଛନ୍ତି କୋର୍ଟ ବାହାରେ । 'ଭାରତ ମାତା କି ଜୟ' 'ବନ୍ଦେ ମାତରମ୍'ର ଜୟଧ୍ୱନି ଆକାଶକୁ କରୁଥାଏ ଭାରାକ୍ରାନ୍ତ । ନିର୍ମମ ବେତ୍ରାଘାତରେ କିଶୋର ସୁଶୀଲର କମନୀୟ ଶରୀର ହେଉଥାଏ କ୍ଷତବିକ୍ଷତ । ଝରିଯାଉଥାଏ ଅଜସ୍ର ରକ୍ତଧାର । ସୁଶୀଲ କିନ୍ତୁ ନିର୍ବାକ୍, ନିସ୍ପନ୍ଦ, ସ୍ଥିତପ୍ରଜ୍ଞ ଋଷିକୁମାର ଭଳି ଠିଆହୋଇ ଅମ୍ଳାନ ବଦନରେ ସେହି ବେତ୍ରାଘାତ ସହ୍ୟକରିଯାଉଥା'ନ୍ତି । ଆଖିରେ ଲୁହ ନାହିଁ, ମୁଖମଣ୍ଡଳରେ ବିକୃତିର ସାମାନ୍ୟ ଲକ୍ଷଣ ସୁଦ୍ଧା ନାହିଁ ।

ଅକଳ୍ପନୀୟ ସେ ଦୃଶ୍ୟ । ଗୋରା ବିଚାରପତି କିଂସଫୋର୍ଡ଼, ପୁଲିସ ସର୍ଜେଣ୍ଟ, ହାକିମ ହୁକୁମା, ଓକିଲ ବାରିଷ୍ଟର ସମସ୍ତେ ସ୍ତମ୍ଭିତ । ସମସ୍ତଙ୍କ ଚକ୍ଷୁ ପ୍ରାୟ ଲୋତକାର୍ଦ୍ର -କେବଳ ସୁଶୀଲଙ୍କୁ ଛାଡ଼ି । ଏତେ ଅଳ୍ପ ବୟସର କିଶୋର- କିନ୍ତୁ କି ସହିଷ୍ଣୁତା ! କି ଧୈର୍ଯ୍ୟ !

ରକ୍ତାକ୍ତ ଶରୀରରେ ସୁଶୀଲ କୋର୍ଟ ବାହାରକୁ ଆସି ଦେଖିଲେ ଏକ ବିରାଟ ଗୁଣମୁଗ୍ଧ ଜନତା ତାଙ୍କୁ ବୀରୋଚିତ ସମ୍ମାନ ଦେବାକୁ ଶତ ହସ୍ତ ପ୍ରସାରଣକରି ଅପେକ୍ଷା

କରିଛି । ଫୁଲମାଳ, କରତାଳି ଓ ଜୟଧ୍ୱନି ସେଦିନ ପ୍ରେସିଡେନ୍ସି କୋର୍ଟ ହତାକୁ କିଭଳି ମୁଖରିତ କରିଥିଲା ତାହା ବର୍ଣ୍ଣନାତୀତ । ସୁଶୀଲଙ୍କର ସମ୍ବର୍ଦ୍ଧନା ପାଇଁ କଲେଜ ସ୍କୋୟାରଠାରେ ଯେଉଁ ବିରାଟ ସଭା ହୋଇଥିଲା ତା'ର ସ୍ମୃତି ଅବିସ୍ମରଣୀୟ । ବରେଣ୍ୟ ସୁରେନ୍ଦ୍ରନାଥ ବାନାର୍ଜି ସୁଶୀଲଙ୍କୁ ଉପହାର ଦେବାପାଇଁ ଏକ ସୁନା ମେଡାଲ ପଠାଇଥିଲେ ସଭାସ୍ଥଳକୁ । ସଭା ପରେ ତାଙ୍କୁ ଗୋଟିଏ ଘୋଡ଼ାଗାଡ଼ିରେ ବସାଇ ସାରା କଲିକତା ସହରରେ ଏକ ଶୋଭାଯାତ୍ରାରେ ବୁଲାଯାଇଥିଲା ଏବଂ ଶୋଭା ଯାତ୍ରାର ପୁରୋଭାଗରେ ସମବେତ ସଂଗୀତ ଝଙ୍କୃତ ହେଉଥିଲା –

''ଯାୟ ଯବେ ଜୀବନ ଚଲେ,
ଜଗତ ମାଝେ, ତୋମାର କାଯେ 'ବନ୍ଦେ ମାତରମ୍' ବୋଲେ,
ବେତ ମେରେ କି ମା ଭୋଲାବି,
ଆମରା କି ମା'ର ସେଇ ଛେଲେ ।''
(ଯିବ ଯେବେ ଜୀବନ ଚାଲି
ଏହି ଜଗତେ, ତୁମରି କାର୍ଯ୍ୟେ 'ବନ୍ଦେ ମାତରମ୍' ଗାଇ
ବେତ ମାଡ଼ ଡରେ ମା' ଭୁଲିବା
ଆମେ କି ମା'ର ସେଭଳି ପିଲା ।)

୧୫ଟି ନିର୍ମମ ନିଷ୍ଠୁର ବେତ୍ରାଘାତ ନିର୍ବିକାର ଚିତ୍ତରେ ଗ୍ରହଣକରି ସୁଶୀଲ ନିଜକୁ ଆଗାମୀ ବିପ୍ଳବ ପାଇଁ ପ୍ରସ୍ତୁତ କରୁଥିଲେ । ଏହା ଯଥାର୍ଥରେ ତାଙ୍କ ପକ୍ଷରେ ଥିଲା ଏକ ଅଗ୍ନିପରୀକ୍ଷା । ଏହାର ଅଳ୍ପ କେଇଦିନ ପରେ ସୁଶୀଲଙ୍କୁ ଗିରଫ କରାଯାଇଥିଲା 'ଅଲ୍ଲୀପୁର ଷଡ଼ଯନ୍ତ୍ର' ମକଦ୍ଦମାରେ ଏବଂ ସେଥିରେ ସେ ଦଣ୍ଡିତ ମଧ୍ୟ ହୋଇଥିଲେ । କିନ୍ତୁ ଚୁପ୍ ବସି ନ ଥିଲେ । ୧୯୧୫ରେ ନଦିଆ ଜିଲ୍ଲାରେ ଯେତେଗୁଡ଼ିଏ ସଫଳ ରାଜନୈତିକ ଲୁଟତରାଜ ହୋଇଥିଲା ତା'ର ନେତୃତ୍ୱ ନେଇଥିଲେ ବିପ୍ଳବୀ ସୁଶୀଲ ସେନ । ସେତେବେଳକୁ ସେ ଆଉ ୧୯୦୭ର କିଶୋର ସୁଶୀଲ ନୁହଁନ୍ତି, ରୀତିମତ ଜଣେ ପୋଖତ ବିପ୍ଳବୀ । ପ୍ରଥମ ଶ୍ରେଣୀୟ ବିପ୍ଳବୀ ଭିତରୁ ସେ ଅନ୍ୟତମ । କିନ୍ତୁ ନଦିଆର ସଶସ୍ତ୍ର ଅଭିଯାନରେ ସୁଶୀଲର ଭୂମିକା ସଂପର୍କରେ ପୁଲିସ୍ ଅଜ୍ଞ କହିଲେ ଚଳେ । ଯାହାହେଉ, ଏହି ସମୟରେ ଏକ ସଂଘର୍ଷରେ ୧୯୧୫ ଏପ୍ରିଲ ୧୮ ତାରିଖରେ ସୁଶୀଲ କ୍ଷତବିକ୍ଷତ ହୋଇ ସେଠାରୁ ପଳାଇଗଲେ ଅନ୍ୟ କେତେକ ସହକର୍ମୀଙ୍କ ସହ, ପୁଲିସ ସେମାନଙ୍କର ପିଛା ଧରିଲା । ଆହତ ସୁଶୀଲଙ୍କ ପକ୍ଷରେ ବେଶୀ ଦୌଡ଼ିବା ସମ୍ଭବ ହେଲା ନାହିଁ । କିନ୍ତୁ ପୁଲିସ ଯଦି ତାଙ୍କୁ ଧରେ, ବିଶେଷତଃ ତାଙ୍କୁ ଚିହ୍ନଟ କରାଯାଏ, ତେବେ ଆଗାମୀ ବିପ୍ଳବର ସବୁ ଯୋଜନା ଧରାପଡ଼ିଯିବ ଓ ପଣ୍ଡ ହୋଇଯିବ । ଏହାହିଁ ସୁଶୀଲ ଭାବୁଥିଲେ । ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ଦିଆଗଲା ଅନୁଗାମୀ ବନ୍ଧୁମାନଙ୍କୁ । ''ଦେଖ, ପୁଲିସ ଅତି ପାଖକୁ ଆସିଗଲାଣି । ମୋ' ପକ୍ଷରେ ଆଉ

ପଳେଇଯିବା ସମ୍ଭବ ନୁହେଁ । ତୁମ୍ଭେମାନେ ଯଦି ମୋତେ ରକ୍ଷାକରିବାକୁ ଚେଷ୍ଟାକରିବ କିମ୍ବା କାନ୍ଧରେ ପକାଇ ନେବାକୁ ଉଦ୍ୟମକରିବ ତେବେ ସମସ୍ତେ ତ ଧରାପଡ଼ିବା ଏବଂ ତା' ସଙ୍ଗେ ସଙ୍ଗେ ଆମର ଆଗାମୀ ଯୋଜନା ମଧ୍ୟ ପଣ୍ଡହୋଇଯିବ, ତାହା ଦେଶ ପ୍ରତି ହେବ ଚରମ ବିଶ୍ୱାସଘାତକତା । ସୁତରାଂ ମୋ' ମୁଣ୍ଡକୁ କାଟିନେଇ ପଳାଅ । ଏଠି ପଡ଼ିରହୁ ଖାଲି ଗଣ୍ଡିଟା- ପୁଲିସ ଯେମିତି ଚିହ୍ନି ନ ପାରେ ଲାସ୍‌ଟା । ଆଉ ବିଳମ୍ବ କର ନାହିଁ ବଂଧୁଗଣ । ଦେଶଠାରୁ ମୁଁ କେବେଁ ବଡ଼ ହୋଇ ନ ପାରେ । ଆସ, ଆସ, ଆସ ବଂଧୁ, ମୋର ରକ୍ତ ତର୍ପଣରେ ଦୁଃଖିନୀ ଜନନୀର ଦୁଃଖ ଦୂରହେଉ ।''

ସହକର୍ମୀମାନଙ୍କର ଭାବିବାକୁ ବେଳ ନ ଥିଲା । ଦଳକୁ ରକ୍ଷା କରିବାକୁ ହେବ । ଦେଶର ଇଜ୍ଜତ ବଞ୍ଚାଇବାକୁ ହେବ । ସୁତରାଂ ତାହାହିଁ ହେଲା, ସୁଶୀଲଙ୍କର କଟାମୁଣ୍ଡଟା ନେଇ ସତୀର୍ଥ ବଂଧୁମାନେ ନିରାପଦ ସ୍ଥାନକୁ ପଳାଇଗଲେ ।

ପୁଲିସ ଆସି ଯାହା ଦେଖିଲେ ସେଥିରେ ଅବାକ୍ ହେବାର କଥା । ସୁଶୀଲଙ୍କର ଆତ୍ମୋତ୍ସର୍ଗ ସଫଳହେଲା । ସୁଶୀଲଙ୍କ ଲାସ୍‌କୁ କୌଣସିମତେ ଚିହ୍ନଟ କରାଯାଇ ପାରିଲା ନାହିଁ । ଫଳରେ ଗୁପ୍ତ ବିପ୍ଲବର କୌଣସି ଯୋଜନା ପୁଲିସ ଜାଣିପାରିଲା ନାହିଁ । ଏହିଭଳି ଭାବରେ ଅଜ୍ଞାତରେ ଓ ଲୋକଲୋଚନର ଅନ୍ତରାଳରେ ଏକ ମହାନ୍ ଦେଶସେବୀ ଆତ୍ମତ୍ୟାଗକଲେ । ଧନ୍ୟ ସୁଶୀଲ ! ତୁମକୁ କୋଟି କୋଟି ପ୍ରଣାମ । କିନ୍ତୁ କିଂସଫୋର୍ଡ଼ ପାଇଁ କି ବିଚାର ? ବିପିନ ପାଲଙ୍କ ଦଣ୍ଡକର୍ତ୍ତା ଓ ସୁଶୀଲର ବିଚାରକ ଅତ୍ୟାଚାରୀ କିଂସଫୋର୍ଡ଼ କ'ଣ ଖସିଯିବ ? ଇଂରେଜ ସାମ୍ରାଜ୍ୟବାଦର ପ୍ରତିଭୂ, ଇଂରେଜ ଶାସନର ପ୍ରତୀକ, ଉପନିବେଶ ଶାସନର ପୃଷ୍ଠପୋଷକ କିଂସଫୋର୍ଡ଼ର ବିଚାର ହେଉ । ହେଲା ସେ ବିଚାର । କିନ୍ତୁ ପ୍ରକାଶ୍ୟ ଅଦାଲତରେ ନୁହେଁ- ବିଚାର ହେଲା ଅନ୍ୟ କୋର୍ଟରେ, ସଶସ୍ତ୍ର ବିପ୍ଲବୀଙ୍କର ଅଣ୍ଡରଗ୍ରାଉଣ୍ଡ ସେଲ୍‌ରେ । ବିପ୍ଲବୀ ଯଦୁ ଗୋପାଳ ମୁଖୋପାଧ୍ୟାୟ ଲେଖିଛନ୍ତି, ''ଏହି ବିଚାର ବେଳେ ବିପ୍ଲବୀ ଚାରୁ ଚରଣ ଦତ୍ତ, ସୁବୋଧ ଚନ୍ଦ୍ର ମଲ୍ଲିକଙ୍କ ସହ ସ୍ୱୟଂ ଅରବିନ୍ଦ ମଧ୍ୟ ଉପସ୍ଥିତ ଥିଲେ ଏବଂ ଏହି ବିଚାରରେ କିଂସଫୋର୍ଡ଼କୁ ବିପ୍ଲବୀ ଗୁପ୍ତ ଅଦାଲତ 'ପ୍ରାଣଦଣ୍ଡ' ରାୟ ହେଲା – ଅର୍ଥାତ୍ ସ୍ଥିର ହେଲା ଯେ ଯେକୌଣସି ମତେ 'କିଂସଫୋର୍ଡ଼'କୁ ଖତମ କରିବାକୁ ହେବ ।'' ଏହି ଐତିହାସିକ କାର୍ଯ୍ୟ ସଂପାଦନ କରିବା ଦାୟିତ୍ୱ ନେବାକୁ ଯାହାକୁ ମନୋନୀତ କରାଗଲା, ସେ ହେଉଛନ୍ତି ସଶସ୍ତ୍ର ମୁକ୍ତି-ସଂଗ୍ରାମ ଇତିହାସରେ ଏକ ଅବିସ୍ମରଣୀୟ ନାମ – ଏକ ଉଜ୍ଜ୍ୱଳ ରତ୍ନ । ବୟସରେ କିଶୋର କିନ୍ତୁ ସାହସ, ନିର୍ଭୀକତା ଓ ନିଷ୍ଠାରେ ପ୍ରବୀଣମାନଙ୍କଠାରୁ ମଧ୍ୟ ଅଧିକ ପ୍ରବୀଣ; ନାମ ତାଙ୍କର କ୍ଷୁଦିରାମ ବସୁ – ଯାହାର ଅକୃତ୍ରିମ ସାହସ ଓ ଅତୁଳନୀୟ ଆତ୍ମତ୍ୟାଗକୁ କେନ୍ଦ୍ରକରି ବଙ୍ଗଳା, ହିନ୍ଦୀ ପ୍ରଭୃତି ବିଭିନ୍ନ ସାହିତ୍ୟରେ ଅସଂଖ୍ୟ କାବ୍ୟ, କବିତା, ନାଟକ, ଉପନ୍ୟାସ ରଚିତ

ହୋଇଛି । ବଙ୍ଗ ସାହିତ୍ୟରେ ସାମାନ୍ୟ ଜ୍ଞାନ ଥିବା ବ୍ୟକ୍ତି ମଧ୍ୟ କ୍ଷୁଦିରାମ ସହ ପରିଚିତ ଏବଂ ସେ ହୁଏତ କେତେବେଳେ ସେହି ପ୍ରସିଦ୍ଧ ସଂଗୀତଟା ଗୁଣୁଗୁଣୁ ହୋଇ ଗାଉଥିବାର ଶୁଣାଯିବ ।

''ଏକବାର ବିଦାୟ ଦାଓ ମା' ଘୁରେ ଆସେ
ଆମି ହେସେ ହେସେ ପରବ ଫାଶୀ ଦେଖବେ ଭାରତବାସୀ

X X X

ଦଶ ମାସ ଦଶ ଦିନ ପରେ, ଜନ୍ମନିବ ମାସୀର ଘରେ
ଚିନ୍‌ତେ ଯଦି ନା ପାର ମା...... ଦେଖବେ ଗଲାୟ ଫାଶୀ

X X X

କ୍ଷୁଦିରାମ ଏକା ନ ଥିଲେ, ତାଙ୍କର ସାଥୀ ଥିଲେ ଅନ୍ୟତମ କିଶୋର ବିପ୍ଳବୀ ପ୍ରଫୁଲ୍ଲ ଚାକୀ । ପ୍ରଫୁଲ୍ଲ ଜାତୀୟ ଆନ୍ଦୋଳନରେ ଯୋଗଦେବାବେଳକୁ ଜଣେ ପ୍ରବୀଣର ଜ୍ଞାନ ଏବଂ ଶକ୍ତି ଅର୍ଜନ କରିସାରିଥିଲେ । ତାଙ୍କ ଦେହରେ ଥିଲା ଗୋଟିଏ ଅସୁରର ବଳ । ବିପ୍ଳବୀ ବାରୀନ୍ଦ୍ର ଘୋଷ ଏକ ଗୋପନୀୟ ବୈପ୍ଳବିକ କାର୍ଯ୍ୟରେ ରଙ୍ଗପୁର ଯାଇଥିବାବେଳେ ତାଙ୍କୁ ଦେଖି ଅତିଶୟ ମୁଗ୍ଧହୋଇଥିଲେ ଏବଂ ପ୍ରଫୁଲ୍ଲଦ୍ୱାରା ଭବିଷ୍ୟତରେ ମହାନ୍ ବୈପ୍ଳବିକ କାର୍ଯ୍ୟ ହୋଇପାରିବ ବୋଲି ଦୃଢ଼ ଆଶା ପ୍ରକାଶ କରିଥିଲେ ବୋଲି ଜଣାଯାଏ ।

କ୍ଷୁଦିରାମଙ୍କର ବୟସ ୧୪/୧୫, ମୁଣ୍ଡରେ ପୁଳାଏ କୁଞ୍ଚୁକୁଞ୍ଚିଆ ଚୂଳ । ବଡ଼ ଦୁଇଟି ଉଜ୍ଜ୍ୱଳ ଆଖି । ଖଣ୍ଡାଧାର ଭଳି ନାକ । ବଳିଷ୍ଠ ଚେହେରା- ବେଶି ମୋଟା ନୁହେଁ କି ପତଳା ନୁହେଁ । କିନ୍ତୁ ମାଂସପେଶୀଗୁଡ଼ା ଯେମିତି ଇସ୍ପାତରେ ତିଆରି । ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ – "Muscles of iron and nerves of steel" (ଲୁହାର ମାଂସପେଶୀ ଏବଂ ଇସ୍ପାତର ସ୍ନାୟୁ ।) ଛ' ବର୍ଷ ବୟସରୁ ପିତୃମାତୃହୀନ । ବଡ଼ଦିଦିର ଯତ୍ନରେ ପ୍ରତିପାଳିତ । କିନ୍ତୁ ଭୀଷଣ ଏକଜିଦିଆ, ସ୍ପଷ୍ଟବାଦୀ । ପିଲାଦିନୁ ପୁଲିସ୍‌କୁ ଦେଖିଲେ ଚିଡୁଥିଲା । କେତେଥର ପୁଲିସ ସହ ଝଗଡ଼ାକରିଥିବ, ପୁଲିସ ହାବୁଡ଼ରେ ବି ପଡ଼ିଥିବ- 'ପିଲାଟା' ବୋଲି ହୁଏତ ଦଣ୍ଡପାଇନି । 'ବଙ୍ଗ ବିଚ୍ଛେଦ' ବିରୋଧରେ 'ବନ୍ଦେ ମାତରମ୍' ପ୍ରଚାରପତ୍ର ବାଣ୍ଟୁବାଣ୍ଟୁ ଗିରଫହୋଇଥିଲେ ୧୯୦୬ରେ । କିନ୍ତୁ ପୁଲିସ୍‌କୁ ଆହତ କରି ପଳାଇଥିଲେ, ପୁଣି ଗିରଫ, ଖଲାସ ୧୯୦୬ରେ । ହାତ ଗଛିଆରେ ଡାକ ବ୍ୟାଗ ଲୁଟରେ ଅଂଶଗ୍ରହଣ, ନୟନଗଡ଼ ଷ୍ଟେସନରେ ୧୯୦୭ରେ ବଙ୍ଗ ଗଭର୍ଣ୍ଣର ଉପରେ ବୋମା ନିକ୍ଷେପରେ ଅଂଶଗ୍ରହଣ, ୧୯୦୮ରେ ଷ୍ଟେଟ୍‌ସମ୍ୟାନର ୱାଟସନ୍ ଓ ବ୍ୟାମଫିଲ୍ଡ଼ ଫୁଲର ଆକ୍ରମଣରେ ଅଂଶଗ୍ରହଣ କରିଥିଲେ । ସେଥିରେ ତୃପ୍ତ ନ ହୋଇ ଏଥର କିଂସ୍‌ଫୋର୍ଡ଼ ଉପରେ ହାତ ପକାଇଲେ କ୍ଷୁଦିରାମ ।

କିଂସ୍‌ଫୋର୍ଡ଼ ଖୁବ୍ ପଠନପ୍ରିୟ ଥିଲା । ତା'ର ଅଫିସ ଘରେ ଖୁବ୍ ବଡ଼ ବଡ଼ ଆଇନ ବହି ଓ ଅନ୍ୟାନ୍ୟ ବହି ସବୁ ଆଲମାରିରେ ସଜାହୋଇଥାଏ । କିଂସ୍‌ଫୋର୍ଡ଼ ଯେଉଁ ବହି କେଇଖଣ୍ଡ ସବୁବେଳେ ଖେଳାଖେଳି କରେ, ସେହିଭଳି ଗୋଟାଏ ବହି ସଂଗ୍ରହ କରାଗଲା ତା'ର ବୈଠକଖାନାରୁ ଏବଂ ସେହି ବହି ଭିତରେ ଖଞ୍ଜି ଦିଆଗଲା ଗୋଟାଏ ମାରାତ୍ମକ ବୋମା । ବହି ଭିତରେ କିଛି ଅଂଶ କାଟିଦେଇ ସେଠାରେ ଛ' ସାତ ଇଞ୍ଚ ଲମ୍ବ ଓ ପ୍ରାୟ ଚାରି ଇଞ୍ଚ ଚଉଡ଼ା ଓ ଏକ ଇଞ୍ଚ ମୋଟ ଏକ ବୋମାକୁ ଏମିତି ଭାବରେ ଫିଟ୍ କରିଦିଆଗଲା ଯେ ବାହାରକୁ ଦେଖିଲେ ଜଣାଯିବ ସତେ ଯେମିତି ନିରୀହ ନିର୍ଦ୍ଦୋଷ ବହିଖଣ୍ଡିଏ । ଜନୈକ ଐତିହାସିକଙ୍କର ବିବରଣୀ ଅନୁସାରେ ଏହି ବୋମାକୁ ବିପ୍ଳବୀ ସୁଶୀଲ ସେନ ଖଞ୍ଜିଥିଲେ । ଗୋପନରେ ଓ ଯଥେଷ୍ଟ ସତର୍କତାର ସହକାରେ ବହିଟିକୁ କିଂସ୍‌ଫୋର୍ଡ଼ ଟେବୁଲ ଉପରେ ରଖିଦିଆଗଲା । ଉଦ୍ଦେଶ୍ୟ – କିଂସ୍‌ଫୋର୍ଡ଼ ବହିଟି ଖୋଲିବା ସଂଗେ ସଂଗେ ବୋମା ବିସ୍ଫୋରଣରେ ତା'ର ପ୍ରାଣଯିବ ।

କିନ୍ତୁ ନାଃ, ତା ହେଲା ନାହିଁ । କିଂସ୍‌ଫୋର୍ଡ଼ ତା ଅଫିସକୁ ଆସିବା ପୂର୍ବରୁ ଝାଡୁଦାର ଟେବୁଲ ସଫା କରିବାକୁ ଯାଇ ସେହି ମାରାତ୍ମକ ବୋମାର ଶିକାରହେଲା । ବୋମା ଯୁଗର ଅଧିବାସ ହେଲା । ସରକାରୀ ମହଲ ଏହି ଅପ୍ରତ୍ୟାଶିତ ଘଟଣାରେ ଏତେ ବିଚଳିତ ହୋଇପଡ଼ିଲେ ଯେ କିଂସ୍‌ଫୋର୍ଡ଼କୁ ଆଉ କଲିକତାରେ ରଖିବା ନିରାପଦ ମନେ କରାଗଲା ନାହିଁ, ବଦଳି କରାଗଲା ବିହାରର ମୁଜାଫରପୁର । ସେଡ଼ିସନ କମିଟି ରିପୋର୍ଟରେ ଏହା ଉଲ୍ଲେଖ କରାଯାଇଛି ।

ସୁତରାଂ କ୍ଷୁଦିରାମ ଓ ପ୍ରଫୁଲ୍ଲ ମଧ୍ୟ ମୁଜାଫରପୁରକୁ ଟିକେଟ କାଟିଲେ । ୧୯୦୮ ମସିହା ଅପ୍ରେଲ ୨୧ ତାରିଖରେ ଧର୍ମଶାଳାରେ ଦୁଇ ବନ୍ଧୁଙ୍କର ଡେରା ପଡ଼ିଲା । ସମୟ ଓ ସୁବିଧା ଦେଖି ଦୁଇବଂଧୁ ସେ ଦିନ ରାତି ନଅଟାରେ କିଂସ୍‌ଫୋର୍ଡ଼ କୋଠି ସାମନା ଦେବଦାରୁ ଗଛ ଉହାଡ଼ରେ ଦୁଇଟି ମାରାତ୍ମକ ହାତ ବୋମା ଧରି ଅପେକ୍ଷାକଲେ । ରାତ୍ରି ପ୍ରାୟ ୧୦ଟା ବେଳେ କିଂସ୍‌ଫୋର୍ଡ଼ ସାଇବମାନଙ୍କ କ୍ଳବ୍‌ଘରେ ତାସଖେଳିସାରି ଫେରିଲା । ସାଙ୍ଗରେ ଥିଲେ କେନେଡ଼ି ନାମକ ଜନୈକ ଗୋରା ଅଫିସରଙ୍କର ପତ୍ନୀ ଓ କନ୍ୟା । ଦୁଇଟାଯାକ ଗାଡ଼ି କୋଠି ଆଡ଼କୁ ମୁହାଁଇଲା । ମଟରର ହେଡ଼ଲାଇଟରୁ ରକ୍ଷା ପାଇବାକୁ ବନ୍ଧୁ ଦୁହେଁ ଗଛ ଉହାଡ଼ରେ ଲୁଚିଗଲେ । କିନ୍ତୁ ଲକ୍ଷ୍ୟ ଏକାବେଳକେ ସ୍ଥିର । କିଂସ୍‌ଫୋର୍ଡ଼ ଗାଡ଼ି ଫାଟକ ପାଖରେ ଅଟକିବା ସଙ୍ଗେ ସଙ୍ଗେ କ୍ଷୁଦିରାମ ଓ ପ୍ରଫୁଲ୍ଲ ଏକ ସାଙ୍ଗରେ ଫୋପାଡ଼ିଲେ ବୋମା ଦୁଇଟି । ଲକ୍ଷ୍ୟ ଭ୍ରଷ୍ଟ ହେବାର କୌଣସି କାରଣ ନ ଥିଲା । ସେ ଲକ୍ଷ୍ୟ ଥିଲା ଅବ୍ୟର୍ଥ । ବୋମା ଆଘାତରେ କିଂସ୍‌ଫୋର୍ଡ଼ ଗାଡ଼ିଟି ପ୍ରାୟ ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା । ସଶସ୍ତ୍ର ମୁକ୍ତିସଂଗ୍ରାମର ରକ୍ତିମ ଇତିହାସରେ ହୃତକମ୍ପକାରୀ 'ବୋମାଯୁଗ'ର ଶୁଭ ଉଦ୍‌ଘାଟନ ହେଲା । ଆରୋହୀ ଦୁହେଁ ସାଂଘାତିକ ଭାବେ ଆହତ ହୋଇ ସଙ୍ଗେ ସଙ୍ଗେ ପ୍ରାୟ ଶେଷହୋଇଗଲେ । କିନ୍ତୁ ଏ କ'ଣ ହେଲା ? କିଂସ୍‌ଫୋର୍ଡ଼ ଯେ ମଲା ନାହିଁ !! ସେ ଥିଲା ପଛ ଗାଡ଼ିରେ । ତା ନିଜ ଗାଡ଼ିରେ ଥିଲେ କେନେଡ଼ି ମହିଳା

ଦୁଇଟି । ସେ ନିଜେ ଥିଲେ କେନେଡ଼ି ଗାଡ଼ିରେ । କ୍ଷୁଦିରାମ ଓ ପ୍ରଫୁଲ୍ଲ ଗାଡ଼ି ଚିହ୍ନିବାରେ କିଛି ଭୁଲ କରି ନ ଥିଲେ । କିନ୍ତୁ କିଂସ୍‌ଫୋର୍ଡ଼ ବଞ୍ଚିଗଲା । ଏମିତି ବି ହୁଏ !

ଏକଥା କିନ୍ତୁ ବୁଝିବାକୁ କ୍ଷୁଦି କିମ୍ବା ପ୍ରଫୁଲ୍ଲର ସମୟ ନ ଥିଲା । ସେମାନଙ୍କର ଉଦ୍ୟମ ସଂପୂର୍ଣ୍ଣ ସଫଳ ହୋଇଛି ବୋଲି ମନେକରି, ଦୁଇବଂଧୁ ସେହି ଅନ୍ଧକାର ମଧ୍ୟରେ ଦୁଇ ବିପରୀତ ଦିଗକୁ ପଳାଇଗଲେ । କିନ୍ତୁ ଦୁର୍ଭାଗ୍ୟବଶତଃ, ତରତର ହୋଇ ପଳାଇଗଲାବେଳେ ଉଭୟ ସେମାନଙ୍କ ଜୋତା ଛାଡ଼ି ଚାଲିଯାଇଥିଲେ ଗଛମୂଳରେ । ପୁଲିସ ପରେ ସେହି ଜୋତାକୁ ଜବତ କରିଥିଲା ଆସାମୀଙ୍କୁ ଚିହ୍ନଟ କରିବାରେ ସହାୟକ ହେବବୋଲି ଆଶାକରି ।

ପ୍ରଫୁଲ୍ଲ ସେହି ଅନ୍ଧକାର ଭିତରେ ଦଉଡ଼ି ଦଉଡ଼ି ସମସ୍ତିପୁର ଷ୍ଟେସନରେ ପହଞ୍ଚିଲେ ଏବଂ ସେଠୁ ରେଳରେ ପଳାଇଲେ ମୋକାମ ଘାଟ ଷ୍ଟେସନ । ସେଠାରେ ପହଞ୍ଚି ପରବର୍ତ୍ତୀ ଗନ୍ତବ୍ୟସ୍ଥଳକୁ ଯିବାର ଯୋଜନାକଲେ ପ୍ରଫୁଲ୍ଲ । ସେତିକିବେଳେ ତାଙ୍କ ସହ ସାକ୍ଷାତ ହେଲା ପୁଲିସ ଦାରୋଗା ନନ୍ଦଲାଲର । ନନ୍ଦଲାଲ ଛୁଟିରୁ ଫେରୁଥିଲା ମୋକାମଘାଟ । ତା'କାନରେ ସେତେବେଳକୁ ବାଜିଗଲାଣି କିଂସ୍‌ଫୋର୍ଡ଼ ହତ୍ୟା ଉଦ୍ୟମର ସମ୍ବାଦ । ପ୍ରଫୁଲ୍ଲଙ୍କର କ୍ଳାନ୍ତଶ୍ରାନ୍ତ ଚେହେରା ସାଙ୍ଗକୁ ତାଙ୍କର ସ୍ପଷ୍ଟବାଦିତା ଓ ନିର୍ଭୀକତା ନନ୍ଦଲାଲର ଚତୁର ପୁଲିସ ଆଖିରେ ସନ୍ଦେହ ସୃଷ୍ଟି କଲା । କିନ୍ତୁ କିଶୋର ପ୍ରଫୁଲ୍ଲ ଧୋତି ଚଦର ପିନ୍ଧିଥିବା ନନ୍ଦଲାଲକୁ ସନ୍ଦେହ କରିବାରେ କୌଣସି କାରଣ ନ ଥିଲା । ଫଳରେ ବନ୍ଧୁତା ଜମେଇଦେଲା ବିଶ୍ୱାସଘାତକ ଓ ଭାରତମାତାର କୁଳାଙ୍ଗାର ସନ୍ତାନ ନନ୍ଦଲାଲ, ବିଚରା ପ୍ରଫୁଲ୍ଲ ସହ । ସରଳବିଶ୍ୱାସୀ ପ୍ରଫୁଲ୍ଲ ତା'ର ମାୟାରେ ପଶିପାରିଲା ନାହିଁ । ଅତି ବିଶ୍ୱସ୍ତ ଓ ଅନ୍ତରଙ୍ଗ ବନ୍ଧୁ ଓ ଶୁଭେଚ୍ଛୁର ଅଭିନୟ କରି ପ୍ରଫୁଲ୍ଲର ବିଶ୍ୱାସଭାଜନ ହେବାକୁ ସୟତାନ ନନ୍ଦଲାଲକୁ ବେଶି ସମୟ ଲାଗିଲା ନାହିଁ । ପ୍ରଫୁଲ୍ଲକୁ ଷ୍ଟେସନ୍‌ରେ ବସାଇଦେଇ ନନ୍ଦଲାଲ ଚାଲିଲା ଥାନାଆଡ଼େ ।

ଅଳ୍ପ ସମୟ ପରେ ଫେରିଲା ନନ୍ଦଲାଲ କିନ୍ତୁ ଏକା ନୁହେଁ ସାଙ୍ଗରେ ବିରାଟ ପୁଲିସ ଫଉଜ । ପୁଲିସ ସହ ନନ୍ଦଲାଲକୁ ଦେଖି ପ୍ରଫୁଲ୍ଲ ବୁଝି ପାରିଲା ସେହି ପୁଲିସ ଅଭିଯାନର ଉଦ୍ଦେଶ୍ୟ । ଦୁଃଖ ଓ କ୍ରୋଧରେ ତାଙ୍କ ପାଟିରୁ ବାହାରିପଡ଼ିଲା 'ହାୟ, ହାୟ !' ତୁ ଜଣେ ବଙ୍ଗାଳୀ – ମୋ'ର ଦେଶବାସୀ, ମୋତେ ଆରେଷ୍ଟ କରିବାକୁ ଆସିଲୁ ?'' (ଅମୃତବଜାର ପତ୍ରିକା, ମଇ ୩୦ ତାରିଖ, ୧୯୦୮) ସୁତରାଂ ସେ ଶେଷ ଉଦ୍ୟମ କଲେ ଆତ୍ମରକ୍ଷା କରିବାକୁ । ଗୁଳିଭରା ରିଭଲଭର ଖଣ୍ଡିକ ଧରି ଦୌଡ଼ିଲେ ପ୍ରଫୁଲ୍ଲ, କିନ୍ତୁ କେତେ ବାଟ ବା ଯାଇପାରିବେ ? ପୁଲିସ୍ ଫଉଜ ଘେରିଗଲେ ତାଙ୍କୁ ଚାରିଆଡୁ । ସେ ଫୁଟାଇଲେ ଦୁଇଟା ଗୁଳି ପୁଲିସକୁ ଲକ୍ଷ୍ୟ କରି ଏବଂ ତୃତୀୟ ଗୁଳିଟିକୁ ନିଜ ଆଡ଼କୁ ମୁହାଁଇ ଦେଇ ସେଇଠି ଢଳିପଡ଼ିଲେ ପ୍ରଫୁଲ୍ଲ । ପୁଲିସ ହାରିଗଲା । ହାରିଗଲା କୁସନ୍ତାନ କୁଳାଙ୍ଗାର ବିଶ୍ୱାସଘାତକ ପୁଲିସ୍ ଦାରୋଗା ନନ୍ଦଲାଲ । ଜିତିଗଲେ ପ୍ରଫୁଲ୍ଲ ତାଙ୍କର ଅମୂଲ୍ୟ ଜୀବନକୁ ସମର୍ପଣ କରି ଦେଶମାତୃକାର ପବିତ୍ର ଯଜ୍ଞରେ ।

ପୁଲିସ ହାତରେ ଧରାପଡ଼ି ନିର୍ଯାତିତ ହେବା ସୁନିଶ୍ଚିତ ଥିଲା ଏବଂ ସେହି ନିର୍ଯାତନା ଫଳରେ ପ୍ରଫୁଲ୍ଲଙ୍କଠାରୁ ଯଦି ଦୁଇ-ଚାରି କଥାର ସ୍ୱୀକାରୋକ୍ତି ଆଦାୟ ହୋଇ ବିପ୍ଳବୀ ଦଳର ଗୁପ୍ତକଥା ପଦାରେପଡ଼ିଯାଏ ତାହା ସବୁଠାରୁ ବିପଦଜନକ ଘଟଣା ହେବ ବୋଲି ପ୍ରଫୁଲ୍ଲ ଜାଣିଥିଲେ । ପୁଲିସ ହାତରେ ଧରାଦେବା ଅପେକ୍ଷା ଆତ୍ମୋତ୍ସର୍ଗ ସହସ୍ର ଗୁଣେ ଭଲବୋଲି ବିଚାରକରି ଭାରତର ଯେଉଁ କେତେଜଣ ବୀର ଯୁବକ ଏଭଳି ଆତ୍ମୋତ୍ସର୍ଗ କରିଛନ୍ତି, ପ୍ରଫୁଲ୍ଲ ଚାକୀ ତାହାର ନେତୃତ୍ୱ ନେଇ ଚିରସ୍ମରଣୀୟ ହୋଇ ରହିଲେ । ସେ ଆମର ନମସ୍ୟ ।

ତାହାହେଲେ ବିଶ୍ୱାସଘାତକ ନନ୍ଦଲାଲର କ'ଣ ହେଲା ? ସେ ତ ନିଶ୍ଚୟ ଚାକିରିରେ ପ୍ରମୋଶନ ପାଇଲା ? କିନ୍ତୁ ତା'ର ଦେଶଦ୍ରୋହୀତାର ପୁରସ୍କାର କୁଆଡ଼େ ଗଲା ? ସେ ଦିନର ସଶସ୍ତ୍ର ବିପ୍ଳବୀମାନେ କ'ଣ ତାକୁ ଅକ୍ଷତ ଶରୀରରେ ଛାଡ଼ିଦେଲେ ? ନାଁ, ତା ତ ଅସମ୍ଭବ ! ବିପ୍ଳବୀର ଶାସ୍ତ୍ରରେ ତାକୁ କ୍ଷମା ନାହିଁ । ନନ୍ଦଲାଲର ବିଚାର ପାଇଁ ବସିଗଲା ଗୁପ୍ତବୈଠକ କଲିକତାର କୌଣସି ଏକ ଅନ୍ଧାରିଆ ଗଳିରେ । ମୁଖ୍ୟ ବିଚାରକ ବିପିନ ପାଲଙ୍କ ହାତରେ ଗଢ଼ା 'ଆତ୍ମୋନ୍ନତି ସମିତି' ଓ ବିପ୍ଳବୀ ହେମ ଚନ୍ଦ୍ର ଘୋଷଙ୍କର 'ମୁକ୍ତି ସଂଘ'ର ସର୍ବସମ୍ମତ 'ରାୟ' ପ୍ରକାଶ ପାଇଲା – 'ନନ୍ଦଲାଲର ପ୍ରାଣଦଣ୍ଡ' । ଏ ରାୟକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ ନେଲେ ବିପ୍ଳବୀ ଶ୍ରୀଶ ପାଲ, ଓ ସତ୍ୟେନ ଗାଙ୍ଗୁଲି । ସିଦ୍ଧାନ୍ତହିଁ ସିଦ୍ଧାନ୍ତ, ରାୟହିଁ ରାୟ । ବିପ୍ଳବୀ ଜାତକରେ ଏଥିରେ ତିଳାର୍ଦ୍ଧ ଏପଟ ସେପଟ ହୁଏନା ।

'ସେଣ୍ଟ୍ ଜେମ୍‌ସ ସ୍କୋୟାର'ର ମୋଡ଼ ଉପରେ ଥିବା ସେହି ପୁରାତନ ଶିବମନ୍ଦିରରୁ ଦିନେ ସଂଧ୍ୟାରେ ପରମ ଶିବଭକ୍ତର ପୋଷାକ ପିନ୍ଧି 'ବାବା ନନ୍ଦଲାଲ'' ପୂଜାର୍ଚ୍ଚନା ଶେଷକରି ଫେରିଲାବେଳେ ଶ୍ରୀଶ ପାଲଙ୍କର ରିଭଲଭର ଗୁଳିରେ ଚିତ୍‌ପଟାଙ୍ଗ ମାରିଲା । ପ୍ରଫୁଲ୍ଲଙ୍କ ଆତ୍ମତ୍ୟାଗର ୬ ମାସ ଭିତରେ ନନ୍ଦଲାଲ ପାଇଲା ତା'ର ପୁରସ୍କାର । ହତ୍ୟାକାରୀ ଅନ୍ଧାରରେ ଅନ୍ତର୍ଦ୍ଧାନ । ସାବାସ୍ ବିପ୍ଳବୀ ! ତୁମକୁ ନମସ୍କାର, ସାବାସ୍ ଶ୍ରୀଶଦା, ସାବାସ ସତ୍ୟେନଦା !

ତେଣେ କ୍ଷୁଦିରାମ ଅନ୍ଧାର ରାତିରେ ପ୍ରାୟ କୋଡ଼ିଏ ମାଇଲ ବାଟ ଚାଲି ଚାଲି ପହଞ୍ଚି ଗଲେ ଉଇନି ଷ୍ଟେସନରେ । ଯେକୌଣସି ଏକ ରେଳ ଷ୍ଟେସନରେ ପହଞ୍ଚିବା ଥିଲା ତାଙ୍କର ଲକ୍ଷ୍ୟ । ସେତେବେଳକୁ ସକାଳ ହୋଇଗଲାଣି । କ୍ଷୁଦିରାମ କେବଳ କ୍ଳାନ୍ତ ଶ୍ରାନ୍ତ ନୁହଁନ୍ତି; ଭୀଷଣ କ୍ଷୁଧାର୍ତ୍ତ ମଧ୍ୟ । ଭୋକ ଓ ଶୋଷରେ ଛାତି ଯେମିତି ଫାଟି ଯାଉଥାଏ ତାଙ୍କର । ଷ୍ଟେସନବଜାରରୁ ପାଏ ଚୁଡ଼ା ଓ ମୁଢ଼ି କିଣି ତାକୁ ସେମିତି ଶୁଖିଲା ପାଟିରେ ପକେଇଦେଲେ, ଫଳରେ ଶୋଷ ଆହୁରି ବଢ଼ିଲା । ବିକଳହୋଇ କ୍ଷୁଦିରାମ ପାଣି ଖୋଜିଲେ । ଜଳଖିଆଦୋକାନ ବା ହୋଟେଲକୁ ଯିବାକୁ ମନ ଆଗେଇଲାନି ତାଙ୍କର । ଯାହହେଉ, ଶେଷରେ ପାଣିର ସଂଧାନ ମିଳିଲା ଗୋଟାଏ କୂଅରେ । ସେଇଠି

ପାଣି ଟୋପେ ମାଗି ପିଉପିଉ ଜଣେ ପୁଲିସ କନେଷ୍ଟବଳର ଆଖିପଡ଼ିଲା ତାଙ୍କ ଉପରେ । ସେତେବେଳେ କ୍ଷୁଦିରାମଙ୍କ ଆଖି ଦୁଇଟି ଖାଲି କ୍ଳାନ୍ତ ଦିଶୁ ନ ଥିଲା, ରାତି ଅନିଦ୍ରା ଓ ଅତ୍ୟଧିକ ପରିଶ୍ରମରେ ଲାଲଦିଶୁଥିଲା । ଗୋଡ଼ରେ ଜୋତା ନ ଥିଲା, କିନ୍ତୁ ଜୋତାର ଦାଗ ଥିଲା ଅତି ସ୍ପଷ୍ଟ । ପୁଲିସର କାହିଁକି କେଜାଣି ସନ୍ଦେହ ହେଲା । ସେ କେତେଗୁଡ଼ିଏ ପ୍ରଶ୍ନକଲା କ୍ଷୁଦିରାମଙ୍କୁ । କ୍ଷୁଦିରାମଙ୍କର ସନ୍ଦେହ ରହିଲା ନାହିଁ ଯେ ସେ ନିଶ୍ଚିତରୂପେ ଧରାପଡ଼ିବାକୁ ଯାଉଛନ୍ତି । ତେଣୁ ପଳାଇଯିବାର ଶେଷ ଚେଷ୍ଟା କଲେ ସେ । ପୁଲିସ୍ ଓ ସାଧାରଣ ଲୋକଙ୍କର ସନ୍ଦେହ ବଢ଼ିଲା, ସମସ୍ତେ ଘେରାଉକରି କ୍ଷୁଦିରାମଙ୍କୁ ଧରିପକାଇଲେ । ଜବତହେଲା ଦୁଇଟା ରିଭଲଭର । ଗୋଟାଏରେ ଗୁଳି ଭର୍ତ୍ତି । ତିରିଶିଟି ଟଙ୍କା, ସତେଇଶିଟି ଗୁଳି, ଗୋଟିଏ ରେଳବାଇ ମାନଚିତ୍ର ଓ ଟାଇମ୍ ଟେବୁଲ୍ ।

ଯେତେବେଳେ ପୁଲିସ କ୍ଷୁଦିରାମଙ୍କର ପ୍ରକୃତ ପରିଚୟ ପାଇଲା ସେତେବେଳେ ତା'ର ଆନନ୍ଦର ସୀମା ରହିଲା ନାହିଁ । ''କିଂସ୍‌ଫୋର୍ଡ଼କୁ ଏ ପିଲା ବୋମାମାରିଛି, ଏଇ ଯୁବକ କଲିକତାରୁ ଦଉଡ଼ି ଦଉଡ଼ି ଆସିଥିଲା ମୁଜାଫରପୁର ପର୍ଯ୍ୟନ୍ତ, କିଂସ୍‌ଫୋର୍ଡ଼କୁ ମାରିବା ପାଇଁ ? ଆରେ ବାପରେ ! ଯେଉଁ କିଂସ୍‌ଫୋର୍ଡ଼ ନାଁ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼େ, ସେହି ଗୋରା ହାକିମ ଉପରେ ବୋମାପକାଇଲା ଏଇ ପିଲା ? ଧନ୍ୟ ! ଧନ୍ୟ !'' ସମସ୍ତଙ୍କ ମୁହଁରେ ଏଇ ଗୋଟିଏ କଥା ।

ଗିରଫ ହେବା ମୁହୂର୍ତ୍ତରୁ କିଶୋର କ୍ଷୁଦିରାମ ସିଂହ ଶାବକ ଭଳି ଖାଲି ନିର୍ଭୀକ ନୁହଁନ୍ତି, ବୀର ଭଳି ବେପରବା ଏବଂ ଜଣେ ପ୍ରବୀଣ ବିପ୍ଳବୀ ଭଳି ଉନ୍ନତଶିର । ସେହି ଶୃଙ୍ଖଳିତ ସିଂହ ଶିଶୁକୁ ଅଣାଗଲା ମୁଜାଫରପୁର ଷ୍ଟେସନକୁ । ଷ୍ଟେସନରେ ତାଙ୍କୁ ଦେଖିବା ପାଇଁ ଭୀଷଣ ଲୋକାରଣ୍ୟ । ମଝିରେ ମଝିରେ କ୍ଷୁଦିରାମଙ୍କର ବଜ୍ରଗମ୍ଭୀର କଣ୍ଠ ଭେଦକରି ଶୁଭୁଛି ସେ ଉଦାର ମାତୃମନ୍ତ୍ର 'ବନ୍ଦେ ମାତରମ୍' । ସମବେତ ବିରାଟ ଉତ୍ସୁକ ଓ ଗୁଣମୁଗ୍ଧ ଜନତାର କଣ୍ଠସ୍ୱରରେ ତାହାର ପ୍ରତିଧ୍ୱନି ''ବନ୍ଦେ ମାତରମ୍, ବନ୍ଦେ ମାତରମ୍ ।''

ଜୁନ୍ ୧୧ ତାରିଖ ୧୯୧୮ରେ ବିଚାରହେଲା କ୍ଷୁଦିରାମଙ୍କର । ଜମାନବନ୍ଦୀରେ ନିର୍ଭୀକ ସ୍ୱରରେ ସେ ଜବାବଦେଲେ, ''ମୁଁ ମେଦିନୀପୁର ସହରର ଲୋକ, ମୋର ବାପା, ମା' ଭାଇ, କକା ଓ ମାମୁ କେହି ନାହାଁନ୍ତି । ବଞ୍ଚିଚନ୍ତି କେବଳ ଦିଦିର ବଡ଼ଭଉଣୀ, ଅପାର ବଡ଼ପୁଅ ମୋର ସମବୟସ୍କ ।''

'ତୁମେ ଦୋଷୀ ନା ନିର୍ଦ୍ଦୋଷ ?' କୋର୍ଟ ପକ୍ଷରୁ ପ୍ରଶ୍ନ ହେଲା । ''ଏ କଥାର ଜବାବ ମୁଁ ଦେଇପାରିବିନାହିଁ । କିନ୍ତୁ ମୁଁ ସ୍ପଷ୍ଟ ଭାବରେ କହିଦେବାକୁ ଚାହେଁ ଯେ ମୁଁ କିଂସ୍‌ଫୋର୍ଡ଼କୁ ହତ୍ୟା କରିବାକୁ ଆସିଥିଲି । କାରଣ ବ୍ରିଟିଶ୍ ଅତ୍ୟାଚାରର ପ୍ରତୀକ କିଂସ୍‌ଫୋର୍ଡ଼ ବୋଲି ମୁଁ ବୋମା ପକାଇଥିଲି । କିନ୍ତୁ ଦୁର୍ଭାଗ୍ୟର କଥା ଯେ କିଂସ୍‌ଫୋର୍ଡ଼ ପରିବର୍ତ୍ତେ ଦୁଇଟି ନିରପରାଧିନୀ ମହିଳା ପ୍ରାଣତ୍ୟାଗ କଲେ । ମୁଁ ସେଥିପାଇଁ ଦୁଃଖିତ ଏବଂ ଆହୁରି ଦୁଃଖିତ ଯେ କିଂସ୍‌ଫୋର୍ଡ଼ ଏ ପର୍ଯ୍ୟନ୍ତ ବଞ୍ଚିରହିଛି ।''

ଅବଶ୍ୟ ତଥାକଥିତ 'ନିରପରାଧିନୀ' ମହିଳାଙ୍କ ମୃତ୍ୟୁପାଇଁ କ୍ଷୁଦିରାମଙ୍କର ଦୁଃଖ କରିବାର କିଛି ନ ଥିଲା, କାରଣ ଏ ସଂଗ୍ରାମରେ ବ୍ୟକ୍ତିବିଶେଷର କୌଣସି ପ୍ରଶ୍ନ ଥିଲା ବୋଲି ଆମେ ମନେକରୁନା । ସାମ୍ରାଜ୍ୟବାଦର ପ୍ରତୀକ, ଅତ୍ୟାଚାରୀର ସମର୍ଥକ ଓ ବ୍ରିଟିଶ୍ ଶୋଷଣର ପୃଷ୍ଠପୋଷକ ଯେକେହି ଭାରତର ଶତ୍ରୁ - ସେ ବହୁଯୁଦ୍ଧବିଜୟୀ ସେନାପତି ହେଉ ବା ଅସୂର୍ଯ୍ୟଂପଶ୍ୟା ମହିଳା ହେଉ, ଧଳାଚମଡ଼ାର ସାଇବ ହେଉ ବା କଳାଚମଡ଼ାର ଚେହେରା – ଚପରାସୀ ହେଉ । ମୁକ୍ତି ସଂଗ୍ରାମୀର ତରବାରି ନିକଟରେ ସେ ଭେଦାଭେଦର ଅବକାଶ ନାହିଁ ।

ବିଚାରର ପ୍ରହସନ ପରେ କ୍ଷୁଦିରାମଙ୍କୁ ଫାଶୀଦଣ୍ଡ ଦିଆଗଲା । ଦଣ୍ଡାଦେଶ ଶୁଣି କ୍ଷୁଦିରାମଙ୍କର ଆନନ୍ଦ କହିଲେ ନ ସରେ । ଯେଉଁ ମୃତ୍ୟୁଦଣ୍ଡର ଭୟାବହତା କଳ୍ପନା କରି ସାଧାରଣତଃ ହୃତ୍‌କମ୍ପ ସୃଷ୍ଟି ହେବାର କଥା, ତାହା କ୍ଷୁଦିରାମଙ୍କୁ ଏଭଳି ଅହେତୁକ ଆନନ୍ଦ ଦେଉଛି ଦେଖି ନିଜେ ଜଜ୍ ବି ସ୍ତମ୍ଭିତହୋଇଗଲେ । ସେ ଭାବିଲେ, "ଯୁବକଟି ବୋଧହୁଏ 'ଫାଶୀଦଣ୍ଡ'ର କିଛି ଅର୍ଥ ବୁଝିପାରୁନି; ନ ହେଲେ କାନ୍ଦିବା ପରିବର୍ତ୍ତେ ହସନ୍ତା କହିଁକି ?" ବୁଝାଇବାକୁ ଚେଷ୍ଟାକଲେ ବିଚାରପତି । "ଦେଖ ୟଂ ମ୍ୟାନ, ତୁମକୁ ଫାଶୀ ଅର୍ଡ଼ର ହେଲା । ତୁମର ବୋମାର ଆଘାତରେ ଦୁଇଜଣଙ୍କର ପ୍ରାଣ ଯାଇଥିବାରୁ ତୁମକୁ ମଧ୍ୟ ପ୍ରାଣ ଦେବାକୁ ହେବ, ବୁଝିଲ ?"

ହସି ହସି ବେଦମ୍ ହୋଇଗଲେ କ୍ଷୁଦି । ବିଚାରପତିଙ୍କୁ ଓଲଟି କହିଲେ, "ବୁଝିଛି, ବୁଝିଛି, ମୁଁ ଏତେ ବୋକା ନୁହେଁ ଯେ ଏତିକି କଥା ବୁଝିପାରୁନି ! ମୁଁ ଫାଶୀକୁ ଭୟ କରୁନି, ମୁଁ ଆନନ୍ଦିତ ।"

ଜଜ୍, ଓକିଲ, ବାରିଷ୍ଟର ଓ ଦେଖଣାହାରି ସମସ୍ତେ ଆଶ୍ଚର୍ଯ୍ୟ ଓ ସ୍ତମ୍ଭୀଭୂତ ହୋଇଗଲେ କ୍ଷୁଦିରାମଙ୍କର ଏ ଜବାବ ଶୁଣି । ଖାଲି ସେତିକି ନୁହେଁ, ଫାଶୀ ଅର୍ଡ଼ର ପରେ କ୍ଷୁଦିରାମଙ୍କର ଓଜନ ଦୁଇପାଉଣ୍ଡ ବଢ଼ିଗଲା । ମନୋବଳ କେତେ ଦୃଢ଼ ଥିଲେ ତାହା ସମ୍ଭବ ହେବ, ଏହା ଅନୁଭବ କରିବା କଥା, ବର୍ଣ୍ଣନାର କଥା ନୁହେଁ ।

ଫାଶୀର ପୂର୍ବଦିନ କ୍ଷୁଦିରାମଙ୍କର ଓକିଲ ଓ କେତେକ ଶୁଭେଚ୍ଛୁ ତାଙ୍କୁ ଦେଖାକରିବାକୁ ଜେଲଖାନାକୁ ଯାଇଥିଲେ । ଓକିଲଙ୍କୁ କ୍ଷୁଦିରାମ କହିଲେ, "ମୋ' ପାଇଁ ଚିନ୍ତା କରନ୍ତୁ ନାହିଁ । ପୁରାକାଳରେ, ରାଜପୁତ ରମଣୀ ନିର୍ଭୟରେ ଜ୍ୱଳନ୍ତ ଚିତାରେ ଆତ୍ମଦାନ କରୁଥିଲେ । ମୁଁ ମଧ୍ୟ ସେହି ଭୟହୀନତା ଭିତରେ ମୃତ୍ୟୁକୁ ବରଣକରିବି ।"

୧୯୦୮ ଅଗଷ୍ଟ ୧୧ ତାରିଖରେ ମୁଜାଫରପୁର ଜେଲରେ ମହାନ୍ ବିପ୍ଳବୀ କିଶୋର କ୍ଷୁଦିରାମ ଫାଶୀ ମଞ୍ଚରେ ଆରୋହଣକଲେ ଏବଂ ଶେଷପର୍ଯ୍ୟନ୍ତ ତାଙ୍କର କିଶୋର କୋମଳ କଣ୍ଠରୁ ଭାସିଆସୁଥିଲା ସେହି ମାତୃମନ୍ତ୍ର 'ବନ୍ଦେ ମାତରମ୍' ।

ଫାଶୀର ପରଦିନ "The Empire' ପତ୍ରିକା ଲେଖିଲେ— Khudiram Bose was executed this morning, It is alleged that he mounted the scaffold with his body erect. He was cheerful and smilig." ❒ ❒ ❒

## ଅଧ୍ୟାୟ - ବାର

# ଇଂଲଣ୍ଡ ଆକ୍ରମଣ

ଦେଶ ଭିତରେ ଯେତେବେଳେ ସ୍ୱାଧୀନତା ସଂଗ୍ରାମ ନିଶ୍ଚିତରୂପେ ସଶସ୍ତ୍ର ବିପ୍ଳବ-ବାଦ ଆଡ଼କୁ ମୁହାଁଇଲା ଏବଂ ସେହି ପବିତ୍ର ଯୁଦ୍ଧପୀଠରେ ଯେତେବେଳେ ଶତଶତ ଯୁବକ ଯୁବତୀ ଜୀବନ ଝାସଦେଉଥିଲେ, ଭାରତ ବାହାରେ ମଧ ସେତେବେଳେ ପ୍ରବାସୀ ଭାରତୀୟମାନଙ୍କଦ୍ୱାରା ବିପ୍ଳବ ପ୍ରଚେଷ୍ଟା ଆରମ୍ଭ ହୋଇଯାଇଥିଲା । ଇଂଲଣ୍ଡରେ ଅଧ୍ୟୟନ କରୁଥିବା ଭାରତୀୟ ଛାତ୍ରମାନେ ସେହି ବିପ୍ଳବ ଉଦ୍ୟମର କେନ୍ଦ୍ରବିନ୍ଦୁ ଥିଲେ ମଧ୍ୟ ଭାରତରୁ କେତେକ ବିପ୍ଳବୀ ମଧ୍ୟ ଖାସ୍ ଏହି କାର୍ଯ୍ୟ ପାଇଁ ବିଲାତ ଆମେରିକାରେ ବୁଲୁଥିଲେ । କାଥିଆୱାଡ଼ର ଶ୍ୟାମଜୀ କୃଷ୍ଣବର୍ମା କେମ୍ବ୍ରିଜରେ ଅଧ୍ୟୟନ ଶେଷରେ ବାରିଷ୍ଟରୀ ପଢୁଥିବାବେଳେ ସ୍ୱାଧୀନତା ସଂଗ୍ରାମ ପ୍ରତି ଆଗ୍ରହ ପ୍ରକାଶ କରିଥିଲେ । ବିଲାତରୁ ଆସି କିଛିଦିନ ଭାରତରେ ବାରିଷ୍ଟରୀ କରିଥିଲେ ଏବଂ ସେହି ସମୟରେ ଭାରତୀୟମାନଙ୍କ ପ୍ରତି ଇଂରେଜମାନଙ୍କ ଦୁର୍ବ୍ୟବହାର ବିଷୟରେ ତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ଆସିଲା । ସେ ପୁଣି ବିଲାତ ଫେରିଗଲେ ଏବଂ ପ୍ରବାସୀ ଭାରତୀୟମାନଙ୍କର ଏକ ସଂସ୍ଥା ଗଠନ କରିବାରେ ମନୋନିବେଶ କଲେ । ଇଂଲଣ୍ଡର 'ଇଣ୍ଡିଆ ହାଉସ' ଏହିଥିରୁ ସୃଷ୍ଟ । ମାସିକ 'Indian Sociologist' 'ପତ୍ରିକାର ଜନ୍ମ ମଧ ସେଥିରୁ । Indian Home Rule League ଅନୁଷ୍ଠାନ ଗଠନକରି ଶ୍ୟାମଜୀ ଅଧିକାଂଶ ଭାରତୀୟଙ୍କୁ ଏକତ୍ରିତ କଲେ । କେବଳ ଇଂଲଣ୍ଡ ନୁହେଁ, ଜାପାନ, ତୁରସ୍କ, ମିଶର, କାବୁଲ, ପ୍ୟାରିସ, ବର୍ଲିନ, ଭିଏନା, ନିଉୟର୍କ, କାଲିଫର୍ଣ୍ଣିଆ ଓ ସାନଫ୍ରାନ୍‌ସିସ୍କୋ ପ୍ରଭୃତି ସ୍ଥାନରେ ଭାରତରେ ଚାଲିଥିବା ସଶସ୍ତ୍ର ବିପ୍ଳବକୁ ସାହାଯ୍ୟ ମାଧ୍ୟମରେ ଗତିଶୀଳ କରିବାକୁ ବ୍ୟାପକ ପ୍ରଚେଷ୍ଟା ହୋଇଥିଲା । ଶ୍ୟାମଜୀଙ୍କ ସହ ମାଡ଼ାମ କାମା (ବମ୍ବେ), ସର୍ଦ୍ଦାର ସିଂହ ରାଣା (କାଥିଆୱାଡ଼), ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ (ସରୋଜିନି ନାଇଡୁଙ୍କ ଭାଇ), ବିନାୟକ ସଭରକର (ବମ୍ବେ) ଓ ବେହୁଲା (ଯୁକ୍ତପ୍ରଦେଶ), ଭୂପେନ୍ଦ୍ର ଦତ୍ତ (ସ୍ୱାମୀ ବିବେକାନନ୍ଦଙ୍କ ଭାଇ), ରାମଚନ୍ଦ୍ର (ପଞ୍ଜାବ), ହରଦୟାଲ (ପଞ୍ଜାବ), ବରକତଉଲ୍ଲା (ଉତ୍ତରପ୍ରଦେଶ), ସୁଧୀନ ବସୁ (ବଙ୍ଗଳା), ମିର୍ଜା ଆବାସ (ବିହାର), ପାଣ୍ଡୁରଙ୍ଗ କାନୋକଜୀ (ବମ୍ବେ), ଖଗେନ ଦାସ (ବଙ୍ଗଳା),

ଅଧର ନସ୍କର (ବଙ୍ଗଳା), ଭି:ଭି: ଏସ. ଆୟାର (ମାନ୍ଦ୍ରାଜ) ପ୍ରଭୃତି ଅଗ୍ରଗଣ୍ୟ ଥିଲେ । ଡାକ୍ତରୀ, ଇଞ୍ଜିନିୟରିଂ ଓ ବାରିଷ୍ଟରୀ ଛାତ୍ର, ଲେଖକ ବା ସାମ୍ବାଦିକ ଯେ କୌଣସି ଭାରତୀୟ ସେ ବୈପ୍ଳବିକ ସଂକ୍ରମଣରୁ ମୁକ୍ତ ନ ଥିଲେ ।

୧୮୯୭ରେ ଚାପେକାର ଭ୍ରାତୃତ୍ରୟଙ୍କଦ୍ୱାରା ଉଦ୍‌ଘାଟିତ ଏବଂ ୧୯୦୬-୧୯୦୮ରେ କ୍ଷୁଦିରାମ-ପ୍ରଫୁଲ୍ଲ ଓ ସତ୍ୟେନ-କାନାଇଙ୍କଦ୍ୱାରା ଅନୁସୃତ ସଶସ୍ତ୍ର ଅଭିଯାନର ଆବାଜ ସାତ ସମୁଦ୍ର ତେର ନଈ ଅତିକ୍ରମ କରି ଯେତେବେଳେ ଲଣ୍ଡନର ଇଣ୍ଡିଆ-ହାଉସର ପ୍ରାଚୀରରେ ପ୍ରତିଧ୍ୱନିତ ହେଲା ତାହା ଭାରତୀୟ ଛାତ୍ରମାନଙ୍କ ଭିତରେ କିଭଳି ଶିହରଣ ସୃଷ୍ଟିକରିଥିବ ତାହା ସହଜେ ଅନୁମେୟ । କ୍ରମେ 'ଇଣ୍ଡିଆ ହାଉସ' ଭାରତୀୟ ଛାତ୍ରମାନଙ୍କର ମୁଖ୍ୟ ରାଜନୈତିକ କେନ୍ଦ୍ରରେ ପରିଣତ ହେଲା ଏବଂ ସ୍ୱାଭାବିକ ଭାବେ ଏହିସବୁ ରାଜନୈତିକ ଆଲୋଚନାଚକ୍ରରୁ ଅଣଭାରତୀୟମାନଙ୍କୁ ଦୂରେଇରଖାଯାଉଥିଲା । ଭାରତୀୟ ସଶସ୍ତ୍ର ବିପ୍ଳବୀମାନଙ୍କ ସଂପର୍କରେ ଆଲୋଚନା କରିବା ଏବଂ ସେହି ପ୍ରତିଭାଧର ମହାନ୍ ସହୀଦମାନଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ ଏକ ଦୈନନ୍ଦିନ କାର୍ଯ୍ୟରେ ପରିଣତ ହୋଇଥିଲା । ମହାବିଦ୍ରୋହ ୧୮୫୭ର ଅର୍ଦ୍ଧଶତ ବର୍ଷ ଜୟନ୍ତୀ ୧୯୦୮ ମସିହା ମଇ ମାସରେ 'ଇଣ୍ଡିଆ ହାଉସ୍'ରେ ପାଳନକରାଯାଇଥିଲା ଏବଂ ସେଥିପାଇଁ ନିମ୍ନଲିଖିତ ନିମନ୍ତ୍ରଣପତ୍ର ମୁଦ୍ରିତ ହୋଇଥିବା ଜଣାଯାଏ- "To commemorate the anniversary of Indian National Rising of 1857 a meeting of Indians will be held at India House on Sunday, the 10th May 1908 at 4 P.M. precisely. You and your friends are cordially invited to attend." (୧୮୫୭ର ଭାରତର ସ୍ୱାଧୀନତା ସଂଗ୍ରାମର ଜୟନ୍ତୀ ଉପଲକ୍ଷେ 'ଇଣ୍ଡିଆ ହାଉସ'ରେ ଏକ ସଭା ଅନୁଷ୍ଠିତ ହେବ । ଆପଣ ସବାନ୍ଧବ ଉକ୍ତ ସଭାରେ ଯୋଗଦେବାକୁ ସାଦର ନିମନ୍ତ୍ରଣ କରାଯାଉଅଛି ।) ଉପରୋକ୍ତ ପ୍ରଚାରପତ୍ରରୁ ଯଥେଷ୍ଟ ପ୍ରମାଣ ମିଳେ ଯେ ଭାରତରେ ସଶସ୍ତ୍ର ଅଭ୍ୟୁତ୍‌ଥାନ ପ୍ରବାସୀ ଭାରତୀୟ ଛାତ୍ରମାନଙ୍କୁ ବିଶେଷ ପ୍ରେରଣା ଯୋଗାଇଥିଲା । କ୍ରମେ ଏହା ଫଳରେ ଅଧିକରୁ ଅଧିକ ଭାରତୀୟ ଛାତ୍ର 'ସଶସ୍ତ୍ର ବିପ୍ଳବ' ଦର୍ଶନରେ ଅନୁପ୍ରାଣିତ ହେଲେ, କେତେକ ବିପ୍ଳବରେ ଭାଗନେବାକୁ ଅଥୟ ହୋଇପଡ଼ିଲେ ।

ମଦନଲାଲ ଧୀଙ୍ଗ୍ରା ଏହି ଶ୍ରେଣୀର ଜଣେ ଭାରତୀୟ ଛାତ୍ର ଥିଲେ । ସେ ବାହାରୁ ଦେଖିବାକୁ ସାଦାସିଧା ସରଳ ଓ ଥଣ୍ଡା; କିନ୍ତୁ ଭିତରଟା ଆଗ୍ନେୟଗିରିଠାରୁ ଆହୁରି ଜ୍ୱଳନ୍ତ, ଆହୁରି ଉତ୍ତପ୍ତ । 'ହୋମରୁଲ୍ ଲିଗ୍' ଆଇନ ଦୃଷ୍ଟିରୁ ଗୋଟିଏ ଶାନ୍ତିପ୍ରିୟ ଅନୁଷ୍ଠାନ ଭଳି ବାହାରକୁ ଦିଶୁଥିଲେ ସୁଦ୍ଧା ଏହାର ପ୍ରଚ୍ଛନ୍ନ ବୈପ୍ଳବିକ ପ୍ରଚେଷ୍ଟା ସଂପର୍କରେ ସରକାର ସଂପୂର୍ଣ୍ଣ ଅବହିତ ଥିଲା । ସେଥିପାଇଁ ଭାରତୀୟ ଛାତ୍ରମାନଙ୍କ କାର୍ଯ୍ୟକଳାପ ଉପରେ ଦୃଷ୍ଟି ରଖିଲା ସରକାର ଏବଂ କିଛିଦିନ ପରେ ଏହି କାର୍ଯ୍ୟର ଦାୟିତ୍ୱ ସ୍ୱତନ୍ତ୍ର ଭାବେ ଜଣେ ଅଫିସରଙ୍କ ଉପରେ ଦିଆଯାଇଥିଲା । କର୍ଣ୍ଣେଲ ଉଇଲିୟମ୍

କର୍ଜନ ଉଇଲି ନାମକ ଏହି ଅଫିସର ଭୀଷଣ ଧୂର୍ତ୍ତ ଥିଲା । ସେ ଥିଲା ଇଣ୍ଡିଆ ଅଫିସ୍‌ର ଏ.ଡ଼ି.ସି. । ସେ ଭାରତୀୟ ଛାତ୍ରମାନଙ୍କ ସହ ମିଶିଯାଇ ଭିତରେ ଭିତରେ ପୂରା ଗୋୟନ୍ଦାଗିରି କଲା । ଖାଲି ଗୋୟନ୍ଦାଗିରି ନୁହେଁ, ଭାରତୀୟ ଛାତ୍ରଙ୍କ ଭିତରେ ଭେଦଭାବ ସୃଷ୍ଟି କରିବାକୁ ଲାଗିଲା । ଦୁର୍ବଳମନା ଛାତ୍ରମାନଙ୍କୁ ହାତକରି ଭାରତୀୟ ମୁକ୍ତି ଆନ୍ଦୋଳନ ଏବଂ ସଂଗ୍ରାମୀ ଛାତ୍ର ନେତାମାନଙ୍କ ବିରୋଧରେ ସେମାନଙ୍କୁ ଉତ୍ତେଜିତ କରିବାକୁ ଛାଡ଼ିଲାନାହିଁ । ଉଇଲିର କାର୍ଯ୍ୟକଳାପରେ ଭାରତୀୟ ଛାତ୍ର ନେତାମାନେ ଅତିଷ୍ଠ ହୋଇପଡ଼ିଲେ ଏବଂ ମଦନଲାଲଙ୍କ ଭଳି ଛାତ୍ର ତ ରୀତିମତ ଉତ୍ୟକ୍ତ ହୋଇଗଲେ । ମଦନଲାଲଙ୍କର ବିଶ୍ୱାସ ଥିଲା ଯେ ମାତୃଭୂମିର ସ୍ୱାଧୀନତା ପଥର ସମସ୍ତ କଣ୍ଟକ ଦୂର କରିବାକୁ ପଡ଼ିବ କଠୋର ହସ୍ତରେ । କିନ୍ତୁ ସେଥିପାଇଁ ସେ ଆଉ କିଛି ସମୟ ଅପେକ୍ଷା କରିବାକୁ ଚାହିଁ ଥିଲେ, କାରଣ ସେ ଭାବୁଥିଲେ ଯେ ସଶସ୍ତ୍ର ମୁକ୍ତି ସଂଗ୍ରାମର ସାଫଲ୍ୟ ପାଇଁ ଭାରତରେ ଅଧିକ ପ୍ରସ୍ତୁତି ଆବଶ୍ୟକ ଏବଂ ସେଥିପାଇଁ ସେ ନିଜକୁ ଅଧିକ ଯୋଗ୍ୟ କରିବା ଦରକାର । କିନ୍ତୁ ଉଇଲିର କ୍ରମବର୍ଦ୍ଧମାନ ଔଦ୍ଧତ୍ୟ ତାଙ୍କ ପକ୍ଷରେ ଅସହ୍ୟ ହୋଇଉଠିଲା । ତାଙ୍କର ସବୁ ଯୋଜନା ଯେମିତି ଗୋଳମାଳ ହୋଇଗଲା । ସେ ଦେଖିଲେ "ଅଧିକ ବିଳମ୍ବ ହେବା ପୂର୍ବରୁ ଏହି ଔଦ୍ଧତ୍ୟ ସ୍ତବ୍ଧ ହେବା ଉଚିତ । ଆଉ ସମୟ ବିଳମ୍ବ କରିବା ଅନୁଚିତ ।"

ସେଦିନ ଭାରତୀୟ ଓ ଇଂଲଣ୍ଡୀୟ ଛାତ୍ରମାନଙ୍କର ଏକ ସାଂସ୍କୃତିକ ସଭାରେ କର୍ଜନ ଉଇଲିର ଭାଷଣ ଦେବାର ଥିଲା । ସୁତରାଂ ଏହିଠାରେହିଁ ଉଇଲିର ହିସାବ ନିକାଶ କରିବାକୁ ସର୍ବୋତ୍କୃଷ୍ଟ ସ୍ଥାନ ବୋଲି ବିଚାରକଲେ ମଦନଲାଲ । ଉଇଲି ଠିଆହେବା ସଙ୍ଗେ ସଙ୍ଗେ ମଦନଲାଲ ମଧ୍ୟ ନିଜ ଆସନରୁ ଠିଆହୋଇପଡ଼ିଲେ ଏବଂ ଆଖିପିଛୁଳାକେ ତାଙ୍କର ରିଭଲଭର ଗର୍ଜିଉଠିଲା । ଅବ୍ୟର୍ଥ ଲକ୍ଷ୍ୟ ! ଉଇଲି ଗୋଟିଏ ଗୁଳିରେ ଭୂପତିତହେଲା । ଲାଲକାକା ଆଉ ଜଣେ ଭାରତୀୟ, ମଦନଲାଲଙ୍କର ଖୁବ୍ ନିକଟରେ ବସିଥିଲେ, ସେ କ'ଣ ଭାବିଲେ କେଜାଣି ଉଇଲିକୁ ରକ୍ଷା କରିବାକୁ ଦୌଡ଼ିଯାଇ ମଦନଲାଲଙ୍କୁ କୁଣ୍ଢେଇପକାଇଲେ ଲାଲକକା, ଅଥଚ ମଦନଲାଲ ଉଇଲିକୁ ଶେଷ କରିଦେବାକୁ କୃତସଂକଳ୍ପ । ସୁତରାଂ ଲାଲକକା ତାଙ୍କୁ ଧରିବାକୁ ଉଦ୍ୟମ କରିବା ଦେଖି ରିଭଲଭରର ମୁହଁଟା ତାରି ଆଡ଼କୁ ବୁଲିଗଲା ଏବଂ ସଙ୍ଗେ ସଙ୍ଗେ ଲାଲକକା ସେଇଠି ଭୂଲୁଣ୍ଠିତ ହେଲେ ।

ଏଭଳି ଏକ ଅପ୍ରତ୍ୟାଶିତ ଘଟଣାରେ ସମବେତ ଜନତା ସ୍ତମ୍ଭିତ ଓ ଚକିତ ହୋଇଗଲେ । ସୁତରାଂ ସଭାରେ ଘୋର ଆଲୋଡ଼ନ ଓ ହୈଚୈ ଆରମ୍ଭହୋଇଗଲା । ମଦନଲାଲ କିନ୍ତୁ ସେମିତି ଅବିଚଳିତ ଭାବେ ନିଜର ରିଭଲଭର ଧରି ଛିଡ଼ା ହୋଇଥା'ନ୍ତି । ପଳାଇ ଯିବାକୁ ଉଦ୍ୟମ ସୁଦ୍ଧା କଲେ ନାହିଁ । କାରଣ ସେ ବହୁ ପୂର୍ବରୁ ସ୍ଥିର କରିଥିଲେ ଯେ ଉଇଲି ହତ୍ୟାର ସମ୍ଭାବ୍ୟ ସମସ୍ତ ପରିଣତିକୁ ସହ୍ୟ କରିବେ ।

ତାଙ୍କର ସ୍ପଷ୍ଟ ବିଚାର ଥିଲା ଯେ ଉଇଲି ହତ୍ୟା ଫଳରେ ଇଂରେଜ ସରକାର ଭାରତୀୟ ଛାତ୍ରଙ୍କ ଶକ୍ତି ଓ ସାମର୍ଥ୍ୟ ଏବଂ ସରକାର ପ୍ରତି ସେମାନଙ୍କର ଅସନ୍ତୋଷର ପ୍ରମାଣ ପାଇ ଭବିଷ୍ୟତ୍ ପାଇଁ ଅଧିକ ସାବଧାନ ହେଉ । ଦ୍ୱିତୀୟତଃ ଇଂରେଜମାନେ ଅଜେୟ ବୋଲି ଯେଉଁ ଧାରଣା ଭାରତରେ ବହୁ ଲୋକଙ୍କ ଭିତରେ ରହିଛି ତାହା ଦୂରହେବା ସଙ୍ଗେ ସଙ୍ଗେ ଭାରତୀୟ ସଶସ୍ତ୍ର ମୁକ୍ତି ସଂଗ୍ରାମୀମାନଙ୍କ ଭିତରେ ସାହସ, ଧୈର୍ଯ୍ୟ ଏବଂ ଉତ୍ସାହ ବୃଦ୍ଧିପାଇବ ଏବଂ ସେମାନେ ଅଧିକ ବୀରତ୍ୱ ଓ ନିର୍ଭୀକତା ସହକାରେ ଅଗ୍ରସର ହୋଇପାରିବେ । ସୁତରାଂ ମଦନଲାଲଙ୍କୁ ପୁଲିସ ଅନାୟାସରେ ଗିରଫ କଲେ ।

ମଦନଲାଲଙ୍କର ବିଚାର ଚାଲିଲା । ସ୍ୱପକ୍ଷ ସମର୍ଥନରେ ସେ କୌଣସି ଓକିଲ ନ ଦେଇ ନିଜେ ଲଢ଼ିଲେ । କୋର୍ଟରେ ତାଙ୍କର ଜ୍ୱାଳାମୟୀ ଜମାନବନ୍ଦୀ ବିଚାର ଇତିହାସରେ ଏକ ଅନବଦ୍ୟ କ୍ଲାସିକ ଭଳି ଚିରଭାସ୍ୱର ହୋଇ ରହିଛି । କୌଣସି ଅଭିଜ୍ଞ ଓକିଲ ବାରିଷ୍ଟର ମଧ୍ୟ ଏଭଳି ଭାବବ୍ୟଂଜକ ଏବଂ ପ୍ରଭାବଶାଳୀ ଜବାବ ସୁଆଲ କରିବାକୁ କେଉଁ ସମର୍ଥ ହୋଇ ନ ଥାନ୍ତା । କାରଣ ଏହା କେବଳ ଆଇନର ସୂକ୍ଷ୍ମ ବିଶ୍ଳେଷଣ ବା ନଜିର ଉଦ୍ଧୃତିରେ ଭାରାକ୍ରାନ୍ତ ହୋଇ ନ ଥିଲା, ଏହା ଯଥାର୍ଥରେ ଉଚ୍ଚକୋଟୀର ଦେଶାତ୍ମବୋଧ ଓ ଦୃପ୍ତ ରାଜନୈତିକ ଚେତନାରେ ସମୃଦ୍ଧ ଏକ ଐତିହାସିକ ଦଲିଲ ।

ମଦନଲାଲ ଦୃପ୍ତ କଣ୍ଠରେ କହିଲେ, "ମୁଁ ଗୋଟିଏ ମାତ୍ର କଥା କହିବି ଯେ ମୁଁ ଇଚ୍ଛାକରି ଲାଲକକାଙ୍କୁ ହତ୍ୟା କରିନାହିଁ । ସେ ଦୌଡ଼ିଆସି ମୋତେ ଜାବୁଡ଼ି ଧରିବାକୁ ଚାହିଁଥିଲା, ମୁଁ ଆତ୍ମରକ୍ଷା କରିବାକୁ ତାଙ୍କୁ ଗୁଳି କରିଛି । ତୁମେମାନେ ମନ ଖୁସିରେ ମୋର ବିଚାରକର । ମୋ'ର ଆପତ୍ତି ନାହିଁ । ତୁମେ ଶ୍ୱେତାଙ୍ଗ ଦଳ ବର୍ତ୍ତମାନ କ୍ଷମତାରେ ଅଛ । କିନ୍ତୁ ମନେରଖ — ଆମ ବେଳ ବି ଦିନେ ଆସିବ ।"

ମଦନଲାଲ ଜେଲରେ ଥିଲାବେଳେ ତାଙ୍କର ସହପାଠୀ ଓ ଅନ୍ୟତମ ମହାନ୍ ବିପ୍ଳବୀ ବିନାୟକ ସଭରକର ଓ ଭି.ଭି.ଏସ. ଆୟାର ତାଙ୍କୁ ଦେଖିବାକୁ ଯାଇଥିଲେ ସେଠୁ ଫେରି ସଭରକର କହିଲେ, "ଆମେ ଆଜି ଯେଉଁ ମଦନଲାଲଙ୍କୁ ଦେଖିଲୁ, ସେ ତ ସେହି ଦୃପ୍ତ, ଚଞ୍ଚଳ ଓ ଅତି ପରିଚିତ ବନ୍ଧୁ ମଦନଲାଲ ନୁହନ୍ତି- ଏ ତ ଆତ୍ମନିବେଦିତ ବୀର୍ଯ୍ୟବାନ୍ ଏକ ତରୁଣ ତାପସ । ଗୀତାର ଭଗବାନ୍‌ଙ୍କୁ ଯେଉଁ ଦୃଷ୍ଟିରେ ଦେଖି ଅର୍ଜୁନ କର୍ମନିୟୁକ୍ତ ହୋଇଥିଲେ, ନୟନରେ ତାଙ୍କର ସେହି ସଗଭୀର ଦୃଷ୍ଟି ।"

ଉଇଲି ହତ୍ୟାର ଯଥାର୍ଥତା ଓ ଆବଶ୍ୟକତା ପ୍ରତିପାଦିତ କରି ମଦନଲାଲ କୋର୍ଟରେ ପୁଣି କହିଲେ, "ଜର୍ମାନମାନଙ୍କର ଯେମିତି ଇଂଲଣ୍ଡ ଦଖଲ କରିବାର କୌଣସି ଅଧିକାର ନାହିଁ, ଇଂଲଣ୍ଡର ସେହିଭଳି ଭାରତ ଦଖଲ କରିବାର ଅଧିକାର ନାହିଁ । ଅତଏବ ଯେଉଁ ଇଂରେଜ ଆମର ପବିତ୍ର ଜନ୍ମଭୂମି ଭାରତବର୍ଷକୁ ଅପବିତ୍ର କରିବାକୁ ଚାହେଁ ତାକୁ ହତ୍ୟା କରିବା ମୋ' ନିକଟରେ ନ୍ୟାୟର ନିର୍ଦ୍ଦେଶ । ଇଂରେଜର କପଟତା,

ଅଶୋଭନୀୟ ମିଥ୍ୟାଚାର ଓ ସମ୍ମାନହାନି କରଣ ଆଚରଣ ଦେଖି ମୁଁ ସ୍ତମ୍ଭିତ । ମୁଁ ବିଶ୍ୱାସ କରେ ଯେ ବିଦେଶୀର ବାୟୋନଟ ମୁନରେ ଯେଉଁ ଜାତିକୁ ଦବାଇରଖାଯାଇଛି, ସେ ସର୍ବଦା ବିବଦମାନ ପାର୍ଶ୍ୱରେ ଅବସ୍ଥିତ । ଯୁଦ୍ଧବାଦ୍ୟ ସେଠାରେ ଅହରହ ବାଜୁଛି । କିନ୍ତୁ ଅସ୍ତ୍ରହୀନ ଜାତି ପକ୍ଷରେ ସମ୍ମୁଖ ଯୁଦ୍ଧର ପ୍ରଶ୍ନ ଅବାନ୍ତର, ସେଥିପାଇଁ ମୁଁ ଅତର୍କିତ ଆକ୍ରମଣ କରିଛି । ମୋତେ ବନ୍ଧୁକ ଲାଇସେନ୍ସ୍ ଦିଆଯାଇନାହିଁ, ସେଥିପାଇଁ ମୁଁ ଚୋରି ବନ୍ଧୁକଦ୍ୱାରା ଶତ୍ରୁ ଉପରେ ଆକ୍ରମଣ କରିଛି ।'' ସେ ପୁଣି କହିଲେ, ''ମୁଁ ହିନ୍ଦୁଭାବରେ ବିଶ୍ୱାସ କରେ ଯେ ମୋର ଦେଶ ଜନନୀର ଅସମ୍ମାନ ବିଧାତାର ଅସମ୍ମାନ ସଙ୍ଗେ ସମାନ, ଦେଶର କାର୍ଯ୍ୟ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କର କାର୍ଯ୍ୟ; ଦେଶର ସେବା ପ୍ରଭୁ ଶ୍ରୀକୃଷ୍ଣଙ୍କର ସେବା । ମୁଁ ବିଦ୍ୟାହୀନ, ବୁଦ୍ଧିହୀନ, ବିତ୍ତହୀନ । ଜନନୀର ପୂଜା ବେଦୀ ତଳେ ଅର୍ଘ୍ୟ ଦେବାକୁ ଛାତିର ରକ୍ତ ଛଡ଼ା ମୋର ଆଉ କିଛି ନାହିଁ । ସେହି ରକ୍ତହିଁ ମୁଁ ନିବେଦନ କରିଛି ।''

କହିଚାଲିଲେ ମଦନଲାଲ ''ବର୍ତ୍ତମାନ ଭାରତବର୍ଷରେ ଗୋଟିଏ ମାତ୍ର ଶିକ୍ଷାର ପ୍ରୟୋଜନ । ସେ ଶିକ୍ଷା ହେଉଛି – ମୃତ୍ୟୁବରଣର ଶିକ୍ଷା । ସେହି ଶିକ୍ଷାଦାନର ଗୋଟିଏ ମାତ୍ର ପଥ–ଆତ୍ମବଳିଦାନର ପଥ, ସେଥିପାଇଁ ମୁଁ ମୃତ୍ୟୁବରଣ କରିଛି । ମୋ'ର ଏହି ଆତ୍ମନିବେଦନ ସାର୍ଥକହେଉ ।''

ତା' ପରେ ମୃତ୍ୟୁଞ୍ଜୟୀ ଧୀଙ୍ଗ୍ରାଙ୍କ କଣ୍ଠରୁ ପ୍ରକାଶିତହେଲା ତାଙ୍କର ଅନ୍ତିମ ଅଭିଳାଷ – ଏକ ଅଭିନବ ଆକାଂକ୍ଷା– ''ବିଧାତାଙ୍କ ନିକଟରେ ମୋ'ର ଗୋଟିଏ ମାତ୍ର ପ୍ରାର୍ଥନା– ମୁଁ ଯେପରି ମୋ'ର ଗର୍ଭଧାରିଣୀ କୋଳରେ ବାରମ୍ବାର ଜନ୍ମଗ୍ରହଣ କରି ମୋ'ର ଦେଶୋଦ୍ଧାର ସାଧନରେ ବାରମ୍ବାର ମୃତ୍ୟୁକୁ ଆଲିଙ୍ଗନକରେଁ – ଯେତେଦିନଯାଏ ମୋ'ର ମାତୃଭୂମି ସ୍ୱାଧୀନ ନହୋଇଛି, ଯେତେଦିନ ଯାଏ ବିଶ୍ୱ ସଭାରେ ସେ ଗୌରବ ଆସନ ଗ୍ରହଣ ନ କରିଛି ।''

ଧୀଙ୍ଗ୍ରାଙ୍କର ଏହି ଅମରବାଣୀ କୋଟି କୋଟି ବିମୁଗ୍ଧ ଦେଶବାସୀଙ୍କ ପକ୍ଷରେ ହେଲା ଏକ ଆଗ୍ନେୟ ଆହ୍ୱାନ ।

୧୯୦୮ ଅଗଷ୍ଟ ୧୭ ତାରିଖରେ ମଦନଲାଲଙ୍କୁ ଫାଶୀଦିଆଗଲା । ଭାରତ ବାହାରେ ବିଲାତ ମାଟିରେ ପ୍ରଥମ ଭାରତୀୟ ସହିଦ ହେବାର ଗୌରବ ଅର୍ଜନ କରି ମଦନଲାଲ ହସି ହସି ଫାଶୀ ମଞ୍ଚକୁ ଆଲିଙ୍ଗନକଲେ ।

ଶ୍ରୀ ଅରବିନ୍ଦ 'କର୍ମଯୋଗୀନ୍' ପତ୍ରିକାରେ ଜୁଲାଇ ୩୧ (୧୯୦୯) ସଂଖ୍ୟାରେ ଲେଖିଲେ – "Here (in India) his country remains to bear the consequences of his act." (ତାଙ୍କ କାର୍ଯ୍ୟର ପରିଣତି ବହନ କରିବାକୁ ଏଠାରେ ତାଙ୍କର ଦେଶ ରହିଲା ।)

ଧୀଙ୍ଗ୍ରାଙ୍କର ,ଅପୂର୍ବ ସାହସିକତା, ଫାଶୀ ମଞ୍ଚ ସମ୍ମୁଖରେ ତାଙ୍କର ନିର୍ଭୀକ ଜମାନବନ୍ଦୀ ସାରା ବିଶ୍ୱର ଚିନ୍ତାଶୀଳ ମହଲରେ ଚହଳ ସୃଷ୍ଟି କରିଥିଲା । ଇଂଲଣ୍ଡର

ପ୍ରଖ୍ୟାତ ଲେଖକ W.S Blunt ତାଙ୍କର My Diaries ବହିରେ ଲେଖିଛନ୍ତି – "କୌଣସି ଖ୍ରୀଷ୍ଟିଆନ ସହିଦ ଧୀଙ୍ଗ୍ରାଙ୍କ ଅପେକ୍ଷା ଅଧିକ ନିଃଶଙ୍କ ଚିତ୍ତରେ ତା ମାହାତ୍ମ୍ୟ ସହ ବିଚାରକ ସମ୍ମୁଖରେ ଠିଆହୋଇପାରିନି । ତାଙ୍କର ମୃତ୍ୟୁ ଦିବସ ଭାରତଭୂମିରେ ଆବହମାନ କାଳ ସହିଦ ତର୍ପଣର ସୌନ୍ଦର୍ଯ୍ୟ ସହ ପାଳିତହେବ ।"

ଜନୈକ ବିଶିଷ୍ଟ ଇଂରେଜଙ୍କ ସହ ସାକ୍ଷାତ ପରେ ସେ ଲେଖିଛନ୍ତି – "He talked about Dhingra's assasination, which seems to have at least convinced his loyal friends that there is something wrong about political assasination defeating its own end, but that is nonsence. It is just a shock need to convince selfish rulers that selfishness has its limits of imprudence. It is like that other fiction that England never yield to threats, My experience is that when England has her face well-slapped, she apologises, not before."

(ସେ ଧୀଙ୍ଗ୍ରାଙ୍କର ହତ୍ୟାକାଣ୍ଡ ସଂପର୍କରେ ମୋ ସହ ଆଲୋଚନା କଲେ, ଯେଉଁଥିରୁ କି ଜଣାପଡୁଥିଲା ଯେ ରାଜଭକ୍ତ ବନ୍ଧୁମାନେ ବୁଝିସାରିଲେଣି ଯେ ଭାରତର ପରିସ୍ଥିତିରେ ନିଶ୍ଚୟ କେଉଁଠି ଦୋଷ ରହିଛି । ଲୋକେ କହନ୍ତି ଯେ ରାଜନୈତିକ ହତ୍ୟାଦ୍ୱାରା କୌଣସି ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । କିନ୍ତୁ ଏହା ସବୁ ବାଜେ କଥା । ଏଭଳି ଗୋଟାଏ ଗୋଟାଏ ଧକ୍କା ସ୍ୱାର୍ଥପର ଶାସକମାନଙ୍କୁ ଚେତାଇ ଦିଏ ଯେ ସ୍ୱାର୍ଥପରତାର ଗୋଟାଏ ସୀମା ଅଛି । ଏହା ଏକ ମନଗଢ଼ା ଗପ ଯେ 'ଇଂଲଣ୍ଡ କେବେହେଲେ ଧମକରେ ଦବିଯାଏନା ।' ମୋ'ର ନିଜର ଅଭିଜ୍ଞତା ହେଉଛି ଏହା ଯେ ଇଂଲଣ୍ଡ ଗାଲରେ ଚାପୁଡ଼ା ନ ବସିବା ଯାଏ ସେ ଭୁଲ ବୁଝେନା କିମ୍ୱା କ୍ଷମା ମାଗେନା ।)

ନିଜେ ଲର୍ଡ଼ ଜର୍ଜ ଚର୍ଚ୍ଚିଲଙ୍କୁ ଲେଖିଥିଲେ "ଧୀଙ୍ଗ୍ରାଙ୍କର କୋର୍ଟ ପ୍ରଦତ୍ତ ଉକ୍ତି ଦେଶପ୍ରେମର ଶ୍ରେଷ୍ଠତମ ମାଧୁର୍ଯ୍ୟରେ ଉଜ୍ଜ୍ୱଳ । ତା'ର ତୁଳନା ଚଳେ କେବଳ ମାତ୍ର ପ୍ଲୁଟାର୍କବର୍ଣ୍ଣିତ ମୃତ୍ୟୁଞ୍ଜୟୀ ବୀର୍ଯ୍ୟବାନ୍‌ମାନଙ୍କ ସହ ସମାନ"

ସାବାସ୍ ଧୀଙ୍ଗ୍ରା, କୋଟି କୋଟି ପ୍ରଣାମ ତୁମକୁ ।

X X X X

ବଙ୍ଗ ବିଚ୍ଛେଦ ବିରୋଧୀ ଆନ୍ଦୋଳନ ବିରୋଧରେ ବଡ଼ଲାଟ ଲର୍ଡ଼ ହାର୍ଡ଼ିଂଞ୍ଜ ଯେତିକି ଯେତିକି ନିଷ୍ଠୁର ଦମନଲୀଳା ଚଳାଇଲା ତା'ର ପ୍ରତିକ୍ରିୟା ମଧ୍ୟ ସେମିତି ଭୟାବହ ହେଲା । ବିନାୟକ ଦାମୋଦର ସଭରକର ୧୯୦୭ରେ ଇଂଲଣ୍ଡରେ ପହଞ୍ଚିଥିଲେ । ସେ ଓ ତାଙ୍କର ବଡ଼ଭାଇ ଗଣେଶ ଦାମୋଦର ସଭରକର ବାଲ୍ୟକାଳରୁ ତିଲକଙ୍କଦ୍ୱାରା ପ୍ରଭାବିତ ହୋଇ ମହାରାଷ୍ଟ୍ରରେ ବିପ୍ଳବୀ ଅନୁଷ୍ଠାନ ଗଢ଼ିବାରେ ଅଗ୍ରଣୀ ଥିଲେ । ମିତ୍ରମେଳା ଓ ଅଭିନବ ଭାରତ ସମିତି, ବଙ୍ଗଳାର ଅନୁଶୀଳନ ସମିତି ଛାଞ୍ଚରେ ଗଠିତ ଗୋଟିଏ ଗୋଟିଏ ଶକ୍ତିଶାଳୀ ଗୁପ୍ତ ଅନୁଷ୍ଠାନ ଥିଲା । ବସ୍ତୁତଃ ମହାରାଷ୍ଟ୍ରୀୟ ବିପ୍ଳବୀମାନଙ୍କ ବୁଦ୍ଧି ଓ କୌଶଳହିଁ ସେତେବେଳେ ସମସ୍ତ ସଶସ୍ତ୍ର ବିପ୍ଳବୀ ଅନୁଷ୍ଠାନ

ପଛରେ ରହିଥିଲା । ୧୯୦୮ ଖ୍ରୀଷ୍ଟାବ୍ଦ ମଇ ୭ ତାରିଖ ସଂଖ୍ୟା 'ଦି ଟାଇମ୍‌ସ'' ପତ୍ରିକାରେ ପ୍ରକାଶିତ ହୋଇଥିଲା, "If Bengal has been chiefly conspicuous in its resort to destructive methods, the cunning brains that conceived and fostered the movement are probably to be found for the most part in Western India." (ଯଦିଓ ବଙ୍ଗଳା ଏହି ଧ୍ୱଂସାତ୍ମକ କାର୍ଯ୍ୟରେ ଅଗ୍ରଣୀ ଅଟେ ତେବେ ଏହାର ମୂଳ ପଶ୍ଚିମ ଭାରତର ଚତୁର ଏବଂ ଧୂର୍ତ୍ତ ମସ୍ତିଷ୍କପ୍ରସୂତ ।)

ସଭରକର ଆଇରିସ୍, ଫରାସୀ ଏବଂ ରୁଷିୟାନ ବିପ୍ଳବରେ ଏକାବେଳେ ଉତ୍ତପ୍ତ ହୋଇ ବିଲାତରେ ପହଞ୍ଚିଗଲେ । ତାଙ୍କର ଜ୍ୱାଳାମୟୀ ଭାଷଣ ଓ ଲେଖା ଭାରତୀୟ ଛାତ୍ରଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । 'ଇଣ୍ଡିଆ ହାଉସ୍'ର ସେ ପ୍ରାଣକେନ୍ଦ୍ର ହୋଇପଡ଼ିଲେ । କାଥିଆୱାଡ଼ର ଜନୈକ ପାର୍ଶୀ ମହିଳା ମାଡ଼ାମ ଭିକାଜି ରୁସ୍ତମ କାମା ବା ମାଡ଼ାମ କାମା ଓ ଶ୍ରୀଯୁକ୍ତା ସରୋଜିନୀ ନାଇଡୁଙ୍କ ସାନଭାଇ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ ମଧ୍ୟ ସେ ସମୟରେ ଇଂଲଣ୍ଡରେ ବିପ୍ଳବୀ ଅନୁଷ୍ଠାନରେ ସକ୍ରିୟ ଅଂଶ ନେଉଥିଲେ । କିନ୍ତୁ ଧୀଙ୍ଗ୍ରାଙ୍କ ସଶସ୍ତ୍ର ଅଭିଯାନ ପରେ ସେମାନଙ୍କ ଉପରେ ପୁଲିସର ତୀକ୍ଷ୍ଣ ଦୃଷ୍ଟି ପଡ଼ିଲା ।

ଠିକ୍ ସେହି ସମୟରେ ଅର୍ଥାତ ୧୯୦୯ ଡିସେମ୍ବର ୨୧ ତାରିଖରେ ଭାରତରେ ଆଉ ଏକ ଘଟଣା ଘଟିଲା ଯାହାକି ଲଣ୍ଡନଠାରୁ ପ୍ୟାରିସ୍ ପର୍ଯ୍ୟନ୍ତ ବିପ୍ଳବୀ ମହଲରେ ଏକ ବିରାଟ ଆଲୋଡ଼ନ ସୃଷ୍ଟି କଲା । ସେଦିନ ନାସିକର ଜିଲା ମାଜିଷ୍ଟ୍ରେଟ୍ ଜାକ୍ସନ ତା'ର ବିଦାୟ ସଭାରୁ ଫେରିଲାବେଳେ ଅନନ୍ତ ଲକ୍ଷ୍ମଣ କାନ ହରେ ନାମକ ଜନୈକ ମହାରାଷ୍ଟ୍ରୀୟ ବିପ୍ଳବୀ ସାମନାରେ ପଡ଼ିଲା । ଅନନ୍ତଙ୍କ ମନ ଭିତରେ ଜାକ୍ସନ ବିରୋଧରେ ଅସଂଖ୍ୟ ଅଭିଯୋଗ ବହୁଦିନୁ ପୁଂଜୀଭୂତ ହୋଇ ରହିଥିଲା, କାରଣ ଜାକ୍ସନ ଯେଉଁ କେତେଦିନ ନାସିକ ଜିଲ୍ଲା ଦାୟିତ୍ୱରେ ଥିଲା, ସେହି କେତେଦିନ ସେ ଲୋକଙ୍କୁ ଥରେଇ ଦେଇଥିଲା । ସୁତରାଂ ତା'ର ପ୍ରତିଶୋଧ ନେବାକୁ ବହୁଦିନୁ ବିପ୍ଳବୀ ମହଲ ସ୍ଥିର କରିଥିଲେ । ଅନନ୍ତ ଲକ୍ଷ୍ମଣ ଏ ସୁଯୋଗ ଛାଡ଼ିଲା ନାହିଁ, ଅନନ୍ତଙ୍କ ଗୁଳି ମାଡ଼ରେ ଜାକ୍ସନର ଛାତି ଖାଲି କଣା ହୋଇ ନ ଥିଲା, ଏକାବେଳେ ଝାଞ୍ଜରା ହୋଇଯାଇଥିଲା । ଅନନ୍ତ ସେଠାରୁ ଖସିଗଲେ କିନ୍ତୁ ପରେ ପୁଲିସ ତାଙ୍କୁ ଗିରଫ କରିନେଲା ଏବଂ ତାଙ୍କ ସହ ଆଉ ଛ' ଜଣ ବିପ୍ଳବୀ — କୃଷ୍ଣ ଗୋପାଳ କାର୍ଭେ, ବିନାୟକ ଦେଶପାଣ୍ଡେ, ଶଙ୍କର ସୋମାନ, ନାରାୟଣ ଯୋଷୀ, ଗଣେଶ ବୈଦ୍ୟ, ପାଣ୍ଡୁରାମ ଯୋଷୀ । ଗିରଫ ହେଲେ ବିଚାରରେ ଅନନ୍ତ ଲକ୍ଷ୍ମଣ, କୃଷ୍ଣ ଗୋପାଳ ଓ ଦେଶପାଣ୍ଡେ ଫାଶୀ ପାଇଲେ ।

କିନ୍ତୁ ସେତିକିରେ ସେ କଥା ତୁଟିଲା ନାହିଁ । ପୁଲିସ କୌଣସି ସୂତ୍ରରୁ ଖବର ପାଇଲେ ଯେ ଜାକ୍ସନକୁ ଯେଉଁ ରିଭଲଭରରେ ହତ୍ୟାକରାଯାଇଛି, ତାହା ଇଂଲଣ୍ଡରୁ ସଭରକରଙ୍କଦ୍ୱାରା ପ୍ରେରିତ ହୋଇଥିଲା । ଫଳରେ ଇଂଲଣ୍ଡରେ ଭାରତୀୟ ଛାତ୍ରଙ୍କ ଉପରେ ପୁଲିସର ଚଢ଼ାଉ ଆରମ୍ଭ ହେଲା ଏବଂ ଗିରଫ କରାଗଲା ବୀର ସଭରକରଙ୍କୁ ।

ସଭରକର ସେତେବେଳେ ଖାଲି ଇଂଲଣ୍ଡ ବା ଭାରତରେ ନୁହନ୍ତି, ସାରା ପୃଥିବୀରେ ଜଣେ ପରିଚିତ ବିପ୍ଳବୀ । ଲେଖକ, ବକ୍ତା ଓ ସଂଗଠକ ଭାବରେ ମଧ ତାଙ୍କର ପ୍ରସିଦ୍ଧିର ଅନ୍ତ ନ ଥିଲା । ସୁତରାଂ ତାଙ୍କର ଆରେଷ୍ଟ ଫଳରେ ପ୍ରାୟ ଚାରିଆଡ଼େ ଖୁବ୍ ଆଲୋଡ଼ନ ସୃଷ୍ଟି ହେଲା । ଜାହାଜରେ ଅଣାଗଲା ସଭରକରଙ୍କୁ ଭାରତ । କିନ୍ତୁ ବାଟରେ ଘଟିଲା ଏକ ଅଭାବନୀୟ କାଣ୍ଡ ! ଫ୍ରାନ୍ସର ମାର୍ସାଇ ବନ୍ଦରରେ ଜାହାଜ ନଙ୍ଗର କରିଥିବାବେଳେ ବୀର ସଭରକର କୌଶଳକ୍ରମେ ଜାହାଜରୁ ଓହ୍ଲାଇ ପହଁରି ପହଁରି କୂଳରେ ପହଞ୍ଚିଗଲେ । ଜାହାଜର ଜଗୁଆଳୀ ବା ବନ୍ଦର ପୁଲିସ କେହି ଏହା ଜାଣିପାରିଲେନାହିଁ । ସଭରକର ପ୍ୟାରୀ ସହରର ବିପ୍ଳବୀ ମହଲ ସହ ଖୁବ୍ ଭଲ ଭାବରେ ପରିଚିତ ଥିଲେ । ସୁତରାଂ ସେଠାରେ ଆଶ୍ରୟ ଖୋଜି ବାହାର କରିବାକୁ ତାଙ୍କୁ ବେଶୀ ସମୟ ଲାଗି ନ ଥିଲା । ଏଣେ ଜାହାଜରୁ ସଭରକରଙ୍କ ଅନ୍ତର୍ଦ୍ଧାନ ଖବର ଜଣାଯିବା ସଙ୍ଗେ ସଙ୍ଗେ ପ୍ରବଳ ହୈ-ଚୈ ପଡ଼ିଗଲା । ଶେଷରେ ଫ୍ରାନ୍ସ ପୁଲିସର ପ୍ରବଳ ଉଦ୍ୟମ ଫଳରେ ସଭରକର ଗିରଫହେଲେ । ସେତେବେଳେ ମାଡ଼ାମ କାମା ଇଂଲଣ୍ଡରୁ ଯାଇ ପ୍ୟାରିସ୍‌ଠାରେ ଆସ୍ଥାନ ଜମେଇ ସାରିଥା'ନ୍ତି । ସେ ସଭରକରଙ୍କୁ ଖଲାସ କରିବାକୁ ବହୁ ଉଦ୍ୟମ କଲେ । କାମାଙ୍କର ଆଶାଥିଲା – Liberty, Equality ଓ Fraternityର ଦେଶ ଓ ବିପ୍ଳବର ମାତୃଭୂମି ଫ୍ରାନ୍ସଦେଶରୁ ସେ ନ୍ୟାୟ ପାଇବେ – ଅନ୍ତତଃ ସଭରକରଙ୍କ ଭଳି ଜଣେ ବିପ୍ଳବୀଙ୍କୁ ଅସହାୟ ଭାବରେ ଫ୍ରାନ୍ସ ସରକାର ଅତ୍ୟାଚାରୀ ଇଂରେଜଙ୍କ ହାତରେ ଏମିତି ଟେକି ଦେବେ ନାହିଁ ବୋଲି । କିନ୍ତୁ ନାଃ, ତା ହେଲା ନାହିଁ । ଫ୍ରାନ୍ସ ଓ ଇଂଲଣ୍ଡ ଉଭୟ ଦୁଇଟି ସାମ୍ରାଜ୍ୟବାଦୀ ରାଷ୍ଟ୍ର, ସୁତରାଂ ସେମାନଙ୍କ ଶ୍ରେଣୀ ଚରିତ୍ରରେ କୌଣସି ପାର୍ଥକ୍ୟ ଥିବାର କାରଣ ନ ଥିଲା । ବିନାୟକ ସଭରକରଙ୍କ ଭାଇ ଗଣେଶ ଓ ଶ୍ୟାମଜୀ କୃଷ୍ଣଙ୍କର ବାରିଷ୍ଟରୀ ଲାଇସେନ୍ସ ପ୍ରତ୍ୟାହାର କରିନିଆଗଲା ।

'ପ୍ରଥମ ନାସିକ ଷଡ଼ଯନ୍ତ୍ର' ମକଦ୍ଦମା ଚାଲୁହୋଇ ସଭରକରଙ୍କୁ ଦିଆଗଲା ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ । ପିସ୍ତଲ ଯୋଗାଇଥିବା ଅଭିଯୋଗରେ ଆଉ ଏକ ମକଦ୍ଦମାରେ ମଧ ତାଙ୍କୁ ପୁଣିଥରେ ଦ୍ୱୀପାନ୍ତର ଦଣ୍ଡ ଦିଆଗଲା । ଏହି ମକଦ୍ଦମା ବିଚାର କରିବାକୁ ସରକାରଙ୍କୁ ମୋଟେ ସାତଦିନ ସମୟ ଲାଗିଥିଲା । ବିନାୟକଙ୍କୁ ଦୁଇଥର ଦ୍ୱୀପାନ୍ତର ଦେଇ ସୁଦ୍ଧା ସରକାର ନିଶ୍ଚିତ ହୋଇପାରିଲା ନାହିଁ । ବଡ଼ଭାଇ ଗଣେଶ ସଭରକରଙ୍କୁ ମଧ୍ୟ ବିଚାରାଳୟକୁ ଅଣାଗଲା । ଗଣେଶ ବହୁ ବିପ୍ଳବାତ୍ମକ କାବ୍ୟ କବିତାର ରଚୟିତା ଥିଲେ । ସେଥିମଧ୍ୟରୁ 'ଲଘୁ ଅଭିନବ ଭାରତମେଳା'' କାବ୍ୟ ଥିଲା ପ୍ରଧାନ ଯାହାର ଛତ୍ରେ ଛତ୍ରେ ଭରିରହିଥିଲା ଦେଶାତ୍ମବୋଧର ଆହ୍ୱାନ ଓ ସଶସ୍ତ୍ର ବିପ୍ଳବର ଡାକରା । ଏହି କାବ୍ୟ ଲେଖିଥିବା ଅଭିଯୋଗରେ ତାଙ୍କୁ ମଧ୍ୟ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦିଆଗଲା । ଏହିଭଳି ଭାବରେ ବିପ୍ଳବୀ ସଭରକର ଭ୍ରାତୃଦ୍ୱୟ ବହୁବର୍ଷ ଆଣ୍ଡାମାନର ଅନ୍ଧକାର ପ୍ରକୋଷ୍ଠ ଭିତରେ ଜେଲଦଣ୍ଡ ଭୋଗକଲେ । ମହାରାଷ୍ଟ୍ରୀୟ ଚାପେକାର ଭ୍ରାତୃତ୍ରୟଙ୍କୁ ଛାଡ଼ିଲେ ସଭରକର ଭ୍ରାତୃଦ୍ୱୟହିଁ ଥିଲେ ସଶସ୍ତ୍ର ସଂଗ୍ରାମରେ ଅଗ୍ରଣୀ । ❐ ❐ ❐

## ଅଧ୍ୟାୟ - ତେର

# ଅଲିପୁର ବୋମାକେଶ୍ ଓ ତା'ପରେ

ବରୋଦାରେ ପ୍ରକାଶିତ ହେଉଥିବା ଜାତୀୟବାଦୀ ପତ୍ରିକା 'ଇନ୍ଦୁପ୍ରକାଶ'ରେ ଅରବିନ୍ଦଙ୍କର ଅଗ୍ନିବର୍ଷୀ ରଚନା ପ୍ରକାଶନ ବନ୍ଦକରିବାକୁ କଂଗ୍ରେସର ରକ୍ଷଣଶୀଳ ନେତୃତ୍ୱ ସଫଳ ହେଲା ସତ୍ୟ, କିନ୍ତୁ ଅରବିନ୍ଦଙ୍କର ଜ୍ୱାଳାମୟୀ ଲେଖନୀ ଓ ଆଗ୍ନେୟ ନେତୃତ୍ୱକୁ ସ୍ତବ୍ଧ କରିପାରିଲା ନାହିଁ । ଅରବିନ୍ଦ କଲିକତା ଚାଲିଆସିଲେ ବରୋଦାରୁ ଏବଂ ତାହା ହେଲା ତାଙ୍କର କର୍ମକ୍ଷେତ୍ର । ପଣ୍ଡିଚେରିକୁ ଯିବା ପର୍ଯ୍ୟନ୍ତ ସେ କଲିକତାରେ ହିଁ ଅଧିକାଂଶ ସମୟ ରହିଲେ । ଠିକ୍ ସେହି ସମୟରେ ସ୍ୱାମୀ ବିବେକାନନ୍ଦଙ୍କର ମାନସ କନ୍ୟା ବିପ୍ଳବିଣୀ ସନ୍ନ୍ୟାସିନୀ ଭଗିନୀ ନିବେଦିତା ମଧ୍ୟ କଲିକତାରେ । ଅରବିନ୍ଦଙ୍କର ସାନଭାଇ ବାରୀନ ବାବୁ, ଯତୀନ ମୁଖାର୍ଜି (ବାଘା ଯତୀନ) ଯତୀନ ବାନାର୍ଜୀ, ଉଲ୍ଲାସକର ଦତ୍ତ ଓ ଦେବବ୍ରତ ବସୁଙ୍କ ଭଳି ମହାନ୍ ସତୀର୍ଥମାନଙ୍କ ସହ ଅରବିନ୍ଦ ଆରମ୍ଭ କଲେ ବ୍ୟାପକ ବିପ୍ଳବ ପ୍ରଚେଷ୍ଟା । 'ଅନୁଶୀଳନ ସମିତି''ର ନେତୃତ୍ୱରେ ଆରମ୍ଭ ହେଲା ଶରୀର ଚର୍ଚ୍ଚା ଓ ଆଧ୍ୟାତ୍ମିକ ଆଲୋଚନା ଏବଂ ତା' ପରେ ଚାଲିଲା ନାନା ବୈପ୍ଳବିକ ପ୍ରସ୍ତୁତି । ବିପ୍ଳବୀ ହେମଚନ୍ଦ୍ର ଘୋଷ କହିଛନ୍ତି ଯେ ଅନୁଶୀଳନ ସମିତିରେ ପ୍ରଥମେ ବୈପ୍ଳବିକ କାର୍ଯ୍ୟକ୍ରମ ନ ଥିଲା; ପରେ 'ବଙ୍ଗ ବିଚ୍ଛେଦ' ଆନ୍ଦୋଳନ ବେଳେ ତାହା ପ୍ରବେଶ କଲା । ଅଳ୍ପଦିନ ଭିତରେ ବଙ୍ଗଳାର ଗାଁଗହଳରେ ଏହାର ଅସଂଖ୍ୟ ଶାଖା ଗଠିତ ହେଲା । କ୍ଷୁଦିରାମ ଓ ପ୍ରଫୁଲ୍ଲଙ୍କର ଅପୂର୍ବ ଆତ୍ମତ୍ୟାଗ ବିପ୍ଳବୀ ମହଲକୁ ଏମିତି ମୁଗ୍ଧ ଓ ପ୍ରଭାବିତ କରିଥିଲା ଯେ ବାରମ୍ବାର ସେହିଭଳି ସଶସ୍ତ୍ର ଅଭିଯାନ କରିବାକୁ ଚାଲିଥିଲା ବ୍ୟାପକ ପ୍ରସ୍ତୁତି । ବିଭିନ୍ନ ସ୍ଥାନରେ ଗୋପନରେ ଅସ୍ତ୍ରଶସ୍ତ୍ର ତିଆରି ଓ ତାଲିମ କେନ୍ଦ୍ର ଖୋଲାଯାଇ ଜୋରସୋରରେ କାମ ଆଗେଇଚାଲିଥିଲା । ବିପ୍ଳବୀ ଉଲ୍ଲାସ ଦତ୍ତ କେବଳ ଜଣେ ନାମଜାଦା ସଶସ୍ତ୍ର ବିପ୍ଳବୀ ନ ଥିଲେ, ବୋମା ପ୍ରଭୃତି ମାରଣାସ୍ତ୍ର ତିଆରି କରିବାରେ ମଧ୍ୟ ସେ ସିଦ୍ଧହସ୍ତ ଥିଲେ । ତାଙ୍କରି ଫର୍ମୁଲାରେ ବୋମାସବୁ ତିଆରି ହେଉଥିଲା । କିନ୍ତୁ ତାକୁ ପରୀକ୍ଷା କରିବାକୁ ଉପଯୁକ୍ତ ସ୍ଥାନର ଖୁବ୍ ଅଭାବ ଥିଲା । ବୋମା ପରୀକ୍ଷା କେବେହେଁ ଗୋପନ ସ୍ଥାନରେ ହୋଇପାରିବନାହିଁ । ସେଥିପାଇଁ ଆବଶ୍ୟକ ଘନ ଅରଣ୍ୟ ବା ଖୋଲାପଡ଼ିଆ । ଏହିଭଳି ଏକ ବୋମାକୁ ପରୀକ୍ଷା କରିବାକୁ ନେଇଥିଲେ ଅନ୍ୟତମ ବିପ୍ଳବୀ ପ୍ରଫୁଲ୍ଲ ଚକ୍ରବର୍ତ୍ତୀ । ବୃହତ୍ତମ ବୋମା ତିଆରି

କେନ୍ଦ୍ର ଥିଲା ବିହାରର ବୈଦ୍ୟ ନାଥ ଧାମରେ । ସେଠାରୁ ବୋମାନେଇ ଦିଘିଡ଼ିଆ ପାହାଡ଼ ଉପରେ ତାକୁ ବିସ୍ଫୋରଣ କରିବାର ଯୋଜନା ହୋଇଥିଲା । ପ୍ରଫୁଲ୍ଲ ଏକ ଉଚ୍ଚ ଶକ୍ତିସଂପନ୍ନ ବୋମା ନେଇ ସେଠାକୁ ପରୀକ୍ଷା କରିବାକୁ ଯାଇଥିଲେ । କିନ୍ତୁ ଦୁର୍ଭାଗ୍ୟର କଥା ଯେ ପାହାଡ଼ ଉପରେ ବୋମାଟି ରଖୁରଖୁ ତାହାର ବିସ୍ଫୋରଣ ଘଟିଲା । ବିପ୍ଳବୀ ପ୍ରଫୁଲ୍ଲ ସେହି ବିସ୍ଫୋରଣ ଫଳରେ ପ୍ରାଣ ହରାଇଲେ । ଲୋକଲୋଚନର ଅନ୍ତରାଳରେ ଏବଂ ସମସ୍ତଙ୍କ ଅଜ୍ଞାତରେ ଏକ ମହାନ୍ ଜୀବନ ସେଇଠି ଶେଷ ହୋଇଗଲା । ସତୀର୍ଥ ବନ୍ଧୁମାନେ ଏହି ସଂବାଦ ପାଇ ସେହିଠାରେ ସେହି ପାହାଡ଼ ଉପରେ ସେହି ଅମର ଆତ୍ମା ପ୍ରତି ଅଶ୍ରୁତର୍ପଣ କଲେ । ଆଉକିଛି କରିବାର ନ ଥିଲା । କିନ୍ତୁ ବୋମାର ସଫଳତା ନିର୍ଭୁଲ ଭାବରେ ପ୍ରତିପାଦିତ ହେଲା । କ୍ଷୁଦିରାମ ଓ ପ୍ରଫୁଲ୍ଲ କିଂସ୍‌ଫୋର୍ଡ଼ ଉପରେ ନିକ୍ଷେପ କରିଥିବା ବୋମା ମଧ୍ୟ ଉଲ୍ଲାସଙ୍କର ଫର୍ମୁଲାରେ ତିଆରି ହୋଇଥିଲା । ସୁତରାଂ ବୋମାର ସଫଳତା ସଂପର୍କରେ ଆଉ କାହାରି ସନ୍ଦେହ ରହିଲା ନାହିଁ । କିନ୍ତୁ ପୁଲିସ ଆଖିରୁ ଏହି ଦୁର୍ଘଟଣା ଅଧିକ ଦିନ ଲୁଚି ରହିପାରିଲାନି ।

ଅରବିନ୍ଦ ବରୋଦାରୁ ଠିକ୍ ଏହି ଆଶଙ୍କା କରିଥିଲେ ଏବଂ ବୈଦ୍ୟନାଥ ଧାମରେ ବୋମାକେନ୍ଦ୍ର ରଖିବା ଆଉ ନିରାପଦ ନୁହେଁ ବୋଲି ଭାବି ବାରୀନ ବାବୁଙ୍କୁ ତାହା ସେଠାରୁ ଉଠାଇ ନେବାକୁ ଲେଖିଲେ ଏବଂ କଲିକତାର ମାନିକତାଲାରେ ଏହି କେନ୍ଦ୍ରଟି ଚାଲୁ କରିବାକୁ ନିର୍ଦ୍ଦେଶ ଦେଲେ ଓ ଅଧିକ ସାବଧାନ ରହିବାକୁ ପରାମର୍ଶ ଦେଲେ ।

କିଂସ୍‌ଫୋର୍ଡ଼ ଉପରେ କ୍ଷୁଦିରାମଦ୍ୱାରା ବୋମା ଆକ୍ରମଣର ଠିକ୍ ଦିନକ ଆଗରୁ ୨୯-୪-୧୯୦୮ ରେ 'ବନ୍ଦେ ମାତରମ୍' ପତ୍ରିକାରେ ଅରବିନ୍ଦଙ୍କର ଗୋଟିଏ ପ୍ରବନ୍ଧ ପ୍ରକାଶିତ ହୋଇଥିଲା – "Revolution bare and grim is preparing her battle field moving down the centres of order which were evolving a new cosmos and building up the materials of gigantic downfall and mighty new creation. We would wish it otherwise. But God's will be done." (କଠିନ ଓ ନିରଙ୍କୁଶ ବିପ୍ଳବ ତା'ର ପ୍ରଳୟଙ୍କରୀ ଅଭିଯାନ ରଚନାରେ ସତତ ଚେଷ୍ଟିତ । ବିପୁଳ ପତନ ଓ ତତ୍‌ସ୍ଥଳେ ନୂତନତାର ବିରାଟ ସୃଷ୍ଟି । ସେହି ବିପ୍ଳବୀର ପଦକ୍ଷେପ, ଆମ୍ଭେମାନେ ଅନ୍ୟପ୍ରକାର ଚାହିଁଲେ ମଧ୍ୟ ଗତ୍ୟନ୍ତର ନାହିଁ । ବିଧାତାର ଇଚ୍ଛାହିଁ ଜୟୀହେବ ।)

ଏହି ଲେଖାଟି ପ୍ରକାଶିତ ହେବାର ଠିକ୍ ପରଦିନ କ୍ଷୁଦିରାମ ଓ ପ୍ରଫୁଲ୍ଲ କିଂସ୍‌ଫୋର୍ଡ଼ ଉପରେ ବୋମା ପକାଇଲେ । ପୁଲିସ ଏହି ଦୁଇଟି ଘଟଣା ଭିତରେ କୁଆଡ଼େ ଘନିଷ୍ଠ ସଂପର୍କ ଥିବାର ଲକ୍ଷ୍ୟ କଲେ ଏବଂ ଅରବିନ୍ଦଙ୍କ ଉପରେ ଥିବା ସନ୍ଦେହ କ୍ରମେ ଘନୀଭୂତ ହେଲା ।

ଯାହେଉ ଅରବିନ୍ଦଙ୍କର ସାବଧାନ ବାଣୀ ସତ୍ତ୍ୱେ ବାରୀନ୍ଦ୍ର ଅସାବଧାନ ହେଲେ । ଫଳରେ ମଇମାସ ଦୁଇ ତାରିଖ ୧୯୦୭ରେ କଲିକତାର ମୁରାରୀପୁକୁର କେନ୍ଦ୍ରରେ ଥିବା ବୋମା କାରଖାନାରେ ପୁଲିସ ଚଢ଼ାଉକଲା ଏବଂ ସେଠାରୁ ଜବତ ହେଲା ବହୁ

ହାତବୋମା ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର । ଖାଲି ସେତିକି ନୁହେଁ ୧୫ ନମ୍ବର ଗୋପୀ ଦତ୍ତ ଲେନ୍, ୧୩୪ ନମ୍ବର ହାରିସନ ରୋଡ଼ ଓ ୩୪/୪ ନମ୍ବର ରାଜା ନବକୃଷ୍ଣ ଷ୍ଟ୍ରିଟ୍ ଓ ବିହାର ଦେଓଗଡ଼ସ୍ଥ ସିଲଙ୍କର ବାସଭବନରୁ ବହୁସଂଖ୍ୟକ ଅସ୍ତ୍ରଶସ୍ତ୍ର, ବୋମା ତିଆରି ବିସ୍ଫୋରକ ଦ୍ରବ୍ୟ ସବୁ ଧରାହେଲା ଏବଂ ଅରବିନ୍ଦ ଗିରଫ ହେଲେ ତାଙ୍କ ବାସଭବନରୁ ସେଇ ମଇ ଦୁଇ ତାରିଖରେ । ଖାଲି ଅରବିନ୍ଦ ନୁହନ୍ତି, ଗିରଫ ହେଲେ ସାନଭାଇ ବାରୀନ ଘୋଷ, କାନାଇ ଦତ୍ତ, ସତ୍ୟେନ ବସୁ ଓ ଉଲ୍ଲାସକର ଦତ୍ତ ପ୍ରଭୃତି ୩୮ ଜଣ ବିପ୍ଳବୀ । ମୋଟ ଦୁଇଟି ଦଳରେ ସେମାନେ ଗିରଫ ହେଲେ । ହାତରେ ହାତକଡ଼ି ଓ ଅଣ୍ଟାରେ ଦଉଡ଼ି ବାନ୍ଧି ପୁଲିସ ଏହି ବରେଣ୍ୟ ନେତାମାନଙ୍କୁ ପ୍ରକାଶ୍ୟ ରାଜପଥରେ ଚଲାଇ ଚଲାଇ ନେଇ ଯେ କେବଳ ପୈଶାଚିକ ଆନନ୍ଦ ଅନୁଭବ କରିଥିଲା, ତା' ନୁହେଁ, ତା'ର ଉଦ୍ଦେଶ୍ୟ ଥିଲା ଜନତା ସମ୍ମୁଖରେ ସେମାନଙ୍କ ପ୍ରିୟ ନେତାମାନଙ୍କୁ ଅପମାନିତ କରିବା । ପ୍ରଥମ ଉଦ୍ଦେଶ୍ୟଟି ହୁଏତ ସଫଳ ହୋଇଥିବ ପୁଲିସର । କିନ୍ତୁ ୨ୟ ଉଦ୍ଦେଶ୍ୟଟି ? ବରଂ ଓଲଟା ଫଳ ହେଲା । ସମ୍ମାନନୀୟ ନେତାମାନଙ୍କ ପ୍ରତି ସେହି ଅପମାନ ଜନମାନସରେ ସୃଷ୍ଟିକଲା ଦୁର୍ବାର ପ୍ରତିରୋଧ ପିପାସା, ତୀବ୍ର କଲା ତା'ର ବିପ୍ଳବ ଜିଜ୍ଞାସା ଓ ଦୃପ୍ତ ପଦରେ ଆଗେଇନେଲା ଅଗ୍ନିଯୁଗର ଜୟଯାତ୍ରାକୁ ।

'ଅଲ୍ଲୀପୁର ବମ୍ କେଶ୍' ଆରମ୍ଭହେଲା, ସରକାରୀ କାଗଜପତ୍ରରେ ଯାହା 'ମାନିକତଲା ଗାର୍ଡ଼େନ କେଶ' ନାମରେ ପ୍ରସିଦ୍ଧ । ପ୍ରଥମ ଦଳଟିର ବିଚାର ଚାଲିଲା । ୪ ତାରିଖ ମଇରୁ ୧୮ ଅଗଷ୍ଟ ଓ ଦ୍ୱିତୀୟଟିର ବିଚାର ୧୪ ଅକ୍ଟୋବରରୁ ୧୯୦୯ ମାର୍ଚ୍ଚ ୪ ତାରିଖଯାଏ ଚାଲିଲା । ସେସବୁ କୋର୍ଟରେ ବିଚାରପତି ଥିଲେ ବ୍ରିଚକ୍ରଫ୍ଟ, କେମ୍ବ୍ରିଜରେ ଅରବିନ୍ଦଙ୍କର ସହପାଠୀ । 'ଅଲ୍ଲୀପୁର ବମ୍ କେଶ୍' ନାନା କାରଣରୁ ଅଗ୍ନିଯୁଗ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ପ୍ରଥମତଃ ଶ୍ରୀଅରବିନ୍ଦ, ଯେ କି ପରବର୍ତ୍ତୀ ଯୁଗରେ ଋଷି ଅରବିନ୍ଦ ନାମରେ କୋଟି କୋଟି ଅଶାନ୍ତ ମଣିଷକୁ ଶାନ୍ତିର ସନ୍ଧାନ ଦେଇଥିଲେ, ତାଙ୍କର କାରାବାସ ହେଲା ଏହି କେଶ୍‌ରେ । ଦ୍ୱିତୀୟତଃ ତତ୍କାଳୀନ ଭାରତର ବରେଣ୍ୟ ଆଇନଜ୍ଞ ତଥା ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ସେନାପତି ଦେଶବନ୍ଧୁ ଚିତ୍ତରଞ୍ଜନ ଅରବିନ୍ଦଙ୍କ ସପକ୍ଷରେ ଯେଉଁ ଅକାଟ୍ୟ ଯୁକ୍ତି ଉପସ୍ଥାପିତ କଲେ, ତାହା କେବଳ ଆଇନ ଇତିହାସରେ ନୁହେଁ, ଦର୍ଶନ ଓ ରାଜନୀତି ବିଜ୍ଞାନରେ ମଧ୍ୟ ଏକ ଅନବଦ୍ୟ କ୍ଲାସିକ୍‌ରୂପେ ଚିରନୂତନ ଏବଂ ଚିରଭାସ୍ୱର । ଧୈର୍ଯ୍ୟ ଓ ଅଧ୍ୟବସାୟର ତାହା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ! ଶ୍ରୀଅରବିନ୍ଦଙ୍କୁ ସେ ଯେତେବେଳେ "As the poet of patriotism, as the prophet of nationalism and the lover of humanity." (ଦେଶାତ୍ମବୋଧର କବି, ଜାତୀୟତାର ପୈଗମ୍ବର ଓ ମାନବପ୍ରେମୀ ।) ବୋଲି ବର୍ଣ୍ଣନାକରି ଜଜ୍‌ଙ୍କୁ ସମ୍ବୋଧନ କଲେ ତାହା କୋର୍ଟରୁମ୍‌ରେ ଏକ ଅଭାବନୀୟ ପରିସ୍ଥିତି ସୃଷ୍ଟି କରିଥିଲା ବୋଲି ଆଖିରେ ଦେଖିଥିବା ଲେଖକମାନେ

ଅନୁଭବ କରିଅଛନ୍ତି ।

ପ୍ରଥମରୁ କିନ୍ତୁ ପୁଲିସ ସବୁ ବିପ୍ଳବୀଙ୍କୁ ଧରିପାରି ନ ଥିଲେ । ବିପ୍ଳବୀ ବାରୀନ ବାବୁଙ୍କ ଅଦୂରଦର୍ଶିତାହିଁ ପରିସ୍ଥିତିକୁ କଲା ଜଟିଳ ଏବଂ କ୍ରମେ ସମସ୍ତ ବିପ୍ଳବୀ ପୁଲିସ ହାତରେ ଗିରଫ ହେଲେ । ବାରୀନ ଘୋଷଙ୍କଠାରେ ଯେ କିଛି ପରାଜୟ ମନୋବୃତ୍ତି ବା ବିଶ୍ୱାସଘାତକ ଭାବ ସୃଷ୍ଟି ହୋଇଥିଲା, ତାହା କୁହାଯାଇ ପାରିବ ନାହିଁ, ବରଂ ସେ ଏକ ମିଥ୍ୟା ଅହମିକାରେ ମୋହାଚ୍ଛନ୍ନ ହୋଇଥିଲେ ବୋଲି କୁହାଯାଇପାରେ । ତାଙ୍କର ଧାରଣା ହେଲା ଯେ ବିପ୍ଳବୀମାନେ ଯେତିକି ଶୌର୍ଯ୍ୟ, ବୀର୍ଯ୍ୟ ଓ ପରାକାଷ୍ଠା ପ୍ରଦର୍ଶନ କଲେଣି ତାହାହିଁ ଆଗାମୀ ବିପ୍ଳବର ପ୍ରସ୍ତୁତି ପାଇଁ ଯଥେଷ୍ଟ । କ୍ଷୁଦିରାମ ଓ ପ୍ରଫୁଲ୍ଲ ଚାକୀ ପ୍ରଭୃତି ଯେଉଁ ଅଦ୍ୱିତୀୟ ଆତ୍ମତ୍ୟାଗର ଉଦାହରଣ ଦେଖାଇ ଯାଇଛନ୍ତି, ତାହା ସାଙ୍ଗକୁ ସେମାନଙ୍କର (ବାରୀନ ପ୍ରଭୃତିଙ୍କ) ଆତ୍ମୋତ୍ସର୍ଗ ମୁକ୍ତି ସଂଗ୍ରାମର ଗତିକୁ ଅଧିକ ତ୍ୱରାନ୍ୱିତ କରିଦେବ । ତେଣୁ ସେ ଭାବିଲେ ଯେ ଗୋପନ ଆନ୍ଦୋଳନ ସହ ସଂପୃକ୍ତ ସମସ୍ତଙ୍କୁ ଧରାପକାଇଦେଲେ, ସମସ୍ତେ କଠିନଦଣ୍ଡର ସମ୍ମୁଖୀନ ହେବେ ଏବଂ ସେ ଦଣ୍ଡକୁ ଅମ୍ଳାନ ବଦନରେ ବହନକରି ସେମାନେ ଦେଶପ୍ରେମର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ପ୍ରତିଷ୍ଠା କରିପାରିବେ । ତେଣୁ ପୁଲିସ ତାଙ୍କୁ ଆରେଷ୍ଟ କରିବା ସଙ୍ଗେ ସଙ୍ଗେ ସେ ଅନ୍ୟାନ୍ୟ ବିପ୍ଳବୀଙ୍କ ନାମ ପୁଲିସ ଆଗରେ ପ୍ରକାଶ କରିଦେଲେ । ଏହା ଏକ ମାରାତ୍ମକ ଭୁଲ ହେଲା ଅବଶ୍ୟ । 'ମେଜଦା' ଅରବିନ୍ଦଙ୍କର ନାମ ସେ ପ୍ରକାଶ କରି ନଥିଲେ, କାରଣ ସେ ବିଚାର କରିଥିଲେ ଯେ ଏକା ଅରବିନ୍ଦ ବଞ୍ଚିରହିଲେ ସରକାର ମୁକ୍ତି-ସଂଗ୍ରାମର ଗତିକୁ ବନ୍ଦ କରିପାରିବେ ନାହିଁ । ଅନ୍ୟ ସମସ୍ତଙ୍କ ଜୀବନ — ଏପରିକି ତାଙ୍କ ନିଜ ଜୀବନ ଅପେକ୍ଷା ଅରବିନ୍ଦଙ୍କ ଜୀବନ ଅଧିକ ମୂଲ୍ୟବାନ୍ ବୋଲି ସେ ବିଚାର କଲେ । କିନ୍ତୁ ଇତିହାସର ରଥ ଅଙ୍କର ହିସାବରେ ଚାଲେନା ବା ବିପ୍ଳବର ଗତିପଥ ଏତେ ମସୃଣ ନୁହେଁ । ସେ ଚାଲେ ବୀଜଗଣିତ ସୂତ୍ରରେ, ନିଜସ୍ୱ ଗତିବେଗରେ, ଫଳରେ ବାରୀନଙ୍କର ଅଦୂରଦର୍ଶିତା ଓ ଅବିମୃଷ୍ୟକାରିତାର ସ୍ୱାଭାବିକ ଫଳ ଫଳିଲା ।

ବିପ୍ଳବୀମାନଙ୍କ ଭିତରେ ଜଣେ ଅଳ୍ପବୟସ୍କ ତରୁଣ ଥିଲା — ନରେନ ଗୋସ୍ୱାମୀ । ବାରୀନଙ୍କ ସ୍ୱୀକାରୋକ୍ତି ଫଳରେ ପୁଲିସ ତାକୁ ମଧ୍ୟ ଗିରଫ କଲା । ସୁତରାଂ ତା'ର କ୍ରୋଧ ହେଲା ବାରୀନଙ୍କ ଉପରେ ଏବଂ ସେହି କାରଣରୁ ଅରବିନ୍ଦଙ୍କ ଉପରେ । ସେ 'ଆପ୍ରୁଭର୍' ବା ପୁଲିସ ସାକ୍ଷୀହେଲା ଏବଂ ତା' ପାଟିରୁହିଁ ପ୍ରଥମେ ବାହାରିଲା ଅରବିନ୍ଦଙ୍କର ବୋମା ଷଡ଼ଯନ୍ତ୍ର ସହ ସଂପର୍କ ଯାହାକି ସେପର୍ଯ୍ୟନ୍ତ ପୁଲିସ ବାହାର କରିପାରି ନ ଥିଲେ । ଐତିହାସିକମାନେ ବାରୀନବାବୁଙ୍କୁ ମିଥ୍ୟାମୋହାଚ୍ଛନ୍ନ ଏକ ଅପରିଣାମଦର୍ଶୀ ଓ ନରେନକୁ ଏକ ବିଶ୍ୱାସଘାତକ ସ୍ୱାର୍ଥପର ବୋଲି ଅଭିହିତ କରିଅଛନ୍ତି । ସେ ସମସ୍ତଙ୍କୁ ମାରି ନିଜେ ବଞ୍ଚିବାକୁ ଚାହିଁଥିଲା ଏବଂ ଏଥିପାଇଁ ତାକୁ ସବୁଠାରୁ ସୁବିଧା ବାଟ ଦେଖାଗଲା ଯେ ସେ ପୁଲିସର ସାକ୍ଷୀ ହେବ ଓ ସବୁ ବିପ୍ଳବୀଙ୍କୁ ବୁଡ଼େଇ

ମାରିବ । ''ପୁଲିସ ରୋଗୀ ଯାହା ଖୋଜୁଥିଲା ନରେନ ବଇଦ ତାଙ୍କୁ ସେଇଆ ବତେଇଲା । ପୁଲିସ ଯେମିତିକା ଲୋକ ଖୋଜୁଥିଲା ତାକୁ ସେହିଭଳି ଲୋକ ମିଳିଗଲା ।''

ନରେନ 'ଆପ୍ରୁଭର' ହେବା ଫଳରେ ଯେଉଁ ପରିସ୍ଥିତି ଉପୁଜିଲା, ତାହା ଜେଲ ଭିତରେ ଓ ବାହାରେ ଥିବା ବିପ୍ଳବୀମାନଙ୍କୁ କରିଦେଲା ଭୀଷଣ ବିବ୍ରତ । ଯେକୌଣସି ମୂଲ୍ୟଦେଇ ଅରବିନ୍ଦଙ୍କୁ ବଞ୍ଚାଇବାକୁ ହେବ ବୋଲି ସମସ୍ତେ ପ୍ରାୟ ଏକମତ ଥିଲେ । କିନ୍ତୁ ସେଥିପାଇଁ କାହାରିକୁ କିଛି ବାଟ ଦିଶୁ ନ ଥିଲା । ନରେନ ପୁଲିସ ସାକ୍ଷୀ ହେବା ସଙ୍ଗେ ସଙ୍ଗେ ତାକୁ ଜେଲଖାନାରେ ଅନ୍ୟାନ୍ୟ ବିପ୍ଳବୀଙ୍କଠାରୁ ଅଲଗା ରଖାଗଲା ଏବଂ ତା'ର ନିରାପତ୍ତାର ସ୍ୱତନ୍ତ୍ର ବ୍ୟବସ୍ଥା କରାଗଲା, ଯେପରି ସେ ଅନ୍ୟାନ୍ୟ ବିପ୍ଳବୀଙ୍କଠାରୁ ନିରାପଦ ଦୂରତାରେ ରହିପାରିବ । ନରେନ ବହୁଦିନରୁ ବିପ୍ଳବୀ ଅନୁଷ୍ଠାନ ସହ ସଂପୃକ୍ତ ଥିଲେ ମଧ୍ୟ ତା' ଭିତରେ ଆଦୌ ଗାମ୍ଭୀର୍ଯ୍ୟ ନ ଥିଲା । କଥାବାର୍ତ୍ତା ଓ କାର୍ଯ୍ୟକଳାପରେ ସର୍ବଦା ହାଲୁକା କାରବାର । ଶ୍ରୀରାମପୁର ଜମିଦାର ଗୋସ୍ୱାମୀ ପରିବାରର ସେ ପିଲା । ନିଜେ ଅରବିନ୍ଦ ତା' ବିଷୟରେ ଲେଖିଛନ୍ତି, ''ଗୋସାଇଁ ଅତ୍ୟନ୍ତ ସୁପୁରୁଷ, ଲମ୍ବା, ଗୋରା, ବଳିଷ୍ଠ ଓ ପୁଷ୍ଟକାୟ । କିନ୍ତୁ ତାଙ୍କର ଆଖି ଦୁଇଟି କୁବୃତ୍ତିପ୍ରକାଶକ ଥିଲା । ତା'ର କଥାବାର୍ତ୍ତାରେ ମଧ୍ୟ କେବେହେଁ ବୁଦ୍ଧିମତ୍ତାର ପରିଚୟ ପାଇନାହିଁ । ଏହି ବିଷୟରେ ଅନ୍ୟ ଯୁବକମାନଙ୍କଠାରୁ ତାହାର ବିଶେଷ ପାର୍ଥକ୍ୟ ଥିଲା । କିନ୍ତୁ ଗୋସାଇଁର କଥାବାର୍ତ୍ତା ନିର୍ବୋଧ ଲଘୁଚେତା ଲୋକର କଥା ଭଳି ହୋଇଥିଲେ ବି ତାହା ତେଜ ଓ ସାହସପୂର୍ଣ୍ଣ ଥିଲା । ଏହି ଶ୍ରେଣୀର ଲୋକମାନେହିଁ ସାଧାରଣତଃ ଆପ୍ରୁଭର ହୁଅନ୍ତି ।''(୧)

କିନ୍ତୁ ବିପ୍ଳବୀ ଭୂପେନ୍ଦ୍ର କିଶୋର ରକ୍ଷିତରାୟଙ୍କ ମତରେ, ''ଅବଶ୍ୟ ଏହାଦ୍ୱାରା ଅଭିଶାପ ଆଶୀର୍ବାଦରେ ପରିଣତ ହେଲା । ନରେନ ରାଜସାକ୍ଷୀ ହୋଇଥିବାରୁହିଁ ଏହି ଦେଶରେ କାନାଇ ସତ୍ୟେନ ଭଳି ସହିଦମାନଙ୍କ ଅନନ୍ୟସୁନ୍ଦର ପଦଧ୍ୱନି ଆମ୍ଭେମାନେ ଶୁଣିବାକୁ ପାଇଲେ । କାରାଜୀବନର ପ୍ରସାଦରେ ଅରବିନ୍ଦଙ୍କ 'ବାସୁଦେବ ଦର୍ଶନ' ହୋଇପାରିଛି, ଦେଶବନ୍ଧୁଙ୍କ ମନରେ ଦେଶ ପ୍ରେମର ପ୍ରେରଣା ଆସିଛି । ବିପ୍ଳବ ରଥର ଗତିବେଗ ହୋଇଛି ଦୁର୍ବାର । ଇତିହାସର ଗତିବେଗ ଐତିହାସିକ କାରଣଦ୍ୱାରାହିଁ ପ୍ରଭାବିତ ହୋଇଥାଏ । ଇତିହାସ ଦେବତା ଭାରତବର୍ଷର ସ୍ୱାଧୀନତା ରଥର ସାରଥି । ସମସ୍ତଙ୍କୁ ତାହାରି ନିର୍ଦ୍ଦେଶରେହିଁ ଚାଲିବାକୁ ହୁଏ ।''(୨)

ପୁଲିସ୍ ନରେନଙ୍କୁ ଯେତେ ନିରାପଦରେ ରଖିଲେ ବି ବିପ୍ଳବୀ ପକ୍ଷରେ କିଛି ଅସମ୍ଭବ ନୁହେଁ । ନେପୋଲିୟନ କହିଥିଲେ, 'ଅସମ୍ଭବ' ଶବ୍ଦରେ ମୁଁ ବିଶ୍ୱାସ କରେନା, ଭାରତୀୟ ସଶସ୍ତ୍ର ବିପ୍ଳବୀ ଅଭିଯାନରେ ମଧ୍ୟ 'ଅସମ୍ଭବ' ଶବ୍ଦର ସ୍ଥାନ ନାହିଁ ।

---

୧. ଅରବିନ୍ଦ– କାରା କାହାଣୀ, ପୃ- ୬୨

୨. ଭୂପେନ କିଶୋର ରକ୍ଷିତ ରାୟ– ଭାରତର ସଶସ୍ତ୍ର ବିପ୍ଳବ, ପୃ- ୧୧୩

ବନ୍ଦୀମାନଙ୍କ ଭିତରୁ ସତ୍ୟେନ–କାନାଇ ଏହି ଶ୍ରେଣୀର ବିପ୍ଳବୀ ଥିଲେ ବୋଲି କୁହାଯାଇପାରେ । ନରେନକୁ ବୁଝାସୁଝା କରି ଭଲ ବାଟକୁ ଆଣିବାର କୌଣସି ସୁଯୋଗ ନ ଥିଲା ସୁତରାଂ ସେମାନେ ତାକୁ ‘ଶେଷ’ କରିଦେବାକୁ ସ୍ଥିର କରିଦେଲେ । ଏହା ଏକ ଅସାଧ୍ୟ ସାଧନ କାର୍ଯ୍ୟ ହୋଇଥିଲେ ବି ସତ୍ୟେନ-କାନାଇଙ୍କ ପକ୍ଷରେ ଏହା ଆଦୌ ଅସମ୍ଭବ ନ ଥିଲା । ପ୍ରଥମେ ଖୋଜାଚାଲିଲା ଗୋଟାଏ ମଜବୁତ ରିଭଲଭର । କିନ୍ତୁ ଜେଲ ଭିତରେ ରିଭଲଭର ବା କୁଆଡୁ ମିଳିବ ? ଖାସ୍‌କରି ଯେଉଁମାନେ ସଶସ୍ତ୍ର ବିପ୍ଳବ ଅଭିଯୋଗରେ ଅଭିଯୁକ୍ତ ସେମାନେ ବା କି ଉପାୟରେ ତାହା ବାହାରୁ ଆଣିପାରିବେ ? କିନ୍ତୁ ଭାରତୀୟ ବିପ୍ଳବୀ ସବୁ ଅସମ୍ଭବକୁ ସମ୍ଭବ କରିପାରେ । ଠିକ୍ ସେତିକିବେଳେ ବାରୀନ ବାବୁ ଏଇ ଷଡ଼ଯନ୍ତ୍ରରେ ମସଗୁଲ । ଜେଲଭିତରୁ ସବୁ ବିପ୍ଳବୀଙ୍କୁ ନେଇ ପଳାଇଯିବାକୁ ତାଙ୍କର ଯୋଜନା ଆଗେଇ ଚାଲିଥାଏ ଏବଂ ସେହି ଉଦ୍ଦେଶ୍ୟରେ କେତେଟା ଦାମିକା ରିଭଲଭର ସେ ଜେଲ ଭିତରକୁ ଆଣିବାକୁ ସମର୍ଥ ହୋଇଥା’ନ୍ତି । ବାରୀନଙ୍କ ଅଜ୍ଞାତରେ ସେହି ଦୁଇଟା ରିଭଲଭର ହାତକଲେ ସତ୍ୟେନ-କାନାଇ । ବାରୀନ ତ ସେତେବେଳକୁ ସବୁ ବିପ୍ଳବୀଙ୍କର ବିରାଗଭାଜନ ହୋଇସାରିଥା’ନ୍ତି, ସୁତରାଂ ତାଙ୍କ ନିକଟରେ ନରେନ ନିଧନ ଯୋଜନା ପ୍ରକାଶ କରିବାକୁ ସତ୍ୟେନ-କାନାଇ ରାଜି ନ ଥିଲେ । ଏ କ୍ଷେତ୍ରରେ ସେମାନଙ୍କ ଦୃଷ୍ଟିରେ ନରେନ ଓ ବାରୀନଙ୍କ ମଧ୍ୟରେ କିଛି ପାର୍ଥକ୍ୟ ନ ଥିଲା । ଅବଶ୍ୟ ନିରପେକ୍ଷ ଐତିହାସିକମାନେ ସେ ଦୁହିଁଙ୍କ ମଧ୍ୟରେ କେତେକ ପାର୍ଥକ୍ୟ ଥିବାର ଉପଲବ୍ଧି କରିଛନ୍ତି । ଉଦାହରଣସ୍ୱରୂପ ଐତିହାସିକ ଗିରିଜାଶଙ୍କର ରାୟଚୌଧୁରୀଙ୍କ ମତରେ, ‘‘ନରେନ ଗୋସାଇଁର ଅପରାଧ ସ୍ୱୀକାର ଓ ବାରୀନଙ୍କ ଅପରାଧ ସ୍ୱୀକାର ମଧ୍ୟରେ ଦେଖାଯାଏ ଯେ ବାରୀନ ମରଣଭୀରୁ ଜାତିକୁ ମରିଶିଖିବାର ଦୃଷ୍ଟାନ୍ତ ସ୍ଥାପନ କରିବାକୁ ଯାଇଥିଲେ ଏବଂ ନରେନ ଗୋସାଇଁ ସମଗ୍ର ଦଳଟିକୁ ଫାଶୀକାଠରେ ଝୁଲାଇ ନିଜର ପ୍ରାଣ ବଞ୍ଚାଇବାକୁ ଚେଷ୍ଟାକରିଥିଲେ, ଏହା ହିଁ ପାର୍ଥକ୍ୟ ।’’

ଅନ୍ୟଜଣେ ବିପ୍ଳବୀ ଓ ଐତିହାସିକଙ୍କ ଭାଷାରେ, ‘‘ପାର୍ଥକ୍ୟ ନିଶ୍ଚୟ ଅଛି । ନରେନ ଗୋସାଇଁ ଜଣେ ସ୍ୱାର୍ଥାନ୍ଧ ବିଭୀଷଣ । ତା’ର ଉଦ୍ଦେଶ୍ୟ ଥିଲା ସମସ୍ତଙ୍କୁ ରସାତଳକୁ ପଠାଇ ନିଜେ ସୁଖମୟ ଜୀବନକୁ ଫେରିଯିବେ । କିନ୍ତୁ ବାରୀନ ବାବୁ ସ୍ୱାର୍ଥପର ନୁହନ୍ତି ବା ବିଭୀଷଣ ନୁହନ୍ତି । ସମସ୍ତଙ୍କ ସହ ସେ ମଧ୍ୟ ବୁଡ଼ିବାକୁ ରାଜି । ତାଙ୍କର ଧାରଣା ହେଲା ଯେ ସେମାନଙ୍କ କାମ ଶେଷହୋଇଯାଇଛି । ସେମାନଙ୍କ କୀର୍ତ୍ତିକାହାଣୀ ସେଥିପାଇଁ ଦେଶବାସୀଙ୍କୁ ଜଣାଇ ଦେବାକୁ ହେବ – ଜାତିର କ୍ଲୈବ୍ୟ ଦୂର କରିବାର ସଂକଳ୍ପରେ । ଏ ସଂକଳ୍ପ ଅତୁଟ, ଏହି କଥା ଜଣାଇଦେବାକୁ ଆସୁ ଫାଶୀ, ଆସୁ ଦ୍ୱୀପାନ୍ତର ଦଣ୍ଡ । ଦଳେ ଦଳେ ଅଗ୍ନିଦଗ୍ଧ ହୋଇ ଯେଉଁ ଦିଆ ସେମାନେ ପ୍ରଜ୍ୱଳିତ କରିବେ, ସେଥିରେ ପଥର ଅନ୍ଧକାର ଦୂରହେବ । ଏହିଭଳି ଆତ୍ମପ୍ରଚାରର ମୋହରେ

ଆଛନ୍ନ ବାରୀନ ଘୋଷ ସେଥିପାଇଁ ତା'ର ନେତା ଅରବିନ୍ଦଙ୍କ ନିର୍ଦ୍ଦେଶ ଅମାନ୍ୟ କଲେ । ସତୀର୍ଥ ହେମଚନ୍ଦ୍ର ଘୋଷଙ୍କର ଉପଦେଶକୁ ପ୍ରତ୍ୟାଖ୍ୟାନ କଲେ ।(୧)

କିନ୍ତୁ ବାରୀନ ବାବୁଙ୍କର ଆତ୍ମନିର୍ଯାତନା ବିନ୍ଦୁମାତ୍ର ଫଳପ୍ରସୂ ହେଲା କି ? ଦେଶର ଜନସାଧାରଣ ଓ ସଂଗ୍ରାମୀ ଭାରତ ସେମାନଙ୍କ କଥା ମନେରଖିଛନ୍ତି କି ? ନା ମନେ ରଖିନାହାନ୍ତି । ସେମାନେ ମନେରଖିଛନ୍ତି– ସତ୍ୟେନ, କାନାଇ, କ୍ଷୁଦିରାମ, ଭଗତ ସିଂ ଓ ଧୀଙ୍ଗ୍ରାଙ୍କୁ ।

"ବିପ୍ଳବୀ ଧର୍ମରୁ ବିଚ୍ୟୁତ ହେଲେ ବାରୀନବାବୁ । ଗୁପ୍ତ ସମିତିର କଥା କୌଣସିମତେ ଶତ୍ରୁ ଆଗରେ ପ୍ରକାଶିତ ହେବ ନାହିଁ - ଏହାହିଁ ବିପ୍ଳବର ଟେକ୍‌ନିକ୍ । ତାହା ବାରୀନ ବାବୁ ମାନିଲେ ନାହିଁ । ଅହିଂସାର ଯାହା ଟେକନିକ୍ ସଶସ୍ତ୍ର ବିପ୍ଳବର ତାହା ଟେକ୍‌ନିକ୍ ନୁହେଁ । ଅରବିନ୍ଦ ଓ ହେମଚନ୍ଦ୍ର ସେ ଟେକ୍‌ନିକ୍‌କୁ ଅକ୍ଷରେ ଅକ୍ଷରେ ମାନି ସବୁ ଅଭିଯୋଗ ଅସ୍ୱୀକାର କଲେ ।"(୨)

ସତ୍ୟେନ-କାନାଇ ବାରୀନଙ୍କ ଅଜ୍ଞାତରେ ରିଭଲଭର ହାତକରି ନରେନକୁ ହତ୍ୟା କରିବାର ଷଡ଼ଯନ୍ତ୍ର କଥା ପରେ ଜାଣି ସେ (ବାରୀନ) ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି, "ମୁଁ ଜାଣି ନ ଥିଲି ଯେ ପିଲାମାନଙ୍କ ଭିତରୁ ଦଳେ ମୋତେ ଲୁଚାଇ ମୋର ପିସ୍ତଲରେ ଜେଲ ଭିତରେହିଁ ନରେନକୁ ହତ୍ୟା କରିବାର ଫାନ୍ଦ ପାତିଛନ୍ତି । କଞ୍ଚା ଲିଡରମାନଙ୍କର ସଚରାଚର ଯାହା ହୋଇଥାଏ ମୋ'ର ଧରଣା ପ୍ରାୟ ସେହି ଜାତିର ଥିଲା, ସ୍ୱେଚ୍ଛାଚାରୀ ଓ ଅଟୋକ୍ରାଟ୍ ଢଙ୍ଗର, ସମସ୍ତଙ୍କୁ ନେଇ ଅବଶ୍ୟ କାର୍ଯ୍ୟକରେଁ କିନ୍ତୁ ନିଜର ଅହମିକା ଥିଲା ଅସୀମ । ଜେଲ ଭିତରକୁ ଆସି ଦେଖିଲି – ସମସ୍ତଙ୍କର ମୋ' ପ୍ରତି ରାଗ ଓ ଅଭିମାନ ଭାବଟା ଯେମିତି ଭରିଉଠିଛି । କିନ୍ତୁ ମୁଁ ଏ କଥା କେବେହେଁ ହେଲେ ଭାବିନଥିଲି ଯେ ମୋତେ ବାଦ୍‌ଦେଇ ଅନ୍ତତଃ ମୋତେ ନ ଜଣାଇ ସେମାନେ ଗୋଟାଏ କିଛି କରିବେ ।"(୩)

ସତ୍ୟେନ-କାନାଇ ରିଭଲଭର୍ ଦୁଇଟି ହାତକଲେ ସତ କିନ୍ତୁ ନରେନ ମିଳିବା ମୁସ୍କିଲ । କାରଣ ସେ ଅଲ୍ଲୀପୁର ଜେଲରେ ଏକ ସ୍ୱତନ୍ତ୍ର ସେଲରେ (ୟୁରୋପୀୟାନ ୱାର୍ଡ଼) ଚବିଶ ଘଣ୍ଟିଆ ସଶସ୍ତ୍ର ପହରା ଭିତରେ । କେବଳ ମକଦ୍ଦମା ତାରିଖ ଦିନ ସେହି ଜେଲ କୋର୍ଟରେ ତା'ର ଦର୍ଶନ ମିଳେ; କିନ୍ତୁ ସେତେବେଳେ ବି ଏତେଦୂରରେ ଓ ଏଭଳି ସନ୍ତ୍ରୀ ପରିବେଷ୍ଟିତ ଯେ ଦେହରେ ଟିପ ଛୁଆଁଇବା ମଧ୍ୟ ଅସମ୍ଭବ ।

ସମୟ କାହାକୁ ଅପେକ୍ଷା କରେନା । ସତ୍ୟେନ-କାନାଇ କିମ୍ବା ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମକୁ ବା ସେ କାହିଁକି ଅପେକ୍ଷା କରିବ ? କିନ୍ତୁ ଦୁଇବନ୍ଧୁ ବିଶେଷ ବ୍ୟସ୍ତ

---

୧. ଭୂପେନ କିଶୋର ରକ୍ଷିତ ରାୟ– ଭାରତର ସଶସ୍ତ୍ର ବିପ୍ଳବ, ପୃ– ୧୧୩
୨. ଶ୍ରୀ ଅରବିନ୍ଦ ଓ ବାଂଲାର ସ୍ୱଦେଶୀ ଯୁଗ– ଶ୍ରୀ ଗିରିଜାଶଙ୍କର ରାୟ ଚୌଧୁରୀ
୩. ବାରୀନ ଘୋଷ - ଆତ୍ମକଥା - ୬୭

କେମିତି ନରେନ ସାକ୍ଷୀ ଦେବା ପୂର୍ବରୁ ତାକୁ ଖତମ କରିବେ । ଜମାନବନ୍ଦୀ ଓ ଜେରା ସରିଗଲେ ତାକୁ ହତ୍ୟା କରି ଲାଭ କ'ଣ ? କିନ୍ତୁ ସତ୍ୟେନ-କାନାଇ ଚାହିଁଲେ ତ ସବୁକଥା ଆପଣାଛାଏଁ ହୋଇଯିବନି । କାରଣ କୋର୍ଟ କାମ ଚାଲିଛି ଦ୍ରୁତ ଗତିରେ । ସରକାରୀ ପଟ ବଦ୍ଧପରିକର କେମିତି ନରେନ ମୁହଁରୁ ଅରବିନ୍ଦ ଓ ଅନ୍ୟାନ୍ୟ ମୁକ୍ତି-ସଂଗ୍ରାମୀଙ୍କ ବିରୋଧରେ ସ୍ୱୀକାରୋକ୍ତି ଆଦାୟ କରି ସମସ୍ତଙ୍କୁ ଜବତ କରିବେ । ସମସ୍ତ ବିପ୍ଳବୀଙ୍କୁ ଫାଶୀଦଣ୍ଡ ନହେଲେ ବି ଦ୍ୱୀପାନ୍ତର ଦଣ୍ଡଦେଇ ମୁକ୍ତି-ସଂଗ୍ରାମକୁ ସ୍ତବ୍ଧ କରିବାକୁ ପୁଲିସ ଏକାବେଳେ ଦୃଢ଼ସଂକଳ୍ପ ।

ଚାହୁଁ ଚାହୁଁ ନରେନର ସାକ୍ଷୀ ଦେବା ତାରିଖ ପହଞ୍ଚିଗଲା । କ୍ରୋଧ ଓ ଈର୍ଷାଜର୍ଜରିତ ଏବଂ ସରକାରଠାରୁ ପୁରସ୍କାର ଲୋଭରେ ପ୍ରଲୁବ୍ଧ ନରେନ ମୁକ୍ତି-ସଂଗ୍ରାମ ଏବଂ ଖାସ୍‌କରି ଅରବିନ୍ଦଙ୍କ ବିରୋଧରେ ପୁଳାଏ ସତ-ମିଛ ସାକ୍ଷୀ ଦେଇସାରି ବିଜୟ ଦର୍ପରେ ନିଜ ଆସନକୁ ଫେରିଆସିଲା । ତା'ର ନିର୍ଭୁଲ ଜମାନବନ୍ଦୀରେ ପୁଲିସ ପକ୍ଷ ଯେତିକି ଖୁସୀ ବିପ୍ଳବୀମାନେ ସେତିକି ବିବ୍ରତ । 'ନରେନ ଯେ ସମସ୍ତଙ୍କୁ ବୁଡ଼ାଇଦେବ' ଏ ବିଷୟରେ ଆଉ କାହାରି ହେଲେ ଟିକେ ସନ୍ଦେହ ନ ଥିଲା । ନରେନ ଜମାନବନ୍ଦୀ ସିନା ଦେଲା କିନ୍ତୁ ତାକୁ ସେଦିନ ଜେରା କରିବାକୁ ସମୟ ନ ଥିଲା । କାରଣ କୋର୍ଟ ବନ୍ଦ ହେବାବେଳ ହୋଇଯାଇଥିଲା ଏବଂ ଜେରା ଅନ୍ୟଦିନକୁ ମୁଲତବୀ ରଖିବା କଥା ବିଚାରପତି ଦେଲା ।

ହଠାତ୍ ପ୍ରତ୍ୟୁତ୍ପନ୍ନମତି କାନାଇ ମୁଣ୍ଡରେ ଗୋଟାଏ ଚମତ୍କାର ପ୍ଲାନ୍ ଜୁଟିଲା । ସେ ସଙ୍ଗେ ସଙ୍ଗେ ନିଜର ଓକିଲଙ୍କ ସହ କ'ଣ ପରାମର୍ଶ କଲେ । ତା' ପରେ ତାଙ୍କର ଓକିଲ ଦାବି କଲେ ଯେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ମାମଲା ହୋଇଥିବାରୁ ଜେରା ତାରିଖରେ ତାଙ୍କୁ ଆଉଥରେ ଜମାନବନ୍ଦୀ ଦେବାକୁ ପଡ଼ିବ, ନ ହେଲେ ସେମାନେ ସାକ୍ଷୀକୁ ଜେରା କରିବେ ନାହିଁ । ଓକିଲଙ୍କର ଏ ଦାବି ଏକ ବିରାଟ ଆଲୋଡ଼ନ ସୃଷ୍ଟିକଲା । ସରକାରୀ ପକ୍ଷ ଏଥିରେ ମୋଟେ ରାଜି ହେଲେ ନାହିଁ । କିନ୍ତୁ ଶେଷରେ ବିଚାରପତି ଏଥିରେ ରାଜିହେଲେ ଏବଂ 'ରୁଲିଂ' ଦେଲେ ଯେ ଜେରା ପୂର୍ବରୁ ପୁଣିଥରେ ଜମାନବନ୍ଦୀ ହେବ ।

ତା'ପରେ କେଇଦିନ କୋର୍ଟ ଛୁଟି ଥିଲା । ସୁତରାଂ ଏହି ଛୁଟି ଭିତରେହିଁ ସତ୍ୟେନ —କାନାଇଙ୍କୁ କିଛି ଗୋଟାଏ ଫୟସଲା କରିବାକୁ ପଡ଼ିବ । ବୁଦ୍ଧିମାନ୍ କାନାଇ ପକ୍ଷରେ ସେଟା ବି ଅସାଧ କାର୍ଯ୍ୟ ନୁହେଁ ।

ତା' ପରଦିନ ସକାଳେ ଜେଲ ଡାକ୍ତରଙ୍କୁ ପ୍ରଥମେ ସତ୍ୟେନ କହିଲେ, "ମୋତେ ଦୈନିକ ରାତିରେ ଜ୍ୱର ହେଉଛି । ସକାଳୁ ଓହ୍ଲେଇ ଯାଉଛି ।" ଜେଲ ଡାକ୍ତର ବିନା ବାକ୍ୟବ୍ୟୟରେ ତାଙ୍କୁ ଜେଲ ଡାକ୍ତରଖାନାରେ ଭର୍ତ୍ତିକରିଦେଲେ । ଦୁଇଦିନ ପରେ କାନାଇଙ୍କୁ ମଧ୍ୟ ଅଦ୍ଭୁତ କଲିକ୍ (ପେଟମରା) ରୋଗ ଧରିଲା । ଏହା ଉଲ୍ଲେଖ କରିବା

ନିଷ୍ପ୍ରୟୋଜନ ଯେ ଏହା ଶୁଣିବା ସଙ୍ଗେ ସଙ୍ଗେ ଡାକ୍ତର ତାଙ୍କୁ ମଧ୍ୟ ସଙ୍ଗେ ସଙ୍ଗେ ସେହି ହସ୍‌ପିଟାଲରେ ଆଡ଼ମିଟ୍ କରିଦେଲେ । ଦୁଇବନ୍ଧୁ ପାଖାପାଖି ଦୁଇଟି ବେଡ଼ରେ ସ୍ଥାନ ପାଇ ମହାଖୁସି ।

ସବୁହେଲା, ଖାଲି ବାକି ରହିଲା ନରେନ ସହ ଗୋଟାଏ ନିରୋଳା ସାକ୍ଷାତ । ସତ୍ୟେନ ଖଣ୍ଡିଏ ଚିଠି ପଠାଇଲେ ନରେନ ପାଖକୁ ଜଣେ ବିଶ୍ୱସ୍ତ ୱାର୍ଡ଼ର ହାତରେ, "ଭାଇ ନରେନ, ମୁଁ ସବୁଦୃଷ୍ଟିରୁ ବିଚାରକରି ଦେଖୁଛି ଯେ ମୋତେ ବି ଆପ୍ରୁଭର ହେବାକୁ ପଡ଼ିବ । ଆଜିଯାଏ ଯାହାସବୁ କରିଗଲି ସେଥିପାଇଁ ମୁଁ ବିଶେଷ ଅନୁତପ୍ତ । ଯାହାହେଉ ପୁଲିସ୍ ସାକ୍ଷୀ ହେବାକୁ ହେଲେ କ'ଣ କେମିତି କରିବାକୁ ହେବ ମୁଁ କିଛି ଭାବିପାରୁନି । ତୁ ଯଦି କଷ୍ଟକରି ହସ୍‌ପିଟାଲ ପର୍ଯ୍ୟନ୍ତ ଆସିପାରନ୍ତୁ, ଖୁବ୍ ଭଲ ହୁଅନ୍ତା ।" ଚିଠିଖଣ୍ଡିକ ପୁଲିସ୍ ହାତରେ ପଡ଼ିଲା । ପୁଲିସବାଲାଙ୍କ ଖୁସି କହିଲେ ନ ସରେ । ଖୁସି ହେବାର କଥା, ସତ୍ୟେନ ଭଳି ବିପ୍ଳବୀ ନେତା ଯଦି ସତରେ ଆପ୍ରୁଭର ହୁଏ ତେବେ ତ ଆଉ କଥା ନାହିଁ । ସୁତରାଂ ନରେନ ଯଥାଶୀଘ୍ର ସତ୍ୟେନକୁ ଭେଟିବା ଉଚିତ ବୋଲି ପୁଲିସ କର୍ତ୍ତୃପକ୍ଷ ମନେକଲେ । ଆଉ ନରେନର ଆନନ୍ଦ ମଧ୍ୟ ବର୍ଣ୍ଣନାତୀତ । ସେ ତ ନିଜେ ଲାଙ୍ଗୁଳହୀନ ଶୃଗାଳ ହୋଇଛି, ସୁତରାଂ ସତ୍ୟେନ ଯଦି ନିଜ ଲାଙ୍ଗୁଳ କାଟି ତା'ଦଳରେ ଯୋଗଦିଏ; ତେବେ ମନ୍ଦ କ'ଣ ?

ଯାହାହେଉ, ସଶସ୍ତ୍ର ପ୍ରହରୀ ଜଣକ ସହ ନରେନ ଯଥାସମୟରେ ଜେଲ ହସ୍‌ପିଟାଲରେ ପହଞ୍ଚିଲା । ସତ୍ୟେନ ଭଳି ଅଭିନୟକୁଶଳୀ ପକ୍ଷରେ ନିର୍ବୋଧ ଓ ଲଘୁଚେତା ନରେନର ବିଶ୍ୱାସଭାଜନ ହେବାକୁ ବିଳମ୍ବ ହେଲା ନାହିଁ । ସେଦିନ ଅଳ୍ପକିଛି କଥାବାର୍ତ୍ତା । ଆଉଟିକେ ବିଶ୍ୱାସ ଭାଜନହେବାକୁ ସତ୍ୟେନ ସେଦିନ ନରେନକୁ ଛାଡ଼ିଦେଲା ଏବଂ ତାକୁ ଟିକେ ସୂଚନାଦେଲା ଯେ ସେ କାନାଇକୁ ମଧ୍ୟ ସଙ୍ଗରେ ଆଣିବାକୁ ଅର୍ଥାତ ଆପ୍ରୁଭର କରିବାକୁ ଚେଷ୍ଟାକରୁଛି । ନରେନଠାରୁ ପ୍ରଥମ ସାକ୍ଷାତର ଆଶାଜନକ ରିପୋର୍ଟ ବିଶେଷତଃ ଏକା ସତ୍ୟେନ ନୁହେଁ କାନାଇକୁ ମଧ୍ୟ ରାଜସାକ୍ଷୀ ହେବାର ଉଦ୍ୟମ ଚାଲିଛି ଶୁଣି ପୁଲିସ ସତେ ଯେମିତି ଗଡ଼ ଜିତିଗଲା ।

ପରଦିନ ନରେନ ପୁଣି ହସ୍‌ପିଟାଲକୁ ଆସିଲା । ସେଦିନ ତା'ର ବଡ଼ିଗାର୍ଡ଼ ଥିଲା ଇଗ୍ନେସ ନାମକ ଜନୈକ ଶ୍ୱେତାଙ୍ଗ ପୁଲିସ । ପୁଲିସ ଜଣକ ଟିକେ ଦୂରରେ ବସିଲା, କଥାବାର୍ତ୍ତା ଆରମ୍ଭ ହେଲା । ଆଜି ଆଉ ଜଣେ ନୁହେଁ— ଦୁଇଜଣ । ସତ୍ୟେନ ଓ କାନାଇ କଥାବାର୍ତ୍ତା ଟିକେ ଜମେଇ ଦେଇ ସତ୍ୟେନ ହଠାତ୍ ଚାଦର ଭିତରୁ ପିସ୍ତଲ କାଢ଼ି ଫାୟାରିଂ କଲେ । ଗୁଳିଟା କିନ୍ତୁ ନରେନର ଛାତିରେ ନ ବାଜି ହାତରେ ବାଜିଲା । ଦୌଡ଼ିଆସି ଠିଆ ହୋଇଗଲା ବଡ଼ିଗାର୍ଡ଼ ଇଗ୍ନେସ । ତା' ଗୋଡ଼କୁ ଲକ୍ଷ୍ୟ କରି କାନାଇ ଏକ ଗୁଳି ଫାୟାରକଲା । ଚିତ୍‌ପଟାଙ୍ଗ ହୋଇ ପଡ଼ିଲା ଇଗ୍ନେସ । ଏହି ଅବସରରେ ନିଜ ସେଲ୍ ଆଡ଼କୁ ଦୌଡ଼ିଲା ନରେନ ପ୍ରାଣବିକଳରେ । ତା' ପଛେ ପଛେ ଛୁଟିଲେ ସତ୍ୟେନ ଓ

କାନାଇ ଗୁଳିଭରା ରିଭଲଭର ସହ । ଜେଲ ଭିତରେ ସେ ଏକ ଭୟାବହ ଦୃଶ୍ୟ । ପ୍ରାଣବିକଳରେ ଚିତ୍କାର ଛାଡ଼ି ଦୌଡୁଥାଏ ଭାରତମାତାର ଏକ କୁଳାଙ୍ଗାର, ଆପ୍ରୁଭର ନରେନ ଗୋସ୍ୱାମୀ– ଅଲ୍ଲିପୁର ବମ୍ କେଶର ଏକ ନମ୍ବର ଭିଲେନ । ପାରାକୁ ଛଞ୍ଚାଣ ଗୋଡ଼ାଇଲା ଭଳି ଦୌଡ଼ିଥା'ନ୍ତି ଦେଶଦ୍ରୋହୀର ଏକ ନମ୍ବର ଶତ୍ରୁ । ସତ୍ୟେନ ଓ କାନାଇ । ମନରେ ସେମାନଙ୍କର ଭୀଷ୍ମପ୍ରତିଜ୍ଞା– ''ଯେକୌଣସିମତେ ତୋତେ ଖତମ କରିବୁଁ ।''

ଜେଲ ଭିତରେ ସମସ୍ତେ ଦେଖୁଛନ୍ତି ସେ ଦୃଶ୍ୟ, କିନ୍ତୁ ସତ୍ୟେନ-କାନାଇଙ୍କୁ ବାଧା ଦେବାକୁ କେହି ସାହସ କଲେ ନାହିଁ । ଜଣେ ଦୁଃସାହସୀ ୱାଡ଼ର ଦୌଡ଼ିଆସି କାନାଇଙ୍କର ଗୋଡ଼କୁ କୁଣ୍ଢେଇପକାଇଲା । ଫଳରେ କାନାଇ ତଳେପଡ଼ିଗଲେ ସତ କିନ୍ତୁ ବୁଲିପଡ଼ି ଏମିତି ଏକ ବଜ୍ରମୁଷ୍ଟି ମାରିଲେ ସେ ୱାର୍ଡ଼ରକୁ ଯେ ସେ ଗଁ-ଗଁ ହୋଇ ସେଇଠି ମାଟି କାମୁଡ଼ି ପଡ଼ିଲା । ସେତେବେଳକୁ ସତ୍ୟେନ ନରେନଙ୍କୁ ପ୍ରାୟ ମାଡ଼ିବସିଲେଣି । ତାଙ୍କର ନିର୍ମମ ନିଷ୍ଠୁର ଗୁଳି ନରେନର ପିଠି ଭେଦକଲା ଏବଂ ସେ ଏକ ଅସହାୟ ଆର୍ତ୍ତଚିତ୍କାର କରି ଗଡ଼ି ଗଡ଼ି ଯାଇ ଗୋଟାଏ ଡ୍ରେନ୍ ଭିତରେ ପଡ଼ି ଶେଷହୋଇଗଲା ।

'ସେତେବେଳକୁ ଜେଲର ପାଗଳ ଘଣ୍ଟି ବାଜିସାରିଥିଲା । ବିଜୟଦର୍ପରେ ଉଲ୍ଲସିତ ସତ୍ୟେନ-କାନାଇ ତାଙ୍କର କାର୍ଯ୍ୟ ଶେଷକରି ବିନା ବାକ୍ୟବ୍ୟୟରେ ଧରାଦେଲେ । ସାରା ଭାରତ ସତ୍ୟେନ-କାନାଇଙ୍କ ଅବିଶ୍ୱାସ୍ୟ ବୀରତ୍ୱ ଓ ଦୁଃସାହସ ଦେଖି ସ୍ତମ୍ଭିତ ଓ ଚକିତ ହୋଇଗଲେ । କୋଟି କୋଟି କଣ୍ଠରୁ ବାହାରିପଡ଼ିଲା, 'ସାବାସ୍, ସାବାସ୍' ।

ସେସବୁ ବିଚାରରେ ଉଭୟଙ୍କୁ ଫାଶୀ ଦଣ୍ଡ ଦିଆଗଲା । ଅବଶ୍ୟ ଏଥିରେ ସତ୍ୟେନ ବା କାନାଇ କେହି ଆଶ୍ଚର୍ଯ୍ୟ ହେଲେ ନାହିଁ, କାରଣ ଫାଶୀ ଦଉଡ଼ି ତ କେବେଠୁଁ ସେମାନଙ୍କ ମୁଣ୍ଡ ଉପରେ ଝୁଲୁଥିଲା । କିନ୍ତୁ ଦେଶବାସୀ ଏହି ଦୁଇଟି ଅମୂଲ୍ୟ ରତ୍ନକୁ ଏତେ ସହଜରେ ହରେଇଦେବାକୁ ପ୍ରସ୍ତୁତ ନ ଥିଲେ । ଯେଉଁମାନଙ୍କର ସେପର୍ଯ୍ୟନ୍ତ ବି ଇଂରେଜ ବିଚାର ବିଭାଗ ଉପରେ ଭରସା ଥିଲା, ସେମାନଙ୍କ ଭିତରୁ କେତେକ ସତ୍ୟେନ-କାନାଇଙ୍କୁ 'ପ୍ରିଭି କାଉନ୍ସିଲ'ରେ ଅପିଲ କରିବାକୁ ଅନୁରୋଧ କଲେ । କାନାଇ କିନ୍ତୁ ରୋକ୍‌ଠୋକ୍ ଜବାବ ଦେଲେ, "There shall be no appeal." (ଅପିଲର ପ୍ରଶ୍ନହିଁ ଉଠୁନାହିଁ ।) ଅବଶ୍ୟ ଦେଶବାସୀ କାନାଇଙ୍କର ଏଭଳି ଜବାବରେ ନିରାଶହୋଇପଡ଼ିଲେ । କିନ୍ତୁ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ଭଳି ନେତାମାନେ ମତ ପ୍ରକାଶ କଲେ– 'କାନାଇ ଆମକୁ ଇଂରେଜଗ୍ରାମାର୍‌ର "Shall' ଏବଂ "Will'ର ବ୍ୟବହାର ଶିଖାଇଦେଇଗଲେ ।''

୧୯୦୮ ମସିହା ଅକ୍ଟୋବର ୨୧ ତାରିଖରେ ବିପ୍ଳବୀ କାନାଇ ଲାଲ ଦତ୍ତଙ୍କର ଫାଶୀ ହେଲା । ଫାଶୀ ମଞ୍ଚରେ ସେ ଏକ ଅନିର୍ବଚନୀୟ ଦୃଶ୍ୟ, ଅହିଂସାବାଦୀମାନଙ୍କ ପକ୍ଷରେ ଯାହା କଳ୍ପନାତୀତ । ଫାଶୀ ମଞ୍ଚର ସେ ଦୃଶ୍ୟ ଓ କାନାଇଙ୍କର ଅଚିନ୍ତନୀୟ

ନିର୍ଭୀକତା ସଂପର୍କରେ ବିପ୍ଲବୀ ଉପେନ୍ଦ୍ର ବନ୍ଦୋପାଧ୍ୟାୟ ଲେଖିଛନ୍ତି– ''କାନାଇ ଲାଲଙ୍କର ଫାଶୀ ହୋଇଗଲା । ଫାଶୀ ସମୟରେ ତାଙ୍କର ନିର୍ଭୀକ ପ୍ରଶାନ୍ତ ଓ ହର୍ଷୋତଫୁଲ୍ଲ ମୁଖଶ୍ରୀ ଦେଖି ଜେଲ କର୍ତ୍ତୃପକ୍ଷ ବେଶ୍ ଟିକେ ବିସ୍ମୟ ଓ କୌତୁକ ଅନୁଭବ କଲେ । ଗଳାରେ ଫାଶୀ ଦଉଡ଼ିଟା ଭଲକରି ଲାଗି ନାହିଁ ବୋଲି ଯେତେବେଳେ କାନାଇ କହିଲେ, ସେତେବେଳେ ସେମାନଙ୍କର ବିସ୍ମୟ ବହୁଗୁଣରେ ବଢ଼ିଗଲା । ଜଣେ ୟୁରୋପୀୟାନ ସର୍ଜେଣ୍ଟ ଚୁପ୍ ଚୁପ୍ କରି ଆସି ପ୍ରଶ୍ନକଲେ– ''ତୁମ ହାତରେ ଏମିତିକା ପିଲା ଆଉ କେତେ ଜଣ ଅଛନ୍ତି ?'' ଯେଉଁ ଲକ୍ଷ ଲକ୍ଷ ଜନତା ଉନ୍ମତ୍ତ ହୋଇ କାଳୀଘାଟ ଶ୍ମଶାନରେ କାନାଇଲାଲଙ୍କ ଚିତା ଉପରେ ପୁଷ୍ପମାଲ୍ୟ ଅର୍ପଣ କରିବାକୁ ଛୁଟି ଆସିଥିଲେ, ତାହା ଦେଖି ପ୍ରମାଣର ଆବଶ୍ୟକତା ରହିଲା ନାହିଁ ଯେ କାନାଇ ଲାଲ ମରିନାହାଁନ୍ତି, ତାଙ୍କ ଭଳି ହଜାର ହଜାର ପିଲା ଏ ଦେଶରେ ଅଛନ୍ତି ।''(୧)

ଜେଲର ହିସାବ ଖାତାରୁ ଦେଖାଗଲା ଯେ ଫାଶୀ ଅର୍ଡ଼ର ଶୁଣିବା ପରେ କାନାଇ ଲାଲଙ୍କର ଦେହର ଓଜନ ୧୬ ପାଉଣ୍ଡ ବଢ଼ିଗଲା । ''ଏହା କାହାର ମନଗଢ଼ା କଥା ନୁହେଁ । ଏହାହିଁ ସରକାରୀ ହିସାବ ।''

X X X X

କାନାଇର ସ୍ୱର୍ଗାରୋହଣର ଠିକ୍ ମାସକ ପରେ ଅଲ୍ଲିପୁର ସେଣ୍ଟ୍ରାଲ ଜେଲରେ ଅନ୍ୟତମ ବିପ୍ଲବୀ ସତ୍ୟେନ ବସୁଙ୍କର ଫାଶୀ ଅର୍ଡ଼ର କାର୍ଯ୍ୟକାରୀହେଲା । ସାରା ଭାରତ ସତ୍ୟେନଙ୍କର ଅଲୌକିକ ସାହସ ଓ ବିଚକ୍ଷଣତାରେ ଏମିତି ମୁଗ୍ଧ ହୋଇଥିଲା ଯେ ନଭେମ୍ବର ୨୧ ତାରିଖ ୧୯୦୮ ମସିହା ବିପ୍ଲବୀ ମହଲରେ ଏକ 'ଜାତୀୟ ଶୋକ ଦିବସ' ରୂପେ ପାଳିତହେଲା ।

ଅଲ୍ଲିପୁର ସେଣ୍ଟ୍ରାଲ ଜେଲର କଣ୍ଡେମ୍ଡ ସେଲ୍‌ରେ କିନ୍ତୁ ଅନ୍ୟ ଏକ ଅଚିନ୍ତନୀୟ ଦୃଶ୍ୟ । ଆଉ କେତେଘଣ୍ଟା ପରେ ମୃତ୍ୟୁର ଶୀତଳ ହସ୍ତ ଯାହାକୁ ଆଲିଙ୍ଗନ କରିବ ସେ କିନ୍ତୁ ଗଭୀର ନିଦ୍ରାରେ ଶାୟିତ । ସେ ଦୃଶ୍ୟ ଦେଖିଲେ କେହି ବିଶ୍ୱାସ କରିପାରିବ ନାହିଁ ଯେ ରାତ୍ରି ଶେଷ ହେବା ସଙ୍ଗେ ସଙ୍ଗେ ଯାହାର ଜୀବନଲୀଳା ଶେଷହେବ ସେ ସେଭଳି ନିରୁଦ୍ବିଗ୍ନ ନିଦ୍ରାରେ ଅଭିଭୂତ ହୋଇପାରେ ବୋଲି । ଶ୍ୱେତାଙ୍ଗ ପୁଲିସ ଅଫିସର ଜଣକ ଆଶ୍ଚର୍ଯ୍ୟ ଓ ସ୍ତମ୍ଭିତ ହୋଇଗଲା । ହେବାର କଥା । ଯେଉଁ ସଭ୍ୟତା ଓ ସଂସ୍କୃତି ମଣିଷର 'ଆତ୍ମା' ବା 'Soul'କୁ ଗ୍ରାମ୍ ବା ମିଟରରେ ମାପନ୍ତି, ସେମାନେ ବା ଅଧିକ କ'ଣ ବୁଝିବେ ? କିନ୍ତୁ ଭାରତୀୟ ମୁକ୍ତି-ସଂଗ୍ରାମୀର ମୃତ୍ୟୁ-ତତ୍ତ୍ୱର ଦର୍ଶନ ସଂପୂର୍ଣ୍ଣ ସ୍ୱତନ୍ତ୍ର । ଆତ୍ମା ନିକଟରେ ତା'ର ଥିଓରି ସଂପୂର୍ଣ୍ଣ ଅଲଗା । ସେ କହେ, ''ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ– ସୁତରାଂ ତାଙ୍କୁ ଫାଶୀ ମଞ୍ଚକୁ ଯିବାକୁ

୧. ଉପେନ୍ଦ୍ର ବନ୍ଦୋପାଧ୍ୟାୟ– ଆତ୍ମକଥା ପୃ- ୬

ଯେତେବେଳେ ପ୍ରସ୍ତୁତ ହେବାକୁ କୁହାଗଲା ଉତ୍ତର ମିଳିଲା,(୧) "ମୁଁ ସବୁବେଳେ ପ୍ରସ୍ତୁତ ।" ସତ୍ୟେନଙ୍କ ସାହସିକତା ଶ୍ୱେତାଙ୍ଗ ପୁଲିସ ଅଫିସରମାନଙ୍କୁ ମଧ୍ୟ କେମିତି ମୁଗ୍ଧ କରିଥିଲା ତା'ର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏ ସଂପର୍କରେ ବିପ୍ଳବୀ ହେମଚନ୍ଦ୍ର କାନୁନ୍‌ଗୋ ତାଙ୍କର ଜଣେ ବନ୍ଧୁ ଏସ୍. ସି. ରାୟଙ୍କୁ ଲେଖିଥିଲେ– 'ଫାଶୀଦିନ ସକାଳେ ଆମେ ଅଲ୍ଲିପୁର ସେଣ୍ଟ୍ରାଲ ଜେଲ ଫାଟକଠାରେ ଉପସ୍ଥିତ ଥିଲୁ । ଫାଶୀ ପରେ ଜଣେ ଚର୍ମପୋଷାକପରିହିତ ଶ୍ୱେତାଙ୍ଗ ପୁଲିସ ସୁପରିଟେନ୍‌ଡେ଼ଣ୍ଟ ଆମ ନିକଟରେ ପହଞ୍ଚି କହିଲେ – "You can go now. The thing is over, Satyendra died bravely." (ଆପଣମାନେ ବର୍ତ୍ତମାନ ଯାଇପାରନ୍ତି । କାମଶେଷ, ସତ୍ୟେନ୍ଦ୍ର ବୀରଭାବରେ ମୃତ୍ୟୁ ବରଣକଲା ।) ସତ୍ୟେନ୍ଦ୍ର ରହୁଥିବା କୋଠରିରୁ ତାଙ୍କୁ ଫାଶୀ ମଞ୍ଚକୁ ନେବାପାଇଁ ଯାଇଥିବା ଗୋରା ସର୍ଜେଣ୍ଟ ଜଣକ କହୁଥିଲେ – "When I went to his cell to get him to the gallows, he was wide awake. Well I am quite ready and he smiled. He walked steadily to the gallows. He mounted it bravely and bore it cheerfully. A brave lad." (2)

କିନ୍ତୁ ସତ୍ୟେନଙ୍କୁ ସରକାର ଏତେ ଭୟକରୁଥିଲା ଯେ ତାଙ୍କର ଶବ ସଂସ୍କାର କରିବାକୁ ମଧ୍ୟ ତାଙ୍କ ପରିବାରକୁ ଦିଆଗଲାନାହିଁ । କାରଣ ସରକାରର ଆଶଙ୍କା ଥିଲା ଯେ ଶବ ସଂସ୍କାର ଉପଲକ୍ଷେ ଯେଉଁ ବିରାଟ ବିକ୍ଷୁବ୍ଧ ଜନତା ଶ୍ମଶାନରେ ଏକତ୍ରିତ ହେବେ ତାଙ୍କୁ ସମ୍ଭାଳିବା ପୁଲିସ ପକ୍ଷରେ ସମ୍ଭବ ହେବନାହିଁ । କାରଣ ପୁଲିସ ଭାଷାରେ ସେ ଥିଲେ ଜଣେ 'ଡେଞ୍ଜରସ୍ କ୍ରିମିନାଲ୍' । କିନ୍ତୁ ଦେଶବାସୀ ଏତିକି ଭାବି ଆଶ୍ୱସ୍ତ ହେଲେ ଯେ Whatever goes up must come down." (ଯାହା କିଛି ଉର୍ଦ୍ଧ୍ୱକୁ ଯାଏ, ତା' ପୁଣି ତଳକୁ ଖସେ ।) ବାସ୍ତବରେ ଭାରତର ସଶସ୍ତ୍ର ବିପ୍ଳବ ଇତିହାସରେ ଏହାର ଅସଂଖ୍ୟ ପ୍ରମାଣ ପାଇବା ।

ନରେନ ହତ୍ୟାଦ୍ୱାରା 'ଅଲ୍ଲିପୁର ବୋମା ମକଦ୍ଦମା' ଢିଲା ହୋଇଗଲା । ଶ୍ରୀ ଅରବିନ୍ଦ ଖଲାସହେଲେ । ସତ୍ୟେନ-କାନାଇଙ୍କର ଆତ୍ମଦାନ ସାର୍ଥକ ହେଲା । ସେସନ୍ସ କୋର୍ଟରେ ବାରୀନବାବୁ ଓ ଉଲ୍ଲାସକର ଦତ୍ତଙ୍କୁ ଫାଶୀ ଦଣ୍ଡ ଦିଆଯାଇଥିଲେ ମଧ୍ୟ ହାଇକୋର୍ଟ ସେମାନଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦେଲା । ଅଲ୍ଲିପୁର ବୋମାକେଶ ଫୁସୁରିଗଲା ।

ସରକାରୀ ହିସାବରେ 'ଅଲ୍ଲିପୁର ବୋମା ଷଡ଼ଯନ୍ତ୍ରର ଇତିଶ୍ରୀ ହେଲା ସତ, କିନ୍ତୁ ବିପ୍ଳବୀର ହିସାବ ତ ଅଲଗା । ତା' ହିସାବରେ ତାହା ଶେଷ ହୋଇ ନ ଥିଲା । କାରଣ ନରେନ ଗୋସ୍ୱାମୀଙ୍କୁ ବାଦ୍‌ଦେଲେ ଅଲ୍ଲିପୁର ବମ୍ କେଶର ଆଉ ଦୁଇଟି ସୟତାନ ଥିଲେ । ଗୋଟିଏ ହେଲା– ସରକାରୀ ଓକିଲ ଆଶୁ ବିଶ୍ୱାସ ଓ ଅନ୍ୟ ଜଣକ ହେଉଛି

୧. ଭୂପେନ୍ଦ୍ର କିଶୋର ରକ୍ଷିତ ରାୟ– ଭାରତର ସଶସ୍ତ୍ର ବିପ୍ଳବ, ପୃ- ୧୦

୨. ଶ୍ରୀ ଗିରିଜା ଶଙ୍କର ରାୟଚୌଧୁରୀ– ଶ୍ରୀ ଅରବିନ୍ଦ ଓ ବାଂଲାର ସ୍ୱଦେଶୀ ଯୁଗ, ପୃ- ୪୮

ପୁଲିସ ଡି.ଏସ୍.ପି ସାମସୁଲ ଆଲାମ । ଆଶୁ ବିଶ୍ୱାସ କେବଳ ସରକାରୀ ଆଇନଜ୍ଞ ନ ଥିଲେ; ସେ ନିଜକୁ 'ମୁକ୍ତି ସଂଗ୍ରାମର ଯମ' ବୋଲି ଭାବୁଥିଲେ । ଅରବିନ୍ଦ ପ୍ରଭୃତି ବରେଣ୍ୟ ନେତାମାନଙ୍କ ବିରୋଧରେ 'ନ ଦେଖିଥିବା, ନ ଶୁଣିଥିବା' ସାକ୍ଷୀ ଯୋଗାଡ଼ କରିବା ଏବଂ ସେମାନଙ୍କୁ ସବୁପ୍ରକାର ବଜ୍ଜାତି ଟ୍ରେନିଂ ଦେବାରେ ସେ ଥିଲେ ସିଦ୍ଧହସ୍ତ ଏବଂ କେବଳ ସେଥିପାଇଁ ତାଙ୍କୁ 'ଶେଷ କରି ଦେବାକୁ' ବହୁଦିନୁ ବିପ୍ଲବୀ ମହଲ ସ୍ଥିର କରିସାରିଥିଲେ । କିନ୍ତୁ ଦକ୍ଷ ସୈନିକ ଏବଂ ଉପଯୁକ୍ତ ସମୟ ଓ ସୁବିଧାକୁ ଅପେକ୍ଷା ଥିଲା ।

ଶେଷରେ ବାହାରିଲେ ଜଣେ ଦୁର୍ଦ୍ଧର୍ଷ ବିପ୍ଲବୀ, କିନ୍ତୁ ତାଙ୍କ ଚେହେରା ଦେଖିଲେ ସାଧାରଣଲୋକ ବିଶ୍ୱାସ କରିବା କଠିନ ଯେ ତାଙ୍କଦ୍ୱାରା ଏହି ଦୁଃସାହସିକ କାର୍ଯ୍ୟ ସଂପନ୍ନ ହେବ ବୋଲି । କାରଣ ସେ ଜନ୍ମରୁ ଲେଙ୍ଗଡ଼ା, ଗୋଟିଏ ଗୋଡ଼ ଛୋଟା, ବାଁ ହାତଟି ପ୍ରାୟ ଅଚଳ, ଗୋଟାଏ ଆଙ୍ଗୁଳି ସୁଦ୍ଧା ନ ଥିଲା । ସଂକ୍ଷେପରେ ତାଙ୍କୁ ଗୋଟେ 'ପଙ୍ଗୁ' କହିଲେ ଭୁଲ ହେବ ନାହିଁ । ଅବଶ୍ୟ କଲିକତାର 'ହିତୈଷୀ ପ୍ରେସ'ରେ ଚାକିରି କରୁଥିଲେ । ନାମ ତାଙ୍କର ଚାରୁଚନ୍ଦ୍ର ବସୁ । କିନ୍ତୁ ସେତିକି ତାଙ୍କର ପରିଚୟ ନୁହେଁ । ତାଙ୍କର ଅସଲ ପରିଚୟ— ସେ ଜଣେ ଦୁର୍ଜୟ ମୁକ୍ତି-ସଂଗ୍ରାମୀ, ସେ ତାଙ୍କର ସେହି ଅଚଳ ହାତ ସାହାଯ୍ୟରେ ମଧ୍ୟ ବନ୍ଧୁକ ଚାଳନାରେ ପାରଦର୍ଶିତା ହାସଲକରିଥିଲେ ।

''ବନ୍ଧୁକମରା ମୁଁ ଯେତିକି ଶିଖି ଗଲିଣି (ଅନ୍ୟଜଣେ କେହି ବନ୍ଧୁକ ଧରନ୍ତି ଏବଂ ଚାରୁ ବାଁହାତ ଅଙ୍ଗୁଳିରେ ବନ୍ଧୁକର ଘୋଡ଼ିଆ ଟିପନ୍ତି ।) ସେତିକିରେ କାମ ଚଳିଯିବ । ଗୋଟାଏ ଭଲ ଗୁଳି ଭର୍ତ୍ତି ରିଭଲଭର ମୋ' ହାତରେ ଫିଟ୍ କରିଦିଅ, ମୁଁ ଆଶୁ ବିଶ୍ୱାସର ହିସାବରେ ନିକାଶ କରିବି ।'' ମୁକ୍ତି-ସଂଗ୍ରାମର ଅଣ୍ଡରଗ୍ରାଉଣ୍ଡ ସେଲ୍‌ରେ ଚାରୁଚନ୍ଦ୍ରଙ୍କର ଏହି ଅନୁରୋଧ ପ୍ରତ୍ୟାଖ୍ୟାତ ହେବାର କୌଣସି କାରଣ ନ ଥିଲା । ଚାରୁବାବୁଙ୍କର ଡାହାଣ ହାତରେ ଗୋଟାଏ ଲୋଡେଡ୍ ରିଭଲଭର ଫିଟ୍ କରିଦିଆଗଲା । ଆପାଦମସ୍ତକ ଚାଦର ଖଣ୍ଡେ ଘୋଡ଼େଇହୋଇ ଚାଲିଲେ ଚାରୁଚନ୍ଦ୍ର 'ଅଲ୍ଲିପୁର ସେଣ୍ଟ୍ରାଲ ଜେଲ' ଆଡ଼େ । ମହାନାୟକ 'ବାଘା ଯତୀନ'ଙ୍କ ମନ୍ତ୍ର ଶିଷ୍ୟ ଚାରୁଚନ୍ଦ୍ରଙ୍କର ସେତେବେଳେ କାହାକୁ ପରବା ଥିଲା ବୋଲି ଜଣାଯାଉ ନ ଥିଲା । ଆଶୁ ବିଶ୍ୱାସ ଉପରଓଳି ସାଢ଼େ ଚାରିଟାବେଳେ ଜେଲ ଫାଟକରୁ ବାହାରିପଡ଼ିବା ସଙ୍ଗେ ସଙ୍ଗେ ଚାରୁଚନ୍ଦ୍ର ଚଢ଼ାଇଲେ ଗୋଟିଏ ଅବ୍ୟର୍ଥ ଗୁଳି । ସେହି ଗୋଟାଏ ମାତ୍ର ଗୁଳିରେ ଭାରତମାତାର କୁ-ସନ୍ତାନ ବ୍ରିଟିଶ ସମ୍ରାଟଙ୍କର ଅତି ଆଦରର ଦୁଲାଳ ଆଶୁ ବିଶ୍ୱାସ ଏକ ଅସହାୟ ଚିତ୍କାର କରି ରାଜପଥରେ ଉତ୍ତାନଶାୟୀ ହୋଇ ପଡ଼ିଗଲା । କେହି ତା' ପିଠିରେ ପଡ଼ିଲେ ନାହିଁ ।''

ଚାରୁଚନ୍ଦ୍ର ଆରେଷ୍ଟ ହେଲେ, କାରଣ ସେ ନିଜେ ଆରେଷ୍ଟ ହେବାକୁ ପ୍ରସ୍ତୁତ ହୋଇ ଛିଡ଼ାହୋଇଥିଲେ । ତାଙ୍କ ବିରୋଧରେ ଦୌରା ସୁପର୍ଦ୍ଦ କରାଗଲା । ଅଭିଯୋଗ ଅତି ସ୍ପଷ୍ଟ, କାରଣ ଶହ ଶହ ଲୋକ ଆଖିରେ ଦେଖିଛନ୍ତି ସେ ହତ୍ୟାକାଣ୍ଡ । ସୁତରାଂ ସେସନ୍ସ କୋର୍ଟରେ ବିଚାର ହେବାର କଥା ।

କନ୍ତୁ ବୀର ଚାରୁଚନ୍ଦ୍ର ଅବଜ୍ଞା ସ୍ୱରରେ କୋଟରେ କହଲେ— "No sessions trial. Hang me tomorrow. It was all preordained that Ashu Babu shall be shot by me and I shall be hanged. I killed him as he was an enemy of my country." (୧)

୧୯୦୯ ମସିହା ମାର୍ଚ୍ଚ ମାସ ୧୯ ତାରିଖରେ ବୀର ଚାରୁଚନ୍ଦ୍ର ଫାଶୀ ରଜ୍ଜୁକୁ ଗଳାରେ ଧାରଣ କରି ଅମରହେଲେ ଏବଂ ପଛରେ ଛାଡ଼ିଗଲେ ତାଙ୍କର ଗୁଣମୁଗ୍ଧ କୋଟି କୋଟି ଦେଶବାସୀଙ୍କୁ ।

X X X X

ନରେନ ଯାଇଥିଲା; ଆଶୁ ବିଶ୍ୱାସ ମଧ ଗଲା, ବାକି ରହିଲା ଡି.ଏସ୍.ପି. ସମସୁଲ ଆଲାମ । ମୁକ୍ତି-ସଂଗ୍ରାମର ଏ ଓ୍ୱାନ ଦୁସମନ୍ । ସରକାରୀ କାଉନସେଲର ମିଷ୍ଟର ନର୍ଟନର ଦକ୍ଷିଣହସ୍ତ— ରାଇଟ୍ ହ୍ୟାଣ୍ଡମ୍ୟାନ ମିଷ୍ଟର ସମସୁଲକୁ ତେଣୁ 'ସଫା' କରିଦେବାକୁ ହେଲା । ଭାରତମାତାର ଏହି କୁଳାଙ୍ଗାରକୁ ବିଦାକରିଦେବାକୁ ବାହାରି ଆସିଲେ ମୁକ୍ତି-ସଂଗ୍ରାମର ଅନ୍ୟତମ ରଥୀ ଓ ସ୍ୱଳ୍ପଭାଷୀ ବୀରେନ ଦତ୍ତ ଗୁପ୍ତ ।

୧୯୧୦ ମସିହା ଜାନୁୟାରୀ ୨୪ ତାରିଖରେ ଦିନ ସାଢ଼େ ଦୁଇଟାରେ ଜନଗହଳି କଲିକତା ହାଇକୋର୍ଟର ଦୋତାଲାରୁ ଓହ୍ଲାଇ ଆସିବାବେଳେ ବୀରେନଙ୍କ ଗୁଳିରେ ସମସୁଲ ଭୂଲୁଣ୍ଠିତ ହେଲା । ସମସୁଲ ଆଲାମ ଗୋଟାଏ ଗୁଳିରେ ଖତମ୍ ।

ବିଚାରରେ ଯାହା ହେବାର କଥା ସେୟା ହେଲା । ବୀରେନଙ୍କୁ ଫାଶୀ ଦଣ୍ଡର ପୁରସ୍କାର ମିଳିଲା । ଫାଶୀକୁ ଯିବା ପୂର୍ବରୁ ମାତ୍ର ଧାଡ଼ିଏ କଥା ବାହାରିଥିଲା ତାଙ୍କ ମୁହଁରୁ— 'ମୁଁ ମୋ' କାମ କରିଛି । ତୁମେ ଏଥର ଯାହା କରିବାର କର । 'ବନ୍ଦେ ମାତରମ୍' ।

୧୯୧୦ ମସିହା ଫେବୃୟାରୀ ୨୧ ତାରିଖରେ ବୀରେନଙ୍କୁ ସେହି 'ଅଲ୍ଲିପୁର ଜେଲ'ରେ ଫାଶୀ ଦିଆଗଲା । ଲିଭିଗଲା ତାଙ୍କର ଜୀବନ ପ୍ରଦୀପ, କିନ୍ତୁ ଜଳିଉଠିଲା କୋଟି କୋଟି ମୁକ୍ତି ପ୍ରଦୀପ । ପ୍ରକାଶ୍ୟ ରାଜପଥ, ଜନଗହଳି ହାଇକୋର୍ଟ ବାରଣ୍ଡାରେ ଭାରତୀୟ ମୁକ୍ତି-ସଂଗ୍ରାମର ଏହି ଦୁଃସାହସିକ ଅଭିଯାନ ସାରା ବିଶ୍ୱରେ ଯୁଗପତ୍ ବିସ୍ମୟ ସୃଷ୍ଟି କରିଥିଲା । ସ୍ୱୟଂ ଅରବିନ୍ଦ ଲେଖିଥିଲେ, "Boldest of many bold acts of violence. They (revolutionaries) prefer public place and crowded buildings. Nasik-London-Calcutta [perhaps regarding Jackson in Nasik, Curzon Willie in London and many in Calcutta-Author.] Goswami in jail. These are remarkable features." (2)

ବୀରେନ ଦତ୍ତଗୁପ୍ତହିଁ ହେଉଛନ୍ତି ଯଥାର୍ଥରେ 'ଅରବିନ୍ଦ- ବିପ୍ଳବ' ଯୁଗର ସର୍ବଶେଷ ସହିଦ ।

---

୧. K. C. Ghose– Role of Honour Page - 114.

୨. କର୍ମଯୋଗୀନ ପତ୍ରିକା ( ୧୯୧୦ ଜାନୁୟାରୀ ୨୪ ତାରିଖ) ଶ୍ରୀ ଅରବିନ୍ଦ ଓ ବାଂଲାର ସ୍ୱଦେଶୀ ଯୁଗ ।

**ଦକ୍ଷିଣ ଭାରତରେ ବିପ୍ଳବର ଝଲକ :**

ମହାରାଷ୍ଟ୍ରରେ ଜନ୍ମଲାଭ କରିଥିବା ଓ ବଙ୍ଗଳାରେ ଲାଳିତ ପାଳିତ ଓ ପୁଷ୍ଟ ହୋଇଥିବା ସଶସ୍ତ୍ର ବିପ୍ଳବବାଦର ଝଲକ ଭାରତର ଆଉ ଯେଉଁ କେତୋଟି ରାଜ୍ୟରେ ଅନୁଭୂତ ହୋଇଥିଲା ପୂର୍ବତନ ମାନ୍ଦ୍ରାଜ ରାଜ୍ୟ ସେଥିମଧ୍ୟରୁ ଅନ୍ୟତମ । ଆଜିକାଲି ମାନ୍ଦ୍ରାଜ ବା ତାମିଲନାଡୁ କହିଲେ ଯାହା ବୁଝାଉଛି ବିଂଶଶତାବ୍ଦୀର ପ୍ରଥମ ଭାଗରେ ତାହା ଥିଲା ତାହା ଗୋଦାବରୀଠାରୁ କାବେରୀ ନଦୀ ପର୍ଯ୍ୟନ୍ତ ବ୍ୟାପ୍ତ ଏକ ବିରାଟ ଅଞ୍ଚଳ । ଆଧୁନିକ ଆନ୍ଧ୍ର, ତାମିଲନାଡୁ ଓ ମହୀଶୂର ପ୍ରଭୃତି ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା । ମାନ୍ଦ୍ରାଜ ପ୍ରଦେଶର ବୈପ୍ଳବିକ ପରଂପରା ଯାହା ଥାଉନା କାହିଁକି ସ୍ୱାମୀ ବିବେକାନନ୍ଦଙ୍କର ଆଧ୍ୟାତ୍ମିକ ଓ ବୈପ୍ଳବିକ ପ୍ରଭାବରେ ଏହା ଅତି ଗଭୀରଭାବେ ପ୍ରଭାବିତ ହୋଇଥିଲା । ପାଶ୍ଚାତ୍ୟ ଦେଶ ଉପରେ ସଫଳତା ସହକାରେ ଅଭିଯାନ ଚଳାଇ ଯେତେବେଳେ ସେ ମାନ୍ଦ୍ରାଜ ବନ୍ଦରରେ ପହଞ୍ଚିଲେ ତାଙ୍କୁ ଯେଉଁ ବୀରୋଚିତ ସମ୍ବର୍ଦ୍ଧନା ଦିଆଯାଇଥିଲା, ତାହା ଯେକୌଣସି ବିଜୟୀ ରାଜା ବା ସୈନ୍ୟ ସେନାପତି ପାଇଁ ମଧ୍ୟ ଦୁର୍ଲଭ । ସ୍ୱାମୀଜୀ କେବଳ ଭାରତରେ ଜାତୀୟତାବାଦର ଜନକ ନ ଥିଲେ, ସେ ଯଥାର୍ଥରେ ଜଣେ ବିପ୍ଳବୀ ସନ୍ନ୍ୟାସୀ ଥିଲେ, ଯାହାଙ୍କର ଓଜସ୍ୱିନୀ ବାଣୀ ଦକ୍ଷିଣ ଭାରତରେ ଜାତୀୟତାର ପ୍ଲାବନ ସୃଷ୍ଟିକରିଥିଲା । ତାଙ୍କର ସେହି ଚିରସ୍ମରଣୀୟ ଆହ୍ୱାନ ''ହେ ଭାରତ, ଭୁଲନାହିଁ ଯେ ପତିତ ଭାରତବାସୀ, ମୂର୍ଖ ଭାରତବାସୀ, ଦରିଦ୍ର ଭାରତବାସୀ, ନିରକ୍ଷର ଭାରତବାସୀ, ମୋଚି ଓ ମେହେନ୍ତର ଭାରତବାସୀ, ତୁମର ରକ୍ତ ମାଂସ, ତୁମର ଭାଇ । ତୁମେ ଗର୍ବ କର ଯେ ତୁମେ ଜଣେ ଭାରତୀୟ । ଭାଇମାନେ, ଉଚ୍ଚକଣ୍ଠରେ ଘୋଷଣାକର– ଭାରତର ମାଟି ମୋ'ର ସ୍ୱର୍ଗ, ଭାରତର ମଙ୍ଗଳ ମୋ'ର ମଙ୍ଗଳ । ହେ ଭାରତ, ଏହି ପରାନୁବାଦ, ପରାନୁକରଣ, ପରମୁଖାପେକ୍ଷା, ଏହି ଦାସସୁଲଭ ଦୁର୍ବଳତା, ଏହି ଘୃଣିତ ଜଘନ୍ୟ ନିଷ୍ଠୁରତା– ଏତିକି ମାତ୍ର ସମ୍ବଳରେ ତୁମେ ଉଚ୍ଚାଧିକାର ଲାଭ କରିବ ? ଏହି ଲଜ୍ଜାକର କାପୁରୁଷତାର ସହାୟତାରେ ତୁମେ ବୀରଭୋଗ୍ୟା ସ୍ୱାଧୀନତା ଲାଭକରିବ ?''

''ନୂତନ ଭାରତ ଜାଗିଉଠୁ, ଜାଗିଉଠୁ ଲଙ୍ଗଳ ଧରି, ଚଷାର କୁଟୀର ଭେଦକରି । କେଉଟ, ମାଝି, ମୋଚି ଓ ମେହେନ୍ତର କୁଡ଼ିଆ ଭିତରୁ, ଜାଗିଉଠୁ ତେଜରାତି ଦୋକାନରୁ, ଚନାଚୂରବାଲାର ଚୁଲ୍ଲୀ ପାଖରୁ; ଜାଗିଉଠୁ କାରଖାନାରୁ, ହାଟରୁ, ବଜାରରୁ, ଜାଗିଉଠୁ ଝାଡ଼ ଜଙ୍ଗଲ, ପାହାଡ଼ ପର୍ବତରୁ । ଏମାନେ ସହସ୍ର ସହସ୍ର ବର୍ଷ ଅତ୍ୟାଚାର ସହିଛନ୍ତି । ନିରବରେ ସହିଛନ୍ତି । ସେଥିରୁ ପାଇଛନ୍ତି ଅଦ୍ଭୁତ ସଦାଚାର ବଳ ଓ ସହିଷ୍ଣୁତା । ଚିରଦିନ ଦୁଃଖ ଭୋଗ କରିଛନ୍ତି – ସେଥିରୁ ପାଇଛନ୍ତି ଅଟଳ ଜୀବନୀ ଶକ୍ତି । ଏମାନେ ମୁଠାଏ ପଖାଳ ଖାଇ ଦୁନିଆ ଓଲଟାଇ ଦେଇପାରନ୍ତି ।''

ସ୍ୱାମୀଜୀଙ୍କର ଏହି ଆଗ୍ନେୟ ଆହ୍ୱାନ ସତ୍ୟାନୁସଂଧାନୀମାନଙ୍କୁ ଯେମିତି ନୂତନ ପ୍ରେରଣାରେ ଉଦ୍‌ବୁଦ୍ଧ କରିଥିଲା, ଭାରତୀୟ ମୁକ୍ତିସଂଗ୍ରାମୀମାନଙ୍କୁ ମଧ୍ୟ କରିଥିଲା ସେମିତି ଅନୁପ୍ରାଣିତ । ୧୯୦୭ରେ ଯେତେବେଳେ ବିପିନଚନ୍ଦ୍ର କିଂସ୍‌ଫୋର୍ଡ଼୍‌ଦ୍ୱାରା ଦଣ୍ଡିତ ହେଲେ ତା'ର ବହୁ ପୂର୍ବରୁ ବିପିନଚନ୍ଦ୍ରଙ୍କର ନାମ ମାନ୍ଦ୍ରାଜବାସୀଙ୍କଠାରେ ଅତୀବ ପ୍ରିୟ ଥିଲା; ଏପରିକି ମାନ୍ଦ୍ରାଜବାସୀ ବିପିନଚନ୍ଦ୍ରଙ୍କୁ The Lion of Swaraj ବା' ସ୍ୱରାଜ ସିଂହ । ନାମରେ ଭୂଷିତ କରିଥିଲେ ଏବଂ ତାହାରି ମାଧ୍ୟମରେ ମାନ୍ଦ୍ରାଜର ଗାଁଗହଳରେ ହୋଇଥିଲା ବୈପ୍ଳବିକ ପ୍ରଚାର । ଶ୍ରୀ ଚିଦାମ୍ବରମ୍ ପିଲାଇ ଓ ସୁବ୍ରମଣ୍ୟମ୍ ଶିବମ୍ ଏହି ଆନ୍ଦୋଳନର ମୁଖ୍ୟ ନେତୃତ୍ୱ ନେଇଥିଲେ । ଫଳରେ ଅଳ୍ପଦିନ ଭିତରେ ଉଭୟ ନେତା ଗିରଫ ହୋଇଥିଲେ । ସରକାର ଭାବିଥିଲା ଯେ ମୁଖ୍ୟ ନେତାମାନଙ୍କୁ ଗିରଫ କରିନେଲେ ମାନ୍ଦ୍ରାଜର ବିପ୍ଳବ ପ୍ରଚେଷ୍ଟା ନିଷ୍ପ୍ରଭ ହୋଇଯିବ, କିନ୍ତୁ ଫଳ ହେଲା ଓଲଟା । ଜନଅସନ୍ତୋଷ ଅଧିକ ତେଜୀୟାନ ହେଲା । ବେଜୱାଡ଼ାରେ ସେତେବେଳେ 'ରାଜ' ନାମକ ଏକ ଜାତୀୟବାଦୀ ପତ୍ରିକା ପ୍ରକାଶିତ ହେଉଥିଲା ଏବଂ ବିପ୍ଳବବାଦର ପ୍ରଚାର ପାଇଁ ତାହା ଥିଲା ଏକ ପ୍ରଧାନ ଅସ୍ତ୍ର । ଟ୍ୟୁଟିକୋରିନର ଅନ୍ୟତମ ବିପ୍ଳବୀ କୃଷ୍ଣସ୍ୱାମୀ ଏହି ପତ୍ରିକାରେ 'ଫିରଙ୍ଗୀରାଜ ଧ୍ୱଂସହେଉ' ଶୀର୍ଷକ ପ୍ରବନ୍ଧଟି ଲେଖିଥିଲେ । ସେହି ଅପରାଧରେ ତାଙ୍କୁ ଦୀର୍ଘ କାରାବାସ ଭୋଗ କରିବାକୁ ପଡ଼ିଥିଲା । କିନ୍ତୁ ସେତେବେଳକୁ ବିପ୍ଳବୀମାନଙ୍କର ପ୍ରଧାନ ଅନୁଷ୍ଠାନ 'ଭାରତମାତା ଆସୋସିଏସନ୍' ଗଠିତ ହୋଇସାରିଥାଏ । ସରକାର ଯେତେବେଳେ ଗଣତାନ୍ତ୍ରିକ ଓ ଶାନ୍ତିପୂର୍ଣ୍ଣ ଆନ୍ଦୋଳନକୁ କଠୋର ହସ୍ତରେ ଦମନ କରିବାକୁ ଲାଗିଲା, ସେତେବେଳେ ଏହା ସଶସ୍ତ୍ର ବିପ୍ଳବକୁ ରୂପାନ୍ତରିତ ହେବାରେ କିଛି ବୈଚିତ୍ର୍ୟ ନ ଥିଲା । ଫଳରେ 'ଭାରତମାତା ଆସୋସିଏସନ' ଜରିଆରେ ଚାଲିଲା କର୍ମୀ ଟ୍ରେନିଂ କାର୍ଯ୍ୟକ୍ରମ ବ୍ୟାପକ ଭାବେ । ୧୯୧୦ରେ ଲଣ୍ଡନର 'ଇଣ୍ଡିଆ ହାଉସ'ରୁ ଆସିଲେ ଅନ୍ୟତମ ବିପ୍ଳବୀ ଭି. ଭି. ଏସ. ଆୟାର । ମଦନଲାଲ ଧୀଙ୍ଗ୍ରାଙ୍କର ଫାଶୀ ପରେ ଇଂଲଣ୍ଡରେ ଥିବା ବିପ୍ଳବୀ ତରୁଣଗଣ ସେଠାରେ ଆବଦ୍ଧ ନ ରହି ଭାରତର ଗାଁଗହଳକୁ ଖେଦିଯାଇଥିଲେ । ସେହି ନିଷ୍ପତ୍ତି ଅନୁସାରେ ଆୟାର ଭାରତ ଆସିଲେ । ଖୋଲାଗଲା ପଣ୍ଡିଚେରୀରେ ଏକ ବନ୍ଧୁକ ଚାଳନା ଶିକ୍ଷାକେନ୍ଦ୍ର । ବ୍ରିଟିଶ୍ ବିରୋଧୀ ଆନ୍ଦୋଳନ ପାଇଁ ସେତେବେଳେ ପଣ୍ଡିଚେରୀ ଏକ ଉତ୍କୃଷ୍ଟ କ୍ଷେତ୍ର ଥିଲା, କାରଣ ତାହା ଫରାସୀ ଅଧୀନରେ ଥିବାରୁ ଇଂରେଜ ପୁଲିସର ଦୃଷ୍ଟିର ବାହାରେ ରହିପାରିଥିଲା । ବନ୍ଧୁକ ଚାଳନା ଶିକ୍ଷା ଦିଆଯିବା ସଙ୍ଗେ ସଙ୍ଗେ ନୀଳକାନ୍ତ ବ୍ରହ୍ମଚାରୀ ଓ ଶଙ୍କର କୃଷ୍ଣଙ୍କ ନେତୃତ୍ୱରେ ଚାଲିଲା ବିପ୍ଳବବାଦର ପ୍ରଚାର । ପରେ ସେମାନଙ୍କ ସହ ଯୋଗଦେଲେ ତ୍ରିଭାଙ୍କୁରର ୱାଞ୍ଚି । ଏହି ମାଲୟାଲମ ଯୁବକ ଯେଉଁଳି ତେଜସ୍ୱୀ ସେହିଭଳି ନିର୍ଭୀକ । ଅଳ୍ପଦିନ ଟ୍ରେନିଂରେ ସେ ଅର୍ଜନ କଲେ ବଂଧୁକ ଚାଳନାରେ ଅସାଧାରଣ ଦକ୍ଷତା । ତେନଭିଲି ଜିଲ୍ଲା ମାଜିଷ୍ଟ୍ରେଟ୍ ଆଶେ (Ashe) ଥିଲେ

ବିପ୍ଳବୀମାନଙ୍କର ପ୍ରଥମ ଲକ୍ଷ୍ୟସ୍ଥଳ ଏବଂ ସେ ଦାୟିତ୍ୱ ମୁଣ୍ଡକୁ ନେଲେ ବିପ୍ଳବୀ ୱାଞ୍ଚି । ୧୯୧୧ର ଜୁନ୍ ୧୭ ତାରିଖ ଦିନ ଆସିଲା ସେହି ଦାୟିତ୍ୱ ସଂପାଦନ କରିବାର ସୁଯୋଗ । ମିଷ୍ଟର ଆଶେ ସେଦିନ ମନିଆଞ୍ଚି ଷ୍ଟେସନରେ ଓହ୍ଲାଇ କୋଦାଇକେନାଲ ଅଭିମୁଖେ ଏକ୍ସପ୍ରେସ ଗାଡ଼ିର ପ୍ରଥମ ଶ୍ରେଣୀ ଡବାରେ ଉଠିଲା । ୱାଞ୍ଚି ଏହାକୁ ଏକ ସୁବର୍ଣ୍ଣ ସୁଯୋଗ ମନେକରି ତାକୁ ଲକ୍ଷ୍ୟକରି ରିଭଲଭରରୁ ଗୁଳି ଫୁଟାଇଲେ । ପ୍ଲାଟ୍‌ଫର୍ମ ଉପରେ ଠିଆହୋଇ ଡବା ଭିତରକୁ ଏଭଳି ଲକ୍ଷ୍ୟକରି ଫାୟାରିଂ କଲା ଯେ ଗୋଟିଏ ଗୁଳିରେ ଆଶେ ଶେଷହୋଇଗଲା । ସଙ୍ଗେ ସଙ୍ଗେ ସୃଷ୍ଟିହୋଇଗଲା ପ୍ରବଳ ହୈ-ଚୈ । ୱାଞ୍ଚିକୁ ଚାରିପଟରୁ ଘେରିଗଲେ ପୁଲିସ ଓ ସାଧାରଣ ଲୋକ । କିନ୍ତୁ ୱାଞ୍ଚି ଆରେଷ୍ଟ ହେବା ପୂର୍ବରୁ ନିଜ ରିଭଲଭର ସାହାଯ୍ୟରେ ଆତ୍ମୋତ୍ସର୍ଗ କରିସାରିଥିଲେ । ଏହିଭଳି ଭାବରେ ଏକ ମହାନ୍ ବିପ୍ଳବୀର ଉଜ୍ଜ୍ୱଳ ଜୀବନ ପ୍ରଦୀପ ଲିଭିଗଲା ।

ପୁଲିସ ଜୀବନ୍ତ ୱାଞ୍ଚିକୁ ପାଇଲା ନାହିଁ ସତ୍ୟ, କିନ୍ତୁ ଆରମ୍ଭ ହେଲା 'ତିନେଭିଲି ଷଡ଼ଯନ୍ତ୍ର ମକଦ୍ଦମା' ଏବଂ ବହୁ ଉଦ୍ୟମ ଫଳରେ ଓ ବହୁଦିନ ପରେ ଆଉ ଦୁଇ ଜଣ ମୁକ୍ତି-ସଂଗ୍ରାମୀଙ୍କୁ ପୁଲିସ୍ ଆରେଷ୍ଟ କଲା । ପ୍ରାତଃସ୍ମରଣୀୟ ସେହି ବିପ୍ଳବୀ ଯୁଗଳ ହେଉଛନ୍ତି ଭେଙ୍କଣ୍ଟେଶ୍ୱର ଓ ଧର୍ମରାଜ । ବିଚାର ଚାଲିଲା । କିନ୍ତୁ ବ୍ରିଟିଶ୍ ପୁଲିସ, ଇଂରେଜୀ ଆଇନ ଓ ଗୋରା ବିଚାରପତିଙ୍କୁ ଫାଙ୍କିଦେଇ ଉଭୟ ୧୯୧୧ ମସିହା ଅକ୍ଟୋବର ଦୁଇ ତାରିଖରେ ସେହି ଜେଲ ଭିତରେହିଁ ଆତ୍ମୋତ୍ସର୍ଗ କଲେ ପିସ୍ତଲରେ । ଜେଲ ଭିତରକୁ କେମିତି ପିସ୍ତଲ ଗଲା ତା'ର କିଛି ପତ୍ତା ମିଳିଲା ନାହିଁ । ଏହିଭଳି ଭାବରେ ଦକ୍ଷିଣ-ଭାରତର ତିନି ବୀର ବିପ୍ଳବୀ ଅଗ୍ନିଯୁଗର ମାତୃବେଦୀରେ ଆତ୍ମ-ବଳିଦାନ ଦେଇ ମୁକ୍ତି-ସଂଗ୍ରାମର ଇତିହାସକୁ କରିଗଲେ ଆହୁରି ଗରିମାମୟ ।

□□□

## ଅଧ୍ୟାୟ - ଚଉଦ

# ମୁକ୍ତିଯୁଦ୍ଧର ଦୁର୍ବାର ଗତି

ଅଲ୍ଲିପୁର ବୋମା କେଶ୍‌ରେ ସତ୍ୟେନ-କାନାଇଙ୍କ ବ୍ୟତୀତ ଅନ୍ୟ କାହାକୁ ପ୍ରାଣଦଣ୍ଡ ଦିଆଯାଇ ପାରିଲା ନାହିଁ ସତ୍ୟ, କିନ୍ତୁ ସରକାର ଭାବିଥିଲେ ଯେ ଏହା ଫଳରେ ବିପ୍ଳବୀ ମହଲରେ ନିଶ୍ଚିତ ଭାବେ ଆତଙ୍କ ସୃଷ୍ଟିହୋଇଛି ଏବଂ ସାଧାରଣ ଜନତା ମଧ୍ୟ ଭୀତତ୍ରସ୍ତ ହୋଇଯାଇଛି । ସୁତରାଂ ସଶସ୍ତ୍ର ବିପ୍ଳବ ସଂପୂର୍ଣ୍ଣ ସ୍ତବ୍ଧ ନ ହେଲେ ବି ଅନ୍ତତଃ କେତେ ବର୍ଷପାଇଁ ଏହା ନିଶ୍ଚିତରୂପେ ସ୍ତିମିତ ହୋଇପଡ଼ିବ । ବିଶେଷତଃ ଅରବିନ୍ଦଙ୍କର ପଣ୍ଡିଚେରୀ ପଳାୟନ ଓ ତିଲକଜୀଙ୍କର ସୁଦୂର ବର୍ମାରେ କାରାବାସ ଫଳରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟିହୋଇଥିଲା ତାହା ପୂରଣକରିବାକୁ କେହି ଆଖିଦୃଶିଆ ନେତା ନ ଥିଲେ; ଅନ୍ତତଃ ସରକାରୀ ମହଲରେ ଏହାହିଁ ଥିଲା ହିସାବ ।

କିନ୍ତୁ ବିପ୍ଳବୀ ମହଲର ହିସାବ ସଂପୂର୍ଣ୍ଣ ଓଲଟା ଥିଲା । ସତ୍ୟେନ-କାନାଇ ଅଲ୍ଲିପୁର ଜେଲ ଭିତରେ ଯେଉଁ ଦୁଃସାହସିକ କାର୍ଯ୍ୟ କଲେ ଏବଂ ଚାରୁଚନ୍ଦ୍ରଙ୍କ ଭଳି ଜଣେ ଶାରୀରିକ ଅସମର୍ଥ ବିପ୍ଳବୀ ଯେପରି ଅଲୌକିକ ବୀରତ୍ୱ ପ୍ରଦର୍ଶନକଲେ ତାହା ପ୍ରମାଣିତ କରିଦେଲା ଯେ ଶାରୀରିକ ଅକ୍ଷମତା କୌଣସି ମହତ୍ କାର୍ଯ୍ୟ ସଂପାଦନ କରିବାରେ ଅନ୍ତରାୟ ନୁହେଁ, ଏପରିକି କଠିନ ଶ୍ରମସାପେକ୍ଷ କାର୍ଯ୍ୟ ପାଇଁ ମଧ୍ୟ ନୁହେଁ । ଇଂରେଜମାନେ ଯେ ଅଜେୟ ନୁହଁନ୍ତି ଏହା ବାରମ୍ବାର ପ୍ରମାଣିତ ହେଲା । ବିପ୍ଳବୀମାନେ ଦେଖିଲେ ଯେ ଅଧିକ ସଂଗଠିତ ଓ ବ୍ୟାପକଭାବେ ଆନ୍ଦୋଳନ କରାଯାଇପାରିଲେ ସରକାର ଉପରେ ଏହା ଗୁରୁତର ପ୍ରଭାବ ବିସ୍ତାରକରିବ ଏବଂ ଦେଶବାସୀଙ୍କ ଭିତରେ ଯୁଗପତ୍ ଉତ୍ସାହ, ଉଦ୍ଦୀପନା ସୃଷ୍ଟିକରି ଭାରତର ମୁକ୍ତି-ସଂଗ୍ରାମକୁ ଦୁର୍ବାର ଗତିରେ ଆଗେଇନେବ ।

ଅରବିନ୍ଦ ତିଲକଙ୍କ ପରେ ଅସଂଖ୍ୟ ମୁକ୍ତି-ସଂଗ୍ରାମୀ ଏହି ଦୁଃସାହସିକ କାର୍ଯ୍ୟ ପାଇଁ ଆଗେଇ ଆସିଲେ । ସେମାନଙ୍କର ସାହସିକତା ଓ ଆତ୍ମୋତ୍ସର୍ଗ ଯୁଗ ଯୁଗ ଧରି ଯେକୌଣସି ଜାତିର ଇତିହାସକୁ ମଧ୍ୟ ସମୃଦ୍ଧ କରିବ । କିନ୍ତୁ ଆମ ଦେଶର ଦୁର୍ଭାଗ୍ୟ ଯେ ଆମ୍ଭେମାନେ ସେମାନଙ୍କ ବିଷୟରେ ବିଶେଷ କିଛି ଜାଣୁ ନ ଥାଇ ।

ଭାରତମାତାର ଏହି ଧନୁର୍ଦ୍ଧର ପୁଅମାନଙ୍କର ତାଲିକା ଏତେ ଦୀର୍ଘ ଯେ ଓ ସେମାନଙ୍କ ଭିତରୁ ଅଧିକାଂଶ ଏଭଳି ଅଜ୍ଞାତ ଓ ଲୋକଲୋଚନର ଅନ୍ତରାଳରେ

ପ୍ରାଣବଳି ଦେଇଅଛନ୍ତି ଯେ ସେମାନଙ୍କର ସଂପୂର୍ଣ୍ଣ ବିବରଣୀ ପ୍ରକାଶ କରିବା ଆମ୍ଭମାନଙ୍କ ପକ୍ଷରେ ଅସମ୍ଭବ । ଏହା ମହାବିପ୍ଳବୀ ରାସବିହାରୀ ଓ ମହାନାୟକ ବାଘା ଯତୀନଙ୍କୁ କେନ୍ଦ୍ରକରି ଅରବିନ୍ଦ ପରବର୍ତ୍ତୀ ଯୁଗରେ ଯେଉଁ ବିରାଟ ବିପ୍ଳବୀ ସଂପଦ ଗଢ଼ିଉଠିଥିଲା ସେହି ଗୋଷ୍ଠୀ ଭିତରୁ ହେମଚନ୍ଦ୍ର, ଶ୍ରୀଶପାଲ, ବିଷ୍ଣୁ ଗଣେଶ ପିଙ୍ଗଲେ ପ୍ରଭୃତିଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ହେଲେ ବି ଭାରତ ବାହାରେ ମଧ୍ୟ ବହୁ ସଂଖ୍ୟକ ବିପ୍ଳବୀ ଜୀବନକୁ ପାଣିଛଡ଼େଇ ସଶସ୍ତ୍ର ବିପ୍ଳବରେ ଝାସଦେଇଥିଲେ ।

**ବୋମା ବିଧ୍ୱସ୍ତ ବଡ଼ଲାଟ :**

୧୯୧୧ ମସିହା ଡିସେମ୍ବର ୨୩ ତାରିଖ । ଦିଲ୍ଲୀ ସହରରେ ହାଡ଼ଭଙ୍ଗା ଶୀତ, ରକ୍ତ ବରଫ ପାଲଟିଯିବା ଥଣ୍ଡା, କିନ୍ତୁ ଦିଲ୍ଲୀବାସୀଙ୍କୁ ସେଦିନ ନିଦ ନାହିଁ; ଯେମିତିକି ସାରା ଦିଲ୍ଲୀ ସହର ରାସ୍ତା ଉପରକୁ ଚାଲିଆସିଛି । ସାରା ଭାରତରୁ ଅସଂଖ୍ୟ ଲୋକ ଆସିଛନ୍ତି ଦିଲ୍ଲୀ । ରାଜା ମହାରାଜା, ସାଧବ, କଟୁଆଳ, ହାକିମହୁକୁମା ସମସ୍ତେ ଅଣନିଃଶ୍ୱାସୀ ହୋଇ ଛୁଟିଛନ୍ତି । ଦରବାର, ଦରବାର– ଭାଇସରାୟ ଲର୍ଡ଼ ହାର୍ଡ଼ିଂଞ୍ଜଙ୍କ ଦରବାର । ଭାରତର ରାଜଧାନୀ କଲିକତାରୁ ସ୍ଥାନାନ୍ତରିତ ହେଉଛି ଦିଲ୍ଲୀ ସହରକୁ । କଲିକତା ମୋଟେ ନିରାପଦ ସହର ନୁହେଁ । ବଙ୍ଗାଳୀମାନେ ବଡ଼ ଅବିଶ୍ୱାସୀ, ସବୁବେଳେ ବୋମା ବଂଧୁକ ନେଇ ସେମାନଙ୍କର କଥାବାର୍ତ୍ତା । ସାଇବମାନଙ୍କର ଧାରଣା ''ବଙ୍ଗାଳୀମାନେ ଚାଲନ୍ତି ନାହିଁ, ନାଚନ୍ତି; କଥା କହନ୍ତି ନାହିଁ ସ୍ଲୋଗାନ ଦେଇ ଆକାଶ ଫଟେଇ ଦିଅନ୍ତି,'' ଲର୍ଡ଼ କର୍ଜନ ତ ସେଥିପାଇଁ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ବ୍ରୋଡ଼ିକଙ୍କୁ ଲେଖିଥିଲେ — "The Bengalis who think themselves nation and who dream of a future when British will have been turned out and a Bengali Babu will be installed in Government House, Calcutta." ସୁତରାଂ ନାଃ, ଆଉ କଲିକତା ନୁହେଁ, କେତେବେଳେ କେଉଁକଥା ! ବରଂ ଦିଲ୍ଲୀ ଶହେଗୁଣ ଭଲ । ବେଶ୍ ଥଣ୍ଡା, ଗୋଳମାଳ ନାହିଁ, କଲିକତାରୁ ଗଦାଏ ବାଟ !''

କଲିକତା ବଦଳରେ ଦିଲ୍ଲୀ ଭାରତର ରାଜଧାନୀ ହେବ, ସେଥିପାଇଁ ଦରବାର ଏବଂ ସେହି ଉପଲକ୍ଷେ ବିରାଟ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରା । ଦିଲ୍ଲୀ ସହର ଉଠୁଛି, ପଡୁଛି । ସମସ୍ତଙ୍କ ମୁହଁରେ ଗୋଟିଏ କଥା– ଆମ ଦିଲ୍ଲୀ ସହର ଭାରତର ରାଜଧାନୀ ହେବ । ଖୋଦ୍ ବଡ଼ଲାଟ, ବ୍ରିଟିଶ୍ ସରକାରଙ୍କର ଖାସ୍ ନିଜର ଲୋକ ଲର୍ଡ଼ ହାର୍ଡ଼ିଂଞ୍ଜ ଏହି ଦିଲ୍ଲୀରେ ଗାଦିନସୀନ ହେବେ । ଏହା କ'ଣ ସାମାନ୍ୟ କଥା ! କେତେଜଣଙ୍କ ଭାଗ୍ୟରେ ଏମିତି ଶୋଭାଯାତ୍ରା, ବାଣରୋଶଣି ଆତସବାଜି, ବୀର ବାଜଣା ଶୁଣିବାକୁ ବା ଦେଖିବାକୁ ମିଳେ ! ସେଥିପାଇଁ ସମସ୍ତେ ସବୁକାମ ପଛକୁ ପକାଇ ଧାଇଁ ଆସିଛନ୍ତି ରାଜପଥକୁ ଶୋଭାଯାତ୍ରା ଦେଖିବା ଉଦ୍ଦେଶ୍ୟରେ । ରାସ୍ତାକଡ଼ର ଦୁଇ ପାଖରେ ଅସୁମାରି ଲୋକ, ସୋରିଷ ପକାଇବାକୁ ଥାନ ନାହିଁ । କୋଠାର ଛାତ, ବାରଣ୍ଡା ସବୁଆଡ଼େ ବିରାଟ ଜନସମୁଦ୍ର !

ପଞ୍ଜାବ ନ୍ୟାସନାଲ ବ୍ୟାଙ୍କର ଠିକ୍ ବିପରୀତ ଦିଗରେ ଯେଉଁ ନାଲି ଦୋତାଲା କୋଠା, ସେଠାରେ ବି ସେମିତି ଲୋକ ଭିଡ଼ । କିନ୍ତୁ ନିରୋଳା ସ୍ତ୍ରୀଲୋକଗୁଡ଼ାଏ, କିଏ ପରଦାନସୀନ, କିଏ ବା ବୁର୍ଖାପିନ୍ଧା, କିନ୍ତୁ ସମସ୍ତେ ଓଢ଼ଣା ଟେକି, ବୁର୍ଖା ଟେକି ଅନେଇଛନ୍ତି ରାସ୍ତାଆଡ଼େ । ସେହି ଗହଳି ଭିତରେ 'ଶକୁନ୍ତଳା' ବି ଆସିଛନ୍ତି ।

ବୁର୍ଖା ଭିତରେ ଖୁବ୍ ଦାମୀ ଶାଢ଼ି, ବ୍ଲାଉଜ ଓ ଗହଣାପିନ୍ଧା ସେ ଭଦ୍ରମହିଳାଟି ସେଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ ଯେମିତି ହେସନାହେନା ଗନ୍ଧରେ ଫାଟିପଡ଼ିଲା ସେ ବାରଣ୍ଡା । କିନ୍ତୁ କାହାରି ତାଙ୍କଆଡ଼କୁ ନଜର ନାହିଁ । କାହିଁକି ବା ନଜର ଦେବେ ? ପୋଷାକ ପରିଚ୍ଛଦ ଓ ଅତର ଏସେନ୍ସରେ ତ କେହି କାହାକୁ ଊଣା ନୁହନ୍ତି । ସୁତରାଂ ସେମିତି ଶହେ 'ଶକୁନ୍ତଳା' ଆସିଲେ ବି ସେଠାରେ ହୈ-ଚୈ ସୃଷ୍ଟି ହେବାର କୌଣସି କାରଣ ନ ଥିଲା । କାରଣ ସମସ୍ତେ ନିର୍ନିମେଷ ନୟନରେ ଚାହିଁରହିଛନ୍ତି ରାଜପଥ ଆଡ଼କୁ – କେତେବେଳେ ଆସିବ ସେହି ବହୁ ଆକାଂକ୍ଷିତ ଶୋଭାଯାତ୍ରା । ଲର୍ଡ଼ ହାର୍ଡ଼ିଂଜଙ୍କର ସେହି ଦରବାରୀ ପ୍ରସେସନ ।

କାହିଁକି ଏହି ବିପୁଳ ବିଭବ, ବାହାଦୁରୀର ବୀଭତ୍ସ ଦୃଶ୍ୟ ? କାହିଁକି ଏହି ମଧ୍ୟଯୁଗୀୟ ବିଳାସ ଆଡ଼ମ୍ବରର ପ୍ରଦର୍ଶନୀ ? ଏହାର ଉତ୍ତର ଅତି ସଂକ୍ଷେପ– ଭାରତୀୟମାନଙ୍କ ଭିତରେ ଥିବା ଯୁଗଯୁଗର ରାଜଭକ୍ତି ଓ ରାଜପ୍ରୀତିକୁ ଆହୁରି ଉଜ୍ଜୀବିତ କରିବା ଓ ବ୍ରିଟିଶ୍ ରାଜମୁକୁଟ ପ୍ରତି ସେମାନଙ୍କର ଅନୁରକ୍ତିକୁ ଆହୁରି ଦୃଢ଼କରିବା ଏବଂ ବ୍ରିଟିଶ୍ ରାଜଶକ୍ତିର ପ୍ରବଳପ୍ରତାପୀ ରୂପକୁ ପ୍ରତିପାଦିତ କରିବା । ଯେଉଁ 'ବଙ୍ଗବିଚ୍ଛେଦ' ଏକ Settled fact. ଧ୍ରୁବସତ୍ୟ ବୋଲି କର୍ଜନ ଗର୍ବକରୁଥିଲା ସେହି 'ଧ୍ରୁବସତ୍ୟ'କୁ ଖଣ୍ଡବିଖଣ୍ଡିତ, ଧ୍ୱସ୍ତ-ବିଧ୍ୱସ୍ତ କରିଦେଇଥାଏ ଭାରତର ସଶସ୍ତ୍ର ବିପ୍ଳବୀ । ସେଥିପାଇଁ ୧୯୧୧ରେ ଦିଲ୍ଲୀ ଦରବାରରେ ଘୋଷଣା କଲେ ନିଜେ ପ୍ରିନ୍ସ ଅଫ୍ ଓ୍ୱେଲସ୍ "Partition of Bengal has been annulled." (ବଂଗ ବିଚ୍ଛେଦକୁ ରଦ୍ଦକରାଗଲା) ଏବଂ ସେହିଦିନର ଘୋଷଣା ଅନୁସାରେ ଦିଲ୍ଲୀ କଲିକତାର ରାଜଧାନୀ ହେଲା ଏବଂ ସେହି ଉଦ୍ଦେଶ୍ୟରେହିଁ ଦରବାର । ତାରାଚାନ୍ଦଙ୍କ ଭାଷାରେ, "To exploit the traditional sentiment of loyalty to the royal person, the drama of coronation was held." (ଭାରତୀୟମାନଙ୍କର ପାରଂପରିକ ରାଜଭକ୍ତିର ସୁଯୋଗ ନେବାକୁ ଦିଲ୍ଲୀ ଦରବାରର ନାଟକ ଅଭିନୀତ ହୋଇଥିଲା ।) ତାରାଚାନ୍ଦ ପୁଣି ବର୍ଣ୍ଣନା କରିଛନ୍ତି– "On December 12, 1911, Delhi witnessed scenes of resplendent pomp and grandeur. All the Indian princes robed in costumes of silk embroidered with silver and gold and bedecked with glittering jewels were in attendance. The highest officials including the Secretary of State, the Viceroy, the Commander in Chief, the provincial governors, the members of the executive council of the Viceroy and others wearing their impressive uniforms' representing the might

of the Empire and testifying the significance of the majestic occasion were present."(1) [୧୯୧୧ ମସିହା ଡିସେମ୍ବର ୧୨ ତାରିଖ ଦିଲ୍ଲୀ ସହର ଏକ ଆଖି-ଝଲସା ମହାର୍ଘ ଦୃଶ୍ୟ ଦର୍ଶନକଲା । ଭାରତର ସମସ୍ତ ନରେଶ ସୁନା-ରୁପା ଛଳି ଶୋଭିତ ଏବଂ ଉଜ୍ଜ୍ୱଳ ରତ୍ନଖଚିତ ସିଲ୍କ ପୋଷାକ ପରିହିତ ହୋଇଥିଲେ । ସାମ୍ରାଜ୍ୟର ମହାନ୍ ଶକ୍ତି ଓ ଦରବାରର ଗୁରୁତ୍ୱକୁ ପ୍ରତିପାଦନ କରିବା ପାଇଁ ସେଠାରେ ଉପସ୍ଥିତ ଥିଲେ– ସେକ୍ରେଟାରୀ ଅଫ ଷ୍ଟେଟ, ଭାଇସରାୟ, ସର୍ବୋଚ୍ଚ ସେନାପତି, ପ୍ରାଦେଶିକ ଲାଟବୃନ୍ଦ, ବଡ଼ଲାଟ କାଉନ୍ସିଲର ସଭ୍ୟବୃନ୍ଦ ଓ ଅନ୍ୟମାନେ ସ୍ୱ ସ୍ୱ ମହାର୍ଘ ପରିଚ୍ଛଦରେ ସଜ୍ଜିତହୋଇ ।

ନିଜେ ଗାନ୍ଧିଜୀ କର୍ଜନଙ୍କ ଦରବାରରେ ଭାରତୀୟ ରାଜାମାନଙ୍କର ହାସ୍ୟୋଦ୍ଦୀପକ ପୋଷାକ ପରିଚ୍ଛଦକୁ ବ୍ୟଂଗ କରି ତାଙ୍କର ଆତ୍ମଜୀବନୀର ବହୁସ୍ଥାନରେ ବର୍ଣ୍ଣନା କରିଅଛନ୍ତି । ଏପରିକି ମାଲବ୍ୟଜୀଙ୍କ ଅନୁରୋଧକ୍ରମେ ବନାରସ ବିଶ୍ୱବିଦ୍ୟାଳୟର ଏକ ଉତ୍ସବରେ ଯୋଗଦେଇ ସେ ଦେଖିଛନ୍ତି– ଭାରତୀୟ ରାଜା ମହାରାଜାମାନେ କିଭଳି ଦୟନୀୟ ଭାବରେ ହାସ୍ୟୋଦ୍ଦୀପକ ପୋଷାକ ପିନ୍ଧି ଭାଇସରାୟଙ୍କୁ ସନ୍ତୁଷ୍ଟ କରୁଥିଲେ ଏବଂ ଭାଇସରାୟ ମଧ୍ୟ ଭାରତୀୟ ନରେଶଙ୍କର ଏହି ରାଜଭକ୍ତିକୁ କେମିତି କାମରେ ଲଗାଉଥିଲେ । ଗାନ୍ଧିଜୀ ଲେଖିଛନ୍ତି– "I was distressed to see the Maharajas bedecked like women– silk pyjamas and silk achkans-pearls necklaces round their neck, bracelets on their wrists, pearl and diamond tassels on their turbans and besides all this, swords with golden hilts hanging from their waist bands." (2) (ରାଜାମାନେ ଏମିତି ସ୍ତ୍ରୀପୋଷାକ ପିନ୍ଧିଥିବା ଦେଖି ମୋର ଖୁବ୍ ଦୁଃଖ ହେଲା– ସିଲ୍କ ପାଇଜାମା, ସିଲ୍କ ଅଚକନ, ଗଳାରେ ମୁକ୍ତାମାଳା, ହାତରେ ବାଜୁ, ପଗଡ଼ିରେ ମୁକ୍ତା ଓ ହୀରାର ଝୁଂପା ଏବଂ ସର୍ବୋପରି ଅଣ୍ଟାରେ ଝୁଲୁଥିବା ସୁନା ବେଣ୍ଟଲଗା ତରବାରି ।) 'ଖାନସମାମାନଙ୍କ ପରି କାହିଁକି ଏମିତି ପୋଷାକ ପିନ୍ଧିଛ ? ବୋଲି ଜଣେ ରାଜାଙ୍କୁ ଗାନ୍ଧିଜୀ ପ୍ରଶ୍ନ କରିଥିଲେ । ଏହାର ଉତ୍ତର ମିଳିଲା, "They are our Khansama, we are Lord Curzon's Khansama." [ସେମାନେ ସିନା ଆମ ଖାନସମା, ଆମେ ପରା ଲର୍ଡ଼ କର୍ଜନଙ୍କ ଖାନସମା ।] ଇଂରେଜ ଶାସନ ପ୍ରତି ଆନୁଗତ୍ୟର ଚିହ୍ନସ୍ୱରୂପ ରାଜାମାନେ ଏଭଳି ପୋଷାକ ପିନ୍ଧିବା ବାଧ୍ୟତାମୂଳକ ଥିଲା, ନଚେତ୍ ସେମାନଙ୍କର ଉପାଧି ଓ ରାଜକ୍ଷମତା ଲୋପ ପାଇବାର ଆଶଙ୍କା ଥିଲା । ଗାନ୍ଧିଜୀ ରାଜାମାନଙ୍କର ଏତାଦୃଶ ଦାସସୁଲଭ ମନୋଭାବ ତଥା ଇଂରେଜମାନଙ୍କର ଏହି ଦାମ୍ଭିକତାରେ ଦୁଃଖପ୍ରକାଶ କରିଛନ୍ତି- "How heavy is the toll of sins and wrongs

1. Tarachand – The History of Freedom Movement in India Vol-III Pg - 411
2. Gandhi's Autobiography – (Abridged) page 140

that wealth, power and prestige extract from man." (ଧନସଂପତ୍ତି, କ୍ଷମତା ଓ ସମ୍ମାନର ବିନିମୟରେ ମଣିଷଠାରୁ କେତେ ପାପ ଓ ଭୁଲ କାର୍ଯ୍ୟ ଆଦାୟ କରାଯାଇଛି ସତେ !)

ଗାନ୍ଧିଜୀ ସିନା ଏହି ପାପ ଓ ଦୋଷରୁ ଉଭୟ ଭାରତୀୟ ରାଜା ଓ ବ୍ରିଟିଶ୍ ଶାସକମାନଙ୍କୁ ରକ୍ଷା କରିବା ପାଇଁ ଅନ୍ୟବାଟ ଧରିଥିଲେ କିନ୍ତୁ ସଶସ୍ତ୍ର ବିପ୍ଳବର ହିସାବ ଅଲଗା, ପାଠ ଅଲଗା ।

ସତକୁ ସତ ସେ ପ୍ରସେସନ୍ ଆସିଲା । ବିରାଟ ଆଖିଝଲସା ସେ ଶୋଭାଯାତ୍ରା । ରାଜଭକ୍ତ ଭାରତୀୟମାନଙ୍କର ଆଖି ଖୋଷିହୋଇଗଲା । ଆଗରେ ବାଦ୍ୟଯନ୍ତ୍ର, ତୂରୀ, ଭେରୀର ବାଦକ ଦଳ, ତା' ପଛକୁ ସେନାବାହିନୀର ଟାଣୁଆ ଟାଣୁଆ, ନିଶୁଆ ନିଶୁଆ ସୈନ୍ୟ ସେନାପତିମାନେ ବୀରଦର୍ପରେ ତାଳେ ତାଳେ ମାର୍ଚ୍ଚିଂ କରି ଚାଲିଛନ୍ତି- ସତେ ଯେମିତି ଯୁଦ୍ଧ ଜୟକରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରୁଅଛନ୍ତି ।

ଦିଲ୍ଲୀ ସେଣ୍ଟ୍ରାଲ ରେଲଷ୍ଟେସନଠାରୁ ବଡ଼ଲାଟ ଭବନ ଯାଏ ଶୋଭାଯାତ୍ରା ଲମ୍ବିଛି । ବଡ଼ଲାଟ ଏକ ସ୍ପେଶାଲ ଟ୍ରେନ୍‌ରେ ସେଠାରେ ପହଞ୍ଚି ସେଠାରୁ ଶୋଭାଯାତ୍ରାରେ ଚାଲିଛନ୍ତି । ସୈନ୍ୟ ଓ ପୁଲିସବାହିନୀର ଠିକ୍ ପଛକୁ ବିରାଟ ଦୁଇଟା ଧଳାହାତୀ ମହାର୍ଘ ପରିଚ୍ଛଦରେ ସଜ୍ଜିତ ହୋଇ ଚାଲିଥା'ନ୍ତି । (A great array of caparisoned elephant.) ସମସ୍ତଙ୍କ ଆଖି ସେହି ହାତୀଙ୍କ ଉପରେ । ଗୋଟିଏ ହାତୀରେ ପାଇଲଟ କର୍ଣ୍ଣେଲମାକ୍ସ ୱେଲ, ତା' ପଛରେ ଚାଲିଥା'ନ୍ତି ଖୋଦ୍ ବଡ଼ଲାଟ ଲର୍ଡ଼ ହାର୍ଡ଼ିଂଜ, ପାଖରେ ଲେଡ଼ି ହାର୍ଡ଼ିଂଜ ଓ ଆଗରେ ବସିଛନ୍ତି ମାହୁନ୍ତ । ଚାନ୍ଦିରୁପାରେ ତିଆରି ହାଉଦା ଓ ବହୁମୂଲ୍ୟ ରଙ୍ଗବେରଙ୍ଗର ଗଦିଉପରେ ସୂର୍ଯ୍ୟକିରଣ ପଡ଼ି ଆଖି ଝଲସେଇଦେଉଛି । ଦେଖଣାହାରୀ ସମସ୍ତଙ୍କ ମୁହଁରୁ ଯେମିତି ଏକାସଙ୍ଗରେ ବାହାରିପଡ଼ିଲା— ବାଃ -- ବାଃ, ଧନ୍ୟ ବ୍ରିଟିଶ୍ କେଶରୀ, ଧନ୍ୟ ତୁମ ବଡ଼ଲାଟ !

ଶୋଭାଯାତ୍ରା ପଞ୍ଜାବ ନ୍ୟାସନାଲ୍ ବ୍ୟାଙ୍କ ମୋଡ଼ ଉପରେ ପହଞ୍ଚିଲା । ଜୟଧ୍ୱନିରେ ଆକାଶ ଫାଟିପଡୁଛି । ହଠାତ୍ ଗୋଟାଏ କାନଫଟା ଭୟଙ୍କର ଶବ୍ଦ ହେଲା । ଚାରିଆଡ଼େ ଖାଲି ଧୂଆଁ ଆଉ ଧୂଆଁ । କେହି ବୁଝିପାରିଲେ ନାହିଁ, କିନ୍ତୁ ଧୂଆଁ ଆକାଶରେ ମିଳାଇ ଯିବା ସଙ୍ଗେ ସଙ୍ଗେ ଯେତେବେଳେ ଜଣାଗଲା ଯେ ବଡ଼ଲାଟ ଓ ତାଙ୍କର ହାତୀ ଏକ ଭୟାବହ ବୋମାଦ୍ୱାରା ଗୁରୁତର ଭାବରେ ଆଘାତପ୍ରାପ୍ତ ହୋଇଅଛନ୍ତି ସେତେବେଳେ ସେଠାରେ କିଭଳି ଏକ anti-climax ସୃଷ୍ଟିହୋଇଥିବ ତାହା ସହଜେ ଅନୁମେୟ । ମାହୁନ୍ତ ଆହତ, କିନ୍ତୁ ଲର୍ଡ଼ ହାର୍ଡ଼ିଂଜ ଗୁରୁତରଭାବେ ଆହତ । ବୋମାର Splinter ବାଜି ସେ ଅନ୍ୟୂନ ତିରିଶିଟି ସ୍ଥାନରେ କ୍ଷତବିକ୍ଷତ; କିନ୍ତୁ ନିହତ ନୁହନ୍ତି । ହାତୀ ଉପରୁ ପଡୁ ପଡୁ ତାଙ୍କୁ ସମ୍ଭାଳିନେଇଛନ୍ତି ଲେଡ଼ି ହାର୍ଡ଼ିଂଜ । ବଡ଼ଲାଟଙ୍କ ବଡ଼ିଗାର୍ଡ଼ ଓ ପାଇଲଟ୍ ମଧ୍ୟ ପାଖକୁ ଚାଲିଆସି ତାଙ୍କୁ ଧରିନେଇଛନ୍ତି । ବଡ଼ଲାଟଙ୍କୁ ହସ୍‌ପିଟାଲକୁ ନିଆଗଲା ।

ସାଙ୍ଘାତିକ କଥା ! କାହାର ଏତେ ବଡ଼ ସାହସ ? କାହାର ଏତେ ଆସ୍ପର୍ଦ୍ଧା ! ବ୍ରିଟିଶ ସାମ୍ରାଜ୍ୟର ମୁକୁଟମଣି—ଭାରତ । ପୁଣି ଭାରତର ମୁକୁଟମଣି ହେଉଛନ୍ତି ଭାଇସରାୟ, ଭାରତର ସର୍ବମୟକର୍ତ୍ତା- ଯାହାର ନାଁ ଶୁଣିଲେ ଗର୍ଭିଣୀ ଗାଈ ବାଟଛାଡ଼ିବ । ସେହି ବଡ଼ଲାଟଙ୍କ ଉପରେ ବୋମା ନିକ୍ଷେପ ! ସେହି ବୋମା ମାଡ଼ରେ ଥରିଗଲା ବ୍ରିଟିଶ ସିଂହାସନ । ଥରିଗଲା ସାରା ପୃଥିବୀ । ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମୀର ଶକ୍ତି, ସାମର୍ଥ୍ୟ ଓ ସାହସିକତା ଆଉଥରେ ପ୍ରମାଣିତ ହେଲା । କଂଗ୍ରେସ ସରକାରଙ୍କର ବରାଦୀ ଐତିହାସିକ ତାରାଚାନ୍ଦ ମଧ୍ୟ ସ୍ୱୀକାର କରିଛନ୍ତି, "Those who felt repelled by violence, were marvelled at the fearless and reckless challenge to authority, whose might was never questioned before."(1)

ଏତେବଡ଼ ଶୋଭାଯାତ୍ରା ଓ ଦରବାରର ଯେମିତି ଛନ୍ଦପତନ ଘଟିଲା । କିଏ କୁଆଡ଼େ ପଳେଇଲେ ତା'ର ପତ୍ତା ମିଳିଲା ନାହିଁ । କିଏ ଦୁଃଖ, କିଏ ଆନନ୍ଦ, କିଏ ବା ବିସ୍ମୟରେ ଅଭିଭୂତ ହୋଇପଡ଼ିଲା; କିନ୍ତୁ ବେଶି ଦୁଃଖ ହେଲା ରାଜା-ମହାରାଜାମାନଙ୍କର, ଯେଉଁମାନେ ବଡ଼ଲାଟଙ୍କର 'ଖାନସମା' ପୋଷାକ ପିନ୍ଧି ବଡ଼ଲାଟଙ୍କୁ କୁର୍ଣ୍ଣିସ ଜଣାଇ ଗୋଟିଏ ଗୋଟିଏ ଉପାଧିରେ ଭୂଷିତ ହେବେ (ପଦଟିଏ ଦେବେ କର୍ଣ୍ଣରସାୟନ, ପଦଅନୁରୂପ ବସନଭୂଷଣ) ବୋଲି ସେଠାକୁ ଯାଇଥିଲେ । ଇଂରେଜ ସରକାରକୁ ଏପରିକି ନିଜେ ଲର୍ଡ଼ ହାର୍ଡ଼ିଂଜଙ୍କୁ ସେ ବୋମା ମାଡ଼ ଯେତେ କାଟି ନ ଥିଲା, ତାହା ଅପେକ୍ଷା ବେଶି ବାଧିଲା ରାଜା-ମହାରାଜା, ଶ୍ରୀଛାମୁ-ଛାମୁଆମାନଙ୍କୁ । ଅତି ବାହାଦୁରୀ ଦେଖାଇ ରାଜାମାନେ ଘୋଷଣା କଲେ ଯେ, ''ଅପରାଧୀକୁ ଧରିଦେଲେ ଏକ ଲକ୍ଷ ଟଙ୍କା ପୁରସ୍କାର ଦିଆଯିବ ।'' ଏହି ଘୋଷଣାରେ ସରକାରୀ ପକ୍ଷକୁ ଯେମିତି ଭାରି ଲାଜମାଡ଼ିଲା । ସରକାର ଘୋଷଣାକଲେ, ''ଅନ୍ୟ କେହି ଏଥିପାଇଁ ପୁରସ୍କାର ଦେବା ଦରକାର ନାହିଁ । ଅପରାଧୀକୁ ଧରିଦେଲେ ଦେଢ଼ଲକ୍ଷ ଟଙ୍କା ପୁରସ୍କାର ଦିଆଯିବ ।''

ଲାଗିଗଲା ହୈ - ଚୈ, ଧରପଗଡ଼, 'ହେଇଗଲା– ଧର ଧର,' ରାବରେ ଦିଲ୍ଲୀ ଆକାଶ କମ୍ପମାନ ହେଲା । ପଞ୍ଜାବ ନ୍ୟାସନାଲ୍ ବ୍ୟାଙ୍କ ସାମନାରେ ସେ ନାଲି ଦୋତଲା ବାରଣ୍ଡାରେ ବି ମହିଳା ମହଲରେ ସେମିତି ଆଲୋଡ଼ନ ! କିନ୍ତୁ ସେତେବେଳେ 'ଶକୁନ୍ତଳା' ସେଠାରେ ନ ଥିଲେ । ଅନ୍ୟ ସ୍ତ୍ରୀଲୋକଗୁଡ଼ିକ ପରସ୍ପର ମୁହଁକୁ ଚାହାଁଚାହିଁ ହେଲେ, କିନ୍ତୁ କାହାରି ମୁହଁରୁ କିଛି କଥା ବାହାରିଲାନାହିଁ । 'ଶକୁନ୍ତଳା' କଥା ଭାବି ହୁଏତ ପ୍ରତ୍ୟେକଙ୍କ ମନରେ ସନ୍ଦେହର ରେଖା ଦେଖାଯାଇଥିଲା; କିନ୍ତୁ ତାହା ପ୍ରକାଶ କରିବାକୁ ଯେମିତି କାହାରି ହେଲେ ସାହସ ହେଲାନାହିଁ ।

ବିସ୍ଫୋରିତ ବୋମାକୁ 'ରାସାୟନିକ ପରୀକ୍ଷା' କରି ଜଣାଗଲା ଯେ ତାହା ଅଲ୍ଲିପୁର ବିପ୍ଲବୀଙ୍କ ବୋମାର ସମଗୋତ୍ରୀୟ । ଭାରତ ଭିତରେ ଓ ବାହାରେ ରାଜଭକ୍ତ

1. Tarachand– The History of Freedom Movement in India- Vol– III pg- 441.

ଭାରତୀୟମାନେ ଭାଇସରାୟଙ୍କ ପ୍ରତି ସେହି ଆକ୍ରମଣର ନିନ୍ଦାକରି ପ୍ରସ୍ତାବ ପାସ୍ କଲେ ଏବଂ ତାଙ୍କର ଦୀର୍ଘଜୀବନ କାମନା କରି ପ୍ରାର୍ଥନା ମଧ କରାଗଲା । ଏହିଭଳି ଗୋଟିଏ ସଭା ଡେରାଡୁନରେ ହୋଇଥିଲା ଏବଂ ସେଥିରେ ସଭାପତିତ୍ୱ କରିଥିଲେ ଫରେଷ୍ଟ ଅଫିସର ରାସବିହାରୀ ବୋଷ । ରାସବିହାରୀ ଖୁବ୍ ଉଚ୍ଚକଣ୍ଠରେ ସେହି 'ନିଷ୍ଠୁର କାର୍ଯ୍ୟ'ର ପ୍ରତିବାଦକଲେ ।

ହାର୍ଡ଼ିଂଞ୍ଜ ବୋମା କାଣ୍ଡ ପରେ ୧୯୧୩ ମସିହା ମଇ ୧୭ ତାରିଖରେ ଲାହୋରର ଲରେନ୍ସବାଗରେ ଏକ ବୋମା ବିସ୍ଫୋରଣ ହେଲା । ଲାହୋର ଜିଲ୍ଲା ମାଜିଷ୍ଟ୍ରେଟ୍ ମିଷ୍ଟର ଗର୍ଡ଼ନଙ୍କୁ ହତ୍ୟା କରିବା ପାଇଁ ବିପ୍ଳବୀ ବସନ୍ତ ବିଶ୍ୱାସ ଏହି ବୋମା ରଖିଥିଲେ, କିନ୍ତୁ ଗର୍ଡ଼ନ ମଲା ନାହିଁ, ମଲା ତା'ର ଚପରାସୀ । ମିଷ୍ଟର ଗର୍ଡ଼ନଙ୍କୁ ଆସାମର ସିଲହଟରୁ ଗୋଡ଼ାଇ ଗୋଡ଼ାଇ ଆସିଥିଲେ ବସନ୍ତ ବିଶ୍ୱାସ ପଂଜାବର ଲାହୋର ପର୍ଯ୍ୟନ୍ତ । ମୁକ୍ତି-ସଂଗ୍ରାମୀଙ୍କ କଳାତାଲିକାରେ କେବେଠୁଁ ତା' ନାମ ଚଢ଼ିସାରିଥିଲା, କାରଣ ଏହି ଗର୍ଡ଼ନର ନେତୃତ୍ୱରେ ସିଲହଟର ବିପ୍ଳବୀ ଅନୁଷ୍ଠାନ ଅରୁଣାଚଳ ଆଶ୍ରମ ଉପରେ ଥରେ ଚଢ଼ାଉହୋଇଥିଲା ଏବଂ ଫଳରେ ଅନ୍ୟୂନ ସାତଜଣ ବିପ୍ଳବୀ ଗୁରୁତର ଭାବେ ଆହତ ହୋଇଥିଲେ । ସେହିଦିନଠାରୁ 'ଅନୁଶୀଳନ ସମିତି' ଗର୍ଡ଼ନଙ୍କୁ ସଫାକରିଦେବାକୁ ସ୍ଥିରକରିସାରିଥିଲା । ସେହି ଡରରେ ଗର୍ଡ଼ନ ସିଲହଟରୁ ବଦଳିହୋଇ ପଳାଇଯାଇଥିଲା ଲାହୋର । ପୁଣି ଚାଲିଲା ସେ ବୋମାର କେମିକାଲ ଆନାଲିସିସ୍ । ପୁଲିସ୍ ଏହି ସିଦ୍ଧାନ୍ତରେ ପହଞ୍ଚିଲା ଯେ 'ଅଲ୍ଲିପୁର ବୋମା', 'ହାର୍ଡ଼ିଂଞ୍ଜ', 'ଲାହୋର ବୋମା' ଗୋଟିଏ ସ୍ଥାନରେ ଓ ଗୋଟିଏ ଫର୍ମୁଲାରେ ତିଆରି ହୋଇଛି । କିନ୍ତୁ ସେ ସ୍ଥାନଟି କେଉଁଠି ଏବଂ ସେ ଫର୍ମୁଲା କାହାର – ତା'ର ଟିକେ ହେଲେ ସୁରାକ ପୁଲିସ ପାଉନଥାଏ ।

ହାର୍ଡ଼ିଂଞ୍ଜ ବୋମାର ପ୍ରାୟ ଏକ ବର୍ଷ ପରେ ଓ ଲାହୋର ବୋମାର ପ୍ରାୟ ସାତ ମାସ ପରେ ବିପ୍ଳବୀ ମହଲରେ କୌଣସି ଜଣେ ବିଶ୍ୱାସଘାତକଠାରୁ ପୁଲିସ ସଂଧାନ ପାଇଲା ଯେ କଲିକତାଠାରେ ଏକ ଗୋପନ ଆଡ୍ଡ଼ାରେ ଏହି ବୋମା ତିଆରି ଓ ବୋମା ନିକ୍ଷେପର ଷଡ଼ଯନ୍ତ୍ର ହୋଇଛି । ଫଳରେ ୧୯୧୩ ନଭେମ୍ବର ୧୩ ତାରିଖ କଲିକତା ରାଜାବଜାରର ଗୋଟିଏ ଗୋପନ କେନ୍ଦ୍ରକୁ ପୁଲିସ ଘେରାଉ କଲା । ବିପ୍ଳବୀ ଅମୃତ ହାଜରା ଗିରଫହେଲେ ଏବଂ ଜବଦ ହେଲା ବହୁ ପରିମାଣରେ ବୋମା, ବୋମା ତିଆରି ପାଇଁ ମାଲମସଲା ଓ ପୁଲିସ ପକ୍ଷରେ ସର୍ବାଧିକ ମୂଲ୍ୟବାନ୍ ଗୋଟିଏ ତାଲିକା– ଯେଉଁ ତାଲିକାରେ କେତେକ ସଶସ୍ତ୍ର ବିପ୍ଳବୀଙ୍କ ନାମ ଲେଖାଯାଇଥିଲା । ଏହି ତାଲିକା ବଳରେ ଗିରଫ ହେଲେ ଦିଲ୍ଲୀର ବିପ୍ଳବୀ ଅମୀର ଚାନ୍ଦ ଓ ଦୀନନାଥ । ପୁଲିସ ଅତ୍ୟାଚାର ଭୟରେ ଦୀନନାଥ 'ଆପ୍ରୁଭର' ହୋଇଗଲେ ଏବଂ 'ସ୍ୱଦେଶୀ ଯୁଗ'ରେ ନରେନ ଗୋସ୍ୱାମୀ ମୁହଁରୁ ଯେମିତି ଶ୍ରୀ ଅରବିନ୍ଦଙ୍କ ନାମ ପୁଲିସ ସଂଗ୍ରହ କରିଥିଲା, ଅରବିନ୍ଦଙ୍କ ପରବର୍ତ୍ତୀ ଯୁଗର ଶ୍ରେଷ୍ଠ ବିପ୍ଳବୀ ରାସବିହାରୀ ବୋଷଙ୍କ ନାମ ଦୀନନାଥ

ମୁହଁରୁ ପ୍ରକାଶପାଇଲା । ଡେରାଡୁନର ଫରେଷ୍ଟ ଅଫିସ କଲୋନୀ ଖାନତଲାସ ହେଲା, କିନ୍ତୁ ତା'ର ବହୁପୂର୍ବରୁ ରାସବିହାରୀ ସେଠାରୁ ପଳାଇଯାଇଥିଲେ । ବିପ୍ଳବୀ ଅମୀର ଚାନ୍ଦଙ୍କ ପୁଅ ସୁଲତାନ ଚାନ୍ଦ ପୁଲିସ ଅତ୍ୟାଚାର ଭୟରେ ନିଜ ପିତାଙ୍କ ବିରୋଧରେ ସାକ୍ଷୀ ଦେଲା । ସମାଜସଂସ୍କାରକ ବିପ୍ଳବୀ ଅମୀର ଚାନ୍ଦ ବୋମା ଷଡ଼ଯନ୍ତ୍ରରେ ଫାଶୀପାଇଲେ ୧୯୧୪ ମାର୍ଚ୍ଚ ୨ ତାରିଖରେ । ଅନ୍ୟ ତିନିଜଣ ବିପ୍ଳବୀ ଅବୋଧ ବିହାରୀ, ବସନ୍ତ ବିଶ୍ୱାସ ଓ ବାଳମୁକୁନ୍ଦ ଗିରଫ ହେଲେ ଏବଂ ଆରମ୍ଭ ହେଲା 'ଦିଲ୍ଲୀ ଷଡ଼ଯନ୍ତ୍ର ମକଦ୍ଦମା' । ୧୧ ମଇ ୧୯୧୫ରେ ଅବୋଧ ଫାଶୀପାଇଲେ । ବିଚାରରେ ବସନ୍ତ ବିଶ୍ୱାସଙ୍କର କମ୍ ବୟସ ଦୃଷ୍ଟିରୁ ତାଙ୍କୁ ଦ୍ୱୀପାନ୍ତର ଦଣ୍ଡ ଓ ଅନ୍ୟ ତିନିଜଣଙ୍କୁ ଫାଶୀଦଣ୍ଡ ଦିଆଗଲା । ପୁଲିସ ପୁଣି ବସନ୍ତ ବିଶ୍ୱାସ ବିରୋଧରେ ଦିଲ୍ଲୀ ଚିଫ୍‌କୋର୍ଟରେ ଅପିଲ କରି ତାଙ୍କୁ ମଧ ଫାଶୀ କାଠରେ ଝୁଲେଇଲା । ପୁଲିସର ଦୃଢ଼ ଧାରଣା ଥିଲା ଯେ ବସନ୍ତ ବିଶ୍ୱାସ ହିଁ ହାର୍ଡ଼ିଂଞ୍ଜ ଉପରେ ବୋମା ନିକ୍ଷେପ କରିଥିଲେ । ରାସବିହାରୀ ଯେ ହାର୍ଡ଼ିଂଞ୍ଜ ଉପରକୁ ବୋମା ନିକ୍ଷେପ ଘଟଣା ବିରୋଧରେ ଡେରାଡୁନରେ ସଭାକରୁଥିଲେ, ତାହା କେବଳ ପୁଲିସକୁ ଭୁଆଁ ବୁଲାଇବା ପାଇଁ ଉଦ୍ଦିଷ୍ଟ ଥିଲା ବୋଲି ମନେକରାଯାଏ । ସ୍ୱୟଂ ଲର୍ଡ଼ ହାର୍ଡ଼ିଂଞ୍ଜ ଏ ସଂପର୍କରେ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି — "When driving in a car from the station to my bunglow (at Derhadun) I passed an Indian in front of the gate of his house with several others, all of whom were very demonstrative in their salaams. On my inquiry who those people might be I was told that the principal Indian there had presided two days before at public meeting at Derahdun and has proposed and carried a vote of condolence on account of the attack on my life. But it was proved latter that it was this identical Indian who threw the bomb at me,(1) (ମୁଁ ରେଳଷ୍ଟେସନରୁ ଡେରାଡୁନରେ ମୋର ବଙ୍ଗଳାକୁ କାର୍‌ରେ ଯିବାବେଳେ ଜଣେ ଭାରତୀୟଙ୍କୁ ତାଙ୍କର ଘରର ଫାଟକ ସମ୍ମୁଖରେ ଅନ୍ୟ କେତେଜଣଙ୍କ ସହ ଠିଆ ହୋଇ ମୋତେ ଖୁବ୍ ନମ୍ରତା ସହକାରେ ସଲାମ୍ କରୁଥିବାର ଦେଖିଲି । ଏହି ଲୋକମାନେ କିଏ ହୋଇପାରନ୍ତି ବୋଲି ମୁଁ ଅନୁସନ୍ଧାନ କରିବାରୁ ମୋତେ କୁହାଗଲା ଯେ ସେହି ଦଳର ମୁଖ୍ୟ ଭାରତୀୟ ଜଣକ ମାତ୍ର ଦୁଇଦିନ ତଳେ ଡେରାଡୁନଠାରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ସଭାପତିତ୍ୱ କରିଥିଲେ ଏବଂ ମୋ' ଉପରେ ହୋଇଥିବା ଆକ୍ରମଣର ନିନ୍ଦାକରି ଏକ ଶୋକ ପ୍ରସ୍ତାବ ପାସ୍ କରାଇଥିଲେ । କିନ୍ତୁ ପରେ ପ୍ରମାଣିତ ହେଲା ଯେ ସେହି ଭାରତୀୟ ଜଣକହିଁ ମୋ' ଉପରେ ବୋମା ପକାଇଥିଲେ ।)

ଏହା ଉଲ୍ଲେଖ ନିଷ୍ପ୍ରୟୋଜନ ଯେ ''ସେଦିନ ଲର୍ଡ଼ ହାର୍ଡ଼ିଂଞ୍ଜଙ୍କୁ ଯେଉଁ ଭାରତୀୟ ଭଦ୍ରଲୋକ ସଲାମ୍ ଜଣାଇଥିଲେ, ଯେଉଁ ଭଦ୍ରଲୋକ ବୋମା ନିକ୍ଷେପରେ 'ପ୍ରତିବାଦ'

1. Lord Hardinge– My Indian Years– 1910– 16. page- 93

କରିଥିଲେ ବୋଲି ହାର୍ଡ଼ିଂଙ୍କ ଲେଖିଛନ୍ତି, ସେ ହେଉଛନ୍ତି ମହାବିପ୍ଳବୀ ରାସବିହାରୀ । ସେହି ରାସବିହାରୀ ଏହି ଘଟଣାର ପ୍ରାୟ ୩୦ ବର୍ଷ ପରେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ରେଙ୍ଗୁନରେ 'Our struggle' ଶୀର୍ଷକ ଆଲୋଚନା ପ୍ରସଙ୍ଗରେ କହିଥିଲେ, "It was about thirty years ago, that I threw a bomb on Viceroy in Delhi. (ପ୍ରାୟ ୩୦ ବର୍ଷ ତଳେ ମୁଁ ଦିଲ୍ଲୀରେ ଭାଇସରାୟ ଉପରେ ବୋମା ପକାଇଥିଲି ।) ପୁଲିସ ପାଖରେ ବାସ୍ତବରେ ବୋମା ନିକ୍ଷେପକାରୀ କିଏ ତାହାର କୌଣସି ପ୍ରମାଣ ନ ଥିଲା । ବସନ୍ତ ବିଶ୍ୱାସକୁ ପୁଲିସ ଏଥିପାଇଁ ଦଣ୍ଡିତ କଲା । ବସନ୍ତ ବିଶ୍ୱାସଙ୍କ 'ବୋମା ଷଡ଼ଯନ୍ତ୍ର' ସହ କି ସଂପର୍କ ଥାଇପାରେ, ଏ ସମ୍ବନ୍ଧରେ ବିଭିନ୍ନ କଥା ଶୁଣାଯାଏ । ଐତିହାସିକ କାଳୀ ଚରଣ ଘୋଷ ତାଙ୍କର 'ରୋଲ୍ ଅଫ୍ ଅନର୍' ନାମକ ଗ୍ରନ୍ଥରେ ନିମ୍ନଲିଖିତ ବିବରଣୀ ଦେଇଅଛନ୍ତି - ''ବସନ୍ତ ଓରଫ୍ ବିପିନ ଦାସ ଲାହୋରର ପପୁଲାର ଡିସ୍‌ପେନସାରୀରେ କାର୍ଯ୍ୟକରୁଥିଲେ ସୁଦ୍ଧା ବୈପ୍ଳବିକ କାର୍ଯ୍ୟରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରୁଥିଲେ । ବିପ୍ଳବୀ ବାଳମୁକୁନ୍ଦ ତାଙ୍କୁ କାର୍ଯ୍ୟପାଇଁ ବାଛିଥିଲେ । ବିଶେଷତଃ ଲର୍ଡ଼ ହାର୍ଡ଼ିଂଙ୍କ ଉପରେ ବୋମା ନିକ୍ଷେପ କାର୍ଯ୍ୟରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ତାଙ୍କର ରମଣୀସୁଲଭ ମୁଖମଣ୍ଡଳ ଏବଂ ବାଙ୍ଗରା ଚେହେରା ତାଙ୍କୁ ଏ କାର୍ଯ୍ୟରେ ସାହାଯ୍ୟ କରିପାରିଥାଏ । ସେ ନାରୀବେଶରେ ପଞ୍ଜାବ ନ୍ୟାସନାଲ୍ ବ୍ୟାଙ୍କ କୋଠା ଉପରେ ଅପେକ୍ଷମାଣ ନାରୀ ମହଲରେ ସହଜରେ ପ୍ରବେଶ କରି ଅନ୍ୟମାନଙ୍କ ଦୃଷ୍ଟି ଅନ୍ତରାଳରେ ବୋମା ନିକ୍ଷେପ କରିଥିଲେ ବୋଲି ଅଭିଯୋଗ ହୁଏ ।''

ଉପରୋକ୍ତ ବିବରଣୀଗୁଡ଼ିକୁ ବିଶ୍ଳେଷଣ କଲେ ଏହା ସୂଚିତ ହୁଏ ଯେ ହାର୍ଡ଼ିଂଙ୍କ ଉପରେ ଯେକେହି ବୋମା ନିକ୍ଷେପ କରିଥାଉନା କାହିଁକି, ମହାନାୟକ ରାସବିହାରୀଙ୍କର ତୀକ୍ଷ୍ଣ ବୁଦ୍ଧି ଓ ବିଚକ୍ଷଣ ଯୋଜନା ଯେ ଏହା ପଛରେ ଥିଲା ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ଏବଂ ସମ୍ଭବତଃ ସେହି ଦୃଷ୍ଟିରୁ ରାସବିହାରୀ ନିଜେ ବୋମା ପକାଇ ଥିଲେ ବୋଲି ରେଙ୍ଗୁନ ସଭାରେ କହିଥିଲେ । ରାସବିହାରୀ ବ୍ରିଟିଶ୍ ସରକାର ଅଧୀନରେ ଚାକିରି କରୁଥିଲେ ସୁଦ୍ଧା କେମିତି ସରକାରବିରୋଧୀ ଗୁପ୍ତ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ତାହା ଭାବିଲେ ଆଜି ବିସ୍ମିତ ହେବାକୁ ପଡ଼େ । ସେ ତାଙ୍କର ସହକର୍ମୀମାନଙ୍କ ସହ ଏଭିଳି ଚତୁରତା ସହ ବ୍ୟବହାର କରୁଥିଲେ ଯେ ସେ ସରକାରଙ୍କ ବିରୋଧୀ ଲୋକ ବୋଲି କେହି ଟିକେ ସନ୍ଦେହ କରୁ ନ ଥିଲେ, ବରଂ ଓଲଟା ସେ ପୁଲିସର ଦଲାଲ ବୋଲି କେତେକ ଭାବୁଥିଲେ । ଏହା ରାସବିହାରୀଙ୍କ ଅନ୍ୟ ଏକ ଶ୍ରେଷ୍ଠ କୃତିତ୍ୱ ବୋଲି କୁହାଯାଉଛି । ତତ୍‌କାଳୀନ ବଙ୍ଗସରକାରଙ୍କ ଗୋପନୀୟ ଫାଇଲରୁ ଜଣାଯାଏ — "It is the general belief there amongst the Bengli community that Rashbehari was a police spy and used to supply information to the C.I.D. Officer."(1) (ସେଠାକାର ବଙ୍ଗାଳୀମାନଙ୍କର ଧାରଣା

1. The weekly report of the Intelligence Branch, Bengal 20-1-1014, Uma Mookharji - Two Great Indian Revolutionries.

ଥିଲା ଯେ ରାସବିହାରୀ ପୁଲିସର ଜଣେ ଗୁପ୍ତଚର ଏବଂ ସରକାରୀ ଅଫିସରମାନଙ୍କୁ ଯେ ନିୟମିତ ଖବର ଯୋଗାଉଥିଲେ ।

**ରହସ୍ୟମୟ ରାସବିହାରୀ :**

ବିପ୍ଳବୀ ଜୀବନର ଶେଷପର୍ଯ୍ୟନ୍ତ ରାସବିହାରୀଙ୍କ ବୈଚିତ୍ର୍ୟମୟ କାର୍ଯ୍ୟକଳାପ ଯେମିତି ରୋମାଞ୍ଚକର ଓ ଦୁଃସାହସିକତାପୂର୍ଣ୍ଣ ତତୋଽଧିକ କୌତୂହଳପ୍ରଦ ଓ ଅତୀବ ରହସ୍ୟମୟ ଥିଲା । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ବିଶେଷତଃ ଭାରତରେ ତାଙ୍କର ଫେରାର ଜୀବନ ଓ ପରେ ପ୍ରବାସରେ ରାସବିହାରୀ ଘୋର ବିପଦପୂର୍ଣ୍ଣ ଓ ଉତ୍ତେଜନାମୟ ସମୟ ଅତିବାହିତ କରିଅଛନ୍ତି । ସମ୍ଭବତଃ ନେତାଜୀ ସୁଭାଷଙ୍କୁ ଛାଡ଼ି ଦେଲେ ଆଉ କୌଣସି ସଶସ୍ତ୍ର ବିପ୍ଳବୀ ଜୀବନରେ ଏଭଳି ଘଟଣା ଘଟି ନାହିଁ । ରାସବିହାରୀଙ୍କ ବୈପ୍ଳବିକ ଜୀବନ ଅଧ୍ୟୟନ କଲେ ଆଖିରୁ ଯେମିତି ଲୁହ ଝରିପଡ଼େ, ବେଳେ ବେଳେ ହସି ହସି ପେଟ ସେମିତି ଫାଟିଯାଏ । ଅସାଧାରଣ ସଂଗଠନ ଶକ୍ତି, ବିରାଟ ବ୍ୟକ୍ତିତ୍ୱ, ଆତ୍ମବିଶ୍ୱାସ, ଅଲୌକିକ ପ୍ରତ୍ୟୁତ୍ପନ୍ନମତିତା ଏବଂ ଅଗାଧ ଦେଶପ୍ରେମ ଓ ଧୈର୍ଯ୍ୟ, ସାହସ ଓ ବୁଦ୍ଧିମତ୍ତାର ସେ ଏକ ଜ୍ୱଳନ୍ତ ନିଦର୍ଶନ ।

ଡେରାଡୁନ ଜଙ୍ଗଲବିଭାଗରେ ଚାକିରି କରୁଥିଲେ ସୁଦ୍ଧା ଦେଶର ସ୍ୱାଧୀନତା ପାଇଁ, ବିଶେଷତଃ ସଶସ୍ତ୍ର ବିପ୍ଳବର ସାଫଲ୍ୟ କଥା ଚିନ୍ତା ଓ ଯୋଜନା କରିବାରେ ରାସବିହାରୀଙ୍କୁ ଦିନରାତି ଅଣ୍ଟୁ ନ ଥିଲା । ସୁତରାଂ ଡେରାଡୁନରେ ରାସବିହାରୀଙ୍କୁ ନ ପାଇବାରୁ ପୁଲିସ୍‌ର ଟିକିଏ ହେଲେ ସନ୍ଦେହ ରହିଲାନାହିଁ ଯେ ସେ ସଶସ୍ତ୍ର ବିପ୍ଳବର ଜଣେ ପ୍ରଧାନ କାରପଟଦାର । କିନ୍ତୁ ପୁଲିସ୍ କୌଣସିମତେ ତାହାଙ୍କ ସନ୍ଧାନ ପାଇଲା ନାହିଁ । ବିଭିନ୍ନ ବେଶପୋଷାକ ପିନ୍ଧି ଓ ବିଭିନ୍ନ ଛଦ୍ମନାମ ଗ୍ରହଣକରି ରାସବିହାରୀ ପୁଲିସ୍‌କୁ ବରାବର ଚିତାକାଟି ଚାଲିଲେ । ଫ୍ୟାଟବାବୁ, ଶଚୀଶଚନ୍ଦ୍ର, ଚୁଚେନ୍ଦ୍ର ନାଥ ଓ ରାଜା ପି. ଏନ. ଠାକୁର ପ୍ରଭୃତି ବିଭିନ୍ନ ନାମ ଧାରଣକରି ରାସବିହାରୀ ପୁଲିସ୍‌କୁ ଭୁଆଁବୁଲାଇଲେ । ଗୋଟାଏ କେଉଁଠି ନିରାପଦ ଜାଗାରେ ଆତ୍ମଗୋପନ କରିଥିଲେ ତାଙ୍କୁ କୌଣସି ଅସୁବିଧା ବା ବିପଦର ସମ୍ମୁଖୀନ ହେବାକୁ ପଡ଼ି ନଥାନ୍ତା । କିନ୍ତୁ ତାହାତ ସାଧରଣ ଖୁଣୀ ଓ ଅପରାଧୀର ବାଟ- ବିପ୍ଳବୀର ବାଟ ନୁହେଁ । ତାଙ୍କୁ ତ ଦୈନିକ ନୂତନ ଯୋଜନା କରିବାକୁ ପଡୁଥିଲା ଏବଂ ସେ ଯୋଜନାକୁ ସଫଳ କରିବାକୁ ବିଭିନ୍ନ ପଦକ୍ଷେପ ନେବାକୁ ପଡୁଥିଲା । ଫଳରେ କୌଣସି ଗୋଟିଏ ସ୍ଥାନରେ ଲୁଚି ରହିବା ତାଙ୍କ ପକ୍ଷରେ ସମ୍ଭବ ହେଉ ନ ଥିଲା । ଭାରତର ସ୍ୱାଧୀନତା ପ୍ରାପ୍ତିର ଆକାଙ୍କ୍ଷା ତାଙ୍କ ମନରେ ଏଭଳି ଦୁର୍ବାର ଥିଲା ଯେ ସେ ଜୀବନର ଗୋଟାଏ ମୁହୂର୍ତ୍ତ ବି ଅଯଥା ନଷ୍ଟ କରିବାକୁ ପ୍ରସ୍ତୁତ ନ ଥିଲେ । ତାହା ହାସଲ କରିବା ପାଇଁ ଆସୁ ଜେଲ, ଆସୁ ଫାଶୀ ବା ଆସୁ ଦ୍ୱୀପାନ୍ତର ସେ କିଛି ଖାତିର କରୁ ନ ଥିଲେ । ବ୍ୟକ୍ତିଗତଭାବେ କାଁ ଭାଁ କେଉଠି ଜଣେ କି ଦି'ଜଣ ଗୋରା ଅଫିସରଙ୍କୁ କେବଳ ହତ୍ୟାକରିଦେଲେ ଯେ

ସ୍ୱାଧୀନତା ଆପଣାଛାଏଁ ଆସିଯିବ, ଏହା ସେ ଭାବୁ ନ ଥିଲେ ବ୍ୟକ୍ତିନିଧନ କାର୍ଯ୍ୟକ୍ରମ ଯେତିକି ଫଳଲାଭପାଇଁ ଉଦ୍ଦିଷ୍ଟ ଥିଲା, ତାହା ହାସଲ ହୋଇସାରିଛି ବୋଲି ସେ ମନେକଲେ । ଏହି କାର୍ଯ୍ୟକ୍ରମ ସଫଳଭାବେ ରୂପାୟିତ ହୋଇସାରିଥିବା ଯୋଗୁଁ ଭାରତବାସୀଙ୍କ ମୃତ୍ୟୁଭୟ ଦୂରହୋଇଯାଇଛି ଏବଂ ସେମାନେ ନିର୍ଭୀକତା ଶିକ୍ଷା କରୁଅଛନ୍ତି । ଇଂରେଜ ଯେ ଅଜେୟ ନୁହେଁ, ଏହା ବାରମ୍ବାର ପ୍ରମାଣିତ ହୋଇଛି । ବର୍ତ୍ତମାନ ଉପଯୁକ୍ତ ପ୍ରସ୍ତୁତି ଓ ସଂଗଠନ ଠିଆକରାଯାଇ ଜାତୀୟ ସ୍ତରରେ ଏକ ବ୍ୟାପକ ବିଦ୍ରୋହ କରାଯାଇପାରିଲେ ବିଦେଶୀ ସରକାର ଆଉ ଗୋଟିଏ ମୁହୂର୍ତ୍ତ ବି ଏ ଦେଶରେ ରହିପାରିବନାହିଁ ବୋଲି ସେ ହିସାବକରିଥିଲେ । ଡେରାଡୁନରେ ସରକାରୀ କାର୍ଯ୍ୟ କରୁଥିବା ସମୟରେହିଁ ସେଥିପାଇଁ ପ୍ରସ୍ତୁତ ହେଉଥିଲେ ଏବଂ ଶନିବାର, ରବିବାର ଓ ମଝିରେ ମଝିରେ ଅଫିସରୁ ଛୁଟିନେଇ ସେହି ବ୍ୟାପକ ସଶସ୍ତ୍ର ବିପ୍ଳବର ଆୟୋଜନର ତଦାରଖ କରୁଥିଲେ । ହାର୍ଡ଼ିଂଜ ବୋମା ସଂକ୍ରାନ୍ତରେ ତାଙ୍କୁ ଖୋଜାଯିବାରୁ ସେ ଫେରାର ହେଲେ ଏବଂ ସେହିଦିନଠାରୁ ତିନିବର୍ଷ ପରେ ଭାରତ ଛାଡ଼ିବା ପର୍ଯ୍ୟନ୍ତ ସେ ଏହି ବ୍ୟାପକ ବିଦ୍ରୋହ ପ୍ରସ୍ତୁତ କାର୍ଯ୍ୟରେ ଲାଗିପଡ଼ିଥିଲେ । ପୁଲିସ୍ ଶତ ଚେଷ୍ଟା କରିବା ସତ୍ତ୍ୱେ ତାଙ୍କୁ ଧରିପାରି ନ ଥିଲା ସତ୍ୟ, କିନ୍ତୁ ବାରମ୍ବାର ସେ ପୁଲିସ୍ ହାତମୁଠାରେ ଧରା ପଡୁ ପଡୁ ଖସିଯାଇଥିଲେ ।

ଉତ୍ତରଭାରତରେ ସଶସ୍ତ୍ର ବିପ୍ଳବୀଙ୍କର ଏକ ଗୋପନ ବୈଠକରେ ଯୋଗଦେବାକୁ ରାସବିହାରୀଙ୍କୁ କିଛିଦିନ କାଶୀଠାରେ ରହିବାକୁ ପଡ଼ିଥିଲା । ଗୋଟିଏ ଭଡ଼ାଘରେ ସେ ରହୁଥିଲେ ଓଡ଼ିଆ ବ୍ରାହ୍ମଣ ପୂଝାରୀ ବେଶରେ । ପୁଲିସ କୌଣସି ସୂତ୍ରରୁ ଏ ଖବର ପାଇ ଉକ୍ତ ଘରକୁ ଘେରାଉ କରିବାକୁ ଗଲା । କିନ୍ତୁ ରାସବିହାରୀ ଏଥିରେ ଡରିଯିବାର ପାତ୍ର ନ ଥିଲେ । ସେହି ପୂଝାରୀ ବେଶରେ ସେ ଦାଣ୍ଡକବାଟ ଖୋଲିଦେଇ ପଦାକୁ ବାହାରିପଡ଼ିଲେ । ମୂର୍ଖ ପୂଝାରୀର ଅଭିନୟ କରି ରାସବିହାରୀ ପୁଲିସ ଦଳକୁ ସଲାମ୍ କଲେ । ପୁଲିସ ଅଫିସର ଜଣକ କିନ୍ତୁ କଡ଼ାସ୍ୱରରେ ପଚାରିଲେ "ରାସବିହାରୀ ବୋଷ କାହାଁ ହୈ ?"

"ଅନ୍ଦର ହୈ ହଜୁର ।" ଓଡ଼ିଆ ପୂଝାରୀଟି ହାତଯୋଡ଼ି କାକୁତି ମିନତି ସ୍ୱରରେ ଜବାବଦେଲା ଯେପରିକି ସେ ବିଚରା ପୁଲିସବାବୁଙ୍କୁ ଦେଖି ଭାରି ଡରିଯାଇଛି । ପୁଲିସବାବୁ ଜଣକ ଘର ଭିତରେ ପଶିଲେ, ଅନ୍ୟ ପୁଲିସ ଫୌଜ ସହ ରାସବିହାରୀଙ୍କୁ ଧରିବାକୁ । ଏହି ଅବସରରେ ଓଡ଼ିଆ ପୂଝାରୀ ଖସି ପଳାଇଲେ । ପୁଲିସବାଲା ଘର ଭିତରେ ରାସବିହାରୀଙ୍କୁ ନ ପାଇ 'ଓଡ଼ିଆ ପୂଝାରୀ' ଉପରେ ରାଗି ନିଆଁବାଣ । କିନ୍ତୁ ସେତେବେଳେ ଆଉ ଓଡ଼ିଆ ପୂଝାରୀର ପତ୍ତା ନାହିଁ ।

କେଇ ଦିନ ପରେ କଲିକତାରେ ବି ଠିକ୍ ସେୟା ହେଲା । ଗୋପନ ଅସ୍ତ୍ରଶସ୍ତ୍ର ସଂଗ୍ରହ ସଂପର୍କରେ ବାଘା ଯତୀନ ପ୍ରଭୃତିଙ୍କ ସହ ଆଲୋଚନା କରିବାକୁ ରାସବିହାରୀ

କଲିକତା ଯାଇଥା'ନ୍ତି ଏବଂ ସିଆଲଦା ଅଞ୍ଚଳରେ ଏକ ଭଡ଼ାଘରେ ରହୁଥା'ନ୍ତି । ତଳମହଲାରେ ସିଆଲଦା ପୋଷ୍ଟ ଅଫିସ । ରାସବିହାରୀ ଗୋଟିଏ ଆଙ୍ଗ୍ଲୋ-ଇଣ୍ଡିଆନର ଛଦ୍ମବେଶରେ ସେଠାରେ ରହୁଥିଲେ । ପୁଲିସର ଆସିବା ଖବର ଏମିତି ଅତର୍କିତ ଭାବରେ ତାଙ୍କ ପାଖରେ ପହଞ୍ଚିଲା ଯେ ସେ ପଳେଇଯିବାର କୌଣସି ବାଟ ପାଇଲେ ନାହିଁ । ସଙ୍ଗେ ସଙ୍ଗେ ବେହେଲା ଖଣ୍ଡେ ଧରି ସେ ବସିଗଲେ ସେହି ବାରଣ୍ଡାରେ । ପୁଲସିବାଲା ଆସି ଦେଖିଲେ ଯେ ଜଣେ ଆଙ୍ଗ୍ଲୋ-ଇଣ୍ଡିଆନ ବେହେଲାବାଦକ ତନ୍ମୟ ହୋଇ ଆଖିବୁଜି ମୁଣ୍ଡ ହଲାଇ ବେହେଲା ବଜାଉଛନ୍ତି । ପୁଲିସ ଅଫିସର ଜଣକ ସଙ୍ଗୀତ ରସିକ ହୋଇଥିବେ ତ, ସେ ବି ଟିକେ ସେଠାରେ ଠିଆହୋଇ ବେହେଲା ଶୁଣିଥିବେ ଏବଂ ହୁଏତ ଭାବିଥିବେ ରାସବିହାରୀ ତ ମିଳିଲା ନାହିଁ— ତୁଚ୍ଛାରେ ଏ ବେହେଲା ବାଦକକୁ କାହିଁକି ହଇରାଣ କରିବି ? ଯାହାହେଉ ପୁଲିସମାନେ ନିରାଶ ହୋଇ ଫେରିଗଲେ ।

ଦିନେ ନିଜ ଜନ୍ମସ୍ଥାନ ଚନ୍ଦନନଗରରେ ସେ ଏକାବେଳକେ ପୁଲିସ୍ ହାତମୁଠାରେ ପଡ଼ିଯାଇଥିଲେ କହିଲେ ଚଳେ । ବିପ୍ଳବ ସଂପର୍କରେ ସେ ଯାଇଥିଲେ ଚନ୍ଦନନଗର । ପୁଲିସ୍ ତାଙ୍କ ଘର ଘେରାଉକଲା । ଏହି ସମ୍ବାଦରେ ପ୍ରତ୍ୟୁତ୍ପନ୍ନମତି ରାସବିହାରୀ ଗୋଟିଏ ମେହେନ୍ତର ବେଶରେ ଦୁଇ ହାତରେ ଦୁଇଟି ମଇଳା ଭର୍ତ୍ତି ବାଲତି ଧରି ପୁଲିସ୍ ଆଖିରେ ଅଙ୍ଗୁଳି ଗୁଂଜିଦେଇ ପଳେଇଗଲେ । ମଇଳାର ଗନ୍ଧରେ ପୁଲିସ୍‌ବାଲା ନାକରେ ରୁମାଲ ଦେଇ ଘୁଞ୍ଚିଗଲେ । 'ମେହେନ୍ତର' ଗଲାପରେ ଯାଇ ଘର ସର୍ଚ୍ଚ କରିବାକୁ ପୁଲିସ୍ ଭିତରେ ପଶିଲା । ସର୍ଚ୍ଚର ଫଳ ଯାହା ହେବାର କଥା ହେଲା ।

ଆଉ ଥରେ ଶବହୋଇ କୋକେଇ ଭିତରେ ଶୋଇ ରାସବିହାରୀ ଶ୍ମଶାନକୁ ପଳାଇଗଲେ ଏବଂ ସେହି ସୁଯୋଗରେ ସେ ପୁଲିସ୍ ଘେରକୁ ଫାଙ୍କିଦେଇ ଚାଲିଗଲେ ।

କଲିକତାରେ ଥିଲେ ରାସବିହାରୀ ବାଦୂର ବାଗାନ ମେସ୍‌ରେ । ବିପ୍ଳବୀ ବୀରେନ ଚାଟାର୍ଜିଙ୍କୁ ଭେଟିବା ଥିଲା ତାଙ୍କର ଉଦ୍ଦେଶ୍ୟ । ଢାକାରୁ ଆସିଥିଲା ଗୋଟେ ରିଭଲଭର । ସେଟାକୁ ପରୀକ୍ଷା କରୁଥିଲେ ସେ । ଦୁର୍ଭାଗ୍ୟବଶତଃ ରିଭଲଭରଟା ହଠାତ୍ ଫୁଟିବାରୁ ତାଙ୍କର ବାଁ ହାତର ମଝି ଅଙ୍ଗୁଳି ଗୁରୁତରଭାବେ ଆହତ ହେଲା । ସମୁଦାୟ ବାଁହାତ ପାପୁଲି ରକ୍ତାକ୍ତହୋଇଗଲା । ସଙ୍ଗେ ସଙ୍ଗେ ତାଙ୍କର ଚିକିତ୍ସା କରାଗଲା ଗୋପନ ଚିକିତ୍ସା କେନ୍ଦ୍ରରେ । କିନ୍ତୁ ତା' ସଙ୍ଗେସଙ୍ଗେ ପୁଲିସ୍ ଏ ଖବର ପାଇଗଲା । ରାସବିହାରୀଙ୍କୁ ଧରିବା ପାଇଁ ବଙ୍ଗଳା ପୁଲିସ୍ ସାରା ଭାରତର ବିଭିନ୍ନ ଥାନାକୁ ଯେଉଁ ନିର୍ଦ୍ଦେଶ ପଠାଇଥିଲା; ସେଥିରୁ ଏହାର ପ୍ରମାଣ ମିଳୁଛି । ଗୋଟିଏ ନିର୍ଦ୍ଦେଶନାମାର ମର୍ମ ଥିଲା— ବେଶ୍ ଡେଙ୍ଗା, ମୋଟା ଓ ବଡ଼ବଡ଼ ଆଖି । ନିଶ ଅଳ୍ପଦିନ ତଳେ କ୍ଷୌର ହୋଇଛି । ଗୋଟିଏ ହାତରେ ମଝିଅଙ୍ଗୁଳି ଦୁର୍ଘଟଣା ଫଳରେ ଆହତ ଓ ଟାଣହୋଇଯାଇଛି । ବୟସ ପ୍ରାୟ ୩୦ ବର୍ଷ । ବେଳେ ବେଳେ ପଞ୍ଜାବୀ ଓ ବେଳେ ବେଳେ ବଙ୍ଗାଳୀଙ୍କ ପରି ପୋଷାକ

ପିନ୍ଧେ । ସନ୍ନ୍ୟାସୀ ବେଶରେ ବୁଲୁଥାଇପାରେ । ଅଧିକାଂଶ ସମୟରେ ରାଓଲପିଣ୍ଡି, ମୁଲତାନ, ଆମ୍ବାଲା, ସିମଲା, ଅମୃତସର, ଗୁରୁଦାସପୁର, ଫିରୋଜପୁର, ଝେଲମ, ଲାହୋର, ବଙ୍ଗାଳୀ କାଳୀମନ୍ଦିର କଲୋନୀ, ହିନ୍ଦୁ ଶିବାଳୟରେ ରହେ । ଧର୍ମଶାଳା ଓ ରେଳଷ୍ଟେସନକୁ ମଧ୍ୟ ଭଲଭାବରେ ଲକ୍ଷ୍ୟ କରିବା ଦରକାର ।''

**ରଡ୍‌ଡ଼ା ବନ୍ଧୁକ ଲୁଣ୍ଠନ :**

ଫେରାର ବିପ୍ଲବୀ ରାସବିହାରୀ ଓ ବାଘା ଯତୀନଙ୍କ ପ୍ରଚେଷ୍ଟାରେ ଓଡ଼ିଶାରୁ ପଞ୍ଜାବ ଓ ପେଶୱାର ପର୍ଯ୍ୟନ୍ତ ବ୍ୟାପକ ସଶସ୍ତ୍ର ଅଭ୍ୟୁତ୍‌ଥାନ ପାଇଁ ପ୍ରସ୍ତୁତି ଜୋରସୋର୍‌ରେ ଚାଲିଥିଲା । ସାରା ଭାରତରେ ଏକସମୟରେ ବିଦ୍ରୋହ କରାଯାଇ ପାରିଲେ ଇଂରେଜ ନିଶ୍ଚୟ ପରାଜିତ ହେବ ବୋଲି ରାସବିହାରୀ ପ୍ରଭୃତି ବିଚାର କରିଥିଲେ । ସେତେବେଳକୁ ପ୍ରଥମ ମହାଯୁଦ୍ଧ ଆରମ୍ଭହୋଇଯାଇଥାଏ । ଯୁଦ୍ଧରେ ପ୍ରଧାନ ପକ୍ଷ ହେଉଛନ୍ତି ଇଂଲଣ୍ଡ ଓ ଜର୍ମାନୀ । ଭାରତର ସଶସ୍ତ୍ର ବିପ୍ଲବୀମାନେ ଜର୍ମାନୀଠାର ସବୁପ୍ରକାର ସାହାଯ୍ୟ ପାଇବେ ବୋଲି ଆଶାକରୁଥା'ନ୍ତି ଏବଂ ସେହି ଅନୁସାରେ ଜର୍ମାନୀରେ ବ୍ୟବସ୍ଥା ବେଶ୍ ଆଗେଇଚାଲିଥାଏ । କିନ୍ତୁ ଜର୍ମାନୀରୁ ଅସ୍ତ୍ରଶସ୍ତ୍ର ଆସିବା ପୂର୍ବରୁ ବିପ୍ଲବୀମାନେ ଏଠାରେ ଟ୍ରେନିଂ ନେବାପାଇଁ କିଛି ଅସ୍ତ୍ରଶସ୍ତ୍ର ଦରକାର ହେଉଥାଏ । ଚୋରାରେ ବନ୍ଧୁକ କିଣିବା ବଡ଼ ବ୍ୟୟସାପେକ୍ଷ ଥିଲା । ତାହା ମଧ୍ୟ ଯଥେଷ୍ଟ ପରିମାଣରେ ମିଳିବା ସବୁବେଳେ ସମ୍ଭବ ହେଇ ନ ଥିଲା । ଫଳରେ ବିପ୍ଲବୀମାନଙ୍କୁ ଟ୍ରେନିଂ ଦେବା ଏକ ସମସ୍ୟା ହୋଇ ଠିଆହେଲା ।

ବିପ୍ଳବୀ ହେମଚନ୍ଦ୍ର ଘୋଷଙ୍କର ମୁକ୍ତି ସଂଘ ସେତେବେଳେ ଏକ ଦୃଢ଼ ସୁସଂଗଠିତ ବିପ୍ଲବୀ ଅନୁଷ୍ଠାନରେ ପରିଣତ ହୋଇଥାଏ । 'ମୁକ୍ତି ସଂଘ'ର କଲିକତା ଶାଖାର ଦାୟିତ୍ୱରେ ଥିଲେ ବିପ୍ଲବୀ ଶ୍ରୀଶପାଲ । କଲିକତାର ଜଗଦଳଠାରେ ଅବସ୍ଥିତ ଆଲେକ୍‌ଜାଣ୍ଡର ଜୁଟ ମିଲ୍‌ସର ସାହେବ ଇଂଜିନିୟର୍ ରବର୍ଟ ଓବ୍ରାଏନ ଜନୈକ ଭାରତୀୟ ଶ୍ରମିକକୁ ବୁଟ୍ ଗୋଇଠାରେ ହତ୍ୟାକରିଥିବାରୁ ତା'ର ପ୍ରତିଶୋଧ ନେବାପାଇଁ ଶ୍ରୀଶବାବୁ ସେହି ଚଟକଳରେ କୁଲିକାମ କଲେ ଦୁଇ ବର୍ଷ କାଳ । ତାହା ହେଉଛି ୧୯୧୨ ମସିହା କଥା । ଦୁଇ ବର୍ଷ ପରେ ଶ୍ରୀଶବାବୁ ଓବ୍ରାଏନକୁ ହତ୍ୟାକରିବାକୁ ସମର୍ଥ ହେଲେ ଏବଂ ତା'ପରେ ସେଠାରୁ ପଳାଇଆସି ଆତ୍ମଗୋପନ କଲେ କଲିକତା ବହୁବଜାରର ଛତାବାଲା ଲେନ୍‌ରେ । ସେହିଠାରେ କ୍ରମେ ଗଢ଼ିଉଠିଲା ଗୋଟିଏ ବଳିଷ୍ଠ ବିପ୍ଲବୀ ଗୋଷ୍ଠୀ । ଫଳରେ ଆଗାମୀ ବ୍ୟାପକ ବିଦ୍ରୋହ ପାଇଁ ଯୋଜନା ଓ ପ୍ରସ୍ତୁତିର ଗତିବେଗ ବଢ଼ିଗଲା । କିନ୍ତୁ ଟ୍ରେନିଂ ଦେବାପାଇଁ ବନ୍ଧୁକର ଅଭାବ ଦିନକୁ ଦିନ ବଡ଼ ଉତ୍କଟ ହେଲା । ଏହିଭଳି ଏକ ଘଡ଼ିସନ୍ଧି ବେଳେ ଅନ୍ୟତମ ବିପ୍ଲବୀ ଶ୍ରୀଶ ମିତ୍ର ଆସି ଏକ ଚମତ୍କାର ଖବର ଦେଲେ । ଶ୍ରୀଶ ମିତ୍ରଙ୍କୁ ସମସ୍ତେ ଶ୍ରଦ୍ଧାରେ 'ହାବୁଦାଦା' ବୋଲି ଡାକୁଥିଲେ । ହାବୁଦାଦା କଲିକତାର ଗୋଟିଏ ବନ୍ଧୁକ ବ୍ୟବସାୟୀ R.B. Rodda and Co. ର (ଆର୍. ବି. ରଡ୍‌ଡ଼ା ଏଣ୍ଡ କୋଃ) 'ମାଲବାବୁ' ବା ଗୁଡ୍‌ସ କ୍ଲର୍କ କାମ

କରୁଥିଲେ । ପେଟ ପୋଷିବାକୁ ଚାକିରିଟା ସିନା କରିଥିଲେ କିନ୍ତୁ ତାଙ୍କର ଅସଲ କାମଥିଲା ବିପ୍ଳବୀ ଶିବିରରେ । ସେହି ଚମତ୍କାର ଖବରଟା ହେଉଛି – ''ତିବ୍ବତର ଦଲାଇଲାମାଙ୍କର ବରାଦ ଅନୁସାରେ 'ରଡ୍‌ଡ଼ା କମ୍ପାନୀ' ଜର୍ମାନୀରୁ ବହୁ ପରିମାଣରେ ଉଚ୍ଚଶକ୍ତିସଂପନ୍ନ ବନ୍ଧୁକ ମଗାଇଥିଲା । ସେ ମାଲସବୁ ଜାହାଜରେ ଆସି ପହଞ୍ଚିଯାଇଛି ଏବଂ କଷ୍ଟମ୍ ଅଫିସ୍‌ରେ ଜମାରହିଛି । ସେ ସମୁଦାୟ ମାଲକୁ ନେଇଆସିଲେ କେମିତି ହୁଅନ୍ତା ?'' ବୋଲି 'ହାବୁଦା' ପ୍ରସ୍ତାବ ଦେଲେ ।

ପ୍ରସ୍ତାବଟା ବଡ଼ ଆକର୍ଷଣୀୟ ଥିଲା, କିନ୍ତୁ ସମବେତ ସମସ୍ତ ବିପ୍ଳବୀଙ୍କୁ ତାହା କେମିତି ଅସମ୍ଭବ ବୋଧହେଲା । କେବଳ ମାତ୍ର ଶ୍ରୀଶ ପାଲ ଏ ଖବରଟା ପାଇ ନାଚିଗଲେ । ''ଏତେ ବଡ଼ ସୁଯୋଗ ଛାଡ଼ିବାର ନୁହେଁ, ୫୦ଟା ମାଉସର ପିସ୍ତଲ, ଅତିରିକ୍ତ ସ୍ପ୍ରିଙ୍ଗ ୫୦ଟା, ପିସ୍ତଲରେ ସେହି ସ୍ପ୍ରିଙ୍ଗ୍‌କୁ ଫିଟ୍ କରିଦେଲେ ପିସ୍ତଲ ରାଇଫଲର କାମ କରିବ । ସବୁ ପିସ୍ତଲର କେଶ୍ ଅଛି ଏବଂ ଏହା ବାଦ୍ ୫୦ ହଜାର ରାଉଣ୍ଡ ଗୁଳି । ସୁତରାଂ ଆମେ ଏ ସୁଯୋଗ କୌଣସିମତେ ଛାଡ଼ିବା ଉଚିତ ନୁହେଁ ।'' ଏହା ଥିଲା ଶ୍ରୀଶପାଲଙ୍କର ମତ । କିନ୍ତୁ ସେଦିନ ମିଟିଂରେ କିଛି ସ୍ଥିର ହୋଇପାରିଲା ନାହିଁ ।

ତା'ପରଦିନ ଡାଲହାଉସି ସ୍କୋୟାରର ଗୋପନ କେନ୍ଦ୍ରରେ ଗୁପ୍ତ ବୈଠକ ବସିଲା । କେତେକ କହିଲେ ଯେ ଏହା ଏକ ଦୁଃସାହସିକ ପଦକ୍ଷେପ । ଦିନ ଦି'ପ୍ରହରରେ କଲିକତାର ଜନଗହଳି ରାସ୍ତାରେ ଏଭଳି ଏକ ବିପଦପୂର୍ଣ୍ଣ କାର୍ଯ୍ୟ କରିବା ସମ୍ଭବ ନୁହେଁ । ଏତକ କହି କେତେକ କର୍ମୀ ସଭା ଛାଡ଼ି ଚାଲିଗଲେ । ବିପ୍ଳବୀ ଶ୍ରୀଶପାଲ କିନ୍ତୁ ଜିଦ୍ ଧରି ବସିଛନ୍ତି, ''ଯେକୌଣସିମତେ ସେ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ ହେବ, ନଚେତ୍ ପରେ ଆମକୁ ଏଥିପାଇଁ ଅନୁତାପ କରିବାକୁ ପଡ଼ିବ । ଆମର ଭାବୀ ବଂଶଧରମାନେ ଆମକୁ ଏହି କାପୁରୁଷତା ପାଇଁ କଦାପି କ୍ଷମା ଦେବେ ନାହିଁ ।'' ଶ୍ରୀଶ ପାଲଙ୍କୁ ସମର୍ଥନ କରିବାକୁ ସେଦିନ ବିପ୍ଳବୀମାନଙ୍କର ଅଭାବ ନ ଥିଲା । ବାଘା ଯତୀନ, ହେମଚନ୍ଦ୍ର ଘୋଷ, ବିପିନ୍ ଗାଙ୍ଗୁଲି, ହରିଶ୍ ସିକଦାର, ଅନୁକୂଳ ମୁଖାର୍ଜି, ହାବୁ ମିତ୍ର ଓରଫ୍ ଶ୍ରୀଶ ମିତ୍ର, ହରିଦାସ ଦତ୍ତ ଓ ଖଗେନ ଦାସ ପ୍ରଭୃତି ବିପ୍ଳବୀମାନେ ଆଗେଇ ଆସିଲେ । ଚାଲିଲା ଟିକ୍‌ନିଖି ଯୋଜନା ।

ସ୍ଥିର ହେଲା ଯେ 'ହାବୁଦାଦା' 'କଷ୍ଟମ କ୍ଲିଅରେନ୍ସ ସାର୍ଟିଫିକେଟ' ଆଣି ମାଲ ଖଲାସ କରିବାକୁ ଯିବେ । କଂପାନୀ ପକ୍ଷରୁ କେତେ ଖଣ୍ଡ ଶଗଡ଼ ମାଲ ଆଣିବାକୁ ଯିବ ତା'ସହ ଆଉ ଏକ ଶଗଡ଼ ମଧ୍ୟ ଯିବ, ଯାହାକି ମାଲ୍ ଆଣି ସିଧା ଗୋପନ ଅଫିସକୁ ଯିବ । ଏହି ଗାଡ଼ି ଚାଳକ ବାହାରଲୋକ ହେଲେ ଚଳିବନାହିଁ, ତା'ହେଲେ ଗାଡ଼ିବାଲା ହୁଏତ ସନ୍ଦେହ କରିବ । ହାବୁଦାଦା କଂପାନୀ ଗାଡ଼ିକୁ ମାଲ୍ ଉଠାଇବା ବ୍ୟବସ୍ଥା କଲାବେଳେ ପିସ୍ତଲ ପ୍ରଭୃତି ଥିବା ବାକ୍ସକୁ କମ୍ପାନୀର ଭଡ଼ାଗାଡ଼ିରେ ନ ଉଠାଇ ଅନ୍ୟ ଗାଡ଼ିରେ ଉଠାଇବେ । ଏହାହିଁ ହେଲା ମୋଟାମୋଟି ଯୋଜନା ।

ଶ୍ରୀଶପାଲଙ୍କ ଜଣେ ଆତ୍ମୀୟ ଲୋକ ଶଗଡ଼ଗାଡ଼ିଟି ଦେଲା । ସ୍ଥିର ହେଲା ଯେ ବିପ୍ଳବୀ ହରିଦାସ ଦତ୍ତ ଗାଡ଼ିଚାଳକ ହେବେ । ତାଙ୍କର ସେ କାର୍ଯ୍ୟରେ କୁଆଡ଼େ ଅଭିଜ୍ଞତା ଥିଲା । କଲିକତାର ଅଧିକାଂଶ ଗୋରୁଗାଡ଼ି ଚାଳକ ହେଉଛନ୍ତି ବିହାରୀ । ସୁତରାଂ ହରିଦାସଙ୍କୁ ସେହି ବିହାରୀ ଭଳି ଚେହେରା କରିବାକୁ ପଡ଼ିବ । ଆସିଲେ ମାରୁଆଡ଼ି ସ୍କୁଲରେ ପଢୁଥିବା ବିପ୍ଳବୀ ଛାତ୍ର ପ୍ରଭୁଦୟାଲ ହିମ୍ମତସିଂକା ହରିଦାସଙ୍କୁ ଗାଡ଼ିଆଳ ବେଶରେ ସଜାଇବାକୁ । ୧୯୧୪ ଅଗଷ୍ଟ ୨୬ ତାରିଖ ରାତିରେ ବିପ୍ଳବୀ ଅନୁକୂଳ ମୁଖାର୍ଜିଙ୍କ ଗୋପନ ଆଡ୍‌ଡ଼ା ଯେମିତି ଏକ ଥିଏଟର କଂପାନୀର ଗ୍ରିନ୍‌ରୁମ୍ ବା ବେଶ ପୋଷାକ ଘର ହେଲା । ପ୍ରଥମେ ହରିଦାସଙ୍କ ମୁଣ୍ଡର ଚୁଳ କଟାଗଲା ଛୋଟ ଛୋଟ କରି । ତା' ପରେ ତାଙ୍କୁ ପିନ୍ଧାଇଦିଆଗଲା କଳା ଫତେଇ । ଗଳାରେ କଳାଫିତାର ଗୁନ୍ଥା ପିତଳ ତାବିଜ ଓ ବାଁହାତରେ ଡେଉଁରିଆ ଓ ଡାହାଣ ହାତରେ ପାଞ୍ଚଣ ।

୨୭ ତାରିଖ ଦିନ ଖୁବ୍ ସକାଳୁ ଗାଡ଼ି ବାହାରିଲା ଛତାବାଲା ଲେନ୍‌ରୁ । ଗାଡ଼ିଚାଳକ ବେଶରେ ବସିଥିବା ବିପ୍ଳବୀ ହରିଦାସ ଯେତେବେଳେ ପାଞ୍ଚଣ ଉଠାଇ ଟିଟିକାର ମାରି କଲିକତା ରାସ୍ତାରେ ଗାଡ଼ି ଚଳାଉଥା'ନ୍ତି ପୁଲିସର ଗୋସେଇଁ ବି ତାଙ୍କୁ ସନ୍ଦେହ କରିପାରିବ ନାହିଁ । ଛଦ୍ମବେଶରେ ନିଜେ ଶ୍ରୀଶପାଲ ବନ୍ଧୁକ ଖଣ୍ଡେ ଲୁଚାଇ ରଖି ଗାଡ଼ି ଆଗେ ଆଗେ ଚାଲୁଥା'ନ୍ତି । ଟିକେ ଦୂରରେ ଚାଲିଥା'ନ୍ତି ବିପ୍ଳବୀ ଖଗେନ ଦାସ-କାଳେ କେତେବେଳେ କ'ଣ ଘଟିବ ! ହାବୁଦାଦା କଂପାନୀ ପାଇଁ ଛ'ଖଣ୍ଡ ଭଡ଼ା ଗାଡ଼ିନେଇ କଷ୍ଟମ୍ ଅଫିସରେ ପହଞ୍ଚିଲେ । ଯୋଜନା ଅନୁସାରେ ହାବୁଦାଦାଙ୍କ ଅର୍ଡ଼ରରେ କୁଲି ଗାଡ଼ିରେ ମାଲ ବୋଝେଇକଲେ । ହରିଦାସଙ୍କ ଗାଡ଼ିରେ ବୋଝେଇ ହେଲା ୫୦ଟା ପିସ୍ତଲ ବାକ୍ସ, ସ୍ପ୍ରିଙ୍ଗ୍ ପଚାଶ ବାକ୍ସ ଓ ଗୁଳି ୫ ହଜାର ରାଉଣ୍ଡ ।

ବୋଝେଇ ଗାଡ଼ିସବୁ ଚାଲିଲା । ଭଡ଼ାଗାଡ଼ି ଆଗରେ ଓ ହରିଦାସଙ୍କ ଗାଡ଼ି ସବା ପଛରେ । ଗାଡ଼ିସବୁ ମାର୍ଟିନ କଂପାନୀ ଓ କରେନ୍‌ସି ଅଫିସ ମଝିରାସ୍ତା ଦେଇ ଚାଲିଲା, ଯାହାକୁ ଆଜିକାଲି ମିସନ୍ ରୋଡ଼ କହୁଛନ୍ତି । ସେଠାରୁ ବେଣ୍ଟିକ୍ ଷ୍ଟ୍ରିଟ୍ ଅତିକ୍ରମ କରି ଚାନ୍ଦନୀଚୌକ ଦେଇ ଚାଲିଲା । ସେଠାରୁ କଂପାନୀ ଗାଡ଼ିସବୁ ରଡ୍‌ଡ଼ା କଂପାନୀର ଗୋଦାମଘର ଆଡ଼େ ଓ ହରିଦାସଙ୍କ ଗାଡ଼ି ଆସିଲା ଅନୁକୂଳ ବାବୁଙ୍କ ଗୋପନ ଆଡ୍‌ଡ଼ାକୁ ।

ହାବୁଦାଦାଙ୍କୁ କଲିକତାରେ ରଖିବା ଆଉ ନିରାପଦ ମନେକରାଗଲାନାହିଁ, କାରଣ ରବିବାର ଛୁଟି ଦିନ ପରେ ସୋମବାର ଦିନ ନିଶ୍ଚୟ କଂପାନୀ ସେ କଥା ଜାଣିପାରିବ ଏବଂ ହାବୁଦାଦାଙ୍କ ଉପରେ ପଡ଼ିବ ସବୁ ଚାପ । ସେଥିପାଇଁ ନିଜେ ଶ୍ରୀଶ ପାଲ 'ହାବୁଦାଦା'ଙ୍କୁ ସିଧା ନେଇ 'ଦାର୍ଜିଲିଂ ମେଲ୍'ରେ ବସାଇଦେଲେ । ରଙ୍ଗପୁର ଡାକ୍ତର ସୁରେନ ବର୍ଦ୍ଧନଙ୍କ ଘରେ ସେ ନେଲେ ଆଶ୍ରୟ ।

ତେଣେ ଏତେଗୁଡ଼ିଏ ଶକ୍ତିଶାଳୀ ଅସ୍ତ୍ର ନିର୍ବିଘ୍ନରେ ହାତକୁ ଆସିଥିବାରୁ ବିପ୍ଳବୀମାନଙ୍କର ଆନନ୍ଦ କହିଲେ ନ ସରେ । ସେଦିନ ରାତିରେହିଁ ସବୁ ପିସ୍ତଲ, ସ୍ପ୍ରିଂ ଓ ଗୁଳି ବଙ୍ଗଳା, ବିହାର ଓ ଓଡ଼ିଶାର ବିଭିନ୍ନ କେନ୍ଦ୍ରକୁ ପଠାଇଦିଆଗଲା ।

କଂପାନୀ ଅଫିସକୁ ଦୁଇଦିନ ପରେ ଏକଥା ଜଣାପଡ଼ିଲା । କଂପାନୀ ବ୍ୟସ୍ତ ହୋଇ ପଡ଼ିଲା ଏକ ବିରାଟ ଆର୍ଥିକ କ୍ଷତି ଯୋଗୁଁ । କିନ୍ତୁ ସରକାର ବିଚଳିତ ହେଲା ଅନ୍ୟ କାରଣରୁ । ଏତେଗୁଡ଼ାଏ ଶକ୍ତିଶାଳୀ ଅସ୍ତ୍ର ଯଦି ବିପ୍ଳବୀମାନଙ୍କ ହାତରେ ପଡ଼ିଯାଏ, ତେବେ ଯେଉଁ ଭୟାବହ ଅବସ୍ଥା ସୃଷ୍ଟିହେବ ତାକୁ ସମ୍ମୁଖୀନ ହେବାକୁ ସରକାରର ଶକ୍ତି ନ ଥିଲା । ଅନୁସନ୍ଧାନ ଚାଲିଲା, ପ୍ରଥମେ ଖୋଜାହେଲା ହାବୁ ମିତ୍ରଙ୍କୁ । ସେତେବେଳେ ହାବୁଦାଦା ସୁରେନବାବୁଙ୍କ ଘରେ ଆଶ୍ରୟ ନେଇସାରିଲେଣି । ଡାକ୍ତର ସୁରେନ୍ ବର୍ଦ୍ଧନ ସଶସ୍ତ୍ର ବିପ୍ଳବରେ ପ୍ରତ୍ୟକ୍ଷ ଭାଗନେଇ ନ ଥିଲେ ବି ବିପ୍ଳବୀମାନଙ୍କୁ ସବୁମତେ ସାହାଯ୍ୟ କରୁଥିଲେ । ସେଠାକାର ପୁଲିସ ମହଲରେ ତାଙ୍କର ଏକ ସମ୍ମାନନୀୟ ସ୍ଥାନ ଥିବାରୁ ସେ କାହାରି ସନ୍ଦେହରେ ପଡୁ ନ ଥିଲେ । ସେହି ଦୃଷ୍ଟିରୁ 'ହାବୁଦା' ସେଠାରେ ନିରାପଦରେ ରହିପାରିବେ ବୋଲି ସମସ୍ତଙ୍କର ଆଶା ଥିଲା । କିନ୍ତୁ ତାହା ହେଲା ନାହିଁ । ଅଳ୍ପଦିନ ଭିତରେ ପୁଲିସ ହାବୁଦାଦାଙ୍କ ଖବର ପାଇଗଲେ । କିନ୍ତୁ ସୁରେନବାବୁ ତାଙ୍କ ଘର ସର୍ଚ୍ଚ ହେବ ବୋଲି ସେ ସମ୍ବାଦ ଅନ୍ୟ କୌଣସି ସୂତ୍ରରୁ ପାଇ 'ହାବୁଦା'ଙ୍କୁ ଅନ୍ୟତ୍ର ପଠାଇଦେଲେ । ଆସାମର 'ରାଭା' ସଂପ୍ରଦାୟ ଆଦିବାସୀ ହେଲେ ସୁଦ୍ଧା ସଶସ୍ତ୍ର ବିପ୍ଳବକୁ ସାହାଯ୍ୟ କରୁଥିଲେ । ସେହି ସଂପ୍ରଦାୟର ଜଣେ ସର୍ଦ୍ଦାରଙ୍କ ସାଙ୍ଗରେ ହାବୁଦାଙ୍କୁ ପଠାଇଦିଆଯାଇଥିଲା । କିନ୍ତୁ ପରେ ହାବୁଦାଙ୍କ ସଂପର୍କରେ ଆଉ ବିଶେଷ କିଛି ସଂବାଦ ମିଳିଲା ନାହିଁ । ଅନେକଙ୍କର ବିଶ୍ୱାସ, 'ହାବୁଦା' କୌଣସି ହିଂସ୍ର ବନ୍ୟଜନ୍ତୁଙ୍କ ଦ୍ୱାରା ନିହତ ହୋଇପାରିଥା'ନ୍ତି । ଏହିଭଳି ଭାବରେ 'ଅଗ୍ନିଯୁଗ'ର ଜଣେ ମହାନ୍ ବିପ୍ଳବୀ, ନିଃସ୍ୱାର୍ଥପର ଦେଶସେବକ ଜୀବନର କରୁଣ ପରିସମାପ୍ତି ଘଟିଲା ।

'ହାବୁଦା',ତୁମେ ଅମର । ତୁମକୁ କୋଟି କୋଟି ପ୍ରଣାମ । ତୁମେ ଯେଉଁ ଅପୂର୍ବ ଆତ୍ମତ୍ୟାଗକଲ, ତୁମର ଦୁଃସାହସିକ ପ୍ରଚେଷ୍ଟା ଫଳରେ ସ୍ୱାଧୀନତା ଯୁଦ୍ଧକୁ ଯେଉଁ ଦୁର୍ବାର ଗତିବେଗ ମିଳିଲା ତାହା ଇତିହାସରେ ଚିରଉଜ୍ଜ୍ୱଳ ଅଧ୍ୟାୟ ।

ରଡ୍‌ଡ଼ା ଅସ୍ତ୍ର ଲୁଣ୍ଠନ ଫଳରେ ଭାରତରେ ସଶସ୍ତ୍ର ବିପ୍ଳବ କିଭଳି ବ୍ୟାପକ ହୋଇଥିଲା ତାହା କୁଖ୍ୟାତ ରଓ୍ୱାଲଟ୍ ବା ସିଡ଼ିସନ୍ (Sedition) କମିଟି ମଧ୍ୟ ସ୍ୱୀକାର କରିଛି — "The theft of pistol from Rodda and Co. firm of gun-makers in Calcutta was an event of greatest importance in the development of revolutionary crime in Bengal. The authorities have reliable informations to show that 44 of these pistols (stolen moutzer pistol was fifty) were almost atonce distributed to nine different revolutionary groups in Begal and it is certain that the pistols so distributed were used in 54 cases of decoit or murder or attempt subsequent to August 1914.

ରଡ୍‌ଡ଼ା ପିସ୍ତଲ ସାହାଯ୍ୟରେ ସରକାରୀ ଟ୍ରେଜେରୀ ପ୍ରଭୃତି ଉପରେ ସଶସ୍ତ୍ର ଚଢ଼ାଉକୁ ସରକାର 'ଡକାୟତି' ଆଖ୍ୟା ଦେଲେ ସୁଦ୍ଧା ଏହା ବିପ୍ଳବର ଅଂଶବିଶେଷ ଥିଲା । ଖାଲି ସେତିକି ନୁହେଁ 'ରଡ୍‌ଡ଼ା ପିସ୍ତଲ' ପାଖରେ ଥିବାରୁହିଁ ଏହାକୁ ରାଇଫେଲ୍ କରି

ବାଘା ଯତୀନ ପ୍ରଭୃତି ବିପ୍ଳବୀମାନେ ଏକ ଦୁର୍ଦ୍ଧର୍ଷ ପୁଲିସ୍ ବାହିନୀ ସହ ୬ଘଣ୍ଟା କାଳ ସମ୍ମୁଖ ଯୁଦ୍ଧ କରିଥିଲେ ।

'ହାବୁଦା'ଙ୍କ ପତ୍ତା ମିଳିଲା ନାହିଁ ସତ, କିନ୍ତୁ ପୁଲିସ ବାଂଶତଳାର ଗୁପ୍ତ ଗୋଦାମଘରୁ ପ୍ରାୟ ଦୁଇ ହଜାର ରାଉଣ୍ଡ ଗୁଳି ସହ ହରିଦାସ ଦତ୍ତଙ୍କୁ ଧରିଲା । ତାଙ୍କୁ ଓବ୍ରାୟନ୍ ସାହେବ ହତ୍ୟା ସଂକ୍ରାନ୍ତରେ ମଧ୍ୟ ପୁଲିସ ଖୋଜୁଥିଲା । ତତ୍କାଳୀନ ପୁଲିସ କମିଶନର ଚାର୍ଲସ୍ ଟେର୍ଗାଟ୍ ହରିଦାସଙ୍କୁ ଥାନାରେ ଦେଖି ଆନନ୍ଦରେ ଗଡ଼ିଗଲା । କହିଲା – "Hallo royal bengal tiger ! Now you are bagged." (କିହୋ, ବଙ୍ଗଳାର ମହାବଳ ବାଘ ! ତୁମେ ବର୍ତ୍ତମାନ ଆମ ମୁଣି ଭିତରେ ।) Rodda Arms Conspiracy Case (ରଡ୍ଡ଼ା ଅସ୍ତ୍ର ଷଡ଼ଯନ୍ତ୍ର ମକଦ୍ଦମା) ଚାଲୁହେଲା । ହରିଦାସ ଦତ୍ତ, କାଳୀପଦ ବସୁ, ଭୁଜଙ୍ଗଧର ଦତ୍ତ, ନରେନ୍ ବାନାର୍ଜି ପ୍ରଭୃତିଙ୍କୁ ଦୁଇବର୍ଷ ଲେଖା ସଶ୍ରମ କାରାଦଣ୍ଡ ହେଲା । ପରେ ଶ୍ରୀଶପାଲ ଓ ଖଗେନ ଦାସ ଦତ୍ତ ଧରାହୋଇ ଜେଲ ଗଲେ ।

ପୁଲିସ ଏତେଗୁଡ଼ିଏ ବିପ୍ଳବୀଙ୍କୁ ଦଣ୍ଡିତ କରିପାରିଥିଲେ ସୁଦ୍ଧା ରାସବିହାରୀ ଓ ବାଘା ଯତୀନଙ୍କ କୌଣସି ପତ୍ତା ପାଇଲା ନାହିଁ । ଫଳରେ ବ୍ୟାପକ ବିଦ୍ରୋହ ପାଇଁ ଯେଉଁ ଆୟୋଜନ ଚାଲିଥିଲା, ତାହା ଅବ୍ୟାହତ ରହିଲା । ଏତେ ବଡ଼ କାମ ପାଇଁ ପ୍ରଚୁର ଅର୍ଥର ମଧ୍ୟ ପ୍ରୟୋଜନ ଥିଲା । ଶୁଭେଚ୍ଛୁ ବା ପୃଷ୍ଠପୋଷକମାନଙ୍କଠାରୁ ସମସ୍ତ ଅର୍ଥ ସର୍ବଦା ମିଳୁ ନ ଥିଲା, ସେଥିପାଇଁ ସରକାରୀ ଟ୍ରେଜରୀ, ଖଜଣାଖାନା ତଥା ଇଂରେଜ ସମର୍ଥକ ଧନୀମାନଙ୍କ ଘର ବେଳେ ବେଳେ ଲୁଟ୍ ହେଉଥିଲା । ଏହା ସେ କାଳରେ 'ସ୍ୱଦେଶୀ ଡକାୟତି' ନାମରେ ପ୍ରସିଦ୍ଧ ଥିଲା । କଲିକତା ଗାର୍ଡ଼ନରିଚ୍ ଓ ବେଲିଆଘାଟରେ ଏଭଳି ଦୁଇଟି ଡକାୟତି ହୋଇ ଚାଳିଶି ହଜାର ଟଙ୍କା ସଂଗୃହୀତ ହୋଇଥିବା ଜଣାଯାଏ । ( ଅନ୍ୟ ଅଧ୍ୟାୟରେ ସ୍ୱଦେଶୀ ଡକାୟତି ଦ୍ରଷ୍ଟବ୍ୟ)

ଯାହାହେଉ, ଏହି ପରିମାଣର ଅର୍ଥ, ରଡ୍ଡ଼ା ଅସ୍ତ୍ର ବିପ୍ଳବର ପ୍ରାଥମିକ ଆୟୋଜନ ଓ ଟ୍ରେନିଂ ପାଇଁ ଯଥେଷ୍ଟ ସହାୟକ ହୋଇଥିଲା ।

□□□

## ଅଧ୍ୟାୟ - ପନ୍ଦର

# ସାରା ଭାରତରେ ବିଦ୍ରୋହ

ସାରା ଭାରତରେ ଏକାସଙ୍ଗରେ ବିଦ୍ରୋହ କରିବାର ଯୋଜନା ଦ୍ରୁତଗତିରେ ଆଗେଇ ଚାଲିଲା । ଜର୍ମାନୀରୁ ଯଥେଷ୍ଟ ପରିମାଣରେ ଅସ୍ତ୍ରଶସ୍ତ୍ର ଆସିବା ବିଷୟରେ କାହାରି ମନରେ ଟିକେହେଲେ ସନ୍ଦେହ ନ ଥିଲା । କାରଣ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ, ଏମ୍.ଏନ୍. ରାୟ ଏବଂ ମାଡାମ୍ କାମା ପ୍ରଭୃତି ବିପ୍ଳବୀମାନେ (ପରବର୍ତ୍ତୀ ଅଧ୍ୟାୟରେ ଦ୍ରଷ୍ଟବ୍ୟ) ବର୍ଲିନଠାରେ ଏଥିପାଇଁ ବିଧିବଦ୍ଧ ବ୍ୟବସ୍ଥା କରୁଥା'ନ୍ତି । ଜର୍ମାନୀବାଲାଙ୍କର ଏକମାତ୍ର ସ୍ୱାର୍ଥ ଥିଲା—ଭାରତରେ ଇଂରେଜମାନଙ୍କୁ ଦୁର୍ବଳ କରି ୟୁରୋପରେ ସେମାନଙ୍କ ଉପରେ ବ୍ୟାପକ ଆକ୍ରମଣ କରିବା । ଏହି ଉଦ୍ଦେଶ୍ୟରେ ସେମାନେ ଭାରତୀୟ ବିପ୍ଳବୀମାନଙ୍କୁ ସବୁପ୍ରକାର ସାହାଯ୍ୟ କରୁଥିଲେ । ଜର୍ମାନୀରେ ଥିବା ଆମ ବିପ୍ଳବୀମାନଙ୍କ ସହ ଭାରତରେ ଥିବା ବିପ୍ଳବୀମାନଙ୍କର ଗୋପନ ସମ୍ପର୍କ ପ୍ରତିଷ୍ଠା ପାଇଁ କଲିକତାରେ ଏକ ଜାଲ୍ କମ୍ପାନୀ ଖୋଲାଗଲା । ତାହାର ଦାୟିତ୍ୱରେ ରହିଲେ ବିପ୍ଳବୀ ହରିକୁମାର ଚକ୍ରବର୍ତ୍ତୀ ଏବଂ କମ୍ପାନୀର ନାମ ଦିଆଗଲା 'ହାରୀ ଏଣ୍ଡ୍ ସନ୍‌ସ' (Hari & Sons) ସେଡ଼ିସନ୍ କମିଟି ରିପୋର୍ଟରେ ଲେଖାଅଛି, "Meanwhile Martin had telegraphed to Harry and Sons in Calcutta a bogus firm kept by a well known revolutionary, that the business was helpful."

ମାର୍ଟିନ୍ ଓରଫ୍ ନରେନ୍ ଭଟ୍ଟାଚାର୍ଯ୍ୟ ଓରଫ ଏମ୍.ଏନ୍. ରାୟ ଜର୍ମାନୀର 'ମାଭାରିକ' ଜାହାଜରେ ମାଲ ଆସୁଛି ବୋଲି ଖବରଦେଲେ । ଜର୍ମାନୀର କନ୍‌ସଲ ଥିଓଡର ହେଲଫେରିକ୍ ସବୁ ବ୍ୟବସ୍ଥା କରୁଥା'ନ୍ତି । ୩୦ ହଜାର ରାଇଫେଲ୍ ଓ ପ୍ରତ୍ୟେକ ରାଇଫେଲ ପାଇଁ ଚାରିଶହ ରାଉଣ୍ଡ ଲେଖାଏଁ ଗୁଳି ଏବଂ ତିନିଲକ୍ଷ ଟଙ୍କା ଆସିବାର ବ୍ୟବସ୍ଥା ହୋଇଥାଏ । 'ହାରି ଏଣ୍ଡ୍ ସନ୍ସ୍' ଠିକଣାରେ ଚିଠିପତ୍ର ଓ କେତେକ ଟଙ୍କା ମଧ୍ୟ ଆସିବାକୁ ଲାଗିଲା । ତେଣୁ ଜର୍ମାନୀରୁ ଯେ ଯଥେଷ୍ଟ ପରିମାଣରେ ଅସ୍ତ୍ରଶସ୍ତ୍ର ଆସି ପହଞ୍ଚିପାରିବ ଏହା ପ୍ରମାଣିତ ହୋଇଗଲା । ୧୯୧୪ ମସିହା ଜୁନ୍ ଶେଷଆଡ଼କୁ 'ମାର୍ଟିନ୍' ଜର୍ମାନୀରୁ କଲିକତା ଆସିଥିଲେ । 'ବାଘା'ଙ୍କ ସହ ଆଲୋଚନା ହୋଇ ସ୍ଥିର ହେଲା ଯେ 'ମାଭାରିକ' ଜାହାଜ ଅସ୍ତ୍ରଶସ୍ତ୍ର ବୋଝେଇ ହୋଇ ପୂର୍ବବଙ୍ଗରେ ଲଙ୍ଗର କରିବ ଏବଂ ସେଠାରୁ କଲିକତା, ବାଲେଶ୍ୱର ଓ ଉତ୍ତର ଭାରତରେ ତାହା ବଣ୍ଟାଯିବ ।

ଉତ୍ତର ଭାରତ ଓ ପଞ୍ଜାବରେ ଆୟୋଜନ ତଥା ସଂଗଠନର ଦାୟିତ୍ୱ ରହିଥିଲା ରାସବିହାରୀଙ୍କ ଉପରେ । ମୁଖ୍ୟତଃ ସେନାବାହିନୀ ଭିତରେ ବିଦ୍ରୋହ ସୃଷ୍ଟି କରିବା ଥିଲା ତାଙ୍କର ପ୍ରଧାନ କାର୍ଯ୍ୟ । ଜର୍ମାନୀ ସହ ସମ୍ପର୍କ ରକ୍ଷାକରି ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣକରିବା ଦାୟିତ୍ୱ ଥିଲା 'ବାଘା ଯତୀନ'ଙ୍କ ଉପରେ ।

ପୂର୍ବରୁ ଯେଉଁ ଅର୍ଥ ଓ ଚାନ୍ଦା ସଂଗ୍ରହ କରାଯାଇଥିଲା, ତାହାରି ସାହାଯ୍ୟରେ ବିଦ୍ରୋହୀ ସୈନିକମାନଙ୍କ ପାଇଁ ଖାକି ପୋଷାକ ଓ ୟୁନିଫର୍ମ ତିଆରିହେଲା । ଏହି ସଶସ୍ତ୍ର ଅଭ୍ୟୁତ୍‌ଥାନ ପାଇଁ ଯେଉଁ ସବୁ ଅଞ୍ଚଳ ଓ ପ୍ରଦେଶ ବଛାଯାଇଥିଲା, ସେଠାରେ ସୈନ୍ୟ ଓ ପୁଲିସ୍ ସଂଖ୍ୟା, ଅସ୍ତ୍ରଶସ୍ତ୍ରର ପରିମାଣ ଓ ଦରକାର ବେଳେ ସରକାର ଅନ୍ୟ କେଉଁଠୁ କେତେ ସାହାଯ୍ୟ ପାଇପାରେ ତା'ର ଟିକିନିଖି ହିସାବ ରାସବିହାରୀଙ୍କ ପରାମର୍ଶକ୍ରମେ ସଂଗୃହୀତହେଲା ।

ସେନାବାହିନୀରେ ବିଦ୍ରୋହର ବାର୍ତ୍ତା ପ୍ରଚାର କରିବା ଥିଲା ସବୁଠାରୁ କଷ୍ଟ ଓ ବିପଜ୍ଜନକ କାର୍ଯ୍ୟ, କାରଣ ସେନାବାହିନୀ ସବୁ ଦେଶରେ ଓ ସବୁ କାଳରେ ସାଧାରଣତଃ ରକ୍ଷଣଶୀଳ । ସେମାନଙ୍କର ରାଜଭକ୍ତି ବା ଶାସକଗୋଷ୍ଠୀ ପ୍ରତି ଅନୁରକ୍ତି ଉପରେହିଁ ଶାସକ ବା ସରକାରର ସ୍ଥିତି ନିର୍ଭରକରେ ଏବଂ ସେହି କାରଣରୁ ଶାସକ ଶ୍ରେଣୀ କେବେଁ ହେଲେ ତା'ର ସେନାବାହିନୀକୁ ଅସନ୍ତୁଷ୍ଟ କରେନାହିଁ । ବେତନ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଭୋଗ କରିବାରେ ସେନାବାହିନୀ ସର୍ବଦା ସର୍ବାଧିକ ଗୁରୁତ୍ୱ ଲାଭକରେ । ରାଜ୍ୟର ଦଣ୍ଡଶକ୍ତିର ମୂଳାଧାର ହୋଇଥିବାରୁ ସୈନ୍ୟମାନେହିଁ ଏହି ପ୍ରଚୁର ସୁବିଧା ଭୋଗକରନ୍ତି । ପୁରାଣ ବା ପୁରାତନ ଇତିହାସରେ ସେନାବାହିନୀ ସର୍ବଦା ରାଜଶକ୍ତି ପ୍ରତି ଅନୁରକ୍ତ ଥିବାର ପ୍ରମାଣ ମିଳେ, ଯଦିଓ ବିଂଶଶତାବ୍ଦୀରେ ଦେଶର ଶାସନକଳ ବିରୋଧରେ ସାମରିକ ବିଦ୍ରୋହର ଉଦାହରଣର ଅଭାବ ନାହିଁ । ଭାରତ ଇତିହାସରେ ଊନବିଂଶ ଶତାବ୍ଦୀରେ ସିପାହି ବିଦ୍ରୋହ ତାହାର ଏକ ପ୍ରମାଣ । ସେହି ଅଭିଜ୍ଞତା ଦୃଷ୍ଟିରୁ ଇଂରେଜମାନେ ଦେଶର ସେନାବାହିନୀକୁ ଏଭଳି ଭାବରେ ପୁନର୍ଗଠିତ କରିଥିଲେ ଯେପରି ଯେକୌଣସି ଏକ ଜାତୀୟ ସମସ୍ୟା ଉପରେ ଏକତ୍ରିତ ହେବା ସେମାନଙ୍କ ପକ୍ଷରେ ସମ୍ଭବ ହେଉନଥିଲା; ବିଶେଷତଃ ଜାତି ଓ ଭାଷା ଭେଦରେ ଭାରତର ସେନାବାହିନୀ ଗଠିତ । ମରହଟ୍ଟା ରେଜିମେଣ୍ଟ, ଗୁର୍ଖା ରେଜିମେଣ୍ଟ, ଜାଠ ରେଜିମେଣ୍ଟ ଓ ଶିଖ ରେଜିମେଣ୍ଟ ପ୍ରଭୃତିର ଗଠନ କୌଣସି ଆକସ୍ମିକ ଘଟଣା ନୁହେଁ ବା କାହାର କଳ୍ପନାବିଳାସ ନୁହେଁ । ଏହା ମୁଖ୍ୟତଃ ସେନାବାହିନୀ ଭିତରେ ସ୍ୱ-ସ୍ୱ ଜାତି ପ୍ରତି ଏକ ଅଭିମାନ ସୃଷ୍ଟି କରିବା ପାଇଁ ଉଦ୍ଦିଷ୍ଟ ଏବଂ ଏହି ଭେଦନୀତି ଫଳରେ ହିଁ ଏ ଦେଶରେ ସେନାବାହିନୀ ଜାତୀୟ ମହାସ୍ରୋତରେ ମିଶିବା କଷ୍ଟକର ହୋଇଛି ।

ତଥାପି 'ସିପାହି ବିଦ୍ରୋହ' ଯୁଗଠାରୁ ଆରମ୍ଭକରି ଆଜାଦହିନ୍ଦ୍ ଯୁଗ ପର୍ଯ୍ୟନ୍ତ ସବୁବେଳେ ବିପ୍ଳବୀମାନେ ସେନାବାହିନୀ ଉପରେ କେତେକାଂଶରେ ଭରସା

ରଖିଥା'ନ୍ତି । 'ଅଗ୍ନିଯୁଗ'ର ବିପ୍ଳବୀମାନେ ଠିକ୍ ସେଇଆ ଭାବୁଥିଲେ । ସେମାନଙ୍କର ବିଶ୍ୱାସ ଥିଲା ଯେ ସେନାବାହିନୀକୁ ମତେଇଦିଆଯାଇପାରିଲେ ଏବଂ ସେନାବାହିନୀର ଅସନ୍ତୋଷକୁ ସାଧାରଣ ଜନତାର ଅସନ୍ତୋଷ ସହ ମିଶାଇଦିଆଯାଇପାରିଲେ ସଶସ୍ତ୍ର ବିପ୍ଳବ ନିଶ୍ଚୟ ସଫଳହେବ । ୧୮୫୭ରେ ଯାହା ନାନାସାହେବ କରିଥିଲେ ବା ୧୯୪୩ରେ ଯାହା ସୁଭାଷ କରିଥିଲେ, ୧୯୧୫ରେ ରାସବିହାରୀ ସେୟା କରିବାକୁ ଉଦ୍ୟମ କରିଥିଲେ । କଠୋର ଶୃଙ୍ଖଳା ଓ ଅନୁଶାସନ ଭିତରେ ଚଳୁଥିବା ସୈନ୍ୟ ଶିବିର ଭିତରେ ବାହାର ଲୋକେ ଯାଇ ସରକାରୀ ବିରୋଧୀ ପ୍ରଚାରକରିବା କେବଳ କଷ୍ଟକର ନୁହେଁ, ବେଳେ ବେଳେ ତାହା ଦୁଃସାଧ ମଧ୍ୟ । କିନ୍ତୁ ଅସାଧ୍ୟ ସାଧକ ରାସବିହାରୀଙ୍କ ପକ୍ଷରେ ସବୁ ସାଧ୍ୟ । ଏହି ଅସାଧ୍ୟ ସାଧନ କରିବାକୁ ରାସବିହାରୀଙ୍କ ସହ ହାତ ମିଳେଇଲେ ସର୍ଦ୍ଦାର କର୍ତ୍ତାର ସିଂ । ସର୍ଦ୍ଦାରଜୀ ଆମେରିକାରେ ଭାରତୀୟ ବିପ୍ଳବୀଦଳ ସହ ମୂଳରୁ ସଂପୃକ୍ତ ଥିଲେ (ପରବର୍ତ୍ତୀ ଅଧ୍ୟାୟରେ ଅଧିକ ଦ୍ରଷ୍ଟବ୍ୟ) ଓ ଭାରତରେ ଗଣ ଅଭ୍ୟୁତ୍ଥାନରେ ସାହାଯ୍ୟ କରିବାକୁ ଭାରତକୁ ଆସିଥିଲେ । କାନାଡ଼ା ଇମିଗ୍ରେସନ ଆଇନ ଅନୁସାରେ ବିତାଡ଼ିତ ଚାରିହଜାର ଶିଖ ମଧ୍ୟ ଏହି ବିଦ୍ରୋହରେ ଯୋଗଦେଇଥିଲେ । ଏ ସଂପର୍କରେ ସବିଶେଷ ବିବରଣୀ ହେଲା– ଜାପାନର 'କୋମାଗାଟାମାରୁ' ନାମକ ଜାହାଜରେ ଚାରି ହଜାର ଶିଖ କାନାଡ଼ା ଯାଇଥିଲେ । ସେମାନେ ବ୍ରିଟିଶ୍ କଲମ୍ବିଆ (ପଶ୍ଚିମ କାନାଡ଼ା)ରେ ମୁଖ୍ୟତଃ ଚାକିରି ଓ ବସବାସ କରିବାକୁ ଯାଇଥିଲେ । କିନ୍ତୁ କାନାଡ଼ା ସରକାର ସେମାନଙ୍କୁ ସେଠାରେ ଓହ୍ଲାଇବାକୁ ଦେଲା ନାହିଁ । ସେମାନେ ସେହି ସମୁଦ୍ରରୁହିଁ ଫେରିଆସିବାକୁ ବାଧ୍ୟ ହେଲେ । ଇଂରେଜ ସରକାର ଏହାର କୌଣସି ପ୍ରତିକାର କଲାନାହିଁ । 'କୋମାଗାଟାମାରୁ' ଜାହାଜ କଲିକତାର ବଜ୍‌ବଜ୍‌ଠାରେ ପହଞ୍ଚିଲାବେଳକୁ ପରିସ୍ଥିତି ତୀବ୍ର ଆକାର ଧାରଣ କରିଥିଲା । କାରଣ ମାସ ମାସ ଧରି ସେମାନେ ଅନନ୍ତ ସମୁଦ୍ର ମଧ୍ୟରେ ନୈରାଶ୍ୟ, ଯନ୍ତ୍ରଣା ଓ ଅଭାବ ଅସୁବିଧାରେ ବିବ୍ରତ ହୋଇଯାଇଥିଲେ । ସରକାର ସେମାନଙ୍କ ଅସନ୍ତୋଷର ସୁରାକ ପାଇ ସେମାନଙ୍କୁ ଏକ ସ୍ୱତନ୍ତ୍ର ଗାଡ଼ିରେ ପଞ୍ଜାବକୁ ପଠାଇ ଦେବାର ଯୋଗାଡ଼କଲେ, କାରଣ ଅଶାନ୍ତ ସହର କଲିକତାରେ ସେମାନଙ୍କର ଉପସ୍ଥିତିକୁ ସରକାର ବିପଜ୍ଜନକ ମନେକରୁଥିଲେ । ଶିଖମାନେ ଏଭଳି ଦୁର୍ବ୍ୟବହାର ସହ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । କଲିକତା ରାସ୍ତାରେ ଅଶାନ୍ତ ଶିଖ ଓ ଜିଦ୍‌ଖୋର ସରକାରୀ ପୁଲିସ ଭିତରେ ସଶସ୍ତ୍ର ସଂଘର୍ଷ ହେଲା । କେତେକ ଶିଖ ନିହତହେଲେ । ଅନ୍ୟମାନଙ୍କୁ ବଳପୂର୍ବକ ପଂଜାବ ପଠାଇଦିଆଗଲା । ସ୍ୱଭାବତଃ ସେମାନେ ବିପ୍ଳବୀ ଶିବିରରେ ଯୋଗଦେଲେ । (The Sikhs were embittered by the treatment which they received both from Canadians and Indian authorities and were provoked to violence."(1) ବୋଲି ତାରାଚାନ୍ଦ ଲେଖିଛନ୍ତି (୧) The majority

1. Tarachand– The History of Freedom Movement in India Vol- III pg- 411

of these Sikhs returned expecting to find India in a state of acute unrest.(1) (ଭାରତରେ ତୀବ୍ର ବିକ୍ଷୋଭର ପରିସ୍ଥିତି ସୃଷ୍ଟି ହୋଇଥିବ ବୋଲି ଆଶାକରି ଅଧିକାଂଶ ଶିଖ ଭାରତକୁ ଫେରିଥିଲେ ।) ଏହି ବିକ୍ଷୁବ୍ଧ ଶିଖମାନେ ସିଧା ସଶସ୍ତ୍ର ବିପ୍ଳବରେ ଝାସଦେଲେ ।

ରାସବିହାରୀଙ୍କୁ ସାହାଯ୍ୟ କରିବାକୁ ପୁଣି ଆଗେଇଆସିଲେ ମହାରାଷ୍ଟ୍ରର ମହାନ ବିପ୍ଳବୀ ଭି.ଜି.-ପିଙ୍ଗଲେ, ଆସିଲେ ଶଚୀନ ସାନ୍ୟାଲ, ନରେନ ଦତ୍ତ, ବିଷେନ ସିଂ, ସୁରେନ ସିଂ, ହରନାମ ସିଂ, ଦାମୋଦର ସ୍ୱରୂପ, ବିନାୟକ ରାଓ କାପଲେ, ବିଭୂତି ହାଲଦାର, ପ୍ରିୟନାଥ, ବିଶ୍ୱନାଥ ପାଣ୍ଡେ, ଦିଲା ସିଂ, ମଙ୍ଗଲ ପାଣ୍ଡେ, ନଳିନୀ ମୁଖାର୍ଜୀ, ନରେନ ବାନାର୍ଜୀ, ଆଉଧବିହାରୀ, ଭାଇ ପରମାନନ୍ଦ, ଅନୁକୂଳ ଚକ୍ରବର୍ତ୍ତି ଓ ହରେରାମ । ଆଲାହାବାଦ, ବନାରସ, ରାମନଗର, ଜବଲପୁର, ଜଳନ୍ଧର, କୋହାଟର ୩୫ ନମ୍ବର ରେଜିମେଣ୍ଟ ଓ ଦିଲ୍ଲୀ କାଣ୍ଟନମେଣ୍ଟ ପ୍ରଭୃତି ବିଭିନ୍ନ ସୈନ୍ୟ ଛାଉଣୀରେ ବିଦ୍ରୋହ ବାର୍ତ୍ତା ପ୍ରଚାର କରିବାକୁ ବିଭିନ୍ନ ବିପ୍ଳବୀମାନେ ଦାୟିତ୍ୱ ନେଲେ । ବଂଗଳାର ବିଭିନ୍ନ ଛାଉଣୀର ଦାୟିତ୍ୱ ନେଲେ ବାଘା ଯତୀନ । ସର୍ଦ୍ଦାର କର୍ତ୍ତାର ସିଂ ଓ ପିଂଗଲେ, ଆମ୍ବାଲା, ରଓଲପିଣ୍ଡି, ମିରଟ କାଣ୍ଟନମେଣ୍ଟ ପ୍ରଭୃତି ବୁଲି ବୁଲି କାମ କରିବାର ଦାୟିତ୍ୱ ନେଲେ ।

ଏ ସବୁ କାର୍ଯ୍ୟର ତଦାରଖ ଓ ବିଶେଷ କେତେକ ସ୍ଥାନ ସହ ସଂପର୍କ ରଖିବା ପାଇଁ ଲାହୋରରେ ହେଡ୍‌କ୍ୱାର୍ଟର ଖୋଲା ଯିବାର ସ୍ଥିରହେଲା ଏବଂ ଏହି କେନ୍ଦ୍ର ଅଫିସର ଦାୟିତ୍ୱ ନେଲେ ରାସବିହାରୀ । କିନ୍ତୁ ଲାହୋରରେ ଏଥିପାଇଁ ଉପଯୁକ୍ତ ଅଫିସ ଘର ମିଳିବା ମୁସ୍କିଲ ହୋଇପଡ଼ିଲା, କାରଣ ତାହାର କେତେଦିନ ପୂର୍ବରୁ ଏକ ସରକାରୀ ନିର୍ଦ୍ଦେଶନାମା ଲାହୋରରେ ଜାରିହୋଇଥିଲା ଯେ ଲାହୋର ମ୍ୟୁନିସିପାଲିଟି ଅଞ୍ଚଳ ଭିତରେ କୌଣସି ଘର ମାଲିକ ଅବିବାହିତ ଭଡ଼ାଟିଆଙ୍କୁ ରଖିପାରିବେନାହିଁ । କେତେକ ଇତିହାସକାରଙ୍କର ମତରେ ଖାସ ରାସବିହାରୀଙ୍କୁ ଲାହୋରରେ ରଖାଇ ନ ଦେବାକୁହିଁ ଏହି ସରକାରୀ ନିର୍ଦ୍ଦେଶ ଜାରିହୋଇଥିଲା, ନଚେତ୍ ଏଭଳି ଚିତ୍ରିତ୍ର ନିୟମ କରିବାର କିଛି କାରଣ ନ ଥିଲା । ରାସବିହାରୀ ଯେ ଆଜୀବନ ଅବିବାହିତ ରହିବେ ବୋଲି ପ୍ରତିଜ୍ଞା କରିଥିଲେ ଅନ୍ତତଃ ଦେଶକୁ ସ୍ୱାଧୀନ ନ କରିବା ପର୍ଯ୍ୟନ୍ତ ସେ ଅବିବାହିତ ରହିବେ ବୋଲି ଯେ ପ୍ରତିଜ୍ଞା କରିଥିଲେ, ଏହା ପୁଲିସକୁ ଅବିଦିତ ନ ଥିଲା ।

ଯାହାହେଉ "ଦେଶ ପାଇଁ ଅବିବାହିତ ରହିବାକୁ ପଣ କରିଥିବା" ରାସବିହାରୀଙ୍କୁ କିନ୍ତୁ ପଣଭଙ୍ଗ କରିବାକୁ ପଡ଼ିଲା ନାହିଁ । ସଶସ୍ତ୍ର ବିପ୍ଳବର ରୋମାଞ୍ଚକର ଇତିହାସରେ ଆଉ ଏକ ରୋମାଞ୍ଚକର ପୃଷ୍ଠା ଯୋଡ଼ାହେଲା । ବିପ୍ଳବୀ ରାମଚରଣ ଦାସଙ୍କ ଧର୍ମପତ୍ନୀ ଏହି ଦୁଃସାଧ କାର୍ଯ୍ୟ ପାଇଁ ଆଗେଇଆସିଲେ ସ୍ୱାମୀଙ୍କର ନିର୍ଦ୍ଦେଶରେ ରାସବିହାରୀଙ୍କର

1. Report of the Sedition Committee.

ପତ୍ନୀର ଭୂମିକାରେ । ଅବିସ୍ମରଣୀୟ ଏହି ଆତ୍ମତ୍ୟାଗ ! କୋଟି କୋଟି ପ୍ରଣାମ ସେହି ଅଜ୍ଞାତ ଅଶ୍ରୁତ ମହିଳାଙ୍କୁ । ରାସବିହାରୀଙ୍କୁ ଘରଭଡ଼ା ମିଳିଲା ଏବଂ କାମ ଜୋରସୋରରେ ଚାଲିଲା । ସରକାରର ଛାତିଉପରେ ବସି ରାସବିହାରୀ କାମ ଚଳାଇଲେ । ଖାଲି ଭାରତ ନୁହେଁ, ସୁଦୂର ବର୍ମା, ମାଲୟ, ଶ୍ୟାମ ଓ ସିଙ୍ଗାପୁରରେ ସାମରିକ ବାହିନୀ ଭିତରେ ବିଦ୍ରୋହ ବାର୍ତ୍ତା ପ୍ରଚାରିତ ହେଲା ।

ଦେଶ ଭିତରେ ଆୟୋଜନ ଚାଲିଥିବା ଏହି ବିପ୍ଳବକୁ ଅଧିକ ପ୍ରାଣବନ୍ତ କରିବାକୁ ବିଦେଶରେ ମଧ୍ୟ ବୈପ୍ଳବିକ ପ୍ରଚେଷ୍ଟା ଅବ୍ୟାହତ ଥିଲା । ରାଜା ମହେନ୍ଦ୍ର ପ୍ରତାପ, ଅଜିତ ସିଂ, ସୁଫି ଆମ୍ବାପ୍ରସାଦ, ବରକତଉଲ୍ଲା ପ୍ରଭୃତି ବର୍ଲିନରେ ସକ୍ରିୟ ହେଲେ । ରାଜା ମହେନ୍ଦ୍ର ପ୍ରତାପଙ୍କ ନେତୃତ୍ୱରେ କାବୁଲରେ ଭାରତର ଅସ୍ଥାୟୀ ବିପ୍ଳବୀ ସରକାର ଗଠିତହେଲା । ରାଜା ଏହାର ରାଷ୍ଟ୍ରପତି ଓ ବରକତଉଲ୍ଲା ଏହାର ପ୍ରଧାନମନ୍ତ୍ରୀରୂପେ ମନୋନୀତ ହୋଇଥିଲେ । ଏହି ଅସ୍ଥାୟୀ ବିପ୍ଳବୀ ସରକାରକୁ ଜର୍ମାନୀ, ଇଟାଲୀ, ଅଷ୍ଟ୍ରିୟା ଏବଂ ତୁର୍କି ପ୍ରଭୃତି ସ୍ୱାଧୀନ ଦେଶମାନେ କୂଟନୈତିକ ସ୍ୱୀକୃତି ଦେଇଥିଲେ ।

ବଙ୍ଗଳା ଦାୟିତ୍ୱରେ ଥିବା ବିପ୍ଳବୀମାନେ ସ୍ଥିରକରିଥିଲେ କଲିକତା ମୁଖ୍ୟ ସାମରିକ ଛାଉଣୀ ଫୋର୍ଟ ଉଇଲିୟମକୁ ଦଖଲକରାଯିବ ଏବଂ ସେଥିପାଇଁ କଲିକତାରେ ଥିବା ସୈନ୍ୟ ସଂଖ୍ୟା ଅନୁପାତରେ ଯଥେଷ୍ଟ ସଂଖ୍ୟକ ବିପ୍ଳବୀଙ୍କୁ ପ୍ରସ୍ତୁତ ରଖାଗଲା । (They considered that they were numerically strong enough to deal with the troops in Bengal but they feared reinforcement from outside. With this idea in view they decided to hold up three main Railways into Bengal by blowing up principal bridges.)(1) (ବଙ୍ଗଳାରେ ଥିବା ସୈନ୍ୟ ଶକ୍ତି ଅପେକ୍ଷା ସେମାନଙ୍କ (ବିପ୍ଳବୀଙ୍କ) ସଂଖ୍ୟା ଅଧିକ ହେବ ବୋଲି ସେମାନେ ହିସାବକରିଥିଲେ, କିନ୍ତୁ ବାହାରୁ ଅଧିକସଂଖ୍ୟକ ସୈନ୍ୟ ଆସିବାର ଆଶଙ୍କା କରି ସେମାନେ ବଙ୍ଗଳା ସହ ସଂଯୁକ୍ତ ତିନିଗୋଟି ପ୍ରଧାନ ରେଳଲାଇନକୁ ଅଚଳ କରିଦେବା ପାଇଁ ବଡ଼ ବଡ଼ ରେଳପୋଲଗୁଡ଼ିକୁ ଉଡ଼ାଇଦେବାକୁ ସ୍ଥିରକରିଥିଲେ ।)

ନିଜେ ବାଘା ଯତୀନ ବାଲେଶ୍ୱରଠାରେ ବି. ଏନ୍. ଆର୍. ଲାଇନ୍, ଭୋଳାନାଥ ଚାଟାର୍ଜି ଚକ୍ରଧରପୁରଠାରେ ମେନ୍ ଲାଇନ ଏବଂ ଶତୀଶ ଚକ୍ରବର୍ତ୍ତୀ ଇ. ଆଇ. ଆର. ଲାଇନର ମୁଖ୍ୟ ପୋଲ ଉଡ଼ାଇବାର ଦାୟିତ୍ୱରେ ରହିଲେ । ଫୋର୍ଟ ଉଇଲିୟମ୍ ଦଖଲ ଅଭିଯାନର ନେତୃତ୍ୱ ନେବାର ଦାୟିତ୍ୱ ନେଲେ ବିପ୍ଳବୀ ବିପିନ ଗାଙ୍ଗୁଲି । ପୂର୍ବ ବଙ୍ଗରେ ଥିବା ବିଭିନ୍ନ ଜିଲା ହେଡ଼କ୍ୱାର୍ଟର ଦଖଲ କରିବାର ଯୋଜନା କାମ ନରେନ ଘୋଷ ଚୌଧୁରୀ ମୁଣ୍ଡକୁ ନେଲେ । କିନ୍ତୁ ବିପ୍ଳବୀ ଯଦୁ ଗୋପାଳ ମୁଖାର୍ଜିଙ୍କ ଉପରେ ରହିଲା ଏକ ଗୁରୁତ୍ୱପୂର୍ଣ୍ଣ କାମର ବୋଝ । ତାହା ହେଉଛି– 'ମେଭେରିକ୍' ଜାହାଜରୁ ଅସ୍ତ୍ର ଶସ୍ତ୍ର ଖଲାସକରି ତାକୁ ସବୁଆଡ଼କୁ ପଠାଇବାର ଦାୟିତ୍ୱ ।

1. Report of the Sedition Committee.

ଏହିଭଳି ଭାବରେ ସିଙ୍ଗାପୁରଠାରୁ ପଞ୍ଜାବ ପର୍ଯ୍ୟନ୍ତ 'ସଂପୂର୍ଣ୍ଣ ବିଦ୍ରୋହ'ର ବ୍ୟବସ୍ଥା ପକ୍‌କା ହୋଇଗଲା । କେବଳ ଅପେକ୍ଷା ରହିଲା– 'ମେଭେରିକ୍' ଜାପାନରେ ପହଞ୍ଚିବାକୁ । 'ଏମ. ଏନ. ରାୟ ହ୍ୟାରି ଏଣ୍ଡ ସନ୍ସ'କୁ ଟେଲିଗ୍ରାମ୍‌ରେ ଜଣାଇଲେ ଯେ ମେଭେରିକ୍ ଜାପାନରେ ପହଞ୍ଚିଯାଇଛି ଏବଂ ଦିନେ ଦୁଇଦିନ ଭିତରେ ସିଙ୍ଗାପୁରରେ ପହଞ୍ଚିବ । କେତେକ ଅନ୍ୟାନ୍ୟ ପଣ୍ୟ ସିଙ୍ଗାପୁରରେ ଖଲାସ କରି ତାହା ଯଥାସମୟରେ ପୂର୍ବବଙ୍ଗ ଉପକୂଳରେ ପହଂଚିବ । ଟେଲିଗ୍ରାମ୍ ମିଳିବା ସଙ୍ଗେ ସଙ୍ଗେ ସିଂଗାପୁରଂ ଓ ରାୟମଂଗଲ ଘାଟକୁ ଲୋକ ପଠାଇଦିଆଗଲା । ସେଠାରୁ ଫେରନ୍ତା ଖବର ମଧ୍ୟ ପହଂଚିଗଲା ଯେ ମେଭେରିକ୍ ନିରାପଦରେ ପହଂଚିଯାଇଛି । ସବୁ ଠିକ୍ କେବଳ ସେନାପତିଙ୍କ 'କମାଣ୍ଡ'କୁ ଅପେକ୍ଷା ! ଏହା ହେଉଛି ଫେବୃୟାରୀ ୧୫ ତାରିଖ କଥା । ସେନାପତି ରାସବିହାରୀ ହିସାବ କଲେ ''ଅନ୍ତତଃ ଏକ ସପ୍ତାହ ଭିତରେ ଅସ୍ତ୍ରଶସ୍ତ୍ର ବଣ୍ଟନ କାମ ଶେଷକରି ଅଭିଯାନ ଆରମ୍ଭ କରିନଦେଲେ, କେତେବେଳେ କ'ଣ ଘଟିବ କିଏ ଜାଣେ ? ସରକାରୀ ମହଲ କୌଣସି ସୁରାକ ପାଇଲେ ଯେ ଏହା ଭଣ୍ଡୁର ହୋଇଯିବ ଏହା ନିଶ୍ଚିତ । ସୁତରାଂ ଅଧିକ ବିଳମ୍ବ ନ କରି ଯଥାଶୀଘ୍ର ଦିନ ସ୍ଥିର କରିବାକୁ ପଡ଼ିବ ।''

ଜାହାଜରୁ ମାଲ ଖଲାସ ହୋଇ ଖୁବ୍ ବେଶୀରେ ଯେପରି ଚାରିଦିନ ଭିତରେ ତାହା ସମସ୍ତ ବିପ୍ଳବ କେନ୍ଦ୍ରରେ ପହଂଚିବ, ସେ ବ୍ୟବସ୍ଥା ପକ୍‌କା କରିଦେଇ ଫେବୃୟାରୀ ୨୨ ତାରିଖକୁ ଏହି ଐତିହାସିକ ଅଭିଯାନ ପାଇଁ ଦିନ ସ୍ଥିର କଲେ କମାଣ୍ଡର ରାସବିହାରୀ । ସମସ୍ତେ ସବୁଆଡ଼େ ପ୍ରସ୍ତୁତ ରୁହ, ୨୧ ତାରିଖ ରାତି ପାହିବା ସଙ୍ଗେ ସଙ୍ଗେ ଚାରିଆଡ଼େ ଚଢ଼ାଉ ଆରମ୍ଭ କରିଦିଅ । '' ଇ.ଏସ୍. ରେଡ଼ି, ୱାନ୍– ଟୁ –''

X X X X X

କିନ୍ତୁ ହାୟରେ ଦୁର୍ଭାଗ୍ୟ ! ଚରମ ଦୁର୍ଭାଗ୍ୟ ! ଦୁଃଖିନୀ ଭାରତମାତା ପ୍ରତି ସତେ ଯେମିତି ଭାଗ୍ୟଦେବୀ ଅପ୍ରସନ୍ନା । ସତେ ଯେମିତି ଦୈବ ଓ ପୁରୁଷକାର ଭିତରେ ଲାଗିଥିବା ଏ ଲଢ଼େଇରେ ସଶସ୍ତ୍ର ବିପ୍ଳବୀକୁ ଉପହାସ କରି ଦୈବ କହୁଛି– ''ଆହୁରି ବହୁ ପଥ ଯିବାକୁ ହେବ ତୋତେ ! ଏ ତ ଆରମ୍ଭ ମାତ୍ର, ଏ ତ ଗଣବିପ୍ଳବର ଶୁଭାରମ୍ଭ ମାତ୍ର ! ଆହୁରି ଅନେକ ରକ୍ତ, ଅନେକ ଜୀବନ, ଅନେକ ଦୁଃଖପୂର୍ଣ୍ଣ ରାତ୍ରି, ଦୁର୍ଯୋଗପୂର୍ଣ୍ଣ ଅବସ୍ଥାର ସମ୍ମୁଖୀନ ହେଲେ ଯାଇ ମା' ତୋ'ର ମୁକ୍ତି ପାଇବ । ବହୁତ ଦୂରରେ ଅଛି ବଂଧୁ ଭାରତର ସ୍ୱାଧୀନତା, ସଶସ୍ତ୍ର ବିପ୍ଳବର ବିଜୟ ଭେରୀ ବାଜିବାକୁ ଆହୁରି ଡେରି ଅଛି ।''

ସେନାପତିଙ୍କୁ 'ୱ୍ୟାନ୍-ଟୁ-ପରେ ଥ୍ରି' ଅର୍ଡ଼ର ଦେବାକୁ ସୁଯୋଗ ମିଳିଲା ନାହିଁ । କୃପାଲ ସିଂ ଓ ନବାବ ଖାଁ ନାମକ ଦୁଇଜଣ ବିପ୍ଳବୀ ଖସିଯାଇ ପୁଲିସ ଆଗରେ ସବୁ କଥା ଖୋଲିଦେଲେ ୨୨ ତାରିଖର ୪ ଦିନ ଆଗରୁ । 'ମେଭେରିକ୍' ଜାହାଜଠାରୁ

ଆରମ୍ଭକରି ରାମଶରଣ ଦାସଙ୍କ ପତ୍ନୀଙ୍କ ଖବର ପର୍ଯ୍ୟନ୍ତ ଯେମିତି କିଛି ଅଛପା ରହିଲା ନାହିଁ । ବିଶେଷତଃ ୨୨ । ୨ରେ ହୋଇଥିବା 'ବ୍ୟାପକ ବିଦ୍ରୋହ'ର ଯୋଜନା ବିଷୟରେ ସବୁକଥା ପୁଲିସ କାନକୁ ଚାଲିଆସିଲା । ସବୁ ଓଲଟପାଲଟ ହୋଇଗଲା । ଦୁଇଟି ନିମକହାରାମ କୁକୁରଙ୍କ ବିଶ୍ୱାସଘାତକତା ଫଳରେ ଗୋଟିଏ ମୁହୂର୍ତ୍ତରେ ଭାରତ ଇତିହାସର ଗତିଧାରା ଅନ୍ୟଆଡ଼କୁ ବହିଗଲା; କିଛିକ୍ଷଣ ପାଇଁ ସ୍ତବ୍ଧ ହୋଇଗଲା । ଏପରିକି ହୁଏତ ପଛେଇଗଲା ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମର ସାଫଲ୍ୟ ! 'ଅଗ୍ନିଯୁଗ'ର ଅଗ୍ନିକ୍ଷରା ଇତିହାସରେ କଳାଦାଗଟିଏ ଲାଗିଗଲା ।

ସରକାର ଆତଙ୍କିତ, ବିବ୍ରତ ଓ ବିଚଳିତ ହୋଇଗଲା । ହେବାର କଥା । ରଡ୍‌ଡ଼ା କମ୍ପାନୀର ମାତ୍ର ୫୦ ଖଣ୍ଡ ପିସ୍ତଲର ମାଡ଼ରେ ଯେଉଁ ସରକାର ତ୍ରସ୍ତ ହୋଇଯାଇଅଛି, ଜର୍ମାନୀର ୩୦ ହଜାର ରାଇଫେଲରେ ଯେ ତା'ର ସତ୍ତା ରହିବ ନାହିଁ, ପ୍ରାୟ ନିଃସନ୍ଦେହ ଥିଲା । ଏହା ବ୍ୟାପକ ବିଦ୍ରୋହର ଆୟୋଜନ ସହ ସେନାବାହିନୀ ବିଦ୍ରୋହ ଯେ ବ୍ରିଟିଶ୍ ସିଂହାସନକୁ ଭୂଲୁଣ୍ଠିତ କରିଦେବ, ଏଥିରେ ସନ୍ଦେହର ଅବକାଶ ନ ଥିଲା ।

ଫଳରେ ଆରମ୍ଭହୋଇଗଲା ବ୍ୟାପକ ଧରପଗଡ଼ ସିଙ୍ଗାପୁରଠାରୁ ପଂଜାବ ପର୍ଯ୍ୟନ୍ତ । ରାସବିହାରୀ ଏ ଖବର ପାଇ ଅବଶ୍ୟ ଅଭିଯାନ ତାରିଖ ଦୁଇଦିନ ଆଗେଇ ଦେବାକୁ ସ୍ଥିରକରିଥିଲେ, କିନ୍ତୁ କେଉଁଥିରେ କିଛି ହୋଇପାରିଲା ନାହିଁ । 'ମେଭେରିକ୍' ଜାହାଜକୁ ବାଟରୁ ଅଟକାଇ ଦିଆଗଲା । ଉତ୍ତର ଭାରତର ବିଭିନ୍ନ ସୈନ୍ୟ ଛାଉଣୀ ଉପରେ ଚଢ଼ାଉ କରି ବିପ୍ଳବୀମାନଙ୍କୁ କାବୁ କରି ଦିଆଗଲା । ଫିରୋଜପୁର କାଣ୍ଟନମେଣ୍ଟରେ କିନ୍ତୁ ବିପ୍ଳବୀ ସେନାବାହିନୀ ସହ ସରକାରୀ ଅନୁଗତ ସୈନ୍ୟଙ୍କର ରୀତିମତ ଖଣ୍ଡଯୁଦ୍ଧ ହେଲା । ୫୦ ଜଣ ବିପ୍ଳବୀ ସୈନ୍ୟ ସହିଦ ହେଲେ । ଅନ୍ୟମାନେ ହେଲେ ଗିରଫ । ଅସ୍ତ୍ରଶସ୍ତ୍ର ଜବତ ହେଲା; କିନ୍ତୁ ରାସବିହାରୀ ଓ ପିଙ୍ଗଲେ ଖସି ପଳାଇ ଗଲେ କାଶୀ । ତତ୍‌କାଳୀନ ବ୍ରିଟିଶ୍ ସେନାପତି ମାଇକେଲ୍ ଓ ଡାୟାର (ଜାଲିଆନାୱାଲାବାଗ ଅପରାଧୀ) ଲେଖିଛି— Thirteen of the most dangerous revolutionaries were captured with their paraphernalias of conspiracy- arms, bombs, bomb-making materials and four rebel flags. Unfortunately Rasbehari and Pingle were not among those who were captured." (ଷଡ଼ଯନ୍ତ୍ରର ସରଂଜାମ ଯଥା— ଅସ୍ତ୍ରଶସ୍ତ୍ର, ବୋମା, ବୋମାର ମାଲମସଲା ଏବଂ ଚାରିଗୋଟି ବିଦ୍ରୋହୀ ପତାକା ସହ ୧୩ ଜଣ ସର୍ବାଧିକ ବିପଜ୍ଜନକ ବିପ୍ଳବୀଙ୍କୁ ଗିରଫକରାଗଲା । ଦୁର୍ଭାଗ୍ୟର କଥା ଗିରଫ ହୋଇଥିବା ବ୍ୟକ୍ତିମାନଙ୍କ ଭିତରେ ରାସବିହାରୀ ଓ ପିଙ୍ଗଲେ ନ ଥିଲେ ।) ସେତେବେଳେ ବିପ୍ଳବୀମାନଙ୍କ ଭିତରେ ଶୀଘ୍ର ବାର୍ତ୍ତା ବିନିମୟର କୌଣସି ସୁବିଧା ନ ଥିଲା । ଡାକବିଭାଗ ସରକାର ଅଧୀନରେ ଥିବାରୁ ବିପ୍ଳବୀମାନଙ୍କ କାମରେ ଆସୁ ନ ଥିଲା । ସୁତରାଂ ମଣିଷ ବାର୍ତ୍ତାବହ ଛଡ଼ା ଅନ୍ୟ ମାଧ୍ୟମ ନ ଥିଲା । କଲିକତାର ବିପ୍ଳବୀମାନେ ଅପେକ୍ଷା କରିଥିଲେ ପଞ୍ଜାବ

ମେଲ୍‌କୁ । ଅର୍ଥାତ ୨୨ ।୨ର 'ପଂଜାବ ମେଲ' ଯଦି କଲିକତାରେ ନ ପହଞ୍ଚେ ତା'ର ଅର୍ଥ ହେବ ଯେ ପଂଜାବରେ ବିପ୍ଳବ ଆରମ୍ଭହୋଇଯାଇଛି ଓ ରେଳ ଲାଇନ ଉଡ଼ି ଯାଇଛି । କିନ୍ତୁ ସେଦିନ 'ପଂଜାବ ମେଲ୍' ଯଥାସମୟରେ କଲିକତାରେ ପହଞ୍ଚିଲା । ସୁତରାଂ ବିପ୍ଳବ ଆପାତତଃ ବ୍ୟର୍ଥ ହେଲା ବୋଲି କଲିକତା ବିପ୍ଳବୀ ଶିବିର ଜାଣି ନେଲା । କିନ୍ତୁ ଏ ଖବର ସିଙ୍ଗାପୁରରେ ପହଞ୍ଚିବାକୁ ସାତ ଦିନ ସମୟ ଲାଗିଲା । ଫଳରେ ପୂର୍ବ ନିର୍ଦ୍ଧାରିତ ପ୍ରୋଗ୍ରାମ୍ ଅନୁସାରେ ଫେବୃୟାରୀ ୨୨ରେ ସେଠାରେ ବିପ୍ଳବ ଆରମ୍ଭ ହୋଇଗଲା । ସେ ବିଦ୍ରୋହ ଅଗ୍ନିଯୁଗର ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ! ଚିର ଅମ୍ଳାନ ! ଚିର ଭାସ୍ୱର । ରାସବିହାରୀ ଓ ବାଘା ଯତୀନଙ୍କ ଯୋଜନା ଶତକଡ଼ା ଶହେ ସଫଳ ହେଲା ସିଙ୍ଗାପୁରରେ । ବିଦ୍ରୋହୀ ସୈନ୍ୟମାନେ ସେମାନଙ୍କର ଇଂରେଜୀ ହାକିମ ଓ ସେନାପତିମାନଙ୍କୁ ଅତର୍କିତ ବନ୍ଦୀକରି 'ସିଙ୍ଗାପୁରର ସ୍ୱାଧୀନତା ଘୋଷଣା କଲେ;' ସାତଦିନ ପର୍ଯ୍ୟନ୍ତ ସିଙ୍ଗାପୁର 'ସ୍ୱାଧୀନ' ରହିଲା । କୋଠାବାଡ଼ି ସୈନ୍ୟ ଛାଉଣୀ ସର୍ବତ୍ର ବ୍ରିଟିଶ୍ ୟୁନିୟନ ଜ୍ୟାକ ବଦଳରେ ସ୍ୱାଧୀନ ଭାରତର ପତାକା ଉଡ଼ିଲା । 'ବନ୍ଦେ ମାତରମ୍', 'ସ୍ୱାଧୀନ ଭାରତକୀ ଜୟ' ଧ୍ୱନିରେ ବିରାଟ ସିଙ୍ଗାପୁର ବନ୍ଦରର ଆକାଶ ଭାରାକ୍ରାନ୍ତ ହୋଇପଡ଼ିଲା । ରାସ୍ତାଘାଟ, ଗଳିକନ୍ଦିରେ କି ଉତ୍ସାହ ! କି ଉନ୍ମାଦନା ! ପରାଧୀନ ଦେଶର ନାଗରିକ ସ୍ୱାଧୀନତାର ସ୍ୱାଦ ଆସ୍ୱାଦନ କରି ସତେ ଯେମିତି ଉନ୍ମାଦ ହୋଇଗଲା ।' ଏହି ସ୍ୱାଧୀନତା ପ୍ରାପ୍ତି ପାଇଁ ଗୁଳି ଚଳାଇବାର ଆବଶ୍ୟକତା ରହିଲା ନାହିଁ । ଗୋରା ସୈନ୍ୟ, ସେନାପତି, ସର୍ଜେଣ୍ଟ, ସମସ୍ତେ ଯେମିତି 'ବନ୍ଦେ ମାତରମ୍' ଧ୍ୱନିରେ କାବୁହୋଇଗଲେ । ଆଉଥରେ ପ୍ରମାଣିତ ହୋଇଗଲା 'ବ୍ରିଟିଶ୍ ସିଂହ— କାଗଜ ସିଂହ, ଜୀବନ୍ତ ପଶୁରାଜ ସିଂହ ନୁହେଁ ।' ସିଙ୍ଗାପୁର ସତକୁ ସତ ସ୍ୱାଧୀନ ହେଲା । ବିରାଟ ଇଂରେଜ ସାମ୍ରାଜ୍ୟ ଭିତରେ ସିଙ୍ଗାପୁର ଯେତେ କ୍ଷୁଦ୍ର ହେଲେ ମଧ 'ସିଙ୍ଗାପୁରର ସ୍ୱାଧୀନତା ପ୍ରମାଣିତ କରିଦେଲା ଯେ ଇଂରେଜ ଅଜେୟ ନୁହେଁ । ପୃଥିବୀର କୌଣସି ସାମ୍ରାଜ୍ୟ ବା କୌଣସି ଶାସକ— ସେ ଯେତେ ଶକ୍ତିଶାଳୀ ହେଉନା କାହିଁକି- ସମ୍ମିଳିତ ଜନଶକ୍ତି ପାଖରେ ଅଜେୟ ନୁହେଁ । ଜାଗ୍ରତ ଗଣଚେତନାର ନିର୍ମମ ପ୍ରହାରରେ ମହା ମହା ଶକ୍ତିଧର ମଧ ଭୂଲୁଣ୍ଠିତ ହୁଏ— ଏହା ଇତିହାସରେ ବାରମ୍ବାର ପ୍ରମାଣିତ ହୋଇଅଛି ! 'ସିଙ୍ଗାପୁରର ସ୍ୱାଧୀନତା' ସେହି ଐତିହାସିକ ସତ୍ୟକୁ ପୁଣିଥରେ ପ୍ରତିପାଦିତ କରିଦେଲା । ସିଙ୍ଗାପୁରରେ ବନ୍ଦୀ ହୋଇ ରହିଥିବା ଜର୍ମାନୀ ଯୁଦ୍ଧବନ୍ଦୀଙ୍କୁ ଖଲାସକରିଦିଆଗଲା । ସିଙ୍ଗାପୁର ସୈନ୍ୟ ଛାଉଣୀରେ ଥିବା ଗୋରା ସେନାପତି ଲେଫ୍‌ଟନାଣ୍ଟ ଜେନେରାଲ ସାର୍ ଜର୍ଜ ମାକସନ୍ ଲେଖିଛନ୍ତି ପ୍ରଥମେ ବିପର୍ଯ୍ୟସ୍ତ ଅବସ୍ଥାରେ ଥିବା ବିଦ୍ରୋହୀ ସୈନ୍ୟମାନେ ତିନିଦଳରେ ବିଭକ୍ତ ହୋଇ— ଗୋଟିଏ ଦଳ 'ଜର୍ମାନୀ ଯୁଦ୍ଧବନ୍ଦୀଶିବିର'ର ଜଗୁଆଳିମାନଙ୍କୁ କାବୁକରି ସେମାନଙ୍କୁ ଖଲାସକରିଦେବାକୁ, ଆଉ ଗୋଟିଏ ଦଳ

କଲୋନେଲଙ୍କ ବାସଭବନ ଆକ୍ରମଣକରିବାକୁ ଏବଂ ତୃତୀୟ ଦଳଟି ସିଙ୍ଗାପୁର ରାସ୍ତାଦେଇ ଆସୁଥିବା ସମ୍ଭାବ୍ୟ ସାହାଯ୍ୟର ପଥରୋଧକରିବାକୁ ଲାଗିଗଲେ । ଆଉ କେତେକ ଛୋଟ ଛୋଟ ଦଳରେ ବିଭକ୍ତହୋଇ ରାସ୍ତାରେ ଥିବା ୟୁରୋପୀୟମାନଙ୍କୁ ହତ୍ୟା କରିବାକୁ ବାହାରିପଡ଼ିଲେ ।

ତେଣେ ଭାରତରେ ପିଙ୍ଗଲେ ବି ଆଶା ଛାଡ଼ି ନ ଥିଲେ । ଲାହୋର ସେନାନିବାସରେ ସେ ଯେଉଁ ପରିଶ୍ରମ କରିଥିଲେ, ତାକୁ ଏଭଳି ଭାବରେ ବ୍ୟର୍ଥ ହେବାକୁ ଦେବା ତାଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ଆଉ ଥରେ ଚେଷ୍ଟାକରିବି ବୋଲି ଏକ ଭୁଲ ପରିକଳ୍ପନା ନେଇ ସେ ପୁଣି ଥରେ ଚାଲିଲେ ସେନାଛାଉଣୀଆଡ଼େ । ରାସବିହାରୀଙ୍କୁ ତାହା ଅଜ୍ଞାତ ଥିଲା । ସେ ଜାଣିଥିଲେ ଏହାର ବିରୋଧ କରିଥା'ନ୍ତେ । କାରଣ ଏହା ଏକ ଆତ୍ମଘାତୀ ନୀତି । ତାଙ୍କ ବିଚାରରେ ଏହା ଯୁଦ୍ଧର କୌଶଳ ନୁହେଁ, ଷ୍ଟ୍ରାଟେଜି ନୁହେଁ । ଆଗେଇଯିବା ଯେମିତି ଯୁଦ୍ଧର ମୂଳମନ୍ତ୍ର, ଆବଶ୍ୟକ ସ୍ଥଳେ 'ପଛେଇଆସିବା' ମଧ୍ୟ ହେଉଛି ଏକ ସମରନୀତି । ରାସବିହାରୀ ଠିକ୍ ବୁଝିଥିଲେ - ବିପ୍ଳବ ଆପାତତଃ ବ୍ୟର୍ଥ ହୋଇଛି । ସମଗ୍ର ବିପ୍ଳବ ଯୋଜନା ପୁଲିସ ହାତରେ ପଡ଼ିଯାଇଥିବାରୁ ଆଉ କିଛିଦିନ ଅପେକ୍ଷା କରିବାକୁ ପଡ଼ିବ ଓ ଅନ୍ୟ ଏକ ନିରାପଦ ସାମ୍ମୁଖ୍ୟରେ ଶତ୍ରୁର ମୁକାବିଲା କରିବାକୁ ହେବ । ଅଧିକାଂଶ ବିପ୍ଳବୀଙ୍କର ନାମଧାମ ପୁଲିସ ଜାଣିସାରିଥିବାରୁ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ସାବଧାନ ନ ହେଲେ ସମସ୍ତେ ବନ୍ଦୀହେବେ । ସୁତରାଂ ବର୍ତ୍ତମାନ ଧୀରସ୍ଥିର ଭାବରେ ପରିସ୍ଥିତିର ପର୍ଯ୍ୟାଲୋଚନା କରିବା ସମସ୍ତଙ୍କର କର୍ତ୍ତବ୍ୟ; ବିଶେଷତଃ 'ମାଭେରିକ୍' ଧରାପଡ଼ିଯାଇଥିବାରୁ ଆଉ ବର୍ତ୍ତମାନ ଆଗେଇବା ବିଜ୍ଞତା ହେବ ନାହିଁ ।

ରାସବିହାରୀଙ୍କ ଆଶଙ୍କା ସତ୍ୟ ହେଲା । ପିଙ୍ଗଲେ ପୁଲିସର ସତର୍କ ଦୃଷ୍ଟିକୁ ଆଉ ଫାଙ୍କିଦେଇ ପାରିଲେ ନାହିଁ । 'ଅଗ୍ନିଯୁଗର' ଏକ ଦୁର୍ଦ୍ଧର୍ଷ ବିପ୍ଳବୀ ସୈନିକ ପିଙ୍ଗଲେ ପୁଲିସ ହାତରେ ବନ୍ଦୀହେଲେ ହାତରେ ବୋମାଧରି । ଆରମ୍ଭ ହେଲା ଲାହୋର ଷଡ଼ଯନ୍ତ୍ର ମକଦ୍ଦମା । ବିଚାର ପ୍ରହସନ ଖୁବ୍ ଶୀଘ୍ର ଶେଷହେଲା । ଜଣଙ୍କୁ ଫାଶୀ ଓ ୨୬ ଜଣଙ୍କୁ ଦିଆଗଲା ଯାବଜ୍ଜୀବନ ଦ୍ୱୀପାନ୍ତର । ସ୍ପେସାଲ କୋର୍ଟର ଏହି ରାୟ ବିରୋଧରେ ଦିଲ୍ଲୀ ଚିଫ୍ କୋର୍ଟରେ ଅପିଲ କରାଗଲା । ସେଠାରେ ୭ଜଣଙ୍କୁ ଫାଶୀ ଦିଆଗଲା । ସରକାରର ଦୃଢ଼ବିଶ୍ୱାସ ଥିଲା ଯେ 'ଅନ୍ତତଃ କେତେଜଣଙ୍କୁ ଫାଶୀରେ ଝୁଲାଇ ନ ଦେଲେ ଭାରତର ସଶସ୍ତ୍ର ବିପ୍ଳବ ସ୍ତବ୍ଧ ହେବ ନାହିଁ ।' କିନ୍ତୁ ଅପରିଣାମଦର୍ଶୀ ସରକାରକୁ ଏତିକି ବି ମାଲୁମ ନ ଥିଲା ଯେ ବିଶ୍ୱଇତିହାସରେ କେଉଁଠାରେ କେବେହେଲେ ପାଶବିକ ଅତ୍ୟାଚାରରେ ସ୍ୱାଧୀନତା ସଂଗ୍ରାମ ଦବିଯାଏ ନାହିଁ, ବରଂ ତାହା ଶତଗୁଣରେ ବଳୀୟାନ୍ ହୋଇ ଦୁର୍ବାର ଗତିରେ ଆଗେଇଚାଲେ । ସହିଦର ଆତ୍ମତ୍ୟାଗରେ ଅଧିକ ଭାସ୍ୱର ହୋଇଉଠେ ସ୍ୱାଧୀନତା ସଂଗ୍ରାମର ଇତିହାସ ।

ଫାଶୀ ପାଇଥିବା ସହିଦମାନଙ୍କ ଭିତରେ ଥିଲେ କର୍ତ୍ତାର ସିଂ, ପିଙ୍ଗଲେ, ସୁରାଇନ ସିଂହ (୧), ସୁରାଇନ ସିଂହ (୨), ହରିନାମ ସିଂ, ଜଗତ ସିଂ ଓ ବଖସିଲ ସିଂହ। ତଥାପି ବ୍ୟବସ୍ଥା ଥିଲା ଯେ ଯେଉଁମାନେ ସରକାରଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିବେ ସେମାନଙ୍କ ଫାଶୀ ଦଣ୍ଡକୁ କମାଇ ଦ୍ୱୀପାନ୍ତର ବା ଜେଲଦଣ୍ଡ ଦିଆଯାଇପାରେ। କିନ୍ତୁ ଏହି ବ୍ୟବସ୍ଥାକୁ ହସରେ ଉଡାଇଦେଲେ ବିପ୍ଲବୀମାନେ। କେବଳ ସେତିକି ନୁହେଁ, ଫାଶୀ ପାଇବା ପୂର୍ବରୁ ସେମାନଙ୍କ ବଜ୍ରକଣ୍ଠ ଯାହା ହୁଙ୍କାର କଲା ତାହା ଯୁଗଯୁଗକୁ ଯେକୌଣସି ଦେଶର ସ୍ୱାଧୀନତା ସଂଗ୍ରାମୀର ହେଲା ଅଭୁଲାମନ୍ତ୍ର।

ସର୍ଦ୍ଦାର କର୍ତ୍ତାର ସିଂ କହିଲେ, ''କାହିଁକି ପ୍ରାଣଭିକ୍ଷା କରିବି ? ମୋ'ର ଯଦି ଆଉ ଗୋଟିଏ ପ୍ରାଣ ଥା'ନ୍ତା ତେବେ ତାକୁ ମଧ ମୁଁ ଉତ୍ସର୍ଗ କରିଥା'ନ୍ତି ଦେଶ ମାତୃକାର ମୁକ୍ତି ପାଇଁ। ମୋର ଦୁଃଖ ଭଗବାନ୍ ମୋତେ ଗୋଟିଏ ମାତ୍ର ପ୍ରାଣର ଅଧିକାରୀ କରିଛନ୍ତି।'' ସାବାସ୍, ସାବାସ୍ ସର୍ଦ୍ଦାର କର୍ତ୍ତାର ସିଂ, ନମସ୍ୟ ତୁମେ ! ତୁମର ଏହି ଅମର ବାଣୀ ଆମକୁ ଆତ୍ମତ୍ୟାଗର ବ୍ରତ ପାଳନ କରିବାର ପ୍ରେରଣା ହେଉ। ଧନ୍ୟ ତୁମେ, ଧନ୍ୟ ତୁମର ମହାନ୍ ବାର୍ତ୍ତା। ତୁମର ଶିଷ୍ୟ ସହିଦ ଭଗତ ସିଂଙ୍କ ଭଳି ଅଗଣିତ ମୁକ୍ତି-ସଂଗ୍ରାମୀ ଏହି ଅନ୍ତିମ ବାଣୀ ଅକ୍ଷରେ ଅକ୍ଷରେ ପାଳନକରିଅଛନ୍ତି।

ଏହାର ଅଳ୍ପଦିନ ପରେ ଦ୍ୱିତୀୟ ଲାହୋର ଷଡ଼ଯନ୍ତ୍ର ମକଦ୍ଦମା ଚାଲୁହେଲା ଏବଂ ସେଥିରେ ୧୧୨ ଜଣ ଆସାମୀଙ୍କ ଭିତରୁ ଉତ୍ତମ ସିଂ, ହିସାର ସିଂ, ବୀର ସିଂ, ରଙ୍ଗ ସିଂ ଓ ରୁର ସିଂଙ୍କୁ ଫାଶୀଦିଆଗଲା। ତୃତୀୟ ମକଦ୍ଦମାରେ ବଳବନ୍ତ ସିଂ, ହରନାମ ସିଂ, ଅରୁର ସିଂ, ବାବୁରାମ, ମୌଲବୀ ଅବଦୁଲା ଫାଶୀ ପାଇଲେ। ଏତଦ୍‌ବ୍ୟତୀତ ସେନାବାହିନୀର ଅଧିକାଂଶ ସୈନ୍ୟଙ୍କୁ କୋର୍ଟମାର୍ଶାଲ କରାଗଲା ଓ ୨୩ ନମ୍ବର ଅଶ୍ୱାରୋହୀ ଡିଭିଜନର ୧୨ ଜଣଙ୍କୁ ଫାଶୀଦିଆଗଲା।

**ଓଡ଼ିଶା ମାଟିରେ ଶେଷ ଲଢ଼େଇ :**

ପୁଲିସର ପ୍ରାଣମୂର୍ଚ୍ଛା ଉଦ୍ୟମ ସତ୍ତ୍ୱେ ରାସବିହାରୀ ବା ବାଘା ଯତୀନ କେହି ଧରାପଡ଼ିଲେନାହିଁ। ରାସବିହାରୀ ସେମିତି ଛଦ୍ମବେଶରେ ପୁଲିସକୁ ଚିତାକାଟି ଚାଲିଥା'ନ୍ତି। କିନ୍ତୁ ବାଘା ଯତୀନ ଥାଆନ୍ତି ବାଲେଶ୍ୱରରେ। Universal Emporium (ଇଉନିଭର୍ସାଲ ଏମ୍ପୋରିଅମ) ନାମରେ ସାଇକେଲ୍ ମରାମତି ଦୋକାନଟିଏ ଖୋଲିଥା'ନ୍ତି। ତାଙ୍କ ବ୍ୟତୀତ ଆଉ ୪/୫ ଜଣ ବିପ୍ଳବୀ ମଧ ସେଠାରେ ସାଇକେଲ ମରାମତି କାମରେ ଲାଗିଥା'ନ୍ତି। ଦୀର୍ଘ ପାଞ୍ଚମାସ ପରେ 'ଇଉନିଭର୍ସାଲ ଏମ୍ପୋରିଅମ' ଉପରେ ପୁଲିସର ଦୃଷ୍ଟି ପଡ଼ିଲା। ବାଲେଶ୍ୱର ଭଳି ଗୋଟିଏ ଛୋଟିଆ ସହରରେ ଏତେଗୁଡ଼ାଏ ବଙ୍ଗାଳୀ ଯୁବକଙ୍କୁ ଏକାଠି ଦେଖି ହୁଏତ ପୁଲିସର ସନ୍ଦେହ ହୋଇଥିବ। ସେପ୍ଟେମ୍ବର ୪ ତାରିଖ (୧୯୧୫)ରେ ପୁଲିସ ନିଶ୍ଚିତ ଖବର ପାଇଲା ଯେ 'ବାଘା ଯତୀନ' ବାଲେଶ୍ୱରରେ ଆତ୍ମଗୋପନ କରିଛନ୍ତି। କିନ୍ତୁ 'ବାଘା'କୁ ମଧ ସେ ଖବର

ଅଛପା ରହିଲା ନାହିଁ ଏବଂ ପୁଲିସ ଆସିବା ପୂର୍ବରୁ କପ୍ତିପଦାସ୍ଥ ଗୁପ୍ତ ଆଶ୍ରୟସ୍ଥଳକୁ ଅନ୍ୟାନ୍ୟ ବିପ୍ଳବୀଙ୍କ ସହ ଚାଲିଯାଇଥିଲେ । ପୋଲିସ୍ 'ଇଉନିଭର୍ସାଲ ଏମ୍ପୋରିଅମ'' ଖାନତଲାସ କରି କେବଳ ଖଣ୍ଡେ ଚିପା କାଗଜ ପାଇଲା, ଯେଉଁଥିରେ 'କପ୍ତିପଦା' ବୋଲି ଉଲ୍ଲେଖ ଥିଲା । ସେପ୍‌ଟେମ୍ବର ୪ ତାରିଖରେ କଲିକତାର 'ହାରି ଆଣ୍ଡ ସନ୍ସ'ର ବାଲେଶ୍ୱର ଶାଖା— 'ଇନିଭର୍ସାଲ ଏମ୍ପୋରିଅମ'କୁ ସର୍ଚ୍ଚକରାଗଲା ଓ ବାଲେଶ୍ୱରର ୨୦ ମାଇଲ ଦୂରରେ ଥିବା ବିପ୍ଳବୀମାନଙ୍କର ଅନ୍ୟ ଏକ ଆଶ୍ରୟ ସ୍ଥଳ 'କପ୍ତିପଦା' ଖାନତଲାସ ହୋଇ ସେଠାରୁ 'ସୁନ୍ଦରବନର ଏକ ମାନଚିତ୍ର' ଓ 'ମାଭେରିକ୍' ଜାହାଜ ସଂପର୍କରେ 'ପେନାଂଗ' ଖବର କାଗଜର କଟିଂ ମିଳିଲା ।) ବାଲେଶ୍ୱରରୁ ସୁରାକ ପାଇ ବଂଗଳାର ଅତ୍ୟାଚାରୀ ପୁଲିସ କମିଶନର ଚାର୍ଲସ୍ ଟେଗାର୍ଟଙ୍କ ନେତୃତ୍ୱରେ ଏକ ବିରାଟ ପୁଲିସବାହିନୀ କପ୍ତିପଦା ଚାଲିଲେ । ପୁଲିସର କପ୍ତିପଦା ଆସିବା ଖବର ମଧ୍ୟ 'ବାଘା'ଙ୍କୁ ଅଛପା ରହିଲା ନାହିଁ । ଚାହିଁଥିଲେ କୌଶଳକ୍ରମେ ସେଠାରୁ ମଧ୍ୟ ଖସି ପଳାଇ ଯାଇ ପାରିଥା'ନ୍ତେ । କିନ୍ତୁ ତାଙ୍କର ବିଚାର ଥିଲା ସ୍ୱତନ୍ତ୍ର । ସେ ଜଣେ ଯା' ତା' ବିପ୍ଳବୀ ନ ଥିଲେ । ସେ ବାସ୍ତବରେ ଥିଲେ ବିପ୍ଳବୀ ମହାନାୟକ ବାଘା ଯତୀନ- 'ବାଘା' 'ବାଘା'— ରୟାଲ୍ ବେଂଗଲ ଟାଇଗର୍ । ସେ ଦେଖିଲେ ଯେ ''ବ୍ୟାପକ ବିଦ୍ରୋହ ପ୍ରଚେଷ୍ଟା ଆପାତତଃ ବ୍ୟର୍ଥ ହୋଇଛି । ଏତେବଡ଼ ଆୟୋଜନ ବିଫଳହୋଇଛି । ଫଳରେ ଦେଶର ମନୋବଳ ଭାଂଗି ଚୂରମାର ହୋଇଯାଇଛି । ଏହାର ପ୍ରତିବିଧାନ ନ ହେଲେ ଆଗାମୀ ବହୁ ବର୍ଷ ପାଇଁ ଦେଶ ଉଠିପାରିବ ନାହିଁ । ଯେଉଁମାନେ ଜେଲ ଗଲେ, ସେମାନେ କେବେ ଫେରିବେ ତା'ର ସ୍ଥିରତା ନାହିଁ । ଯେଉଁମାନେ ଫାଶୀ ପାଇଲେ, ସେମାନଙ୍କର ଚରମ ଆତ୍ମତ୍ୟାଗ ଖବର ଲୋକଲୋଚନକୁ ଆସିଲା ନାହିଁ । ଏପରି ସ୍ଥଳେ ଲୋକଙ୍କର ମନୋବଳ ଉଠିବ କେମିତି ? ତାହାର ଏକମାତ୍ର ବାଟ ଚରମ ଆତ୍ମଦାନ ଓ ଶୌର୍ଯ୍ୟ-ବୀର୍ଯ୍ୟ ନିର୍ଭୀକତାର ପରାକାଷ୍ଠା ଓ ଭୟହୀନତାର ଅମ୍ଳାନ ଉଦାହରଣ ପ୍ରଦର୍ଶନ କରିବା । ଆଉ ଆତ୍ମଗୋପନ କରି ଏହା ସମ୍ଭବ ହେବନାହିଁ । ଇଂରେଜକୁ ଦେଖାଇଦେବାକୁ ହେବ ଭାରତୀୟ ବିପ୍ଳବୀର ଶକ୍ତି । ଭାରତବାସୀଙ୍କୁ ଦେଖାଇଦେବାକୁ ହେବ ମାତୃଭୂମିର ମୁକ୍ତି ପାଇଁ ବିପ୍ଳବୀ କ'ଣ କରିପାରେ ।

ତାହା ହିଁ ହେଲା । 'ବାଘା' ସ୍ଥିର କଲେ ଯେ ସେ ପୁଲିସ ବାହିନୀର ସମ୍ମୁଖୀନ ହେବେ । କିନ୍ତୁ ସେଥିପାଇଁ ଏହି ସୁବିଧାଜନକ ଯୁଦ୍ଧକ୍ଷେତ୍ର ଓ ଆଉଟିକେ ପ୍ରସ୍ତୁତି ସେ ଚାହୁଁଥିଲେ । ଏହି ଉଦ୍ଦେଶ୍ୟରେହିଁ 'ବାଘା' ସାଥୀମାନଙ୍କ ସହ କପ୍ତିପଦା ପରିତ୍ୟାଗ କରି ଘୋର ଜଂଗଲ ଭିତରେ ପ୍ରବେଶକଲେ । ସଂଗରେ ଥିଲେ ବିପ୍ଳବୀ ଚିତ୍ତପ୍ରିୟ ରାୟ ଚୌଧୁରୀ, ନରେନ ଦାସଗୁପ୍ତ, ମନୋରଞ୍ଜନ ସେନଗୁପ୍ତ ଓ ଜ୍ୟୋତିଷ ପାଲ, ସାଂଗରେ ଥିଲା ରଡ୍‌ଡ଼ା କମ୍ପାନୀରୁ ଲୁଣ୍ଠିତ ସେ ପ୍ରଖ୍ୟାତ ଜର୍ମାନୀ 'ମାଉସର' ପିସ୍ତଲ-

-ସ୍ପ୍ରିଂ ଯୋଡ଼ିଲେ ଯେଉଁ ପିସ୍ତଲ ରାଇଫଲ ହୁଏ । ବିପ୍ଳବୀ ଦଳଟି ବୁଢ଼ାବଳଙ୍ଗ କୂଳରେ ଗୋବିନ୍ଦପୁର ଗ୍ରାମ ପାଖରେ ପହଞ୍ଚିଥିଲେ । ଗୋବିନ୍ଦପୁର ଭଳି ଏକ ଅନାମଧେୟ ପଲ୍ଲିଗ୍ରାମରେ ହଠାତ୍ ଏତେଗୁଡ଼ିଏ ବନ୍ଧୁକଧାରୀ ଯୁବକଙ୍କୁ ଦେଖି ବିସ୍ମିତ ହୋଇଗଲେ ଗ୍ରାମବାସୀ । ସେମାନେ ଭାବିଲେ 'ନିଶ୍ଚୟ ଡକାୟତ ଦଳ ।' 'ବାଘା' ଗ୍ରାମବାସୀଙ୍କୁ ନମ୍ରତା ସହକାରେ ବୁଝାଇଲେ 'ଭାଇମାନେ ଆମେ ଡକାୟତ ନୋହୁଁ । ଆମେ ତୁମର ପୁଅ ଭାଇ, ଦେଶକୁ ସ୍ୱାଧୀନ କରିବାକୁ ଫିରିଂଗୀ ସହ ଲଢୁଛୁ । ଆମକୁ ହଇରାଣ କର ନାହିଁ । ଆମେ ତୁମ ଘରେ ଡକାୟତି କରିବାକୁ ଆସି ନାହୁଁ ।' କିନ୍ତୁ ମୂର୍ଖ ଗ୍ରାମବାସୀମାନେ ସେ କଥା ବୁଝିବାକୁ ଅକ୍ଷମ । ଦେଶରେ ଯେ ଏତେବଡ଼ ବିପ୍ଳବ ହେଉଛି ତାହା ସେମାନଙ୍କୁ ଜଣା ନ ଥିଲା । କ୍ରମେ ଅଧିକରୁ ଅଧିକ ଲୋକ ସେଠାରେ ଜମିଗଲେ । 'ବାଘା' ଦେଖିଲେ ଯେ ଯଦି ସେହି ସ୍ଥାନରେ ସେହି ସମୟରେ ପୁଲିସ ପହଞ୍ଚିବ ତେବେ ଯୁଦ୍ଧ ଅନିବାର୍ଯ୍ୟ ହେବ ଏବଂ ଗୁଳି-ଚାଳନା ଫଳରେ ନିରୀହ ଗ୍ରାମବାସୀ ମଧ୍ୟ ମରିବା ଅସମ୍ଭବ ନୁହେଁ । ତେଣୁ ସେଠାରୁ ପଳାଇଯାଇ ଏକ ନିରାପଦ ସ୍ଥାନରେ ପ୍ରସ୍ତୁତ ହେବା ବାଞ୍ଛନୀୟ । ଶ୍ରୀଯୁକ୍ତ ମହତାବବାବୁଙ୍କ 'ଓଡ଼ିଶା ଇତିହାସ'ରେ ଉଲ୍ଲେଖ ଅଛି ଯେ ଘାଟବାଲା ସହ ଗଣ୍ଡଗୋଳ ହେବାରୁ ବିପ୍ଳବୀମାନେ ଘାଟିଆଁକୁ ଗୁଳି କରିଥିଲେ ବୋଲି । କିନ୍ତୁ ବଂଗଳା ଐତିହାସିକମାନଙ୍କ ବିବରଣୀରେ ଏଭଳି ଗୁଳି କରିଥିବା କଥାର ଉଲ୍ଲେଖ ମିଳୁ ନାହିଁ । ଯଦିବା ଗୁଳି ହୋଇଥାଏ, ତାହା ସେମାନେ ନିରୁପାୟ ହୋଇ କରିପାରିଥା'ନ୍ତି । 'ବାଘା' ଯେଉଁ ଗ୍ରାମବାସୀଙ୍କର ମୁକ୍ତି ପାଇଁ ଲଢୁଥିଲେ, ସେ ସେମାନଙ୍କୁ ଗୁଳି କରିବେ କେମିତି ? ସେ ଯାହାହେଉ, ଗ୍ରାମବାସୀଙ୍କ ଭିତରୁ କେହି ଜଣେ ଦୌଡ଼ିଯାଇ ଥାନାରେ ଏ ଖବର ଦେଇଦେବାରୁ ପୁଲିସ ଫଉଜ ସେଠାକୁ ମୁହାଁଇଲେ । ସେତେବେଳେ କପ୍ତିପଦା ଜଙ୍ଗଲ ଉଠୁଛିପଡୁଛି । ବିରାଟ ବିରାଟ ହାତୀ ଉପରେ ଚଢ଼ି ଚାର୍ଲସ୍ ଟେଗାର୍ଟ ଓ ବାଲେଶ୍ୱର କଲେକ୍ଟର କେଲ୍‌ବି ସାହେବ ଜଙ୍ଗଲକୁ ଖିନ୍‌ଭିନ୍ କରୁଥା'ନ୍ତି । ସୁତରାଂ ଏ ଖବର ପାଇବାକୁ ଟେଗାର୍ଟଙ୍କୁ ଅଧିକ ସମୟ ଲାଗିନଥିବ । ଚଷାଖଣ୍ଡ ଗ୍ରାମର ଅପରପାର୍ଶ୍ୱରେ ବିପ୍ଳବୀମାନେ ବୁଢ଼ାବଳଙ୍ଗ ନଦୀକୁ ପହଁରିଲେ । ଉଦ୍ଦେଶ୍ୟ ଚଷାଖଣ୍ଡ ଗ୍ରାମର ନିକଟବର୍ତ୍ତୀ ବିଲରେ ପୁଲିସକୁ ଅପେକ୍ଷା କରିବା । କିନ୍ତୁ ଗ୍ରାମବାସୀମାନେ ସେମାନଙ୍କୁ ଆଗକୁ ଛାଡ଼ି ଦେଉ ନ ଥା'ନ୍ତି । ପଛେ ପଛେ ଦୂରେଇ ଦୂରେଇ ସେମାନେ 'ବାଘା'ଙ୍କ ପିଛା ଧରିଥା'ନ୍ତି । ବିପ୍ଳବୀମାନେ କୌଣସିମତେ ନଦୀ ପାରହୋଇ ଗୋଟିଏ ବଡ଼ ଉଇହୁଙ୍କା ଉହାଡ଼ରେ ଟିକେ ବିଶ୍ରାମ ନେଲେ । ଅଳ୍ପ କିଛି ଚୁଡ଼ା ସାଙ୍ଗରେ ଥିଲା । ସେହି କଞ୍ଚାଚୁଡ଼ା ଓ ନଈପାଣିରେ ମହାସମାରୋହରେ ବିପ୍ଳବୀମାନେ ମହୋତ୍ସବ ଆରମ୍ଭକରିଦେଲେ, ସେହି ଉଇହୁଙ୍କା ପଛରେ । ସେମାନେ ଯେ ମହାପଥର ଯାତ୍ରୀ - ସୁତରାଂ ଅନ୍ତିମ ମହୋତ୍ସବକୁ ଟିକେ ସମାରୋହପୂର୍ଣ୍ଣ କାହିଁକି ନ କରିବେ - ହୋଇଥାଉ ସେ କଞ୍ଚାଚୁଡ଼ା କେଇ ଛଟାଙ୍କି ବା

ବୁଢ଼ାବଲଙ୍ଗର ବର୍ଷାଦିନିଆ ଗୋଳିଆ ପାଣି । ଦେଶରେ କେତେ ଜଣଙ୍କ ଭାଗ୍ୟରେ ଏଭଳି ଆହାର ଜୁଟେ ? ବିପ୍ଳବୀ ପକ୍ଷରେ ତାହା ରାଜକୀୟ ଆହାର । ଭୋଜନପର୍ବ ଶେଷହେଲା ପରେ ବଂଧୁକ ସଜାଡ଼ିବା କାମ ଆରମ୍ଭହେଲା । ଜର୍ମାନୀ ମାଉସର ପିସ୍ତଲରେ ଫିଟ୍ କରାଗଲା ସ୍ପ୍ରିଂ । ଚାହୁଁ ଚାହୁଁ ପିସ୍ତଲ ହେଲା ଶକ୍ତିଶାଳୀ ରାଇଫେଲ । ଏହି ପିସ୍ତଲକୁ ରାଇଫେଲ କରିବାର ସୁଯୋଗ ଥିବାରୁ ତ 'ରଡ୍‌ଡ଼ା କମ୍ପାନୀ'ର ଗୁଡ୍‌ସ କ୍ଲର୍କ ହାବୁଦା ଏହାକୁ ଲୁଣ୍ଠନ କରି ନିଜେ ଆତ୍ମୋତ୍ସର୍ଗ କରିଥିଲେ ।

ଯୁଦ୍ଧବାଦ୍ୟ ବାଜିବାକୁ ଆଉ ଡେରି ହେଲାନାହିଁ । ନଦୀ ପାରହୋଇ ଟେଗାର୍ଟ ବିରାଟ ଗୁର୍ଖା ବାହିନୀ ଧରି ଘେରାଉ କଲା ବିପ୍ଳବୀମାନଙ୍କୁ । ଏହା ଏକ ଅସମଯୁଦ୍ଧ । କାରଣ ଉଚ୍ଚଟ୍ରେନିଂପ୍ରାପ୍ତ ଏବଂ ସର୍ବାଧୁନିକ ଅସ୍ତ୍ରରେ ସଜ୍ଜିତ ବିରାଟ ପୁଲିସ ବାହିନୀ ସହିତ ମାତ୍ର ଛ' ଜଣ ବିପ୍ଳବୀଙ୍କ ଭିତରେ ସମ୍ମୁଖ ଯୁଦ୍ଧ । ବିପ୍ଳବୀଙ୍କ ହାତରେ ଖଣ୍ଡିଏ ଲେଖା ପିସ୍ତଲ ବା ରାଇଫେଲ୍ । ପୁଲିସବାହିନୀ ବଂଧୁକ ରେଂଜ ଭିତରକୁ ଆସିବା ସଂଗେ ସଂଗେ ସେନାପତି 'ବାଘା' ସ୍ଲୋଗାନ ଦେଲେ— 'ବନ୍ଦେ ମାତରମ୍' । ଫାୟାର ଆରମ୍ଭ ହୋଇଗଲା ଅବିଶ୍ରାନ୍ତ ଗୁଳିଚାଳନା ଗୁଡ଼ମ୍ ଗୁଡୁମ୍---

ଚାର୍ଲସ୍ ଟେଗାର୍ଟ ସ୍ତମ୍ଭିତ ! ଧନ୍ୟ ଭାରତର ବିପ୍ଳବୀ ! ଧନ୍ୟ ତୁମର ସାହସ ! ଉଭୟ ପକ୍ଷରୁ ଚାଲିଲା ଗୁଳି ବିନିମୟ ! କେହି କାହାକୁ ଛାଡ଼ିବାକୁ ଯେମିତି ରାଜି ନୁହନ୍ତି । କିନ୍ତୁ କେତେ ସମୟ ବା ଲଢ଼ିବେ ? ବିପ୍ଳବୀଙ୍କ ପାଖରୁ ଗୁଳି ଶେଷ ହୋଇଗଲା । ବିପ୍ଳବୀ ଚିତ୍ତପ୍ରିୟଙ୍କ ଛାତିରେ ଗୁଳି ବାଜିଲା । ସେ ସେଇଠି ଟଳିପଡ଼ିଲେ । ଅଳ୍ପ ସମୟ ପରେ ଟେଗାର୍ଟର ଗୋଟିଏ ଗୁଳି ବାଜିଲା 'ବାଘା'ଙ୍କ ମୁଣ୍ଡରେ । 'ବାଘା' ସଂଜ୍ଞାହୀନ ହୋଇପଡ଼ିଲେ । ଆହତ ହେଲେ ମନୋରଂଜନ, ନରେନ ଓ ଜ୍ୟୋତିଷ । ଯୁଦ୍ଧ ଶେଷହେଲା, ଆହତ ବିପ୍ଳବୀମାନେ ବନ୍ଦୀହେଲେ ।

ଚଷାଖଣ୍ଡ ଓ ଆଖପାଖ ଗ୍ରାମର ସହସ୍ର ସହସ୍ର ଲୋକ ଏହି ମହାଯୁଦ୍ଧ ସ୍ୱ-ଚକ୍ଷୁରେ ଦେଖିବାର ସୌଭାଗ୍ୟ ଅର୍ଜନ କଲେ । 'ବାଘା'ଙ୍କର ଅସାଧାରଣ ସାହସ ଏବଂ ଅଲୌକିକ ସମର-କୌଶଳ ଦେଖି ଖାଲି ଗ୍ରାମବାସୀ ନୁହନ୍ତି, ନିଜେ ଟେଗାର୍ଟ ମଧ୍ୟ ମୁଗ୍ଧ ଓ ଚକିତ ହୋଇଯାଇଥିଲା । ''ଯୁବକମାନଙ୍କ ହାତରେ ଉନ୍ନତ ଧରଣର ବଂଧୁକ ଥିବାରୁ ଓ ସେମାନେ ବିଦ୍ୟାରେ ଉତ୍କୃଷ୍ଟ ଶିକ୍ଷା ପାଇଥିବାରୁ ସେମାନେ ଏତେ ସମୟ ଯୁଦ୍ଧ କରିବାକୁ ସମର୍ଥ ହୋଇଥିଲେ । କଥିତ ଅଛି, ମୃତ୍ୟୁର ଅଳ୍ପକାଳ ପୂର୍ବରୁ ଜ୍ୟୋତିନ ମୁଖାର୍ଜି ଯେଉଁ ଦେଶପ୍ରେମ ଓ ସଦ୍‌ବ୍ୟବହାର ପ୍ରକାଶ କରିଥିଲେ, ସେଥିରେ କିଲ୍‌ବି ସାହେବ ମୁଗ୍ଧହୋଇ ତାଙ୍କୁ ନିଜ କୋଳକୁ ନେଇ ତାଙ୍କର ଶୁଶ୍ରୂଷା କରିଥିଲେ । ଏ ଯୁଦ୍ଧରେ ବିଜୟଲାଭକରି ଇଂରେଜ ସରକାର ଚଷାଖଣ୍ଡ ଗାଁଠାରେ ଏକ କ୍ଷୁଦ୍ର ବିଜୟ ସ୍ତମ୍ଭ ମଧ୍ୟ ତୋଳାଇ ଅଛନ୍ତି ।'' ଆହୁରି ମଧ୍ୟ ଶୁଣାଯାଏ, ମୃତ୍ୟୁର ଅବ୍ୟବହିତ ପୂର୍ବରୁ ତୃଷା ନିବାରଣ ପାଇଁ ଯେତେବେଳେ 'ବାଘା' ପାଣି ମାଗିଲେ ନିଜେ ଟେଗାର୍ଟ ଉଠିଯାଇ

ତାଙ୍କ ନିକଟକୁ ଗ୍ଲାସେ ପାଣି ନେଇଯାଇଥିଲା । କିନ୍ତୁ 'ବାଘା' ସେ ମୁମୂର୍ଷୁ ଅବସ୍ଥାରେ ମଧ୍ୟ ସେ ପାଣି ପିଇବାକୁ ଅସ୍ୱୀକାର କରି କହିଲେ, ''ଯେଉଁ ଇଂରେଜ ଜାତିକୁ ମୁଁ ଘୃଣାକରେ ତା' ହାତରୁ ପାଣି ପିଇବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ।'' ଯାହାହେଉ ଟେଗାର୍ଟ ଜିଦି ନ କରି ନର୍ସ ହାତରେ ପାଣି ଦେଲା । ମନର ବଳ କେତେ ଦୃଢ଼ ଥିଲେ ମଣିଷ ଏତେ ଟାଣ ହୋଇ ପାରିବ ! ଦେଶଭକ୍ତି କେତେ ଗଭୀର ଥିଲେ ମଣିଷ ଚରମ ତ୍ୟାଗ କରିପାରିବ, ତାହା ବର୍ଣ୍ଣନାର କଥା ନୁହେଁ; ଅନୁଭବ କରିବାର କଥା ।

ଓଡ଼ିଶାର ମାଟି ପବିତ୍ର ହେଲା । ଅନାମେଧେୟ 'ଚଷାଖଣ୍ଡ' ଗ୍ରାମ ହୋଇଗଲା ଇତିହାସରେ ଏକ ବିଖ୍ୟାତ ଗ୍ରାମ । ଓଡ଼ିଶାବାସୀଙ୍କ ଅଜ୍ଞାତରେ ଓଡ଼ିଶା ମାଟି ପବିତ୍ର ହୋଇଗଲା । ୧୯୧୫ ମସିହା ସେପ୍‌ଟେମ୍ବର ୯ ତାରିଖରେ ଅଗ୍ନିଯୁଗର ଇତିହାସ ରକ୍ତରଂଜିତ ହୋଇଗଲା ।

ସେପ୍ଟେମ୍ବର ୧୦ ତାରିଖରେ 'ବାଘା ଯତୀନ' ବାଲେଶ୍ୱର ହସ୍‌ପିଟାଲରେ ଦେହରକ୍ଷାକଲେ । ଭାରତର ଆକାଶରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଅନ୍ତର୍ହିତ ହୋଇଗଲା । 'ଅଗ୍ନିଯୁଗ'ର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟର ପରିସମାପ୍ତି ଘଟିଲା । ମନୋରଂଜନ, ନରେନଙ୍କୁ ପ୍ରାଣଦଣ୍ଡ ଓ ଜ୍ୟୋତିଷ ପାଲଙ୍କୁ ଦିଆଗଲା ୧୪ ବର୍ଷ ଦ୍ୱୀପାନ୍ତର । ସେଠାରେ ତାଙ୍କ ଉପରେ ପୁଲିସ୍ ପକ୍ଷରୁ ଅକଥନୀୟ ଅତ୍ୟାଚାର ହେବାରୁ ସେ ପାଗଳ ହୋଇଗଲେ । ଶେଷରେ ତାଙ୍କୁ ବହରମପୁର 'ପାଗଳାଗାରଦ'ରେ ରଖାଗଲା ଏବଂ ସେହିଠାରେ ସେ ସ୍ୱର୍ଗାରୋହଣକଲେ ।

ଆମର ଦୁର୍ଭାଗ୍ୟ ଓଡ଼ିଶା ମାଟିରେ ମୁକ୍ତିଯୁଦ୍ଧର ଏଭଳି ଏକ ରକ୍ତରଞ୍ଜିତ ପର୍ବ ଅଭିନୀତ ହୋଇଗଲା, ଅଥଚ ଜଣେ ହେଲେ ଓଡ଼ିଆ ଏଥିରେ ରକ୍ତଦାନ କରିପାରିଲେ ନାହିଁ । ଡକ୍ଟର ମହତାବ ଲେଖିଛନ୍ତି, ''ଏହି ସମୟରେ ବାଲେଶ୍ୱରରେ ଦୁଇ ମାସ ପାଇଁ ସାମରିକ ଆଇନ ଜାରିହୋଇଥିଲା । ଅନେକ ଭଦ୍ରପରିବାରର ଯୁବକ ଏମ୍ପୋରିଅମ୍‌ରେ ବସାଉଠା କରୁଥିବା ଅପରାଧରେ ବେତମାଡ଼ଠାରୁ ଆରମ୍ଭକରି ବହୁ ପ୍ରକାର ନିର୍ଯାତନା ଭୋଗକରିଥିଲେ । ଅଦିନ ମେଘଭଳି ଏ ଘଟଣା ଅଳ୍ପକାଳ ପାଇଁ ଓଡ଼ିଶାରେ ଚାଞ୍ଚଲ୍ୟ ସୃଷ୍ଟି କରି ପୁଣି କୁଆଡ଼େ ଉଭେଇଗଲା । ଏହାର କୌଣସି ପ୍ରକାର ପ୍ରଭାବ ସେତେବେଳେ ଓଡ଼ିଶାରେ ଯୁବକ ହୃଦୟରେ ପଡ଼ି ନ ଥିଲା ।''(୧)

ଚୈତନ୍ୟ ଦେବଙ୍କ ଅମଳରୁ 'ଶାନ୍ତିପ୍ରିୟତା' ଶିକ୍ଷା କରିଥିବା ନିରୀହ ଓଡ଼ିଆ, ଓଡ଼ିଆ ହୋଇ ରହିଗଲା । ମହତାବ ପୁଣି ଲେଖିଛନ୍ତି, ''ସେ ସମୟରେ ଭାରତର ରାଜନୀତି କ୍ଷେତ୍ରର ଅସ୍ଥିରତା ଓଡ଼ିଶାକୁ ସ୍ପର୍ଶ କରି ନ ଥିଲା । ସେତେବେଳେ ପ୍ରବୀଣ ନେତାମାନେ

---

୧) ଡକ୍ଟର ମହତାବ 'ଓଡ଼ିଶା ଇତିହାସ'—୨ୟ ଭାଗ ପୃ-୫୦୨

ଦେଶମିଶ୍ରଣର ଏକା ପ୍ରକାର ନିର୍ମାଣକରି ଓଡ଼ିଶାକୁ ତଦ୍ୱାରା ଭାରତର ଜାତୀୟତାର ବାତ୍ୟାଠାରୁ ପୃଥକ୍ କରି ରଖିଥିଲେ ।''(୧) ''ମୋର ଯେତେଦୂର ମନେହୁଏ ବାଘା ଯତୀନଙ୍କ ସମୟରେ କୌଣସି ଓଡ଼ିଆ ସେଥିରେ ଯୋଗ ଦେଇ ନ ଥିଲେ । ଯଦିବା ଦେଇଥିଲେ, ତାହା ଏତେ ଗୋପନୀୟ ଥିଲା ଯେ ସେମାନଙ୍କର ନାମ ପ୍ରକାଶିତ ହୋଇ ନାହିଁ । ସେହି ସମୟରେ ବାଲେଶ୍ୱର ସହର ଏକ ବଙ୍ଗାଳୀପ୍ରଧାନ ସହର ଥିଲା ।''(୨)

ଏହିଭଳି ଭାବରେ ତତ୍‌କାଳୀନ ଓଡ଼ିଆ ନେତାମାନଙ୍କର ଦେଶମିଶ୍ରଣ ନୀତି ଓ ଓଡ଼ିଆମାନଙ୍କର ପାରମ୍ପରିକ ନିରୀହ ନିରୁପଦ୍ରବ ଶାନ୍ତିପ୍ରିୟ ଚରିତ୍ର ଯୋଗୁଁ ସଶସ୍ତ୍ର ମୁକ୍ତି-ସଂଗ୍ରାମର ଜ୍ୱାଳାମୟୀ ଇତିହାସରୁ ଓଡ଼ିଆପୁଅ ବଞ୍ଚିତହେଲେ ।

□□□

---

୧) ଡକ୍ଟର ମହତାବ 'ଓଡ଼ିଶା ଇତିହାସ'—୨ୟ ଭାଗ ପୃ-୫୦୩

୨) ଲେଖକଙ୍କ ନିଟକରୁ ଡକ୍ଟର ମହତାବଙ୍କର ପତ୍ରରୁ ଉଦ୍ଧୃତ ।

## ଅଧ୍ୟାୟ - ଷୋହଳ

# ବିପ୍ଳବ କାହିଁକି ବ୍ୟର୍ଥ ହେଲା ?

ଏତେ ବଡ଼ ବ୍ୟାପକ ବିପ୍ଳବ, ଏତେ ସଂଗଠିତ ଓ ଶୃଙ୍ଖଳିତ ଆୟୋଜନ କାହିଁକି ବ୍ୟର୍ଥ ହେଲା- ଇତିହାସକାରମାନେ ତା'ର ଭିନ୍ନ ଭିନ୍ନ କାରଣ ନିର୍ଦ୍ଧାରଣ କରିଅଛନ୍ତି । କେତେଜଣ ବିଶ୍ୱାସଘାତକଙ୍କ ଅବିମୃଶ୍ୟକାରିତା ହୁଏତ ଏହି ବ୍ୟର୍ଥତାର ତାତ୍କାଳିକ କାରଣ ହୋଇପାରେ । କିନ୍ତୁ ସେତିକି ଯଥେଷ୍ଟ ନୁହେଁ । ପ୍ରତ୍ୟେକ ବିପ୍ଳବ, ତାହା ହିଂସାତ୍ମକ ହେଉ ବା ଅହିଂସାତ୍ମକ ହେଉ, ତାହା ଗୋଟିଏ ନିର୍ଦ୍ଦିଷ୍ଟ ଧାରାରେ ଗତିକରେ କେତେଗୁଡ଼ିଏ ପର୍ଯ୍ୟାୟ ଅତିକ୍ରମ କରି । 'ସଶସ୍ତ୍ର ବିପ୍ଳବ' ପାରମ୍ପରିକ ବିଦ୍ରୋହରୁ ଆରମ୍ଭହୋଇ ବ୍ୟକ୍ତିନିଧନ ପର୍ବରେ ପହଞ୍ଚିଥିଲା । ପାରମ୍ପରିକ ବିଦ୍ରୋହ ମନୁଷ୍ୟର ସ୍ୱତଃସ୍ଫୂର୍ତ୍ତ କ୍ରୋଧରୁ ଜାତହୁଏ । ସେଥିରେ ନ ଥାଏ ଶୃଙ୍ଖଳା ନ ଥାଏ ଅଭିଜ୍ଞତା । ପାରମ୍ପରିକ ବିଦ୍ରୋହ 'ଗଣବିପ୍ଳବ'ରେ ସାଫଲ୍ୟମଣ୍ଡିତ ହୁଏ । ମଝିରେ 'ବ୍ୟକ୍ତିନିଧନ' ପର୍ଯ୍ୟାୟ ଓ 'ଖଣ୍ଡ ବିପ୍ଳବ' ସେହି ସାଫଲ୍ୟର ମୂଳଦୁଆ ହୁଏ । ପ୍ରଥମ ପର୍ବଟି ତା'ର ଅବଶ୍ୟମ୍ଭାବୀ ପରିଣାମ ଦାନକରି ଦ୍ୱିତୀୟ ସୋପାନରେ ପହଞ୍ଚିଥିଲା । ଦ୍ୱିତୀୟ ପର୍ବର 'ବ୍ୟକ୍ତିନିଧନ' କାର୍ଯ୍ୟକ୍ରମ ଫଳରେ ଶାସିତ ଶ୍ରେଣୀ ମଧ୍ୟରେ ସାହସ ଓ ଆତ୍ମଦାନର ଆଗ୍ରହ ସୃଷ୍ଟି ହୁଏ । ଏହି 'ବ୍ୟକ୍ତିନିଧନ' କ୍ରମେ ଦଳଗତ ସଂଘର୍ଷରେ ପରିଣତ ହୁଏ । ଏହାଦ୍ୱାରା ସାହସ ବଢ଼େ ଓ ଆତ୍ମତ୍ୟାଗର ଆଦର୍ଶ ଅଧିକ ତେଜସ୍ୱୀ ହୁଏ ଏବଂ ଦଳଗତ ସଂଘର୍ଷ 'ଖଣ୍ଡବିପ୍ଳବ' ବା Insurrectionରେ ରୂପାନ୍ତରିତ ହୁଏ । ଏହା ସଫଳହେଲେ ଲୋକଙ୍କର ଆତ୍ମବିଶ୍ୱାସ ବୃଦ୍ଧିପାଏ ଓ ଶାସକଶ୍ରେଣୀର ଶକ୍ତିର ସ୍ୱଚ୍ଛତା ପଦାରେ ପଡ଼ିଯାଏ । ଏହି Insurrection ସଫଳ ହେଲେ 'ଗଣବିଦ୍ରୋହ' ବା 'ସମ୍ପୂର୍ଣ୍ଣ ବିପ୍ଳବ' ସଂଘଟିତ ହୋଇ ଶାସକ ଶ୍ରେଣୀର ପତନ ଅବଶ୍ୟମ୍ଭାବୀ ହୁଏ ।

'ବିପ୍ଳବ'ର ପ୍ରତ୍ୟେକ କ୍ଷେତ୍ରରେ ସାଧାରଣ ଜନତାର ସହଯୋଗ ଆବଶ୍ୟକ । ବିଶେଷତଃ Insurrection ଓ 'ଗଣବିପ୍ଳବ'ରେ ଆପାମର ଜନତାର ହାର୍ଦ୍ଦିକ ସହଯୋଗ ଏକାନ୍ତ ଅପରିହାର୍ଯ୍ୟ । ଜନତାର ସହଯୋଗ ନ ମିଳିଲେ ମୁଷ୍ଟିମେୟ ବିପ୍ଳବୀ ଯେତେ ବଡ଼ ବିପ୍ଳବୀ ହେଉନା କାହିଁକି ସଫଳକାମୀ ହୋଇପାରନ୍ତି ନାହିଁ । କେବଳ ଲୁଚିଛପି ଜଣେ ଦୁଇଜଣ, ଜଣେ ଦୁଇଜଣଙ୍କୁ ହତ୍ୟାକରିଦେଲେ ତାହା ଗଣବିପ୍ଳବ ପଦବାଚ୍ୟ ହୁଏନାହିଁ । ଏହା ରୀତିମତ ସମ୍ମୁଖ ଯୁଦ୍ଧ ।

'ବ୍ୟାପକ ବିଦ୍ରୋହ ପ୍ରଚେଷ୍ଟା' ଏହି ଜନସହଯୋଗ ଅଭାବରେ ବ୍ୟର୍ଥ ହେଲା । ଭାରତର ମୁକ୍ତି-ସଂଗ୍ରାମ ଯେତେବେଳେ ପ୍ରଥମ ପର୍ଯ୍ୟାୟ ଅତିକ୍ରମ କରି ଦ୍ୱିତୀୟ ପର୍ଯ୍ୟାୟ ଭିତରେ ଗତିକରୁଥିଲା ସେତେବେଳେ ତାକୁ ଚତୁର୍ଥ ପର୍ଯ୍ୟାୟ ଭିତରକୁ ନିକ୍ଷେପ କରିବାକୁ ଉଦ୍ୟମ କରାଯାଇ ମାରାତ୍ମକ ଭୁଲହେଲା । ଏହି ଚରମ ଯୁଦ୍ଧ ପାଇଁ ଜନତା ଆଦୌ ପ୍ରସ୍ତୁତ ନ ଥିଲା - ତାହାହିଁ ହେଲା ବ୍ୟର୍ଥତାର ମୂଳ କାରଣ । ବ୍ୟାପକ ବିଦ୍ରୋହକୁ ଜନ-ସମର୍ଥନ ମିଳିଲା ନାହିଁ, କାରଣ ଜନତାକୁ ସେଭଳି ଶିକ୍ଷା ଦିଆଯାଇ ନ ଥିଲା । ସେ ଶିକ୍ଷା ପାଇଥିଲେ 'ବାଘା'ଙ୍କୁ ଚଷାଖଣ୍ଡ ଲୋକ ପୁଲିସ ହାତରେ ଧରାଇଦେଇ ନ ଥା'ନ୍ତେ । ତଥାପି ତାହା ସଂପୂର୍ଣ୍ଣ ବ୍ୟର୍ଥ ହେଲା ବୋଲି କୁହାଯାଇ ପାରିବ ନାହିଁ । ଏହାର ଅଭିଜ୍ଞତା ବ୍ୟାପକ ଗଣବିଦ୍ରୋହର ସାଫଲ୍ୟ ପାଇଁ ସାହାଯ୍ୟକଲା ଏବଂ ବ୍ୟକ୍ତିନିଧନ ବା ଉଦ୍‌ଯୋଗ ପର୍ବ ଦୁର୍ବାର ଗତିରେ ଅଗ୍ରସରହେଲା ।

**ଦେଶତ୍ୟାଗୀ ରାସବିହାରୀ :**

ରାସବିହାରୀ ବିଦ୍ରୋହର ବ୍ୟର୍ଥତାର କାରଣ ଠିକ୍ ବୁଝିପାରିଥିଲେ ଏବଂ ତତ୍ ସହ ଏହା ମଧ୍ୟ ବୁଝିଥିଲେ ଯେ ଭାରତ ଭିତରେ ରହି ଆଉ ସଶସ୍ତ୍ର ବିପ୍ଳବ ସଂଗଠନ କରିବା ତାଙ୍କ ପକ୍ଷରେ ସମ୍ଭବନୁହେଁ । ଅଧିକାଂଶ ବିପ୍ଳବୀ ସହିଦ ହୋଇସାରିଥିଲେ ! ଯେଉଁମାନେ ବଞ୍ଚିଥିଲେ ସେମାନେ ଜେଲ କିମ୍ବା ଦ୍ୱୀପାନ୍ତର ଭୋଗୁଥିଲେ । ସେ ଭାବିଲେ, ସେ ବି ଯଦି ଧରାଯାଆନ୍ତି ଦେଶର ଆଶା ଭରସା ଧୂଳିସାତ୍ ହେବ । ଦେଶ ଭିତରେ ଥିବା ବିପ୍ଳବୀମାନଙ୍କୁ ବାହାରୁ ସାହାଯ୍ୟ ନ ମିଳିଲେ ତାହା ମଧ୍ୟ ଆଗେଇ ପାରିବ ନାହିଁ । ଯୁଦ୍ଧର ଏକ ଦ୍ୱିତୀୟ ସାମ୍ମୁଖ୍ୟ ମଧ୍ୟ ଗଢ଼ିବା ବିଶେଷ ଜରୁରୀ ହୋଇପଡ଼ିଛି । ଏହି ଦ୍ୱିତୀୟ ଫ୍ରଣ୍ଟ ଖୋଲିବା ଉଦ୍ଦେଶ୍ୟରେ ରାସବିହାରୀ ଦେଶତ୍ୟାଗ କରିବାକୁ ମନସ୍ଥିରକଲେ । କିନ୍ତୁ ଗଭୀର ମାନସିକ ଦୁଃଖ ଓ ଯନ୍ତ୍ରଣାରେ ହୃଦୟ ତାଙ୍କର ଫାଟିପଡ଼ିବା ଭଳି ଲାଗିଲା । ଯେଉଁ ଜନ୍ମଭୂମିର ମାଟିକୁ ରାହୁମୁକ୍ତ କରିବା ପାଇଁ ତାଙ୍କର ଏତେ ତପସ୍ୟା, ଏତେ ସାଧନା, ତାକୁ ଛାଡ଼ିଯିବେ କେମିତି ? କିନ୍ତୁ ପରମୁହୂର୍ତ୍ତରେ ସେ ଭାବିଲେ- 'ମା'ର ମୁକ୍ତିପାଇଁହିଁ ତାଙ୍କୁ ଦେଶତ୍ୟାଗ କରିବାକୁ ପଡ଼ିବ ଓ ଚରମ ତ୍ୟାଗ ବରଣ କରିବାକୁ ପଡ଼ିବ ।'' ସେ ଦେଶ ତ୍ୟାଗ କରିବାକୁ ମନ ସ୍ଥିର କରିନେଲେ । କିନ୍ତୁ ତାହା ବି ଏତେ ସହଜ କାର୍ଯ୍ୟ ନ ଥିଲା । କାରଣ ହାର୍ଡ଼ିଂଜ ବୋମା (୧୯୧୧)ରୁ ବ୍ୟାପକ ବିଦ୍ରୋହ ଯୋଜନା ପର୍ଯ୍ୟନ୍ତ ସବୁଥିରେ ତାଙ୍କର ପ୍ରତ୍ୟକ୍ଷ ହାତ ଥିଲା ବୋଲି ପୁଲିସ୍‌ର ଦୃଢ଼ବିଶ୍ୱାସ ଥିଲା ଏବଂ ସେଥିପାଇଁ ୩/୪ ବର୍ଷ ଧରି ପୁଲିସ ତାଙ୍କୁ ଖୋଜୁଥିଲା ଏବଂ ତାଙ୍କୁ ମୃତ ବା ଜୀବନ୍ତ ଧରିଦେଲେ ଲକ୍ଷାଧିକ ଟଙ୍କା ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଯାଇଥିଲା । ସେ ଆଜିଯାଏ ପୁଲିସକୁ ଚିତାକାଟି ଆସିଥିଲେ । ବର୍ତ୍ତମାନ କିନ୍ତୁ ତାଙ୍କୁ ଆପେ ଆପେ ପୁଲିସ ବା ସରକାରୀ ଦପ୍ତରକୁ ଯିବାକୁ ପଡ଼ିଲା Passport(ପାସ୍‌ପୋର୍ଟ) ପାଇଁ । ରାଜା ପି. ଏନ. ଠାକୁର ଛଦ୍ମନାମରେ ସେଦିନ

ରାସବିହାରୀ କଲିକତା ପାସ୍‌ପୋର୍ଟ ଅଫିସରେ ପହଞ୍ଚିଗଲେ । ମୁଁ ରାଜା ପି. ଏନ. ଠାକୁର, କବି ରବୀନ୍ଦ୍ରନାଥ ଠାକୁରଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ।'

''ଧନ୍ୟବାଦ ମିଷ୍ଟର ଠାକୁର''- ଗୋରା ଅଫିସର ଭାରି ଖୁସୀହେଲାପରି ଜଣାଗଲେ । ''ତେବେ କୁହନ୍ତୁ, ମୁଁ ଆପଣଙ୍କୁ କ'ଣ ସାହାଯ୍ୟ କରିପାରେ ?''

''ଆପଣ ବୋଧେ ଜାଣିଥିବେ, କବି ଜାପାନ ଗସ୍ତରେ ଯାଉଛନ୍ତି ।'' ରାସବିହାରୀ ନିର୍ବିକାର ଭାବରେ କହିଗଲେ ।

''ନିଶ୍ଚୟ, ନିଶ୍ଚୟ, ଏକଥା କିଏ ବା ନ ଜାଣେ ? ସେ କଥା ତ ଆଜି ସକାଳ ପେପରରେ ବି ବହାରିଛି ।'' ଟିକେ ବାହାଦୁରୀ ଦେଖାଇବା କଣ୍ଠରେ ପାସ୍‌ପୋର୍ଟ ଅଫସିର ଜଣକ କହିଲେ ।

''ଧନ୍ୟବାଦ, କବିଗୁରୁଙ୍କର ଜାପାନ ଗସ୍ତର ସୁବ୍ୟବସ୍ଥା କରିବାକୁ ମୋତେ ଆଗୁଆ ଦଳରେ ଜାପାନ ଯିବାକୁ ପଡୁଛି ଏବଂ ସେଥିପାଇଁ ପାସ୍‌ପୋର୍ଟ ଖଣ୍ଡେ ଦରକାର । ଆପଣ ଟିକେ ସାହାଯ୍ୟ....'' ଏତିକି କହିଛନ୍ତି ରାସବିହାରୀ, ତାଙ୍କ ତୁଣ୍ଡରୁ କଥା ଛଡ଼ାଇନେଲା ଭଳି କହିଲେ ଅଫିସର – ''ନିଶ୍ଚୟ, ନିଶ୍ଚୟ, ଏ ତ ସାମାନ୍ୟ କଥା । କବିଗୁରୁ ରବୀନ୍ଦ୍ରଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଆପଣ ! ଆମେ ଏତିକି କରିବା ନାହିଁ ? ଦିଅନ୍ତୁ ଦରଖାସ୍ତଟା ।'' ଦରଖାସ୍ତ ଖଣ୍ଡିକ ନେଇ ଅଫିସର୍ ଜଣକ ଅଫିସ ଭିତରକୁ ଗଲେ, ରାଜା ପି. ଏନ. ଠାକୁରଙ୍କୁ ନିଜ ଖାସ୍ ଅଫିସରେ ବସେଇଦେଇ । ମାତ୍ର ଅଧଘଣ୍ଟାଏ ଭିତରେ ପାସ୍‌ପୋର୍ଟ ରେଡ଼ି ହୋଇ ଚାଲିଆସିଲା । 'ଧନ୍ୟବାଦ' କହି 'ରାଜାସାହେବ' ସେ ପାସ୍‌ପୋର୍ଟ ଖଣ୍ଡିକ ଧରି ପଦାକୁ ଆସିଲେ ମନେ ମନେ ଗଦାଏ ହସି ହସି ।

ଗୋପନ କେନ୍ଦ୍ରରେ ଥିବା ବିପ୍ଳବୀମାନଙ୍କଠାରୁ ବିଦାୟନେଇ ଯେଉଁଦିନ ରାସବିହାରୀ ଜାପାନଗାମୀ ଜାହାଜରେ ବସିଲେ ସେଦିନ ଭାରତର ଖୁବ୍ କମ୍ ଲୋକ ହୁଏତ ଜାଣିଥିଲେ ଯେ ମହାନ୍ ବିପ୍ଳବର ଏଇ ଅସାଧାରଣ ଦେଶପ୍ରେମୀ ଓ ଭାରତମାତାର ଏକ ଧନୁର୍ଦ୍ଧର ପୁଅ, ସଶସ୍ତ୍ରବିପ୍ଳବୀ ମହାନାୟକ ରାସବିହାରୀ ଚିରଦିନ ପାଇଁ ଭାରତ ମାଟି ଛାଡ଼ି ଚାଲିଯାଉଛି ।

ଜାହାଜରେ ବସି ରାସବିହାରୀ ଶେଷଥର ପାଇଁ ମାତୃଭୂମିକୁ ପ୍ରଣାମକଲେ । ଶେଷଥର ପାଇଁ ଦେଖିନେଲେ ତାଙ୍କର ପ୍ରିୟ ମାତୃଭୂମିର ମାଟି, ପାଣି, ପବନ, ବୃକ୍ଷଲତା – ଯେଉଁ ପବନରେ ସେ ନିଶ୍ୱାସ ନେଇଛନ୍ତି, ଯେଉଁ ମାଟି, ଯେଉଁ ପାଣି ତାଙ୍କୁ ମଣିଷ କରିଛି । ଆଖିରୁ ଝରଝରହୋଇ ଲୋତକଧାରା ବହିଗଲା । ରାସବିହାରୀଙ୍କ ଅଲକ୍ଷ୍ୟରେ ପାଟିରୁ ଯେମିତି ବାହାରିପଡ଼ିଲା ''ମା' ବିଦାୟନେଉଛି । କ୍ଷମା ଦେ ମା', କ୍ଷମା ଦେ । ତୋତେ ବନ୍ଧନମୁକ୍ତ କରିବାକୁ ଆପ୍ରାଣ ଉଦ୍ୟମ କଲି ମା', ଘରଦ୍ୱାର ସୁଖ ସମ୍ଭୋଗ ସବୁ ପରିତ୍ୟାଗକରି ତୋର ମୁକ୍ତି-ସଂଗ୍ରାମରେ ଝାସଦେଲି ମା' । କିନ୍ତୁ ହେଲା ନାହିଁ,

ହୋଇପାରିଲାନାହିଁ, ସେଥିପାଇଁ ତୋର ଅମୃତ କ୍ରୋଡ଼ରୁ ବିଦାୟ ନେଉଛି । ଯେଉଁ ଦିନ ତୋତେ ସ୍ୱାଧୀନ କରିବି ସେହିଦିନ ଫେରିବି । ଫେରିବି ସ୍ୱାଧୀନ ଭାରତକୁ । ବ.....ନ୍ଦେ....ମା.....ତ....ର...ମ୍ ।''

ଭାରତ କ୍ରମେ ଦୂରେଇଗଲା ଧୀରେ ଧୀରେ । ନୀଳଚକ୍ରବାଳରେ ମିଶିଗଲା ରାସବିହାରୀଙ୍କ ପ୍ରିୟ ଜନ୍ମଭୂମି । ସେ ଚାଲିଲେ ସ୍ୱାଧୀନତା ଯୁଦ୍ଧର ଦ୍ୱିତୀୟ ଫ୍ରଣ୍ଟ ଖୋଲିବାକୁ ।

**ରାସବିହାରୀଙ୍କ ଅଗ୍ନିପରୀକ୍ଷା :**

ରାସବିହାରୀ ଜାପାନରେ ପହଞ୍ଚିଥିଲେ ୧୯୧୫ ଜୁନ୍ ୫ ତାରିଖରେ । ସେଠାରୁ ସେ ସାଂଘାଇ ଗଲେ ଚୀନ୍‌ର ମହାନ ବିପ୍ଳବୀ ସନୟାତ ସେନଙ୍କୁ ଭେଟିବାକୁ । ସନୟାତ ସେନ ସେ ଯୁଗରେ ଜଣେ ପ୍ରସିଦ୍ଧ ବିପ୍ଳବୀ ଥିଲେ ଏବଂ ଦଳିତମାନବ ଜାତିର ଏକ ମହାନ୍ ତ୍ରାଣକର୍ତ୍ତାରୂପେ ପରିଗଣିତ ହେଉଥିଲେ । ତାଙ୍କ ସହ ରାସବିହାରୀଙ୍କର ଦୀର୍ଘସମୟ ଧରି ଆଲୋଚନା ହେଲା । ସେ ଭାରତର ସଶସ୍ତ୍ର ବିପ୍ଳବ ସଂପର୍କରେ ଗଭୀର ଆଗ୍ରହ ପ୍ରକାଶ କରିଥିଲେ ଏବଂ ଯେଉଁ ପରିସ୍ଥିତରେ ରାସବିହାରୀ ଭାରତ ତ୍ୟାଗ କରିଥିଲେ ତାହା ଉଚିତ ହୋଇଛି ବୋଲି କହିଲେ । ଜାପାନ ହିଁ ତାଙ୍କ ପକ୍ଷରେ ନିରାପଦ ଆଶ୍ରୟ ବୋଲି ମତପ୍ରକାଶକଲେ ।

ସାଂଘାଇରୁ ଫେରି ରାସବିହାରୀ ଜାପାନରେ ଥିବା ଜର୍ମାନୀ ରାଷ୍ଟ୍ରଦୂତଙ୍କ ସହ ସଂପର୍କ ସ୍ଥାପନକଲେ । 'ମାଭେରିକ୍' ଜାହାଜ ଯେଉଁ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା ସେ ସଂପର୍କରେ ବିସ୍ତୃତ ଆଲୋଚନା ହେଲା । ରାସବିହାରୀ ଭାରତରେ ଯେଉଁ ସଶସ୍ତ୍ର ବିପ୍ଳବୀ ସାଥୀଙ୍କୁ ଛାଡ଼ିଆସିଥିଲେ ସେମାନଙ୍କ ପାଇଁ କିଛି ଅସ୍ତ୍ରଶସ୍ତ୍ର ପଠାଇବେ ବୋଲି ଇଚ୍ଛାକରିଥିଲେ । ଜର୍ମାନୀ ଦୂତାବାସ ଏହି ପ୍ରସ୍ତାବରେ ରାଜିହୋଇ କଲିକତାଗାମୀ ଏକ ଜାହାଜରେ କିଛି ଅସ୍ତ୍ରଶସ୍ତ୍ର ଭାରତକୁ ପଠାଇଥିଲେ, କିନ୍ତୁ ସିଙ୍ଗାପୁରଠାରେ ତାହା ଧରାପଡ଼ିଯାଇଥିଲା । ଏହାପରେହିଁ ଭାରତ ସରକାର ଜାଣିବାକୁ ପାଇଲେ ଯେ ରାସବିହାରୀ ଆଉ ଭାରତରେ ନାହାନ୍ତି, ସେ ଜାପାନକୁ ପଳାଇ ଯାଇଅଛନ୍ତି । ସଙ୍ଗେ ସଙ୍ଗେ ଜାପାନ ସରକାରଙ୍କୁ ଖବର ଗଲା – "ରାସବିହାରୀ ଜଣେ ଫେରାର ଆସାମୀ, ତାଙ୍କ ବିରୋଧରେ ଗଣ୍ଡା ଗଣ୍ଡା ୱାରେଣ୍ଟ ରହିଛି । ଆନ୍ତର୍ଜାତିକ ନିୟମାନୁସାରେ ତାଙ୍କୁ ଯଥାଶୀଘ୍ର ଭାରତ ସରକାର ହାତରେ ଅର୍ପଣକର ।''

ଜାପାନ ସରକାର ତଟସ୍ଥ ! କିଏ ଏହି ରାସବିହାରୀ ? କୁଆଡ଼େ ଥିଲା ? କୁଆଡ଼େ ଆସିଛି ! ଏମିତି କେତେ ଫେରାର ଆସାମୀ ବୁଲୁଥିବେ ! ମହାଶକ୍ତିଶାଳୀ ଇଂରେଜ ସରକାର ଏ ରାସବିହାରୀ ପାଇଁ ଏତେ ବ୍ୟସ୍ତ କାହିଁକି ? ଜାପାନ ସରକାର ସହ ଇଂରେଜମାନଙ୍କର ସେତେବେଳେ କୌଣସି ବୈରତା ନ ଥିଲା । ସୁତରାଂ କାଳ ବିଳମ୍ବ

ରାସବିହାରୀଙ୍କ ବିଜୟ ଯାତ୍ରା – ୪ର୍ଥ ପର୍ବରେ ଦ୍ରଷ୍ଟବ୍ୟ

ନକରି ରାସବିହାରୀଙ୍କୁ ଭାରତ ପଠାଇବାକୁ ଜାପାନ ସରକାର ସ୍ଥିରକରିଦେଲା । ରାସବିହାରୀ ଜାପାନରେ ପହଞ୍ଚିବା ଏବଂ ତାଙ୍କୁ ଭାରତ ପଠାଇଦେବାକୁ ଇଂରେଜମାନଙ୍କର ଦାବି ସଂବାଦ ଜାପାନର ସଂବାଦପତ୍ରମାନଙ୍କରେ ପ୍ରକାଶିତହେବାରୁ ଜାପାନରେ ଖୁବ୍ ଉତ୍ତେଜନା ସୃଷ୍ଟିହେଲା । ଏହା ଘଟିବ ବୋଲି ଯେ ରାସବିହାରୀ ଜାଣି ନ ଥିଲେ ତାହା ନୁହେଁ । ଜାପାନରେ ସେତେବେଳେ 'ବ୍ଲାକ୍ ଏଣ୍ଡ ଡ୍ରାଗନ' ପାର୍ଟି ଏକ ଉଗ୍ରପନ୍ଥୀ ଓ ପ୍ରଭାବଶାଳୀ ରାଜନୈତିକ ଦଳ ଥିଲା । ଜାପାନ ଜନସାଧାରଣଙ୍କ ଉପରେ ତାହାର ଖୁବ୍ ପ୍ରଭାବ ଥିଲା । ରାସବିହାରୀ ଉକ୍ତ ପାର୍ଟିର ସଭାପତି ମିତ୍ସୁ ତୋୟାମାଙ୍କୁ ସାକ୍ଷାତକରି ସବୁକଥା କହିଲେ ଏବଂ ତାଙ୍କୁ ସାହାଯ୍ୟ କରିବାକୁ ନିବେଦନ କଲେ । ତୋୟାମା ରାସବିହାରୀଙ୍କୁ ଖୁବ୍ ସମ୍ମାନ ଦେଖାଉଥିଲେ, କାରଣ ତାଙ୍କୁ ଭଲରୂପେ ଜଣାଥିଲା ଯେ ଭାରତରେ ଯେଉଁ ସଶସ୍ତ୍ର ମୁକ୍ତି-ସଂଗ୍ରାମର ଅଭିଯାନ ଚାଲିଛି, ରାସବିହାରୀ ତା'ର ମୁଖ୍ୟ ନାୟକ । ସୁତରାଂ ତାଙ୍କୁ ଯେକୌଣସିମତେ ବଞ୍ଚାଇବାକୁ ହେବ ବୋଲି ତୋୟାମା ମନେକଲେ । ସେ ସଙ୍ଗେ ସଙ୍ଗେ ଜାପାନ ସରକାରଙ୍କୁ ଲେଖିଲେ ଯେ ରାସବିହାରୀ କିଛି ସାଧାରଣ ଖୁଣୀ ଆସାମୀ ନୁହନ୍ତି ଯେ କହିବା ମାତ୍ରେ ଅନ୍ୟ ସରକାରଙ୍କ ହାତରେ ଟେକିଦେବାକୁ ହେବ । ସେ ଜଣେ ରାଜନୈତିକ କର୍ମୀ ଏବଂ ଜାପାନ ଗୋଟିଏ ସ୍ୱାଧୀନ ଦେଶ । ସୁତରାଂ ଏକ ପରାଧୀନ ଦେଶର ରାଜନୈତିକ ପ୍ରାର୍ଥୀଙ୍କୁ ଆଶ୍ରୟ ଦେବା ଜାପାନର ଏକ ନୈତିକ କର୍ତ୍ତବ୍ୟ ।

ଜାପାନ ସରକାର ପ୍ରଥମ ଅବସ୍ଥାରେ ନଛୋଡ଼ବନ୍ଧା ନୀତି ଧରିଲେ ଏବଂ ଯେକୌଣସିମତେ ରାସବିହାରୀଙ୍କୁ ଧରିବାକୁ ଯେମିତି ବଦ୍ଧପରିକର ହୋଇ ପଡ଼ିଲେ । କିନ୍ତୁ ଜାପାନ ସମ୍ବାଦପତ୍ରମାନଙ୍କରେ ସରକାରୀ ନୀତି ବିରୋଧରେ ତୀବ୍ର ସମାଲୋଚନା ହେଲା । ଏ ସବୁ ସତ୍ତ୍ୱେ ଜାପାନ ସରକାର ନିର୍ଦ୍ଦେଶ ଦେଲେ ଯେ ସେପ୍ଟେମ୍ବର ୩ ତାରିଖ ଭିତରେ ରାସବିହାରୀଙ୍କୁ ଜାପାନ ପରିତ୍ୟାଗ କରିବାକୁ ପଡ଼ିବ ।

'ବ୍ଲାକ୍ ଏଣ୍ଡ ଡ୍ରାଗନ ପାର୍ଟି' ଜାପାନ ଜନସାଧାରଣଙ୍କ ଶତଚେଷ୍ଟା ସତ୍ତ୍ୱେ ସରକାର ସେ ନିର୍ଦ୍ଦେଶ ପ୍ରତ୍ୟାହାର କଲେନାହିଁ । ରାସବିହାରୀ ଯେତେବେଳେ ଏହିଭଳି ବିପଜ୍ଜନକ ଅବସ୍ଥାରେ ପଡ଼ିଥା'ନ୍ତି, ଜାପାନର ଏକ ରୁଟି ବ୍ୟବସାୟୀ ଦମ୍ପତି ତାଙ୍କୁ ସାହାଯ୍ୟ କରିବାକୁ ଆଗେଇଆସିଲେ । ବ୍ୟବସାୟୀ ଦମ୍ପତି କେବଳ ମାନବପ୍ରେମୀ ବା ଭାରତବନ୍ଧୁ ନ ଥିଲେ, ସେ ରାସବିହାରୀଙ୍କ ଅଲୌକିକ ଶୌର୍ଯ୍ୟ ବୀର୍ଯ୍ୟ ସମ୍ପନ୍ନ କୃତିରେ ଏକାବେଳେ ମୁଗ୍ଧ ଓ ଚକିତ । ସେତେବେଳେ ଜାପାନ ସଂବାଦପତ୍ର ପୃଷ୍ଠାରେ ଭରିଯାଉଥାଏ ରାସବିହାରୀଙ୍କଦ୍ୱାରା ଭାରତରେ ଅଭିନୀତ ନାନା ଦୁଃସାହସିକ ଅଭିଯାନର ଅଭୁଲା କାହାଣୀ ! ସେପ୍ଟେମ୍ବର ୩ ତାରିଖ ପରେ ଜାପାନ ସରକାର ରାସବିହାରୀଙ୍କର ଆଉ କୌଣସି ପତ୍ତା ପାଇଲେ ନାହିଁ ।

ରାସବିହାରୀ ସୋମା ଦମ୍ପତିଙ୍କ ଆଶ୍ରୟରେ ନିରାପଦରେ ଥାଆନ୍ତି । କିନ୍ତୁ ସେ ଚାହିଁଲେ ନାହିଁ ଅଧିକ ଦିନ ସେମିତି ଆତ୍ମଗୋପନ କରି ରହିବାପାଇଁ । ନିଷ୍କ୍ରିୟ ହୋଇ ଲୁଚିରହିବାକୁ ସେ ମାତୃଭୂମି ଭାରତ ତ୍ୟାଗ କରି ଆସି ନ ଥିଲେ । ତାହା ସେ ନିଜ ଦେଶରେ କରିପାରିଥା'ନ୍ତେ ! ସୋମା ଦମ୍ପତି ମଧ ତାଙ୍କୁ ଏମିତି ନିଷ୍କ୍ରିୟ କରି ରଖିବାକୁ ପସନ୍ଦ କରି ନ ଥିଲେ । ତାଙ୍କୁ କେମିତି ପଦାକୁ ବାହାରକରିବେ ଏବଂ ସେ ପୁଣି କେମିତି ଭାରତରେ ସଶସ୍ତ୍ର ବିପ୍ଳବରେ ସକ୍ରିୟ ଅଂଶ ଗ୍ରହଣକରିପାରବେ, ତାହା ସୋମା ଦମ୍ପତିଙ୍କର ପକ୍ଷରେ ଏକ ଚିନ୍ତାର ବିଷୟ ହୋଇପଡ଼ିଲା । ଭାରତକୁ ଫେରି ଯିବାର ପ୍ରଶ୍ନ ନ ଥିଲା ଏବଂ କୌଣସି ପ୍ରକାର ଆଇନଗତ ନିରାପତ୍ତା ବିନା ଜାପାନରେ ପ୍ରକାଶ୍ୟରେ ରହିବା ମଧ ସମ୍ଭବ ନ ଥିଲା । ବହୁ ବିଚାର ଆଲୋଚନା ପରେ ଦେଖାଗଲା ଯେ ଜାପାନରେ ନିରାପଦରେ ରହିବାକୁ ହେଲେ ତାଙ୍କୁ ଜାପାନର ଆଇନସମ୍ମତ ନାଗରିକ ହେବାକୁ ପଡ଼ିବ । ଜାପାନରେ ରହି ସେ ନିର୍ବିଘ୍ନରେ ବର୍ମା, ସିଙ୍ଗାପୁର ଓ ଭାରତ ପ୍ରଭୃତି ପୂର୍ବଏସିଆ ରାଜ୍ୟରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୋଧରେ ସଂଗ୍ରାମ ପରିଚାଳନା କରିପାରିବେ । କିନ୍ତୁ ଜାପାନରେ ନାଗରିକତ୍ୱ ଲାଭ କରିବାକୁ ହେଲେ ତାଙ୍କୁ ଜାପାନରେ ବିବାହ କରିବାକୁ ପଡ଼ିବ ।

ରାସବିହାରୀ ଏକ ବିଷମ ସମସ୍ୟାରେ ପଡ଼ିଲେ । ସେ କିଛି ଠିକ୍ କରି ପାରିଲେ ନାହିଁ । ଭାରତ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ ସେ ବିବାହ କରିବେ ନାହିଁ ବୋଲି ପିଲାଦିନୁ ଯେଉଁ ପ୍ରତିଜ୍ଞା କରିଥିଲେ ସେ ପ୍ରତିଜ୍ଞା ସେ ଭଙ୍ଗ କରିବେ କେମିତି ? ଶ୍ରୀମତୀ ସୋମା ତାଙ୍କୁ ବୁଝାଇଲେ, ‘‘ଦେଖ ରାସବିହାରୀ, ଭାରତକୁ ସ୍ୱାଧୀନ କରିବାକୁ ତୁମକୁ ବିବାହ ହିଁ କରିବାକୁ ପଡ଼ିବ । ତୁମେ ବୁଝୁଛ ଯେ ଏଭଳି ଅବସ୍ଥାରେ ତୁମେ ଭାରତକୁ ଯାଇ କିଛି କରିପାରିବନାହିଁ । ତୁମର ଅମୂଲ୍ୟ ଜୀବନକୁ ଇଂରେଜର ଫାଶୀ ମଞ୍ଚରେ ବିସର୍ଜନ ଦେଇ ତୁମେ କ'ଣ ଭାରତକୁ ସ୍ୱାଧୀନ କରିପାରିବ ? ବରଂ ତୁମେ ବଞ୍ଚିରହିଲେ ଯାଇ ତାହା କରିପାରିବ । ତୁମର ଜୀବନହିଁ ବର୍ତ୍ତମାନ ସବୁଠାରୁ ମୂଲ୍ୟବାନ୍ । ଟିକେ ଗଭୀର ଭାବେ ଚିନ୍ତାକର ରାସବିହାରୀ ।’’

ଦୀର୍ଘଦିନ ବିଚାରକରି ରାସବିହାରୀ ସ୍ଥିରକଲେ ଯେ ତାଙ୍କୁ ବିବାହ କରିବାକୁ ପଡ଼ିବ । ରାସବିହାରୀ ରାଜିହେଲେ ସିନା କିନ୍ତୁ ତାଙ୍କଭଳି ଜଣେ ନିଃସ୍ୱ, ଫକିର, ଫେରାର ଓ ପ୍ରବାସୀଙ୍କୁ କେଉଁ ଝିଅ ବା ବିବାହ କରିବାକୁ ରାଜିହେବ ? କେଉଁ ବାପ -ମା ବା ତା'ର କନ୍ୟାକୁ ଏଭଳି ଗଣ୍ଡା ଗଣ୍ଡା ଓ୍ୱାରେଣ୍ଟ ଓ ଫାଶୀ ଦଉଡ଼ି ମୁଣ୍ଡ ଉପରେ ଝୁଲୁଥିବା ଏକ ବ୍ୟକ୍ତିକୁ ସମର୍ପି ଦେବ ?

ଶ୍ରୀମତୀ ସୋମା ନିଜର ଏକମାତ୍ର କନ୍ୟା ତୋସିକୋଙ୍କୁ ଏହି କଠିନ କାର୍ଯ୍ୟର ଭାର ନେଇପାରିବ କି ନା ପଚାରିଲେ । ତୋସିକୋ ! କୋଟିପତି ସୋମା ଦମ୍ପତିଙ୍କର ଏକମାତ୍ର ସନ୍ତାନ, ସୁନ୍ଦରୀ, ଶିକ୍ଷିତା ତୋସିକୋ ! ଅପରପକ୍ଷେ ରାସବିହାରୀ ଫେରାର,

ଦେଶତ୍ୟାଗୀ, ଆଶ୍ରୟପ୍ରାର୍ଥୀ, ଦାଣ୍ଡର ଭିକାରି ! କ'ଣ ଭାବୁଛନ୍ତି ସେ ? କ'ଣ ରାସବିହାରୀଙ୍କର ଏହା ଏକମାତ୍ର ପରିଚୟ ? ନା, ରାସବିହାରୀ ଖାଲି ଫେରାର ନୁହଁନ୍ତି - ସେ ଯୋଦ୍ଧା, ସେ ବିପ୍ଳବୀ, ମହାନ୍ ଭାରତବର୍ଷର ସେ ମହାନ୍ ନେତା ! ବୁଦ୍ଧିମାନ୍ ନିର୍ଭୀକ ରାସବିହାରୀ ବ୍ରିଟିଶ୍ ସିଂହର ଆତଙ୍କ, ଭାରତର କୋଟି କୋଟି ଜନତାର ସେ ପ୍ରିୟ ନେତା !

ଶୋକ ଗଦ୍‌ଗଦ କଣ୍ଠରେ ସେ କହିଲେ— 'ମା' ମୁଁ ଏତେ ବଡ଼ ଗୁରୁଦାୟିତ୍ୱ ବହନ କରିପାରିବି ?

ମହୀୟସୀ ସୋମା ଆଶ୍ୱାସନା ଦେଇ କହିଲେ, ''କରିବାକୁ ହେବ ତୋତେ । ଆମକୁ ରାସବିହାରୀଙ୍କୁ ବଞ୍ଚାଇବାକୁହେବ । ଏହା ତଥାଗତ ବୁଦ୍ଧଙ୍କର ହୁଏତ ଇଚ୍ଛା । ସେ ମଙ୍ଗଳମୟ, ମଣିଷ ଜାତିର କଲ୍ୟାଣ ପାଇଁ, ଭାରତର ମଙ୍ଗଳ ପାଇଁ ତୋତେ ଏହି ଦାୟିତ୍ୱ ମୁଣ୍ଡାଇବାକୁ ହେବ ମା' ।''

ଫକିର ରାସବିହାରୀଙ୍କ ସହ କୋଟିପତି ଦୁଲାଲୀ ତୋସିକୋଙ୍କର ବିବାହ ହେଲା । ସେ ଜାପାନର ନାଗରିକ ହେଲେ । ତାଙ୍କ ନାମରେ ଥିବା ସମସ୍ତ ଓ୍ୱାରଣ୍ଟ ମାଡ଼ ଖାଇଗଲା । ନିଜର ପ୍ରିୟ ଜନ୍ମଭୂମିଠାରୁ ହଜାର ହଜାର ମାଇଲ ଦୂରରେ, ଆତ୍ମଗୋପନ କରିଥିବା ଅବସ୍ଥାରେ, ଆଶ୍ରୟପ୍ରାର୍ଥୀ ଜୀବନରେ ସେ ବିବାହକଲେ । ବିବାହ ପାଇଁ ବିବାହ କଲେ, ସାଂସାରିକ ସୁଖ ପାଇଁ ନୁହେଁ, ମଣିଷ ଜାତିର କଲ୍ୟାଣ ପାଇଁ ସେ ବିବାହ କଲେ । ଭାରତବର୍ଷର ସ୍ୱାଧୀନତା ନ ମିଳିବାଯାଏ ବିବାହ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିବା ରାସବିହାରୀ ଭାରତବର୍ଷର ସ୍ୱାଧୀନତା ପାଇଁ ବିବାହ କଲେ ଏବଂ ସେହି କାରଣରୁହିଁ ଏ ବିବାହର ଏକ ଐତିହାସିକ ଗୁରୁତ୍ୱ ରହିଛି । ଏହି ବିବାହ ଯୋଗୁଁ ରାସବିହାରୀଙ୍କର ଜୀବନ ରକ୍ଷାହୋଇଥିଲା । ଭାରତର ସ୍ୱାଧୀନତାକୁ ତ୍ୱରାନ୍ୱିତ କରିବାକୁ ରାସବିହାରୀ ଦକ୍ଷିଣ-ପୂର୍ବ ଏସିଆରେ ଯେଉଁ ବିରାଟ ଗଣ-ଆନ୍ଦୋଳନ ସୃଷ୍ଟି କରିଥିଲେ ଏବଂ ଯାହା ଶେଷକୁ 'ଆଜାଦହିନ୍ଦ୍' ଫୌଜରେ ରୂପାନ୍ତରିତ ହୋଇ ବ୍ରିଟିଶ୍ ଭାରତ ଉପରେ ସଶସ୍ତ୍ର ଆକ୍ରମଣରେ ପରିଣତ ହେଲା, ତାହା ସଶସ୍ତ୍ର ମୁକ୍ତି-ସଂଗ୍ରାମ ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ।

ରାସବିହାରୀଙ୍କର ପରବର୍ତ୍ତୀ ତିରିଶବର୍ଷର ଜୀବନ-ଇତିହାସ ଦୂର ପ୍ରାଚ୍ୟରେ ଭାରତୀୟ ବିପ୍ଳବ ପ୍ରଚେଷ୍ଟାର ଇତିହାସ, ଇଣ୍ଡିଆନ ଇଣ୍ଡିପେଣ୍ଡନସ୍ ଲିଗ୍ ଓ ଆଜାଦହିନ୍ଦ୍ ଫୌଜ ଗଠନ ଓ ପୁଣି ତା'ର ନେତୃତ୍ୱକୁ ନେତାଜୀ ସୁଭାଷଙ୍କ ହାତରେ ସମର୍ପଣ ! କେତେ ସାଫଲ୍ୟ ! କେତେ କୃତିତ୍ୱ !

ମାତ୍ର ଆଠବର୍ଷ ପରେ ରାସବିହାରୀଙ୍କ ପତ୍ନୀ ବିୟୋଗ ହେବା ପରେ ତାଙ୍କ ଜୀବନର କ୍ଷୀଣ ସାଂସାରିକ ବଂଧନଟି ମଧ୍ୟ ଛିଡ଼ିଗଲା । ସେ ହେଲେ ସଂପୂର୍ଣ୍ଣ ମୁକ୍ତ ଓ ସ୍ୱାଧୀନ । କିନ୍ତୁ ଏହା ଫଳରେ ରାସବିହାରୀଙ୍କର ବହୁ ଅସୁବିଧା ହେବ ବୋଲି ଆଶଙ୍କା କରି

ସ୍ନେହମୟୀ ଶାଶୁ ଶ୍ରୀମତୀ ସୋମା ତାଙ୍କୁ ପୁନର୍ବାର ବିବାହ କରିବାକୁ ପବର୍ତ୍ତାଇବାକୁ ଉଦ୍ୟମ କରିଥିଲେ । ରାସବିହାରୀ ନମ୍ରତା ସହକାରେ ତାଙ୍କୁ ଉତ୍ତର ଦେଇଥିଲେ — "I am happy. Tosiko is always with me as she was during my lovely eight years. Moreover, my life is not mine. It is offered to my native country. I was and I am satisfied to have eight years with Tosiko. That is more than enough." (ମୁଁ ଖୁସୀରେ ଅଛି । ତୋସିକୋ ଗତ ଆଠଗୋଟି ସୁଖମୟ ବର୍ଷରେ ଯେମିତି ମୋ' ପାଖରେ ଥିଲା, ଚିରଦିନ ସେହିଭଳି ରହିବ । ଅଧିକନ୍ତୁ, ମୋ' ଜୀବନ ମୋ'ର ନୁହେଁ, ଏହା ମୋ'ର ମାତୃଭୂମି ପାଇଁ ନିବେଦିତ । ଯେଉଁ ଆଠଟି ବର୍ଷ ତୋସିକୋ ସହ ମୋ'ର କଟିଛି, ସେଥିରେ ମୁଁ ସେତେବେଳେ ଖୁସୀଥିଲି ବର୍ତ୍ତମାନ ବି ଖୁସୀ ଅଛି । ତାହାହିଁ ଯଥେଷ୍ଟ ।)

❑ ❑ ❑

## ଅଧ୍ୟାୟ - ସତର

# ଦରିଆପାରିର ବିପ୍ଲବୀ

ଦେଶ ଭିତରେ ହେଉଥିବା ସଶସ୍ତ୍ର ବିପ୍ଲବ ସହ ଦରିଆପାରିର ବିପ୍ଲବ ଅଙ୍ଗାଙ୍ଗୀ-ଭାବେ ଜଡ଼ିତ ହୋଇଥିବାରୁ ସେ ସଂପର୍କରେ ସମ୍ୟକ୍ ଆଲୋଚନା କଲେ ତାହା ଅପ୍ରାସଂଗିକ ହେବନାହିଁ । ବିଶେଷତଃ ଯେଉଁ ପ୍ରାତଃସ୍ମରଣୀୟ ପ୍ରବାସୀ ଭାରତୀୟମାନେ ସଶସ୍ତ୍ର ବିପ୍ଳବର ବାଟକୁ ବାଛିନେଇ ସ୍ୱାଧୀନତା ଯୁଦ୍ଧରେ ଆତ୍ମ ବିସର୍ଜନ କରିଥିଲେ ସେମାନଙ୍କ ସଂପର୍କରେ ଆଲୋଚନା କରିବା ବାଞ୍ଛନୀୟ ।

ଭାରତ ବାହାରେ ବିଭିନ୍ନ ଦେଶରେ ଥିବା ଭାରତୀୟ ବିପ୍ଲବୀମାନେ ୧୯୧୧ରୁ ୧୯୧୮ ଯାଏ ଏବଂ ଖାସ୍ କରି ୧୯୧୪ରେ ଦେଶ ଭିତରେ ଚାଲିଥିବା ସଶସ୍ତ୍ର ବିପ୍ଲବକୁ ନାନା ଉପାୟରେ ସାହାଯ୍ୟ କରିଅଛନ୍ତି । ସେହି ଦେଶପ୍ରେମୀମାନଙ୍କ ଭିତରୁ ବଙ୍ଗଳାର ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ, ଧୀରେନ ସରକାର, ପ୍ରମଥ ଦତ୍ତ, ଡାକ୍ତର ଭୂପେନ ଦତ୍ତ, ତାରକ ଦାସ, ରଜବ ଅଲ୍ଲୀ, ହେରମ୍ବ ଗୁପ୍ତ, ବୀରେନ ଦାସଗୁପ୍ତ, ହେମେନ୍ଦ୍ର କିଶୋର ରକ୍ଷିତ, ରାସବିହାରୀ, ମାନବେନ୍ଦ୍ର ରାୟ, ଧନଗୋପାଳ ମୁଖାର୍ଜି, ଶୈଳେନ ଘୋଷ, ସୁରେନ କର୍, ସତ୍ୟେନ ସେନ, ବୀରେନ ଲାହିଡ଼ି, ସୁରେନ ବସୁ, ଅବନୀ ମୁଖାର୍ଜି, ସୁଧୀର ବସୁ, ମହାରାଷ୍ଟ୍ର ଓ ୟୁ. ପି.ର ଡାକ୍ତର ବିଷ୍ଣୁ ସୁଖଠଣଙ୍କର, ପାଣ୍ଡୁରଙ୍ଗ କାନୋକଜୀ, ମହମ୍ମଦ ବରକତୁଲ୍ଲା, ଖାନଚାନ୍ଦ ବର୍ମା ରାଜା ମହେନ୍ଦ୍ର ପ୍ରତାପ, ଲାଲା ଲଜପତ ରାୟ, ଶିବ ପ୍ରସାଦ ଗୁପ୍ତ, ଜାଫର ଅଲ୍ଲୀ ଖାଁ, ହୃଷୀକେଶ ଲଟୋ, ଡାକ୍ତର ହାଫିଜ, ହୋରମଜୀ ଫାରସାପ, ଚଞ୍ଚୈୟା, ଅବଦୁଲ ୱାହେବ, ହରନାମ ସିଂ, ଡାକ୍ତର ମନସୁର ଅଲ୍ଲୀ, ଚମ୍ପକ ବରନ ପିଲ୍ଲାଇ (ତ୍ରିଭାଙ୍କୁଡ଼), ରାମଚନ୍ଦ୍ର, ଭଗବାନ୍ ସିଂ, ହରଦୟାଲ, ସର୍ଦ୍ଦାର ଭୀମରାଓ ସିଂ ପ୍ରଭୃତିଙ୍କ ନାମ ଚିରସ୍ମରଣୀୟ । ପ୍ରତ୍ୟେକ ବିପ୍ଲବୀ ଦେଶାତ୍ମବୋଧର ଉଜ୍ଜ୍ୱଳ ଆଲୋକରେ ସତତ ଭାସ୍ୱର । ମାତୃଭୂମିର ବନ୍ଧନ ମୁକ୍ତି-ଆନ୍ଦୋଳନରେ ସେମାନଙ୍କର ଅବଦାନର ପଟାନ୍ତର ନାହିଁ । କିଭଳି ପ୍ରତିକୂଳ ପରିସ୍ଥିତି ଭିତରେ ମାତୃଭୂମିଠାରୁ ହଜାର ହଜାର ମାଇଲ ଦୂରରେ ଶତ୍ରୁ ରାଜ୍ୟରେ ମଧ୍ୟ ସେମାନେ ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିଲେ ତା' ଆଜିକାଲିକାର ଲୋକେ କଳ୍ପନା ସୁଦ୍ଧା କରିପାରିବେ ନାହିଁ ।

**ଏମ୍. ଏନ୍. ରାୟ :**

ପ୍ରାତଃସ୍ମରଣୀୟ ଏହିସବୁ ବିପ୍ଳବୀମାନଙ୍କ ମଧ୍ୟରୁ ଇଣ୍ଡୋ-ଜର୍ମାନୀ ଷଡ଼ଯନ୍ତ୍ରର ମୁଖ୍ୟ କାରପଟଦାର ଏମ୍.ଏନ୍.ରାୟ ଅନ୍ୟତମ । ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ଏହି ବିଖ୍ୟାତ ନେତା ସନ୍ତ୍ରାସବାଦ ରାଜନୀତିରେ ଗଭୀର ବିଶ୍ୱାସ କରୁଥିଲେ ବି ଅନ୍ୟାନ୍ୟ ଭାରତୀୟ କମ୍ୟୁନିଷ୍ଟଙ୍କ ଭଳି ପ୍ରଥମାବସ୍ଥାରେ କଂଗ୍ରେସ ଦଳ ସହ ସଂପୃକ୍ତ ଥିଲେ । ନେହେରୁ ଉତ୍ତରପ୍ରଦେଶ କଂଗ୍ରେସର ସଭାପତି ଥିବାବେଳେହିଁ ଶ୍ରୀ ରାୟ କଂଗ୍ରେସର କିଷାନ ଆନ୍ଦୋଳନରେ ଜଡ଼ିତ ହୋଇଥିଲେ । କିନ୍ତୁ ଜର୍ମାନୀରେ ତାଙ୍କର ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୋଲି ମନେକରାଯାଏ । ୧୯୧୪ରେ ଜର୍ମାନୀରୁ ଭାରତୀୟ ବିପ୍ଳବୀମାନଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଇବାର ଯେଉଁ ବ୍ୟବସ୍ଥା ହୋଇଥିଲା ତା' ପଛରେ ଥିଲା ଏମ୍. ଏନ୍. ରାୟଙ୍କର ଐକାନ୍ତିକ ପ୍ରଚେଷ୍ଟା । ମାଭେରିକ୍ ଜାହାଜ ଧରାପଡ଼ି ନ ଥିଲେ ୧୯୪୭ ମସିହାର ୩୦ ବର୍ଷ ପୂର୍ବରୁ ଭାରତକୁ ସ୍ୱାଧୀନତା ମିଳିଥା'ନ୍ତା । ୧୯୨୦ ମସିହାରେ ସୋଭିଏଟ୍ ଋଷର ସହାୟତାରେ ସେ ତାହା କରିବେ ବୋଲି କଳ୍ପନା କରିଥିଲେ । ତାଙ୍କର ବିଚାର ଥିଲା ଯେ ଭାରତର ସଶସ୍ତ୍ର ବିପ୍ଳବ ବିଷୟ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ଅଙ୍ଗୀଭୂତ ହେବା ଆବଶ୍ୟକ ଏବଂ ସେହି ଉଦ୍ଦେଶ୍ୟରେ ହିଁ ସେ ମସ୍କୋ ଯାଇଥିଲେ । କିନ୍ତୁ ତାଙ୍କର ସହକର୍ମୀମାନେ ଏଥିରେ ରାଜି ହେଲେ ନାହିଁ । ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନ ଓ ଆଦର୍ଶର ପ୍ରତିଷ୍ଠା ପାଇଁ ତାଙ୍କର ଭୂମିକା ଓ ଅବଦାନ ଅନସ୍ୱୀକାର୍ଯ୍ୟ । ଲେନିନ୍ ଓ ମାଓସେତୁଙ୍ଗଙ୍କର ସେ ଜଣେ ଘନିଷ୍ଠ ସହକର୍ମୀ ଥିଲେ ।

ଭାରତର ଗୋପନ ଆନ୍ଦୋଳନ ବେଳେ ପୁଲିସ ଦୃଷ୍ଟିକୁ ଏଡାଇବା ପାଇଁ ମାନବେନ୍ଦ୍ରଙ୍କୁ ବେଳେ ବେଳେ ମାର୍ଟିନ୍ ଓ ବେଳେ ବେଳେ ନରେନ୍ଦ୍ର ଭଟ୍ଟାଚାର୍ଯ୍ୟ ନାମକ ଛଦ୍ମ ନାମ ଗ୍ରହଣ କରିବାକୁ ପଡ଼ିଥିଲା । ସଶସ୍ତ୍ର ବିପ୍ଳବ ଇତିହାସରେ ତାଙ୍କର ନାମ ଚିରସ୍ମରଣୀୟ ।

**ମାଡାମ୍ କାମା :**

କାଥିଆବାଡ଼ର ପାର୍ସୀ ମହିଳା ମାଡାମ ଭିକାଜି ରୁସ୍ତମ କାମାଙ୍କର ପ୍ରଥମ କର୍ମକ୍ଷେତ୍ର ଇଂଲାଣ୍ଡ । ଧିଂଗ୍ରାଙ୍କ ଫାଶୀ ପରେ ଭାରତୀୟ ବିପ୍ଳବୀମାନଙ୍କ ଉପରେ ଇଂଲଣ୍ଡର କଠୋର ବ୍ୟବହାର ହେବାରୁ ମାଡାମ କାମା ତାଙ୍କର କର୍ମକ୍ଷେତ୍ର ପ୍ୟାରିସ ସହରକୁ ସ୍ଥାନାନ୍ତରିତ କରିଥିଲେ । ଶ୍ୟାମଜୀ କୃଷ୍ଣ ବର୍ମା ମଧ୍ୟ ତାଙ୍କ ପରେ ପରେ ସେଠାରେ ରହିଲେ । ସେହିଦିନଠାରୁ ବହୁଦିନଯାଏ ୟୁରୋପରେ ଥିବା ଭାରତୀୟ ବିପ୍ଳବୀମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ ଥିଲା ମାଡାମ କାମାଙ୍କର ବାସଭବନ । ବୀର ସଭରକରଙ୍କୁ ଇଂରେଜମାନଙ୍କ ହାତରେ ନ ଦେବା ପାଇଁ ସେ ଫ୍ରାନ୍ସ ସରକାର ସହ ସେଠା ବିଚାରାଳୟରେ ଯେଉଁ ଲଢ଼େଇ କରିଥିଲେ ତାହା ଇତିହାସରେ ଏକ ଉଲ୍ଲେଖ-ଯୋଗ୍ୟ ବିଷୟ । ୧୯୧୧ ମସିହାରେ ମାନ୍ଦ୍ରାଜର ତେନିଭିଲି ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ରେଳଡ଼ବାରେ

ହତ୍ୟା କରାଯିବା ପରେ ବନ୍ଦେ ମାତରମ୍ ପତ୍ରିକାରେ ସେ ସଂପର୍କରେ ଯେଉଁ ଲେଖାଟି ପ୍ରକାଶିତ ହୋଇଥିଲା ତାହା ମାଡାମ କାମାଙ୍କଦ୍ୱାରା ଲିଖିତ ବୋଲି ସେଡିସନ କମିଟି ଅଭିଯୋଗ କରିଥିଲେ । ସେହି ଲେଖାଟିରୁ ମାଡାମ କାମାଙ୍କର ସଶସ୍ତ୍ର ବିପ୍ଳବ ପ୍ରତି ଅଗାଧ ବିଶ୍ୱାସ ଥିବାର ପ୍ରମାଣିତ ହୁଏ ।

"In a meeting or in a bungalow, on the railway or in a carriage, in a shop or in a church, in a garden or in a fair, wherever an opportunity comes, Englishmen ought to be killed. No distinction should be made between officer or private people. The great Nana Saheb understood this and our friends the Bengalies have also begun to understand. Blest be their effort–long be their arm."

୧୯୩୫ରେ ଏହି ମହନୀୟା ମହିଳା ଦେହରକ୍ଷାକଲେ ।

**ବୀରେନ ଚଟ୍ଟୋପାଧ୍ୟାୟ :**

ଅଘୋରନାଥଙ୍କ ପୁଅ ଏବଂ ବରେଣ୍ୟା ଭାରତ-କନ୍ୟା ସରୋଜିନୀ ନାଇଡୁଙ୍କ ସାନଭାଇ ବୀରେନ୍ଦ୍ର ପିଲାଦିନୁ ବୈପ୍ଳବିକ ପ୍ରେରଣାରେ ଅନୁପ୍ରାଣିତ ହୋଇଥିଲେ । ସୁତରାଂ ବି.ଏ. ପାସ୍ କରି ଯେତେବେଳେ ବାରିଷ୍ଟରୀ ପଢ଼ିବାକୁ ସେ ବିଲାତ ଗଲେ ସେତେବେଳକୁ ସେଠାରେ ଭାରତୀୟ ଛାତ୍ରମାନଙ୍କର ବୈପ୍ଳବିକ ପ୍ରଚେଷ୍ଟା ଆରମ୍ଭ ହୋଇଯାଇଥିଲା । ଧିଂଗ୍ରାଙ୍କଦ୍ୱାରା କର୍ଜନ ଉଇଲିଙ୍କ ହତ୍ୟା ସପକ୍ଷ ଓ ବିପକ୍ଷରେ ସମ୍ବାଦପତ୍ରରେ ତୁମୁଳ ଆଲୋଡ଼ନ ସୃଷ୍ଟିହୋଇଥାଏ । ବୀରେନ୍ଦ୍ର ସେ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ତାଙ୍କର ଗୋଟିଏ ବିବୃତି ବହୁ ବିବାଦ ସୃଷ୍ଟି କରିଥିଲା । କିନ୍ତୁ ତାଙ୍କର ନାମ ଚାରିଆଡ଼େ ବ୍ୟାପିଗଲା । ଶ୍ୟାମାଜୀ କୃଷ୍ଣବର୍ମାଙ୍କ ସଂପାଦିତ– "The Indian Sociologist"ର ସେ ସହ-ସମ୍ପାଦକ ଥିଲେ । ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନ ସହ ସେ ଜଡ଼ିତଥିବାରୁ ମାଡାମ କାମାଙ୍କ ସହ ତାଙ୍କୁ ମସ୍କୋ ଯିବାକୁ ହୋଇଥିଲା । ପରେ ବର୍ଲିନରେ ଗଠିତ ଭାରତୀୟ ସ୍ୱାଧୀନତା ଲିଗ୍‌ର ସେ ସମ୍ପାଦକ ହେଲେ ଏବଂ ଇଣ୍ଡୋଜର୍ମାନୀ ଷଡ଼ଯନ୍ତ୍ରର ସେ ଜଣେ ମୁଖ୍ୟ ପରିଚାଳକ ଥିଲେ । ୧୯୪୧ରେ ମସ୍କୋରେ ସେ ପ୍ରାଣତ୍ୟାଗ କରିଥିଲେ ।

**ମହମ୍ମଦ ବରକତଉଲ୍ଲା :**

ଆଜନ୍ମ ବିପ୍ଳବୀ ବରକତଉଲ୍ଲାଙ୍କର ଜନ୍ମ ମଧ୍ୟପ୍ରଦେଶର ଭୋପାଳରେ ହୋଇଥିଲେ ମଧ୍ୟ ତାଙ୍କର ଅଧିକାଂଶ ସମୟ କଟିଥିଲା ବିଦେଶ ଭୂଇଁରେ । ଭାରତରେ ଚାଲିଥିବା ସଶସ୍ତ୍ର ବିପ୍ଳବ ପାଇଁ ବିଦେଶରୁ କେମିତି ଓ କେଉଁଠୁ ସାହାଯ୍ୟ ଆସିପାରେ ସେହି ବ୍ୟବସ୍ଥା କରିବାରେ ତାଙ୍କ ଜୀବନର ଅଧିକାଂଶ ସମୟ କଟିଥିଲା । ୧୯୧୫ରେ ଯେତେବେଳେ ଭାରତରେ ବ୍ୟାପକ ବିପ୍ଳବ ପ୍ରଚେଷ୍ଟା ଚାଲିଥିଲା, ସେତେବେଳେ ସେହି ଆନ୍ଦୋଳନକୁ ସଫଳ କରିବା ପାଇଁ କାବୁଲରେ ଗଠିତ ହେଲା ବିପ୍ଳବୀ ଭାରତ

ସରକାର, ତା'ର ପ୍ରଧାନମନ୍ତ୍ରୀ ହୋଇଥିଲେ ମହମ୍ମଦ ବରକତଉଲ୍ଲା । କିନ୍ତୁ ଭାରତରେ ସେ ବିପ୍ଳବ ପ୍ରଚେଷ୍ଟା ବ୍ୟର୍ଥ ହେବାରୁ ବରକତଉଲ୍ଲା ଜାପାନ ଯାଇଥିଲେ । ସେତେବେଳେ ଭାରତରେ ହିନ୍ଦୁ ଓ ମୁସଲିମ୍ ସାଂପ୍ରଦାୟିକବାଦୀମାନେ ସ୍ୱାଧୀନତା ଆନ୍ଦୋଳନରେ ବିଭେଦ ସୃଷ୍ଟିକରିବାରୁ ସେ ତା' ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ ଏବଂ 'ନିଉ ମୁସଲିମ୍' ନାମକ ସମ୍ବାଦପତ୍ର ପ୍ରକାଶକରି ସେଥିରେ ଏହି ବିଭେଦ ନୀତି ବିରୋଧରେ ଅନବରତ ପ୍ରଚାର କରୁଥିଲେ । କିନ୍ତୁ ଜାପାନ ସରକାର ତାଙ୍କୁ ସେଠାରେ ରଖାଇ ନ ଦେବାରୁ ସେଠାରୁ ସେ ଆମେରିକା ଓ ପୁଣି ବର୍ଲିନ ଫେରିଗଲେ । ୧୯୨୭ ମସିହାରେ ସାନଫ୍ରାନସିସ୍‌କୋରେ ସେ ଦେହତ୍ୟାଗ କରିବା ପର୍ଯ୍ୟନ୍ତ ଭାରତରେ ସଶସ୍ତ୍ର ବିପ୍ଳବକୁ ସବୁ ପ୍ରକାର ସାହାଯ୍ୟ କରିଥିଲେ ।

**ରାଜା ମହେନ୍ଦ୍ର ପ୍ରତାପ :**

ରାଜା ମହେନ୍ଦ୍ର ପ୍ରତାପ ଉତ୍ତର ପ୍ରଦେଶର ଆଲିଗଡ଼ ନିକଟସ୍ଥ ସୁରସାଲ ଗ୍ରାମରେ ଜନ୍ମ ହୋଇଥିଲେ ୧୮୮୬ ମସିହାରେ । ମୋଗଲ ସମ୍ରାଟମାନଙ୍କଠାରୁ ତାଙ୍କ ପରିବାର ସନନ୍ଦ ପାଇଥିଲେ । କିନ୍ତୁ ପରେ ଇଂରେଜମାନଙ୍କ ସହ ବିବାଦ ହେବାରୁ ଉକ୍ତ ସନନ୍ଦ ରଦ୍ଦ ହୋଇଗଲା । ରାଜା ମହେନ୍ଦ୍ର ପ୍ରତାପ ହାତେରାସ ରାଜାଙ୍କର ପୋଷ୍ୟପୁତ୍ର ହୋଇଥିଲେ । ସେ ଜଣେ ରାଜପୁତ୍ର ହୋଇଥିଲେ ମଧ୍ୟ ଦେଶର ସ୍ୱାଧୀନତା ପାଇଁ ପିଲାଦିନୁ ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା । ୧୬ ବର୍ଷ ବୟସରେ ସେ ଚୀନ୍ ଓ ଜାପାନ ଯାଇଥିଲେ ଏବଂ ଯୁଦ୍ଧ ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଥିଲେ । ୧୯୦୬ରେ ସେ କଲିକତା କଂଗ୍ରେସରେ ଜଣେ ଦର୍ଶକ ଭାବରେ ଯୋଗ ଦେଇଥିଲେ ଏବଂ କୋଡ଼ିଏ ବର୍ଷ ବୟସରୁ ସେ ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ଦେଲେ । ନିଜ ଅଂଚଳରେ ସେ 'ପ୍ରେମ ବିଦ୍ୟାଳୟ' ନାମକ ଅନୁଷ୍ଠାନଟିଏ ଗଢ଼ି ସେଠାରେ ଛାତ୍ରମାନଙ୍କୁ ଚରିତ୍ର ଗଠନ ଓ ଦେଶପ୍ରେମର ଶିକ୍ଷା ଦେଉଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଭଲ ଦେଶ ଗଢ଼ିବାକୁ ହେଲେ ଆଗେ ଭଲ ମଣିଷ ଗଢ଼ିବାକୁ ହେବ । ଜାତିଭେଦ ବିରୋଧରେ ପ୍ରଚାର କରିବାକୁ ସେ 'ପ୍ରେମ' ଓ 'ନିର୍ମଳ ସେବକ' ନାମରେ ଦୁଇଟି ପତ୍ରିକା ପ୍ରକାଶ କରିଥିଲେ । ୧୯୧୪ରେ ୟୁରୋପରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେବାବେଳେ ସେ ୟୁରୋପର ବିଭିନ୍ନ ରାଜ୍ୟ ଗସ୍ତକରିଥିଲେ ଏବଂ ସେହି ସମୟରେ ଜେନେଭାରେ ଶ୍ୟାମଜୀ କୃଷ୍ଣବର୍ମା ଏବଂ ହରଦୟାଲଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ତାଙ୍କ ମନରେ କୌଣସି ସନ୍ଦେହ ନ ଥିଲା ଯେ କେବଳ ସଶସ୍ତ୍ର ବିପ୍ଳବଦ୍ୱାରାହିଁ ଦେଶର ସ୍ୱାଧୀନତା ସମ୍ଭବ । ସେହି ଉଦ୍ଦେଶ୍ୟରେ ସେ ଜର୍ମାନୀର ତତ୍କାଳୀନ ସର୍ବାଧିନାୟକ କାଇଜରଙ୍କୁ ସାକ୍ଷାତକରି ଭାରତର ସ୍ୱାଧୀନତା ଯୁଦ୍ଧରେ ତାଙ୍କର ସହାୟତା ଲୋଡ଼ିଥିଲେ । ସେ ଦୀର୍ଘଦିନ ଜର୍ମାନୀରେ ରହି ସେଠାରେ ସରକାରୀ ଓ ବେସରକାରୀ ଲୋକଙ୍କୁ ଭେଟି ସେମାନଙ୍କର ସହାନୁଭୂତି ଅର୍ଜନ କରିଥିଲେ । ତାଙ୍କର ବୁଦ୍ଧିମତ୍ତା ଓ ଦେଶପ୍ରୀତିର

ସ୍ୱୀକୃତି ସ୍ୱରୂପ ଜର୍ମାନୀର ସର୍ବୋଚ୍ଚ ଉପାଧି (Red Eagle)ରେ ତାଙ୍କୁ ଭୂଷିତ କରାଯାଇ ଥିଲା ବୋଲି କଥିତ ଅଛି ।

କିନ୍ତୁ ଜର୍ମାନୀ ଅପେକ୍ଷା ଆଫଗାନିସ୍ଥାନ ଭାରତର ଅଧିକ ନିକଟବର୍ତ୍ତୀ ହୋଇଥିବାରୁ ସେ କାବୁଲ ଯିବା ପାଇଁ ଓ ସେଠାରେ ତାଙ୍କର କର୍ମକେନ୍ଦ୍ର ଖୋଲିବାକୁ ସ୍ଥିରକରି ଆଫଗାନିସ୍ଥାନ ଗଲେ । କାଇଜର ତାଙ୍କୁ ଆଫଗାନିସ୍ଥାନ ପାଇଁ ଏକ ପରିଚୟପତ୍ର ଦେଇଥିଲେ । ସେହି ପରିଚୟପତ୍ର ଓ ନିଜର ଅସାଧାରଣ ସାଂଗଠନିକ ଦକ୍ଷତା ସାହାଯ୍ୟରେ ସେ କାବୁଲରେ ପ୍ରତିଷ୍ଠା କରିଥିଲେ 'ସ୍ୱାଧୀନ-ଭାରତ-ସରକାର' । ରାଜା ମହେନ୍ଦ୍ର ପ୍ରତାପ ନିଜେ ଏହାର ରାଷ୍ଟ୍ରପତି ହୋଇଥିଲେ । ଏହା କିଛି ପିଲାଖେଳ ନ ଥିଲା । ଏହି ବିପ୍ଳବୀ ସରକାରକୁ ଜର୍ମାନୀ, ଅଷ୍ଟ୍ରୋହଙ୍ଗେରି ଓ ତୁରସ୍କ ପ୍ରଭୃତି ସ୍ୱାଧୀନ ରାଷ୍ଟ୍ରଗଣ କୂଟନୈତିକ ସ୍ୱୀକୃତି ଦେଇଥିଲେ । ୧୯୧୫ରେ ରାସବିହାରୀ-ବାଘା-ଆୟୋଜିତ ବ୍ୟାପକ ସଶସ୍ତ୍ର ବିଦ୍ରୋହକୁ ସଫଳ କରିବା ପାଇଁ ଏହା ଅଭିପ୍ରେତ ହୋଇଥିଲା । କିନ୍ତୁ 'ମାଭେରିକ୍' ଜାହାଜ ଧରାପଡ଼ିବାରୁ ଏବଂ ବିଦ୍ରୋହ ବ୍ୟର୍ଥ ହେବାରୁ ସବୁ ଗୋଳମାଳ ହୋଇଗଲା । ୧୯୧୭ରେ ତୁରସ୍କ ଯୁଦ୍ଧରେ ପରାଜିତ ହେଲା । ତେଣେ ଆଫଗାନିସ୍ଥାନ ଉପରେ ଇଂରେଜମାନଙ୍କର କ୍ରମବର୍ଦ୍ଧମାନ ଚାପ ଫଳରେ ସେଠା ସରକାର ରାଜାଙ୍କୁ ଏହି ଆନ୍ଦୋଳନ ଚଳାଇବାକୁ ଆଉ ସୁବିଧା ଦେଲାନାହିଁ । ବାଧହୋଇ ସେ କାବୁଲ ଛାଡ଼ି ରୁଷିଆ ଗଲେ ଏବଂ ସେଠାରେ ଟ୍ରଟ୍‌ସ୍କିଙ୍କୁ ସାକ୍ଷାତ କରିଥିଲେ । ସେଠାରୁ ସେ ପୁଣି ଜର୍ମାନୀ ଗଲେ । ଏମ୍. ଏନ୍. ରାୟଙ୍କ ଭଳି ସେ ମଧ୍ୟ ବିଶ୍ୱାସ କରୁଥିଲେ ଯେ ଭାରତର ସଶସ୍ତ୍ର ବିପ୍ଳବ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ଅଙ୍ଗୀଭୂତ ହେବା ଦରକାର । କିନ୍ତୁ ରାୟଙ୍କ ସହ କେତେକ ବିଷୟରେ ତାଙ୍କର ମତଭେଦ ହୋଇଥିଲା । ତାଙ୍କର ଉଦ୍ୟମ ବିଫଳ ହୋଇଥିଲେ ସୁଦ୍ଧା ଶେଷପର୍ଯ୍ୟନ୍ତ ସେ ସଶସ୍ତ୍ର ବିପ୍ଳବରେ ଗଭୀରଭାବେ ବିଶ୍ୱାସ କରୁଥିଲେ । ସେଥିପାଇଁ ରାଜା ମହେନ୍ଦ୍ର ପ୍ରତାପ ଆମର ମୁକ୍ତି-ସଂଗ୍ରାମ- ଇତିହାସରେ ଏକ ସ୍ମରଣୀୟ ନାମ । ୧୯୭୯ ମସିହା ଏପ୍ରିଲ ୩୦ ତାରିଖରେ ରାଜା ମହେନ୍ଦ୍ର ପ୍ରତାପଙ୍କ ପରଲୋକ ହେଲା ।

**ଦରମା-ମୃତ୍ୟୁ, ପେନ୍‌ସନ୍-ସ୍ୱାଧୀନତା :**

ଭାରତର ଗୋଟିଏ ସଶସ୍ତ୍ର ବିପ୍ଳବୀ ଦଳ ନିମ୍ନଲିଖିତ ବିଜ୍ଞାପନଟି ସମ୍ବାଦପତ୍ରରେ ପ୍ରକାଶ କରିଥିଲେ - ''ଭାରତରେ ଗଦର୍ ଆନ୍ଦୋଳନର ପ୍ରଚାର ପାଇଁ ସାହସୀ କର୍ମୀ ଆବଶ୍ୟକ । ଦରମା-ମୃତ୍ୟୁ, ପୁରସ୍କାର-ସହିଦ ସମ୍ମାନ, ପେନ୍‌ସନ୍-ସ୍ୱାଧୀନତା, କର୍ମକ୍ଷେତ୍ର- ଭାରତ ।''

ଏହି ବିଚିତ୍ର ବିଜ୍ଞାପନ ସଂପର୍କରେ ଅଧିକ ଜାଣିବା ପୂର୍ବରୁ ଦଳ ଓ ଏହାର ଏହି ସଂସ୍ଥାପକମାନଙ୍କ ବିଷୟରେ ଜାଣିବା ଦରକାର । ଯୁକ୍ତରାଷ୍ଟ୍ର ଆମେରିକାର ପଶ୍ଚିମ ଉପକୂଳରେ ଗଠିତହୋଇଥିବା ଭାରତୀୟମାନଙ୍କର ଏହି ବୈପ୍ଳବିକ ଅନୁଷ୍ଠାନ ମୂଳରେ ଥିଲେ ଦୁଇଜଣ ବିପ୍ଳବୀ ପଞ୍ଜାବୀ ଯୁବକ— ହରଦୟାଲ ଓ ରାମଚନ୍ଦ୍ର ।

ପଞ୍ଜାବ ବିଶ୍ୱବିଦ୍ୟାଳୟର ଏହି ମହାନ୍ ମେଧାବୀ ଛାତ୍ର ହରଦୟାଲ ୧୯୦୫ରେ ରାଜ୍ୟ ବୃତ୍ତି ଲାଭ କରି ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଯୋଗଦେଇଥିଲେ । ସେ କିଭଳି ପ୍ରକୃତିର ଛାତ୍ର ଥିଲେ ସେ ସଂପର୍କରେ ଇତିହାସ କହେ, "Emotional, Ascetical, Dedicated and Intense." (ଭାବପ୍ରବଣ, ଋଷିପ୍ରତିମ, ଉତ୍ସର୍ଗୀକୃତ ଓ ନିଷ୍ଠାପର ।)

ବିଲାତରେ ସେ ଭାରତୀୟ ବୈପ୍ଳବିକ ଅନୁଷ୍ଠାନମାନଙ୍କ ସଂପର୍କରେ ଆସି ସଶସ୍ତ୍ର ବିପ୍ଳବରେ ଝାସ ଦେଇଥିଲେ । ଇଂରେଜ ଜାତି ପ୍ରତି ତାଙ୍କର ଘୃଣା କ୍ରମେ ଏତେ ବଢ଼ିଗଲା ଯେ ସେ ବୃତ୍ତି ପ୍ରତ୍ୟାଖ୍ୟାନ କରିଦେଇ ୧୯୦୭ରେ ଭାରତ ଫେରିଆସିଲେ । ତାଙ୍କର ବୈପ୍ଳବିକ କାର୍ଯ୍ୟକଳାପ ଯୋଗୁଁ ସେ ଅଧିକ ଦିନ ସରକାରୀ ଦୃଷ୍ଟିକୁ ଫାଙ୍କି ଦେଇ ପାରିଲେ ନାହିଁ । ପ୍ରଥମେ ଗଲେ ଫ୍ରାନ୍ସ । ସେଠୁ ଗଲେ ଯୁକ୍ତରାଷ୍ଟ୍ର ଆମେରିକା । ‘‘କାନାଡ଼ା ଇମିଗ୍ରେସନ’’ ଆଇନଦ୍ୱାରା କ୍ଷତିଗ୍ରସ୍ତ ବହୁ ଶିଖ ସେତେବେଳେ ସାନଫ୍ରାନ୍‌ସିସ୍କୋରେ ଆଶ୍ରୟ ନେଇଥିଲେ । ସେହି ଅସନ୍ତୁଷ୍ଟ ଶିଖମାନଙ୍କୁ ନେଇ ହରିଦୟାଲ ଗଦର ପାର୍ଟି ଗଠନ କରିଥିଲେ । ‘ଗଦର’ ଏକ ଗୁରୁମୁଖୀ ଶବ୍ଦ, ଯାହାର ଅର୍ଥ ‘ବିଦ୍ରୋହ’ । ଗଦର ପାର୍ଟି କ୍ରମେ ଆମେରିକାବାସୀଙ୍କ ସହାନୁଭୂତି ଅର୍ଜନ କରିଥିଲା । ସେଠାରେ ପ୍ରତିଷ୍ଠିତ ହେଲା ‘ଯୁଗାନ୍ତର ଆଶ୍ରମ’ ଏବଂ ହିନ୍ଦୀ, ଗୁଜରାଟୀ ଏବଂ ଗୁରୁମୁଖୀ ଭାଷାରେ ତିନିଗୋଟି ପତ୍ରିକା ପ୍ରକାଶିତ ହେଉଥିଲା । ମାତୃଭୂମିଠାରୁ ହଜାର ହଜାର ମାଇଲ ଦୂରରେ ଏଭଳି ଏକ ଉଦ୍ୟମ ସଫଳ ହେବା କେଡ଼େ ଦୁଃସାଧ; କିନ୍ତୁ ହରଦୟାଲ ଏହି ଅସାଧ ସାଧନ କରିବାକୁ ସମର୍ଥ ହୋଇଥିଲେ । "It supported all countries hostile to Britain and appealed to the Americans in the name of Liberty and Equality to support Indians fighting to throw off the British yoke." (ଇଂରେଜ ବିରୋଧୀ ଯେକୌଣସି ରାଷ୍ଟ୍ରକୁ ଏହା ସମର୍ଥନ କରୁଥିଲା ଏବଂ ମୁକ୍ତି ଓ ସମାନତା ନାମରେ ଏହା ଆମେରିକାବାସୀଙ୍କୁ ନିବେଦନ କରୁଥିଲା ଏବଂ ଇଂରେଜ ଶାସନ ଲୋପ ପାଇଁ ଭାରତରେ ଚାଲିଥିବା ଆନ୍ଦୋଳନକୁ ସମର୍ଥନ କରିବାକୁ ଅନୁରୋଧ କରୁଥିଲା ।) ଗଦର ପତ୍ରିକା ଓ ଗଦର ଦଳ ଭାରତର ଶିକ୍ଷିତ ମହଲ, ପ୍ରବାସୀ ଭାରତୀୟ ଓ ସେନାବାହିନୀ ଭିତରେ ଖୁବ୍ ଲୋକପ୍ରିୟତା ଅର୍ଜନ କରିଥିଲା ।

ସେଡିସନ କମିଟି ଏ ସଂପର୍କରେ ମତ ପ୍ରକାଶ କରିଅଛି ଯେ— ଏହି ବ୍ୟକ୍ତି ହରଦୟାଲ ଭୟଙ୍କର ବ୍ରିଟିଶ୍‌ବିରୋଧୀ ମନୋଭାବର ଏବଂ ତାଙ୍କର ଦେଶବାସୀଙ୍କ ଭିତରେ ଏହି ମନୋଭାବ ଜାଗ୍ରତ କରାଇବାର ଉଦ୍ଦେଶ୍ୟ ନେଇ ୧୯୧୧ରେ ସାନଫ୍ରାନ୍ସିସ୍କୋରେ ପହଞ୍ଚିଲେ । ଏହି ପତ୍ରିକାଗୁଡ଼ିକ ଘୋର ଇଂରେଜବିରୋଧୀ ଥିଲା । ଭାରତୀୟଙ୍କ ମନଭିତରେ ଥିବା ପ୍ରତ୍ୟେକ ଅସନ୍ତୋଷକୁ ଉସକେଇବା, ପ୍ରତ୍ୟେକ ବାକ୍ୟରେ ହତ୍ୟା ଓ ବିଦ୍ରୋହ ପ୍ରଚାର କରିବା ଏବଂ ବ୍ୟାପକ ହତ୍ୟା ଜରିଆରେ ବିପ୍ଳବ ସୃଷ୍ଟି କରି ଇଂରେଜ ସରକାରକୁ ଯେକୌଣସିମତେ ଦେଶରୁ ନିକାଳିବାର ସଂକଳ୍ପ ନେଇ ସ୍ୱଦେଶକୁ ଫେରିଯିବାକୁ ପତ୍ରିକା ପ୍ରବର୍ତ୍ତାଉଥିଲା ।

ଗଦର ପାର୍ଟିର ଲୋକପ୍ରିୟତା ବଢ଼ିବା ସଙ୍ଗେ ସଙ୍ଗେ ଭାରତରେ ବିଦ୍ରୋହର ବ୍ୟାପକ ପ୍ରଚାର ହେଲା । ଏପରି କି ଇଂରେଜ ସରକାର ଏଥିରେ ବିବ୍ରତ ହୋଇ ହରଦୟାଲଙ୍କୁ ଆମେରିକାରୁ ତଡ଼ିଦେବାକୁ ଆମେରିକା ସରକାର ଉପରେ ଚାପ ପକାଇଲେ । କିନ୍ତୁ ପ୍ରଥମ ମହାଯୁଦ୍ଧରେ ଆମେରିକା ନିରପେକ୍ଷ ଥିବା ପର୍ଯ୍ୟନ୍ତ ଇଂଲଣ୍ଡର ଏହି ଅନୁରୋଧ ଗ୍ରହଣ କରାଯାଇନଥିଲା । ପରେ ଆମେରିକା ଇଂଲଣ୍ଡ ସପକ୍ଷରେ ଯୁଦ୍ଧରେ ଯୋଗଦେବାରୁ ଇଂଲଣ୍ଡର ଅନୁରୋଧକ୍ରମେ ହରଦୟାଲଙ୍କୁ ଗିରଫକରାଗଲା । କିନ୍ତୁ ଜାମିନକୁ ଫାଙ୍କିଦେଇ ହରଦୟାଲ ସୁଇଜରଲ୍ୟାଣ୍ଡ ପଳାଇଗଲେ । ସେଠାରୁ ଗଲେ ବର୍ଲିନ । ସେଠାରେ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ ଓ ବିପ୍ଳବୀ ତାରକ ଦାସଙ୍କ ସହ ତାଙ୍କର ସାକ୍ଷାତ ହେଲା । ବିପ୍ଳବୀ ସୁରେନ କର, ଚମ୍ପକ ବରନ ପିଲ୍ଲାଇ, ଚନ୍ଦ୍ରକାନ୍ତ ଚକ୍ରବର୍ତ୍ତୀ ଏବଂ ହେମ୍ବମେଗୁପ୍ତଙ୍କ ସହାୟତାରେ ବର୍ଲିନରେ ଗଢ଼ାଗଲା "Indian National League." (ଇଣ୍ଡିଆନ ନାସନାଲ ଲିଗ୍) ଲିଗ୍‌ର ପରାମର୍ଶକ୍ରମେ ବୋମା ଓ ମାରଣାସ୍ତ୍ର ତିଆରି ଶିକ୍ଷାକରିବାକୁ କଲିକତାରୁ ବିପ୍ଳବୀ ସୁରେନ ବସୁ ଜାପାନ ବାଟେ ପ୍ୟାରିସ୍ ଯାଇଥିଲେ ଏବଂ ସେଠାରୁ ଟ୍ରେନିଂ ନେଇ କଲିକତାରେ ଏକ ଗୋପନ ବୋମା ତିଆରି କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ବର୍ଲିନରୁ କାବୁଲ ଯାଇ ସେଠାରେ ବିପ୍ଳବୀ ସରକାର ଗଠନ କରିବାରେ ସହାୟକ ହୋଇଥିଲେ ହରଦୟାଲ ।

ହରଦୟାଲଙ୍କ ପରେ ଗଦର ପାର୍ଟିର ଦାୟିତ୍ୱ ପଡ଼ିଲା ରାମଚନ୍ଦ୍ରଙ୍କ ଉପରେ । ପେଶଓ୍ୱାର ଯୁବକ ରାମଚନ୍ଦ୍ର ହରଦୟାଲଙ୍କ ଭଳି ମେଧାବୀ, ପ୍ରତିଭାବାନ୍ ଓ ଅସାଧାରଣ ବାଗ୍ମୀ ଥିଲେ । ମାତୃଭାଷା ଉର୍ଦ୍ଦୁ, ଇଂରେଜୀ ଓ ହିନ୍ଦୀରେ ସେ ଘଣ୍ଟା ଘଣ୍ଟା ଧରି ଭାଷଣ ଦେଇ ଶ୍ରୋତାମାନଙ୍କୁ ମତେଇ ତତେଇ ଦେଇ ପାରୁଥିଲେ । ଇଂରେଜୀ ସାହିତ୍ୟ ରଚନାରେ ମଧ୍ୟ ସେ ଧୁରନ୍ଧର ଥିଲେ । ଏହା ଆଜି ବିଶ୍ୱାସ କରିବା ମଧ୍ୟ କଠିନ ଯେ ଆମେରିକା ଭଳି ଏକ ଶକ୍ତିଶାଳୀ ରାଷ୍ଟ୍ର ମଧ୍ୟ ରାମଚନ୍ଦ୍ରଙ୍କ ଜ୍ୱାଳାମୟୀ ଭାଷଣ ଓ ଉତ୍ତେଜନାପୂର୍ଣ୍ଣ ପ୍ରଚାରରେ ବିବ୍ରତ ହୋଇପଡ଼ିଥିଲା ।

ଲର୍ଡ଼ ହାର୍ଡ଼ିଞ୍ଜ ଯେତେବେଳେ ଆମେରିକାବାସୀ ଭାରତୀୟମାନଙ୍କୁ 'ଆନାର୍କିଷ୍ଟ' ବୋଲି ସମାଲୋଚନା କରିଥିଲେ, ସେତେବେଳେ ଗଦର ପତ୍ରିକାରେ ରାମଚନ୍ଦ୍ର ତା'ର ପ୍ରତିବାଦରେ ଲେଖିଥିଲେ- "We are not anarchist but republican. Our plan is constructive first and last. We aim at nothing less than establishment in India of a republic, a Government by the people, for the people and of the people."

ଗଦର ପାର୍ଟି ଓ ରାମଚନ୍ଦ୍ରଙ୍କର କ୍ରମବର୍ଦ୍ଧମାନ ଲୋକପ୍ରିୟତା ଏବଂ ଖାସ୍‌କରି ଭାରତର ବିପ୍ଳବୀ ମହଲରେ ତାଙ୍କ ପ୍ରଚାରର ଗୁରୁତର ପ୍ରଭାବ ଇଂରେଜ ସରକାରକୁ ରୀତିମତ ବିବ୍ରତକରିଦେଲା । ରାମଚନ୍ଦ୍ରଙ୍କ ଉପରେ ଅଙ୍କୁଶ ପ୍ରୟୋଗ କରିବାକୁ ସେମାନେ ଆମେରିକା ଉପରେ ପ୍ରଭାବପକାଇଲେ ଏବଂ ସେହି କାର୍ଯ୍ୟରେ ସେମାନେ

ସଫଳ ହେଲେ । ବିପ୍ଳବୀ ରାମଚନ୍ଦ୍ରଙ୍କ ଉପରେ ଆମେରିକା ସରକାର ଏକ ମୋକଦ୍ଦମା କରିଥିଲେ । ତାହା ଏକ ଅସାଧାରଣ ମକଦ୍ଦମା । ସମ୍ଭବତଃ ଆଜିପର୍ଯ୍ୟନ୍ତ କୌଣସି ବିଦେଶୀ ବିରୋଧରେ ଏଭଳି ଏକ ମକଦ୍ଦମା କେହି କେବେ କରି ନ ଥିବ । ପୃଥିବୀର ଅଧିକାଂଶ ଦେଶରୁ ଏଥିପାଇଁ ସାକ୍ଷୀ ସଂଗ୍ରହ କରାଯାଇଥିଲା ଏବଂ ଆମେରିକା ସରକାରୀ ଟ୍ରେଜେରୀରୁ କୋଟି କୋଟି ଟଙ୍କା ଖର୍ଚ୍ଚହୋଇଥିଲା । ଆମେରିକାରେ ଚାଲିଥିବା ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଚିରଦିନ ପାଇଁ ସ୍ତବ୍ଧକରିଦେବାକୁ ଆମେରିକା ସରକାର କୃତସଂକଳ୍ପ ହୋଇଥିଲେ । କିନ୍ତୁ କୋର୍ଟରେ ରାମଚନ୍ଦ୍ର ଯେଉଁ ଜ୍ୱାଳାମୟୀ ଜମାନବନ୍ଦୀ ଦେଇଥିଲେ ତାହା ଆମେରିକାର ଶିକ୍ଷିତ ମହଲରେ ଯୁଗପତ୍ ବିସ୍ମୟ ସୃଷ୍ଟି କରିଥିଲା । 'ନିୟୁୟର୍କ ଟାଇମ୍‌ସ' ପତ୍ରିକା ସେହି ଜମାନବନ୍ଦୀର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । କିନ୍ତୁ ଭାରତବାସୀଙ୍କର ଚରମ ଦୁର୍ଭାଗ୍ୟ ଯେ ଏକ ଦୁଃଖଦାୟକ ଘଟଣାରେ ଏହି ରୋମାଞ୍ଚକର ମକଦ୍ଦମାର କରୁଣ ପରିସମାପ୍ତି ଘଟିଥିଲା ।

ଧୂର୍ତ୍ତ ଆମେରିକା ଓ ଇଂରେଜ ସରକାର ଆମେରିକାବାସୀ ଭାରତୀୟମାନଙ୍କ ଭିତରେ ସଂକୀର୍ଣ୍ଣ ସାମ୍ପ୍ରଦାୟିକ ଦଙ୍ଗା ସୃଷ୍ଟି କଲେ । ପେଶୱାରବାସୀ ରାମଚନ୍ଦ୍ରଙ୍କ ବିରୋଧରେ ପଞ୍ଜାବୀ ଶିଖମାନଙ୍କୁ ମତାଇଦିଆଗଲା । ବିପ୍ଳବୀ ରାମଚନ୍ଦ୍ର କୋର୍ଟରେ ଏକ ଓଜସ୍ୱିନୀ ଭାଷଣ ଦେଇ ଆସନ ଗ୍ରହଣ କରିବାବେଳେ ଜଣେ ଉଦ୍‌ଭ୍ରାନ୍ତ ଶିଖ ଯୁବକ ତାଙ୍କୁ ଗୁଳିକରି ହତ୍ୟାକଲା ।

**ଭଗିନୀ ବିବେଦିତା :**

ବିପ୍ଳବୀ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦଙ୍କର ମାନସକନ୍ୟା ଭଗିନୀ ନିବେଦିତାଙ୍କର ଭାରତର ସଶସ୍ତ୍ର ବିପ୍ଳବକୁ ଅବଦାନ ଆମ ଦେଶରେ ବହୁ ଲୋକଙ୍କୁ ଜଣାନାହିଁ । ଆୟାରଲ୍ୟାଣ୍ଡର ଏକ ବିପ୍ଳବୀ ପରିବାରରେ ସିନଫିନ ବିଦ୍ରୋହ ଭିତରେହିଁ ମିସ୍ ମାର୍ଗାରେଟଙ୍କର ଜନ୍ମ । ସ୍ୱାମୀଜୀଙ୍କର ଆଧାତ୍ମିକ ପ୍ରଭାବରେ ପ୍ରଭାବିତ ହୋଇ ସେ ଯେଉଁଦିନ ଭାରତ ଆସିଲେ ସେଦିନ ଶ୍ରୀ ରାମକୃଷ୍ଣ ମିଶନ ଏବଂ ସେହି ଦୃଷ୍ଟିରୁ ସମଗ୍ର ଭାରତର ଆଧାତ୍ମିକ ଆନ୍ଦୋଳନର ଇତିହାସରେ ଯେମିତି ଏକ ଗୌରବମୟ ପୃଷ୍ଠା ଯୋଡ଼ାଗଲା, ସଶସ୍ତ୍ର ବିପ୍ଳବୀର ଶିବିର ମଧ ସେହି ପରିମାଣରେ ହେଲା ସମୃଦ୍ଧ । ଭଗିନୀ ନିବେଦିତା ଭାରତରେ କେବଳ ଯେ ଆଧ୍ୟାତ୍ମବାଦର ପ୍ରଚାର କରିଥିଲେ ତା' ନୁହେଁ, ସେ ସଶସ୍ତ୍ର ମୁକ୍ତି-ସଂଗ୍ରାମକୁ ମଧ୍ୟ ନାନା ଉପାୟରେ ସାହାଯ୍ୟ କରିଥିଲେ, ତା' ହୋଇ ନ ଥିଲେ ସେ ଚାପେକାର ଭ୍ରାତୃତ୍ରୟଙ୍କର ଆତ୍ମଦାନରେ ମୁଗ୍ଧ ହୋଇ ଚାପେକାର ଜନନୀଙ୍କୁ ଦର୍ଶନ କରିବାକୁ ପୁନା ପର୍ଯ୍ୟନ୍ତ ଦୌଡ଼ିଯାଇ ନଥାନ୍ତେ (୨ୟ ଭାଗରେ ଦ୍ରଷ୍ଟବ୍ୟ) ।

ଗାନ୍ଧିଜୀ କଲିକତା ଯାଇଥିବାବେଳେ (୧୯୧୦) ଭଗିନୀ ନିବେଦିତାଙ୍କୁ ଭେଟିବା ପାଇଁ ଚୌରଙ୍ଗୀ ଯାଇଥିଲେ । ଗାନ୍ଧିଜୀଙ୍କ ଭଳି ଜଣେ ଉଦାରଚେତା ନେତାଙ୍କ ସହ

ନିବେଦିତାଙ୍କ ଭଳି ଜଣେ ଉଗ୍ରବାଦୀଙ୍କର ମତ ନ ମିଳିବା ସ୍ୱାଭାବିକ । ଗାନ୍ଧିଜୀ ତାଙ୍କ ଆତ୍ମଜୀବନୀ ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ଯେ— ତାଙ୍କ ଚାରିପଟକୁ ଘେରି ଯେଉଁ ଆଲୋକଛଟା ରହିଥିଲା ତାହା ଦେଖି ମୁଁ ଅବାକ୍ ହୋଇଗଲି । ଆମ ଦୁହିଁଙ୍କ କଥାବାର୍ତ୍ତା ଭିତରେ ଆମେ କୌଣସି ବିଷୟରେ ଏକମତ ହୋଇପାରିଲୁନାହିଁ । ମୁଁ ଗୋଖଲେଙ୍କୁ ଏକଥା କହିଲି । ସେ କହିଲେ ଯେ ମୁଁ ଏବଂ ନିବେଦିତାଙ୍କ ଭଳି ଏକ ବିପ୍ଳବୀଙ୍କ ଭିତରେ ମତଭେଦ ହେବା ଦେଖି ସେ ଆଦୌ ଆଶ୍ଚର୍ଯ୍ୟ ନୁହନ୍ତି ।

ଶ୍ରୀରାମକୃଷ୍ଣ ମଠ ଓ ମିଶନ ଏକ ଧର୍ମୀୟ ଅନୁଷ୍ଠାନ ଏବଂ ରାଜନୀତି ସହ ଏହାର କୌଣସି ସଂପର୍କ ନ ଥିଲା । ସୁତରାଂ ନିବେଦିତାଙ୍କ ଭଳି ମିଶନର ଜନୈକା ବିଶିଷ୍ଟ ସନ୍ନ୍ୟାସିନୀଙ୍କର ରାଜନୈତିକ ବିଚାରଧାରା ବେଳେ ବେଳେ ମିଶନର କର୍ମକର୍ତ୍ତାଙ୍କୁ ଅସୁବିଧାରେ ପକାଇଥିବା ସ୍ୱାଭାବିକ । ବିଶେଷତଃ ନିବେଦିତାଙ୍କ ବୈପ୍ଳବିକ କାର୍ଯ୍ୟକଳାପର ଆଳରେ ରକ୍ତମୁଖା ଇଂରେଜ ସରକାର ମିଶନ ଓ ମଠ ଉପରେ ଜୁଲମ କରିବାର ବରାବର ଆଶଙ୍କା ଥିଲା । କିନ୍ତୁ ନିବେଦିତା ସେତେବେଳେ ମିଶନର ଏକ ଅବିଚ୍ଛେଦ୍ୟ ଅଙ୍ଗରେ ପରିଣତ ହୋଇସାରିଥିଲେ । ଫଳରେ ମିଶନର ତତ୍କାଳୀନ ସଭାପତି ସ୍ୱାମୀ ବ୍ରହ୍ମାନନ୍ଦ ବଡ଼ ଅଡୁଆରେ ପଡ଼ିଥିଲେ ।

ନିବେଦିତାଙ୍କ ରାଜନୈତିକ କାର୍ଯ୍ୟକଳାପ ସହ ମିଶନର କୌଣସି ସମ୍ପର୍କ ନାହିଁ ଏବଂ ସେଥିପାଇଁ ମିଶନ କୌଣସିମତେ ଦାୟୀ ନୁହେଁ ବୋଲି ସ୍ୱାମୀ ବ୍ରହ୍ମାନନ୍ଦଙ୍କୁ ସମ୍ବାଦପତ୍ରରେ ବାରମ୍ବାର ବିବୃତି ଦେବାକୁ ପଡ଼ିଲା । 'ବିପ୍ଳବର ପଥ ପରିତ୍ୟାଗ କର' ଶୀର୍ଷକ ଏକ ପ୍ରେସ୍ ବିବୃତିରେ ସ୍ୱାମୀ ବ୍ରହ୍ମାନନ୍ଦ ମିଶନ ଓ ନିବେଦିତା ଦୁଇଟି ସ୍ୱତନ୍ତ୍ର ଓ ସ୍ୱାଧୀନ ସଂସ୍ଥା ବୋଲି ଜଣାଇଥିଲେ । ଏ ସଂପର୍କରେ ଭଗିନୀ ନିବେଦିତାଙ୍କର ପ୍ରତିକ୍ରିୟା ହେଲା, "I cannot act otherwise. I would die rather than abandon it." (ମୁଁ ଅନ୍ୟ ପ୍ରକାର କିଛି କରିବାକୁ ଅକ୍ଷମ, ଏହି ଆଦର୍ଶ ମୋର ଏତେ ଅସ୍ଥିମଜ୍ଜାଗତ ଯେ ଏହାକୁ ପରିତ୍ୟାଗ କରିବା ଅପେକ୍ଷା ମୃତ୍ୟୁବରଣ କରିବା ମୋ' ପକ୍ଷେ ଶ୍ରେୟସ୍କର ।)

ଶ୍ରୀ ରାମକୃଷ୍ଣ ମିଶନ ନିବେଦିତାଙ୍କର ଏହି କ୍ରିୟା-ପ୍ରତିକ୍ରିୟା ସଂପର୍କରେ ବିପ୍ଳବୀ ଭୂପେନ୍ଦ୍ର କିଶୋର ରକ୍ଷିତରାୟ କହନ୍ତି ଯେ, ''ସ୍ୱାମୀ ବ୍ରହ୍ମାନନ୍ଦ ଭଲ କାମଟିଏ କରିଛନ୍ତି । ସେ ସାବଧାନ ହୋଇ ନ ଥିଲେ ଶ୍ରୀ ରାମକୃଷ୍ଣ ମଠ ଓ ମିଶନ ପୁଲିସ ଅତ୍ୟାଚାରରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଥାଆନ୍ତା । ନିବେଦିତା ବିବେକାନନ୍ଦଙ୍କର କେବଳ ମାନସ କନ୍ୟା ନୁହନ୍ତି, ଅଗ୍ନିସ୍ରାବୀ ଗିରି ବକ୍ଷରୁ ନିର୍ଗତ ଗଳିତ ଅଗ୍ନିର ସ୍ରୋତଧାରା ଏହି ବିପ୍ଳବିଣୀ । ତା'ର ଗତିବିଧି ଗୋଟିଏ ଆଶ୍ରମ ବା ଗୋଟିଏ ମଠ ଭିତରେ ସୀମାବଦ୍ଧ ହୋଇ ନ ପାରେ । ସେସବୁ ଦେଶର ସର୍ବଲୋକର ସମସ୍ତ କାର୍ଯ୍ୟରେ ତା'ର ଗୁରୁଭଳି ଭାରତବର୍ଷର ପ୍ରତ୍ୟେକ ମନୁଷ୍ୟର ଓ ପ୍ରତ୍ୟେକ କାର୍ଯ୍ୟର ସେ ପ୍ରାଣଦାତ୍ରୀ । ସେଥିପାଇଁ

ତାଙ୍କୁ ଦେଖାଯାଏ ଅରବିନ୍ଦଙ୍କ ନିକଟରେ, ଜଗଦୀଶଚନ୍ଦ୍ରଙ୍କ ନିକଟରେ, ଅବନୀନ୍ଦ୍ରଙ୍କ ପାଖରେ । ରାଜନୀତି ବିଜ୍ଞାନ-ସାହିତ୍ୟ-ଶିଳ୍ପ ପ୍ରଭୃତି ସମସ୍ତ ବିଭାଗକୁ ବୈପ୍ଳବିକ ଦୃଷ୍ଟିରେ ଭାରତର କଲ୍ୟାଣ ପାଇଁ ବିନିଯୋଗ କରି ସେ ରାମକୃଷ୍ଣ, ବିବେକାନନ୍ଦଙ୍କ ଆଧ୍ୟାତ୍ମିକ ଜଗତରେ ବିଚରଣ କରିଅଛନ୍ତି ।''

''ସ୍ୱାମୀ-ବ୍ରହ୍ମାନନ୍ଦ ବାରମ୍ବାର ସାବଧାନ ହୋଇ ନ ଥିଲେ ବିପଦରେ ପଡ଼ିଥା'ନ୍ତେ । କାରଣ ଏ କନ୍ୟା କେବଳ ବିବେକାନନ୍ଦଙ୍କର ମାନସ-କନ୍ୟା ନୁହନ୍ତି, ସେ ସିନଫିନ ଆନ୍ଦୋଳନ, ରୁଷ ବିପ୍ଳବ ଓ ତା'ର କର୍ମନୀତି ସମ୍ପର୍କରେ ଅଭିଜ୍ଞା ଏକ ବିପଜ୍ଜନକ ବିପ୍ଳବିଣୀ । ସେ ସାକ୍ଷାତ ଚଣ୍ଡୀ, ଶତ୍ରୁଦଳନରେ ସେଥିପାଇଁ ସେ ଅରବିନ୍ଦଙ୍କ ପାଖରେ ଠିଆ ହେଲେ । ବିପ୍ଳବୀ ତରୁଣମାନଙ୍କୁ ତେଜ ଓ ଶକ୍ତି ଦେଲେ । ଭାରତକୁ ବଡ଼ କରିବାର ସାଧନାରେ ସବୁ କ୍ଷେତ୍ରରେ ପ୍ରତିଭାଧରମାନଙ୍କୁ ପ୍ରେରଣା ଯୋଗାଇଲେ ।''(୧)

ଶ୍ରୀ ଅରବିନ୍ଦଙ୍କର ବୈପ୍ଳବିକ ଜୀବନରେ ଏହି ମହନୀୟା ମହିଳା ଥିଲେ ବନ୍ଧୁ ଓ ତାତ୍ତ୍ୱିକ ପରିଚାଳିକା । 'ଅଲ୍ଲିପୁର ବମ୍ କେଶ'ରେ ଶ୍ରୀ ଅରବିନ୍ଦଙ୍କୁ ଦ୍ୱିତୀୟ ବାର ଆରେଷ୍ଟ କରାଯିବ ବୋଲି ପ୍ରବଳ ଜନରବ ହୋଇଥିଲା । ଅରବିନ୍ଦଙ୍କର ଶୁଭେଚ୍ଛୁମାନେ ତାଙ୍କୁ ଭାରତଛାଡ଼ି ଅନ୍ୟତ୍ର ଚାଲିଯିବାକୁ ପରାମର୍ଶ ଦେଲେ । କିନ୍ତୁ ଶ୍ରୀ ଅରବିନ୍ଦଙ୍କର ଅନ୍ୟାନ୍ୟ ଅସଂଖ୍ୟ ଦାୟିତ୍ୱ ସମେତ 'କର୍ମଯୋଗୀନ୍' ପତ୍ରିକାର ସଂପାଦନା ଏକ ଗୁରୁଦାୟିତ୍ୱ ଥିଲା । ଶ୍ରୀ ଅରବିନ୍ଦ କହିଲେ, "If Nibedita continues the work, I shall leave." (ଯଦି ନିବେଦିତା ଏହି କାର୍ଯ୍ୟ ଚଳେଇଯାଆନ୍ତି, ମୁଁ ଚାଲିଯିବି ।''

ନିବେଦିତାଙ୍କୁ ଶ୍ରୀ ଅରବିନ୍ଦଙ୍କର ଏହି ଉକ୍ତିଟି ଶୁଣାଇ ଦିଆଯିବାରୁ ସେ ସଙ୍ଗେ ସଙ୍ଗେ ଉତ୍ତରଦେଲେ, "Tell your chief to hide and the hidden through intermediary shall do many things." ଅରବିନ୍ଦ ନିବେଦିତାଙ୍କର ଏହି ସ୍ପଷ୍ଟବାଦୀ ଉତ୍ତରରେ ଏତେ ମୁଗ୍ଧ ହୋଇଗଲେ ଯେ ତାଙ୍କ ମୁହଁରୁ ବାହାରିପଡ଼ିଲା– "All right, arrange, Mother Kali through Sister Nivedita ordered me to hide." ତା'ପରେ ଶ୍ରୀ ଅରବିନ୍ଦଙ୍କ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଆରମ୍ଭହେଲା ଏବଂ ଭଗିନୀ ନିବେଦିତାହିଁ ହେଲେ ତାହାର ପ୍ରଧାନ ନିମିତ୍ତ ।

**ଆଗ୍ନେଶ ସ୍ମେଡଲି :**

ଆମେରିକା ଭଳି ଏକ ପୁଂଜିବାଦୀ - ସାମ୍ରାଜ୍ୟବାଦୀ ରାଷ୍ଟ୍ରରେ ଜନ୍ମଗ୍ରହଣ କରିଥିବା ଜଣେ ଶ୍ୱେତାଙ୍ଗିନୀ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଯେ ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗିଥିଲେ ତାହା ଜାଣିଲେ ବିସ୍ମିତ ହେବାକୁ ହୁଏ । ଆଗ୍ନେଶ ସ୍ମେଡ଼ଲି ଜଣେ ଏହି ଶ୍ରେଣୀର ମହିଳା । ୧୯୧୫ରେ ବିପ୍ଳବୀ ଶୈଳେଶ ଘୋଷ, ତାରକଦାସ, ମାନବେନ୍ଦ୍ର ରାୟ, ହେରମ୍ବ ଗୁପ୍ତ ପ୍ରଭୃତି ବିପ୍ଳବୀଙ୍କୁ ନେଇ ଆମେରିକାର ପଶ୍ଚିମ ଉପକୂଳରେ

୧ )ରକ୍ଷିତରାୟ – ଭାରତର ସଶସ୍ତ୍ର ବିପ୍ଳବ (ବଙ୍ଗଳା) ପୃ-୧୧୭

ଯେଉଁ ଭାରତୀୟ ବିପ୍ଳବୀ ଗୋଷ୍ଠୀଟି ଗଢ଼ିଉଠିଲା, ତା'ର କେନ୍ଦ୍ରବିନ୍ଦୁ ଥିଲେ ଆଗ୍ନେଶ ସ୍ମେଡଲି ।

୧୯୧୭ରେ ଆମେରିକା ଯୁଦ୍ଧରେ ଯୋଗଦେଇ ଇଂଲଣ୍ଡର ପକ୍ଷନେବାରୁ ସେଠାରେ ଭାରତୀୟ ବିପ୍ଳବୀମାନେ ଆଉ କିଛି କରିପାରିଲେନାହିଁ ଏବଂ ମାନବେନ୍ଦ୍ର ଓ ହେରମ୍ବ ଗୁପ୍ତ ଆମେରିକା ଛାଡ଼ି ମେକ୍ସିକୋ ପଳାଇଗଲେ । ତାରକ ଦାସ ଓ ସ୍ମେଡଲିଙ୍କ ବିରୋଧରେ ଆମେରିକା ସରକାର ଏକ ଷଡ଼ଯନ୍ତ୍ର ମକଦ୍ଦମା ଦାଏର କଲେ ଏବଂ ଏହି କେଶରେ ସ୍ମେଡଲି ଚାରିବର୍ଷ କାରାଦଣ୍ଡ ଭୋଗକରିଥିଲେ । ସେ ହେଉଛନ୍ତି ପ୍ରଥମ ବିଦେଶିନୀ ମହିଳା ଯେ କି ଭାରତର ସ୍ୱାଧୀନତା ପାଇଁ କାରାବରଣ କରିଥିଲେ । ସ୍ମେଡ଼ଲି ଖାଲି ଏକ ବିପ୍ଳବିଣୀ ନ ଥିଲେ, ସେ ଥିଲେ ଜଣେ ସାର୍ଥକ ସାମ୍ବାଦିକ । ଶ୍ରୀ ରାମାନନ୍ଦ ଚାଟାର୍ଜିଙ୍କ ସମ୍ପାଦିତ ଜାତୀୟବାଦୀ ପତ୍ରିକା 'ମଡର୍ଣ୍ଣ ରିଭ୍ୟୁ'ରେ ସେ ନିୟମିତ ଲେଖାଲେଖି କରୁଥିଲେ । ଭାରତୀୟ ବିପ୍ଳବୀଙ୍କୁ ସାହାଯ୍ୟ କରିବାକୁ ସେ ଘରୋଇ ଭାବରେ ଷ୍ଟେନୋ କାମ କରି ଅର୍ଥ ଉପାର୍ଜନ କରୁଥିଲେ । ୧୯୧୯ରେ 'ଫ୍ରେଣ୍ଡସ ଅଫ୍ ଇଣ୍ଡିଆ' ନାମକ ଅନୁଷ୍ଠାନ ଗଢ଼ି 'ଦି ଗେଲିକ ଆମେରିକାନ' ନାମକ ପତ୍ରିକା ମଧ୍ୟ ପ୍ରକାଶକରିଥିଲେ । ଆୟାରଲ୍ୟାଣ୍ଡର ମହାନ୍ ବିପ୍ଳବୀ ଡି. ଭେଲେର ଆମେରିକାରେ ଆଶ୍ରୟ ନେଇଥିବା ବେଳେ 'ଫ୍ରେଣ୍ଡସ ଅଫ୍ ଇଣ୍ଡିଆ' ଅନୁଷ୍ଠାନ ସହ ସଂପୃକ୍ତ ଥିଲେ । ୧୯୨୦ରେ ସ୍ମେଡଲି ବର୍ଲିନ ଯାଇଥିଲେ । ୧୯୧୫ର ଭାରତର ବ୍ୟାପକ ବିଦ୍ରୋହ ଆୟୋଜନରେ ଜର୍ମାନୀ ଯଥେଷ୍ଟ ସାହାଯ୍ୟ କରିପାରି ନ ଥିଲା ବୋଲି ସେ ଜର୍ମାନୀ ଉପରୁ ସବୁ ଆଶା ତ୍ୟାଗକରିଥିଲେ । ତେଣୁ ସେ ମାନବେନ୍ଦ୍ରଙ୍କ ସହ ମସ୍କୋ ଯାଇଥିଲେ । ରୁଷିଆ ବିନା ସର୍ତ୍ତରେ ଭାରତର ସ୍ୱାଧୀନତା ସଂଗ୍ରାମକୁ ସାହାଯ୍ୟ କରିବ ବୋଲି ତାଙ୍କର ଦୃଢ଼ ଆଶା ଥିଲା । କିନ୍ତୁ ବିଶ୍ୱ-କମ୍ୟୁନିଷ୍ଟ ଆନ୍ଦୋଳନ ସହ ସଂପୃକ୍ତ ହେଲେ ଯାଇ ଏହା ସମ୍ଭବ ବୋଲି ମାନବେନ୍ଦ୍ରଙ୍କ ମତ ସହ ସେ ଏକମତ ହୋଇପାରି ନ ଥିଲେ । ସ୍ମେଡଲି କହୁଥିଲେ ଯେ ଭାରତବର୍ଷ ତା'ର ନିଜସ୍ୱ ଆଦର୍ଶରେ ଲଢ଼େଇକରୁ ଏବଂ ସ୍ୱାଧୀନତା ପରେ ସେ କି ଆଦର୍ଶ ଗ୍ରହଣ କରିବ ତାହା ନିର୍ଦ୍ଧାରଣ କରିବା ଭାରତୀୟ ମାନଙ୍କ ଉପରେ ଛାଡ଼ିଦେବା ଦରକାର । ୧୯୨୧ରେ ସେ ବୀରେନ୍ଦ୍ର ଚାଟାର୍ଜିଙ୍କ ସହ ପୁଣି ମସ୍କୋ ଯାଇଥିଲେ । ଏଥର ମଧ୍ୟ ସେ ନିରାଶ ହେଲେ । ଶେଷରେ ସେ ଆମେରିକାରେ ଦେହତ୍ୟାଗକଲେ ।

❐❐❐

## ଅଧ୍ୟାୟ - ଅଠର

# ମହାପ୍ରମାଦ

ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ହୋଇଥିଲା ୧୮୮୫ ଖ୍ରୀଷ୍ଟାବ୍ଦରେ । ଏହାର ପ୍ରାୟ ୩୫ ବର୍ଷ ପରେ ଯାଇ କଂଗ୍ରେସକୁ ଗାନ୍ଧିଜୀଙ୍କ ନେତୃତ୍ୱ ମିଳିଥିଲା । ସେହି ୩୫ ବର୍ଷର କଂଗ୍ରେସର ଇତିହାସ କେବଳ ବ୍ୟର୍ଥତାର ଇତିହାସ । ଏହା ଇଂରେଜ ଜାତିର ତଥାକଥିତ ଗଣତନ୍ତ୍ର- ପ୍ରେମ ଉପରେ ଭରସାକରି ଆବେଦନ ନିବେଦନ ସ୍ତରରୁ ଅଧିକ ଦୂରକୁ ଆଗେଇ ପାରି ନ ଥିଲା । ବଙ୍ଗବିଚ୍ଛେଦ ଆନ୍ଦୋଳନର 'ସ୍ୱଦେଶୀ ବୟକଟ୍' ବିପ୍ଳବରେ ନିଜକୁ ଘୋର ଅନିଚ୍ଛାସତ୍ତ୍ୱେ ଭସାଇଦେଇ କଂଗ୍ରେସ କିଛିଦିନ ପାଇଁ ନିଜର ସ୍ଥିତିକୁ ରକ୍ଷାକରିବାକୁ ସମର୍ଥ ହୋଇଥିଲା ସତ, କିନ୍ତୁ ତା'ର ମୌଳିକ ଛାଞ୍ଚ ଓ ଆଦର୍ଶ ମୁଖ୍ୟତଃ ରକ୍ଷଣଶୀଳ, ବିପ୍ଳବକୁଣ୍ଠ ଓ ଇଂରେଜ ଜାତି ପ୍ରତି ଅତ୍ୟଧିକ ସମ୍ବେଦନଶୀଳ ହୋଇଥିବାରୁ ତାହା ସମଗ୍ର ଜନତାର ଆଶା ଆକାଙ୍‌କ୍ଷା ପୂର୍ଣ୍ଣ କରିବାକୁ ସମର୍ଥ ହୋଇପାରିଲାନାହିଁ । ଅପରପକ୍ଷେ ମହାରାଷ୍ଟ୍ର, ବଙ୍ଗ ଓ ପଞ୍ଜାବର ଜାଗ୍ରତ ଯୁବସମାଜ ତା'ର ପ୍ରଗତିଶୀଳ ସଂଗ୍ରାମୀ କାର୍ଯ୍ୟକଳାପ ଫଳରେ ଅଧିକ ଲୋକପ୍ରିୟତା ଅର୍ଜନକରୁଥିଲା ଓ ଏକମାତ୍ର ସେମାନଙ୍କ ଉପରେ ଦେଶବାସୀ କିଛିଟା ଭରସା ରଖିଥିଲେ । କଂଗ୍ରେସର ଯାହାକିଛି ସାର୍ଥକତା ଥିଲା ସେତକ ୧୯୧୧ ମସିହାରେ ଲର୍ଡ ହାର୍ଡିଂଙ୍କ କର୍ତ୍ତୃକ 'ବଙ୍ଗବିଚ୍ଛେଦ' ପ୍ରସ୍ତାବ ରଦ୍ଦହୋଇଗଲା ପରେ ଲୋପପାଇଗଲା । ୧୯୦୯ରେ 'ମର୍ଲେ-ମିଣ୍ଟୋ ରିଫର୍ମ'ର ମରୀଚିକା ପଛରେ ଦୌଡ଼ିବାକୁ ସେତେବେଳେ କଂଗ୍ରେସ ଲୋକଙ୍କର ଅଭାବ ନ ଥିଲା । କିନ୍ତୁ ଏହା ୧୮୬୮ ବା ୧୮୯୨ ସଂସ୍କାର ଆଇନ ଅପେକ୍ଷା କୌଣସି ଗୁଣରେ ବେଶି ନ ଥିଲା । ଏତିକି ବେଶି ଥିଲା ଯେ ଏହା ହିନ୍ଦୁ-ମୁସଲମାନ ଦୁଇଟି ସ୍ୱତନ୍ତ୍ର ଜାତି ବୋଲି ସ୍ୱୀକୃତି ଦେଇଥିଲା ଯାହାକି ପରବର୍ତ୍ତୀ ଯୁଗରେ ଦେଶର କାଳ ହେଲା । ରାସବିହାରୀ ଘୋଷ (ବୋଷ ନୁହନ୍ତି), ଗୋଖଲେ, ଫିରୋଜ ମେହେଟ୍ଟା ପ୍ରଭୃତି ମାନ୍ଧାଦଳିଆ କଂଗ୍ରେସ ଲୋକେ ଇଂରେଜର ଏହି ଜାତିଭେଦ ନୀତିକୁ ଆଖିବୁଜି ଏହାର ଉଚ୍ଛ୍ୱସିତ ପ୍ରଶଂସାକଲେ ।

୧୯୧୪ ମସିହା ଅଗଷ୍ଟ ଚାରିତାରିଖରେ ୟୁରୋପରେ ପ୍ରଥମ ମହାଯୁଦ୍ଧ ଆରମ୍ଭ

ହୋଇଥିଲା । କଂଗ୍ରେସ ଦଳ ଏହି ଯୁଦ୍ଧରେ ଇଂରେଜ ସରକାରକୁ ସାହାଯ୍ୟ କରିବାକୁ ଅଥୟ ହୋଇପଡ଼ିଲେ । "It expressed its profound devotion to the throne, its unswering allegiance to the British connection and its resolve to stand by the empire at all costs." (ବ୍ରିଟିଶ୍ ସିଂହାସନ ପ୍ରତି ଅଗାଧ ଭକ୍ତି ଓ ବ୍ରିଟିଶ୍ ସମ୍ବନ୍ଧ ପ୍ରତି ଅକୁଣ୍ଠ ଆନୁଗତ୍ୟ ଏବଂ ସମସ୍ତ ବାଧାବିଘ୍ନ ସତ୍ତ୍ୱେ ସମସ୍ତ ମୂଲ୍ୟଦେଇ ସାମ୍ରାଜ୍ୟ ପଛରେ ଛିଡ଼ାହେବାକୁ ସଂକଳ୍ପ ଘୋଷଣାକଲେ ।)

କଂଗ୍ରେସର ଏହି ବ୍ରିଟିଶ୍ ତୋଷଣ ନୀତିରେ ଉତ୍ୟକ୍ତ ହୋଇହିଁ ରାସବିହାରୀ ଓ ବାଘାଯତୀନ ବ୍ୟାପକ ସଶସ୍ତ୍ର ବିଦ୍ରୋହର ପରିକଳ୍ପନା କରିଥିଲେ । କିନ୍ତୁ କଂଗ୍ରେସଠାରୁ ବହପ ପାଇ ସରକାର ବିପ୍ଳବୀମାନଙ୍କୁ କଠୋର ହସ୍ତରେ ଦମନ କରିବାକୁ ଆରମ୍ଭ କରିଦେଲା ଏବଂ ଏହିମାନଙ୍କ ବିରୋଧରେହିଁ ତଥାକଥିତ ଭାରତ ରକ୍ଷା ଆଇନ ପ୍ରୟୋଗ କରାଗଲା । ୧୮୧୮ରେ ତିନିନମ୍ବର ରେଗୁଲେସନ ଓ ସଂଶୋଧିତ ଭାରତୀୟ ଦଣ୍ଡବିଧି ଆଇନ ପ୍ରଭୃତି ଅତ୍ୟାଚାରମୂଳକ ଆଇନଗୁଡ଼ିକ ବିପ୍ଳବୀମାନଙ୍କ ବିରୋଧରେ ଲଗାଗଲା, ବ୍ରିଟିଶ୍‌ର 'ସୁନାପୁଅ' କଂଗ୍ରେସ ବିରୋଧରେ ନୁହେଁ । ଏହା ଅବଶ୍ୟ ସତ୍ୟ ଯେ ଆନିବେଶାନ୍ତଙ୍କର 'ହୋମରୁଲ ଆନ୍ଦୋଳନ' ଓ ତିଲକଜୀଙ୍କର ସମର୍ଥନ ଦେଶରେ ନୂତନ ଆଶା ଜାଗ୍ରତ କରାଇଲା । କିନ୍ତୁ କଂଗ୍ରେସର ବ୍ରିଟିଶ୍ ତୋଷଣ ନୀତିରେ ଉତ୍ସାହିତ ହୋଇ ଯେ ସରକାର ବିପ୍ଳବୀମାନଙ୍କ ପ୍ରତି କଠୋର ନୀତି ଅବଲମ୍ବନ କଲା ଏଥିରେ ସନ୍ଦେହର ଅବକାଶ ନାହିଁ । ଏହା କଂଗ୍ରେସ ପକ୍ଷରେ ଏକ ଗୁରୁତର ଭୁଲ୍ ହେଲା ।

ପ୍ରଥମ ମହାଯୁଦ୍ଧ ସଂପର୍କରେ କଂଗ୍ରେସର ଆଭିମୁଖ୍ୟ ଆଲୋଚନା କରିବା ପୂର୍ବରୁ ଆମକୁ ସେହି ଯୁଦ୍ଧର କାରଣ ଏବଂ ଉଦ୍ଦେଶ୍ୟ ପ୍ରଥମେ ବୁଝିବାକୁ ହେବ । ଏହା ମୁଖ୍ୟତଃ ୟୁରୋପୀୟ ଶକ୍ତିମାନଙ୍କ ଭିତରେ ସାମ୍ରାଜ୍ୟବାଦୀ ପ୍ରତିଯୋଗିତାରୁହିଁ ସୃଷ୍ଟିହୋଇଥିଲା । ଶିଳ୍ପ ଓ ସାମରିକ କ୍ଷେତ୍ରରେ ଜର୍ମାନୀର ଦ୍ରୁତ ଅଗ୍ରଗତି ଫଳରେ ଆତଙ୍କିତ ହୋଇ ଇଂଲଣ୍ଡ ଏହି ଯୁଦ୍ଧ ଭିଆଇଥିଲା ।

ଦ୍ୱିତୀୟତଃ ଜର୍ମାନୀ ଶିଳ୍ପ ସମୃଦ୍ଧ ଇଂଲଣ୍ଡର ଏକଚାଟିଆ ବାଣିଜ୍ୟ କ୍ଷେତ୍ରରେ ଏକ ଶକ୍ତ ପ୍ରତିଦ୍ୱନ୍ଦ୍ୱୀ ଠିଆକରାଇଦେଲା । ସେ ଦୃଷ୍ଟିରୁ ଏହା ଇଂଲଣ୍ଡ ପକ୍ଷରେ ଏକ ଜୀବନ ମରଣ ଯୁଦ୍ଧ ଥିଲା; ଭାରତ ପକ୍ଷରେ ନୁହେଁ । ବରଂ ସେହି ଯୁଦ୍ଧରେ ଇଂଲଣ୍ଡର ପରାଜୟ ଭାରତର ସ୍ୱାର୍ଥର ଅନୁକୂଳ ଥିଲା; ପ୍ରତିକୂଳ ନୁହେଁ । ସୁତରାଂ ଭାରତର ସ୍ୱାଧୀନତା ଚାହୁଁଥିବା କୌଣସି ଭାରତୀୟ ସେ ଯୁଦ୍ଧରେ ଇଂଲଣ୍ଡକୁ ସାହାଯ୍ୟ କରିବା ଦୂରେଥାଉ ସମର୍ଥନ ସୁଦ୍ଧା କରିବା ଉଚିତ ନ ଥିଲା ।

ଇଂରେଜମାନେ ସେହି ଯୁଦ୍ଧରେ ସେମାନଙ୍କ ସାମ୍ରାଜ୍ୟର ସମସ୍ତ ଶକ୍ତି ଓ ସାମର୍ଥ୍ୟ ଖଟାଇ ଲଢ଼ିବାକୁ ବଦ୍ଧପରିକର ଥିଲେ; କିନ୍ତୁ ଭାରତରୁ ସେମାନେ ଆଶାନୁରୂପ ସାହାଯ୍ୟ ପାଇବେ ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ଇଂରେଜମାନେ ଏତେ

ବୋକା ନ ଥିଲେ ଯେ 'ବଙ୍ଗବିଚ୍ଛେଦ' ଯୁଗର ଜନଜାଗରଣ ଏବଂ ସଶସ୍ତ୍ର ବିପ୍ଳବୀର ଅସ୍ୱୀକାରକୁ ସେମାନେ ଭୁଲିଯିବେ । ଧିଙ୍ଗ୍ରା, କ୍ଷୁଦିରାମ ବା ସତ୍ୟେନ-କାନାଇର ହତ୍ୟାକାରୀ ଇଂରେଜ ଶାସନକୁ ଭାରତୀୟମାନେ କ୍ଷମାଦେବେ ବୋଲି ସେମାନେ କେବେ ହେଲେ କଳ୍ପନା କରିନଥିଲେ । ଅଥଚ ଭାରତର ସାହାଯ୍ୟ ସହାନୁଭୂତି ଉପରେ ବ୍ରିଟିଶ୍ ସାମ୍ରାଜ୍ୟର ଭବିଷ୍ୟତ ସ୍ଥିତି ନିର୍ଭରକରୁଥିଲା ।

କିନ୍ତୁ ବାସ୍ତବରେ ହେଲା କ'ଣ ? କେବଳ କଂଗ୍ରେସ ନୁହେଁ, ତିଲକଜୀଙ୍କ ପରି ଉଗ୍ରବାଦୀ ନେତା ମଧ୍ୟ କହିଥିବାର ଜଣାଯାଏ— ଏହି ସଂକଟଜନକ ପରିସ୍ଥିତିରେ କ୍ଷୁଦ୍ର-ବୃହତ୍, ଧନୀ-ନିର୍ଦ୍ଧନ ପ୍ରତ୍ୟେକ ଭାରତୀୟ ମହାମାନ୍ୟ ସରକାରଙ୍କୁ ସାଧ୍ୟମତେ ସାହାଯ୍ୟ କରିବା ଉଚିତ । ଗାନ୍ଧିଜୀଙ୍କ କଥା ନ କହିବା ଭଲ । ତାରାଚାନ୍ଦ ଲେଖିଛନ୍ତି— "Gandhiji became a self-appointed sergent for the Army."(1) ଭାରତୀୟ ରାଜନୀତିରେ ପ୍ରବେଶ କରିବା ପରେ ଏହା ଗାନ୍ଧିଜୀଙ୍କର ସର୍ବପ୍ରଥମ ଭୁଲ । ଏହି ଭୁଲର ମୂଲ୍ୟ ଭାରତୀୟମାନଙ୍କୁ ବାରମ୍ବାର ଦେବାକୁ ପଡ଼ିଛି ୧୯୪୨ ମସିହା ପର୍ଯ୍ୟନ୍ତ ।

ଯାହା ମୁହଁରେ କହୁଥିଲେ ତାହା ନିଷ୍ଠା ସହକାରେ ପାଳନ କରିବା ଗାନ୍ଧିଜୀଙ୍କ ଚରିତ୍ରର ଏକ ବିଶେଷ ଗୁଣ ଥିବାରୁ ସେ ସତକୁ ସତ ଯୁଦ୍ଧପାଇଁ ସେନାବାହିନୀରେ ଯୋଗଦେବାକୁ ଲୋକମାନଙ୍କୁ ପ୍ରବର୍ତ୍ତାଇବାକୁ ଲାଗିଲେ । ଏହିଭଳି ଭାବରେ ରାଜା-ମହାରାଜା, ବ୍ୟବସାୟୀ ଓ ରାଜନୀତିକ ନେତା ପ୍ରଭୃତି ସବୁ ସ୍ତରର ଭାରତୀୟ ଯୁଦ୍ଧରେ ମହାମାନ୍ୟ ସରକାରଙ୍କୁ ସାହାଯ୍ୟ କରିବାକୁ ଆଗେଇଆସିଲେ ।

ସ୍ୱୟଂ ଇଂରେଜମାନେ ଭାରତୀୟମାନଙ୍କର ସେହି 'ଅଗାଧ ରାଜଭକ୍ତି' ଦେଖି ସ୍ତମ୍ଭିତ ହୋଇଗଲେ । "India's war efforts surprised the British people and the British statesmen."(2) (ଭାରତୀୟମାନଙ୍କର ଯୁଦ୍ଧ-ଆୟୋଜନ ବ୍ରିଟିଶ୍ ଲୋକ ଓ ରାଜନୀତିଜ୍ଞମାନଙ୍କୁ ଆଶ୍ଚର୍ଯ୍ୟ କରିଦେଇଥିଲା ।) ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଆସକ୍ୱିଥ୍ ଗଦ୍‌ଗଦ ସ୍ୱରରେ କହିଲେ, " In all the moving exhibition of national and imperial patriotism which the war has evoked, there was none which had more touched the feeling of the British people than the magnificent reponse which the princes and people of India has made to thier need." ଅର୍ଥାତ୍ ଏହି ଯୁଦ୍ଧରେ ଯେତେ ସ୍ଥାନରେ ଜାତୀୟତା ଓ ଦେଶାତ୍ମବୋଧଭାବକୁ ଉଜ୍ଜୀବିତ କରିଅଛି, ସେଭଳି ଅନ୍ୟ କେହି କରିନାହିଁ ।

ଭାରତୀୟମାନଙ୍କର ସେହି ତଥାକଥିତ ଦେଶାତ୍ମବୋଧରେ ଅଭିଭୂତ ହୋଇ ଇଂରେଜମାନେ ଏ ଦେଶରୁ ପ୍ରଚୁର ଯୁଦ୍ଧ ସାମଗ୍ରୀ, ପ୍ରାୟ କୋଡ଼ିଏ କୋଟି ଟଙ୍କା ଓ ପ୍ରାୟ ବାରଲକ୍ଷ ସୈନ୍ୟ ସଂଗ୍ରହ କରିବାକୁ ସମର୍ଥ ହୋଇଥିଲେ ଏବଂ ସମସଂଖ୍ୟକ ସୈନ୍ୟ ବିଦେଶକୁ ଯୁଦ୍ଧ କରିବାକୁ ପଠାଯାଇଥିଲେ । ଦୁର୍ଭାଗ୍ୟର କଥା, ଏହି

1. Tarachand – The History of Freedom Movement in India, Vol- III Pg– 470
2. Parliamentary Debate

ସୈନ୍ୟମାନଙ୍କ ଭିତରୁ ଶତକଡ଼ା ଦଶଜଣ ବା ପ୍ରତି ଦଶ ଜଣରେ ଜଣେ ସୈନ୍ୟ ଆହତ ବା ନିହତ ହୋଇଥିଲେ ।

ଏହିଭଳି ଭାବରେ ଲକ୍ଷ ଲକ୍ଷ ଭାରତ ସନ୍ତାନଙ୍କ ପ୍ରାଣଦାନ ଓ ରକ୍ତଦାନ ବିନିମୟରେ ଇଂରେଜମାନେ ପ୍ରଥମ ଯୁଦ୍ଧରେ ବିଜୟଲାଭକଲେ । ଭାରତୀୟମାନଙ୍କର ସହାୟତାରେ ଇଂଲଣ୍ଡ ଯୁଦ୍ଧରେ ଜିତିଥିବାରୁ ଯୁଦ୍ଧପରେ ଭାରତକୁ ସ୍ୱାଧୀନତା ମିଳିବ ବୋଲି ଆଶାକରି ତିଲକଙ୍କଠାରୁ ଆରମ୍ଭକରି ଗାନ୍ଧିଜୀଙ୍କ ପର୍ଯ୍ୟନ୍ତ ସମସ୍ତେ ଇଂରେଜମାନଙ୍କୁ ଯୁଦ୍ଧରେ ସାହାଯ୍ୟ କଲେ । ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜ ମଧ୍ୟ ସେହିଭଳି ଭାଷାରେ କଥା କହୁଥିଲେ ।

କିନ୍ତୁ ତେଣେ ଲର୍ଡ କର୍ଜନଙ୍କ ଭଳି ନିଆଁଗିଳା ଇଂରେଜମାନେ ସେହି ଅଷ୍ଟାଦଶ ଶତାବ୍ଦୀର ଚିନ୍ତାଧାରାକୁ ଛାଡ଼ି ନ ଥିଲେ । ସେମାନେ ଭାବୁଥିଲେ — "India was not a nation, or nor could she achieve nationhood within any conceivable stretch of time." (ଭାରତ କେଭେଁ ଏକ ଜାତି ନ ଥିଲା କିମ୍ବା ନିକଟ ଭବିଷ୍ୟତ୍‌ରେ ଜାତି ପଦବାଚ୍ୟ ହୋଇପାରିବନାହିଁ) ଏବଂ ଏହି ମନୋଭାବ ନେଇ ସେମାନେ ୧୯୧୯ରେ 'ମଣ୍ଟେଗୁ-ଚେମସ୍‌ଫୋର୍ଡ ଶାସନ ସଂସ୍କାର'ର ଭାଲୁ ଆମକୁ ଧରାଇଥିଲେ । ଅବଶ୍ୟ ତତ୍‌କାଳୀନ ଭାରତୀୟ ନେତାମାନେ ଓ କଂଗ୍ରେସ ଦଳ ଯେତେବେଳେ "Self Government within British Empire." ଅର୍ଥାତ୍ ବ୍ରିଟିଶ୍ ସାମ୍ରାଜ୍ୟ ଭିତରେ ସ୍ୱାୟତ୍ତଶାସନ ଚାହୁଁଥିଲେ, ସେତେବେଳେ ଇଂରେଜମାନେ ସେମାନଙ୍କୁ ଆଉ ଅଧିକ କ'ଣ ଦେଇଥା'ନ୍ତେ ? ଫଳରେ ସବୁ ଗୁରୁତ୍ୱପୂର୍ଣ୍ଣ ବିଭାଗ ଭାଇସ୍‌ରାୟ ହାତରେ ରହିଲା ଓ 'ରାସ୍ତାଘାଟ, କୂଅ ପୋଖରୀ ମରାମତି କରିବାର ଅଧିକାର ନେଇ ଭାରତୀୟମାନଙ୍କୁ ସନ୍ତୁଷ୍ଟ ରହିବାକୁ ପଡ଼ିଲା ।' ହିନ୍ଦୁ ମୁସଲମାନ ଦୁଇଟି ପୃଥକ୍ ଜାତି ବୋଲି ୧୯୦୯ ମସିହା ଆଇନରେ ଯେଉଁ ଷଡ଼ଯନ୍ତ୍ରର ଜାଲ ବିଛାଇଯାଇଥିଲା ସେଥିରେ ଏହା ଦ୍ୱାରା ଶେଷ ମୋହର ମାରିଦିଆଗଲା । ୧୯୦୯ର ସଂସ୍କାର ଆଇନଗୁଡ଼ିକରେ ସାଂପ୍ରଦାୟିକ ବିଷବୃକ୍ଷର ଯେଉଁ ବୀଜ ବପନ କରାଯାଇଥିଲା ତା'ର ଭୟାବହ ପରିଣତି ସଂପର୍କରେ ଜନୈକ ବିଟ୍ରିଶ୍ ରାଜନୀତିଜ୍ଞ ମତ ଦେଇଥିଲେ— "The concession of this principles when electoral institutions were inaugurated a few years ago is the great blunder ever committed by the British Government in India. I believe that if this principle is perpetuated we shall have saddled India with a new system of caste which will every year eat more deeply into her life. So long as it remains, India will never attain to this unity of nationhood. The longer it remains, the more difficult will it be to uproot, till at the end it will only be eradicated at the cost of civil war. x x x x But I feel that we shall be guilty of an unpardonable crime against India if we fail now to make provision, where by these

fetters; in which we have allowed her to bind herself, can be loosened."(1) (କେତେ ବର୍ଷ ତଳେ ଆମେ ଯେତେବେଳେ ଏହି ସାଂପ୍ରଦାୟିକ ନିର୍ବାଚନମଣ୍ଡଳୀ ବ୍ୟବସ୍ଥା ଉଦ୍‌ଘାଟନ କଲୁ, ସେହି ସମୟରୁ ବ୍ରିଟିଶ୍ ଦ୍ୱାରା ଭାରତ ପ୍ରତି ସବୁଠାରୁ ବଡ଼ ଅନ୍ୟାୟ କରାଗଲା । ମୋ'ର ବିଶ୍ୱାସ, ଆମେ ଯଦି ଏହି ଭେଦନୀତି ପ୍ରୟୋଗ କରିଚାଲିବୁ, ତେବେ ତାହା ପ୍ରତିଦିନ ଭାରତର ଜାତୀୟ ଜୀବନର ଭିତରକୁ ଭିତରକୁ ପ୍ରବେଶ କରି ଚାଲିବ ଏବଂ ଏହା ଥିବାଯାଏ ଭାରତରେ କଦାପି ଜାତୀୟ ସଂହତି ପ୍ରତିଷ୍ଠା କରାଯାଇ ପାରିବ ନାହିଁ । ଯେତେ ଅଧିକ ଦିନ ଏହା ରହିବ, ଏହାକୁ ନିର୍ମୂଳ କରିବା ସେତେ କଷ୍ଟସାଧ ହୋଇପଡ଼ିବ ଏବଂ ଶେଷରେ ଏକ ଗୃହଯୁଦ୍ଧ ବିନିମୟରେ ହୁଏତ ଏହା ଲୋପପାଇବ । ଭାରତକୁ ଆମେ ଯେଉଁ ଜଂଜିରରେ ବାନ୍ଧିବାକୁ ଯାଉଛୁ, ତାହାକୁ ଢିଲାକରିବାର ଯଦି କୌଣସି ବ୍ୟବସ୍ଥା ଆମେ ଏବେଠାରୁ ନ କରୁ ତେବେ ଆମେ ଭାରତ ବିରୋଧରେ ଏକ ମହା ଅପରାଧରେ ଅଭିଯୁକ୍ତ ହେବା ବୋଲି ମୁଁ ଅନୁଭବ କରୁଛି) ।

ଭାରତର ଭାଗ୍ୟର ବିଡ଼ମ୍ବନା ଯେ ଇଂରେଜମାନଙ୍କର ଏହି ଚତୁରକୌଶଳ କେହି ବୁଝିପାରିଲେନାହିଁ, ବୁଝିଥିଲେ ବି କ୍ଷମତାର ଲୋଭ ସେମାନଙ୍କୁ ଅନ୍ଧ କରିଦେଇଥିଲା । ଉଭୟ ମାନ୍ଦାଦଳିଆ ଓ ଉଗ୍ରପନ୍ଥୀ କଂଗ୍ରେସଲୋକେ ଏହାକୁ ସମର୍ଥନ କଲେ, "As constituting a real and substantial step towards the progressive realisation of reponsible Government."(2) ସୁରେନ୍ଦ୍ର ବାନାର୍ଜୀଙ୍କ 'ଲିବରାଲ ଫେଡେରସନ ଅଫ୍ ଇଣ୍ଡିଆ' ତ ଏହା ସପକ୍ଷରେ ପ୍ରଚାର କରିବାକୁ ବୁଲିଲେ; ଏପରିକି ଗାନ୍ଧିଜୀ ପ୍ରଥମେ ଏହି ସଂସ୍କାର ପ୍ରତି ଅନୁକୂଳ ମତ ପୋଷଣ କରିଥିଲେ । ଏହା କଂଗ୍ରେସ ଓ ଗାନ୍ଧିଜୀଙ୍କର ଏକ ମସ୍ତବଡ଼ ପ୍ରମାଦ ହେଲା । (୩)

**ନରମେଧ ଯଜ୍ଞ :**

ମଣ୍ଟେଗୁ-ଚେମ୍‌ସଫୋର୍ଡ ଶାସନ ସଂସ୍କାର ଆଇନ ପାସ୍ ହେବା ପୂର୍ବରୁ ସରକାର ୧୯୧୭ ଡିସେମ୍ବର ୧୦ ତାରିଖ ରାଓ୍ୱାଲାଟ କମିଟି ବସାଇଥିଲେ । ଏହି କମିଟିର ମୁଖ୍ୟ ହେଲେ ଲଣ୍ଡନ ହାଇକୋର୍ଟର ବିଚାରପତି ଜଷ୍ଟିସ୍ ରାଓ୍ୱାଲାଟ । ଭାରତରେ କ୍ରମବର୍ଦ୍ଧମାନ ସଶସ୍ତ୍ର ବିପ୍ଳବକୁ ଜବଦ କରିବା ପାଇଁ ତତ୍‌କାଳୀନ 'ଭାରତ ରକ୍ଷା ଆଇନ' ପ୍ରଥମ ମହାଯୁଦ୍ଧ ପରେ ପରେ ଅକାମୀ ହୋଇଯିବାର ଆଶଙ୍କା ହେବାରୁ ସେହି ଛାଞ୍ଚରେ ଆଉ ଏକ କଠୋର ଦମନମୂଳକ ଆଇନ ପ୍ରଣୟନ କରିବାକୁ ଏହି କମିଟି ଗଠିତ ହୋଇଥିଲା – ଯାହା 'ସେଡ଼ିସନ୍ କମିଟି' ବା 'ରାଓ୍ୱାଲାଟ କମିଟି' ନାମରେ କୁଖ୍ୟାତ ।

---

1. Curtis Lionel – Letters to the Pople of India on Responsive Government (Calcutta-1917) Page 111-12
2. C. Y. Chintamoni – Indian Politics since the Mutiny, page – 94
୩. ଦେ. ତ୍ରିପାଠୀ – ଭାରତର ସ୍ୱାଧୀନତା ସଂଗ୍ରାମ, ପୃଷ୍ଠା – ୧୩୦

ସଶସ୍ତ୍ର ବିଦ୍ରୋହୀଙ୍କ ବିରୋଧରେ କଂଗ୍ରେସ ଦଳ ସେପର୍ଯ୍ୟନ୍ତ ଖୋଲାଖୋଲି କହୁ ନ ଥିଲେ ସୁଦ୍ଧା ତାହାର ବ୍ରିଟିଶ୍ ତୋଷଣ ନୀତି ସରକାରକୁ ଖୁବ୍ ହିମ୍ମତ ଦେଉଥିଲା । ସେ କହୁଥିଲେ – Our enemies within the gates are proportionately very low, .......... ଏବଂ ତାହାର କାରଣ Staunchness of the people at large. ଏବଂ ସେହି କାରଣରୁ ସଶସ୍ତ୍ର ବିଦ୍ରୋହକୁ ଦମନକରିବାକୁ ଆଇନ ପ୍ରଣୟନ ହେଲା ଏବଂ ସୁପାରିସ୍ କରାଗଲା । ୧୯୧୮ ଏପ୍ରିଲରେ ରାଓ୍ୱଲାଟ କମିଟିର ରିପୋର୍ଟ ପ୍ରକାଶିତହେଲା ଏବଂ ତାହାର ସୁପାରିସ୍ ଉପରେ ୧୯୧୯ ମାର୍ଚ୍ଚ ୨୧ ତାରିଖରେ ପାସ୍ ହେଲା ଦୁଇଟି କଠୋର ଆଇନ । ଏହି ଆଇନର ସଂକ୍ଷିପ୍ତ ସାର ଗାନ୍ଧିଜୀଙ୍କ ରଚନା ସଂଗ୍ରହରୁ – "ଉକ୍ତ କଳଙ୍କିତ ଆଇନର ସଂକ୍ଷିପ୍ତ ଅର୍ଥ ହେଉଛି ରାଜଦ୍ରୋହାତ୍ମକ କାଗଜପତ୍ର ରଖିବା ମଧ ଦଣ୍ଡନୀୟ ହେବ । ରାଜଦ୍ରୋହ ଅପରାଧରେ ଦଣ୍ଡିତ ବ୍ୟକ୍ତି ସାଥିରେ ଯେଉଁ ଲୋକ ବସିବ ସେ ମଧ ଜେଲଦଣ୍ଡ ପାଇବ । ଦଣ୍ଡିତ ବ୍ୟକ୍ତିମାନଙ୍କ ପାଖରୁ ଉତ୍ତମ ଆଚରଣ ପାଇଁ ମୁଚାଲିକା (ବଣ୍ଡ) ପତ୍ର ଲେଖାଇ ନେଇ ପାରନ୍ତି । ସେମାନଙ୍କୁ ନଜରରେ ରଖିବା ପାଇଁ ପୁଲିସ ନିଯୁକ୍ତ ହୋଇପାରନ୍ତି । ସେମାନଙ୍କ ଗତିବିଧିରେ କଟକଣା ରଖିପାରନ୍ତି । ରାଜଦ୍ରୋହମୂଳକ ଅଭିଯୋଗର ବିଚାର ସାଧାରଣ ବିଳମ୍ବିତ ପ୍ରକ୍ରିୟାରେ ନହୋଇ ଚଟାପଟ୍ କରାଯିବ । ଏହି ରାୟ ବିରୋଧରେ କୌଣସି ଅପିଲ୍ କରାଯିବ ନାହିଁ ।"

ଅବଶ୍ୟ ବଡ଼ଲାଟ ସଭାର ଶଙ୍କରନ ନାୟାରଙ୍କୁ ଛାଡ଼ି ସମସ୍ତ ଭାରତୀୟ ସଭ୍ୟ ଏହାର ବିରୋଧକଲେ । ଏପରିକି ମୁସ୍ଲିମ୍ ଲିଗ୍‌ର ତତ୍କାଳୀନ ସଭାପତି ଓ ପରବର୍ତ୍ତୀ କାଳରେ ଇଂଲଣ୍ଡର ଜଣେ କଟ୍ଟର ସମର୍ଥକ ଓ ପାକିସ୍ତାନର ସ୍ଥାପୟିତା ଜିନ୍ନା ସାହେବ କହିଲେ, "I do not wish to state it by way of threat or intimidation to Government, but I wish to state it because it is my duty to tell you that, if these measures are passed you will create in the country from one end to the other a discontent and agitation, the like of which you have not witnessed and it will have, believe me, a most disastrous effect on the good relation that have existed between the Government and people" (ମୁଁ ସରକାରଙ୍କୁ ଧମକାଉନାହିଁ ବା ଦବେଇବା ଉଦ୍ଦେଶ୍ୟରେ କହୁନାହିଁ । ମୁଁ ଭାବୁଛି ଏହା ସରକାରଙ୍କୁ ଜଣାଇଦେବା ମୋର କର୍ତ୍ତବ୍ୟ ଯେ ଯଦି ଏହି ବିଲ୍ ପାସ୍ ହୁଏ, ଏହା ସାରା ଦେଶରେ ଏଭଳି ଅସନ୍ତୋଷ ଓ ବିକ୍ଷୋଭ ସୃଷ୍ଟିକରିବ, ଯାହାକି ଆପଣ ପୂର୍ବରୁ କେବେ ଦେଖି ନ ଥିବେ ଏବଂ ଆପଣ ମତେ ବିଶ୍ୱାସ କରନ୍ତୁ ଯେ ସରକାର ଏବଂ ଲୋକଙ୍କ ଭିତରେ ଆଜିଯାଏ ରହିଆସିଥିବା ସୁସମ୍ପର୍କ ଉପରେ ଏହା ଅତି ଖରାପ ପ୍ରଭାବ ପକାଇବ ।)

ବାଇଶ ଜଣ ଭାରତୀୟ ସଦସ୍ୟଙ୍କର ବିରୋଧୀ ଭୋଟ ଏବଂ ୩୨ ଜଣ

ସରକାରୀ ସଭ୍ୟଙ୍କର ସପକ୍ଷ ଭୋଟରେ ବିଲ୍‌ଟି ଆଇନରେ ପରିଣତ ହେଲା । ଆଇନର ତାତ୍ପର୍ଯ୍ୟ ଜଣାଗଲା ପରେ ସତକୁ ସତ ସାରା ଦେଶରେ ଏହାର ପ୍ରବଳ ପ୍ରତିବାଦ ହେଲା । 'ଅମୃତବଜାର ପତ୍ରିକା' (୧୩ ଜାନୁଆରୀ ୧୯୧୯) ଲେଖିଲେ- "Gigantic blunder which would arouse the worst passions of peaceful law abiding people." (ଏହା ଗୁରୁତର ଭୁଲ ଯାହାକି ଆଇନପ୍ରେମୀ ଶାନ୍ତିପ୍ରିୟ ନାଗରିକମାନଙ୍କ ମଧ୍ୟରେ ସୁଦ୍ଧା ହିଂସ୍ର ମନୋବୃତ୍ତି ଜାଗ୍ରତକରାଇବ ।) ମାଡ୍ରାଜର 'ନିଉଇଣ୍ଡିଆ' (୧୮ ଜାନୁୟାରୀ, ୧୯୧୯) ଏହାକୁ 'Monstrous' (ନାରକୀୟ) ବୋଲି ଓ ଲଜପତରାୟଙ୍କର ପଞ୍ଜାବୀ ଏହାକୁ ".....a barefaced attempt on the part of bureaucracy which has been demoralised by the exercise of unrestrained power to interfere with liberty." (ସ୍ୱାଧୀନତା ଉପରେ ହସ୍ତକ୍ଷେପ କରିବାକୁ ଅପରିସୀମ କ୍ଷମତା ଲାଭ କରିଥିବା ନୈତିକତାହୀନ ଅମଲାତନ୍ତ୍ରର ଏହା ନଗ୍ନ ପରିପ୍ରକାଶ) ଓ 'ହିନ୍ଦୁ' ପତ୍ରିକା The Indian public would read the proposed provisions with shame, indignation and disgust, (ଘୃଣା, ଦୁଃଖ ଓ ଅବଜ୍ଞା ସହ ଭାରତୀୟମାନେ ଏହି ପ୍ରସ୍ତାବିତ ଆଇନକୁ ପାଠକରିବେ) ବୋଲି ଲେଖିଥିଲେ ।

ଭାରତୀୟ ରାଜନୀତିରେ ନବାଗତ ଗାନ୍ଧିଜୀ ଏହାର ବିରୋଧ କରିବାକୁ ସ୍ଥିର କଲେ । କଂଗ୍ରେସ ଦଳ ହୁଏତ ମନେକରିଥିଲେ ଯେ 'ରାଓ୍ୱାଲାଟ ଆଇନ' ମୁଖ୍ୟତଃ ସଶସ୍ତ୍ର ବିପ୍ଳବୀଙ୍କ ବିରୋଧରେ ପ୍ରୟୋଗକରାଯିବ, କାରଣ ସେପର୍ଯ୍ୟନ୍ତ 'କଂଗ୍ରେସ' ଇଂରେଜମାନଙ୍କ ସୁନାପୁଅ ତାଲିକାରେ ରହିଥିଲା । କିନ୍ତୁ ଯେତେବେଳେ ଆଇନର ଅନ୍ତର୍ନିହିତ ରୂପ ଓ ତା'ର ପ୍ରୟୋଗ ଜନସମକ୍ଷରେ ପ୍ରକଟିତ ହୋଇଗଲା, ସେତେବେଳକୁ ନେଡ଼ିଗୁଡ଼ କହୁଣିକୁ ବହିଯାଇଥିଲା ।

ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ୧୯୧୯ ମାର୍ଚ୍ଚ ୩୦ ତାରିଖରେ ସାରା ଦେଶରେ 'ଆଇନ' ବିରୋଧରେ ପ୍ରତିବାଦ ଦିବସ ପାଳିତ ହେବାକୁ ପ୍ରଥମେ ସ୍ଥିରହୋଇଥିଲା । କିନ୍ତୁ ପରେ ପୁଣି ଏହି ତାରିଖ ଏପ୍ରିଲ ଛ'ତାରିଖକୁ ସ୍ଥିରୀକୃତ ହେଲା । ଏହା ଗାନ୍ଧିଜୀଙ୍କ ନେତୃତ୍ୱରେ ସର୍ବପ୍ରଥମ 'ଅହିଂସ ସତ୍ୟାଗ୍ରହ' । ମହାଯୁଦ୍ଧରେ କ୍ଷତବିକ୍ଷତ ଓ ୧୯୧୯ର ମଣ୍ଟେଗୁ ଚେମସ୍‌ଫୋର୍ଡ଼ଘୋଷଣା ପରେ ଆଶା-ଆଶଙ୍କା ଭିତରେ ଦୋଳାୟମାନ ଏବଂ ଅଶାନ୍ତ ଓ ବିକ୍ଷୁବ୍ଧ ଭାରତବାସୀ ଗାନ୍ଧିଜୀଙ୍କର ଏହି ଆହ୍ୱାନର ଚମତ୍କାର ଜବାବଦେଲେ । ତାଙ୍କ ନିଜ ଭାଷାରେ, "It was a most wonderful spectacle." ଗାଁଗହଳିଠାରୁ ସହରଯାଏ ସର୍ବତ୍ର ଏହା ଅଭୂତପୂର୍ବ ଜନଜାଗରଣ ସୃଷ୍ଟିକରିଥିଲା । ସମବେତ ପ୍ରାର୍ଥନା, ଉପବାସ ଓ ହରତାଳ ପ୍ରଭୃତି ଯଥେଷ୍ଟ ସଫଳତାର ସହ ପାଳିତହେଲା ।

ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ପଞ୍ଜାବରେ ଏହି ରାଓ୍ୱାଲଟ ଆଇନର ଅର୍ଥ ଓ ତାତ୍ପର୍ଯ୍ୟ ଥିଲା ସ୍ୱତନ୍ତ୍ର । ଏକେତ ଯୁଦ୍ଧପ୍ରିୟ ପଞ୍ଜାବୀ ଶିଖଜାତିର ବହୁ ଅଭିଯୋଗ ଥିଲା ଇଂରେଜମାନଙ୍କ ବିରୋଧରେ । କାନାଡ଼ା ଇମିଗ୍ରେସନ୍ ଆଇନ ଅନୁସାରେ

(ପୂର୍ବବର୍ତ୍ତୀ ଭାଗ ଦ୍ରଷ୍ଟବ୍ୟ) ଶହ ଶହ ଶିଖ ଅସନ୍ତୁଷ୍ଟ ହୋଇ ଘରକୁ ଫେରିଥିଲେ । ଦ୍ୱିତୀୟତଃ ଯୁଦ୍ଧ ବନ୍ଦହୋଇଯିବା ଫଳରେ ହଜାର ହଜାର ଶିଖ ସୈନ୍ୟ ବେକାର ହୋଇଗଲେ । ଏହିଭଳି ଭାବରେ ସାରା ପଞ୍ଜାବ ଯେତେବେଳେ ଅସନ୍ତୋଷରେ କୁହୁଳିଥିଲା, ଠିକ୍ ସେତିକିବେଳେ ରାଓ୍ୱାଲଟ ଆଇନ ସେଥିରେ ଘୃତ ବର୍ଷଣ କଲା । ଏପ୍ରିଲ ୬ ତାରିଖ ହରତାଳ ତେଣୁ ସଂପୂର୍ଣ୍ଣ ସଫଳହୋଇଥିଲା । ଅହଙ୍କାରୀ ପଞ୍ଜାବଲାଟ୍ ଓଡାୟାର ଏହା ବରଦାସ୍ତ କରିବାକୁ ପ୍ରସ୍ତୁତ ନ ଥିଲା । ସେ ଧମକ ଦେଇ କହିଲା, ''ଏହି ରାଜ୍ୟରେ ରାଜନୈତିକ ଆନ୍ଦୋଳନ ସହ ସଂପୃକ୍ତ ସମସ୍ତଙ୍କୁ ମୁଁ ସାବଧାନ କରିଦେବାକୁ ଚାହେଁ ଯେ ସେମାନେ ସଂଗଠିତ କରୁଥିବା ସଭାସମିତି ପାଇଁ ଏବଂ କହୁଥିବା ଭାଷାର ପରିଣତି ପାଇଁ ସେମାନେ ସଂପୂର୍ଣ୍ଣ ଦାୟୀ ରହିବେ ।''

ଇଂରେଜର କଥା ଅନୁସାରେ କାମ – ବିଶେଷତଃ ଏ କ୍ଷେତ୍ରରେ ଜନଆନ୍ଦୋଳନକୁ ଦମନକରିବାକୁ ସରକାର ପାଖରେ ଅତ୍ୟାଚାର ଓ ଦମନମୂଳକ ଅସ୍ତ୍ର ଛଡ଼ା ଆଉ କିଛି ନ ଥିଲା । ସତ୍ୟପାଳ ଓ ସଫିଉଦ୍ଦିନ କିଚଲୁଙ୍କର ଗିରଫ ଓ ନିର୍ବାସନ ସାଙ୍ଗକୁ ପଞ୍ଜାବ-ପ୍ରବେଶ ନିଷେଧକରି ଗାନ୍ଧିଜୀଙ୍କ ଉପରେ ଜାରିହୋଇଥିବା ନିଷେଧାଜ୍ଞା ଶିଖମାନଙ୍କର ଅସନ୍ତୋଷକୁ ଆହୁରି ବଢ଼ାଇଦେଲା । ୧୦ ଏପ୍ରିଲରେ ଏହା ବିରୋଧରେ ହୋଇଥିବା ପ୍ରତିବାଦକୁ ସରକାର ଦୃଢ଼ହସ୍ତରେ ଦମନ କରିଥିଲା ଏବଂ ୧୧ ତାରିଖରେ ପଞ୍ଜାବଲାଟ ଓ'ଡାୟାର ଆତଙ୍କିତ ହୋଇ ଅମୃତସର ସହରର ଶାସନଦାୟିତ୍ୱ ସେନାବାହିନୀ ହାତକୁ ଟେକିଦେଲା ଏବଂ ଫଳରେ କାଣ୍ଡଜ୍ଞାନବିବର୍ଜିତ ନୃଶଂସ ସେନାପତି ଡାୟାର ହେଲା ଅମୃତସର ସହରର ହର୍ତ୍ତା-କର୍ତ୍ତା ।

୧୩ ତାରିଖ ଦିନ ଅମୃତସର ସହରରେ ସବୁ ପ୍ରକାର ସଭାସମିତି ଉପରେ ନିଷେଧାଜ୍ଞା ଜାରିକରାଗଲା । କିନ୍ତୁ ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ନିର୍ଦ୍ଦେଶନାମାକୁ ଜାଣିଶୁଣି ସହରରେ ଭଲଭାବରେ ପ୍ରଚାର କରାଗଲାନାହିଁ । ଫଳରେ ଲୋକମାନେ ଏ ସମ୍ପର୍କରେ କିଛି ଜାଣିପାରିଲେନାହିଁ । ଏହି ଘୋଷଣାନାମା ପ୍ରକାଶ ପାଇବା ପୂର୍ବରୁ ଅମୃତସରର ଜାଲିୟାନଓ୍ୱାଲାବାଗ୍‌ଠାରେ ଏକ ପ୍ରତିବାଦ ସଭା ଡକାଯାଇଥିଲା ଏବଂ ତଦନୁସାରେ ପ୍ରାୟ ୨୦-୨୫ ହଜାର ଲୋକ ସେଠାରେ ଏକାଠିହୋଇଥିଲେ । ବ୍ରିଗେଡିଅର ଡାୟାରକୁ ଏହା ଏକ ଅପମାନଭଳି ବୋଧହେଲା ଏବଂ ଲୋକମାନଙ୍କୁ 'ଶିକ୍ଷା' ଦେବାକୁ ବଦ୍ଧପରିକର ହୋଇ ନବେ ଜଣ ଗୁର୍ଖା ସୈନ୍ୟ ଓ ଦୁଇଟି ମେସିନ୍‌ଗନ୍ ନେଇ ସଭା ଆରମ୍ଭ ହେବା ପୂର୍ବରୁ ବାଗ୍‌କୁ ଘେରିଗଲା । ବାଗ୍‌ର ଚାରିପଟେ ଉଚ୍ଚ ପାଚେରି ଥିଲା । ଯେତେବେଳେ ଲୋକେ ଧୀରସ୍ଥିରଭାବେ ବସି ଭାଷଣ ଶୁଣୁଥିଲେ ସେତିକିବେଳେ ସେ ହଠାତ୍ ଫାଟକ ପାଖରେ ପହଞ୍ଚି ସଂପୂର୍ଣ୍ଣ ଅତର୍କିତ ଭାବରେ ଗୁଳି ଚଳାଇବା ଆରମ୍ଭ କରିଦେଲା । ଏହି ଅପ୍ରାତ୍ୟାଶିତ ଗୁଳିଚାଳନା ଫଳରେ ଶହଶହ ନିର୍ଦ୍ଦୋଷ ନିରପରାଧ ଲୋକ ଟଳିପଡ଼ିଲେ । କାହାର କେଉଁଆଡ଼କୁ ପଳାଇଯିବାର ଉପାୟ ନ ଥିଲା, କାରଣ

ଚାରିପାଖରେ ପାଚେରି ଏବଂ ଏକମାତ୍ର ଫାଟକ ପାଖରେ ମେସିନ୍‌ଗନ୍ ରଖାଯାଇଥିଲା । ଦଶ ମିନିଟ୍ ଭିତରେ ନିରସ୍ତ୍ର ନିର୍ଦ୍ଦୋଷ ହଜାରେ ବା ବାରଶହଙ୍କର ପ୍ରାଣ ନେଇ ଆତତାୟୀ ଡାୟାର ଚୁପ୍ କରି ଚାଲିଗଲା । ମୃତ ଓ ଆହତ ବ୍ୟକ୍ତିଙ୍କ ଖବର ନେବାର ଚେଷ୍ଟା ମଧ୍ୟ କର୍ତ୍ତୃପକ୍ଷ କରିନଥିଲେ । ତାରାଚାନ୍ଦ ଲେଖିଛନ୍ତି – "Dyer then moved away from the slaughter house proudly surveying his handiwork unconcernd about the dead and the wounded." (ନିଜର ହସ୍ତନୈପୁଣ୍ୟକୁ ଗର୍ବ ସହକାରେ ଅବଲୋକନକରି ଏବଂ ମୃତାହତଙ୍କ ବିଷୟରେ ଆଖିବୁଜିଦେଇ ଡାୟାର ସେହି କଂସେଇଖାନାରୁ ଚାଲିଗଲା । )

କୁଢ଼ କୁଢ଼ ଶବ ଜମା ହୋଇଲା । ଯେଉଁମାନେ ଅର୍ଦ୍ଧମୃତ ବା ଆହତ ହୋଇଥିଲେ ସେମାନଙ୍କର ଆର୍ତ୍ତଚିତ୍କାର ବାୟୁମଣ୍ଡଳକୁ ଭାରାକ୍ରାନ୍ତ କରିଦେଲା ଏବଂ ଜାଲିୟାନୱାଲାବାଗ୍‌ର ମାଟି ସହିଦର ରକ୍ତତର୍ପଣରେ ଲାଲହୋଇଗଲା । ଏଭଳି ଭୟାବହ ହତ୍ୟାକାଣ୍ଡ ପୃଥିବୀରେ ଆଗରୁ କେବେ ହୋଇନଥିଲା । ଏହା ଇଂରେଜ ସରକାରର ଲୋମହର୍ଷଣକାରୀ ନୃଶଂସତା, ଭାରତର ସ୍ୱାଧୀନତା ଦାବିପ୍ରତି ଚରମ ଅବଜ୍ଞା ଓ ସର୍ବୋପରି ଗାନ୍ଧିଜୀଙ୍କ ଅହିଂସାର ନିରର୍ଥକତା ସ୍ପଷ୍ଟରୂପେ ପ୍ରତିପାଦିତ କରିଦେଲା । ଅବଶ୍ୟ ଜାଲିୟାନୱାଲାବାଗ୍‌ର ହତ୍ୟାକାଣ୍ଡ ଏକ ବିକ୍ଷିପ୍ତ ବା ଆକସ୍ମିକ ଘଟଣା ନ ଥିଲା, ଏହା ଭାରତୀୟ ଜନଆନ୍ଦୋଳନ ପ୍ରତି ବ୍ରିଟିଶ୍ ଶକ୍ତିର ଏକ ସୁଚିନ୍ତିତ ପରିକଳ୍ପନା ଥିଲା । ଏହି ହତ୍ୟାକାଣ୍ଡ ପରେ ସାରା ପଞ୍ଜାବରେ ସାନ୍ଧ୍ୟ ଆଇନ ଜାରିହେଲା ଏବଂ ନାନା ଅପମାନଜନକ ଆଇନ ଓ ନିର୍ଦ୍ଦେଶନାମା ପ୍ରବର୍ତ୍ତନ କରାଗଲା ।

ଗାନ୍ଧିଜୀଙ୍କ ନିଜ ରଚନାବଳୀରେ ଲେଖାଯାଇଛି – "ଗିରଫଦାରୀ, ଫାଶୀ, କଳାପାଣି (ନିର୍ବାସନ), ହଣ୍ଟରରେ ପ୍ରହାର, ସମ୍ମାନ ସ୍ପଦ ବ୍ୟକ୍ତିମାନଙ୍କୁ ପେଟେଇ କରି ଚାଲିବାକୁ ବାଧ୍ୟ କରିବା (ଦୈବାତ୍ ମିସ୍ ସେରଉଡ୍ ନାମକ ଜଣେ ଇଂରେଜ ମହିଳା କୁଆଡ଼େ ଜଣେ ଭାରତୀୟଦ୍ୱାରା ଅପମାନିତ ହୋଇଥିବାରୁ ତାହାର ପ୍ରତିଶୋଧ ନେବା ପାଇଁ ଡାୟାର ନିର୍ଦ୍ଦେଶ ଜାରିକରିଥିଲା ଯେ ସେହି ରାସ୍ତାକୁ ଭାରତୀୟମାନେ ଅତିକ୍ରମ କଲାବେଳେ ସିଧା ଚାଲି ଯାଇପାରିବେ ନାହିଁ । ସେତକ ରାସ୍ତା ପେଟେଇ ପେଟେଇ ଘୋଷାଡ଼ି ହୋଇ ଯିବାକୁ ହେବ ।), କେହି ଆଦେଶ ଅମାନ୍ୟକଲେ ତାକୁ ଗୁଳିକରି ମାରିଦିଆଯିବ - ଏହିପରି ଅନ୍ୟାନ୍ୟ ନିର୍ଯାତନା ଓ ଝିଅ ବୋହୂଙ୍କ ଇଜ୍ଜତ ନଷ୍ଟ କରିବା ପାଇଁ ଯେଉଁସବୁ ନିର୍ଲଜ୍ଜ ଅସ୍ତ୍ର ପ୍ରୟୋଗକରାଗଲା, ତାହା ଇତିହାସ ପୃଷ୍ଠାକୁ କଳଙ୍କିତ କରିରଖିଛି ।"(1)

କିନ୍ତୁ ଦୁର୍ଭାଗ୍ୟର କଥା ଇଂରେଜମାନଙ୍କର ଏହିସବୁ ନୃଶଂସତା ସତ୍ତ୍ୱେ ସେହି ବର୍ଷ ସେହି ଅମୃତସରରେ କଂଗ୍ରେସର ଯେଉଁ ଅଧିବେଶନ ବସିଥିଲା ସେଠାରେ ସରକାରଙ୍କୁ

୧. ଗାନ୍ଧୀ ରଚନାବଳୀ (ଓଡ଼ିଆ) – ସତ୍ୟାଗ୍ରହ, ପୃ – ୪୩୧

ସମର୍ଥନ କରି ପ୍ରସ୍ତାବ ପାସ୍ କରାଗଲା ଯେ, "Even at Amritsar in December 1919, after all the tragic event of the year, a resolution of loyalty to the Emperor and of satisfaction on peaceful termination of the war was passed,"(1) (ସେହି ବର୍ଷର ସମସ୍ତ ଦୁଃଖଦାୟକ ଘଟଣା ସତ୍ତ୍ୱେ ଡିସେମ୍ବର ୧୯୧୯ରେ ଅମୃତସରରେ ସମ୍ରାଟଙ୍କ ପ୍ରତି ଆନୁଗତ୍ୟ ଓ ସୁରୁଖୁରରେ ଯୁଦ୍ଧ ଶେଷ ହୋଇଥିବାରୁ ସନ୍ତୋଷ ପ୍ରକାଶ କରି ପ୍ରସ୍ତାବ ଗ୍ରହଣକରାଗଲା ।)

ଏହା କଂଗ୍ରେସ ଓ ଗାନ୍ଧିଜୀଙ୍କ ପକ୍ଷରେ ଏକ ମାରାତ୍ମକ ପ୍ରମାଦ ହେଲା । କିନ୍ତୁ ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମୀ 'ଜାଲିୟାନଓ୍ୱାଲାବାଗ୍'ର ଜବାବ ଦେଲା ବୀର ଉଦ୍ଧାମ ସିଂହଙ୍କ ଜରିଆରେ ।

**ଅସହଯୋଗ ଓ ଖିଲାଫତ୍ :**

୧୯୧୫ରେ ଭାରତରେ ପଦାର୍ପଣ କରିବା ପର୍ଯ୍ୟନ୍ତ ଗାନ୍ଧିଜୀ ଏ ଦେଶର ରାଜନୀତି ବା କଂଗ୍ରେସ ଭିତରେ କୌଣସି ଗୁରୁତ୍ୱପୂର୍ଣ୍ଣ ଅଂଶଗ୍ରହଣ କରି ନ ଥିଲେ ବା ଜନତା ନିକଟରେ ଆଦୌ ପରିଚିତ ନ ଥିଲେ । କିନ୍ତୁ ଦକ୍ଷିଣ ଆଫ୍ରିକାର ସତ୍ୟାଗ୍ରହରେ ସାମୟିକ ସାଫଲ୍ୟରେ ଭାରତୀୟ ନେତାମାନେ ଗାନ୍ଧିଜୀଙ୍କ ପ୍ରତି ଯଥେଷ୍ଟ ଆକୃଷ୍ଟ ହୋଇଥିଲେ । ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ସାଫଲ୍ୟକୁ ଏଥିପାଇଁ ସାମୟିକ ବୋଲି କୁହାଯାଉଛି ଯେ ଏହା ବର୍ଣ୍ଣବିଦ୍ୱେଷୀ ଗୋରାସରକାର ଉପରେ କୌଣସି ସ୍ଥାୟୀ ପ୍ରଭାବ ପକାଇ ପାରିଲା ନାହିଁ । ଏକ ଅତ୍ୟାଚାରୀ-ସ୍ୱୈରାଚାରୀ ଶାସକ ପାଖରେ 'ଅହିଂସ-ସତ୍ୟାଗ୍ରହ'ର ଶକ୍ତି ସର୍ବଦା ସୀମିତ ହୋଇଥାଏ, ଅସୀମ ନୁହେଁ । ତାହା ହୋଇଥିଲେ ଦକ୍ଷିଣ ଆଫ୍ରିକାର ଯେଉଁ ବର୍ଣ୍ଣବିଦ୍ୱେଷ ନୀତି ବିରୋଧରେ ଗାନ୍ଧିଜୀ ସଂଗ୍ରାମ କରିଥିଲେ, ତାହା ବି ପଚାଶ ବର୍ଷ ପରେ ମଧ୍ୟ ସେହି ସରକାରଦ୍ୱାରା ଅନୁସୃତ ହେଉନଥାନ୍ତା । ସେ ଯାହହେଉ, ଭାରତର ତତ୍କାଳୀନ ପରିସ୍ଥିତି, ବିଶେଷତଃ କଂଗ୍ରେସର 'ଆରାମଚେୟାର ରାଜନୀତି'ର ବିଫଳତା ଯୋଗୁଁ, ସୃଷ୍ଟିହୋଇଥିବା ନୈରାଶ୍ୟଜନକ ଅବସ୍ଥାରେ ସେହି ସୀମିତ ସାଫଲ୍ୟର ମଧ୍ୟ ଯଥେଷ୍ଟ ମୂଲ୍ୟ ଥିଲା । କଂଗ୍ରେସର ବୁର୍ଜୁଆ ରାଜନୀତି ଯେତେବେଳେ ତାହାକୁ ଏକ ରାଜନୈତିକ ଅଚଳ ଅବସ୍ଥାରେ ପକାଇ ଦେଇଥିଲା, ସେତିକିବେଳେ ତାକୁ ମିଳିଲା ଗାନ୍ଧିଜୀଙ୍କ ନେତୃତ୍ୱ । ନେହେରୁଙ୍କ ଭଳି ଯୁବକମାନଙ୍କ ପକ୍ଷରେ ସେତେବେଳେ ଗାନ୍ଧିଜୀ ଥିଲେ ବାସ୍ତବରେ ଅନାତ୍ମୀୟ, ଭିନ୍ନପନ୍ଥୀ ଓ ଅରାଜନୈତିକ ।

କିନ୍ତୁ ସେହି 'ଭିନ୍ନପନ୍ଥୀ' ଓ ଅରାଜନୈତିକ' ଗାନ୍ଧିଜୀଙ୍କ ସରଳ ଋଷିସୁଲଭ ଜୀବନଯାପନ ନୀତି, ଚରିତ୍ରବତ୍ତା ଓ ଧର୍ମବିଶ୍ୱାସ ତାଙ୍କୁ 'ସାଧୁ ସନ୍ଥ'ର ଦେଶ(?) ଭାରତରେ ଅଚିରେ ଖୁବ୍ ଲୋକପ୍ରିୟ କରାଇଦେଲା । ଭାରତୀୟ ଦର୍ଶନର

1. Tarachand – The History of Freedom Movement in India Vol-III Pg– 468

ପରମ୍ପରାରେ ପୁଷ୍ଟ ଓ ବୈଦିକ ଧର୍ମରେ ଅଗାଧ ବିଶ୍ୱାସୀ ଗାନ୍ଧିଜୀ ଭାରତବାସୀଙ୍କ ହୃଦୟରେ ଯୁଗାବତାର ଆସନ ଲାଭ କଲେ । ଗାନ୍ଧୀନୀତିର ମୂଳମନ୍ତ୍ର ହେଲା 'ସତ୍ୟ' ଓ 'ଅହିଂସା' । ସେ ଏହାକୁ ଆତ୍ମଶକ୍ତି ବା ପ୍ରେମଶକ୍ତି ବୋଲି କହୁଥିଲେ । ସତ୍ୟାଗ୍ରହୀର ଧର୍ମ ହେଲା ଅନ୍ୟାୟ ବିରୋଧରେ ଅନମନୀୟ ପ୍ରତିବାଦ, ସମସ୍ତ ଉତ୍ତେଜନା ସତ୍ତ୍ୱେ ହିଂସା ସମ୍ବରଣ ଏବଂ ଶତ୍ରୁ ପ୍ରତି ଆଘାତ ଦେବା ପରିବେର୍ତ୍ତ ନିଜେ ଅତ୍ୟାଚାର ସହ୍ୟକରିବା । ସେ ଏହି ନୀତିରେ ଅତ୍ୟାଚାରୀର ଚୈତନ୍ୟ ଉଦୟ ହେବ ବୋଲି ବିଶ୍ୱାସକରିଥିଲେ । କିନ୍ତୁ 'ବୁଦ୍ଧ-ଖ୍ରୀଷ୍ଟ-ଚୈତନ୍ୟ ସୁଲଭ ଉଚ୍ଚ ମାନବୀୟ ବା ଦେବସୁଲଭ ଅହିଂସାଚରଣ ଯେ ସାଧାରଣଦୁର୍ବଳତାସଂପନ୍ନ ସାଧାରଣଲୋକ ପକ୍ଷରେ ଅସମ୍ଭବ, ଏହା ଗାନ୍ଧିଜୀ ବୁଝି ନ ଥିଲେ । ଦ୍ୱିତୀୟତଃ ଅସ୍ତ୍ରବଳ ଉପରେ ବିଶ୍ୱାସକରୁଥିବା ଶାସକ ବା ଦଣ୍ଡଶକ୍ତି ଉପରେ ଆଧାରିତ ରାଜଶକ୍ତି (State) ନିକଟରେ 'ସତ୍ୟଅହିଂସା'ର ପ୍ରୟୋଗ ଯେ ନିରର୍ଥକ ଓ ମୂଲ୍ୟହୀନ, ଏହା ଗାନ୍ଧିଜୀ ସ୍ୱୀକାର କରୁ ନ ଥିଲେ ଏବଂ ସେଥିପାଇଁ 'ଅହିଂସା'ର ବିଫଳତା ବାରମ୍ବାର ପ୍ରମାଣିତ ହୋଇଥିଲେ ସୁଦ୍ଧା ସେହି 'କୃଚ୍ଛ୍ର ସାଧନା' ପାଇଁ ସେ ବାରମ୍ବାର ଦେଶବାସୀଙ୍କୁ ପ୍ରବର୍ତ୍ତାଇଥିଲେ ।

ଭାରତରେ ପହଞ୍ଚି ଗୋଖଲେଙ୍କ ନିର୍ଦ୍ଦେଶକ୍ରମେ ସେ ଗୋଟିଏ ବର୍ଷପାଇଁ ଭାରତର ବିଭିନ୍ନ ଅଞ୍ଚଳରେ ଗସ୍ତକରି ସମସ୍ୟାଗୁଡ଼ିକ ଗଭୀର ଭାବରେ ଅନୁଧ୍ୟାନ କଲେ ଏବଂ ସେହି ଅବକାଶରେ ଚମ୍ପାରଣର ନୀଳଚାଷୀ ଆନ୍ଦୋଳନ, ଖେଦା ସତ୍ୟାଗ୍ରହ ଓ ଅହମଦାବାଦର ଶ୍ରମିକ ଆନ୍ଦୋଳନର ନେତୃତ୍ୱ ନେଇ ସେ 'ସଫଳତା' ଅର୍ଜ୍ଜନ କରିବାରୁ ଭାରତୀୟମାନେ ବିସ୍ମୟବିମୂଢ଼ ହୋଇଗଲେ । କିନ୍ତୁ 'ରାଓ୍ୱାଲାଟ ଆଇନ ବିରୋଧୀ ଆନ୍ଦୋଳନ ଗାନ୍ଧିଜୀଙ୍କୁ ଭାରତୀୟ ରାଜନୀତିର ସିଂହଦ୍ୱାରକୁ ଟାଣିଆଣିଲା । ପଲ୍ଲୀର କୃଷକଠାରୁ ସହରର ଶ୍ରମିକ ପର୍ଯ୍ୟନ୍ତ ସମସ୍ତେ ଗାନ୍ଧିଜୀଙ୍କର ଏବଂ ସେହି ଦୃଷ୍ଟିରୁ ତାଙ୍କ ରାଜନୀତିର ମଧ୍ୟ ନିକଟବର୍ତ୍ତୀ ହୋଇଗଲେ । କଂଗ୍ରେସର ନେତୃତ୍ୱ ଗାନ୍ଧିଜୀଙ୍କ ହାତମୁଠାକୁ ଚାଲିଆସିଲା । କଂଗ୍ରେସ ଦଳ ଯେଉଁମାନଙ୍କୁ ନେଇ ଗଠିତ ହୋଇଥିଲା, ସେମାନେ ସମସ୍ତେ ସମ୍ଭ୍ରାନ୍ତ ଓ ଅଭିଜାତ ଶ୍ରେଣୀର ଲୋକ ଥିଲେ, ସୁତରାଂ ସଶସ୍ତ୍ର ବିପ୍ଳବ ଭଳି ବିପଜ୍ଜନକ ଓ କଣ୍ଟକାକୀର୍ଣ୍ଣ ପନ୍ଥା ଅନୁସରଣ କରିବା ସେମାନଙ୍କ ପକ୍ଷରେ ସମ୍ଭବ ନ ଥିଲା । ଏଭଳି ଅବସ୍ଥାରେ ଗାନ୍ଧିଜୀଙ୍କର ଆବିର୍ଭାବ କଂଗ୍ରେସ ପକ୍ଷରେ ଏକ ଆଶୀର୍ବାଦ ସ୍ୱରୂପ ହେଲା ।

ରଓ୍ୱାଲଟ ଆଇନର ପ୍ରତିବାଦରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଦେଶବ୍ୟାପୀ ଯେଉଁ ବିକ୍ଷୋଭ ପ୍ରଦର୍ଶିତ ହୋଇଥିଲା ତାହାର ସଫଳତା ସମସ୍ତଙ୍କୁ ଏପରିକି ଗାନ୍ଧିଜୀଙ୍କୁ ମଧ୍ୟ ସ୍ତମ୍ଭିତ କରିଦେଲା । କିନ୍ତୁ ସରକାର ବିରୋଧରେ ଭାରତବାସୀଙ୍କର ବିଶେଷତଃ ପଞ୍ଜାବବାସୀଙ୍କର ମନ ଏତେ ବିକ୍ଷାକ୍ତ ହୋଇଯାଇଥିଲା ଯେ ଗାନ୍ଧିଜୀଙ୍କ ନିର୍ଦ୍ଦେଶକୁ

ଅକ୍ଷରେ ଅକ୍ଷରେ ପାଳନ କରିବା ସେମାନଙ୍କ ପକ୍ଷରେ ସମ୍ଭବ ନ ଥିଲା । ଫଳରେ ଅମୃତସର, ଲାହୋର, କାସୁର, ଗୁଜରାନୱାଲା, ଅହମ୍ମଦାବାଦ, କୁରାମ ଗାଁ, ନଦିଆ ଓ କଲିକତାରେ ଅହିଂସା ବିପ୍ଳବ ସଶସ୍ତ୍ର ବିପ୍ଳବରେ ପରିଣତ ହେଲା । ଗାନ୍ଧିଜୀ ଏଥିରେ ରାଗି ନିଆଁବାଣ ହେଲେ ଏବଂ 'ଅହିଂସ-ପ୍ରତିରୋଧ ଆନ୍ଦୋଳନ'ର ଡାକରା ଦେବା ତାଙ୍କ ପକ୍ଷରେ ମସ୍ତବଡ଼ ଭୁଲହୋଇଛି ବୋଲି ସେ ପ୍ରକାଶ୍ୟରେ ସ୍ୱୀକାର କଲେ । ("I had called upon the people to launch civil disobedience before they had qualified themselves for it and this mistake of mine seemed to me to be of Himalayan magnitude,"(1) -ଲୋକମାନେ ଅହିଂସ-ପ୍ରତିରୋଧ ଆନ୍ଦୋଳନ ପାଇଁ ନିଜକୁ ଯୋଗ୍ୟ କରିବା ପୂର୍ବରୁ ମୁଁ ସେମାନଙ୍କୁ ସେଥିପାଇଁ ଆହ୍ୱାନ ଦେଲି ଏବଂ ଏହା ମୋ' ପକ୍ଷରେ ଏକ ବିରାଟ ଭୁଲ ।) ଗାନ୍ଧିଜୀ ଆନ୍ଦୋଳନ ପ୍ରତ୍ୟାହାର କରିନେଲେ । ଏହା ଗାନ୍ଧିଜୀଙ୍କ ପକ୍ଷରେ ଆହୁରି ଏକ ପ୍ରମାଦ ହେଲା ।

ଗାନ୍ଧିଜୀଙ୍କର ଆଉ ଏକ ମାରାତ୍ମକ ପ୍ରମାଦ ହେଲା 'ଖିଲାଫତ ଆନ୍ଦୋଳନ' । ଏହା ମୁସଲମାନମାନଙ୍କର ଏକ ନିଚ୍ଛକ ଧର୍ମୀୟ ଆନ୍ଦୋଳନ ଥିଲା । ଭାରତରେ ସ୍ୱାଧୀନତା ସଂଗ୍ରାମ ସହ ଏହାକୁ ମିଶାଇଦେଇ ଗାନ୍ଧିଜୀ ଭାରତ ରାଜନୀତିରେ ପୂର୍ବରୁ ପୋତାଯାଇଥିବା ସାଂପ୍ରଦାୟିକତା ମଂଞ୍ଜିରେ ଜଳ ଦେଇ କରି ଏହାକୁ ଏକ ବିରାଟ ବୃକ୍ଷରେ ପରିଣତ କରିଦେଲେ । ଗାନ୍ଧିଜୀଙ୍କ ଲକ୍ଷ୍ୟ ଥିଲା ହିନ୍ଦୁ-ମୁସ୍ଲିମ୍ ଭ୍ରାତୃତ୍ୱରେ ସ୍ୱାଧୀନତା ସୌଧ ଗଠନକରିବା । କିନ୍ତୁ ଐତିହାସିକ ଓ ମନସ୍ତାତ୍ତ୍ୱିକ କାରଣରୁ ଏହାର ଫଳ ହେଲା ଠିକ୍ ଓଲଟା ।

ସେତେବେଳେ ଭାରତ ବାହାରେ ଥିବା ମୁସ୍ଲିମ୍ ରାଜ୍ୟଗୁଡ଼ିକରେ ଏମିତି କେତେକ ଘଟଣା ଘଟିଲା ଯାହାକି ଭାରତୀୟ ମୁସ୍ଲିମ୍‌ମାନଙ୍କ ଚିନ୍ତାରାଜ୍ୟରେ ଗୁରୁତର ଆଲୋଡ଼ନ ସୃଷ୍ଟି କଲା । ମୁସ୍ଲିମ୍ ଅଟୋମାନ ସାମ୍ରାଜ୍ୟର ମୂଳଦୁଆ ଦୋହଲିଯିବା ସଙ୍ଗେ ସଙ୍ଗେ ଭାରତୀୟ ମୁସ୍ଲିମ୍ ସଂପ୍ରଦାୟର ବ୍ରିଟିଶ୍ ରାଜଭକ୍ତି ମଧ୍ୟ ଟହଲିଗଲା । ପ୍ରଥମ ମହାଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଉତ୍ତର ଆଫ୍ରିକାର ମୁସ୍ଲିମ୍ ରାଷ୍ଟ୍ର ମରକୋ ଫରାସୀମାନଙ୍କ ଅଧୀନକୁ ଚାଲିଯାଇଥିଲା । ମିଶର ଯାଇଥିଲା ଇଂରେଜ ଅଧୀନକୁ । ରୁଷିୟା ଓ ଇଂଲଣ୍ଡ ପରସ୍ପର ସହ ଚୁକ୍ତିବଦ୍ଧ ହୋଇ ଅନ୍ୟତମ ମୁସ୍ଲିମ୍ ରାଷ୍ଟ୍ର ଇରାନକୁ ବାଣ୍ଟିନେଇଥିଲେ । ଅଟୋମାନ ସାମ୍ରାଜ୍ୟର ଅନ୍ୟତମ ଅଂଶ ତ୍ରିପଲି ଇଟାଲୀ ଅଧୀନକୁ ଗଲା ୧୯୧୧ରେ । ତା'ପରେ ତୁର୍କୀ ଖଣ୍ଡଖଣ୍ଡ ହେଲା । ବଲକାନ୍ ରାଜ୍ୟଗୋଷ୍ଠୀ ଓ ରୁଷିୟା ମିଶି ତୁର୍କି ଆକ୍ରମଣ କରିବାକୁ ପ୍ରସ୍ତୁତ ହେଲେ । ସେହି ଯୁଦ୍ଧରେ (୧୯୧୨) ତୁର୍କୀର ଅଶେଷ କ୍ଷତି ହେଲା । ଆଡ୍ରିଆନୋପଲ, କନଷ୍ଟାଣ୍ଟିନୋପଲ ଓ କ୍ରେଟକୁ ଛାଡ଼ିଦେଲେ ୟୁରୋପର ଅନ୍ୟ ଅଞ୍ଚଳରୁ 'ଅଟୋମାନ ସାମ୍ରାଜ୍ୟ' ପ୍ରାୟତଃ ଲୋପ ପାଇଗଲା । ଠିକ୍ ସେହି ସମୟରେ ଆରମ୍ଭ ହେଲା ପ୍ରଥମ ବିଶ୍ୱମହାଯୁଦ୍ଧ (୧୯୧୪-୧୯୧୮) ।

---

1. Tendulker-- Mahatma Gandhi Vol-II, Page -- 316

ଇଂଲଣ୍ଡ, ଫ୍ରାନ୍ସ, ରୁଷିୟା, ତୁର୍କୀ ବିରୋଧରେ ଯୁଦ୍ଧ ଘୋଷଣା କଲେ । ଜର୍ମାନୀ ସ୍ୱଭାବତଃ ତୁର୍କୀକୁ ସାହାଯ୍ୟକଲା । ଫଳରେ ଜର୍ମାନୀ ପ୍ରତି ସାରା ମୁସଲମାନ ଦେଶର ଅନୁରକ୍ତି ପ୍ରକାଶପାଇଲା । ଭାରତୀୟ ମୁସଲମାନ ଧର୍ମଗୁରୁ ଉଲେମାମାନେ ଇଂରେଜଙ୍କର ତୁର୍କୀ ବିରୋଧୀ କାର୍ଯ୍ୟକଳାପରେ ବିଚଳିତ ବୋଧକଲେ । ସେମାନଙ୍କର ରାଜଭକ୍ତିରେ ଗୁରୁତର ଧକ୍କା ଲାଗିଲା । ତୁର୍କୀ କେବଳ ଏକ ମୁସ୍ଲିମ୍ ରାଷ୍ଟ୍ର ନ ଥିଲା, ତୁର୍କୀର ଖଲିଫା ଥିଲେ ସାରା ମୁସ୍ଲିମ୍ ସମାଜର ସର୍ବୋଚ୍ଚ ଧର୍ମଗୁରୁ । ତୁର୍କୀର ପରାଜୟର ଅର୍ଥ ହେଲା ଖଲିଫା ପଦବୀର ବିଲୋପସାଧନ । ସୁତରାଂ ଭାରତୀୟ ସେନାବାହିନୀରେ କାର୍ଯ୍ୟ କରୁଥିବା ମୁସଲମାନ ସୈନ୍ୟମାନଙ୍କ ଭିତରେ ସୃଷ୍ଟିହେଲା ଗୁରୁତର ବିଚାରସଂକଟ । କାରଣ ସେମାନଙ୍କୁ ୟୁରୋପର ବିଭିନ୍ନ ରଣକ୍ଷେତ୍ରରେ ଇଂରେଜମାନଙ୍କ ପାଇଁ ଯୁଦ୍ଧ କରିବାକୁ ପଡୁଥିଲା ଏବଂ ସେହି କାରଣରୁ ସେମାନଙ୍କୁ ତୁର୍କୀରେ ମଧ୍ୟ ଇଂରେଜ ସପକ୍ଷରେ ଲଢ଼ିବାକୁ ପଡ଼ିଲା । ଏଥିରେ ଉଲେମାମାନେ ରାଜି ହେଲେ ନାହିଁ ଏବଂ ଖଲିଫାଙ୍କର ଧର୍ମ ଅଧିକାର ଅକ୍ଷୁଣ୍ଣ ରଖିବାର ପ୍ରତିଶ୍ରୁତି ନ ମିଳିଲେ ଇଂରେଜମାନଙ୍କୁ ପାଇଁ ଲଢ଼ିବା ଇସଲାମ୍ ବିରୋଧୀ ବୋଲି କୁହାଗଲା । ଏଭଳି ଶସ୍ତା ପ୍ରତିଶ୍ରୁତି ଦେବାକୁ ଇଂରେଜମାନେ ଅପାରଗ ନ ଥିଲେ । ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜ ଦୃଢ଼ ପ୍ରତିଶ୍ରୁତି ଦେଲେ ଯେ ଯୁଦ୍ଧର ପରଣତି ଯାହା ହେଉନା କାହିଁକି ଖଲିଫାଙ୍କର ଅଧିକାର ଯେପରି କ୍ଷୁଣ୍ଣ ନ ହୁଏ ତାହା ସେ ନିଶ୍ଚୟ ଦେଖିବେ । ଏହି ପ୍ରତିଶ୍ରୁତିକୁ ବିଶ୍ୱାସକରି ବହୁ ମୁସ୍ଲିମ ସୈନ୍ୟ ଦରିଆପାରିରେ ଯୁଦ୍ଧ କରିବାକୁ ଗଲେ ।

କିନ୍ତୁ ମୁସ୍ଲିମ୍ ରାଷ୍ଟ୍ରମାନଙ୍କରେ ବ୍ରିଟିଶ୍‌ବିରୋଧୀ ମନୋଭାବର ସୁଯୋଗ ନେଇ ଭାରତର ସଶସ୍ତ୍ର ବିପ୍ଲବୀମାନେ କିଭଳି ଆଫଗାନିସ୍ଥାନଆଡୁ ଆକ୍ରମଣ କରିବାର ପରିକଳ୍ପନା କରିଥିଲେ ତାହା 'ଦରିଆପାରିର ବିପ୍ଳବୀ' ଅଧ୍ୟାୟରେ ଆଲୋଚିତ ହୋଇଛି । 'ଦେଓବନ୍ଦ' ଆନ୍ଦୋଳନର ମହାସୁଦ ଆଲହାସାନ ଏବଂ ଡାକ୍ତର ଆନସାରୀଙ୍କ ଉଦ୍ୟମରେ ଅବଦୁଲ୍ଲାସିନ୍ଧିଙ୍କୁ ପଠାଇଲେ କାବୁଲ । କାବୁଲରେ ଆଫଗାନିସ୍ଥାନର ଅମୀରଙ୍କ ସହାୟତାରେ ଓ ରାଜା ମହେନ୍ଦ୍ର ପ୍ରତାପଙ୍କ ନେତୃତ୍ୱରେ 'ବିପ୍ଳବୀ ଭାରତ ସରକାର' ଗଠିତ ହୋଇଥିଲା । ଖାଲି ସେତିକି ନୁହେଁ, ମାହାମୁଦ ହାସାନ ଅନ୍ୟ ଜଣେ ବିପ୍ଳବୀ ଅହମଦ ହୁସେନ ମାଦିନିଙ୍କୁ ସଙ୍ଗରେ ନେଇ ତୁର୍କୀ ସରକାରକୁ ଭାରତର ସଶସ୍ତ୍ର ବିପ୍ଳବକୁ ସାହାଯ୍ୟ କରିବାକୁ ନିବେଦନକଲେ । କିନ୍ତୁ ଆରବର ଫଏଜଲ୍ ତୁର୍କୀ ଖଲିଫାଙ୍କ ଉପରେ କ୍ରୋଧକରି ଇଂରେଜ ସପକ୍ଷରେ ଯୁଦ୍ଧ ଘୋଷଣା କରିବାରୁ ସେହି ଯୋଜନା ଫଳବତୀ ହେଲାନାହିଁ । ମକ୍କାଠାରେ ହାସାନ ଓ ମାଦିନି ଗିରଫହୋଇ ଯୁଦ୍ଧ ଶେଷଯାଏ ମାଲଟାରେ ବନ୍ଦୀ ହୋଇ ରହିଲେ । ଆଫଗାନିସ୍ଥାନରୁ ଭାରତୀୟ ବିପ୍ଳବୀଙ୍କୁ ତଡ଼ିବାକୁ ଅମୀରଙ୍କ ଉପରେ ଚାପ ପ୍ରୟୋଗ କରାଗଲା । ମକ୍କା ନବାବ ସରିଫ୍ ହୁସେନ ଖଲିଫାଙ୍କ ବିରୋଧରେ ବିଦ୍ରୋହ କରିବାକୁ ଇଂରେଜମାନେ ମତେଇଲେ ।

୧୯୧୮ରେ ଯୁଦ୍ଧ ଶେଷହେବାବେଳକୁ ଅଟୋମାନ ସାମ୍ରାଜ୍ୟ ଖଣ୍ଡବିଖଣ୍ଡ ହୋଇଯାଇଥିଲା । 'ସେର୍ଭେ ଚୁକ୍ତି' ତୁର୍କୀକୁ ଶେଷକରିଦେଲା । ଲଏଡ ଜର୍ଜଙ୍କର ମତାଣରେ ଗ୍ରୀକ୍‌ମାନେ ମଧ୍ୟ ତୁର୍କୀର ବହୁ ଅଂଶ ଦଖଲକରିଗଲେ । ସେହି ଇଂରେଜମାନଙ୍କ ମତାଣରେ ଅଧିକାଂଶ ମୁସ୍ଲିମ୍ ରାଷ୍ଟ୍ର ମଧ୍ୟ ଖଲିଫାଙ୍କ ବିରୋଧରେ ବିଦ୍ରୋହ ଘୋଷଣା କଲେ । ଖଲିଫାଙ୍କ ଏତାଦୃଶ ଦୁରବସ୍ଥା ଓ ଇଂରେଜମାନଙ୍କ ପ୍ରତିଶ୍ରୁତି ଭଙ୍ଗ ଓ ବିଶ୍ୱାସଘାତକତା ଯେତେବେଳେ ଚରମସୀମାରେ ପହଞ୍ଚିଗଲା, ସେତିକିବେଳେ ଭାରତୀୟ ରାଜନୀତିରେ ଗାନ୍ଧିଜୀ ସିଂହଦ୍ୱାରରେ ଉପନୀତ । ତାଙ୍କର ପ୍ରୋତ୍ସାହନ ଓ ପ୍ରେରଣା ପାଇ ଖିଲାଫତ ପାଇଁ ଅସହଯୋଗ ଆନ୍ଦୋଳନ ଚାଲୁହେଲା ।

୧୯୧୮ ଡିସେମ୍ବରରେ ଦିଲ୍ଲୀରେ ଡକ୍ଟର ଆନସାରୀଙ୍କ ସଭାପତିତ୍ୱରେ ମୁସ୍ଲିମ୍ ଲିଗ୍‌ର ଯେଉଁ ସମ୍ମିଳନୀ ହେଲା, ସେଠାରେ ଖଲିଫାଙ୍କ ବିରୋଧରେ ମକ୍କା ରାଜାଙ୍କର ବିଦ୍ରୋହର ନିନ୍ଦାକରାଗଲା ଏବଂ ଅଣମୁସଲମାନ ଇଂରେଜମାନଙ୍କ କବଳରୁ ବିଜିତ ମୁସଲମାନ ରାଜ୍ୟ ସବୁ (ହାଜରତ-ଉଲ-ଆରବ) ପୁନର୍ବାର ଖଲିଫାଙ୍କୁ ଫେରାଇ ଦେବାକୁ ଦାବି ହେଲା । ଗାନ୍ଧିଜୀ ମୁସଲମାନମାନଙ୍କର ଏହି ଦାବିକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କଲେ । ନିଖିଳ ଭାରତ ଖିଲାଫତ ସମ୍ମିଳନୀରେ ଗାନ୍ଧିଜୀ ସଭାପତି ହୋଇଥିଲେ । ସେଠାରେ ସେ କହିଲେ, "I am bound as an Indian to share the sufferings and trails of fellow Indians. If I deem the Mohammadan to be my brother, it is my duty to help him in his hour of trail to the best of my ability, if his cause commends itself to me as just."(1) (ଜଣେ ଭାରତୀୟ ହିସାବରେ ଅନ୍ୟ ଜଣେ ଭାରତୀୟର ଦୁଃଖ ଯନ୍ତ୍ରଣାରେ ଭାଗନେବାକୁ ମୁଁ ବାଧ୍ୟ । ମୁଁ ଯଦି ମୁସଲମାନଙ୍କୁ ମୋ'ର ଭାଇ ବୋଲି କହେ, ତେବେ ତାହାର ଏହି ପରୀକ୍ଷା ମୁହୂର୍ତ୍ତରେ ମୁଁ ଯଦି ମନେକରେ ଯେ ତା'ର ଦାବି ଯଥାର୍ଥ, ତାକୁ ସାହାଯ୍ୟ କରିବି ।)

ଜୁନ୍ ୯ ତାରିଖରେ ଖିଲାଫତ କମିଟିର ବୈଠକ ଆଲାହାବାଦଠାରେ ବସିଲା ଏବଂ ସେଠାରେ ଖିଲାଫତ ଅନ୍ୟାୟର ପ୍ରତିକାର ପାଇଁ 'ଅସହଯୋଗ' କରିବାକୁ ସ୍ଥିର ହେଲା ।

ଖିଲାଫତ ଆନ୍ଦୋଳନ ପାଇଁ ମୁଖ୍ୟତଃ ଚାରିଗୋଟି କାର୍ଯ୍ୟକ୍ରମ ସ୍ଥିର ହେଲା ।

୧ — ଇଂରେଜ ସରକାର ଦେଇଥିବା ଉପାଧି ଓ୍ୱାପସକରିବା ।

୨ — ସରକାରୀ ଚାକିରିରୁ ଇସ୍ତଫା ଦେବା ।

୩ — ସେନାବାହିନୀ ଓ ପୁଲିସ ବାହିନୀରୁ ଭାରତୀୟଙ୍କ ଇସ୍ତଫା ।

୪ — ଖଜଣା ବନ୍ଦ କରିବା ।

1. Young India – 2nd June – 1920

ସେହି ବର୍ଷ ଜୁଲାଇ ମାସରେ ସିନ୍ଧୁ ରେ ବସିଥିବା ଖିଲାଫତ ସମ୍ମିଳନୀରେ ଗାନ୍ଧିଜୀ ଏହି ଆନ୍ଦୋଳନରେ ହିନ୍ଦୁମାନଙ୍କୁ ମଧ୍ୟ ଯୋଗଦେବାକୁ ନିବେଦନକଲେ । ଅଗଷ୍ଟ ପହିଲାରେ ସାମୂହିକ ପ୍ରାର୍ଥନା ଓ ଉପବାସରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଦୁର୍ଭାଗ୍ୟବଶତଃ ଠିକ୍ ତା'ର ପୂର୍ବରାତ୍ରିରେ ତିଳକଜୀ ମୃତ୍ୟୁବରଣକଲେ । ଗାନ୍ଧିଜୀ କହିଲେ – "A giant among men is fallen." (ଏକ ବିରାଟ ପୁରୁଷଙ୍କ ଦେହାବସାନ ହେଲା ।) ତିଳକଜୀଙ୍କ ବିୟୋଗ ଫଳରେ ଗାନ୍ଧିଜୀଙ୍କର ଜଣେ ପ୍ରଧାନ ସମାଲୋଚକଙ୍କୁ ମୃତ୍ୟୁ ନେଇଗଲା ଏବଂ ସଶସ୍ତ୍ର ଦର୍ଶନର ପ୍ରଧାନ ପ୍ରବକ୍ତା ଚାଲିଗଲେ । ତିଳକଜୀଙ୍କ ନାମରେ ଏକକୋଟି ଟଙ୍କାର 'ତିଳକ ସ୍ୱରାଜ୍ୟ ପାଣ୍ଠି' ଗଠନକରାଯାଇ ଜାତୀୟ ଆନ୍ଦୋଳନକୁ ଅଧିକ ତେଜସ୍ୱୀ କରାଗଲା ।

ସେହିବର୍ଷ ସେପ୍ଟେମ୍ବର ମାସରେ କଲିକତାରେ କଂଗ୍ରେସ ଅଧିବେଶନ ଡକାଗଲା ଖିଲାଫତ ପ୍ରସ୍ତାବର ପୁଷ୍ଟିସାଧନ ପାଇଁ । ତା' ପୂର୍ବରୁ ଗାନ୍ଧିଜୀ, ମହମ୍ମଦ ଅଲ୍ଲୀ ଓ ସୌକତ ଅଲ୍ଲୀ ସାରା ଭାରତ ଗସ୍ତକରି ଖିଲାଫତ ଓ ଅସହଯୋଗ ଆନ୍ଦୋଳନର ତାତ୍ପର୍ଯ୍ୟ ବୁଝାଇଥିଲେ ଏବଂ ହିନ୍ଦୁ-ମୁସ୍ଲିମ୍ ଏକତା ପ୍ରତିଷ୍ଠାର ଗୁରୁତ୍ୱ ପ୍ରତିପାଦିତ କରିଥିଲେ ।

ପଞ୍ଜାବ ଅନ୍ୟାୟର ପ୍ରତିକାର, ଖିଲାଫତ ସମସ୍ୟାର ସନ୍ତୋଷଜନକ ସମାଧାନ ଓ ସ୍ୱରାଜ୍ୟ ଲାଭ ପ୍ରଭୃତି ତିନିଗୋଟି ମୁଖ୍ୟ ଦାବି ଉପରେ କଲିକତା ଅଧିବେଶନରେ ପ୍ରସ୍ତାବ ଗୃହୀତ ହେଲା । ଗାନ୍ଧିଜୀଙ୍କ ନିଜ ଭାଷାରେ – "This Congress is further of opinion that there is no course left open for the people of India but to approve of and adopt the policy of progressive non-violence, non- cooperation until the said wrongs are righted and Swaraj is established."(1) (ଏହି କଂଗ୍ରେସ ଆହୁରି ମତ ପ୍ରକାଶ କରୁଅଛି ଯେ ଉପରୋକ୍ତ ଅନ୍ୟାୟର ପ୍ରତିକାର ନ ହେବା ପର୍ଯ୍ୟନ୍ତ ଏବଂ ସ୍ୱରାଜ୍ୟ ପ୍ରତିଷ୍ଠିତ ନ ହେବା ଯାଏ, ଅହିଂସ ଅସହଯୋଗ କରିବା ବ୍ୟତୀତ ଭାରତୀୟ ଜନତାର ଗତ୍ୟନ୍ତର ନାହିଁ ।) ଆଶାବାଦୀ ଗାନ୍ଧିଜୀ ଆଉ ଟିକେ ଆଗେଇଯାଇ କହିଲେ ଯେ, ଯଦି ଏହି ପ୍ରସ୍ତାବ ପ୍ରତି ଯଥେଷ୍ଟ ଜନସମର୍ଥନ ମିଳେ ତେବେ 'ତୁମେ ବର୍ଷକ ଭିତରେ ସ୍ୱରାଜ୍ୟ ଲାଭ କରିପାରିବ' । (You can gain swaraj in the course of one year.)

ସଂଖ୍ୟାଗରିଷ୍ଠ ଭୋଟରେ ପ୍ରସ୍ତାବଟି ପାସ୍‌ହେଲା ଏବଂ ପରେ ନାଗପୁରଠାରେ କଂଗ୍ରେସର ପୂର୍ଣ୍ଣାଙ୍ଗ ଅଧିବେଶନରେ ଏହାକୁ ଅନୁମୋଦନ କରାଗଲା ।

ଖିଲାଫତ ଚାରିଦଫା କାର୍ଯ୍ୟକ୍ରମ ସାଙ୍ଗକୁ କଂଗ୍ରେସ ଆଇନ ଅଦାଲତ ବର୍ଜନ, ସ୍କୁଲ କଲେଜ ବର୍ଜନ, ନିର୍ବାଚନ ବର୍ଜନ, ବ୍ରିଟିଶ୍ ଦ୍ରବ୍ୟ ବର୍ଜନ ସହ ଖଦି ଓ ନିଶା ନିବାରଣକୁ ଯୋଡ଼ିଲା । ତା' ପରେ ଆରମ୍ଭହେଲା ସ୍ୱାଧୀନତା ସଂଗ୍ରାମ ଇତିହାସର

1. Tendulker- Mahatma Gandhi Vol-II P. 12,15,19

ପ୍ରଥମ ଅହିଂସ ଆନ୍ଦୋଳନ । ହଜାର ହଜାର ଲୋକ ଜେଲ ବରଣ କଲେ (୧୮ ମାସ ଭିତରେ ପ୍ରାୟ ୩୦ ହଜାର) । ଶହ ଶହ ଲୋକ ସରକାରୀ ଚାକରି ଛାଡ଼ିଲେ । ହଜାର ହଜାର ଛାତ୍ର ସ୍କୁଲ କଲେଜ ଛାଡ଼ିଲେ (କଲେଜ ଛାତ୍ର ପ୍ରାୟ ପାଞ୍ଚ ହଜାର ଓ ସ୍କୁଲ ଛାତ୍ର ପ୍ରାୟ ଛ' ହଜାର) । 'ତିଳକ ସ୍ୱରାଜ୍ୟ ପାଣ୍ଠି' କୁ ଇଷ୍ଟାଙ୍କ ଏକ କୋଟି ଟଙ୍କା ସଂଗୃହୀତ ହେଲା । ଭାରତର ହଜାର ହଜାର ଗ୍ରାମରେ ଲକ୍ଷ ଲକ୍ଷ ଚରଖା ଚାଲି ଖଦିର ବ୍ୟାପକ ପ୍ରସାର ହେଲା । କଂଗ୍ରେସ ନିର୍ବାଚନକୁ ସମ୍ପୂର୍ଣ୍ଣ ବର୍ଜନକଲା । ବିଲାତିଲୁଗାର ଆମଦାନି ଉଲ୍ଲେଖଯୋଗ୍ୟ ଭାବରେ କମିଗଲା । ନିଶାନିବାରଣ ପ୍ରଚାର ଫଳରେ ପଞ୍ଜାବରେ ୩୩ ଲକ୍ଷ, ବିହାର-ଓଡ଼ିଶାରେ ୧୦ ଲକ୍ଷ ଓ ବମ୍ବେ ପ୍ରଦେଶରେ ଛ' ଲକ୍ଷ ଟଙ୍କାର ନିଶାଦ୍ରବ୍ୟ ବିକ୍ରି କମ୍‌ହୋଇଗଲା । ଆକୁମାରୀ ହିମାଚଳ ଏକ ନୂତନ ଉତ୍ସାହ ଉନ୍ମାଦନାର ଜୁଆର ଖେଳିଗଲା । ପ୍ରଥମାବସ୍ଥାରେ ହିନ୍ଦୁ-ମୁସଲମାନ ମିଳିତ ଭାବରେ ଏହି ଆନ୍ଦୋଳନ ଚଳାଇଲେ । ୧୯୨୦ରେ ଲକ୍ଷ୍ନୌର ଅବଦୁଲବାରୀ ଅନ୍ୟ ବହୁ ଉଲେମାଙ୍କଠାରୁ ସ୍ୱାକ୍ଷର ନେଇ ଏକ ଫତ୍ୱା ଜାରିକଲେ ଯେ- ଭାରତ ହେଉଛି 'ଦାରୁଆଲ୍ ହାର୍ବ' । ଏଠାରେ ମୁସଲମାନଙ୍କ ଆଗରେ ଦୁଇଟି କର୍ତ୍ତବ୍ୟ - ସେମାନେ ହୁଏତ ଜେହାଦ (ଧର୍ମଯୁଦ୍ଧ) ଘୋଷଣାକରିବେ, ନଚେତ୍ ହିଜରାତ (ପଳାୟନ) କରିବେ । ଏହି ଫତ୍ୱା ଫଳରେ ଯେଉଁ ମୁସଲମାନମାନେ 'ଜେହାଦ' ନ କରି 'ହିଜରାତ' କରିବାକୁ ସ୍ଥିର କଲେ, ସେଭଳି ଅଠରହଜାର ମୁସଲମାନ ଆଫଗାନିସ୍ଥାନ ପଳାଇଲେ । ଦୁର୍ଭାଗ୍ୟବଶତଃ ଆଫଗାନିସ୍ଥାନ ସରକାର ସେମାନଙ୍କୁ ସେଠାରେ ସ୍ଥାନ ନ ଦେବାରୁ ସେମାନେ ବହୁ କଷ୍ଟରେ କ୍ଲାନ୍ତଶ୍ରାନ୍ତ ଅବସ୍ଥାରେ ପୁଣି ଫେରିଆସିଥିଲେ ।

ଏସବୁ ସତ୍ତ୍ୱେ ୧୯୨୧-୨୨ ବେଳକୁ ଖିଲାଫତ ଆନ୍ଦୋଳନ ତାହାର ନଗ୍ନରୂପ ପ୍ରକାଶ କରିବା ଆରମ୍ଭକଲା । କେରଳ ମାଲବାର ଜିଲ୍ଲାର ମୋପଲା ବିଦ୍ରୋହ ସେହି ଦୃଷ୍ଟିରୁ ବିଶେଷ ଉଲ୍ଲେଖଯୋଗ୍ୟ । ଆରବୀୟମାନଙ୍କ ବଂଶଧର ଏହି ମୋପଲା ମୁସ୍ଲିମ୍‌ମାନେ ଶହଶହ ବର୍ଷ ଧରି ସେଠାରେ ବସବାସ କରୁଥିଲେ । ସାଧାରଣତଃ ମୂର୍ଖ ଓ କୃଷିଜୀବୀ ଏହି ମୋପଲାମାନଙ୍କ ଭିତରେ ସାଂପ୍ରଦାୟିକଭାବ ଜାଗ୍ରତ କରାଇଲା ଖିଲାଫତର ପ୍ରଚାର । ସେମାନେ ସରକାର ବିରୋଧରେ ଲଢ଼େଇ କରୁକରୁ ପ୍ରତିବେଶୀ ହିନ୍ଦୁମାନଙ୍କ ବିରୋଧରେ ଲଢ଼େଇ ଆରମ୍ଭ କରିଦେଲେ । ରୀତିମତ ଗରିଲା ଯୁଦ୍ଧ ଚାଲିଲା, ବହୁ ହିନ୍ଦୁ ନିହତ ହେଲେ । ଏହି ସାଂପ୍ରଦାୟିକ ଦଙ୍ଗାର ପ୍ରଭାବ ଦେଶର ଅନ୍ୟଆଡ଼େ ମଧ୍ୟ ପଡ଼ିଲା । ହିନ୍ଦୁ ଓ ମୁସ୍ଲିମ୍ ସାଂପ୍ରଦାୟିକ ମନୋଭାବାପନ୍ନ ବ୍ୟକ୍ତିମାନେ ଏହାର ସୁଯୋଗନେଲେ । ଏଥିରେ ପ୍ରାୟ ଅଢ଼େଇ ହଜାର ମୋପଲା ଓ ବହୁସଂଖ୍ୟକ ହିନ୍ଦୁ ନିହତ ହେଲେ । ଖିଲାଫତ ଆନ୍ଦୋଳନର ଜଣେ କଟ୍ଟର ସମର୍ଥକ ଐତିହାସିକ ତାରାଚାନ୍ଦ ମଧ୍ୟ ସ୍ୱୀକାର କରିଅଛନ୍ତି, "A vicious circle of accusation and

counter-accusation was set up which created the heat in which the tender plant of Hindu-Muslim unity began to wither."(1) (ଅଭିଯୋଗ ଓ ପ୍ରତିଅଭିଯୋଗର ବିଷଚକ୍ର ଯେଉଁ ଉତ୍ତାପ ସୃଷ୍ଟି କଲା, ସେଥିରେ ହିନ୍ଦୁ- ମୁସ଼୍ଲିମ୍ ଏକାତାର କୋମଳ ଲତାଟି ମଉଳିବାକୁ ଲାଗିଲା ।)

ଅସହଯୋଗ ଆନ୍ଦୋଳନର ଅନ୍ୟାନ୍ୟ ସାଫଲ୍ୟ ସତ୍ତ୍ୱେ ସରକାର ପକ୍ଷରୁ ଗାନ୍ଧିଜୀଙ୍କର ତିନିଗୋଟି ମୁଖ୍ୟ ଦାବି ସଂପର୍କରେ କିଛି କରାଗଲାନାହିଁ । ବରଂ ଆନ୍ଦୋଳନକୁ ଦବେଇବାକୁ ଅଧିକରୁ ଅଧିକ ଦମନମୂଳକ ଆଇନକାନୁନ କରାଗଲା । ମୋତିଲାଲ, ଜବାହରଲାଲ ଓ ଲଜପତ୍‌ରାୟ ପ୍ରମୁଖ ଗିରଫ ହେଲେ । ମାଲବ୍ୟଜୀ ଓ ଜିନ୍ନା ଏହି ଅଚଳ ଅବସ୍ଥାର ସମାଧାନ କରିବାକୁ କିଛି ଗୋଟାଏ ସୂତ୍ର ବାହାର କରିବା ଉଦ୍ଦେଶ୍ୟରେ ଭାଇସରାୟ ରିଡ଼ିଂଙ୍କୁ ଭେଟିଲେ । କିନ୍ତୁ କଂଗ୍ରେସ ବା ଖିଲାଫତବାଲାଙ୍କର ଗୋଟିଏ ଦାବି ମଧ୍ୟ ସରକାର ଗ୍ରହଣ କଲା ନାହିଁ । ଜାନୁୟାରୀ ୧୯୨୨ ମସିହାରେ ଜିନ୍ନା ଓ ଜୟକାର ପ୍ରଭୃତି ଏକ ସର୍ବଦଳୀୟ ବୈଠକ ଡାକିଲେ । କିନ୍ତୁ ସର୍ବଦଳୀୟ ବୈଠକ ପୂର୍ବରୁ କଂଗ୍ରେସ ଅହମଦାବାଦ ଅଧିବେଶନରେ (ସଭାପତି- ଅଜମଲ ଖାଁ) ସ୍ଥିରହୋଇଯାଏ ଯେ, "ଅହିଂସ ଅସହଯୋଗ ସଫଳ ହୋଇଥିବା ସତ୍ତ୍ୱେ ସରକାରର କୌଣସି ପରିବର୍ତ୍ତନ ହୋଇ ନ ଥିବା ଦୃଷ୍ଟିରୁ ଏଣିକି ଆଇନ ଅମାନ୍ୟ ଆନ୍ଦୋଳନ କରାଯିବ ।" ଏହି ପ୍ରସ୍ତାବିତ ଆଇନ ଅମାନ୍ୟ ଆନ୍ଦୋଳନର ବିସ୍ତୃତ ରୂପରେଖ ଓ ସମୟ ସ୍ଥିରକରିବାର ଦାୟିତ୍ୱ ଗାନ୍ଧିଜୀଙ୍କ ଉପରେ ନ୍ୟସ୍ତ ହେଲା । କିନ୍ତୁ ସର୍ବଦଳୀୟ ସମ୍ମିଳନୀର ଉଦ୍ୟୋକ୍ତାମାନଙ୍କ ଅନୁରୋଧକ୍ରମେ 'ଆଇନ ଅମାନ୍ୟ ଆନ୍ଦୋଳନକୁ' ସ୍ଥଗିତରଖି ସରକାର ସହ ମିଳାମିଶା କଥାବାର୍ତ୍ତା ଆରମ୍ଭହେଲା । କିନ୍ତୁ ଦାମ୍ଭିକ ଇଂରେଜ ସରକାର 'ଅହିଂସ-ଆଇନ ଅମାନ୍ୟ ଆନ୍ଦୋଳନ'ର ଧମକରେ ଦବିଗଲାନାହିଁ । ଭାରତ ସଚିବ ମଣ୍ଟେଗୁଙ୍କ ଭାଷାରେ – "The senior governors were opposed to a policy of appeasement and the British Cabinet disapproved it."(2) (ପୁରୁଖା ଗଭର୍ଣ୍ଣରମାନେ ଏହି ଖୋସାମତି ନୀତିର ବିରୋଧୀ ଏବଂ ମନ୍ତ୍ରିମଣ୍ଡଳ ମଧ୍ୟ ଏହି ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଇଛି ।)

ଏହା ଫଳରେ ଦେଶସାରା ଯେଉଁ ନୈରାଶ୍ୟ ସୃଷ୍ଟିହେଲା ସେଥିରୁ ରକ୍ଷା ପାଇବା ପାଇଁ ଗାନ୍ଧିଜୀ ଆଇନ ଅମାନ୍ୟ ଆନ୍ଦୋଳନର ଡାକରାଦେଲେ । କଂଗ୍ରେସକୁ ଏଥିପାଇଁ ରାଜି କରାଇ ଗାନ୍ଧିଜୀ ୧୯୨୨ ମସିହା ଫେବୃୟାରୀରେ ଏକ ଚରମପତ୍ର ଦେଲେ– "ଦେଶ ନିକଟରେ କେବଳ ଅହିଂସା ବ୍ୟତୀତ ଅନ୍ୟ କୌଣସି ଅସ୍ତ୍ର ନାହିଁ ଯଦ୍ୱାରା କି ସେ ତାହାର ବାଚନିକ, ସାମାଜିକ ଓ ସାଂଗଠନିକ ସ୍ୱାଧୀନତା ଲାଭକରିପାରେ ।"

---

1. Tarachand – The History of Freedom Movement in India Vol-II Pg – 419
2. Reading Papers – Telegramme from Montegu to Reading 20th Dec.1921.

କିନ୍ତୁ ସେହି ସମୟରେ ଉତ୍ତର ପ୍ରଦେଶର ଗୋରଖପୁର ଜିଲ୍ଲାର ଚୌରୀଚୌରାଠାରେ ଏକ ସାମାନ୍ୟ ଘଟନା ଘଟିଲା ଯାହାକୁ ଗାନ୍ଧିଜୀ ଖୁବ୍ ଅତିରଂଜିତ କରିଦେଲେ । ଚୌରୀଚୌରା ଥାନାର ଲୋକେ ପୁଲିସ୍ ଗୁଳିଚାଳନାରେ ଉତ୍ତ୍ୟକ୍ତ ହୋଇ ଥାନା ଘରେ ନିଆଁଲଗାଇଦେଲେ ଏବଂ ସେହି ନିଆଁରେ ପୋଡ଼ିମଲେ ବାଇଶ ଜଣ ଅତ୍ୟାଚାରୀ ପୁଲିସ । ଏହି ଘଟଣାଟି ଗାନ୍ଧିଜୀଙ୍କ ପକ୍ଷରେ ଦୁଃଖଦାୟକ ହୋଇପାରିଥାଏ, କିନ୍ତୁ ତାହା ଏଭଳି କିଛି ଗୁରୁତ୍ୱପୂର୍ଣ୍ଣ ବୋଲି କୁହାଯାଇ ପାରିବ ନାହିଁ । ଚାଳିଶ କୋଟି ଲୋକ ବାସକରୁଥିବା ବିରାଟ ଭାରତବର୍ଷରେ ଦୀର୍ଘ ଦେଢ଼ ଶହ ବର୍ଷ କାଳ ପୁଲିସଠାରୁ ଅକଥନୀୟ ଅତ୍ୟାଚାର ସହିଥିବା ଭାରତବାସୀ ଯଦି ଏଭଳି ପ୍ରତିଶୋଧ ନେଇଥା'ନ୍ତି, ସେଥିପାଇଁ ମୁଣ୍ଡବ୍ୟଥା ହେବା ଉଚିତ ନ ଥିଲା । ଅଥଚ ଗାନ୍ଧିଜୀ ସେହି ଆଳରେ ଆଇନ ଅମାନ୍ୟ ଆନ୍ଦୋଳନକୁ ସ୍ଥଗିତ ରଖିଲେ । ତାଙ୍କ ଭାଷାରେ, ''ଲୋକେ ଅହିଂସା ପାଇଁ ସଂପୂର୍ଣ୍ଣ ପ୍ରସ୍ତୁତ ହୋଇନାହାନ୍ତି, ସୁତରାଂ ଆଇନ ଅମାନ୍ୟ ଆନ୍ଦୋଳନ ଆଉ ଚାଲିପାରିବନାହିଁ ।''

ଗାନ୍ଧିଜୀଙ୍କର ଏହି ଏକତରଫା ଓ ଅବିଚାରିତ ନିଷ୍ପତ୍ତି ତାହା ତଥାକଥିତ ଅହିଂସାର ସ୍ୱାର୍ଥର ହୋଇଥିଲେ ମଧ୍ୟ ଦେଶରେ ଘୋର ବିସ୍ମୟ, ଅସନ୍ତୋଷ ଏବଂ ବିରକ୍ତି ସୃଷ୍ଟିକଲା । ଦେଶବନ୍ଧୁ ଚିତ୍ତରଂଜନଙ୍କ ଭାଷାରେ, "The Mahatma opens campaign in brilliant fashion, he works it up with unerring skill, he moves from success to success till he reaches the zenith of his campaign. But after that he loses his nerve and begins to falter." (ମହାତ୍ମା ବଡ଼ ଚମତ୍କାର ଢଙ୍ଗରେ ତାଙ୍କର ଆନ୍ଦୋଳନ ଆରମ୍ଭକରନ୍ତି ଏବଂ ଦକ୍ଷତା ସହକାରେ ତାକୁ ପରିଚାଳନାକରନ୍ତି ଏବଂ ଚୂଡ଼ାନ୍ତ ଶିଖରରେ ପହଞ୍ଚିବା ଯାଏ ସେ ସଫଳତା ପରେ ସଫଳତା ଅର୍ଜନ କରିଚାଲନ୍ତି । କିନ୍ତୁ ତା'ପରେ ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟେ ଏବଂ ସେ ଇତସ୍ତତଃ ହୁଅନ୍ତି ।) ସୁଭାଷ ଏହାକୁ ଏକ ଜାତୀୟ ଦୁର୍ଯୋଗ (National calamity) ବୋଲି ଅଭିହିତ କଲେ । ବିପ୍ଳବୀ ଏମ୍. ଏନ୍. ରାୟ କହିଲେ- ଏହି ଘଟଣା ମଧ୍ୟରେ ଜନତା ତୁଳନାରେ ନେତୃବର୍ଗ ଅଧିକ ଦୁର୍ବଳ ବୋଲି ପ୍ରମାଣିତ ହେଉଛି । ଅନ୍ୟମାନେ ଗାନ୍ଧିଜୀଙ୍କୁ ଦୋଷ ଦେଇ କହିଲେ ଯେ- ''ସେ ଜନତାର ଜାତୀୟଚେତନା ଅବଦମନ କରୁଛନ୍ତି ଏବଂ ସେମାନଙ୍କ ଉପରେ ଉଚ୍ଚବର୍ଗର ଅଯଥାର୍ଥ ନିୟନ୍ତ୍ରଣ ଜାରି କରୁଅଛନ୍ତି ।'' ଏପରିକି ଗାନ୍ଧିଜୀଙ୍କର ପଟ୍ଟଶିଷ୍ୟ ନେହେରୁ କହିଲେ, "I felt annoyed with him for choosing a side "Issue for the final sacrifice. After so much sacrifice and brave endeavour was our movement to tail off into something insignificant."(1) (ଚରମ ତ୍ୟାଗ ପାଇଁ ଏଭଳି ଗୋଟାଏ ମାମୁଲି ଘଟଣାକୁ ଧରିବସିବା ଦେଖି ମୁଁ ତାଙ୍କ ଉପରେ ବିରକ୍ତ ହୋଇଥିଲି । ଏତେ ତ୍ୟାଗ, ଏତେ ସାହସିକ ପ୍ରଚେଷ୍ଟାପୂର୍ଣ୍ଣ ଆମ ଆନ୍ଦୋଳନର ଏଭଳି ଦୟନୀୟ

୧. ଭୂପେନ୍ଦ୍ର ରକ୍ଷିତରାୟ – ଭାରତର ସଶସ୍ତ୍ର ବିପ୍ଳବ - ପୃ. ୧୨୫

ପରସମାପ୍ତ ଘଟଲା ।) ତାରାଚାନ୍ଦ ମଧ୍ୟ କହଲେ, "The sudden stoppage of the movement which had raised enthusiasm to a very high pitch was bound to create confusion." (ଜନଉତ୍ସାହକୁ ଚରମ ଶିଖରରେ ପହଞ୍ଚାଇଥିବା ଆନ୍ଦୋଳନକୁ ହଠାତ ସ୍ଥଗିତ ରଖିବା ଫଳରେ ଏକ ଅନିଶ୍ଚିତ ବାତାବରଣ ସୃଷ୍ଟି ହେଲା ।) "The decision was tantamount to an acknowledgement of defeat.' (ଏହି ସିଦ୍ଧାନ୍ତ ପରାଜୟ ସ୍ୱୀକାର କରିବା ସହ ସମାନ) ଏହା ଗାନ୍ଧିଜୀଙ୍କର ଆଉ ଏକ ପ୍ରମାଦ ।

ଆଉ ଖିଲାଫତର ପରିଣତି କ'ଣ ହେଲା ? ଖିଲାଫତ ଭଳି ଏକ ନିଛକ ଧର୍ମୀୟ ସମସ୍ୟାକୁ ରାଜନୀତି ସହ ଯୋଡ଼ିଦେଇ ଏବଂ ସେହି ଅସ୍ତ୍ରରେ ସ୍ୱାଧୀନତା ସଂଗ୍ରାମକୁ ପରିଚାଳନା କରି ଗାନ୍ଧିଜୀ ଏକ ମାରାତ୍ମକ ଭୁଲକରିଦେଲେ । ଖିଲାଫତକୁ ଏକ ଜାତୀୟ ସମସ୍ୟା କରିବା ପଛରେ କୌଣସି ଐତିହାସିକ ଯୁକ୍ତି ନ ଥିଲା । ଇତିହାସକାରଙ୍କର ମତରେ– Unfortunately neither Gandhiji nor the Indian Khilafatist realised that their objective was neither politically practicable nor wholly justified." (1) (ଦୁର୍ଭାଗ୍ୟବଶତଃ ଗାନ୍ଧିଜୀ କିମ୍ବା ଭାରତୀୟ ଖିଲାଫତ୍‌ମାନେ କେହି ବୁଝିଲେ ନାହିଁ ଯେ ସେମାନଙ୍କର ଲକ୍ଷ୍ୟ ରାଜନୈତିକ ଦୃଷ୍ଟିରୁ ସମ୍ଭବ ନୁହେଁ କିମ୍ବା ସଂପୂର୍ଣ୍ଣ ଯୁକ୍ତିଯୁକ୍ତ ମଧ୍ୟ ନୁହେଁ ।) ଆଫ୍ରିକା, ଏସିଆ ବା ୟୁରୋପର ମୁସଲମାନମାନଙ୍କ ଭିତରେ ମନସ୍ତାତ୍ତ୍ୱିକ ଏକତ୍ୱ ଏକ ନିଛକ ଭାବପ୍ରବଣତା ଛଡ଼ା ଆଉ କିଛି ନ ଥିଲା । ପୃଥିବୀର ସମସ୍ତ ମୁସଲମାନ ସଂପ୍ରଦାୟ ଇତିହାସରେ କେବେହେଲେ ଗୋଟିଏ ଡୋରରେ ବନ୍ଧା ହୋଇ ନ ଥିଲେ । ବିଭିନ୍ନ ମୁସଲମାନ ଦେଶ ଭିତରେ ବନ୍ଧୁତା ବା ଶତ୍ରୁତା ଉପରେ ସେମାନଙ୍କର ବଂଧୁତା ବା ଶତ୍ରୁତା ନିର୍ଭରଶୀଳ ଥିଲା । ଖିଲାଫତବାଦୀମାନେ କେହି ବୁଝିଲେ ନାହିଁ ଯେ ଆନ୍ତର୍ଜାତିକ ସଂପର୍କ କେବଳ ସଂଖ୍ୟାଗରିଷ୍ଠତାଦ୍ୱାରା ନିୟନ୍ତ୍ରିତ ହୁଏ ନାହିଁ । ଖଲିଫା ଗାଦିର ପୁନର୍ବିନ୍ୟାସର ଅର୍ଥ ଥିଲା ଅଟୋମାନ ସାମ୍ରାଜ୍ୟର ପୁନଃସ୍ଥାପନ ଯାହାକି ଏକ ବିଚିତ୍ର କଥା । ବିଶେଷତଃ ଆରବ ଦେଶରେ ମଧ୍ୟ କେତେକ ମୁସଲମାନ ରାଜ୍ୟ ଖଲିଫାଙ୍କୁ ସ୍ୱୀକାର କରୁ ନ ଥିଲେ । ଭାରତରେ କେବଳ ସୁନ୍ନି ସଂପ୍ରଦାୟର ମୁସଲମାନଙ୍କ ଛଡ଼ା ଅନ୍ୟ କେହି 'ଖଲିଫା' ପଦବୀ ପ୍ରତି ଆଗ୍ରହୀ ନ ଥିଲେ । ଷୋଡ଼ଶ ଶତାବ୍ଦୀରେ ଭାରତରେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠାବେଳୁ ଭାରତୀୟ ମୁସଲମାନ ସଂପ୍ରଦାୟ ମଧ୍ୟ ଖଲିଫାଙ୍କୁ ମାନୁ ନ ଥିଲେ । ଭୂମଧ୍ୟସାଗର ଆଡ଼କୁ ରୁଷିଆର ଅଗ୍ରଗତିକୁ ରୋକିବା ପାଇଁ ଇଂରେଜମାନେ ୧୮୭୬ ଖ୍ରୀଷ୍ଟାବ୍ଦରେ ନିଜ ସ୍ୱାର୍ଥପାଇଁହିଁ 'ଖଲିଫା'ର ଗୁରୁତ୍ୱ ବଢ଼ାଇଦେଇଥିଲେ । ସୁତରାଂ ଖିଲାଫତକୁ ସମର୍ଥନ କରି ଭାରତୀୟ ଉଲେମାମାନେ ନିର୍ଦ୍ଦେଶ ବା ଫତ୍ୱା ଜାରିକରିବାରୁ ଏହା ଏକ ମୁଖ୍ୟତଃ ଧର୍ମୀୟ ଆନ୍ଦୋଳନରେ ପରିଣତ ହୋଇଗଲା ।

1. Tarachand – The History of Freedom Movement in India Vol-III Pg–508

"Politics receeded and religion took its place." (ରାଜନୀତି ଉଭେଇଗଲା ଏବଂ ଧର୍ମ ତାହାର ସ୍ଥାନ ଅଧିକାର କଲା ।) ଆଜାଦଙ୍କ ପରି ଜାତୀୟବାଦୀ ମୁସଲମାନ ନେତା ମଧ୍ୟ କହିଲେ ଯେ, ଏହି ଧର୍ମଯୁଦ୍ଧରେ ଯୋଗଦେବା ପ୍ରତ୍ୟେକ ମୁସଲମାନଙ୍କୁ ଆଲ୍ଲାଙ୍କର ନିର୍ଦ୍ଦେଶ । ଏପରିକି ନିଜେ ଗାନ୍ଧିଜୀ ମଧ୍ୟ କହିଲେ ଯେ, "If the Hindus wish to cultivate eternal friendship with the Musalmans, they must perish with them in the attempt to vindicate the honour of the Islams."(1) (ଯଦି ହିନ୍ଦୁମାନେ ମୁସଲମାନଙ୍କ ସହ ଚିରନ୍ତନ ବନ୍ଧୁତା ପ୍ରତିଷ୍ଠା କରିବାକୁ ଚାହାନ୍ତି ତେବେ ଇସ୍ଲାମ୍‌ର ସମ୍ମାନ ରକ୍ଷା କରିବାକୁ ସେମାନଙ୍କୁ ମୁସଲମାନମାନଙ୍କ ସହ ମରିବାକୁ ପଡ଼ିବ ।) ଏଭଳି ଭାବପ୍ରବଣତା ଫଳରେ ସାଂପ୍ରଦାୟିକ ଭାବ ସୃଷ୍ଟିହେବା ସ୍ୱାଭାବିକ - ତାହାହିଁ ହେଲା । ମହମ୍ମଦ ଅଲ୍ଲୀଙ୍କ ଭଳି ସମ୍ମାନନୀୟ ଖିଲାଫତ ନେତାମାନେ ମଧ୍ୟ ପ୍ରଚାର କରୁ କରୁ ଏତେ ବାଟ ଚାଲିଗଲେ ଯେ ତାଙ୍କ ମୁହଁରୁ ଶୁଣାଗଲା, "ମୁସଲମାନ ଭାଇମାନେ ସେମାନଙ୍କର ପ୍ରାଚୀନ ବୀରତ୍ୱ ଓ ରାଜ୍ୟଜୟ କଥା ଚିନ୍ତାକରନ୍ତୁ ଏବଂ ସାମ୍ରାଜ୍ୟ ପ୍ରତିଷ୍ଠାର ଇତିହାସକୁ ସ୍ମରଣ କରନ୍ତୁ ।" ଏଭଳି ଭାଷଣ ହିନ୍ଦୁ ନେତାମାନଙ୍କ ମନରେ ଦାରୁଣ ଆଘାତ ଦେଇଥିବା କଥା ଇତିହାସରେ ରହିଛି, କାରଣ ଏହା ମୋଗଲ ଆକ୍ରମଣର ଅପ୍ରୀତିକର ସ୍ମୃତିହିଁ ମନରେ ଜାଗ୍ରତ କରୁଥିଲା । ଜଣାଯାଏ ଯେ ଏହି ଭାଷଣ ପ୍ରତି ସ୍ୱାମୀ ଶ୍ରଦ୍ଧାନନ୍ଦ ଏବଂ ମାଲବ୍ୟଜୀ ଗାନ୍ଧିଜୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

କିନ୍ତୁ ଏତେ ଲହୁଲୁହର ପ୍ରତିଦାନରେ ଖିଲାଫତ ଅନ୍ୟାୟର ପ୍ରତିକାର ହେଲା କି ? ହେଲା ନାହିଁ । ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ଖିଲାଫତ ଆନ୍ଦୋଳନ ଅଧିକ ମୁସଲମାନଙ୍କୁ ଭାରତର ଜାତୀୟ ଆନ୍ଦୋଳନ ଭିତରକୁ ଟାଣିପାରିଲାନାହିଁ । ମୂଳରୁ ଶେଷଯାଏ ଏହା ଏକ ଧର୍ମୀୟ ଆନ୍ଦୋଳନ ହୋଇ ରହିଗଲା । ଏହି ଅପ୍ରିୟ ସତ୍ୟଟି ସ୍ୱୀକାର କରିଛନ୍ତି ପାକିସ୍ତାନର ପ୍ରତିଷ୍ଠାତା କ୍ୱାଏଦ-ଆଜାମ-ଜିନ୍ନା– "The Muslims were mainly concerned about khilafat question to settle for which they inclined to be even militant. To them the question of Swaraj was of secondary nature."(2) (ମୁସଲମାନମାନେ କେବଳ ଖିଲାଫତ ପାଇଁ ଆଗ୍ରହୀ ଥିଲେ ଯେଉଁଥିପାଇଁ ସେମାନେ ଚରମ ସଂଗ୍ରାମ କରିବାକୁ ମଧ୍ୟ ପ୍ରସ୍ତୁତ ଥିଲେ । ସ୍ୱରାଜ୍ୟ ସେମାନଙ୍କ ପକ୍ଷରେ ଏକ ଗୌଣ ବିଷୟ ଥିଲା ।) ଅଥଚ ଗାନ୍ଧିଜୀ ମୂଳରୁ କହିଆସିଥିଲେ ଓ କଂଗ୍ରେସ ମଧ୍ୟ ଏହା ଗ୍ରହଣକରିଥିଲା ଯେ 'ସ୍ୱରାଜ୍ୟ' ପ୍ରାପ୍ତି ହିଁ ଖିଲାଫତର ପ୍ରଧାନ ଲକ୍ଷ୍ୟ ।

ଯାହାହେଉ, ୧୯୨୨ ମସିହାରେ ଖିଲାଫତ ପଦବୀ ଆପଣାଛାଏଁ ଲୋପ ପାଇଗଲା । ମୁସ୍ତାଫା କେମାଲ ପାଶାଙ୍କ ନେତୃତ୍ୱରେ ତୁର୍କୀ ସାଧାରଣତନ୍ତ୍ର ପ୍ରତିଷ୍ଠା

1. M.K. Gandhi – Communal Unity, Page – 4
2. M.H. Saiyed– Mahammad Ali Jinah Page-289

ହେବା ଫଳରେ ସୁଲତାନ ଗାଦିଚ୍ୟୁତହେଲେ । ଏହାର ଦୁଇବର୍ଷ ପରେ 'ଖଲିଫା' ପଦବୀ ମଧ୍ୟ ଚିରଦିନ ପାଇଁ ଲୋପପାଇଗଲା । ଏହିଭଳି ଭାବରେ ଏକ ନିରର୍ଥକ, ଅନାବଶ୍ୟକ ଏବଂ ନିଛକ ସାଂପ୍ରଦାୟିକ ପ୍ରଶ୍ନକୁ ନେଇ ବହୁ ଲୁହଲହୁରଂଜିତ ଖିଲାଫତ ଆନ୍ଦୋଳନର କରୁଣ ପରିସମାପ୍ତି ଘଟିଲା ।

ଲାଲା ଲଜପତରାୟ କହିଥିଲେ – ଦୁର୍ଭାଗ୍ୟବଶତଃ ଗତ ଦଶବର୍ଷରେ ଆମ୍ଭେମାନେ ଯେଉଁ ବାୟୁମଣ୍ଡଳ ସୃଷ୍ଟିକରିଛୁ ସେଥିରେ ଯୁକ୍ତି ଓ ସହନଶୀଳତା ଅପେକ୍ଷା ରକ୍ଷଣଶୀଳତା ଓ ସଂକୀର୍ଣ୍ଣତାର ଗନ୍ଧ ଅଧିକ ରହିଛି । ନିଜେ ଅସହଯୋଗ ଆନ୍ଦୋଳନହିଁ ଏହି ବାୟୁମଣ୍ଡଳ ସୃଷ୍ଟିର କାରଣ ହୋଇଛି । ଦୁଃଖର କଥା ଯେ ଖିଲାଫତ ଆନ୍ଦୋଳନ ରାଜନୀତିକ ବିଚାର ଉପରେ ଆଧାରିତ ନ ହୋଇ ଧର୍ମୀୟ ବିଚାର ଉପରେ ହୋଇଛି । କିନ୍ତୁ ଏହାକୁ ସମର୍ଥନ କରିବା ପାଇଁ ରାଜନୀତିକ ଯୁକ୍ତିର ଅଭାବ ନ ଥିଲା । ଏହା ଆହୁରି ଦୁର୍ଭାଗ୍ୟଜନକ ଯେ ମହାତ୍ମାଗାନ୍ଧୀ ଓ ଖିଲାଫତ ଆନ୍ଦୋଳନର ନେତାମାନେ ଏଭଳି ଏକ ସମସ୍ୟାରେ ଧର୍ମକୁ ଆଣି ପୂରାଇଲେ ଯାହାକି ମୂଳତଃ ଓ ମୁଖ୍ୟତଃ ଏକ ରାଜନୀତିକ ପ୍ରଶ୍ନ । ଅସହଯୋଗ ଆନ୍ଦୋଳନର ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ଧାର୍ମିକ ସ୍ୱୀକୃତି ଆଣିବା ଆହୁରି ଏକ ଗୁରୁତର ଭୁଲ ହେଲା । ଏହା ସଂକୀର୍ଣ୍ଣ ଜାତିଆଣ ଉଦ୍ଦୀପନାକୁ ପୁନର୍ଜୀବନ ଦେବାରେ ଏବଂ ଏକ ସମ୍ମିଳିତ ଭାରତର ପରିପନ୍ଥୀ ବିଭିନ୍ନ ଶକ୍ତିକୁ ଶକ୍ତିଶାଳୀ କରିବାରେ ସାହାଯ୍ୟ କଲା ।(1)

ଏଭଳି ଭାବରେ ଅହିଂସାର ପ୍ରଥମ ପରାଜୟର ଗ୍ଳାନି ଏବଂ ଧର୍ମସହ ରାଜନୀତିକୁ ମିଶାଇ ତିଆରିହୋଇଥିବା ଅସହଯୋଗ ଆନ୍ଦୋଳନ ୧୯୨୦ରୁ ୧୯୨୨ ମସିହା ପର୍ଯ୍ୟନ୍ତ ଚାଲିଲା ।

ତାରାଚାନ୍ଦ ମଧ୍ୟ ସ୍ୱୀକାର କରିଅଛନ୍ତି – "It certainly failed to achieve two proclaimed objects- reinstitution of the Turkish caliphate and attainment of swaraj.(2) (ତୁର୍କୀର ଖଲିଫା ପଦବୀର ପୁନଃପ୍ରଚଳନ ଏବଂ ସ୍ୱରାଜ୍ୟ ପ୍ରତିଷ୍ଠା ନାମକ ଦୁଇଟି ମୁଖ୍ୟ ଉଦ୍ଦେଶ୍ୟ ସାଧନ କରିବାରେ ଏହା ନିଶ୍ଚିତରୂପେ ବ୍ୟର୍ଥ ହୋଇଗଲା ।)

❐ ❐ ❐

1. V.C. Joshi – Lala Lajpat Rai – Writings and Speeches Page – 282

## ଅଧ୍ୟାୟ - ଉଣେଇଶ

# କନିକା ଓ ଅନ୍ୟାନ୍ୟ ରାଜ୍ୟରେ ବିଦ୍ରୋହ

ଅସହଯୋଗ ଆନ୍ଦୋଳନ ଡାକରାରେ ଯେତେବେଳେ ଆକୁମାରୀ ହିମାଚଳ ବିପୁଳ ଉତ୍ସାହ ଓ ଉନ୍ମାଦନାର ଜୁଆର ଛୁଟିଲା ସେତେବେଳେ ସୁଦୂର ଗାଁଗହଳରେ ବାସକରୁଥିବା ଅତ୍ୟାଚାରିତ କୃଷକ ସମାଜ ଭିତରେ ମଧ୍ୟ ଅପୂର୍ବ ଜାଗରଣ ସୃଷ୍ଟି ହୋଇଥିଲା । ସ୍ଥାନୀୟ ରାଜା-ମହାରାଜା ଓ ଜମିଦାରଙ୍କ ଶାସନରେ ଯୁଗ ଯୁଗ ଧରି ସେମାନେ ପିଷ୍ଟ ହୋଇ ରହିଥିଲେ । ଭାରତରେ ଇଂରେଜ ଶାସନ ପ୍ରତିଷ୍ଠା ପଛରେ ଯେଉଁ କେତେଜଣ ଭାରତୀୟ ବିଶ୍ୱାସଘାତକଙ୍କର ଅବଦାନ ରହିଥିଲା, ସେମାନେ ଇଂରେଜମାନଙ୍କଠାରୁ ସର୍ବବିଧ ପୃଷ୍ଠପୋଷକତା ଲାଭକରିଥିଲେ । ଫଳରେ ସେମାନେ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଓ ଆଖିବୁଜା ଶୋଷଣ ଜାହିର କରୁଥିଲେ । ଏହା ବିରୋଧରେ କାଁଭାଁ ପ୍ରଜାମାନଙ୍କର ସଂଗଠିତ ବିଦ୍ରୋହ ହେଲେ ଏବଂ ଉକ୍ତ ବିଦ୍ରୋହକୁ ଦମନକରିବାକୁ ରାଜଦରବାରର ସୈନ୍ୟମାନେ ଅସମର୍ଥ ହେଲେ ବ୍ରିଟିଶ ପୁଲିସ ସେମାନଙ୍କୁ ସାହାଯ୍ୟକରୁଥିଲେ ।

କ୍ରମବର୍ଦ୍ଧମାନ କରଭାର ସାଙ୍ଗକୁ ପ୍ରଥମ ମହାଯୁଦ୍ଧରୁ ସୃଷ୍ଟ ମୁଦ୍ରାସ୍ଫୀତି ସେମାନଙ୍କୁ ତଳିତଳାନ୍ତ କରିଦେଲା । ୧୯୧୮ରେ ମଧ୍ୟଭାରତରେ ଇନଫ୍ଲୁଏଞ୍ଜା ମହାମାରୀରେ ହଜାର ହଜାର ଲୋକ ବିନାଚିକିତ୍ସାରେ ମୃତ୍ୟୁବରଣ କଲେ । ଜନଅସନ୍ତୋଷ ତୀବ୍ରତର ହେଲା । ୧୯୨୦ ମସିହା ଡିସେମ୍ବର ୧୨ ତାରିଖରେ ଆଲାହାବାଦ ଅଞ୍ଚଳର ହଜାର ହଜାର ଚାଷୀ ଏକ ବିରାଟ ଶୋଭାଯାତ୍ରାରେ ଆସି ସହର ଉପରେ ଚଢ଼ାଉକଲେ । ସହରୀଲୋକେ ସେତେବେଳେ ଗ୍ରାମର ଅନୁନ୍ନତ ଲୋକଙ୍କର ଅଭୂତପୂର୍ବ ଶୋଭାଯାତ୍ରା ଦେଖି ତଟସ୍ଥ ହୋଇଗଲେ । ଗାଁଗହଳର ଦୟନୀୟ ଅବସ୍ଥା ତଥା ସ୍ଥାନୀୟ ଜମିଦାରମାନଙ୍କର ଅତ୍ୟାଚାର ସମ୍ପର୍କରେ କଂଗ୍ରେସ ନେତାମାନଙ୍କୁ ସ୍ମରଣ କରାଇ ଦେବାହିଁ ଏହି ଶୋଭାଯାତ୍ରାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ରାଜନୀତିରେ ସଂପୂର୍ଣ୍ଣ ନବାଗତ ଜବାହରଲାଲ ସେହି ଶୋଭାଯାତ୍ରା ଦେଖି କିଭଳି ଅଭିଭୂତ ହୋଇଥିଲେ ତାହା ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ ରହିଛି । ଯାହାହେଉ, କୌଣସି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହେବା ପୂର୍ବରୁ ସରକାର ପ୍ରଜାମାନଙ୍କର ମୁଖ୍ୟ ଦାବିଗୁଡ଼ିକ ପୂରଣ କରିଦେଇଥିଲେ ।

ତା' ପରେ ସାରା ଦେଶରେ ଖଜଣା ବନ୍ଦ ଆନ୍ଦୋଳନ ବ୍ୟାପକ ଭାବରେ ହୋଇଥିବା ଜଣାଯାଏ । ବଙ୍ଗଳାର କୃଷକମାନେ ପ୍ରଥମଥର ପାଇଁ ପ୍ରାଦେଶିକ ସ୍ତରରେ ଏକତ୍ରିତ ହୋଇଥିବାର ଜଣାଯାଏ ଏବଂ ତାହାର ପ୍ରଭାବରେ ମେଦିନପୁରର କୃଷକମାନଙ୍କର ଖଜଣାବନ୍ଦ ଆନ୍ଦୋଳନ ସେହି ସମୟର ଘଟଣା । ଆନ୍ଧ୍ରର ଗୁଣ୍ଟୁର ଜିଲାରେ ଡୁଗୁଚିରାଲା ଗୋପାଳ କ୍ରିଷ୍ଣିୟାଙ୍କ ନେତୃତ୍ୱରେ ମଧ୍ୟ ପ୍ରଜାବିଦ୍ରୋହ ଆରମ୍ଭ ହୋଇଥିଲା । ପେଡ୍‌ଡ଼ାନାଡ଼ିପାଡୁରେ ଅଧିକାଂଶ ଚାଷୀ ଖଜଣା ବନ୍ଦକରିଦେଇଥିଲେ । ଗୁଣ୍ଟୁର, କୃଷ୍ଣା ଓ ଗୋଦାବରୀ ଜିଲାରେ ଖଜଣା ବନ୍ଦ ଆନ୍ଦୋଳନ ହୋଇଥିଲା । ଉତ୍ତରପ୍ରଦେଶର ଫୈଜାବାଦ ଓ ରାଏବରିଲୀରେ ସେହି ସମୟରେ ଚାଷୀମାନେ ଖଜଣା ଦେବା ବନ୍ଦ କରିଦେଇଥିଲେ । ଆନ୍ଧ୍ରର ପାଲନାଡ଼ରେ ପ୍ରଚଳିତ ଥିବା ଗୋଚରକର ଦେବାକୁ ମଧ୍ୟ ସେଠାକାର କୃଷକମାନେ ନାସ୍ତିକରିଦେଇଥିଲେ । ରାଏବରିଲୀରେ କେତେକ ବିକ୍ଷୁବ୍ଧ ଚାଷୀ ଗିରଫହୋଇଥିଲେ । ସେମାନଙ୍କୁ ପୁଲିସ ହାତରୁ ଛଡ଼ାଇନେବାକୁ ଉଦ୍ୟମ ହେବାରୁ ସଂଘର୍ଷ ହୋଇଥିଲା । ବିହାର ଛୋଟନାଗପୁରର ଆଦିବାସୀମାନେ ମଧ୍ୟ ଖଜଣା ଦେବାକୁ ଅସ୍ୱୀକାର କରିଥିଲେ । ପଞ୍ଜାବରେ ଅକାଳୀମାନଙ୍କ ବିଦ୍ରୋହ, ଗୁରୁଦ୍ୱାର ଆନ୍ଦୋଳନ ତଥା ମୋପଲା ବିଦ୍ରୋହ ମଧ୍ୟ ବିଶେଷ ଉଲ୍ଲେଖଯୋଗ୍ୟ ।

ଓଡ଼ିଶାର ତାଳଚେର ଓ ନୀଳଗିରିର ପ୍ରଜାବିଦ୍ରୋହ ସେହି ସମୟର ଘଟଣା; କିନ୍ତୁ ସାରା ଭାରତରେ ଯେତେ ପ୍ରଜା ବା କୃଷକ ବିଦ୍ରୋହ ହୋଇଥିଲା, ସେଥିମଧ୍ୟରୁ କନିକା ପ୍ରଜାବିଦ୍ରୋହ ସର୍ବାଧିକ ଭୟାବହ ଓ ବ୍ୟାପକ ହୋଇଥିବାରୁ ତା'ର ସବିଶେଷ ବିବରଣୀ ଏଠାରେ ଦିଆଯାଇଅଛି । ଦ୍ୱିତୀୟତଃ ଏହା ସଶସ୍ତ୍ର ବିପ୍ଳବର ରୂପ ନେଇଥିବାରୁ 'ସଶସ୍ତ୍ର ମୁକ୍ତିସଂଗ୍ରାମ'ର ଇତିହାସରେ ଏହାର ଉଲ୍ଲେଖ ବିଶେଷ ପ୍ରୟୋଜନ । ବିଶେଷତଃ ଅସହଯୋଗ ଆନ୍ଦୋଳନ ଯୁଗରେ ଓଡ଼ିଶାର କନିକାରେହିଁ ପ୍ରଥମେ ପୁଲିସ ଗୁଳିରେ ଦୁଇଜଣ ପ୍ରାଣ ହରାଇଥିଲେ ବୋଲି ଜଣାଯାଏ ।

**କନିକା ପ୍ରଜାମେଳି :**

ଓଡ଼ିଶାରେ ଇଂରେଜ ଶାସନର ଆରମ୍ଭ କାଳରେ ତତ୍‌କାଳୀନ କନିକା ରାଜା ବଳଭଦ୍ର ଭଞ୍ଜ ଇଂରେଜମାନଙ୍କର ସାମାନ୍ୟ ବିରୋଧ କରିଥିଲେ । ୧୮୧୭ର ପାଇକ ବିଦ୍ରୋହ ପରେ ସେ ସେମାନଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ଅବଶ୍ୟ କନିକାର ପାଇକନେତା ବାମଦେବ ପଟ୍ଟଯୋଷୀ ପ୍ରଜାମାନଙ୍କୁ ଧରି ଆଉ କିଛିଦିନ ବିଦ୍ରୋହ ଚାଲୁରଖିଥିଲେ । କିନ୍ତୁ ସେ ମଧ୍ୟ ଶେଷସୁଦ୍ଧା ଗିରଫ ହୋଇ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଭୋଗିଥିଲେ (ପ୍ରଥମ ଭାଗ ଦ୍ରଷ୍ଟବ୍ୟ) । ତା'ପରେ ପ୍ରାୟ ଶହେ ବର୍ଷ ପର୍ଯ୍ୟନ୍ତ କନିକାରେ କୌଣସି ବ୍ରିଟିଶ୍ ବିରୋଧୀ ଆନ୍ଦୋଳନ ମୁଣ୍ଡ ଟେକିପାରି ନ ଥିଲା । ବିଶେଷତଃ ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଅମଳରେ କନିକା ପ୍ରଜାମାନେ ସବୁଦିଗରୁ ପିଷ୍ଟ ହୋଇଯାଇଥିଲେ । କନିକା ଗୋଟିଏ ଛୋଟିଆ ଜମିଦାରୀ ହୋଇଥିଲେ

ମଧ୍ୟ ଜମିଦାର ବଂଶ ଯୋଗାଡ଼କରି ରାଜପଦବୀଟିକୁ ପୁରୁଷାନୁକ୍ରମିକ କରି ଦେଇଥିଲେ । କନିକା ରାଜା ତତ୍‌କାଳୀନ ଉତ୍କଳ ସମ୍ମିଳନୀର ଜଣେ ପ୍ରଧାନ ନେତା ଥିଲେ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଅନ୍ୟତମ ପ୍ରତିଷ୍ଠାତା କୁଳବୃଦ୍ଧ ମଧୁବାବୁଙ୍କର ଅତ୍ୟନ୍ତ ବିଶ୍ୱାସଭାଜନ ଥିଲେ । ଏପରିକି ସେ ମଧୁବାବୁଙ୍କର ରାଜନୈତିକ ଉତ୍ତରାଧିକାରୀ ହେବେ ବୋଲି ସେତେବେଳେ ବିଚାରକରାଯାଉଥିଲା । କନିକା ରାଜା ସେହି ପ୍ରତିପତ୍ତିକୁ ବ୍ୟବହାର କରି ତାଙ୍କ ରାଜ୍ୟରେ ଯଥେଚ୍ଛା ଅତ୍ୟାଚାର ଚଳାଇଥିଲେ । ଇଂରେଜ ଶାସିତ ଅନ୍ୟାନ୍ୟ ଅଞ୍ଚଳର ଲୋକଙ୍କ ଭଳି କନିକା ଲୋକେ ପ୍ରାୟ ବ୍ରିଟିଶ୍ କୋର୍ଟ କଚେରିରେ ମାଲିମକଦ୍ଦମା କରିପାରୁ ନ ଥିଲେ । ରାଜାଙ୍କ ବିରୋଧରେ କଥା କହିବା ପ୍ରଜାମାନଙ୍କ ପକ୍ଷରେ ସମ୍ଭବ ହେଉ ନ ଥିଲା । ବେଠି, ବେଗାରି ଛଡ଼ା ବିଭିନ୍ନ ଚଉଷଠି ପ୍ରକାର କର ପ୍ରଜାମାନଙ୍କଠାରୁ ଆଦାୟ କରାଯାଉଥିବା କଥା ଡକ୍ଟର ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସରେ ସ୍ୱୀକାର କରାଯାଇଅଛି । କିନ୍ତୁ ସେ ଚଉଷଠି ପ୍ରକାରର ବିଚିତ୍ର କର ପାଉଣା ସବୁର ବର୍ଣ୍ଣନା କନିକାର ଜଣେ ବିଶିଷ୍ଟ ବିପ୍ଳବୀ ସ୍ୱର୍ଗତ ଆନନ୍ଦ ଚନ୍ଦ୍ର ଜେନାଙ୍କ ଦ୍ୱାରା ରଚିତ 'ଦୁଃଖିନୀ କନିକା' ପୁସ୍ତିକାରେ ଦେଖିବାକୁ ମିଳେ । କନିକା ପ୍ରଜାଙ୍କ ଉପରେ ସେତେବେଳେ ଯେଉଁ ଅତ୍ୟାଚାର ହେଉଥିଲା ସେଥିମଧ୍ୟରୁ କେତେକ ରାଜାଙ୍କ ନିର୍ଦ୍ଦେଶରେ ଏବଂ କେତେକ ତାଙ୍କ ଅଜ୍ଞାତରେ ହେଉଥିଲା ବୋଲି ଆନନ୍ଦ ଚନ୍ଦ୍ର ଲେଖିଅଛନ୍ତି । (ଯେପରିକି 'ପିତାଙ୍କୁ ଏକଥା ବିଦିତ, ଥିବାର ହୁଏ ଅନୁମିତ' ବା 'ପିତା'ଙ୍କୁ ଏହା ଅବିଦିତ, ଥିବାର ହୁଏ ଅନୁମିତ ଇତ୍ୟାଦି) ରାଜକନିକାଠାରେ ରାଜାଙ୍କଦ୍ୱାରା ପ୍ରତିଷ୍ଠିତ ଔଷଧାଳୟ ପ୍ରଜାଙ୍କ ପାଇଁ କୁହାଯାଉଥିଲେ ମଧ୍ୟ ତାହା ବାସ୍ତବରେ ରାଜପରିବାର ଓ ରାଜକର୍ମଚାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । (ଏ ହେତୁ ସେ ଔଷଧାଳୟ, ଆମ୍ଭର ନୁହଁଇ ଆଶ୍ରୟ) ଶିକ୍ଷାନୁଷ୍ଠାନରେ ମଧ୍ୟ ଗରିବ ପ୍ରଜା ପଢ଼ିବା ପାଇଁ କୌଣସି ସୁବିଧା ନ ଥିଲା । (ପିଲାଙ୍କୁ ମୂର୍ଖ କରାଇଲେ, ଆମ୍ଭଙ୍କୁ ଦୁଃଖେ ଭରାଇଲେ) ୧୩୨୬ ସାଲରେ ହୋଇଥିବା ବନ୍ୟାରେ କନିକା ଲୋକେ ଯେତେବେଳେ ଚରମ ଦୁଃଖଦୁର୍ଦ୍ଦଶାରେ ସଢୁଥିଲେ, ସେତେବେଳେ ସରକାରଙ୍କୁ ଠକେଇବାକୁ ରଜା ଅନ୍ନଛତ୍ର ଖୋଲି କିଛି ଚୁଡ଼ା ଚାଉଳ ବାଣ୍ଟିଲେ ସତ୍ୟ, କିନ୍ତୁ ସରକାରୀ ଲୋକ ଚାଲିଯିବା ପରେ ପରେ ଅନ୍ନଛତ୍ର ବନ୍ଦ କରିଦେଲେ । (ହାକିମ ଦେଖି ଏ ଘଟଣା, ବୋଇଲେ ଧନ୍ୟ ଧନ୍ୟ ସିନା । ଦିନକେ ରହି ମାଜେଷ୍ଟର, ଏଠାରୁ ହେଲେ ସ୍ଥାନାନ୍ତର । ତାଙ୍କର ପଛେ ପଛେ ପରା, ବାଜିଲା ନିଷେଧ ନାଗରା ।) ଡକ୍ଟର ମହତାବ ଲେଖିଛନ୍ତି, ''୧୯୨୦ ସାଲ ଦୁର୍ଭିକ୍ଷରେ ଯେତେବେଳେ ବାଲେଶ୍ୱର ଜିଲା ହାକିମ କନିକା ଇଲାକାରେ ଦୁର୍ଭିକ୍ଷ ସାହାଯ୍ୟ ବ୍ୟବସ୍ଥା କଲେ, ସେତେବେଳେ କମିଶନରଙ୍କଠାରୁ ସେ ବାଧାପାଇଲେ ଓ ରାଜା ନିଜେ ଦୁର୍ଭିକ୍ଷ ସାହାଯ୍ୟର ବନ୍ଦୋବସ୍ତ କରିବେ ବୋଲି ନିର୍ଦ୍ଦେଶ ହେଲା । ଇଲାକାରେ ଯାହା ପାଖରେ

ଯାହା ଥିଲା ତାହା ପ୍ରଜାମାନଙ୍କଠାରୁ କିଣିନିଆହେଲା । ପୁଣି ଧାନ ଦର ଯେତେବେଳେ ବଢ଼ିଲା ସେତେବେଳେ ସେହି ଧାନ ସେମାନଙ୍କୁ ବିକ୍ରିକରି ଉଦ୍‌ବୃତ୍ତ ମୂଲ୍ୟବାବଦକୁ ଟଙ୍କା ନେଇନିଆହେଲା । ଦୁର୍ଭିକ୍ଷ ସାହାଯ୍ୟ ବ୍ୟବସ୍ଥା ଭିତରେ ଏଠା ଅବସ୍ଥା ଏହି ଆକାର ଧାରଣ କରିଥିଲା । ଆନନ୍ଦ ଚନ୍ଦ୍ରଙ୍କର ଭାଷାରେ— ଯେତିକି ଦେଇ କିଣିଥିଲେ, ସେ ତିନି ସେତିକି ପାଇଲେ ।

ରାଜକନିକାର ଚନ୍ଦନପୋଖରୀକୁ ବେଠିରେ ଖୋଳିଲାବେଳେ ପ୍ରଜାଏ ବହୁ କଷ୍ଟ ସହିଥିଲେ । ('ସହିଲେ ଆମ୍ଭେ ଯେ ଗଞ୍ଜଣା, କାହାକୁ ନ ଥିବ ଅଜଣା') । ରାଜାଙ୍କ ଛଡ଼ା ଅନ୍ୟ କେହି ମହାଜନୀ କରିପାରୁ ନ ଥିଲେ ଏବଂ ସେଥିପାଇଁ ଶତକଡ଼ା ସାଢ଼େବାର ସୁଧ ନିଆଯାଉଥିଲା । ଯଥାସମୟରେ ଋଣ ପରିଶୋଧ ନକଲେ ଜମିବାଡ଼ି ହରେଇବାକୁ ପଡୁଥିଲା । (ଶେଷରେ ଜମି ଘରବାରି, ହରାଉଛନ୍ତି ହୋଇ ଜାରି) ବନ୍ୟା ମରୁଡ଼ିରେ ଫସଲ ନଷ୍ଟ ଗଲେ ସୁଦ୍ଧା ଜୋର୍‌ଜୁଲମରେ ତାହା ଆଦାୟ ହେଉଥିଲା । (ଖଜଣା ଛାଡ଼ ପାଆନ୍ତି କି ? ବିଳମ୍ବେ ବିଧା ନ ଖାଆନ୍ତି କି ?) ଘରୋଇ ବା ବ୍ୟକ୍ତିଗତ ଦେବତା ପ୍ରତିଷ୍ଠା କଲେ ରାଜା ତାହା ବଳପୂର୍ବକ ଦଖଲ କରି ଜମିସବୁ ଛଡ଼ାଇନେଉଥିଲେ । (ତୁଟାଇ ଆତ୍ମ ଅଧିକାର, ଇଷ୍ଟେଟ କରନ୍ତି ତାଙ୍କର) ମହାବିଦ୍ରୋହ ୧୮୫୭ ପୂର୍ବରୁ ଯେମିତି ଲର୍ଡ଼ ଡେଲହାଉସି ଆଇନ କରିଥିଲେ ଯେ ଯେଉଁ ଦେଶୀୟ ରାଜାମାନେ ଅପୁତ୍ରକ ହୋଇ ମୃତ୍ୟୁବରଣ କରିବେ ସେ ରାଜ୍ୟଗୁଡ଼ିକୁ ବ୍ରିଟିଶ୍ ଶାସନାଧୀନକୁ ଚାଲିଯିବ, କନିକାରେ ଅପୁତ୍ରକ ବିଧବାମାନେ ସେହି ଦଶା ଭୋଗ କରୁଥିଲେ । (ବିଧବାମାନଙ୍କ କଷଣ, ଅଟଇ କଦର୍ଯ୍ୟ ଭୂଷଣ । ତାଙ୍କର ଜମି ଥାଉଁ ଥାଉଁ, ନ ପାଆନ୍ତି ଖାଇବାକୁ ଆଉ ।)

ଏତଦ୍‌ବ୍ୟତୀତ ପ୍ରଜାମାନଙ୍କୁ ବହୁ ଅନ୍ୟାୟ ପାଉଣା ଦେବାକୁ ହେଉଥିଲା(୧) "ରାଜ ସରକାର ନିଜେ ବନ୍ଦୋବସ୍ତ କରି ମନଇଚ୍ଛା ଖଜଣା ବଢ଼ାଇଦେଇଥିଲେ ଓ ପ୍ରଜାଙ୍କର ଜମିଉପରେ ସତ୍ୱା-ସ୍ୱତ୍ୱ ନିର୍ଣ୍ଣାୟକ କାଗଜପତ୍ର ମଧ କିଛି ନ ଥିଲା । ୧୯୨୨ ସାଲରେ ପୁଣି ବନ୍ଦୋବସ୍ତ କରି ଖଜଣା ବଢ଼ାଇବା ପାଇଁ ରାଜସରକାର ପ୍ରସ୍ତାବ କଲେ ।" କନିକାର ତତ୍‌କାଳୀନ ମ୍ୟାନେଜର ଇନ୍ଦ୍ରମଣି ମହାନ୍ତିଙ୍କଦ୍ୱାରା ହୋଇଥିବା ଏହି ବେସରକାରୀ ବନ୍ଦୋବସ୍ତହିଁ ସେତେବେଳେ ଅଶାନ୍ତିର ମୂଳ କାରଣ ହୋଇଥିଲା । ଏହି ବନ୍ଦୋବସ୍ତର ନିର୍ଦ୍ଧାରଣ ଅନୁସାରେ ଜମିର ଖଜଣା ଅତ୍ୟଧିକ ହାରରେ ବଢ଼ିଥିଲା ଯାହାକୁ ଦେବା ଦରିଦ୍ର ପ୍ରଜାମାନଙ୍କ ପକ୍ଷରେ ଅସମ୍ଭବ ଥିଲା । (ବନ୍ଦୋବସ୍ତ ପରେ ଆସେ ବନ୍ଦୋବସ୍ତ, ପ୍ରଜାକୁଳ କ୍ରମେ ଲଭିଲେଣି ଅସ୍ତ । ଖାଇବା ବାସନ ହେଉଛି ନିଲାମ, ତେବେହେଁ କରର ନାହିଁ ତ ବିରାମ ।– ବନ୍ଦୀର ଆତ୍ମକଥା), (ହୁଅଇ. ବନ୍ଦୋବସ୍ତ କାହିଁ, କେବଳ ଜମା ବୃଦ୍ଧି ପାଇଁ । ପ୍ରଜାସ୍ୱତ୍ୱ ନାଶନେ କାହିଁ, ହୁଅଇ ବନ୍ଦୋବସ୍ତ ଭାଇ । ବାସନ ଆଦି ନ ତାକାନ୍ତି, ଗାଈ ବା ବଳଦ ବିକନ୍ତି ।)

ଏସବୁ ଅନ୍ୟାୟ ପାଉଣା ଛଡ଼ା ପ୍ରଜାମାନଙ୍କ ଉପରେ ଯେଉଁ ଅକଥନୀୟ ଅତ୍ୟାଚାର ହେଉଥିଲା ତାହା ସେତେବେଳେ ଭାରତବର୍ଷରେ କେତୋଟି ଗଡ଼ଜାତକୁ ଛାଡ଼ିଦେଲେ ଆଉ କେଉଁଠି ନ ଥିଲା । ପ୍ରଜାମାନଙ୍କର ନିଜ ବଗିଚାର ଗଛ ଉପରେ ମଧ୍ୟ ଅଧିକାର ନ ଥିଲା । କୋଠାଘର ତିଆରି କରିବା ତ ଦୂରର କଥା, ମାଟିକାନ୍ଥରେ ଚୂନ ବୋଳିବାକୁ ମଧ୍ୟ ଲୋକେ ଭୟକରୁଥିଲେ । ଏପରିକି କେତେକ ନିର୍ଦ୍ଦିଷ୍ଟ ଡିଜାଇନର ଚିତା (ଆଲପନା) ଲେଖିବା, ଗହଣା ପିନ୍ଧିବା ମଧ୍ୟ ପ୍ରଜାମାନଙ୍କ ପାଇଁ ନିଷିଦ୍ଧ ଥିଲା । କାରଣ ସେଗୁଡ଼ିକ କେବଳ ରାଜପରିବାର ବା ତାଙ୍କର ସାମନ୍ତମାନେ ପିନ୍ଧୁଥିଲେ । ନାରୀ ଜାତିର ମାନସମ୍ମାନ ସବୁଠାରୁ ବେଶି ବିପନ୍ନ ହେଉଥିଲା । (ସ୍ତିରୀଏ ଲାଞ୍ଛନା ପାଆନ୍ତି, ଆମ୍ଭେ ତ ତାହା ଦେଖୁଥା'ନ୍ତି ।) ସୁନିଆଁରେ ଭେଟି ଦେବା ସେତେବେଳେ ଅନ୍ୟ ସବୁ ଗଡ଼ଜାତ ବା ଜମିଦାରୀ ଭଳି କନିକାରେ ମଧ୍ୟ ବ୍ୟାପକଭାବେ ହେଉଥିଲା । ଗୋପବନ୍ଧୁ କନିକା ଅତ୍ୟାଚରରେ ବିଚଳିତ ହୋଇ 'ବନ୍ଦୀର ଆତ୍ମକଥା'ରେ ଯଥାର୍ଥରେ ଲେଖିଥିଲେ –

"ଏହି ଯେ କନିକା ଆସିଛି ମୁଁ ଉଡ଼ି,
କି ଦାରୁଣ ଦୃଶ୍ୟ ଯାଏ ଚେତା ବୁଡ଼ି,
ଯମ ଦୂତ ପ୍ରାୟ କ୍ରୂର ରାଜଥାଟ,
ବୁଲନ୍ତି ଚୌଦିଗେ ଗ୍ରାମ ହାଟବାଟ ।
ଲୁଟନ୍ତି ପରଜା ଘର ବାଡ଼ି କ୍ଷେତ,
କାହାକୁ ଚାପଡ଼ା କାହାକୁ ବା ବେତ ।
X X X
ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ,
ଉଠଇ ଗୋଗୋଷ୍ଠେ ବିକଟାଳ ରାବ ।"
X X X
'ଦୁଃଖିନୀ କନିକାରେ ଅଛି'

– କେ ଗଧ ଟୋପି ମୁଣ୍ଡାଇଲା, କେ କାନମୋଡ଼ିଆ ଖାଇଲା ।
ରୌଦ୍ରେ କେ ବସିଲା ଉଠିଲା, ପଥରେ ନାକକେ ଘଷିଲା ।
ବିବିଧ ମାଡ଼ କେ ସହିଲା, କେ ଗଳେ ନାଗରା ବହିଲା ।
କେ କାଦୁଅରେ ପୋତା ଗଲା, କେ ସାତବେଣ୍ଟିଆ ହୋଇଲା ।
ଗୋଇଠା ଖାଇ କେ ରହିଲା, କେ ବେତ ପ୍ରହାର ସହିଲା ।
ପାଦରେ କେ ଦଳିହୋଇଲା, କେ ସ୍ଥାନ ଛାଡ଼ି ପଳାଇଲା ।
ନିର୍ବିବାସ ବାପ ପୁଅର, ବନ୍ଧନ ହେଲା କେତେ ଥର ।

'ଦୁଃଖିନୀ କନିକା' ଭଳି ବିଦ୍ରୋହାତ୍ମକ ପୁସ୍ତିକା ଲେଖିବାରୁ ତା'ର ଭୟାବହ ପରିଣତି

ସଂପର୍କରେ ଆନନ୍ଦ ଚନ୍ଦ୍ର ସଂପୂର୍ଣ୍ଣ ସଚେତ ଥିଲେ । କିନ୍ତୁ ନିର୍ଭୀକ ବିପ୍ଳବୀ ଲେଖିଥିଲେ—

"ହାକିମ ଚିଡ଼ିଲେ ଚିଡ଼ନ୍ତୁ, କିଲ୍ଲାର ଭିତରୁ ତଡ଼ନ୍ତୁ ।
ତନୁରୁ ମାଉଁସ ଝାଡ଼ନ୍ତୁ, ନତୁବା ମସ୍ତକ ମୋଡ଼ନ୍ତୁ ।"

ସତକୁ ସତ 'ଦୁଃଖିନୀ କନିକା'କୁ ଇଂରେଜ ସରକାର ବେଆଇନ ଘୋଷଣାକରି ବାଜ୍ୟାପ୍ତକଲେ ଏବଂ ଡକ୍ଟର ମହତାବଙ୍କ ଭାଷାରେ, "ସେ ନିଜେ କିଲ୍ଲାରୁ ବିତାଡ଼ିତ ହୋଇ ଦାଣ୍ଡର ଭିକାରି ହୋଇଥିଲେ ।"

କନିକା ମେଳି ସଂପର୍କରେ ଥିବା ସରକାରୀ ବିବରଣୀ ସ୍ୱଭାବତଃ ପକ୍ଷପାତମୂଳକ । ସେ ଦୃଷ୍ଟିରୁ ଡକ୍ଟର ମହତାବଙ୍କ ବିବରଣୀ ବରଂ ଅଧିକ ନିରପେକ୍ଷ । ଏତଦ୍‌ବ୍ୟତୀତ କେତେକ ପ୍ରତ୍ୟକ୍ଷଦର୍ଶୀ ବିବରଣୀ— ତାହା ପୁଣି ତତ୍‌କାଳୀନ ଜନୈକ ବିଶିଷ୍ଟ ରାଜ-କର୍ମଚାରୀଙ୍କର ଡାଏରୀରୁ ସଂଗୃହୀତ — ଅଧିକ ବିଶ୍ୱାସଯୋଗ୍ୟ ମନେହୁଏ । ସେ ସବୁ ବିବରଣୀ ଆଲୋଚନା ପୂର୍ବରୁ ଡକ୍ଟର ମହତାବଙ୍କ ବର୍ଣ୍ଣନା ଦେଖାଯାଉ ।

"୧୯୨୨ ସାଲରେ ପୁଣି ବନ୍ଦୋବସ୍ତ କରି ଖଜଣା ବଢ଼ାଇବାକୁ ରାଜସରକାର ପ୍ରସ୍ତାବ ଦେଲେ । କେତେକ କ୍ଷେତ୍ରରେ ଖଜଣାହାର ବଢ଼ାଇଦେଲେ ମଧ୍ୟ । ଅନ୍ୟ ସମୟ ହୋଇଥିଲେ ହୁଏତ ପ୍ରଜାଏ ମାଡ଼ିଯାକି ହୋଇ ମାନିଯାଇଥା'ନ୍ତେ । କିନ୍ତୁ ଅହସଯୋଗ ଆନ୍ଦୋଳନ ଯେଉଁ ସାଧାରଣ ଉତ୍ସାହ ଜାତକରାଇଥିଲା, ସେଥିରେ କନିକାର ପ୍ରଜାମାନେ ରାଜାମାନଙ୍କର ଖଜଣା ବୃଦ୍ଧି ଓ ବନ୍ଦୋବସ୍ତରେ ରାଜି ହେଲେ ନାହିଁ । ବର୍ଦ୍ଧିତ ହାରରେ ଖଜଣା ନ ଦେଲେ ଖଜଣା ନିଆହେବ ନାହିଁ ବୋଲି ଆଦେଶ ହେଲା । କେତେକ ପ୍ରଜା ଆଇନ ଅନୁସାରେ ଖଜଣା କେନ୍ଦ୍ରାପଡ଼ା ସରକାରୀ ଟ୍ରେଜରୀରରେ ଦାଖଲକଲେ । ସେମାନେ ଦାବିକଲେ ସରକାରୀ ବନ୍ଦୋବସ୍ତ ।"

ମାତ୍ର ସେ ସମୟରେ ବିହାର-ଓଡ଼ିଶା ଗଭର୍ଣ୍ଣର ସାର୍ ହେନ୍ରି ହୁଇଲର ବିଶ୍ୱାସ କଲେ ଯେ କନିକା ଲୋକେ କଂଗ୍ରେସ ଆନ୍ଦୋଳନରେ ମାତିଛନ୍ତି । ଏଣୁ ସରକାର ସେମାନଙ୍କୁ କୌଣସି ଉପାୟରେ ଦବେଇବାକୁ ବଦ୍ଧପରିକର ହେଲେ । ଅବସ୍ଥା ଏପରି ହେଲା ଯେ କନିକା ରାଜା ଇଂରେଜ ସରକାରଙ୍କର ପ୍ରତିଶବ୍ଦ ହିସାବରେ ସ୍ଥାନୀୟ ହାକିମମାନଙ୍କଦ୍ୱାରା ବିବେଚିତ ହେଲେ । ପ୍ରଜାଆନ୍ଦୋଳନକୁ ଦବେଇବା ପାଇଁ କଟକରୁ ସଶସ୍ତ୍ର ପୁଲିସ ଫୌଜ କଟକ ଜିଲା ଅର୍ନ୍ତଗତ ଛମୁକା ଇଲାକାରେ (ରାଜକନିକା) ଅକଥନୀୟ ଅତ୍ୟାଚାର କଲେ । ବହୁସଂଖ୍ୟାରେ ଘର ଲୁଣ୍ଠିତହେଲା । ନାରୀ ପ୍ରତି ପାଶବିକ ଅତ୍ୟାଚାର ହେଲା । ଶତାଧିକ ଲୋକ ବନ୍ଦୀ ହେଲେ । ଗୁଳି ଚାଳି ଦୁଇ ଜଣ ଲୋକ (ବିସୁନ ମଢୁଆଳ ଓ ବାସୁ ସେଠି) ମଧ୍ୟ ନିହତ ହେଲେ । (ପତରପୁରର ଶର ସନ୍ନିଧାନେ, ମଲେ ପ୍ରଜା ଯହିଁ ବେନି ଅଗ୍ନିବାଣେ । କନିକାର ରାଜଧାନୀ ଚଉପାଶେ, ପ୍ରେତଆତ୍ମା ବେନି ଉଡ଼ଇ ଆକାଶେ । ବିନ୍ଦୁ ବିନ୍ଦୁ ରକ୍ତ ପଡ଼ି ତହୁଁ ତଳେ, ସେ ରକ୍ତେ ଭୀଷଣ ଅଗ୍ନିଶିଖା ଜଳେ । ସିଞ୍ଚି ସିଞ୍ଚି ଶୁଖେ ଗଙ୍ଗାନଦୀ ଜଳ, ନ ଲିଭି

ପ୍ରବଳ ଜଳେ ସେ ଅନଳ – ବନ୍ଦୀର ଆତ୍ମକଥା) କନିକା ରାଜବାଟୀର କଚେରିଠାରୁ ବହୁତ ଦୂରରେ ଜଣେ ମାଜିଷ୍ଟ୍ରେଟ୍ ରହି ଅଭିଯୁକ୍ତ ପ୍ରଜାମାନଙ୍କ ବିଚାରକଲେ । ସେମାନଙ୍କର ଆତ୍ମପକ୍ଷ ସମର୍ଥନ କରିବାର କୌଣସି ଉପାୟ ନ ଥିଲା । ସମସ୍ତେ ବିଭିନ୍ନ କାଳପାଇଁ ଦଣ୍ଡିତହେଲେ । ଦଣ୍ଡିତ ବ୍ୟକ୍ତିମାନଙ୍କୁ ହାତକଡ଼ିଦେଇ, ଦଉଡ଼ିରେ ବାନ୍ଧି ରାଜକନିକାରୁ ଚାନ୍ଦବାଲିବାଟେ କନିକାର ପାଞ୍ଚମୁଠା ଅଂଶ ଭିତରେ ବୁଲାଇ ଭଦ୍ରଖ ରେଳଷ୍ଟେସନ୍‌ବାଟେ କଟକକୁ ଆଣାଗଲା । ସାଧାରଣ ଗତିରେ ଏମାନେ ରାଜକନିକାରୁ କେନ୍ଦ୍ରାପଡ଼ା ଆସି କଟକ ଆସିଥା'ନ୍ତେ । ଭଦ୍ରଖରେ ସେହିପରି ଜଣେ ୮୦ ବର୍ଷର ବୁଢ଼ାକୁ ସେଠା ସବ୍‌ଡିଭିଜନାଲ ଅଫିସର ୩୦ ବେତ ସଜାଦେଇଥିଲେ ଏବଂ ତାକୁ ଭଦ୍ରଖ ଜେଲଠାରୁ ୩୨ ମାଇଲ ଦୂର ପାଞ୍ଚମୁଠା ଇଲାକାରେ ବେତମାଡ଼ ଦିଆଯାଇଥିଲା । କନିକା ପ୍ରଜାଆନ୍ଦୋଳନ ସଂବନ୍ଧରେ ସଭା-ସମିତି କେଉଁଠି ହୋଇପାରିବ ନାହିଁ ବୋଲି କଟକ, ବାଲେଶ୍ୱର ସର୍ବତ୍ର ନିଷେଧାଜ୍ଞା ଜାରିହେଲା । ସେ ସମୟରେ ମନେହେଲା ଯେପରି କନିକା ରାଜାହିଁ ଓଡ଼ିଶାର ଇଂରେଜ ସରକାର । ସେତେବେଳେ ନେତୃସ୍ଥାନୀୟ ଲୋକେ ରାଜଦ୍ରୋହ ଅଭିଯୋଗରେ ଅଭିଯୁକ୍ତ ହୋଇ ସେମାନଙ୍କ ବିରୋଧରେ ଏହା ପ୍ରମାଣ ଦିଆଯାଉଥିଲା ଯେ ସେମାନେ କନିକା ପ୍ରଜାଆନ୍ଦୋଳନକୁ ସମର୍ଥନ କରନ୍ତି ଏବଂ ତାହା ବିଚାରପତିଙ୍କଦ୍ୱାରା ଗୃହୀତ ହେଉଥିଲା । ପଣ୍ଡିତ ଗୋପବନ୍ଧୁ ଓ ଡାକ୍ତର ଏକରାମ ରସୁଲ ସେହି ସମୟରେ କାରାଦଣ୍ଡ ପ୍ରାପ୍ତ ହୋଇଥିଲେ । (ଏଠା ବାହାଦୁର ପ୍ରବଳ ପ୍ରଚଣ୍ଡ, ତାଙ୍କ ଦୟାରେ ମୋ' ଆଦ୍ୟ କାରାଦଣ୍ଡ । – ବନ୍ଦୀର ଆତ୍ମକଥା) କନିକା ପ୍ରଜାଙ୍କ ଦୁଃଖ ବର୍ଣ୍ଣନାକରି ଲେଖାହୋଇଥିବା 'ଦୁଃଖିନୀ କନିକା' ନାମକ ପୁସ୍ତିକା ସରକାର ବାଜ୍ୟାପ୍ତ କରିଦେଲେ । କେତେକ କନିକା ପ୍ରଜାଙ୍କ ବିରୋଧରେ ଗୋଟିଏ ମୋକଦ୍ଦମା ଭଦ୍ରଖ କଚେରିରେ ହେଲା । ଏହି ପ୍ରଜା ଆନ୍ଦୋଳନରେ କନିକାର ଛମୁଠା ଇଲାକାର ଦୀନବନ୍ଧୁ ଖଣ୍ଡାଇତ ରାୟ, ପୂର୍ଣ୍ଣାନନ୍ଦ ରାଉତରାୟ, ଅଶ୍ୱିନୀ କୁମାର ପଲେଇ, ଆନନ୍ଦ ଚନ୍ଦ୍ର ଜେନା ପ୍ରମୁଖ ବଡ଼ ବଡ଼ ଚାଷୀମାନେ ରାଜ୍ୟରୁ ବିତାଡ଼ିତ ହୋଇ ପଥର ଭିକାରି ହେଲେ । ଇଂରେଜ ରାଜତ୍ୱରେ ଗୋଟିଏ ସାଧାରଣ ଜମିଦାରୀରେ ପ୍ରଭୂତ ଅର୍ଥବ୍ୟୟକରି ମଧ୍ୟ ଏମାନେ ଜମିଦାରଙ୍କ ଆକ୍ରୋଶରେ ନିଜ ଘରଦ୍ୱାର, ଜମିଜମା ସମ୍ଭାଳି ରଖିପାରିଲେନାହିଁ । ଏମାନେ ଦାଣ୍ଡର ଭିକାରି ହୋଇ ଅନ୍ୟ ଇଲାକାରେ ବହୁକଷ୍ଟରେ ଦିନ କାଟିଲେ ।"

କନିକା ବିଦ୍ରୋହର ଟିକିନିଖି ବିବରଣୀ ସଂଗ୍ରହ କଲାବେଳେ ତତ୍‌କାଳୀନ ଜନୈକ ସମ୍ମାନାସ୍ପଦ ରାଜକର୍ମଚାରୀଙ୍କର ଏକ ମୂଲ୍ୟବାନ୍ ଡାଏରୀର ସଂଧାନ ମିଳିଛି । ସେହି ସ୍ୱନାମଧନ୍ୟ ରାଜକର୍ମଚାରୀ ହେଉଛନ୍ତି କନିକାର ମେଘପୁର ଗ୍ରାମ ଅଧିବାସୀ ସ୍ୱର୍ଗତ ଲମ୍ବୋଦର ମହାପାତ୍ର । ଶ୍ରୀ ମହାପାତ୍ରଙ୍କର ପୂର୍ବପୁରୁଷ କନିକା ରାଜାଙ୍କର ପାଇକ ଥିଲେ । ଶ୍ରୀ ମହାପାତ୍ରଙ୍କ ପ୍ରପିତାମହ ଶ୍ରୀ ଗଙ୍ଗାଧର ବଳିଆର ସିଂହ କନିକା ରାଜା

ଶ୍ରୀ ପଦ୍ମନାଭ ଭଞ୍ଜଙ୍କର ପାଇକ ଥିଲେ । ତାଙ୍କର ପିତାମହ କାଳୀଚରଣ ସ୍ୱାଇଁ ମଧ ଖୁବ୍ ଶକ୍ତିଶାଳୀ ପାଇକ ଥିଲେ । ଶୁଣାଯାଏ ସେ ମହାବଳ ବାଘମାନଙ୍କୁ ଠେଙ୍ଗାରେ ପିଟି ପିଟି ମାରିଦେଉଥିଲେ ।

ଶ୍ରୀଯୁକ୍ତ ମହାପାତ୍ରଙ୍କର ଉପରୋକ୍ତ ଡାଏରୀର ଯେଉଁ ଅଂଶରେ 'କନିକା ବିଦ୍ରୋହ' ସଂପର୍କରେ ଉଲ୍ଲେଖ ଅଛି ତାହାର ଅବିକଳ ନକଲ ଏଠାରେ ଉଦ୍ଧୃତ କରୁଅଛୁଁ । ''ସନ ୧୩୨୯ ସାଲ ବା ୧୯୨୨ ମସିହାରେ ନନ୍‌କୋଅପରେସନ୍‌ର ପ୍ରାଦୁର୍ଭାବ ଆମ୍ଭ ଏ ଅଞ୍ଚଳରେ ଦେଖାଗଲା । ସର୍ବପ୍ରଥମେ ମଧୁସୂଦନ ପଟ୍ଟନାୟକ ନାମକ ଜଣେ କଂଗ୍ରେସ କର୍ମୀ ଆମ୍ଭ ଅଞ୍ଚଳକୁ ଆସି ତିଳକ ସ୍ୱରାଜ୍ୟ ପାଣ୍ଠିକୁ ଚାନ୍ଦା ଓ କଂଗ୍ରେସରେ ଯେଉଁମାନେ ମେମ୍ବର ହେବେ ସେମାନଙ୍କଠାରୁ ପ୍ରତ୍ୟେକ ଚାରି ଅଣା ଲେଖାଏଁ ଚାନ୍ଦା ନେଇ ସେମାନଙ୍କୁ ଛାପାଚେକ୍ ଦେଲେ । ତା'ପରେ ବାବାଜି ରାମଦାସ ଆସି ସ୍ଥାନେ ସ୍ଥାନେ ସଭାସମିତି କଲେ । ଯଦୁମଣି ମଙ୍ଗରାଜ ଓ ଅଟଳ ବିହାରୀ ଆଚାର୍ଯ୍ୟ ଏ ଦୁଇଜଣ କର୍ମୀ ଆସି କଣ୍ଟପଡ଼ା ବଜାରରେ ବସାଘର କରି ରହିଲେ ଓ ସେଠାରେ ଡିଷ୍ଟ୍ରିକ୍ଟ ବୋର୍ଡ଼ ରାସ୍ତାରେ ଏକଗୋଟି ବଟବୃକ୍ଷରେ ଏକଗୋଟି ସ୍ୱରାଜ୍ୟ ପତାକା ଦେଇ ଜାତୀୟ ସଙ୍ଗୀତ ଗାନ କରିଥିଲେ । X X ଯଦୁମଣି ମଙ୍ଗରାଜଙ୍କ ନେତୃତ୍ୱରେ କଣ୍ଟପଡ଼ା ମୁକାମ ସଭାରେ ରାଜକର୍ମଚାରୀଙ୍କ ମଧ୍ୟରୁ ବାବୁ ଦ୍ୱାରକା ନାଥ ଦାସ ଏକାଉଣ୍ଟାଣ୍ଟ ଓ ଶ୍ରୀ ବାବୁ ଉପେନ୍ଦ୍ର ନାଥ ସୁବୁଦ୍ଧିରାୟ, ସା, – ଜୟନଗର, ପୌଦାର ଓ ବାବୁ ଜୟରାମ ରାୟ, ସା – ଆୟତନ, ରାଜକନିକା ହାଇସ୍କୁଲର ଅନ୍ୟତମ ଶିକ୍ଷକ ଏ ତିନି ଜଣ ସ୍ୱାଧୀନ ଭାବରେ ରହିବାର ସ୍ଥିରକରି ନିଜ ନିଜ କାର୍ଯ୍ୟରୁ ରିଜାଇନ ଦାଖଲକଲେ ।'' X X X ବାବୁ ଜୟରାମ ରାଏ କଂଗ୍ରେସକର୍ମୀ ମଧୁସୂଦନ ପଟ୍ଟନାୟକଙ୍କୁ ନେଇ ଆୟତନ ହାଟରେ ଗୋଟିଏ ସଭା ବସାଇଲେ । ସେଥିର ସାରମର୍ମ ଏହି ଯେ, ଆମ୍ଭେମାନେ ଚୌକିଦାରୀ ଟ୍ୟାକ୍ସ ଦେବା ନାହିଁ । ତା'ପରେ କନିକା କିଲ୍ଲା ସୁପରିନ୍‌ଟେନ୍‌ଡେଣ୍ଟ ବାବୁ ଇନ୍ଦ୍ରମଣି ମହାନ୍ତି ଆମ୍ଭମାନଙ୍କ ଉପରେ ୧୯୧୪ ମସିହାରେ ଯେଉଁ ବେଆଇନ ଜମାବୃଦ୍ଧି କରିଅଛନ୍ତି ସେ ଜମା ଚଳିତ ବର୍ଷ ଆଦାୟ ଦେବା ନାହିଁ । ଉକ୍ତ ଦିବସ ସଭାସ୍ଥଳେ ବଡ଼ତଇଲା ନିବାସୀ ଶ୍ରୀ ସଦାନନ୍ଦ ସାମନ୍ତରାୟ ମହାପାତ୍ର, ତରାସ ମୌଜା ନିବାସୀ ଶ୍ରୀ ରଘୁନାଥ ସାମନ୍ତରାୟ ଓ ବର୍ଦ୍ଧନୀ ନିବାସୀ ପୁଣ୍ୟାନନ୍ଦ ରାଉତରାୟ, ସଦାନନ୍ଦ ରସିକରାୟ ଓ ଗୋବାଙ୍ଗନିବାସୀ ଲମ୍ବୋଦର ମହାପାତ୍ର ପ୍ରଭୃତି ବିଶିଷ୍ଟ ଲୋକମାନେ ନିମନ୍ତ୍ରିତ ହୋଇଥିଲେ । ତା'ପରେ ଶୁକ୍ରବାର ଆୟତନ ହାଟ ଦିନ ଜୟରାମ ରାଏ, ତାଳିକାଏଦା ନିବାସୀ ଆନନ୍ଦ ଚନ୍ଦ୍ର ଜେନା ଓ କଂଗ୍ରେସକର୍ମୀ ମଧୁସୂଦନ ପଟ୍ଟନାୟକ– ଏହି ତିନିଜଣଙ୍କ ନେତୃତ୍ୱରେ ଗୋଟିଏ ସଭା ବସିଲା ।''

''ଖଜଣା ଓ ଚୌକିଦାରୀ ଟ୍ୟାକ୍ସ ନ ଦେବା ପାଇଁ ସେ ସଭାରେ ପୁଣିଥରେ ସ୍ଥିର ହେଲା ଏବଂ ସେହି ଅପରାଧରେ ଜମିବାଡ଼ି ନିଲାମ ହେଲେ କେହି ନିଲାମ ଧରିବେ ନାହିଁ ବୋଲି ପ୍ରଜାମାନେ ସେମାନଙ୍କର ଦୃଢ଼ସଂକଳ୍ପ ଘୋଷଣା କଲେ ।''

''ଯଦି ଏ ସଂବନ୍ଧେ ଗଭର୍ଣ୍ଣର ଟ୍ୟାକ୍ସ ଆଦାୟ ଆଇନ ଅନୁସାରେ ଆମ୍ଭମାନଙ୍କର ଘର କ୍ରୋକ୍ ନିଲାମ କରନ୍ତି, ତାହାହେଲେ ଉକ୍ତ ନିଲାମ ଜିନିଷମାନ ଆମ୍ଭେମାନେ କେଭେଁ କ୍ରୟ କରିବା ନାହିଁ କିମ୍ଵା କୁଲିକାର୍ଯ୍ୟ କରିବା ନାହିଁ । ତା'ପର ସୋମବାର ହାଟଦିନ – ଜୟରାମ ରାଏ, ଆନନ୍ଦ ଜେନା ଓ ମଧୁସୂଦନ ପଟ୍ଟନାୟକଙ୍କ ଉପରେ ୧୪୪ ଧାରା ଜାରି ହେଲା । ଏହା ପରେ ଆଉ ଆଏତନରେ ସଭା ନ ହୋଇ ମେଘପୁର ଗ୍ରାମର ଦକ୍ଷିଣପାର୍ଶ୍ଵ ପଡ଼ିଆରେ ଶ୍ରୀ ବକ୍ରମହାକାଳୀ ଠାକୁରାଣୀଙ୍କର ପୂର୍ବରେ ପ୍ରତି ଶନିବାର ଦିନ ସଭାହେଲା ।''

କ୍ରମେ ରାଜା-ପ୍ରଜା ସଂପର୍କ କିଭଳି ତିକ୍ତ ହେଲା ସେ ବିଷୟରେ ବର୍ଣ୍ଣନାକରି ଶ୍ରୀମହାପାତ୍ର ଲେଖିଛନ୍ତି – ''ଯେଉଁ ରାଜକର୍ମଚାରୀଙ୍କୁ ଦେଖିଲେ ଲୋକେ ଦୂରରୁ ଭୂମିଷ୍ଠ ପ୍ରଣାମ କରୁଥିଲେ, ସେହି କର୍ମଚାରୀ ଦୈବାତ୍ ତାଙ୍କର ଦ୍ଵାରସ୍ଥ ହେଲେ ଖଣ୍ଡିଏ ବିଛଣା ପର୍ଯ୍ୟନ୍ତ ବିବର୍ଜିତ ହେଲା । କ୍ରମେ ବିବାଦ ସୃଷ୍ଟି ହୋଇ ବଢ଼ିବାକୁ ଲାଗିଲା ।'' ଯୋରଳ ଗ୍ରାମର କେତେକ ରାଜପକ୍ଷରେ ଥିବାରୁ ସେହି ଗ୍ରାମର ଅଚ୍ୟୁତାନନ୍ଦ ନାୟକ ଓ ଶ୍ରୀକର ମହାନ୍ତି ତାଙ୍କୁ ମାଡ଼ଦେଇଥିବା କଥା ଡାଏରୀରେ ଉଲ୍ଲେଖ ଅଛି । ପ୍ରଜାମାନଙ୍କର ଏହି କ୍ରମବର୍ଦ୍ଧମାନ ଅସନ୍ତୋଷକୁ ଦବେଇବା ଉଦ୍ଦେଶ୍ୟରେ ଆୟତନ ହାଟରେ ୬ ଜଣ ରିଜର୍ଭ ପୁଲିସ ତମ୍ବୁପାତି ରହିଲେ ।

କିନ୍ତୁ ଅଶାନ୍ତି ଓ ଉତ୍ତେଜନା ନ କମି ବଢ଼ିବାକୁ ଲାଗିଲା । ଗୋଟିଏ କୋରକ ନୋଟିସ ନେଇ କେନ୍ଦ୍ରାପଡ଼ା କୋର୍ଟର ପିଅନ ଓ ଅନ୍ୟ କର୍ମଚାରୀମାନେ ପତରପୁର ଗ୍ରାମକୁ ଯିବାରୁ ପ୍ରଜାମାନେ ଅଧିକ ଉତ୍ତେଜିତ ହେଲେ ଓ ରଜାଘର ପିଅନକୁ ମାଡ଼ ଦେଲେ । ଏହି ଘଟଣା କେନ୍ଦ୍ରାପଡ଼ାରେ ପହଞ୍ଚିବାରୁ ସରକାରୀ ମହଲ ବଡ଼ ବିବ୍ରତ ହୋଇପଡ଼ିଲେ ଏବଂ ଅଧିକସଂଖ୍ୟକ ପୁଲିସ ରାଜକନିକା ପଠାଗଲେ । 'ପୁଲିସ କର୍ମଚାରୀମାନେ ପତ୍ରପୁର ମୁକାମରେ ପହଞ୍ଚିବା ସମୟେ ଉତ୍ତେଜିତ ପ୍ରଜାମାନଙ୍କର ନେତା ଆନନ୍ଦ ଚନ୍ଦ୍ର ଜେନା ଓ ଗଙ୍ଗାଧର ପ୍ରସାଦଡ଼ିଆ ନିବାସୀ ନରହରି ଦାସ ପ୍ରାୟ ୩୦୦ ଜଣ ଲୋକନେଇ ପୁଲିସକୁ ଘେରାଉକଲେ ଏବଂ ପୁଲିସ ହାତରୁ ଆସାମୀମାନଙ୍କୁ ଛଡାଇନେଲେ । ପୁଲିସ କର୍ମଚାରୀମାନେ ଭୟରେ ରାଜକନିକା ମୁକାମକୁ ପଳାଇ ଆସିଲେ । ତହିଁ ପରଦିନ ସଂଧ୍ୟା ସମୟକୁ ରାୟବାହାଦୁର ଶ୍ରୀକୃଷ୍ଣ ମହାପାତ୍ର, ପୋଲିସ ସୁପରିନ୍‌ଟେନ୍‌ଡେଣ୍ଟ, ୪୦ ଜଣ ରିଜର୍ଭ ପୋଲିସ ସାଙ୍ଗରେ ଧରି ସଦଳବଳେ ରାଜକନିକା ମୁକାମରେ ଉପସ୍ଥିତ ହେଲେ । ତହିଁ ପରଦିନ ଭୋରରୁ ସ୍ନ ୧୯୨୨ ମସିହା ଅପ୍ରେଲ ମାସ ୨୩ ତାରିଖ ଗୁରୁବାର ସୁପରିନ୍‌ଟେନ୍‌ଡେଣ୍ଟ ସାହେବ ପୁଲିସ ଫୌଜ ଓ କେତେକ ରାଜକର୍ମଚାରୀ ଓ କେତେକ ବାଡ଼ିଆଳ (ଲାଠିଆଳ) ସଙ୍ଗରେ ନେଇ ପତ୍ରପୁର ଅଭିମୁଖେ ଯାତ୍ରା ଆରମ୍ଭକଲେ । ତା'ପରେ ଉକ୍ତ ମୌଜାର ଭଗବାନ୍ ସୂତାର ଘରକୁ ଲୁଟ୍ କରାଯିବା ସମୟେ ତାହାର ଭାଇ ସୂର୍ଯ୍ୟମଣି ସୂତାର ଖଣ୍ଡିଏ

ତଲବାର ଧରି ସେମାନଙ୍କ ଗତିବିଧି ନିରୋଧ କରିବାକୁ ଉଦ୍ୟତ ହୁଅନ୍ତେ ଜଣେ ପୁଲିସ ହଠାତ୍ ସୂର୍ଯ୍ୟମଣିଠାରୁ ତଲବାର ଛଡ଼ାଇନେଇ ତାଙ୍କୁ ସେହିଠାରେ ଆରେଷ୍ଟ କଲେ । ତହୁଁ ସେମାନେ ମହାଦେଇ ଆଡ଼ିଆ ଦେଇ ଖଣ୍ଡେଇତା ମୌଜା ଜୋଡ଼ ପର୍ଯ୍ୟନ୍ତ ଯାଇଅଛନ୍ତି କି ନାହିଁ, ଏଣେ ପ୍ରଜାମାନେ ଏ ସଂବାଦ ପାଇ ସହସ୍ର ସହସ୍ର ସଂଖ୍ୟାରେ ଠେଙ୍ଗା, ବାଡ଼ି ଓ ବାଟୁଳି ନେଇ ସେମାନଙ୍କୁ ଅଟକାଇବାକୁ ଉଦ୍ୟତ ହେଲେ । ସେମାନେ ଏ ଘଟଣା ଦେଖି ପତରପୁର ମୁକାମକୁ ନ ଯାଇ ସେହିଠାରୁ ଫେରିବାରୁ ଉଦ୍ୟତହେଲେ । ତେତେବେଳେ ସେମାନଙ୍କୁ ଚତୁର୍ଦ୍ଦିଗରୁ ପ୍ରାୟ ଚାରିହଜାର ପର୍ଯ୍ୟନ୍ତ ଲୋକ ଘେରାଉ କଲେଣି । କେବଳ ଉତ୍ତରଦିଗରୁ ବେଶି ଲୋକ ନ ଥିଲେ X X X ତା' ପରେ ସେ ଗ୍ରାମ ଭିତରେ ପଶି ଯାହାକୁ ପାଇଲେ ତାକୁ ଆରେଷ୍ଟ କଲେ । ମେଘପୁରର ଫକୀର ବେହେରା, କୁଞ୍ଜ ବେହେରା, ଜଗବଂଧୁ ନାୟକ ଓ ବୀର ସାହୁଙ୍କୁ ଆରେଷ୍ଟ କଲେ । ଆରେଷ୍ଟ କରି ଅଧିକାଂଶ ଘରେ ପଶି ଲୁଟ୍‌ତରାଜ କଲେ । ତା'ପରେ ପୁଲିସ ଯୋରଳ ଆଡ଼କୁ ବାହାରିଗଲେ । ସେମାନେ ଯେତେବେଳେ ଗ୍ରାମରୁ ବାହାରି ପଡ଼ନ୍ତି, ସେତେବେଳେ ବେର୍ଦ୍ଧାପୋଖରୀ ହୁଡ଼ାରେ ପ୍ରାୟ ପାଞ୍ଚ ହଜାର ଲୋକ ଠେଙ୍ଗା ବାଡ଼ି ଧରି ଉପସ୍ଥିତ ଥାଆନ୍ତି । ସେତେବେଳକୁ ପୁଲିସ ପକ୍ଷରେ ଲୋକଙ୍କୁ ପୁଲିସ ସାହେବ ପୋଖରୀର ପଶ୍ଚିମ ତରଫ ହୁଡ଼ାରେ ଏକତ୍ରିତ ହୋଇ ରହିବାକୁ ଆଦେଶ ଦେଇଥା'ନ୍ତି । ଏ ପକ୍ଷରେ ଲୋକମାନେ ମଧ୍ୟ ପୋଖରୀ ହୁଡ଼ା ଭିତରେ ଓ ଉପରେ ଏକତ୍ରିତ ହୋଇ ଛିଡ଼ାହୋଇଥା'ନ୍ତି । ପ୍ରଜାପକ୍ଷର ଲୋକମାନଙ୍କ ପକ୍ଷରୁ ଗୋବାଙ୍ଗ ନିବାସୀ ଉଦୟ ନାଥ ଓ ବର୍ଦ୍ଧନୀ ମୌଜା ନିବାସୀ ବିସୁନ ମଲୁଆଳ ଏ ଦୁଇଜଣ ବାଡ଼ି ଖଣ୍ଡିଏ ଖଣ୍ଡିଏ ଧରି ଖେଳ ଆରମ୍ଭକରିଦେଲେ । ଉଦୟ ନାଥ ପୁଲିସ ସାହେବଙ୍କୁ ଲକ୍ଷ୍ୟକରି ଗୋଟିଏ ପଥର ଫୋପାଡ଼ିଲା । ସେ ପଥରଟି ସାହେବଙ୍କ ମୁଣ୍ଡରେ ନ ବାଜି ଟୋପିରେ ବାଜିଲା । ଟୋପିର ତଳ ଫିତା ବନ୍ଧା ହୋଇ ନ ଥିଲେ ପ୍ରାୟ ଟୋପିଟି ତଳେ ପଡ଼ିଥା'ନ୍ତା । କିନ୍ତୁ ସାହେବ ମହୋଦୟଙ୍କର ବିଶେଷ କିଛି କ୍ଷତି ହେଲାନାହିଁ । ସାହେବ ମହୋଦୟ ରାଗଜର୍ଜ୍ଜରିତ ଚିତ୍ତରେ ସୁବେଦାର ସାହେବଙ୍କୁ ହୁକୁମ ଦେଇ ଜନତା ଉପରେ ଗୁଳିବର୍ଷଣ କରିବା କାରଣ ସୁବେଦାର ସାହେବ ତତ୍‌କ୍ଷଣାତ ବିଗୁଲ ବଜାଇଲେ । ବିଗୁଲ ଶବ୍ଦ ଶୁଣିବା ମାତ୍ରେ ପୁଲିସମାନେ ତାଙ୍କର ପରେଟ (ପ୍ୟାରେଡ୍) କାର୍ଯ୍ୟ ଆରମ୍ଭ କରି ଗୁଳି ଚଳାଇଲେ ଊର୍ଦ୍ଧ୍ୱକୁ ଲକ୍ଷ୍ୟଧରି । ଠିକ୍ ସେହି ଦିବା ୧୨ ଘଣ୍ଟା ସମୟରେ ବିସୁନ ମଲୁଆଳ ପୁଲିସମାନଙ୍କ ଆଗକୁ ଯାଇ ଖୁବ୍ ଉଚ୍ଚସ୍ୱରରେ କହିଲେ– ଏଗୁଡ଼ାକ ଫିକା ଗୁଳି ମାରୁଅଛନ୍ତି । ଠିକ୍ ସେହି ମୁହୂର୍ତ୍ତରେ ଏକ ଗୋଟି ଗୁଳି ଆସି ବିସୁନ ମଲୁଆଳର ବକ୍ଷ ଭେଦକଲା । ଏ ଘଟଣାଟି ଦେଖି ଜନତା ଆତ୍ମରକ୍ଷା କରିବା କାରଣ ପଳାୟନ କରିବାକୁ ଆରମ୍ଭକଲେ । ପୃଷ୍ଠଦେଶରୁ ଜନତା ଉପରକୁ ମଧ୍ୟ ଟୋଟା ଗୁଳି ବର୍ଷଣ ହେଉଥାଏ । କେତେକ ଲୋକ ଆହତ ହେଲେ, କାହାରି ପ୍ରାଣ ପ୍ରତି ଆଘାତ ଘଟିଲା.

ନାହିଁ । ପୁଲିସ ପକ୍ଷରୁ ଲୋକ ଯୋରଳ ଗ୍ରାମ ଭିତରେ ପଶି ଉଦୟ ନାଥ ନାୟକକୁ ଆରେଷ୍ଟ କଲେ । ତା'ପରେ ଯୋରଳ ମୌଜାର ମଣି ସାହୁଙ୍କ ଘରଠାରେ ନାନା ରକମ ଅତ୍ୟାଚାର କରିଥିବାର ଶୁଣାଯାଇଥିଲା ।

ତେନ୍ତୁଳିକୋଳି ଗ୍ରାମର ବାସୁଦେବ ସେଠି ଗାଁରୁ ଆସିବାକୁ ଡେରିହେବାରୁ ସେ ଯୋରଳବାଟେ ଆସୁ ଆସୁ ପୁଲିସ ଗୁଳିରେ ପ୍ରାଣଦେଲା । ତା'ପରେ ବିସୁନ ମଦୁଆଳକୁ ଛାଡ଼ି ପୁଲିସ ଯୋରଳ ମୌଜାକୁ ଚାଲିଯିବାରୁ ତାହାର ଘଟଣା ଦେଖିବାକୁ ମେଘପୁର ନିବାସୀ ନାଥ ରାଉତ ଯିବାରୁ ମଦୁଆଳ ଜଳ ଖାଇବାକୁ ମାଗିଲା । ତାକୁ ନାଥ ରାଉତ ଗାମୁଛା ଓଦାକରି ତାହା ପାଟିରେ ଆଣି ଜଳଦେଲା । ଏ ସମୟରେ ପୁଲିସ ପକ୍ଷର ଲୋକ ଆସି ବିସୁନ ମଦୁଆଳକୁ ଘୋଷାଡ଼ି ଘୋଷାଡ଼ି ନେଇଗଲେ ଚାଲୁଣିଆ କ୍ୟାମ୍ପକୁ । X X X ତହିଁ ପରଦିନ ବର୍ତ୍ତନୀ ମୌଜାକୁ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ ସଦଳବଳେ ଯାତ୍ରାକଲେ । ଏମାନେ ବର୍ତ୍ତନୀ ମୌଜାରେ ଉପସ୍ଥିତ ହେବା ପୂର୍ବରୁ ଦୀନବନ୍ଧୁ ଖଣ୍ଡେଇତରାୟ ତାଙ୍କର ସମସ୍ତ ସ୍ତ୍ରୀ ବାଳକମାନଙ୍କୁ ସାଙ୍ଗରେ ଧରି ତାଙ୍କର ଜମିଦାରୀ ଚାନ୍ଦବାଲୀ ଥାନା ଅନ୍ତର୍ଗତ କୁଆଁରସର ମୁକାମକୁ ପଳାଇଯାଇଥିଲେ । ଘରସବୁ ଖୋଲାହେଲା । ପାଞ୍ଚଭାଇଙ୍କ ଘରୁ ପ୍ରାୟ ଦଶହଜାର ଟଙ୍କା ସଂପତ୍ତି ଲୁଟ୍‌ତରାଜ କରି ପୁଲିସ କର୍ମଚାରୀ ଓ ରାଜ ସପକ୍ଷରେ ଆସିଥିବା ଲୋକମାନେ ନେଇ ଫେରିଥିଲେ । କଲେକ୍ଟର ସାହେବ ଇଲାକାରେ ବୁଲି ପ୍ରଜାମାନଙ୍କର ଦୁଃଖ କାହାଣୀ ଦେଖିଗଲେ, ମାତ୍ର ତହିଁରେ କୌଣସି ପ୍ରକାର ପ୍ରଜାମାନଙ୍କର ସୁବିଧା କରି ନ ଥିଲେ । ତା'ପରେ ଯାହା ଯାହା ଘଟିଲା, ତାହା ଲେଖନୀର ଅତୀତ । X X X କେନ୍ଦ୍ରାପଡ଼ା ସବ୍‌ଡିଭିଜନାଲ ଅଫିସର୍ ମିଷ୍ଟର ଗ୍ରିକେନ ସାହେବ ସମସ୍ତ ମିଥ୍ୟା ଅମୂଳକ ମକଦ୍ଦମା ବିଚାରକରି ୧୨୮ ଜଣ ନିର୍ଦ୍ଦୋଷ ପ୍ରାଣୀଙ୍କର କାରାବାସ ଆଦେଶଦେଲେ । ୩ ମାସଠାରୁ ୧ ବର୍ଷ ପର୍ଯ୍ୟନ୍ତ କାରାବରଣ ସମୟ ନିର୍ଦ୍ଧାରିତ ହୋଇଥିଲା ।''

ଶ୍ରୀ ମହାପାତ୍ର ଶେଷରେ ଦୁଃଖ ପ୍ରକାଶ କରି ଲେଖିଅଛନ୍ତି ଯେ, ''ତଇଳା ଓ ତରାସ ଗ୍ରାମର ଏହି ଦୁଇଜଣ ସର୍ବପ୍ରଥମେ ଦୀନବନ୍ଧୁ ଖଣ୍ଡେଇତରାଙ୍କୁ ଉତ୍ତେଜିତ କରାଇ ତାଙ୍କୁ ପଦାକୁ ବାହାରକରାଇ ଶେଷରେ ଉପରୋକ୍ତ ଉତ୍‌ଥାପନାକାରୀ- ଦୁଇଜଣ ରାଜପକ୍ଷ ଅବଲମ୍ବନ କଲେ । ଶେଷରେ ଦୀନବନ୍ଧୁ ଖଣ୍ଡେଇତରାୟ, ସଦାନନ୍ଦ ରସିକରାୟ ଓ ପୂନାନନ୍ଦ ରାଉତରାୟ ଏହି ତିନିଭାଇ ଓ ଚାଉଳିଆ ନିବାସୀ ଅଶ୍ୱିନୀ କୁମାର ପଲାଇ, ଆୟତନ ନିବାସୀ ସଂକର୍ଷଣ ରାୟ ଓ ଜୟରାମ ରାୟ, ଡାଳିକାଏନ୍ଦା ନିବାସୀ ଆନନ୍ଦ ଚନ୍ଦ୍ର ଜେନା– ଏମାନେ ରାଜ୍ୟରୁ ବିତାଡ଼ିତହେଲେ । ସହସ୍ର ସହସ୍ର ନିରନ୍ନ ପ୍ରଜା ନାନାଦି ଲାଞ୍ଛନା ସହ୍ୟ କରି ସର୍ବସ୍ୱାନ୍ତ ହେଲେ ଓ ଦୁଇଜଣ ପ୍ରଜା ଚିରଦିନ ପାଇଁ ବନ୍ଧୁକ ଗୋଳାରେ ପ୍ରାଣଦେଲେ ।

କନିକା ଗୁଳିକାଣ୍ଡର ପ୍ରାୟ ଚାରିମାସ ପରେ ବିହାର-ଓଡ଼ିଶା ଲେଜିସ୍ଲେଟିଭ

କାଉନ୍‌ସିଲରେ ଏହାର ଏକ ବେସରକାରୀ ତଦନ୍ତ କରିବାକୁ ଏକ ପ୍ରସ୍ତାବ ଆସିଥିଲା, କିନ୍ତୁ ଇଂରେଜ ସରକାରର ପ୍ରବଳ ବିରୋଧ ଫଳରେ ଉକ୍ତ ପ୍ରସ୍ତାବ ଅଗ୍ରାହ୍ୟ ହୋଇଥିଲା । ତତ୍‌କାଳୀନ ହୋମ୍ ସେକ୍ରେଟାରୀ ମାକ୍‌ଫରସନ ପ୍ରସ୍ତାବ ବିରୁଦ୍ଧରେ ଯେଉଁ ଦୀର୍ଘ ବିବୃତ୍ତି ଦେଇଥିଲେ ତାହାର ପ୍ରତ୍ୟେକ ଶବ୍ଦରେ କନିକା ପ୍ରଜାମାନଙ୍କ ପ୍ରତି ଅସହନୀୟ ବ୍ୟଙ୍ଗ-ବିଦ୍ରୂପ, ଗୋପବନ୍ଧୁ ପ୍ରଭୃତି ବରେଣ୍ୟ ନେତାଙ୍କ ପ୍ରତି ଅଶାଳୀନ ମନ୍ତବ୍ୟ ଏବଂ କନିକା ରାଜାଙ୍କ ପ୍ରତି ଉଚ୍ଛ୍ୱସିତ ପ୍ରଶଂସା ବାଣୀ ଝରିପଡୁଥିଲା । କନିକା ପ୍ରଜାଙ୍କୁ ମୂର୍ଖ, ଦାୟିତ୍ୱଜ୍ଞାନଶୂନ୍ୟ ଓ କୁସଂସ୍କାରଗ୍ରସ୍ତ ବୋଲି ୧୮୯୪ ମସିହାର ବନ୍ଦୋବସ୍ତ ରେକର୍ଡ଼ରେ ସଖାଓତ ହୁସେନ ଯେଉଁ ଆକ୍ଷେପ କରିଥିଲେ ତାହାର ଉଦାହରଣ ଦେଇ ମାକ୍‌ଫରସନ୍ କହିଥିଲେ ଯେ କନିକା ପ୍ରଜା ସବୁଦିନ 'ମେଳିଆ' ପ୍ରକୃତିର ଏବଂ ସାମାନ୍ୟ ସାମାନ୍ୟ କଥାରେ 'ମେଳି' କରିବା ସେମାନଙ୍କର ସ୍ୱଭାବସୁଲଭ ଗୁଣ । ଏପରିକି ୧୮୬୨ରୁ ୧୯୦୨ ମସିହା ପର୍ଯ୍ୟନ୍ତ କନିକା କିଲ୍ଲା କୋର୍ଟ ଅଫ୍ ୱାର୍ଡ୍‌ସ ଅଧୀନରେ ଥିଲାବେଳେ ମଧ୍ୟ କନିକା ପ୍ରଜା ବାରମ୍ବାର ବିଦ୍ରୋହ କରିଛନ୍ତି ବୋଲି ସେ ଉଲ୍ଲେଖ କରିଥିଲେ । କନିକା ରାଜା ସ୍ୱାଧୀନତା ଆନ୍ଦୋଳନର କିଭଳି ବିରୋଧୀ ହେଲେ ତାହାର ପ୍ରମାଣ ପାଇବାକୁ ସେହି ମାକ୍‌ଫରସନ୍ ସାହେବଙ୍କ ବିବୃତିକୁ ଅନୁଧ୍ୟାନ କରାଯାଇପାରେ । ସେ କହିଲେ, "୧୯୨୧ ମସିହା ଜୁଲାଇ ମାସରେ କନିକା ରାଜା ଖୋଲାଖୋଲି ଭାବରେ ଅସହଯୋଗ ଆନ୍ଦୋଳନର ନିନ୍ଦାକରିଥିଲେ ଏବଂ କନିକା ପ୍ରଜାମାନେ ଏହାଦ୍ୱାରା ପ୍ରଭାବିତ ହୋଇନାହାନ୍ତି ବୋଲି ସେମାନଙ୍କୁ ଅଭିନନ୍ଦନ ଜଣାଇ ଥିଲେ । ଅସହଯୋଗ ଆନ୍ଦୋଳନକାରୀମାନେ ରାଜାଙ୍କର ଏହି ଉକ୍ତିକୁ ଏକ ଚାଲେଞ୍ଜଭାବେ ଗ୍ରହଣକଲେ ଏବଂ କନିକାରେ ଗୋଳମାଳ ଆରମ୍ଭ କରିବାକୁ ଉଦ୍ୟମ କଲେ ।" ଉତ୍କଳମଣି ଗୋପବନ୍ଧୁଙ୍କୁ ଜଣେ "Crank and faddist ବୋଲି ବ୍ୟଙ୍ଗ କରି ସେ ପୁଣି କହିଲେ, "The influence of Mr. Gandhi was too much for his unbalanced mind and he went over to the non-cooperation party, taking with him all the organisation which he had built up in his Satyabadi School. These apostles of non-cooperation spread all over Orissa and did incalculable mischief." (ମିଷ୍ଟର ଗାନ୍ଧିଜୀଙ୍କର ପ୍ରଭାବ ଏହି ବିଚଳିତମସ୍ତିଷ୍କ ବ୍ୟକ୍ତି ପକ୍ଷରେ ଯଥେଷ୍ଟ ଥିଲା ଏବଂ ସେ ସତ୍ୟବାଦୀ ସ୍କୁଲଠାରେ ଗଠନକରିଥିବା ସମଗ୍ର ସଂଗଠନକୁ ସଙ୍ଗରେ ଧରି ଅସହଯୋଗ ଦଳରେ ଯୋଗଦେଲେ । ଅସହଯୋଗର ଏହି ଅବତାର ଦେଶର ଅଶେଷ କ୍ଷତିସାଧନକଲେ ।) 'କନିକା ବିଦ୍ରୋହ'ର ଅନ୍ୟତମ ନେତା ରାମଦାସ ବାବାଜୀଙ୍କୁ ତୀବ୍ର ଭର୍ତ୍ସନା କରି କନିକା ରାଜାଙ୍କର ଅନ୍ୟତମ ପୃଷ୍ଠପୋଷକ ମାକ୍‌ଫରସନ୍ କାଉନ୍‌ସିଲ ଗୃହରେ ପୁଣି କହିଲେ, "He is a firebrand, a passionate speaker with a vulgar tongue and being in the garb of a sadhu- commanded great influence over the mass." କନିକା ହାଇସ୍କୁଲର (୧୯୨୨ର ରାଜକନିକା

ହାଇସ୍କୁଲ) ଛାତ୍ରମାନେ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଏବଂ କନିକା ହାଇସ୍କୁଲକୁ ଭାଙ୍ଗି ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ଉଦ୍ୟମ କରାଯାଇଥିଲା ବୋଲି ସେ ସ୍ୱୀକାର କରିଥିଲେ ।

ପୂର୍ବରୁ ବର୍ଣ୍ଣିତ ଡକ୍ଟର ମହତାବଙ୍କର ଇତିହାସ ଓ ସ୍ୱର୍ଗତ ମହାପାତ୍ରଙ୍କର ବିବରଣୀ ଅନୁସାରେ କନିକା ଆନ୍ଦୋଳନ ପଛରେ କନିକା ପ୍ରଜାମାନଙ୍କର ବହୁ ପୁଂଜୀଭୂତ ଅସନ୍ତୋଷ ରହିଥିଲା ଓ ଅସହଯୋଗ ଆନ୍ଦୋଳନର ପ୍ରଭାବରେ ତାହା ପ୍ରକାଶ ପାଇଥିଲା । ଲେଜିସ୍ଲେଟିଭ କାଉନ୍‌ସିଲରେ ଉତ୍‌ଥାପିତ ପ୍ରସ୍ତାବ ବିରୁଦ୍ଧରେ ଇଂରେଜମାନଙ୍କୁ ସହଯୋଗ ଦେଇଥିଲେ ତତ୍‌କାଳୀନ ଓଡ଼ିଶାର ବହୁ ସରକାରୀ ସମର୍ଥକ ବିଶିଷ୍ଟ ବ୍ୟକ୍ତି । ରାଜକନିକା ନିକଟସ୍ଥ କଣ୍ଟପଡ଼ା ବଜାରଠାରେ ଏକ ପୁରାତନ ବରଗଛ ତଳେ ଦୀର୍ଘଦିନ ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନକାରୀମାନେ ଅଫିସ ଖୋଲିଥିବା କଥା ସରକାରୀ ବିବରଣୀରେ ମଧ୍ୟ ସ୍ୱୀକାର କରାଯାଇଛି । ପ୍ରସ୍ତାବର ବିରୋଧକାରୀ ପ୍ରାୟ ପ୍ରତ୍ୟେକ ସଦସ୍ୟ ତତ୍‌କାଳୀନ କନିକା ରାଜାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିଥିବାର ଦେଖାଯାଏ ।

କନିକା ପ୍ରଜାବିଦ୍ରୋହ ସେ ଯୁଗରେ ଓଡ଼ିଶା ରାଜନୀତିରେ କିଭଳି ପ୍ରଭାବ ବିସ୍ତାର କରିଥିଲା ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କଂଗ୍ରେସର ପ୍ରାଦେଶିକ ସମ୍ମିଳନୀରେ ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ ରଚିତ ସେହି ପ୍ରସିଦ୍ଧ ଗୀତ ପ୍ରାରମ୍ଭିକ ସଂଗୀତ ବୋଲାଯାଇଥିଲା ।

''କେତେ ଦିନ ଆଉ ଦୁଃଖିନୀ କନିକା ଅନୀତି ଯାତନା ସହିବ,
ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ ଲିହିଥିଲା କିବା ଦଇବ ।'' (ଘୋଷା)
କର ଦେଇ ଦେଇ ସାରିଛି ସମ୍ବଳ, ମାଡ଼ ଖାଇ ଖାଇ ହରାଇଛି ବଳ,
କନିକା ରାଇଜ ଜମିଦାରୀ ଛାର, ଏତେ ଅତ୍ୟାଚାର, ଏତେ ବଳାତ୍କାର,
ହୋଇଥା'ନ୍ତା ଯଦି ପଞ୍ଜାବ ମୈଶୂର, କି ହୁଅନ୍ତା କେ ବା କହିବ ।''

କନିକା ପ୍ରଜାଙ୍କର ସେହି ଅଭୂତପୂର୍ବ ଜାଗରଣ ଓ ଆତ୍ମତ୍ୟାଗ କେତେକାଂଶରେ ବିଜୟଶ୍ରୀମଣ୍ଡିତ ହେଲା । କନିକା ରାଜାଙ୍କ ପକ୍ଷରୁ ହୋଇଥିବା ବେଆଇନ ବନ୍ଦୋବସ୍ତ ରଦ୍ଦ ହେଲା ଓ ସରକାରୀ ବନ୍ଦୋବସ୍ତ ମଞ୍ଜୁର ହେଲା । ତା'ପରେ ଦୀର୍ଘଦିନ ପର୍ଯ୍ୟନ୍ତ କନିକାରେ ବିଶେଷତଃ ଛମୁକାରେ କୌଣସି ଆନ୍ଦୋଳନ ହୋଇ ନ ଥିଲା । ଅବଶ୍ୟ ପାଞ୍ଚମୁକାରେ (କନିକା ଜମିଦାରୀର ବାଲେଶ୍ୱରଜିଲା ଅଂଶ) ବିପ୍ଳବୀ ଚକ୍ରଧର ବେହେରାଙ୍କ ନେତୃତ୍ୱରେ ଦୀର୍ଘଦିନ ଏପରିକି ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ବ୍ୟାପକ ଆନ୍ଦୋଳନ ହୋଇଥିଲା । କନିକା ଜମିଦାରୀ ଉଚ୍ଛେଦ ପାଇଁ ଛାମୁକାରେ 'ଜନମଙ୍ଗଳ ସମିତି' ନେତୃତ୍ୱରେ ମଧ୍ୟ ବିଦ୍ରୋହ ହୋଇଥିଲା । ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପୂର୍ବରୁ କନିକାର ଛାମୁକା ଅଞ୍ଚଳରେ ପୁଣି ଅକଥନୀୟ ଅତ୍ୟାଚାର ହୋଇଥିଲା । ଏଥିରେ

ଗଞ୍ଜା ଗ୍ରାମର ମଲ୍ଲା ସଂପ୍ରଦାୟର ଲୋକେ ସର୍ବାଧିକ କ୍ଷତିଗ୍ରସ୍ତ ହୋଇଥିଲେ । ଅଥଚ ଏହିମାନେହିଁ ୧୯୨୨ ମସିହା ଆନ୍ଦୋଳନ ବେଳୁ ରାଜପକ୍ଷଙ୍କୁ ସାହାଯ୍ୟ ସମର୍ଥନ କରୁଥିବାର ଜଣାଯାଏ । ସ୍ୱାଧୀନତା ଲାଭର ପ୍ରାକ୍‌କାଳରେ ସାରା ଦେଶରେ ଯେଉଁ ଉତ୍ସାହ ଉନ୍ମାଦନା ସୃଷ୍ଟିହୋଇଥିଲା ତାହାର ପ୍ରଭାବରେ ଏକଦା ରାଜସମର୍ଥକମାନେ ମଧ ପ୍ରଭାବିତ ହୋଇଥିବା ସ୍ୱାଭାବିକ । ରାଜବିରୋଧୀ ବହୁଲୋକଙ୍କ ଘର ପୋଡ଼ିଦିଆଗଲା, ବିଲରୁ ବଳପୂର୍ବକ ଧାନ କାଟିନିଆଗଲା ଏବଂ ଅତ୍ୟାଚାର ଭୟରେ କେତେକ କନିକା ଛାଡ଼ି ପଳାଇଗଲେ । ଏହି ସମୟରେ ତଇଲାର ସାମନ୍ତରାୟଙ୍କର ମଧ ବହୁ କ୍ଷତି କରାଯାଇଥିଲା । ଉପଯୁକ୍ତ ନେତୃତ୍ୱ ଓ ଆଦର୍ଶ ଅଭାବରେ ଏବଂ କେତେଜଣ ସାମନ୍ତବାଦୀ ବ୍ୟକ୍ତିଙ୍କ ଅଦୂରଦର୍ଶିତା ଓ ବିଶ୍ୱାସଘାତକତା ଫଳରେ ୧୯୨୨ ଆନ୍ଦୋଳନ ପୂର୍ଣ୍ଣ ସଫଳ ହୋଇପାରି ନ ଥିଲେ ସୁଦ୍ଧା ତାହା ଇତିହାସରେ ରଖିଦେଇଗଲା ଏକ ଅମ୍ଳାନ ସ୍ୱାକ୍ଷର ।

❐❐❐

## ଅଧ୍ୟାୟ – କୋଡ଼ିଏ

# ସ୍ୱଦେଶୀ ଡକାୟତି ଓ ଗରିଲା ଯୁଦ୍ଧ

ଢାକା ସହରର ଅନତିଦୂରରେ ଗୋଟିଏ ଗାଁ । ସମୟ ରାତି ଦୁଇଟା । ବଡ଼ ଏକତାଲା କୋଠା । ଛଣଛପର ଘରରେ ଭରା ଗାଁଭିତରେ କୋଠାଘର ଟିକେ ଖାପଛଡ଼ା ଜଣାଯାଉଛି । ସେଇଘର ବାରଣ୍ଡାରେ ୧୧-୧୨ ଜଣ ଯୁବକ ଅନ୍ଧାରରେ କାନ୍ଥକୁ ଆଉଜି ଚୁପଚାପ୍ ଛିଡ଼ାହୋଇଛନ୍ତି । ଚାରିଆଡ଼େ ନିସ୍ତବ୍ଧତାର ରାଜତ୍ୱ, ଏପରିକି କାହାରି ନିଶ୍ୱାସର ଶବ୍ଦ ମଧ୍ୟ ଶୁଭୁନାହିଁ । ଯୁବକମାନଙ୍କ ଭିତରୁ ଜଣେ ପାଚେରି ଡେଇଁ ଭିତରେ ପଶିଲେ- ଯୁବକ ନୁହଁନ୍ତି, ପ୍ରୌଢ଼ । ବାଘୁଆନିଶହଳକ ସେଂଝାପ୍‌ସା ଆଲୁଅରେ ବି ଜଳଜଳ ଦିଶୁଥାଏ । ଅଳ୍ପ କିଛି ସମୟ ପରେ ଦାଣ୍ଡ କବାଟ ଖୋଲିଲା ନିଃଶବ୍ଦରେ । ବାରଣ୍ଡାରେ ଠିଆହୋଇଥିବା ଯୁବକମାନେ ଜଣ ଜଣ କରି ଘର ଭିତରେ ପଶିଲେ । ନିଶୁଆ ପ୍ରୌଢ଼ ଜଣକ ହୁଏତ ଦଳପତି ହୋଇପାରନ୍ତି । ଟର୍ଚ୍ଚଲାଇଟ ଓ ଛୁରା ଧରିଛନ୍ତି ହାତରେ, ଆଉ ଦୁଇଜଣଙ୍କ ହାତରେ ଦୁଇଟି ରିଭଲଭର୍ । ଘରଭିତରେ ପଶି ଗହଣାଗାଣ୍ଠି ଓ ଟଙ୍କାପଇସା ଯାହା ଯେଉଁଠୁ ପାଇଲେ ସବୁ ବ୍ୟାଗ୍‌ରେ ଭର୍ତ୍ତିକଲେ ।

ମଝିଘରେ ସ୍ତ୍ରୀଲୋକଟିଏ ଶୋଇଥିଲା । ତା' ନିଦ ବୋଧହୁଏ କେତେବେଳୁ ଭାଙ୍ଗି ସାରିଥିଲା କିମ୍ବା ମୋଟେ ଶୋଇନାହିଁ । ରାତ୍ରିର ସେହି ଅପ୍ରତ୍ୟାଶିତ ଆଗନ୍ତୁକମାନଙ୍କର ଗତିବିଧି ଯେମିତି କେତେବେଳୁ ସେ ଲକ୍ଷ୍ୟକରୁଥିଲା ଝରକା ଫାଙ୍କ ଦେଇ । ସେ ଘରର କବାଟ ତାଡ଼ି ଆଗନ୍ତୁକମାନେ ଭିତରେ ପ୍ରବେଶକଲେ । କ୍ଷୀରପିଆ ପିଲାଟି ଶୋଇଛି ତା'ର ମା' ପେଟ ଭିତରେ ଯେମିତି । କିନ୍ତୁ ଆଶ୍ଚର୍ଯ୍ୟ କଥା, ସେମାନଙ୍କୁ ଦେଖି ସ୍ତ୍ରୀଲୋକଟି ଭୟ କରିବା ଦୂରେଥାଉ ଦୁଇହାତ ଯୋଡ଼ି ଦଳପତିଙ୍କୁ ନମସ୍କାର କଲା ।

ରୁକ୍ଷସ୍ୱରରେ ଦଳପତି କହିଲେ- ଗହଣାଗାଣ୍ଠି ଓହ୍ଲେଇ ଦିଅ ।

– 'କ୍ଷମା କରନ୍ତୁ, ମୁଁ ପାରିବି ନାହିଁ ।' ସ୍ତ୍ରୀଲୋକଟି ନମ୍ର ସ୍ୱରରେ କହିଲା ।

– 'ପାରିବ ନାହିଁ– ମାନେ ? ଜୀବନକୁ ଭୟ ନାହିଁ ତୁମର ?'

କିଛି କହିଲାନାହିଁ ସ୍ତ୍ରୀଲୋକଟି ।

– 'ଦେଖୁଛ - ମୁଁ ହାତରେ କ'ଣ ଧରିଛି ? ଭଲ ଗତି ଅଛି ତ ଗହଣାପତ୍ର ଓହ୍ଲେଇ ଦିଅ' ଦଳପତିଙ୍କ କଡ଼ା ନିର୍ଦ୍ଦେଶ ।

ତଥାପି ସ୍ତ୍ରୀଲୋକଟି ଅଟଳ ଅଟଳ ।

'ନେଇଯାଅ ଏ ପିଲାକୁ - ବାହାରକୁ ନେଇ ତଣ୍ଟିଚିପିଦିଅ ।'

ସତକୁ ସତ ନିଘୋଡ଼ ନିଦରେ ଶୋଇଥିବା ପିଲାଟିକୁ ଜଣେ ଟେକିନେଇ ଚାଲିଗଲା । ତଥାପି ସ୍ତ୍ରୀଲୋକଟି ଅବିଚଳିତ ଭାବରେ ଠିଆହୋଇରହିଲା ।

'ଆଶ୍ଚର୍ଯ୍ୟ ! ତୁମର ଶିଶୁସନ୍ତାନଟି ମରିବାକୁ ଯାଉଛି ଅଥଚ ତୁମେ ଦେହରୁ ଗହଣା କେଇଖଣ୍ଡର ଲୋଭ ଛାଡ଼ିପାରୁନା ?' ସର୍ଦ୍ଦାରଙ୍କ ବ୍ୟଙ୍ଗୋକ୍ତି ।

— 'ମୁଁ ଜାଣେ ଆପଣମାନେ ମୋ' ପିଲାକୁ ମାରିବେ ନାହିଁ ।' ସ୍ତ୍ରୀଲୋକଟିର ସାହସିକ ଉତ୍ତର ।

— 'କ'ଣ ଜାଣ ?'

— 'ଆପଣମାନେ ସ୍ୱଦେଶ ବିପ୍ଳବୀ । ମୋ' ମନରେ ବଡ଼ ଦୁଃଖ ଯେ ମୁଁ ଆପଣମାନଙ୍କୁ କିଛି ଦେଇପାରୁନି । କାରଣ ମୋ' ଦେହରେ ଏ ଯେଉଁ ଗହଣାଗାଣ୍ଠି ଅଛି ଏହା ମୋ'ର ଶାଶୁଘରର ଜିନିଷ । ଶାଶୁଘର ଚଟ୍ଟଗ୍ରାମ ଜିଲାର ଜୟଦେବପୁର ଗ୍ରାମରେ । ଦି' ଦିନ ହେବ ମୁଁ ମୋ'ବାପଘରକୁ ଆସିଛି । ଦି' ଖଞ୍ଜା ଛାଡ଼ି ମୋ'ବାପଘର । ଭାରି ଗରିବ ସେମାନେ । ଏତେ ଗହଣାଗାଣ୍ଠି ପିନ୍ଧି ବାପଘରେ ଶୋଇବାକୁ ମୋ' ମା' ମନାକରିବାରୁ ମୁଁ ଏଠି ୟାଙ୍କ କୋଠାଘରେ ଶୋଇଥିଲି । ଆପଣଙ୍କୁ ଯଦି ଏ ଗହଣାଗାଣ୍ଠି ଦେଇଦିଏଁ ଶାଶୁଘରେ କେହି ସେ କଥା ବିଶ୍ୱାସ କରିବେ ନାହିଁ । କହିବେ— ତୋ'ମା' ସବୁ ବିକ୍ରିକରିଦେଇଛି, ତୁ ମିଛରେ ଚୋରି ହୋଇଛି ବୋଲି କହୁଛୁ ।' ଆଉ ସମ୍ଭାଳିନପାରି ଭୋ-ଭୋ କରି କାନ୍ଦିଉଠିଲା ସ୍ତ୍ରୀଲୋକଟି ।

କଇଁକଇଁ ହୋଇ କାନ୍ଦୁ କାନ୍ଦୁ ସ୍ତ୍ରୀଲୋକଟି ପୁଣି କହିଲା— ''ଆପଣ ମୋ' ଶାଶୁଘରକୁ ଗଲେ ମୁଁ ନିଶ୍ଚୟ ସବୁ ଗହଣା କାଢ଼ି ଦେଇଦେବି ।''

ସର୍ଦ୍ଦାର ନିର୍ଦ୍ଦେଶଦେଲେ— ''ଫେରିଚାଲ ସମସ୍ତେ, ଯେତିକି ହେଲା ସେତିକି'' । ପିଲାଟିକୁ ତଳେ ଶୁଆଇଦେଇ ଦଳର ସମସ୍ତେ ଦାଣ୍ଡ ଦରଜା ବାଟେ ଚାଲିଗଲେ । ଘରର ଅନ୍ୟାନ୍ୟ ଲୋକଙ୍କୁ ଯେଉଁମାନେ ଛୁରା ବା ରିଭଲଭର୍ ଦେଖାଇ ଅଟକାଇଥିଲେ ସେମାନେ ବି ପଳେଇଲେ । ସ୍ତ୍ରୀଲୋକଟି ଅନ୍ୟ କେହି ନୁହନ୍ତି- ଜୟଦେବପୁର ଗ୍ରାମର ଫତିମା ବିବି । ତାଙ୍କର ସ୍ୱାମୀ ରମଜାନ ଚୌଧୁରୀ ଓ ଶ୍ୱଶୁର ରହେମତ ଖାଁ ସ୍ୱଦେଶୀ ଆନ୍ଦୋଳନ ବେଳେ ଜେଲଯାଇଥିଲେ । ରହେମତ ଖାଁ ବରିସାଲରେ ଅଶ୍ୱିନୀବାବୁଙ୍କ ସଭାରେ ହୋଇଥିବା ଗୋଳମାଳରେ ଲାଠି ମାଡ଼ ଖାଇଥିଲେ । ତାଙ୍କରିଠାରୁ ଶୁଣିଥିଲେ ଫତିମା ସ୍ୱଦେଶୀ ଆନ୍ଦୋଳନ କଥା ଓ ସ୍ୱଦେଶୀ ଡକାୟତଙ୍କ କାହାଣୀ ।

ସ୍ୱଦେଶୀ ଡକାୟତିର ଏହି ଦୃଶ୍ୟଟି ଅନ୍ୟ ଯେକୌଣସି ସାଧାରଣ ଡକାୟତି ଅପେକ୍ଷା କମ୍ ଉଦ୍‌ବେଗପୂର୍ଣ୍ଣ ବା ରୋମାଞ୍ଚକର ନୁହେଁ । କିନ୍ତୁ ଏ ଡକାୟତି ଘଟଣାରେ କେମିତି ଗୋଟାଏ ନୂତନତାର ଇଙ୍ଗିତ ଓ କୌତୂହଳତାର ସ୍ପର୍ଶ ରହିଛି । ଆଉ କିଛି

ହେଉ ନ ହେଉ, ଏହା ଯେ ସାଧାରଣ ଡକାୟତି ଭଳି ଲୋମହର୍ଷଣକାରୀ ନୁହେଁ, ଏହା ଆମକୁ ସ୍ୱୀକାର କରିବାକୁ ପଡ଼ିବ । ଡକାୟତ ଦଳ ଯଦି ଇଚ୍ଛାକରିଥା'ନ୍ତେ ତେବେ ସେହି ରାତିରେ ସେ ସ୍ତ୍ରୀଲୋକକୁ ହତ୍ୟାକରି କିମ୍ବା ଅନ୍ତତଃ ବାନ୍ଧିପକାଇ ବଳପୂର୍ବକ ତା' ଦେହରୁ ଗହଣା କାଢ଼ି ନେଇପାରିଥା'ନ୍ତେ । ଯଦି ଚାହିଁଥାନ୍ତେ, ତା' ପିଲାଟିକୁ ତା' ଆଗରେ ନିର୍ଯାତନା ଦେଇ ତାକୁ ଡରାଇପାରିଥା'ନ୍ତେ । କିନ୍ତୁ ତାହା ନ କରି ସେମାନେ ସେଠାରୁ ଚାଲିଗଲେ । କୌଣସି ଡକାୟତି ଘଟଣାରେ ଡକାୟତମାନଙ୍କଠାରୁ ଏଭଳି ଅସ୍ୱାଭାବିକ ବ୍ୟବହାର ଆଶାକରାଯାଏନା ।

ଏଭଳି ଡକାୟତିକୁ 'ଅଗ୍ନିଯୁଗ'ରେ 'ସ୍ୱଦେଶୀ ଡକାୟତି' ବୋଲି କୁହାଯାଉଥିଲା । ଡକାୟତିଭଳି ଏକ ଘୃଣ୍ୟ ସମାଜବିରୋଧୀ ଶବ୍ଦ ସହ ସ୍ୱଦେଶୀ ବିଶେଷଣକୁ ଯୋଡ଼ିବାର କାରଣ ହେଉଛି—ଏହି ଡକାୟତି ଲବ୍ଧ ଧନ ସ୍ୱଦେଶୀ ଆନ୍ଦୋଳନରେ ବ୍ୟୟ କରାଯାଉଥିଲା ।

ସେଦିନ ଡକାୟତ ଦଳର ଯେ ସର୍ଦ୍ଦାର ଥିଲେ ତାଙ୍କୁ ସମସ୍ତେ 'ମାଷ୍ଟରସାହେବ' (ମହାନାୟକ ମାଷ୍ଟରଦା ନୁହନ୍ତି) ବୋଲି ଜାଣିଥିଲେ । ଢାକାର ଏକ ଅନାମଧେୟ ଗଳିରେ ଏହି ମୁସଲମାନ ବିପ୍ଳବୀ ଜଣକ ନିଷ୍ଠା, ଧର୍ମପ୍ରାଣତା ଓ ଚରିତ୍ରବତ୍ତା ଯୋଗୁଁ ସମସ୍ତଙ୍କର ପ୍ରିୟ ଥିଲେ । ବାହାରୁ ସମସ୍ତେ ଜାଣନ୍ତି 'ମାଷ୍ଟର ସାହେବ' ଜଣେ ମୁସ୍ଲିମ୍ ଧର୍ମପ୍ରଚାରକ ମୌଲବୀ, ଧର୍ମପ୍ରଚାର ଯେ ସେ ନ କରନ୍ତି ତା' ନୁହେଁ, କିନ୍ତୁ ତା'ସଙ୍ଗେ ସଙ୍ଗେ ଯୁବ ବିପ୍ଳବୀଙ୍କୁ ଲାଠି, ବର୍ଚ୍ଛା ଓ ବନ୍ଧୁକ ଚାଳନା ଟ୍ରେନିଂ, କୁସ୍ତି କସରତ ଶିଖାଇବା ଏବଂ ସର୍ବୋପରି ଫେରାର ବିପ୍ଳବୀମାନଙ୍କୁ ଗୋପନ ଆଶ୍ରୟ ଦେବା କାର୍ଯ୍ୟ ମଧ୍ୟ ସେ କରୁଥିଲେ ।

ମାଷ୍ଟରସାହେବ ସାଧମତେ ସ୍ୱଦେଶୀ ଆନ୍ଦୋଳନକୁ ସାହାଯ୍ୟକରୁଥିଲେ; କାରଣ ପୁଲିସ ଓ ସରକାରୀ ଲୋକଙ୍କ ନିକଟରେ ସେ ଥିଲେ ସନ୍ଦେହାତୀତ । ଉପରୋକ୍ତ 'ଡକାୟତି' ମାଷ୍ଟରସାହେବଙ୍କର ଦେଶପ୍ରୀତିର ନମୁନା ମାତ୍ର । ଥରେ କୌଣସି ଏକ ସଶସ୍ତ୍ର ଅଭିଯାନ ସଂକ୍ରାନ୍ତରେ ପୁଲିସ ତାଙ୍କୁ ଆରେଷ୍ଟକରି ବିଚାରାଳୟରେ ଛିଡ଼ା କରିଦେଇଥିଲା । ତାଙ୍କୁ ଜଜ୍ ପ୍ରଶ୍ନ କଲେ, 'ତୁମେ ଜଣେ ଧର୍ମପ୍ରାଣ ମୁସ୍ଲିମ୍ ବୋଲି ସମସ୍ତେ ଜାଣନ୍ତି; ଅଥଚ ତୁମେ ଏଭଳି ହିଂସାକାଣ୍ଡକୁ ସମର୍ଥନ କରୁଛ କେମିତି ?' ମାଷ୍ଟରସାହେବ ଜବାବଦେଲେ- 'ବ୍ରହ୍ମ ସତ୍ୟ, ବୁଲେଟ୍ ସତ୍ୟ', ଅର୍ଥାତ୍ ମୁଁ ବ୍ରହ୍ମକୁ ଯେମିତି ଏକମାତ୍ର ସତ୍ୟବସ୍ତୁ ବୋଲି ବିଚାରକରେ, ବୁଲେଟ୍ ବା ଗୁଳିକୁ ମଧ ସାମ୍ରାଜ୍ୟବାଦୀ ଅତ୍ୟାଚାରର ଏକମାତ୍ର ମହୌଷଧି ବୋଲି ଭାବେ ।

ସ୍ୱଦେଶୀ ଆନ୍ଦୋଳନ ପାଇଁ ଗୁଳିଗୁଳା, ବଂଧୁକ, ବୋମା ଯେମିତି ଦରକାର କିଛି ପରିମାଣରେ ଅର୍ଥ ମଧ ସେହିଭଳି ପ୍ରୟୋଜନ । ଚୋରାରେ କିଣାଯାଉଥିବା ବନ୍ଧୁକ ପ୍ରଭୃତି ପାଇଁ ପ୍ରଚୁର ଅର୍ଥ ଆବଶ୍ୟକ ହେଉଥିଲା । ଆନ୍ଦୋଳନର ଶୁଭେଚ୍ଛୁ ଓ

ପୃଷ୍ଠପୋଷକମାନଙ୍କଠାରୁ ଚାନ୍ଦା ରୂପରେ ଯେତିକି ଅର୍ଥ ମିଳୁଥିଲା ତାହା ଯଥେଷ୍ଟ ହେଉ ନ ଥିଲା, ତେଣୁ ତାହା ଅନ୍ୟ ଉପାୟରେ ସଂଗ୍ରହ କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଇତିହାସକାରମାନେ ମଧ୍ୟ ସ୍ୱୀକାର କରିଛନ୍ତି, "They had to resort to political dacoity for providing necessary funds."

ଏହି ଡକାୟତି ସାଧାରଣତଃ ବିପ୍ଳବ-ବିରୋଧୀ ଇଂରେଜସମର୍ଥକ ଧନୀଲୋକଙ୍କ ଘରେ ବା ସରକାରୀ ଟ୍ରେଜେରୀ ଓ ବ୍ୟାଙ୍କ ପ୍ରଭୃତିରେ କରାଯାଉଥିଲା ଏବଂ ସ୍ୱଦେଶୀ ଡକାୟତମାନଙ୍କୁ କେତେକ କଠୋର ଅନୁଶାସନ ମାନି ଚଳିବାକୁ ପଡୁଥିଲା । ଯଥାସମ୍ଭବ କମ୍ ରକ୍ତପାତ, ସ୍ତ୍ରୀ ଓ ଶିଶୁମାନଙ୍କ ପ୍ରତି ଦୟାପୂର୍ଣ୍ଣ ମାନବିକ ବ୍ୟବହାର ପ୍ରଦର୍ଶନ ଏବଂ କୌଣସି ପରିସ୍ଥିତିରେ ସ୍ତ୍ରୀଲୋକମାନଙ୍କୁ ସ୍ପର୍ଶ ନ କରିବାକୁ ନିର୍ଦ୍ଦେଶ ଥିଲା । ଢାକା ଗ୍ରାମର ସେଦିନର ଡକାୟତିରେ ଧନୀ ସ୍ତ୍ରୀଟି ଯେ ଡକାୟତଙ୍କୁ ଭୟକରୁ ନ ଥିଲେ, ଏହାହିଁ ତାହାର ଏକମାତ୍ର କାରଣ । ତା'ର ଦୁଗ୍ଧପୋଷ୍ୟ ଶିଶୁଟିକୁ ହତ୍ୟା କରାଯିବ ନାହିଁ କିମ୍ବା କେହି ବଳପୂର୍ବକ ତା' ଦେହରୁ ଗହଣା ବାହାରକରିନେବେ ନାହିଁ; ଏହା ସେ ଭଲଭାବରେ ଜାଣିଥିଲା ।

ଦେଖିବାକୁ ଗଲେ 'ସ୍ୱଦେଶୀ ଆନ୍ଦୋଳନ' ଯୁଗରୁହିଁ ସଶସ୍ତ୍ର ବିପ୍ଳବୀମାନେ 'ସ୍ୱଦେଶୀ ଡକାୟତି'କୁ ଏକ କାର୍ଯ୍ୟକ୍ରମ ଭାବରେ ଗ୍ରହଣକରିଥିଲେ । ସେହି ଦୃଷ୍ଟିରୁ ୧୯୦୬ ମସିହାରୁ ୧୯୩୦ ମସିହାଯାଏ ବାରମ୍ବାର ଏହି ପନ୍ଥାରେ ଆନ୍ଦୋଳନ ପାଇଁ ଆବଶ୍ୟକ ଅର୍ଥ ସଂଗ୍ରହ କରାଯାଉଥିଲା । ଚିଙ୍ଗ୍ରିପୋତା, ବରାହା, ବାଜିତପୁର, ବିଘାଟି, ମିଦନାପୁର, ନାରିଆ, ନାଗଲା, ମୁରିହାଲ, ନେତ୍ରା, ନାଙ୍ଗଲା, ରାଜେନ୍ଦ୍ରପୁର, ହାଲୁବାଡ଼ି, ମହିସା, ଖୁଲନା, ମୁନସୀଗଞ୍ଜ ଓ ହାଓଡ଼ା ପ୍ରଭୃତିରେ ସରକାରୀ ଟ୍ରେଜେରୀ ଓ ବ୍ୟାଙ୍କ ପ୍ରଭୃତିରେ ଡକାୟତିହୋଇ ଲକ୍ଷାଧିକ ଟଙ୍କା ସଂଗୃହୀତହୋଇ ଜାତୀୟ ଆନ୍ଦୋଳନ ପୁଷ୍ଟ ହୋଇଥିଲା ।

**ଅପରାଜିତ ଗେଣ୍ଡାଲାଲ :**

ଗାନ୍ଧିଜୀଙ୍କ ଅହିଂସ ଆନ୍ଦୋଳନର ଡାକରାରେ ୧୯୨୦ ମସିହାରେ ଦେଶରେ ବ୍ୟାପକ ଆଲୋଡ଼ନ ସୃଷ୍ଟି ହେବା ପୂର୍ବରୁ ଓ ପରେ ଯେଉଁ କେତେକ ସ୍ଥାନରେ ସଶସ୍ତ୍ର ବିପ୍ଳବର ଝଲକ ସୃଷ୍ଟିହୋଇଥିଲା, ମୈନିପୁର ଷଡ଼ଯନ୍ତ୍ର ତାହାର ଏକ ପ୍ରମାଣ । ଏହି ଷଡ଼ଯନ୍ତ୍ରର କେନ୍ଦ୍ରବିନ୍ଦୁ ଥିଲେ ବିପ୍ଳବୀ ଗେଣ୍ଡାଲାଲ ଦୀକ୍ଷିତ । ଦୟାନନ୍ଦ ଆଙ୍ଗ୍ଲୋ-ବୈଦିକ ସ୍କୁଲରେ ସେ କିଛିଦିନ ଶିକ୍ଷକତା ମଧ୍ୟ କରିଥିଲେ । କିନ୍ତୁ ବାଲ୍ୟକାଳରୁ ଦେଶର ସ୍ୱାଧୀନତା ସଂଗ୍ରାମ ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିଲା । ଦେଶାତ୍ମବୋଧର ପ୍ରଚାର ପାଇଁ ସେ 'ଶିବାଜୀ ସମିତି' ଗଠନ କରିଥିଲେ; କିନ୍ତୁ ତାଙ୍କ ମନରେ ଟିକିଏହେଲେ ସନ୍ଦେହ ନ ଥିଲା ଯେ ଦେଶର ସ୍ୱାଧୀନତା ପ୍ରାପ୍ତି ପାଇଁ ସଶସ୍ତ୍ର ବିଦ୍ରୋହହିଁ ଏକମାତ୍ର ବାଟ । ଏକ ଶିକ୍ଷିତ ବିପ୍ଳବୀ ସଂପ୍ରଦାୟ ଗଠନକରିବା ପାଇଁ ସେ ଯତ୍‌ପରୋନାସ୍ତି

ଉଦ୍ୟମ କରିଥିଲେ; କିନ୍ତୁ ସେଥିରେ ସେ ବିଶେଷ ଫଳବତୀ ହୋଇପାରିନଥିଲେ । ଶେଷରେ ଚମ୍ବଲ ଉପତ୍ୟକାର ଡକାୟତମାନଙ୍କୁ ସ୍ୱାଧୀନତା ସଂଗ୍ରାମକୁ ଆକୃଷ୍ଟ କରିବାକୁ ଚେଷ୍ଟାକଲେ ଏବଂ ସେଥିରେ ସେ କୃତକାର୍ଯ୍ୟ ହୋଇଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ସଂବାଦରେ ଉତ୍ସାହିତହୋଇ ଇଂରେଜମାନଙ୍କର ବିପଦର ସୁଯୋଗ ନେବାକୁ ସେ ପ୍ରାଣପଣେ ଚେଷ୍ଟାକରିଥିଲେ । କିନ୍ତୁ ବାଘା-ରାସବିହାରୀଙ୍କ ବ୍ୟାପକ ବିଦ୍ରୋହ ପ୍ରଚେଷ୍ଟା ସଂପର୍କରେ ସେ ଅବହିତ ନ ଥିବାରୁ ସେମାନଙ୍କ ସହ ଯୋଗସୂତ୍ର ରକ୍ଷା କରି ପାରି ନ ଥିଲେ । ଗୋୟାଲିୟରର ଲଛମନ ନନ୍ଦ ବ୍ରହ୍ମଚାରୀ ନାମକ ବିପ୍ଲବୀଙ୍କ ସହ ତାଙ୍କର ଯୋଗସୂତ୍ର ସ୍ଥାପିତହେଲା ୧୯୧୭ ମସିହାରେ । ଦେଶପାଇଁ ଆତ୍ମଦାନ କରିବାକୁ ପ୍ରସ୍ତୁତ ଥିବା ଶହ ଶହ ଯୁବକ ବ୍ରହ୍ମଚାରୀ ଗେଣ୍ଡାଲାଲଙ୍କ ଆହ୍ୱାନରେ ବିପ୍ଲବୀ ଦଳରେ ଯୋଗଦେଲେ । ଗେଣ୍ଡାଲାଲଙ୍କ ଉଦ୍ୟମରେ ବହୁପରିମାଣରେ ଅସ୍ତ୍ରଶସ୍ତ୍ର ସଂଗୃହୀତ ହେଲା ଏବଂ ଯୁବକମାନଙ୍କୁ ବନ୍ଧୁକ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଚାଳନା ଶିକ୍ଷାଦିଆଗଲା । ସରକାରୀ ସଂସ୍ଥା ଉପରେ ସଶସ୍ତ୍ର ଅଭିଯାନପାଇଁ ଆବଶ୍ୟକ ଦୁଃସାହସୀ ଯୁବଗୋଷ୍ଠୀ । ଏହି ଯୁବଗୋଷ୍ଠୀ ତାଙ୍କୁ ମିଳିଥିଲା ଚମ୍ବଲ ଉପତ୍ୟକାରୁ । ଡକାୟତ ସର୍ଦ୍ଦାର ପଞ୍ଚମାସିଂ ଆଗେଇଆସିଲେ ତାଙ୍କର ଦଳବଳ ସହ । ଦେଶର ସ୍ୱାଧୀନତା ଅର୍ଜନ ଭଳି ପବିତ୍ର କାର୍ଯ୍ୟରେ କୁଖ୍ୟାତ ଡକାୟତମାନଙ୍କୁ କାମରେ ଲଗାଇବା ଗେଣ୍ଡାଲାଲଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଓ ଉଲ୍ଲେଖଯୋଗ୍ୟ କୃତିତ୍ୱ । ସଂଗ୍ରାମ ପାଣ୍ଠି ପାଇଁ ଅର୍ଥ ସଂଗ୍ରହ କରିବାକୁ ଅଳ୍ପଦିନ ଭିତରେ ମୈନିପୁରି, ଏତଓ୍ୱା, ଅଭର୍ଯ୍ୟ, ସାନ୍ଧଖେରା, ପାରା ପ୍ରଭୃତି ସ୍ଥାନରେ ଡକାୟତି ହୋଇ ବହୁପରିମାଣରେ ଅର୍ଥ ସଂଗୃହୀତ ହୋଇଥିଲା । ଗେଣ୍ଡାଲାଲଙ୍କ ବୈପ୍ଳବିକ କାର୍ଯ୍ୟକଳାପରେ ଆତଙ୍କିତହୋଇ ସରକାର ସେମାନଙ୍କୁ ଧରିବାକୁ ତତ୍ପର ହୋଇପଡ଼ିଲେ । ୧୯୧୮ ମସିହା ଜାନୁୟାରୀ ୩୧ ତାରିଖରେ ଦଳେ ପୁଲିସ ଗେଣ୍ଡାଲାଲଙ୍କର ଆଡ୍‌ଡ଼ାକୁ ଘେରାଉକଲେ । ନିବିଡ଼ ଅରଣ୍ୟ ମଧ୍ୟରେ ଥିବା ଏହି ଆଡ୍‌ଡ଼ା ଘେରାଉ ହେବା ସଙ୍ଗେ ସଙ୍ଗେ ଉଭୟ ପକ୍ଷରୁ ଗୁଳିଚାଳନା ହେଲା । ଏହି ଯୁଦ୍ଧରେ ଆଠଜଣ ବିପ୍ଲବୀ ମୃତ୍ୟୁବରଣକଲେ ଏବଂ ଆହତ ହେଲେ ପଚିଶ ଜଣ । ମୃତ ବିପ୍ଲବୀମାନଙ୍କ ଭିତରେ ବ୍ରହ୍ମଚାରୀ ଅନ୍ୟତମ । ଗେଣ୍ଡାଲାଲଙ୍କର ଗୋଟିଏ ଆଖି ମଧ ନଷ୍ଟହୋଇଗଲା । ସେ ଗିରଫହେଲେ । ଜେଲଖାନାରେ ଗେଣ୍ଡାଲାଲ 'ରାଜସାକ୍ଷୀ' ହେବାର ଛଳନାକଲେ; କାରଣ 'ରାଜସାକ୍ଷୀ' ମାନଙ୍କ ପ୍ରତି ଜେଲ ନିୟମ ଅପେକ୍ଷାକୃତ କୋହଳ ଥିବାରୁ ସେ ତା'ର ସୁଯୋଗ ନେବେ ବୋଲି ବିଚାରକଲେ । ସେ ରାଜସାକ୍ଷୀ ହେଲେ ଏବଂ ସେହି ସୁଯୋଗରେ ସେ ଜେଲ ଡେଇଁ ଚମ୍ପଟ କଲେ । ମୈନିପୁରି ଷଡ଼ଯନ୍ତ୍ର ବିଚାର ଚାଲୁହେଲା ଏବଂ ଗେଣ୍ଡାଲାଲଙ୍କ ଅନୁପସ୍ଥିତିରେ ତାଙ୍କ ବିରୋଧରେ ରାଜଦ୍ରୋହ ମକଦ୍ଦମା ଚାଲିଲା । କିନ୍ତୁ ଏହା ଚାଲିଥିବା ଅବସ୍ଥାରେ ଅନ୍ୟତମ ଆସାମୀ ସିଉକ୍ରିଷ୍ଣା ମଧ୍ୟ ଜେଲର ଲୁହାବାଡ଼ କାଟି ପଳେଇଗଲେ । ତଥାପି ୧୯୧୯ ଜୁଲାଇ ୧୭

ତାରିଖରେ ତାଙ୍କର ଅନୁପସ୍ଥିତିରେ ତାଙ୍କ ବିରୋଧରେ ପ୍ରାଣଦଣ୍ଡ ଆଦେଶ ହୋଇଥିଲା ।

ତଥାପି ତାଙ୍କୁ ଆରେଷ୍ଟ କରାଯାଇ ପାରିଲା ନାହିଁ । ପଳାତକ ଜୀବନରେ ଗେଣ୍ଡାଲାଲଙ୍କୁ ଅକଥନୀୟ ଦୁଃଖଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ିଲା । ଘୋର ଅସୁସ୍ଥ ଅବସ୍ଥାରେ ସେ ଶେଷରେ ଦିଲ୍ଲୀର ଏକ ମନ୍ଦିରରେ ଆଶ୍ରୟନେଲେ । ତାଙ୍କର ଅସୁସ୍ଥତା ବିଷୟରେ ସେ ଜଣେ ଅତି ବିଶ୍ୱସ୍ତ ବନ୍ଧୁଙ୍କୁ ଚିଠିଲେଖିଥିଲେ ଏବଂ ତାଙ୍କର ବନ୍ଧୁ ଗେଣ୍ଡାଲାଲଙ୍କ ସ୍ତ୍ରୀଙ୍କୁ ନେଇ ଦିଲ୍ଲୀର ସେହି ମନ୍ଦିରରେ ପହଞ୍ଚିଲେ । ଫାଶୀଦଉଡ଼ିକୁ ଗଳାରେ ଝୁଲାଇ ରୋଗଶଯ୍ୟାରେ ପଡ଼ିଥିବା ସ୍ୱାମୀଙ୍କୁ ଦେଖି ପତ୍ନୀ ଅଧୀର ହୋଇ କାନ୍ଦିବାକୁ ଲାଗିଲେ । ତାଙ୍କୁ ଆଶ୍ୱାସନା ଦେଇ ଗେଣ୍ଡାଲାଲ କହିଲେ, "ତୁମେ ଦୁଃଖ କରନାହିଁ । ତୁମଭଳି କେତେ ବିଧବା ନିରାଶ୍ରୟା ହୋଇ ଦୁନିଆରେ ଅଛନ୍ତି । ବରଂ ତୁମେ ଆନନ୍ଦିତ ହୁଅ ଯେ ତୁମର ସ୍ୱାମୀ ଦେଶ ପାଇଁ, ମାତୃଭୂମି ପାଇଁ ତା'ର ଯଥାଶକ୍ତି କାର୍ଯ୍ୟ କରିଅଛି । ତାହାହିଁ ତୁମର ଏକମାତ୍ର ଆଶ୍ୱାସନା ହେଉ । ଦେଶର କୋଟି କୋଟି ଦରିଦ୍ର ନିଃସହାୟ ବିଧବାଙ୍କର ଚକ୍ଷୁର ଲୋତକ ପୋଛିବା ପାଇଁ ମୁଁ ଆତ୍ମଦାନ କରୁଛି ।" ଶେଷକୁ ତାଙ୍କୁ ଏକ ହସ୍‌ପିଟାଲକୁ ନିଆଗଲା; କିନ୍ତୁ ତାଙ୍କୁ କେହି ଚିହ୍ନିପାରିବାପୂର୍ବରୁ ୧୯୨୦ ମସିହା ଡିସେମ୍ବର ୨୭ ତାରିଖରେ ତାଙ୍କର ଦେହାନ୍ତ ହେଲା ।

**ବିଚାରସଂକଟ ଓ ଗରିଲା ଯୁଦ୍ଧ :**

'ଅସହଯୋଗ ଓ ଖିଲାଫତ ଆନ୍ଦୋଳନ' ଯେଉଁ ଉଦ୍ଦେଶ୍ୟରେ ଆରମ୍ଭହୋଇଥିଲା ସେ ଉଦ୍ଦେଶ୍ୟ ପୂରଣ ହେବା ଦୂରେ ଥାଉ ବରଂ ସରକାରୀ ଦମନଲୀଳା ଅଧିକ ତୀବ୍ର ହେବାକୁ ଲାଗିଲା । ଗାନ୍ଧିଜୀ ଲୋକମାନଙ୍କୁ ସଂପୂର୍ଣ୍ଣ ଅହିଂସା ରକ୍ଷାକରିବାକୁ ନିର୍ଦ୍ଦେଶ ଦେଇଥିଲେ । ଲୋକେ ସେମାନଙ୍କର ସାଧ୍ୟମତେ ଅହିଂସା ଆନ୍ଦୋଳନ ଚଳାଇଲେ । ତିରିଶ ହଜାର ସତ୍ୟାଗ୍ରହୀ କାରାବରଣକଲେ । ହଜାର ହଜାର ଛାତ୍ର ସ୍କୁଲ କଲେଜ ଛାଡ଼ି ଜାତୀୟ ଶିକ୍ଷାନୁଷ୍ଠାନରେ ଯୋଗଦେଲେ । ଶହ ଶହ ବିଶିଷ୍ଟ ଭାରତୀୟ ସରକାରପ୍ରଦତ୍ତ ଉପାଧି ପ୍ରତ୍ୟାଖ୍ୟାନକଲେ, ଚାକିରି ଛାଡ଼ିଲେ । ଇଂରେଜୀ ଆଇନ ଅଦାଲତ ବର୍ଜ୍ଜନକରାଗଲା, ବିଲାତି ଜିନିଷ କୋଟି କୋଟି ଟଙ୍କାର ପୋଡ଼ାଗଲା । ଲକ୍ଷ ଲକ୍ଷ ଚରଖା ଚାଲିଲା । ଗାଁଗହଳରେ ଖଦିର ପ୍ରସାର ହେଲା । ଗାନ୍ଧିଜୀ କହିଥିଲେ, ବର୍ଷକ ଭିତରେ ସ୍ୱରାଜ୍ୟ ମିଳିବ । ଲୋକେ ପ୍ରାୟ ଦୁଇବର୍ଷକାଳ ସଂଗ୍ରାମ ଚଳାଇଲେ । କିନ୍ତୁ 'ସ୍ୱରାଜ୍ୟପଦ୍ମ' ଘୁଞ୍ଚି ଘୁଞ୍ଚି ଚାଲିଲା । ଫଳରେ ସାରା ଦେଶରେ କେବଳ ନୈରାଶ୍ୟ ବା ହତାଶା ନୁହେଁ, ସୃଷ୍ଟିହେଲା ଗୁରୁତର ବିଚାରସଂକଟ । ଗାନ୍ଧିଜୀ ସ୍ପଷ୍ଟଭାବରେ କହିଥିଲେ, "ସତ୍ୟ ଓ ଅହିଂସା ପାଖରେ ପୃଥିବୀର ଯେକୌଣସି ମୂଲ୍ୟବାନ୍ ବସ୍ତୁ ମୋ' ନିକଟରେ ମୂଲ୍ୟହୀନ, ଏପରିକି ସ୍ୱରାଜ୍ୟ ମଧ୍ୟ । ଭାରତର ସ୍ୱାଧୀନତା ଶୀଘ୍ର ମିଳିଯିବ ବୋଲି ଆଶାକରି ମୁଁ ଅହିଂସା ତ୍ୟାଗକରିନପାରେ ।"

କିନ୍ତୁ ସଶସ୍ତ୍ର ବିପ୍ଳବୀମାନେ ଗାନ୍ଧିଜୀଙ୍କ ଆହ୍ୱାନକୁ ଆଖିବୁଜି ସମର୍ଥନ କରୁ ନ ଥିଲେ, କାରଣ ସେମାନେ ବିଶ୍ୱଇତିହାସରୁ ଏହାହିଁ ଶିକ୍ଷାକରିଥିଲେ ଯେ ବିନାରକ୍ତପାତ ଓ ଆତ୍ମୋତ୍ସର୍ଗରେ କୌଣସି ଦେଶ କସ୍ମିନ୍‌କାଳେ ସ୍ୱାଧୀନତା ଲାଭ କରି ନାହିଁ । ଗାନ୍ଧିଜୀ ଯେଉଁ ଅହିଂସା କଥା କହୁଥିଲେ ତାକୁ ସାଧାରଣ ଜନତା କଦାପି ଗ୍ରହଣ କରି ନ ଥାନ୍ତେ— ତାହା ଚୌରୀଚୌରାଠାରୁ 'କନିକା ବିଦ୍ରୋହ' ପର୍ଯ୍ୟନ୍ତ ବାରମ୍ବାର ପ୍ରମାଣିତ ହୋଇଗଲା । ସଶସ୍ତ୍ର ବିପ୍ଳବୀ ଠିକ୍ ବୁଝିଥିଲେ ଯେ ଅସ୍ତ୍ର ବଳରେ ମତୁଆଲା ସରକାର କେଭେଁ ଅହିଂସାକୁ ଭୟ କରିବ ନାହିଁ । ଛୋଟକାଟର ହିଂସାକାଣ୍ଡ କାଁଭା କେଉଁଠି ହେଲେ ତାକୁ ଦବେଇଦେବାକୁ ସରକାର ହୁଏତ ସମର୍ଥ ହୋଇପାରେ; କିନ୍ତୁ ବ୍ୟାପକ ସଶସ୍ତ୍ର ବିଦ୍ରୋହକୁ କୌଣସି ସରକାର ଦମନ କରିପାରିବ ନାହିଁ । ସୁତରାଂ ଅହିଂସା ନୁହେଁ, ହିଂସାତ୍ମକ ବିପ୍ଳବହିଁ ଏକମାତ୍ର ମୁକ୍ତିପଥ ବୋଲି ସଶସ୍ତ୍ର ମୁକ୍ତି-ସଂଗ୍ରାମୀ ବୁଝିଥିଲେ । ସେମାନଙ୍କ ମଧ୍ୟରୁ ବହୁ ସଂଗ୍ରାମୀ କଂଗ୍ରେସରେ କେବଳ ଏକ କୌଶଳ ଦୃଷ୍ଟିରୁ ଯୋଗ ଦେଇଥିଲେ । ସେମାନଙ୍କ ପକ୍ଷରେ 'ଅହିଂସା' ଥିଲା ଏକ ଆବରଣ ମାତ୍ର ।

୧୯୨୨ର 'ଅସହଯୋଗ ଆନ୍ଦୋଳନ' ବ୍ୟର୍ଥହେବାପରେ ଯେଉଁ ନିସ୍ତବ୍ଧତା ସୃଷ୍ଟି ହୋଇଥିଲା, ସେ ନିସ୍ତବ୍ଧତାକୁ ଭଙ୍ଗକଲେ ପ୍ରଥମେ ସେହି ବଙ୍ଗଳାର ମହାନ୍ ବିପ୍ଳବୀ ଶ୍ରୀ ଗୋପୀନାଥ ସାହା । ତାଙ୍କର ଲକ୍ଷ୍ୟସ୍ଥଳ ହେଲା ଅତ୍ୟାଚାରୀ ପୁଲିସ କମିଶନର ଚାର୍ଲସ ଟେଗାର୍ଟ - ସଶସ୍ତ୍ର ବିପ୍ଳବର ପହିଲା ନମ୍ବର ଦୁସ୍‌ମନ୍, ସ୍ୱାଧୀନତାର ଏକ ନମ୍ବର ଶତ୍ରୁ । ଟେଗାର୍ଟର ନାମ ଶୁଣିଲେ ସେତେବେଳେ ବଙ୍ଗଳାର ଗାଁଗହଳ ଥରହର ହେଉଥିଲା । ସେହି ଟେଗାର୍ଟକୁ ସଫାକରିଦେବାକୁ ବିପ୍ଳବୀମାନେ କେବେଠୁ ସ୍ଥିରକରିଥିଲେ ଏବଂ ସେ ଦାୟିତ୍ୱ ନେଲେ ବିପ୍ଳବୀ ଗୋପୀନାଥ ସାହା ଦୀର୍ଘଦିନ ଧରି ଟେଗାର୍ଟର ଗତିବିଧି ଉପରେ ଲକ୍ଷ୍ୟ କରି ୧୯୨୪ ମସିହା ଜାନୁୟାରୀ ୧୨ ତାରିଖରେ କଲିକତାର ଚୌରଙ୍ଗୀଠାରେ ଟେଗାର୍ଟର ଯିବାଆସିବା ରାସ୍ତାରେ ଟେଗାର୍ଟ ଚେହେରା ସହ ଏକାବେଳକେ ମିଳିଯାଉଥିବା ଡେ' ନାମକ ଜନୈକ ଇଂରେଜ ଆସୁଥିବାବେଳେ ତା' ଉପରେ ଗୋପୀନାଥ ଗୁଳିକଲେ — ଗୋଟିଏ ନୁହେଁ, ଲାଗ ଲାଗ ତିନିଟା ଗୁଳିରେ ଡେ' ଭୂପତିତ ହେଲା । ଗୋପୀନାଥ ଆରେଷ୍ଟ ହେଲେ ଏବଂ ତାଙ୍କୁ ଫାଶୀଦିଆଗଲା । ଟେଗାର୍ଟ ପରିବର୍ତ୍ତେ ଅନ୍ୟ ଜଣେ ମରିଥିବାରୁ ଅବଶ୍ୟ ଗୋପୀନାଥ ଦୁଃଖିତ ହୋଇଥିଲେ । କିନ୍ତୁ ଟେଗାର୍ଟ ଏହା ଫଳରେ ବିଶେଷ ଆତଙ୍କିତ ହୋଇଯାଇଥିଲା । ଗୋପୀନାଥ କୋର୍ଟରେ କହିଲେ— "Mr. Tegat may think himself safe, but he is not. I failed to complete the work. I leave the unfinished task to others." ଡେ' ହେଉ ବା ଟେଗାର୍ଟ ହେଉ, ଗୋପୀନାଥ ସଶସ୍ତ୍ର ବିପ୍ଳବୀର ସାମର୍ଥ୍ୟ ଆଉଥରେ ପ୍ରମାଣ କରି ଦେଇଗଲେ ।

ଗୋପୀନାଥଙ୍କ ଦୁଃସାହସିକ ପ୍ରଚେଷ୍ଟାର ଉଚ୍ଛ୍ୱସିତ ପ୍ରଶଂସାକରି କଲିକତା କର୍‌ପୋରେସନ୍ ଓ ବଙ୍ଗପ୍ରଦେଶ କଂଗ୍ରେସ କମିଟିରେ ଦୁଇଟି ପ୍ରସ୍ତାବ ଗୃହୀତ ହେଲା ।

ଲଜ୍ଜାର କଥା ଯେ ଗାନ୍ଧିଜୀଙ୍କର ଚାପରେ ବଙ୍ଗ କଂଗ୍ରେସ ପ୍ରସ୍ତାବ ରଦ୍ଦହୋଇ ଅର୍ନେଷ୍ଟ ଡେ'ର ମୃତ୍ୟୁରେ ଶୋକ ପ୍ରକାଶ କରାଗଲା । ସେ ଯାହାହେଲେ ମଧ୍ୟ ଗୋପୀନାଥଙ୍କର ବାର୍ତ୍ତା ଚିରଦିନ ସଶସ୍ତ୍ର ମୁକ୍ତି-ସଂଗ୍ରାମକୁ ଉଦ୍‌ବୁଦ୍ଧ କରିବ ମୋ'ର ପ୍ରତ୍ୟେକ ରକ୍ତବିନ୍ଦୁ ଭାରତର ପ୍ରତ୍ୟେକ ଗୃହରେ ସ୍ୱାଧୀନତା ବୀଜ ବପନ କରୁ । ଯେତେଦିନଯାଏ ଜାଲିଆନାୱାଲାବାଗ୍ ଭଳି ଅତ୍ୟାଚାର ଚାଲିଥିବ ସେତେଦିନ ଏଭଳି ଘଟଣା ଘଟି ଚାଲିବ । ଦିନ ଆସିବ ଯେତେବେଳେ ସରକାର ଏହାର ପ୍ରଭାବ ଅନୁଭବ କରିବ ।

**ଗରିଲା ଯୋଦ୍ଧା ସୀତାରାମ :**

ବଙ୍ଗୀୟ ବିପ୍ଳବୀମାନେ ଯେତେବେଳେ ଏମିତି ହିଂସା-ଅହିଂସାର ଦ୍ୱନ୍ଦ୍ୱ ଭିତରେ ଦୋଳାୟିତ ହେଉଥିଲେ, ଠିକ୍ ସେତିକିବେଳେ ସୁଦୂର ଆନ୍ଧ୍ରପ୍ରଦେଶରେ (ପୂର୍ବତନ ମାନ୍ଦ୍ରାଜ ପ୍ରଦେଶ) ଜଣେ ଯୁବ ବିପ୍ଳବୀ ପ୍ରସ୍ତୁତ ହେଉଥିଲେ ସେହି ଉଦ୍‌ଭଟ ଦ୍ୱନ୍ଦ୍ୱର ଜବାବ ଦେବାପାଇଁ । ସଶସ୍ତ୍ର ବିପ୍ଳବର ରକ୍ତକ୍ଷରା ଇତିହାସରେ ବଙ୍ଗୀୟ ବିପ୍ଳବୀଙ୍କର ତାଲିକା ଏତେ ଦୀର୍ଘ ଯେ ସେହି କୋଳାହଳ ଭିତରେ ଆନ୍ଧ୍ରର ସେହି ମହାନ୍ ବିପ୍ଳବୀଙ୍କର ନାମ ଧୂମାୟିତ ହୋଇଯିବା ସ୍ୱାଭାବିକ । କିନ୍ତୁ ଇତିହାସର ଅନ୍ୟ ଯେକୌଣସି ମହାନ୍ ବିପ୍ଳବୀଙ୍କ ଭଳି ଏହି ତେଲୁଗୁ ଯୁବକ ମଧ୍ୟ ଇତିହାସକୁ ଉଜ୍ଜ୍ୱଳ ଓ ଗୌରବମୟ କରିଅଛନ୍ତି ।

ଆଲୁରୀ ସୀତାରାମ ରାଜୁଙ୍କର ଜନ୍ମ ୧୮୯୭ରେ ସେହି ଅବିସ୍ମରଣୀୟ ତିଥିରେ ଯେଉଁ ଦିନ ମହାରାଷ୍ଟ୍ରର ଚାପେକାର ତିନି ଭାଇ (୬ଷ୍ଠ ଅଧ୍ୟାୟ ଦ୍ରଷ୍ଟବ୍ୟ) ପୁନାର ଅତ୍ୟାଚାରୀ ଶ୍ୱେତାଙ୍ଗ ଶାସକ ର୍ୟାଣ୍ଡସକୁ ହତ୍ୟା କରି ସଶସ୍ତ୍ର ବିପ୍ଳବର ରକ୍ତରଂଜିତ ଇତିହାସକୁ ଉଦ୍‌ଘାଟନ କରିଥିଲେ । ବିଶାଖାପାଟଣା ଜିଲାର ପାଣ୍ଡେ ଗ୍ରାମର ଭେଙ୍କଟରାମ ରାଜାଙ୍କର ଏକମାତ୍ର ପୁତ୍ର ସୀତାରାମ । ସୀତାରାମ ବାଲ୍ୟକାଳରୁ ପିତୃ-ମାତୃହୀନ ହୋଇଯିବାରୁ ସାନବାପାଙ୍କଦ୍ୱାରା ଲାଳିତପାଳିତ ହୋଇଥିଲେ । ସାନବାପା ଥିଲେ ଜଣେ ଡେପୁଟି କଲେକ୍ଟର– ଯେଉଁ ଡେପୁଟି ଚାକିରିକୁ ବ୍ୟଙ୍ଗକରି କବିବର ରାଧାନାଥ ଲେଖିଥିଲେ– "ଆନ ବୋଲେ ମୁହିଁ ଅଟଇ ଡେପୁଟି, କଳାଲୋକଙ୍କର ଉନ୍ନତିର କୋଟି ।" ସେ ଯୁଗରେ ଇଂରେଜ ଅଧୀନରେ ଡେପୁଟି କଲେକ୍ଟର ଚାକିରିଟି ପାଇଲେ ବହୁ ଭାରତୀୟ ନିଜକୁ ଭାଗ୍ୟବାନ୍ ବୋଲି ମନେକରୁଥିଲେ । ସେହିଭଳି ଜଣେ ଭାଗ୍ୟବାନ୍ ଡେପୁଟିଙ୍କର ସ୍ନେହ-ଲାଳିତ ପୁତୁରା ସୀତାରାମରାଜୁଙ୍କର ଢଙ୍ଗ ଥିଲା ସଂପୂର୍ଣ୍ଣ ଭିନ୍ନ ଧରଣର । ସ୍କୁଲରେ ଯାଇ ପାଠପଢ଼ିବା ତାଙ୍କ ଜାତକରେ ନ ଥିଲା । କିନ୍ତୁ ଘରେ ପଢ଼ି ତେଲୁଗୁ ଓ ଇଂରାଜୀ ଭାଷାରେ ସୀତାରାମ ଅସାଧାରଣ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ । ସୀତାରାମଙ୍କୁ ଯେତେବେଳେ ୨୪ ବର୍ଷ ସେତିକିବେଳେ ଭାରତବ୍ୟାପୀ ଦ୍ୱନ୍ଦ୍ୱ ଆରମ୍ଭହୋଇଯାଇଥାଏ - ହିଂସା ଓ ଅହିଂସା ଭିତରେ । ସୀତାରାମଙ୍କର ଝୁଙ୍କଥିଲା ସଶସ୍ତ୍ର ବିପ୍ଳବଆଡ଼େ; କିନ୍ତୁ ସେ କିଛି ଫୟସଲା କରିପାରିଲେ

ନାହିଁ । କଥିତ ଅଛି- ସୀତାରାମ ଏହାର ଫୟସଲା କରିବାକୁ କୃଷ୍ଣାଦେବୀପେଟରେ ଥିବା ନୀଳକାନ୍ତ ମନ୍ଦିରରେ ଅଧିଷ୍ଠିତା ଦେବୀଙ୍କ ମନ୍ଦିରରେ କିଛି ଦିନ ଧ୍ୟାନସ୍ଥ ରହିଲେ । ମନରେ ସେହି ଗୋଟିଏ ପ୍ରଶ୍ନ– ହିଂସା-ନା-ଅହିଂସା କେଉଁ ଉପାୟରେ ଭାରତର ସ୍ୱାଧୀନତାଲଢ଼ାଇ କରାଯିବ, ଏହାର ଉତ୍ତର ଦିଅ ଦେବୀ ।'' ଏବଂ ଶେଷରେ କୁଆଡ଼େ ତାଙ୍କୁ ଦେବାଦେଶ ମିଳିଲା 'ଫିରଙ୍ଗୀକୁ ଖତମ କର' । ଫୟସଲା ହୋଇଗଲା ସୀତାରାମଙ୍କର ।

ବିଶାଖାପାଟଣାର ମାଳ ଅଞ୍ଚଳରେ ଆଦିବାସୀମାନଙ୍କ ଉପରେ ସେତେବେଳେ ସରକାରୀ କର୍ମଚାରୀମାନଙ୍କ ପକ୍ଷରୁ ଯେଉଁ ଲୋମହର୍ଷଣକାରୀ ଅତ୍ୟାଚାର ହେଉଥିଲା, ଜମିଦାର ଓ ସାହୁକାରମାନେ ସେମାନଙ୍କୁ ଯେପରି ନିର୍ମମ ଭାବରେ ଶୋଷଣ କରୁଥିଲେ, ତାହା ଦେଖି ସୀତାରାମଙ୍କ ଆଖିରୁ ଲୁହ ବହିଯାଉଥିଲା ଏବଂ ପିଲାଦିନୁ ଏହି ଦୃଶ୍ୟ ଦେଖି ସୀତାରାମ ପ୍ରଚଳିତ ସମାଜବ୍ୟବସ୍ଥା ଓ ଶାସନକଳ ବିରୋଧରେ ବିଦ୍ରୋହୀ ହୋଇଉଠିଥିଲେ । ସୁତରାଂ 'ନୀଳକାନ୍ତଙ୍କଠାରୁ ହୁକୁମ ପାଇ' ସୀତାରାମ କାମ ଆରମ୍ଭ କରିଦେଲେ । ଗୌତମ ଡୋରା, ଖାମୁ ମଲ୍ଲାନା ଡୋରା, ବୀର ଡୋରା, ଏଣ୍ଡୁ ପାଣ୍ଡୁଲୁ ଓ ଆଗଗି ରାଜୁ ପ୍ରଭୃତି ବୀର ବିପ୍ଳବୀଙ୍କୁ ନେଇ ଗଢ଼ିଉଠିଲା ସୀତାରାମଙ୍କର ଏକ ଦୁର୍ଦ୍ଧର୍ଷ ଗରିଲା ସୈନ୍ୟଦଳ । କ୍ରମେ ପ୍ରାୟ ତିନିଶହ ବୀର ଆଦିବାସୀ ସୀତାରାମଙ୍କର ବିପ୍ଳବୀ ଦଳରେ ଯୋଗଦେଇ ଧନୁ, ତୀର ଓ ବନ୍ଧୁକ ଚାଳନାରେ ହୋଇଉଠିଲେ ଧୁରନ୍ଧର । ୧୯୨୨ ମସିହା ମାର୍ଚ୍ଚ ୧୩ ତାରିଖରେ ସୀତାରାମଙ୍କ ସେନାପତିତ୍ୱରେ ଚଢ଼ାଉହେଲା ଚିନ୍ତାପଲ୍ଲୀ ଥାନା ଉପରେ । ଇଂରେଜ ସରକାର ତାହାର ଯେଉଁ ପୁଲିସ ବାହିନୀକୁ ଅଜେୟ ବୋଲି ମନେକରୁଥିଲା ସେହି କଥାକଥିତ ଅଜେୟ ପୁଲିସ ସୀତାରାମଙ୍କର ମୁକ୍ତିବାହିନୀ ଆକ୍ରମଣରେ ହୋଇଗଲା ଧ୍ୱସ୍ତବିଧ୍ୱସ୍ତ । ଥାନା ଦଖଲହେଲା, ଥାନାର ସମସ୍ତ ବଂଧୁକ, ବର୍ଚ୍ଛା ଓ ଗୁଳିବାରୁଦ ଜବତହେଲା । ସୀତାରାମଙ୍କର ଆନନ୍ଦ କହିଲେ ନସରେ । ଏତେ ଦିନ ପରେ ତାଙ୍କ ଜୀବନର ଏକ ବଡ଼ ଅଭିଳାଷ ପୂର୍ଣ୍ଣହେଲା । ସେ ଇଂରେଜ ସରକାରକୁ ସତକୁ ସତ ପରାସ୍ତକଲେ ।

କେବଳ ସୀତାରାମଙ୍କ ଜୀବନରେ ନୁହେଁ, ଭାରତର ଜାତୀୟଜୀବନରେ ମଧ୍ୟ ଆନ୍ଧ୍ରର ଚିନ୍ତାପଲ୍ଲୀ ଥାନା ଦଖଲ ଏକ ସ୍ମରଣୀୟ ଘଟଣା । ପରେ ପରେ ପୁଣି ଚଢ଼ାଉ ହେଲା ଆଉ ଏକ ଥାନା ଉପରେ, କୃଷ୍ଣାଦେବୀପେଟ ପୁଲିସ ଷ୍ଟେସନରେ ଯେଉଁ କୃଷ୍ଣାଦେବୀପେଟର ନୀଳକାନ୍ତଠାକୁର ତାଙ୍କୁ ଆଦେଶଦେଇଥିଲେ– 'ବତ୍ସ, ଅସ୍ତ୍ରଧର ।' କୃଷ୍ଣାଦେବୀପେଟ ଥାନା ମଧ୍ୟ ଦଖଲହେଲା ଏବଂ ବନ୍ଦୀ ହେଲେ ଦଳେ ପୁଲିସ । ନିଆଗଲା ସେହି ବନ୍ଦୀ ପୁଲିସମାନଙ୍କୁ ବିପ୍ଳବୀ ବନ୍ଦୀ ଶିବିରକୁ । ସୀତାରାମଙ୍କର କିନ୍ତୁ କଡ଼ା ନିର୍ଦ୍ଦେଶ– ''ଯେତେହେଲେ ସେମାନେ ଆମର ଦେଶବାସୀ, ସେମାନଙ୍କ ପ୍ରତି

କେହି ଦୁର୍ବ୍ୟବହାର କରିପାରିବ ନାହିଁ ।''

କ୍ରମେ ଭାଇଜାଗାଜିଲାର ଏଜେନ୍ସି ଅଞ୍ଚଳରେ ଆଦିବାସୀମାନଙ୍କ ଭିତରେ ସଂଗଠନ ସୁଦୃଢ଼ ହୋଇଗଲା । ମୁକ୍ତିବାହିନୀର ଗରିଲାଫ୍ରଣ୍ଟ ଗରିଲାଯୁଦ୍ଧ କୌଶଳରେ ଏଭଳି ଦକ୍ଷ ହୋଇଉଠିଲେ ଯେ ଇଂରେଜ ସେନାବାହିନୀର ବଡ଼ପଣ୍ଡାମାନେ ମଧ୍ୟ ତ୍ରସ୍ତ ହୋଇଗଲେ । ମୁକ୍ତିବାହିନୀକୁ ଗରିଲା ଯୁଦ୍ଧ ଟ୍ରେନିଂ ଦେଇ ସୀତାରାମ ବ୍ରିଟିଶ୍ ଯୁଦ୍ଧନୀତିକୁ ଗୋଳମାଳରେ ପକେଇଦେଲେ ।

ଦୁଇଦୁଇଟା ଥାନାରେ ଶୋଚନୀୟ ପରାଜୟ ବରଣକରି ଇଂରେଜମାନେ ହୋଇଉଠିଲେ କ୍ରୋଧରେ ଜର୍ଜରିତ । କ୍ୟାପ୍ଟେନ୍ ସ୍କଟ୍ ସେହି ପରାଜୟର ପ୍ରତିଶୋଧ ନେବାକୁ ୧୯୨୨ ସେପ୍ଟେମ୍ବର ୨୪ ତାରିଖରେ ଏକ ସେନାବାହିନୀ ନେଇ ଓନଜେରୀ ନାମକ ସ୍ଥାନରେ ମୁକ୍ତିବାହିନୀକୁ ଘେରାଉକଲେ । ଭୀଷଣ ଯୁଦ୍ଧ ହେଲା ବ୍ରିଟିଶ୍ ସୈନ୍ୟ ଏବଂ ମୁକ୍ତିବାହିନୀ ଭିତରେ । କ୍ୟାପ୍ଟେନ୍ ସ୍କଟ୍ ଓ ଲେଫ୍‌ଟନାଣ୍ଟ ହେଇଟରଙ୍କର ମୃତ୍ୟୁ ହେଲା ସେ ଯୁଦ୍ଧରେ । ଫଳରେ ବ୍ରିଟିଶ୍ ସୈନ୍ୟମାନେ ପଛଘୁଞ୍ଚା ଦେଲେ ଓ ମୁକ୍ତିବାହିନୀର ହେଲା ବିରାଟ ବିଜୟ । ଭାରତର ମୁକ୍ତି-ସଂଗ୍ରାମ ଇତିହାସରେ ଯୋଡ଼ାହେଲା ଆଉ ଏକ ଗୌରବମଣ୍ଡିତ ଅଧ୍ୟାୟ ।

ବ୍ରିଟିଶ୍ ସରକାର ବ୍ୟସ୍ତ ଓ ବିଚଳିତ – ଯେକୌଣସିମତେ ଏହି ବିପ୍ଳବକୁ ଦବେଇବାକୁ ହେବ, ନଚେତ୍ ଏହା କ୍ରମେ ମାନ୍ଦ୍ରାଜ ପ୍ରଦେଶର ସବୁଆଡ଼କୁ ଏବଂ ସମଗ୍ର ଦେଶକୁ ବ୍ୟାପିବା ବିଚିତ୍ର ନୁହେଁ । ସରକାରର ମାନସମ୍ମାନ ଇଜ୍ଜତ ପ୍ରତି ସୀତାରାମରାଜୁଙ୍କର ଏହି ବାରମ୍ବାର ପଦାଘାତରେ ଇଂରେଜମାନଙ୍କ ମୁହଁ କଳାପଡ଼ିଗଲା । କିନ୍ତୁ ସୀତାରାମଙ୍କୁ ଧରିବା ବା ମୁକ୍ତିବାହିନୀକୁ ଜବତକରିବା ସମ୍ଭବ ହେଲା ନାହିଁ ସରକାର ପକ୍ଷରେ । ବର୍ଷ ବର୍ଷ ବିତିଗଲା । ଆଜି ଏଠି, କାଲି ସେଠି ଚଢ଼ାଉକରି ମୁକ୍ତିବାହିନୀ ସରକାରକୁ କରିଦେଲା ବିବ୍ରତ । ଶେଷରେ ଜନୈକ କୁଖ୍ୟାତ ଇଂରେଜ ସେନାପତି ମିଷ୍ଟର ନାଟଙ୍କୁ ଦିଆଗଲା ଦାୟିତ୍ୱ ମୁକ୍ତିବାହିନୀର ଦୁର୍ଭେଦ୍ୟ ଦୁର୍ଗ ଭେଦକରିବାକୁ । ମାଲ ଅଞ୍ଚଳରେ ପ୍ରତିଷ୍ଠା କରାଗଲା ବହୁସଂଖ୍ୟକ ଡାକଘର, ଟେଲିଗ୍ରାମ୍ ଅଫିସ, ଥାନା ଓ ଫାଣ୍ଡି । ପ୍ରତି ସ୍ଥାନରେ ରଖାଗଲା ଯଥେଷ୍ଟସଂଖ୍ୟକ ସୈନ୍ୟସାମନ୍ତ । ଖୋଜାଚାଲିଲା ସୀତାରାମ ଓ ଅନ୍ୟାନ୍ୟ ବିପ୍ଳବୀଙ୍କୁ । ଟେଲିଗ୍ରାମ୍, ଟେଲିଫୋନ୍ ସାହାଯ୍ୟରେ ସୀତାରାମଙ୍କ ଗତିବିଧି ଉପରେ ଲକ୍ଷ୍ୟ କରିବା ସହଜହେଲା ।

ସୀତାରାମ ଖାଲି ଜଣେ ବିପ୍ଳବୀ ନ ଥିଲେ, ସେ ଥିଲେ ଯଥାର୍ଥରେ ଜଣେ ଆଦର୍ଶ ନେତା । ସରଳ ଓ ନିରାଡ଼ମ୍ବର ଥିଲା ତାଙ୍କର ଦୈନନ୍ଦିନ ଜୀବନ । କର୍ମକ୍ଷମ ରହିବାକୁ ଆବଶ୍ୟକ ସର୍ବନିମ୍ନ ଖାଦ୍ୟ ସେ ଗ୍ରହଣକରୁଥିଲେ । କିନ୍ତୁ ଶତ୍ରୁପକ୍ଷର ଯୁଦ୍ଧବନ୍ଦୀମାନଙ୍କ ପ୍ରତି ସେ ଥିଲେ ଅସାଧାରଣଭାବେ ଉଦାର । ସେମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ଓ

ଖାଦ୍ୟପେୟରେ ଯେତେ ଖର୍ଚ୍ଚ ହେଉପଛେ ସେ ସେଥିପାଇଁ କୁଣ୍ଠିତ ହେଉ ନ ଥିଲେ । ତାଙ୍କର ଏହି ଅସାଧାରଣ ଗୁଣ ଦେଖି ଲୋକେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ଏବଂ ସୀତାରାମଙ୍କୁ ଦେବତା ଭଳି ଭକ୍ତିକରୁଥିଲେ । ଏପରିସ୍ଥଳେ ତାଙ୍କୁ ପୁଲିସ ହାତରେ ଧରାଇଦେବାକୁ ତାଙ୍କ ଶତ୍ରୁମାନେ ବି ସାହସ କରୁନଥିଲେ । ତାଙ୍କୁ ମୃତ ବା ଜୀବିତାବସ୍ଥାରେ ଧରାଇଦେବାକୁ ଦଶହଜାର ଟଙ୍କାର ପୁରସ୍କାର ଘୋଷଣାକରି ସୁଦ୍ଧା ବହୁଦିନ ଯାଏ କିଛି ଫଳ ହେଲାନାହିଁ ।

ଶେଷରେ ଆସିଲା ସେହି ଅଶୁଭ ମୁହୂର୍ତ୍ତ, ଦୁଃଖିନୀ ଭାରତମାତାର ବେଦନାଦାୟକ ଇତିହାସର ସେହି ଦୁର୍ଭାଗ୍ୟଜନକ ଦିନଟି । ୧୯୨୪ ମଇ ୭ ତାରିଖରେ ବିପ୍ଳବୀ ସୀତାରାମ ଏକ ଜଙ୍ଗଲପରିବେଷ୍ଟିତ ଝରଣାରେ ଗାଧୋଇବାବେଳେ ତାଙ୍କୁ ଚାରିପଟୁ ପୁଲିସ ଘେରାଉକରିନେଲା । ସୀତାରାମ ଏକା ଥିଲେ ଓ ଅପ୍ରସ୍ତୁତ ଥିଲେ । ସୁତରାଂ ଆତ୍ମରକ୍ଷା କରିବା ତାଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ସୀତାରାମ ବନ୍ଦୀହେଲେ । ବନ୍ଦୀହେଲା ସଶସ୍ତ୍ର ମୁକ୍ତି-ସଂଗ୍ରାମର କେତେ ଉଜ୍ଜ୍ୱଳ ସମ୍ଭାବନା, ଆଶା-ଅଭିଳାଷର କେତେ ଆକାଶଛୁଆଁ ସୌଧ । ଯାହା ଆଶଙ୍କା କରାଯାଉଥିଲା ସେୟା ହେଲା । କେବଳ ସେତିକି ନୁହେଁ, କିଛି ଅଧିକ ମଧ୍ୟ ହେଲା । ବ୍ରିଟିଶ୍ ସମ୍ରାଜ୍ୟବାଦର ତଥାକଥିତ ଗଣତାନ୍ତ୍ରିକ ମୂଲ୍ୟବୋଧ, ସେମାନେ ନିଜେ ତିଆରିକରିଥିବା ଆଇନ ନିଜେ ଭଙ୍ଗକରିବାର ଏକ ବୀଭତ୍ସ ନଗ୍ନଦୃଶ୍ୟ ଦେଖିବାକୁ ମିଳିଲା ବିଶାଖାପାଟଣା ଜିଲାର ସେହି ଘୋର ଅରଣ୍ୟ ଭିତରେ । କାପୁରୁଷ ନୃଶଂସ ଇଂରେଜଜାତିର ପ୍ରତିନିଧି ଗୁଡ଼ାଲ ନାମକ ଜନୈକ ସୈନିକ ସୀତାରାମଙ୍କୁ ବନ୍ଦୀ କରିବା ସଙ୍ଗେ ସଙ୍ଗେ ଗୋଟିଏ ଗଛରେ ବାନ୍ଧିଦେଇ ଗୁଳିକରିଦେଲା । ଭୀରୁ ସୈନିକର ସେହି କାପୁରୁଷୋଚିତ ବ୍ୟବହାର ଦେଖି ହସିଉଠିଥିଲେ ସୀତାରାମ ଏବଂ ତାଙ୍କର ବଜ୍ରକଣ୍ଠରୁ ନିନାଦିତହେଲା ମାତୃମନ୍ତ୍ର 'ବନ୍ଦେ ମାତରମ୍' ।

ଏହିଭଳି ଭାବରେ ପ୍ରାତଃସ୍ମରଣୀୟ ସଶସ୍ତ୍ର ବିପ୍ଳବୀ ଓ ଗରିଲା ସେନାପତି ଆଲୁରୀ ସୀତାରାମରାଜୁଙ୍କ ଭଳି ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭାରତର ଗଗନରୁ ଅନ୍ତର୍ହିତହେଲା ।

**ପାର୍କ ସର୍କସ୍‌ର ସର୍କସ୍ :**

୧୯୨୮ର କଲିକତା କଂଗ୍ରେସ ନାନା କାରଣରୁ ଏକ ଐତିହାସିକ ଅଧିବେଶନ । ଅନ୍ୟାନ୍ୟ ବହୁ କାରଣ ମଧ୍ୟରୁ ଅନ୍ୟତମ ମୁଖ୍ୟ କାରଣ ହେଲା ଏହି ଯେ କଲିକତା କଂଗ୍ରେସଠାରୁ ଭାରତୀୟ ରାଜନୀତି କ୍ଷେତ୍ରରେ ଦୁଇଟି ବିପରୀତମୁଖୀ ବିଚାରଧାରା ସୃଷ୍ଟି ହେଲା- ଗୋଟିଏ ଗାନ୍ଧିଜୀଙ୍କ ନେତୃତ୍ୱରେ ଅହିଂସାର, ଅନ୍ୟଟି ହେଲା ସୁଭାଷଙ୍କୁ କେନ୍ଦ୍ରକରି ସଶସ୍ତ୍ର ଗଣ-ସଂଗ୍ରାମର କଲିକତା କଂଗ୍ରେସରେ ସୁଭାଷ-ପରିଚାଳିତ ବିରାଟ ସ୍ୱେଚ୍ଛାସେବକବାହିନୀ ଗଠନ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା । ଏହାଯେ କେବଳ

ଭବିଷ୍ୟତ୍‌ର ବହୁ ସମ୍ଭାବନା ନେଇ ପରିକଳ୍ପିତ ହୋଇଥିଲା ସେତିକି ନୁହେଁ; ଏହାର ପ୍ରଭାବ ମଧ୍ୟ ହେଲା ସୁଦୂରପ୍ରସାରୀ । କଲିକତାର ପାର୍କସର୍କସ ମଇଦାନରେ ହଜାର ହଜାର ପଦାତିକ, ଶହ ଶହ ଅଶ୍ୱାରୋହୀ ଓ ବିରାଟ ନାରୀ-ସ୍ୱେଚ୍ଛାସେବକ ବାହିନୀ ଗଠନକରି ସୁଭାଷ ସମ୍ଭବତଃ ପରୀକ୍ଷା କରିବାକୁ ଚାହୁଁଥିଲେ ଭାରତୀୟ ଯୁବଶକ୍ତି ଆସନ୍ନ ସଂଗ୍ରାମପାଇଁ ନିଜକୁ କେତେଦୂର ଯୋଗ୍ୟ କରିପାରିଛନ୍ତି ଏବଂ ଆବଶ୍ୟକ ହେଲେ ସ୍ୱାଧୀନତା ସକାଶେ ଏକ ସାମରିକ ଅଭ୍ୟୁତ୍‌ଥାନ ବା ଯୁଦ୍ଧପାଇଁ ଦେଶ କେତେଦୂର ପ୍ରସ୍ତୁତ ଅଛି । ମେଜର ସତ୍ୟ ବକ୍ସିଙ୍କଦ୍ୱାରା ଯେଉଁ ବିରାଟ ସ୍ୱେଚ୍ଛାସେବକ ବାହିନୀ ଗଠନକରାଯାଇଥିଲା, ତାହା ପୃଥିବୀର ଯେକୌଣସି ଦେଶର ସୈନ୍ୟଶିବିରର ଦୃଶ୍ୟ ଯେ ସୃଷ୍ଟିକରୁଥିଲା, ଏଥିରେ ସନ୍ଦେହ ନାହିଁ । ପାର୍କସର୍କସ ଅଞ୍ଚଳରେ ଶହ ଶହ ଯୁବକ-ଯୁବତୀଙ୍କର ପ୍ୟାରେଡ୍‌ ଉତ୍ସବ, ଘୋଡ଼ାମାନଙ୍କର ହ୍ରେଷାରବ, ତମ୍ବୁ ଓ ଚାନ୍ଦୁଆ ତଳେ ବିରାଟ ସମାବେଶ ବାସ୍ତବରେ ପାର୍କ ସର୍କସକୁ ଗୋଟିଏ ସାମରିକ ଛାଉଣୀରେ ପରିଣତ କରିଥିଲା ।

କଲିକତା କଂଗ୍ରେସର ସେହି ସ୍ୱେଚ୍ଛାସେବକବାହିନୀ କଂଗ୍ରେସ ସଭାପତିଙ୍କ ଶୋଭାଯାତ୍ରାକୁ କିପରି ଚମତ୍କାର ରୂପ ଦେଇଥିଲା ତାହା କଲିକତାର ତତ୍‌କାଳୀନ ସଂବାଦପତ୍ରମାନଙ୍କରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଅଛି ।

ସଂବାଦପତ୍ର ମତରେ, "ବାସ୍ତବରେ କଂଗ୍ରେସର ଇତିହାସରେ ସଭାପତିଙ୍କୁ ଏଭଳି ବିପୁଳ ଅଭ୍ୟର୍ଥନା କରିବା ଦୃଶ୍ୟ ଆଉ କେବେ ଦେଖାଯାଇ ନ ଥିଲା । ଏହା ଯେପରି ଦେଶର ବୀର ସେନାନୀ ଦିଗ୍‌ବିଜୟ ପରେ ରାଜଧାନୀକୁ ପ୍ରତ୍ୟାଗମନକଲେ ଓ ଦେଶବାସୀ ସେମାନଙ୍କୁ ବରଣକରିନେଲେ, ପୁରବାସୀ ସେମାନଙ୍କୁ ଅର୍ଘ୍ୟ ଦେଲେ ଏବଂ ନାଗରିକବୃନ୍ଦ ସେମାନଙ୍କୁ ଆନନ୍ଦ ଓ ଉତ୍ତେଜନା ମଧ୍ୟରେ ସମ୍ବର୍ଦ୍ଧିତ କଲେ ।"

ସହସ୍ର ସହସ୍ର ନରନାରୀଙ୍କର ଆନନ୍ଦୋଦ୍ଦୀପ୍ତ ଲଲାଟରେ ପ୍ରଭାତର ସୂର୍ଯ୍ୟକିରଣ ପଡ଼ି ଯେପରିକି ଭବିଷ୍ୟତ୍‌ର ହାସ୍ୟୋଜ୍ଜ୍ୱଳ ଚିତ୍ରଲେଖା ସୃଷ୍ଟିକରିଥିଲା ଅଶ୍ୱାରୋହୀ ସ୍ୱେଚ୍ଛାସେବକମାନଙ୍କର ଅଗ୍ରଗତିର ପ୍ରତିଧ୍ୱନି, ପଦାତିକମାନଙ୍କର ସୁଶୃଙ୍ଖଳ ଓ ବୀରୋଚିତ ପଦକ୍ଷେପ !

"ମହିଳା ସ୍ୱେଚ୍ଛାସେବିକାମାନଙ୍କର ପ୍ରଭାତୀ ସୂର୍ଯ୍ୟଙ୍କର ଦୀପ୍ତଗତି ଭଙ୍ଗିମା, ପଣ୍ଡିତ ମୋତିଲାଲଙ୍କର ସୁସଜ୍ଜିତ ଅଶ୍ୱ ଚାଳିତ ରଥ, ରଣବାଦ୍ୟଧ୍ୱନି ଏବଂ ସହସ୍ର ସହସ୍ର ଶୋଭାଯାତ୍ରୀଙ୍କର ପ୍ରବଳ ଉତ୍ସାହ, ନାଗରିକମାନଙ୍କୁ ଯୁଗପତ୍‌ ଆନନ୍ଦ ଉତ୍ତେଜନା ଓ ସ୍ୱଦେଶ ପ୍ରେମର ପ୍ରେରଣା ଦେଉଥିଲା ।

X X X X

ସ୍ଥାନେ ସ୍ଥାନେ ନଗରର ସୁସଜ୍ଜିତ ତୋରଣଦ୍ୱାରରେ ଏହିଭଳି ପ୍ରଚାରପତ୍ରମାନ ଲେଖାଯାଇଥିଲା । — "ହେ ଯୁବକ, ଦେଶର ବେଦନା କ'ଣ ତୁମେ ବାସ୍ତବରେ

ଉପଲବ୍ଧି କର ? ଏହି ବେଦନାରେ କ'ଣ ତୁମର କ୍ଷୁଧା ବାସ୍ତବରେ ନଷ୍ଟ ହୋଇଯାଇଅଛି ? ତୁମର ନିଦ୍ରା ଦୂର ହୋଇପାରିଛି ? ତୁମର ସ୍ୱପ୍ନ ଦୁର୍ଭାବନାରେ ପୂର୍ଣ୍ଣହୋଇଛି ? ସ୍ୱାଧୀନତା ମାନବର ଜନ୍ମଗତ ଅଧିକାର ।''

''ଏହି ପ୍ରକାରର ଶୋଭାଯାତ୍ରା ଓ କଲିକତାବାସୀଙ୍କ ଅଭିନନ୍ଦନ ପ୍ରଭୃତି ପ୍ରତ୍ୟେକ ବିଷୟରେ ଗୋଟିଏ ଜାତୀୟଭାବର ସମାବେଶ ହୋଇଥିଲା, ସର୍ବୋପରି ଶୋଭାଯାତ୍ରାର ସାମରିକ ଆବହାଓ୍ୱା ମଧ୍ୟ ଦେଇ ଯେଉଁ ସ୍ୱଦେଶପ୍ରେମ, ସୌନ୍ଦର୍ଯ୍ୟଜ୍ଞାନ ଓ ଶୃଙ୍ଖଳା ଶକ୍ତି ଆତ୍ମପ୍ରକାଶ କରିଅଛି, ତାହା ବାସ୍ତବରେ ଭାରତୀୟ ଜାତିର ଭବିଷ୍ୟତ୍‌କୁ ଆଶା ଓ ଆନନ୍ଦରେ ଭରିଦେଇଛି ।''

ସଭାପତିଙ୍କର ଶୋଭାଯାତ୍ରା ବାସ୍ତବରେ ଅଭୂତପୂର୍ବ । ଦୁଇ ହଜାର ସ୍ୱେଚ୍ଛାସେବକ, ପାଞ୍ଚଶତ ମହିଳା ସ୍ୱେଚ୍ଛାସେବିକା, ଅଶ୍ୱାରୋହୀ ଦଳ, ପଦାତିକ ଦଳ ସହ ଏହି ଶୋଭାଯାତ୍ରା ଗଠିତ ହୋଇଥିଲା । ସ୍ୱେଚ୍ଛାସେବକ ବାହିନୀର ଜେନେରାଲ ଅଫିସର କମାଣ୍ଡିଂ (G.O.C.) ଶ୍ରୀଯୁକ୍ତ ସୁଭାଷ ଚନ୍ଦ୍ର ବସୁ ମହାଶୟ ସାମରିକ ପରିଚ୍ଛଦରେ ସୁସଜ୍ଜିତ ହୋଇ ପ୍ରେସିଡେଣ୍ଟଙ୍କ ଗାଡ଼ି ପହଞ୍ଚିବା ମାତ୍ରେ ତାଙ୍କୁ ସାମରିକ କାଏଦାରେ ଅଭିନନ୍ଦନ ଜଣାଇଥିଲେ ।

ତା'ପରେ ଶୋଭାଯାତ୍ରା ଆରମ୍ଭ ହେଲା । ପ୍ରଥମେ ଖାକିପୋଷାକ ପରିହିତ ମୋଟର ସାଇକେଲ ଆରୋହୀ ସ୍ୱେଚ୍ଛାସେବକ ଦଳ, ତା'ପଛରେ ସାଇକେଲ୍ ଆରୋହୀ ଦଳ, ତତ୍‌ପରେ ପତାକାବାହୀ ପଥପ୍ରଦର୍ଶକ ଦଳ ଓ ବିଗୁଲ ବାଦକଗଣ, ସେମାନଙ୍କ ପଛରେ ଗୋଟିଏ ମଟରଗାଡ଼ି ଉପରେ ଜେନେରାଲ ଅଫିସର କମାଣ୍ଡିଂ, ଯଥୋପଯୁକ୍ତ ପୋଷାକ ପରିହିତ ଶ୍ରୀ ସୁଭାଷ ଚନ୍ଦ୍ର ବସୁ ଦଣ୍ଡାୟମାନ । ତାଙ୍କ ହାତରେ ଗୋଟିଏ ଚମଡ଼ାବନ୍ଧା ଛଡ଼ି । ସେ ସତର୍କତା ସହକାରେ ଶୋଭାଯାତ୍ରାକୁ ଲକ୍ଷ୍ୟ କରୁଥାନ୍ତି ।

ତାଙ୍କ ପଛରେ ପତାକାବାହୀ ସ୍ୱେଚ୍ଛାସେବକଗଣ, ତା' ପଛକୁ ଡ୍ରମ୍‌ର ଦଳ, ବ୍ୟାଣ୍ଡ ପାର୍ଟି, ପଦାତିକ-ଦଳ ଓ ଅଶ୍ୱାରୋହୀ ଦଳ । ଅଶ୍ୱାରୋହୀ ଦଳର ପଛରେ ପ୍ରେସିଡେଣ୍ଟଙ୍କର ଅଶ୍ୱଚାଳିତ ଯାନ । ତା'ପରେ ପୁଣି ଅଶ୍ୱାରୋହୀ ଦଳ ସୁନିୟନ୍ତ୍ରିତ ପଦକ୍ଷେପରେ ଚାଲୁଥା'ନ୍ତି । ତା'ପଛରେ ଅଭ୍ୟର୍ଥନା ସମିତିର ସଦସ୍ୟଗଣ ଓ ସବା ପଛରେ ସାଧାରଣ ମୋଟରଗାଡ଼ି ସମୂହ ।

ସଭାପତି ଅଭିଭାଷଣରେ ନରମପନ୍ଥୀ କଂଗ୍ରେସ ସଭାପତି ମଧ୍ୟ ସ୍ୱୀକାର କଲେ,— ସ୍ୱେଚ୍ଛାସେବକ ଦଳର ଅପୂର୍ବ ବିଧିବ୍ୟବସ୍ଥା, ଅଶ୍ୱାରୋହୀ ଓ ପଦାତିକ ଦଳର ଶୃଙ୍ଖଳା ଓ ଗଠନନୈପୁଣ୍ୟ ଓ ସର୍ବୋପରି ସର୍ବତ୍ର ଦେଶବାସୀମାନଙ୍କର ସ୍ୱଦେଶ ପ୍ରେମର ଯେଉଁ ଉଜ୍ଜ୍ୱଳ ଲହରୀ କୀର୍ତ୍ତନ ଲକ୍ଷ୍ୟକଲି, ତଦ୍ଦ୍ୱାରା ସ୍ୱରାଜ୍ୟ ସ୍ୱପ୍ନ ମୋ' ମନରେ ଅଧିକରୂପେ ଉଦିତ ହୋଇଅଛି ।

ସର୍ବତ୍ର ସୁଭାଷଙ୍କ ଜୟଧ୍ୱନି ଉଠିଲା । ପତ୍ରପତ୍ରିକା ମୁଖର ହୋଇଉଠିଲେ ସୁଭାଷଙ୍କର ପ୍ରଶଂସାରେ । 'ଫରଓ୍ୱାର୍ଡ଼' ପତ୍ରିକା ଲେଖିଲେ, ''ସେ (ସୁଭାଷ) ତୃରୀ

ଭେରୀର ଶବ୍ଦରେ ଜାତିର ତାମସିକତା ଦୂରକରିଅଛନ୍ତି ।'' ଆନନ୍ଦବଜାର ପତ୍ରିକାଙ୍କ ମତରେ, ''ଶୋଭାଯାତ୍ରା ସାମରିକ ଅବହାଓ୍ୱା ମଧ୍ୟ ଦେଇ ଯେଉଁ ସ୍ୱଦେଶପ୍ରେମ, ସୌନ୍ଦର୍ଯ୍ୟଜ୍ଞାନ ଓ ଶୃଙ୍ଖଳା ଶକ୍ତି ଆତ୍ମପ୍ରକାଶ କରିଛି, ତା' ଦେଖି ବଙ୍ଗାଳୀ ଜାତିର ଆଶାପ୍ରଦ ଭବିଷ୍ୟତ୍ ସମ୍ବନ୍ଧରେ ବିଶ୍ୱାସୀ ହୋଇଉଠିଲେ ସ୍ୱୟଂ ସଭାପତି ମୋତିଲାଲ ।'' ତାଙ୍କ ଭାଷାରେ, ''ଭାରତ ଯେପରି ସତରେ ସ୍ୱାଧୀନ ।''

ବିଭିନ୍ନ ପ୍ରଦେଶରୁ ଆସିଥିବା କଂଗ୍ରେସ କର୍ମୀ ଓ ନେତୃସ୍ଥାନୀୟ ବ୍ୟକ୍ତି ପ୍ରଶଂସାରେ ଶତଜିହ୍ୱ ହୋଇଉଠିଲେ । ଏହା ତ ବିଶେଷଭାବେ ଦରକାର ଥିଲା । ଏହିଭଳି ନିଷ୍ଠା, ଦେଶାତ୍ମବୋଧ ଓ ଏହି ଶୃଙ୍ଖଳାଜ୍ଞାନ ଆମର ଆଜି ବେଶି ଦରକାର । ସୁଭାଷ ! ତୁମେ ଦେଖାଇଲ ଆଜି ଭାରତୀୟ ଜାତିର ଅନ୍ତର୍ନିହିତ ଶକ୍ତି ଓ ସାମର୍ଥ୍ୟ ! ଧନ୍ୟ ସୁଭାଷ ! ସାବାସ୍ ସୁଭାଷ !

କିନ୍ତୁ ସାରା ଭାରତ ଯେତେବେଳେ ସୁଭାଷଙ୍କର ଏହି ଅଲୌକିକ ଓ ଅସାଧାରଣ ସାଂଗଠନିକ ଦକ୍ଷତା ପ୍ରତି ପ୍ରଶଂସାମୁଖର ସେତେବେଳେ ଗାନ୍ଧିଜୀଙ୍କର ମତି ଗତି କ'ଣ ? ବେଙ୍ଗଲ ଭଲେଣ୍ଟିୟର୍ସ ଦଳର କୃତିତ୍ୱ ଏବଂ ତା'ର ସର୍ବାଧିନାୟକ ସୁଭାଷଙ୍କର ପ୍ରଶଂସା ଗାନ୍ଧିଜୀଙ୍କୁ ସୁଖ ଲାଗି ନ ଥିଲା । ପ୍ରକାଶ୍ୟ ଭାଷାରେ ସେ କହିଲେ, ''ଏହା ହେଉଛି ପାର୍କସର୍କସର ସର୍କସ ।''

ଗାନ୍ଧିଜୀଙ୍କର ଏହି ବ୍ୟଙ୍ଗୋକ୍ତି ଶୁଣି ବିପ୍ଳବୀ ନେତାମାନେ ଅବାକ୍ ଏବଂ କଲିକତା ଅଧିବାସୀ ବିସ୍ମିତ, ଏପରିକି ସାରା ଭାରତବାସୀ ମର୍ମାହତ ହେଲେ । ସମ୍ଭବତଃ ଏହିଠାରୁହିଁ ସୁଭାଷଙ୍କ ସର୍ବଜନସ୍ୱୀକୃତ କୃତି ପ୍ରତି ଗାନ୍ଧିଜୀଙ୍କର ବକ୍ରୋକ୍ତି ଓ ଦୁର୍ବ୍ୟବହାର !

ଗାନ୍ଧିଜୀଙ୍କ ସହ ତାଳଦେଇ ଆଉଟିକେ ଆଗେଇ ଯାଇ ତୋଷାମଦକାରୀମାନେ ସୁଭାଷଙ୍କ ଜି.ଓ.ସି. ପଦବୀକୁ ବ୍ୟଙ୍ଗକରି 'ଗକ ସୁଭାଷ' G.O. Subhas ଖୋକା ଭଗବାନ୍ ବୋଲି ସମ୍ବୋଧନ କରିବାକୁ ଛାଡ଼ିଲେ ନାହିଁ । ବେଙ୍ଗଲର ବିଖ୍ୟାତ ପତ୍ରିକା 'ଶନିବାର ଚିଠି'ତ କେତେ ନକଲନବିସ୍ ବ୍ୟଙ୍ଗ ବିଦ୍ରୂପ ଉଦ୍‌ଗାର କଲେ । ଯାହାକୁ କହନ୍ତି, 'ଗୁରୁ କହିଲେ ଗୋଟିଏ ଶିଷ୍ୟ କହନ୍ତି କୋଟିଏ ।'

ଗାନ୍ଧିଜୀଙ୍କର ଏହି ଦୁର୍ବୋଧ ମନୋଭାବର ବିଭିନ୍ନ ଐତିହାସିକ ଭିନ୍ନ ଭିନ୍ନ ବ୍ୟାଖ୍ୟା କରିଅଛନ୍ତି । ତତ୍‌କାଳୀନ ବଙ୍ଗୀୟ ବିପ୍ଳବୀ ଏବଂ 'ଭାରତ ସଶସ୍ତ୍ର ବିପ୍ଳବ'ର ସ୍ୱନାମଧନ୍ୟ ରଚୟିତା ଶ୍ରୀ ରକ୍ଷିତରାୟ ମହାଶୟ ଲେଖିଛନ୍ତି – ଦେଶବାସୀଙ୍କ ସମ୍ମୁଖରେ ଗାନ୍ଧିଜୀଙ୍କର ସୁଭାଷଙ୍କ ସହ ପ୍ରଥମ ସଂଘର୍ଷ ହେଲା ୧୯୨୮ର କଲିକତା କଂଗ୍ରେସ ବେଳେ । ସୁଭାଷଙ୍କର 'ବେଙ୍ଗଲ ଭଲେଣ୍ଟିୟର୍ସ' (ବି.ଭି.) କଂଗ୍ରେସର 'ହିନ୍ଦୁସ୍ଥାନୀ' ସେବାଦଳ ଢାଞ୍ଚାରେ ଗଢ଼ାଯାଇ ନ ଥିଲା । ସାମରିକ ପୋଷାକରେ ଦୃପ୍ତ ସାମରିକ କୁଚକାଓ୍ୱାଜ୍‌ରେ ଦକ୍ଷ, ବିପ୍ଳବୀ ନେତା ଓ କର୍ମୀମାନଙ୍କର ସହଯୋଗିତା ଓ

ନିଷ୍ଠାରେ ପ୍ରାଣବନ୍ତ, ଏହି ବିରାଟ ନାରୀପୁରୁଷ ବାହିନୀ ଯେତେବେଳେ ଜାତିର ଯୌବନକୁ ଆତ୍ମସମ୍ବିତ ଫେରାଇଦେଇଥିଲା, ଆଗାମୀ ଦିନର ରଣସଜ୍ଜାର ସ୍ୱପ୍ନ ତା'ର ରକ୍ତରେ ସଞ୍ଚାରିତ ହେଉଥିଲା, ସେତେବେଳେ କଂଗ୍ରେସର ଭାଗ୍ୟବିଧାତା ଗାନ୍ଧିଜୀ ସେହି ବାହିନୀ ପରିଦର୍ଶନ କରି ତାହା ଉଦ୍ଦେଶ୍ୟରେ କହିଲେ, ''ଏହା ଯେପରି ଫିଲିପ ସର୍କସ ବା ଚିଲଡ୍ରେନ୍ ପାଣ୍ଟୋମାଇମ୍ ।''

''ଗାନ୍ଧୀ ସୁଚତୁର ଲୋକ । ସେ ବେଙ୍ଗଲ ଭଲେଣ୍ଟିୟର୍ସ ବା ତା'ର ଜି.ଓ.ସି.ଙ୍କୁ ଯଦି ବାସ୍ତବରେ ସର୍କସ ପାର୍ଟି ବା ପିଲାଖେଳର ନେତା ବୋଲି ମନେକରିଥାନ୍ତେ, ତେବେ ସେ ଏମିତି କଠୋର ଉପହାସ କରି ନ ଥାନ୍ତେ । କାରଣ ସେ 'ଶନିବାର ଚିଠି' ପତ୍ରିକାର ମଗଜଶୂନ୍ୟ ବା କାଣ୍ଡଜ୍ଞାନବିବର୍ଜିତ ରାଜନୈତିକ ବୁଦ୍ଧିନେଇ ଦେଶର ନେତୃତ୍ୱ ନେବାକୁ ଆସି ନ ଥିଲେ । ବାସ୍ତବରେ ସେ ସୁଭାଷଙ୍କ ଆଖିରେ ଓ ତାହାଙ୍କ ବାହିନୀ ଗଢ଼ିବାର ଟେକ୍ନିକ୍‌ରେ ସର୍ବନାଶର ଛାୟା ଦେଖିଥିଲେ । ଏହି ସର୍ବନାଶର ନିଆଁରେ ତାଙ୍କର ଅହିଂସାର ପ୍ରାସାଦ ଭସ୍ମୀଭୂତ ହୋଇଯିବାର ଲକ୍ଷଣ ହୁଏତ ସେ ଦେଖିଥିଲେ । ଅଥଚ ତାଙ୍କର ହୃଦୟ ଅହିଂସା ମୋହରେ ଆଚ୍ଛନ୍ନ ହୋଇଥିବାରୁ ସେ ସୁଦୂରର ଅଞ୍ଜନ ଆଖିରେ ବୋଲି ଏହି 'ବେଙ୍ଗଲ ଭଲେଣ୍ଟିୟର୍ସ'ରେ ଭାବୀଦିନର 'ଆଜାଦହିନ୍ଦ ବାହିନୀ'ର ବା ଝାନ୍ସିରାଣୀ ବାହିନୀର ଅଙ୍କୁର ଦେଖିପାରି ନ ଥିଲେ । ଫଳରେ ଜି.ଓ.ସି. ସୁଭାଷଙ୍କ ପଦକ୍ଷେପରେ ବିଶ୍ୱବିଶ୍ରୁତ ସୁପ୍ରିମ କମାଣ୍ଡର ନେତାଜୀ ସୁଭାଷଙ୍କ ପଦଧ୍ୱନି ଶୁଣିପାରିଲେ ନାହିଁ ।

X X X X

କଲିକତା କଂଗ୍ରେସ ଅଧିବେଶନ ବିପ୍ଳବୀ ଭାରତ ଇତିହାସରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଅଧ୍ୟାୟ । କଂଗ୍ରେସର ଏହି ସ୍ୱେଚ୍ଛାସେବକ ବାହିନୀ ୧୯୨୯ ସାଲଠାରୁ ଆଜାଦ୍ ହିନ୍ଦ୍ ଫୌଜର ପୂର୍ବକାଳ ପର୍ଯ୍ୟନ୍ତ ବ୍ୟାପ୍ତ ବିପ୍ଳବକାଣ୍ଡର ମୂଳାଧାର । ସୁଭାଷଚନ୍ଦ୍ରଙ୍କର ପାର୍କ ସର୍କସ ମଇଦାନରେ କର୍ଣ୍ଣେଲ ଲତିକା ବସୁ ପରିଚାଳିତ ନାରୀବାହିନୀ ହିଁ ''ଆଜାଦ ହିନ୍ଦ୍ ଫୌଜ'ର କର୍ଣ୍ଣେଲ ଲକ୍ଷ୍ମୀ ପରିଚାଳିତ 'ଝାନ୍ସି ବାହିନୀ' ରୂପକ ଅଙ୍କୁର । ସୁଭାଷଚନ୍ଦ୍ରଙ୍କର ସ୍ୱେଚ୍ଛାସେବକ ବାହିନୀରୂପକ ବୀଜରୁହିଁ ନେତାଜୀଙ୍କର ଦୁର୍ଜୟ ଆଜାଦ୍ ହିନ୍ଦ୍ ଫୌଜରୂପୀ ମହାମହୀରୂହ ।''

ଏହି ଦୃଷ୍ଟିରୁ ହିଁ ୧୯୨୯ର କଲିକତା କଂଗ୍ରେସକୁ 'ଭାରତର ସଶସ୍ତ୍ର ବିପ୍ଳବ'ର ଏକ ଉଲ୍ଲେଖଯୋଗ୍ୟ ମାଇଲ ଖୁଣ୍ଟ ବୋଲି ବିବେଚନା କରାଯାଏ । (ଅଧିକ ବିଷୟ ୪ର୍ଥ ପର୍ବରେ ଦ୍ରଷ୍ଟବ୍ୟ)

**ଦେଶଦ୍ରୋହୀ ଭୂପେନ :**

ରାମପ୍ରସାଦ ବିସମିଲ୍ଲପ୍ରଭୃତି ବିପ୍ଳବୀମାନେ ଯେଉଁ ମାସରେ କାକୋରୀ ଷ୍ଟେସନରେ ଗାର୍ଡ଼ଡବା ଲୁଟ୍‌କରିଥିଲେ, ସେହି ମାସରେ କଲିକତାର ଦକ୍ଷିଣେଶ୍ୱରଠାରେ ଥିବା ବୋମା

ତିଆରି କେନ୍ଦ୍ରଟିର ସନ୍ଧାନ ପାଇଲା ପୁଲିସ । ବୋମା ଓ ବୋମା ତିଆରି ମାଲମସଲା ସହ ଆରେଷ୍ଟ ହେଲେ ଅନନ୍ତ ହରି ମିତ୍ର ଓ ପ୍ରମୋଦରଞ୍ଜନ ଚୌଧୁରୀ ଏବଂ ବିପ୍ଳବୀ ଦଳ ସହ ସଂପୃକ୍ତ ବୋଲି ସନ୍ଦେହ କରାଯାଉଥିବା ଅନ୍ୟ କେତେଜଣ ସାଧାରଣ ଲୋକ । ଏହି ସାଧାରଣ ଲୋକଗୁଡ଼ିଙ୍କୁ ଧରି ଏଇମାନଙ୍କ ସାହାଯ୍ୟରେ ସମଗ୍ର ବିପ୍ଳବୀ ଦଳକୁ ଜବତ କରିବା ସରକାରର ଉଦ୍ଦେଶ୍ୟ ଥିଲା । ଏ ଉଦ୍ଦେଶ୍ୟ ପୂରଣ କାର୍ଯ୍ୟରେ ସବୁଠାରୁ ବେଶି ଧୁରଂଧର ଥିଲା ସ୍ପେଶାଲ ପୁଲିସ ଏସ୍.ପି. ରାୟବାହାଦୁର ଭୂପେନ ଚାଟାର୍ଜି । ଦୈନିକ ସନ୍ଧ୍ୟାରେ ଜେଲକୁ ଯାଇ ଆଡ୍‌ଡ଼ା ମାରିବା ଏବଂ ସେହି ଆଡ୍‌ଡ଼ାର ସୁଯୋଗରେ ଅପେକ୍ଷାକୃତ ଦୁର୍ବଳମନା ବନ୍ଦୀମାନଙ୍କ ସହ ମିଶି ସେମାନଙ୍କଠାରୁ କିଛି ଗୁପ୍ତ କଥା ଆଦାୟକରିବା ଭୂପେନର ଥିଲା ଦୈନନ୍ଦିନ କାର୍ଯ୍ୟ । କ୍ରମେ ଏ ଆଡ୍‌ଡ଼ାଟା ଜମିଗଲା ଭୂପେନର ଏବଂ ଜଣାଗଲା ଯେ ସେ ଜାଲ ଭିତରେ କେତେଜଣ ସତକୁ ସତ ଛନ୍ଦି ହେବାକୁ ଯାଉଛନ୍ତି । ବିପ୍ଳବୀ ଅନନ୍ତ ଓ ପ୍ରମୋଦଙ୍କର ସେଥିପାଇଁ ଭାଳେଣିପଡ଼ିଗଲା । କିନ୍ତୁ ଭୂପେନ ଉପରକୁ କେବଳ ରବେଇଖବେଇ ହେବା ଛଡ଼ା ଅନ୍ୟ କାହାକୁ କୌଣସି ଉପାୟ ଦିଶିଲା ନାହିଁ । ଉଭୟ ଅନନ୍ତ ଓ ପ୍ରମୋଦ ଯଦିଓ ଏହାର ପ୍ରତିକାର କରିବାକୁ ସମର୍ଥ ଥିଲେ, କିନ୍ତୁ ସେମାନଙ୍କ ପାଖରେ କୌଣସି ଅସ୍ତ୍ର ନ ଥିଲା କିମ୍ବା ତାହା କେଉଁଠାରୁ ମିଳିବା ଆଶା ମଧ୍ୟ ନ ଥିଲା । କିନ୍ତୁ ଭୂପେନର ଦଲାଲୀ କ୍ରମେ ଧୈର୍ଯ୍ୟର ସୀମା ଅତିକ୍ରମ କରିବାକୁ ବସିଲା ଅଥୟ ହୋଇଗଲା ଅନନ୍ତ । ଛ'ଫୁଟ ଉଚ୍ଚ ଦେହରେ ଗୋଟିଏ ଅସୁରର ବଳ ଅନନ୍ତର । ସେଦିନ ସନ୍ଧ୍ୟାରେ ଭୂପେନ ତା'ର ନିତିଦିନିଆ ସନ୍ଧ୍ୟା ମଜଲିସ୍ ଜମେଇଦେଇ କ'ଣ ଫୁସ୍‌ଫାସ ଆରମ୍ଭକରିଦେବା ଦେଖି ଅନନ୍ତର ଦେହ ଯେମିତି ଶୀତେଇ ଉଠିଲା । ରାଗରେ ଦେହ ଯେମିତି କଣ୍ଟକଣ୍ଟ ଲାଗିଲା । କେତେଜଣ କଏଦୀ ବଗିଚାରେ କାମକରୁଥିଲେ କୋଡ଼ି କୋଦାଳ ଧରି । ଅନନ୍ତହରି ସେହିମାନଙ୍କ ମେଳିରେ ପଶିଗଲେ । ହାତରେ ପଡ଼ିଲା ଗୋଟାଏ ଶାବଳ । ସେଇ ଶାବଳଟା ପକେଇ ମାଡ଼ିବସିଲେ ଭୂପେନକୁ । ବେକ ଉପରେ ଶାବଳ ପକେଇ ଭୂପେନକୁ ଚିତ୍‌ପଟାଙ୍ଗ କରିଦେଲେ ଅନନ୍ତ । ଚିତ୍କାର ଟିକେ ବି କରିପାରିଲା ନାହିଁ ଭୂପେନ । ସଶସ୍ତ୍ର ଗାର୍ଡ଼ ଓ ଓ୍ୱାଡ଼ରମାନେ ସେଠାରେ ପହଞ୍ଚିବା ପୂର୍ବରୁ ଭୂପେନ ଶେଷହୋଇଯାଇଥିଲା । ଖାସ୍ ଜେଲ ଭିତରେ ଏବଂ ଏତେ ସଶସ୍ତ୍ର ପ୍ରହରୀ ଥିବା ସତ୍ତ୍ୱେ ଭୂପେନ ରକ୍ଷା ପାଇପାରିଲା ନାହିଁ । ୨୦ ବର୍ଷ ତଳେ କାନାଇ-ସତ୍ୟେନ ଅଲ୍ଲୀପୁର ଜେଲ ଭିତରେ ଆପ୍ରୁଭର ନରେନକୁ ଯେମିତି ଖତମକରିଥିଲେ ଏବଂ କେହି ନରେନ୍‌ର ପିଠିରେ ପଡ଼ିଲେ ନାହିଁ, ଭୂପେନବଧ ମଧ୍ୟ ଠିକ୍ ସେମିତି ହେଲା ।

ଲାଗିଗଲା ହୈ-ଚୈ ପାଟିଗୋଳ – ''ଗଲା ! ଧର, ଧର'' । ସରକାରଙ୍କ ମଗଜ ବି ଗରମ ହୋଇଗଲା । ମହାଧୁରନ୍ଧର ଅଫିସରକୁ ଜେଲଖାନା ଭିତରେ, ପୁଣି ସରକାରୀ ଶାବଳରେ ପିଟି ମାରିଦେଲେ କୟେଦୀମାନେ- ଏହା ଭୟଙ୍କର କଥା ! ''ହତ୍ୟାକାରୀକୁ

ଉପଯୁକ୍ତ ଦଣ୍ଡ ଦେବାକୁ ହେବ, ଯେପରିକି ଅନ୍ୟମାନଙ୍କ ପାଇଁ ତାହା ହେବ ଏକ ଚରମ ଶିକ୍ଷା !''

କିନ୍ତୁ ସାକ୍ଷୀ କାହିଁ ? କିଏ ଦେବ ବିପ୍ଳବୀମାନଙ୍କ ବିରୋଧରେ ପ୍ରମାଣ ? ସମସ୍ତେ ଦେଖିଛନ୍ତି ଆଖିରେ – ''କୟେଦୀ ଅନନ୍ତହରି ମିତ୍ର ଶାବଳ ପକେଇ ମାଡ଼ିବସିଥିଲେ ପୁଲିସ ସାହେବଙ୍କୁ ।''– କିନ୍ତୁ କେହି ଜଣେହେଲେ ସାକ୍ଷୀ ହେବାକୁ ରାଜି ହେଲେ ନାହିଁ । ସରକାରୀ ପକ୍ଷ ଥକିଗଲେଣି କୟେଦୀମାନଙ୍କୁ ଖୋସାମତ କରି, ଲୋଭ ଦେଖାଇ, କାହାକୁ ବା ଧମକେଇ । କିନ୍ତୁ ଜଣେହେଲେ କୟେଦୀ ସାକ୍ଷ୍ୟ ଦେବାକୁ ରାଜିହେଲେ ନାହିଁ । ତେଣୁ ସରକାର ଧରିଲେ ଜଣେ ଆଙ୍ଗ୍ଲୋ-ଇଣ୍ଡିଆନ ଗାର୍ଡ଼କୁ ।

ଆଙ୍ଗ୍ଲୋ-ଇଣ୍ଡିଆନ ଜାତି ଏକ ବିଚିତ୍ର ସୃଷ୍ଟି ଏ ଦେଶରେ । ଭାରତରେ ଚାକିରି କରୁଥିବା ଇଂରେଜ ସାହେବମାନଙ୍କ ଭିତରୁ ଯେଉଁମାନେ ସପରିବାର ଏଠାରେ ରହୁ ନ ଥିଲେ କିମ୍ବା ନିଜର ବିଲାତୀ ସ୍ତ୍ରୀମାନଙ୍କୁ ଏଠାକୁ ଆଣିବାକୁ ଚାହୁଁ ନ ଥିଲେ ସେମାନେ ଭାରତୀୟ ପତ୍ନୀ ଗ୍ରହଣ କରୁଥିଲେ । ଇଂରେଜମାନଙ୍କ ସ୍ୱାର୍ଥ ପ୍ରତି ଅଧିକ ସମ୍ବେଦନଶୀଳ ସେମାନେ ଯେ କେବଳ ରଙ୍ଗରେ ଭାରତୀୟମାନଙ୍କ ଅପେକ୍ଷା ଅଧିକ ଗୋରା ଥିଲେ ତାହା ନୁହେଁ, ଏମାନଙ୍କର ଢଙ୍ଗରଙ୍ଗ, ଚାଲିଚଳନ, ଏପରିକି ଭାଷା ମଧ୍ୟ ଇଂରାଜୀ ହୋଇଗଲା । ସେଥିପାଇଁ ସେମାନଙ୍କ ମିଜାଜ ମଧ୍ୟ ସାହେବୀ ମିଜାଜ ହୋଇଗଲା । ତେଣୁ ଭାରତ ମାଟିରେ ଭାରତୀୟ ମା'ଠାରୁ ଜନ୍ମହୋଇ ସୁଦ୍ଧା ସେମାନଙ୍କ ମାନସିକ ଗଠନ, ଶିକ୍ଷା, ସଂସ୍କୃତି, ଭାଷା, ଚାଲିଚଳନ ଓ ରୁଚି ହେଲା ସଂପୂର୍ଣ୍ଣ ବିଲାତୀ, ଫଳରେ ମନୋଭାବ ହେଲା ସାମ୍ରାଜ୍ୟବାଦୀ । ସେମାନେ ସ୍ୱଭାବତଃ ଜାତୀୟ ଆନ୍ଦୋଳନର ବିରୋଧ କରୁଥିଲେ ଓ ଇଂରେଜ ଶାସନର ସମର୍ଥକ ଥିଲେ । କିନ୍ତୁ ତା' ବୋଲି ଯେ ଜଣେ ଜଣେ ଜାତୀୟବାଦୀ ନ ଥିଲେ, ତାହା କୁହାଯାଇ ପାରିବ ନାହିଁ ।

ମିଷ୍ଟର ସ୍ମିଥ୍ ଶେଷୋକ୍ତ ଶ୍ରେଣୀର ଜଣେ ଆଙ୍ଗ୍ଲୋ-ଇଣ୍ଡିଆନ ଥିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନ ପ୍ରତି ତାଙ୍କର ଅସୀମ ଶ୍ରଦ୍ଧା ଥିଲା ଓ ବିପ୍ଳବୀମାନଙ୍କ ପ୍ରତି ଥିଲା ଅସରନ୍ତି ସ୍ନେହ ଓ ଭକ୍ତି । ସୁତରାଂ ବିପ୍ଳବୀ ଅନନ୍ତହରିଙ୍କ ବିରୋଧରେ ସାକ୍ଷ୍ୟ ଦେବାକୁ ଯେତେବେଳେ ତାଙ୍କୁ କୁହାଗଲା ସେ ଗୋଟିଏ ସଂକ୍ଷେପ 'ନୋ' (No) ଉତ୍ତର ଦେଲେ । ବହୁତ ଚେଷ୍ଟା କରାଗଲା ତାଙ୍କୁ ପ୍ରବର୍ତ୍ତାଇବାକୁ, ଏପରିକି ଚାକିରିରେ ପ୍ରମୋସନ ବା ଭଲ ଚାକିରି ଲୋଭ ମଧ ଦେଖାଗଲା ତାଙ୍କୁ । କିନ୍ତୁ ମିଷ୍ଟର ସ୍ମିଥ୍ ଅବିଚଳିତ ଓ ଅପରିବର୍ତ୍ତିତ । ସେହି ଗୋଟିଏ ମାତ୍ର ଶବ୍ଦରେ ତାଙ୍କର ଉତ୍ତର – 'ନୋ, ନୋ, ନୋ' (No, No, No)

ବିପ୍ଳବୀମହଲ ସ୍ମିଥ୍‌ଙ୍କର ଏହି ଦୃଢ଼ତା ଦେଖି ଖୁସିହୋଇଗଲେ । ସରକାରୀ ପକ୍ଷ ବି ସମାନ ପରିମାଣରେ ସ୍ତମ୍ଭିତ । ''ଆମର ନିଜର ଲୋକ ହୋଇ ସ୍ମିଥ୍ ଏତେ ଅବାଧ, ଆଚ୍ଛା ! ନଈ ଭିତରେ ଘରକରି କୁମ୍ଭୀର ସାଙ୍ଗରେ ତାମସା !''

ସୁଭାଷ ସ୍ମିଥ୍‌ଙ୍କର ଏହି ସ୍ୱଦେଶପ୍ରେମରେ ବିଶେଷ ମୁଗ୍ଧହୋଇଗଲେ । ଖବର ଦେଲେ ସ୍ମିଥ୍‌ଙ୍କ ପାଖକୁ, ''ଧନ୍ୟବାଦ, ଶତ ଧନ୍ୟବାଦ, ଭୟ ନାହିଁ ବନ୍ଧୁ, ଯଦି ସରକାର ସତକୁସତ ଆପଣଙ୍କୁ ଚାକିରିରୁ ବାହାରକରିଦିଏ, ସାରା ଦେଶ ଆପଣଙ୍କ ପଛରେ ଛିଡ଼ାହେବ । କଲିକତା 'କର୍ପୋରେସନ'ର ଦ୍ୱାର ଆପଣଙ୍କ ପାଇଁ ଚବିଶ ଘଣ୍ଟା ଉନ୍ମୁକ୍ତ । ଚାକିରିର ଅଭାବ ନାହିଁ ।''

ଯାହାହେଉ, ପୁଲିସ ବହୁ ଯୋଗାଡ଼ଯନ୍ତ୍ର କରି ଜେଲ ଭିତରେ କାମକରୁଥିବା କେତେଜଣ କୁଲିଙ୍କୁ ଧରି ମକଦ୍ଦମାର ସାକ୍ଷୀ ଯୋଗାଡ଼ କରିନେଲା ଏବଂ ସେହିମାନଙ୍କ ସାକ୍ଷ୍ୟବଳରେ ୧୯୨୬ ମସିହା ସେପ୍‌ଟେମ୍ବର ୨୬ ତାରିଖରେ ବିପ୍ଲବୀ ଅନନ୍ତହରି ମିତ୍ର ଓ ପ୍ରମୋଦରଞ୍ଜନ ଚୌଧୁରୀଙ୍କୁ ଫାଶୀଦଣ୍ଡ ହେଲା । ଅସୀମ ସାହସିକତାର ଏକ ଜ୍ୱଳନ୍ତ ଉଦାହରଣ ପ୍ରତିଷ୍ଠାକରି ଅନନ୍ତ ଓ ପ୍ରମୋଦ ମହାନନ୍ଦରେ ଫାଶୀମଞ୍ଚକୁ ଆରୋହଣକଲେ ।

**କାକୋରୀ ଟ୍ରେନ୍ ଲୁଣ୍ଠନ :**

'କାକୋରୀ ଟ୍ରେନ୍ ଲୁଣ୍ଠନ' ଘଟଣା ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମର ସମ୍ଭବତଃ ସବୁଠାରୁ କମ୍ ପ୍ରଚାରିତ ଏକ ଅଭିଯାନ । କମ୍ ପ୍ରଚାରିତ ହେବାର ମୁଖ୍ୟ କାରଣ- ସେତେବେଳେ ମୁକ୍ତି-ସଂଗ୍ରାମର ପ୍ରାଣକେନ୍ଦ୍ର ବଙ୍ଗଦେଶରେ ବିପ୍ଲବୀମାନଙ୍କ ଭିତରେ ଏକ ବିଚାରବିଭ୍ରାଟ ସୃଷ୍ଟିହୋଇଥିଲା । କେତେକ ନେତୃସ୍ଥାନୀୟ ବିପ୍ଲବୀ ଭାବୁଥିଲେ ଯେ ଏକ ସଫଳ ସଶସ୍ତ୍ର ମୁକ୍ତିସଂଗ୍ରାମ ପାଇଁ ଯେଉଁ ଜନସଂଗଠନ ଓ ବ୍ୟାପକ ଜନସଂର୍ପକ ପ୍ରତିଷ୍ଠାର ଆବଶ୍ୟକତା ସର୍ବାଧିକ, ତାହା ନ ହେବା ପର୍ଯ୍ୟନ୍ତ ସମସ୍ତ ପ୍ରକାର ବିପ୍ଲବାତ୍ମକ କାର୍ଯ୍ୟକୁ ସ୍ଥଗିତ ରଖାଯିବା ଉଚିତ ଏବଂ ଏହି ଗଣସଂଗଠନ ନିର୍ମାଣ ପାଇଁ କଂଗ୍ରେସ ଦଳକୁ ବ୍ୟବହାର କରାଯିବା ଉଚିତ । ଅର୍ଥାତ ସବୁ ସଶସ୍ତ୍ର ବିପ୍ଲବୀ କଂଗ୍ରେସ ଭିତରେ ପ୍ରବେଶକରି ଗଣସଂଗଠନକୁ ମଜବୁତ୍ କରନ୍ତୁ । ପ୍ରବୀଣମାନଙ୍କର ଏହି ଅଭିମତକୁ କିନ୍ତୁ ତରୁଣ ଗୋଷ୍ଠୀ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ସେମାନଙ୍କ ବିଚାରରେ ବିପ୍ଳବୀର କୌଣସି ଛୁଟି ରହି ନ ପାରେ, ଏହା ଏକ ଅବିରତ ପ୍ରବାହିତ ଧାରା । ସୁତରାଂ ଭବିଷ୍ୟତରେ ବ୍ୟାପକତର ଆନ୍ଦୋଳନ ଉଦ୍ଦେଶ୍ୟରେ ବର୍ତ୍ତମାନର ବିଦ୍ରୋହକୁ ବନ୍ଦକରିବାର କୌଣସି ଯୌକ୍ତିକତା ନାହିଁ । ବରଂ ଆଗାମୀ ବିପ୍ଳବର ପ୍ରସ୍ତୁତି ପାଇଁ ବର୍ତ୍ତମାନର ବିଦ୍ରୋହ ଚାଲୁରହିବା ଏକାନ୍ତ ଆବଶ୍ୟକ । ବିଶେଷତଃ ଦୁଃସାହସିକ ବୈପ୍ଲବିକ ଅଭିଯାନ ଓ ଚରମ ଆତ୍ମତ୍ୟାଗର ଯେତେ ଅଧିକ ଦୃଷ୍ଟାନ୍ତ ସୃଷ୍ଟି ହେବ, ତାହା ଭବିଷ୍ୟତରେ ବିପ୍ଳବୀମାନଙ୍କୁ ସେତେ ଅଧିକ ପ୍ରେରଣା ପ୍ରଦାନକରିବ ଏବଂ ଆତ୍ମବଳିଦାନର ମହାନ୍ କାର୍ଯ୍ୟରେ ସେମାନେ ସେତେ ଅଧିକ ଉଦ୍‌ବୁଦ୍ଧ ହେବେ । ସେ ଦୃଷ୍ଟିରୁ 'କାକୋରୀ ଟ୍ରେନ୍ ଲୁଣ୍ଠନ' ସଶସ୍ତ୍ର ମୁକ୍ତି-ସଂଗ୍ରାମ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଅଭିଯାନ ।

ଯୁକ୍ତପ୍ରଦେଶ (ବର୍ତ୍ତମାନ ଉତ୍ତରପ୍ରଦେଶ)ର କାକୋରୀ ରେଳଷ୍ଟେସନରେ ଏହି 'ଡକାୟତି' ହୋଇଥିଲା । ଏହା ଏକ ସର୍ବାଧିକ ଦୁଃସାହସିକ 'ସ୍ୱଦେଶୀ ଡକାୟତି' । କାରଣ ଏଥିରେ ସଂପୃକ୍ତ ଥିଲେ ସେ ଯୁଗର ଚାରିଜଣ ବିଖ୍ୟାତ ବିପ୍ଳବୀ ରାମପ୍ରସାଦ ବିସମିଲ୍, ରାଜେନ ଲାହିଡ଼ି, ରୋସନ ସିଂହ, ଆସାଫକୁଲା ଓ ଅନ୍ୟ ୧୨ ଜଣ । ୧୯୨୪ରେ ବାମରାଉଲିରେ ଗୋଟିଏ ଓ ୧୯୨୫ରେ ବିଚପୁରି ଓ ଦ୍ୱାରକାପୁରରେ ଦୁଇଟି ଡକାୟତି ଏହି ସଂଗଠନଦ୍ୱାରା କରାଯାଇଥିଲା ।

୧୯୨୫ ମସିହା ଅଗଷ୍ଟ ୯ ତାରିଖରେ ଲକ୍ଷ୍ନୌଠାରୁ ପ୍ରାୟ ଚଉଦ କିଲୋମିଟର ଦୂରରେ ଅବସ୍ଥିତ କାକୋରୀ ଓ ଆଲମନଗର ମଝିରେ ରାତି ଦଶଟାବେଳେ ଚେନ୍ ଟାଣି ସେମାନେ ଗାଡ଼ିକୁ ଅଟକାଇଦେଇଥିଲେ । କିନ୍ତୁ ଅନ୍ୟ କୌଣସି ଯାତ୍ରୀଙ୍କୁ ହଇରାଣନ କରି ଗାର୍ଡ଼ ଡବାରେ ଥିବା ସରକାରୀ ଟ୍ରେଜରୀ ଲୁଟ୍‌କରିନେଲେ । ଗାର୍ଡ଼ ଓ ଜଣେ ଗୁର୍ଖା ସିପାହି ସେହି ଧସ୍ତାଧସ୍ତିରେ ପ୍ରାଣହରାଇଥିଲେ ଏବଂ ଝରକାରେ ବାହାରକୁ ମୁଣ୍ଡ କାଢ଼ିଥିବା ଜନୈକ ଯାତ୍ରୀ ସାମାନ୍ୟ ଆହତ ହୋଇଥିଲେ । ଲୁଣ୍ଠିତ ଟଙ୍କାର ପରିମାଣ ଥିଲା ଏକୋଇଶ ହଜାର । ରେଳରେ ଥିବା ଯାତ୍ରୀମାନେ ଅନତି ବିଳମ୍ବେ ବୁଝିପାରିଥିଲେ ଯେ ଏହା ଏକ ସାଧାରଣ ଡକାୟତି ନୁହେଁ, ସୁତରାଂ ସେମାନେ ସଂପୂର୍ଣ୍ଣ ନିରପେକ୍ଷ ରହିଥିଲେ । ସରକାରୀ ହିସାବରେ ଏକୋଇଶ ହଜାର ଟଙ୍କା ଖୁବ୍ କମ୍ ହୋଇଥିଲେ ସୁଦ୍ଧା ବିପ୍ଳବୀ ଶିବିରରେ ଏହି ଟଙ୍କାର ବହୁତ ମୂଲ୍ୟ ଥିଲା । ସେଥିପାଇଁ ବିପ୍ଳବୀମାନଙ୍କୁ ଧରିବାପାଇଁ ସରକାରୀ କଳ ବିଶେଷ ତତ୍ପର ହୋଇପଡ଼ିଥିଲେ ଏବଂ ଶେଷରେ ଚାରିଜଣଯାକ ବିପ୍ଳବୀ ଆରେଷ୍ଟହେଲେ । 'କାକୋରୀ ଷଡ଼ଯନ୍ତ୍ର ମକଦ୍ଦମା' ଚାଲୁହୋଇ ୧୯୨୭ ମସିହା ଏପ୍ରିଲ ୬ ତାରିଖରେ ସେମାନଙ୍କୁ ଫାଶୀଦଣ୍ଡ ଦିଆଗଲା ।

ପ୍ରତ୍ୟେକ ବିପ୍ଳବୀର କ୍ଷେତ୍ରରେ ଯାହା ହୁଏ, ଏଠାରେ ମଧ ସେୟା ହେଲା । ସମସ୍ତେ ଅମ୍ଳାନ ବଦନରେ ଫାଶୀଦଣ୍ଡ ଗ୍ରହଣକଲେ; କରିବାର କଥା, କାରଣ ସେମାନେ କିଛି ସାଧାରଣ ଖୁଣୀ ଆସାମୀ ନୁହନ୍ତି ଯେ ମୃତ୍ୟୁଦଣ୍ଡର ଭୟରେ ସେମାନେ ଆତଙ୍କିତ ହୋଇପଡ଼ିବେ । ସେମାନେ ସଂସାରରେ ଭୂମିଷ୍ଠ ହେବା ମୁହୂର୍ତ୍ତରୁହିଁ ଦେଶମାତୃକାର ମୁକ୍ତିପାଇଁ ଉତ୍ସର୍ଗୀକୃତ । ସେମାନଙ୍କର ଏହି ଆତ୍ମଦାନରେ ଯଦି ପରାଧୀନ ଜୀବନର ଶୃଙ୍ଖଳ ସାମାନ୍ୟ ଶିଥିଳ ହୋଇପାରେ, ତାହା ତ ସେମାନଙ୍କର ଚରମ ଓ ପରମ ସୌଭାଗ୍ୟ ! ସୁତରାଂ ସେମାନଙ୍କର ଏ ମୃତ୍ୟୁ ସାର୍ଥକତାର ଅମୂଲ୍ୟ ରତ୍ନରେ ଅଳଙ୍କୃତ ।

ଫାଶୀ ପାଇବାର ଠିକ୍ ପୂର୍ବଦିନ ରାମପ୍ରସାଦଙ୍କୁ ଦେଖିବାକୁ ଆସିଥିଲେ ତାଙ୍କର ସ୍ନେହମୟୀ ଗର୍ଭଧାରିଣୀ ମାଆ ଓ ପୁତ୍ରବତ୍ସଳ ପିତା । ଏକମାତ୍ର ପୁତ୍ର ଆଉ କେଇ ଘଣ୍ଟା ପରେ ଫାଶୀ କାଠରେ ଝୁଲିବ – ସୁତରାଂ ଜନକ-ଜନନୀ ନିର୍ବାକ ଓ ନିସ୍ପନ୍ଦ ଭାବରେ ସନ୍ତାନକୁ କେବଳ ଅନେଇବା ଛଡ଼ା ଆଉ କ'ଣ କରିପାରନ୍ତେ ? ଆଖି ସଜଳ ହେବା ସ୍ୱାଭାବିକ । କିନ୍ତୁ ଏଭଳି ଏକ ହୃଦୟବିଦାରକ ଦୁଃଖ-ଶୋକରେ ଆଖିର

ଜଳ ମଧ୍ୟ ଶୁଷ୍କହୋଇଯାଏ ।

ମା' ଦେଖିଲେ – ପୁତ୍ରର ଆଖି ଅଶ୍ରୁସିକ୍ତ । ହୃଦୟ ତାଙ୍କର ଦୁଃଖରେ ମ୍ରିୟମାଣ ହୋଇଗଲା । ମନରେ ଭରିଗଲା ନାନା ଆଶଙ୍କା – ''ପୁଅ କ'ଣ ତା'ହେଲେ ମୃତ୍ୟୁଚିନ୍ତାରେ ତ୍ରସ୍ତ ! ଏତେ ଦିନର ସାଧନା, ଏତେ ଅନନ୍ୟ ତପସ୍ୟା, ଜନ୍ମଭୂମି ପାଇଁ ପ୍ରାଣୋତ୍ସର୍ଗ କରିବାର ଦୁର୍ଜ୍ଜୟ ପ୍ରତିଜ୍ଞା କ'ଣ ଶେଷରେ ବ୍ୟର୍ଥ ହେଲା ତା'ର ? ମୃତ୍ୟୁ କ'ଣ ତାକୁ ସତରେ ଏଭଳି ଶୋକାପ୍ଲୁତ କରିଦେବ ?'' ଏମିତି ବହୁ ଦୁଶ୍ଚିନ୍ତା ଜନନୀର କୋମଳ ହୃଦୟକୁ ଆଲୋଡ଼ିତକଲା । ପୁଅକୁ ବୁଝାଇ କହିଲେ ରାମପ୍ରସାଦଙ୍କ ଜନନୀ, ''ବାପ ରାମପ୍ରସାଦ, ତୁ କ'ଣ ମୃତ୍ୟୁକୁ ଭୟ କରୁଛୁ ? ମୃତ୍ୟୁ ତ ଜୀବନର ଏକ ଅବଶ୍ୟମ୍ଭାବୀ ପରଣତି । ନୂତନ ଓ ସୁନ୍ଦରତର ଜୀବନପ୍ରାପ୍ତି ପାଇଁ ଏହା ତ ଏକମାତ୍ର ପ୍ରବେଶ ପଥ । ତୁ ଏହି ମୃତ୍ୟୁକୁ ସେହି ଦୃଷ୍ଟିରେ ଗ୍ରହଣ କର ବାପା । ତୁ କେତେଦିନ ଏ ସଂସାରରେ ରହିଲୁ ସେସ ବଡ଼ କଥା ନୁହେଁ । ବଡ଼ କଥା ହେଉଛି – ତୁ ସେହି ସ୍ୱଳ୍ପ ଜୀବନକାଳ କିଭଳି ଭାବରେ କଟାଇଛୁ । ତୋର ଏହି କ୍ଷଣସ୍ଥାୟୀ ଜୀବନଯାତ୍ରା, ତୁଚ୍ଛ ସାଂସାରିକ ଜଞ୍ଜାଳ ଓ ହୀନ ସ୍ୱାର୍ଥପର ଚିନ୍ତାରେ ଯଦି ଭାରାକ୍ରାନ୍ତ ହୋଇଥାଆନ୍ତା କିମ୍ୱା ସଂକୀର୍ଣ୍ଣ ପାରିବାରିକ ମୋହ ଓ ଆସକ୍ତିରେ ଯଦି ତାହା କଳୁଷିତ ହୋଇଥାନ୍ତା, ତେବେ ମୃତ୍ୟୁ ତୋ' ନିକଟରେ ପ୍ରତୀୟମାନ ହୋଇଥା'ନ୍ତା ଏକ ଭୟାବହ ଲୋମହର୍ଷଣକାରୀ ଦଣ୍ଡରୂପେ । କିନ୍ତୁ ତୋହର ଜୀବନ ତ ଦେଶମାତାର ମହାନ୍ ପୂଜାରେ ନୈବେଦ୍ୟରୂପେ ଉତ୍ସର୍ଗୀକୃତ । ସୁତରାଂ ମୃତ୍ୟୁକୁ ସେହି ଦୃଷ୍ଟିରେହିଁ ଆଲିଙ୍ଗନ କର ବାବା । ମହାପଥର ଯାତ୍ରୀ ତୁ । ସେହି ପଥରେ ଏକ ବିନ୍ଦୁ ଲୋତକପାତ ମଧ୍ୟ ତାକୁ କର୍ଦ୍ଦମାକ୍ତ କରିଦେବ ।''

ରାମପ୍ରସାଦ ଭଳି ରତ୍ନକୁ ଜନ୍ମଦେଇଥିବା ମା' ସେ, ସୁତରାଂ ମୃତ୍ୟୁ-ପଥଯାତ୍ରୀ ପୁତ୍ରକୁ ଏହା ତାଙ୍କର ଯଥାର୍ଥ ଓ ସାର୍ଥକ ଉପଦେଶ । ମୃତ୍ୟୁଞ୍ଜୟୀ ରାମପ୍ରସାଦ ଏହାର କି ଉତ୍ତର ଦେଲେ ?

ସେ ଭାବୁଛନ୍ତି, ''ପିତା-ମାତାଙ୍କର ଏକମାତ୍ର ସନ୍ତାନ ମୁଁ । କିନ୍ତୁ ବୃଦ୍ଧ ପିତା-ମାତାଙ୍କର ସେବା କରିବା ପରିବର୍ତ୍ତେ ତାହା ଦେଶ ଓ ଦଶର ସେବା ପାଇଁ ଉତ୍ସର୍ଗୀକୃତ ହେଲା । ମୋର ଏହି ଅକାଳବିୟୋଗ ପିତା-ମାତାଙ୍କୁ ଦେବ ଅସହନୀୟ ଯନ୍ତ୍ରଣା ।'' ଏହି ଦୁଶ୍ଚିନ୍ତାରେ ଓ ବିଚ୍ଛେଦବିଧୁରା ଜନନୀଙ୍କ ଦୁଃଖରେ ସମବେଦନା ଅନୁଭବକରି ରାମପ୍ରସାଦଙ୍କ ଚକ୍ଷୁ ସେଦିନ ହୋଇଥିଲା ଲୋତକାର୍ଦ୍ର - ମୃତ୍ୟୁଭୟକାତରତା ସେ ଲୋତକର କାରଣ ନୁହେଁ । ସୁତରାଂ ରାମପ୍ରସାଦ ମା'ଙ୍କୁ ଆଶ୍ୱାସନା ଦେଇ କହିଲେ, ''ମା'' ମୋ ପାଇଁ ଆଦୌ ବ୍ୟସ୍ତହୁଅନା । ଏ ମୃତ୍ୟୁକୁ ମୁଁ ପରମ ଆନନ୍ଦରେ ଭଗବାନ୍‌ଙ୍କର ପରମ ଆଶୀର୍ବାଦରୂପେ ଗ୍ରହଣ କରିବାକୁ ଯାଉଛି । ତୁମେ ସେ ବିଷୟରେ ନିଶ୍ଚିନ୍ତ ହୁଅ ମା' । ମୁଁ କେବଳ ତୁମର ଆସନ୍ନ ଦୁଃଖ କଥା ଚିନ୍ତାକରି ଟିକେ ଦୁର୍ବଳତା ଅନୁଭବ କରିଥିଲି । ତୁମର ଆଶୀର୍ବାଦରେ ମୁଁ ମୃତ୍ୟୁକୁ ଅମ୍ଳାନ ଓ ସହାସ୍ୟ

ବନ୍ଦନରେ ଗ୍ରହଣ କରୁଛି ।'' ଧନ୍ୟ ଜନନୀ ! ଧନ୍ୟ ତୁମର ପୁତ୍ର ! ତୁମର ଏହି ମହନୀୟ ଆଦର୍ଶ, ଧୈର୍ଯ୍ୟ ଓ ଦୃଢ଼ ମନୋବଳ ଯୁଗ ଯୁଗ ଧରି ସବୁ ଦେଶରେ ମୁକ୍ତି-ସଂଗ୍ରାମୀଙ୍କୁ ଯେ ଉଦ୍‌ବୁଦ୍ଧ କରିବ ଏଥିରେ ସନ୍ଦେହ ନାହିଁ ।

ପିତା-ମାତା ଜେଲଖାନାରୁ ବିଦାୟନେବାର ପରଦିନ ଆରମ୍ଭହେଲା ରାମପ୍ରସାଦଙ୍କ ମହାଯାତ୍ରା ! କିନ୍ତୁ ବିପ୍ଳବୀ ରାମପ୍ରସାଦ ଯେ ଏହି ମହାଯାତ୍ରାକୁ ଖାଲି ଜୀବନର ଏକ ଅବଶ୍ୟମ୍ଭାବୀ ପରିଣତି ରୂପେ ଗ୍ରହଣକଲେ ତା' ନୁହେଁ, ସଙ୍ଗୀତ-ରସିକ କବି ରାମପ୍ରସାଦ ଆଉଟିକେ ଆଗେଇଯାଇ ଏହାକୁ ଏକାବେଳକେ ସଙ୍ଗୀତମୟ କରିଦେଲେ । ପ୍ରାଣଦଣ୍ଡରେ ଦଣ୍ଡିତ କୌଣସି ବ୍ୟକ୍ତି ଫାଶୀ ମଞ୍ଚକୁ ଯିବା ପୂର୍ବରୁ ଏପରିକି ଫାଶୀଖୁଣ୍ଟରେ ଝୁଲିବାବେଳେ ବି ଏଭଳି ରସିକତା କରିପାରେ – ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ସ୍ୱରଚିତ ସଙ୍ଗୀତର ମଧୁର ମୂର୍ଚ୍ଛନା ସୁକଣ୍ଠଗାୟକ ରାମପ୍ରସାଦ ବିସମିଲ୍ଲଙ୍କଦ୍ୱାରା ଉତ୍ତରପ୍ରଦେଶ ଜେଲର ଆକାଶ ବତାସକୁ ସେଦିନ କରିଦେଲା ସ୍ପନ୍ଦିତ ଓ ଆମୋଦିତ ଏବଂ ତାଙ୍କର ଉତ୍ତରସାଧକଙ୍କ କଣ୍ଠରେ ଯାହା ଭରିଦେଲା, କବିଙ୍କ ଭାଷାରେ – ''ଖାଲି ଶୋକର ସିତାର ନୁହେଁ, ଅଟେ ତାହା ଝଡ଼ର ଗିଟାର ।''

ସାନ୍ତ୍ରୀ-ପହରାଦାର ପରିବେଷ୍ଟିତ ହୋଇ ଫାଶୀମଞ୍ଚକୁ ଗଲାବେଳେ ବିପ୍ଳବୀ କଣ୍ଠରେ ସୁଲଳିତ ଝଙ୍କାର – ମୃତ୍ୟୁକୁ ସଖାରୂପେ ବନ୍ଧୁରୂପେ ସ୍ୱାଗତ ଜଣାଇବାର ଅନ୍ତିମ ଅଭିଳାଷ-

''ଅବନା ଆଗଲେ ଓୟଲିଲେ ହ୍ୟାୟ ଆଉର,
ନା ଅରମାନୋଙ୍କୀ ଭିଡ଼,
ସିରଫ ମର୍ ମିଟନେଙ୍କୀ ହସରତ୍ ଆପ୍,
ଦିଲଏ ବିସମିଲ୍ ମେଁ ହ୍ୟାୟ ।

(ଏବେ ରହିଯାଇଛି କେବଳ ମାତ୍ର ପୂର୍ବର ସେ କଳ-ଗୁଞ୍ଜନ, ମେଣ୍ଟିଯାଇଛି ଜୀବନର ସମସ୍ତ ବାସନା । ବିସମିଲ୍ଲ ହୃଦୟରେ ବର୍ତ୍ତମାନ ବିରାଜିତ କେବଳ ମୃତ୍ୟୁକୁ ବରଣ କରିବାର ବାସନା ।)

ସେ ସଙ୍ଗୀତରେ ଶୋକ, ଭୟ ବା ଆଶଙ୍କାର ସାମାନ୍ୟତମ ଛାୟାସୁଦ୍ଧା ନାହିଁ ଓ ଗୀତର ପ୍ରତି ପଦରେ ଭରିରହିଛି ଜୀବନର ଅମର ନାନ୍ଦୀପାଠ ।

ଏଭଳି ଏକ ଅନିର୍ବଚନୀୟ ଦୃଶ୍ୟ, ଅଚିନ୍ତନୀୟ ପରିବେଶ ଏବଂ ମୃତ୍ୟୁଭୟହୀନ ତପସ୍ୱୀର ଏଭଳି ଏକ ଅନ୍ତିମ ଅଭିଳାଷ ଓ ମୃତ୍ୟୁକୁ ଅବଜ୍ଞା କରିବାର ସେ ଦୁର୍ଜ୍ଜୟପ୍ରତିଜ୍ଞା ଏବଂ ସେ ଅଭାବନୀୟ ଚାଲେଞ୍ଜ, ଜେଲର ସାନ୍ତ୍ରୀ ପହରାଦାର, ସର୍ଜେଣ୍ଟ, ଜମାଦାର, ଅଫିସର ଓ ଅନ୍ୟାନ୍ୟ ବିଚାରାଧୀନ ବନ୍ଦୀମାନଙ୍କ ମନରେ ଆଣିଦେଲା ଅବର୍ଣ୍ଣନୀୟ ଏକ ଅନୁଭୂତି, କମ୍ପନ ଓ ସ୍ପନ୍ଦନ । ସେମାନେ ବିସ୍ମୟବିସ୍ଫାରିତ ଦୃଷ୍ଟିରେ ଚାହିଁରହିଲେ ମୃତ୍ୟୁଞ୍ଜୟୀ ବିସମିଲ୍ଲଙ୍କ ଆଡ଼କୁ । ମଝିରେ ମଝିରେ ମୁକ୍ତି -ସଂଗ୍ରାମର ମାତୃମନ୍ତ୍ର 'ବନ୍ଦେ

ମାତରମ୍' ସ୍ଲୋଗାନ ବିସମିଲ୍ଲଙ୍କ ସଂଗୀତକୁ କରିଦେଉଥାଏ ଆହୁରି ରସାଣିତ, ଆହୁରି ମନୋମୁଗ୍ଧକର ଏବଂ ଜେଲ କର୍ମଚାରୀଙ୍କର ବିସ୍ମୟ ଓ ବିଭୋରତା ବଢ଼ିଯାଉଥାଏ ବହୁଗୁଣରେ ।

ଫାଶୀମଞ୍ଚକୁ ଉଠିବାକୁ ଗଲାବେଳେ ବିସମିଲ୍ଲଙ୍କ କଣ୍ଠସ୍ୱର ହୋଇଉଠିଲା ଆହୁରି ଗମ୍ଭୀର, ଉଦାତ୍ତ ଓ ଆବେଗମୟ । ଫାଶୀ ରଜ୍ଜୁରେ ମହମବୋଳି ଚିକ୍କଣ କରୁଥିବା ଘାତକ ଜଣକ ମଧ୍ୟ ଯେମିତି ଅଭିଭୂତ ହୋଇପଡୁଥିଲା ଏବଂ ଏଭଳି ଏକ ହାସ୍ୟମୟ, ସଙ୍ଗୀତମୟ କିଶୋରର କମନୀୟ କଣ୍ଠକୁ ରୁକ୍ଷ ମାନିଲା ରଜ୍ଜୁରେ ନିର୍ମମ ଓ ନିଷ୍ଠୁର ଭାବରେ କିପରି ବେଷ୍ଟନକରିବ, ତାହା ଠିକ୍‌କରିନପାରି ସେ ଯେମିତି ଇତସ୍ତତଃ ହୋଇପଡୁଥିଲା ।

ପୁଣି ବିସମିଲ୍ଲ ଗାଇଲେ ଗୀତର ପ୍ରଥମ ପଦଟି —

''ସର୍ ଫରୋଶୀକି ତମନ୍ନା ଅବହମାରେ ଦୀଲମେଁ ହ୍ୟାୟ,
ଦେଖନା ହ୍ୟାୟ ଜୋର କିତନା ବାଜୁଏ କାତିଲ ମେଁ ହ୍ୟାୟ ।''

(ମୃତ୍ୟୁକୁ ଆଲିଙ୍ଗନ କରିବାର ଭାବନା ମୋ ମନକୁ ଉଦ୍‌ବେଳିତ କରୁଛି । ଘାତକର ବାହୁରେ କେତେ ଶକ୍ତି ଅଛି ତାହା ମୁଁ ପରୀକ୍ଷା କରିବାକୁ ଚାହେଁ ।)

ଖାଣ୍ଟି ଉର୍ଦ୍ଦୁଭାଷାରେ ରଚିତ ଏ ସଂଗୀତଟିର ଆକ୍ଷରିକ ଅର୍ଥ ଉର୍ଦ୍ଦୁ ଅନଭିଜ୍ଞ ଶ୍ରୋତା ନିକଟରେ ଦୁର୍ବୋଧ୍ୟ ହେଲେ ସୁଦ୍ଧା, ଏହାର ଅନ୍ତର୍ନିହିତ ଚିନ୍ତାଧାରା, ଏହାର ସୁଲଳିତ ମୂର୍ଚ୍ଛନା, ଆଗ୍ନେୟ ଆହ୍ୱାନ ଓ ଦୁର୍ଜ୍ଜୟ ପ୍ରତିଜ୍ଞା ଦେଶ-କାଳ-ପାତ୍ରର ଅପେକ୍ଷା ରଖେନା । ସବୁ ଦେଶର, ସବୁ ଜାତିର ଏବଂ ସବୁ ଭାଷାଭାଷୀ ବିପ୍ଳବୀ ଏ ସଙ୍ଗୀତରୁ ପାଇଲା ତା'ର ଅନ୍ତରର ଗୋପନ ପ୍ରଶ୍ନର ଉତ୍ତର, ଚିରନ୍ତନ ମୃତ୍ୟୁ ସମସ୍ୟାର ଏକ ସଫଳ ସମାଧାନ ।

ବିସମିଲ୍ଲ ହସି ହସି ଫାଶୀ ରଜ୍ଜୁକୁ ଚୁମ୍ବନ ଦେଲେ, କିନ୍ତୁ ଶେଷପର୍ଯ୍ୟନ୍ତ ତାଙ୍କ ମୁହଁରେ ଲାଗିରହିଥିଲା ସେହି ଅମର ସଙ୍ଗୀତ— ସିରଫ୍ ମର୍ ମିଟନକି ହସରତ୍ ଆଜ୍, ଦିଲେ ଏ ବିସମିଲ୍ଲ...... ।

ଗୋଣ୍ଡା ଜେଲରେ ଫାଶୀହେଲା ଅନ୍ୟତମ ବିପ୍ଳବୀ ରାଜେନ ଲାହିଡ଼ିଙ୍କର ୧୯୨୭ ମସିହା ଡିସେମ୍ବର ୧୭ରେ । ସେ ରାମପ୍ରସାଦଙ୍କ ଭଳି ସଙ୍ଗୀତଜ୍ଞ ନ ଥିଲେ ସୁଦ୍ଧା ନିର୍ଭୀକତା ଓ ମୃତ୍ୟୁଭୟହୀନତାରେ ସେ ତାଙ୍କଠାରୁ କମ୍ ନ ଥିଲେ । ଫାଶୀ ଅପେକ୍ଷମାଣ ରାଜେନ ଖଣ୍ଡେ ଚିଠିରେ ଲେଖିଥିଲେ— ''ମୋ'ର ମୃତ୍ୟୁ ଏକ ଗୌରବଜନକ ମୃତ୍ୟୁ ଏବଂ ଏଥିପାଇଁ କେହି ଦୁଃଖିତ ହେବା ଅନୁଚିତ । ଭଗବାନ୍‌ଙ୍କୁ ସମସ୍ତେ ପ୍ରାର୍ଥନା କରନ୍ତୁ ମୁଁ ଯେପରି ପୁଣି ଜନ୍ମଲାଭ କରେଁ ଏବଂ ମାତୃଭୂମିର ମୁକ୍ତି ଆନ୍ଦୋଳନରେ ମୁଁ ପୁଣି ଆତ୍ମନିୟୋଗ କରେଁ ।'' ରାଜେନଙ୍କର ଫାଶୀଦିନ ସକାଳେ ତାଙ୍କୁ ଜେଲଖାନାରେ ଶେଷ ଦର୍ଶନ କରି ତାଙ୍କର ବଡ଼ଭାଇ ଲେଖିଥିଲେ, ''ସେ ଯେପରି ତାଙ୍କର ଭୌତିକ

ଶରୀରଟା ପରିବର୍ତ୍ତେ ନୂତନ ଓ ତାଜା ଶରୀର ପାଇବାକୁ ପ୍ରସ୍ତୁତହେଉଥିଲେ । ସେ ଫାଶୀ ଦଣ୍ଡକୁ ନିର୍ଭୀକଭାବେ ଗ୍ରହଣକରିଥିଲେ ଏବଂ ତାଙ୍କ ମୁଖମଣ୍ଡଳରେ ଫୁଟିଉଠୁଥିଲା ଏକ ଦିବ୍ୟଭାବ ! ସେ ସର୍ବଦା ଭଜନ ଗାନରେ ବ୍ୟାପୃତ ରହୁଥିଲେ ଏବଂ ଫାଶୀର ପୂର୍ବ ରାତ୍ରିରୁ ତା' ପରଦିନ ସକାଳ ୬-୧୫ ମିନିଟି ପର୍ଯ୍ୟନ୍ତ ଗୀତା ଓ ଉପନିଷଦ ପାଠରେ ମନୋନିବେଶ କରିଥିଲେ । ଦୃପ୍ତ ପଦକ୍ଷେପ ଓ ହସ ହସ ମୁହଁରେ ସେ ଜେଲ ଓ୍ୱାଡ଼ର ପଛେ ପଛେ ଗଲେ ଏବଂ ଫାଶୀମଞ୍ଚ ଉପରେ ଦୃଢ଼ଭାବରେ ଠିଆ ହେଲେ ଏବଂ ହର୍ଷୋତ୍ଫୁଲ୍ଲ ଚିତ୍ତରେ ଅନ୍ତିମ ଲଗ୍ନର ସମ୍ମୁଖୀନ ହେଲେ ।''

ସହିଦ ରୋସନ ସିଂ କମ୍ ନୁହନ୍ତି । ତାଙ୍କ ସମ୍ପର୍କରେ ଜେଲ ରିପୋର୍ଟରେ ଲେଖାଅଛି— "Remained notably composed till his end and the last word which escaped his lips was Bandemataram, (ଶେଷପର୍ଯ୍ୟନ୍ତ ସେ ବେଶ୍ ଶାନ୍ତ ଦିଶୁଥିଲେ ଏବଂ 'ବନ୍ଦେ ମାତରମ୍' ଥିଲା ତାଙ୍କର ଶେଷବାଣୀ ।

ବିପ୍ଳବୀ ଆସାଫକୁଲ୍ଲାଙ୍କର ଶେଷ ସମୟ ଆହୁରି ରୋମାଞ୍ଚକର । ତାଙ୍କୁ ଫାଶୀଦଣ୍ଡ ଓ ବହୁବର୍ଷ ସଶ୍ରମ କାରାଦଣ୍ଡ ଆଦେଶ ହୋଇଥିଲା । ଫୈଜାବାଦ ଜେଲରେ ତାଙ୍କୁ ଶେଷ ଦର୍ଶନ କରିବାକୁ ଯାଇଥିଲେ ତାଙ୍କର ଜଣେ ବଂଧୁ, ଭାଇ ଓ ପୁତୁରା । ସେମାନଙ୍କର କାନ୍ଦଣା ଦେଖି ଆସାଫକୁଲ୍ଲା ଦୁଃଖପ୍ରକାଶ କରିଥିଲେ ଏବଂ ତାଙ୍କର ମଧୁମୟ ଶେଷମୁହୂର୍ତ୍ତକୁ ଶୋକରେ ଭାରାକ୍ରାନ୍ତ ନ କରିବାକୁ ସେ ଅନୁରୋଧ କରିଥିଲେ । ଦେଶମୁକ୍ତିର ମହାନ୍ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତହୋଇଥିବାରୁ ସେ ଗର୍ବ ଅନୁଭବ କରୁଥିଲେ । ସେ ତାଙ୍କର ଆତ୍ମୀୟମାନଙ୍କୁ ସ୍ମରଣ କରାଇଦେଇଥିଲେ ଯେ ସେମାନଙ୍କର ପରିବାରର ଜଣେ ଦେଶପାଇଁ ପ୍ରାଣ ଦେଉଅଛନ୍ତି । ହିନ୍ଦୁ କାନାଇ-କ୍ଷୁଦିରାମଙ୍କ ଭଳି ମୁସଲମାନ ସଂପ୍ରଦାୟ ଭିତରୁ ସେ ଦେଶପାଇଁ ଫାଶୀ ରଜ୍ଜୁକୁ ଗଳାରେ ଧାରଣକରିପାରିଥିବାରୁ ଅଶେଷ ଆନନ୍ଦ ଓ ଗୌରବ ଅନୁଭବ କରିଥିଲେ ।

ଏହିଭଳି ଭାବରେ ଚାରିଜଣ ଦୁର୍ଦ୍ଧର୍ଷ ବିପ୍ଳବୀ ପରମ ଆନନ୍ଦ ଓ ଆତ୍ମତୃପ୍ତିରେ ଫାଶୀଦଣ୍ଡ ଗ୍ରହଣକରି ଦେଶବାସୀଙ୍କ ନିକଟରେ ରଖିଗଲେ ଦେଶପ୍ରେମର ଜ୍ୱଳନ୍ତ ନିଦର୍ଶନ ।

**ବଡ଼ଲାଟ ଖସିଗଲେ :**

୧୯୨୯ ମସିହା ଡିସେମ୍ବର ୨୩ ତାରିଖ । ଦିଲ୍ଲୀର ପ୍ରାୟ ଚାରିମାଇଲ ଦୂରରେ ଥିବା କୁରୁପାଣ୍ଡବ ଦୁର୍ଗ । ସେହି ବାଟେ କଲିକତା-ଦିଲ୍ଲୀ ରେଳଲାଇନ ଲମ୍ବିଯାଇଛି ଦୂରକୁ । ରେଳଲାଇନଠୁଁ ପ୍ରାୟ ଦୁଇଶହ ଗଜ ଦୂରରେ ପକ୍କା କୂଅଟିଏ । କୂଅ ଭିତରେ ପାଣି ନାହିଁ, ଶୁଖିଲା ଖଡ୍‌ଖଡ୍ । ସେହି ଶୁଖିଲା କୂଅ ଭିତରେ ଲୋକଟିଏ ପଶି କ'ଣ କରୁଥିଲା କେଜାଣି- କିଛି ସମୟ ପରେ ବଡ଼ ସନ୍ତର୍ପଣରେ ବାହାରିଆସିଲା । ଚାରିଆଡ଼କୁ ଅନାଇଲା । କେହି କୁଆଡ଼େ ନାହାନ୍ତି । ନିଛାଟିଆ ଜାଗା । ଦିଲ୍ଲୀ ତ ଚାରି

ମାଇଲ ଦୂରରେ । ସବୁଠାରୁ ନିକଟରେ ଥିବା ଗାଁ ବି ଦୁଇ ମାଇଲ ଦୂର । ସୁତରାଂ ଯାହାକୁ କହନ୍ତି, 'କୁଆ କୋଇଲିର ରାବ ନାହିଁ ।' ଭଦ୍ରଲୋକ ଜଣକ ଟିକେ ଦୂରରେ ଗଛ ଉହାଡ଼ରେ ଡେରାଯାଇଥିବା ମଟରସାଇକେଲ୍ ଖଣ୍ଡିକ ଧରି ଚାଲିଲେ ଦିଲ୍ଲୀ ଆଡ଼କୁ ଚାହୁଁ ଚାହୁଁ ମଟରସାଇକେଲ୍ ଆଉ ଦିଶିଲା ନାହିଁ– ଅଦୃଶ୍ୟ ହୋଇଗଲା ।

X X X X

୧୯୧୧ ମସିହା ଦିଲ୍ଲୀ ଦରବାରର ଶୋଭାଯାତ୍ରା ଉପରେ ବିପ୍ଳବୀ ରାସବିହାରୀ ଯେଉଁ ମାରାତ୍ମକ ହାତବୋମା ଫୋପାଡ଼ିଥିଲେ, ତା'ର ମୁଖ୍ୟ ଉଦ୍ଦେଶ୍ୟ ଥିଲା ବଡ଼ଲାଟ ଲର୍ଡ଼ ହାର୍ଡ଼ିଂଜକୁ ହତ୍ୟାକରିବା । ବୋମା ଲକ୍ଷ୍ୟଭ୍ରଷ୍ଟ ହୋଇନଥିଲା, ଠିକ୍ ପଡ଼ିଥିଲା ହାର୍ଡ଼ିଂଜର ହାତୀ ଉପରେ । ମାହୁନ୍ତ ମଲା, ହାର୍ଡ଼ିଂଜକୁ ବୋମାଘାତହେଲା – କିନ୍ତୁ ମଲା ନାହିଁ । ପିଠି ଓ ହାତରେ ଅନ୍ୟୂନ ୩୪ଟି ଜାଗାରେ କ୍ଷତ ହୋଇଥିଲା ତା'ର । ସେହିଦିନଠାରୁ ବଡ଼ଲାଟମାନଙ୍କ ଉପରେ ଭାରତୀୟ ସଶସ୍ତ୍ର ବିପ୍ଳବୀର କଡ଼ା ନଜର, କାରଣ ବଡ଼ଲାଟହିଁ ସେତେବେଳେ ପରାଧୀନ ଭାରତର ହର୍ତ୍ତାକର୍ତ୍ତା ଦଇବ ବିଧାତା । ତାଙ୍କର କଥାହିଁ ଆଇନ । ସେହିମାନଙ୍କ ହୁକୁମ, ଜିଦ୍, ଖିଆଲ ଓ ସଉକ ଅନୁସାରେ ଭାରତର ତିରିଶକୋଟି ନରନାରୀ ଉଠିବେ, ବସିବେ । ବଡ଼ଲାଟ ବିଳିବିଳେଇଲେ ବି ତାକୁ ସମସ୍ତେ ବେଦର ବାଣୀ ବୋଲି ମାନିବାକୁ ବାଧ୍ୟ । ବଡ଼ଲାଟମାନେ ଲର୍ଡ଼ କ୍ଲାଇବ୍ ବା ଓ୍ୱାରେନ୍ ହେଷ୍ଟିଙ୍ଗସ ଭଳି ସୟତାନ ହେଲେ ଲୋକେ ଯେମିତି ଥରହର ହୁଅନ୍ତି, ଲର୍ଡ଼ ରିପନ ଭଳି ଉଦାରଚେତା ବ୍ୟକ୍ତି ହେଲେ ଲୋକେ ସେମିତି ଆଶ୍ୱସ୍ତିର ନିଶ୍ୱାସ ମାରନ୍ତି । ସଶସ୍ତ୍ର ବିପ୍ଳବୀ କିନ୍ତୁ ବଡ଼ଲାଟଙ୍କୁ କୌଣସି ବ୍ୟକ୍ତିବିଶେଷଭାବେ ବିଚାର କରେ ନାହିଁ, ସେ ସେହି ପଦବୀକୁ ଅତ୍ୟାଚାରୀ ସାମ୍ରାଜ୍ୟବାଦର ଏକ ପ୍ରତୀକରୂପେ ଦେଖେ । ସେ ଯେ କେହି ହେଉନା କାହିଁକି, ବଡ଼ଲାଟ ବ୍ରିଟିଶ୍ ଭାରତର ସର୍ବୋଚ୍ଚ କର୍ତ୍ତା ହୋଇଥିବାରୁ ଓ ବ୍ରିଟିଶ୍ ସମ୍ରାଟର ପ୍ରତିନିଧିରୂପେ କାର୍ଯ୍ୟ କରୁଥିବାରୁ ସେହିହିଁ ବିପ୍ଳବୀର ସବୁଠାରୁ ବଡ଼ ଶତ୍ରୁ । ସୁତରାଂ ବଡ଼ଲାଟ ଉପରେ ମାଡ଼ ହେଲେ ଇଂରେଜ ସରକାର ଭାରତୀୟମାନଙ୍କର ପ୍ରକୃତ ଶକ୍ତିର ପରିଚୟ ପାଇପାରିବ ଏବଂ ଭାରତୀୟମାନଙ୍କୁ ଅଧିକ ସାହସ ଓ ପ୍ରେରଣା ମିଳିବ ।

X X X X

୧୯୨୯ ମସିହା ଡିସେମ୍ବର ୨୩ ତାରିଖ ସକାଳ ୬ଟାରେ ତତ୍କାଳୀନ ବଡ଼ଲାଟ ଲର୍ଡ଼ ଇରଉଇନ୍ ସ୍ପେଶାଲ ଟ୍ରେନ୍ ଯୋଗେ ଦିଲ୍ଲୀ ଫେରୁଛନ୍ତି । ତାଙ୍କୁହିଁ 'ଅଭିନନ୍ଦନ' ଜଣାଇବାକୁ ବିପ୍ଳବୀମାନଙ୍କର ସେ ଗୁପ୍ତ ଆୟୋଜନ ଏବଂ ସେଥିପାଇଁ ସେ 'ଭଦ୍ରବ୍ୟକ୍ତି' ଜଣକ ସେ ଶୁଖିଲା କୂଅଭିତରେ ପଶିଥିଲେ । ଭଦ୍ରବ୍ୟକ୍ତି ଜଣକ ହେଉଛନ୍ତି ପଞ୍ଜାବୀ ଯୁବକ ଯଶପାଳ, ବ୍ରିଟିଶ୍ ସେନାବାହିନୀରେ ବହୁଦିନ କାମ କରିଥିଲେ, ବର୍ତ୍ତମାନ ସେନାବାହିନୀରୁ ଇସ୍ତଫା ଦେଇ ମୁକ୍ତିବାହିନୀରେ ଯୋଗଦେଇଛନ୍ତି । ତାଙ୍କର ଲକ୍ଷ୍ୟ ଲର୍ଡ଼ ଇରଉଇନ୍‌ର ସ୍ପେଶାଲ ଟ୍ରେନ୍‌କୁ ଉଡାଇଦେବା ।

କୂଅ ପାଖରୁ ରେଳଲାଇନ ପର୍ଯ୍ୟନ୍ତ ବୈଦୁତିକ ତାରର ସଂଯୋଗ ଲଗାଇ ଦେଇଥା'ନ୍ତି ଦିନକ ଆଗରୁ । ରେଳଲାଇନ ତଳେ ଡିନାମାଇଟ ଖଞ୍ଜାଯାଇଛି । ଏଣେ କୂଅ ଭିତରେ ରହିଛି ସୁଇଚ ଓ ବ୍ୟାଟେରୀ । ସୁଇଚ ଟିପିଲେ ତେଣେ ଡିନାମାଇଟ ଫାଟିବ ଏବଂ ଧ୍ୱସ୍ତବିଧ୍ୱସ୍ତ ହେବ ବଡ଼ଲାଟଙ୍କ ସ୍ପେଶାଲ ଟ୍ରେନ୍ ଏବଂ ତା' ସଙ୍ଗେ ସଙ୍ଗେ ଧ୍ୱଂସ ହେବ ବଡ଼ଲାଟ ଲର୍ଡ଼ ଇରଉଇନ୍ – ଏହାହିଁ ଯୋଜନା ।

ସେଥିପାଇଁ ୨୩ ତାରିଖ ରାତି ପାହାନ୍ତାରୁ ଛୁଟିଛନ୍ତି ବିପ୍ଳବୀ ଯଶପାଳ ଓ ତାଙ୍କ ସହ ଅନ୍ୟତମ ବିପ୍ଳବୀ ଭାଗ୍ୟରାମ କୁରୁପାଣ୍ଡବ ଦୁର୍ଗର ସେହି ଶୁଖିଲା କୂଅ ଆଡ଼କୁ ମଟର ସାଇକେଲ୍‌ରେ ଡବଲ ରାଇଡ଼ିଂ କରି । ଚାରିଆଡ଼େ ଘନ କୁହୁଡ଼ି । ମୁହଁକୁ ମୁହଁ ଦିଶୁନି, ସୁତରାଂ ବଡ଼ ଉପଯୋଗୀ ପାଗ ବିପ୍ଳବୀମାନଙ୍କ ପକ୍ଷରେ । ଭାଗ୍ୟରାମ ମଟର ସାଇକେଲ୍ ଧରି ଟିକେ ଦୂରରେ ଛିଡ଼ାହେଲେ । ଯଶପାଳ ପଶିଲେ କୂଅ ଭିତରେ । ହାତ ଘଣ୍ଟାକୁ ଅନାଇଲେ ଯଶପାଳ– ''ଛ'ଟା ବାଜିବାକୁ ଆହୁରି ଅଧଘଣ୍ଟା ବାକି ।'' କିନ୍ତୁ ତାଙ୍କ ହିସାବରେ ପନ୍ଦର ମିନିଟ୍ । କାରଣ ଗାଡ଼ି ପହଞ୍ଚିବାର ଠିକ୍ ୧୫ ମିନିଟ୍ ପୂର୍ବରୁ ତାଙ୍କୁ ବ୍ୟାଟେରୀ ଚାର୍ଜ କରିବା ପାଇଁ ସୁଇଚ ଟିପିବାକୁ ହେବ, ତାହାହେଲେ ସ୍ପେଶାଲ ଟ୍ରେନ୍ ସେଠାରେ ପହଞ୍ଚିବା ବେଳକୁ ଡିନାମାଇଟ୍ ଠିକ୍ କାମ ଦେବ । ବଡ଼ଲାଟ ସ୍ପେଶାଲ- ସୁତରାଂ ଗୋଟିଏ ସେକେଣ୍ଡ ବି ଏପଟ ସେପଟ ହେବାର ପ୍ରଶ୍ନ ନାହିଁ ।

ଛ'ଟା ପନ୍ଦର ମିନିଟ୍ ହେବାକୁ ଆଉ ମାତ୍ର କେଇ ସେକେଣ୍ଡ ବାକି । ଯଶପାଳ ଟିକେ ମୁଣ୍ଡଟେକି ବାହାରକୁ ଅନେଇଲେ । ''ଆସିଗଲା, ହେଇ ଆସିଗଲା ପାଇଲଟ ଇଂଜିନ ।'' ସତକୁ ସତ ଭୂମି ଦୁଲୁକାଇ ପାସ୍‌କରିଗଲା ବଡ଼ଲାଟଙ୍କ ପାଇଲଟ ଇଂଜିନ । ଯଶପାଳଙ୍କ ହାତର ଘଣ୍ଟାରେ ଠିକ୍ ଛ'ଟା ବାଜି ପନ୍ଦର ମିନିଟ୍ । ପାଇଲଟ ଇଂଜିନ ଯିବାର ଠିକ୍ ପନ୍ଦର ମିନିଟ୍ ପରେ ଆସିବ ବଡ଼ଲାଟ ସ୍ପେଶାଲ ଟ୍ରେନ୍ ! ଏହାହିଁ ନିୟମ । ରେଫେ ଏପଟ ସେପଟ ହେବାର ଯୁ ନାହିଁ ।

ଯଶପାଳ ସୁଇଚ ଟିପିଲେ । ବ୍ୟାଟେରୀ ଠିକ୍ ଚାର୍ଜ ନେଲା । ଏକାବେଳକେ ନିର୍ଭୁଲ ବ୍ୟବସ୍ଥା । ଘଡ଼ିକୁ ଅନେଇଲେ ଯଶପାଳ । ୬ଟା ୨୦, ୬ଟା ୨୧, ୬ଟା ୨୯, ୬ଟା ୩୦ – ହଁ ଗାଡ଼ିଟା ଠିକ୍ ଆସି ସେଠାରେ ପହଞ୍ଚିଗଲା । ମେଦିନୀଫଟା ଗର୍ଜନକରି ଡିନାମିଇଟ୍ ବି ଫୁଟିଲା । ସେତେବେଳକୁ ଇଂଜିନ୍‌ଟା ଗଡ଼ିଯାଇଥିଲା । 'କିନ୍ତୁ ଇଂଜିନ ପଛକୁ ଡବା କାହିଁ ? ଏ ଯେ ଖାଲି ଇଂଜିନଟା ! ବଡ଼ଲାଟ ସ୍ପେଶାଲ ତେବେ ଗଲା କୁଆଡେ ?' (ବଡ଼ଲାଟଙ୍କ ଜୀବନ ଆଉ ନିରାପଦ ନୁହେଁ ବୋଲି ଆଶଙ୍କାକରି ସେହିଦିନଠାରୁ ଗୋଟାଏ ପରିବର୍ତ୍ତେ ଦୁଇଟା ପାଇଲଟ ଇଂଜିନ ସ୍ପେଶାଲ ଟ୍ରେନ୍‌ର ଆଗେ ଆଗେ ଚାଲିବାର ବ୍ୟବସ୍ଥା ହୋଇଥିଲା । କିନ୍ତୁ ସେହି ନୂତନ ବ୍ୟବସ୍ଥା ଯଶପାଳ ବା ତାଙ୍କର ବନ୍ଧୁଙ୍କୁ ଜଣାନଥିଲା ।)

'ସୁତରାଂ ଡିନାମାଇଟ ଠିକ୍ ସମୟରେ ବିସ୍ଫୋରଣ ହୋଇଥିଲେ ସୁଦ୍ଧା ବଡ଼ଲାଟଙ୍କ ସ୍ପେଶାଲ ଟ୍ରେନ୍ ଅକ୍ଷତ ରହିଗଲା, କାରଣ ତାହା ପୂର୍ବ ଷ୍ଟେସନରୁ ଆଉ ଛାଡ଼ିଲା ନାହିଁ । ଯଶପାଳ ଆତଙ୍କିତ ହୋଇପଡ଼ିଲେ । ସେ ଆଉ ସେଠାରେ ରହିବା ଉଚିତ ନୁହେଁ । କାରଣ ବିସ୍ଫୋରଣ ସଂବାଦ ଦିଲ୍ଲୀ ଷ୍ଟେସନରେ ପହଞ୍ଚିବା ସଙ୍ଗେ ସଙ୍ଗେ ଅନୁସଂଧାନକାରୀ ଦଳ ସେଠାରେ ପହଞ୍ଚିଯିବ । ସୁତରାଂ ସେଠାରେ ଆଉ ଗୋଟିଏ ମୁହୂର୍ତ୍ତ ସୁଦ୍ଧା ରହିବା ନିରାପଦ ନୁହେଁ । ସିଧା ମଟର ସାଇକେଲ୍ ପାଖକୁ ଗଲେ ଯଶପାଳ । ବ୍ୟର୍ଥତାର ଗ୍ଲାନିରେ ମୁଖମଣ୍ଡଳ ତାଙ୍କର ମଳିନ । ସତୀର୍ଥ ଭାଗ୍ୟରାମ ମଧ୍ୟ ମୁହଁ ଶୁଖେଇ ଛିଡ଼ାହୋଇଥିଲେ । କିନ୍ତୁ ଏ କ'ଣ ହେଲା ? କୁହୁଡ଼ି ଓ କାକରରେ ଇଂଜିନ ଥଣ୍ଡା ହୋଇଯାଇଥିବାରୁ ମଟରସାଇକେଲ୍ ଷ୍ଟାର୍ଟ ନେଲାନାହିଁ । ଦୁଇବନ୍ଧୁ ଯେତେ ଚେଷ୍ଟାକଲେ ବି ଗାଡ଼ିକୁ ଚଳାଇ ପାରିଲେ ନାହିଁ । ଆଶଙ୍କା ଓ ଉତ୍ତେଜନାରେ ଦୁଇବନ୍ଧୁଙ୍କର ଅବସ୍ଥା ଚରମ ସୀମାରେ ପହଂଚିଗଲା । ତଥାପି ମଟରସାଇକେଲ୍ ଷ୍ଟାର୍ଟ ନେଲା ନାହିଁ ।

ସେତିକିବେଳେ ଦଳେ ସୈନ୍ୟ ତାଙ୍କରି ଆଡ଼କୁ ମାର୍ଚ୍ଚକରି ଆସୁଥିବାର ଦେଖାଗଲା । ଯଶପାଳ ନିରୁପାୟ ! ତାଙ୍କର ଟିକେହେଲେ ସନ୍ଦେହ ରହିଲା ନାହିଁ ଯେ ସେମାନଙ୍କ ମୃତ୍ୟୁ ଆସନ୍ନ ! ତଥାପି ସେ ବିପ୍ଳବୀ – ସହଜରେ ପରାଜୟ ସ୍ୱୀକାରକରିବା ତା'ର ଜାତକରେ ନାହିଁ । ଭାଗ୍ୟରାମକୁ ନିର୍ଦ୍ଦେଶ ଦେଲେ ଯଶପାଳ– "ପ୍ରସ୍ତୁତ ରଖ ରିଭଲଭର, ମୁଁ ଅର୍ଡ଼ର ଦେବା ସଙ୍ଗେ ସଙ୍ଗେ ତୁମେ ସେନାବାହିନୀ ଉପରକୁ ଗୁଳି ବର୍ଷଣ କରିବ– ଯେପରିକି ଆମେ ମୃତ୍ୟୁବରଣ କରିବା ପୂର୍ବରୁ ଯେତେଟା ପାରିବା ଶତ୍ରୁ ପକ୍ଷର କ୍ଷତି ସାଧନ କରିବା ଏବଂ ତାହାହିଁ ହେବ ଆମର ଗୌରବ !"

ଯଶପାଳ ଯେତେବେଳେ ସେନାବାହିନୀରେ ଚାକିରିକରୁଥିଲେ । ତାଙ୍କର ର୍ୟାଙ୍କ୍ ଥିଲା ସେକେଣ୍ଡ ଲେଫ୍‌ଟନାଣ୍ଟ । ସେଦିନ କିନ୍ତୁ ସେ ପିନ୍ଧିଥିଲେ ମେଜର ପୋଷାକ । ମାର୍ଚ୍ଚିଂକରି ଆସୁଥିବା ସୈନ୍ୟଦଳକୁ କମାଣ୍ଡିଂ କରୁଥିଲେ ଜନୈକ ହାବିଲଦାର ମେଜର । ସେ ଦୂରରୁ ଯଶପାଳଙ୍କୁ ଦେଖି ତାଙ୍କର ଉପରିସ୍ଥ ମେଜର ବୋଲି ମନେକଲେ ଏବଂ ସାମରିକ କାଏଦାରେ ବନ୍ଧୁକର ସଂକେତ ଦେଖାଇ ଅଭିନନ୍ଦନ ଜଣାଇଲେ ଏବଂ ତାଙ୍କର ଇଙ୍ଗିତରେ ଅନ୍ୟ ସୈନ୍ୟମାନେ ମଧ୍ୟ ଅନୁରୂପ କାଏଦାରେ ଅଭିନନ୍ଦନ ଜଣାଇ ମାର୍ଚ୍ଚିଂ କରି ଚାଲିଗଲେ ।

ଯଶପାଳଙ୍କୁ ପରିସ୍ଥିତି ବୁଝିବାପାଇଁ ବେଶି ସମୟ ଲାଗି ନଥିଲା । ସେ ମଧ୍ୟ ମେଜର ଷ୍ଟାଇଲରେ ଠିଆହୋଇ ରହିଲେ ଏବଂ ଅଭିନନ୍ଦନ ଗ୍ରହଣକଲେ । ସୈନ୍ୟଦଳ ଚାଲିଯିବାରୁ ଯଶପାଳ ଜାଣିପାରିଲେ ଯେ ବିସ୍ଫୋରଣ ସଂବାଦ ଦିଲ୍ଲୀ ଷ୍ଟେସନରେ ପହଂଚିନାହିଁ ।

ଯାହାହେଉ, ସୌଭାଗ୍ୟବଶତଃ ମଟରସାଇକେଲ୍ ଷ୍ଟାର୍ଟ ନେଲା ଏବଂ ଦୁଇ ବନ୍ଧୁ କାଳ ବିଳମ୍ବ ନ କରି ସଙ୍ଗେ ସଙ୍ଗେ ଦିଲ୍ଲୀ ଅଭିମୁଖେ ଛୁଟିଲେ । ଦିଲ୍ଲୀ ଷ୍ଟେସନର

ଅନତିଦୂରରେ ଭାଗ୍ୟରାମଙ୍କୁ ମଟରଷାଇକେଲ୍ ଜିମାଦେଇ ଯଶପାଳ ଫାଷ୍ଟକ୍ଲାସ୍ ଟିକେଟ କରି ଗାଜିଆବାଦଗାମୀ ଟ୍ରେନ୍‌ରେ ବସିଲେ । କିନ୍ତୁ ସେଠାରେ ବି ପୁଣି ଏକ ବିପଦରେ ପଡ଼ିଲେ । କମ୍ପାର୍ଟମେଣ୍ଟ ଭିତରେ ଆଗରୁ ବସିଥିଲେ ଜଣେ ଶ୍ୱେତାଙ୍ଗ ସୈନ୍ୟ । ତାଙ୍କୁ ଦେଖି ଯଶପାଳଙ୍କ ହଂସାଉଡ଼ିଗଲା । ସେ ଯେ ଏଥର ନିଶ୍ଚୟ ଧରା ପଡ଼ିଯିବେ, ଏଥିରେ ତାଙ୍କ ମନରେ ଟିକିଏ ହେଲେ ସନ୍ଦେହ ରହିଲା ନାହିଁ ।

କିନ୍ତୁ ସେଠାରେ ବି ଠିକ୍ ପୂର୍ବଭଳି ଏକ ବିଚିତ୍ର ଘଟଣା ଘଟିଲା । ଡବା ଭିତରେ ବସିଥିବା ସୈନ୍ୟ ଜଣଙ୍କ ତଳ ର୍ୟାଙ୍କର ସୈନ୍ୟ । ମେଜର ପୋଷାକ ପରିହିତ ଯଶପାଳଙ୍କୁ ଦେଖି ସେ ଏକାବେଳକେ ଛାନିଆଁହୋଇଗଲା, କାରଣ ସେ ଜାଣିଥିଲା ଯେ ସେ 'ମେଜର'ଙ୍କର ସମସ୍କନ୍ଧ ନୁହେଁ ଏବଂ ଫାଷ୍ଟକ୍ଲାସ୍ ଡବା ଭିତରେ ମେଜରଙ୍କ ସହ ଯାତ୍ରା କରିବା ନିୟମବିରୋଧୀ । ସୁତରାଂ ସାମରିକ କାଏଦାରେ ମେଜରଙ୍କୁ ଏକ ସାଲ୍ୟୁଟ୍ ଠୁକିଦେଇ ଡବାରୁ ଓହ୍ଲାଇଗଲା ।

ମେଜର ଯଶପାଳ ମନେ ମନେ ହସି ଆଶ୍ୱସ୍ତିର ନିଶ୍ୱାସମାରିଲେ । ଯଥାସମୟରେ ସେ ଗାଜିଆବାଦରେ ପହଂଚିଲେ । ସେଠାରେ ତାଙ୍କୁ ଅପେକ୍ଷା କରିଥିବା ବିପ୍ଳବୀ ଭଗବତୀଚରଣଙ୍କ ସହ ତାଙ୍କର ସାକ୍ଷାତହେଲା । ଭଗବତୀଚରଣ ଯଶପାଳଙ୍କଠାରୁ ସବୁକଥା ଶୁଣି ହସି ହସି ଗଡ଼ିଗଲେ । ଦୁଇବଂଧୁ ସେଠାରୁ ଚାଲିଲେ ସେମାନଙ୍କର ଗୋପନ ଆଶ୍ରୟସ୍ଥଳକୁ— ସେହି ବ୍ୟର୍ଥ ଉଦ୍ୟମର ପର୍ଯ୍ୟାଲୋଚନା କରିବାକୁ ।

❒ ❒ ❒

## ଅଧ୍ୟାୟ – ଏକୋଇଶ

# ଇନ୍‌କ୍ୱିଲାବ୍ ଜିନ୍ଦାବାଦ୍

୧୯୧୦ରେ ମଣ୍ଟେଗୁ-ଚେମ୍‌ସଫୋର୍ଡ ଶାସନ ସଂସ୍କାର ଘୋଷିତହେଲା । ଭାରତର ସ୍ୱାୟତ୍ତ ଶାସନ ପ୍ରାପ୍ତି ଆନ୍ଦୋଳନରେ ଏହାକୁ ଏକ ମାଇଲଖୁଣ୍ଟ ବୋଲି କୁହାଯାଉଥିଲେ ସୁଦ୍ଧା ଭାରତୀୟମାନଙ୍କର ସ୍ୱାଧୀନତାର ଆକାଂକ୍ଷା ପୂର୍ଣ୍ଣ କରିବାର ବହୁ ଦୂରରେ ଏହା ଥିଲା । ଏହି ଘୋଷଣାରେ ଭାରତୀୟମାନଙ୍କୁ ଯେଉଁ ସୀମାବଦ୍ଧ ସ୍ୱାୟତ୍ତ ଶାସନ କ୍ଷମତା ଅର୍ପଣ କରାଯାଇଥିଲା ତାହା ଯଥେଷ୍ଟ ନ ଥିଲା । ତା'ପରେ ପରେ ଅମୃତସର ହତ୍ୟାକାଣ୍ଡ ଓ ୧୯୨୦ର ଅସହଯୋଗ ଆନ୍ଦୋଳନ ସମଗ୍ର ଭାରତବାସୀଙ୍କ ମନରେ ଯେଉଁ ଯୁଗପତ୍ ଉତ୍ସାହ ଉଦ୍ଦୀପନା ସୃଷ୍ଟି କରିଥିଲା, ତାହା ଶେଷପର୍ଯ୍ୟନ୍ତ-ଚରମ ବ୍ୟର୍ଥତାରେ ପରିଣତ ହୋଇଥିବାରୁ ସାରା ଦେଶରେ ଘୋର ନୈରାଶ୍ୟ ଓ ହତାଶା ସୃଷ୍ଟିହୋଇଥିଲା । ଏହାର ସୁଯୋଗ ନେଇ ବ୍ରିଟିଶ୍ ପାର୍ଲିଆମେଣ୍ଟ ସ୍ୱାୟତ୍ତ ଶାସନ ଲାଭକରିବାକୁ ଭାରତୀୟମାନଙ୍କର ଯୋଗ୍ୟତା ମାପିବାର ଛଳନା କରି 'ସାଇମନ କମିଶନ'କୁ ନିଯୁକ୍ତ କରିଥିଲେ । ୧୯୨୮ ମସିହାରେ ବ୍ରିଟିଶ୍ ପାର୍ଲିଆମେଣ୍ଟର ଉପରୋକ୍ତ ଘୋଷଣାକୁ ଭାରତୀୟମାନେ ମୂଳରୁ ପ୍ରତ୍ୟାଖ୍ୟାନ କରିଥିଲେ, କାରଣ ଏହାର ଲକ୍ଷ୍ୟ ଥିଲା ଉଦ୍ଦେଶ୍ୟମୂଳକ ଏବଂ ଏହି କମିଶନରେ ଜଣେହେଲେ ଭାରତୀୟ ସଦସ୍ୟ ନ ଥିଲେ । କଂଗ୍ରେସ ଏବଂ ସଶସ୍ତ୍ର ବିପ୍ଳବୀମାନେ ଏହାକୁ ସମ୍ମାନର ପ୍ରଶ୍ନ ଭାବରେ ଗ୍ରହଣକରିଥିଲେ ଏବଂ ଏହା ବିରୋଧରେ ଦୃଢ଼ ପ୍ରତିବାଦ କରିଥିଲେ ଏବଂ ଏହାକୁ ବର୍ଜନ କରିବାକୁ ଦେଶବାସୀଙ୍କୁ ନିବେଦନ କରିଥିଲେ । ସାରା ଭାରତରେ ଏହା ବିରୋଧରେ ବିକ୍ଷୋଭ ସୃଷ୍ଟିହୋଇଥିଲା । ତଥାପି କମିଶନ ବିଭିନ୍ନ ସ୍ଥାନରେ ସାକ୍ଷ୍ୟ ଗ୍ରହଣ କରିବାକୁ ଛାଡ଼ି ନ ଥିଲେ ।

କିନ୍ତୁ କମିଶନ ବିରୋଧରେ ବିକ୍ଷୋଭ କରିବାକୁ ଯାଇ ପଞ୍ଜାବର ଲାହୋରଠାରେ ଏକ ଦୁଃଖଦାୟକ ଘଟଣା ଘଟିଲା, ଯାହାକି ଆମର 'ସ୍ୱାଧୀନତା ସଂଗ୍ରାମ ଇତିହାସ'ର ଏକ ହୃଦୟବିଦାରକ ଅଧ୍ୟାୟ । ୩୦-୧୦-୧୯୨୯ରେ ସାଇମନ କମିଶନ ଆସିଥିଲେ ଲାହୋର । ତାହା ବିରୋଧରେ ଯେଉଁ ବିରାଟ ବିକ୍ଷୋଭର ଆୟୋଜନ କରାଯାଇଥିଲା ତା' ଅଭୂତପୂର୍ବ ଥିଲା । ଏହାର ନେତୃତ୍ୱ ନେଇଥିଲେ ସ୍ୱାଧୀନତା ଯୁଦ୍ଧର ଅନ୍ୟତମ

ସେନାପତି ଲାଲା ଲଜପତ୍ ରାୟ । କିନ୍ତୁ ନିରସ୍ତ୍ର ସେହି ଜନତା ଉପରେ ଇଂରେଜୀ ପୁଲିସ ଝାଂପିପଡ଼ିଲା । ଲାଠିଚାର୍ଜରେ ଆହତ ହେଲେ ଲାଲାଜୀ ଏବଂ ସେହି ଆଘାତରେ ହିଁ ତାଙ୍କର ମୃତ୍ୟୁ ହେଲା । ଭାରତର ଆକାଶରୁ ଅନ୍ତର୍ହିତ ହେଲା ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ।

ଲାଲାଜୀଙ୍କର ଏହି କରୁଣ ବିୟୋଗରେ ସାରା ଦେଶରେ ଶୋକଛାୟା ଖେଳିଗଲା । ଗାନ୍ଧିଜୀ ଓ ଅନ୍ୟ ନେତାମାନେ ସରକାରର ନାରକୀୟ ବ୍ୟବହାରର ତୀବ୍ର ପ୍ରତିବାଦ କଲେ । ସଶସ୍ତ୍ର ବିପ୍ଳବୀ ମହଲ କିନ୍ତୁ ଏହାର ପ୍ରତିଶୋଧ ନେବେ ବୋଲି ସ୍ଥିରକଲେ ଏବଂ ଲାହୋର ଲାଠିଚାର୍ଜର ମୁଖ୍ୟନାୟକ ପୁଲିସ ଆଇ.ଜି.ମିଷ୍ଟର ସ୍କଟ୍‌ଙ୍କୁ ଯେକୌଣସିମତେ ଖତମ କରିବାକୁ ସିଦ୍ଧାନ୍ତ ନିଆଗଲା । ଏତେବଡ଼ ଭୟଙ୍କର ହିଂସାକାଣ୍ଡର ଜବାବ ଖାଲି ବାଚନିକ ପ୍ରତିବାଦ ବା ହରତାଳ ପାଳନରେ ହୋଇପାରିବ ବୋଲି ସଶସ୍ତ୍ର ବିପ୍ଳବୀ ବିଶ୍ୱାସ କରୁ ନ ଥିଲେ ।

ବିପ୍ଳବୀ ଭଗତସିଂ, ରାଜଗୁରୁ ଓ ଚନ୍ଦ୍ରଶେଖର ଆଜାଦ ପ୍ରଭୃତି ଧନୁର୍ଦ୍ଧରମାନେ ବାହାରିପଡ଼ିଲେ । ଆରମ୍ଭ ହୋଇଗଲା ଅସ୍ତ୍ରଶସ୍ତ୍ର ସଂଗ୍ରହର ଆୟୋଜନ । ଏ ସଂପର୍କରେ ତତ୍‌କାଳୀନ ପ୍ରବୀଣ ବିପ୍ଳବୀ ମହାରାଜ ତ୍ରୈଲୋକ୍ୟନାଥ ଚକ୍ରବର୍ତ୍ତୀ ଲେଖିଛନ୍ତି, ‘‘ଭଗତ ସିଂ ଓ ପଣ୍ଡିତ ରାମଶରଣ ଦାସ ୧୯୨୮ ସାଲରେ ମୋ’ଠାରୁ କିଛି ପିସ୍ତଲ ଓ ବୋମା ନେବାକୁ ଆସିଥିଲେ । ଆମ୍ଭେମାନେ ତ ୧୯୨୦ ସାଲରୁ ହିଂସାତ୍ମକ କାର୍ଯ୍ୟ ଛାଡ଼ି ଦେଇଥିଲୁ । ଆମ ମତରେ ଦେଶ ବର୍ତ୍ତମାନ ଜାଗିଛି, ସୁତରାଂ ଲୋକଦେଖାଣିଆ କିଛି କରିବା ଦରକାର ନାହିଁ । ବର୍ତ୍ତମାନ ଗଣଆନ୍ଦୋଳନ ଜରିଆରେ ଜନଗଣର ବୈପ୍ଳବିକ ଚେତନା ଜାଗ୍ରତକରାଇବା ଓ ବ୍ୟାପକ ସଂଗ୍ରାମ ପାଇଁ ସଂଗଠନକୁ ଦୃଢ଼ କରିବା ପ୍ରୟୋଜନ । ଦଳକୁ ସବଳ ନ କରି ସନ୍ତ୍ରାସମୂଳକ କାର୍ଯ୍ୟ ଆରମ୍ଭକଲେ ଗଭର୍ଣ୍ମେଣ୍ଟ ଦିଗରୁ ଯେଉଁ ଚାପ ଆସିବ, ସେ ଚାପ ଦଳ ସହ୍ୟ କରିପାରିବ ନାହିଁ । ଫଳରେ ଅଳ୍ପଦିନ ଭିତରେ ଦଳ ଭାଙ୍ଗିଯିବ ।’’

ବିପ୍ଳବୀ ଭଗତ ସିଂ କିନ୍ତୁ ଏ କଥାରେ ରାଜିହେବା ଲୋକ ନ ଥିଲେ । ଲାଲାଜୀଙ୍କ ହତ୍ୟାର ପ୍ରତିଶୋଧ ନେବାକୁ ସେ ଯେ ପ୍ରତିଜ୍ଞାବଦ୍ଧ ଏବଂ ସେଥିପାଇଁ ସେ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବାକୁ ଚାହୁଁଥିଲେ । ତେଣୁ ସେ କହିଲେ, ‘‘ମହାରାଜ, ଆପଣ ଜାଣନ୍ତି ଯେ ପଞ୍ଜାବ ଏବେ ବି ବହୁ ପଛରେ ପଡ଼ିଛି । ତେଣୁ ତାକୁ ଜଗାଇବାକୁହେବ । ଆମ ହାତରେ ଏମିତି ଯୁବକ ଅଛନ୍ତି ଯେଉଁମାନଙ୍କୁ କାଟି ଟିକ୍ ଟିକ୍ କରିଦେଲେ ବି ପାଟିରୁ ‘ଉଁ’ ଶବ୍ଦଟାଏ ବାହାରିବନାହିଁ ।’’

ମହାରାଜ ନିରୁପାୟ । ପଞ୍ଜାବ ବୀର ଭଗତ ସିଂଙ୍କର ଦୁର୍ବାର ଅଭିଳାଷକୁ ଯୁକ୍ତିତର୍କରେ ଦବେଇଦେବା ସମ୍ଭବ ନ ଥିଲା । ମହାରାଜ ପୁଣି ଲେଖିଛନ୍ତି– ‘‘ସେମାନଙ୍କୁ ଖୁସିକରିବାକୁ କେତେଟା ପିସ୍ତଲ ଓ କିଛି ବୋମା ଦେଲି । କିନ୍ତୁ ବର୍ତ୍ତମାନ ତାକୁ ବ୍ୟବହାର ନ କରିବାକୁ ପରାମର୍ଶ ଦେଲି ।’’

ସେହି ବର୍ଷ ନଭେମ୍ବର ମାସରେ ପୁଲିସ ଆଇ.ଜି.ସ୍କଟ୍‌କୁ ଘେରାଉ କଲେ ବିପ୍ଳବୀ ଭଗତ ସିଂ, ରାଜଗୁରୁ ଓ ଚନ୍ଦ୍ରଶେଖର ଆଜାଦ । ଦୁର୍ଭାଗ୍ୟବଶତଃ ସ୍କଟ୍ ଉପରେ ଗୁଳିହେଲାନାହିଁ, ହେଲା ତା'ର ସହକାରୀ ସାଣ୍ଡାର୍ସ ଉପରେ । ସେ ଭୂପତିତ ହେଲା । ତାକୁ ରକ୍ଷାକରିବା ପାଇଁ ଆସି ପୁଲିସ କନେଷ୍ଟବଲ ଚନ୍ଦନ ସିଂ ମଲା ଆଜାଦଙ୍କ ଗୁଳିରେ ।

ଜଣେହେଲେ କେହି ଧରାପଡ଼ିଲେନାହିଁ, କାରଣ ସେମାନଙ୍କୁ ଧରିବା ଏତେ ସହଜ କଥା ନ ଥିଲା । ଓଲଟି ବିପ୍ଳବୀମାନଙ୍କ ପକ୍ଷରୁ କାନ୍ଥବାଡ଼ରେ ପ୍ରଚାରପତ୍ର ପୋଷ୍ଟର ଲଗାହେଲା – ''ବିପ୍ଳବୀମାନଙ୍କୁ ଧରିଦେଲେ ପୁରସ୍କାର ଦିଆଯିବ ।'' ବିଚିତ୍ର ଏ ପୁରସ୍କାର ଘୋଷଣା ! ସଂଗଠନ କେତେ ଦୃଢ଼ ଥିଲେ ଓ ମନୋବଳ କେତେ ଟାଣ ଥିଲେ ବ୍ରିଟିଶ୍ ପୁଲିସକୁ ଏମିତି ଚାଲେଞ୍ଜ ଦେଇହେବ, ତାହା କେବଳ ହୃଦୟଙ୍ଗମ କରିବାର କଥା, ବର୍ଣ୍ଣନାର କଥା ନୁହେଁ ।

ଭଗତସିଂଙ୍କଦ୍ୱାରା ଗଠିତ 'ହିନ୍ଦୁସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ଆର୍ମି' ଓ 'ହିନ୍ଦୁସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ପାର୍ଟି' ବାସ୍ତବରେ ସେହିଭଳି ଏକ ଲଢୁଆ ଓ ନିର୍ଭୀକ ଅନୁଷ୍ଠାନ ଥିଲା । ଭଗତ ସିଂ ଠିକ୍‌କହିଥିଲେ, ''ଆମ କର୍ମୀଙ୍କୁ ଟିକିଟିକି କରି କାଟିଦେଲେ ବି ସେମାନଙ୍କ ମୁହଁରୁ 'ଉଁ' ଶବ୍ଦଟି ମଧ୍ୟ ବାହାରିବନାହିଁ ।'' ସୁତରାଂ ସେଭଳି ଚାଲେଞ୍ଜ ଦେବାର ଶକ୍ତି ବିପ୍ଳବୀମାନେ ଅର୍ଜନକରିଥିଲେ ବୋଲି ଅବିଶ୍ୱାସ କରିବାର କିଛି କାରଣ ନାହିଁ ।

ସତକୁ ସତ ବିପ୍ଳବୀମାନଙ୍କର ସେହି ଚାଲେଞ୍ଜର ଜବାବ ଦେବାକୁ ସମର୍ଥ ହୋଇ ନ ଥିଲା ପୁଲିସ । ବିପ୍ଳବୀମାନେ ବି ସେତିକିରେ ଥୟ ଧରିବାର ବ୍ୟକ୍ତି ନ ଥିଲେ । ସେମାନେ ଭାବିଲେ, 'ଏମିତି କିଛି କରିବାକୁ ହେବ ଯେଉଁଥିରୁ ଦେଶବାସୀ ଭବିଷ୍ୟତ ପାଇଁ ପ୍ରେରଣା ପାଇବେ' । ଏହି ଲକ୍ଷ୍ୟ ଆଗରେ ରଖି ହିନ୍ଦୁସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ଆର୍ମିର ଦ୍ୱିତୀୟ ଅଭିଯାନ ଆରମ୍ଭହେଲା ।

୧୯୨୯ ଜୁନ୍ ଛ' ତାରିଖ । ଦିଲ୍ଲୀର ସେଣ୍ଟ୍ରାଲ ଆସେମ୍ବ୍ଲିହଲ ଭରପୂର । ଦର୍ଶକ ଆସନରେ ବସିଥିଲେ ନିଜେ ସାଇମନ୍– କୁଖ୍ୟାତ 'ସାଇମନ୍ କମିଶନ'ର ଚେୟାରମ୍ୟାନ୍ । ଘୋର ଉତ୍ତେଜନାମୟ ପରିସ୍ଥିତି ଭିତରେ ଆସେମ୍ବ୍ଲି ବୈଠକ ଚାଲିଥାଏ । ହଠାତ୍ ସମସ୍ତଙ୍କୁ ସ୍ତବ୍ଧ କରିଦେଇ ଦର୍ଶକ ଗ୍ୟାଲେରୀରୁ ଭୁସ୍‌ଭାସ୍ ହୋଇ ପଡ଼ିଲା ଅସଂଖ୍ୟ ପ୍ରଚାରପତ୍ର ବଣ୍ଡିଲ । କାନଫଟା ଗର୍ଜନ କରି ଫାଟିଲା ଦୁଇଟି ଭୟଙ୍କର ବୋମା ଓ ରିଭଲଭର୍‌ର ଗୁଳି ଏବଂ ତା' ସଙ୍ଗେ ସଙ୍ଗେ ଜନ୍ମଲାଭକଲା ସ୍ୱାଧୀନତା ସଂଗ୍ରାମର ମହାମନ୍ତ୍ର 'ଇନ୍‌କ୍ୱିଲାବ୍- ଜିନ୍ଦାବାଦ୍ ।'

ବୋମା ବିସ୍ଫୋରଣ ଫଳରେ ସମସ୍ତ ଆସେମ୍ବ୍ଲିଗୃହ ଉତ୍କଟ ଧୂଆଁରେ ପୂର୍ଣ୍ଣ ହୋଇଗଲା । ତା' ସାଙ୍ଗକୁ ସ୍ଲୋଗାନର ଗର୍ଜନରେ ଆସେମ୍ବ୍ଲି ଗୃହ, ଆସେମ୍ବ୍ଲି ଗୃହର

ସମସ୍ତ ଶ୍ରୋତା, ବକ୍ତା ଓ ଦର୍ଶକ ସମସ୍ତେ ସ୍ତମ୍ଭିତ, ଚକିତ, ଆତଙ୍କିତ ଓ କିଂକର୍ତ୍ତବ୍ୟବିମୂଢ଼ । ସ୍ଲୋଗାନକାରୀ ଓ ପାମ୍ପଲେଟ ବିତରକ ଦର୍ଶକଗ୍ୟାଲେରୀରୁ ଧରା ହେଲେ ସାଣ୍ଡର୍ସ ହତ୍ୟାର ପ୍ରଧାନ ଆସାମୀ ବିପ୍ଳବୀ ଭଗତ ସିଂ ଓ ବଟୁକେଶ୍ୱର ଦତ୍ତ । ତୃତୀୟ ଲାହୋର ଷଡ଼ଯନ୍ତ୍ର ମାମଲା ଚାଲୁହେଲା ।

X X X X

## ଆଗକୁ ନା ପଛକୁ ?

ଗାନ୍ଧିଜୀଙ୍କ ପରିଚାଳିତ ଅହିଂସ ଅସହଯୋଗ ଆନ୍ଦୋଳନର ଯେଉଁ ଦୁଇଟି ପ୍ରଧାନ ଲକ୍ଷ୍ୟ ଥିଲା, ଯଥା– ଖଲିଫା ପଦବୀର ପୁନଃପ୍ରତିଷ୍ଠା ଏବଂ ସ୍ୱରାଜ୍ୟ ହାସଲ, ସେହି ଦୁଇଟିରୁ ଗୋଟିଏ ବି ସଫଳ ହୋଇପାରିଲାନାହିଁ । ଧର୍ମକୁ ରାଜନୀତି ସହ ମିଶାଇ ଯେଉଁ ଖିଚିଡ଼ି କଂଗ୍ରେସ ତିଆରିକଲା ସେଥିରେ ଭାରତୀୟମାନଙ୍କର କ୍ଷୁଧା ନିବାରଣ ହେଲା ନାହିଁ । ଯେତେବେଳେ ଗଣଭିତ୍ତିକ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର କରିନିଆଗଲା ସେତେବେଳେ ଚାରିଆଡ଼େ ନୈରାଶ୍ୟ ଦେଖାଦେଲା । ତା’ଫଳରେ ଜାତୀୟ ଆନ୍ଦୋଳନର ଉତ୍ସାହ କମିଗଲା । ଲୋକମାନେ ମୋହମୁକ୍ତ ହେଲାପରି ସତ୍ୟାଗ୍ରହର ଯଥାର୍ଥତା ବିଷୟରେ ସନ୍ଦେହ ପ୍ରକାଶକଲେ । ଲକ୍ଷ ଲକ୍ଷ ଲୋକଙ୍କୁ ଅସହଯୋଗର ଶିକ୍ଷା ଦେବା କ’ଣ ସମ୍ଭବ ? ଯଦିବି ସମ୍ଭବ ହୁଏ, ସେଥିରେ କେତେ ସମୟ ଲାଗିବ ? ଅଧିକାଂଶ ନେତା ଜେଲରେ ଥିବାରୁ ଦଳର କର୍ମୀବୃନ୍ଦ ବିଶୃଙ୍ଖଳିତ ହୋଇଯାଇଥିଲେ । ଅବଶ୍ୟ ଗାନ୍ଧିଜୀ କହିଲେ– ‘୧୯୨୦ରେ ଯେଉଁ ସଂଗ୍ରାମର ସୂତ୍ରପାତ ହେଲା ତାହା ଶେଷପର୍ଯ୍ୟନ୍ତ ଚାଲୁ ରହିବ– ମାସେ ଲାଗୁ କି ବର୍ଷେ ଲାଗୁ, ଅନେକ ମାସ କି ଅନେକ ବର୍ଷ ।’’(୧)

କିନ୍ତୁ ନିଜେ ଗାନ୍ଧିଜୀ ପୂର୍ବରୁ ବାରମ୍ବାର କହିଥିଲେ ଯେ– ‘‘ବର୍ଷକ ଭିତରେ ସ୍ୱରାଜ୍ୟ ମିଳିବ ।’’ ସୁତରାଂ ଅସହଯୋଗ ଆନ୍ଦୋଳନ ବ୍ୟର୍ଥ ହେବା ପରେ ଗାନ୍ଧିଜୀଙ୍କର ଉପରୋକ୍ତ ଆଶ୍ୱାସନା ବାଣୀକୁ ଭାରତୀୟ ଜନତା ନିର୍ବିବାଦରେ ଗ୍ରହଣ କରିପାରି ନ ଥିଲେ । ୧୯୨୨ରେ ଅସହଯୋଗ ଆନ୍ଦୋଳନ ବ୍ୟର୍ଥତା ପରଠାରୁ ୧୯୩୦ ମସିହାର ଐତିହାସିକ ଲବଣ ସତ୍ୟାଗ୍ରହ ପର୍ଯ୍ୟନ୍ତ ଭାରତର ଅହିଂସା ମୁକ୍ତି-ସଂଗ୍ରାମ ଯେଉଁ ପର୍ଯ୍ୟାୟ ଭିତରେ ଗତିକଲା, ତାହା ସ୍ୱାଧୀନତା ପ୍ରାପ୍ତିକୁ ଆଗେଇନେଲା କିମ୍ବା ପଛେଇ ଦେଲା ସେ ସମ୍ପର୍କରେ ଏବେ ମଧ୍ୟ ଯୁକ୍ତିତର୍କର ଅବକାଶ ରହିଛି ।

ଅହିଂସ ଅସହଯୋଗ ଆନ୍ଦୋଳନର ବ୍ୟର୍ଥତାର କାରଣ ସମ୍ପର୍କରେ ଗାନ୍ଧିଜୀଙ୍କ ସିଦ୍ଧାନ୍ତ ଥିଲା– (୧) ଅହିଂସ ଅସହଯୋଗ ଆଦର୍ଶ ଓ ନୀତି ଦୃଷ୍ଟିରୁ ତ୍ରୁଟିପୂର୍ଣ୍ଣ ନୁହେଁ । (୨) ବ୍ୟର୍ଥତାର କାରଣ– କର୍ମୀମାନଙ୍କର ବ୍ୟକ୍ତିଗତ ଦୋଷ, ଅହିଂସା ବିଷୟରେ ଉପଯୁକ୍ତ ଜ୍ଞାନର ଅଭାବ ଏବଂ କଂଗ୍ରେସ ସଂଗଠନର ଅନ୍ତର୍ନିହିତ ଦୋଷଦୁର୍ବଳତା । ବହୁ

୧) ଦେ. ତ୍ରିପାଠୀ– ଭାରତରେ ସ୍ୱାଧୀନତା ସଂଗ୍ରାମ - ନ୍ୟାସନାଲ ବୁକ୍ ଟ୍ରଷ୍ଟ, ପୃଷ୍ଠା – ୧୪୭

କଂଗ୍ରେସକର୍ମୀ ସେମାନଙ୍କର ଚାନ୍ଦା ନିୟମିତ ଦେଉ ନ ଥିଲେ, ଖଦଡ଼ ପିନ୍ଧୁ ନ ଥିଲେ, ଏପରିକି ଅସ୍ପୃଶ୍ୟତା ନିବାରଣ ବା ଅହିଂସାକୁ ସଂପୂର୍ଣ୍ଣରୂପେ ଗ୍ରହଣ କରି ନ ଥିଲେ ।''

ଗାନ୍ଧିଜୀଙ୍କର ଉପରୋକ୍ତ ମନ୍ତବ୍ୟ ଏହାହିଁ ପ୍ରମାଣିତ କରୁଅଛି ଯେ ଭାରତର ସମୂହ ଜନତା କଥା ତେଣିକି ଥାଉ, ତାଙ୍କର ନିଜ ହାତଗଢ଼ା କଂଗ୍ରେସ ଦଳ ମଧ୍ୟ 'ଅହିଂସା'କୁ ସଂପୂର୍ଣ୍ଣ ଗ୍ରହଣ କରିପାରି ନ ଥିଲା । ଏହି ବିଚାରବିଭ୍ରାଟ ଶେଷରେ କଂଗ୍ରେସ ଦଳକୁ ଦୁଇଖଣ୍ଡରେ ପରିଣତ କରିଦେଲା ଏବଂ ସେଥିମଧ୍ୟରୁ ସୃଷ୍ଟିହେଲା 'ସ୍ୱରାଜ୍ୟ' ଦଳ । ଚିତ୍ତରଞ୍ଜନ ଓ ମୋତିଲାଲ ପ୍ରଭୃତି ସର୍ବଜନପୂଜ୍ୟ ନେତା ମଧ୍ୟ କାର୍ଯ୍ୟତଃ ଗାନ୍ଧିଜୀଙ୍କଠୁଁ ଅଲଗା ହୋଇଗଲେ । ସାଂପ୍ରଦାୟିକତାର ବିଷ କ୍ରମେ ସମଗ୍ର ଜାତୀୟଜୀବନକୁ ବିପର୍ଯ୍ୟସ୍ତ କରିଦେଲା । ୧୯୨୨ରୁ ୧୯୨୭ ମଧ୍ୟରେ ସର୍ବମୋଟ ୧୧୨ଟି ସାଂପ୍ରଦାୟିକ ଦଙ୍ଗା ହୋଇଥିଲା ବୋଲି ସାଇମନ କମିଶନ ହିସାବକରିଥିଲା । ୧୯୨୪ରେ ଅସୁସ୍ଥ ଗାନ୍ଧିଜୀଙ୍କର ଏକୋଇଶଦିନିଆ ଐତିହାସିକ ଅନଶନ ମଧ୍ୟ କୌଣସି ସମାଧାନ କରିପାରିଲାନାହିଁ । ଏହା ଗାନ୍ଧିଜୀଙ୍କର 'ଅହିଂସା' ଉପରେ ଅକାଟ୍ୟ ବିଶ୍ୱାସ ଏବଂ ସାଂପ୍ରଦାୟିକ ଭାରତବାସୀଙ୍କର ଧର୍ମାନ୍ଧତା ପ୍ରତି ଗାନ୍ଧିଜୀଙ୍କର ଅଧୀରତାକୁ ନିର୍ଭୁଲ ଭାବେ ପ୍ରମାଣିତ କଲା ସତ୍ୟ କିନ୍ତୁ ଏହା ଏକ ନିଛକ ଭାବପ୍ରବଣତାପୂର୍ଣ୍ଣ ପଦକ୍ଷେପ ଥିବାରୁ ଏହା ସମାଜରେ ଅତି ଗଭୀରଭାବେ ପ୍ରବେଶ କରିଥିବା ସାଂପ୍ରଦାୟିକ ଭେଦଭାବକୁ ଦୂର କରିବାକୁ ସମର୍ଥ ହେଲା ନାହିଁ । କାରଣ ସେ ସମସ୍ୟା କେବଳ ଧର୍ମ ବା ସଂପ୍ରଦାୟଗତ ନ ଥିଲା, ତାହା ତ ସଂପୂର୍ଣ୍ଣରୂପେ ଏକ ରାଜନୈତିକ ସମସ୍ୟା ଥିଲା । ସ୍ୱଦେଶୀ ଆନ୍ଦୋଳନ ପରେ ପରେ ବିଶେଷତଃ ଖିଲାଫତ୍ ଯୁଗରେ ହିନ୍ଦୁ-ମୁସଲମାନଙ୍କ ଭିତରେ ଯେଉଁ ଅବିଶ୍ୱାସ ଓ ସନ୍ଦେହ ସୃଷ୍ଟିହୋଇଥିଲା ତାହା କେବଳ ଅନଶନଦ୍ୱାରା ଦୂରହେବା ଅସମ୍ଭବ ବ୍ୟାପାର ଥିଲା ।

ଦେଶରେ ଯେତେବେଳେ ଏହିଭଳି ସନ୍ଦେହର ବାତାବରଣ ରହିଥିଲା, ସେତିକିବେଳେହିଁ 'ସାଇମନ କମିଶନ' ନିଯୁକ୍ତ ହେବା ବିଷୟ ଘୋଷିତହେଲା । 'ସାଇମନ କମିଶନ'ର ଦଶା କ'ଣ ହେଲା, ତାହା ତ ଇତିହାସରେ ଲେଖାହୋଇ ରହିଛି । ଅତି ନିର୍ଲଜ୍ଜ ମୁହଁରେ କମିଶନ ସାରା ଦେଶରେ ଗସ୍ତକଲା ଏବଂ ଏକ ତଥାକଥିତ ରିପୋର୍ଟ ମଧ୍ୟ ଇଂଲଣ୍ଡ ପାର୍ଲିଆମେଣ୍ଟକୁ ଦିଆଯାଇଥିଲା । ଏହି କମିଶନ କିଭଳି ଅବସ୍ଥାର ସମ୍ମୁଖୀନ ହୋଇଥିଲା, ତାହା ତତ୍‌କାଳୀନ ଏକ ସଂବାଦପତ୍ରରେ ନିମ୍ନମତେ ବର୍ଣ୍ଣିତ ହୋଇଥିଲା — "The boycot was so effective that the commission had to be sneaked away from the railway station to their place of residence. The police had to protect them from being mobbed and to cordon off the demonstrators on the routes."

ଏପରିସ୍ଥଳେ ଏହା ଅତିଶୟ ସ୍ୱାଭାବିକ ଥିଲା ଯେ କମିଶନର ସୁପାରିଶଗୁଡ଼ିକୁ ମଧ୍ୟ ଭାରତବାସୀ ବାଛନ୍ଦ ବା ଅଗ୍ରାହ୍ୟ କରିବେ, ତାହାହିଁ ହୋଇଥିଲା । ଭାଇସରାୟ

ଲର୍ଡ ଇରଉଇନ ପ୍ରଥମରୁ ଯେଉଁ ଦିମାକ ଦେଖାଇ ପ୍ରଧାନମନ୍ତ୍ରୀଙ୍କୁ ବଡ଼ ବଡ଼ କଥା ଶୁଣାଇଥିଲା, ସେ ମଧ୍ୟ ଭାରତୀୟମାନଙ୍କର କ୍ରମବର୍ଦ୍ଧମାନ ବିରୋଧ ଖବରକୁ ଆଉ ବେଶି ଦିନ ବିଲାତବାସୀଙ୍କଠାରୁ ଲୁଚାଇ ରଖିପାରିଲା ନାହିଁ । ସାଇମନ କମିଶନର ସୁପାରିଶ ଅନୁସାରେ ଡକାଯାଇଥିବା ଗୋଲ୍ ଟେବୁଲ୍ ବୈଠକକୁ କଂଗ୍ରେସ ପ୍ରତ୍ୟାଖ୍ୟାନ କଲା ଏବଂ ଗାନ୍ଧିଜୀ ବା ଅନ୍ୟ କେହି ଜାତୀୟ ନେତା ଏହି ବୈଠକରେ ଯୋଗ ଦେଇ ନ ଥିଲେ । ଫଳରେ ଗୋଲ୍‌ଟେବୁଲ୍ ବୈଠକର ସିଦ୍ଧାନ୍ତ ସମ୍ପୂର୍ଣ୍ଣରୂପେ ଏକଦେଶଦର୍ଶୀ ହୋଇଥିଲା ଏବଂ ତାହାର କୌଣସି ପ୍ରଭାବ ଦେଶବାସୀଙ୍କ ଉପରେ ପଡ଼ିପାରି ନ ଥିଲା । ବରଂ ଏହା ଇଂରେଜ ସରକାରର ଭାରତ ସ୍ୱାର୍ଥବିରୋଧୀ ମନୋଭାବକୁ ଅଧିକ ସ୍ପଷ୍ଟ ଭାବରେ ପ୍ରତିପାଦିତ କଲା ଏବଂ ଫଳରେ ଭାରତୀୟମାନଙ୍କ ଭିତରେ ଇଂରେଜ ବିରୋଧୀ ମନୋଭାବ ସେହି ପରିମାଣରେ ଅଧିକ ଦୃଢ଼ହୋଇଥିଲା ।

୧୯୩୦ ମସିହାର ଲାହୋର କଂଗ୍ରେସ ଅଧିବେଶନରେ 'ପୂର୍ଣ୍ଣସ୍ୱରାଜ୍ୟ' ପ୍ରସ୍ତାବ ଗ୍ରହଣ ହେବା ବା 'ଲବଣ ସତ୍ୟାଗ୍ରହ' ଆନ୍ଦୋଳନ ଚାଲୁହେବା ପୂର୍ବରୁ ଦେଶ ଭିତରେ ଯେଉଁ ରାଜନୈତିକ ଆଲୋଡ଼ନ ସୃଷ୍ଟିହୋଇଥିଲା, ତା'ର ସମ୍ୟକ୍ ଆଲୋଚନା ନ କଲେ ସଶସ୍ତ୍ର ସଂଗ୍ରାମର ପରବର୍ତ୍ତୀ ପର୍ଯ୍ୟାୟର ଗୁରୁତ୍ୱ ଉପଲବ୍ଧି କରିହେବନାହିଁ । ସାମ୍ୟବାଦୀ ରାମସେ ମାକଡୋନାଲାଡ୍ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ହେଲେ ବି ଭାରତର ସ୍ୱାଧୀନତା ପ୍ରାପ୍ତି ବିଷୟରେ ସେ ରକ୍ଷଣଶୀଳ ପ୍ରଧାନମନ୍ତ୍ରୀମାନଙ୍କଠାରୁ ଆଗକୁ ଯାଇ ପାରିଲେ ନାହିଁ, ବରଂ ବ୍ରିଟିଶ୍ ସାମ୍ରାଜ୍ୟବାଦକୁ ଦୃଢ଼କରିବାକୁ ସେ ଅଧିକ ତତ୍ପରତା ପ୍ରକାଶ କରିବାର ଦେଖାଗଲା । ତାଙ୍କ ସହ ପରାମର୍ଶ କରି ଭାରତର ବଡ଼ଲାଟ ଇରଉଇନ ଘୋଷଣାକଲେ ଯେ ସାଇମନ କମିଶନର ରିପୋର୍ଟ ମିଳିସାରିବା ପରେ ସେ ଗୋଲ୍‌ଟେବୁଲ୍ ବୈଠକର ଆୟୋଜନ କରିବେ । କିନ୍ତୁ 'ପୂର୍ଣ୍ଣସ୍ୱରାଜ୍ୟ' କଥା ଦୂରେ ଥାଉ 'ଡୋମିନିଅନ ଷ୍ଟାଟସ୍' ପାଇଁ ମଧ୍ୟ ସେ ପ୍ରତିଶ୍ରୁତି ଦେଇପାରିଲେ ନାହିଁ । 'ପୂର୍ଣ୍ଣ ସ୍ୱରାଜ୍ୟ' ବିଷୟରେ ଜାତୀୟବାଦୀମାନେ ଏକମତରେ ପହଞ୍ଚି ନ ଥିଲେ । ଗାନ୍ଧିଜୀ ଇରଉଇନଙ୍କଠାରୁ ସ୍ୱାୟତ୍ତ ଶାସନ ପାଇଁ ଉଦ୍ଦିଷ୍ଟ ଜବାବ ପାଇବାକୁ ଖୁବ୍ ଉଦ୍ୟମ କଲେ, କିନ୍ତୁ ଧୂର୍ତ୍ତ ଇରଉଇନ ଧରାଛୁଆଁ ଦେଲେନାହିଁ । ଫଳରେ ଲାହୋରରେ 'ପୂର୍ଣ୍ଣସ୍ୱରାଜ୍ୟ' ଦାବି ପ୍ରତି ସମର୍ଥନ ଜଣାଇବା ଛଡ଼ା ଗାନ୍ଧିଜୀଙ୍କର ଅନ୍ୟ ଗତି ନ ଥିଲା । ଏ ସମ୍ପର୍କରେ କଲିକତା କଂଗ୍ରେସର ପ୍ରସ୍ତାବକୁ ସ୍ମରଣ କରାଯାଇପାରେ ।

ଭାରତର ରାଜନୈତିକ ଭବିଷ୍ୟତ ଯେ ଆନ୍ତର୍ଜାତିକ ପରିସ୍ଥିତି ଉପରେ ନିର୍ଭରଶୀଳ ଏହା ଗାନ୍ଧିଜୀ, ନେହେରୁ ବା ପଟେଲ ବୁଝି ନ ଥିଲେ ସୁଦ୍ଧା ସୁଭାଷ ଠିକ୍ ବୁଝିଥିଲେ । ତେଣୁ କଲିକତା କଂଗ୍ରେସରେ ସେ ଏକ ବିରାଟ ସ୍ୱେଚ୍ଛାସେବକ ବାହିନୀ ଗଢ଼ି ସେଥିରେ ସନ୍ତୁଷ୍ଟ ନ ଥିଲେ, ସେ କଂଗ୍ରେସର ରାଜନୈତିକ ପ୍ରସ୍ତାବକୁ ମଧ୍ୟ ଅଧିକ ବିପ୍ଳବାତ୍ମକ କରିବାକୁ ଉଦ୍ୟମ କରିଥିଲେ । ବସ୍ତୁତଃ କଂଗ୍ରେସରେ ଯୋଗଦେବା ଦିନଠାରୁହିଁ ସେ

କଂଗ୍ରେସକୁ ଗଣଅଭ୍ୟୁତ୍‌ଥାନର ଏକ ଶାଣିତ ଅସ୍ତ୍ରରେ ପରିଣତ କରିବାକୁ ଚେଷ୍ଟା କରିଥିଲେ । କଲିକତା କଂଗ୍ରେସରେ ଗାନ୍ଧିଜୀଙ୍କର 'ଡୋମିନିଅନ ଷ୍ଟାଟସ୍' ବା 'ସ୍ୱାୟତ୍ତ ଶାସନ' ପ୍ରସ୍ତାବର ବିରୋଧକରି ସୁଭାଷ ଏକ ମୌଳିକ ସଂଶୋଧନ ପ୍ରସ୍ତାବ ଆଣିଥିଲେ, ''ସ୍ୱାୟତ୍ତ ଶାସନ ନୁହେଁ, ପୂର୍ଣ୍ଣସ୍ୱାଧୀନତାହିଁ ଆମର ଦାବି'' ବୋଲି ଏହି ସଂଶୋଧନରେ କୁହାଯାଇଥିଲା । ଏହାଠାରୁ ଟିକେ କମ୍ କରିବାକୁ ସୁଭାଷ ରାଜି ନଥିଲେ । ଗାନ୍ଧିଜୀଙ୍କ ମତ ବିରୋଧରେ ଯିବାକୁ ସେତେବେଳେ କଂଗ୍ରେସରେ ସୁଭାଷଙ୍କ ଛଡ଼ା ଆଉ କେହି ନ ଥିଲେ । ଗାନ୍ଧିଜୀ ମଧ୍ୟ ତାଙ୍କ ନିଜ ପ୍ରସ୍ତାବ ଗୃହୀତ କରାଇବାକୁ ସବୁମତେ ଚେଷ୍ଟାକରୁଥିଲେ ଏବଂ ତାଙ୍କ ପ୍ରସ୍ତାବ ଗୃହୀତ ନ ହେଲେ କଂଗ୍ରେସରୁ ଇସ୍ତଫା ଦେବାକୁ ମଧ୍ୟ କେବେ କେମିତି ଧମକ ଦେଇଥିବାର ଦେଖାଯାଉଥିଲା । ସୁଭାଷ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, "Whenever any opposition raised outside his Cabinet, he would always coerce the public by threatening to retire from the Congress or fast on to death."(1) (ଯେତେବେଳେ ତାଙ୍କ କର୍ମୀ ଗୋଷ୍ଠୀରୁ କେହି ତାଙ୍କର ମତ ବିରୋଧରେ ଯାଇଅଛନ୍ତି, ସେ କଂଗ୍ରେସରୁ ଇସ୍ତଫା ଦେବାର ବା ଆମରଣ ଅନଶନ କରିବାର ଧମକ ଦେଇ ଚାପ ପକାନ୍ତି ।) ଏବଂ ତାହା ଫଳଦେଇଥାଏ । ଏହି ଚାପ ପ୍ରୟୋଗ ନୀତି ଅବଲମ୍ବନ କରି ଗାନ୍ଧିଜୀ ବହୁବାର ତାଙ୍କର ମତ କଂଗ୍ରେସ ଓ ଦେଶବାସୀଙ୍କ ଉପରେ ଜାହିର କରିଅଛନ୍ତି । ଜଣେ ଇଂରେଜ ଐତିହାସିକଙ୍କ ମତରେ, "The entire intellect of the congress has been mortgaged in one man." (2) (କଂଗ୍ରେସର ସମସ୍ତ ବିଚାରବୁଦ୍ଧି ଗୋଟିଏ ଲୋକ ପାଖରେ ବନ୍ଧାପଡ଼ିଛି ।) ସୁଭାଷଙ୍କ ପ୍ରସ୍ତାବ ଅବଶ୍ୟ କାଟଖାଇଗଲା, କିନ୍ତୁ ସୁଭାଷଙ୍କୁ ସମର୍ଥନ କଲେ ୯୭୩ ଜଣ ପ୍ରତିନିଧି ଓ ମୂଳ ପ୍ରସ୍ତାବ ସପକ୍ଷରେ ୧୩୫୦ ଭୋଟ ମିଳିଲା କିନ୍ତୁ ଏହାକୁ ସୁଭାଷଙ୍କର ପରାଜୟ ନ କହି ଗାନ୍ଧିଜୀଙ୍କର ଜିଦ୍‌ର ବିଜୟ ବୋଲି କହିବା ଅଧିକ ଠିକ୍ ହେବ । ଏ ସମ୍ପର୍କରେ ମେଜର ସତ୍ୟବକ୍ସିଙ୍କ ସଂପାଦିତ 'ଫରୱାର୍ଡ଼' ପତ୍ରିକାରେ Muddled ଶିରୋନାମାରେ ଲିଖିତ ଅଗ୍ରଲେଖା ବିଶେଷ ପ୍ରଣିଧାନଯୋଗ୍ୟ, "It will be a grevious blunder on the part of the older leaders of the Congress if they run away with the idea that the numerical voting strength in favour of Gandhiji's resolution is an index of its popularity. He who runs must take note of the determined and articulate rebellion against authority, he who runs must take note of rebellion against paupery political or otherwise. No one is content today to take things as accepted or trim one's conviction to the conveniences of fancies of men, however reputed. It is no doubt true that personalities do count and older order does not change in a day. A course of action that has to secure the approval of the

1. The Indian Struggle Page – 245.
2. W. Coupland - The last years of British Rule in India - pg. 205

ballot box by marshalling on its sides all sorts of distinguished names of the country—revered Pandits and Maulanas and above all, the mysterious spell of Sabarmati, does not seem to show intrisinic strengh. It is a losing cause and principally do not take long to defeat personalities.

ମେଜର ସତ୍ୟ ବକ୍ସିଙ୍କ ଭଳି ବିପ୍ଳବୀମାନେ ଆଶା ପ୍ରକାଶ କରିଥିଲେ ଯେ ଶେଷ ସୁଦ୍ଧା ଗାନ୍ଧି ନୀତିର ନିରର୍ଥକତା କଂଗ୍ରେସ ଏବଂ ଦେଶବାସୀ ନିଶ୍ଚୟ ଉପଲବ୍ଧି କରିବେ ଏବଂ ସୁଭାଷଙ୍କ ନୀତି ଓ ପ୍ରସ୍ତାବ ଅଚିରେ ଦେଶ ଗ୍ରହଣ କରିବାକୁ ବାଧ୍ୟହେବ । ତାହା ହିଁ ହେଲା । କଲିକତା କଂଗ୍ରେସର ଠିକ୍ ବର୍ଷକ ପରେ (୧୯୨୯ରେ) 'ଲାହୋର କଂଗ୍ରେସ' ସୁଭାଷଙ୍କ ପ୍ରସ୍ତାବ ଗ୍ରହଣକଲା । ସେ ଅଧିବେଶନର ସଭାପତି ନେହେରୁ (ଜବାହରଲାଲ) ପ୍ରସ୍ତାବ କଲେ– "ସ୍ୱରାଜ୍ୟର ଅର୍ଥ ପୂର୍ଣ୍ଣ ସ୍ୱାଧୀନତା– ସ୍ୱାୟତ୍ତ ଶାସନ ନୁହେଁ ବା ଡୋମିନିୟନ୍ ଷ୍ଟାଟସ୍ ନୁହେଁ–ଔପନିବେଶିକ ସ୍ୱାଧୀନତା ନୁହେଁ ।" ସୁଭାଷ କିନ୍ତୁ ସେତେବେଳେ ଏତିକିରେ ସନ୍ତୁଷ୍ଟ ନ ଥିଲେ । ତାଙ୍କର ପ୍ରସ୍ତାବ ଥିଲା, "ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିବା ସଙ୍ଗେ ସଙ୍ଗେ ଏକ ସମାନ୍ତରାଳ ସ୍ୱାଧୀନ ସରକାର ମଧ୍ୟ ଗଠିତ ହେଉ ।"

ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ ଗ୍ରହଣ ପରେ ଆଗାମୀ ଆନ୍ଦୋଳନର ପ୍ରସ୍ତୁତି ପାଇଁ ଗାନ୍ଧିଜୀଙ୍କ ଉପରେ ପୁଣି ଦାୟିତ୍ୱ ଦିଆଗଲା । ୧୯୩୦ ମସିହା ଜାନୁୟାରୀ ୨୬ ତାରିଖରେ ସାରା ଭାରତରେ 'ପୂର୍ଣ୍ଣ ସ୍ୱାଧୀନତା' ଦିବସ ମଧ୍ୟ ବିପୁଳ ଉତ୍ସାହ ଉନ୍ମାଦନା ସହକାରେ ପାଳନ କରାଗଲା । ଏସବୁ ସତ୍ତ୍ୱେ ଗାନ୍ଧିଜୀ ଗଣଆନ୍ଦୋଳନର ଡାକରା ନ ଦେଇ ସରକାର ସହ ପୁଣି ମିଳାମିଶା ପ୍ରସ୍ତାବ ଦେଲେ ଏବଂ ଏଗାରଟି ସର୍ତ୍ତ ସମ୍ବଳିତ ଏକ ପ୍ରସ୍ତାବକୁ ଗ୍ରହଣ କରିବାକୁ ଅନୁରୋଧ କଲେ । ଏଥିରୁ ଧୂର୍ତ୍ତ ସରକାର କଂଗ୍ରେସ ଓ ଗାନ୍ଧିଜୀଙ୍କ ବଳ କଳିନେଲେ ଏବଂ ଏହି ପ୍ରସ୍ତାବକୁ ରୋକ୍‌ଠୋକ୍ ପ୍ରତ୍ୟାଖ୍ୟାନକଲେ । ଗାନ୍ଧିଜୀ ଦୁଃଖକରି କହିଲେ, "ମୁଁ ନତଜାନୁ ହୋଇ ଆପଣଙ୍କୁ (ବଡ଼ଲାଟଙ୍କୁ) ରୋଟି ମାଗିଥିଲି, ଆପଣ ମୋତେ ପଥର ଖାଇବାକୁ ଦେଲେ ।" ଶେଷରେ ମାର୍ଚ୍ଚ ୧୨ ତାରିଖ ୧୯୩୦ ମସିହାରେ ଆରମ୍ଭହେଲା ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ମହାନ୍ ଆନ୍ଦୋଳନ 'ଲବଣ ସତ୍ୟାଗ୍ରହ' । ଏହି ଆନ୍ଦୋଳନରେ ଦେଶବାସୀ ଅକଥନୀୟ କଷଣ ଓ ନିର୍ଯାତନା ଭୋଗକରିଛନ୍ତି ଏବଂ ସରକାରୀ ଦମନ ଅସ୍ତ୍ର ପୈଶାଚିକ ଆନନ୍ଦ ଉପଭୋଗ କରିଅଛି ।

("To face the lathi charge became a point of honour and in a spirit of maryrdom volunteers went out in hundreds to be beaten.)(1)

---

1. The History of the Congress – Pattavi Sitaramaya Vol – I, Pg – 687-91

ସଶସ୍ତ୍ର ବିପ୍ଳବୀମାନେ ସର୍ବଦା କହିଥା'ନ୍ତି ଯେ 'ଅହିଂସ ଆନ୍ଦୋଳନ'ରେ ଦେଶବାସୀଙ୍କରହିଁ ସର୍ବାଧିକ କ୍ଷତି ହୋଇଥାଏ । ସରକାରୀ କଳ ଦମନଅସ୍ତ୍ର ପ୍ରୟୋଗ କରି ତାହା ସହଜରେ ଦବେଇ ଦେଇଥାଏ ।

ଲବଣ ସତ୍ୟାଗ୍ରହ ପ୍ରତି କୋଟି କୋଟି ଦେଶବାସୀଙ୍କ ସମର୍ଥନ ମିଳିଲା ସତ୍ୟ, କିନ୍ତୁ ଗାନ୍ଧିଜୀ ପୁଣି ମିଳାମିଶା କଥାରେ ରାଜିହୋଇ ଆନ୍ଦୋଳନ ତଥା ଲୋକଙ୍କ ମନୋବଳରେ ଗୁରୁତର ଧକ୍କା ଦେଲେ । ଏପରିକି ନେହେରୁ ତାଙ୍କ ଆତ୍ମଜୀବନୀରେ ଲେଖିଲେ, "So I lay and pondered on that March night and in my heart there was a great emptiness as something precious gone; almost beyond recall.

This is the way the world ends,
Not with a bang, but a whimper." (1)

ଯେଉଁ ବଡ଼ଲାଟ୍ ଲର୍ଡ୍ ଇରଉଇନ୍‌ର ରେଳଗାଡ଼ିକୁ ଉଡ଼ାଇଦେବାକୁ ଏବଂ ତାକୁ ହତ୍ୟାକରିବାକୁ ସଶସ୍ତ୍ର ବିପ୍ଳବୀମାନେ ଅବିଶ୍ରାନ୍ତ ଉଦ୍ୟମ କରିଥିଲେ ସେହି ଲର୍ଡ଼ ଇର୍‌ଉଇନ ସହ ମିଳାମିଶା କରିବାକୁ ଯିବା ଉଭୟ କଂଗ୍ରେସ ଏବଂ ଗାନ୍ଧିଜୀଙ୍କ ପକ୍ଷରେ ଭୁଲ୍ ହେଲା । ବଡ଼ଲାଟଙ୍କୁ ଭେଟି ଆଲୋଚନା କରିବା ପାଇଁ ଗାନ୍ଧିଜୀ ପ୍ରଭୃତିଙ୍କୁ ଜେଲରୁ ଖଲାସକରାଗଲା । ସେତେବେଳକୁ ପ୍ରଥମ ଗୋଲ୍ ଟେବୁଲ୍ ବୈଠକର ପ୍ରତିନିଧିମାନେ ବିଲାତରୁ ଫେରିନଥା'ନ୍ତି । ଯଦିଓ କଂଗ୍ରେସ ସେହି ବୈଠକକୁ ବାସନ୍ଦକରିଥିଲା, ତଥାପି ତା'ର ଫଳାଫଳକୁ କଂଗ୍ରେସ କାହିଁକି ଯେ ଅପେକ୍ଷା କରିଥିଲା ତାହା ଆଜି କଳ୍ପନା କରିହୁଏନା । ଇତିହାସକାରଙ୍କ ମତରେ – "Its view of the work of the Round Table Conference was that its achievement did not justify the stoppage of the movement.(2) (ଗୋଲ୍ ଟେବୁଲ୍ ବୈଠକର ଫଳାଫଳକୁ ବିଚାର କଲେ ଆନ୍ଦୋଳନ ବନ୍ଦ କରିବାର କୌଣସି କାରଣ ନ ଥିଲା ।) ତଥାପି 'ଲବଣ ସତ୍ୟାଗ୍ରହ' ସ୍ଥଗିତରହିଲା । ଜେଲରୁ ଖଲାସହୋଇ ଇର୍‌ଉଇନ ସହ କଥାବାର୍ତ୍ତା କରିବା ପୂର୍ବରୁ ଗାନ୍ଧିଜୀ କହିଲେ – "I am hankering after peace, if it can have with honour."(3) (ସମ୍ମାନସହକାରେ ଯଦି ଶାନ୍ତି ମିଳିବ, ମୁଁ ତାହା ପାଇବାକୁ ପାଗଳ ।) କିନ୍ତୁ ଇତିହାସ କହେ 'ସମ୍ମାନ' ମିଳିବାକଥା ତେଣିକି ଥାଉ, ବିଲାତର ଜାଠଦଳ ଲୋକେ "ଗାନ୍ଧିଜୀଙ୍କୁ ଏତେ 'ସମ୍ମାନ' ଦେଇ ସରକାର ସହ ସମସ୍କନ୍ଧ କରିବା ଅନୁଚିତ"– ବୋଲି ଇର୍‌ଉଇନଙ୍କୁ ସମାଲୋଚନାକଲେ । ସେତେବେଳେ ଲବଣ ସତ୍ୟାଗ୍ରହ ଅପରାଧରେ ହଜାର ହଜାର ଭାରତବାସୀ ବନ୍ଦୀଶାଳାରେ । ଶହ ଶହ ମୃତ୍ୟୁ ବରଣ କରିସାରିଥା'ନ୍ତି । ସତ୍ୟାଗ୍ରହୀମାନଙ୍କର କୋଟି କୋଟି ଟଙ୍କାର ଚଳନ୍ତି ଅଚଳନ୍ତି ସଂପତ୍ତି ବ୍ୟାଜ୍ୟାପ୍ତ ହୋଇସାରିଥାଏ । ବିପ୍ଳବୀ ଭଗତ ସିଂ ଓ ତାଙ୍କର ସତୀର୍ଥ

1. Jawaharlal Nehru – An Autobiography, Page-259.
2. Tarachand – History of the Freedom Movement in India Vol- III Pg – 160
3. Ibid

ବନ୍ଧୁଗଣ ମୃତ୍ୟୁଦଣ୍ଡ ଅପେକ୍ଷାରେ । 'ଚଟ୍ଟଗ୍ରାମର ବିପ୍ଳବ'ର (୩ୟ ଭାଗରେ ଦ୍ରଷ୍ଟବ୍ୟ) ବିପ୍ଳବୀଗଣ ବିଚାରାଧୀନ । ସେତେବେଳେ ସରକାରୀ କଳ ସହ ମିଳାମିଶା କରିବା କେଡ଼େବଡ଼ ଦାୟିତ୍ୱ ତାହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । 'ଲବଣ ସତ୍ୟାଗ୍ରହ'ର ମୂଳକଥା ଥିଲା 'ପୂର୍ଣ୍ଣ ସ୍ୱରାଜ୍ୟ' । କିନ୍ତୁ 'ଗାନ୍ଧୀ-ଇର୍‌ୱଇନ' ଚୁକ୍ତି ଭାରତବାସୀଙ୍କୁ କ'ଣ ଦେଲା ? ଅବଶ୍ୟ କଂଗ୍ରେସ ଇତିହାସର ଇତିହାସକାରମାନେ ଏହି ଚୁକ୍ତି ଭାରତବାସୀଙ୍କର ଏକ ବିରାଟ ରାଜନୈତିକ ବିଜୟ ବୋଲି ଅଭିହିତ କରନ୍ତି, କିନ୍ତୁ ଏହା କଂଗ୍ରେସ କର୍ତ୍ତୃକ ଅର୍ଜିତ ଏକ ବିରାଟ ରାଜନୈତିକ କଳଙ୍କ ଏବଂ ଅପମାନ ।

ବମ୍ବେ ପ୍ରଦେଶ କଂଗ୍ରେସ କମିଟିର ତତ୍‌କାଳୀନ ସଭାପତି ନାରିମାନ୍ ରୀତିମତ ଉତ୍ତେଜିତ କଣ୍ଠରେ କହିଲେ – "ଗାନ୍ଧିଜୀଙ୍କର ଏହି ସଂଶୋଧନୀ ମନୋଭାବର ପ୍ରତିକାର କ'ଣ ? ରାଜନୀତି ଓ ଧର୍ମର ଖିଚିଡ଼ି ଏବଂ ଭୁଲଭ୍ରାନ୍ତିର ଏହି ଅସରନ୍ତି ପରିକ୍ରମା – ଏହା ହାତରୁ ଜାତି କେବେ ପରିତ୍ରାଣ ପାଇବ ? ଉପାୟ ଅଛି – ଗାନ୍ଧିଜୀଙ୍କୁ ଯେଉଁ ଭୈରବୀ ଚକ୍ର ବେଢ଼ିରହିଛି, ଯେଉଁ ସ୍ୱାଧୀନ ଚିନ୍ତାଶୂନ୍ୟ କେତେଗୁଡ଼ିଏ କଣ୍ଢେଇ ଅଛନ୍ତି, ଯେଉଁମାନେ ଗାନ୍ଧିଜୀଙ୍କ ସ୍ଥାନରେ ଏମିତି ଯଦି ଜଣେ କେହି ମିଳନ୍ତା, ଯା'ର ବ୍ୟକ୍ତିତ୍ୱ ଅଛି, ଯେ ସହଜ କଥା ସହଜ ଭାବରେ କହିପାରେ ଏବଂ ଯା'ର ରାଜନୈତିକ ମସ୍ତିଷ୍କ ଥିବ, ତେବେ ଏହି ବିଷଚକ୍ରରୁ ଦେଶ ହେଲେ ଉଦ୍ଧାରପାଆନ୍ତା ।"

ପ୍ରଖ୍ୟାତ ଐତିହାସିକ ଡକ୍ଟର ରମେଶଚନ୍ଦ୍ର ମଜୁମଦାର ଇତିହାସକାରର କଷଟିରେ ପରଖ କରି ଲେଖିଲେ – "Gandhi, the politician, hopelessly blundered."

କାହିଁକି ? 'ଗାନ୍ଧୀ-ଇର୍‌ୱଇନ' ଚୁକ୍ତିକୁ କାହିଁକି ଏ ସମାଲୋଚନା ? 'ପୂର୍ଣ୍ଣ-ସ୍ୱରାଜ୍ୟ' କଥା ତେଣିକି ଥାଉ' 'ଡୋମିନିୟନ ଷ୍ଟାଟସ୍' କଥା ମଧ୍ୟ ଆଲୋଚନା କରିବାକୁ ରାଜି ହେଲେ ନାହିଁ ଇର୍‌ୱଇନ୍ । କେବଳ ରାଜିହେଲେ– ୧- ଆଇନ ଅମାନ୍ୟ ଆନ୍ଦୋଳନ ବା ଲବଣ ସତ୍ୟାଗ୍ରହ ପ୍ରତ୍ୟାହୃତ ହେବ । ଖଜଣା ବନ୍ଦ ଓ ସରକାରୀ କର୍ମଚାରୀଙ୍କୁ ମତେଇବା କାର୍ଯ୍ୟ ପରିହାର କରାଯିବ, ୨- ବିଦେଶୀ ଜିନିଷ ବର୍ଜନ ଆନ୍ଦୋଳନ ବନ୍ଦ ହେବ । ଅର୍ଥାତ୍ ବିଦେଶୀ ଜିନିଷ ଦୋକାନ ଆଗରେ ପିକେଟିଂ ଚଳିବ ନାହିଁ; ଏପରିକି ମଦ ଦୋକାନ ଆଗରେ ମଧ୍ୟ ପିକେଟିଂ ଚଳିବ ନାହିଁ, ୩ - ପୋଲିସ ଅତ୍ୟାଚାର ସମ୍ପର୍କରେ ତଦନ୍ତ କରିବାକୁ ଗାନ୍ଧିଜୀଙ୍କ ଦାବି ସେ ଉଠାଇନେବେ, ୪ - ସଶସ୍ତ୍ର ବିପ୍ଳବୀଙ୍କ ବିରୋଧରେ ଚାଲିଥିବା ମକଦ୍ଦମା ଚାଲୁରହିବ, ୫- ବାଜ୍ୟାପ୍ତହୋଇଥିବା ସତ୍ୟାଗ୍ରହୀମାନଙ୍କର ଅଚଳନ୍ତି ସମ୍ପତ୍ତି ଫେରସ୍ତ ହେବନାହିଁ, ୬- ଯେଉଁ ସରକାରୀ କର୍ମଚାରୀମାନେ କାର୍ଯ୍ୟରୁ ଇସ୍ତଫାଦେଇ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେଇଥିଲେ, ସେମାନଙ୍କୁ ପୁନର୍ବାର କାର୍ଯ୍ୟରେ ବାହେଲ କରାଯାଇ ପାରିବ ନାହିଁ ।

କଂଗ୍ରେସ ଯଦି ଏହି ସର୍ତ୍ତସବୁ ମାନିନିଏ, ତେବେ ସରକାର ପୁଣି ଲୋକମାନଙ୍କ ଉପରେ ଯେଭଳି ଉଚିତ ମନେକରିବେ, ସେହିଭଳି ଅତ୍ୟାଚାର ଚଳାଇପାରିବେ ।

ସୁଭାଷ ଓ ଭିଠଲ ଭାଇ ବିବ୍ରତ ହୋଇ ଭିଏନାରୁ କହିଥିଲେ, ''ଆଇନ ଅମାନ୍ୟ ଆନ୍ଦୋଳନ ବନ୍ଦରଖି ଯେଉଁ ପରିସ୍ଥିତି ସୃଷ୍ଟିକଲେ ସେଥିରୁ ପ୍ରମାଣିତ ହେଲା ଯେ, କଂଗ୍ରେସର ନୀତି ବର୍ତ୍ତମାନ ଅଚଳ । ଆମେ ସ୍ପଷ୍ଟରୂପେ କହିଦେବାକୁ ଚାହୁଁ ଯେ ରାଷ୍ଟ୍ରନେତା ଭାବେ ଗାନ୍ଧିଜୀ ବ୍ୟର୍ଥ । ସୁତରାଂ ସମୟ ଆସିଛି ଯେତେବେଳେ ନୂତନ ନୀତି ଉପରେ ନୂତନ ପଦ୍ଧତିରେ କଂଗ୍ରେସକୁ ପୁନର୍ଗଠନ କରାଯିବା ଉଚିତ ଏବଂ ସେଥିପାଇଁ କଂଗ୍ରେସ ନେତୃତ୍ୱର ପରିବର୍ତ୍ତନ ଦରକାର ।''

ଭାରତରେ ଆବାଳବୃଦ୍ଧବନିତା ଅନ୍ତତଃ ଏତକ ଆଶା ନିଶ୍ଚୟ କରୁଥିଲେ ଯେ ଗାନ୍ଧିଜୀ ନିଶ୍ଚୟ ଭଗତସିଂ, ସୁଖଦେବ ଓ ରାୟଗୁରୁଙ୍କର ମୁକ୍ତି ଦାବିକରିବେ ଏବଂ ଏହାକୁ ଏକ ସମ୍ମାନର ପ୍ରଶ୍ନରୂପେ ଧରିବସିବେ । ତା' ନ ହେବାରୁ ଚାରିଆଡ଼େ ହତାଶା ଓ ବିରକ୍ତି ପ୍ରକାଶପାଇଲା । ଚଟ୍ଟଗ୍ରାମ ଜେଲରେ ଥିବା ବିପ୍ଳବୀ ଗଣେଶ ଘୋଷ ପ୍ରଭୃତି ଗାନ୍ଧିଜୀଙ୍କୁ ଚିଠି ଲେଖିଲେ ଜେଲ ଭିତରୁ । ବକ୍ସାର ଦୁର୍ଗରେ ବନ୍ଦୀଥିବା ବିପ୍ଳବୀମାନେ ଗାନ୍ଧିଜୀ, ତେଜ ବାହାଦୁର ଏବଂ ନେହେରୁଙ୍କୁ ଲେଖିଲେ – ''ସମସ୍ତଙ୍କୁ ମୁକ୍ତି ଦିଆ ନ ଗଲେ ଆମେ ଚୁକ୍ତିକୁ ମାନିବୁ ନାହିଁ ।'' ଗାନ୍ଧିଜୀ ଓଲଟା ମାର୍ଚ୍ଚ ୨ ତାରିଖରେ ବଡ଼ଲାଟଙ୍କୁ ଲେଖିଲେ, ''ମୋର ଉଦ୍ଦେଶ୍ୟ କ୍ରମବର୍ଦ୍ଧମାନ ସହିଂସ ସଂଗ୍ରାମୀମାନଙ୍କ ସଂଗଠିତ ଶକ୍ତି ବିରୋଧରେ ମୋର ବ୍ୟକ୍ତିଗତ ଶକ୍ତିକୁ ପରିଚାଳିତ କରିବି ।''

ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନର ଅନ୍ୟତମ ଦୁର୍ଦ୍ଧର୍ଷ ବିପ୍ଳବୀ ଅନନ୍ତ ସିଂ (ଅଗ୍ନିଯୁଗର ଗୋଟିଏ ଅଧ୍ୟାୟ) ବହିରେ ଲେଖିଛନ୍ତି, ''୧୯୩୧ ମାର୍ଚ୍ଚ ୫ ତାରିଖରେ ଗାନ୍ଧୀ-ଇର୍‌ଉଇନ ଚୁକ୍ତି ସ୍ୱାକ୍ଷରିତ ହେଲା । ଗାନ୍ଧୀଜୀଙ୍କର ସର୍ତ୍ତ ଅନୁସାରେ ଆଇନ ଅମାନ୍ୟ ଆନ୍ଦୋଳନରେ ଧୃତ ସମସ୍ତେ ଖଲାସ ହେଲେ । ସଶସ୍ତ୍ର ଆନ୍ଦୋଳନରେ ଧୃତ କାହାରି ମୁକ୍ତି ପାଇଁ ଗାନ୍ଧିଜୀ ଦାବି କରିନାହାନ୍ତି ବୋଲି ଏବେ ଜଣାଗଲା । ଏପରିକି ଦେଶବାସୀଙ୍କ ଆଗ୍ରହ ସତ୍ତ୍ୱେ ଭଗତ ସିଂ ପ୍ରଭୃତିଙ୍କ ମୁକ୍ତି ବିଷୟରେ ମଧ୍ୟ କିଛି କୁହାଯାଇ ନାହିଁ । ବ୍ରିଟିଶ୍‌ର Divide and Rule ନୀତିର ବିଜୟହେଲା । ସେ ନୀତି ହେଉଛି – ''କଂଗ୍ରେସ ସହ ମିଳାମିଶା କର ଓ ବିପ୍ଳବୀମାନଙ୍କୁ କଠୋର ହସ୍ତରେ ଦମନ କର ।'' ଇତିହାସରେ କୁହାଯାଇଛି, ଗାନ୍ଧିଜୀଙ୍କର ଏ ପ୍ରଶ୍ନ ସଂବନ୍ଧରେ ଇରଉଇନ ନିର୍ବିକାର ରହିଥିଲେ । କେବଳ କେତେକ ସ୍ଥାନରେ ଖଜଣା ହ୍ରାସ କରିବାକୁ ରାଜିହୋଇଥିଲେ । କିନ୍ତୁ ଭଗତ ସିଂ, ସୁଖଦେବ ଓ ରାଜଗୁରୁଙ୍କ ଉପରୁ ମୃତ୍ୟୁଦଣ୍ଡ ପ୍ରତ୍ୟାହାରମୂଳକ ଗାନ୍ଧିଜୀଙ୍କର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଅନୁଯୋଗ ସେ ଦୃଢ଼ଭାବରେ ଅଗ୍ରାହ୍ୟ କରିବା ସଙ୍ଗେ ସଙ୍ଗେ ଏଥିପାଇଁ ସାମାନ୍ୟ କାଳବିଳମ୍ବ କରିବାକୁ ମଧ୍ୟ ନାସ୍ତି କରି ଦେଇଥିଲେ । ସେମାନେ ମାର୍ଚ୍ଚ ୨୩ ତାରିଖ ଦିନ ନିହତ ହେଲେ । ଆହୁରି ଅନେକ ବିଷୟରେ ସରକାରଙ୍କର ଦମନ ନୀତି କୌଣସି ପ୍ରକାର କୋହଳ କରାଯାଇ ନ ଥିଲା ଏବଂ ଗାନ୍ଧିଜୀ ତାଙ୍କର ଇପ୍ସିତ ସୁଯୋଗସମୂହ ଆଦାୟ କରିବାକୁ ଅକ୍ଷମ ହୋଇଥିଲେ ।

ଭଗତସିଂଙ୍କର ହିନ୍ଦୁସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ଆର୍ମି ଓ ସେତେବେଳେ ଦେଶ ଭିତରେ ଥିବା ଅନ୍ୟାନ୍ୟ ସଶସ୍ତ୍ର ବିପ୍ଳବୀସଂସ୍ଥା ଭିତରେ ଆଦର୍ଶ ଓ ନୀତି ଦୃଷ୍ଟିରୁ କେତେକ ମୌଳିକ ପାର୍ଥକ୍ୟ ଥିଲା । ଭଗତ ସିଂଙ୍କର ଦଳ ସାମ୍ୟବାଦ ବିଚାରଧାରାରେ ସଂପୂର୍ଣ୍ଣ ବିଶ୍ୱାସକରୁଥିଲେ ଏବଂ ସ୍ୱାଧୀନତା ଆନ୍ଦୋଳନକୁ ସାମ୍ୟବାଦ ଆଦର୍ଶରେ ପରିଚାଳିତ କରିବାକୁ ଚାହୁଁଥିଲେ ଏବଂ ଭାରତବର୍ଷରେ 'ସର୍ବହରାର ଅଧିନାୟକତ୍ୱ' ପ୍ରତିଷ୍ଠା କରିବା ତାଙ୍କର ଲକ୍ଷ୍ୟ ଥିଲା । ଇଂରେଜମାନେ ଭାରତରେ ତଥାକଥିକ ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ପାର୍ଲିଆମେଣ୍ଟାରୀ ରାଜନୀତିର ଯେଉଁ ପ୍ରୟୋଗ କରୁଥିଲେ ତାହା ବିଶ୍ୱଜନମତକୁ ବିଭ୍ରାନ୍ତ କରିବାକୁ ଅଭିପ୍ରେତ ହୋଇଥିଲା ବୋଲି ଭଗତସିଂଙ୍କ ଦଳ ମନେକରୁଥିଲେ । ବ୍ୟକ୍ତିଗତ ସନ୍ତ୍ରାସବାଦ ଯଦିଓ ସେମାନେ କ୍ଷେତ୍ରବିଶେଷରେ ପ୍ରୟୋଗ କରୁଥିଲେ – ସେମାନଙ୍କର ପ୍ରଧାନ ଲକ୍ଷ୍ୟସ୍ଥଳ ଥିଲା ବ୍ରିଟିଶ୍ ଭାରତରେ ଚାଲିଥିବା ପାର୍ଲିଆମେଣ୍ଟାରୀ ବ୍ୟବସ୍ଥାର ପ୍ରହସନ ପ୍ରତି ଦେଶବାସୀଙ୍କର ବାରମ୍ବାର ଦୃଷ୍ଟି ଆର୍କଷଣ କରିବା ଏବଂ ସେହି ଉଦ୍ଦେଶ୍ୟରେ ସେ ଅଧିବେଶନ ଚାଲୁଥିବାବେଳେ ପାର୍ଲିଆମେଣ୍ଟ ଗୃହ ଭିତରେ ବୋମା ନିକ୍ଷେପ କରିଥିଲେ । କାହାକୁ ହତ୍ୟା କରିବା ତାଙ୍କର ଆଦୌ ଉଦ୍ଦେଶ୍ୟ ନ ଥିଲା । ସେଭଳି ଉଦ୍ଦେଶ୍ୟ ଥିଲେ ସେ ଅକ୍ଳେଶରେ ତାହା କରିପାରିଥା'ନ୍ତେ ବୋଲି ଭଗତ ସିଂ ନିଜେ ପ୍ରକାଶକରିଛନ୍ତି । ଏପରିକି ଲାଲା ଲଜପତ ରାୟଙ୍କର ମୃତ୍ୟୁର ମୁଖ୍ୟ କାରଣ କୁଖ୍ୟାତ ସାଇମନ ଯେ କି ସେତେବେଳେ ଦର୍ଶକ ଗ୍ୟାଲେରୀରେ ବସିଥିଲା, ଅନ୍ତତଃ ତାକୁ ଅନାୟାସରେ ହତ୍ୟା କରାଯାଇ ପାରିଥା'ନ୍ତା । କିନ୍ତୁ ତାହା ସେ କରିନଥିଲେ ।

ପାର୍ଲିଆମେଣ୍ଟ ଗ୍ୟାଲେରୀରୁ ଆରେଷ୍ଟ ହେବାବେଳେ ଭଗତ ସିଂ କହିଥିଲେ – ତଥାକଥିତ ପାର୍ଲିଆମେଣ୍ଟ ନାମରେ ଆମ ଦେଶ ପ୍ରତି ବହୁ ଅସମ୍ମାନ କରାଗଲାଣି । ଏହି ପ୍ରହସନକୁ ବନ୍ଦକରିଦେବାହିଁ ଆମର ଉଦ୍ଦେଶ୍ୟ । ବ୍ରିଟିଶ୍ ଅମଲାତନ୍ତ୍ରର ଅସଲ ରୂପକୁ ଭାରତବାସୀଙ୍କ ସମ୍ମୁଖରେ ପ୍ରକଟିତ କରିବା ପାଇଁ ଆମେ ଜୀବନ ଦେବାକୁ ପ୍ରସ୍ତୁତ ହୋଇଅଛୁଁ ।

ଜୁନ୍ ୬ ତାରିଖରେ ମାଜିଷ୍ଟ୍ରେଟ ଆଗରେ ସେ ପୁଣି ସେହି କଥାକୁହିଁ ଦୃଢ଼ତା ସହକାରେ ପୁନରାବୃତ୍ତି କରି କହିଲେ, ''ଏହି ଆକ୍ରମଣ କୌଣସି ବ୍ୟକ୍ତିବିଶେଷ ବିରୋଧରେ ଅଭିପ୍ରେତ ନୁହେଁ । ବରଂ ଏହି ନିକମ୍ମା ପାର୍ଲିଆମେଣ୍ଟ ସଂସ୍ଥା ବିରୋଧରେ ଉଦ୍ଦିଷ୍ଟ । ଆମ୍ଭେମାନେ ନିଷ୍ପାପର ଇତିହାସର ଛାତ୍ର – ସୁତରାଂ ଆମ ଭିତରେ କୌଣସି ଭଣ୍ଡତା ନାହିଁ । ''କେନ୍ଦ୍ରୀୟ ବ୍ୟବସ୍ଥାସଭା କେବଳ ଏକ ଅକର୍ମଣ୍ୟ ସଂସ୍ଥା ନୁହେଁ, ବରଂ ବଦମାସୀ କରିବାକୁ ଏହାର ଯଥେଷ୍ଟ ଶକ୍ତି ରହିଅଛି ।'' ''ଦେଶର ଦାବି ଏହି ସଂସ୍ଥାଦ୍ୱାରା ବାରମ୍ବାର ପ୍ରତ୍ୟାଖ୍ୟାତ ହୋଇଅଛି । ଏହିଠାରେ ହିଁ ଅତ୍ୟାଚାରମୂଳକ ଆଇନ ବିରୋଧରେ ହୋଇଥିବା ଯାବତୀୟ ପ୍ରସ୍ତାବକୁ ଅବଜ୍ଞା ସହକାରେ ପ୍ରତ୍ୟାଖ୍ୟାନ

କରାଯାଇଛି, ଅଥଚ ନିର୍ବାଚିତ ସଭ୍ୟମାନଙ୍କଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିବା 'ବହୁ ଆଇନ ଗୋଟିଏ କଲମଗାରରେ କାର୍ଯ୍ୟକାରୀ କରାଯାଇଛି ।''

ତତ୍କାଳୀନ ମାନ୍ଧାଦଳିଆ ଓ କଂଗ୍ରେସ ନେତାମାନଙ୍କୁ ଲକ୍ଷ୍ୟକରି ଭଗତ ସିଂ କହିଲେ – ''ପ୍ଲାର୍ଲିଆମେଣ୍ଟାରୀ ପ୍ରହସନରେ ଆମର ନେତାମାନେ ଯେଭଳି ସମୟ ଓ ବିପୁଳ ପରିମାଣର ଜାତୀୟ ସମ୍ପତ୍ତି ବରବାଦ କରୁଅଛନ୍ତି ତାହା ଆମ ପକ୍ଷରେ ଅସହ୍ୟ । ଶ୍ରମିକ ଆନ୍ଦୋଳନକାରୀମାନଙ୍କୁ ଯେଭଳି ଭାବରେ ଆଖିବୁଜା ଗିରଫକରାଯାଉଛି, ତାହା ନିର୍ଭୁଲ ଭାବରେ ପ୍ରମାଣିତ କରିଅଛି ଯେ ଦେଶର କୋଟି କୋଟି ମେହନତୀ ଜନତା ଏହା ଉପରେ ଆଉ ଭରସା ରଖିବା ଚରମ ନିର୍ବୋଧତା ।''

''ବଧିର ବ୍ୟକ୍ତିକୁ ଶୁଣାଇବାକୁ ହେଲେ ଖୁବ୍ ବଡ଼ ଶବ୍ଦ ଆବଶ୍ୟକ, ଆମେ ସେହି ଶବ୍ଦହିଁ ସୃଷ୍ଟିକରିଛୁଁ ଏବଂ ଏହାଦ୍ୱାରା ଆମେ ଏକ ସତର୍କଘଣ୍ଟି ବଜାଇଅଛୁଁ । କାରଣ ଏହି ବିରାଟ ସମୁଦ୍ର ଗର୍ଭରୁ ଏକ ଭୟାବହ ଝଞ୍ଜା ଆସନ୍ନପ୍ରାୟ । ସେହି ଝଡ଼ର ଆଗମନୀ ବାର୍ତ୍ତା ହେଉଛି ଆମର ସତର୍କ ଘଣ୍ଟି । ଗୁରୁଗୋବିନ୍ଦ ସିଂହ ଓ ଶିବାଜୀ, କେମାଲାପାଶା ଓ ରାଜା ଖାଁ, ଓ୍ୱାସିଙ୍ଗଟନ ଓ ଗ୍ୟାରିବାଲଡି, ଲାଫାୟତ ଓ ଲେଲିନ୍ ପ୍ରଭୃତିଙ୍କ ମହାନ୍ ଆଦର୍ଶରେ ଆମେ ପରିପୁଷ୍ଟ । ଆମେ ଯାହା କରୁଛୁଁ ତା'ର ପରିଣତି ସମ୍ପର୍କରେ ଉତ୍ତମରୂପେ ଚିନ୍ତାକରିଅଛୁଁ ଏବଂ ସର୍ବୋଚ୍ଚ ଦଣ୍ଡ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛୁଁ । ବାସ୍ତାଇଲ ଦୁର୍ଗ ଫରାସୀ ବିପ୍ଲବକୁ ସ୍ତବ୍ଧ କରିପାରିନଥିଲା । ଫାଶୀମଞ୍ଚ ବା ସାଇବେରିଆର ଖଣି ରୁଷିୟ ବିପ୍ଲବକୁ ଦବେଇ ପାରି ନ ଥିଲା । ସୁତରାଂ ଅର୍ଡ଼ିନାନ୍ସ ଓ ନିରାପତ୍ତା ଆଇନ ଭାରତର ସ୍ୱାଧୀନତା ବହ୍ନିକୁ ନିର୍ବାପତି କରିବ କିପରି ?

ବପ୍ଳବର ମହାନ୍ ଆଦଶକୁ ବ୍ୟାଖ୍ୟା କର ଭଗତ ସଂ କହଲେ – "Revolution does not necessarily involve sanguinary strife nor is there any place in it for an individual vendetta. It is not the cult of the Bomb and Pistol. By revolution we mean that the present order of things which is based on manifest injustice must change. Producers or labourers in spite of being the most necessary element of society are being robbed by the exploiters of the fruits of their labour and deprived of thier elementary rights and this must stop."

ସେ ପୁଣି କହିଲେ, ''ପୁଞ୍ଜିପତି ଶୋଷକମାନେ ନିଜ ନିଜ ସଉକପାଇଁ କୋଟି କୋଟି ଟଙ୍କା ବରବାଦ କରୁଅଛନ୍ତି । ଏହି ଭୟାବହ ଅସମତା ଏକ ସର୍ବାତ୍ମକ ବିପ୍ଳବ ପାଇଁ ପରିସ୍ଥିତି ସୃଷ୍ଟି କରୁଛି । ବର୍ତ୍ତମାନର ସମାଜ ଏକ ଆଗ୍ନେୟଗିରି ଉପରେ ବସି ମଉଜ ମଜଲିସରେ ମସଗୁଲ ।''

ସେହି ଆଗ୍ନେୟଗିରିର ଯେତେବେଳେ ବିସ୍ଫୋରଣ ହେବ ସେତେବେଳେ ପ୍ରତିଷ୍ଠିତ ହେବ 'ସର୍ବହରାର ଅଧିନାୟକତ୍ୱ' ବୋଲି ଦୃଢ଼ ସ୍ୱରରେ ଘୋଷଣାକଲେ । ଭଗତସିଂ

ପୁଣି କହିଲେ, "ଏହା ଆମର ଆଦର୍ଶ ଏବଂ ଏହି ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଆମେ ଏହି ପ୍ରଚଣ୍ଡ ଶବ୍ଦ କରିଅଛୁଁ । ଏହି ଶବ୍ଦରେ ଯଦି ନିଦ ନ ଭାଙ୍ଗେ ତେବେ ଏକ ଭୟାବହ ଯୁଦ୍ଧ ଆରମ୍ଭ ହେବ ଏବଂ ସମସ୍ତ ବାଧାବିଘ୍ନ ଲୋପପାଇ ପ୍ରତିଷ୍ଠିତହେବ 'ସର୍ବହରାର ଅଧିନାୟକତ୍ୱ' । ବିପ୍ଳବ ପ୍ରତ୍ୟେକ ମନୁଷ୍ୟର ଜନ୍ମଗତ ଅଧିକାର । ଶ୍ରମ ହିଁ ସମାଜର ମୂଳାଧାର । ସାର୍ବଭୌମ ଅଧିକାର ଲାଭ ଶ୍ରମିକର ଅନ୍ତିମ ଲକ୍ଷ୍ୟ । ସେହି ବିପ୍ଳବର ମହାନ୍ ଯଜ୍ଞରେ ଆମର ଯୌବନକୁ ଆମେ ଆହୁତି ହୋଇଛୁଁ । ଆମେ ତୃପ୍ତ, ସନ୍ତୁଷ୍ଟ । ବିପ୍ଳବର ଆଗମନକୁ ଆମେ ପ୍ରତୀକ୍ଷା କରିବୁ । 'ଇନକ୍ବିଲାବ୍ ଜିନ୍ଦାବାଦ୍' ।

ଲାହୋର ଷଡ଼ଯନ୍ତ୍ର ମୋକଦ୍ଦମା ଚାଲୁଥିବା ଅବସ୍ଥାରେ ଜେଲ ଭିତରେ କଏଦୀମାନେ ଅନଶନ ଆରମ୍ଭକରିଦେଇଥିଲେ । ରାଜନୈତିକ ବନ୍ଦୀ ଭାବରେ ସମସ୍ତ ସୁବିଧା ସୁଯୋଗ ଦାବିକରି ଭଗତସିଂ ଓ ବଟୁକେଶ୍ୱର ମଧ୍ୟ ଅନଶନରେ ଯୋଗଦେଇଥିଲେ । କିନ୍ତୁ ସେମାନଙ୍କର ଦାବି ପୂରଣ ହେବା ଦୂରେଥାଉ, ସେମାନଙ୍କ ଉପରେ ଶାରୀରିକ ନିର୍ଯାତନା ବଢ଼ିଚାଲିଲା । ଜୁଲାଇ ୯ ତାରିଖରେ ଭଗତ ସିଂଙ୍କ ଅନଶନ ୨୫ ଦିନରେ ପହଞ୍ଚିଲା ପରେ ଯାଇ ଜେଲ ବାହାରକୁ ସେ ସମ୍ବାଦ ଆସିଲା । ବନ୍ଦୀମାନଙ୍କ ପ୍ରତି ସହାନୁଭୂତି ଜଣାଇ ବିପ୍ଳବୀ ଯତୀନ ଦାସ ମଧ୍ୟ ଅନଶନ ଆରମ୍ଭକରିଦେଇଥିଲେ । ଜେଲ କର୍ତ୍ତୃପକ୍ଷ ଏଥିରେ ବିବ୍ରତ ହୋଇ ବନ୍ଦୀମାନଙ୍କୁ ବଳପୂର୍ବକ ନଳୀ ସାହାଯ୍ୟରେ ଖୋଇବାକୁ ଚେଷ୍ଟାକଲେ । କିନ୍ତୁ ତାହା ମଧ୍ୟ ସହଜ କଥା ନ ଥିଲା । ପୁଲିସ ସହ ଧସ୍ତାଧସ୍ତିରେ ବନ୍ଦୀମାନଙ୍କୁ ଅଧିକ ନିର୍ଯାତନା ସହ୍ୟ କରିବାକୁ ପଡ଼ିଲା । ବନ୍ଦୀମାନେ ପ୍ରାଣପଣେ ବାଧାଦେଉଥା'ନ୍ତି ଏବଂ ପୁଲିସ ମଧ୍ୟ ଆପ୍ରାଣ ଉଦ୍ୟମ କରୁଥା'ନ୍ତି ସେମାନଙ୍କୁ ଖୋଇବାପାଇଁ । ଏହି ଠେଲାପେଲାରେ ଯଦି କିଛି ଖାଦ୍ୟ ପେଟ ଭିତରକୁ ଚାଲିଯାଏ ବାନ୍ତିକରି ବନ୍ଦୀମାନେ ତାହା ବାହାର କରି ଦିଅନ୍ତି । ଦୀର୍ଘ ୬୩ ଦିନ ଅନଶନ କରି ଯତୀନ ଦାସ ସେପ୍‌ଟେମ୍ବର ୧୩ ତାରିଖରେ ସ୍ୱର୍ଗାରୋହଣକଲେ । କଂଗ୍ରେସ କମିଟିର ଅନୁରୋଧକ୍ରମେ ଭଗତ ସିଂ ଓ ବଟୁକେଶ୍ୱର ଅନଶନ ଭଙ୍ଗକରିଥିଲେ । କିନ୍ତୁ ଗାନ୍ଧୀ-ଇରଉଇନ ଚୁକ୍ତି ସ୍ୱାକ୍ଷରିତ ହେବା ସତ୍ତ୍ୱେ ଭଗତ ସିଂ ପ୍ରଭୃତିଙ୍କ ଜୀବନ ରକ୍ଷା କରିବାକୁ କୌଣସି ଚେଷ୍ଟା ହୋଇନଥିଲା ।

ଚୁକ୍ତି ସ୍ୱାକ୍ଷରିତ ହେବା ପରେ ସିମଲାରେ ଗାନ୍ଧିଜୀ କହିଲେ, 'ଚୁକ୍ତି ମାନି ଚଳିଲେ ହିଂସାକାଣ୍ଡ କରୁଥିବା ଲୋକମାନେ ମଧ୍ୟ ମୁକ୍ତି ପାଇବେ' । କିନ୍ତୁ ସେ ସିମଲାରୁ କରାଚୀ ଯିବା ବାଟରେ ମାର୍ଚ୍ଚ ୨୩ ତାରିଖ ୧୯୩୧ରେ ଭଗତସିଂ, ରାଜଗୁରୁ ଓ ସୁଖଦେବ ଫାଶୀପାଇଲେ । ଭଗତସିଂ ପ୍ରଭୃତିଙ୍କ ଫାଶୀରେ ଦେଶବାସୀ ଗାନ୍ଧିଜୀଙ୍କ ଉପରେ ଘୋର ଅସନ୍ତୋଷ ପ୍ରକାଶ କଲେ, ଏପରିକି କରାଚୀରେ ତାଙ୍କୁ ଗଣବିକ୍ଷୋଭର ସମ୍ମୁଖୀନ ହେବାକୁ ପଡ଼ିଲା ।

ଡକ୍ଟର ପଟ୍ଟାଭି ସୀତାରାମାୟା 'କଂଗ୍ରେସର ଇତିହାସ' ଗ୍ରନ୍ଥରେ ସ୍ୱୀକାରକରିଛନ୍ତି, ''ସେତେବେଳେ ଭଗତସିଂଙ୍କ ନାମ ସାରା ଭାରତରେ ବିଖ୍ୟାତ ହୋଇଥିଲା ଏବଂ ଗାନ୍ଧିଜୀଙ୍କ ଅପେକ୍ଷା ସେ ଅଧିକ ଲୋକପ୍ରିୟ ହୋଇ ଯାଇଥିଲେ । (୧) କରାଚୀର କଂଗ୍ରେସ ଅଧିବେଶନରେ ମଧ୍ୟ ଏହାକୁ କେନ୍ଦ୍ରକରି କଂଗ୍ରେସ ଖଣ୍ଡବିଖଣ୍ଡ ହୋଇଯିବାର ଆଶଙ୍କା ପ୍ରକାଶପାଇଥିଲା । 'ଗାନ୍ଧୀ-ଇରଉଇନ' ଚୁକ୍ତି ବିରୋଧରେ ଏକ ପ୍ରସ୍ତାବ ପାସ୍ ହୋଇଯିବା ପ୍ରାୟ ନିଶ୍ଚିତ ଜଣାଯାଉଥିଲା ଏବଂ ଏହାର ନେତୃତ୍ୱ ନେଇଥିଲେ ସୁଭାଷ । କିନ୍ତୁ ଦେଶର ସେ ଘଡ଼ିସନ୍ଧିବେଳେ କଂଗ୍ରେସ ଦଳରେ ବିଭେଦକୁ ବିପଜ୍ଜନକ ମନେକରାଯାଉଥିଲା । ସୁତରାଂ ଉଭୟ ଗୋଷ୍ଠୀକୁ ସୁହାଇଲା ଭଳି ଏକ ବାଟ ଖୋଜି ବାହାରକରିବା ଦରକାର ହେଲା ଏବଂ ସେଥିପାଇଁ ସେଦିନ ରାତିଅଧରେ ଡକରାହେଲା ସୁଭାଷଙ୍କୁ ଗାନ୍ଧିଜୀଙ୍କ କ୍ୟାମ୍ପକୁ । ଯାହାହେଉ, ବହୁ ଆଲୋଚନା ପରେ ସୁଭାଷ ଏହି ମିଳାମିଶା ପ୍ରସ୍ତାବରେ ରାଜିହେଲେ । ଗାନ୍ଧିଜୀ ଘୋର ଅନିଚ୍ଛା ସତ୍ତ୍ୱେ ଭଗତସିଂଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶକରି ଏବଂ ତାଙ୍କର ସହିଦତ୍ୱର ଭୂୟସୀ ପ୍ରଶଂସା କରି ଏକ ଶୋକ ପ୍ରସ୍ତାବ ପାସ୍ କଲେ । କିନ୍ତୁ ପରେ 'ନବଯବାନ ସମ୍ମିଳନୀ'ରେ ସଭାପତି ଅଭିଭାଷଣରେ ସୁଭାଷ ଏହି ଚୁକ୍ତିର ତୀବ୍ର ସମାଲୋଚନା କରି କହିଲେ, ''ଅହିଂସା ନାମରେ କ୍ଷାତ୍ରଧର୍ମ ବିସର୍ଜନକରି ଜାତିକୁ ନେତିବାଦ ଶିଖାଇବା କ'ଣ ଗାନ୍ଧୀବାଦ ?''

ଏହିଭଳି ଭାବରେ ''ଇନକ୍ୱିଲାବ୍ ଜିନ୍ଦାବାଦ୍'' ସ୍ଲୋଗାନର ଉଦ୍‌ଗାତା ଓ ସଶସ୍ତ୍ର ବିପ୍ଳବ ଯୁଗର ଜଣେ ସର୍ବଶ୍ରେଷ୍ଠ ବିପ୍ଳବୀ ଭଗତ ସିଂକୁ କେନ୍ଦ୍ରକରି ଆରମ୍ଭହୋଇଥିବା ଏକ ଉତ୍ତେଜନାପୂର୍ଣ୍ଣ ଅଧ୍ୟାୟର ପରିସମାପ୍ତି ଘଟିଥିଲା ।

କିନ୍ତୁ ପାର୍ଲିଆମେଣ୍ଟ ଗୃହରେ ତାଙ୍କଦ୍ୱାରା ନିକ୍ଷେପ କରାଯାଇଥିବା 'ଲାଲ ପ୍ରଚାର ପତ୍ର' ବା Red Pamplet ଚିରଦିନ ପାଇଁ ହୋଇରହିଲା ଏକ ଅସରନ୍ତି ପ୍ରେରଣାର ଉତ୍ସ । 'ବଧିର ବ୍ୟକ୍ତିକୁ ଶୁଣାଇବାପାଇଁ ବଡ଼ ଶବ୍ଦ ଆବଶ୍ୟକ । ସରକାର ଜାଣିରଖୁ ଯେ ତଥାକଥିତ ନିରାପତ୍ତା ରକ୍ଷା ଆଇନ ଓ ଟ୍ରେଡ୍ ଡିସ୍‌ପ୍ୟୁଟ ଆଇନ ଏବଂ ଲାଲା ଲଜପତଙ୍କର ନିର୍ମମ ହତ୍ୟାର ଭାରତୀୟ ଜନତା ପକ୍ଷରୁ ଆମେ ପ୍ରତିବାଦ କରୁଛୁ ଏବଂ ତା' ସଙ୍ଗେ ସଙ୍ଗେ ଇତିହାସଦ୍ୱାରା ବାରମ୍ବାର ପୁନରାବୃତ୍ତ ହୋଇଥିବା ଏହି ସତ୍ୟକୁ ଜୋର୍ ଦେଇ କହିବାକୁ ଚାହୁଁ ଯେ ବ୍ୟକ୍ତିକୁ ହତ୍ୟାକରିବା ସହଜ ହୋଇପାରେ, ଆଦର୍ଶକୁ ହତ୍ୟାକରିବା ସମ୍ଭବ ନୁହେଁ । ବିରାଟ ବିରାଟ ସାମ୍ରାଜ୍ୟ ଧ୍ୱଂସପାଇଯାଇଛି, କିନ୍ତୁ ଆଦର୍ଶ ଚିର ଅମ୍ଳାନ । ଆମକୁ ଏହା ଦୁଃଖର ସହିତ କହିବାକୁପଡୁଛି ଯେ ଆମେ ମନୁଷ୍ୟର ଜୀବନ ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁ । କିନ୍ତୁ ଏହା ମଧ୍ୟ ଆମ୍ଭେମାନେ ବିଶ୍ୱାସକରୁ ଯେ, ମନୁଷ୍ୟ ମନୁଷ୍ୟକୁ ଯେଉଁ ଶୋଷଣକରୁଅଛି, ତାକୁ ଲୋପକରିଦେଇ ଯେଉଁ ସ୍ୱାଧୀନତା ଅର୍ଜନ କରାଯାଏ, ବିପ୍ଳବର ସେହି ପବିତ୍ର

1. Tarachand – History of the Freedom Movement in India Vol. IV pg 268

ବେଦୀରେ ବ୍ୟକ୍ତିର ଆତ୍ମବିସର୍ଜନ ଅପରିହାର୍ଯ୍ୟ ଅଟେ । 'ଇନକ୍ୱିଲାବ୍ ଜିନ୍ଦାବାଦ୍ ।'

ଆକୁମାରୀ ହିମାଚଳ ବ୍ୟାପୀ ଲବଣ ଆନ୍ଦୋଳନର ଯେଉଁ କରୁଣ ପରିସମାପ୍ତି ଘଟିଲା, ତା'ର ପର୍ଯ୍ୟାଲୋଚନା କଲେ ମନରେ ସ୍ୱତଃ ପ୍ରଶ୍ନ ଉଠେ – ''ଆଗକୁ ନା ପଛକୁ ?'' ଅବଶ୍ୟ ଚିତ୍ତରଞ୍ଜନଙ୍କ ଭାଇ ବାରିଷ୍ଟର ପି. ଆର. ଦାସ କହିଲେ – "This bomb was necessary to awaken India." (ଭାରତବାସୀଙ୍କୁ ଜାଗ୍ରତ କରିବାକୁ ଏହି ବୋମାର ବିଶେଷ ଆବଶ୍ୟକ ଥିଲା ।)

**ଭାରତର ବାଟେଘାଟେ – ଭକ୍ତରାମ ଓ ହରିକିଶନ :**

ସଶସ୍ତ୍ର ମୁକ୍ତି-ସଂଗ୍ରାମର କେନ୍ଦ୍ରବିନ୍ଦୁ ବଙ୍ଗଦେଶ ଯେତେବେଳେ ହିଂସା-ଅହିଂସାର ବିଚାର ସଙ୍କଟ ମଧ୍ୟରେ ଓଲଟପାଲଟ ହେଉଥିଲା, ଭାରତର ବାଟେଘାଟେ କିନ୍ତୁ ସେତେବେଳେ ଶୁଭୁଥିଲା ବିପ୍ଳବର ପାଞ୍ଚଜନ୍ୟ । ଆନ୍ଧ୍ରର ବିପ୍ଳବୀ ସୀତାରାମରାଜୁ ଏହି ବିଚାରମେଛନରୁ ଯେଉଁ ଗରିଲାଯୁଦ୍ଧର ଅୟମାରମ୍ଭ କରିଥିଲେ, ତା'ର ପ୍ରତିଧ୍ୱନି ଶୁଭିଲା ଆସାମଠାରୁ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ପର୍ଯ୍ୟନ୍ତ । ବିହାର, ଉତ୍ତରପ୍ରଦେଶ, ପଞ୍ଜାବ, ମହାରାଷ୍ଟ୍ର ପ୍ରଭୃତି କେହି ଗୋଟିଏ ହେଲେ ରାଜ୍ୟ ବିପ୍ଳବର ସଂକ୍ରମଣରୁ ମୁକ୍ତ ନ ଥିଲେ ।

ସୀମାନ୍ତପ୍ରଦେଶ – ଭାରତବର୍ଷର ମାନଚିତ୍ରର ଉତ୍ତର-ପଶ୍ଚିମ ଦିଗରେ କ୍ଷୁଦ୍ର ଗୋଟିଏ ପ୍ରଦେଶ । କିନ୍ତୁ ସ୍ୱାଧୀନତା ସଂଗ୍ରାମରେ ଏହାର ଅବଦାନ ମହାନ୍ ଏବଂ ଏହାର ଭୂମିକା ବହୁ ରକ୍ତଦାନ ଓ ଆତ୍ମତ୍ୟାଗରେ ଉଜ୍ଜ୍ୱଳ । 'ସୀମାନ୍ତ ଗାନ୍ଧି' ଖାଁ ଅବଦୁଲ ଗଫୁର ଖାଁଙ୍କ ନେତୃତ୍ୱରେ 'ରେଡ୍‌ସାର୍ଟ' ଆ 'ଖୁଦାଇ ଖିଦମତଗାର' (ଈଶ୍ୱରଙ୍କ ସେବକ) ଦଳ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ । ପଠାଣ ଏକ ସ୍ୱାଧୀନତାପିପାସୁ ଦୁର୍ଦ୍ଧର୍ଷ ଜାତି । ବଣ-ଜଙ୍ଗଲ ଓ ପାହାଡ଼ର ରୁକ୍ଷ ପରିବେଶରେ ଲାଳିତ ଏହି ପଠାଣ ଜାତି ଚିରଦିନ ଇଂରେଜ ଜାତି ପ୍ରତି ଘୋର ଅବଜ୍ଞା ପ୍ରଦର୍ଶନ କରିଆସିଛନ୍ତି । ସହଜରେ ବିଦେଶୀ ସରକାରର ବଶ୍ୟତା ସ୍ୱୀକାର କରିବା ପଠାଣ ଜାତିର ଜାତକରେ ନ ଥିଲା ।

'ସୀମାନ୍ତ ଗାନ୍ଧୀ'ଙ୍କ ବଳିଷ୍ଠ ନେତୃତ୍ୱ ପଠାଣ ଜାତିକୁ ଅହିଂସା ମାର୍ଗରେ ସଂଗଠିତ କରିଥିଲେ ମଧ୍ୟ ସରକାର କିନ୍ତୁ ପାଶବିକ ବଳ ପ୍ରୟୋଗରେ ଏହାର ସମ୍ମୁଖୀନ ହୋଇଥିଲା । ଫଳରେ ଆନ୍ଦୋଳନ ହୋଇଗଲା ଅଧିକ ହିଂସ୍ର । 'ଲବଣ ସତ୍ୟାଗ୍ରହ' ବେଳେ 'ସୀମାନ୍ତ ବାହିନୀ', 'ଗଡ଼ୱାଲ ରେଜିମେଣ୍ଟ' ଅହିଂସ ସତ୍ୟାଗ୍ରହୀଙ୍କ ଉପରକୁ ଗୁଳିବର୍ଷଣ କରିବାକୁ ଅସ୍ୱୀକାରକରି ଅନୁଗତ ବ୍ରିଟିଶ୍ ସୈନ୍ୟମାନଙ୍କର ଶିକାରହୋଇଥିଲେ । ଫଳରେ ସମଗ୍ର ଦେଶରେ ଉତ୍ତର-ପଶ୍ଚିମ ସୀମାନ୍ତ ପାଲଟିଗଲା ଏକ ବାରୁଦ ସ୍ତୂପ । ଯେକୌଣସି ମୁହୂର୍ତ୍ତରେ ସାମାନ୍ୟ ଅଗ୍ନି ସଂଯୋଗରେ ଏହାର ବିସ୍ଫୋରଣ ହେବାର ଆଶଙ୍କା ଥିଲା । କ୍ରୋଧ ଓ ପ୍ରତିଶୋଧ ପିପାସାରେ ପଠାଣଜାତି ଫାଟିପଡ଼ିଲା ।

ବାହାରିପଡ଼ିଲେ ପଦାକୁ ଏକ ଦୁର୍ଦ୍ଧର୍ଷ ପଠାଣଯୁବକ ହରିକିଶେନ । ଏକ ବିରାଟ ବିପ୍ଳବୀ ପରିବାରର ସନ୍ତାନ ସେ । ପ୍ରତି ରକ୍ତକଣିକାରେ ବିପ୍ଳବର ସ୍ଫୁଲିଙ୍ଗ । ପଞ୍ଜାବ କିର୍ତ୍ତି କିଶାନ ପାର୍ଟିର ମୁଖ୍ୟ ସେ । ବଡ଼ଭାଇ ଭକ୍ତରାମହିଁ ନେତାଜୀ ସୁଭାଷଙ୍କର ଏକମାତ୍ର ଦେହରକ୍ଷୀ ଓ ପଥପ୍ରଦର୍ଶକ ହୋଇ ତାଙ୍କୁ ନେଇଯାଇଥିଲେ ଭାରତରୁ ଆଫଗାନିସ୍ଥାନର କାବୁଲ ପର୍ଯ୍ୟନ୍ତ, ନେତାଜୀଙ୍କର ସେହି ଐତିହାସିକ ଓ ଗୋପନୀୟ ଅନ୍ତର୍ଦ୍ଧାନ ବେଳେ ୧୯୪୧ରେ । ବିଶ୍ୱସ୍ତତା, ନିଃସ୍ୱାର୍ଥପରତା ଏବଂ ଦେଶାତ୍ମବୋଧର ମୂର୍ତ୍ତିମନ୍ତ ପ୍ରତୀକ ଭକ୍ତରାମଙ୍କ ସହ ଯେତେବେଳେ ନେତାଜୀଙ୍କର ପ୍ରଥମ ସାକ୍ଷାତ ହେଲା ପେଶାୱାର ସହରରେ ଗୋଟିଏ ମୁସଲମାନୀ ହୋଟେଲରେ, ସେତେବେଳେ ନେତାଜୀଙ୍କର ଅନ୍ତର୍ଦ୍ଧାନ ଘଟଣା ମାତ୍ର ଦୁଇଦିନ ତଳେ ହୋଇଥାଏ । ଦେଶବାସୀ ଜାଣିଥା'ନ୍ତି – ନେତାଜୀ ତାଙ୍କର କଲିକତାସ୍ଥ ବାସଭବନରେ ନଜରବନ୍ଦୀ । ପଠାଣ ଚେହେରା, ପଠାଣ ପୋଷାକ ଓ 'ଜିଆଉଦ୍ଦିନ' ନାମ ଧାରଣକରି ନେତାଜୀ ସୁଭାଷ ନାନା ଆଶା ଆଶଙ୍କାର ଦ୍ୱନ୍ଦ୍ୱ ଭିତରେ ଭାରାକ୍ରାନ୍ତ ହୋଇ ବସିଥା'ନ୍ତି ହୋଟେଲର ଗୋଟିଏ ପ୍ରକୋଷ୍ଠରେ ଏକାକୀ । ଭକ୍ତରାମ ପ୍ରବେଶକଲେ ।

ବିସ୍ମିତ ନେତାଜୀ ତାଙ୍କୁ ପ୍ରଶ୍ନକଲେ, ''କାହାକୁ ଖୋଜୁଛନ୍ତି ?'' ଭକ୍ତରାମ ଟିକେ ଅପ୍ରତିଭ ବୋଧକରି କହିଲେ – ''ମୋତେ ଆକବର ସା ପଠାଇଛନ୍ତି !'' ଆଶ୍ଚର୍ଯ୍ୟ ହେବାର ଛଳନା କରି ନେତାଜୀ ଓଲଟା ପଚାରିଲେ, ''କେଉଁ ଆକବର ସା ?'' ଭକ୍ତରାମ ବଡ଼ ଅଡୁଆରେ ପଡ଼ିଗଲେ । ନେତାଜୀ ଯେ ତାଙ୍କୁ ପରୀକ୍ଷା କରୁଛନ୍ତି ଏହା ବୁଝିବାର ଶକ୍ତି ତାଙ୍କର ନ ଥିଲା । ସରଳ ଭାବରେ ପ୍ରଶ୍ନକଲେ, ''ଆପଣ ସୁଭାଷ ବାବୁ ନା ?''

''କେଉଁ ସୁଭାଷବାବୁ ? ମୁଁ ତ ଜିଆଉଦ୍ଦିନ !''– ନେତାଜୀ ଉତ୍ତର ଦେଲେ । ଭକ୍ତରାମ ହସିଦେଇ କହିଲେ, ''ମୁଁ ତ ଆପଣଙ୍କୁହିଁ ଖୋଜୁଛି ! ମୋତେ କୀର୍ତ୍ତି କିଶାନ ପାର୍ଟିର ଆକବର ସା ପଠାଇଛି ।''

ନେତାଜୀଙ୍କର ମନରେ ଆଉ ସନ୍ଦେହର ଅବକାଶ ରହିଲାନାହିଁ । କହିଲେ, ''କ୍ଷମା କରିବେ, ଜାଣନ୍ତି ତ ଆପଣ ଆମେ କିଭଳି ଅବସ୍ଥାରେ ପଡ଼ିଛେ ବର୍ତ୍ତମାନ ! ସେଥିପାଇଁ ଏତେ ଅଭିନୟ କରିବାକୁ ପଡୁଛି । ଏଥର କୁହନ୍ତୁ ଆପଣଙ୍କ ପରିଚୟ !''

''ହରିକିଶେନଙ୍କୁ ଜାଣନ୍ତି - ସହିଦ ହରିକିଶେନ ?''- ଭକ୍ତରାମ ପଚାରିଲେ । 'ହରିକିଶେନ' ନାମ ଶୁଣି ଯେମିତି ନେତାଜୀ କେତେ କ'ଣ ଭାବିଗଲେ । ମୁଣ୍ଡ ନୁଆଁଇ ନମସ୍କାରକଲେ ନେତାଜୀ । ସେହି ସ୍ୱର୍ଗତ ଆତ୍ମାପ୍ରତି ଅଭିନନ୍ଦନ ଜଣାଇଲେ ।

''ସହିଦ ହରିକିଶେନଙ୍କୁ ନ ଜାଣେ କିଏ ଏ ଦେଶରେ ?'' – ନେତାଜୀ ଜବାବ ଦେଲେ । ''ସେହି ହରିକିଶେନ ମୋ'ର ସାନ ଭାଇ । ମୋ' ନା ଭକ୍ତରାମ । ଆପଣଙ୍କୁ କାବୁଲରେ ନିରାପଦରେ ପହଞ୍ଚାଇବାର ଦାୟିତ୍ୱ ମୋତେ ଦିଆଯାଇଛି । ଆପଣଙ୍କୁ ଅଯଥା କଷ୍ଟଦେଇଥିବାରୁ ମୁଁ ବିଶେଷ ଦୁଃଖିତ ।''

ସେହି ହରିକିଶେନ, ଯାହାଙ୍କର ନାମ ଶୁଣି ନେତାଜୀ ସୁଭାଷଙ୍କର ମୁଣ୍ଡ ନଇଁ ଯାଇଥିଲା :

୧୯୩୦ ଡିସେମ୍ବର ୨୩ ତାରିଖ । ପଞ୍ଜାବ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଭାଷଣ ଦେବାକୁ ଉପସ୍ଥିତ ହୋଇଛି ଜେଓଫ୍ରି ଡି ମଣ୍ଟେମରେନ୍ସି । ଜେଓଫ୍ରି ଡି ଉପରେ ସଶସ୍ତ୍ର ବିପ୍ଳବୀର ଅଶେଷ କ୍ରୋଧ, ତା'ର ଜନବିରୋଧୀ କାର୍ଯ୍ୟକଳାପ ଯୋଗୁଁ । ସୁତରାଂ ବିପ୍ଳବୀ ହରିକିଶେନଙ୍କର ସେ ହେଇଛି ପ୍ରଧାନ ଶରବ୍ୟ ।

ଜେଓଫ୍ରି ଡି ସମାବର୍ତ୍ତନ ଭାଷଣ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଦର୍ଶକ ଗ୍ୟାଲେରୀରୁ ହରିକିଶେନ ଫାୟାରକଲେ । ସେହି ବୁଲେଟ୍ ଆଘାତରେ ଓଲଟିପଡ଼ିଲା ଗଭର୍ଣ୍ଣର । ମଲା ନାହିଁ ସତ୍ୟ, କିନ୍ତୁ କ୍ଷତବିକ୍ଷତ ହୋଇଗଲା । ଗଭର୍ଣ୍ଣରକୁ ରକ୍ଷାକରିବାକୁ ଯାଇ ଆଉ ଦୁଇଜଣ ଆହତ ହୋଇଗଲେ । ପୁଲିସ ଏ.ଏସ.ଆଇ. ଚନ୍ନନ ସିଂ ମଧ ହରିକିଶେନଙ୍କ ଗୁଳିରେ ପ୍ରାଣହରାଇଲା । ହରିକିଶେନ ବନ୍ଦୀହେଲେ ଏବଂ ଚାଲିଲା ତାଙ୍କର ବିଚାର ।

କିନ୍ତୁ ଏହି ହତ୍ୟା ଉଦ୍ୟମର ଯଥାର୍ଥତା ପ୍ରତିପାଦିତ କରି ବୀର ହରିକିଶେନ କୋର୍ଟରେ ଦୃପ୍ତ କଣ୍ଠରେ କହିଲେ – ''ଜାତିର ସ୍ୱାଧୀନତା ପାଇଁ ଅହିଂସା ବ୍ୟର୍ଥହୋଇଛି । ଇଂରେଜର ଅତ୍ୟାଚାର ଫଳରେ ଶତସହସ୍ର ଭାରତୀୟ ଆଜି ବିପର୍ଯ୍ୟସ୍ତ । ଆଘାତ, ଅପମାନ ଓ ଶୃଙ୍ଖଳ ବନ୍ଧନର ଦୁଃଖରୁ ଶିଶୁ-ବୃଦ୍ଧ କାହାରି ଆଜି ନିସ୍ତାର ନାହିଁ । ଏହାର ପ୍ରତିକାର ପାଇଁ ଅହିଂସା ଭଳି ଏକ ନିରର୍ଥକ ଓ ନିକମ୍ମା ଅଭିଯାନରେ ମୁଁ ବିଶ୍ୱାସ କରୁ ନ ଥିବାରୁ ସଶସ୍ତ୍ର ଅଭିଯାନରେ ମୁଁ ସକ୍ରିୟ ହୋଇଛି । ସୁତରାଂ ମୋ'ର ସେହି କାର୍ଯ୍ୟର ପରିଣତି ଯାହା ହେଉନା କାହିଁକି ମୁଁ ତାହା ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି ।'' ବିପ୍ଳବୀ ହରିକିଶେନଙ୍କୁ ଫାଶୀଦଣ୍ଡ ହେଲା ।

**ଚନ୍ଦ୍ରଶେଖର ଆଜାଦ :**

ସ୍ୱାଧୀନତା ସଂଗ୍ରାମ ଇତିହାସରେ, ବିଶେଷତଃ ସଶସ୍ତ୍ର ସଂଗ୍ରାମର ରକ୍ତରଂଜିତ ଇତିହାସର ଏକ ଅବିସ୍ମରଣୀୟ ନାମ ଚନ୍ଦ୍ରଶେଖର ଆଜାଦ । ତାଙ୍କର ଆତ୍ମଦାନର ଅର୍ଦ୍ଧଶତାବ୍ଦୀ ପରେ ଆହ୍ଲାବାଦର ଆଲଫ୍ରେଡ୍ ପାର୍କରେ ତାଙ୍କର ନାମ ଅଶେଷ ସ୍ନେହ ଶ୍ରଦ୍ଧା ସହ ସ୍ମରଣ କରାଯାଏ । କାଶ୍ମୀର ଭେଲପୁରା ଗ୍ରାମରେ ଜନ୍ମଗ୍ରହଣ କରିଥିବା ଏହି ବିପ୍ଳବୀ ତରୁଣ ବୟସରେ ପାଠପଢ଼ା ଛାଡ଼ି ଯୋଗଦେଇଥିଲେ ଆଇନ ଅମାନ୍ୟ ଆନ୍ଦୋଳନରେ । ଭାରତର ଯେଉଁ ଲକ୍ଷ ଲକ୍ଷ ଯୁବକ ଗାନ୍ଧିଜୀଙ୍କ ଡାକରାରେ ଅହିଂସ ଆଇନ ଅମାନ୍ୟ ଆନ୍ଦୋଳନରେ ଝାସଦେଇଥିଲେ, ଆଜାଦ ସେମାନଙ୍କ ଭିତରୁ ଜଣେ ଏବଂ ଯେଉଁ କେତେକ ଯୁବକଙ୍କୁ 'ଅହିଂସା' ଅଧିକ ଦିନ ଅଟକାଇ ରଖିପାରିଲା ନାହିଁ, ଯେଉଁ କେତେକ ଯୁବକ ଏହାର ନିରର୍ଥକତା ଉପଲବ୍ଧିକରି ସକ୍ରିୟ 'ବିପ୍ଳବଆଡ଼କୁ ମୁହାଁଇଲେ ସେମାନଙ୍କ ମଧ୍ୟରେ ଆଜାଦ ଏକ ଗୌରବୋଦ୍ଦୀପ୍ତ ନାମ । ଆଇନ

ଅମାନ୍ୟ ଆନ୍ଦୋଳନରେ ଯୋଗଦେଇଥିବା ଅପରାଧରେ ଆଜାଦଙ୍କୁ ବେତ୍ରାଘାତ ଦଣ୍ଡ ମିଳିଥିଲା । ସରକାରର ଧାରଣା ଥିଲା ଯେ ବେତମାଡ଼ ଦେଇ ଛୁଆ ମୁହଁରୁ ମା' ଡାକ ଛଡ଼ାଇନେଇହେବ । କିନ୍ତୁ ସେଭଳି ସନ୍ତାନ ନ ଥିଲେ ଚନ୍ଦ୍ରଶେଖର । ବେତମାଡ଼ ତାଙ୍କୁ ଡରାଇ ପାରିଲା ନାହିଁ, ବରଂ ପ୍ରତିଶୋଧ ନେବାର ପିପାଶା ତାଙ୍କ ମନରେ ହୋଇଉଠିଲା ଦୁର୍ବାର । ଅହିଂସାର ସୌଖୀନ ପଥ ଅପେକ୍ଷା ସଶସ୍ତ୍ର ବିପ୍ଳବର କଣ୍ଟକିତ ଓ ବିପଦପୂର୍ଣ୍ଣ ପଥ ତାଙ୍କୁ ଅଧିକ ଆକୃଷ୍ଟକଲା । ସେ ହୋଇଉଠିଲେ ଜଣେ ଦୁର୍ଦ୍ଧର୍ଷ ବିପ୍ଳବୀ । ଭଗତ ସିଂଙ୍କର ପ୍ରତିଷ୍ଠିତ ହୁନ୍ଦିସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ଆର୍ମିର ସେ ହେଲେ ଜଣେ ଆଗଧାଡ଼ିର ସୈନିକ । 'କାକୋରୀ ଟ୍ରେନ୍ ଲୁଣ୍ଠନ'ରେ ସେ ଥିଲେ ଜଣେ ପହିଲା ନମ୍ବର ଯୋଦ୍ଧା । ଏତଦ୍‌ବ୍ୟତୀତ ବହୁ ସଶସ୍ତ୍ର ଅଭିଯାନରେ ଯୋଗଦେଇ ବିପୁଳ ସାଫଲ୍ୟ ଅର୍ଜ୍ଜନ କରିଥିଲେ ଚନ୍ଦ୍ରଶେଖର ଆଜାଦ । ତାଙ୍କୁ ଧରିବା ପୁଲିସ ପକ୍ଷରେ ସହଜ ନ ଥିଲେ ବି ପୁଲିସ ଅନ୍ତତଃ ୬ଟି ସଶସ୍ତ୍ର ବିପ୍ଳବ ଘଟଣାରେ ତାଙ୍କୁ ଖୋଜୁଥିଲେ । ବିପ୍ଳବୀ ରାସବିହାରୀଙ୍କ ଭଳି ସେ 'ଓଁକାର ପଣ୍ଡିତ ଓ ସୀତାରାମ' ପ୍ରଭୃତି ଛଦ୍ମନାମରେ ବିଭିନ୍ନ ସ୍ଥାନରେ ବୁଲି ପୁଲିସକୁ ଦୀର୍ଘଦିନ ଚିତାକାଟି ଚାଲିଲେ । ତାଙ୍କୁ ଧରିବାକୁ ୧୯୩୦ ମସିହା ଅକ୍ଟୋବର ୧୯ ତାରିଖରେ ପୁଲିସ ଦଶହଜାର ଟଙ୍କାର ପୁରସ୍କାର ଘୋଷଣା କରିଥିଲା । କିନ୍ତୁ ସଚରାଚର ଯାହା ଘଟିଥାଏ, ଏ କ୍ଷେତ୍ରରେ ତାହାହିଁ ହେଲା । ଜଣେ ଦେଶଦ୍ରୋହୀ ମିଳିଲେ ନାହିଁ ଯେ କି ଏହି ଦଶହଜାର ଟଙ୍କାର ଲୋଭରେ ତାଙ୍କୁ ଧରେଇଦେବ ।

୧୯୩୧ ଫେବୃୟାରୀ ୨୭ରେ ଏହ୍ଲାବାଦର ଆଲଫ୍ରେଡ୍ ପାର୍କରେ ଗୋଟିଏ ବେଞ୍ଚ୍ ଉପରେ ବସି କେତେ ସତୀର୍ଥ ବନ୍ଧୁଙ୍କ ସହ ଆଲୋଚନା କରୁଥିଲେ ଚନ୍ଦ୍ରଶେଖର । କୌଣସି ସୂତ୍ରରୁ ପୁଲିସ ଏହାର ସନ୍ଧାନପାଇ ଘେରାଉକଲା ଆଲଫ୍ରେଡ୍ ପାର୍କକୁ । ଚନ୍ଦ୍ରଶେଖର ଏହାର ସୁରାକ ପାଇ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ସେଠାରୁ ଖସାଇଦେଲେ, କାରଣ ତାଙ୍କ ଛଡ଼ା ଅନ୍ୟ ସମସ୍ତେ ଥିଲେ ନିରସ୍ତ୍ର । ।

ଚନ୍ଦ୍ରଶେଖର ଆଜାଦ ପୁଲିସ ବାହିନୀର ସମ୍ମୁଖୀନ ହେଲେ । ଆରମ୍ଭହେଲା ଏକ ସମ୍ମୁଖ ଯୁଦ୍ଧ । ଏକଦିଗରେ ଏକ ବିରାଟ ପୁଲିସ ବାହିନୀ, ଅନ୍ୟଦିଗରେ ଏକା ଚନ୍ଦ୍ରଶେଖର ଆଜାଦ । ତଥାପି ଥକେଇଦେଲେ ସେ ପୁଲିସବାଲାଙ୍କୁ । ବହୁ ପୁଲିସ ଅଫିସର ଆହତ ହେଲେ ଆଜାଦଙ୍କର ଗୁଳିରେ । ଶେଷରେ ନିଜ ଗୁଳିରେ ଆତ୍ମାହୁତି ଦେଲେ ଆଜାଦ । ଆଜାଦଙ୍କର ଶୌର୍ଯ୍ୟ, ବୀର୍ଯ୍ୟ, ସାହସ ଓ ନିର୍ଭୀକତା ଦେଖି ଦେଶବାସୀ ସ୍ତମ୍ଭିତହୋଇଗଲେ । ସ୍ତମ୍ଭିତ ହେଲା ସରକାର । ଚନ୍ଦ୍ରଶେଖର ଆଜାଦ ଅମର ହେଲେ । ସହିଦ ଆଜାଦ ଜିନ୍ଦାବାଦ୍ ।''

**ବାସୁଦେବ ବଳବନ୍ତ ଗୋଗଟେ :**

ବଙ୍ଗଦେଶକୁ ସଶସ୍ତ୍ର ବିପ୍ଳବର ଲୀଳାଭୂମି, ମହାରାଷ୍ଟ୍ରକୁ ସଶସ୍ତ୍ର ବିପ୍ଳବର ଜନନୀ ବୋଲି କହିବାକୁ ହେବ । ଛତ୍ରପତି ଶିବାଜୀଙ୍କ ଶୌର୍ଯ୍ୟ ବୀର୍ଯ୍ୟପୁଷ୍ଟ ମହାରାଷ୍ଟ୍ର ତିଳକ,

'ଚାପେକାର ତିନିଭାଇ' ବା 'ସଭରକର ଭ୍ରାତୃଦ୍ୱୟ'ଙ୍କ ଅଲୌକିକ ଆତ୍ମତ୍ୟାଗରେ ଲାଳିତପାଳିତ ମହାରାଷ୍ଟ୍ରୀୟ ବିପ୍ଳବୀ ତାଲିକା ନାତିଦୀର୍ଘ ହେଲେ ମଧ୍ୟ ଏହା ଦେଶାତ୍ମବୋଧ ଓ ଆତ୍ମତ୍ୟାଗର ମହାନ୍ ଆଦର୍ଶରେ ଅଗ୍ନିଦଗ୍ଧ । ଚାପେକାର ଜନନୀ ତାଙ୍କର ତିନୋଟିଯାକ ପୁତ୍ରସନ୍ତାନଙ୍କୁ ଆଗପଛ କରି ଫାଶୀଖୁଣ୍ଟକୁ ପଠାଇ ଯେମିତି ଅଦ୍ୱିତୀୟ ଯଶ ଅର୍ଜନ କରିଅଛନ୍ତି, ତିଲକ ମହାରାଜ ସେଭଳି 'ସ୍ୱରାଜ୍ୟ ମୋର ଜନ୍ମଗତ ଅଧିକାର, ମୋତେ ତାହା ଅର୍ଜନ କରିବାକୁହିଁ ହେବ' ବୋଲି ସ୍ଲୋଗାନ ଦେଇ ଏକ ମୁମୂର୍ଷୁ ଜାତିର ମୁଖରେ ଚିରନ୍ତନ ଭାଷା ଦେଇଯାଇଅଛନ୍ତି । ସଭରକର ଭ୍ରାତୃଦ୍ୱୟଙ୍କର ଦେଶପ୍ରେମର ତ ପଟାନ୍ତର ନାହିଁ । ତା' ନ ହୋଇଥିଲେ ନେତାଜୀ ସୁଭାଷ ସେମାନଙ୍କଠାରୁ ରାଜନୈତିକ ପରାମର୍ଶ ପାଇଁ କଲିକତାରୁ ପୁନା ପର୍ଯ୍ୟନ୍ତ ଦୌଡ଼ି ଯାଇ ନ ଥାନ୍ତେ ।

ଏହି ମହାରାଷ୍ଟ୍ରର ଜଣେ ବିପ୍ଳବୀ ହେଉଛନ୍ତି ବାସୁଦେବ ବଳବନ୍ତ ଗୋଗଟେ । ବି. ଏ. ପାସ୍ କରି ହାଇଦ୍ରାବାଦରେ ଚାକରିକରୁଥିଲେ, କିନ୍ତୁ ଅସଲ ଲକ୍ଷ୍ୟ ଥିଲା ବିପ୍ଳବଆଡ଼େ । ସେଇଠୁ ସେ ସଂଗ୍ରହ କରିଥିଲେ ପିସ୍ତଲ ଖଣ୍ଡେ । ସେତେବେଳେ ମହାରାଷ୍ଟ୍ରର ଅସ୍ଥାୟୀ ଗଭର୍ଣ୍ଣର ଅର୍ନେଷ୍ଟ ହଟସନ୍ । ଅସ୍ଥାୟୀ ଚାକିରି ହେଲେ ବି ସେ ଇଂରେଜ ଜାତିକୁ ଏ ଦେଶରେ ସ୍ଥାୟୀ କରିବାକୁ ଅସରନ୍ତି ଉଦ୍ୟମ କରୁଥିଲେ ଏବଂ ସେଥିପାଇଁ ଅତ୍ୟାଚାରର ସ୍ରୋତ ବୁହାଇଦେଇଥିଲେ ମହାରାଷ୍ଟ୍ରରେ । ସୁତରାଂ ବାସୁଦେବଙ୍କ ଲକ୍ଷ୍ୟସ୍ଥଳ ହେଲା ସେହି ଗଭର୍ଣ୍ଣର ।

ପୁନାର ଫର୍ଗୁସନ କଲେଜ ହଲ୍‌ରେ ୧୯୩୧ ମସିହା ଜୁଲାଇ ୨୨ ତାରିଖରେ ଗଭର୍ଣ୍ଣରର ଏକ ସଭା । ସେହି ସଭାରେ ଗଭର୍ଣ୍ଣର ଉପରେ ଗୁଳିଚଳାଇଲେ ବାସୁଦେବ । ଗୁଳିଟା ଠିକ୍ ତା' ଛାତିରେ ବାଜିଲା । କିନ୍ତୁ ଏ କ'ଣ ହେଲା ? ଗୁଳିଟା ଛାତିରେ ଭେଦ ନ କରି ଅନ୍ୟଆଡ଼କୁ ଛିଡ଼ିକିଗଲା । ଆଶ୍ଚର୍ଯ୍ୟ କଥା ! କିଏ କହିଲା – ଗଭର୍ଣ୍ଣରର ଛାତି ପକେଟରେ ଥିବା ଶକ୍ତ ଫାଉଣ୍ଟେନପେନ୍‌ରେ ଗୁଳି ବାଜିବାରୁ ଗୁଳି ଛାତିକୁ ଫୁଟେଇ ପାରିଲା ନାହିଁ । ଆଉ କେତେକ କହନ୍ତି, ଗଭର୍ଣ୍ଣର ଛାତିରେ ଝୁଲାଇଥିବା ମେଡାଲରେ ଗୁଳି ବାଜିବାରୁ ତାହା ଛିଡ଼ିକିଗଲା । କିନ୍ତୁ କାରଣଟା ତାହା ବି ନୁହେଁ । ବାସ୍ତବରେ ଗଭର୍ଣ୍ଣର ତା'ର ପୋଷାକ ତଳେ ଇସ୍ପାତ ତିଆରି ଏକ ଜାକେଟ ପିନ୍ଧିଥିଲା ଏବଂ ସେହି କାରଣରୁହିଁ ଗୁଳି ଛାତିକୁ ଭେଦ କରିପାରିଲା ନାହିଁ ।

ଖାଲି ଅର୍ନେଷ୍ଟ-ହଟସନ ନୁହେଁ, ସେ ଯୁଗରେ ସବୁ ଶ୍ୱେତାଙ୍ଗ ଅଫିସରମାନେ ପୋଷାକ ତଳେ ଏହିଭଳି ଲୁହା ଜାକେଟ ପିନ୍ଧୁଥିଲେ ନିଜନିଜର ନିରାପତ୍ତା ପାଇଁ । ଏହାହିଁ ଥିଲା ସେତେବେଳ ବ୍ରିଟିଶ୍ ଲୋକଙ୍କର ଅବସ୍ଥା । ଏ ଦେଶରେ ସଶସ୍ତ୍ର ବିପ୍ଳବୀମାନେ କିଭଳି ଆତଙ୍କ ସୃଷ୍ଟିକରିପାରୁଥିଲେ, ଏହାହିଁ ତାହାର ଜ୍ୱଳନ୍ତ ପ୍ରମାଣ ।

ଯାହା ହେଉ, ବାସୁଦେବ ଧରା ହେଲେ ଏବଂ ତାଙ୍କୁ ଦିଆଗଲା ଯାବଜ୍ଜୀବନ କାରାଦଣ୍ଡ । ୧୯୭୪ ନଭେମ୍ବର ୨୪ ତାରିଖରେ ବାସୁଦେବ ସ୍ୱର୍ଗାରୋହଣକଲେ । 'ସାବାସ୍ ବାସୁଦେବ !'

**ବୈକୁଣ୍ଠ ଓ ଚନ୍ଦ୍ରମା :**

ବିପ୍ଲବୀ ଭଗତସିଂଙ୍କର ଫାଶୀଦିନଠାରୁ ଦେଶ ଯେ ଖାଲି ଦୁଃଖରେ ମ୍ରିୟମାଣ ହୋଇଯାଇଥିଲା, ତାହା ନୁହେଁ, ତାଙ୍କର ଫାଶୀ ପାଇଁ ଦାୟୀ ଥିବା ଦେଶଦ୍ରୋହୀମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ଏକାବେଳକେ କୃତସଂକଳ୍ପ ହୋଇଥିଲା । ବିହାରର ସମସ୍ତିପୁର ମ୍ୟୁନିସିପାଲଟି କାନ୍ଥରେ ହଠାତ୍ ଦିନେ ସକାଳେ ଗୋଟାଏ ପୋଷ୍ଟର ମରାଯାଇଥିବାର ଦେଖାଗଲା । ପୋଷ୍ଟରରେ ଲେଖାଥିଲା – "ଇନକ୍ୱିଲାବ୍ ଜିନ୍ଦାବାଦ୍ । ରାଜଗୁରୁ, ସୁଖଦେବ ଓ ଭଗତ ସିଂଙ୍କର ଫାଶୀର ପ୍ରତିଶୋଧ ନେବାକୁ ଚାହୁଁ । ମୁଁ ଏବଂ ମୋ'ର ବିପ୍ଲବୀ ଦଳ ସର୍ବଭାରତୀୟ ହିନ୍ଦୁସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ଆର୍ମିର ନିର୍ଦ୍ଦେଶାନୁସାରେ ବିଶ୍ୱାସଘାତକଙ୍କୁ ଚରମ ଶାସ୍ତି ଦାନକରିଛୁଁ । ବିପ୍ଲବହିଁ ସ୍ୱାଧୀନତାପ୍ରାପ୍ତିର ଏକମାତ୍ର ପଥ । ଶାନ୍ତ ଚିତ୍ତରେ ଦୁରନ୍ତ ବିପ୍ଲବକୁ ବରଣ କରିବାକୁ ହେବ । ଧ୍ୱଂସ ବିନା ଏ ପଥ ପରିକ୍ରମା ସମ୍ଭବ ନୁହେଁ । ଆସ, ଶକ୍ତିର ଅମିତ ତେଜରେ ଆଗେଇ ଆସ ବନ୍ଧୁ ।"(୧)

ବିପ୍ଲବୀ ଭଗତସିଂଙ୍କୁ ଫାଶୀ ଦେବାର ପ୍ରଧାନ ସହାୟକ ହୋଇଥିଲା ଏକଦା ବିପ୍ଲବୀ ଫଣୀ ଘୋଷ । ଅର୍ଥଲୋଭରେ ସେ ପୁଲିସର ସାକ୍ଷୀ ହେଲା ଏବଂ ତାହାର ସାକ୍ଷ୍ୟ ବଳରେହିଁ ଭଗତସିଂ ଫାଶୀପାଇଥିଲେ । ସୁତରାଂ ଫଣୀ ଘୋଷ ସେହିଦିନଠାରୁ ସଶସ୍ତ୍ର ବିପ୍ଲବୀ ମହଲରେ ହୋଇଥିଲା 'ଏକ ନମ୍ବର ଦେଶଦ୍ରୋହୀ' ଏବଂ ତାକୁ ଯେକୌଣସି ମତେ ଉପଯୁକ୍ତ ଶିକ୍ଷା ଦିଆଯିବା ପ୍ରୟୋଜନ ବୋଲି ସମସ୍ତେ ସିଦ୍ଧାନ୍ତ କରିଥିଲେ ।

ଫଣୀ ଘୋଷ ସେତେବେଳେ ପୁଲିସଠାରୁ ପାଇଥିବା ପୁରସ୍କାର ଟଙ୍କାରେ ବିହାରର ବେତିଆ ସହରରେ ଗୋଟାଏ ଦୋକାନ ଖୋଲିଥିଲା । ବିଶ୍ୱାସଘାତକ 'ମୀରଜାଫର'କୁ ଟିକେ ସୁଦ୍ଧା ଲଜ୍ଜା ନାହିଁ, ସେହି ନିମକହାରାମୀ ଟଙ୍କାରେ ବିଚ୍ ବଜାରରେ ଦୋକାନ ଖୋଲି ବସିବାକୁ ।

୧୯୩୨ ମସିହା ନଭେମ୍ବର ୭ ତାରିଖ ରାତି ୯ଟା । ଫଣୀ ଘୋଷ ନିଜ ଦୋକାନ ବନ୍ଦକରି ସାମନା ଦୋକାନର୍ ଗଣେଶ ଗୁପ୍ତା ପାଖରେ ବସି ମଜାଗପ କରୁଥାଏ । ହଠାତ୍ ଦୋକାନ ବାରଣ୍ଡାକୁ ଚଢ଼ିଗଲେ ବୈକୁଣ୍ଠ ସୁକୁଲ ଓ ଚନ୍ଦ୍ରମା ସିଂ । ଫଣୀ ଘୋଷକୁ ଗୁଳିକଲା ବୈକୁଣ୍ଠ । କିନ୍ତୁ ଗୁଳିଟା ବାଉଁରିଗଲା । ଗଣେଶ ଦୌଡ଼ିଯାଇ ବୈକୁଣ୍ଠକୁ କୁଣ୍ଢାଇପକାଇବାକୁ ଚେଷ୍ଟାକଲା । ସେତେବେଳକୁ ଚନ୍ଦ୍ରମା ସିଂଙ୍କର ଗୁଳିବାଜିଲା ଫଣୀ ଘୋଷ ଉପରେ । ବୈକୁଣ୍ଠର ୨ୟ ଗୁଳି ବାଜିଲା ଗଣେଶ ଗୁପ୍ତା ଉପରେ । ଫଳରେ ଅଳ୍ପ କେଇ ସେକେଣ୍ଡ ଭିତରେ ଉଭୟ ଫଣୀ ଘୋଷ ଓ ଗଣେଶ

1. Roll of Honour – K. C. Ghose – Page – 527

ଗୁପ୍ତା ଖତମ ହୋଇଗଲେ । ଭାରତମାତାର ଏକ କୁଳାଙ୍ଗାର ସନ୍ତାନ ଓ ତା'ର ସହକାରୀ ଶେଷହେଇଗଲେ । ତେବେ ଏତିକି କଥା ଯେ, ମରିବା ପୂର୍ବରୁ ଫଣୀ ଘୋଷ ବୈକୁଣ୍ଠ ଓ ଚନ୍ଦ୍ରମା ସମ୍ପର୍କରେ କେତେକ ସଙ୍କେତ ପୁଲିସକୁ ଦେଇପାରିଥିଲା ଏବଂ ସେହି ସଙ୍କେତ ଧରି ପୁଲିସ ପ୍ରବଳ ଧରପଗଡ଼ ଆରମ୍ଭକରିଦେଲା ।

ତଥାପି ଦୀର୍ଘ ୯ମାସ ବିତିଗଲା ଏବଂ ଶେଷରେ ଉଭୟ ଧରାହେଲେ ସୋନପୁର ମେଳା ବେଳେ । ଏହି ଭାରତ ବିଖ୍ୟାତ ମେଳାରେ ଦୁଇବନ୍ଧୁ ବସିଥିଲେ ଗଣ୍ଡକ ବ୍ରିଜ୍ ଉପରେ ଏବଂ ସେହିଠାରେ ପୁଲିସ ଦୁଇ ଦିଗରୁ ସେମାନଙ୍କୁ ଘେରାଉ କରିନେଲା । ବନ୍ଦୀହେଲେ ଦୁଇ ଜଣ ବିପ୍ଳବୀ । ଚନ୍ଦ୍ରମା ସିଂଙ୍କର ବୟସ କମ୍ ହୋଇଥିବାରୁ ତାଙ୍କୁ ବାରବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା । କିନ୍ତୁ ବୈକୁଣ୍ଠଙ୍କୁ ଦିଆଗଲା ଫାଶୀଦଣ୍ଡର ପୁରସ୍କାର ।

**ଶେଷ ରାତ୍ରି :**

ବିପ୍ଳବୀ ବୈକୁଣ୍ଠ ସୁକୁଲ ଫାଶୀ ପାଇଲେ । କିନ୍ତୁ ଫାଶୀ ପାଇବାର ପୂର୍ବରାତ୍ରିର ବର୍ଣ୍ଣନା ଅତି ହୃଦୟସ୍ପର୍ଶୀ । କୈଶୋର ଓ ଯୌବନର ମଧ୍ୟଦେଶରେ ଦଣ୍ଡାୟମାନ ହୋଇ ବୈକୁଣ୍ଠ ନିଜର ବୈପ୍ଳବିକ ଜୀବନକୁ ଯେଭଳି ଗଠନକରିଥିଲେ, ଜୀବନର ଶେଷ ପଦକ୍ଷେପରେ ମଧ୍ୟ ତାକୁ ସେ ଆହୁରି ତେଜୋଦ୍ଦୀପ୍ତ କରିଦେଇ ଯୁଗଯୁଗକୁ ରଖିଗଲେ ଏକ ଅବିସ୍ମରଣୀୟ ଆଦର୍ଶ । ସଶସ୍ତ୍ର ବିପ୍ଳବୀର ଜୀବନ ଯେ ରୁକ୍ଷ, ନିରସ ବା କର୍କଶ ନୁହେଁ, ତାହା ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର, ତାହା ବୈକୁଣ୍ଠ ନିର୍ଭୁଲ ଭାବରେ ପ୍ରମାଣ କରିଦେଇଗଲେ । ତାଙ୍କର ମରଦେହର ଶେଷ ରାତ୍ରିର ପ୍ରତି ପ୍ରହର, ପ୍ରତି ଲିତା ବିଲିତାର ପ୍ରାଣସ୍ପର୍ଶୀ ଚିତ୍ର ମିଳେ ଆଉ ଜଣେ ବିପ୍ଳବୀଙ୍କ କଲମରୁ । ସେହି ବିବରଣୀର ଲେଖକ ହେଉଛନ୍ତି ଶ୍ରୀ ବିଭୂତି ଭୂଷଣ ଦାସଗୁପ୍ତା । ଶ୍ରୀଯୁକ୍ତ ଦାସଗୁପ୍ତା ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେଇ ବହୁବାର ଜେଲ ବରଣ କରିଅଛନ୍ତି । ଅଳ୍ପ କେଇବର୍ଷ ତଳେ ସେ ପଶ୍ଚିମବଙ୍ଗର ଯୁକ୍ତ ଫ୍ରଣ୍ଟ୍ ମନ୍ତ୍ରିମଣ୍ଡଳର ଜନୈକ ମନ୍ତ୍ରୀ ଥିଲେ । ସୌଭାଗ୍ୟବଶତଃ ବିଭୂତିବାବୁ ଆଇନ ଅମାନ୍ୟ ଆନ୍ଦୋଳନରେ ଗିରଫହୋଇ ୧୯୩୦ ରୁ ୧୯୩୪ ଭିତରେ ପାଟନା କ୍ୟାମ୍ପ ଜେଲ ଓ ଗୟା ସେଣ୍ଟ୍ରାଲ୍ ଜେଲରେ ଥିବାବେଳେ ସୁକୁଲଜୀଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିଲେ । ଏପରିକି ଫାଶୀର ପୂର୍ବ ରାତ୍ରିରେ ସଙ୍ଗୀତଜ୍ଞ ବିଭୂତିବାବୁ ଓ ସୁକୁଲଜୀ ବାସ୍ତବରେ ଏକଆତ୍ମା ହୋଇଯାଇଥିଲେ କହିଲେ ଚଳେ ।

ବିଭୂତିବାବୁଙ୍କ ବର୍ଣ୍ଣନା ୧୯୬୮ ମସିହା କମ୍ପାସର ଶାରଦୀୟ ସଂଖ୍ୟାରେ ପ୍ରକାଶିତ୍ ହୋଇଥିଲା ଏବଂ 'ଭାରତର ସଶସ୍ତ୍ର ବିପ୍ଳବ' ନାମକ ଗ୍ରନ୍ଥରେ ପୁନଃମୁଦ୍ରିତ ହୋଇଥିଲା । ୧୯୩୦ ମସିହାରେ ବିଭୂତିବାବୁ ଆଇନ ଅମାନ୍ୟ ଆନ୍ଦୋଳନରେ ୩ୟ ଶ୍ରେଣୀ ବନ୍ଦୀରୂପେ ପାଟନା କ୍ୟାମ୍ପ ଜେଲରେ ଥିଲେ । କେତେଜଣ ଅବଙ୍ଗାଳୀ ବନ୍ଦୀଙ୍କ ସହ

ସେ ରବୀନ୍ଦ୍ରନାଥଙ୍କର 'ମରନ ମିଲନ' କବିତା ପଢୁଥିଲେ । ରବୀନ୍ଦ୍ର କାବ୍ୟର ଛନ୍ଦ, ଭଙ୍ଗୀ ଓ ସ୍ୱର ବର୍ଣ୍ଣଜ୍ଞାନହୀନ ଭାରତବାସୀଙ୍କ କାନରେ ମଧୁବର୍ଷଣକରେ । ବିଭୂତି ବାବୁଙ୍କ ସାଥୀମାନେ ଶିକ୍ଷିତ ଅବଙ୍ଗାଳୀ । ତା' ବ୍ୟତୀତ କାଶୀ ବିଦ୍ୟାପୀଠର କେତେକ ଛାତ୍ର ମଧ୍ୟ ଥିଲେ । ସେମାନେ ଓ ମିଥିଳାର ଛାତ୍ରମାନେ କିଛି କିଛି ବଙ୍ଗଳା ବୁଝନ୍ତି । ବିଭୂତିବାବୁ ପରମଆନନ୍ଦରେ ପଢ଼ିଚାଲିଛନ୍ତି –

''ଆମି ଫିରବନା କରି ମିଛା ଭୟ,
ଆମି କରିବ ନିରବେ ତରନ ।
ସେଇ ମହା ବରଷାର ରାଙ୍ଗାଜଲ,
ଓଗୋ ମରନ ହେ ମୋର ମରନ ।''

ପିଲାଟିଏ ପଛରେ ବସିଥିଲା । ସୁନ୍ଦର ପିଲାଟିଏ । ବିଭୂତିବାବୁଙ୍କୁ ଟିକେ ଲାଜୁଆ କଣ୍ଠରେ କହିଲା – ''ମୋତେ ଏ ଗୀତଟି ହିନ୍ଦୀ ହରଫରେ ଲେଖିଦେବେ ? ମୁଁ ମୁଖସ୍ଥ କରିବି ।'' ବିଭୂତିବାବୁ ଅନେଇ ଦେଖିଲେ ଗୋଟିଏ ସୁନ୍ଦର କିଶୋର । ନିଷ୍ପାପ ଓ ସରଳ ଦୃଷ୍ଟି । ପ୍ରଶ୍ନୋତ୍ତର ପରେ ଜାଣିଲେ – ଘର ତା'ର ମୁଜାଫରପୁର । ନାମ ବୈକୁଣ୍ଠ ସୁକୁଲ ।

ତା'ପରେ ପିଲାଟି ପ୍ରାୟ ପ୍ରତିଦିନ ବିଭୂତିବାବୁଙ୍କ ପାଖକୁ ଆସେ । ଏଣୁ ତେଣୁ ପଚାରେ । ଦିନେ ସେ ଖୁବ୍ ବଡ଼ପାଟିରେ ପଢୁଛି– ''ଆମି କରିବ ନିରବେ ତରନ ।'' ବିଭୂତିବାବୁ ପଚାରିଲେ– 'ବୁଝିଛ' ? ପିଲାଟି କହିଲା– ''କ'ଣ ଏଇ ତରନ ?'' ଏ ତ ଆମ ହିନ୍ଦୀ ଭାଷାରେ 'ତୈରନା' । (ମାନେ ପହଁରିବା ।) ବିଭୂତିବାବୁ– ''ପାରିବ ତୁମେ ପହଁରି ?'' କିଶୋରଟି ହସିଲା ।

ଇତି ମଧ୍ୟରେ ଗାନ୍ଧୀ-ଇରଉଇନ ଚୁକ୍ତି ଫଳରେ ବିଭୂତିବାବୁ ଜେଲରୁ ଖଲାସ ହେଲେ । କିନ୍ତୁ ଚୁକ୍ତି ପୁଣି ଭାଙ୍ଗିଗଲା ଏବଂ ପୁନରାୟ ସେ ଜେଲକୁ ଆସିଲେ । ସେଟା ୧୯୩୨ ମସିହା । ବର୍ଷେକାଳ ତାଙ୍କୁ ବିଭିନ୍ନ ଜେଲରେ ବୁଲାଇ ବୁଲାଇ ତାଙ୍କୁ ପୁଣି ଅଣାଗଲା ଗୟା ସେଣ୍ଟ୍ରାଲ ଜେଲକୁ । ତାଙ୍କୁ ରଖାଯାଇ ଥାଏ ୧୫ ଡିଗ୍ରୀର ୧୦ ନମ୍ବର ସେଲରେ । ତାଙ୍କ ପାଖ ସେଲ ଦୁଇଟିରେ ଅଛନ୍ତି ଆଉ ଦୁଇଜଣ ରାଜବନ୍ଦୀ – ରଘୁନାଥ ପାଣ୍ଡେ ଓ ତ୍ରିଭୁବନ ଆଜାଦ ।

ଆହୁରି ଦୁଇଟି ବର୍ଷ କଟିଯାଇଛି । ୧୯୩୪ ମସିହାର ଏପ୍ରିଲ ଶେଷହୋଇଆସୁଛି । ବୈକୁଣ୍ଠ ସୁକୁଲଙ୍କୁ ଫାଶୀ ଦେବା ପାଇଁ ଗୟା ସେଣ୍ଟ୍ରାଲ ଜେଲକୁ ଅଣାଯାଇଛି । ତାଙ୍କୁ ରଖାଯାଇଛି ସାତ ଡିଗ୍ରୀ କଣ୍ଡେମ୍‌ଡ୍ ସେଲରେ (ଜେଲର ଯେଉଁ ସେଲରେ ଫାଶୀ ଆସାମୀଙ୍କୁ ରଖାଯାଇ ଥାଏ ।) ବୈକୁଣ୍ଠ ସେଠାରେ ରହିବା କଥା ବିଭୂତିବାବୁ ପ୍ରଭୃତି ଜାଣନ୍ତି । ବୈକୁଣ୍ଠ ମଧ୍ୟ ଜାଣନ୍ତି ଯେ ବିଭୂତିବାବୁ ପ୍ରଭୃତି ପନ୍ଦର ଡିଗ୍ରୀ ପାଖାପାଖି ତିନୋଟି ସେଲରେ ଅଛନ୍ତି ।

ବିଭୂତିବାବୁଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେଦିନର ସେହି ବାଳକ ଦୁଇ ଚାରିବର୍ଷର ଅନନ୍ୟ ତପସ୍ୟା ଫଳରେ ହୋଇଉଠିଛି ଗୋଟିଏ ଦୁର୍ଜ୍ଜୟ କିଶୋର । ଦେଇଛି ଧନୁରେ ଟଙ୍କାର । ଅଭିମନ୍ୟୁର ଶକ୍ତି ନେଇ ଉଦ୍‌ବୁଦ୍ଧ ସେ କିଶୋର । ଘଟାଇଛି ଆଜି 'ନିରବ ତରନ', 'ମହାବରଷାର ରାଙ୍ଗଜଲେ' । ସମସ୍ତଙ୍କୁ ପଛରେ ପକାଇ ଯାତ୍ରା ତା'ର ଚାଲିଛି ମହାନ୍ ଅଗ୍ରଜର ଗୌରବରେ ।

ବିଭୂତିବାବୁ ଭାବିଭାବି ତନ୍ମୟ ହୁଅନ୍ତି । ତାଙ୍କର ଚକ୍ଷୁ ଦୁଇଟି ଚକ୍‌ଚକ୍ କରେ । ଫାଶୀର ପୂର୍ବଦିନ । ୧୩ ମଇ ୧୯୩୪ । ସାତ ଡିଗ୍ରୀରୁ ତାଙ୍କୁ ଅଣାଯିବ ପନ୍ଦର ଡିଗ୍ରୀର ଏକ ନମ୍ବର ସେଲକୁ । ଏହି ଏକ ନମ୍ବର ସେଲରୁହିଁ ଅପେକ୍ଷମାଣ ଫାଶୀ ଆସାମୀଙ୍କୁ ଅତି ସକାଳୁ ଫାଶୀ କାଠରେ ଝୁଲାଇବା ପାଇଁ ନିଆଯାଏ ।

ସେଦିନ ଅପରାହ୍ଣରେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଜେନେରାଲ ଲକଅପ୍ (ତାଲାବନ୍ଦ) ହେବ । କୟେଦୀମାନଙ୍କୁ ଯେ ଯାହାର ବାରାକରେ ଭର୍ତ୍ତିକରାଯାଇଛି । ବିଭୂତିବାବୁ ପ୍ରଭୃତିଙ୍କୁ ଶୀଘ୍ର ଶୀଘ୍ର ବାରାକରେ ଭର୍ତ୍ତିକରାଗଲାଣି । ବର୍ତ୍ତମାନ ମହାସମାରୋହରେ ଅଣାହେବ ଶୃଙ୍ଖଳିତ ଶାର୍ଦ୍ଦୁଳ ଶିଶୁକୁ ଏକ ନମ୍ବର ସେଲକୁ । ଏହି ସେଣ୍ଟ୍ରିପ୍ରହରୀ ବେଷ୍ଟିତ ଲୌହ ଗାରଦକୁ ବା ଆକାଶଚୁମ୍ବୀ ପ୍ରାଚୀରକୁ କିମ୍ବା ସୁକୁଲଙ୍କ ପାଦରେ ବା ହାତରେ ବଂଧାହୋଇଥିବା ଲୁହା ଶିକୁଳିକୁ ଯେମିତି ସରକାରର ବିଶ୍ୱାସ ନାହିଁ, କାରଣ ସୁକୁଲ ଜଣେ ଡେଞ୍ଜରସ କ୍ରିମିନାଲ, ସବୁକିଛି ଫାଙ୍କିଦେଇ ଏ ପିଲା ପଳାଇଯିବା ଅସମ୍ଭବ ନୁହେଁ ।

''ସେତେବେଳେ ସଂଧ୍ୟା ହୋଇନି । ଅପରାହ୍ଣଟା ସଂଧ୍ୟାଆଡ଼କୁ ମୁହାଁଇଛି । ପ୍ରଚଣ୍ଡ ଶୀତ । କମ୍ବଳ-କୁର୍ତ୍ତା ପିନ୍ଧି ଲୁହା ଗାରଦକୁ ଧରି ମୁଁ ଠିଆହୋଇଛି । ଗୋଡ଼ କଡ଼ିର ଝନଝନ୍ ଆବାଜରେ ସୁକୁଲଜୀ ୧୫ ଡିଗ୍ରୀ କ୍ରିଡରରେ ପ୍ରବେଶକଲେ । ଚିତ୍କାର କରି କହିଲେ– 'ଦାଦା, ଆଗୟା' । ପାଖାପାଖି ତିନୋଟି ସେଲରେ ଥିବା ଆମେ ତିନିଜଣ ରାଜବନ୍ଦୀ ଯୁଗପତ୍ ସମ୍ବର୍ଦ୍ଧନା ସ୍ୱରରେ କହିଲୁ– 'ବନ୍ଦେ ମାତରମ୍ ।'

ଅନେକଗୁଡ଼ିଏ ଓଜନିଆ ବୁଟ୍‌ର ଶବ୍ଦ । ଜେଲର୍, ଡେପୁଟି ଜେଲର୍, ବଡ଼ ଜମାଦାର, ସିପାହି, ସନ୍ତ୍ରୀ ଅନେକ ମିଳି ସମାରୋହରେ ତାଙ୍କୁ ନେଇଆସିଛନ୍ତି ଗୋଟିଏ ସେଲରୁ ଅନ୍ୟ ସେଲକୁ । ଏକ ନମ୍ବର ସେଲରେ ଭର୍ତ୍ତି କରିବା ସମୟରେ ଫାଶୀ ଆସାମୀଙ୍କର ଗୋଡ଼କଡ଼ି ଫିଟାଇଦେବାର ନିୟମ ଅଛି । ମୃତ୍ୟୁପଥର ଯାତ୍ରୀଙ୍କ ପ୍ରତି ଏତକ ମମତା ଦେଖାଇବାର ବ୍ୟବସ୍ଥା ଜେଲ କୋର୍ଡ଼ରେ ଅଛି । କିନ୍ତୁ ସୁକୁଲଜୀଙ୍କ କ୍ଷେତ୍ରରେ ଏହି ନିୟମର ବ୍ୟତିକ୍ରମ ହେଲା । ଏଠାରେ ମହାନ୍ ଶକ୍ତିମାନ୍ ବ୍ରିଟିଶ୍‌ରାଜ ମାୟା ମମତା ଦେଖାଇବାକୁ ନାରାଜ । ସୁତରାଂ ସୁକୁଲଜୀଙ୍କର ଗୋଡ଼ରୁ ଗୋଡ଼କଡ଼ି ଫିଟାଗଲାନାହିଁ । ସିଂହଶିଶୁ ଶୃଙ୍ଖଳିତ ଅବସ୍ଥାରେ ଗୁହା ମଧ୍ୟରେ ପ୍ରବେଶ କଲା । ସେମାନେ ଏହି ଶିଶୁର ଚକ୍ଷୁରେ ଗ୍ରୀକ୍ ବନ୍ଦୀ ପ୍ରମିଥିୟୁସର ଚକ୍ଷୁର ଅଗ୍ନି ଦେଖିଥିଲେ କି ନା ମୁଁ ଜାଣେନା ।

ଢଂ, ଢଂ ହୋଇ ଘଣ୍ଟା ବାଜିଲା । ବୁଝିଲି ସଂଧ୍ୟାର ଗଣତି ହେଉଛି । ଅନ୍ଧକାର କ୍ରମେ ଘନେଇ ଆସୁଛି । ମୁଁ ଅନେଇ ରହିଥିଲି— ଆଣ୍ଡେ ସେଲର ମୁଣ୍ଡ ଉପରେ ଝୁଲୁଥିବା ଆକାଶର ଚେନାଏ ତାରାଆଡ଼କୁ ।

''ଠିଆହୋଇଛି ଗାରଦ ପାଖରେ । କିଛି କରିବାର ବା କହିବାର ଅଛି ବୋଲି ମନେହେଉନଥିଲା । ପାଖ ସେଲରେ ତ୍ରିଭୁବନ, ତା' ପାଖରେ ରଘୁନାଥ ଅଛନ୍ତି । କାହାରି ମୁହଁରେ କିଛି କଥା ନାହିଁ । ସେମାନେ ବି ଲୁହା ଗାରଦ ଧାରରେ ଠିଆ ହୋଇଛନ୍ତି ।''

''ବୁଟ୍ ଶବ୍ଦ ଶୁଣି ଅନେଇଲି । ବନ୍ଦଲିଆ ୱାର୍ଡ଼ର ପ୍ରବେଶ କରିଛି ଲଂଠନ ହାତରେ ତାଲା ପରୀକ୍ଷା କରିବାକୁ । ନିରବରେ ଆସିଲା, ନିରବରେ ଚାଲିଗଲା, ଯେପରିକି ମହାମୌନତା ସମସ୍ତଙ୍କ ମୁହଁରୁ କଥା କାଢ଼ିନେଇଛି । କିଛି ସମୟ ପରେ ମୋର ଆଣ୍ଡେ ସେଲରେ ପ୍ରବେଶକଲା ଡିଉଟିରତ ହାବିଲଦାର ।''

''ମୋ' ସହ ଦୈନିକ ତାଙ୍କର କେତେ ଦୁଃଖ ସୁଖ ହୁଏ । ହାବିଲଦାର ଯୁକ୍ତ ପ୍ରଦେଶର (ବର୍ତ୍ତମାନ ଉତ୍ତରପ୍ରଦେଶ) କୌଣସି ଏକ ପଠାଣ ପରିବାରର ସନ୍ତାନ, ଯୁଦ୍ଧଫେରନ୍ତା ସୈନିକ । ଲଂଠନଟି ତଳେ ଥୋଇଦେଇ କେତେଗୁଡ଼ିଏ ଧଳା ରଙ୍ଗର ଫୁଲ ମୋ' ହାତକୁ ବଢ଼ାଇଦେଇ କହିଲା— ''ସୁକୁଲଜୀ ପଠାଇଛନ୍ତି ।''

ଫୁଲଗୁଡ଼ିକ ଗଭୀର ବେଦନା ସହକାରେ ଗ୍ରହଣକଲି ଏବଂ ରଖିଦେଲି ଲୁହା ତସଲା ଭିତରେ । ହାବିଲଦାର ପଚାରିଲା— ''କ'ଣ ଭାବୁଛନ୍ତି ବାବୁଜୀ ?''

''କ'ଣ ଆଉ ଭାବିବି ?''

''ସୁକୁଲଜୀଙ୍କୁ ବଞ୍ଚାଇପାରିବାନି ? ଲାଟ୍‌ଙ୍କ ଉପରେ ଲାଟ୍ ଅଛନ୍ତି । ତା' ଉପରେ ଅଛନ୍ତି ବିଲାତର ବାଦଶାହ । ବଞ୍ଚାଇପାରିବାନି ?''

ମୁଁ ବିସ୍ମିତ ହେଲି । କିଏ କହେ ଏମାନେ ରୁକ୍ଷ, କଠୋର, ନିର୍ଦ୍ଦୟ !

ସେ କହିଚାଲିଲା— ''ବାବୁଜୀ, ଅନେକ ବୀର ଦେଖିଛି, ଅନେକ ବାହାଦୂର ଦେଖିଛି, କିନ୍ତୁ ଏମିତିକା ତ କେଉଠି ଦେଖିନାହିଁ । ମୁଁ ଗତ ଯୁଦ୍ଧରେ ଭାର୍ଦୁନରେ ଲଢ଼ିଛି, ମେସୋପଟାମିଆରେ ଲଢ଼ିଛି, ମାରିଛି ଅନେକ, ମରିବାର ଦେଖିଛି ଅନେକ, ତେଜ ବିକ୍ରମ ଝରିପଡୁଥିବା ଶହ ଶହ ଦେଖିଛି । କିନ୍ତୁ ଏମିତି ବୀର କେବେ ଦେଖିନାହିଁ । କେବେ ସୁଦ୍ଧା ଭାବିପାରିନି ଜବାନର ଏଭଳି ରୂପ ।''

ଏଥର ସେ ଚୁପ୍ ହୋଇଗଲା । ପ୍ରକାଶର ଆବେଗରେ ତା'ର କଂଠ ରୁଦ୍ଧ ହୋଇ ଆସିଛି । ମନର ବେଦନା ସେ କାହା ନିକଟରେ ପ୍ରକାଶ କରିପାରୁନି । କଲେ ସେଟା ହେବ ରାଜଦ୍ରୋହିତା । ସୁତରାଂ ମୋ' ନିକଟରେହିଁ ତା'ର ଅନ୍ତରର ସମସ୍ତ ବେଦନା ଅଜାଡ଼ି ଦେବାକୁ ହେବ ତାକୁ ।

ସେ କହିଲା— ''ଯେଉଁଦିନୁ ସୁକୁଲଜୀଙ୍କ ଫାଶୀ ହୁକୁମ ପକ୍‌କା ହୋଇଗଲା, ସେହି

ଦିନୁ ତାଙ୍କ ଦେହ ଯେମିତି ଗୋଲାପ ପରି ଫୁଟିଉଠୁଛି— ଗୁଲାବ ଯୈସା-ଗୁଲଯୈସା ଖିଲ ରହା ହେ ।''

କବିଗୁରୁଙ୍କ ଭାଷା ମନେପଡ଼ିଗଲା ମୋର— 'ସକଲ ବ୍ୟଥା ରଙ୍ଗିନ ହୟେ, ଗୋଲାପ ହୟେ ଉଠଛେ ।' ମୁଁ ଅବାକ୍ ହୋଇ ଅନେଇରହିଲି । ଏହି ପାଷାଣବକ୍ଷରୁ ପ୍ରବାହିତ ଅନ୍ତଃସଲିଳା ପ୍ରସ୍ରବଣ । ପଠାଣ ହାବିଲଦାରର ଦୁଇ ଆଖିରୁ ଝରିଯାଉଛି ଅଶ୍ରୁଝରଣା । ରୁଦ୍ଧ କଂଠରେ କହିଲା— ''ବଞ୍ଚାଇବାର କ'ଣ କୌଣସି ରାସ୍ତା ନାହିଁ ? ମୋ'ର ନିଜ ଜୀବନର ବିନିମୟରେ ସୁକୁଲଜୀଙ୍କ ଜୀବନ ଯଦି ରକ୍ଷା କରାଯାଇ ପାରନ୍ତା, ତାହାହେଲେ ବୁଝନ୍ତି ଭଗବାନ୍‌ଙ୍କର କାମ କଲି ।''

ଭାରାକ୍ରାନ୍ତ ହୃଦୟ ନେଇ ହାବିଲଦାର ଚାଲିଯାଇଛି । ତା'ର ବୁଟ୍‌ର ଶବ୍ଦ ମିଳାଉ ମିଳାଉ ଏକ ନମ୍ବର ସେଲରୁ ଡାକରା ଆସିଲା 'ବିଭୂତିଦା' । ଜବାବ ଦେଲି— ଲୁହାଗାରଦକୁ ଦୁଇ ହାତରେ ଧରି । ବୈକୁଣ୍ଠ ଅଛନ୍ତି ଏକ ନମ୍ବରରେ । ମୁଁ ଦଶ ନମ୍ବରରେ । ପାଖାପାଖି ଦୁଇଟି ସେଲ । କିନ୍ତୁ ମଝିରେ ପାଚେରି । ନିସ୍ତବ୍ଧ ରଜନୀ । ସୁତରାଂ କଥା ଶୁଣିବାର କୌଣସି ଅସୁବିଧା ନାହିଁ । ସୁକୁଲଜୀ ଭଙ୍ଗାବଙ୍ଗଳାରେ କହିଲେ, ''ଥରେ କ୍ଷୁଦିରାମର ଫାଶୀ ଗୀତଟା ଗାଇବେ ଦାଦା ! ସେହି ଯେ 'ହାସିହାସି ପରବ ଫାଶୀ......... ।'

''ମୁଁ ସେ ଯୁଗରେ ଗୀତଗାଉଥିଲି, ଖୁବ୍ ଉଚ୍ଚକଣ୍ଠରେ ସ୍ୱଦେଶୀ ଗୀତ ଗାଉଥିଲି । ମୁଜାଫରପୁର ଜେଲରେ କ୍ଷୁଦିରାମର ଭଙ୍ଗା ସେଲବେର ବସି [କ୍ଷୁଦିରାମ ବସୁ ୧୯୦୮ ମସିହାରେ ଫାଶୀ ପାଇବା ପୂର୍ବରୁ (୨ୟ ପର୍ବ ଦ୍ରଷ୍ଟବ୍ୟ) ଏହି ସେଲରେ ରହୁଥିଲେ ।] ସେହି ଜେଲରେ ଫାଶୀମଞ୍ଚ ପାଖରେ ବସି ବହୁବାର 'ହେସେହେସେ ପରବୋ ଫାଶୀ' ଗୀତ ଗାଇଛି । ଏ ଗୀତରେ କି ମଧୁ ଅଛି କେଜାଣି ମୁଁ ଜାଣିପାରେନା ! ଜେଲ ଭିତରେ ବା ଜେଲ ବାହାରେ ଯେତେବେଳେ ଏ ଗୀତ ଗାଇଛି, କେହି ସେଠାରୁ ଉଠିପାରନ୍ତି ନାହିଁ, ଗୀତ ଶେଷ ନ ହେବା ଯାଏ । ସ୍ୱଦେଶୀ ଗୀତର ଭଣ୍ଡାର ଥିଲା ମୋ' ପାଖରେ ବିରାଟ – ବଙ୍ଗଳା, ହିନ୍ଦୀ ଓ ଉର୍ଦ୍ଦୁ ପ୍ରଭୃତି ସବୁ ଭାଷାର ଗୀତ । କିନ୍ତୁ ଜେଲଖାନାରେ ଦେଖିଛି 'ହେସେ ହେସେ ପରବ ଫାଶୀ' ଭଳି ଏତେ ଜନପ୍ରିୟ ଗୀତ ଆଉ ଗୋଟିଏ ସୁଦ୍ଧା ନ ଥିଲା । କ୍ୟାମ୍ପଜେଲରେ ବି ମୁଁ ଗାଏ । ନାମପଡ଼ା ଗ୍ରାମର ପାଗଳଟିଏ ଜେଲରେ ଥାଏ, ସେ ମଧ ଗାଏ । ବିହାରୀ ରାଜବନ୍ଦୀମାନେ ଜଂଘିଆ କୁର୍ତ୍ତା ପିନ୍ଧି ବସିଯା'ନ୍ତି । ଜେଲରେ ମିଳୁଥିବା ଲୁହା ତସଲାକୁ ବାଡ଼େଇ ମୁଣ୍ଡହଲେଇ ତାଳଦିଅନ୍ତି ସେମାନେ । ଥରେ ଶେଷହେଲେ ପୁଣି ଗାଇବାର ବରାଦ ହୁଏ । କ୍ଷୁଦିରାମର ସେହି ଫାଶୀ ଗୀତରେ କି କୁହୁକ ଥିଲା କେଜାଣି, ଗୀତଟି କୌଣସି ଅନାମଧେୟ କବିର ସେ ହୋଇ ଥାଉନା କାହିଁକି – ତଥାପି ତାହା କେତେ ଲୋକପ୍ରିୟ ! ହୃଦୟକୁ ନିଗାଡ଼ିଦେଇ କବି ଯେପରି ସେ ଗୀତଟି ରଚନାକରିଥିଲେ ।

"ଠିଆ ଠିଆ ମୁଁ ଆରମ୍ଭ କରିଛି ଗୀତ । ଲୁହାଗାରଦକୁ ଧରି ଆକାଶଆଡ଼କୁ ଚାହିଁ ଗାଉଛି ଗୀତ ମନପ୍ରାଣ ଦେଇ । ପୂର୍ବଗାମୀ କ୍ଷୁଦିରାମଙ୍କ ଗୀତ 'ହେସେ ହେସେ ପରବ ଫାଶୀ' ଶୁଣିବାକୁ ଚାହୁଁଛନ୍ତି କ୍ଷୁଦିରାମର ଅନୁଗାମୀ ନବୀନ କ୍ଷୁଦିରାମ, ଯାହାର ଗଳାରେ ଘାତକ ଗଳାଇବ ଫାଶୀରଜ୍ଜୁ ଆଉ ଅଳ୍ପ କେଇ ଘଣ୍ଟା ପରେ । ବହୁସମୟ ଧରି ଗୀତଟିକୁ ଗାଇଲି । ସ୍ତବ୍ଧହୋଇ ଶୁଣୁଛନ୍ତି ମୃତ୍ୟୁଞ୍ଜୟୀ ବାଳକ ଏକନମ୍ବର ସେଲରେ । ଶୁଣୁଛନ୍ତି ମୋ' ପାଖ ସେଲରେ ଥିବା ସଂଗ୍ରାମୀ ବନ୍ଦୀଗଣ । ସମଗ୍ର ଜେଲରେ କୌଣସି କଯେଦୀ ଆଖିରେ ସେ ରାତିରେ ନିଦ ନାହିଁ । ସିପାହି, ସାନ୍ତ୍ରୀ, ପହରାଦାର, ଅଫିସର କାହାରି ଆଖିରେ । ଗୋଟାଏ ମୂକ ଆର୍ତ୍ତନାଦ ଅସହାୟ ଆବର୍ତ୍ତ ମଧରେ ସମସ୍ତଙ୍କ ଛାତିରେ ସୃଷ୍ଟି କରିଥିଲା ଝଡ଼ । ସେ ଝଡ଼ ନିର୍ବାକ । କଯେଦୀର ନୟନରଂ ତାରା ଓ ଆଖିରେ ନିଆଁ ଅଶ୍ରୁ ହୋଇଉଠିଥିଲା । ଅନ୍ଧକାରର ପ୍ରତି ସ୍ତରରେ ଅଶ୍ରୁଜଳର ଭାଷା । ସେ ଅଶ୍ରୁଉତ୍ତାପ ଅତି ଗଭୀରରେ ଲୁକ୍କାୟିତ ।

ଗୀତ ଶେଷ ହେଲା । ସୁକୁଲଜୀ କହିଲେ– "ଦାଦା, ଏଥର ବଂଶୀ ଶୁଣିବି ।"

ବଂଶୀ କେଉଁଠୁ ବା ପାଇବି ଏ ଜେଲଖାନା ଭିତରେ ? ଗୋଟାଏ ଖାଲି ଦିଆସିଲି ଖୋଳ ଓ ଟିକିଏ କାଗଜ ଦେଇ ତିଆରି ମୋ'ର ବଂଶୀ । ଏଇଟାକୁ ଫୁଟକରି ମୁଁ ବଜାଏ । ସୁକୁଲଜୀ ତାହା ଜାଣନ୍ତି ।

ବାଜଣା ବହୁତ ସମୟ ଧରି ଶୁଣିଲେ ସୁକୁଲଜୀ । କହିଲେ, 'ସୁରଟା ଭାରି କୋମଳ' । ମୁଁ କହିଲି "ଏଟା ବିସ୍‌ମିଲ୍ଲଙ୍କ ସରଫରୋଶୀକା ତମନ୍ନାର ସ୍ୱର ।" ସୁକୁଲଜୀ ଯେମିତି ଡେଇଁପଡ଼ିଲେ । ପାଟିକରି କହିଲେ, "ଗୀତର ସବୁପଦ ମନେଅଛି, ଦାଦା ?" ଉତ୍ତର ଦେଲି, 'ଗାଉଛି' ।

କାକୋରୀ ଷଡ଼ଯନ୍ତ୍ର ମାମଲାରେ ଫାଶୀମଞ୍ଚକୁ ଯିବା ପୂର୍ବରୁ ବିପ୍ଳବୀ ରାମପ୍ରସାଦ ବିସ୍‌ମିଲ୍ଲ ଏହି ଗୀତଟା ଗାଇଥିଲେ । ଗୀତଟି ଖାଣ୍ଟି ଉର୍ଦ୍ଦୁରେ ଲିଖିତ ହୋଇଥିଲେ ବି ଜେଲର କଯେଦୀମାନେ ମନପ୍ରାଣ ଦେଇ ଗୀତଟି ଶୁଣନ୍ତି, ଯେମିତି ଆନ୍ତରିକତା ସହ ଶୁଣନ୍ତି, 'ହେସେ ହେସେ ପରବ ଫାଶୀ' ।

ଏ ଯେ ପ୍ରାଣୋତ୍ସର୍ଗର ସାମଗାନ, ଏହା କୌଣସି ଭାଷାର ଅପେକ୍ଷା ରଖେନା, ଯେକୌଣସି ହୃଦୟରେ ଏହା ସ୍ପନ୍ଦନ ସୃଷ୍ଟି କରେ ।

"ମୋ'ର କଣ୍ଠଭରା ବିସମିଲ୍ଲଙ୍କ ଗୀତ, ଗାରଦକୁ ଧରି ସ୍ତବ୍ଧ ନିଶିଥିନୀରେ ଆକାଶକୁ ଚାହିଁ ମୁଁ ଗୀତ ଗାଇ ଚାଲିଛି –

"ସରଫରୋଶୀକି ତମନ୍ନା ଅବ ହମାରେ, ଦୀଲମେଁ ହ୍ୟାୟ,
ଦେଖନା ହୈ ଜୋର କିତନା ବାଜୁଏ, କାତିଲ ମେଁ ହ୍ୟାୟ ।"

(ମୃତ୍ୟୁକୁ ସ୍ପର୍ଶ କରିବାର ଭାବନା ବର୍ତ୍ତମାନ ମୋ' ମନରେ, ମୁଁ ଦେଖିବାକୁ ଚାହେଁ ଘାତକର ହାତରେ କେତେ ଶକ୍ତି ଅଛି ।)

ସମସ୍ତ ଗୀତଟା ବୁଲେଇ ବାରମ୍ବାର ଗାଇଚାଲିଛି । ମୋ' ଆଖି ଆଗରେ ବସିଥିବା ତାରକାମାନଙ୍କର ମେଳା କ୍ରମେ ମଳିନ ହୋଇଆସୁଛି । ଦେଶକାଳର ବ୍ୟାପ୍ତି ଅପସରି ଯାଇଛି ବହୁ ଦୂରକୁ । ମୁଁ କେବଳ ଦେଖୁଛି, ''ଉତ୍ତର ପ୍ରଦେଶର ଗୋଟିଏ କାରାକକ୍ଷରେ ସ୍ଵର୍ଗତ ବିସମିଲ୍ଲାଙ୍କର ଦୁଇଟି ଉଜ୍ଜ୍ଵଳ ଚକ୍ଷୁ ଏବଂ ବିହାରର ଅନ୍ୟ ଏକ କାରାଗୃହରେ ଏକ ନମ୍ବର ସେଲ୍‌ରେ ସୁକୁଲଜୀଙ୍କର ସତେଜ ସୁନ୍ଦର ମୁଖ । ମୋ' ସହ ସମାନ ସୁରରେ ଗଳାଖୋଲି ସୁକୁଲ ମଧ୍ୟ ଗାଇ ଚାଲିଛନ୍ତି –

''ଅବନା ଅଗଲେ ଓୟଲଲେ ହ୍ୟାୟ ଆଉର ।
ନା ଆରମାନୋକୀ ଭିଡ଼,
ସିରଫ ମର ମିଟନକି ହସରତ ଆପ
ଦିଲେ ଏ ବିସମିଲ୍ଲା ମେଁ ହ୍ୟାୟ ।''

(ଏବେ ରହିଯାଇଛି ପୂର୍ବର କଳଗୁଞ୍ଜନ, ମେଣ୍ଟିଯାଇଛି ସମସ୍ତ ବାସନା, କେବଳ ମୃତ୍ୟୁକୁ ବରଣ କରିବାର ବାସନା ବିସମିଲ୍ଲାର ହୃଦୟରେ ବର୍ତ୍ତମାନ ବିରାଜିତ ।)

କିନ୍ତୁ ସୁକୁଲଜୀ ଶେଷ ପଂକ୍ତିର ଶେଷ ଶବ୍ଦଟିକୁ ବଦଳେଇଦେଇ ଉଦ୍‌ବେଳ ଆବେଗରେ ବାରମ୍ବାର ଗାଉଛନ୍ତି, ''ଦିଲେ ଏ ସୁକୁଲ ମେଁ ହ୍ୟାୟ, ଦିଲେ ଏ ସୁକୁଲ ମେଁ ହ୍ୟାୟ.... ।''

ସେ ଆବେଗ ଧାରାର ଅର୍ଘ୍ୟ ନିବେଦନ ସମୁଦ୍ରରେ ନଦୀର ସବୁକିଛି ଢାଳିଦେବା ଭଳି ଅନ୍ତଃହୀନ ଓ ଅକୁଣ୍ଠ ।

''ମୋ'ର ସମ୍ବଳ ସୀମିତ । ତଥାପି ଯେତେ ଗୀତ ଥିଲା, ଯେତେ ସୁର ଥିଲା ସବୁ ଗାଇଚାଲିଛି ଅବିରାମ ଓ ଅଶ୍ରାନ୍ତ । ମୃତ୍ୟୁର ପୂର୍ବକ୍ଷଣରେ ମୃତ୍ୟୁପଥ ଯାତ୍ରୀ ଶୁଣିବାକୁ ଚାହେଁ ଗୀତ – ମୁଁ ନିରବ ରହିବି କେମିତି ? ମୋ'ର ସମସ୍ତ ହୃଦୟ, ସମସ୍ତ ରକ୍ତକଣିକା ଗୀତ ରୂପରେ ଝରିପଡ଼ିବାକୁ ଚାହେଁ । ଏହି ଭୀଷଣ ସୁନ୍ଦର ନିଶିଥିନୀର ପ୍ରତ୍ୟେକ ମୁହୂର୍ତ୍ତକୁ ମୋତେ ଗୀତ ଦେଇ, ସୁର ଦେଇ ଭରିଦେବାକୁ ହେବ । ସେହି ଗୀତର ବିଛଣା ଉପରେ, ସେହି ସୁରର ଗାଲିଚା ଉପରେ ଯାତ୍ରା କରିବେ ମୃତ୍ୟୁଞ୍ଜୟୀ ବୀର । ଜ୍ୟୋତିର୍ମୟ ଏହି କିଶୋରର ଅପରୂପ ରୂପ ରାତ୍ରି ଶେଷରେ ଉଷା ଆଗମନରେ ମିଳିଯିବ ହାୟ ଊର୍ଦ୍ଧ୍ଵତମ ଲୋକରେ, ସମସ୍ତ ଗୀତର ସେପାରିରେ ।''

ଡିଉଟି ବଦଳ ହେଲା ପହରାଦାରର । ଜମାଦାର ମୋ ସେଲ୍‌ରେ ତାଲା ନ ହଲେଇ ଚାଲିଗଲା । ପାଖକୁ ଆସି କହିଲା, ''ବାବୁଜୀ, ଲୁହାଗାରଦକୁ ଧରି ଆପଣ କାଲି ରାତିସାରା ଏମିତି ଠିଆହୋଇଛନ୍ତି, ସେପଟେ ଠିଆହୋଇ ରହିଛନ୍ତି ସୁକୁଲଜୀ । ପାଖ ସେଲ୍‌ରେ ଠିଆହୋଇ ରହିଛନ୍ତି ପାଣ୍ଡେଜୀ, ତ୍ରିଭୁବନଜୀ । ଆପଣମାନଙ୍କ କଥା ଅଲଗା, ଆପଣମାନେ ସମସ୍ତେ ତ ଗୋଟିଏ ପଥର ଯାତ୍ରୀ । କିନ୍ତୁ ସାରା ଜେଲରେ କାହାରି ଆଖିରେ କାଲି ରାତିରେ ନିଦ ନାହିଁ । କିଏ ବିଛଣାରେ ପଡ଼ି ପଡ଼ି, କିଏ ବସି ବସି, କିଏ ବା ଠିଆ ଠିଆ ଆପଣଙ୍କ ଗୀତ ଶୁଣୁଛନ୍ତି ।''

''ଜବାବ ଦେବାର କିଛି ନଥିଲା । ପଚାରିଲି– କେତେଟା ବାଜିଛି ?'' 'ଗୋଟାଏ....' ଓ୍ୱାଡ଼ର ଚାଲିଗଲା । କଠିନ ବୁଟ୍‌ର ଶବ୍ଦ ପ୍ରତିଦିନ ଭଳି ସେଦିନ କିନ୍ତୁ ଜୋର୍‌ରେ ଶୁଭିଲା ନାହିଁ । ଆଜି ସନ୍ତର୍ପଣରେ ସମସ୍ତେ ଯିବା ଆସିବା କରୁଛନ୍ତି । ଏହି ଘୋର ରଜନୀର ନିସ୍ତବ୍ଧତା ବିଘ୍ନିତ କରିବାର ଦମ୍ଭ ନାହିଁ ସେମାନଙ୍କର ବି ।

''କ'ଣ ଗାଇବି ଭାବୁଛି । ସେହି ମୁହୂର୍ତ୍ତରେ ସୁକୁଲଜୀଙ୍କର ଆହ୍ୱାନ ଆସିଲା– ଦାଦା, ସେଇ ଗୀତ ଗାଇବାକୁ ହେବ ।''

''କେଉଁ ଗୀତ ?''

ରବୀନ୍ଦ୍ରନାଥଙ୍କର ସେହି ''ମରନ, ହେ ମୋ'ର ମରନ ।''

''ଏ ତ ଗୀତ ନୁହେଁ କବିତା ।''

''ନା, ନା ସେଇଟା ଗାଇବାକୁ ହେବ ।''

''ମରନ ମିଲନ କବିତାଟା ଅବଶ୍ୟ ମୋ'ର କଣ୍ଠସ୍ଥ । କିନ୍ତୁ ତା ଯେ ସୁକୁଲଜୀଙ୍କର ପ୍ରତି ରକ୍ତକଣିକାରେ ଏଭଳି ଗଭୀର ଭାବେ ପ୍ରବାହିତହେଉଛି, ତାହା ଆଗରୁ ଜାଣି ନ ଥିଲି । ବର୍ତ୍ତମାନ ବୁଝିଲି ।'' ତଥାପି ଭାବୁଛି– ''ଏହାକୁ ସୁର ଦେଇ କେମିତି ଗାଇବି ? ଏହି ସମୟରେ ଏକ ନମ୍ବର ସେଲ୍‌ରୁ ପୁଣି ବରାଦ ଆସିଲା– 'ଦାଦା, ଗାଇଏ' ।

ଆଉ ଭାବିବାକୁ ବେଳ ନାହିଁ । କିଶୋର ବନ୍ଧୁ ଆସନ୍ନମୃତ୍ୟୁ ଦୁଆରେ ଠିଆ ହୋଇଛି । ବେଶୀ ଭାବିବାକୁ ପଡ଼ିଲା ନାହିଁ । କେଉଁଠୁ କେମିତି ସୁର ମୋ'ର କଣ୍ଠ ଭିତରକୁ ଚାଲିଆସିଲା ଜାଣେନା, କିଏ ଯେମିତି ପାତ୍ର ପୂର୍ଣ୍ଣକରି ଦେଇଗଲା । ମୁଁ ଦରବାରୀ କାନାଡ଼ା ସୁରରେ ଆରମ୍ଭ କରିଦେଲି–

''ଏତ ଚୁପି ଚୁପି କେନ କଥା କଓ, ଓଗୋ ମରନ,
ହେ ମୋର ମରନ ?''

(ହେ ମୃତ୍ୟୁ, ହେ ମୋର ମୃତ୍ୟୁ, ତୁମେ ଏତେ ଚୁପ୍‌ଚୁପ୍ କାହିଁକି କଥା କହୁଛ ?)

ନିଜକୁ କେମିତି ହଜାଇଦିଆଯାଏ ମୁଁ ଜାଣେନା, କିନ୍ତୁ ମୋ ନିକଟରେ ସେ ରାତ୍ରି ଖାଲି ରାତ୍ରି ହୋଇ ରହିଲା ନାହିଁ, ଅନ୍ତଃହୀନ ସମୁଦ୍ର ହୋଇ ମୋତେ ସଂଗୀତର ଅଦୃଶ୍ୟ ଲୋକକୁ ଭସେଇ ନେଇ ଚାଲିଲା । ଆକାଶକୁ ଚାହିଁରହିଥିବା ଆଖି ଦୁଇଟି ମୋର ବନ୍ଦହୋଇଗଲା ।''

ମୁଁ ପୁଣି ଗାଇଲି–

''ଆମି ଯା'ବ ଯେଥା ତବ ତରୀରୟ,
ଓଗୋ ମରନ ହେ ମୋର ମରନ,
ଯେଥା ଆକୁଲ ହଇତେ ବାୟୁବୟ
କରି ଅନ୍ଧାରରେର ଅନୁସରନ ।''

ସେ ଦିନ ମୁଁ ଯେଉଁ ଗୀତ ଗାଇଥିଲି, ଏମିତି ଗୀତ କେହି କେବେ ଗାଇନାହିଁ । କେଉଁ ଯୁଗରେ କିଏ କେଉଁଠି ଗାଇଥିବ ବୋଲି ମୋ'ର ମନେହୁଏନା । ମୁଁ ଜାଣେ ଯେ ମୁଁ ଅନ୍ତତଃ ଏମିତି ଗୀତ ଆଗରୁ କେବେ ଗାଇ ନ ଥିଲି ଏବଂ ଏକଥା ମଧ୍ୟ ମୁଁ ଜାଣେ ଯେ ଆଉ କେବେ ଏମିତି ଗୀତ ଗାଇପାରିବିନାହିଁ । ଦରବାରୀ କାନାଡ଼ା ରାଗରେ ସେ ଅନ୍ତରା ଚାଲିଛି କେଉଁ ଆକାଶ ଭେଦି, ମୃତ୍ୟୁର ଅଭିସାରରେ ଅନ୍ତର ସ୍ପର୍ଶକରି । କେହି କେବେ ଶୁଣିଛି ଏପରି ସଙ୍ଗୀତ ? ମରଣକୁ ଆଲିଙ୍ଗନ କରୁ କରୁ ତନ୍ମୟ ହୋଇ ଶୁଣୁଛନ୍ତି ଏବଂ ସେହି ସୁର ସହ କଣ୍ଠ ମିଳେଇ ଗାଇଚାଲିଛନ୍ତି ଦୁର୍ଜୟ କିଶୋର –

''ତୁମି କାରେ କରିଓନା ଦୃକ୍‌ପାତ
ଆମି ନିଜେ ଲବତବ ଶରନ,
ଯଦି ଗୌରବେ ମୋରେ ଲୟେ ଯାଓ,
ଓଗୋ ମରନ, ହେ ମୋର ମରନ ।''

ରବୀନ୍ଦ୍ରନାଥଙ୍କର ଅନ୍ୟ କୌଣସି ସଙ୍ଗୀତ ଏଭଳି ଅପୂର୍ବ ସାର୍ଥକତାରେ କେବେ ଭରିଉଠିଛି କି ନା ଜାଣେନା । ମୁଁ କିନ୍ତୁ ମୋ'ର ସାରା ଜୀବନ ଭିତରେ ଏଇ ଗୋଟିଏ ରାତିରେ ଯଥାର୍ଥ ଗୀତ ଗାଇଥିଲି ଏବଂ ଏହି ଗୀତଟିକୁ ସାର୍ଥକ ଭାବରେ ଗାଇଥିଲି । କାରଣ ସେହି ଗୋଟିଏ ହୃଦୟ ପରମତମ ଲଗ୍ନରେ ସେ ଗୀତଟି ଶୁଣିବାକୁ ଚାହୁଁଥିଲା । ଖାଲି ଶୁଣା ନୁହେଁ, ହୃଦୟ ଦେଇହିଁ ମୃତ୍ୟୁଞ୍ଜୟୀ ବୀର ମୋ' ସାଙ୍ଗରେ ସେ ସଙ୍ଗୀତ ଗାଇ ମୋତେ ଧନ୍ୟକରିଦେଇଥିଲେ ।

''କେତେବେଳେ ଚାରିଟା ବାଜିଛି ଜାଣେନା । ସୁକୁଲଜୀ କହିଲେ– 'ଦାଦା, ସମୟ ନିକଟ ହୋଇଗଲା । ଏଥର ଶେଷ ଗୀତଟା ହେଉ– 'ବନ୍ଦେ ମାତରମ୍' ।

''ଏକ ନମ୍ବର, ଆଠ ନମ୍ବର, ନଅ ନମ୍ବର– ସୁକୁଲଜୀ ଓ ଆମେ ତିନିଜଣ ସମସ୍ୱରରେ ଗାଇଚାଲିଲୁ – 'ବନ୍ଦେ ମାତରମ୍ ।' ସେ ବନ୍ଦନା ଖାଲି ମାତୃବନ୍ଦନା ନୁହେଁ, ତାହା ଥିଲା ମାତୃରୂପା ମହା ମୃତ୍ୟୁପୂଜାର ମଙ୍ଗଳାଚରଣ ।

''ଜେଲ ଗେଟର ପିଟା ଘଣ୍ଟାରେ ଢଂ ଢଂ ହୋଇ ପାଞ୍ଚଟା ବାଜିଲା । ଶୀତର ଉଷା ସେତେବେଳେ କୁହୁଡ଼ିରେ ଆଚ୍ଛନ୍ନ, ଅନ୍ଧକାର । ଏକାସାଙ୍ଗରେ ଅନେକଗୁଡ଼ିଏ ବୁଟ୍‌ର ଶବ୍ଦ ପନ୍ଦର ଡିଗ୍ରୀ ମଧ୍ୟରେ ପ୍ରବେଶକଲା । ବୈକୁଣ୍ଠ ଡାକିଲେ, 'ଦାଦା, ଟଇମ୍ ହୋଗୟା ।' ଟିକେ ଅଟକି ପୁଣି କହିଲେ– ''ଗୋଟିଏ ଅନୁରୋଧ ରଖିଗଲି । ଆପଣ ବାହାରକୁ ଗଲେ ବିହାରର ବାଲ୍ୟବିବାହ ପ୍ରଥାଟା ଉଠାଇଦେବାକୁ ଉଦ୍ୟମ କରିବେ ।''

''ମୃତ୍ୟୁଞ୍ଜୟୀର ଆଉ କିଛି ଅନ୍ତିମ ଅନୁରୋଧ ନାହିଁ ? ଏକମାତ୍ର ଅନୁରୋଧ ଦେଶରୁ ବାଲ୍ୟବିଧବାରୂପୀ କୁସଂସ୍କାର ଦୂରକର– କାହିଁକି ତାଙ୍କର ଏ ଅନୁରୋଧ ? ଏହାର କାରଣ– ବୈକୁଣ୍ଠଙ୍କୁ ଅତି ଅଳ୍ପ ବୟସରେ ବିବାହ କରି ଦିଆଯାଇ ଥିଲା । ତାଙ୍କର କିଶୋରୀ ବଧୂ ନିଜର ଗୃହ ବାତାୟନ ଖୋଲି ହୁଏତ ବା ଅଶ୍ରୁପ୍ଲାବିତ ନୟନରେ

ଅନେଇରହିଛନ୍ତି ସୁଦୂର ଗୟା ଜେଲର ଆକାଶ ପଥକୁ ପ୍ରିୟତମର ଦିବ୍ୟ ଯାତ୍ରାପଥ ଆଡ଼କୁ । ବିରହିଣୀବଧୂର ସ୍ୱାମୀବିୟୋଗ ଗାଥା ସଂଗୋପନରେ ନିଜର ଅନ୍ତର ଭିତରେ ଲାଳନକରି ସୁକୁଲଜୀ ମୃତ୍ୟୁବରଣ କରିଥିଲେ । କିନ୍ତୁ ଏ ଆଶା ତାଙ୍କର ଥିଲା ଯେ ଭାରତଜନନୀର ଶୃଙ୍ଖଳ ମୁକ୍ତି ସଙ୍ଗେ ସଙ୍ଗେ ସମାଜର ସମସ୍ତ କୁସଂସ୍କାର ମଧ୍ୟ ଲୋପପାଇବ, ବାଲ୍ୟବିବାହ ଦୂରହେବ ।

ଏଥର ସବୁ ନିଶ୍ଚୁପ । ସୁକୁଲଜୀଙ୍କର ସେଲର ତାଲା ଖୋଲା ହେବାର ଶବ୍ଦ ପାଇଲି । ତାଙ୍କର ଗୋଡ଼କଡ଼ି ଖୋଲା ହେବାର ଶବ୍ଦ ମଧ୍ୟ ହେଲା । ସୁକୁଲଜୀ କହିବାର ଶୁଣାଗଲା– ମୁଁ ପ୍ରସ୍ତୁତ ।''

ଦଳଦଳ ସେଲ୍ ଭିତରୁ ବାହାରୁଛନ୍ତି । ଶବ୍ଦ ଶୁଣୁଛି । ଅନ୍ୟ ଅପରାଧୀ ଫାଶୀ ଆସାମୀଙ୍କୁ ଫାଶୀ ମଞ୍ଚକୁ ନେବା ସମୟରେ ସେମାନଙ୍କ ଦୁଇ ହାତକୁ ପିଠି ପଛରେ ବୁଲାଇ ବାନ୍ଧିଦିଆଯାଏ ହାତକଡ଼ିରେ, କାରଣ ସେମାନେ ଫାଶୀମଞ୍ଚକୁ ଯିବାକୁ ଅନିଚ୍ଛୁକ, ମୃତ୍ୟୁଭୟରେ ଶଂକିତ ସେମାନେ । କିନ୍ତୁ ସୁକୁଲଜୀ କ'ଣ ସେହି ଶ୍ରେଣୀର ଆସାମୀ ? ସେ ତ ମୃତ୍ୟୁ ଭୟହୀନ ଓ ମୃତ୍ୟୁକୁ ଆନନ୍ଦରେ ଆଲିଙ୍ଗନ କରିବାକୁ ଯାଉଥିବା ଜଣେ ମୃତ୍ୟୁଞ୍ଜୟୀ ବୀର । ତଥାପି ତାଙ୍କ ସହ ମଧ୍ୟ ଜେଲ-କର୍ତ୍ତୃପକ୍ଷଙ୍କର ସେହିଭଳି ଆଦିମ ଅସଭ୍ୟ ବ୍ୟବହାର । ତାଙ୍କ ହାତକୁ ମଧ୍ୟ ପଛପଟେ ବୁଲାଇ ହାତକଡ଼ି ଦିଆଗଲା ଫାଶୀ ମଞ୍ଚକୁ ନେବାବେଳେ, କାରଣ ପୋଲିସ ଭାଷାରେ ସେ ଜଣେ ଡେଞ୍ଜରସ କ୍ରିମିନାଲ ।

ଏକ ନମ୍ବର ସେଲ୍‌ରୁ ବାହାରି ସୁକୁଲଜୀ ବୋଧହୁଏ ଟିକେ ଠିଆହେଲେ । ଆମ ସେଲ୍‌କୁ ଲକ୍ଷ୍ୟ କରି କହିବାର ଶୁଣାଗଲା, ''ଦାଦା, ତେବେ ଚାଲିଲି । ମୁଁ ପୁଣି ଆସିବି ଯେ– ଦେଶ ତ ସ୍ୱାଧୀନ ହୋଇନି । 'ବନ୍ଦେ ମାତରମ୍ ।'

ଆମେ ତିନିହେଁ ଏକସଙ୍ଗରେ ଧ୍ୱନିଦେଲୁ– 'ବନ୍ଦେ ମାତରମ୍' । ସାରା ଜେଲରେ ଧ୍ୱନି ଉଠିଲା– 'ବନ୍ଦେ ମାତରମ୍' ।

ତା' ପରେ ନିଶ୍ଚୁପ ଧରଣୀ । ମୃତ୍ୟୁର ପଦ ସଂଚାରରେ ସ୍ତବ୍ଧ ସମସ୍ତଙ୍କ କଣ୍ଠ । କେବଳ ମାତ୍ର ସୁକୁଲଜୀଙ୍କ କଣ୍ଠରୁ ଶୁଭୁଛି– 'ବନ୍ଦେ ମାତରମ୍, ଭାରତ ମାତାକୀ ଜୟ' ।

ମୁକ୍ତିର ଅଗ୍ରଦୂତ ରକ୍ତରଂଜିତ କଠିନ ପଥରେ କ୍ଷତବିକ୍ଷତ ଏକକ ଯାତ୍ରୀ– ତା'ର କଣ୍ଠଧ୍ୱନି ମନ୍ତ୍ର ଭଳି ସମସ୍ତ ଇନ୍ଦ୍ରିୟ ଦେଇ ସମସ୍ତେ କେବଳ ଶୁଣୁଛନ୍ତି । ନିଜନିଜର କଂଠସ୍ୱର ଦେଇ ଆବୃତ୍ତି କରିବାର ମନ କାହାରି ନାହିଁ ସେତେବେଳେ ।

''ଶେଷଧ୍ୱନି ହୃଦୟରେ ଆସି ଲାଗିଗଲା । ଭାରତ ମାତାକୀ.....

ମଝି ରାସ୍ତାରେ ସେ ଧ୍ୱନି ଯେମିତି ଅଟକିଗଲା, ଆଉ କିଛି ଶୁଣାଗଲାନାହିଁ । ସମସ୍ତ କାରାଗାର ପ୍ରତିଧ୍ୱନିତ କରି କେବଳ ଶୁଣାଗଲା– ''ଦୁ-ମ୍'' ।

❑ ❑ ❑

## ଅଧ୍ୟାୟ – ବାଇଶ

# ପୁଣି ବେଙ୍ଗଲ

'କଲିକତା କଂଗ୍ରେସ (୧୯୨୮) ପରେ ସୁଭାଷଙ୍କ ପ୍ରତିଷ୍ଠିତ 'ବେଙ୍ଗଲ ଭଲେଣ୍ଟିୟର୍ସ' ଦଳ ଚୁପ୍ ହୋଇ ବସିନଥିଲେ । ସେମାନଙ୍କ ଭିତରୁ ଯେଉଁମାନେ କଂଗ୍ରେସରେ ପ୍ରତ୍ୟକ୍ଷ ଭାବରେ ଯୋଗଦେଇ ପରବର୍ତ୍ତୀ କଂଗ୍ରେସ ଆନ୍ଦୋଳନମାନଙ୍କରେ ଅଂଶ ଗ୍ରହଣ କଲେ, ସେମାନଙ୍କ କଥା ଅଲଗା । କିନ୍ତୁ ଆଉ କେତେକ ବିପ୍ଳବୀ ବିଭିନ୍ନ ଅନୁଷ୍ଠାନରେ ଯୋଗଦେଲେ; କାରଣ କଂଗ୍ରେସର ତଥାକଥିତ ଅହିଂସନୀତି ସେମାନଙ୍କର ପସନ୍ଦ ନ ଥିଲା । ଆଉ ଏକ ଶ୍ରେଣୀର ବିପ୍ଳବୀ ଥିଲେ ଯେଉଁମାନେ କଂଗ୍ରେସ ଭିତରେ ରହିଥିଲେ ସୁଦ୍ଧା କଂଗ୍ରେସ ନୀତିକୁ ଆଖିବୁଜା ସମର୍ଥନ କରୁ ନ ଥିଲେ । ସେମାନେ କଂଗ୍ରେସକୁ ଅଧିକ ସଂଗ୍ରାମମୁଖୀ ବା ରାଡ଼ିକାଲ କରିବାକୁ ଉଦ୍ୟମ କରୁଥିଲେ । ଏମାନଙ୍କ ଶକ୍ତି ବା ସଂଖ୍ୟା କିଛି କମ୍ ନ ଥିଲା । ବସ୍ତୁତଃ ସୁଭାଷ କଂଗ୍ରେସରୁ ବିଦାୟନେବା ପର୍ଯ୍ୟନ୍ତ ଏହି ଶ୍ରେଣୀଟି ଖୁବ୍ ଶକ୍ତିଶାଳୀ ଥିଲା । ତା' ହୋଇ ନ ଥିଲେ ଗାନ୍ଧିଜୀଙ୍କ ମନୋନୀତ ପ୍ରାର୍ଥୀ ଡକ୍ଟର ପଟ୍ଟାଭିଙ୍କୁ ଶୋଚନୀୟଭାବେ ପରାଜିତ କରି ସୁଭାଷ ତ୍ରିପୁରୀ କଂଗ୍ରେସ ଅଧିବେଶନରେ କଦାପି କଂଗ୍ରେସ ସଭାପତିରୂପେ ନିର୍ବାଚିତ ହୋଇପାରିନଥା'ନ୍ତେ ।

ବଙ୍ଗଳାର ହେମଚନ୍ଦ୍ର ଘୋଷ ସେହି ଶ୍ରେଣୀର ଜଣେ ବିପ୍ଳବୀ ଥିଲେ । ସେ କଂଗ୍ରେସ ଭିତରେ ଥିଲେ ସୁଦ୍ଧା ତାଙ୍କର ସ୍ୱତନ୍ତ୍ର ବିପ୍ଳବୀ ଅନୁଷ୍ଠାନ ଥିଲା । ତା'ର ନାମ ଥିଲା 'ମୁକ୍ତିସଂଘ' । ବେଙ୍ଗଲ ଭଲେଣ୍ଟିୟର୍ସର ଅଧିକାଂଶ ସଭ୍ୟ 'ମୁକ୍ତିସଂଘ'ର ଅନ୍ତର୍ଭୁକ୍ତ ହୋଇଥିବାରୁ ପୁଲିସ ରେକର୍ଡ଼ରେ 'ମୁକ୍ତିସଂଘ'କୁ ବେଙ୍ଗଲ ଭଲେଣ୍ଟିୟର୍ସ ବା ସଂକ୍ଷେପରେ ବି.ଭି. ବୋଲି ଉଲ୍ଲେଖ କରାଯାଉଥିଲା । ବର୍ଷୀୟାନ ବିପ୍ଳବୀ ହେମଚନ୍ଦ୍ରଙ୍କର ଯେ କେବଳ ଅସାଧାରଣ ସାଂଗଠନିକ କ୍ଷମତା ଥିଲା ସେତିକି ନୁହେଁ, ଭାରତ ଜାତୀୟତାବାଦର 'ଜନକ' ବୋଲି କୁହାଯାଉଥିବା ସ୍ୱାମୀ ବିବେକାନନ୍ଦ, ବିଶ୍ୱକବି ରବୀନ୍ଦ୍ରନାଥ, ବିପ୍ଳବୀ ଅରବିନ୍ଦଙ୍କ ଭଳି ବୟୋଜ୍ୟେଷ୍ଠଙ୍କ ସହ ସେ ନିବିଡ଼ ଭାବେ ପରିଚିତ ଥିଲେ । ନିବେଦିତା, ରାସବିହାରୀ ଓ ସୁଭାଷଙ୍କ ଭଳି ଅପେକ୍ଷାକୃତ କନିଷ୍ଠମାନଙ୍କର ମଧ୍ୟ ସେ ଥିଲେ ଅତି ନିକଟ ଆତ୍ମୀୟସଦୃଶ । 'ମୁକ୍ତିସଂଘ' ବ୍ୟତୀତ

'ଅନୁଶୀଳନ ସମିତି', 'ଆତ୍ମୋନ୍ନତି ସମିତି', 'ଯୁଗାନ୍ତର ଦଳ' ଓ ପୂର୍ଣ୍ଣ ଦାସଙ୍କ ଦଳ ପ୍ରଭୃତି ଅନୁଷ୍ଠାନ ଥିଲା ।

ମୁକ୍ତିସଂଘର ଆଭ୍ୱନ ଷ୍ଟ୍ୱାର୍ଡ ତ ରୀତିମତ ଏକ ଶୃଙ୍ଖଳିତ ସେନାବାହିନୀ ଭଳି ତିଆରି ହୋଇଥିଲା । ଖାଲି ସମ୍ମୁଖ ଯୁଦ୍ଧ ନୁହେଁ, ଯୁଦ୍ଧରେ ଆହତମାନଙ୍କର ସେବାପାଇଁ 'ମେଡିକାଲ କୋର୍' ଓ କୋର୍ଟରେ ବିପ୍ଳବୀମାନଙ୍କୁ ଆଇନଗତ ସାହାଯ୍ୟ ପାଇଁ 'ଲୟର୍ସ କୋର୍' ମଧ୍ୟ ରହିଥିଲା । ସରକାରୀବିରୋଧୀ ଓ ଆଇନବିରୋଧୀ ଏହି ସବୁ ଦୁଃସାହସିକ କାର୍ଯ୍ୟ କରିବାକୁ ସେତେବେଳେ ଏ ଦେଶରେ ବୁଦ୍ଧିଜୀବୀମାନଙ୍କର ଅଭାବ ନ ଥିଲା । ଡାକ୍ତର ସତ୍ୟେନ ଦତ୍ତ, ଡାକ୍ତର ପ୍ରକାଶ ଦତ୍ତ, ଡାକ୍ତର ଅରୁଣ ନନ୍ଦୀ, ଡାକ୍ତର ସୁରେନ ବର୍ମନ ପ୍ରଭୃତି ଚିକିତ୍ସକମାନେ ଗୋପନ ଚିକିତ୍ସା କେନ୍ଦ୍ରରେ ଆହତ ବିପ୍ଳବୀମାନଙ୍କର ଯେମିତି ସେବାକରୁଥିଲେ, ସର୍ବଶ୍ରୀ ଖଗେନ କର, ଚିନ୍ତାହରଣ ରାୟ, ବିନୟ ସେନ ଓ ପରେଶ ସାହା ପ୍ରଭୃତି ସେ ଯୁଗର ନାମଜାଦା ଓକିଲମାନେ ସେମିତି ବିପ୍ଳବୀମାନଙ୍କ ପକ୍ଷରୁ କୋର୍ଟରେ ମାଗଣା ଲଢୁଥିଲେ ।

୧୯୩୦ ମସିହା ଅଗଷ୍ଟ ୫ ତାରିଖରେ କଲିକତାର ଡେଲହାଉସି ଇଷ୍ଟରେ ତତ୍କାଳୀନ ପୁଲିସ କମିଶନର ଚାର୍ଲସ୍ ଟେଗାର୍ଟ ଉପରେ ବୋମାମାଡ଼ ହୋଇଥିଲା । ଏହା ମୁଖ୍ୟତଃ 'ଯୁଗାନ୍ତର ଦଳ' ଦ୍ୱାରା ଆୟୋଜିତ ହୋଇଥିଲେ ସୁଦ୍ଧା ଅନ୍ୟ ସବୁ ବିପ୍ଳବୀ ସଂସ୍ଥା ମଧ୍ୟ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ବେଙ୍ଗଲର ଅଧିକାଂଶ ସଶସ୍ତ୍ର ଆକ୍ରମଣ ଏହିଭଳି ଭାବରେ ଗୋଟିଏ ଗୋଟିଏ ସମ୍ମିଳିତ ପ୍ରଚେଷ୍ଟା । ଦୀନେଶ ମଜୁମଦାର, ଅନୁଜା ସେନ, ଶୈଳେନ ନିୟୋଗୀ, ଅତୁଲ ସେନ, କାଳୀପଦ ଘୋଷ ପ୍ରଭୃତି ବିପ୍ଳବୀମାନେ ଏଥିରେ ଅଂଶ ଗ୍ରହଣ କରିଥିଲେ । କଲିକତାର ଲାଲବଜାରସ୍ଥ ମୁଖ୍ୟ ପୁଲିସ ହେଡକ୍ୱାର୍ଟରରୁ ଫେରିବାବେଳେ ଟେଗାର୍ଟ ଉପରେ ଦୀନେଶ ଗୋଟାଏ ମାରାତ୍ମକ ଟି.ଏନ୍.ଟି. ବୋମା ଫୋପାଡ଼ିଲା । କିନ୍ତୁ ଏକ ଦୁର୍ଭାଗ୍ୟଜନକ ଘଟଣା ମଧ୍ୟ ଘଟିଲା । ଅନୁଜା ପାଖରେ ଥିବା ଅନ୍ୟ ଗୋଟିଏ ବୋମା ଅକସ୍ମାତ୍ ଫୁଟିଯିବାରୁ ସେ ଗୁରୁତର ଭାବରେ ଆହତ ହେଲା, ଏପରିକି ତାଙ୍କର ପେଟ ଫୁଟିଯାଇ ଅନ୍ତନାଡ଼ି ପର୍ଯ୍ୟନ୍ତ ପଦାକୁ ବାହାରିପଡ଼ିଲା । ସେ ସେହିଠାରେହିଁ ଦେହରକ୍ଷାକଲେ । ଦୀନେଶ ଅଜ୍ଞାନ ହୋଇ ତଳେ ପଡ଼ିଗଲେ । କିନ୍ତୁ ସେଠାରେ କେହି ଧରାପଡ଼ିଲେନାହିଁ । ଅନ୍ୟାନ୍ୟ ବିପ୍ଳବୀମାନେ ଆହତ ଅନୁଜା ଏବଂ ଜ୍ଞାନଶୂନ୍ୟ ଅବସ୍ଥାରେ ପଡ଼ିଥିବା ଦିନେଶଙ୍କୁ ସଙ୍ଗେ ସଙ୍ଗେ ଟେକିନେଇ ପଳେଇଗଲେ । ପରେ ଏହି ମାମଲାରେ ଗିରଫହେଲେ ଭୂପେନ ଦତ୍ତ, କିରଣ ମୁଖାର୍ଜି, ଡାକ୍ତର ନାରାୟଣ ରାୟ, କୁମାରୀ ଶୋଭାରାଣୀ ଦତ୍ତ, କମଳା ଦାସ, ରେଣୁ ସେନ, ରସିକ ଦାସ, ଅତୁଲ ଗାଙ୍ଗୁଲି ଏବଂ ଗଡ଼ପାର ବାଳିକା ବିଦ୍ୟାଳୟର ହଷ୍ଟେଲ ସୁପରିନଟେଣ୍ଡେଣ୍ଟ କମଳା ଦାସଗୁପ୍ତା ।

ମହିଳାମାନଙ୍କୁ ଛାଡ଼ିଦେଲେ ଅନ୍ୟମାନଙ୍କର ବିଚାର ହେଲା । ଏ ସଂକ୍ରାନ୍ତରେ ମୋଟ ୯ଟି ମକଦ୍ଦମା ହୋଇଥିଲା । ଆଠଜଣଙ୍କୁ ଦଶ ବର୍ଷରୁ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ

ଦ୍ୱୀପାନ୍ତର ହୋଇଥିଲା । ଅତୁଲ ଓ ଶରତ ଖଲାସ ହେଲେ । କୌଶଳକ୍ରମେ ଦୀନେଶ ମେଦିନପୁର ଜେଲରୁ ଖସି ପଳାଇଯାଇଥିଲେ । କିନ୍ତୁ ବହୁଦିନପରେ ଧରାପଡ଼ି ଫାଶୀ ପାଇଲେ ୧୯୩୪ ମସିହା ଜୁଲାଇ ୯ ତାରିଖରେ ।

**ବିନୟ- ବାଦଲ- ଦୀନେଶ :**

ବିନୟ, ବାଦଲ ଓ ଦୀନେଶ ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମର ଇତିହାସରେ ତିନୋଟି ଅବିସ୍ମରଣୀୟ ନାମ । କେବଳ ଦୁଃସାହସିକତା ବା ନିର୍ଭୀକତା ନୁହେଁ, ଅନ୍ୟାନ୍ୟ ବହୁ ଦୁର୍ଲଭ ଗୁଣରେ ଏହି ବିପ୍ଳବୀ ତ୍ରୟ ଇତିହାସକୁ ନାନା ଭାବରେ ମହିମାନ୍ୱିତ କରିଅଛନ୍ତି । 'ବ୍ୟକ୍ତି ନିଧନ' ବା 'ଉଦ୍‌ଯୋଗ' ପର୍ବରେ ଏହି ତିନିଜଣ ବିପ୍ଳବୀ ଅକ୍ଷୟ କୀର୍ତ୍ତି ଅର୍ଜନ କରିଯାଇଅଛନ୍ତି ଏବଂ ସେମାନଙ୍କର ଆତ୍ମତ୍ୟାଗ ପରବର୍ତ୍ତୀ ଯୁଗରେ ସଶସ୍ତ୍ର ବିପ୍ଳବୀମାନଙ୍କୁ ଗଭୀର ଭାବରେ ପ୍ରଭାବିତ ଓ ଉଦ୍‌ବୁଦ୍ଧ କରିଅଛି । ସେମାନଙ୍କର ଅଲୌକିକ ଶୌର୍ଯ୍ୟ-ବୀର୍ଯ୍ୟର ପରାକାଷ୍ଠାର ଭିତ୍ତି ପ୍ରସ୍ତର ଉପରେ ସଶସ୍ତ୍ର ବିପ୍ଳବର ପରବର୍ତ୍ତୀ ପର୍ଯ୍ୟାୟ ଦଣ୍ଡାୟମାନ ହୋଇ ଇତିହାସର ଦିଗ୍‌ବଳୟକୁ କରିଅଛି ଉଦ୍‌ଭାସିତ ।

ବିନୟ ବୋଷ ପୂର୍ବବଙ୍ଗର ବିକ୍ରମପୁର ଗ୍ରାମର ରେବତୀ ବୋଷଙ୍କର ଏକମାତ୍ର ସନ୍ତାନ ଥିଲେ । ସେ ଥିଲେ ଢାକା ମେଡିକାଲ କଲେଜର ଜନୈକ କୃତୀ ଚତୁର୍ଥବାର୍ଷିକ ଛାତ୍ର । ଆଉଗୋଟିଏ ବର୍ଷ ପଢ଼ିଥିଲେ ସେ ଡାକ୍ତରଟିଏ ହୋଇ ପଦାକୁ ବାହାରିଥା'ନ୍ତେ ଏବଂ ରେବତୀବାବୁଙ୍କର ସୁନେଲି ଆଶା ଫଳବତୀ ହୋଇଥା'ନ୍ତା । କିନ୍ତୁ ସେପର୍ଯ୍ୟନ୍ତ ଅପେକ୍ଷା କରିବାକୁ ତାଙ୍କର ଧୈର୍ଯ୍ୟ ନ ଥିଲା । ଗାନ୍ଧିଜୀଙ୍କ ଡାକରାରେ ଯେତେବେଳେ ହଜାର ହଜାର ଛାତ୍ର ଦେଶ କାମରେ ଝାସଦେଲେ, ବିନୟ ସେହି ଗୌରବରୁ ବଞ୍ଚିତ ହେବାକୁ ଉଚିତ ମନେକଲେନାହିଁ । ସେତିକିରୁ ପୋଥିବାଇଗଣରେ ଡୋରବାନ୍ଧି ତାଙ୍କର 'ବାଡ଼ିବାଇଗଣ' ଖୋଜିବା ଆରମ୍ଭ ହୋଇଗଲା । ପୂର୍ବରୁ ଅବଶ୍ୟ ସେ ସଶସ୍ତ୍ର ବିପ୍ଳବୀ ଶିବିର ସହ ସମ୍ପର୍କ ରଖିଥିଲେ । ସୁତରାଂ ସେ ପାଠପଢ଼ା ଛାଡ଼ିବା ସଙ୍ଗେ ସଙ୍ଗେ ସଶସ୍ତ୍ର ଯୁଦ୍ଧରେ ଝାସ ଦେବାରେ କୌଣସି ଅସୁବିଧା ଅନୁଭବ କଲେ ନାହିଁ । ହେମଚନ୍ଦ୍ରଙ୍କ 'ମୁକ୍ତିସଂଘ'ର ସେ ଜଣେ ପହିଲା ନମ୍ବର ସୈନିକ । ସୁନ୍ଦର ସୁଶ୍ରୀ ଚେହେରା ସାଙ୍ଗକୁ ବିନୟଙ୍କ ଦେହରେ ଥିଲା ଗୋଟାଏ ଅସୁରର ବଳ । ତା' ସାଙ୍ଗକୁ ଥିଲା ପ୍ରତ୍ୟୁତ୍ପନ୍ନମତିତ୍ୱ ଓ ଅପୂର୍ବ ଅଭିନୟ କୁଶଳତା । ଏହି ସବୁ ଦୁର୍ଲଭ ଗୁଣ ସହ ଦେଶାତ୍ମବୋଧର ମିଶ୍ରଣ ହେଲା । ସେତେବେଳେ ତାଙ୍କୁ କୌଣସି କାର୍ଯ୍ୟ ଆଉ ଅସମ୍ଭବ ବୋଧ ହେଲା ନାହିଁ ।

କଲିକତାର ଡାଲହାଉସିଠାରେ ଟେଗାର୍ଟ ଉପରେ ହୋଇଥିବା ବୋମା ଆକ୍ରମଣର ମାତ୍ର ଚାରିଦିନ ପରର ଘଟଣା । ଢାକା ମେଟଫୋର୍ଡ଼ ହସ୍‌ପିଟାଲ । ଅସୁସ୍ଥ ପୁଲିସ ସାହେବ ମିଷ୍ଟର ବାର୍ଟ ସେତେବେଳେ ହସ୍‌ପିଟାଲରେ ଚିକିତ୍ସିତ ହେଉଥାଏ । ତାକୁ

ଦେଖିବାକୁ ଯାଉଥିବା କୁଖ୍ୟାତ ପୁଲିସ ଆଇ. ଜି. ଲୋମାନ ଓ ଢାକା ଏସ. ପି. ହଡ୍‌ସନ । ହସ୍‌ପିଟାଲ ପାହାଚ ତଳକୁ ଥିଲା ଘନ ଦେବଦାରୁ ଗଛର ଗୋଟିଏ ଧାଡ଼ି । ସେହି ଦେବଦାରୁ ଗଛ ଉହାଡ଼ରେ ବନ୍ଧୁକ ଧରି ଠିଆହୋଇଥିଲେ ବିନୟ । ଲୋମାନ ଓ ହଡ୍‌ସନ ସେହି ପାହାଚ ଦେଇ ତଳକୁ ଓହ୍ଲାଇବା ସଂଗେ ସଂଗେ ବିନୟ ଫାୟାରିଂ କଲେ । ଲୋମାନ ଗୁଳିମାଡ଼ ଖାଇ ସେଇଠି ଟଳିପଡ଼ିଲା ଓ ହଡ୍‌ସନ ଗୁରୁତର ଭାବରେ ଆହତହେଲା । ପରେ ସେ ମଧ୍ୟ ହସ୍‌ପିଟାଲରେ ପ୍ରାଣତ୍ୟାଗକଲେ । ସତ୍ୟେନ ସେନ ନାମରେ ଜଣେ ତୋଷାମଦକାରୀ କମ୍ପାଉଣ୍ଡର ଠିଆହୋଇଥିଲା ଅନତିଦୂରରେ । ଦୌଡ଼ିଆସି କୁଣ୍ଢେଇପକାଇଲା ବିନୟକୁ । କିନ୍ତୁ ବିନୟ କାବୁ ହେବା ପୂର୍ବରୁ ସତ୍ୟେନ ଛାତିକୁ ଲକ୍ଷ୍ୟକରି ଏମିତି ଏକ ମାରାତ୍ମକ ଭୁଷି ମାରିଲେ ଯେ ସେହି ମାଡ଼ରେ ସତ୍ୟେନ ସେଇଠି ମାଟି କାମୁଡ଼ି ପକାଇଲା । ବିନୟ ପାଖରେ ଥିବା ଏକ ପାଚେରି ଉପରେ ଚଢ଼ି ଆରପଟକୁ ପଳେଇଲେ । ଆରପାଖରେ ଗୃହସ୍ୱାମୀ ଏ କଥା ଜାଣିବାର ବହୁ ପୂର୍ବରୁ ବିନୟ ଗୋଟିଏ ପାଣି ଟାଙ୍କି ଉପରେ ଚଢ଼ି ଆରପଟକୁ ପଳାଇଲେ । ଗୃହସ୍ୱାମୀ ଏହା ଜାଣିବା ପୂର୍ବରୁ ସେ ସେଠାରୁ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । କେହି ତାଙ୍କୁ ଧରି ପାରିଲେ ନାହିଁ ।

ଏହି ଅପ୍ରତ୍ୟାଶିତ ଓ ଦୁଃସାହସିକ ହତ୍ୟାକାଣ୍ଡରେ ସରକାରୀ ମହଲ ବିଚଳିତ ହୋଇପଡ଼ିଲା । ବିନୟକୁ ଧରିବାକୁ ସରକାରୀ କଳ ସକ୍ରିୟ ହୋଇଉଠିଲା । ସେତେବେଳେ ଦେଶର ରାଜନୈତିକ ଅବସ୍ଥା ବଡ଼ ସଂଗୀନ । ଗାନ୍ଧୀ-ଇରଉଇନ ଚୁକ୍ତି ପରେ 'ଗୋଲ୍ ଟେବୁଲ୍ ବୈଠକ' ପାଇଁ ଗାନ୍ଧିଜୀ ଓ କଂଗ୍ରେସ ପ୍ରସ୍ତୁତ ହେଉଥା'ନ୍ତି । ବୈଠକର ଫଳାଫଳ ସଂପର୍କରେ ସାରା ଦେଶରେ ଚାଲିଥାଏ ନାନାପ୍ରକାର କଳ୍ପନା-ଜଳ୍ପନା । ଏହି ପରିପ୍ରେକ୍ଷୀରେ ବିନୟ ବୋଷଙ୍କର ଅଭିଯାନ ଦେଶରେ ଏକ ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟିକଲା । ଗୋଟିଏ ସମ୍ବାଦପତ୍ରରେ ପ୍ରକାଶ ପାଇଲା– "Half of the work of the Round Table Conference has been put through by Binoy Bose. (ଗୋଲ୍ ଟେବୁଲ୍ ବୈଠକର ଅଧାକାମ ତ ବିନୟ ବୋଷଙ୍କଦ୍ୱାରା ସମ୍ପାଦିତ ହେଲା ।)

X X X X

ଢାକାରୁ ରେଳଗାଡ଼ି ଛୁଟିଛି ନାରାୟଣଗଞ୍ଜ ଅଭିମୁଖେ । ମଝିରେ ଦୋଲାଇଗଞ୍ଜ ଷ୍ଟେସନ । ପ୍ଲାଟଫର୍ମରେ ବସିଛନ୍ତି ଦୁଇଜଣ ଗାଉଁଲି ଲୋକ । ଛିଣ୍ଡା ଓ ମସିଆ ଚିରକୁଟ ଲୁଂଗି ଓ ଫଟା ଗଂଜି ପିନ୍ଧିଛନ୍ତି ଦୁଇଜଣଯାକ । କାନରେ ଖୋସାହୋଇଛି ଅଧାପୋଡ଼ା ବିଡ଼ି । କିନ୍ତୁ ଗାଡ଼ି ଚାରିପଟେ ଘେରିରହିଥା'ନ୍ତି ଏକ ବିରାଟ ପୁଲିସ ବାହିନୀ । ଗାଡ଼ି ସର୍ଚ୍ଚ ହେଉଛି, ଖୋଜାଚାଲିଛି ବିନୟ ବୋଷକୁ । ପୁଲିସ ଖବରପାଇଛି ଯେ ଲୋମାନ ଓ ହଡ୍‌ସନର ହତ୍ୟାକାରୀ ହେଉଛି ବିନୟ ବୋଷ ଏବଂ ସେ ସେହି ଗାଡ଼ିରେ ଯାଉଛି । ବିନୟକୁ ଜୀବନ୍ତ ବା ମୃତ ଅବସ୍ଥାରେ ଧରାଇଦେଲେ ମିଳିବ ୧୦ ହଜାର ଟଙ୍କାର

ନଗଦ ପୁରସ୍କାର । ସର୍ଚ୍ଚ ଶେଷହେଲା । ପୁଲିସବାହିନୀ ଟ୍ରେନ୍‌ରୁ ଓହ୍ଲାଇ ଆସିଲେ ଏବଂ ତା'ପରେ ଯାଇ ଛିଣ୍ଡା ଲୁଂଗି ପିନ୍ଧିଥିବା ଯାତ୍ରୀ ଦୁଇଜଣ ଗାଡ଼ି ଭିତରେ ପଶିଲେ ।

ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଯେ ଗାଁବାଲା ଯାତ୍ରୀ ଦୁଇ ଜଣ ଆଉ କେହି ନୁହନ୍ତି– ନିଜେ ବିନୟ ବୋଷ ଓ ତାଙ୍କର ବଡ଼ିଗାର୍ଡ଼ ଭଳି କାର୍ଯ୍ୟ କରୁଥିବା ବି.ଭି. ଆକ୍ସନ ସ୍କ୍ୱାର୍ଡ଼ର ଅନ୍ୟତମ ସେନାପତି ସୁପତି ରାୟ । ଡବାରେ ଢାକା ବିଶ୍ୱବିଦ୍ୟାଳୟର ୪୦/୫୦ ଜଣ ଛାତ୍ର ପ୍ରବଳ କୋଳାହଳ କରୁଥା'ନ୍ତି । ସେମାନଙ୍କ ପାଟିଗୋଳରେ ଆଉ କାହାର କିଛି ଶବ୍ଦ ଶୁଭୁ ନାହିଁ । ଡବାକୁ ଏମିତି ଜାମ କରିଥା'ନ୍ତି ଯେ କୌଣସି ଟି.ଟି. ଆଇ. ବା ଯାତ୍ରୀ ତା ଭିତରକୁ ପଶିବାର ଯୁ' ନାହିଁ । ନାରାୟଣଗଞ୍ଜ ଷ୍ଟେସନର ଠିକ୍ ପୂର୍ବ ଷ୍ଟେସନ ଚାଷଡ଼ା । ସେଇଠି ଓହ୍ଲେଇଗଲେ ପିଲାମାନେ ଏବଂ ସେହି ଗହଳି ଭିତରେ ଗାଡ଼ିରୁ ଓହ୍ଲେଇଗଲେ ଦୁଇଜଣ । କାରଣ ନାରାୟଣଗଞ୍ଜ ଷ୍ଟେସନରେ ସେମାନେ ଅଧିକ ବିପଦର ସମ୍ମୁଖୀନ ହେବାର ଆଶଙ୍କା ଥିଲା । ସତକୁ ସତ ନାରାୟଣଗଞ୍ଜ ଷ୍ଟେସନରେ ପୁଣି ସର୍ଚ୍ଚ ହେଲା । କିନ୍ତୁ ସେତେବେଳକୁ ଉଭୟେ ନାରାୟଣଗଞ୍ଜର ଦୁଇ ମାଇଲ ଦୂର ବନ୍ଦର ଗ୍ରାମ ନଦୀଘାଟରେ । ସୁପତିବାବୁ ଗ୍ରାମ୍ୟ ବଙ୍ଗଳାରେ ଜଣେ ଅଭିଜାତସଂପନ୍ନ 'ଜମିଦାର' ବାବୁ ଓ ବିନୟ– ବୋଷ ତାଙ୍କର ଜଣେ ଭୃତ୍ୟ !

କିନ୍ତୁ ମେଘନା ନଦୀ ପାରିହେବେ କେମିତି ? ଦୁଇଦିନ ହେବ ବର୍ଷା ତୋଫାନରେ ମେଘନା ନଦୀ ଯେମିତି ପାଗଳ ଭଳି ନାଚୁଛି । ମାଝି ଏକାବେଳେ ନାରାଜ । ସେ କ'ଣ, ହର-ବ୍ରହ୍ମା ବି ସେ ଅବସ୍ଥାରେ ନଦୀ ପାର କରିବାକୁ କିଏ ବା ରାଜିହେବେ ? ମାଝି ହାତଯୋଡ଼ି ଜମିଦାରବାବୁଙ୍କୁ କହିଲା, ''ଆଜ୍ଞା, ଏ ନଈରେ ଦେଶୀ ଡଙ୍ଗା ଚାଲିପାରିବ ନାହିଁ । ଆପଣ ଆଗ 'ଫିଲାଗଇ ଷ୍ଟେସନ'କୁ ଯାଆନ୍ତୁ, ସେଇଠି ଲଞ୍ଚରେ ପାରିହୋଇ ଯିବେ । ମୋତେ ମାଫ୍ କରନ୍ତୁ । ମାଇଲିଏ ଦୂରରେ ଇଷ୍ଟେସନ୍ ।'' କିନ୍ତୁ ଇଷ୍ଟେସନକୁ ଯିବା ବାଟରେ 'ଜମିଦାର ବାବୁ' ଓ ତାଙ୍କର 'ଚାକର' ପୁଣି ବଦଳି ଗଲେ ଯେଉଁ ଛିଣ୍ଡା ଲୁଂଗି ପିନ୍ଧା ଗାଁବାଲାକୁ ସେଇ ଗାଁବାଲା ।

ଲଞ୍ଚରେ ମେଘନା ନଦୀ ପାରିହୋଇ ଦୁଇବନ୍ଧୁ ଭୈରବ ଷ୍ଟେସନରୁ ଗାଡ଼ି ଧରିଲେ କିଶୋରଗଂଜ । କିଶୋରଗଂଜ ଷ୍ଟେସନରେ ମଧ ସେହି ବିପଦ । ଗାଡ଼ି ଷ୍ଟେସନରେ ପହଞ୍ଚିବା ଆଗରୁ ଦେଖାଗଲା 'ନାଲିପଗଡ଼ିଆ' ଘେରିଛନ୍ତି ଷ୍ଟେସନର ଚାରିଆଡ଼େ– ଗାଡ଼ି ସର୍ଚ୍ଚହେବ ।

ଗାଡ଼ି ଷ୍ଟେସନରେ ପହଞ୍ଚିଗଲା । ଦୁଇବନ୍ଧୁ ଗାଡ଼ିରୁ ଓହ୍ଲେଇ ଯାଇ ପ୍ଲାଟଫର୍ମରେ ଠିଆହୋଇଥିବା ଟି.ଟି.ଆଇ. ବାବୁଙ୍କ ଗୋଡ଼ତଳେ ପଡ଼ିଗଲେ । ଏ ତ ନିତିଦିନିଆ ଦୃଶ୍ୟ ଟି. ଟି. ଆଇ. ବାବୁଙ୍କ ପକ୍ଷରେ । ହାକିମି ସ୍ୱରରେ ବାବୁ ପଚାରିଲେ, ''କିବେ, କ'ଣ ?'' ହାତଯୋଡ଼ି ମୁଣ୍ଡକାନ ଆଉଁସି ସୁପତିବାବୁ କହିଲେ –

''ଆଜ୍ଞା, ଡରମାଡୁଛି ।''



''କାହିଁକି ?''

''ଆଜ୍ଞା, ଟିକେଟ କାଟିନାହୁଁ । ପୁଲିସ ବାଡ଼େଇବେ ।''

''ଆବେ ତମକୁ କାହିଁକି ପୁଲିସ ବାଡ଼େଇବ ? ଶଃ-- ସେ କ'ଣ ତମରି ପାଇଁ ଆସିଛନ୍ତି । ବୋକାଗୁଡ଼ା କେଉଁଠିକାର ! କେଉଁଠୁ ଆସିଲ ?

କାନମୁଣ୍ଡା ଆଉଁସି ନାକ ସୁଁ-ସୁଁ କରି ସୁପତିବାବୁ କହିଲେ– ''ଆଜ୍ଞା ଭୈରବ ଇଷ୍ଟେସନରୁ ଆସିଲୁ । କଲିକତା ଯିବୁ । ଚଟକଳରେ କାମ କରିବୁ । ଆମ ଗାଁ ସଲିମ ଟଙ୍କା ସେଇଠି ସର୍ଦ୍ଦାର ଅଛି । ଆମେ ତାରି ପାଖକୁ ଯିବୁ ।''

'ପଇସା ଅଛି' ? ଟି.ଟି.ଆଇ. ବାବୁଙ୍କ ଗଳାରେ ଟିକେ ଦରଦଭରା ସ୍ୱର । ଟିକେ ଭରସା ପାଇଲେ । ସଙ୍ଗେ ସଙ୍ଗେ ଅଣ୍ଟାଠାରୁ ନାହି ପର୍ଯ୍ୟନ୍ତ ଗୁଡ଼େଇଥିବା ଏକ ମସିଆ କନାମୁଣା କାଢ଼ିପକେଇଲେ ସୁପତିବାବୁ । ଟି.ଟି.ଆଇ. ବାବୁଙ୍କ ଆଗରେ ମୁଣା ଝାଡୁ ଝାଡୁ ସୁପତିବାବୁ ଯେମିତି ଖୁବ୍ ଉତ୍ସାହଭରା କଣ୍ଠରେ କହିଲେ– ''ଢେର୍, ଢେର୍, ପଇସା ଅଛି ।''

ଟି.ଟି.ଆଇ. ପଇସାକୁ ସବୁ ଗଣିପକାଇଲେ, ମୋଟ ତେର ଟଙ୍କା ପାଞ୍ଚ ଅଣା । ଏତିକି ଟଙ୍କାକୁ କହୁଛି ଢେର୍ ଟଙ୍କା । ଶଃ... ''ନିଶ୍ଚୟ ଭାରି ଗରିବଗୁଡ଼ା ! ତେର ଟଙ୍କା ପାଞ୍ଚ ଅଣା । ହେଃ...'' ଟି.ଟି.ଆଇ. ଭାବିଲେ । ହିସାବ କରି ମାତ୍ର ସାତ ଟଙ୍କା ରଖିଲେ ଟି.ଟି.ଆଇ. ବାବୁ ଦୁଇଜଣଙ୍କ ଟିକେଟ ବାବଦ । ଅବଶିଷ୍ଟ ଟଙ୍କା ବଢ଼ାଇଦେଲେ ସୁପତିବାବୁଙ୍କ ହାତକୁ । ସୁପତିବାବୁ କିନ୍ତୁ ସେ ଟଙ୍କା ଫେରାଇ ନେବାକୁ ନାରାଜ । କହିଲେ ହାତଯୋଡ଼ି– ''ନା ଆଜ୍ଞା, ଆଉ ନିଅନ୍ତୁ ବାବୁ, ଆପଣଙ୍କ ପାନଖିଆ ।'' ଟି.ଟି.ଆଇ. ବାବୁ ବିରକ୍ତ ହୋଇ କହିଲେ, ''ଯା'ବେ ଯେତିକି ପଇସା ତ ରଖିଛ ଶଃ... ତମ ବାଟ ଖର୍ଚ୍ଚକୁ ନିଅଣ୍ଟ । ସେଥିରେ ପୁଣି ମୋତେ ପାନଖିଆ ଦେବ ! ଶଃ.... ।

ସୁପତିବାବୁ ପୁଣି କହିଲେ, ''ପୁଲିସବାବୁଙ୍କୁ ଦେଖି ଡରମାଡୁଛି ।'' ଟି.ଟି.ଆଇ. ବାବୁ ଯାତ୍ରୀ ଦି'ଜଣଙ୍କୁ ମୁସାଫିରଖାନା ଦେଖାଇ ଦେଇ କହିଲେ– ''ଯା, ସେଇ ଘରେ ବସ, ପୁଲିସ ଯାଇସାରିଲେ ଗାଡ଼ିକୁ ଯିବ । ତମକୁ କେହି କିଛି କହିବେ ନାହିଁ ।''

ସୁପତିବାବୁ ଓ ବିନୟ ଦୁହେଁ ମୁସାଫିରଖାନାରେ ଶୋଇ ଶୋଇ ବିଡ଼ି ଟାଣୁଥା'ନ୍ତି । ସର୍ଚ୍ଚ ଶେଷହେଲା । ପୁଲିସ ସବୁ ଡବା ଟିକିନିଖି ଖୋଜି ସୁଦ୍ଧା ବିନୟ ବୋଷର ପତ୍ତା ପାଇଲେ ନାହିଁ । ପୁଲିସ ଡବାରୁ ଓହ୍ଲାଇ ଆସିବା ଦେଖି ଦୁଇବନ୍ଧୁ ଟ୍ରେନ୍‌ରେ ବସିଲେ । ସେତେବେଳକୁ ବିନୟ ମୁଣ୍ଡରେ ବାନ୍ଧିଛନ୍ତି ଏକ ଛିଣ୍ଡାକନାର ପଗଡ଼ି ଓ ଘୋଡେଇ ହୋଇଥା'ନ୍ତି ଗୋଟାଏ କନ୍ଥା । ଡବାରେ ଆଉ କେହି ନଥା'ନ୍ତି । ସୁତରାଂ ଦୁଇଜଣଙ୍କର କଚେବାର । ବିନୟ ମୁହଁ କାନ ଘୋଡେଇହୋଇ ଶୋଇପଡ଼ିଲେ ବେଞ୍ଚ ତଳେ । ସୁପତିବାବୁ ବେଞ୍ଚ ଉପରେ ବସିଲେ ।

କିନ୍ତୁ ମୈମନ ସିଂ ଷ୍ଟେସନରେ ପୁଣି ବିପଦ । ଜଣେ ପୁଲିସ ଦାରୋଗା ଓ ଦୁଇଜଣ କନେଷ୍ଟବଲ ସେହି ଡବା ଭିତରକୁ ଉଠିଲେ । ସୁପତିବାବୁଙ୍କ ଛାତି ଧଡ଼୍‌ଧଡ଼୍ ହେଲା ।

ଦାରୋଗାବାବୁ ଡବା ଭିତରକୁ ପଶିଆସିବାରୁ ସୁପତିବାବୁ ଉଠି ଛିଡ଼ାହେଲେ ଏବଂ ହାତଯୋଡ଼ି ତାଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କଲେ । ଦାରୋଗାବାବୁ ପୂରା ଗୋଟିଏ ବେଞ୍ଚ ଦଖଲ କରି ବସିଗଲେ । ତାଙ୍କ ବାଁ ପଟକୁ ଠିଆହୋଇ ରହିଲେ କନେଷ୍ଟବଳ ଦି'ଜଣ । ସୁପତିବାବୁ ସେମିତି ହାତଯୋଡ଼ି ଠିଆହୋଇଥାନ୍ତି, ବୋକାଙ୍କ ଭଳି ଦିଶୁଥା'ନ୍ତି । କିନ୍ତୁ ସେ ଆଡ଼କୁ ଲକ୍ଷ୍ୟ ନାହିଁ ଦାରୋଗାବାବୁଙ୍କର ।

କଥାବାର୍ତ୍ତାରୁ ଠଉରାଇଲେ ସୁପତିବାବୁ ଯେ ସେମାନଙ୍କର ଲକ୍ଷ୍ୟସ୍ଥଳ ଜଗନ୍ନାଥ ଘାଟ ଷ୍ଟେସନ । ବିନୟ ବୋଷ କୁଆଡ଼େ ସେଠାରେ ଅଛି ବୋଲି ପୁଲିସକୁ ଖବର ମିଳିଛି । ''ତାକୁ ଧରିବାକୁ ହେବ'' – କନେଷ୍ଟବଳ ଜଣେ କହିଲା ଦାରୋଗା ବାବୁଙ୍କୁ– ''ବିନୟ ବୋଷ ବଡ଼ ଡେନଜେରସ ବୋଲି ମୁନସୀବାବୁ କହୁଥିଲେ । ଦେଖିଲେ ନାହିଁ ଆଜ୍ଞା ? ଗୋଟାଏ ଭୁସିରେ କେମିତି ସତ୍ୟେନ କଣ୍ଟ୍ରାକ୍ଟରକୁ ମାରିଦେଲା ।''

ଦାରୋଗାବାବୁ ତାଚ୍ଛଲ୍ୟ କରି କହିଲେ- ''ସେ ମାଇଚିଆ ସତ୍ୟେନ ବସୁ ମୁଁ ନୁହେଁ, ସେଟା Chicken Hearted (ଚିକେନ ହାର୍ଟେଡ୍) । ଲୁହା ଦେଖି ପାଣି ଦେଇ ମୁଁ ଜାଣେ ।''

''ହଁ ସାର୍, ହଁ ସାର୍''– ଅପରାଧୀ ଭଳି ସେ ସିପାହି ଜଣକ ଚୁପ୍‌ରହିଲା ।

କିଛି ବୁଝି ନ ପାରିବା ଭଳି ଆଁ କରି ରହିଥା'ନ୍ତି ସୁପତିବାବୁ । ଦାରୋଗାବାବୁଙ୍କ ନଜର ପଡ଼ିଲା ତାଙ୍କ ଉପରେ । ପଚାରିଲେ– କିବେ କ'ଣ ଅନେଇଛୁ ପାଟି ଆଁ କରି ?

ସୁପତିବାବୁ ''ନା ଆଜ୍ଞା, ଆମେ ମୂର୍ଖ ଲୋକ କ'ଣ ବୁଝିବୁ ?'' ସୁପତିବାବୁ ମୁଣ୍ଡ କୁଣ୍ଡେଇଲେ ।

ଦାରୋଗା– ''ସେଇଟା ସେଠି କିଏ ଶୋଇଛି ?''

ସୁପତିବାବୁ ଆଖି ଛଳଛଳ କରି ମୁଣ୍ଡରେ ହାତମାରି କହିଲେ– ''କ'ଣ କହିବି ହଜୁର, ନସିବ ନସିବ୍ । ସେ ମୋ' ପୁତୁରା ମହିଉଦ୍ଦିନ । ତାଙ୍କ ପୁତୁରା ଯାଉଛୁ କଲିକତା ଚାକିରି କରିବାକୁ । ସଲୀମଭାଇ ସେଠି ଚାକିରି କରୁଛି । କିନ୍ତୁ କ'ଣ କରିବୁ ହଜୁର ମହିଉଦ୍ଦିନକୁ ଠାକୁରାଣୀ ହୋଇଛି । ତାକୁ ଭାରି ଜର । ସେଥିପାଇଁ ଶୋଇପକେଇଛି ତାକୁ ସେହି ବେଞ୍ଚ ତଳେ ।''

ଠାକୁରାଣୀ ନାମ ଶୁଣି ଚମକିପଡ଼ିଲେ ଦାରୋଗାବାବୁ । ସଙ୍ଗେ ସଙ୍ଗେ ମୁହଁରେ ରୁମାଲ ଦେଇ ପଚାରିଲେ– 'ଠାକୁରାଣୀ ? ମାନେ ?'

ଡରିହରି ସୁପତିବାବୁ କହିଲେ– ''ହଁ ହଜୁର ଠାକୁରାଣୀ ।'' ଦାରୋଗା– ''ଆରେ ରାମ, ରାମ ! ଏତ ବଡ଼ ଡିଆଁ ବେମାରି ?'' ଦାରୋଗାବାବୁ ରାଗି ନିଆଁ ହେଲେଣି ।

ଗାଡ଼ି ପରବର୍ତ୍ତୀ ଷ୍ଟେସନରେ ପହଞ୍ଚିବା ସଙ୍ଗେ ସଙ୍ଗେ ଦାରୋଗାବାବୁ ସେ ଡବାରୁ ଓହ୍ଲେଇ ଗଲେ । ସୁପତିବାବୁ ଓ ବିନୟ ଆଶ୍ୱସ୍ତିର ନିଶ୍ୱାସ ମାରିଲେ । ମିରାଜଗଞ୍ଜରେ ପହଞ୍ଚି ସେଠୁ ଷ୍ଟିମର ଧରିଲେ ଦୁଇଜଣ । କିନ୍ତୁ ଷ୍ଟିମରରେ ଖାଇବାର କିଛି ବ୍ୟବସ୍ଥା ନ

ଥିଲା । ବିନୟର ଭୋକ କହିଲେ ନସରେ । ସୁପତିବାବୁ ବଡ଼ ବ୍ୟସ୍ତହୋଇପଡ଼ିଲେ । ନିଜ କଥା ଯାହା ହେଉଛି ହେଉ, ସେ ବ୍ୟସ୍ତ ବିନୟ ପାଇଁ । ତା' ଭଳି ପିଲା ଯଦି ଏମିତି ଉପବାସ ରହେ ! ସୁପତି ବାବୁ ଷ୍ଟିମରର ବଟଲର ସହ ବନ୍ଧୁତା ଜମେଇ ବିନୟ ପାଇଁ କିଛି ଖାଇବାର ଯୋଗାଡ଼କଲେ ।

ଷ୍ଟିମରରୁ ଓହ୍ଲେଇ ପୁଣି କଲିକତାଗାମୀ ଟ୍ରେନ୍‌ରେ ବସିଲେ ଦୁଇବନ୍ଧୁ । କିନ୍ତୁ ସିଆଲଦା ଷ୍ଟେସନରେ ବିପଦର ଆଶଙ୍କା ଥିଲା । ସେହି ଦୃଷ୍ଟିରୁ ଉଭୟେ ବାଟରୁ ଓହ୍ଲାଇ ଗଲେ । ଡେରା ପଡ଼ିଲା କଲିକତାର ୭ ନମ୍ବର ଓ୍ୱାଲିଉଲ୍ଲା ଲେନ୍‌ରେ ସୁରେନ ମଜୁମଦାରଙ୍କ ଘରେ । ସୁରେନ ବାବୁ ବିପ୍ଲବୀ ମହଲରେ ନୂତନ ଆଗନ୍ତୁକ ନୁହନ୍ତି । ସୁରେନବାବୁଙ୍କ ଝିଅ ଉଜଳା ଗଭର୍ଣ୍ଣର ଆଣ୍ଡରସନ ସୁଟିଂ କେଶରେ ଅନ୍ୟତମ ପ୍ରଧାନ ଆସାମୀ ହୋଇଥିବା କଥା କିଏ ନ ଜାଣେ ?

ସୁରେନବାବୁଙ୍କ ଘରର ତଳମହଲାରେ ବିଭିନ୍ନ ଜାତିର ଭଡ଼ାଟିଆ ରହନ୍ତି । ଉପର ମହଲାରେ ବି.ଭି.ର ଆକ୍ସନ ସ୍କ୍ୱାର୍ଡ଼ର ହେଡ କ୍ୱାର୍ଟର । ବିନୟ ସେଠାରେ ରହିଲେ । କିନ୍ତୁ ସେଠାରେ ଅଧିକ ଦିନ ରହିବା ନିରାପଦ ମନେକରାଗଲା ନାହିଁ, କାରଣ ବିନୟର ଫଟୋ ସେତେବେଳକୁ ବଙ୍ଗଳାର ଗାଁଗହଳରେ ବିଛେଇ ଦିଆଯାଇଥାଏ । ସୁତରାଂ ସେଠାରେ ଆଉ ନ ରହି ବେଲିଆଘାଟ ରାଜେନ ଗୁହଙ୍କ ଘରେ ଆଶ୍ରୟ ନେବାକୁ ସ୍ଥିରହେଲା । ରାଜେନବାବୁ ମଧ୍ୟ ନିଜେ ସଶସ୍ତ୍ର ବିପ୍ଲବରେ ଯୋଗ ଦେଇ ନ ଥିଲେ ବି ସଶସ୍ତ୍ର ବିପ୍ଳବ ଇତିହାସର ଜଣେ ସ୍ୱନାମଧନ୍ୟ ବ୍ୟକ୍ତି । ସବୁ ଫେରାର ଆସାମୀଙ୍କୁ ଆଶ୍ରୟ ଦେବା ଥିଲା ରାଜେନବାବୁଙ୍କର ଗୋଟାଏ ବଡ଼ ଝୁଙ୍କ । ସେଥିପାଇଁ ତାଙ୍କୁ ଯେତେ ଦୁଃଖ ନିର୍ଯାତନା ସହିବାକୁ ପଡ଼ିଲେ ବି ସେ ପଛେଇବା ଲୋକ ନ ଥିଲେ । ରାଜେନବାବୁଙ୍କ ପତ୍ନୀ ମଧ୍ୟ ବିପ୍ଳବୀମାନଙ୍କୁ ନିଜର ସନ୍ତାନଭଳି ଭଲପାଉଥିଲେ । ତାଙ୍କର ସେବା ଯତ୍ନରେ ବିପ୍ଳବୀମାନେ ଭୁଲିଯାଉଥିଲେ ଅଣ୍ଡରଗ୍ରାଉଣ୍ଡ ଜୀବନର ସବୁ ଦୁଃଖ କଷ୍ଟ । ବିନୟ ସେଇଠି ରହିଲେ । କିନ୍ତୁ ବି.ଭି.ର ନେତାମାନେ ବିଚାର କଲେ ଯେ ବିନୟଙ୍କୁ ଆଉ ଅଧିକ ଦିନ ଲୁଚାଇ ରଖିହେବନି । କାରଣ ନାନା ସୂତ୍ରରୁ ପୁଲିସ ସମ୍ବାଦ ପାଇସାରିଥାଏ ଯେ ବିନୟ ବିଭିନ୍ନ ବେଶ ପୋଷାକ ପିନ୍ଧି ଓ ବିଭିନ୍ନ ରୂପ ଧାରଣକରି ତାଙ୍କୁ ଚିତାକାଟି ଚାଲିଛି । କ୍ରମେ ବିନୟଙ୍କର ଅଧିକାଂଶ ଆଶ୍ରୟ ସ୍ଥଳ ପୁଲିସର ନଖଦର୍ପଣରେ ରହିଗଲା । ବି.ଭି.କୁ ଯେ ଏହା ଅଜଣା ଥିଲା ତାହା ମଧ୍ୟ ନୁହେଁ । ଶେଷରେ ସ୍ଥିର ହେଲା ଯେ ବିନୟକୁ ଭାରତ ବାହାରକୁ ପଠାଇ ଦିଆଯିବ । କାରଣ ଆମେରିକା ଏବଂ ୟୁରୋପରେ ଯେଉଁ ଭାରତୀୟ ବିପ୍ଳବୀ ସଂସ୍ଥାମାନ କାର୍ଯ୍ୟ କରୁଥିଲେ, ବିନୟଙ୍କୁ ସେହି ସଂସ୍ଥାରେ କାମରେ ଲଗାଇବା ଅଧିକ ଲାଭଜନକ ମନେକରାଗଲା । ସ୍ଥିର ହେଲା ତାଙ୍କୁ ଜର୍ମାନିକୁ ପଠାଇ ଦିଆଯିବ । ସେଥିପାଇଁ ଜାହାଜ ଓ ଏକ ଜାଲ୍ ନାମରେ ଖଣ୍ଡେ ପାସ୍‌ପୋର୍ଟ ମଧ୍ୟ ଯୋଗାଡ଼କରାଗଲା । ସୁଭାଷଙ୍କୁ ମଧ୍ୟ

ଏ ବିଷୟରେ ପଚରାଯାଇଥିଲା ବୋଲି ଜଣାଯାଏ ଏବଂ ସୁଭାଷ ସେହି ପ୍ରସ୍ତାବରେ ରାଜିହୋଇଥିଲେ । ସୁଭାଷ କଂଗ୍ରେସଲୋକ ହୋଇଥିଲେ ସୁଦ୍ଧା ସଶସ୍ତ୍ର ବିପ୍ଳବ ପ୍ରତି ତାଙ୍କର ଅସରନ୍ତି ସ୍ନେହ ଶ୍ରଦ୍ଧା ଥିଲା । ସୁଭାଷ ସବୁକଥା ଶୁଣି ପରାମର୍ଶ ଦେଇଥିଲେ ଯେ ବିନୟ ଭାରତ ବାହାରକୁ ଚାଲିଯିବା ଉଚିତ । ଏହିଭଳି ଭାବରେ ବିନୟଙ୍କର ଭାରତ ତ୍ୟାଗ ପ୍ରସ୍ତାବ ପକ୍କା ହୋଇଗଲା । କିନ୍ତୁ ବିପ୍ଳବୀ ବିନୟ ଗୋଟିଏ ଧାଡ଼ିରେ ସେ ପ୍ରସ୍ତାବକୁ କାଟି ଉଡ଼େଇଦେଲେ – 'ନା, ମୁଁ ବର୍ତ୍ତମାନ ଭାରତ ଛାଡ଼ି କୁଆଡ଼େ ଯିବି ନାହିଁ । ଯଦି ବା ଯାଏଁ, ତେବେ ଯିବା ପୂର୍ବରୁ ଆଉ ଗୋଟିଏ ଆକ୍ସନକୁ ଯିବା ମୋର ଇଚ୍ଛା',– ସେୟା ହେଲା ।

ବିନୟ ଯେଉଁ 'ଆକ୍ସନ' ବା ଅଭିଯାନ କଳ୍ପନାକରିଥିଲେ, ତାହା ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମର ଇତିହାସରେ ଅନ୍ୟତମ ଦୁଃସାହସିକ ଓ ରୋମାଞ୍ଚକାରୀ ଅଭିଯାନ । ୧୯୩୦ ମସିହା କଲିକତାର 'ରାଇଟର୍ସ ବିଲ୍‌ଡିଂ' ବା ବଙ୍ଗୀୟ ପ୍ରାଦେଶିକ ସରକାରଙ୍କ ସେକ୍ରେଟାରୀଏଟ । ସ୍ୱାଧୀନତା ସଂଗ୍ରାମକୁ ଛାରଖାର କରିବାକୁ ଏବଂ ସ୍ୱାଧୀନତା ଯୋଦ୍ଧାମାନଙ୍କୁ ନିଶ୍ଚିହ୍ନ କରିଦେବାକୁ 'ରାଇଟର୍ସ ବିଲଡିଂ' ଥିଲା ଏକ ଶକ୍ତିଶାଳୀ ଯନ୍ତ୍ର ଏବଂ ଏହାର ମୁଖ୍ୟ କାର୍‌ପରଦାର ଥିଲା ବଙ୍ଗଳାର କୁଖ୍ୟାତ ପୋଲିସ କମିସନର ଚାର୍ଲସ୍ ଟେଗାର୍ଟ ଓ ଜେଲ ବିଭାଗ ଆଇ.ଜି. ମିଷ୍ଟର ସିଂପସନ । ସୁତରାଂ ସେମାନଙ୍କୁ ସଫାକରିବା ସେଦିନର ମୁକ୍ତି ସଂଗ୍ରାମୀର ଦାୟିତ୍ୱ ଏବଂ କେବଳ ସେହି ଲକ୍ଷ୍ୟରେ ହୋଇଥିଲା 'ରାଇଟର୍ସ ବିଲ୍‌ଡିଂ' ଉପରେ ଦୁଃସାହସିକ ଅଭିଯାନ ।

କିନ୍ତୁ ଏହି ଐତିହାସିକ ଯୁଦ୍ଧରେ ବିନୟ ବୋଷ ଏକା ନ ଥିଲେ, ତାଙ୍କ ସହ ଥିଲେ ବାଦଲ ଗୁପ୍ତ ଓ ଦୀନେଶ ଗୁପ୍ତ; ସଂକ୍ଷେପରେ– ''ବିନୟ-ବାଦଲ-ଦୀନେଶ'' । ବିନୟ ଚତୁର୍ଥ ବାର୍ଷିକ ମେଡିକାଲ ଛାତ୍ର ଓ ବାଦଲ ଫାଇନାଲ ଇୟର ଇଞ୍ଜିନିୟରିଂ ଛାତ୍ର; କିନ୍ତୁ ଦୀନେଶ କେବଳ ଗ୍ରାଜୁଏଟ ନୁହନ୍ତି, ସେ ଜଣେ ପ୍ରତିଭାସମ୍ପନ୍ନ କବି, ଦାର୍ଶନିକ ଏବଂ ରବୀନ୍ଦ୍ର ସାହିତ୍ୟରେ ଜଣେ ଅସାଧାରଣ ବ୍ୟୁତ୍ପତ୍ତିସମ୍ପନ୍ନ ପଣ୍ଡିତ । ତାଙ୍କର ପ୍ରତି ରକ୍ତକଣିକାରେ, ପ୍ରତି ନିଶ୍ୱାସ ପ୍ରଶ୍ୱାସରେ ମାତୃଭୂମିର ସ୍ୱାଧୀନତାର ଆକାଙ୍କ୍ଷା ଛଡ଼ା ଆଉ କିଛି ନ ଥିଲା ଏବଂ ସେହି ସ୍ୱାଧୀନତା ଯେ ଏକମାତ୍ର ସଶସ୍ତ୍ର ବିପ୍ଳବ ବାଟେ ମିଳିବ ଏଥିରେ ତାଙ୍କର ସନ୍ଦେହ ନ ଥିଲା । ମେଦୀନପୁରରେ ବି. ଭି.ର ଏକ ଶାଖା ଖୋଲିବା ପାଇଁ ସେ ଢାକା କଲେଜରୁ ଟି.ସି. ନେଇ ମେଦୀନପୁର କଲେଜରେ ନାମ ଲେଖାଇଥିଲେ । ଦୀନେଶଙ୍କ ତିଆରି ଏହି ସଙ୍ଗଠନର ଦୁଃସାହସିକ ଅଭିଯାନ ଫଳରେ ଲାଗଲାଗ ତିନିତିନିଟା ଶ୍ୱେତାଙ୍ଗ କଲେକ୍ଟର ନିହତହୋଇଥିଲେ ମେଦୀନପୁରରେ ଏବଂ ସମଗ୍ର ବ୍ରିଟିଶ୍ ଶାସନର ମୂଳ ଚହଲିଯାଇଥିଲା ।

ରବୀନ୍ଦ୍ର ସାହିତ୍ୟ ଦୀନେଶଙ୍କ ଉପରେ ଅକଳନ୍ତି ପ୍ରଭାବ ବିସ୍ତାର କରିଥିଲା । ରବୀନ୍ଦ୍ର ସଙ୍ଗୀତ, କାବ୍ୟ କବିତାରେ ନିହିତ ଗଭୀର ଦର୍ଶନ ଓ ସୂକ୍ଷ୍ମ ଆଧ୍ୟାତ୍ମିକ ଚିନ୍ତାଧାରା

ତାଙ୍କର ରାଜନୈତିକ ବିଚାରଧାରାକୁ କରିଥିଲା ଅଧିକ ତୀକ୍ଷ୍ଣ ଓ ଶାଣିତ । ଜୀବନର ପ୍ରକୃତ ମୂଲ୍ୟବୋଧ, ଦାସତ୍ୱର ଗ୍ଲାନି ଓ ପରାଧୀନତାର ହଳାହଳ ଉପଲବ୍ଧି କରିବାକୁ ବିଶ୍ୱକବିହିଁ ଥିଲେ ତାଙ୍କର ଉପାସ୍ୟ ଦେବତା । ଫଳରେ ସଶସ୍ତ୍ର ଅଭିଯାନ ଭଳି ଏକ ଅସ୍ୱସ୍ତିକର କାର୍ଯ୍ୟକୁ ସେ ବିଧିନିର୍ଦ୍ଦେଶ ବୋଲି ବିଚାରକରୁଥିଲେ ଏବଂ ସେଥିରେ ସେ ଯଥାର୍ଥରେ 'ଭୂମା'କୁହିଁ ଉପଲବ୍ଧି କରୁଥିଲେ ।

ଅଭିଯାନର ପ୍ରସ୍ତୁତି ପର୍ବ ଶେଷହେଲା । ଡିସେମ୍ବର ୭ ତାରିଖରେ ବାଦଲ ଦେଖି ଆସିଲେ ରାଇଟର୍ସ ବିଲ୍‌ଡିଂର ସବୁ କୋଠରି ଓ କେଉଁ ଅଫିସର କେଉଁ ଘରେ ଅଫିସ କରନ୍ତି । ଏପରିକି ସେ ସବୁର ନକ୍ସା ମଧ୍ୟ କରିନେଇ ଆସିଲେ ସୁଦକ୍ଷ ଇଂଜିନିୟରିଂ ଛାତ୍ର ବାଦଲ ଗୁପ୍ତା । 'ରାଇଟର୍ସ ବିଲ୍‌ଡିଂ'କୁ ସେ ଯୁଗରେ ବାହାରର ଲୋକ ଯିବା ସହଜ ନ ଥିଲା । ସେଥିପାଇଁ ଦାମିକା ପୋଷାକ ସୁଟ୍, ବୁଟ୍ ଓ କୋଟ୍ ମଧ୍ୟ ବରାଦ ଅନୁସାରେ ତିଆରିହୋଇଗଲା । ବାଦଲ ରହୁଥିଲେ ନିଉପାର୍କ ଷ୍ଟ୍ରିଟ୍‌ର ଡାକ୍ତର ହିମାଂଶୁ ବାନାର୍ଜିଙ୍କ ଚେମ୍ବରରେ । ଶେଷରେ ଆସିଲା ସେହି ଶୁଭଲଗ୍ନ ୧୯୩୦ ମସିହା ଡିସେମ୍ବର ୮ ତାରିଖ । ଗୋପନ ଆଶ୍ରୟଦାତା ରାଜେନ ଗୁହଙ୍କର ବେଲିଆଘାଟ ବାସଭବନରେ ସକାଳୁ ରୀତିମତ 'କୀର୍ତ୍ତନ' ଲାଗିଛି । ସ୍ନେହଶୀଳା ବୌଦି (ରାଜେନବାବୁଙ୍କର ସ୍ତ୍ରୀ)ଙ୍କ ଗୋଡ଼ ତଳେ ଲାଗୁନାହିଁ । ଆନନ୍ଦ କହିଲେ ନସରେ ।

ବିନୟ ଓ ଦୀନେଶଙ୍କୁ ପଲାଉ, ସନ୍ଦେଶ ଓ କ୍ଷୀରମୋହନ ପ୍ରଭୃତିର ଚର୍ବ୍ୟ, ଚୋଷ୍ୟ, ଲେହ୍ୟପେୟର ମହାର୍ଘ ଭୋଜନ ସାଡ଼ମ୍ବରେ ଖୁଆଇଦେଲେ ସେ । ମୃତ୍ୟୁଞ୍ଜୟୀ ବୀର ଯାଉଛନ୍ତି ମୃତ୍ୟୁକୁ ମହାଲିଙ୍ଗନ କରି ଦୁଃଖିନୀ ମାତୃଭୂମିର ଅଶ୍ରୁମୁଞ୍ଚନ କରିବାକୁ । ସୁତରାଂ ସେ ମହାଯାତ୍ରା ପୂର୍ବରୁ ସାଂସାରିକ ଓ ଅଲୌକିକ ଆଡ଼ମ୍ବରରେ ସେ କାହିଁକି କାର୍ପଣ୍ୟ ପ୍ରଦର୍ଶନ କରିବେ ? ଠିକ୍ ସେମିତି ହସଖୁସି ଗପର ଅସରନ୍ତି ଭଣ୍ଡାର ଯେମିତି ଖୋଲିଯାଇଛି ଦୀନେଶଙ୍କର ଏବଂ ତାକୁ ଆହୁରି ଆବେଗମୟ କରି ତୋଳିଛି ଦୀନେଶଙ୍କର ଲଳିତ କଣ୍ଠନିଃସୃତ ରବିନ୍ଦ୍ର ସଙ୍ଗୀତ –

"ସୁଦ୍ଧୁ ଏଇଟୁକୁ ଜାନି – ତା'ରି ଲାଗି,
ରାତ୍ରି ଅନ୍ଧକାରେ,
ଚଲେଛେ ମାନବ ଯାତ୍ରୀ ଯୁଗହତେ,
ଯୁଗାନ୍ତର ପାନେ,
ଝଡ଼ ଝଂଜା ବଜ୍ରପାତେ, ଜ୍ୱାଲାୟେ ଧରିଆ ସାବଧାନେ,
ଅନ୍ତର ପ୍ରଦୀପ ଖାନି – ।"

ବିନୟ ଶୁଣୁଛନ୍ତି ଓ ଦୀନେଶ ଗାଇଚାଲିଛନ୍ତି ମୃତ୍ୟୁର ମହାମହୀମ୍ନ ସ୍ତୋତ୍ର ଏବଂ ମନ୍ତ୍ର ମୁଗ୍ଧ ହୋଇ ଅନେଇ ରହିଛନ୍ତି ରାଜେନ ବାବୁ ଓ ବୌଦି ।

ରାଜେନବାବୁ ଏବଂ ବୌଦିଙ୍କଠୁଁ ବିଦାୟନେଇ ଦୁଇବନ୍ଧୁ ପହଞ୍ଚିଗଲେ ଖିଦିରପୁର ପାଇପ ରୋଡ଼ରେ । ତେଣେ ଶ୍ରୀରସମୟ ସୁର ତୃତୀୟ ଯୋଦ୍ଧା ବାଦଲ ଗୁପ୍ତଙ୍କୁ ନେଇ ସେଠାରେ ହାଜର ହୋଇଯାଇଥିଲେ ।

ଦିନ ଠିକ୍ ୧୨ଟାରେ ତିନିହେଁ ପ୍ରବେଶକଲେ 'ରାଇଟର୍ସ ବିଲଡିଂ'ରେ । ସଶସ୍ତ୍ର ପହରାବାଲାର ସାମାନ୍ୟ ସନ୍ଦେହ ହେଲାନାହିଁ ସେମାନଙ୍କୁ ଦେଖି । ପ୍ୟାଣ୍ଟ, କୋଟ୍ ନେକଟାଇ ପରିହିତ ବିପ୍ଳବୀମାନେ ବୁଟ୍‌ରେ ଠକ୍‌ଠକ୍ ଆବାଜକରି ଉଠିଗଲେ ଦୋତାଲାକୁ । ପ୍ରଥମ ଟାରଗେଟ୍ (ଲକ୍ଷ୍ୟ) ସିଂପସନ ସେତେବେଳେ ଅଫିସ କାମରେ ମସଗୁଲ । ହଠାତ୍ କବାଟ ଠେଲି ପ୍ରବେଶକଲେ ତିନିଜଣ । ସମସ୍ତଙ୍କ ହାତରେ ଗୁଳିଭରା ରିଭଲଭର୍ । ବିନୟଙ୍କ ମୁହଁରେ ତାଚ୍ଛଲ୍ୟପୂର୍ଣ୍ଣ ନିର୍ଦ୍ଦେଶ – "Pray to your God, Cornel, your last hour is coming." (କର୍ଣ୍ଣେଲ, ତୁମର ଶେଷବେଳ ଆସିଗଲା, ଇଷ୍ଟଦେବ ସ୍ମରଣ କର ।) ଏହି ଅପ୍ରତ୍ୟାଶିତ ଓ ଅସ୍ୱାଭାବିକ କଥା ଶୁଣି କର୍ଣ୍ଣେଲ ସିଂପସନ ଫାଇଲରୁ ମୁଣ୍ଡ ଟେକୁ ଟେକୁ ତିନିଟା ରିଭଲଭର୍ ଗର୍ଜିଉଠିଲା ତାଙ୍କୁ ଲକ୍ଷ୍ୟ କରି । ସଙ୍ଗେ ସଙ୍ଗେ କାମ ଶେଷ । ଦ୍ୱିତୀୟ ଲକ୍ଷ୍ୟସ୍ଥଳ ହୋମ୍ ସେକ୍ରେଟାରୀ ମିଷ୍ଟର ଆଲବିୟାନ ମାର୍ । ସୁତରାଂ ତା ଅଫିସକୁ ଛୁଟିଲେ ତିନିହେଁ । ହେଲା ଗୁଳିର ବର୍ଷଣ । ଆଲବିୟାନ ଭୂପତିତ ।

ବନ୍ଧୁକର ଘନଘନ ଗର୍ଜନରେ ଆତଙ୍କିତ ହୋଇ ନିଜ କୋଠରି ଛାଡ଼ି ବାହାରି ଆସିଲେଣି କୁଖ୍ୟାତ ପୁଲିସ କମିଶନର ଚାର୍ଲସ୍ ଟେଗାର୍ଟ – ମୁକ୍ତି-ସଂଗ୍ରାମର ପହିଲା ନମ୍ବର ଦୁସମନ୍ । କିନ୍ତୁ ଏଠାରେ ତା'ର ସବୁ ବୀରତ୍ୱ ପାଣିଫୋଟକା ଭଳି ମିଳେଇଗଲା । ବିପ୍ଳବୀମାନଙ୍କର ତୋଫାନୀ ଆକ୍ରମଣର ଭୟାବହତା ଉପଲବ୍ଧି କରି ସେ ପଛଘୁଞ୍ଚା ଦେଲା, ସେ ଏକା ନୁହେଁ – ପୁଲିସ ଡି.ଆଇ.ଜି. ମିଷ୍ଟର୍ ଜୋନ୍ସ ମଧ ଟେଗାର୍ଟ ପଛେ ପଛେ ବୀରତ୍ୱ ସହକାରେ ପଳାୟନକଲା । ଡେପୁଟି କମିଶନର ଗର୍ଡନ ଗୁଳି ଚଳାଇ ପଳାଇଯିବାକୁ ଚେଷ୍ଟାକଲା ।

ସେ ଏକ ଭୟଙ୍କର ଦୃଶ୍ୟ । ବାରଣ୍ଡାର ଗୋଟିଏପଟରେ ମାତ୍ର ତିନିଜଣ ମୃତ୍ୟୁଞ୍ଜୟୀ ମୁକ୍ତି-ସଂଗ୍ରାମୀ, ଅନ୍ୟପଟରେ ଇଂରେଜ ସରକାରର ବଛା ବଛା ପୁଲିସ ଅଫିସର । କିନ୍ତୁ ସେମାନେ ସମସ୍ତେ ସ୍ତବ୍ଧ, ବିବ୍ରତ ଓ ଆତଙ୍କିତ । ମୁକ୍ତି-ସଂଗ୍ରାମୀଙ୍କର ମାଡ଼ କେତେ ଭୟାବହ ! ଚଳାଇଥା'ନ୍ତି ଅବିଶ୍ରାନ୍ତ ଗୁଳି ଚାଳନା ଏବଂ ତା' ସଙ୍ଗେ ସଙ୍ଗେ ତିନିଜଣଙ୍କର କଣ୍ଠ ଫଟାଇ ଗର୍ଜନ କରୁଛି 'ବନ୍ଦେ ମାତରମ୍', 'ଇନକ୍ଲିଲାବ୍ ଜିନ୍ଦାବାଦ୍ ।' ରାଇଟର୍ସ ବିଲଡିଂର କବାଟ, ଝରକା, ଲାଇଟ୍, ପଙ୍ଖା, ଟେବୁଲ, ଚୌକି ଗୁଳିମାଡ଼ରେ ଭାଙ୍ଗି ଟୁକୁରା ଟୁକୁରା ହେଲାଣି ଏବଂ ମୃତ-ଆହତ, କ୍ଷତ-ବିକ୍ଷତ ଗୋରା ଅଫିସରମାନଙ୍କର ନାଲିଆ ରକ୍ତର ସୁଅ ଛୁଟିଛି ସେ ମୋଜାଇକ ବାରଣ୍ଡାରେ ।

ପ୍ରାଣବିକଳରେ ଡ୍ରେନ୍ ପାଇପ ଧରି ଦୋତାଲାରୁ ଡେଇଁଲେ ପାଦ୍ରୀ ସାହେବ ମିଷ୍ଟର୍ ଜନସନ୍ ଏବଂ ତାଙ୍କ ପଛେ ପଛେ ଜୁଡିସିଏଲ୍ ସେକ୍ରେଟାରୀ ମିଷ୍ଟର୍ ନେଲସନ୍ ।

ସେତେବେଳକୁ ଖବର ପାଇ ପହଞ୍ଚିଗଲେଣି ଏକ ଗୁର୍ଖା ବାହିନୀ । ଦିନ ଦିପହରରେ ଜନଗହଳି ରାଇଟର୍ସ ବିଲଡିଂ ରାସ୍ତାରେ ଏହି ଅଭାବନୀୟ କାଣ୍ଡ ଦେଖି ସ୍ତମ୍ଭିତ ଓ ବିସ୍ମୟବିମୂଢ଼ ଏକ ବିରାଟ ଜନତା ବିଲଡିଂ ତଳେ ଠିଆହେଲେଣି । ଗୁଳି ପ୍ରାୟ ନିଃଶେଷ ହୋଇଯାଇଥିଲା ବିପ୍ଳବୀମାନଙ୍କ ପାଖରୁ । ଜନୈକ ଗୁର୍ଖାର ଗୁଳି ଆସି ବାଜିଲା ଦୀନେଶଙ୍କ ତଳିପେଟରେ । ତିନିବୀର ଗୁଳି ଫୁଟାଇ ଗୋଟିଏ କୋଠରି ଭିତରେ ପ୍ରବେଶ କରି ଭିତରୁ ଦ୍ୱାର ବନ୍ଦକରିଦେଲେ । ସେତେବେଳେ ବିନୟ ମଧ୍ୟ ଗୁଳିବିଦ୍ଧ ହୋଇ ସାରିଥିଲେ । କିନ୍ତୁ ସେକଥାକୁ ଖାତିର ନାହିଁ ବିନୟର । ରୁଦ୍ଧଦ୍ୱାର ମଧ୍ୟରେ ଆରମ୍ଭ ହୋଇଗଲା ଅନ୍ତିମ ମହୋତ୍ସବ । ତିନିବନ୍ଧୁ ଗୋଟାଏ ଗୋଟାଏ ପଟାସିୟମ୍ ସାଇନାଇଡ଼ (ବିଷ ଔଷଧ) ଆମ୍ପୁଲ ପାଟିରେ ପୂରାଇଦେଲେ । ବାଦଲଙ୍କ ରିଭଲଭରରେ ଆଉ ଗୋଟାଏ ମାତ୍ର ଗୁଳି ଅବଶିଷ୍ଟ ଥିଲା, ତାକୁ ମଧ୍ୟ ଶେଷକରିଦେବା ଦରକାର, କାରଣ ତାହା ସରକାର ହାତରେ ପଡ଼ିଲେ କେଉଁଠି ମୁକ୍ତି-ସଂଗ୍ରାମୀଙ୍କ ଉପରେ ପ୍ରୟୋଗ ହେବା ବିଚିତ୍ର ନୁହେଁ । ସୁତରାଂ ବାଦଲ ନିଜର ରିଭଲଭର ବ୍ୟାରେଲ୍‌ଟା ପାଟି ଭିତରେ ପୂରାଇ ଟ୍ରିଗର ଟାଣିଲେ । ଫଳରେ ସଙ୍ଗେ ସଙ୍ଗେ ସେ ସେହିଠାରେ ଦେହରକ୍ଷାକଲେ । କିନ୍ତୁ ବିନୟ ଓ ଦୀନେଶ ବିଷ ଔଷଧ ଶିଶିକୁ ଚୋବାଇବା ପୂର୍ବରୁ ଗୁଳିର ଆଘାତରେ ସଂଜ୍ଞାହୀନ ହୋଇପଡ଼ିଥିଲେ ।

ଏହି ଅଚିନ୍ତନୀୟ ଦୁଃସାହସିକ ଅଭିଯାନ ସମ୍ବାଦରେ କଲିକତା ମହାନଗରୀ ସମେତ ସାରା ଦେଶ ସ୍ତମ୍ଭିତ ଓ ଚକିତ ହୋଇଯାଇଥିଲା । ଇଂରେଜ ସରକାରର ପୃଷ୍ଠପୋଷକତା କରୁଥିବା ଓ ଜାତୀୟ ଆନ୍ଦୋଳନର ଘୋର ବିରୋଧୀ 'ଷ୍ଟେଟସ୍‌ମ୍ୟାନ' ପତ୍ରିକାରେ ତା ୯-୧୧-୧୯୩୦ ରେ ନିମ୍ନଲିଖିତ ସଂବାଦ ପ୍ରକାଶିତ ହୋଇଥିଲା ।

Lt. Cornel Simpson was shot-dead. Mr J.W. Nelson Judicial Secreatry was wounded in the leg. Another bullet narrowly missed. Mr. Marr, Finance Minister who on hearing the shots came to the door of his room. Orderly of the D.P.I. was wounded in the leg. Passers-by were dumb founded to see in broad day-light in the heart of the business quarters of Calcutta an incident that had all the elements of a Chicago gunning affair.

କିନ୍ତୁ ଜାତୀୟବାଦୀ ପତ୍ରିକା 'ଅମୃତବଜାର' ଲେଖିଲେ – "Between I.G. of prison's room and Mr. Nelson's room, many Europeans had hair breadth and providential escape, Mr. Townew, Agricultural and Industrial Secretary had the skirts of his coat and waist coat shot through without any injury to his person. Mr. Bentice, Home Member escaped unhurt. Mr. Marr, Finance Member has a providential escape Mr. Saplenton, D.P.I. along his P.A. and another European official narrowly escaped.

ରୁଦ୍ଧଦ୍ୱାର ଭଙ୍ଗାଗଲା ଏବଂ ଦେଖାଗଲା ଯେ ବାଦଲ ଚିର ନିଦ୍ରାରେ ଶାୟିତ। କିନ୍ତୁ ଦୀନେଶ ଓ ବିନୟ ସଂଜ୍ଞାହୀନ। ଦୀନେଶଙ୍କ ପେଟରୁ ରକ୍ତସ୍ରାବ ବନ୍ଦହୋଇ ନ ଥାଏ। 'ଆନନ୍ଦବଜାର ପତ୍ରିକା'ର ରିପୋର୍ଟ ଅନୁଯାୟୀ, ''ଶେଷ ଖବରରୁ ଜଣାଯାଇଛି ଯେ ଜଣେ ଆତତାୟୀ ଆତ୍ମହତ୍ୟା କରି ମୃତ୍ୟୁବରଣ କରିଅଛି। ଅନ୍ୟ ଦୁଇଜଣ ଆଶଙ୍କାଜନକ ଅବସ୍ଥାରେ ଅବସ୍ଥାନ କରିଅଛନ୍ତି। ସେଥିମଧ୍ୟରୁ ଜଣେ ବିନୟ କୃଷ୍ଣ ବସୁ ବୋଲି ନିଶ୍ଚିତରୂପେ ଜଣାଯାଇଅଛି। ସେ କୁଆଡ଼େ ମୃତ୍ୟୁକାଳୀନ ଜମାନବନ୍ଦୀରେ ସ୍ୱୀକାର କରିଅଛନ୍ତି ଯେ ସେ ବିନୟ କୃଷ୍ଣ ବସୁ ଏବଂ ସେ ମିଷ୍ଟର୍ ଲୋମାନଙ୍କୁ ହତ୍ୟା କରିଅଛନ୍ତି — ଇତ୍ୟାଦି।

ସମସ୍ତଙ୍କୁ ସତର୍କ ପ୍ରହରୀ ପରିବେଷ୍ଟିତ କରି ହସ୍‌ପିଟାଲକୁ ନିଆଗଲା। ବାଦଲଙ୍କ ଅମର ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାକୁ ଯେଉଁ ହଜାର ହାଜର ଗୁଣମୁଗ୍ଧ ଦେଶବାସୀ ନିମତଲା ମହାଶ୍ମଶାନରେ ଏକତ୍ରିତ ହେଲେ, ଶବଶୋଭାଯାତ୍ରାରେ ଲକ୍ଷ ଲକ୍ଷ ଗୁଣମୁଗ୍ଧ ଜନତା ଯେପରି ଶ୍ରଦ୍ଧାଭକ୍ତି ନିବେଦନ କଲେ ସେଥିରୁ ପ୍ରମାଣିତ ହେଲା ଯେ ବିନୟ-ବାଦଲ-ଦୀନେଶଙ୍କ ପଛରେ ଦେଶର କୋଟି କୋଟି ଲୋକଙ୍କର ଅସରନ୍ତି ଭକ୍ତି ଓ ସ୍ନେହ ରହିଛି।

ବିନୟଙ୍କର ମୁଣ୍ଡରୁ ଓ ଦୀନେଶଙ୍କ ପେଟରୁ ଗୁଳି ବାହାରକରିବାକୁ ସମର୍ଥ ହେଲେ ଡାକ୍ତରମାନେ। ପୁଲିସର ଖୁସି କହିଲେ ନସରେ। କାରଣ ପୁଲିସ ଆଶଙ୍କା କରିଥିଲା ଯେ ହୁଏତ କେହି ବଞ୍ଚିବେ ନାହିଁ ଏବଂ ତାହା ଯଦି ହୁଏ ତେବେ ସେମାନଙ୍କୁ ପୁଲିସ ଫାଶୀରେ ଝୁଲାଇବ କେମିତି ?

ବିନୟଙ୍କ ମୁଣ୍ଡର ଘା' କ୍ରମେ କ୍ରମେ ଶୁଖିଆସିଲା, କିନ୍ତୁ ସେ ସଂପୂର୍ଣ୍ଣ ସୁସ୍ଥ ହୋଇ ନ ଥାନ୍ତି। କିନ୍ତୁ ହଠାତ୍ ଦିନେ ସକାଳେ ଦେଖାଗଲା ଯେ ବିନୟଙ୍କର ଡାହାଣ ହାତ ଆଙ୍ଗୁଠି ଗୁରୁତର ଭାବରେ କ୍ଷତ ବିକ୍ଷତ ହୋଇଛି। ଆଙ୍ଗୁଠି ହାଡ଼ ମଧ ଭାଙ୍ଗି ଯାଇଛି। ଚମଡ଼ା ଓ ହାଡ଼ ସବୁ ଛିଡ଼ି ଯାଇଛି। ସେଥିରୁ ପ୍ରବଳ ରକ୍ତସ୍ରାବ ମଧ୍ୟ ହେଉଛି।

ପାଠକ ନିଶ୍ଚୟ ଦ୍ୱନ୍ଦ୍ୱରେ ପଡ଼ିବେ — କ'ଣ ଏହାର କାରଣ ହୋଇପାରେ ? କିଏ ଏହି କ୍ଷତ କଲା ? ଜଣେ ସଂଜ୍ଞାହୀନ ଶଯ୍ୟାଶାୟୀ ରୋଗୀ ଉପରେ ଏ କି ବିପଦ ? ଶୁଣିଲେ ସମସ୍ତେ ସ୍ତମ୍ଭିତ ହେବେ ଯେ ଘୃଣ୍ୟ କର୍ମର କର୍ତ୍ତା ଅନ୍ୟ କେହି ନୁହନ୍ତି — ସ୍ୱୟଂ ଚାର୍ଲସ୍ ଟେଗାର୍ଟ, ବଙ୍ଗଳାର କୁଖ୍ୟାତ ପୁଲିସ କମିସନର। ଚିକାସାଧୀନ ବନ୍ଦୀମାନଙ୍କୁ ଦେଖିବାକୁ ଆସି ସଂଜ୍ଞାହୀନ ବିନୟର ଅଙ୍ଗୁଳିକୁ ସେ ନିଜର ବୁଟ୍‌ରେ ସିମେଣ୍ଟ ଚଟାଣ ଉପରେ ଚକଟି ମନ୍ଥି ଦେଇଥିଲେ। ଭାରତର ମୁକ୍ତି-ସଂଗ୍ରାମ ଇତିହାସରେ ଇଂରେଜ ଶାସକମାନଙ୍କର ଏହି ପୈଶାଚିକ ଓ କାପୁରୁଷୋଚିତ କାର୍ଯ୍ୟର ଉଦାହରଣ ଅସଂଖ୍ୟ। ଏହି ଇଂରେଜମାନେ ତ ପୁଣି ହିଜଳୀ ବନ୍ଦୀ ଶିବିରରେ ଲାଠି ଓ ଗୁଳି ଚଳାଇ ରାତି ଅଧରେ ଶତ ଶତ ସୁପ୍ତବନ୍ଦୀଙ୍କୁ ଆହତ କରିଥିଲେ !

ତଥାପି ବିନୟ କ୍ରମେ ସୁସ୍ଥ ହୋଇଆସିଲେ । ମୁଣ୍ଡର ଘା' ପ୍ରାୟ ଶୁଖିଗଲା । ସୁତରାଂ ଅଳ୍ପଦିନ ଭିତରେ ବିନୟ ସଂପୂର୍ଣ୍ଣ ସୁସ୍ଥହୋଇଯିବେ, ଏଥିରେ ଆଉ ସନ୍ଦେହ ରହିଲା ନାହିଁ । ବିନୟଙ୍କର ପିତା ମାତା, ବନ୍ଧୁବାନ୍ଧବ ଓ ସର୍ବୋପରି ତାଙ୍କର ଦେଶବାସୀ ସେହି ସମ୍ବାଦରେ ଖୁସୀ, କିନ୍ତୁ ସରକାରୀ ମହଲ ଖୁସୀ ଅନ୍ୟ କାରଣରୁ । ବିନୟ ଆଦୌ ଖୁସୀ ନୁହନ୍ତି, କାରଣ ସେ ଦୁଃଖିତ ଯେ ଆତ୍ମବିସର୍ଜନ କରିବାର ସମସ୍ତ ପ୍ରଚେଷ୍ଟା ତାଙ୍କର ବ୍ୟର୍ଥ ହୋଇଛି । ଅତ୍ୟାଚାରୀ ଲୋମାନଙ୍କୁ ହତ୍ୟାକରି ତାଙ୍କର ପ୍ରଥମ ଅଭିଳାଷ ପୂର୍ଣ୍ଣହୋଇଥିଲା । ସେକ୍ରେଟାରୀଏଟ୍ ଆକ୍ରମଣ କରି ତାଙ୍କର ଚରମ ଆଶା ଚରିତାର୍ଥ ହୋଇଛି । ସୁତରାଂ ତାଙ୍କ ପକ୍ଷରେ ବଞ୍ଚିରହିବା ଆବଶ୍ୟକ କ'ଣ ? ସେ ଅରୋଗ୍ୟ ଲାଭ କରିବା ସଙ୍ଗେ ସଙ୍ଗେ ଯେ ତାଙ୍କୁ ଏକ ବିଚାର ପ୍ରହସନର ସମ୍ମୁଖୀନ ହେବାକୁ ପଡ଼ିବ, ତାହା ସେ ଜାଣନ୍ତି ଏବଂ ସେହି ତଥାକଥିତ ବିଚାର ପୂର୍ବରୁ ତାଙ୍କ ଉପରେ ହେବ ପୁଲିସ ପକ୍ଷରୁ ଅଶେଷ ନିର୍ଯାତନା – ଏହା ମଧ୍ୟ ଦିବାଲୋକ ପରି ସ୍ପଷ୍ଟ । ଶେଷରେ ଦିଆଯିବ ତାଙ୍କୁ ଫାଶୀଦଣ୍ଡର ପୁରସ୍କାର । ଏହା କେବଳ ସରକାରକୁ ତା'ର ପ୍ରତିଶୋଧ ମନୋଭାବ ଚରିତାର୍ଥ କରିବା ସୁଯୋଗ ଦେବା ଛଡ଼ା ଆଉ କ'ଣ ହୋଇପାରେ ? ସରକାରକୁ କାହିଁକି ସେ ସୁଯୋଗ ଦେବେ ? ତା' ପୂର୍ବରୁ ସେ ଆତ୍ମବିସର୍ଜନ ନ କରିବେ କାହିଁକି ? ନାଃ, ଏହାହିଁ ଠିକ୍ ବାଟ । ବିନୟ ମନକୁ ପ୍ରସ୍ତୁତ କରିନେଲେ । ଡାକ୍ତରୀ ଛାତ୍ର ସେ । ସେଦିନ ରାତିରେ ଏକ ଭୟଙ୍କର ସିଦ୍ଧାନ୍ତ ନେଲେ ବିପ୍ଳବୀ ବିନୟ । ମୁଣ୍ଡରୁ ବ୍ୟାଣ୍ଡେଜ ଖୋଲିଦେଇ ଶୁଖିଆସିଥିବା କ୍ଷତ ଭିତରେ ଆଙ୍ଗୁଠି ପୂରାଇ ସେ ତାକୁ ଅଧିକ କ୍ଷତବିକ୍ଷତ କରିଦେଲେ, ଯେପରିକି ତାହା ବିଷାକ୍ତ (ସେପ୍‌ଟିକ୍) ହୋଇପଡ଼ିବ । ଅତ୍ୟଧିକ ରକ୍ତସ୍ରାବରେ ବିନୟ ସଂଜ୍ଞାହୀନ ହୋଇପଡ଼ିଲେ ।

ସକାଳେ ଡାକ୍ତରମାନେ ଦେଖିଲେ ଯେ ବିନୟର ଘା' ଭୀଷଣଭାବେ ସେପ୍‌ଟିକ୍ ହୋଇଯାଇଛି । ଚିକିତ୍ସା ଚାଲିଲା । କିନ୍ତୁ କିଛି ଫଳ ହେଲା ନାହିଁ । ବିନୟଙ୍କର ଅବସ୍ଥା କ୍ରମେ ବଡ଼ ଜଟିଳ ହୋଇପଡ଼ିଲା । ସେ ପ୍ରଳାପ କରିବାକୁ ଲାଗିଲେ । ତାଙ୍କର ଶେଷ ସମୟ ଆସିଗଲା । ପାଦ୍ରୀ ସାହେବ ଆସିଲେ ବିନୟଙ୍କ କାନରେ ପ୍ରଭୁ ଯୀଶୁଙ୍କର ପ୍ରେମବାଣୀ ଶୁଣାଇବାକୁ । ଇଂରେଜ ଅମଳରେ ବାଇବେଲ ଭଳି ପବିତ୍ର ଧର୍ମଗ୍ରନ୍ଥ ଏକ ଫେସନରେ ପରିଣତ ହୋଇଥିଲା । ଖ୍ରୀଷ୍ଟିଆନ ଧର୍ମ ସେତେବେଳେ ରାଜଧର୍ମ । ଦଳେ ଖ୍ରୀଷ୍ଟିଆନ ଶାସକ ବେଶରେ ଭାରତୀୟଙ୍କ ଉପରେ ଗୁଳିଚଳାଉଥିଲେ, ଆଉଦଳେ ପାଦ୍ରୀ ବେଶରେ ଭାରତୀୟମାନଙ୍କୁ ପ୍ରେମ ଧର୍ମର ବାଣୀ ଶୁଣାଉଥିଲେ । ମୃତ୍ୟୁ ପୂର୍ବରୁ ବାଇବେଲ ଶୁଣାଇ ଇଂରେଜମାନେ ଭାରତୀୟମାନଙ୍କର ମୁକ୍ତିର ବାଟ ନିଷ୍କଣ୍ଟକ କରୁଥିଲେ ବୋଲି ପ୍ରଚାରକରୁଥିଲେ । ପାଦ୍ରୀସାହେବ ବିନୟଙ୍କ ଶଯ୍ୟା ପାଖରେ ଆଣ୍ଠୁମାଡ଼ି ବସି ଆରମ୍ଭ କଲେ – "'For thine is the kindgom. and the power. and the glory for ever, Amen......

କିନ୍ତୁ ବିନୟଙ୍କ ଧର୍ମ ସ୍ୱତନ୍ତ୍ର । ତାହା ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟିଆନ ଭଳି ସଂକୀର୍ଣ୍ଣ ଧର୍ମ ନୁହେଁ, ସେ ଧର୍ମ ମାତୃଧର୍ମ, ବନ୍ଦିନୀ ମା'ର ମୁକ୍ତି ପାଇଁ ଉଦ୍ଦିଷ୍ଟ ସେ ଧର୍ମ । ସେ ଧର୍ମରେ ରାମ-ହରି-ଗୋବିନ୍ଦ-ଗୋପାଳ ବା ଆଲ୍ଲା ମଜଦା ବା ଜିହୋବାର ମନ୍ତ୍ର ନାହିଁ । ତା'ର ଏକମାତ୍ର ମନ୍ତ୍ର 'ବନ୍ଦେ ମାତରମ୍' । ସୁତରାଂ ମୁମୂର୍ଷୁ ବିନୟ ପ୍ରଳାପ କରିଛନ୍ତି ସେହି 'ବନ୍ଦେ ମାତରମ୍' । ଧର୍ମାନ୍ଧ ପାଦ୍ରୀ ସେ ମନ୍ତ୍ରରୁ କ'ଣ ବୁଝିବ ? ସେ ବିନୟଙ୍କ ପାଖରେ କାନକୁ ଡେରି ବିନୟଙ୍କ କଥା ବୁଝିବାକୁ ଚେଷ୍ଟାକଲା । କିନ୍ତୁ ଏ କ'ଣ ଶୁଣୁଛନ୍ତି ସେ – ''ଲେଫ୍‌ଟ-ରାଇଟ୍-ଚାର୍ଜ-ଫାୟାର'' – କାନକୁ ବିଶ୍ୱାସ କରିପାରିଲେ ନାହିଁ ପାଦ୍ରୀ ସାହେବ ।

ବିନୟ କହିଚାଲିଛନ୍ତି – ଲେଫ୍‌ଟ - ରାଇଟ୍ –

ପାଦ୍ରୀଙ୍କର କଣ୍ଠରୁ ଅଲକ୍ଷ୍ୟରେ ବାହାରିପଡ଼ିଲା – ମାଇଁ ଗଡ୍ –

ଖବର ପାଇ ବିନୟଙ୍କ ପିତା-ମାତା ତାଙ୍କୁ ଦେଖିବାକୁ ଆସିଲେ । ଅର୍ଦ୍ଧନିମିଳିତ ନେତ୍ରରେ ବିନୟ ହାତଯୋଡ଼ି ନମସ୍କାର କଲେ ବାପା-ମା'ଙ୍କୁ । ଘା' ସେପ୍‌ଟିକ୍ ହେବାର ୫ମ ଦିନ ଶନିବାର ସକାଳେ ୬ ଟା ୩୦ ମିନିଟ୍‌ରେ ବିନୟଙ୍କର ମହାପ୍ରୟାଣହେଲା ।

ନିମତାଲା ଘାଟର ମହାଶ୍ମଶାନରେ ଯୋଗଦେଲେ ଲକ୍ଷାଧିକ ଗୁଣମୁଗ୍ଧ ଦେଶବାସୀ । କଲିକତା କାନ୍ଥ ବାଡ଼ରେ ପୋଷ୍ଟର ମରାହେଲା – Benoy's Blood beckons for more Blood, ଅର୍ଥାତ୍– ''ବିନୟର ରକ୍ତଦାନ ଦେଶବାସୀଙ୍କଠାରୁ ଆହୁରି ରକ୍ତ ମାଗେ ।'' ବିନୟଙ୍କର ଆତ୍ମତ୍ୟାଗ ସାର୍ଥକ ହେଲା ।

ଅବଶିଷ୍ଟ କେବଳ ରହିଲେ ଦୀନେଶ । ସେ ବିନୟଙ୍କ ଭଳି ଆତ୍ମାହୁତି ଦେବା ଅପେକ୍ଷା ଅମ୍ଳାନ ବଦନରେ ବିଚାରର ଅବଶ୍ୟମ୍ଭାବୀ ପରିଣତିକୁ ଗ୍ରହଣ କରିବାକୁ ଅଧିକ ଶ୍ରେୟସ୍କର ମନେକଲେ । ଉଭୟ ବାଟ ଠିକ୍‌ବାଟ ।

ଶ୍ୱେତାଙ୍ଗିନୀ ନର୍ସ ଜଣକ କିଛି ବୁଝିପାରେନା । ବିପ୍ଳବୀ ରୋଗୀ ଦୁଇଟିଙ୍କର ଭଦ୍ରତା ଓ ବ୍ୟବହାରକୁଶଳତାରେ ସେ ମୁଗ୍ଧା, ଚକିତା । ସେ ତା'ର ରୋଗୀ ଦୁଇଟିଙ୍କୁ କେତେ ଭଲପାଉଥିଲା । ସେଭଳି ମେଧାବୀ ଓ ପ୍ରତିଭାବାନ୍ ଯୁବକ କାହିଁକି ଏ କୃଚ୍ଛ୍ରସାଧନା କଲେ, ନର୍ସ ଜଣକ ତାହାର କିଛି କୂଳ କିନାରା ପାଏନା । ସେ ଭାବେ– ''ଏହା ଆତ୍ମତ୍ୟାଗ ଛଡ଼ା ଆଉ କ'ଣ ହୋଇପାରେ ?'' ଦିନେ ସୁବିଧା ଦେଖି ଦୀନେଶଙ୍କୁ ପଚାରିଲେ – "Young man, why do you people commit suicide like this ?" ପ୍ରତିବାଦ କଣ୍ଠରେ ଦୀନେଶ କହିଲେ – Suicide ? No, No, No, Sister. It was nothing of a suicide. It was a self emolation – a voluntary death – a death of fulfillment and not of despair. (ନା, ନା, ନା, ଏହା ଆତ୍ମହତ୍ୟା ନୁହେଁ, ଏହାତ ଆତ୍ମାହୁତି– ଆତ୍ମବିସର୍ଜନ । ଜୀବନର ପୂର୍ଣ୍ଣତା ପଥରେ ଏହା ଏକ ଜୟଯାତ୍ରା, ଦୁଃଖ ବା ଅନୁଶୋଚନାର ପରିଣତି ନୁହେଁ ।)

ନର୍ସ ଜଣକ କିଛି ବୁଝିପାରେନା – ବିସ୍ମୟବିସ୍ଫାରିତ ଦୃଷ୍ଟିରେ ଖାଲି ଚାହିଁ ରହେ । ବିଚାରରେ ଦୀନେଶଙ୍କୁ ପ୍ରାଣଦଣ୍ଡ ଆଦେଶ ଦିଆଗଲା । ଅବଶ୍ୟ ଏହାହିଁ ସମସ୍ତେ ଆଶଙ୍କା କରୁଥିଲେ । କିନ୍ତୁ ପ୍ରାଣଦଣ୍ଡ ରାୟରେ ଏକ କଳ୍ପନାତୀତ ମନ୍ତବ୍ୟ ଦିଆଯାଇଥିଲା, ଯାହାକି ସଚରାଚର ଦେଖାଯାଇନଥାଏ । ବିଚାରପତି ଜଣେ ଇଂରେଜ ଜଷ୍ଟିସ୍ ବକ୍‌ଲ୍ୟାଣ୍ଡ । ସେ ତାଙ୍କ ଦୀର୍ଘ ରାୟରେ ଶେଷରେ ମନ୍ତବ୍ୟ ଦେଇଥିଲେ – "ଏହି ଯୁବକ ଆତ୍ମସ୍ୱାର୍ଥ ବା ପ୍ରତିହିଂସା ଚରିତାର୍ଥ କରିବାକୁ ଏହି ହତ୍ୟାକାଣ୍ଡ କରିନାହିଁ ।"

ବିଚିତ୍ର ଏ ଅଭିମତ ! କିନ୍ତୁ ଦେଖିବାକୁଗଲେ ବାସ୍ତବରେ ଏଥିରେ କିଛି ବିଚିତ୍ରତା ନ ଥିଲା । ଅବଶ୍ୟ ଦୀନେଶଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିଥିବା ଜଣେ ବିଚାରପତି ସେହି ଆସାମୀ ସଂପର୍କରେ ଏଭଳି ମନ୍ତବ୍ୟ ଦେବା ଟିକେ ଅସ୍ୱାଭାବିକ ବୋଧ ହୋଇପାରେ, କିନ୍ତୁ ଏହାଦ୍ୱାରା ବିଚାରପତିର ଗଭୀର ଜ୍ଞାନ, ପାଣ୍ଡିତ୍ୟ ଏବଂ ସ୍ପଷ୍ଟବାଦିତାହିଁ ପ୍ରମାଣିତ ହେଉଛି । ଅନ୍ତତଃ ଖୁବ୍ କମ୍‌ରେ ଏତିକି ନିଶ୍ଚୟ ପ୍ରମାଣିତ ହେଉଅଛି ଯେ ଭାରତର ସଶସ୍ତ୍ର ମୁକ୍ତି-ସଂଗ୍ରାମର ଯେଉଁ ଗଭୀର ଦର୍ଶନ ଓ ବିଚାରଧାରାକୁ କେତେକ ଭାରତୀୟ ଏପରକି ନିଜକୁ ଦେଶପ୍ରେମୀ ବୋଲି ଦାବି କରୁଥିବା ଭାରତୀୟମାନେ କୁଆଡ଼େ ବୁଝିପାରୁ ନ ଥିଲେ, ବରଂ ସଶସ୍ତ୍ର ବିପ୍ଳବୀଙ୍କର ଘୋରତମ ଶତ୍ରୁମାନେ ଏହାକୁ ଉତ୍ତମ ରୂପେ ଉପଲବ୍ଧି କରିଥିଲେ । ଇଂରେଜ ବିଚାରପତି ଠିକ୍ ବୁଝିଥିଲେ ଯେ ଏହି ସଂଗ୍ରାମର ଆତ୍ମସ୍ୱାର୍ଥର ଗନ୍ଧ ନ ଥିଲା କିମ୍ବା ନୀଚ ପ୍ରତିହିଂସା ଚରିତାର୍ଥ କରିବାକୁ ଏହା ଅଭିପ୍ରେତ ନ ଥିଲା । ଏହା କୌଣସି ବ୍ୟକ୍ତିବିଶେଷ ବିରୋଧରେ କୌଣସି ବ୍ୟକ୍ତିର ସଂଘର୍ଷ ନ ଥିଲା, ଏହା ଥିଲା ଏକ ଶୋଷିତ ଜାତିର ଏକ ଶୋଷକ ସାମ୍ରାଜ୍ୟ ବିରୋଧରେ ପ୍ରତିବାଦ ଭଳି । ସୁତରାଂ କିଂସଫୋର୍ଡ ପରିବର୍ତ୍ତେ କେନେଡି ମହିଳା ବା ମିଷ୍ଟର୍ ସ୍କଟ୍ ବଦଳରେ ଚନ୍ଦନ ସିଂ ଉପରେ ଗୁଳି ବାଜିବା ଭିତରେ କିଛି ପାର୍ଥକ୍ୟ ନ ଥିଲା । ସଶସ୍ତ୍ର ବିପ୍ଳବୀ କେବଳ ଏତିକି ବିଚାରକରୁଥିଲା ଯେ ସେ ଯାହାକୁ ହତ୍ୟା କରିବାକୁ ଯାଉଛି ସେ ବ୍ରିଟିଶ୍ ସାମ୍ରାଜ୍ୟବାଦର ସହାୟକ କି ନା, ପ୍ରତୀକ କି ନା, ପୃଷ୍ଠପୋଷକ କି ନା – ବେଶ୍ ସେତିକି ଯଥେଷ୍ଟ – ତେଣିକି ସେ ଭାରତୀୟ ହେଉ ବା ଇଂଲଣ୍ଡବାସୀ ହେଉ, ଗୋରା ହେଉ ବା କଳା ହେଉ, ପାଞ୍ଚ ହଜାର ଟଙ୍କା ଦରମା ପାଉଥିବା ଆଇ.ସି.ଏସ. ଅଫିସର ହେଉ ବା ପାଞ୍ଚଟଙ୍କିଆ ପିଅନ ହେଉ । ବିପ୍ଳବୀର ତରବାରି ନିକଟରେ ସମସ୍ତେ ସମାନ । ସମସ୍ତେ ସ୍ୱାଧୀନତାର ଶତ୍ରୁ । ସମସ୍ତେ ଦେଶର ଦୁସମନ୍ । ଦୀନେଶ ଏହା ବୁଝିଥିଲେ । ସବୁ ସଶସ୍ତ୍ର ସଂଗ୍ରାମୀ ଏହା ଉପଲବ୍ଧି କରିଥିଲେ ଏବଂ ବଡ଼ ସୁଖର କଥା, ଜଣେ ଗୋରା ବିଚାରପତି ମଧ୍ୟ ଏହା ବୁଝିଲେ ।

ଫାଶୀମଞ୍ଚରେ ଆରୋହଣ କରିବା ପୂର୍ବରୁ ଦୀନେଶଙ୍କ ବଳିଷ୍ଠ ଲେଖନୀରୁ ତାଙ୍କର ଅସାଧାରଣ ପାଣ୍ଡିତ୍ୟ, ବିଶେଷତଃ ମୃତ୍ୟୁ ସମ୍ମୁଖରେ ତାଙ୍କର ଗଭୀର ଆତ୍ମୋପଲବ୍ଧି

ଓ 'ଅନେକ'ର ପବିତ୍ର ପୀଠରେ 'ଏକ'ର ଆତ୍ମବିସର୍ଜ୍ଜନକୁ ସେ ଯେଉଁଭଳି ଭାବରେ ଗ୍ରହଣ କରିଥିଲେ, ତାହା ସମଗ୍ର ବିଶ୍ୱର ସଶସ୍ତ୍ର ମୁକ୍ତି-ସଂଗ୍ରାମୀଙ୍କ ପାଇଁ ଯେ କେବଳ ଅସରନ୍ତି ପ୍ରେରଣା ଓ ଉତ୍ସାହର ଉତ୍ସଭାବରେ ତାଙ୍କୁ ଚିରଂଜୀବୀ କରି ରଖିଗଲା ସେତିକି ନୁହେଁ, ତାହା ତାଙ୍କୁ ଭାରତୀୟ ମୁକ୍ତି-ସଂଗ୍ରାମର ଇତିହାସରେ ଦେଇଗଲା ଏକ ବିଶେଷ ସ୍ଥାନ ଓ ସମ୍ମାନ ।

ଫାଶୀମଞ୍ଚକୁ ଯିବା ପୂର୍ବରୁ ସ୍ନେହମୟୀ ମାତୃସମା ଭାଉଜ ଓ କନିଷ୍ଠ ଭାଇ ଭଉଣୀମାନଙ୍କ ନିକଟକୁ ଦାର୍ଶନିକ ଦୀନେଶ ଯେଉଁ ଚିଠି ଦେଇଥିଲେ, ତାହା ଆମର ସାହିତ୍ୟ ସଂପଦକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଆଜିଯାଏ ମୁକ୍ତି-ସଂଗ୍ରାମୀଙ୍କୁ ଉଦ୍‌ବୁଦ୍ଧ କରିଆସିଛି । ଏପରିକି ତତ୍‌କାଳୀନ କଲିକତାର ମେୟର ଥିବା ନେତାଜୀ ସୁଭାଷଙ୍କ ଭଳି ବିଶ୍ୱବରେଣ୍ୟ ନେତା ଯେ କି ଦୀନେଶଙ୍କ ଫାଶୀଦିନ ନିର୍ବାକ ଓ ନିସ୍ପନ୍ଦ ଭାବରେ କର୍ପୋରେସନ ଅଫିସରେ ଦୀନେଶଙ୍କ ଫଟୋ ସମ୍ମୁଖରେ ଘଣ୍ଟା ଘଣ୍ଟା ବସିରହିଥିଲେ, ସେ ଏହି ପତ୍ରଗୁଡ଼ିକ ପାଠ କରି କହିପକାଇଲେ ''ଏ ଗୁଡ଼ିକ ତ ମାମୁଲି ଚିଠି ନୁହେଁ, ଏହା ମହା ମୂଲ୍ୟବାନ୍ ଜୀବନ ଦର୍ଶନ ।''

ପତ୍ର — ୧ (ଭାଉଜଙ୍କ ନିକଟକୁ)

ଅଲ୍ଲିପୁର ସେଣ୍ଟ୍ରାଲ ଜେଲ
କଲିକତା, ତା ୨୯-୩-୧୯୩୧

ଶ୍ରୀଚରଣେଷୁ,

ବୌଦି, ଗତକାଲି ତୁମ ଚିଠି ପାଇଲି । ଆଜି ମା' ଓ ଦାଦା ଆସିଥିଲେ । ଦାଦାଙ୍କଠାରୁ ଶୁଣିଲି ଯେ ଆମ ଫାଶୀଦଣ୍ଡ ରାୟ ବାହେଲ (କାଏମ) ହୋଇଛି । ଏଜନ୍ମ ପାଇଁ ତୁମଠାରୁ ବିଦାୟ ନେଉଛି । ମୁଁ ଜାଣେ ଯେ ବିଦାୟଦେବାକୁ ତୁମମାନଙ୍କର ହୃଦୟ ଭାଙ୍ଗିପଡ଼ିବ । କିନ୍ତୁ କ'ଣ କରିବି — ବିଦାୟ ଯେ ନେବାକୁ ହେବ ।

ଆଜି ଅନେକ କଥା ମନେପଡୁଛି । ସେହି ଯେଉଁଦିନ ତୁମକୁ ମୋ'ର ବୌଦି ରୂପେ ପାଇଲି, ସେହିଦିନଠାରୁ ଆଜିଯାଏ ସମସ୍ତ କଥା ଯେମିତି ମୋ' ଆଖି ଆଗରେ ଭାସିଯାଉଛି । ମୋର ଦଶବର୍ଷ ବୟସଠାରୁ ଆଜି କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ ତୁମକୁ କେତେ ଯନ୍ତ୍ରଣା ଦେଇ ଆସିଲି । ସେ ସବୁ ତୁମେ ସ୍ନେହର ଅତ୍ୟାଚାରରୂପେ ହସ ହସ ମୁହଁରେ ସହ୍ୟ କରି ଆସିଛ, କେବେହେଲେ ବିରକ୍ତ ହୋଇନାହଁ । ଚିରକାଳ ତୁମ ହାତର ବାର୍ଲି, ତୁମ ହାତର ରାନ୍ଧଣା ମୋତେ ଭଲଲାଗିଛି ତାହା ତୁମେ ଜାଣ । ତୁମେ କେବଳ ମୋତେ କାହିଁକି, ଆମ ସମସ୍ତଙ୍କୁ ତୁମ ଆନ୍ତରିକ ସ୍ନେହ ଦେଇ ଜୟ କରିଥିଲ । ମୋର ଯଦି ବହୁତ ଟଙ୍କା ହୁଏ, ତେବେ ତୁମକୁ କି କି ପ୍ରିୟ ଜିନିଷ ଉପହାର ଦେବି ସେ ସଂପର୍କରେ କେତେ କେତେ ଉଦ୍ଭଟ କଳ୍ପନା ମନେ ମନେ ପୋଷଣ କରିଛି । ଛାଡ଼ ସେ କଥା । ଭଗବାନ୍ ଜନ୍ମଜନ୍ମାନ୍ତରରେ ତୁମ ଭଳି ବୌଦି ଆମକୁ ଦିଅନ୍ତୁ ।

କି ଉପାୟରେ ତୁମ ମନରେ ଶାନ୍ତି ଆସିପାରେ, ତାହାର ବାଟ ବତେଇବାକୁ ତୁମେ ମୋତେ ପଚାରିଛ । ମୁଁ କ'ଣ ସେ ପ୍ରଶ୍ନର ଉତ୍ତର ଦେଇପାରିବି ? ତେବେ ମୋ'ର ମନେହୁଏ ଯେ ଆମେ ମରଣକୁ ଖୁବ୍ ଭୟକରୁ, ତେଣୁ ମରଣ ନିକଟରେ ଆମେ ପରାଜିତ ହେଉ । ଏହି ଭୟକୁ ଯଦି ଆମେ ପରାଜିତ କରିପାରୁ, ତେବେ ମରଣ ଆମ ନିକଟରେ ତୁଚ୍ଛହୋଇଉଠିବ । ମରଣକୁ ଆମେମାନେ ଭୟ ନ କରି ପ୍ରସନ୍ନ ଚିତ୍ତରେ ତାକୁ ଗ୍ରହଣ କରିବାକୁ ହେବ ।

ମରଣକୁ ଭୟକଲେ ଜୀବନର ପ୍ରଥମ ସୋପାନକୁ ମଧ୍ୟ ଆମ୍ଭେମାନେ ଉତ୍ତୀର୍ଣ୍ଣ ହୋଇପାରିବାନାହିଁ । ଆମେ ଜାଣୁ ଯେ ମରଣ ଆମର ହୁଏନା, ହୁଏ ନଶ୍ୱର ଶରୀରର । ଆତ୍ମା ତ ଅବିନଶ୍ୱର । ସେହି ଆତ୍ମା ହିଁ ମୁଁ । ମଣିଷର ଯେତେବେଳେ ସେହି ଉପଲବ୍ଧି ହୁଏ ସେତେବେଳେ ସେ କହିପାରେ – ମୁଁ ହିଁ ସେ' – ଅଗ୍ନି ମୋତେ ପୋଡ଼ିପାରିବ ନାହିଁ । ଜଳ ମୋତେ ଆର୍ଦ୍ର କରି ପାରିବନାହିଁ । ବାୟୁ ମୋତେ ଶୁଷ୍କ କରିପାରିବନାହିଁ । ମୁଁ ଅଜର, ଅମର, ଅବ୍ୟୟ ।'' ଗୀତା କହିଛନ୍ତି– ''କୌଣସି ଶସ୍ତ୍ର ଏହାକୁ ଛେଦନ କରିପାରେନା, ଅଗ୍ନି ଏହାକୁ ପୋଡ଼ିପାରେନା, ପାଣିରେ ଏହା ତିନ୍ତିପାରେନା, ବାୟୁ ଶୁଷ୍କ କରିପାରେନା । ଏହି ଆତ୍ମା ଅଚ୍ଛେଦ୍ୟ, ଅଶୋଷ୍ୟ, ନିତ୍ୟ, ସର୍ବବ୍ୟାପୀ ।''

ତୁମେ କହିବ – ଏସବୁ କଥା ମୁଁ ବି ଜାଣେ, କିନ୍ତୁ ମନରେ ଶାନ୍ତି ଆସୁନି । ମନକୁ ଶାନ୍ତ କରିବାର ଏକମାତ୍ର ଉପାୟ ଭଗବାନଙ୍କ ନିକଟରେ ଆତ୍ମସମର୍ପଣ । ଏହା ବ୍ୟତୀତ ଶାନ୍ତି ପାଇବାର ଅନ୍ୟ କୌଣସି ଉପାୟ ନାହିଁ । ଆମେ ଜପ ତପ କଲେ ବି, ଯେତେ ତିଳକ ଚିତା ନେଲେ ବି କ'ଣ ଆମେ ତାଙ୍କୁ ଭଲପାଇପାରିବା ? ତାଙ୍କୁ ଯେ ଭଲପାଇପାରେ ମୃତ୍ୟୁ ତା' ନିକଟରେ ଗୋଟାଏ ଫାଙ୍କା ଆବାଜ୍ ମାତ୍ର । ତାଙ୍କୁ ବଙ୍ଗଳାର ନିମାଇଁ, ପ୍ରେମାବତାର ଯୀଶୁଖ୍ରୀଷ୍ଟ ଏବଂ ହସ ହସ ମୁହଁରେ ମରଣକୁ ବରଣ କରିଥିବା ଆମ ଦେଶର ସେହି ସବୁ କିଶୋରମାନେ ଦେଖିଛନ୍ତି । ମନର ଆବେଗରେ ଆଜି ବହୁତ କଥା ଲେଖିପକାଇଲି । ମୁଁ ତୁମମାନଙ୍କ ମନରେ ଦୁଃଖର କାରଣ ହୋଇଛି ଜାଣି ନିଜେ କମ୍ ଦୁଃଖ ପାଉନି । ତୁମେମାନେ ମୋତେ କ୍ଷମାକରିବ ।

ମୋ'ର ସଙ୍ଗୀଟି ବର୍ତ୍ତମାନ ଖୁବ୍ ଭଲଅଛି । ଅସୁସ୍ଥତା ଆଉ ନାହିଁ । ମୁଁ ବି ଭଲ ଅଛି । ସ୍ନେହ ଜାଣିବ । ଇତି ।

ପତ୍ର – ୨ (ମା'ଙ୍କ ପାଖକୁ)

ଅଲ୍ଲିପୁର ସେଣ୍ଟ୍ରାଲ ଜେଲ, ସନ୍ଧ୍ୟା ୫ଟା
୬-୭-୧୯୩୧

ମା',

ତୋ' ସହ ଆଉ ଦେଖା ହେବ ନାହିଁ । କିନ୍ତୁ ମୁଁ ତୋତେ ପରଲୋକରେ ଅପେକ୍ଷା କରିବି । ତୋ'ର କିଛି କେଉଁଦିନ କରିପାରିଲିନାହିଁ । ଏହି ନ କରିପାରିବା ଯେ ମୋତେ

କେତେ ଦୁଃଖ ଦେଉଛି, ତାହା ତୋ' ଛଡ଼ା ଆଉ କେହି ବୁଝିପାରିବେ ନାହିଁ । ମୋର ଯେତେ ଅପରାଧ ଦୋଷ କ୍ଷମା କରିବୁ । ମୋ ସ୍ନେହ ଓ ପ୍ରଣାମ ନେବୁ । ଇତି ।

ପତ୍ର – ୩ (ସାନଭାଇ ପାଖକୁ)

ଅଲ୍ଲିପୁର ସେଣ୍ଟ୍ରାଲ ଜେଲ
ସଂଧ୍ୟା, ତା ୬-୭-୧୯୩୧

ସ୍ନେହର ଭାଇଟି ମୋ'ର,

ତୁ ମୋତେ ଲେଖିଥିଲୁ ଚିଠି ଦେବାକୁ । କିନ୍ତୁ ସେଥିପାଇଁ ବେଳ କରୁ କରୁ ଜୀବନ ସଂଧ୍ୟା ହୋଇଆସିଲା । ଯିବାବେଳେ ବା ତୋତେ କ'ଣ ଲେଖିବି ? କେବଳ ଏତିକି କହି ତୋତେ ଆଶୀର୍ବାଦ କରୁଛି – "ତୁ ନିଃସ୍ୱାର୍ଥପର ହୁଅ । ପରର ଦୁଃଖରେ ତୋର ହୃଦୟରେ କରୁଣାର ମନ୍ଦାକିନୀ ଧାରା ପ୍ରବାହିତ ହେଉ । ମୁଁ ଆଜି ତୁମକୁ ସବୁ ଛାଡ଼ି ଚାଲିଯାଉଛି ବୋଲି ଦୁଃଖ କରନା ଭାଇଟି ମୋର । ଯୁଗ ଯୁଗ ଧରି ଏହି ଯିବା ଆସିବା ବିଶ୍ୱକୁ ସଜୀବ କରି ରଖିଛି ଓ ତା'ର ପ୍ରାଣ ସ୍ପନ୍ଦନକୁ ବନ୍ଦ ହେବାକୁ ଦେଇନାହିଁ । ଆଉ କିଛି କହିବାକୁ ନାହିଁ । ମୋର ଅସରନ୍ତି ସ୍ନେହ ଓ ଆଶୀର୍ବାଦ ନେବୁ । । ଇତି ।

ଶେଷରେ ପହଞ୍ଚିଗଲା ସେହି ଜୁଲାଇ ୭ ତାରିଖ ୧୯୩୧ ମସିହା, ଯେଉଁଦିନ ମୁକ୍ତି-ସଂଗ୍ରାମର ଅନ୍ୟତମ ସେନାପତି ଦୀନେଶ ଏ ଦୁନିଆରୁ ବିଦାୟ ନେବେ । ସାରା ଭାରତର କୋଟି କୋଟି ଜନତା ଦୀନେଶଙ୍କ ଅମୂଲ୍ୟ ଜୀବନ ରକ୍ଷାପାଇଁ ଯେତିକି ଉଦ୍‌ବିଗ୍ନ, ଏପରିକି ନେତାଜୀ ସୁଭାଷଙ୍କ ନେତୃତ୍ୱରେ କଲିକତା କର୍‌ପୋରେସନ ଭଳି ଶକ୍ତିଶାଳୀ ସାଧାରଣ ଅନୁଷ୍ଠାନଗୁଡ଼ିକ ଏଥିପାଇଁ ଯେତିକି ବ୍ୟଗ୍ର ଓ ବ୍ୟସ୍ତ, ମରଣଜୟୀ ଦୀନେଶ ପ୍ରଫୁଲ୍ଲ ଚିତ୍ତ ଓ ନିରୁଦ୍‌ବିଗ୍ନ ହୃଦୟରେ ମୃତ୍ୟୁକୁ ବରଣମାଳା ଦେବାକୁ ସେତିକି ଅପେକ୍ଷମାଣ ।

ଜୁଲାଇ ୬ ତାରିଖ କାଳରାତ୍ରି ପାହିବାକୁ ସେ ଦିନ ଯେମିତି ବହୁତ ଡେରିହେଲା । ଦୁଃଖର ରାତି ବଡ଼ଜଣାଯାଏ । କୋଟି କୋଟି ଗୁଣମୁଗ୍ଧ ଦେଶବାସୀଙ୍କ ପକ୍ଷରେ ଜୁଲାଇ ୬ ତାରିଖ ଏକ ଦୁଃସହ ରାତ୍ରି ହୋଇଥିବାରୁ ବୋଧହୁଏ ବଡ଼ ଜଣାଯାଉଥିଲା ।

ଦୀନେଶ କିନ୍ତୁ ଗଭୀର ନିଦ୍ରାରେ ଶାୟିତ । ରାତି ଶେଷ ହେଲେ ତାଙ୍କର ଫାଶୀ ଦଣ୍ଡ କାର୍ଯ୍ୟକାରୀ ହେବ, କିନ୍ତୁ ଦୀନେଶଙ୍କ ମୁଖମଣ୍ଡଳ ପ୍ରଶାନ୍ତ ଓ ନିରୁଦ୍‌ବିଗ୍ନତାରେ ଉଜ୍ଜ୍ୱଳ । ହଠାତ୍ ପୁଲିସ ସର୍ଜେଣ୍ଟର ବୁଟ୍ ଆବାଜରେ ନିଦ୍ରା ଭଙ୍ଗହେଲା ଦୀନେଶଙ୍କର । ବୁଟ୍ ଶବ୍ଦ ତାଳେ ତାଳେ ଆଗେଇ ଚାଲିଛି ଠକ୍, ଠକ୍, ଠକ୍ ।

"ପ୍ରାତଃ ସ୍ମରାମି ........ଆବୃତ୍ତି କରୁ କରୁ ଦୀନେଶ ଶଯ୍ୟା ତ୍ୟାଗ କଲେ । ନିଃଶଙ୍କ ଫାଶୀ ଆସାମୀକୁ ଦେଖି ପୁଲିସବାଲାଟି ଅବାକ୍ ।

'ଗୁଡ଼ମର୍ଣ୍ଣିଂ ସର୍ଜେଣ୍ଟ' – ଦୀନେଶ ଶୁଭେଚ୍ଛା ଜଣାଇଲା ଆଗନ୍ତୁକ ପୁଲିସ ଅଫିସରଙ୍କୁ । "ଓ ସମୟ ହୋଇଗଲା ବୋଧହୁଏ ! Alright, one minute please !

(ଠିକ୍ ଅଛି, ମିନିଟିଏ ଅପେକ୍ଷା କରନ୍ତୁ ।) ଚିଠି ଖଣ୍ଡେ ଘରୁ ପାଇଥିଲି, ତା'ର ଜବାବ ବି' ଧାଡ଼ି ଲେଖିଦେବି ।'' କାଗଜ ଟାଣିନେଇ ସଙ୍ଗେ ସଙ୍ଗେ ଚିଠିଖଣ୍ଡେ ଲେଖିବାକୁ ବସିଗଲେ ଦୀନେଶ ମାତୃସମା ଭାଉଜଙ୍କ ପାଖକୁ ।

ପତ୍ର – ୪ (ଭାଉଜଙ୍କ ପାଖକୁ)

ଅଲ୍ଲିପୁର ସେଣ୍ଟ୍ରାଲ ଜେଲ

କଲିକତା, ସକାଳ ୭-୭-୧୯୩୧

ବୌଦି,

ତୁମ ଚିଠି ବର୍ତ୍ତମାନ ପାଇଲି । ମୋ'ର ଜୀବନ କାହାଣୀ ଜଣାଇବାର ସୁଯୋଗ ହେଲା ନାହିଁ । କ'ଣ ବା ଲେଖିବି କୁହତ ? ମୋ'ର ସବୁକଥା ତ ଚିରକାଳ ତୁମ ହୃଦୟରେ ଅଙ୍କିତ ହୋଇ ରହିବ । ସାମାନ୍ୟ କାଳି କଲମର ଦାଗ କ'ଣ ତାକୁ ଅଧିକ ଉଜ୍ଜ୍ୱଳ କରିପାରିବ ? ମୋ'ର ସମସ୍ତ ଦୋଷ କ୍ଷମାକରିବ । ଏ ଜନ୍ମ ପାଇଁ ବିଦାୟ ନେଉଛି । ସ୍ନେହ ଓ ପ୍ରଣାମ ଜାଣିବ । । ଇତି ।

ବିସ୍ମୟବିମୂଢ଼ ପୁଲିସ ସର୍ଜେଣ୍ଟ ହାତକୁ ଚିଠି ଖଣ୍ଡିକ ବଢ଼େଇଦେଇ ଦୀନେଶ କହିଲେ, ''ନିଅ, ଏଇଟା ପଠାଇଦେବ ଆମ ଘରକୁ ।''

ସର୍ଜେଣ୍ଟର ଭାବନାର ସୀମା ରହିଲା ନାହିଁ । ଅଦ୍ଭୁତ ଏ ଯୁବକ– ଆଉ ପନ୍ଦର ମିନିଟରେ ଏହାର ଫାଶୀ ଦଣ୍ଡ ଅଥଚ କେତେ ଧୈର୍ଯ୍ୟ ! ଏଭଳି ଅବସ୍ଥାରେ ମଣିଷ ଧୀରସ୍ଥିର ହୋଇ ଚିଠି ଲେଖିପାରେ କେମିତି ? ଆଶ୍ଚର୍ଯ୍ୟ ।

''ଚାଲ, ଏଥର ମୁଁ ପ୍ରସ୍ତୁତ ।'' ଦୀନେଶ କହିଲେ । ରକ୍ଷୀଦଳ ଦୀନେଶଙ୍କୁ ନେଇ ଆଗେଇଲେ । କିଛି ଦୂର ଯାଇ ଅଟକିଗଲେ ସମସ୍ତେ । ଆଗରେ ସ୍ନାନାଗାର । ବନ୍ଦୀ ସ୍ନାନ କରିବେ । ଏହାହିଁ ନିୟମ ।

''ଓଃ, ଗାଧୋଇବାକୁ ହେବ ବୋଧହୁଏ ।'' ହସି ହସି ପଚାରିଲେ ଦୀନେଶ । ନୂଆ ପୋଷାକ ଦେଖି ତାଙ୍କର କୌତୂହଳର ସୀମା ରହିଲା ନାହିଁ ।

''ବାଃ, ଏ ନୂଆ ପୋଷାକ ତାହାହେଲେ ମୋରି ପାଇଁ ? ଏ 'ସୋ' ଗୁଡ଼ାକ କିନ୍ତୁ ଆପଣମାନେ ଠିକ୍ ରଖିଛନ୍ତି । ଆଚ୍ଛା, ବେଶ୍ ମୋ' ଚଷମାଟା ଟିକେ ଧରନ୍ତୁ ସର୍ଜେଣ୍ଟ, ମୁଁ ଗାଧୋଇପଡ଼େ ।'' ପୁଣି କ'ଣ ଭାବି କହିଲେ, ''ନା, ନା, କାହାରି ସାହାଯ୍ୟ ଦରକାର ନାହିଁ । ମୁଁ ନିଜେ ନିଜେ ଗାଧୋଇପଡ଼ିବି ।''

ଗାଧୋଇବାବେଳେ ଆନନ୍ଦରେ ପାଣି ଢାଳିହେଉହେଉ ଅଜ୍ଞାତସାରରେ ଦୀନେଶଙ୍କ ମୁହଁରୁ ବାହାରି ପଡ଼ିଲା ସୂର୍ଯ୍ୟ ନମସ୍କାର –

ଓଁ ଜବାକୁସୁମସଙ୍କାଶଂ କାଶ୍ୟପେୟଂ ମହାଦ୍ୟୁତିମ୍
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋସ୍ମି ଦିବାକରମ୍ ।

ଅବାକ୍ ହୋଇ ଅନାଇରହିଛି ଶ୍ୱେତାଙ୍ଗ ସର୍ଜେଣ୍ଟ ଦୀନେଶଙ୍କୁ । ଫାଶୀ ଆସାମୀ

ଦେଖିବା ଏହା ତାଙ୍କ ଜୀବନରେ ପ୍ରଥମ ନୁହେଁ । କିନ୍ତୁ ଏ ତ ଏକ ଅଦ୍ଭୁତ ଘଟଣା ! ମନେ ମନେ ବିସ୍ମିତ ହେଉଛି ବିଚରା ସର୍ଜେଣ୍ଟ ।

ଯେଉଁ 'କଣ୍ଡେମ୍‌ଡ ସେଲ୍'ର ନାଁ' ଶୁଣିଲେ କୟେଦୀମାନେ ଭୟ ଓ ଆତଙ୍କରେ ଶୁଖିଯାଆନ୍ତି- ମାସ ମାସ ଧରି ସେଠାରେ ରହି ମଧ୍ୟ ଏ ଲୋକଟା ଏତେ ନିର୍ବିକାର । ବରଂ ଓଲଟା ଏ କେଇ ମାସ ଭିତରେ ଦୀନେଶ କେତେ ମୋଟେଇଗଲା ସତେ । ଓଜନ ବଢ଼ିଗଲା ତା'ର । ଏହା ତ ବିଶ୍ୱାସ କରିବା ମଧ୍ୟ ମୁସ୍କିଲ । ଏ ତରୁଣ ବୟସରେ ମୃତ୍ୟୁଭୟ ଏ ଦୂରକଲା କେମିତି ?

''ତୁମକୁ ଭୟଲାଗୁନି ୟଂ ମ୍ୟାନ୍ ?'' ସର୍ଜେଣ୍ଟ ପଚାରିଲା ।

''ଭୟ ?''— ହାଃ ହାଃ କରି ହସିଉଠିଲେ ଦୀନେଶ ।

କି ଭୟ କଥା ପଚାରୁଛନ୍ତି ସର୍ଜେଣ୍ଟ ? ଆମ ଗୀତା କହୁଛି –

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽରାଣି,

ତଥା ଶରୀରାଣି ବିହାୟ ଜୀର୍ଣ୍ଣା, ନ୍ୟନ୍ୟନି ସଂସାତି ନବାନି ଦେହୀ ।''

(ଅର୍ଥାତ ମନୁଷ୍ୟ ଯେମିତି ପୁରାତନ ବସ୍ତ୍ର ତ୍ୟାଗକରି ନୂତନ ବସ୍ତ୍ର ପରିଧାନ କରେ, ସେମିତି ଆତ୍ମା ଜୀର୍ଣ୍ଣଶରୀର ପରିତ୍ୟାଗକରି ନୂତନ ଶରୀର ପରିଗ୍ରହକରେ ।) ତାହାହେଲେ ଭୟ କେଉଁଥିପାଇଁ ? ଏ ଶରୀର ପରିତ୍ୟାଗ କରି ମୁଁ ପୁଣି ନୂତନ ଶରୀର ଗ୍ରହଣ କରି ଫେରିବି । ପୁଣି ହୁଏତ ସାକ୍ଷାତ ହେବ ତୁମ ସହିତ ସର୍ଜେଣ୍ଟ ।''

ସର୍ଜେଣ୍ଟ ଅବାକ୍ । ''ମୋ' ସହ ପୁଣି ଦେଖା ହେବ ? କେଉଁଠି ?''

''ସମ୍ଭବତଃ ଏଇଠି । କିଏ ଜାଣେ ହୁଏତ ପୁଣି ତୁମକୁ ଏହି ଅପ୍ରିୟ କାର୍ଯ୍ୟ କରିବାକୁ ପଡ଼ିପାରେ ।'' କଥାଟା କହିଦେଇ ହସିଦେଲେ ଦୀନେଶ ପ୍ରାଣଖୋଲା ହସ । ସେଥିରେ ଟିକିଏ ବି କୃତ୍ରିମତା ନ ଥିଲା ।

''ବେଶ୍ ମୋର ସରିଗଲା । ଗାଧୁଆପାଧୁଆ, ନୂଆ ପୋଷାକପିନ୍ଧା ପାଲା ଶେଷ ମୋର । ଏଥର ଚାଲିବା ହେଉ । ମୁଁ ପ୍ରସ୍ତୁତ । Let us have our parting kisses, Surgent." (ଆସ, ବିଦାୟଚୁମ୍ବନଟା ଦିଏଁ ତୁମକୁ ସର୍ଜେଣ୍ଟ ।)

ଧୀର ଓ ବଳିଷ୍ଠ ପଦକ୍ଷେପରେ ଫାଶୀମଞ୍ଚ ଉପରକୁ ଉଠିଗଲେ ଦୀନେଶ । କ୍ଷୋଭ ନାହିଁ, ଭୟ ନାହିଁ, ଶଙ୍କା ନାହିଁ । କାହାକୁ ଭୟ ? କେତେ ସହିଦଙ୍କୁ ଶେଷ ଆଲିଙ୍ଗନ କରିଥିବା ଏଇ ଫାଶୀମଞ୍ଚ ତ ତା'ର ତୀର୍ଥଭୂମି ।

''ତୁମର କିଛି କହିବାର ଅଛି ବନ୍ଦୀ ?''— ଶେଷ ପ୍ରଶ୍ନଟି ପଚାରିଲେ ଫାଶୀମଞ୍ଚ ନିକଟରେ ଉପସ୍ଥିତ ଥିବା ବିଚାରପତି ।

''ପ୍ଲିଜ୍ ଷ୍ଟପ୍ । ଏଭଳି ପ୍ରଶ୍ନର ଆବଶ୍ୟକତା ନାହିଁ । କାରଣ ମୋ'ର କହିବାର ଅଧିକାର ଅନ୍ୟ କାହା ହାତରେ ଅଛି ବୋଲି ମୁଁ ସ୍ୱୀକାରକରେନା । ଏହା ଏକ ଲୋକ ଦେଖାଣିଆ ଆଇନ । Please do your duty." ବିଚାରପତିଙ୍କ ଉପରକୁ

ଏ·ଜବାବଟା ଯେମିତି ଫୋପାଡ଼ିଦେଇ ଦୀନେଶ ବଜ୍ରକଣ୍ଠରେ ହୁଙ୍କାରଦେଲେ 'ବନ୍ଦେ ମାତରମ୍' ।

ପ୍ରତିଧ୍ୱନିତ ହୋଇଉଠିଲା ସେହି ମାତୃମନ୍ତ୍ର ଅଲ୍ଲିପୁର ସେଣ୍ଟ୍ରାଲଜେଲରେ ଓ ଧୀରେ ମିଳେଇଗଲା, ମହାନଗରୀର ଅପେକ୍ଷମାଣ ବିମୁଗ୍ଧ ଦେଶବାସୀଙ୍କ ହୃଦୟକନ୍ଦରରେ । ସେହି ମହାଧ୍ୱନିର ପବିତ୍ର ଶବ୍ଦଗୁଡ଼ିକ ସହିତ ଫାଶୀର ଭୟାବହ ଓ ଆତଙ୍କଜନକ ଶବ୍ଦ ମିଶି ସବୁ ଯେମିତି ଏକାକାର ହୋଇଉଠିଲା —

''ଉଦୟର ପଥେ ଶୁନିକା'ର ବାନୀ, ଭୟ ନାଇଁ ଆରେ ଭୟ ନାଇଁ''
ନିଃଶେଷେ ପ୍ରାନ ଯେ·କରେଛେ ଦାନ, କ୍ଷୟ ନାହିଁ ତା'ର କ୍ଷୟନାଇଁ ।''

ଦୁଃଖ, ଶୋକ ଓ କ୍ରୋଧରେ ଫାଟିପଡ଼ିଲା ସାରା ଦେଶ ଏଭଳି ଅମୀତବିକ୍ରମୀ କ୍ଷଣଜନ୍ମା ଯୁବକର ଫାଶୀଦଣ୍ଡରେ । ପ୍ରତିହିଂସାରେ ଫୁଲିଉଠିଲା ଦୀନେଶଙ୍କ ହାତ ତିଆରି ମେଦିନୀପୁର । ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନଗୁପ୍ତ 'Advance" ପତ୍ରିକାରେ ଲେଖିଲେ– "Dauntless Dinesh Dies at Dawn."

**ପ୍ରଦ୍ୟୋତ ଭଟ୍ଟାଚାର୍ଯ୍ୟ :**

'ବିନୟ-ବାଦଲ-ଦୀନେଶ'ଙ୍କ ମହାପ୍ରୟାଣ ଫଳରେ ବଙ୍ଗବିପ୍ଳବୀମାନଙ୍କ ଭିତରେ ଘୋର ଉତ୍ତେଜନା ପ୍ରକାଶପାଇଲା । ଗୁପ୍ତସମିତିଗୁଡ଼ିକ ଅଧିକ ପ୍ରତିଶୋଧପରାୟଣ ହୋଇପଡ଼ିଲେ ।' ଠିକ୍ ଏହି ସମୟରେ ମେଦିନୀପୁର ଜିଲ୍ଲାର ହିଜଲା ଜେଲରେ ଏକ ଭୟାବହ କାଣ୍ଡ ଘଟିଲା । ରାତିଅଧରେ ଜେଲ ଭିତରେ ବିଚାରାଧୀନ ବନ୍ଦୀମାନଙ୍କ ଉପରେ ପୁଲିସ ଲାଠି ଚାର୍ଜ କଲା । ନିଦ୍ରିତ ଅବସ୍ଥାରେ ଥିଲାବେଳେ ରାଜନୈତିକ ବନ୍ଦୀମାନଙ୍କ ଉପରେ ମଧ୍ୟ ଅତ୍ୟାଚାରହେଲା । ଜିଲ୍ଲା କଲେକ୍ଟର ଡଗଲାସ୍ ଥିଲା ସେହି ଅତ୍ୟାଚାରର ମୁଖ୍ୟ ସେନାପତି । ବିଚାରାଧୀନ ରାଜନୈତିକ ବନ୍ଦୀମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର ସଂବାଦରେ ଜନମତ ଭୀଷଣ ଭାବରେ ଉତ୍ତେଜିତ ହୋଇପଡ଼ିଲା । ଦେଶପ୍ରିୟ ଯତୀନ୍ଦ୍ରମୋହନ, ବିଶ୍ୱକବି ରବୀନ୍ଦ୍ରନାଥ ଓ ନେତାଜୀ ସୁଭାଷଙ୍କ ଭଳି ବରେଣ୍ୟ ନେତୃବୃନ୍ଦ ଅତିଶୟ କ୍ଷୁବ୍ଧହୋଇ ଏହାର ପ୍ରତିବାଦକଲେ । ନେତାଜୀଙ୍କର ଆଗ୍ନେୟ ଲେଖନୀ ଗର୍ଜନ କଲା— ଅଗଣିତ ସହିଦଙ୍କ ରକ୍ତ ଉପରେ ପ୍ରତିଷ୍ଠିତ·ହେଉ ସ୍ୱାଧୀନତାର ସୌଧ । ଏହି ଗୋଟିଏ ମାତ୍ର ଧ୍ୱନି ଗୁଂଜରିଉଠୁଛି ହୃଦୟର ଅନ୍ତିମ ପ୍ରଦେଶରୁ ।

ନେତାଜୀଙ୍କ ପରିକଳ୍ପିତ ସେହି ସ୍ୱାଧୀନତାସୌଧର ମୂଳଦୁଆ ପକେଇବାକୁ ବାହାରି ଆସିଲେ ବୀର ପ୍ରଦ୍ୟୋତ ଭଟ୍ଟାଚାର୍ଯ୍ୟ । ମେଦିନୀପୁରର ନାମଜାଦା ପିଲା ସେ । ମେଦିନୀପୁରର ହିନ୍ଦୁ ହାଇସ୍କୁଲରୁ ଫାଷ୍ଟକ୍ଲାସ୍‌ରେ ପାସ୍ କରିଥିଲେ । ସେ ମହାନ୍ ମେଧାବୀ, ସ୍ୱାଧୀନଚେତା ଓ ନିର୍ଭୀକ । ଦୀନେଶଙ୍କ ମନ୍ତ୍ରଶିଷ୍ୟ ପ୍ରଦ୍ୟୋତ ।

୧୯୩୨ ଏପ୍ରିଲ ୩୦ ତାରିଖରେ ଜିଲ୍ଲାବୋର୍ଡ଼ ମିଟିଂରେ ସଭାପତିତ୍ୱ କରିବାକୁ ଆର. କେ. ଡଗଲାସ୍ ସଭାସ୍ଥଳରେ ପହଞ୍ଚିବା ସଙ୍ଗେ ସଙ୍ଗେ ପ୍ରଦ୍ୟୋତ ଓ ଅନ୍ୟତମ ବିପ୍ଳବୀ ପ୍ରଭାଂଶୁ ପାଲ ଏକା ସଙ୍ଗେ ତା' ଉପରେ ଗୁଳି ଫାୟର୍‌କଲେ । ଜଣକର ଗୁଳି ଡଗଲାସ୍‌ର ମୁଣ୍ଡରେ ଓ ଅନ୍ୟ ଗୁଳିଟି ତା'ର ଡାହାଣ ହାତରେ ବାଜିଲା । ଡଗଲାସ୍ ସେଇଠି ଟଳିପଡ଼ିଲା । ଅବ୍ୟର୍ଥ ସେ ଗୁଳି, ଖସିଯିବାର ପ୍ରଶ୍ନ ନ ଥିଲା । ସଦର ଏସ୍.ଡି.ଓ. ମିଷ୍ଟର୍ ବାର୍ଜ ଓ ସରକାରଙ୍କର ଆଉ ଜଣେ ନିମକସଚ୍ଚା ଚାକର ଭୂପେନ ମିତ୍ର ଡେଇଁପଡ଼ି ପ୍ରଦ୍ୟୋତ ଓ ପ୍ରଭାଂଶଙ୍କୁ ଧରିବାକୁ ଚେଷ୍ଟାକଲେ । କିନ୍ତୁ ଉଭୟ ପଳାଇ ଯାଇଥିଲେ ସେଠାରୁ । କିନ୍ତୁ ଦୁର୍ଭାଗ୍ୟରକଥା ପ୍ରଦ୍ୟୋତଙ୍କର ରିଭଲଭରଟି ଯାନ୍ତ୍ରିକ ତ୍ରୁଟି ଯୋଗୁଁ ଫୁଟିଲା ନାହିଁ । ବାରମ୍ବାର ଚେଷ୍ଟାକରି ପ୍ରଦ୍ୟୋତ ବ୍ୟର୍ଥହେଲେ, ଫଳରେ ସେ ଗିରଫହେଲେ । କିନ୍ତୁ ପ୍ରଦ୍ୟୋତ ଏଭଳି ଉପାଦାନରେ ଗଠିତହୋଇଥିଲେ ଯେ ତାଙ୍କ ଉପରେ ପୁଲିସ ଅକଥନୀୟ ଅତ୍ୟାଚାର କରିଥିଲେ ସୁଦ୍ଧା ତାଙ୍କଠାରୁ ବିପ୍ଳବୀଦଳ ସଂପର୍କରେ ଗୋଟିଏ ହେଲେ ତଥ୍ୟ ସଂଗ୍ରହ କରିପାରିଲାନାହିଁ । ଭୂପେନ ଦାରୋଗା ଶେଷରେ ଥଟ୍ଟାକରି କହିଲା, ''ଛିଃ ପ୍ରଦ୍ୟୋତ, ତୁମକୁ ଏମିତି ରଦ୍ଦି ବଂଧୁକ କିଏ ଦେଲା ଯେ ଦରକାର ବେଳେ ସେଟା ଫୁଟିଲା ନାହିଁ । ଏଇ ତମ ବାହାଦୁରୀ ?'' ଥାନା ଲକ୍‌ଅପ ଭିତରେ ଜଣେ ବନ୍ଦୀ ସହ ଏହି ଔଦ୍ଧତ୍ୟପୂର୍ଣ୍ଣ ବ୍ୟବହାରରେ ପ୍ରଦ୍ୟୋତ ଦବିଯିବାର ପାତ୍ର ନ ଥିଲେ । ସେ ଜବାବ ଦେଲେ- "Irony of fate Bhupen Babu, had my revolver spoken out, I could not have been here in this condition, the story would have been different."

ପ୍ରଦ୍ୟୋତଙ୍କ ବିଚାର ପାଇଁ ଯେଉଁ ଟ୍ରିବ୍ୟୁନାଲ ଗଠିତହୋଇଥିଲା, ସେହି ଟ୍ରିବ୍ୟୁନାଲର ଅନ୍ୟତମ ସଦସ୍ୟ ଆଇ.ସି.ଏସ., ଜ୍ଞାନାଙ୍କୁର ଦେ ପ୍ରଦ୍ୟୋତକୁ ଫାଶୀ ଦେବାକୁ ରାଜି ହୋଇ ନ ଥିଲେ । ତାଙ୍କର ଯୁକ୍ତିଥିଲା ଯେ ପ୍ରଦ୍ୟୋତଙ୍କୁ ଆରେଷ୍ଟ କରିବାବେଳେ ତାଙ୍କଠାରୁ ଯେଉଁ ବନ୍ଧୁକ ଜବଦ କରାହୋଇଥିଲା ତାହା ଅଚଳ ଅବସ୍ଥାରେ ଥିଲା । ସୁତରାଂ ସେହି ବନ୍ଧୁକରେ ହତ୍ୟାକରାଯାଇଛି ବୋଲି ଯୁକ୍ତି କରିବା ଅଯୌକ୍ତିକ । ତଥାପି ପ୍ରଦ୍ୟୋତଙ୍କୁ ରକ୍ଷା କରାଯାଇ ପାରିଲା ନାହିଁ । ସରକାର ସଶସ୍ତ୍ର ବିପ୍ଳବୀମାନଙ୍କୁ ଚରମ ଦଣ୍ଡ ଦେବା ପାଇଁ ଏଭଳି ପ୍ରତିଜ୍ଞାବଦ୍ଧ ହୋଇଥିଲା ଯେ ବିଚାରପତି ଜ୍ଞାନାଙ୍କୁର ଦେ'ଙ୍କର ବଳିଷ୍ଠ ଯୁକ୍ତି ସତ୍ତ୍ୱେ ଶେଷରେ ପ୍ରଦ୍ୟୋତଙ୍କୁ ଫାଶୀ ଦିଆଗଲା । କିନ୍ତୁ ପ୍ରଦ୍ୟୋତ ସେହି ଫାଶୀଦଣ୍ଡକୁ ଯେଭଳି ଅମ୍ଳାନ ବଦନରେ ଗ୍ରହଣ କରିଥିଲେ ଏବଂ ତାଙ୍କର ବୈପ୍ଳବିକ ଲେଖନୀରୁ ଯେଉଁ ଅମୃତବାଣୀ ବର୍ଷିତ ହୋଇଥିଲା ତାହା ତାଙ୍କୁ ଭାରତର ଅଗ୍ନିଯୁଗର ଦୀନେଶ ପରବର୍ତ୍ତୀ ଏକ ଶ୍ରେଷ୍ଠ ବିପ୍ଳବୀ ଭାବରେ ପରିଚିତ କରାଇଅଛି । ଫାଶୀ ପୂର୍ବରୁ ପ୍ରଦ୍ୟୋତ ତାଙ୍କର ମା', ଭାଇ ଓ ଭାଉଜଙ୍କ ନିକଟକୁ ଯେଉଁ କେତେଖଣ୍ଡ ପତ୍ର ଲେଖିଥିଲେ, ତାହା ଅଧ୍ୟୟନ କଲେ ସେଥିରୁ ପ୍ରଦ୍ୟୋତଙ୍କର ମୃତ୍ୟୁଭୟହୀନତା ଏବଂ

ନିର୍ଭୀକତାର ପ୍ରମାଣ ମିଳିବା ସଙ୍ଗେ ସଙ୍ଗେ ତତ୍‌କାଳୀନ ଭାରତୀୟ ରାଜନୀତିର ହିଂସା-ଅହିଂସା ଦ୍ୱନ୍ଦ୍ୱ ସମ୍ପର୍କରେ ସମ୍ୟକ୍ ପରିଚୟ ମିଳିଥାଏ ।

ପତ୍ର-୧ (ଜ୍ୟେଷ୍ଠଭ୍ରାତା ଡାକ୍ତର ପ୍ରଭାତ ଚନ୍ଦ୍ର ଭଟ୍ଟଚାର୍ଯ୍ୟଙ୍କୁ)

ମେଦିନୀପୁର ସେଣ୍ଟ୍ରାଲ ଜେଲ
ବୁଧବାର ୧୧ ଜୁଲାଇ ୧୯୩୨

ଓଁ କୃଷ୍ଣାୟ ନମଃ

ଶତକୋଟି ଭୂମିଷ୍ଠ ପ୍ରମାଣ ନିବେଦନ ମିଦଂ ବିଶେଷ ପରେ –

ପୂଜ୍ୟପାଦ,

ମୁଁ ବର୍ତ୍ତମାନ ଖୁବ୍ ଭଲଅଛି । ଜାଣୁଛି, ମା'ର ଖୁବ୍ କଷ୍ଟହେଉଛି ଓ ହେବ । ମନ ଦୁଃଖ କରିବାକୁ ତାଙ୍କୁ ବାରଣକରିବେ । ଜଗତରେ କେହି ଚିରଦିନ ପାଇଁ ଆସି ନାହିଁ କିମ୍ବା କେହି ଚିରଦିନ ରହିବ ନାହିଁ । କେବଳ ପ୍ରାଣ ବଞ୍ଚାଇବା ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ନୁହେଁ । ଜୀବନ ଯଦି ଜୀବନ କାର୍ଯ୍ୟରେ ନ ଲାଗିଲା ତେବେ ସେ ପ୍ରକାର ଜୀବନର ପ୍ରୟୋଜନ ବା କ'ଣ ? ମା' ପ୍ରତି ବିଶେଷ ଦୃଷ୍ଟି ରଖିବେ । ତାକୁ ବୁଝାଇବେ ତା'ର ଚାରିପୁଅ ଭିତରୁ ତିନିପୁଅ ବର୍ତ୍ତମାନ ତା' ପାଖରେ ଅଛନ୍ତି । (ଏଇଠି ଚାରିଧାଡ଼ି ଜେଲ କର୍ତ୍ତୃପକ୍ଷ କାଟି ଦେଇ ଅଛନ୍ତି ।) ମୋତେ ଏହି ବ୍ରତ ପାଳନ କରିବାକୁ ହେବ । (ଏଠାରେ ମଧ୍ୟ ଚିଠିରୁ ଛ'ଧାଡ଼ି ପୁଲିସ କାଟିଦେଇଛି ।) ଜେଲର ନିର୍ଜନତା ଏବେ ମୋତେ ଖୁବ୍ ଭଲଲାଗୁଛି, କାରଣ ଏହି ନିର୍ଜନତା ମୋତେ ଜୀବନର ଚରମ ସମସ୍ୟାଗୁଡ଼ିକୁ ତଳେଇକରି ବୁଝିବାର ସୁଯୋଗଦେଇଛି । ଅନ୍ୟ ସବୁ ଲାଭ କଥା ଛାଡ଼ିଦେଲେ ବି ଏହି ନିର୍ଜନତା ଆଧ୍ୟାତ୍ମିକ ବିଷୟରେ ବହୁତଗୁଡ଼ିଏ ଲାଭ ଦେଇପାରିଛି ଓ ଦେଇପାରିବ । ଆଧ୍ୟାତ୍ମିକତାହିଁ ଜୀବନର ପ୍ରାଣ ଓ ପ୍ରାଣର ଅନ୍ୟତମ ପାବକ ଶିଖା ।

ମୁଁ ବେଶ୍ ଖୁସୀ ଅଛି । ଆପଣମାନେ ମୋ' ଲାଗି ଆଦୌ ବ୍ୟସ୍ତ ହେବେ ନାହିଁ । ଯଥାଯୋଗ୍ୟ ସ୍ଥାନରେ ମୋ'ର ପ୍ରଣାମ ଓ ସ୍ନେହ ଜଣାଇବେ ଏବଂ ପତ୍ର ଦେବେ । ଇତି ।

ପତ୍ର-୨ : (ବଡ଼ଭାଉଜ ଶ୍ରୀଯୁକ୍ତା ବନକୁସୁମ ଦେବୀଙ୍କୁ)

ମେଦିନୀପୁର ସେଣ୍ଟ୍ରାଲ ଜେଲ
୨୨-୧୧-୧୯୩୨

ଶତକୋଟି ଭୂମିଷ୍ଠ ପ୍ରଣାମ ନିବେଦନ ମିଦଂ ବିଶେଷ ପରେ–

ପୂଜନୀୟା ବୌଦି,

ଆପଣଙ୍କର ଆଶୀର୍ବାଦୀ ଚିଠି ପାଇଛି । କିନ୍ତୁ ତା'ର ଉତ୍ତର୍ ଦେଇପାରିନି । ଭୋଳାଦା (ପ୍ରଦ୍ୟୋତଙ୍କ ଆତ୍ମୀୟ) ଯେ ଏତେ ଶୀଘ୍ର ସମସ୍ତଙ୍କୁ ଛାଡ଼ି ଚାଲିଯିବେ,

ଏକଥା କିଏ ଜାଣିଥିଲା ? ତାଙ୍କୁ ଏମିତି ଅଜ୍ଞାତ ଓ ସମ୍ମାନଶୂନ୍ୟ ଭାବେ ଯିବାକୁ ପଡ଼ିଲା । ମୁଁ ଯେ ଯାଉଛି ସେଥିରେ କାହା ମନରେ କି ଛାପ ପଡ଼ିବ, କେଜାଣି ? କାହାର କେତେବେଳେ କିଭଳି ଡାକରା ଆସେ କିଏ କହିବ ?

ମୋର ଯେଉଁ ଯାତ୍ରାର ପରିକଳ୍ପନା ମନେ ମନେ ଚିନ୍ତାକରି ମୁଁ ଆତ୍ମହରା ହୋଇ ପଡୁଥିଲି ତାହା ପ୍ରାୟ ସଫଳ ହେବା ଉପରେ ।

''ଏବାର ଚଲିନୁ ତବେ । ସମୟ ହୟେଛେ ନିକଟ, ଏଖନ ବନ୍ଧନ ଛିଡ଼ାତେ ହବେ ।'' ଏହିଭଳି କେତେ ଛନ୍ଦ ଯେ ଆନନ୍ଦକୁ ଘେରି ଘେରି ଉଚ୍ଛଳ ଜଳକଲ୍ଲୋଳ ଭଳି ବାଜିଯାଉଛି । ଆଜି ଏହି ଆନନ୍ଦକୁ କୌଣସି ଭାଷା ମଧ୍ୟ ପ୍ରକାଶ କରିବାକୁ ଅସମର୍ଥ । ମୋ'ର ଏହା ଆଶାତୀତ ଓ କଳ୍ପନାତୀତ ଲାଭ । ଧର୍ମ ପାଇଁ, ଦେଶ ପାଇଁ, ଯେକୌଣସି ଉପାସ୍ୟ ବସ୍ତୁପାଇଁ ତ୍ୟାଗର, ଏପରିକି ଜୀବନ ବିସର୍ଜନର ଦୃଷ୍ଟାନ୍ତ ଖୋଜିବାକୁ ପୁରାଣ ବା ଇତିହାସର ପୃଷ୍ଠା ଓଲଟାଇବାର ଆବଶ୍ୟକତା ନାହିଁ । ଆମ ଆଖିଆଗରେ ପ୍ରତି ମୁହୂର୍ତ୍ତରେ ଆମେ ତାହା ଦେଖିବାକୁ ପାଉଛୁ । ତା' ବ୍ୟତୀତ ପୁନର୍ଜନ୍ମ ବା ମୃତ୍ୟୁ ପରେ ଅନ୍ୟ ଶରୀର ପରିଗ୍ରହ କରିବାର ବିଶ୍ୱାସ ତ ଆମର ଅଛି ଏବଂ ଗୀତାରେ ଅଛି ଶ୍ରୀକୃଷ୍ଣଙ୍କର ବାଣୀ । ସେଥିପାଇଁ ମୋ' ସକାଶେ କୌଣସି ଚିନ୍ତା କରିବେ ନାହିଁ । ଏତିକି ଦୁଃଖ ରହିଗଲା ଯେ ଆପଣଙ୍କ ସହ ସାକ୍ଷାତ କରିବାର କୌଣସି ସୁଯୋଗ କରିପାରିଲି ନାହିଁ । ଗୀତାଞ୍ଜଳିରେ ଅଛି –

''ଆକାଶହତେ ପ୍ରଭାତ ଆଲୋ, ଆମାର ପାନେ ହାତ ବାଡ଼ାଲୋ,
ଭାଙ୍ଗାକାରର ଦ୍ୱାରେ ଆମାର, ସୁରଧ୍ୱନି ଉଠଲୋରେ, ଉଠଲୋ ।''

ଏହି ବାଣୀ ମୋ'ର ହୃଦୟରେ ସ୍ପନ୍ଦିତ ହେଉଅଛି । ମୁଁ ଏହା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଅଛି ଯେ କବିର ଏହି ଛନ୍ଦଟି ଯେପରି ମୋ'ର ଜୀବନର ପ୍ରତିଧ୍ୱନି । ସବୁ ଯେମିତି ସତ୍ୟ ହୋଇ ମୋତେ ଦେଖାଯାଉଛି । ଏ ତ ଗୀତ ଶୁଣା ବା କାବ୍ୟ ପଢ଼ା ନୁହେଁ – ଏହା ତ ଏକାବେଳେ ମାର୍ମିକ ଅନୁଭୂତି । ଜୀବନଟା ଅନୁଭୂତିର ସମଷ୍ଟି ଛଡ଼ା ଆଉ କ'ଣ ? ଏହି ଅନୁଭୂତିର ସ୍ଫୁତିଧାରାହିଁ ମାନବର ଜୀବନ ଏବଂ ସେହି ଜୀବନ ସ୍ରୋତ ଏକାଦିକ୍ରମେ ଯେଉଁଦିନ ଅନୁଭୂତିର ଗୋଟାଏ ପ୍ରବଳ ଆବର୍ତ୍ତ ସୃଷ୍ଟି କରେ, ସେହି ଦିନ ତ ଘଟେ ପ୍ରାଣର ଜାଗରଣ । ସେଥିପାଇଁ ମୋ' ଜୀବନର ଏହି ଅଭିବ୍ୟକ୍ତି ଭିତର ଦେଇ ବିଶ୍ୱକବିଙ୍କ ସଙ୍ଗୀତର ଏହି ଆଶ୍ଚର୍ଯ୍ୟ ସାମଞ୍ଜସ୍ୟ ଦେଖି ମୁଁ ସ୍ତମ୍ଭିତ ହୋଇ ଯାଉଛି । ଛାଡ଼, ମୋ'ର ଆତ୍ମା ଖାଲି ଅମର ନୁହେଁ, ଏଥିରୁ ଅଧିକ, ଏହା ଏକ ଅପରିମେୟ ଶକ୍ତି । ଏହା କେବଳ ଅକ୍ଷୟ ବା ଅବିନଶ୍ୱର ତା' ନୁହେଁ, ଏହା ବିଭୁ, ଏହା ଅସୀମ । ମାୟାଦ୍ୱାରା ସେହି ଅସୀମତା, ସେହି ବିଭୂତି ଆବୃତ ବୋଲି ବୁଝିଲେ ସେ ମାୟା ଉଭେଇଯିବ । ମୁଁ ଏଥର ଆସେ, କ'ଣ କହୁଛନ୍ତି ?

ଏହି ଦେଶର କୋଳକୁ ମୁଁ ଫେରିଆସିବି ସଗୌରବେ । ଅନେକ କିଛି କହିବାକୁ ଇଚ୍ଛା ହୁଏ, କିନ୍ତୁ ପ୍ରାଣର କଥା କହିବାକୁ ଭାଷା ପାଏନା । ମୋର ଶତ ଶତ ପ୍ରଣାମ ଗ୍ରହଣକରି ମୋତେ ସାର୍ଥକତାର ଆନନ୍ଦ ଉପଲବ୍ଧି କରିବାର ସୁଯୋଗ ଦେବେ ।

ମା' ପ୍ରାଣରେ ଏ ଆଘାତ ବଡ଼ କଠିନ ହୋଇ ବାଜିବ— ତାହା ମୁଁ ଜାଣେ । କିନ୍ତୁ ଆପଣମାନେ ସେ ଆଘାତକୁ ହାଲୁକା କରିବାକୁ ଚେଷ୍ଟାକରିବେ । ମୋ'ର ଅଯୋଗ୍ୟତା ପାଇଁ ମୋତେ କ୍ଷମା କରିବାକୁ କହିବେ । ମୋର ସାଷ୍ଟାଙ୍ଗ ପ୍ରଣାମ । ଆସୁଛି । ।ଇତି।

ପତ୍ର-୩ (ମା'ଙ୍କ ପାଖକୁ)

ମେଦିନୀପୁର ସେଣ୍ଟ୍ରାଲ ଜେଲ
୧୧-୧-୧୯୩୩

ମା',

ମୁଁ ଆଜି ମରଣପଥରେ ମୋ'ର ଯାତ୍ରା ଆରମ୍ଭ କରିଛି । ସେଥିପାଇଁ କୌଣସି ଶୋକ କରିବୁ ନାହିଁ । ଭାଇମାନଙ୍କୁ କହିଦେବୁ ଯେ ମୁଁ ମୋର ଅସମାପ୍ତ କାର୍ଯ୍ୟ ଭିତରେ ମୋ'ର ହୃଦୟ ରଖିଦେଇ ଯାଉଛି । ମୋ' ପାଇଁ ଦୁଇଦିନ ଅଶ୍ରୁତର୍ପଣ କରି ତା'ପରେ ମୋତେ ଭୁଲିଯିବା ଅପେକ୍ଷା, ମୋ'ର ସେହି ଅସମାପ୍ତ କାର୍ଯ୍ୟକୁ ସମାପ୍ତ କଲେ ମୋ'ର ବହୁତ ବଡ଼ ତର୍ପଣ ହେବ ଏବଂ ମୋ'ର ଆତ୍ମା ତଦ୍ଦ୍ୱାରା ଅଧିକ ପରିତୃପ୍ତ ହେବ ।

ଆଜି ଯଦି କୌଣସି ରୋଗରେ ମୋ'ର ମୃତ୍ୟୁ ହୋଇଥା'ନ୍ତା, ତେବେ ସମସ୍ତଙ୍କ ମନରେ କେତେ ଅବଶୋଷ ହୋଇ ନ ଥା'ନ୍ତା । କିନ୍ତୁ ଆଜି ଗୋଟାଏ ଆଦର୍ଶ ପାଇଁ ମୁଁ ପ୍ରାଣ ବିସର୍ଜନ କରୁଛି । ସେଥିରେ ମୋ'ର ହୃଦୟର ପ୍ରତିକୋଣ ଆନନ୍ଦରେ ଭରିଉଠୁଛି । ଫାଶୀକାଠଟା ମୋ' ପକ୍ଷରେ ଇଂରେଜ ଜଜ୍‌ର ରସିକତା ବୋଲି ମନେହେଉଛି । ମୋ'ର ଏହା ଅନ୍ତିମ କଥା, ମୋ' ଅନ୍ତରର ପ୍ରତିଧ୍ୱନି ।

ମା' ତୁ କିନ୍ତୁ ମୋ'ଠାରୁ କୌଣସି କୈଫିୟତ ମାଗିପାରିବୁନି । ତୁ ହୁଏତ ଜାଣୁନା ଯେ ତୁ ତୋର ନିଜ ପ୍ରୟୋଜନ ପାଇଁ ଆମକୁ ଜନ୍ମଦେଇନୁ । ଆମ୍ଭେମାନେ ହଜାର ହଜାର ବର୍ଷ ହେବ ତୁମ୍ଭମାନଙ୍କର ଅର୍ଥାତ୍ ଦେଶର ମା'ମାନଙ୍କର ଅଜ୍ଞାତସାରରେ ଜନ୍ମହୋଇଥିଲୁ । ଆଜି ଧୀରେ ଧୀରେ ଆମ୍ଭେମାନେ ଆତ୍ମପ୍ରକାଶ କରୁଛୁଁ ।

ମୁଁ ଚିରଦିନହିଁ ଜାଣେ ଯେ ମୁଁ ଭାରତୀୟ ଓ ତୁ ଭାରତ— ଗୋଟିଏ ପଦାର୍ଥ । କୌଣସି ଦିନ ଏ ଦୁଇଟିକୁ ମୁଁ ପୃଥକ୍‌ରୂପେ ଦେଖିପାରିନି । ଯୁଗ ଯୁଗ ଧରି ତୁ ଯେଉଁ ଲାଞ୍ଛନା ଓ ନିର୍ଯାତନା ସହ୍ୟକରିଆସିଛୁ, ମାଟିକାମୁଡ଼ି ମୂକ ପଶୁଭଳି ମାଡ଼ଖାଇ ଆସିଛୁ ଏବଂ ତା' ବିରୋଧରେ ତୋ' ମନରେ ଯେଉଁ ବିଦ୍ରୋହର ଧାରା ଅନ୍ତଃସଲିଳା ଫଲ୍‌ଗୁଭଳି ବହିଚାଲିଥିଲା ମୁଁ ସେହି ପୁଂଜୀଭୂତ ବିଦ୍ରୋହ ।

ସେହି ବିଦ୍ରୋହ ଆଜି ଯଦି ଆତ୍ମପ୍ରକାଶ କରେ, ତେବେ ସେଥିଲାଗି ଚକ୍ଷୁର ଲୋତକ ବର୍ଷଣ କରିବୁ କାହିଁକି ? ମୋ'ର ଏଇ କଥାଟା ଖୁବ୍ ସତ୍ୟ ବୋଲି ମନେକର ଏବଂ ତୋତେ ଯଦି କେହି ଖୁନୀ ବା ଡକାୟତର ମା' ବୋଲି ପରିହାସ କରେ, ତା'ହେଲେ ତୁ ତୋର ଜ୍ଞାନଦ୍ୱାରା, ଅନ୍ତରର ନିରୁପମ ସୌନ୍ଦର୍ଯ୍ୟ ବହନକରି ନିରବରେ କରୁଣ ନେତ୍ରରେ ତା'ର ଅଜ୍ଞାନତାକୁ କ୍ଷମାଦେବୁ ।

ମନୁଷ୍ୟକୁ ଆମେ ଖୁନ୍ କରୁନା । ମନୁଷ୍ୟକୁ ତ ଆମେ ବଞ୍ଚାଉ । ଦେଶରେ ଆଜି ଏହା କେହି ବୁଝି ନାହାନ୍ତି । ବଙ୍ଗଳା ବିପ୍ଳବର ଇତିହାସ ବା କେଇଦିନର ? ସେଥିପାଇଁ ଆମର ଆଦର୍ଶ ଆଜିଯାଏ ପ୍ରଚାରିତ ହୋଇନି । ହୁଏତ ସେଥିପାଇଁ ଲୋକେ ଆମକୁ ଭୁଲ ବୁଝନ୍ତି କିମ୍ବା ଜାଣି ମଧ୍ୟ ଜାଣିବାକୁ ଚେଷ୍ଟା କରନ୍ତି ନାହିଁ ।

ଆମକୁ ଗାଳିଦେବା ଲୋକର ଅଭାବ ନାହାନ୍ତି । ଇଂରେଜ ଆମକୁ କଳା ରଙ୍ଗରେ ଚିତ୍ରିତକରେ । ଏଥିରେ ଅବଶ୍ୟ ଦୁଃଖ କରିବାର କିଛି ନାହିଁ । କିନ୍ତୁ ଭାରି ଦୁଃଖ ହୁଏ ଯେତେବେଳେ ଅହିଂସାବାଦୀମାନେ ଆମକୁ ହିଂସ୍ର ବୋଲି କହି ନିନ୍ଦାକରନ୍ତି । ସେତେବେଳେ ମନେହୁଏ, ପରାଧୀନ ଦେଶରେ ଏଇଟା ବୋଧହୁଏ ସବୁଠାରୁ ବଡ଼ ଅଭିଶାପ ।

ଆମେ ଆଜି ଯେଉଁ ଆଦର୍ଶ ପାଇଁ ସଂଗ୍ରାମ କରୁଛୁ, ତାହା ଅହିଂସାବାଦୀମାନଙ୍କର କଳ୍ପନାତୀତ । ମାନବର ହିଂସ୍ରତାରୁ ମାନବକୁ ରକ୍ଷାକରିବାକୁହିଁ ଆମର ଏ ପ୍ରୟାସ । ବଙ୍ଗଳାର ସଙ୍ଗଠିତ ସଶସ୍ତ୍ର ବିପ୍ଳବ ମାତ୍ର ପଚିଶ ବର୍ଷର ଶିଶୁ । ଆଜି ବି ତାହା ଭଲକରି କଥା କହି ଶିଖି ନାହିଁ । ସେଥିପାଇଁ ଅନେକଙ୍କ ଚିତ୍କାର ଭିତରେ ସେ ଶିଶୁର କଣ୍ଠସ୍ୱର ସ୍ତବ୍ଧହୋଇଯାଉଛି । କିନ୍ତୁ ଆଜି ସେହି ଶିଶୁ କଣ୍ଠରୁ ଯେଉଁ ପାଞ୍ଚଜନ୍ୟ ବାଜିଉଠିଛି, ତାହା ଖୁବ୍ ଶୀଘ୍ର ଜଗତକୁ ବିସ୍ମୟବିମୂଢ଼ କରିଦେବ ।

ଲୋକେ ଆମକୁ ଭାବପ୍ରବଣ ବୋଲି ପରିହାସକରନ୍ତି । କିନ୍ତୁ ମୁଁ ଏହା ଭାବି ପୁରିବା ପାରେନା ଯେ ହଜାର ହଜାର ଯୁବକ-ଯୁବତୀ ଯେଉଁମାନେ ନିହାତି ପିଲା ନୁହଁନ୍ତି, ଯେଉଁମାନେ ଯଥେଷ୍ଟ ପାଠ ପଢ଼ିଛନ୍ତି ଏବଂ ଅନେକ ଅଭିଜ୍ଞତା ଅର୍ଜନ କରିଅଛନ୍ତି, ସମସ୍ତେ ଏକାବେଳକେ ଭାବପ୍ରବଣ ହେବେ କେମିତି ?

ସାଧାରଣତଃ ବୃଦ୍ଧମାନେ ଆମକୁ ଭ୍ରାନ୍ତ ଯୁବକ ବୋଲି କହନ୍ତି ଏବଂ କରୁଣାରେ ବିଗଳିତ ହୋଇ ବା ସ୍ୱତଃପ୍ରବୃତ୍ତ ହୋଇ ଆମକୁ କୁଆଡ଼େ ଏହି ଭ୍ରାନ୍ତ ପଥରୁ ନିବୃତ୍ତ କରିବାକୁ ଉଦ୍ୟମ କରୁଅଛନ୍ତି, ଏପରିକି ସେଥିପାଇଁ ସେମାନେ କୁଆଡ଼େ ଗୋଟାଏ କମିଟି ଗଠନ କରିବା ପର୍ଯ୍ୟନ୍ତ ଗଲେଣି । ବୁଝିଲୁ ମା', ଏଥିରେ କିଛି ନାହିଁ, ଏହା ଖାଲି ଚାଲାଖି । ଅସଲ କଥାଟା କଣ ଜାଣୁ ମା' ? ଯେଉଁମାନେ ଏମିତି ଉଠିପଡ଼ି ଆମକୁ ଆମ ରାସ୍ତାରୁ ଫେରାଇଆଣିବାକୁ ଚେଷ୍ଟା କରୁଅଛନ୍ତି ସେମାନେ ହୁଏତ ଅଥର୍ବ ନଚେତ୍ କାପୁରୁଷ । କାହାକୁ ବ୍ୟକ୍ତିଗତ ଭାବେ ଆଘାତଦେବା ମୋ'ର ଉଦ୍ଦେଶ୍ୟ ନୁହେଁ, କିନ୍ତୁ କଥାଟା ଦିବାଲୋକଭଳି ସତ୍ୟ । ବିପ୍ଳବଟା କିଛି ଆମର ବ୍ୟକ୍ତିଗତ ସଂପତ୍ତି

ନୁହେଁ, ମାନବଜାତିକୁ ଧ୍ୱଂସମୁଖରୁ ରକ୍ଷା କରିବା ପାଇଁ ଯୁଗେ ଯୁଗେ ଏହାର ପ୍ରୟୋଜନ ହୋଇଛି ।

ଯେଉଁମାନେ ବୃଦ୍ଧ ସେମାନେ ଆମର ପୂଜ୍ୟ, ସେମାନଙ୍କୁ ମୁଁ ପ୍ରମାଣ କରୁଅଛି । କିନ୍ତୁ ଜରାଗ୍ରସ୍ତ ଦେହ ଓ ମନ ନେଇ କୌଣସିମତେ କଷ୍ଟେମଷ୍ଟେ ବଞ୍ଚିରହିବାକୁ ସେମାନେ ଜୀବନର ଶ୍ରେୟ ବୋଲି ମନେକରୁଥିବାରୁ ଏବଂ ବର୍ଷାଜଳ ସ୍ରୋତରେ ଭାସିଆସୁଥିବା ଘାସ ଗୁଣ୍ଡିଭଳି ସେମାନେ ଆମ ପଛେ ପଛେ ଲାଗିଥିବାରୁ ସେମାନଙ୍କ ଉପରେ ବିରକ୍ତ ନ ହୋଇ ରହିହେଉନାହିଁ । ତେଣୁ ବାଧହୋଇ ସେମାନଙ୍କୁ ଶିଶୁର ପର୍ଯ୍ୟାୟରେ ଗଣିବାକୁ ପଡୁଛି । ଯେଉଁମାନଙ୍କର ପ୍ରତ୍ୟେକ ରକ୍ତବିନ୍ଦୁ ଦାସତ୍ୱର କଳଙ୍କରେ କଳଙ୍କିତ ସେମାନଙ୍କ କଥା ମୁଁ ଭାବୁନି । ପ୍ରକୃତିର ଅନିବାର୍ଯ୍ୟ ନିୟମ ଅନୁସାରେ ସେମାନେ ନିଜର କ୍ଷତରେ ପଚିସଢ଼ି ଏବଂ ନିଜ ଖୋଳା ଗାତରେ ପଡ଼ି ପଡ଼ି ମରିବେ ।

କିନ୍ତୁ ଯେଉଁମାନେ ମଧ୍ୟମପନ୍ଥୀ, ଆପୋଷ ମୀଂମାସାରେ ଯେଉଁମାନେ ଆଜି ମଧ୍ୟ ବିଶ୍ୱାସ କରନ୍ତି, ସେମାନଙ୍କ ପାଇଁ ଦୁଃଖ ହୁଏ । ସେମାନଙ୍କର ଶିକ୍ଷାଦୀକ୍ଷା ଅଛି, ଅଭିଜ୍ଞତା ବି ଅଛି, ନାହିଁ କେବଳ ଆତ୍ମସମ୍ମାନ ଜ୍ଞାନ । ଏହି ଜ୍ଞାନ କାହାକୁ ଜୋର୍ କରି ଶିଖାଯାଏନା ବା ବୁଝାଇବାକୁ ପଡ଼େନା । ଏଟା ତ ଯୌବନର ସ୍ୱାଭାବିକ ଧର୍ମ !

ତୋତେ ମୋ' ଆଖି ଆଗରେ ଯଦି କେହି ନିର୍ଯାତନା ଦିଏ ଏବଂ ମୁଁ ଯଦି ସଙ୍ଗେ ସଙ୍ଗେ ପାଗଳଭଳି ତା' ଉପରେ ଝାଂପିନପଡ଼ି ଏହାର ବିଚାର କରିବାକୁ ବସି ହିସାବ କରେ ଯେ ଏହି ଝାଂପିବାଦ୍ୱାରା କିଛି ଲାଭ ହେବ କି ନା– ଏଥିରେ କେତେ ବିପଦ ଅଛି, ମୁଁ ଏକା ଏକା ତାହା ସହ ଲଢ଼ିପାରିବି କି ନା କିମ୍ବା ଏ ସଂପର୍କରେ ଥାନାରେ ଏତଲା ଦେଇ କିମ୍ବା ସେ ଲୋକର ସନ୍ଧାନ ନେଇ ତାକୁ ଜେଲରେ ଭର୍ତ୍ତିକରାଯାଇପାରେ କି ନା ଏବଂ ସେ ଯଦି ନିହାତି ଧରାନପଡ଼େ, ତେବେ ତା' ବିରୋଧରେ ଖବରକାଗଜରେ କଡ଼ା କଡ଼ା ବିବୃତି ଦିଆଯାଇ ପାରେ କି ନା ଇତ୍ୟାଦି ଇତ୍ୟାଦି, ତେବେ ତଦ୍ୱାରା ଅବଶ୍ୟ ମୋ'ର ଧୀର ମସ୍ତିଷ୍କ ଓ ବୁଦ୍ଧିମତ୍ତାର ପରିଚୟ ମିଳିବ; କିନ୍ତୁ ତା ସଙ୍ଗେ ସଙ୍ଗେ ତୋ'ର ମାତୃହୃଦୟଟା କ'ଣ ଛି ଛି କରି କହିବ ନାହିଁ ଯେ– ପିଲାବେଳୁ ଏହାକୁ କ୍ଷୀର ସାଙ୍ଗରେ ବିଷଦେଇ ଏ କ୍ଳେଦାକ୍ତ ପିଣ୍ଡଟାକୁ କାହିଁକି ଫୋପାଡ଼ି ନ ଦେଲି ? ଏ କଥାଟା ନିରାଟ ସତ୍ୟ ।

କି ଅମୃତର ସ୍ପର୍ଶରେ ମରିବା ଆଗରୁ ଆମର ଓଜନ ବଢ଼ିଯାଉଛି – ତାହା ସାଧାରଣ ଲୋକ ବୁଝିପାରନ୍ତିନି ବୋଲି ବିସ୍ମୟରେ ଅବାକ୍ ହୋଇଯାଆନ୍ତି । ନଚେତ୍ ଏହା ଗୋଟାଏ ହିସାବନିକାଶ କଥା ଛଡ଼ା ଆଉ କିଛି ନୁହେଁ ।

ଅଧିକ କ'ଣ ବା ଲେଖିବି ? ଜୀବନରେ ଅନେକ ଆଶା ଥିଲା– ଏ ଆଦର୍ଶକୁ ଦେଶର କୋଣେ କୋଣେ ପ୍ରଚାରକରିବି, ନୂଆଯୁଗର କୁସଂସ୍କାରମୁକ୍ତ ଆଦର୍ଶ ନେଇ

ଜାତି ଓ ସମାଜକୁ ନୂଆ ରୂପ ଦେବାକୁ ଉଦ୍ୟମ କରିବି, ଏକାବେଳକେ ଆମୂଳ ସଂସ୍କାର କରି ଗୋଟିଏ ନୂଆ ଜାତି ଗଠନକରିବି, ସମସ୍ତ ଗ୍ଲାନି, ସମସ୍ତ ଆବର୍ଜ୍ଜନା ଧୋଇ ପୋଛି ପରିଷ୍କାର କରିଦେଇ ଯିବି । କିନ୍ତୁ ମଣିଷର ଜୀବନ ଆଶ୍ଚର୍ଯ୍ୟଜନକ— ହଠାତ୍ ଗୋଟାଏ ଡାକରା ଆସିଲା, ମୋତେ ଯିବାକୁ ପଡୁଛି ।

କିନ୍ତୁ ଏ କଥା କେବେଁ ମନେକରିବୁ ନାହିଁ ଯେ ମୋ' ସହ ମୋ'ର ସମସ୍ତ ଚିନ୍ତା ଓ ସମସ୍ତ ଆଶା ମଧ୍ଯ ଲୋପ ପାଇଗଲା ବୋଲି । ସବୁ ରହିଗଲା ମୋ' ଦେଶର କୋଟି କୋଟି ଯୁବକ-ଯୁବତୀଙ୍କ ମନ ମଧରେ ଓ ମା'ମାନଙ୍କର ମନ ମଧ୍ୟରେ ।

ବଙ୍ଗଭୂମି ଏତେ ଉର୍ବର ଯେ ଶସ୍ୟଭାରରେ ତାହା ଉଛୁଳିପଡୁଛି । ଏ ବର୍ଷର ମାର୍ଗଶିର ମାସରେ ଯେଉଁ ଫସଲ ଅଙ୍କୁରିତ ହେବା ପୂର୍ବରୁ ଶୁଖିଗଲା, ହେମନ୍ତର ଆଗମନ ସଙ୍ଗେ ସଙ୍ଗେ ସେଥିରେ ଦୁଇଗୁଣ ଫୁଲ ଫୁଟିଉଠିବ । ତା'ପରେ ଫସଲ ଏ ଦେଶରେ ସୁନାର ବନ୍ୟା ପ୍ରବାହିତ କରିଦେବ ।

X X X X

ମା' ! ତୋର ପ୍ରଦ୍ୟୋତ କ'ଣ କେବେ ମରିପାରେ ? ଆଜି ଚାରିଆଡ଼କୁ ଦେଖ— ଲକ୍ଷ ଲକ୍ଷ ପ୍ରଦ୍ୟୋତ ତୋ' ଆଡ଼କୁ ଚାହିଁ ହସୁଛନ୍ତି । ମୁଁ ବଞ୍ଚିରହିଲି ମା' ଅମର ହୋଇ । 'ବନ୍ଦେ ମାତରମ୍' ।

ମା'ଙ୍କ ପାଖକୁ ଏ ଚିଠିଖଣ୍ଡିକ ଗୋପନରେ ପଠାଇଦେବାର ବ୍ୟବସ୍ଥା କରିଦେଇ ନିଶ୍ଚିତ ଓ ନିରୁଦ୍‌ବିଗ୍ନ ମନରେ ଶୋଇଗଲେ ବୀର ପ୍ରଦ୍ୟୋତ । ଯେଉଁ ଲୋକ 'ଫାଶୀ ଦଣ୍ଡକୁ ଇଂରେଜର ରସିକତା' ବୋଲି ବିଦ୍ରୂପ କରେ— ଫାଶୀ ପୂର୍ବ ରାତ୍ରିରେ ତା'ର ଚିନ୍ତା କ'ଣ ? ସେ ତ ମୃତ୍ୟୁଞ୍ଜୟୀ ଋଷି କୁମାର ! ଅହିଂସାବାଦୀ ତାହାକୁ ଉଦ୍‌ଭ୍ରାନ୍ତ କୁହନ୍ତୁ ବା ଭାବପ୍ରବଣ କହନ୍ତୁ ପଛେ ସେ ଠିକ୍ ବୁଝିଛି ଯେ ଖାଲି କୌଣସି ପ୍ରକାରେ ବଞ୍ଚି ରହିବା 'ମୃତ୍ୟୁ'ର ନାମାନ୍ତର ମାତ୍ର । ଦେଶପାଇଁ, ଆଦର୍ଶପାଇଁ, ଧର୍ମପାଇଁ ଆତ୍ମଦାନ କେଭେ ଆତ୍ମହତ୍ୟା ନୁହେଁ । ଏହା ଦେଶମାତୃକାର ପବିତ୍ର ପୂଜାପୀଠରେ ଆତ୍ମବଳିଦାନର ମହୋତ୍ସବ । 'ମୃତ୍ୟୁ' ତା'ନିକଟରେ ଭୟଙ୍କର ବା ଆତଙ୍କଜନକ ନୁହେଁ ।

୧୯୩୩ ମସିହା ଜାନୁୟାରୀ ୧୨ ତାରିଖ ଦିନ ବିପ୍ଲବୀ ପ୍ରଦ୍ୟୋତଙ୍କର ଫାଶୀ ହେଲା । ସେ ହସିହସି ଏବଂ 'ବନ୍ଦେ ମାତରମ୍' ଗାନକରୁକରୁ ଫାଶୀଖୁଣ୍ଟରେ ଆରୋହଣ କରିଥିଲେ ।

X X X X

ଆର. କେ. ଡଗଲାସ୍‌ର ମୃତ୍ୟୁ ପରେ ମେଦିନୀପୁର ଜିଲ୍ଲା କଲେକ୍ଟର ପେଡିଡ୍‌କୁ ମଧ୍ୟ ହତ୍ୟାକରାଯାଇଥିଲା । କିନ୍ତୁ ପୁଲିସ ଶତ ଚେଷ୍ଟା ସତ୍ତ୍ୱେ ହତ୍ୟାକାରୀକୁ ଧରି ପାରି ନ ଥିଲା । ଯେଉଁ କେତେ ଜଣଙ୍କୁ ସନ୍ଦେହରେ ଗିରଫକରାଗଲା, ସେମାନଙ୍କ ବିରୋଧରେ ସାକ୍ଷ୍ୟ ଦେବାକୁ ମେଦିନୀପୁରରେ କେହି ଜଣେହେଲେ ବାହାରିଲେନାହିଁ ।

ଅଳ୍ପଦିନ ପରେ ତୃତୀୟ ମାଜିଷ୍ଟ୍ରେଟ ମିଷ୍ଟର୍‌ ବାର୍ଜ୍ଙ୍କ ମୁଣ୍ଡରେ ଠେଙ୍ଗାପଡ଼ିଲା । ପୁଲିସ ଲାଇନରେ ସେଦିନ ଫାଇନାଲ ଫୁଟବଲ ଖେଳ ହେଉଥିଲା ଏବଂ ସେଥିରେ ମୁଖ୍ୟ ଅତିଥି ଥିଲା ବାର୍ଜ୍ଜ । ସେହି ସୁଯୋଗରେ ବେଙ୍ଗଲ ଭଲିଣ୍ଟିୟର୍ସ ଦଳର ବିପ୍ଳବୀମାନଙ୍କ ପକ୍ଷରୁ ବିପ୍ଳବୀ ଅନାଥ ପାଞ୍ଜା ଓ ମୃଗେନ ଦତ୍ତ ରିଭଲଭର ଚଳାଇ ବାର୍ଜ୍‌କୁ ସେଇଠି ହତ୍ୟାକଲେ । ଶେଷରେ ସେହି ହତ୍ୟା ଅଭିଯୋଗରେ ମେଦୀନପୁରର ରାମକୃଷ୍ଣ ରାୟ ଏବଂ ବ୍ରଜକିଶୋର ଚକ୍ରବର୍ତ୍ତିଙ୍କୁ ଫାଶୀହୋଇଗଲା ।

ଜେଲଖାନାରେ ଲିଖିତ ରାମକୃଷ୍ଣ ଓ ବ୍ରଜକିଶୋରଙ୍କ ଦୁଇଟି ଚିଠି ଏଠାରେ ଉଦ୍ଧୃତ ହେଲା । ଏହି ଦୁଇଟି ଅଗ୍ନିଶିଶୁ ରବୀନ୍ଦ୍ର କାବ୍ୟନିମଗ୍ନତାରୁ କିଭଳି ଆନନ୍ଦରୂପମୃତମ୍‌ ଅର୍ଥାତ୍‌ ନିଜର ଆନନ୍ଦରୂପକୁ ଅମୃତରୂପକୁ ସୃଷ୍ଟିକରି ମୃତ୍ୟୁର ଅପେକ୍ଷାରେ ଥିଲେ, ତାହା ଏହି ପତ୍ରଗୁଡ଼ିକରେ ସ୍ୱାକ୍ଷରିତ ହୋଇଛି ।

ସହିଦ ଶ୍ରୀ ରାମକୃଷ୍ଣ ରାୟଙ୍କ ଚିଠି (ମା'ଙ୍କ ପାଖକୁ)

ମେଦିନୀପୁର ସେଣ୍ଟ୍ରାଲ ଜେଲ
୨ ଅକ୍ଟୋବର ୧୯୩୪

ଶ୍ରୀଚରଣେଷୁ,

ମା', ବହୁତ ଦିନ ହେବ ତୋ'ର କିଛି ଖବର ପାଇନାହିଁ । ଆଶାକରୁଛି ସମସ୍ତେ କୁଶଳରେ ଅଛନ୍ତି । ମା', ଆଜି ମୋ' ହୃଦୟରେ ଯେ କି ସୁଖ ଅନୁଭବ କରୁଛି ତାହା ମୁଁ ନିଜେ ବି ବୁଝିପାରୁନାହିଁ । କିଏ ଯେମିତି ଆଲୁଅ ଦେଖାଇ ମୋତେ ଡାକୁଛି— "ଆ, ଆ, ଫେରିଆ । ସେଠାରେ ତୋର ସ୍ଥାନ ନାହିଁ । ଏହି ଅନନ୍ତ କୋଳରେ ତୋ'ର ସ୍ଥାନ ।" ତା'ର ଡାକରାରେ ମୁଁ ଆତ୍ମହରା ହୋଇ ଛୁଟିଚାଲିଛି । କୁଆଡ଼େ ଚାଲିଛି, କାହିଁକି ଚାଲୁଛି, କିଛି ବୁଝିପାରୁନାହିଁ ।

ମା', ତୁମକୁ ସବୁ ମୁଁ ଛାଡ଼ି ଚାଲିଯାଉଛି ବୋଲି ଦୁଃଖ କରିବୁ ନାହିଁ, କାରଣ ଏଠାକୁ ଯେଉଁମାନେ ଆସିଛନ୍ତି ସମସ୍ତଙ୍କୁ ଫେରିବାକୁ ପଡ଼ିବ । ଏ ପୃଥିବୀ ଗୋଟିଏ ବଜାର ଭଳି । ଏଠାରେ ସଉଦା କର ବା ନ କର, ଏଠାରୁ ଫେରିବାକୁ ପଡ଼ିବ । ଯାହାର ଇଚ୍ଛାରେ ଏ ପୃଥିବୀ ଚାଲିଛି, ଯାହାର ଅଙ୍ଗୁଳି ଚାଳନାରେ ସମସ୍ତ ଦୁନିଆ ଓଲଟ ପାଲଟ ହେଉଛି, ସେହି ଅନନ୍ତ ପୁରୁଷଙ୍କର ଡାକରା ଆସିଲେ ଚାଲିଯିବାକୁ ହେବ । "ତା'ର ଇଚ୍ଛାଇ ପୂର୍ଣ୍ଣ ହବେ ସକଲ ଜୀବନ ମାଝେ ।"

ମା', ମୁଁ ତୋର ହତଭାଗ୍ୟ ସନ୍ତାନ । ପୃଥିବୀକୁ ଆସି କେବଳ ତୋତେ ଦୁଃଖ ଓ ଅଶାନ୍ତିହିଁ ଦେଇଗଲି । ତୋ' ପ୍ରତି ମୋ'ର କୌଣସି କର୍ତ୍ତବ୍ୟହିଁ କରିପାରିଲିନାହିଁ, ସେଥିପାଇଁ ମୋତେ କ୍ଷମାକରିବୁ । ବହୁ ତପସ୍ୟା ଓ ଆରାଧନାରେ ମୁଁ ତୋ' ଭଳି ମା' ପାଇଛି । କିନ୍ତୁ ବିଧାତା ମୋତେ ବେଶୀଦିନ ତୋ ଚରଣରେ ସ୍ଥାନ ଦେଲେ ନାହିଁ । ମା', ଆଜିପର୍ଯ୍ୟନ୍ତ ତୋତେ କେବଳ ଦୁଃଖଦେଇଗଲି । କେବଳ ଏତିକି ଆଶା ନେଇ ଯାଉଛି ଯେ ଜନ୍ମେ ଜନ୍ମେ ତୋ' ଭଳି ମା' ମୋତେ ମିଳନ୍ତୁ ।

ମା', କେବଳ ଏତିକି ଭାବୁଛି, "ତୁ ଯେମିତି ମୋ' ପାଇଁ ଚିନ୍ତା କରି କରି ଶରୀର ନଷ୍ଟ ନ କରୁ । ତାହାହେଲେ ମୁଁ କେତେ କଷ୍ଟ ପାଇବି । ଗନା, ଭୁଜଙ୍ଗ, ଖୋକନ୍, ଡଲି ଓ ମେଜଦାର ପୁଅ ଏମାନଙ୍କୁ ଦେଖି ମୋତେ ଭୁଲିଯିବାକୁ ଚେଷ୍ଟାକରିବୁ ।

ମୋ'ର ଶତକୋଟି ଭୂମିଷ୍ଠ ପ୍ରଣାମ ଗ୍ରହଣ କରିବୁ । ହଉ ତେବେ ଆସୁଛି, ମା' ! ତୋ' କୋଳରୁ ଚିରବିଦାୟ ନେଇ ଚାଲିଲି । ଶ୍ରୀମଦ୍‌ଗୀତା ଖଣ୍ଡିକ ତୋ' ପାଇଁ ପଠାଇଲି । । ଇତି ।

ପତ୍ର-୧ (ସହିଦ ଶ୍ରୀ ବ୍ରଜକିଶୋର ଚକ୍ରବର୍ତ୍ତିଙ୍କ ଚିଠି ମା'ଙ୍କ ପାଖକୁ)

ଶ୍ରୀ ଶ୍ରୀ ହରିଶରଣମ୍

ମଙ୍ଗଳବାର
୨-୧୦-୧୯୩୪

ଶତକୋଟି ଭୂମିଷ୍ଠ ପ୍ରଣାମ,

ମା', ତୋର ପତ୍ର ପାଇଲି । ଯଦିଓ ମୁଁ ତୋର ଅନ୍ଧାରଘରର ଆଲୁଅ ଥିଲି ଏବଂ ଯଦିଓ "ଭାରତର ମହାମାନବର ସାଗରତୀରରୁ ସବୁ ପାଇଛି" ଏହି ଦେଶରୁ ବିଦାୟ ନେଇ ଚାଲିଯାଉଛି । ତଥାପି ମୁଁ ନିଶ୍ଚୟକରି କହିଯାଉଛି ଯେ ତୋ' ଘର କଦାପି ଅନ୍ଧାର ହେବ ନାହିଁ । ଏହି 'ଯୋଗସାଧନା ରହସ୍ୟ' ବହିଟି ଦେଇଗଲି ତୋ' ପାଇଁ । ଯଦିଓ ତୋ'ର ଅତ୍ୟଧିକ ବୟସ ଏବଂ ଅର୍ଥାଭାବ ତୋ'ର ଶୋକକୁ ବଢ଼ାଇଦେବ, ତଥାପି ମୋ'ର ବିଶ୍ୱାସ, ଚନ୍ଦ୍ରର ଆଲୋକ, ସୁମଧୁର ପବନ ଏବଂ ଆକାଶର ପକ୍ଷୀ ଗୀତ ଗାଇ କହିବେ, "କ୍ଷୁଦ୍ର ହୃଦୟଦୌର୍ବଲ୍ୟ ପରିତ୍ୟାଗ କରି ଉଠ ।"

ମା', ତୋ' ଭଳି ଗୁଣବତୀ ମା'ର କୋଳରେ ଜନ୍ମଗ୍ରହଣ କରି ମଧ୍ୟ ଭଗବାନ୍‌ଙ୍କ କାର୍ଯ୍ୟ, ପାଞ୍ଚଜଣଙ୍କ କାର୍ଯ୍ୟ କିଛି ହେଲେ କରିପାରିଲିନାହିଁ, ସେଥିପାଇଁ ତୋ' ନିକଟରେ କ୍ଷମା ଚାହୁଁଛି । ତୋ'ଠାରୁ ଯେଉଁ ସ୍ନେହ ଶ୍ରଦ୍ଧା ପାଇଛି ସେଥିପାଇଁ ମୁଁ ଧନ୍ୟ ।

ମା', ଠାକୁର ମା, ପିସୀମା, କାକୀମା ଓ ଅନ୍ୟ ସବୁ ଗୁରୁଜନମାନଙ୍କୁ କହିବୁ ସେମାନଙ୍କଠାରୁ ମୋ'ର ଅକ୍ଷମତା ପାଇଁ କ୍ଷମା ଚାହୁଁଛି ଓ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି ଏବଂ ଶେଷ ବିଦାୟ ନେଉଛି ।

ମା', ଫେରିଆସିବାର ଯଦି କୌଣସି ବାଟ ଥାଏ, ତେବେ ଏଇ 'ସବୁ ପାଇଛି' ଦେଶକୁ ନିଶ୍ଚୟ ଫେରିଆସିବି ।

ମୋ'ର ମା', ମା' ମୋର, ପ୍ରଣାମ ନେବୁ ।

"ତବେ ଆମି ଯାଇ ଗୋ' ତବେ ଯାଇ,
ଭୋରେର୍ ବେଲା ଶୂନ୍ୟ କୋଲେ ଡାକବି ଯଖନ 'ବେଙ୍ଗା' ବଲେ,
ବଲ୍‌ବୋ ଆମି ନାଇଗୋ, 'ବେଙ୍ଗା' ନାହିଁ, ମାଗୋ ଯାଇ ।" । ଇତି ।

ପତ୍ର-୨ (ବାପାଙ୍କ ପାଖକୁ)

ମଙ୍ଗଳବାର
୨୧-୧୦-୧୯୩୪

ଶତକୋଟି ଭୂମିଷ୍ଠ ପ୍ରଣାମ,

ବାବା, ଚାରିବର୍ଷ ତଳେ ଆପଣ କହିଥିଲେ ଯେ ଯେତେବେଳେ ମୋ'ର ଚନ୍ଦ୍ରଦଶା ପଡ଼ିବ, ସେତେବେଳେ ମୋତେ ବାରବର୍ଷ ପ୍ରବାସରେ ରହିବାକୁ ପଡ଼ିବ, ଏପରିକି, ମୋ'ର ମୃତ୍ୟୁ ହେବା ମଧ ଅସମ୍ଭବ ନୁହେଁ । ଆପଣଙ୍କର ଏହି କଥା ଆଜି ଅକ୍ଷରେ ଅକ୍ଷରେ ସତ୍ୟହୋଇଛି । ବାବା, ଆପଣଙ୍କ ଭଳି ଦୂରଦର୍ଶୀ ବିଦ୍ୱାନ୍ ପଣ୍ଡିତ ଘରେ ଜନ୍ମ ହୋଇ ମୁଁ ଧନ୍ୟ । ହୁଏତ ମୁଁ ଅକ୍ଷମ କିମ୍ବା ଆପଣଙ୍କ ପଦସେବା କରିବାକୁ ଅଯୋଗ୍ୟ । ସେଥିପାଇଁ କିଛି ହେଲେ କରିପାରିଲିନାହିଁ । ମୋର ଗର୍ବକଲାଭଳି ଭଗବତ୍ ବିଶ୍ୱାସ ନାହିଁ । ତେବେ ଯେତିକି ଅଛି, ସେଥିରେ ମୁଁ ଅନ୍ତତଃ ଏଭଳି କହିପାରେ ଯେ ଆପଣଙ୍କର ଯେ ଭଗବାନ୍ – ସେଇ ତ ମୋ'ର ଇଷ୍ଟଦେବତା ।

"ତାରି ମାଝେ ଯା'ବ ଅଭିସାରେ,
ତା'ର କାଛେ– ଜୀବନ ସର୍ବସାଧନ ଅର୍ପିଯାଛି ଯାରେ,
ଜନ୍ମ ଜନ୍ମ ଧରି, କେସେ ? ଜାନିନାଇକେ, ଚିନିନାଇ ତା'ରେ
ସୁଧୁ ଏଇଟୁକୁ ଜାନି– ତାରି ଲାଗି ରାତ୍ରି ଅନ୍ଧକାରେ
ଚଲେଛେ ମାନବ ଯାତ୍ରୀ ।"

ବାବା, ମୋର ଅପରାଧ କ୍ଷମାକରନ୍ତୁ । ଆପଣଙ୍କ ଚରଣଧୂଳି ମୋର ପଥର ସମ୍ବଳ ହେବ । ଗୁରୁଜନମାନଙ୍କୁ ମୋତେ କ୍ଷମା ଦେବାକୁ କହିବେ । ସେମାନଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି ଓ ବିଦାୟଚାହୁଁଛି । ଆପଣଙ୍କୁ ସାନ୍ତ୍ୱନା ଦେବାଭଳି ଭାଷା ନାହିଁ କିମ୍ବା କ୍ଷମତା ନାହିଁ । ମୋର ବିଶ୍ୱାସ, ଆପଣ ସମସ୍ତଙ୍କୁ ସାନ୍ତ୍ୱନା ଦେଇ ଶାନ୍ତ କରିବେ । ଫେରିଆସିଲେ ଆପଣଙ୍କ ଭଳି ମହାପୁରୁଷଙ୍କର ଚରଣଧୂଳିରୁ ବଞ୍ଚିତ କରିବେ ନାହିଁ । ଏହା ମୋର ଶେଷ ପ୍ରାର୍ଥନା ।

ଆପଣଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ଭକ୍ତିପୂର୍ଣ୍ଣ ପ୍ରଣାମ ଏବଂ କରଯୋଡ଼ି ଆପଣଙ୍କ ନିକଟରୁ ଇହଜନ୍ମରୁ ଶେଷ ବିଦାୟ ପ୍ରାର୍ଥନା କରୁଛି । । ଇତି ।

ପୁନଶ୍ଚ– ଜେଲଗେଟରୁ ସବୁ ବହି, ଲୁଗାପଟା ଏବଂ ବଳିଥିବା ପଇସା ନେଇଯିବେ । 'ଗୀତା' ଖଣ୍ଡିକ ଆପଣଙ୍କ ସ୍ୱହସ୍ତ କମଳରେ ଦେଇଗଲି ।

**ଆଣ୍ଡରସନ୍ ସୁଟିଂକେଶ୍ :**

କିନ୍ତୁ, ଆଣ୍ଡରସନ୍ ସୁଟିଂକେଶ' ସେ ଯୁଗର ଏକ ସର୍ବାଧିକ ସ୍ମରଣୀୟ ଘଟଣା । ମେଦିନୀପୁରରେ ଲାଗ ଲାଗ ତିନିତିନିଟା ଗୋରା କଲେକ୍ଟରଙ୍କର ହତ୍ୟା ଏବଂ ବଙ୍ଗଳାର ଚାରିଆଡ଼େ ବାରମ୍ବାର ସଶସ୍ତ୍ର ଅଭିଯାନ ସରକାରୀମହଲରେ ଘୋର ଆତଙ୍କ

ସୃଷ୍ଟିକରିଥିଲା । ବଙ୍ଗଳାରେ ବିଭିନ୍ନ ବିଭାଗରେ ବିଶେଷତଃ ଶାସନବିଭାଗରେ ବିଲାତରୁ ଯୋଗ୍ୟ ଲୋକ ମିଳିବା କଷ୍ଟକର ହୋଇପଡ଼ିଲା । ବିଲାତ ସରକାର ସ୍ଥିରକଲେ ଯେ ଜଣେ ଟାଣୁଆ ଗଭର୍ଣ୍ଣର ବଙ୍ଗଳାକୁ ନ ପଠାଇଲେ ସେଠାରେ ପ୍ରଶାସନ ଧୀରେ ଧୀରେ ବିପର୍ଯ୍ୟସ୍ତ ହୋଇପଡ଼ିବ । ଆୟର୍ଲାଣ୍ଡର ସ୍ୱାଧୀନତା ଆନ୍ଦୋଳନ ବା ସିନ୍‌ଫିନ୍ ବିଦ୍ରୋହକୁ ଦମନ କରିବାରେ ଦକ୍ଷତା ଅର୍ଜନ କରିଥିବା କୁଖ୍ୟାତ ଆଣ୍ଡରସନ୍‌କୁ ବଙ୍ଗଲାଟ ପଦରେ ଅଭିଷିକ୍ତ କରିବାକୁ ଇଂରେଜ ସରକାର ସ୍ଥିରକଲେ । ୧୯୩୪ ମସିହାର ଶେଷ ଭାଗରେ ଆଣ୍ଡରସନ୍ ବଙ୍ଗଳାର ଲାଟ୍ ଭାବେ ଗାଦିନସିନ ହେଲେ । ଆଣ୍ଡରସନ୍ ପହଞ୍ଚିବା ସଂଗେ ସଂଗେ ସତକୁସତ ସଶସ୍ତ୍ର ବିପ୍ଳବୀବୋଲି ସନ୍ଦେହକରାଯାଉଥିବା ବ୍ୟକ୍ତିମାନଙ୍କ ଉପରେ ପ୍ରବଳ ଅତ୍ୟାଚାର ଆରମ୍ଭ ହୋଇଗଲା । ମେଦିନୀପୁରବାସୀଙ୍କ ଉପରେ ସବୁଠାରୁ ବେଶୀ ଅତ୍ୟାଚାର ହେଲା । ସେଠାରେ ଗାଁଗାଁରେ ଇଂରେଜ ତୋଷାମଦକାରୀଙ୍କୁ ହାତକରି ବିପ୍ଳବୀମାନଙ୍କୁ ଜବତ କରିବାକୁ ରୀତିମତ ବନ୍ଦୋବସ୍ତ କରାଗଲା । ମେଦିନୀପୁରରେ ଘୋର ଆତଙ୍କରାଜ ସୃଷ୍ଟିକରାଗଲା । ନିରୀହ ଲୋକେ ଥରହର ହେଲେ । ସଶସ୍ତ୍ର ସଂଗ୍ରାମୀମାନେ ଏହାର ସମ୍ମୁଖୀନ ହେଲେ । ସେହିମାନଙ୍କ ପ୍ରଚେଷ୍ଟାରେ କୁଖ୍ୟାତ ସରକାରୀ ଦଲାଲ ସର୍ଦ୍ଦାର ରମଜାନ ମିଆଁ ନିହତହେଲେ ଏବଂ ସେହି ଅଭିଯୋଗରେ ବିପ୍ଳବୀ ମତିମଲ୍ଲିକ ଫାଶୀପାଇଲେ ।

ରମଜାନ ମିଆଁର ମୃତ୍ୟୁ ପରେ ସରକାରୀ କଳ ଆହୁରି କ୍ରୋଧଜର୍ଜରିତ ହୋଇପଡ଼ିଲା । ବିପ୍ଳବୀମାନଙ୍କୁ ଜବତ କରିବାକୁ ସରକାରୀ ସମର୍ଥକ, ସଂବାଦପତ୍ର ଏବଂ ଅନୁଷ୍ଠାନସବୁ ଗଭର୍ଣ୍ଣର ଆଣ୍ଡରସନ୍ ଉପରେ ବାରମ୍ବାର ଚାପପକାଇଲେ । 'ବେଙ୍ଗଲ ଚେମ୍ବର ଅଫ୍ କମର୍ସ,' 'ୟୁରୋପୀୟାନ ଆସୋସିଏସନ' ପ୍ରଭୃତି ସଂସ୍ଥା ଏବଂ 'ଷ୍ଟେଟ୍‌ସମ୍ୟାନ୍' ଓ 'ଇଂଲିଶ୍‌ମ୍ୟାନ୍' ପ୍ରଭୃତି ପତ୍ରିକା ସରକାର ସଶସ୍ତ୍ର ବିପ୍ଳବୀମାନଙ୍କ ପ୍ରତି କୋମଳ ବ୍ୟବହାର କରୁଛନ୍ତି ବୋଲି ଅଭିଯୋଗକଲେ ।

'ଇଂଲିଶ୍ ମ୍ୟାନ୍' ପତ୍ରିକା ତାଙ୍କ ସଂପାଦକୀୟରେ ଅଭିଯୋଗ କଲେ— "No track with the terrorists. Give the dog a bad name and hang him. If another European was murdered, let the assassin be shot dead."

ତେଣେ ବିପ୍ଳବୀମହଲ ମଧ୍ୟ ସ୍ଥିରକଲେ ଯେ— ''ଏଥର କଲେକ୍ଟର ବା ଏସ୍.ଡ଼ି.ଓ. ନୁହେଁ, ଖୋଦ୍ ଗଭର୍ଣ୍ଣର ଆଣ୍ଡରସନ୍ ଉପରେ ହାତ ପକାଇବାକୁ ହେବ — ତେବେ ଯାଇ ଇଂରେଜ ଜାତିର ଚେତାପଶିବ ।''

ସିଦ୍ଧାନ୍ତ ଅନୁସାରେ କାମ ବି ଆଗେଇ ଚାଲିଲା । କଲିକତାରେ କିନ୍ତୁ ସଜ ହେଲା ନାହିଁ ଆଣ୍ଡରସନ୍ ବେକରେ ହାତ ପକାଇବାକୁ । ମଇ ମାସର କଲିକତାର ଗରମରୁ ରକ୍ଷା ପାଇବା ପାଇଁ ଆଣ୍ଡରସନ୍ ଚାଲିଲେ ଗ୍ରୀଷ୍ମନିବାସ ଦାର୍ଜିଲିଂକୁ । ସୁତରାଂ ବିପ୍ଳବୀମାନେ ମଧ ଦାର୍ଜିଲିଂକୁ ଧାଡ଼ିଦେଲେ ଆଗୁଆ ବ୍ୟବସ୍ଥା କରିବାକୁ । ଆଗୁଆ

ଦଳରେ ଗଲେ ବିପ୍ଳବୀ ମନୋରଞ୍ଜନ ବାନାର୍ଜି ଓ ଉଜ୍ଜ୍ୱଳା ମଜୁମଦାର । ସନ୍ଦେହମୁକ୍ତ ରହିବାପାଇଁ ଉଜ୍ଜଳାଙ୍କ ପାଖରେ ରହିଲା ଗୋଟେ ହାରମୋନିୟମ୍ । ବାହାରକୁ ଦେଖିବା ପାଇଁ ସିନା ହାରମୋନିୟମ୍ ଭିତରେ କିନ୍ତୁ ବୁଲେଟ୍, ଡିନାମାଇଟ୍ ଓ ହାତବୋମାର ଭଣ୍ଡାର । ଉଭୟ ନିଜକୁ ଭାଇ ଭଉଣୀ ବୋଲି ପରିଚୟଦେଇ ଦାର୍ଜିଲିଂର 'ସ୍ନୋଭିଉ' ହୋଟେଲରେ ରହିଲେ ଆଣ୍ଡରସନ୍‌ର ଗତି ବିଧି ଲକ୍ଷ୍ୟକରିବାକୁ । ଏହି ପାଇଲଟ ଦୁହେଁ ଦାର୍ଜିଲିଂରେ ପହଞ୍ଚିବାର ଦୁଇଦିନ ପରେ ଆଉ ଦୁଇଜଣ ଦୁର୍ଦ୍ଧର୍ଷ ବିପ୍ଳବୀ ସେମାନଙ୍କ ସହ ଯୋଗଦେଲେ– ଭବାନୀ ଭଟ୍ଟାଚାର୍ଯ୍ୟ ଓ ରବି ବାନାର୍ଜି ଢାକାର ଜୟଦେବପୁର ଗ୍ରାମରୁ ।

ମା' ବାପାଙ୍କର ଏକ ମାତ୍ର ପୁତ୍ର ଭବାନୀ । ଗାଁ ସ୍କୁଲରେ କିଛି ପାଠ ପଢ଼ିଥିଲେ । କିନ୍ତୁ ପିଲାଦିନୁ ତାଙ୍କର ଝୁଙ୍କ ଥିଲା ଦେଶସେବା ପ୍ରତି । ଭବାନୀ କିନ୍ତୁ ତିନି ଭାଇ ଭଉଣୀଙ୍କ ଭିତରେ ମଝିଆଁ । ଭଉଣୀଟି ବଡ଼ । ଭବାନୀ ମେଧାବୀ, ତୀକ୍ଷ୍ଣବୁଦ୍ଧିସଂପନ୍ନ, ଶାନ୍ତଶିଷ୍ଟ ଓ ବିଶେଷ ଅଧ୍ୟୟନଶୀଳ । ସେ ବି ହାଇସ୍କୁଲରେ ପଢ଼ିବା ଦିନୁ ବିଭିନ୍ନ ବିପ୍ଳବୀ ଅନୁଷ୍ଠାନ ସହ ସଂପୃକ୍ତ । ବିଶେଷତଃ ଚଟ୍ଟଗ୍ରାମର ବିପ୍ଳବୀନେତା ମାଷ୍ଟରଦା ଓ ଅନ୍ୟତମ ବିପ୍ଳବୀ ଦିନେଶ ଗୁପ୍ତଙ୍କର ଆତ୍ମହତ୍ୟାଗରେ ସେ ବିଶେଷ ଅଭିଭୂତ । ପଢ଼ା ବହି ଟେବୁଲ ଉପରେ ସ୍କୁଲ ବହି ଛଡ଼ା ଆହୁରି ଅସଂଖ୍ୟ ପତ୍ରପତ୍ରିକା ଓ ବିପ୍ଳବୀମାନଙ୍କର ରୋମାଞ୍ଚକର ଜୀବନଗାଥା ସମ୍ବଳିତ ବହିପତ୍ର ଜମାହୋଇଥାଏ । ଦାର୍ଜିଲିଂ ଅଭିଯାନର ଅଳ୍ପ କେତେ ଦିନ ପୂର୍ବରୁ ବିପ୍ଳବୀ ସଂଘର ମୁଖପତ୍ର 'ବେଣୁ' ପତ୍ରିକାର 'ଦୀନେଶ ସ୍ମୃତି ସଂଖ୍ୟା' ଖଣ୍ଡକ ପ୍ରାୟ ସବୁବେଳେ ସେ ଓଲଟାଉ ଥିବାର ଦେଖାଯାଇଥିଲା ।

ମାଟ୍ରିକ୍ ପରୀକ୍ଷା ଶେଷହେଲା । ଦୈନିକ ସଂଧ୍ୟାରେ ସେ ବାହାରକୁ କୁଆଡ଼େ ଯାଆନ୍ତି, ଫେରନ୍ତି ବହୁ ରାତ୍ରିରେ । ବାପା ଭାବନ୍ତି– "ରବି ତା ସାଙ୍ଗ ପିଲାମାନଙ୍କ ପାଖରେ ପଢ଼ିବାକୁ ଯାଉଛି ।" କିନ୍ତୁ ବାସ୍ତବରେ ସେ ନିକଟବର୍ତ୍ତୀ ଜଙ୍ଗଲ ଭିତରେ ଥିବା ବିପ୍ଳବୀମାନଙ୍କର ଗୋପନ ତାଲିମକେନ୍ଦ୍ରକୁ ଯାଆନ୍ତି ବନ୍ଧୁକ ଚାଳନା ଶିକ୍ଷା କରିବାକୁ । ତାଙ୍କ ଭଳି ଶାନ୍ତ ଶିଷ୍ଟ ଓ ଅଧ୍ୟୟନଶୀଳ ପିଲାକୁ ସନ୍ଦେହ କରିବାର କୌଣସି କାରଣ ନ ଥିଲା ବାପା ମା'ଙ୍କର ।

ସୁତରାଂ ମାଟ୍ରିକ୍ ଫଳ ବାହାରିବାର କେଇଦିନ ପରେ ଢାକା କଲେଜ ବୋର୍ଡ଼ିଂରେ ସିଟ୍ ଯୋଗାଡ଼ କରିବାର ବାହାନା କରି ଯେଉଁଦିନ ସେ ଘରୁ ଗୋଡ଼କାଢ଼ିଲେ, ସେଦିନ ତାଙ୍କୁ ସନ୍ଦେହ କରିବାର କୌଣସି କାରଣ ନ ଥିଲା । ଢାକା ନୁହେଁ, ସେ ସିଧା ଦାର୍ଜିଲିଂକୁ ଟିକେଟ କାଟିଲେ ରବି ବାନାର୍ଜିଙ୍କୁ ସଙ୍ଗରେ ଧରି । ଦାର୍ଜିଲିଂସ୍ଥ 'ଜୁବୁଲୀ ସାନାଟୋରିଅମ'ରେ ଦୁଇଜଣଙ୍କର ଡେରା ପଡ଼ିଲା । ଦାର୍ଜିଲିଂରେ ହେଉଥିବା ପୁଷ୍ପ ପ୍ରଦର୍ଶନୀ ଉତ୍ସବରେ 'ଆଣ୍ଡରସନ୍'କୁ 'ଭେଟିବାକୁ ଉଜ୍ଜଳା ଓ ମନୋରଞ୍ଜନ ବରାଦ

କରିଥିଲେ । ସୁତରାଂ ରବି ଓ ଭବାନୀ ସଂପୂର୍ଣ୍ଣ ପ୍ରସ୍ତୁତ ହୋଇ ଯଥାସମୟରେ ପହଞ୍ଚିଗଲେ ପ୍ରଦର୍ଶନୀ ପଡ଼ିଆରେ । କିନ୍ତୁ ସୁବିଧା ହେଲା ନାହିଁ ସେଠାରେ ଆଣ୍ଡରସନ ଉପରେ ହାତପକାଇବାକୁ । ଏପଟ ସେପଟ ହୋଇ ଫେରିଆସିଲେ ନିଜ ଡେରାକୁ ।

ତା' ପରେ ଆସିଲା ସେହି ମାହେନ୍ଦ୍ର ସମୟ । ମଇ ମାସ ୮ ତାରିଖ ୧୯୩୪ ମସିହା । ଦାର୍ଜିଲିଂ ଘୋଡ଼ାଦୌଡ଼ ପଡ଼ିଆରେ ପୁରସ୍କାର ବିତରଣ ଉତ୍ସବ । ଉଜ୍ଜଳ ଓ ମନୋରଞ୍ଜନ ଚାରିଖଣ୍ଡ ପାସ୍ ଯୋଗାଡ଼କରିନେଲେ ଚାରିଜଣଙ୍କ ପାଇଁ । ଖୋଦ୍ ଗଭର୍ଣ୍ଣର ପ୍ରଧାନ ଅତିଥି, ସୁତରାଂ ପୁଲିସ ବା ମିଲିଟାରୀର ଅଭାବ ନ ଥିଲା ପଡ଼ିଆ ଚାରିପଟେ । ବ୍ରିଟିଶ୍ ସାମ୍ରାଜ୍ୟ ଭିତରେ ସବୁଠାରୁ ବେଶୀ ଗୋଳମାଳିଆ ଦେଶ ହେଉଛି ଭାରତ ଓ ଭାରତବର୍ଷ ଭିତରେ ସବୁଠାରୁ ଗଣ୍ଡଗୋଳିଆ ଓ ମେଳିଆ ପ୍ରଦେଶ ହେଉଛି ବଂଗଦେଶ । ସେଥିରେ ପୁଣି ୧୯୩୪ ମସିହା ତ ବେଶୀ ଗୋଳମାଳ । ସେହି ଗୋଳମାଳ ଦବେଇବାକୁ ତ ମହାମାନ୍ୟ ଲାଟ୍ ଆଣ୍ଡରସନ୍‌ଙ୍କର ଭାରତକୁ ଶୁଭାଗମନ । ସୁତରାଂ ତାଙ୍କର ଜୀବନର ନିରାପତ୍ତା ସେ ଯୁଗରେ ସମସ୍ତଙ୍କର ଏକମାତ୍ର କାମନା ।

ସମସ୍ତଙ୍କ ଆଗରେ ଗଭର୍ଣ୍ଣରଙ୍କର ମହାର୍ଘ ଆସନ । ମହାସମାରୋହରେ ଓ ବିପୁଳ ଆଡ଼ମ୍ବର ସହକାରେ ସେ ପାତ୍ରମନ୍ତ୍ରୀ ପରିବେଷ୍ଟିତ ହୋଇ ସୁସଜ୍ଜିତ ସିଂହାସନରେ ଆସୀନ । ସେଠାକୁ ସର୍ବସାଧାରଣଙ୍କର ପ୍ରବେଶ ନିଷେଧ । ଗଭର୍ଣ୍ଣରଙ୍କ ଆସନ ପଛରେ ଅସଂଖ୍ୟ ଚେୟାର ସାଧାରଣଙ୍କ ଉଦ୍ଦେଶ୍ୟରେ । ରବି ଓ ଭବାନୀଙ୍କର ସିଟ୍ ଏହିଠାରେ ତୃତୀୟ ଧାଡ଼ିରେ । ସମସ୍ତେ ଦେଖୁଛନ୍ତି ଘୋଡ଼ଦୌଡ଼ । ଭବାନୀ କିନ୍ତୁ ଦେଖୁଛନ୍ତି ହିସାବକରି ତାଙ୍କର ଚେୟାର ପାଖରୁ ଆଣ୍ଡରସନ୍‌ର ଆସନ କେତେଦୂର, ରିଭଲଭର ଗୁଳିର ରେଞ୍ଜ ଭିତରେ ନା ବାହାରେ ।

''ନାଃ, ଏଠି ହେବ ନାହିଁ ।'' ଭବାନୀ ମନେ ମନେ ଭାବିଲେ । ତା'ପରେ ଯୋଗାଡ଼ କରି ଉଠିଗଲେ ଦ୍ୱିତୀୟ ଧାଡ଼ିକୁ । 'ବେଶ୍ ଏଇଠି ଠିକ୍ ହେବ' – ତୃପ୍ତିର ନିଶ୍ୱାସ ମାରିଲେ ଏବଂ ତାଙ୍କର ବିପରୀତ ଦିଗରେ ବସିଥିବା ରବିକୁ ଇସାରାଦେଲେ ।

ଉଭୟ ପ୍ରସ୍ତୁତ, କେବଳ ସୁଯୋଗକୁ ଅପେକ୍ଷା– କେତେବେଳେ ଗଭର୍ଣ୍ଣର ଠିଆହେବ । ଶେଷରେ ଗଭର୍ଣ୍ଣର ଠିଆହେଲେ ପୁରସ୍କାର ବିତରଣ କରିବାକୁ । ଭବାନୀ ଓ ରବି ମଧ୍ୟ ଠିଆହେଲେ ନିଜ ନିଜ ସିଟ୍‌ରେ ଏବଂ କାଳ ବିଳମ୍ବ ନ କରି ପ୍ରଥମେ ଭବାନୀ ଫାୟାରକଲେ ପ୍ରଥମ ଗୁଳି । ଗୁଳି ଠିକ୍ ବାଜିଲା ଆଣ୍ଡରସନ ଉପରେ, କିନ୍ତୁ ଛାତି, ପେଟ କିମ୍ବା ମୁଣ୍ଡରେ ବାଜିଲା ନାହିଁ, ବାଜିଲା ଡାହାଣ ହାତରେ । ଫଳରେ ଆଣ୍ଡରସନ୍ ସେଇଠି ଓଲଟିପଡ଼ିଲା ନିଜର ଷ୍ଟେନୋ ମିସ୍ ଥର୍ଟନ ଉପରେ । ସୁତରାଂ ଭବାନୀର ଦ୍ୱିତୀୟ ଗୁଳି ଆଣ୍ଡରସନ୍ ଉପରେ ନବାଜି ଟେବୁଲରେ ବାଜିଲା ଏବଂ ଟେବୁଲ ଉପରେ ଥିବା କାଗଜପତ୍ର, କଲମ, ଫୁଲଗ୍ଲାସ୍ ଓ ପେପରୱେଟ ସବୁ ଛିନ୍ନଛତ୍ର ହୋଇପଡ଼ିଲା ।

ଭବାନୀଙ୍କର ଦ୍ୱିତୀୟ ଗୁଳି ଓ ରବିର ପ୍ରଥମ ଗୁଳି ପ୍ରାୟ ଏକ ସମୟରେ ଫାୟାର ହେଲା । ରବିର ଗୁଳି ବାଜିଲା ମିସ୍ ଥର୍ଟନଙ୍କ ଉପରେ, କାରଣ ବୀରପୁଙ୍ଗବ ଗଭର୍ଣ୍ଣର ସେତେବେଳେ ଷ୍ଟେନୋଙ୍କ ପଛରେ ପ୍ରାୟ ଲୁଚିଯାଇଥିଲେ । କିନ୍ତୁ ଅନ୍ୟ ଗୁଳିଟି ଫାୟାର ହେବା ପୂର୍ବରୁ ଆଣ୍ଡରସନ୍‌ର ଦେହରକ୍ଷୀର ଗୁଳି ବସିଲା ରବି ଉପରେ, ଫଳରେ ରବି ଗୁରୁତର ଭାବେ ଆହତହୋଇ ପଡ଼ିଗଲେ । ଏଣେ ଭବାନୀଙ୍କ ଉପରେ କୁଦି ପଡ଼ିଲେ ୪/୫ ଜଣ ସଶସ୍ତ୍ର ପୋଲିସ ଏବଂ ଭବାନୀ ନିକଟରେ ବସିଥିବା କେତେ ଜଣ ସାଧାରଣ ଦର୍ଶକ । 'ସପ୍ତରଥୀ'ଙ୍କଦ୍ୱାରା ପରିବେଷ୍ଟିତ ହୋଇ 'ଅଭିମନ୍ୟୁ ଭବାନୀ' କାବୁ ହୋଇଗଲେ । ପୁଲିସର ବାୟୋନେଟ ଭୁସାରେ ଓ ଦଳାଚକଟାରେ ଭବାନୀ ତଳେ ପଡ଼ିଯାଇ ପ୍ରାୟ ସଂଜ୍ଞାହୀନ ହୋଇପଡ଼ିଲେ ।

ପ୍ରାୟ ୧୦/୧୨ ଘଣ୍ଟା ପରେ ଭବାନୀଙ୍କର ସଂଜ୍ଞା ଫେରିଆସିଲା । ତାଙ୍କଠାରୁ କିଛି ସ୍ୱୀକାରୋକ୍ତି ଆଦାୟ କରିବାକୁ ପୁଲିସ ବିଶେଷ ବ୍ୟଗ୍ର । ପୁଲିସ ଆଶା କରିବା ସ୍ୱାଭାବିକ ଯେ ପୁଲିସ ମାଡ଼ରେ ସେ ଯେତିକି କଷ୍ଟପାଇଲାଣି, ସେ ଦୃଷ୍ଟିରୁ ତା'ର କୃତକର୍ମ ପାଇଁ ହୁଏତ ସେ ଅନୁତପ୍ତ ହେବଣି । ଅନ୍ତତଃ ଏହି ଅର୍ଦ୍ଧଚେତନ ଅବସ୍ଥାରେ ଅସାବଧାନତାବଶତଃ ଯଦି ଭବାନୀ ପାଟିରୁ ଆଉ ଜଣେ ଦି'ଜଣ ଆସାମୀଙ୍କ ନାମ ବାହାରିପଡ଼େ ସେତିକି ଯଥେଷ୍ଟ । ସୁତରାଂ ସଂଜ୍ଞା ଫେରିପାଇବା ପରେ ଭବାନୀ ଯେତେବେଳେ ଗୁଣୁଗୁଣୁ ହୋଇ କ'ଣ କହିବାର ଶୁଣାଗଲା, ପୁଲିସର ଉତ୍ସାହ ସେତେବେଳେ କହିଲେ ନସରେ । ଜଣେ ପୁଲିସ ଅଫିସର ଭବାନୀ ଉପରେ ଝୁଙ୍କିପଡ଼ି, ତାଙ୍କର କାନ ପାଖରେ ପଚାରିଲା– ''କ'ଣ କହୁଛ ଭବାନୀ ? କୁହ, କିଛି ଭୟ ନାହିଁ । ଦାରୋଗାବାବୁ ଏଇଠି ଠିଆହୋଇଛନ୍ତି । କୁହ, କୁହ ଭବାନୀ ।'' ଭବାନୀ ଅନୁଚ୍ଚ ସ୍ୱରରେ ଅଥଚ ସ୍ପଷ୍ଟ ଭାବରେ କହିଲେ, "Is Anderson still alive ?" କଥାଟା ଶୁଣି ପୁଲିସ ଅଫିସର ଜଣଙ୍କର ଛାତି ଛନ୍‌ହୋଇଗଲା ।

ତେଣେ ମନୋରଞ୍ଜନ ଓ ଉଜ୍ଜଳା ଦାର୍ଜିଲିଂ ମେଲରେ ଛୁଟିଛନ୍ତି କଲିକତାକୁ । ପୁଲିସ କିନ୍ତୁ ସନ୍ଧାନନେଇ ଜାଣିସାରିଲାଣି ଯେ ଏହି ଷଡ଼ଯନ୍ତ୍ର ପଛରେ ଆଉ ଯେଉଁମାନଙ୍କର ହାତ ଅଛି ସେମାନଙ୍କ ଭିତରେ ଜଣେ ଯୁବକ ଓ ଜଣେ ଯୁବତୀ ସଂପୃକ୍ତ, ଯେଉଁମାନେ ବି ଘଟଣା ଦିନ ଦାର୍ଜିଲିଂରେ ଥିଲେ, ଯୁବତୀଟି ଗୋଲାପୀ ରଙ୍ଗର ଶାଢ଼ି ଓ ଖୁବ୍ ଶକ୍ତିଶାଳୀ ଚଷମା ପିନ୍ଧି କଲିକତାଗାମୀ ଗାଡ଼ିରେ ଦାର୍ଜିଲିଂ ଛାଡ଼ିଛି । ସୁତରାଂ କାଳ ବିଳମ୍ବ ନ କରି ସବୁ ଆଗୁଆ ଷ୍ଟେସନକୁ ପୁଲିସ ଖବରଦେଇଦେଲା ସେମାନଙ୍କୁ ଆରେଷ୍ଟ କରିବା ପାଇଁ । ଅବଶ୍ୟ ସେତେବେଳକୁ ସେମାନେ କଲିକତାରେ ପହଞ୍ଚି ସାରିଥିଲେ । ତଥାପି ପୁଲିସ ବହୁ ଚେଷ୍ଟାକରି ତାଙ୍କୁ ଧରିଲା ବିପ୍ଳବୀମାନଙ୍କର ଚିରଆଶ୍ରୟଦାତା ରାଜେନ ଗୁହଙ୍କ ଘରେ ।

ସମସ୍ତଙ୍କର ବିଚାରହେଲା । ଉଜ୍ଜଳାଙ୍କୁ ଚଉଦବର୍ଷ କାରାଦଣ୍ଡ, ମନୋରଞ୍ଜନଙ୍କୁ ଦିଆଗଲା ଯାବଜ୍ଜୀବନ ଦ୍ୱୀପାନ୍ତର । ରବି ଓ ଭବାନୀଙ୍କୁ ଦିଆଗଲା ଫାଶୀ ଦଣ୍ଡର ପୁରସ୍କାର ।

ଦୃପ୍ତ କଣ୍ଠରେ ଭବାନୀ ବିଚାରାଳୟରେ କହିଲେ– "I came to assassinate the Governor. My object was to murder him. I have nothing more to say. None but myself and Rabi took part in this action connected with this conspiracy. I know I have done no wrong. I would have been very happy if I would have finished him outright." (ମୁଁ ଗଭର୍ଣ୍ଣରଙ୍କୁ ହତ୍ୟା କରିବାକୁ ଆସିଥିଲି । ତାଙ୍କୁ ପ୍ରାଣରୁ ଶେଷ କରିଦେବା ମୋର ଉଦ୍ଦେଶ୍ୟ ଥିଲା । ଏହା ବ୍ୟତୀତ ମୋ'ର ଅଧିକ କିଛି କହିବାର ନାହିଁ । ଏହି ଷଡ଼ଯନ୍ତ୍ରରେ ମୁଁ ଏବଂ ରବି ବ୍ୟତୀତ ଅନ୍ୟ କେହି ସଂପୃକ୍ତ ନୁହନ୍ତି । ମୁଁ ଜାଣେ ଯେ ମୁଁ କିଛି ଭୁଲ କରି ନାହିଁ । ତାଙ୍କୁ ସିଧା ଖତମ କରିଦେଇପାରିଥିଲେ ମୁଁ ସବୁଠାରୁ ବେଶୀ ଖୁସିହୋଇଥା'ନ୍ତି ।

ଫାଶୀଖୁଣ୍ଟରେ ଝୁଲିବାର ପୂର୍ବଦିନ ସେ ତାଙ୍କର ସାନଭାଇଙ୍କ ନିକଟକୁ ଖଣ୍ଡେ ଚିଠି ଦେଇଥିଲେ । ତାହା ଯେତେ ଛୋଟ ହେଲେ ମଧ୍ୟ ବିଶେଷ ପ୍ରଣିଧାନଯୋଗ୍ୟ ।

ରାଜସାହୀ ସେଣ୍ଟ୍ରାଲ ଜେଲ
୩୦-୧-୧୯୩୫

ସ୍ନେହର ଖୋକା,

ଅମାବାସ୍ୟାର ଶ୍ମଶାନରେ ଭୀରୁ ଭୟ ପାଏ, କିନ୍ତୁ ସାଧକ ସେଠାରେ ସିଦ୍ଧିଲାଭ କରେ । ଆଜି ମୁଁ ବେଶୀ କିଛି କହିବି ନାହିଁ– ଖାଲି ଭାବିବି, ମୃତ୍ୟୁ କେଡ଼େ ସୁନ୍ଦର ! ତା' ନିକଟରେ ମୋ'ର ଅନନ୍ତ ଜୀବନର ବାର୍ତ୍ତା । ଇତି ।

X X X X X X

ଏହିଭଳି ବହୁତଗୁଡ଼ିଏ ମୂଲ୍ୟବାନ୍ ଚିଠି ଜେଲଖାନାରୁ ଭବାନୀ ଲେଖିଥିଲେ ବୋଲି ଜଣାଯାଇଛି । କିନ୍ତୁ ସାଂପ୍ରଦାୟିକ ଗଣ୍ଡଗୋଳଜନିତ ଅସୁବିଧାରୁ ତାହାର କୌଣସି ସଂଧାନ ଏ ଯାଏ ମିଳିନାହିଁ ।

□□□

# ତୃତୀୟ ଭାଗ

## ଖଣ୍ଡବିପ୍ଳବ ପର୍ଯ୍ୟାୟ (Insurrections)

ପୂର୍ବ-ଭାରତରେ ଯୁବ-ବିଦ୍ରୋହ ଓ ତା'ପରେ

(୧୯୩୦-୩୪)

## ଅଧ୍ୟାୟ - ତେଇଶ

# ଝଡ଼ର ପୂର୍ବାଭାସ

ସଶସ୍ତ୍ର ମୁକ୍ତି-ସଂଗ୍ରାମର ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ପର୍ବଟି ପ୍ରାୟ ଶେଷ ହେଲା 'ଆଣ୍ଡରସନ୍ ସୁଟିଂ କେଶ'ରେ । ଏହି ବ୍ୟକ୍ତି-ନିଧନପର୍ବର ସାମଗ୍ରିକ ପରଣତି କ'ଣ ହେଲା ଏବଂ ତାହା ସ୍ୱାଧୀନତାପ୍ରାପ୍ତିକୁ କେତେଦୂର ତ୍ୱରାନ୍ୱିତ କରିପାରିଥିଲା, ତା'ର ସଠିକ ମୂଲ୍ୟାୟନ କରିବା ସହଜ ନୁହେଁ । କିନ୍ତୁ ମହାରାଷ୍ଟ୍ରର ଚାପେକାର ଭ୍ରାତୃଦ୍ୱୟଙ୍କର ଅଲୌକିକ ଆତ୍ମତ୍ୟାଗଠାରୁ ଆରମ୍ଭ କରି ଭାରତୀୟ ରାଜନୀତିରେ ସୁଭାଷଙ୍କ ପ୍ରବେଶ ଓ ପ୍ରତିଷ୍ଠା ଲାଭ ପର୍ଯ୍ୟନ୍ତ ବହୁ ଗୁରୁତ୍ୱପୂର୍ଣ୍ଣ ଏବଂ ସୁଦୂରପ୍ରସାରୀ ଘଟଣାରେ ଏହି ପର୍ଯ୍ୟାୟଟି ମହିମାନ୍ୱିତ ହୋଇଅଛି । ଶହ ଶହ ଦୁଃସାହସିକ ସଶସ୍ତ୍ର ଅଭିଯାନରେ ହଜାର ହଜାର ଭାରତୀୟଙ୍କର ଆତ୍ମଦାନ ସାରା ଦେଶର ମନୋବଳ ଯଥେଷ୍ଟ ଦୃଢ଼କରି- ପାରିଥିଲା ଏବଂ ଆଞ୍ଚଳିକ ବା ଖଣ୍ଡବିପ୍ଳବ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା । 'ବ୍ୟାପକ ସଶସ୍ତ୍ର ବିଦ୍ରୋହ' କଥା ଦୂରେ ଥାଉ 'ଖଣ୍ଡବିପ୍ଳବ' ପାଇଁ ମଧ୍ୟ ୧୯୧୫ରେ ଦେଶ ପ୍ରସ୍ତୁତ ହୋଇ ନଥିଲା ବୋଲି ତ ରାସବିହାରୀ ଓ ବାଘା ଯତୀନ୍ଙ୍କର ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା ।

କିନ୍ତୁ ୧୯୩୦ ମସିହା ତ ୧୯୧୫ ନୁହେଁ । ଏହି ପନ୍ଦର ବର୍ଷ ଭିତରେ ଦେଶର ରାଜନୈତିକ ପରିସ୍ଥିତିର ବହୁ ମୌଳିକ ପରିବର୍ତ୍ତନ ହୋଇ ସାରିଥିଲା । ଜନସାଧାରଣଙ୍କର ରାଜନୈତିକ ବିଚାର-ବୁଦ୍ଧି ଅଧିକ ତୀକ୍ଷ୍ଣ ହୋଇପାରିଥିଲା ।

୧୯୩୦ ମସିହା ଜାନୁୟାରୀ ୨୬ ତାରିଖକୁ କଂଗ୍ରେସପକ୍ଷରୁ 'ସ୍ୱାଧୀନତା ଦିବସ' ରୂପେ ପାଳନ କରାଯାଇ ଦେଶରେ ଯେଉଁ ଅଭୂତପୂର୍ବ ଉତ୍ସାହ ଉନ୍ମାଦନା ସୃଷ୍ଟି କରାଯାଇଥିଲା, ତା'ର ଚରମ ପରିଣତି ହେଲା 'ଲବଣ ସତ୍ୟାଗ୍ରହ' । ସେ ସମ୍ପର୍କରେ ପୂର୍ବ-ଭାଗରେ ବିସ୍ତୃତ ବର୍ଣ୍ଣନା କରାଯାଇଛି । କିନ୍ତୁ ଚଟ୍ଟଗ୍ରାମର ଯୁବବିପ୍ଳବୀମାନେ କେବଳ ସେତିକିରେ ସନ୍ତୁଷ୍ଟ ନଥିଲେ । ଗାନ୍ଧିଜୀଙ୍କ 'ଅହିଂସ ଆନ୍ଦୋଳନ'କୁ ସେମାନେ ଏକ ଆବରଣ ବୋଲି ବ୍ୟବହାର କରିବାକୁ ସ୍ଥିର କରିଥିଲେ ଏବଂ ସେହି ଆବରଣ ତଳେ ସେମାନେ ଏକ ବ୍ୟାପକ ସଶସ୍ତ୍ର ବିପ୍ଳବର ପରିକଳ୍ପନା କରିଥିଲେ । 'ସଶସ୍ତ୍ର ମୁକ୍ତି-ସଂଗ୍ରାମ'ର ଏହି ତୃତୀୟ ପର୍ଯ୍ୟାୟରେ ପୂର୍ବ-ଭାରତର ମହାନ୍ ସଶସ୍ତ୍ର ବିପ୍ଳବୀମାନଙ୍କର ଅଲୌକିକ ସାହସ ଏବଂ ବିଚକ୍ଷଣ କଳକୌଶଳର ରୋମାଞ୍ଚକର ଗାଥା ଦେଖିବାକୁ ମିଳେ ।

X X X X

୧୯୨୯ ମସିହା । ଭାରତର ମୁକ୍ତି-ସଂଗ୍ରାମ-ଇତିହାସରେ ଏକ ସ୍ମରଣୀୟ ଘଟଣା ହେଉଛି କଲିକତା କଂଗ୍ରେସ (୨ୟ ଭାଗର 'ପାର୍କସର୍କସର ସର୍କସ' ଦ୍ରଷ୍ଟବ୍ୟ) । କଂଗ୍ରେସ୍

ଅଧିବେଶନ ଶେଷ ହେଲା । ପ୍ରତିନିଧିମାନେ ସ୍ୱ-ସ୍ୱ ପ୍ରଦେଶକୁ ଫେରିଗଲେ । କିନ୍ତୁ 'ବେଙ୍ଗଲ ଭଲେଣ୍ଟିଅର୍ସ' ଦଳର 'ଲେଫଟ୍ ରାଇଟ୍' ଧ୍ୱନି ବହୁଦିନ ପର୍ଯ୍ୟନ୍ତ କଲିକତାର ବାୟୁମଣ୍ଡଳକୁ କରି ରଖିଲା ଭାରାକ୍ରାନ୍ତ ।

ସେହି ବର୍ଷର ମଇ ମାସ ୯ ତାରିଖରେ ସୁଭାଷ ଗଲେ ଚଟ୍ଟଗ୍ରାମ । କଲିକତା କଂଗ୍ରେସ ପରେ ପରେ ସେ ଅସାମାନ୍ୟ ପ୍ରତିଷ୍ଠା ଲାଭ କରିଥିଲେ ଯୁବସମାଜ ଭିତରେ । ଚଟ୍ଟଗ୍ରାମର ମହାଲକ୍ଷ୍ମୀ ବ୍ୟାଙ୍କ ପଛପଟେ ଯୁବ-ବିପ୍ଳବୀମାନଙ୍କର ଏକ ଗୋପନ ବୈଠକ ବସିଥିଲା । ମୁଖ୍ୟ ଅତିଥି ସୁଭାଷ । ସେହି ବୈଠକ ସମ୍ପର୍କରେ 'ଅଗ୍ନିଯୁଗର ଗୋଟିଏ ଅଧ୍ୟାୟ' ପୁସ୍ତକରେ ବିପ୍ଳବୀ ଅନନ୍ତ ସିଂହ ଲେଖିଛନ୍ତି –

''ଦ୍ୱି-ପ୍ରହର ଗୋପନ ବୈଠକରେ ଆମେ ସୁଭାଷଙ୍କୁ ବୁଝାଇବାକୁ ଚେଷ୍ଟାକଲୁ ଯେ, ମିଲିଟାରୀ ପୋଷାକ ପିନ୍ଧି ଆମେ ବି: ଭି:(ବେଙ୍ଗଲ ଭଲେଣ୍ଟିଆର୍ସ) ଲୋକେ କଂଗ୍ରେସରେ କେବଳ ଶୋଭାବର୍ଦ୍ଧନ କରିବାକୁ ଆସିନାହୁଁ, କଂଗ୍ରେସର ଅହିଂସ ନୀତିକୁ ଆମେ ଏକ କୌଶଳରୂପେ ଗ୍ରହଣ କରିଛୁ ମାତ୍ର । ଏହି ନନ୍‌ଭାଓଲେନ୍ସର ଅନ୍ତରାଳରେ ଆମେ ସଶସ୍ତ୍ର ବିପ୍ଳବ ପାଇଁ ପ୍ରସ୍ତୁତ ହେବାକୁ ଚାହୁଁ ।''

ଯୁବ-ବିଦ୍ରୋହୀମାନଙ୍କର ଏହି ଅଭିଳାଷ ପ୍ରତି ସୁଭାଷଙ୍କ ନୈତିକ ସମର୍ଥନ ଥିଲା । କାରଣ 'ସହିଂସ ସଂଗ୍ରାମ'ଦ୍ୱାରା ହିଁ ଯେ ଭାରତରେ ସ୍ୱାଧୀନତା ସମ୍ଭବ, ଏଥିରେ ତିଳେହେଲେ ସନ୍ଦେହ ନଥିଲା । ସେ ଭଲରୂପେ ଜାଣିଥିଲେ ଯେ, ଅହିଂସା ଦ୍ୱାରା ପୃଥିବୀର କୌଣସି ଦେଶ ସ୍ୱାଧୀନତା ଲାଭ କରିନାହିଁ । ବିନା ରକ୍ତଦାନରେ ସ୍ୱାଧୀନତା-ଦେବୀ ସନ୍ତୁଷ୍ଟ ହୁଅନ୍ତି ନାହିଁ । କିନ୍ତୁ ସେ ଭାବୁଥିଲେ ଏଥିପାଇଁ କଂଗ୍ରେସଦଳକୁ ପ୍ରସ୍ତୁତ କରିବାକୁ ହେବ । ତାହାହେଲେ ଅଳ୍ପସମୟ ମଧ୍ୟରେ ଇଂରେଜମାନେ ଭାରତ ଛାଡ଼ିବାକୁ ବାଧ୍ୟ ହେବେ ।

ଚଟ୍ଟଗ୍ରାମ ବିପ୍ଳବୀମାନେ କିନ୍ତୁ ସେ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପ୍ରସ୍ତୁତ ନଥିଲେ । ଗାନ୍ଧିଜୀଙ୍କର ମିଳାମିଶା ନୀତିରେ ସେମାନେ ଘୋର ବିରକ୍ତ ଓ ଉଦ୍ବ୍ୟକ୍ତ ହୋଇସାରିଥିଲେ । ଖଣ୍ଡବିପ୍ଳବର ସର୍ବାଧିନାୟକ ମାଷ୍ଟରଦା' ସୂର୍ଯ୍ୟସେନ୍ ସେହି ସଭାରେ ଘୋଷଣା କଲେ ''ଇଂରେଜମାନଙ୍କୁ ଦାରୁଣ ଆଘାତ ଦେଇ ଅଚେତନ କରିଦିଅ । ଏଥିପାଇଁ ଦେବାକୁ ହେବ ଯଥେଷ୍ଟ ପ୍ରାଣ; ଯଥେଷ୍ଟ ରକ୍ତ । ଦୁଃଖ ନାହିଁ; ପ୍ରୟୋଜନ ହେଲେ ତାହା ମଧ୍ୟ ଦେବାକୁ ହେବ । ପରାଧୀନତାର ନାଗଫାଶରୁ ଦେଶକୁ ମୁକ୍ତ ନ କରିବା ପର୍ଯ୍ୟନ୍ତ ଏ ମୂଲ୍ୟ ଆମେ ଦେଇଚାଲିବୁ – ଏ ପଥ ଯେତେ ଦୀର୍ଘ ହେଉ; ଯେତେ କଣ୍ଟକିତ ହେଉ ।''

**ସୂର୍ଯ୍ୟସେନ –**

ମୁକ୍ତି-ସଂଗ୍ରାମର ଏହି ମହାଗୁରୁତ୍ୱପୂର୍ଣ୍ଣ ପର୍ବ ସମ୍ପର୍କରେ ଅଧିକ ଜାଣିବା ପୂର୍ବରୁ ମହାନାୟକ ମାଷ୍ଟରଦା' ବା ସୂର୍ଯ୍ୟସେନଙ୍କ ବିଷୟରେ ସମ୍ୟକ୍ ଧାରଣା ପ୍ରୟୋଜନ । କିଏ ଏହି ସୂର୍ଯ୍ୟସେନ ? କିଏ ଏହି ମାଷ୍ଟରଦା', ଯାହାର ଇଙ୍ଗିତରେ ସେଦିନ ବଙ୍ଗଳାର ଶହ ଶହ ମୃତ୍ୟୁ-ପାଗଳ ଯୁବକ ନିଆଁକୁ ଡେଉଁଥିଲେ ? ଯାହାର ଅଙ୍ଗୁଳି ନିର୍ଦ୍ଦେଶରେ ମୃତ୍ୟୁଞ୍ଜୟୀ ଅସଂଖ୍ୟ ବୀର ଜବାନ ଜୀବନକୁ ବାଜିରଖି ଜାଣିଶୁଣି ବ୍ରିଟିଶ ବନ୍ଧୁକ କମାଣ ଆଗରେ ଛାତି

ଦେଖାଉଥିଲେ ଏବଂ ଯେ କି ସେ ଯୁଗରେ ପ୍ରବଳ-ପରାକ୍ରମୀ ଇଂରେଜ ଶାସନପକ୍ଷରେ ସର୍ବାଧିକ ବିପଦ, ଆତଙ୍କ ଓ ଭୟର କାରଣ ଥିଲା ।

ସୂର୍ଯ୍ୟସେନ— ସ୍ନେହର ନାମ 'ମାଷ୍ଟରଦା' । ମାଷ୍ଟରଦା ଏକ ଆକସ୍ମିକ ବା ଅବିଚ୍ଛିନ୍ନ ବ୍ୟକ୍ତିବିଶେଷ ନୁହଁନ୍ତି । ଜନୈକ ବିପ୍ଳବୀଙ୍କ ଭାଷାରେ ସେ ହେଉଛନ୍ତି ''ଭାରତ ଇତିହାସର ବୈପ୍ଳବିକ ପରମ୍ପରା; ଯାହାକି ହୁଏତ ମହାବିଦ୍ରୋହ ୧୮୫୭ର ପ୍ରଥମ ସହିଦ ମଙ୍ଗଳ ପାଣ୍ଡେ କିମ୍ବା ତା ଆଗରୁ କୁଖ୍ୟାତ ୱାରେନ୍ ହେଷ୍ଟିଙ୍ଗସ୍‌ର ପ୍ରଥମ ଶିକାର ମହାରାଜା ନନ୍ଦକୁମାରଙ୍କଠାରୁ ଆରମ୍ଭ କରି ମହାରାଷ୍ଟ୍ରର ଚାପେକାର ଭ୍ରାତୃଦ୍ୱୟ ବା ବଙ୍ଗଳାର କ୍ଷୁଦିରାମ, ପ୍ରଫୁଲ୍ଲ ଚାକୀ ବା ବିଲାତରେ ପ୍ରଥମେ ପ୍ରାଣଦଣ୍ଡ ପାଇଥିବା ସହିଦ ମଦନଲାଲ ଧିଙ୍ଗ୍ରା ପର୍ଯ୍ୟନ୍ତ ସମସ୍ତ ବିପ୍ଳବୀଙ୍କ ମିଳିତ ଶକ୍ତି ବା ରକ୍ତଦାନରେ ଗଠିତ ।

ସେ ଖାଲି 'ନୟାପଡ଼ା' ଗ୍ରାମର ରାଜମଣି ସେନ ଓ ଶଶୀକଳା ଦେବୀଙ୍କର 'ସୂର୍ଯ୍ୟ' ନୁହନ୍ତି, ସେ ପଥିତଯଶା ବଙ୍ଗଳା କବି ନବୀନ ସେନଙ୍କର ପ୍ରତିବେଶୀ । ସେ ଆଜନ୍ମ ଗମ୍ଭୀର ଓ ଆତ୍ମଭୋଳା ପ୍ରକୃତିର; ବାହାର ଅପେକ୍ଷା ଭିତରର ମଣିଷ । ଚେହେରାଟା ବାହାରୁ ନୁଖୁରା ନୁଖୁରା ଟାଉଁସିଆ, ସାଦାସିଧା ସରଳିଆ ଲୋକ : କିନ୍ତୁ ଭିତରଟା ଆଗ୍ନେୟଗିରିଠାରୁ ଅଧିକ ଉତ୍ତପ୍ତ, ସୂର୍ଯ୍ୟଠାରୁ ଅଧିକ ଉଜ୍ଜ୍ୱଳ ଓ ତେଜୋଦୀପ୍ତ । ଯେତିକି କୋମଳ ଓ କମନୀୟ; ତତୋଧିକ କଠୋର ।

ଯେଉଁ ସୂର୍ଯ୍ୟସେନ କନିଷ୍ଠ ସହକର୍ମୀ ବିନୋଦ ଦତ୍ତଙ୍କୁ ଦୁଇଟା ପରିବର୍ତ୍ତେ ଗୋଟାଏ ରିକ୍ସା ଆଣିବା ଅପରାଧରେ ତାଙ୍କ ଗାଲରେ ବ୍ରହ୍ମଚାପଡ଼ା ଦିଅନ୍ତି, ସେହି 'ସୂର୍ଯ୍ୟ' ବାଟରେ ସେହି ବିନୋଦର ଗାଲ ଆଉଁସିଦେଇ ସ୍ନେହଭରା କଣ୍ଠରେ ପଚାରନ୍ତି, ''ଗାଲକୁ କାଟିଲା ଭାରୀ, ନୁହଁ ରେ ? କ'ଣ କରିବା – ବିପ୍ଳବୀର ଜୀବନ ବଡ଼ କଠୋର । ସେ ଆଖି, କାନ, ନାକ ସବୁ ବାଟରେ ଶୁଣିବ, ତେବେ ଯାଇ ସେ ହେବ ବିପ୍ଳବୀ ।''

ବିନୋଦ ଦତ୍ତ କହନ୍ତି, ''ଦାଦାଙ୍କର ଅନୁପସ୍ଥିତିରେ ମୁଁ ତାଙ୍କର ନିର୍ଦ୍ଦେଶକୁ ଯେମିତି ନିର୍ଭୁଲଭାବେ ପାଳନ କରୁଥିଲି, ତାହା ସେହି ଗୋଟିଏ ଚାପଡ଼ାର ଫଳ ।''

ବହରମପୁର କଲେଜରେ ପଢ଼ିଲାବେଳେ ତାଙ୍କର ହୃଦୟରେ ସ୍ପର୍ଶ କରିଥିଲା ସଶସ୍ତ୍ର ବିପ୍ଳବର ବହ୍ନିସ୍ଫୁଲିଙ୍ଗ ଏବଂ ପ୍ରାୟ ସେହି ସମୟରେ ସେ ପ୍ରତିଷ୍ଠା କରିଥିଲେ 'ସାମ୍ୟ ଆଶ୍ରମ' । ସୁତରାଂ ପରବର୍ତ୍ତୀ ଜୀବନରେ ଦେଶରେ ସାମ୍ୟବାଦ ପ୍ରତିଷ୍ଠା କରିବାର ଦୁର୍ଜ୍ଜୟ ଅଭିଳାଷ ନେଇ ସେ ଯେଉଁ ଯୁବ ବିଦ୍ରୋହର ସଂଗଠନର ନେତୃତ୍ୱ ନେଇଥିଲେ, ସେହି ବିରାଟ ମହୀରୁହର ବୀଜ ବପନ କରିଥିଲା 'ସାମ୍ୟ ଆଶ୍ରମ' । 'ସାମ୍ୟ ଆଶ୍ରମ'ରେ ଜୁଟିଥିଲେ ସେ ଯୁଗର ଚୋଖା ଚୋଖା ବିପ୍ଳବୀ ଯୁବକ – ଚାରୁବିକାଶ ଦତ୍ତ, ଅମ୍ବିକା ଚକ୍ରବର୍ତ୍ତୀ, ନିର୍ମଳ ସେନ, ଅନନ୍ତ ସିଂହ ଓ ଗଣେଶ ଘୋଷ । ତତ୍‌କାଳୀନ ବିପ୍ଳବୀ ବଙ୍ଗଳାର ସବୁ ନାମଜାଦା ବିପ୍ଳବୀ ଅନୁଷ୍ଠାନ, ଯଥା – ଅନୁଶୀଳନ ସମିତି, ଯୁଗାନ୍ତର ଦଳ ଓ ଆତ୍ମୋନ୍ନତି ସମିତି ପ୍ରଭୃତି ସବୁ ଦଳର ସମନ୍ୱୟ ହୋଇଥିଲା ଏହି 'ସାମ୍ୟ ଆଶ୍ରମ'ରେ ଏବଂ ସେହିଠାରେହିଁ ଅଧିବାସ ହୋଇଥିଲା 'ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ' ଓ 'ପୂର୍ବ-ଭାରତୀୟ ଯୁବ-ବିଦ୍ରୋହ' ମହୋତ୍ସବର ।



## ଅଧ୍ୟାୟ - ଚବିଶ

# ଯୁବବିଦ୍ରୋହ ଓ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ

'ଚଟ୍ଟଗ୍ରାମ ଅସ୍ତ୍ରାଗାର' ପୂର୍ବ-ଭାରତରେ ଥିବା ବୃହତ୍ତମ ଅସ୍ତ୍ରାଗାରମଧ୍ୟରୁ ଗୋଟିଏ । 'ମେଘନାଦ ପାଚେରି' ଭଳି ବିରାଟ ପାଚେରିଘେରା ସେହି ଅସ୍ତ୍ରାଗାରର ଫାଟକକୁ ମଣିଷ କ'ଣ, ମାଛିଟିଏ ବି ଅତିକ୍ରମ କରିପାରିବନି ବିନାନୁମତିରେ । ସୁତରାଂ ସେ ଦିନ ରାତି ଦଶଟାରେ ହଠାତ୍ ଏତେଗୁଡ଼ିଏ ଲୋକଙ୍କୁ ଦେଖି ରାଇଫେଲଧାରୀ ସେଣ୍ଟ୍ରିଜଣକ ଅବାକ୍ ହୋଇଗଲା । ଉତ୍ତେଜିତ କଣ୍ଠରେ ପଚାରିଲା —"Who comes there ?" (କିଏ ଆସୁଛି, ହୁସିଆର); କିନ୍ତୁ ଉତ୍ତର ଆସିଲା ବନ୍ଧୁକର ଆବାଜରେ । ଗୁଳି ଆଘାତରେ ଧରାଶାୟୀ ହେଲା ଜଗୁଆଳିଜଣକ । ତା' ପରେ ଭାସିଆସିଲା ସ୍ଲୋଗାନ – 'ଇନକ୍ଲିଲାବ ଜିନ୍ଦାବାଦ', 'ବନ୍ଦେ ମାତରମ୍' – ତିରିଶ ଚାଳିଶଟା କଣ୍ଠ; କିନ୍ତୁ ସମୁଦ୍ରଗର୍ଜନଠାରୁ ଆହୁରି ଭୟଙ୍କର । ଏହି ଆକାଶ ଫଟା ଗର୍ଜନ ଓ ଅପ୍ରତ୍ୟାଶିତ ଗୁଳିଚାଳନା ଦେଖି ଶହ ଶହ ପୋଲିସ ପ୍ରହରୀ କିଂକର୍ତ୍ତବ୍ୟବିମୂଢ଼— କିଏ କୁଆଡ଼େ ପଳାଇଲା, ତା'ର ଇୟତ୍ତା ନାହିଁ ।

ବିଦ୍ରୋହୀମାନଙ୍କ ଭିତରୁ ଗୋଟିଏ ଦଳ ଜଗି ରହିଲେ ପୋଲିସ ଲାଇନ ଚାରିପଟେ; ଆଉ ଦଳେ ଚାଲିଲେ ଅସ୍ତ୍ରାଗାର ଆଡ଼େ । ''ଅସ୍ତ୍ରଶସ୍ତ୍ର ଦରକାର, ପ୍ରଚୁର ଅସ୍ତ୍ରଶସ୍ତ୍ର ରାଇଫେଲ, ରିଭଲଭର, ପିସ୍ତଲ, ମାସ୍କେଟ୍ରି, ଲୁଇସ୍‌ଗନ୍ ଯେତେ ମିଳୁଛି ମିଳୁ ।'' ଦାରୁଣ ହାତୁଡ଼ି ଆଘାତରେ ଅସ୍ତ୍ରାଗାରର ଇସ୍ପାତ କବାଟ ଝଣ୍ ଝଣ୍ ହୋଇ ଭାଙ୍ଗିପଡ଼ିଲା । କି ଆନନ୍ଦ, କି ଉଲ୍ଲାସ ବିଦ୍ରୋହୀମାନଙ୍କ ମନରେ ! ଶହ ଶହ ପୋଲିସ ମାସ୍କେଟ୍ରି ରାଇଫେଲ । ଅସଂଖ୍ୟ ଗୁଳିର ଭଣ୍ଡାର । ପ୍ରତ୍ୟେକ ବିଦ୍ରୋହୀ ବାଛିନେଲେ ବଛା ବଛା ରାଇଫେଲ; ଯାହାକୁ ଯେଉଁ ବନ୍ଧୁକ ଫିଟ୍ । ତା'ପରେ ଆରମ୍ଭ ହେଲା ଟ୍ରାଏଲ ।

''ଫଲ ଇନ''(Fall in) ''ଲୋଡ୍ ଏଣ୍ଡ ଫାୟାର'' (Load and Fire)- ସଙ୍ଗେ ସଙ୍ଗେ 'ଗୁଡୁମ୍ ଗୁଡୁମ୍' ଶବ୍ଦରେ ଚଟ୍ଟଗ୍ରାମ ଆକାଶ ଫାଟିପଡ଼ିଲା ଯେମିତି ।

ଏହା ହେଲା ପୋଲିସ ଅସ୍ତ୍ରାଗାରର ଅବସ୍ଥା । ତେଣେ ଅନ୍ୟତମ ଜେନେରାଲ ଲୋକନାଥଙ୍କ ନେତୃତ୍ୱରେ ଚଢ଼ାଉଚାଲିଛି ସୈନ୍ୟବାହିନୀର ମ୍ୟାଗାଜିନ ଉପରେ । ସାମରିକ ବିଭାଗର ଜଗୁଆଳିଜଣକ ଏହି ଆକସ୍ମିକ ଆଗନ୍ତୁକଙ୍କୁ ଦେଖି ଭାବୁଛି – 'ବଡ଼ ସାହେବ ନିଶ୍ଚୟ ।' ସାମରିକ କାଏଦାରେ ଠୁକିଲା ଗୋଟାଏ ସାଲ୍ୟୁଟ୍ କିନ୍ତୁ ସାଲ୍ୟୁଟ୍ ମାରି ହାତଟା ତା'ର ତଳକୁ ଆସିବାପୂର୍ବରୁ ଦାରୁଣ ଗୋଟିଏ ଗୁଳି ଆସି ବିଚରା ସାମରିକ ଜଗୁଆଳିକୁ ତଳେ ଶୁଆଇଦେଲା ସବୁଦିନଲାଗି ।

ଅପ୍ରତ୍ୟାଶିତ ସେ ଗୁଳିର ଆବାଜ ଶୁଣି ଦୌଡ଼ିଆସିଲେ ମ୍ୟାଗାଜିନର ଭାରପ୍ରାପ୍ତ ଅଫିସର ସର୍ଜେଣ୍ଟ ମେଜର ଫେରଲ୍, ଖାସ୍ ବିଲାତର ନାମକରା ସର୍ଜେଣ୍ଟ; କିନ୍ତୁ ସେ କିଛି ବୁଝିବାପୂର୍ବରୁ ଅଗ୍ନିବର୍ଷଣରେ ଜବାବ ମିଳିଲା ତାଙ୍କୁ 'ଗୁଡୁମ ଗୁଡୁମ' । ଗୁଳିର ଆଘାତରେ ରକ୍ତାକ୍ତ ହୋଇ ପଡ଼ିଗଲେ ଫେରଲ କାହାକୁ ରିଙ୍ଗ କରିବେ ମିସେସ୍ ଫେରେଲ ? ଫୋନ କାହିଁ ? ବହୁପୂର୍ବରୁ ସବୁ ଟେଲିଫୋନ ଲାଇନ ଅଚଳ ଧ୍ୱସ୍ତବିଧ୍ୱସ୍ତ, ଟେଲିଫୋନ ଅଫିସ ପାଉଁଶଗଦାରେ ପରିଣତ ହୋଇଛି । ଖାଲି ସେଇଠି ନୁହେଁ, ଚଟ୍ଟଗ୍ରାମର ଚାଳିଶ ମାଇଲ ଦୂର ପର୍ଯ୍ୟନ୍ତ ସମସ୍ତ ଯୋଗାଯୋଗ ବ୍ୟବସ୍ଥା ଛିନ୍ନକରିଛନ୍ତି ବିଦ୍ରୋହୀ ସ୍କ୍ୱାର୍ଡ଼ । ହତାଶ ହୋଇପଡ଼ିଲେ ମିସେସ ଫେରଲ୍, ନିରୁପାୟ । ଜେନେରାଲ ଲୋକନାଥ ବଲଙ୍କର ପାଦତଳେ ପଡ଼ିଗଲେ ସେ । କଣ୍ଠରେ ତାଙ୍କର କରୁଣ ନିବେଦନ, ଆଉ ଚିତ୍କାର— "Please save me and my children (ମୋତେ ଓ ମୋ ପିଲାଙ୍କୁ ରକ୍ଷାକରନ୍ତୁ ସାର୍), ରକ୍ଷା କରନ୍ତୁ ସାର୍ ।"

ଇଂରେଜମାନଙ୍କୁ ସବୁଠାରୁ ବଡ଼ ଶତ୍ରୁ ମନେକରୁଥିବା ଜଣେ ଭାରତୀୟ ବିଦ୍ରୋହୀ ନେତାଙ୍କୁ ଜଣେ ଇଂରେଜ ମହିଳାଙ୍କର ଏହି କରୁଣ ସମ୍ବୋଧନ । ସ୍ୱାମୀ ତାଙ୍କର ମୃତ, ଭୂତଳଶାୟୀ । ତାଙ୍କ ଆଗରେ ଅସଂଖ୍ୟ ଉଦ୍ଧତ ରିଭଲଭର ଓ ରକ୍ତମୁଖା ଅସଂଖ୍ୟ ବିଦ୍ରୋହୀ; ଯେଉଁମାନେ ଇଂରେଜର ଶେଷ ଚିହ୍ନ ଲୋପକରିବାକୁ ବଦ୍ଧପରିକର ।

କି ଉତ୍ତର ଦେଇଥିଲେ ସେଦିନ ସେହି ମରଣଜୟୀ ବୀର ବିପ୍ଳବୀ ?— ଇଂରେଜମାନେ ଯେଉଁମାନଙ୍କୁ 'ସନ୍ତ୍ରାସବାଦୀ' ଓ ଗାନ୍ଧିଜୀ ଯେଉଁମାନଙ୍କୁ 'ବିପଥଗାମୀ' ଉପାଧିରେ ଭୂଷିତ କରିଥିଲେ – "ମୁଁ ଦୁଃଖିତ ସିଷ୍ଟର, ମୋର ଅନ୍ୟ କିଛି ଉପାୟ ନଥିଲା । ତେବେ ତୁମେ ନିଶ୍ଚିନ୍ତ ରହିପାର । ମୁଁ କିମ୍ବା ଆମର ଅନ୍ୟ କେହି ତୁମର ଅମର୍ଯ୍ୟାଦା କରିବେ ନାହିଁ । "ସିଷ୍ଟର" ! କି ଆନ୍ତରିକ ଏ ସମ୍ବୋଧନ, କି ଦରଦଭରା ଏ ଉକ୍ତି; ବିଶ୍ୱାସ ହୁଏ ନାହିଁ – ତଥାପି ଏହା ସତ୍ୟ ।

ମେଜର ଫେରଲ୍ ଶେଷ । ଏଥର ଆରମୋରୀ ଭାଙ୍ଗିବାର ପାଳା । ଆରମୋରୀ ଭିତରେ ରହିଛି ଅଂସଖ୍ୟ ୩୦୩ ରାଇଫେଲ ଓ ଲୁଇସଗନ୍ । ଏଇଟା ଅଧିକ ଶକ୍ତିଶାଳୀ, ଅଧିକ ଫଳପ୍ରଦ ଓ ଦୂରଗାମୀ । କିନ୍ତୁ ଲୁହାର ଏ ବିରାଟ କବାଟ ଭାଙ୍ଗିବ କେମିତି ? ମୋଟା ଇସ୍ପାତ୍‌ରେ ତିଆରି ସେ କବାଟ । ବିଦ୍ରୋହୀମାନଙ୍କର ସବୁ ଦମ୍ଭ ଚୂନା କରି-ଦେଲାଣି । ହଠାତ୍ ଅମ୍ବିକା ପ୍ରସ୍ତାବ କଲେ ଗୋଟିଏ ଅଭିନବ କୌଶଳ ପ୍ରୟୋଗ କରିବାକୁ । ଜାହାଜର ଏକ ମୋଟା ରଶି ଅଣାଗଲା ଓ ବାନ୍ଧିଦିଆଗଲା କବାଟର ଲୁହା ଶିକୁଳିରେ । ରଶିର ଅନ୍ୟ ପଟଟି ବନ୍ଧାଗଲା ଏକ ମୋଟର କାର୍‌ରେ । ବର୍ତ୍ତମାନ କାର୍‌କୁ ଫୁଲ୍ ସ୍ପିଡ୍‌ରେ ଚଳାଇଦେବାରୁ ଅସୁର ଭଳି ସେ ବିଶାଳ କବାଟ କଟକଟ ଶବ୍ଦ କରି ଝଣଝଣ ହୋଇ ଭାଙ୍ଗିଗଲା ।

ଅସଂଖ୍ୟ ରାଇଫେଲ ଓ ଲୁଇସଗନ । ସର୍ଜେଣ୍ଟ ବ୍ଲେକବାର୍ନ, ମିଷ୍ଟର କଲେନ ଓ ଅନ୍ୟ କେତେକ ସାମରିକ ଅଫିସର ସମସ୍ତେ ବିସ୍ମୟ-ବିମୂଢ଼— "କିଏ ଏମାନେ ? କ'ଣ ଏମାନଙ୍କର ଉଦ୍ଦେଶ୍ୟ ।" ସଙ୍ଗେ ସଙ୍ଗେ ଜବାବ ଆସିଲା ବିଦ୍ରୋହୀମାନଙ୍କର ରାଇଫଲ

ମୁହଁରୁ ''ଗୁଡୁମ୍ ଗୁଡୁମ୍ ।'' ମିଷ୍ଟର କଲେନ ଆହତ ଅବସ୍ଥାରେ ଭୂପତିତ ହେଲେ । ଅନ୍ୟ ସମସ୍ତେ ପଳାୟନ କଲେ ପ୍ରାଣବିକଳରେ । ସର୍ବାଧିନାୟକ ମାଷ୍ଟରଦା' କମାଣ୍ଡ ଦେଲେ— ''ମ୍ୟାଗାଜିନରେ ନିଆଁଲଗାଇଦିଅ ।''

ଚାହୁଁ ଚାହୁଁ ଦାଉଦାଉ ନିଆଁରେ ଆକାଶଟା ଲାଲହୋଇଗଲା । ତା' ସଙ୍ଗେ ସଙ୍ଗେ ଶୁଭିଲା —'ଇନକ୍ଲିଲାବ ଜିନ୍ଦାବାଦ' ।

ହଠାତ୍ ଆଗରୁ ମାଡ଼ିଆସିଲେ ସ୍ୱୟଂ ଜିଲ୍ଲା ମାଜିଷ୍ଟ୍ରେଟ ମିଷ୍ଟର ଉଇଲ କିନସନ୍ । ଜବାବ ଦେଲେ ବିଦ୍ରୋହୀମାନେ । ମାସ୍କେଟ୍ରିର ଦାରୁଣ ଗର୍ଜନରେ ବିଚରା ଅର୍ଦଲିଟି ସଙ୍ଗେ ସଙ୍ଗେ ମାଟିକାମୁଡ଼ି ପଡ଼ିଗଲା ସେଇଠି । ବାଦ୍‌ଗଲା ନାହିଁ ଡ୍ରାଇଭର 'ବିରମାନ ଥାପା' । କିନ୍ତୁ କୁଆଡ଼େ ଗଲେ ମିଷ୍ଟର ଉଇଲ କିନସନ— ବୀରପୁଂଗବ ପବନରେ ଅନ୍ତର୍ଦ୍ଧାନ ହୋଇଗଲେ ଯେମିତି ।

X X X X

ପ୍ରଥମ ଅଭିଯାନ ପରେ ବିଜୟଦର୍ପରେ ସମସ୍ତେଏକାଠିହେଲେ ହେଡ୍‌କ୍ୱାଟର୍ସରେ । ଅମ୍ବିକା ଚକ୍ରବର୍ତ୍ତୀ ଫେରିଛନ୍ତି । ଟେଲିଫୋନ ଭବନ ଧ୍ୱଂସ କରି ଫେରିଛି ନରେଶ ରାୟର ଦଳ । ଅନ୍ୟ ପ୍ଲାନ କିନ୍ତୁ ଫେଲ୍ ମାରିଛି ସେ ଦିନ । ୟୁରୋପିୟାନ୍ କ୍ଲବ୍ ଉପରେ ଚଢ଼ାଉ କରିପାରିନାହାନ୍ତି ସେମାନେ । କ୍ଲବ୍ ହାଉସର ଛୁଟି ସେ ଦିନ । ଏଥର ପତାକା ଅଭିବାଦନ ଉତ୍ସବ । ଅର୍ଡ଼ର ହେଲା – "Load(ଲୋଡ଼), Aim(ଏମ୍), Fire(ଫାୟାର) ।'' ସଙ୍ଗେ ସଙ୍ଗେ ୫୦ଟି ମାସ୍କେଟ୍ରି ରାଇଫେଲର ମିଳତ ଗର୍ଜନ – 'ଗୁଡୁମ୍ ଗୁଡୁମ୍' ।

ଚଟ୍ଟଗ୍ରାମର ଅସ୍ଥାୟୀ ବିପ୍ଳବୀ ସରକାର ଗଠିତହେଲା । ''ସାଲ୍ୟୁଟ ନେଲେ ମାଷ୍ଟରଦା' । ସର୍ବାଧିନାୟକ ମାଷ୍ଟରଦା' ବଜ୍ରଗମ୍ଭୀର କଣ୍ଠରେ ନିମ୍ନଲିଖିତ ଘୋଷଣା- ପତ୍ରଟି ପାଠକଲେ । ମୂଳ ଇଂରାଜୀ ଲେଖାର ଓଡ଼ିଆ ଅନୁବାଦ —

ପ୍ରିୟ ବିପ୍ଳବୀ ସୈନିକବୃନ୍ଦ !

ବିପ୍ଳବର ଗୁରୁଦାୟିତ୍ୱ ଆଜି ହିନ୍ଦୁସ୍ଥାନ ରିପବ୍ଲିକାନ ଆର୍ମି ଉପରେ ନ୍ୟସ୍ତ । ଭାରତବାସୀର ଅନ୍ତରର ବାସନା ଓ ଉଚ୍ଚାକାଙ୍କ୍ଷା ପରିପୂର୍ଣ୍ଣ କରିବା ପାଇଁ ଆମ୍ଭେମାନେ ସ୍ୱଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଚଟ୍ଟଗ୍ରାମରେ ବୈପ୍ଳବିକ କର୍ମ ସମ୍ପନ୍ନ କରିବାର ଗୌରବ ଅର୍ଜନ କରିଅଛୁଁ । ଏହା ବିଶେଷ ଗୌରବର କଥା । ଆମର ମୁକ୍ତିବାହିନୀ ଚଟ୍ଟଗ୍ରାମରେ ଥିବା ବ୍ରିଟିଶ ସରକାରର ସୁଦୃଢ଼ ଘାଟିଗୁଡ଼ିକ ଅଧିକାର କରିଅଛି ।

ବ୍ରିଟିଶର ଅସ୍ତ୍ରାଗାର ଅଧିକୃତ । ଚଟ୍ଟଗ୍ରାମର କେନ୍ଦ୍ରୀୟ ଟେଲିଫୋନ ଭବନ ବିଧ୍ୱସ୍ତ । ବହିର୍ଜଗତ ସହ ତାରବାର୍ତ୍ତା ବିଚ୍ଛିନ୍ନ । ରେଲଲାଇନ ଉତ୍ପାଟିତ ଓ ମାଲବାହୀ ଟ୍ରେନ ଲାଇନଚ୍ୟୁତ । ବାହାର ସହ ଟ୍ରେନ ଯୋଗାଯୋଗ ବ୍ୟବସ୍ଥାର ପରିସମାପ୍ତି ହୋଇଛି । ଶତ୍ରୁର ସେନାବାହିନୀ ପରାସ୍ତ । ଅତ୍ୟାଚାରୀ ବିଦେଶୀ ସରକାରର ଅସ୍ତିତ୍ୱ ଲୁପ୍ତ । ଜାତୀୟପତାକା ଆଜି ଉଚ୍ଚରେ ଉଡ୍‌ଡ଼ୀୟମାନ । ଜୀବନ ଓ ରକ୍ତର ବିନିମୟରେ ଏହାକୁ ସର୍ବତୋଭାବେ ରକ୍ଷାକରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।

''ବିଶ୍ୱବାସୀଙ୍କର ଗୋଚରାର୍ଥେ ଓ ସ୍ୱୀକୃତି ପାଇଁ ହିନ୍ଦୁସ୍ଥାନ ରିପବ୍ଲିକାନ ଆର୍ମି ଚଟ୍ଟଗ୍ରାମ ଅଞ୍ଚଳରେ ବ୍ରିଟିଶ ସାମ୍ରାଜ୍ୟବାଦୀର ଦସ୍ୟୁ ଶାସନ ଓ ଶୋଷଣର ପରିସମାପ୍ତି ଘୋଷଣା କରିଅଛି ।''

''ଚଟ୍ଟଗ୍ରାମ ଭାରତବର୍ଷର ଏକ କ୍ଷୁଦ୍ର ଅଂଶ; ତଥାପି ଆଶା ଓ ଭରସା ଯେ ଆଜିର ବିଜୟ ବ୍ରିଟିଶ-ଦସ୍ୟୁର କବଳରୁ ଅଚିରେ ଭାରତମାତାକୁ ମୁକ୍ତ କରିବା ପାଇଁ ଭାରତବାସୀଙ୍କୁ ସାରାଦେଶରେ ଅନୁରୂପ ବିଦ୍ରୋହାଗ୍ନି ପ୍ରଜ୍ୱଳିତ କରିବାକୁ ଉତ୍ସାହ ଓ ପ୍ରେରଣା ପ୍ରଦାନ କରିବ ।''

''ହିନ୍ଦୁସ୍ଥାନ ରିପବ୍ଲିକାନ ଆର୍ମି ଚଟ୍ଟଗ୍ରାମ ଶାଖାରେ ସଭାପତି – ମୁଁ ସୂର୍ଯ୍ୟସେନ ଏତଦ୍ୱାରା ଘୋଷଣା କରୁଅଛି ଯେ, ଚଟ୍ଟଗ୍ରାମ ଶାଖାର ମୁକ୍ତିବାହିନୀର ବର୍ତ୍ତମାନ ପରିଷଦହିଁ ସାମରିକ ବିପ୍ଳବୀ ସରକାରରେ ପରିଣତ ହୋଇ ନିମ୍ନଲିଖିତ ଜରୁରି କାର୍ଯ୍ୟ ସଂପନ୍ନ କରିବାକୁ ନିର୍ଦ୍ଦେଶ ଦେଉଅଛି ।

୧ – ଆଜିର ବିଜୟକୁ ସୁନିଶ୍ଚିତ କରିବାକୁ ପ୍ରତିରୋଧ ବ୍ୟବସ୍ଥା ଗଢ଼ି ତୋଳିବାକୁ ହେବ ।

୨ – ଭାରତବର୍ଷର ସ୍ୱାଧୀନତା ପାଇଁ ସଶସ୍ତ୍ର ସଂଗ୍ରାମକୁ ଆହୁରି ବ୍ୟାପକ ଓ ତୀବ୍ରତର କରିବାକୁ ହେବ ।

୩ – ଆଭ୍ୟନ୍ତରୀଣ ଶତ୍ରୁମାନଙ୍କୁ ଜବତ କରିବାକୁ ହେବ । ଆମର ଅସ୍ଥାୟୀ ବିପ୍ଳବୀ ସରକାର ଚଟ୍ଟଗ୍ରାମର ପ୍ରତ୍ୟେକ ସଚ୍ଚା ତରୁଣ-ତରୁଣୀଙ୍କ ନିକଟରୁ ସଂପୂର୍ଣ୍ଣ ବାଧ୍ୟତା, ଆନୁଗତ୍ୟ ଏବଂ ସକ୍ରିୟ ସହଯୋଗିତାର ଆଶା ଓ ଦାବିରଖୁଛି ଏବଂ ଯେଉଁମାନଙ୍କ ହୃଦୟରେ ମୁକ୍ତିଯୁଦ୍ଧର ଅଗ୍ନି ପ୍ରଜ୍ୱଳିତ ହେଉଅଛି, ସେମାନ୍‌ଙ୍କଠାରୁ ସହାନୁଭୂତି ଓ ସକ୍ରିୟ ସାହାଯ୍ୟ ପ୍ରତ୍ୟାଶା କରୁଛି ।

''ସାମରିକ ବିପ୍ଳବୀ ସରକାର ଦୀର୍ଘଜୀବୀ ହେଉ ।'' ''ବନ୍ଦେ ମାତରମ୍'' ।

ଘୋଷଣାପତ୍ରଟି ପାଠହେବା ସଙ୍ଗେ ସଙ୍ଗେ ସ୍ୱାଧୀନ ବିପ୍ଳବୀ ସରକାରର ସମ୍ମାନରେ ତିନିଥର ଗୁଳି ଫାଏର କରାଗଲା ଏବଂ ତା'ପରେ ତିନିଥର ଜୟଧ୍ୱନି ଉଚ୍ଚାରିତ ହେଲା– 'ବନ୍ଦେ ମାରତମ୍, ବନ୍ଦେ ମାତରମ୍, ବନ୍ଦେ ମାରତମ୍' । ''ମାଷ୍ଟର ଦା ଜିନ୍ଦାବାଦ, ଇନକ୍ଲିଲାବ ଜିନ୍ଦାବାଦ ଓ ବନ୍ଦେ ମାତରମ୍'' ସ୍ଲୋଗାନ୍‌ରେ କମ୍ପିଉଠିଲା ଚଟ୍ଟଗ୍ରାମ ଆକାଶ-ବତାସ ।

ସମସ୍ତଙ୍କ ମନରେ ଅଫୁରନ୍ତ ଆନନ୍ଦ ଓ ବୁକୁଫଟା ଉଲ୍ଲାସ-ଲହରୀ, ଜୀବନର କେତେ ସାଧ-ସାଧନା, କେତେ ସ୍ୱପ୍ନର ସଫଳ ରୂପାୟନ । ଚଟ୍ଟଗ୍ରାମ ବାସ୍ତବରେ ସ୍ୱାଧୀନ, ମୁକ୍ତ ! ସ୍ୱାଧୀନ ଚଟ୍ଟଗ୍ରାମ, ସ୍ୱାଧୀନ ଭାରତ ।

ଏ କ'ଣ ? କ'ଣ ଏ ଶବ୍ଦ ? ରାତ୍ରିର ଘନ ଅନ୍ଧକାର ଭେଦ କରି କ'ଣ ଏ ଗର୍ଜନ, ଲୁଇସଗନ୍‌ର ହୁଙ୍କାର– ଗୁଡୁମ, ଗୁଡୁମ, ଗୁଡୁମ ଗୁଡୁମ....... ଏହାର ଜବାବ ଦେବାକୁ ପୋଜିସନ ନେଲା ପଚାଶଟି ମାସ୍କେଟ୍ରି ରାଇଫେଲ । ସେ ପଟେ ସ୍ୱୟଂ କ୍ରିୟଲୁଇସଗନ୍, ଏ ପଟରେ ରାଇଫେଲରୁ ଅବିଶ୍ରାନ୍ତ ଗୁଳି ବର୍ଷଣ । ଶେଷରେ ସ୍ତବ୍ଧ ହେଲା 'ଲୁଇସଗନ' ଜିତିଲା 'ରାଇଫେଲ' ।

X X X X

''ଆହା, କ'ଣ, କଲ ତୁମେ ହିମାଂଶୁ ?''

ପୋଲିସ ଲାଇନକୁ ଜଳେଇଦେଇ ଫେରିବାକେଳେ ଅଜ୍ଞାତରେ ହିମାଂଶୁ ଦେହରେ ଢାଳିହୋଇଯାଇଛି ପେଟ୍ରୋଲ ଏବଂ ହଠାତ୍ ସେଥିରେ ନିଆଁ ଧରିନେଲା । ଟାହୁଁ ଟାହୁଁ ସର୍ବାଙ୍ଗ ଫୋଟକା ହୋଇଗଲା । ଆଖିରେ ପଡ଼ିଗଲା ନିଆଁଧାସ । କି ବୀଭତ୍ସ ହୃଦୟବିଦାରକ ସେ ଦୃଶ୍ୟ । କେହି ରକ୍ଷାକରିପାରିଲେନି ।

ଅପେକ୍ଷା ନକରି ମଟରଗାଡ଼ିରେ ଉଠାଇନେଲେ ଅର୍ଦ୍ଧଦଗ୍ଧ ହିମାଂଶୁକୁ, ଅନନ୍ତ ସିଂ ଓ ଗଣେଶ ଘୋଷ । ଗାଡ଼ି ଛୁଟିଚାଲିଲା ବିପ୍ଳବୀମାନଙ୍କର କୌଣସି ଏକ ଗୋପନ ଚିକିତ୍ସାକେନ୍ଦ୍ରକୁ । ଆନନ୍ଦ ଗୁପ୍ତ ଓ ଜୀବନ ଘୋଷାଲ ବି ଚାଲିଗଲେ ଗାଡ଼ିରେ । ଚାଲିଗଲେ ସତ୍ୟ; କିନ୍ତୁ ବହୁଦିନ ପର୍ଯ୍ୟନ୍ତ ସେମାନଙ୍କ ସହ ଆଉ କାହାରି ଭେଟ ହୋଇପାରିଲା ନାହିଁ । ଅପେକ୍ଷା କରି ପ୍ରାୟ ୪ ଘଣ୍ଟା ବିତିଗଲା । ମାଷ୍ଟରଦାଙ୍କ ମନରେ ଘୋର ଉଦ୍‌ବେଗ, ଦୁଶ୍ଚିନ୍ତା, ''କ'ଣ ପୋଲିସ ଧରିନେଲା ସେମାନଙ୍କୁ ?''— ଏହିଭଳି ଅସଂଖ୍ୟ ପ୍ରଶ୍ନ !

''ନାଃ, ଆଉ ଏଠାରେ ଅପେକ୍ଷା କରିବା ନିରାପଦ ନୁହେଁ । ଚାଲ ସମସ୍ତେ ପାହାଡ଼ ଉପରକୁ ।'' ନିର୍ଦ୍ଦେଶ ଦେଲେ ମାଷ୍ଟରଦା ।

ଚଟ୍ଟଗ୍ରାମ ସହର ସଂପୂର୍ଣ୍ଣ ଅରକ୍ଷିତ । ପୋଲିସ ସାମରିକ ଅଫିସର, ସୈନ୍ୟ, ସେନାପତି ସମସ୍ତେ ତ୍ରସ୍ତ ଓ ସ୍ତମ୍ଭୀତ । ନିରୁପାୟ ହୋଇ ସମସ୍ତେ ଆଶ୍ରୟ ନେଇଛନ୍ତି ବଙ୍ଗୋପସାଗରରେ ଏକ ଜାହାଜ ଭିତରେ । କାରଣ ଲୁଇସଗନ୍ ସାହାଯ୍ୟରେ ବିଦ୍ରୋହୀମାନଙ୍କର ମୁକାବିଲା କରିବାକୁ ସେମାନଙ୍କର ଉଦ୍ୟମ ବ୍ୟର୍ଥ ହୋଇଛି ବିଦ୍ରୋହୀମାନଙ୍କର ସାମାନ୍ୟ ମାସ୍କେଟ୍ରି ସାମନାରେ; ଫଳରେ ଜାହାଜଟି ହୋଇଛି ସେମାନଙ୍କର ଏକମାତ୍ର ନିରାପଦ ଆଶ୍ରୟସ୍ଥଳ ।

ବିପ୍ଳବୀମାନଙ୍କର ଧାରଣା କିନ୍ତୁ ଓଲଟା । ଏହା ଏକାନ୍ତ ସ୍ୱାଭାବିକ ମଧ୍ୟ; କାରଣ ଇଂରେଜ ସାମରିକ ଶକ୍ତି ଯେ ସେମାନଙ୍କ ଏହି ସାମାନ୍ୟ ଆଘାତରେ ଏତେଦୂର ବିପର୍ଯ୍ୟସ୍ତ ହେବ, ଏହା କଳ୍ପନାତୀତ । ସୁତରାଂ ଅର୍ଦ୍ଧଦଗ୍ଧ ହିମାଂଶୁର ଚିକିତ୍ସା-ବ୍ୟବସ୍ଥା କରି ଅନନ୍ତ ସିଂହଙ୍କର ମଟରକାର୍ ଫେରିବାବେଳେ ତାକୁ ସାମରିକ ବିଭାଗର ଗାଡ଼ି ବୋଲି ମନେକରିବା ଏବଂ ଗୋପନୀୟ ସ୍ଥାନରେ ଲୁଚିଯିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ସବୁ ପ୍ଲାନ୍ ଯେମିତି ଗୋଳମାଳ ହୋଇଗଲା ! ନିୟତିର କି କ୍ରୂର ପରିହାସ !

ସେହିଦିନ ଚଟ୍ଟଗ୍ରାମରେ ସର୍ବତ୍ର ତିନିଗୋଟି ପ୍ରଚାରପତ୍ର ବଣ୍ଟାଯାଇଥିଲା ମୁକ୍ତିବାହିନୀ ପକ୍ଷରୁ । କୁହାଯାଏ ଯେ, ଏହି ପ୍ରଚାରପତ୍ର ଅଭିଯାନର ବହୁ ପୂର୍ବରୁ ଛାପାହୋଇଥିଲା ଏବଂ ଅଭିଯାନ ସାଫଲ୍ୟମଣ୍ଡିତ ହେବା ପରେ ବିଭିନ୍ନ ସ୍ଥାନରେ ବଣ୍ଟନ କରାଯାଇଥିଲା । ଅଭିଯାନର ସାଫଲ୍ୟ ସମ୍ପର୍କରେ ପୂର୍ବରୁ ବିପ୍ଳବୀମାନେ ସଂପୂର୍ଣ୍ଣ ନିଶ୍ଚିତ ଥିବାର ଏହା ଏକ ଜ୍ୱଳନ୍ତ ପ୍ରମାଣ ।

ପ୍ରଚାର ପତ୍ର ୧ – ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମି ।

''ବିଟ୍ରିଶ ଓ ତା'ର ସରକାର ବହୁ ଶତାବ୍ଦୀଧରି ତିରିଶକୋଟି ଭାରତବାସୀଙ୍କୁ ଚିରପଦାନତ କରି ରଖିବା ଓ ସେମାନଙ୍କର ସାମାନ୍ୟତମ ଜାତୀୟତାବୋଧ ଓ ଜାତୀୟ

ଐତିହ୍ୟ ନିଶ୍ଚିହ୍ନ କରିଦେବା ଉଦ୍ଦେଶ୍ୟରେ ନିଷ୍ପେଷଣର ଯେଉଁ ନିଷ୍ଠୁର ନୀତି ଅନୁସରଣ କରିଅଛନ୍ତି, ତା' ବିରୁଦ୍ଧରେ ଆଜି ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମିର ଚଟ୍ଟଗ୍ରାମ ଶାଖା ସଶସ୍ତ୍ର ଅଭ୍ୟୁତ୍‌ଥାନର ଅଭିପ୍ରାୟରେ ଯଥାବିଧି ଗୁରୁତ୍ୱସହକାରେ ଘୋଷଣା କରୁଅଛି ଯେ –

''ଭାରତର ମାଲିକାନା ସ୍ୱତ୍ତ୍ୱ ଓ ଭାଗ୍ୟ-ନିୟନ୍ତ୍ରଣର ଅଧିକାର ଏକମାତ୍ର ଭାରତୀୟ ଜନସାଧାରଣଙ୍କରହିଁ ରହିଛି; ଦୀର୍ଘକାଳବ୍ୟାପୀ ବୈଦେଶିକ ରାଜଦଣ୍ଡ ସେହି ଅଧିକାର ଖର୍ବ କରିଆସିଥିବାରୁ ଆମ୍ଭମାନଙ୍କର ସ୍ୱାଧୀନତା ସ୍ପୃହାକୁ କେବେବେଳେହେଲେ ନିର୍ବାପିତ କରିପାରିନାହିଁ କିମ୍ବା କରିପାରିବନାହିଁ ।

ଅସ୍ତ୍ର ଆଘାତରେ ସମଗ୍ର ଜଗତ୍ ସମ୍ମୁଖରେ ଆଜି ହିନ୍ଦୁସ୍ଥାନ ମୁକ୍ତିବାହିନୀ ଏହି ଅଧିକାର ଅର୍ଜନ ଲାଭର ଆକାଙ୍କ୍ଷା ଉଚ୍ଚକଣ୍ଠରେ ଘୋଷଣା କରୁଅଛି ଏବଂ ଏହିଭଳିଭାବରେ ଭାରତୀୟ ଜାତୀୟ କଂଗ୍ରେସ ଘୋଷିତ ସ୍ୱାଧୀନତାର ଆଦର୍ଶକୁ ବାସ୍ତବତାରେ ପରିଣତ କରିବାକୁ ସଂକଳ୍ପ କରିଅଛି । ପୃଥିବୀର ଅନ୍ୟାନ୍ୟ ଜାତି ସମକ୍ଷରେ ସ୍ୱାଧୀନତାର ମହାନ୍ ଉଦ୍ଦେଶ୍ୟ ଏବଂ ମାତୃଭୂମିର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବାକୁ ପ୍ରତିଟି ସଭ୍ୟ ଆଜି ଜୀବନପଣ କରିଅଛନ୍ତି ।

''ଭାରତଭୂମିରେ ବିଟ୍ରିଶ ସରକାର ଅନୁସୃତ ସେହି ସମସ୍ତ ହୃଦୟବିଦାରକ ଘୃଣିତ କାର୍ଯ୍ୟକଳାପ, ନୃଶଂସଭାବେ ଓ ନିର୍ବିଚାରରେ ଭାରତର ତରୁଣମାନଙ୍କୁ ହତ୍ୟା ଓ ଫାଶୀ, ଭାରତୀୟ ନାରୀର ଅବମାନନା, କ୍ରୁର ବିଟ୍ରିଶର ବୁଟ୍‌ତଳେ ଦୁଗ୍ଧପୋଷ୍ୟ ଶିଶୁମାନଙ୍କରେ ନିଷ୍ପେଷଣ ଏବଂ ବ୍ୟବସାୟ ଓ ଶିଳ୍ପର ସଂପୂର୍ଣ୍ଣ ଧ୍ୱଂସସାଧନକୁ ଆମ୍ଭେମାନେ ଘୃଣାସହକାରେ ସ୍ମରଣ କରୁଁ । ସେହି ନିହତ ସନ୍ତାନମାନଙ୍କର ରକ୍ତର ବିନିମୟରେ ପ୍ରତିହିଂସା ଓ ପ୍ରତିଶୋଧ ଗ୍ରହଣ ପାଇଁ ଆଜି ସେମାନେ ପବିତ୍ର ଶପଥ ଗ୍ରହଣ କରିଅଛନ୍ତି ।

''ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମି ଆଜି ସେହି ଯୋଗ୍ୟତାର ଅଧିକାରୀ ଏବଂ ଜାତୀୟ ସ୍ୱାର୍ଥ ଓ ସମ୍ମାନରକ୍ଷାର ପ୍ରୟୋଜନରେ ଭାରତୀୟ ଜନଗଣଙ୍କର ଆନୁଗତ୍ୟ ଦାବି କରୁଅଛି । ସେମାନଙ୍କର ଏକାନ୍ତ ଅନୁରୋଧ, ଏହି ଆଦର୍ଶରେ ଆସ୍ଥାବାନ୍ ଯେ କେହି ଭାରତବାସୀ ଯେପରିକି ନିଜର ଶିଥିଳତା, ଭୀରୁତା ବା ଅମାନୁଷିକତା ଦ୍ୱାରା ଏହାର ଅସମ୍ମାନ ନ କରେ । ଏହି ଶୁଭ ମୁହୂର୍ତ୍ତରେ ଚଟ୍ଟଗ୍ରାମବାସୀ ନିଶ୍ଚୟ ବିକ୍ରମ, ସ୍ୱଦେଶପ୍ରେମ ଓ ସର୍ବଜନକଲ୍ୟାଣ ଉଦ୍ଦେଶ୍ୟରେ ଆପଣାର ସନ୍ତାନମାନଙ୍କୁ ଆତ୍ମାହୁତିର ପ୍ରେରଣା ଯୋଗାଇଦେଇ ନିଜର ଯୋଗ୍ୟତା ପ୍ରମାଣ କରିବେ ।

ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମିର ଚଟ୍ଟଗ୍ରାମ ଶାଖାର କାଉନ୍ସିଲ ସଭାପତିଙ୍କ ଆଦେଶକ୍ରମେ ପ୍ରଚାରିତ ।

ପ୍ରଚାରପତ୍ର —୨ ''ଚଟ୍ଟଗ୍ରାମର ଛାତ୍ର ଓ ଯୁବକମାନଙ୍କ ପ୍ରତି

''ପ୍ରିୟ ଭାଇମାନେ, ''ବ୍ରିଟିଶ ସରକାରର ନିଷ୍ଠୁର ବଂଧନ ଓ ଉତ୍ପୀଡ଼ନରୁ ଦେଶକୁ ମୁକ୍ତ କରିବା ପାଇଁ ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମି ଆଜି ଗୋଟାଏ ଆଘାତ ଦେଇଛି ଏବଂ ସ୍ୱାଧୀନ ଭାରତର ପ୍ରତୀକ ପତାକା ଉତ୍ତୋଳନ କରିଛି ।

ବ୍ରିଟିଶ୍ ସରକାର ଦୁଇଶହ ବର୍ଷର ଅତ୍ୟାଚାର-ଜର୍ଜରିତ ଭାରତ ଆଧିପତ୍ୟ ସମୟରେ ପ୍ରତ୍ୟେକ ଥର ଭାରତବାସୀଙ୍କର ସ୍ୱାଧୀନତା-ଅର୍ଜନ ପ୍ରଚେଷ୍ଟାକୁ ଅତି ନିର୍ମମ ଭାବରେ ବିନଷ୍ଟ କରିଅଛନ୍ତି ଏବଂ ଏଥର ମଧ୍ୟ ସେମାନେ ସେମାନଙ୍କର ଦସ୍ୟୁବୃତ୍ତିର ଅନ୍ୟାୟ ଶାସନ ପୁନଃସ୍ଥାପିତ କରିବା ପାଇଁ ଯେକୌଣସି ଶକ୍ତି ପ୍ରୟୋଗ କରିବାକୁ ପରାଙ୍ମୁଖ ହେବେ ନାହିଁ ।

ଅତଏବ ଭାଇମାନେ, ଉଠ, ପାରିପାର୍ଶ୍ୱିକ ଅବସ୍ଥା ପ୍ରତି ଲକ୍ଷ୍ୟ କର । ପରାଧୀନତାର ନିଦାରୁଣ ଯନ୍ତ୍ରଣାକୁ ଉପଲବ୍ଧି କର । ଚାହିଁ ଦେଖ, ତୁମର ମାତୃଭୂମି କିଭଳି କରୁଣ ଲାଞ୍ଛନାରେ ଲାଞ୍ଛିତା । ଜର୍ମାନି, ରୁଷିୟା ଓ ଚୀନଦେଶର ଯୁବକ ଓ ଛାତ୍ରମାନେ ଯେଭଳି ଅଭିଯାନ ଚଳାଇଅଛନ୍ତି, ତୁମ୍ଭେମାନେ ତାହା କର । ତୁମ୍ଭମାନଙ୍କ ଅନ୍ତରରେ ପ୍ରତିଶୋଧ ଓ ପ୍ରତିହିଂସାର ଅଗ୍ନି ପ୍ରଜ୍ୱଳିତ ହେଉ । ସୈନ୍ୟଭାବରେ "ହିନ୍ଦୁସ୍ଥାନ ରିପବ୍ଲିକାନ ଆର୍ମିରେ ଯୋଗଦିଅ ଏବଂ ମାତୃଭୂମିକୁ ଦୁଃଖଦୁର୍ଭାଗ୍ୟର ଅତଳ ଗହ୍ୱରରୁ ବଞ୍ଚାଇବାକୁ ଚେଷ୍ଟାକର ।"

ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମି ଚଟ୍ଟଗ୍ରାମ ଶାଖାର କାଉନ୍‌ସିଲର ସଭାପତିଙ୍କ ଆଦେଶକ୍ରମେ ପ୍ରଚାରିତ ।"

ଚଟ୍ଟଗ୍ରାମ ଅଧିବାସୀମାନଙ୍କ ପ୍ରତି —

"ହିନ୍ଦୁସ୍ତାନ ରିପବ୍ଲିକାନ୍ ଆର୍ମିର ଚଟ୍ଟଗ୍ରାମ ଶାଖା ଚଟ୍ଟଗ୍ରାମର ପ୍ରତ୍ୟେକ ସ୍ତ୍ରୀ, ପୁରୁଷ ଓ ସନ୍ତାନମାନଙ୍କୁ ଆଦେଶଦେଉଅଛି, ଯେପରି କି ସେମାନେ ପ୍ରତ୍ୟେକ ଇଂରେଜ ଓ ଶ୍ୱେତାଙ୍ଗ ଆଙ୍ଗ୍ଲୋ-ଇଣ୍ଡିୟାନ, ଯେଉଁମାନେ ଆମର ଜାତୀୟ ଆଶା-ଆକାଙ୍‌କ୍ଷାର ପ୍ରତିବନ୍ଧକ, ସେମାନଙ୍କୁ ଜୀବିତ ବା ମୃତ ଯେକୌଣସି ଅବସ୍ଥାରେ ଆମର ସୈନ୍ୟବାହିନୀ ହେଡ଼୍‌କ୍ୱାଟର୍‌ରେ ଉପସ୍ଥିତକରିବେ । ହିନ୍ଦୁସ୍ଥାନ ରିପବ୍ଲକାନ ଆର୍ମି ଘୋଷଣା କରୁଅଛି ଯେ ଦାବି ଅନୁସାରେ ଏହି ସମସ୍ତ ଲୋକଙ୍କୁ ଯେକୌଣସି ବ୍ୟକ୍ତି ସାମରିକ ଦପ୍ତରରେ ଅର୍ପଣ କରିବେ, ସେମାନଙ୍କୁ ଯଥେଷ୍ଟ ପରିମାଣରେ ପରସ୍କୃତ କରାଯିବ ।"

[ ହିନ୍ଦୁସ୍ଥାନ ରିପବ୍ଲିକାନ ଆର୍ମି ଚଟ୍ଟଗ୍ରାମ ଶାଖାର କାଉନ୍‌ସିଲର ସଭାପତିଙ୍କର ଆଦେଶକ୍ରମେ ପ୍ରଚାରିତ । ]

## ଧନ୍ୟ ଚଟ୍ଟଗ୍ରାମ !!

ଆଜି ବହୁ ବର୍ଷର ସାଧନା ପରେ ତୁମେ ଦେଶବାସୀଙ୍କୁ ସାର୍ଥକତାର ମୁଖ ଦେଖାଇଲ !

ଭୀରୁମାନେ କହିବେ, କି ସର୍ବନାଶ ! ଆତ୍ମସମ୍ମାନ-ଜ୍ଞାନହୀନ କହିବେ, ଏ କି ଅନ୍ୟାୟ ! କାଣ୍ଡଜ୍ଞାନହୀନ କହିବେ, କ'ଣ ଆଉ ହେଲା ? ହିସାବୀମାନେ କହିବେ ସୁଦୂର ଚଟ୍ଟଗ୍ରାମରେ ନ ହୋଇ କଲିକତା ମହାନଗରୀରେ ହେବା ଉଚିତ ଥିଲା କିମ୍ୱା ବହୁ ସ୍ଥାନରେ ଏକାସଙ୍ଗେ ହେବା ଉଚିତ ଥିଲା । ବୁଦ୍ଧିମାନ୍ କହିବେ, ଅଳ୍ପଦିନ ଭିତରେ ଗାନ୍ଧି-ଆନ୍ଦୋଳନ ଯେତେବେଳେ ବିଦେଶୀ ବର୍ବର ନିଷ୍ପେଷଣରେ ନିଃଶେଷ ହେବା ପରେ, ସେତେବେଳେ ଏଭଳି ଅଭିଯାନର ବିଶେଷ ପ୍ରୟୋଜନ ନ ଥିଲା । ଭୀରୁ, ଆତ୍ମସମ୍ମାନ-ଜ୍ଞାନହୀନ ଓ କାଣ୍ଡଜ୍ଞାନହୀନମାନଙ୍କ କଥାର କୌଣସି ଜବାବ ନାହିଁ । ହିସାବୀ ଓ ବୁଦ୍ଧିମାନ୍‌ଙ୍କୁ କହିରଖେଁ,

ଯୁଗଯୁଗର ନିର୍ଯାତିତ ମାନବର ବିପ୍ଳବୀ ଆତ୍ମାର ଦୀର୍ଘ ସ୍ୱପ୍ନ ଯେତେବେଳେ ନ୍ୟାୟଦଣ୍ଡରୂପେ ଓହ୍ଲେଇଆସେ, ତାହା କୌଣସି ହିସାବ କିମ୍ବା ପ୍ରୟୋଜନ ମାନି ଆସେନାହିଁ । ଦୈନଦିନ କାର୍ଯ୍ୟରେ ଗ୍ରହ-ନକ୍ଷତ୍ରର ଚଳାଚଳ ମଝିରେ ବିପ୍ଳବର ହିସାବକିତାବହୀନ ଧୂମକେତୁର ଗତି— ସମସ୍ତ ହିସାବକିତାବ ଭଙ୍ଗ କରି, ଅନ୍ଧ ମୂଢ଼ ପ୍ରୟୋଜନକୁ ଉପେକ୍ଷା କରି, ଗ୍ରହ-ନକ୍ଷତ୍ରର ଗତି ଓ ପ୍ରଗତିର ନିୟମ-ଶୃଙ୍ଖଳାକୁ ଓଲଟପୋଲଟ କରିଦେଲା । ଓଲଟପାଲଟହିଁ ତାହାର ହିସାବ; ଭାଙ୍ଗି ଚୁରମାର କରିବାହିଁ ତାହାର ବୁଦ୍ଧି । ବିପ୍ଳବ ପ୍ରକୃତି ଭଳି ଦୁର୍ବାର ଏବଂ ପ୍ରକୃତି ସଦୃଶ କ୍ଲେଶର ଆବରଣରେ ଆଚ୍ଛାଦିତ ।

କିନ୍ତୁ ସ୍ୱାର୍ଥାନ୍ଧ କାପୁରୁଷ ବ୍ୟକ୍ତି ଉନ୍ମତ୍ତଭଳି ନିରପରାଧ ଓ ନିରସ୍ତ୍ର ଉପରେ ନିର୍ମମ ଭାବେ ଲାଠି ଓ ଗୁଳି ଚଳାଇ ଦେଖାଇଦେଇଛନ୍ତି ପରର ଦାସତ୍ୱକୁ ଉପଜୀବିକା କରି ଯେଉଁ ସବୁ ବର୍ବର ଜାତି ଆଜି ଦୁନିଆର ପ୍ରଭୁତ୍ୱ କରିଅଛନ୍ତି, ସେମାନଙ୍କର କ୍ରୂର ଚେଷ୍ଟାର ସମ୍ମୁଖରେ ଜଗତ୍‌ରେ ଅଖଣ୍ଡ ଶାନ୍ତି ପ୍ରତିଷ୍ଠାକାମୀର ଦିନ ଆଜି ମଧ୍ୟ ସୁଦୂରେ । ଶତାବ୍ଦୀର ଦାସତ୍ୱ ଅପମାନର ଗଞ୍ଜନାରେ ଜାତୀୟ ଚିତ୍ତମଧ୍ୟରେ ଯେଉଁ ବିସ୍ଫୋରଣର ପାହାଡ଼ ସୃଷ୍ଟିହୋଇଅଛି, କଲିକତା, କଳିକାପୁର ଓ ମୀଳାରେ ନିରପରାଧରେ ନିର୍ଯ୍ୟାତନାରେ ତାହାର ସ୍ଫୁଲିଙ୍ଗ ନିକ୍ଷିପ୍ତ ହେଲା, ଭବାନୀପୁରରେ ନିଆଁ ଜଳିଉଠିଲା, ଚଟ୍ଟଗ୍ରାମରେ ଅଗ୍ନ୍ୟୁତ୍ପାତ ହେଲା ।

ଧନ୍ୟ ଚଟ୍ଟଗ୍ରାମ ! ତୁମେ କେବଳ ଜାତିକୁ ସାର୍ଥକତାର ମୁଖ ଦେଖାଇନାହଁ; ତୁମେ କେବଳ ଜାତିର ଲାଞ୍ଛିତ ଆତ୍ମସମ୍ମାନକୁ ବଞ୍ଚାଇନାହଁ; ତୁମେ ଜାତିର ବିପ୍ଳବୀ ପ୍ରାଣକୁ କ୍ରମବର୍ଦ୍ଧମାନ ବ୍ୟାପକତାର ଆଦର୍ଶ ସହିତ ପରିଚିତ କରାଇଅଛ । ଜାତିର କଳଙ୍କ ଘୁଞ୍ଚାଇଥିଲେ କାନାଇଲାଲ । ଜାତି ଭିତରେ ଯେଉଁ ମନୁଷ୍ୟତ୍ୱ ଜାଗ୍ରତ ହୋଇଥିଲା ବ୍ୟକ୍ତିଗତଭାବେ ସତ୍ୟେନ୍, ବୀରେନ୍, ଧିଙ୍ଗ୍ରା ପ୍ରଭୃତି ତାହାର ପରିଚୟ ଦେଇଥିଲେ ବିପ୍ଳବ ଅଙ୍କର ଆରମ୍ଭରେ । ଭାରତୀୟ କାପୁରୁଷ, ଭାରତୀୟ ଯୁଦ୍ଧକରିଜାଣେନା— ଏହି ଅପବାଦ ଘୁଞ୍ଚାଇବାକୁ ଦୁଇଜଣ ଦେଇ ହେଉ ବା ପାଞ୍ଚଜଣ ଦେଇ ହେଉ, ଯୁଦ୍ଧୋଦ୍ୟମ ଆଦର୍ଶ ପ୍ରଥମେ ଦେଖାଇଥିଲେ ଯତୀନ୍ଦ୍ରନାଥ । ଯୁଦ୍ଧର ସର୍ବାଙ୍ଗୀନ ଆୟୋଜନ ସେ କରିଥିଲେ । କିନ୍ତୁ ଆଘାତ ଦେବାପୂର୍ବରୁ ପରାଧୀନ ଜାତିର ଅଗଣିତ ବାଧାରେ ବ୍ୟାହତ ହୋଇ ଯୁଦ୍ଧଭାର ଓ ଯୋଦ୍ଧାର ଆଦର୍ଶ ଜାତିକୁ ଶିଖାଇ ଅସଂପୂର୍ଣ୍ଣ କାର୍ଯ୍ୟଭାର ଦେଶବାସୀଙ୍କ ଉପରେ ସମର୍ପଣ କରି ଅମରଲୋକକୁ ଚାଲିଗଲେ । ଚଟ୍ଟଗ୍ରାମ, ତୁମେ ତାଙ୍କର ଅସଂପୂର୍ଣ୍ଣ କାର୍ଯ୍ୟରେ ପ୍ରଥମେ ହାତଦେଇଛ । ଆକ୍ରମଣ କରିବା, ଗୋଟାଏ ସହରରେ ବା ପାଞ୍ଚଟା ସହରରେ ବା ଜିଲାରେ ଶତ୍ରୁର ଯାତାୟାତ ବା ସମ୍ବାଦ-ସରବରାହ କାର୍ଯ୍ୟରେ, ବିଦେଶୀ ଶାସକର ଏକାଧିକ କେନ୍ଦ୍ର ଉପରେ ଏକସଙ୍ଗରେ ଆକ୍ରମଣ କରିବା, ଲୁଣ୍ଠନ କରିବା, ଅଧିକାର କରିବା— ବିପ୍ଳବର କ୍ରମବର୍ଦ୍ଧମାନ ଏହି ଆଦର୍ଶର ସୂଚନା ଆତ୍ମପ୍ରକାଶ କରିଅଛି ଚଟ୍ଟଗ୍ରାମରେ । ଆମେ ଜାଣୁ ଯେ, ଗୋଟିଏ ଦୁଇଟି ଇଂରେଜରକ୍ତର ପ୍ରତିଶୋଧ ହେବ ବହୁ ସ୍ୱଦେଶପ୍ରେମୀ ଓ ବହୁତର ନିରପରାଧର ରକ୍ତପାତରେ । କିନ୍ତୁ ଏହା ତ ଦରକାର । ନିର୍ଯାତନା ପରେ ନିର୍ଯାତନା

ହୋଇ ଅଧିକତର ମନୁଷ୍ୟ ଜାଗ୍ରତ ହୁଅନ୍ତୁ । ସ୍ୱାଧୀନତାର ଉଦ୍ୟମର ବ୍ୟାପକତାର ଆଦର୍ଶ ସଫଳ ହେଉ । ଗୋଟାଏ ଜାତିର ଦାସତ୍ୱର କଳଙ୍କ ପୋଛିବାର ପ୍ରୟାସରେ ରକ୍ତପାତର ହିସାବରେ ମୂଢ଼ ଜାତିକୁ ବିହ୍ୱଳ କରି ଲାଭ କ'ଣ ?

ବିଦେଶୀ ଶାସକ ବିନା ବିଚାରରେ ବନ୍ଦୀ କରିବାର ଆଇନ ପାଶ୍ କରିଅଛି । ଜାତିର ବଡ଼ ଆଦରର ସୁରେନ୍ଦ୍ରମୋହନ, ବିପିନବିହାରୀ, ଅରୁଣଚନ୍ଦ୍ର, ପ୍ରତୁଲଚନ୍ଦ୍ର ଓ ଆହୁରି ବହୁ ଦେଶପ୍ରେମୀ କର୍ମୀଙ୍କୁ ବିଦେଶୀ ଶାସକ ଜାତିର ଛାତିରୁ କାଢ଼ିନେଇଛି । ବେଶ୍ ହୋଇଛି; ଏହା ତ ଦରକାର । ସେମାନଙ୍କର ଅପରାଧ କ'ଣ ?— ସେ ପ୍ରଶ୍ନ ମୁଁ କରୁନାହିଁ । ବିଦେଶୀ ହାତରେ ନିର୍ଯାତିତ ହେବା ଏବଂ ବିଦେଶୀର ପ୍ରରୋଚନାରେ ସ୍ୱଦେଶୀ ଲୋକଙ୍କ ଦ୍ୱାରା ଲାଞ୍ଛିତ ହେବା, ଏହିସବୁ ଅମୂଲ୍ୟ ଜୀବନରେ ଏହାହିଁ ସାର୍ଥକତା ! କ୍ଷୁଦିରାମ, କାନାଇଲାଲ ଓ ଯତୀନ୍ଦ୍ରନାଥ ପ୍ରଦର୍ଶିତ ଆଦର୍ଶକୁ ମନୁଷ୍ୟ ଉପରେ ଅସହ୍ୟ ନିର୍ଯାତନ ସତ୍ତ୍ୱେ ଶତହତାଶା ନୈରାଶ୍ୟ ଅନ୍ଧାରର ଦୁର୍ଯୋଗ ଭିତର ଦେଇ ଏବଂ ମା' ଅପେକ୍ଷା ଅଧିକ ଯତ୍ନ ଓ ଆଦର ଦେଇ ଏହିମାନେ ସେହି କ୍ଷୁଦିରାମ-ଯତୀନ୍ଦ୍ରନାଥ ଦିନଠାରୁ ଚଟ୍ଟଗ୍ରାମ ଦିନ ପର୍ଯ୍ୟନ୍ତ ନେଇଆସିଛନ୍ତି । ଏହିଠାରେହିଁ ସେମାନଙ୍କ ଜୀବନର ସାର୍ଥକତା । ଆଜି ଚଟ୍ଟଗ୍ରାମ-ପ୍ରଦର୍ଶିତ ପଥରେ ବ୍ୟାପକତର ଆଦର୍ଶ ଜୀବନ ଦେଇ ନୂତନ କର୍ମୀଦଳ ବାହାରିଆସନ୍ତୁ । ଜିଲା ପରେ ଜିଲାରେ ବିଦେଶୀ ଶାସକର କ୍ଷମତାର ଅଭିମାନ ଓ ଆସ୍ପର୍ଦ୍ଧା ଧୂଳିସାତ୍ ହେଉ । ବିଜୟପରେ ବିଜୟ ହାସଲ କରି ଜାତି ମତ୍ତ ହୋଇଉଠୁ । ସାଫଲ୍ୟ ପରେ ସାଫଲ୍ୟ ଆଡ଼କୁ ଛୁଟିଯାଇ ଜାତିର ଆତ୍ମଅବିଶ୍ୱାସ ଦୃଢ଼ ହେଉ । ଅଗଣିତ ଭବିଷ୍ୟଦ୍ ବଂଶୀୟମାନଙ୍କର କୃତଜ୍ଞ ଅନ୍ତରର ଶ୍ରଦ୍ଧା ଅଭିନନ୍ଦନ ଜାତିର ଯୁବକମାନଙ୍କୁ ଉଦ୍‌ବୁଦ୍ଧ କରୁ । ସ୍ତରପରେ ସ୍ତର ଅନ୍ଧାର ଅନ୍ତର୍ହିତ ହୋଇ ପୂର୍ବ ଦିଗନ୍ତରେ ଉଷାର ଆଲୋକ ଦେଖାଗଲାଣି । ଆଉ ଡେରି ନାହିଁ ।

୧୧ ବୈଶାଖ, ୧୩୩୭ ସାଲ (୧୯୩୦)

''ସ୍ୱାଧୀନତା''



## ଅଧ୍ୟାୟ - ପଚିଶ

# ମୁହାଁମୁହିଁ ଲଢ଼େଇ

ମୁଲୁକ ବାହାର ପାହାଡ଼; ଚଟ୍ଟଗ୍ରାମ ଉପକଣ୍ଠରେ ଅନୁଚ୍ଚ ପାହାଡ଼ । ୧୯ ତାରିଖ ରାତିଟା ସେହି ପାହାଡ଼ର କ୍ରୋଡ଼ ଆଶ୍ରୟ ଦେଲା ଭାରତର ମୁକ୍ତି-ସଂଗ୍ରାମର ସେହି ମରଣଜୟୀ ଯୁବକମାନଙ୍କୁ । ତା'ପରେ ଆରମ୍ଭହେଲା ଅବିଶ୍ରାନ୍ତ ଯାତ୍ରା ଏବଂ ଡେରା ପଡ଼ିଲା ଫତୟାବାଦରେ । ଆହାର, ନିଦ୍ରା, ବିଶ୍ରାମ ସବୁ ଯେମିତି ଭୁଲିଗଲା ସେମାନଙ୍କୁ । ଶେଷରେ ତୃଷାର୍ତ୍ତ ବିପ୍ଲବୀମାନଙ୍କର ଏକମାତ୍ର ପାନୀୟ ହେଲା ବଂଧୁକ ସଫା କରିବା ତେଲ— ଲୁବ୍ରିକେଟିଂ ଅଏଲ । ସମସ୍ତେ କ୍ଲାନ୍ତ !

''ବିପ୍ଲବୀ ହେ ମୃତ୍ୟୁଞ୍ଜୟୀ ବୀର ! ଭାରତମାତାର ହେ ଅମର ସନ୍ତାନ ! ଏଇ ତ ଆରମ୍ଭ, ମୁକ୍ତିସଂଗ୍ରାମର ଭୂମିକା ମାତ୍ର । ସୁତରାଂ କ୍ଲାନ୍ତିର ପ୍ରଶ୍ନ କାହିଁ ? ଏବେ ବି ତ ଦିଲ୍ଲୀ ବହୁଦୂରରେ । ''ଆମକୁ ସହର ଦଖଲ କରିବାକୁ ହେବ । ସମ୍ମୁଖ ସଂଗ୍ରାମ ଆସନ୍ନ । ଚାଲ ସମସ୍ତେ ସହରକୁ ।''

ପୁଣି ଆରମ୍ଭହେଲା ସେଇ ଅସରନ୍ତି ପଥଶ୍ରମ, ପାହାଡ଼ର ଉଠାଣି ଗଡ଼ାଣି ରାସ୍ତାରେ । ସୂର୍ଯ୍ୟୋଦୟ ପୂର୍ବରୁ ସହରରେ ପହଞ୍ଚିବା ଯୋଜନା କିନ୍ତୁ ବିପର୍ଯ୍ୟସ୍ତ ହୋଇଗଲା । 'ଅସ୍ତ୍ରାଗାର ଦଖଲ ଖବର ନିଶ୍ଚୟ ଚାରିଆଡ଼େ ପ୍ରଚାରିତ ହୋଇସାରିଥିବ ଏବଂ ସେଥିପାଇଁ ଏତେଗୁଡ଼ିଏ ସାମରିକ ପୋଷାକପିନ୍ଧା ଲୋକ ଏକାଠି ଚାଲିବା ନିରାପଦ ନ ହୋଇପାରେ ।' ଏହାହିଁ ଆଙ୍କିଥିଲା ସେଇଠି ମୁକ୍ତିସଂଗ୍ରାମୀଙ୍କ ମନରେ ସନ୍ଦେହର ଗାର । ଆଗରେ ଜଲାଲାବାଦ ପାହାଡ଼; ସୁତରାଂ ସେଇଠି ଡେରା ପଡ଼ିଲା । ସଂଧ୍ୟା, ଏପ୍ରିଲର ସୂର୍ଯ୍ୟ ଅସ୍ତାଚଳକୁ ଯିବା ପାଇଁ ଆହୁରି ଘଣ୍ଟାଏ କିମ୍ବା ଦେଢ଼ ଘଣ୍ଟା ବାକି । ମାର୍ଚିଂ ଅର୍ଡ଼ର ହେଲା ସର୍ବାଧିନାୟକଙ୍କ କଣ୍ଠରୁ । 'ଲେଫ୍ଟ୍ ରାଇଟ' କରି ଆଗେଇଚାଲିଲେ ମୁକ୍ତିସଂଗ୍ରାମୀ ବୀର ଯୁବକମାନେ । କି ଶୃଙ୍ଖଳିତ ସେ ମାର୍ଚ୍ଚିଂ । ପାହାଡ଼ର ଖାଲ ଢିପ, ଗଛଲତାର ପ୍ରତିବନ୍ଧକ ଅତିକ୍ରମ କରି ଚାଲିଲା ସେ ମାର୍ଚ୍ଚିଂ— 'ଲେଫ୍ଟ୍ ରାଇଟ, ଲେଫ୍ଟ୍ ରାଇଟ୍ ।'

ସ୍ୱାଧୀନତା ସଂଗ୍ରାମର ଏହି ଅଲୌକିକ ଶୋଭାଯାତ୍ରାର ପୁରୋଭାଗରେ ଥିଲେ ସର୍ବାଧିନାୟକ ସୂର୍ଯ୍ୟସେନ୍ । ତାଙ୍କ ପଛରେ ଜେନେରାଲ ଲୋକନାଥ ବଳ । ସେମାନଙ୍କ ପଛରେ ଚାଲିଛନ୍ତି ସୁରେଶ ଦେବ, ବିନୋଦ ଚୌଧୁରୀ, ଜୀତେନ୍ଦ୍ର ଦାସଗୁପ୍ତ, ଶମ୍ଭୁ ଦସ୍ତୀଦାର, କୃଷ୍ଣ ଚୌଧୁରୀ, ବିନୋଦ ଦତ୍ତ, ସରୋଜ ଗୁହ, କାଳୀ ଦେଓ, ମଧୁଦତ୍ତ ନବୀଦେବ, ମଲିନା ଘୋଷ, କ୍ଷୀରୋଦବାନାର୍ଜି, ହେମେନ୍ଦୁ ଦସ୍ତୀଦାର, କାଳୀ ଚକ୍ରବର୍ତ୍ତୀ, ଅର୍ଦ୍ଧେନ୍ଦୁ ଦସ୍ତୀଦାର, ରଣଧୀର ଦାସଗୁପ୍ତ, ସହାୟ ରାମ ଦାସ, ମତି କାନୁନ୍‌ଗୋ, ବିଧୁ

ଭଟ୍ଟାଚାର୍ଯ୍ୟ, ନାରାୟଣ ସେନ, ପୁଲିନ ବିକାଶ ଘୋଷ, ମହେନ୍ଦ୍ର ଚୌଧୁରୀ, ବନବିହାରୀ ଦତ୍ତ, ଶଶାଙ୍କ ଦତ୍ତ, ସୁବୋଧ ବଳ, ଫଣୀନ୍ଦ୍ର ନନ୍ଦୀ, ହରିପଦ ମହାଜନ, ଭବତୋଷ ଭଟ୍ଟାଚାର୍ଯ୍ୟ, ସୁଧାଂଶୁ ବୋଷ, ସୁବୋଧ ଚୌଧୁରୀ, ବ୍ରିଗେଡ଼ିଅର ତ୍ରିପୁରା ସେନ, ମନୋରଞ୍ଜନ ସେନ, ଦେବପ୍ରସାଦ ଗୁପ୍ତ, ହରିହର ବଳ, ରଜତ ସେନ, ସ୍ୱଦେଶ ରାୟ ଏବଂ ସଭା ପଛରେ ନିର୍ମଳ ସେନ୍ ଓ ଅମ୍ବିକା ଚକ୍ରବର୍ତ୍ତୀ । ଖାଲି ଅଭେଟ ହୋଇଛନ୍ତି ଅନନ୍ତ ସିଂହ ଓ ଗଣେଶ ଘୋଷ ।

X X X X

ଜଲାଲବାଦ ପାହାଡ଼ତଳେ, ଚଟ୍ଟଗ୍ରାମ । ରେଳଲାଇନଟା ଲମ୍ବିଯାଇଛି ଦିଗ୍‌ବଳୟ ଆଡ଼େ । ପ୍ରଭାସର ତୀକ୍ଷ୍ଣ ଦୃଷ୍ଟିଟା ହଠାତ୍ ଅଟକିଗଲା କ'ଣ ଗୋଟାଏ ଦେଖି । ''ଏ କ'ଣ ? ଟ୍ରେନଟା ଠିଆହେଲା କାହିଁକି ? ସେଠାରେ ତ ଷ୍ଟେସନ ନାହିଁ । ଗାଡ଼ିଟା ତେବେ ଅଟକିଲା କାହିଁକି ?''

''ଓହୋ, ଏଇଥିପାଇଁ ତେବେ ଗାଡ଼ିଟା ଠିଆହେଲା ?'' ପ୍ରଭାସ ପଚାରିଲା ମନକୁ ମନ ଯେତେବେଳେ ଟ୍ରେନ୍‌ରୁ ଓହ୍ଲେଇ ପଡ଼ିଲେ ଅସଂଖ୍ୟ ମିଲିଟାରୀ ଏବଂ କ୍ରମେ ଆଗେଇଲେ ପାହାଡ଼ ଆଡ଼କୁ । ସମସ୍ତଙ୍କ କାନ୍ଧରେ ସ୍ୱୟଂକ୍ରିୟ ରିଭଲଭର, ଲୁଇସଗନ୍, ଇଂରେଜ ଅସ୍ତ୍ରଭଣ୍ଡାରର ବଛା ବଛା ମାରଣାସ୍ତ୍ର । ମାର୍ଚ୍ଚିଂ କରି ଚାଲିଛନ୍ତି ଇଂରେଜ ସାମ୍ରାଜ୍ୟବାଦର ନାମକରା ମିଲିଟାରୀ ଏକାଡେମୀରେ ଶିକ୍ଷାପ୍ରାପ୍ତ ଶ୍ୱେତାଙ୍ଗ ସାମରିକ ଅଫିସର, ଚୋଖା ଚୋଖା ସର୍ଜେଣ୍ଟ, ମେଜର, କର୍ଣ୍ଣେଲ ଓ ଲେଫ୍‌ଟନାଣ୍ଟ ଓ କ୍ୟାପଟେନ୍ । ପ୍ରଭାସ ଉତ୍ତେଜିତ ହୋଇ ଗର୍ଜନ କଲା– ''ରେଡ଼ି, ମିଲିଟାରୀ, ମିଲିଟାରୀ, ମିଲିଟାରୀ ।''

ଅର୍ଡ଼ର ଦେବାର ଆବଶ୍ୟକତା ନ ଥିଲା– ସେମାନେ ତ ସବୁବେଳେ ପ୍ରସ୍ତୁତ । ସାମ୍ରାଜ୍ୟବାଦର ଆସୁରିକ ଶକ୍ତି ବିରୁଦ୍ଧରେ ତିରିଶ କୋଟି ଭାରତବାସୀଙ୍କର ସମ୍ମିଳିତ ଶକ୍ତିର ମୁହାଁମୁହିଁ ଲଢ଼େଇହେବ । ଦେଖାଯାଉ, ଏ ଯୁଦ୍ଧରେ କିଏ ହାରିବ, କିଏ ଜିତିବ ।

ମାଷ୍ଟରଦା'ଙ୍କର ଇଚ୍ଛା ଯେ, ଏହି ଐତିହାସିକ ଯୁଦ୍ଧରେ ସେନାପତି ହେବାର ଗୌରବ ସେ ନନେଇ ଅପେକ୍ଷାକୃତ ଯୁବ-ନେତୃତ୍ୱ ଏହାର ଦାୟିତ୍ୱ ନେବା ଉଚିତ । ସେ ନେବେ ଏକ ସାଧାରଣ ସୈନିକର ଭୂମିକା । ଶେଷରେ ଏହି ଗୌରବର ଅଧିକାରୀ ହେଲେ ଜଣେ 'ଓଡ଼ିଆ ବିପ୍ଳବୀ' ଶ୍ରୀ ଲୋକନାଥ ବଳ* – ଜେନେରାଲ ଲୋକନାଥ ବଳ । ସୁନ୍ଦର

---

* ଏହି ଲେଖକଙ୍କର ଦୃଢ଼ବିଶ୍ୱାସ ଯେ, ଶ୍ରୀ ଲୋକନାଥ ବଳ ଜଣେ ଓଡ଼ିଆ ବ୍ୟତୀତ ଅନ୍ୟ କେହି ନୁହେଁ; କାରଣ ସେତେବେଳେ ଅସଂଖ୍ୟ ଓଡ଼ିଆ ପୂର୍ବବଙ୍ଗର ବିଭିନ୍ନ ଅଞ୍ଚଳରେ ପୁରୁଷାନୁକ୍ରମେ ବାସକରୁଥିଲେ । ତାଙ୍କର ସାନଭାଇର ଡାକନାମ 'ଟେରା' । 'ଟେରା' ଶବ୍ଦ ଖାଣ୍ଟି ଓଡ଼ିଆ । ପରବର୍ତ୍ତୀ ଯୁଗରେ କେତେକ ବଙ୍ଗୀୟ ଲେଖକ ତାଙ୍କୁ 'ଟାଇଗର' ବୋଲି ଅବଶ୍ୟ ଉଲ୍ଲେଖ କରିଅଛନ୍ତି । ଦ୍ୱିତୀୟତଃ ଏହି ଲେଖକ ଯେତେଦୂର ଜାଣେ 'ବଳ' ସଂଜ୍ଞା ଏକାନ୍ତ ଓଡ଼ିଆ ସଂଜ୍ଞା । ଏ ସଂପର୍କରେ ଡକ୍ଟର ମହତାବଙ୍କ ମତ ଯେ, 'ଲୋକନାଥ ବଳ' ଓଡ଼ିଆ ହୋଇପାରିଥାନ୍ତି; ନ ହୋଇ ମଧ ପାରିଥାନ୍ତି । ଯାହାହେଉ, ସେ ଓଡ଼ିଆ ନୁହଁନ୍ତି ବୋଲି ନିର୍ଭୁଲ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ତାଙ୍କୁ 'ଓଡ଼ିଆ' ବୋଲି ଗ୍ରହଣ କରିବା ଅଧିକ ଠିକ୍ ହେବ ।

ସୁଦର୍ଶନ ବଳିଷ୍ଠ ଚେହେରା ସହିତ ଖଦଡ଼ ଧୋତି ପିନ୍ଧି ଟୋପିଟା ମୁଣ୍ଡରେ ଲଗାଇଲେ ତାଙ୍କୁ ଯେମିତି ମାନେ, ଖାକି ରଙ୍ଗର ଯୁଦ୍ଧ-ପୋଷାକ ପିନ୍ଧିଲେ ସେମିତି ସେ ଭୟଙ୍କର ଦିଶନ୍ତି ! ସେ ଏକା ନୁହେଁ; ସାଙ୍ଗରେ ଆଣିଛନ୍ତି ସାନଭାଇ ହରିହର ବଳ– ଡାକନାମ 'ଟେରା' । ସେ ମଧ ଏହି ସେତୁବଂଧନରେ ବାଲିମୁଠାଏ ଝାଡ଼ିଦେଉ ବୋଲି ଲୋକନାଥ ଚାହାନ୍ତି । ସୁତରାଂ ସେଦିନର ସେ ରକ୍ତକ୍ଷୟୀ ସଂଗ୍ରାମରେ ଅଧିନାୟକତ୍ୱ କରିବା ପାଇଁ ମାଷ୍ଟରଦା ତାଙ୍କୁହିଁ ଯେ ବାଛିବେ, ଏଥିରେ ସନ୍ଦେହ କରିବାର କ'ଣ ଅଛି ?

"Ready, Brothers, take the lying position. ଜୟ ଆମର ସୁନିଶ୍ଚିତ । ଏହା ଧର୍ମର ଯୁଦ୍ଧ । ପରାଜୟର ପ୍ରଶ୍ନ ନାହିଁ ଆମର ।'' ବଜ୍ରକଣ୍ଠରେ ଜେନେରାଲ ଲୋକନାଥ ଅର୍ଡ଼ର ଦେଲେ । ସମସ୍ତେ ଶ୍ୱାସରୁଦ୍ଧ ହୋଇ ଅପେକ୍ଷା କରିଅଛନ୍ତି କେତେବେଳେ ମିଳିବ ଫାୟାରିଂ ଅର୍ଡ଼ର; ଉଦ୍ଧତ ସଙ୍ଗିନ୍ ଓ ଟ୍ରିଗର୍‌ରେ ଆଙ୍ଗୁଳି ରଖି ଅପେକ୍ଷା କରି ରହିଅଛନ୍ତି ମୁକ୍ତି- ସଂଗ୍ରାମୀ ବୀର ଯୁବକବୃନ୍ଦ । ଫୌଜ ମାଡ଼ିଚାଲିଛି ଉପରକୁ ଧାପେ ଧାପେ । ଦୃଢ଼-ପ୍ରତିଜ୍ଞ ମୁକ୍ତିସେନାନୀଙ୍କ ବୀରତ୍ୱବ୍ୟଞ୍ଜକ ଠାଣି ଦେଖି ଫଉଜ ଟିକେ ଇତସ୍ତତଃ ହେଲେ । ମାର୍ଚ୍ଚିଂର ଗତି ସେମାନଙ୍କର ଟିକିଏ ଧିମେଇଯିବାଭଳି ବୋଧହେଲା ।

''ନାଃ, ସେମାନଙ୍କୁ ଆଉ ଆଗେଇବାକୁ ଦିଆଯିବନାହିଁ''; ଅର୍ଡ଼ର ଦେଲେ ଜେନେରାଲ ଲୋକନାଥ – "Fire, Volley, Fire." ଚାଲିଲା ଅବିଶ୍ରାନ୍ତ ଗୁଳିବର୍ଷଣ; ଏପ୍ରିଲର ସେ କମନୀୟ ସଂଧ୍ୟାରେ ଯେମିତି ଧାରାଶ୍ରାବଣର ଅବାରିତ ବର୍ଷାଧାରା ।

ପୃଷ୍ଠଭଙ୍ଗ ଦେଲେ ବ୍ରିଟିଶର ବୀରପୁଙ୍ଗବ ମିଲିଟାରୀ । ଗୁଳିମାଡ଼ରେ ଗୋଟା କେତେ ପାହାଡ଼ ତଳକୁ ଗଡ଼ି ଗଡ଼ି ଯାଇ କେଉଁ ଅତଳଗର୍ଭରେ ଅଦୃଶ୍ୟହୋଇଗଲେ । ଛତ୍ରଭଙ୍ଗ, ଛତ୍ରଭଙ୍ଗ । କ୍ୟାପଟେନ୍ ଟେଟ୍, କର୍ଣ୍ଣେଲ ଡାଲାସ୍ମିଥ୍, ଡିଆଜି ଫାରମର୍ ପ୍ରଭୃତି ଚୋଖା ଚୋଖା ସେନାପତିଙ୍କ ମୁହଁ ସବୁ ରାଗ ଓ ଲଜ୍ଜ୍ୟାରେ ଯେମିତି ଲାଲ ପଡ଼ିଗଲା । ବଡ଼ ଅଡ୍ (Odd) ପୋଜିସନ୍ ଆମ୍ଭମାନଙ୍କର । ସେମାନେ ରହିଲେ ପାହାଡ଼ ଉପରେ 'ଷ୍ଟ୍ରାଟେଜିକ' ପୋଜିସନରେ – ସେନାପତିମାନଙ୍କର ମତ । ଗୋଟାଏ ବଡ଼ ପଥର ଉହାଡ଼ରେ କଣ ଗୋଟାଏ ମନ୍ତ୍ରଣା କରି ଓହ୍ଲାଇଗଲେ ସମସ୍ତେ ।

''ଏହା ଗୋଟାଏ ଟ୍ରିକ୍ (Trick) ହୋଇପାରେ'' ସେନାପତି ଲୋକନାଥ ବଳ ମନକୁ ମନ ଗୁଣୁଗୁଣୁ ହେଲେ । ଘଣ୍ଟାଏ ଦେଢ଼ଘଣ୍ଟା ପରେ ଦକ୍ଷିଣ ଦିଗରୁ ପୁଣି ଭାସିଆସିଲା ଭାଇକାର ମେସିନଗନ୍‌ର ଗୁଡୁମ୍, ଗୁଡୁମ୍ ଶବ୍ଦ । ସଙ୍ଗେ ସଙ୍ଗେ ଲୋକନାଥଙ୍କ କମାଣ୍ଡ ''ଏନିମି ଅନ ଦି ସାଉଥ, ଏମ୍ ଏଣ୍ଡ ଫାୟାର୍ (Enemy on the South, Aim and fire) ।'

ଆରମ୍ଭ ହେଲା ବିପ୍ଳବୀ ରାଇଫେଲଗୁଡ଼ିକର ଅବିରାମ ଗର୍ଜନ ! ପୁଣି ଶତ୍ରୁ ମେସିନଗନର ଆବାଜ ଶୁଭିଲା ଉତ୍ତର-ପୂର୍ବ ପାହାଡ଼ଚୂଡ଼ାରୁ । ଏନିମି ଯେମିତି ବଦ୍ଧପରିକର, ଜାଳି ପୋଡ଼ି ଛାରଖାର କରିଦେବାକୁ ଜାଲାଲବାଦ ପାହାଡ଼କୁ ଏବଂ ସେଥିସହ ବିଦ୍ରୋହୀଦଳର ମରଣପାଗଳ ମୁକ୍ତି-ସଂଗ୍ରାମୀମାନଙ୍କୁ ।

ଏକ ଦିଗରେ ମୁକ୍ତି-ସଂଗ୍ରାମୀର ସାମାନ୍ୟ ମାସ୍କେଟ୍ରି ରାଇଫେଲ ଏବଂ ଅନ୍ୟ ଦିଗରେ ଫୌଜର ରାକ୍ଷସୀ ମେସିନଗନ । ଘଣ୍ଟା ଘଣ୍ଟା ବିତିଗଲାଣି । ଧୂଳିଧୂଆଁରେ ଆକାଶ ଯେମିତି ମେଘାଚ୍ଛନ୍ନ । ଛିନ୍ନ ପତ୍ରସବୁ ଆକାଶରେ ଉଡ଼ି ଉଡ଼ି ଅଂଧାର ରାତ୍ରିକୁ କରିଦେଉଛି ଆହୁରି ଅଂଧାରିଆ । ମୃତ୍ୟୁ ସେମାନଙ୍କୁ ଭୟ ଦେଖାଇବାକୁ ଅସମର୍ଥ । ମୃତ୍ୟୁ ସେମାନଙ୍କ ନିକଟରେ ପରାଜିତା । ବୀର ମାରେ ଅବା ମରେ କରି ରଣ । ଭାରତୀୟ ବିପ୍ଳବୀ ଠିକ୍ ଜାଣେ ''ବାଂସାସି ଜୀର୍ଣ୍ଣାନି ଯଥା ବିହାୟ....... ସେ କାପୁରୁଷ ନୁହେଁ "Cowards die many times before their death, the brave never dies." ଯେଉଁ ମୃତ୍ୟୁରେ ଆନନ୍ଦ ଅଛି, ସେ ସେହି ଭଳି ମୃତ୍ୟୁ ଚାହେଁ ।

"Fire, Fire, Fire. No rest to the enemy. ଶତ୍ରୁକୁ ବିଶ୍ରାମ ଦିଅ ନାହିଁ । ଶତ୍ରୁ ବୁଝୁ ଭାରତବାସୀ କଣ କରିପାରେ । କଣକରିପାରେ ତା'ର ମୃତ୍ୟୁପାଗଳ ବୀର ବିପ୍ଳବୀ । ଚାଲିଛି ଅବିଶ୍ରାନ୍ତ ଗୁଳିଚାଳନା । କେହି କାହାକୁ ଛାଡ଼ିବାକୁ ରାଜି ନୁହଁନ୍ତି । କିନ୍ତୁ ହଠାତ ଏ କ'ଣ ହେଲା ? ଅବିରାମ ଗୁଳି ଚଳାଇବାରେ ବଂଧୁକର ବାରେଲଟୀ ଭୀଷଣ ତାତିଯାଉଛି; ରୁମାଲ ଦେଇ ଧରିଲେ ବି ସମ୍ଭାଳି ହେଉନାହିଁ । ବଂଧୁକ ନଳୀ ମଧ ଜାମ୍ ହୋଇଗଲାଣି । ଗୁଳି ପଶୁନାହିଁ ତା' ଭିତରେ । ମୁଣ୍ଡ ଟେକି କୁଆଡ଼େ ଉଠିବାର ଉପାୟ ନାହିଁ । ଶେଷରେ ନିଜେ ମାଷ୍ଟରଦା' ହାମୁଡ଼େଇ ହାମୁଡ଼େଇ ପ୍ରତ୍ୟେକଙ୍କ ପାଖକୁ ଯାଉଛନ୍ତି ଏବଂ ଲୁବ୍ରିକୋଟିଂ ଅଏଲ ଦେଇ ସଫା ହେଉଛି ବଂଧୁକର ବାରେଲ । ପୁଣି ଚାଲିଲା ଫାୟାରିଂ ।

'ଟେରା' ହଠାତ୍ ବସିପଡ଼ି ଗୁଳି ଚଳାଉ ଚଳାଉ ଶତ୍ରୁପକ୍ଷର ଦମକାଏ ଗୁଳି-ମାଡ଼ରେ ଟଳିପଡ଼ିଲା ସେ । ପଞ୍ଜରା ହାଡ଼ ଯେମିତି ତା'ର ଝାଞ୍ଜରା ହୋଇଗଲା । 'ଜଲାଲବାଦ' ଐତିହାସିକ ପାହାଡ଼ ଯୁଦ୍ଧର ପ୍ରଥମ ସହିଦ ହେବାର ଗୌରବ ଅର୍ଜନ କରି ଚଉଦବର୍ଷ ବୟସର ଟେରା ତଥାପି ବଡ଼ଭାଇଙ୍କୁ ସମ୍ବୋଧନ କରି କହିଲା, ''ମୁଁ ଚାଲିଲି ଭାଇ, ତୁମେ ଚଳାଅ ଏ ଯୁଦ୍ଧ ।'' କି ସାହସ ! କି ଆତ୍ମବିଶ୍ୱାସ ! ଧନ୍ୟ 'ଟେରା' !

'ଟାଇଗର' ପରେ ପରେ ପାଳିପଡ଼ିଲା ବ୍ରିଗେଡ଼ିଅର ତ୍ରିପୁରା ସେନ୍‌ଙ୍କର । ଟିକକ ପରେ ନିର୍ମଳଲାଲ ଏବଂ ତା'ପରେ ବିଧୁ ଭଟ୍ଟାଚାର୍ଯ୍ୟ । ବିପ୍ଳବୀ ତ୍ରିପୁରାସେନ୍ ଆଗରୁ ସେନାବାହିନୀର ଜଣେ ବ୍ରିଗେଡ଼ିଅର ଥିଲେ; ଏବେ ଚାକିରି ଛାଡ଼ି ବିପ୍ଳବରେ ଯୋଗ ଦେଇଅଛନ୍ତି । ବିଧୁଦା' ତ ଅଦ୍ଭୁତ କିସମର ଲୋକ; ହାସ୍ୟରସ ସୃଷ୍ଟିକରିବାରେ ଧୁରଂଧର— ଦାରୁଣ ଦୁଃଖ ଓ ବିପର୍ଯ୍ୟୟ ବେଳେ ହସେଇ ହସେଇ ପେଟ ଫଟାଇ ଦେବା ଲୋକ । ଏ 'ଶେଷ' ବେଳେ ତାଙ୍କର ସେ ଗୁଣ ଯିବ କୁଆଡ଼େ ? ଗୁଳି ବାଜିଛି ପେଟର ବାଁ ପାଖରେ । ସେଥିରୁ ବହିଯାଉଛି ରକ୍ତର ଧାର । ବାଁ ହାତରେ ପେଟକୁ ଧରି ପଡ଼ି ଯାଉ ଯାଉ ବିଧୁଦା' କହିଲେ ବଂଧୁ ନରେଶ ରାୟଙ୍କୁ, ''ତମେ ଏଥର ଆସ, ମୁଁ ତୁମକୁ ସେଠାରେ ରିସିଭ କରିବି... ।'' ଆଉ କଣ କହିଥାନ୍ତେ, କିନ୍ତୁ ପାରିଲେ ନାହିଁ । ସେ ଦାରୁଣ ଦୁଃଖ-ମୂହୂର୍ତ୍ତରେ ବି ସମସ୍ତଙ୍କ ମୁହଁରେ ଝଲକାଏ ଲେଖାଁ ହସ ବାହାରିପଡ଼ିଲା ।

ଧନ୍ୟ ବିପ୍ଳବୀର ଜୀବନ; ଯୋଦ୍ଧାର ଜୀବନ । ମୃତ୍ୟୁ ଗୋଟାଏ ଖେଳଘର ତୁମ୍ଭମାନଙ୍କ ପକ୍ଷରେ । ସହିଦ ପ୍ରଦ୍ୟୋତ ଠିକ୍ ଏମିତିକା କଥାଟାଏ ଲେଖିଥିଲା ସ୍ନେହମୟୀ ମା'ଙ୍କୁ ଫାଶୀର ପୂର୍ବ ରାତ୍ରିରେ "ଫାଶୀଦଣ୍ଡ ଇଂରେଜମାନଙ୍କର ଗୋଟାଏ ରସିକତା ।" ବାଃ ବାଃ; ବାସ୍ତବରେ ରସିକତା ।

ନରେଶ ରାୟଙ୍କ ପାଇଁ ବିଧୁଦା'ଙ୍କୁ ଅଧିକ ସମୟ ଅପେକ୍ଷା କରିବାକୁ ପଡ଼ିଲାନାହିଁ; କାରଣ ବିଧୁଦା'ଙ୍କ ପରେ ପରେ ନରେଶ ରାୟ ମଧ ଟଳିପଡ଼ିଲେ । ତା'ପରେ ପଡ଼ିଗଲେ ବିନୋଦ ଦତ୍ତ । ସେ ଚଳାଇଥାନ୍ତି ଗୁଳି ।

ଅର୍ଦ୍ଧେନ୍ଦୁ ଦସ୍ତୀଦାର ଜଲାଲବାଦ ଯୁଦ୍ଧର ମାତ୍ର କେଇଦିନ ଆଗରୁ ବୋମା ତିଆରି କରୁ କରୁ ଏହାର ବିସ୍ଫୋରଣରେ କ୍ଷତବିକ୍ଷତ ହୋଇସାରିଥିଲେ । ତଥାପି ଦେହସାରା ବେଣ୍ଡେଜ ଗୁଡ଼ାଇ ହୋଇ ସେ ମଧ ଯୁଦ୍ଧକ୍ଷେତ୍ରରେ ହାଜର । ସେ ଗୁଳିମାଡ଼ରେ ଟଳିପଡ଼ିଲେ । ତା'ପରେ ଗଲେ ଶଶାଙ୍କ ଦତ୍ତ ଓ ମଧୁସୂଦନ ଦତ୍ତ । ମଧୁସୂଦନଙ୍କ ଦେହ ଗୁଳି- ମାଡ଼ରେ ଯେମିତି ଛିନ୍ନଛତ୍ର ହୋଇଗଲା ।

ଚଟ୍ଟଗ୍ରାମ ଯୁବ ବିଦ୍ରୋହର ଅନ୍ୟତମ ସାରଥି ଅମ୍ବିକା ଚକ୍ରବର୍ତ୍ତୀ ଏଥର ଆହତ ହୋଇ ତଳେ ପଡ଼ିଗଲେ । ଏଭଳି ଦୁର୍ଦ୍ଧର୍ଷ ସେ ଯେ, ଏକାବେଳକେ ସଂଜ୍ଞାହୀନ ନ ହେବାଯାଏ ବଂଧୁକ ଟ୍ରିଗର୍‌ରୁ ଆଙ୍ଗୁଳି କାଢ଼ି ନଥାନ୍ତି । ଟଳିପଡ଼ିଲେ ଆହୁରି ଚାରିଜଣ— ମତି କାନୁନ୍‌ଗୋ, ପୁଲିନ ବିକାଶ, ଜୀତେନ ଓ ପ୍ରଭାସ ।

ବନବିହାରୀ କିନ୍ତୁ ମହାସମସ୍ୟାରେ ପଡ଼ିଲେ । କ'ଣ କରିବେ ସେ । ବଂଧୁକ ବ୍ୟାରେଲ ପୁଣି ତାତିଗଲାଣି ଓ ଭିତରଟା ହୋଇଗଲାଣି ପୋଡ଼ା, କାର୍ତ୍ରିଜ ପାଉଁଶରେ ଏକାବେଳକେ ଜାମ୍ । ଏଥର ବି ଦୌଡ଼ିଗଲେ ମାଷ୍ଟରଦା' ନିଜେ । ପ୍ରଭାସ ସେତେବେଳକୁ ଦେହରକ୍ଷା କରିସାରିଲେଣି । ତାଙ୍କର ପରିତ୍ୟକ୍ତ ବଂଧୁକଟା ଧରି ମାଷ୍ଟରଦା' ହାମୁଡେଇ ହାମୁଡେଇ ପହଞ୍ଚିଗଲେ ବନବିହାରୀଙ୍କ ପାଖରେ; "ନିଅ ଏଟା, ଚଳାଅ ଫାୟାରିଂ," ମାଷ୍ଟରଦା' କହିଲେ । ଦୁର୍ଭାଗ୍ୟ, ସେ ରାଇଫେଲଟା ବି ଜାମ୍; ସଫା ନକଲେ ନଚଳେ । କିନ୍ତୁ କାହିଁ ଲୁବ୍ରିକୋଟିଂ ଅଏଲ ? ହଠାତ୍ ଗୋଟାଏ ପ୍ଲାନ୍ ପଶିଲା ତାଙ୍କ ମୁଣ୍ଡରେ । ପ୍ରଭାସଙ୍କ ଦେହର ରକ୍ତସ୍ରାବ ସେ ପର୍ଯ୍ୟନ୍ତ ବନ୍ଦହୋଇନି । ପିଚ୍ ପିଚ୍ ହୋଇ ବାହାରୁଥିବା ପ୍ରଭାସଙ୍କ ରକ୍ତ ଯେମିତି ଆହ୍ୱାନ କଲା ବନବିହାରୀଙ୍କୁ । "ଆସ, ଆସ ବନ୍ଧୁ ! ଏଇ ତ ଲୁବ୍ରିକେଟିଂ ଅଏଲ । ଚିନ୍ତା କ'ଣ ବନବିହାରୀ ?' ପ୍ରଭାସଙ୍କ ଉଷ୍ଣ ରକ୍ତରେ ସେଦିନ ବଂଧୁକର ନଳୀଟା ସଫାହେଲା । ଅବିଶ୍ୱାସ୍ୟ ହେଲେ ମଧ୍ୟ ଏହା ସତ୍ୟ ଅଟେ । ସାବାସ୍ ପ୍ରଭାସ — ମୃତ୍ୟୁ ପରେ ମଧ୍ୟ ତୁମେ ମାତୃଭୂମିର ମୁକ୍ତି-ସଂଗ୍ରାମରେ ରକ୍ତ ଦାନକଲ ।

ବନବିହାରୀଙ୍କ ବଂଧୁକ ପୁଣି ଗର୍ଜିଉଠିଲା ଏବଂ ସେଥିସହ ଗର୍ଜିଉଠିଲା ଜେନେରାଲ ଲୋକନାଥଙ୍କର ରାଇଫେଲ୍ । ପ୍ରଭାସର ମହନୀୟ ଆତ୍ମଦାନ ଯେମିତି ସମସ୍ତଙ୍କୁ ପୁଣି ଶତସିଂହର ପରାକ୍ରମ ଯୋଗାଇଦେଲା । ଯେକୌଣସିମତେ ଫଉଜର ଏ ଉଦ୍ଧତ ମେସିନଗନ୍‌କୁ ସ୍ତବ୍ଧ କରିବାକୁ ହେବ । "ବନ୍ଦେ ମାତରମ୍, ବନ୍ଦେ ମାତରମ୍, ରାପିଡ଼୍ ଫାୟାର୍ ।"

ଜେନେରାଲଙ୍କର ଏ କମାଣ୍ଡ ମେସିନଗନ୍‌ର ଗୁରୁ ଗର୍ଜନକୁ ସ୍ତବ୍ଧ କରିଦେଲା । ଶେଷରେ ସତକୁ ସତ ଶତ୍ରୁପକ୍ଷର ମେସିନଗନ୍ ମଧ୍ୟ ସ୍ତବ୍ଧହୋଇଗଲା । କିନ୍ତୁ ସେତେବେଳକୁ ଶତାଧିକ ଗୁର୍ଖା ଓ ଶ୍ୱେତାଙ୍ଗ ସୈନିକ ଆହତ ବା ନିହତ ହୋଇଥିବା ସ୍ଥଳେ ବିପ୍ଳବୀମାନଙ୍କ ମୃତସଂଖ୍ୟା ମାତ୍ର ଦଶ ହୋଇଥିଲା ।

ରହସ୍ୟମୟୀ ରାତ୍ରି ଆହୁରି ରହସ୍ୟମୟୀ ହୋଇଗଲା ଜଲାଲବାଦ ପାହାଡ଼ର ଚୂଡ଼ା ଉପରେ । କେତେ ଭୟାବହ ସେ ରାତ୍ରି । ମୁକ୍ତି-ସଂଗ୍ରାମୀଙ୍କ କ୍ୟାମ୍ପରେ ମହାଆନନ୍ଦ ଓ ମହାଉଲ୍ଲାସର ମହୋତ୍ସବ । ଶତ୍ରୁ ପୃଷ୍ଠଭଙ୍ଗ ଦେଇଛି । ସହସ୍ର ଗୁଣିତ ଶବ୍ଦରେ କମ୍ପିଉଠିଲା ମାତୃମନ୍ତ୍ର 'ବନ୍ଦେ ମାତରମ୍' । ''ଜୟ ଆମର ସୁନିଶ୍ଚିତ । ପ୍ରସ୍ତୁତ ହୁଅ କମ୍ରେଡ଼ । ଏ ତ ଆରମ୍ଭମାତ୍ର । ବିଜୟର ଶେଷ ବିନ୍ଦୁରେ ପହଞ୍ଚିବାକୁ ହେବ ଆମ୍ଭମାନଙ୍କୁ ।'' ମାଷ୍ଟରଦା'ଙ୍କର ଆହ୍ୱାନ ।

''କାଲି ସକାଳେ ଶତ୍ରୁ ଶତଗୁଣରେ ବଳିୟାନ୍ ହୋଇ ଅଭିଯାନ ଆରମ୍ଭ କରିବ ଜଲାଲବାଦ ପାହାଡ଼ ଉପରେ । ଆଜି ବ୍ରିଟିଶ ସାମ୍ରାଜ୍ୟବାଦର ଦମ୍ଭ ଓ ଅହଙ୍କାରକୁ ଯେଉଁ ପରାଭବ ସ୍ୱୀକାର କରିବାକୁ ପଡ଼ିଛି, ସେଥିରେ ସେ ଅଥୟ ହୋଇପଡ଼ିବ ପ୍ରତିଶୋଧ ନେବାପାଇଁ । ସୁତରାଂ ଆମର ବର୍ତ୍ତମାନ ପ୍ରୟୋଜନ ହେଉଛି ଆଉ ଗୋଟିଏ ଫ୍ରଣ୍ଟ ।'' କମ୍ରେଡ଼ ଲୋକନାଥ ବଳ ଘୋଷଣାକଲେ ।

ତା'ପରେ ଆରମ୍ଭ ହେଲା ଅମର ସହିଦମାନଙ୍କୁ ଅଭିବାଦନ— ଗାର୍ଡ଼ ଅଫ୍ ଅନର୍ । ଧାଡ଼ି ବାନ୍ଧି ଠିଆହେଲେ ମୁକ୍ତିଯୋଦ୍ଧାମାନେ । ବନ୍ଧୁକ ନଳୀ ସବୁ ତଳମୁହାଁ ହେଲା । ଦୁଇ ମିନିଟ ନୀରବତା ଭିତରେ ସମର୍ପିତ ହେଲା ବିଦାୟ ଅଭିବାଦନ ତିରିଶ କୋଟି ଭାରତବାସୀଙ୍କ ପକ୍ଷରୁ । ତା'ପରେ ପୁଣି ସେହି ବଜ୍ରକଣ୍ଠରେ ଗର୍ଜନ— ''ବନ୍ଦେ ମାତରମ୍, ବନ୍ଦେ ମାତରମ୍ ।''

ସଂକ୍ଷିପ୍ତ ଭାଷଣଟିଏ ଦେଲେ ମାଷ୍ଟରଦା'— ''ବିଦାୟ ବନ୍ଧୁଗଣ, ବିଦାୟ । ହୃଦୟର ସମସ୍ତ ଭକ୍ତି ଓ କୃତଜ୍ଞତା ଦେଇ ତୁମ୍ଭମାନଙ୍କୁ ପ୍ରଣାମକରୁଛୁଁ । ଧନ୍ୟ ହେଉ ତୁମ୍ଭମାନଙ୍କ ଆତ୍ମତ୍ୟାଗ । ସାର୍ଥକ ହେଉ ତୁମ୍ଭମାନଙ୍କର ଆତ୍ମାହୁତି । ଦୁଃଖିନୀ ଭାରତ-ମାତାର ଅଶ୍ରୁ ମୁଞ୍ଚନ କର । ସ୍ୱର୍ଣ୍ଣାକ୍ଷରରେ ଲେଖା ରହୁ ତୁମ୍ଭମାନଙ୍କ କୀର୍ତ୍ତି । ସାବାସ୍ ଚଟ୍ଟଗ୍ରାମ, ସାବାସ୍ ବଙ୍ଗ, ସାବାସ ଭାରତ । କୋଟି କୋଟି ପ୍ରଣାମ ତିରିଶ କୋଟି ଭାରତବାସୀଙ୍କ ପକ୍ଷରୁ ।''

ପୁଣି ଆରମ୍ଭ ହେଲା ନିରୁଦ୍ଦେଶ୍ୟ ଯାତ୍ରା । ଜଙ୍ଗଲର ଅଂଧକାର ଭିତରେ ଚାଲିଲେ ସମସ୍ତେ ଦଳ ଦଳ ହୋଇ ଶକ୍ତି ସଂଗ୍ରହ ଓ ଅଧିକ ନିରାପଦ ଯୁଦ୍ଧକ୍ଷେତ୍ରର ସଂଧାନରେ । ପଛରେ ପଡ଼ିରହିଲା ଏଗାରଟି ସତୀର୍ଥ ବଂଧୁଙ୍କର ଅମର ଶରୀର । ଆଗରେ ଦୁର୍ଭେଦ୍ୟ ଅଂଧକାର, ଦୁର୍ଭେଦ୍ୟ ଅରଣ୍ୟ ତଥା ପଛକୁ ଟାଣୁଛି ବଂଧୁମାନଙ୍କର ବଂଧନ, ମାୟା ଓ ଆକର୍ଷଣ । ଆଗକୁ ଟାଣୁଛି ଆସନ୍ନ ସଂଗ୍ରାମର ଆଗ୍ନେୟ ଆହ୍ୱାନ । ଭୋକ-ଶୋଷରେ ଛାତି ଫାଟିଯାଉଛି; କିନ୍ତୁ ସେଥିପ୍ରତି ଭ୍ରୂକ୍ଷେପ ନାହିଁ କାହାର । ଘୋଷାଡ଼ି ହୋଇ ସମସ୍ତେ ଚାଲିଛନ୍ତି ଯେମିତି । ତା ଉପରେ ପୁଣି କାଂଧରେ ପଡ଼ିଛି ଆହତ ବିନୋଦ ଚୌଧୁରୀ ଓ

ବିନୋଦ ଦତ୍ତଙ୍କର ଶରୀର ଦୁଇଟି । ଅଙ୍କାବଙ୍କା ଜଙ୍ଗଲ ରାସ୍ତାରେ ଯାଉ ଯାଉ ଜେନେରାଲ ବଲଙ୍କର ଗ୍ରୁପ୍‌ଟି ବିଚ୍ଛିନ୍ନ ହୋଇଗଲା ମାଷ୍ଟରଦା'ଙ୍କ ଗ୍ରୁପ୍‌ରୁ ।

ନିର୍ମଳଦା'ଙ୍କର ବଳିଷ୍ଠ ଦେହ ଉପରେ ଭରାଦେଇ କ୍ଲାନ୍ତଶ୍ରାନ୍ତ ମାଷ୍ଟରଦା' ପାହାଡ଼ ତଳକୁ ଓହ୍ଲାଇପଡ଼ିଲେ ଏବଂ ଆଶ୍ରୟ ନେଲେ ସଦଳବଳେ ପାହାଡ଼ର ନିର୍ଜନ ଗୁହାରେ ।

ସତକୁ ସତ ରାତି ପାହିବାର ବହୁପୂର୍ବରୁ ଫୌଜ ଖେଦିଗଲେ ପାହାଡ଼ ଚାରିପଟେ; ଛକିରହିଲେ ସକାଳଯାଏ । ଛକି ଛକି ସକାଳହେଲା, ତେବେଯାଇ ବୀର-ପୁଂଗବମାନେ ପହଞ୍ଚିଲେ ଅସଲ ଯୁଦ୍ଧକ୍ଷେତ୍ରରେ । ଯେଉଁଠାରେ ପଡ଼ିରହିଥିଲେ ଦଶ-ଗୋଟି କମନୀୟ କିନ୍ତୁ କ୍ଷତ-ବିକ୍ଷତ ରକ୍ତସ୍ନାତ ଶବ ଆଉ ଚାରିଆଡ଼େ ବିଞ୍ଚୁଡ଼ି ହୋଇ ପଡ଼ିଛି ହଜାର ହଜାର ବ୍ୟବହୃତ କ୍ୟାଟ୍ରିଜର ଖୋଳ, ଇଞ୍ଚେ ବହଳର ରକ୍ତ ବହି ଯାଉ ଯାଉ ଶୁଖିଯାଇଛି । ବାରୁଦର ଗନ୍ଧ ପବନରେ ସେ ପର୍ଯ୍ୟନ୍ତ ଲାଗିରହିଛି ଯେମିତି । କିନ୍ତୁ ଦୂର ଦିଗବଳୟରେ ପ୍ରତିଧ୍ୱନିତ ହେଉଅଛି– ''ବନ୍ଦେ......ମାତରମ୍ ।''

କର୍ଣ୍ଣେଲ ଡାଲସ୍ମିଥ୍‌ଙ୍କ ମୁଣ୍ଡରେ ବିଛା କାମୁଡ଼ିଲା । କଣ କରିବେ ସେ ଶବଗୁଡ଼ିକୁ ନେଇ ? ସହରକୁ ନେଲେ ହୁଏତ ସେଠାରେ ଅଧିକ ଉତ୍ତେଜନା ସୃଷ୍ଟିହେବ ଏହାକୁ କେନ୍ଦ୍ର କରି । 'ଏଇଠି ଡିସପୋଜ କରିଦିଆଯାଉ ।' ପେଟ୍ରୋଲ ଢାଳି ଶବଗୁଡ଼ିକୁ ପୋଡ଼ିଦିଆଗଲା । ଜଲାଲବାଦ ଯୁଦ୍ଧ ବ୍ରିଟିଶ ବିରୁଦ୍ଧରେ ଏକ ଗୌରବମୟ ଯୁଦ୍ଧ । ଇତିହାସ ସେ ଯୁଦ୍ଧକୁ କେଉଁ ବିସ୍ମୃତ ହୋଇନପାରେ ।

ଏହି ଅନ୍ତିମ ବାର୍ତ୍ତା ସନ୍ଧ୍ୟା ସୁଦ୍ଧା ଚଟ୍ଟଗ୍ରାମ ସହରରେ ପହଞ୍ଚିବା ସଙ୍ଗେ ସଙ୍ଗେ ଚାରିଆଡ଼େ ଶୋକର ଛାୟା ଖେଳିଗଲା । କେତେ ଜନନୀ ପୁତ୍ର ହରାଇଲେ । କେତେ ଭଗିନୀ ଭାଇ ହରାଇଲେ । ଘରେ ଘରେ ଦୁଃଖ ଓ ଶୋକର ଚିହ୍ନ; କିନ୍ତୁ ବିଜୟ ଗୌରବର ଉଜ୍ଜ୍ୱଳ ସ୍ୱାକ୍ଷର । ପ୍ରିୟଜନ ହରାଇବାର ବେଦନା ପୁଣି ଆତ୍ମତୃପ୍ତିର ଗର୍ବ । ଚଟ୍ଟଗ୍ରାମର ବହୁଘରେ ସେଦିନ ସନ୍ଧ୍ୟାଦୀପ ଜଳିନାହିଁ । କେତେ ରୋଷେଇଘର ଅନ୍ଧାର, ଚୁଲିକୁ ଜାଳ ଯାଇନାହିଁ ।

**ଅତର୍କିତ ଆକ୍ରମଣ –**

ଭାରତର ମୁକ୍ତି-ସଂଗ୍ରାମର ଏକ ଗୌରବୋଜ୍ଜ୍ୱଳ ପ୍ରଥମ ପର୍ବ ଶେଷହେଲା ବିଜୟର ଅମ୍ଳାନ ସ୍ୱାକ୍ଷର ନେଇ । ଅସ୍ତ୍ରାଗାର ଅଭିଯାନ ଦିନ ଅର୍ଦ୍ଧଦଗ୍ଧ ହିଂମାଂଶୁଙ୍କୁ ନେଇଯାଇଥିବା ବିପ୍ଳବୀ ଅନନ୍ତ ସିଂହଙ୍କର ପାଞ୍ଚଜଣିଆ ଦଳଟି ସେ ପର୍ଯ୍ୟନ୍ତ ନିଖୋଜ । ମାଷ୍ଟରଦା' ଚିନ୍ତିତ । ନିର୍ମଳ ସେନଙ୍କର ସେହି ଗୋଟିଏ ଭାବନା- ''କୁଆଡ଼େ ଗଲେ ତେବେ ? କ'ଣ ଧରାପଡ଼ିଗଲେ ପୋଲିସ ହାତରେ ? ଦୁର୍ଦ୍ଧର୍ଷ ଅନନ୍ତ ଓ ଅଜେୟ ଗଣେଶ ଘୋଷଙ୍କର କଣ ଏତେ ଶୀଘ୍ର ପରାଜୟ ହେଲା ?

ଏପ୍ରିଲ ୨୨ ତାରିଖ ରାତି ଆଠଟା । 'ଫୁଟିଆରୀ' ରେଲଷ୍ଟେସନର ବୁକିଂ ଅଫିସର ଝରକା ପାଖରେ ଠିଆହୋଇଛି ଯୁବକଟିଏ । ଟିକେଟ କାଟିବ ଚାରିଖଣ୍ଡ । ଟିକେ ଦୂରରେ ଆଉ ତିନିଜଣ; ଚେହେରା ନିରୀହ ଗ୍ରାମବାସୀର । ସେମିତି ତ କେତେ ଯାତ୍ରୀ ବସିଛନ୍ତି ସେଠି ମୁସାଫିରଖାନାରେ । ଗାଉଁଲି ଲୋକଟିକୁ ଦେଖି ଟିକେଟବାବୁଙ୍କର ମନ କେମିତି

କେମିତି ଲାଗିଲା । ଚଟ୍ଟଗ୍ରାମର ଲଢ଼େଇ ଖବର ସେତେବେଳେ ବିଞ୍ଛୁଡ଼ି ହୋଇଯାଇଛି ଦେଶ-ବିଦେଶର ଗଳିକନ୍ଦିରେ । ବିଦ୍ରୋହୀଙ୍କୁ ଧରିଦେଲେ ପ୍ରଚୁର ପୁରସ୍କାର, ଚାକିରିରେ ପ୍ରମୋସନ, ଉପାଧି ସବୁକିଛି ।

''ଗୋଟାଏ ଟ୍ରାଏଲ ନିଆଯାଉ । ଭାଗ୍ୟ ପରୀକ୍ଷା ହୋଇଯାଉ ଥରେ ଏ ଲଟେରିରେ — କ୍ଷତି କ'ଣ ? ମୋର କାହିଁକି ମନେହୁଏ ଏ ଭଦ୍ରଲୋକ ସେହିଭଳି କେହି ହୋଇପାରନ୍ତି । ଯଦି ହୋଇଥାଆନ୍ତି, ନା-ଓଃ--'' କିନ୍ତୁ କ'ଣ ଭାବିଲେ କେଜାଣି ସମ୍ଭବତଃ ସଶସ୍ତ୍ର ବିପ୍ଳବୀଙ୍କର ଚେହେରାଟା ମନେପଡ଼ିଗଲା ତାଙ୍କର । ଟିକେଟବାବୁଟି ଭାବୁ ଭାବୁ ଡରିଗଲା ଯେମିତି । ବରଂ ଆଗ ଷ୍ଟେସନକୁ ଫୋନ କରିଦେବା ଭଲ । ସନ୍ଦେହଟା ଠିକ୍ ହୋଇଥିଲେ ଦୁଇଟା ଲାଭ — ଏକରେ ନିଜେ ନିରାପଦ, ଦୁଇରେ ପ୍ରଚୁର ପୁରସ୍କାର ବା ପ୍ରମୋସନ । ଆଉ ଭାବିପାରିଲେନି ସେ ।

ଟ୍ରେନ ଚାଲିଛି ପବନ ଗତିରେ ଆଗକୁ ଆଗକୁ । ଡବା ଭିତରେ ବସିଛନ୍ତି ନିରୀହ ଦିଶୁଥିବା ସେହି ଚାରିଜଣ ଗ୍ରାମବାସୀ । କଥାବାର୍ତ୍ତା କରୁଛନ୍ତି ଖୁବ୍ ଅନୁଚ୍ଚ ସ୍ୱରରେ; ପାଖରେ ବସିଥିବା ଯାତ୍ରୀମାନେ ଶୁଣିବା କଷ୍ଟ ।

ଗାଡ଼ି ଆର ଷ୍ଟେସନରେ ପହଞ୍ଚିଲା । ସାଙ୍ଗେ ସାଙ୍ଗେ ଡବାରେ ପଶିଲେ ପୋଲିସ ଓ ଟି.ଟି.ଆଇ. । ''ଦେଖି ଆପଣମାନଙ୍କ ଟିକେଟ ।'' ଟିକେଟ ଚେକର ବାବୁ ମାଗିଲେ ଟିକେଟ; ସାଙ୍ଗରେ ତାଙ୍କର ପୋଲିସ ଅଫିସର । ତାଙ୍କ ପଛରେ ଆହୁରି କେତେ ଜଣ ପୋଲିସ ସିପାହି । ଟିକେଟ ଦେଖି ଅନୁରୋଧ କଲେ ଟି.ଟି.ଆଇ. — ''ଷ୍ଟେସନ ମାଷ୍ଟରଙ୍କ ଅଫିସକୁ ଆସନ୍ତୁ ।'' ଯାତ୍ରୀ ଚାରିଜଣଙ୍କ ଜିନିଷପତ୍ର ଖାନତଲାସ ହେଲା । ଏଥର ଦେହ ଓ ପୋଷାକ ସର୍ଚ୍ଚ ହେବାର କଥା । ପ୍ରଥମେ ପାଳି ପଡ଼ିଲା ଘୋଷଲଙ୍କର । ''ଦେଖି ତୁମ ଅଣ୍ଟାରେ କଣ ରଖିଛ ?'' ପୋଲିସ ଅଫିସର ପ୍ରଶ୍ନ କଲେ ।

ସଂଗେ ସଂଗେ ଅନନ୍ତ ସିଂହଙ୍କ ପିସ୍ତଲ ଗର୍ଜିଉଠିଲା- ଗୁଡୁମ, ଗୁଡୁମ । ସିଗନାଲ ପାଇ ଜୀବନ ଘୋଷାଲ ଓ ଆନନ୍ଦ ଗୁପ୍ତଙ୍କର ପିସ୍ତଲ ବି ଗର୍ଜିଉଠିଲା । ଗଣେଶ ଘୋଷ କିଛି ଛାଡ଼ିବା ଲୋକ ?

ପୋଲିସବାଲା କଳ୍ପନା ବି କରିନଥିଲେ ଏକଥା । ସୁତରାଂ କେହି ସମ୍ଭବତଃ ଏହି ଅପ୍ରତ୍ୟାଶିତ ଆକ୍ରମଣ ପାଇଁ ପ୍ରସ୍ତୁତ ନଥିଲେ । ସାରା ଷ୍ଟେସନରେ ହୈ-ଚୈ ପଡ଼ିଗଲା । କିଏ କୁଆଡ଼େ ଉଡ଼ନ୍ ଛୁ, ଜଣେ ହେଲେ ଧରାପଡ଼ିଲେନି ।

ଅନନ୍ତ ସିଂହଙ୍କୁ କେନ୍ଦ୍ର କରି ସେ ଯୁଗରେ ପୂର୍ବ-ଭାରତରେ କେତେ ଜନରବ, କେତେ କିଂବଦନ୍ତୀ, କେତେ ରୂପକଥାର କାହାଣୀ ବା ସୃଷ୍ଟି ହେଉ ନଥାଏ— ଅନନ୍ତ ସିଂହଙ୍କର ରହସ୍ୟଜନକ ଅନ୍ତର୍ଦ୍ଧାନ, ଦୁଃସାହସିକ ଗୁଳିଚାଳନା ପୁଣି ଅବ୍ୟର୍ଥ ଲକ୍ଷ୍ୟ ବିଷୟରେ ଦେଖା ଅଦେଖା କେତେ କଥା ଘରେ ଘରେ ପ୍ରଚାରିତ ହୁଏ । ସାଧାରଣ ଲୋକଙ୍କର ଧାରଣା— ଅନନ୍ତ ସିଂହ ହାତ କ'ଣ— ଗୋଡ଼, ଆଖି, ନାକ, କାନ ସାହାଯ୍ୟରେ ବି ବନ୍ଧୁକର ଘୋଡ଼ିଆ ଟିପି ଯୁଦ୍ଧ କରନ୍ତି । ସୁତରାଂ ଅନନ୍ତ ସିଂହ ପୋଲିସମୁହଁରେ ଯେ କଳାବୁଲେଇଦେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

କିନ୍ତୁ ଦୁର୍ଭାଗ୍ୟର କଥା, ଏହି ଆକସ୍ମିକ ଘଟନାରେ ସେମାନଙ୍କର ଆଗୁଆ ଯୋଜନା ସବୁ ଗୋଳମାଳ ହୋଇଗଲା । କିଏ କେଉଁ ବାଟେ ପଳାଇଲେ ତା'ର କିଛି ଠିକଣା ରହିଲାନି । ଅନନ୍ତ ସିଂହଙ୍କର ଭେଟ ହେଲାନି କାହାରି ସହିତ ବହୁଦିନ ପର୍ଯ୍ୟନ୍ତ । ଅନ୍ୟ ତିନିଜଣ ଅବଶ୍ୟ ପରେ ଏକାଠିହେଲେ ।

ଦୁଇଦିନ ପରେ ଅର୍ଥାତ ଏପ୍ରିଲ ୨୪ ତାରିଖ– ଇଏ ଜଣେ ନୂତନ ଆଗନ୍ତୁକ ମୁକ୍ତିଯୁଦ୍ଧରେ । ନୂତନ ନହେଲେ ବି ଅସ୍ତ୍ରାଗାର ଲୁଣ୍ଠନ ବା ଜଲାଲବାଦ ଯୁଦ୍ଧରେ ଏହାଙ୍କ ନାମ ଶୁଣାଯାଇ ନ ଥିଲା । ଏ ହେଉଛନ୍ତି ଅମରେନ୍ଦ୍ର ନନ୍ଦୀ । ସେ ଟିକେ ରକ୍ତ ଦେଇ ପାରିଲେନି ବୋଲି କେତେ ଦୁଃଖ, କେତେ ଅନୁତାପ ତାଙ୍କର । ରାଇଫେଲ୍‌ର ପରୀକ୍ଷା, ଲକ୍ଷ୍ୟ ସଂଧାନର ଅବ୍ୟର୍ଥତାର ଟ୍ରାଏଲ ସେ ଦେଇପାରିନାହାନ୍ତି ।

''ମତେ ଅର୍ଡ଼ର ଦିଅନ୍ତୁ ମାଷ୍ଟରଦା' –'' ଅମରେନ୍ଦ୍ରର ମିନତି । ଶେଷରେ ମାଷ୍ଟରଦା'ଙ୍କର ଅର୍ଡ଼ର ନେଇ ଅମରେନ୍ଦ୍ର ଚାଲିଲେ କଲିକତା । ''କିଏ କେଉଁଠି ରହିଲେ ଟିକେ ଖବର ନିଅ । କୌଣସି ପ୍ରକାରେ ଶରତ୍‌ଦାଦା (ନେତାଜୀ ସୁଭାଷ ବୋଷଙ୍କର ବଡ଼ଭାଇ ଶରତ୍ ବୋଷ, ଭୂପେନ ଦତ୍ତ, କିରଣ ମୁଖାର୍ଜିଙ୍କ ସହ ସାକ୍ଷାତକଲେ ସବୁ ଖବର ମିଳିଯିବ ।'' – ମାଷ୍ଟରଦା'ଙ୍କ ନିର୍ଦ୍ଦେଶ ।

କିନ୍ତୁ ତା'ଆଗରୁ ଖବର ପାଇ ପୋଲିସ ତାଙ୍କୁ ଘେରିଗଲା ଚାରିପଟୁ । ଏକ ଦିଗରେ ପୋଲିସ ଓ ମିଲିଟାରୀର କ୍ୟାପଟେନ୍ ଟେଟ, ଡି:ଆଇ:ଜି ଫାର୍ମାର ପ୍ରଭୃତି ଚୋଖା ଚୋଖା ସାମରିକ ଅଫିସର; ଅନ୍ୟ ଦିଗରେ ଏକା ଅମରେନ୍ଦ୍ର; ହାତରେ ଥ୍ରି-ନଟ୍-ଥ୍ରି ରିଭଲଭର; ଗୋଟାଏ ନୁହେଁ, ଦୁଇଟା ।

'କ'ଣ ଆତ୍ମସମର୍ପଣ ! ନା ନା ନା, ଅସମ୍ଭବ ଅସମ୍ଭବ !' ଗୁଳି ଚଳାଇ ଚଳାଇ ଗୋଟିଏ କଲଭର୍ଟ ତଳେ ଆଶ୍ରୟ ନେଲେ ଅମରେନ୍ଦ୍ର ।

''ଆତ୍ମସମର୍ପଣ କର– ତୁମର କିଛି କ୍ଷତି କରାଯିବ ନାହିଁ । ବଂଧୁକ ତଳେ ପକାଇ ଦିଅ ।' କଲଭର୍ଟ ବାହାରେ ପୋଲିସର ନିବେଦନ ।

ଗୁଳିରେ ଜବାବ ଦେଲେ ଅମରେନ୍ଦ୍ର– 'ଗୁଡୁମ୍ ଗୁଡୁମ୍ ।' ବାସ୍ ସେତିକି; ତା'ପରେ ଆଉ କିଛି ସୋରଶବଦ ନାହିଁ । ଦୀର୍ଘ ତିନିଘଣ୍ଟା ଅପେକ୍ଷା କରି ଅତି ସତର୍କତା ସହିତ ପୁଲିସ ଯେତେବେଳେ କଲଭର୍ଟ ଭିତରେ ପହଞ୍ଚିଲା ପାଇଲା କେବଳ ଅମରେନ୍ଦ୍ରଙ୍କର ନିର୍ଜୀବ ଦେହଟା ଓ ଦୁଇ ହାତରେ ଦୁଇଟା ଥ୍ରି-ନଟ୍-ଥ୍ରି ରିଭଲଭର ।

ପୋଲିସ ଅବାକ୍ । ଆଖି ଯେମିତି ଖୋସିହୋଇଗଲା କ୍ୟାପଟେନ୍ ଟେକ୍‌ଙ୍କର ! ଧନ୍ୟ ବିପ୍ଳବୀ ! ଧନ୍ୟ ତୁମର ଆତ୍ମତ୍ୟାଗ । ପୋଲିସ ହାତରେ ଧରା ନ ଦେଇ କାହିଁକି ଏ କୃଚ୍ଛସାଧନା ମୁକ୍ତିସଂଗ୍ରାମୀର ! କିଛି ବୁଝିପାରିଲେନି ଇଂରେଜର ନିମକସଚ୍ଚା ପୋଲିସ ଅଫିସର । ଅମରେନ୍ଦ୍ର କିନ୍ତୁ ଠିକ୍ ବୁଝିଥିଲେ । ପୋଲିସ ହାତରେ ଧରାଦେଇ ଜୀବନଟା ହୁଏତ ରକ୍ଷାହୋଇଯାଇପାରେ । କିନ୍ତୁ ବିପ୍ଳବୀମାନଙ୍କର ଖବର ସଂଗ୍ରହକରିବାକୁ ତାଙ୍କ ଉପରେ ଚାଲିବ ଯେତେବେଳେ ପୈଶାଚିକ ନିର୍ଯାତନା– ସେତେବେଳେ ? ଯଦି ସେ ଭାଙ୍ଗିପଡ଼ନ୍ତି,

ତେବେ ହୁଏତ ତାଙ୍କୁ ଦେଶ ବିରୁଦ୍ଧରେ, ଜାତି ବିରୁଦ୍ଧରେ ବିଶ୍ୱାସଘାତକତା କରିବାକୁ ପଡ଼ିବ । ତା'ଙ୍କର ଗୋଟିଏ ମାତ୍ର ଶିକ୍ଷା 'ଧରାପଡ଼ିବା ଅପେକ୍ଷା ଆତ୍ମବିସର୍ଜନହିଁ ସହସ୍ର ଗୁଣରେ ଶ୍ରେୟସ୍କର ।'

ଅମରେନ୍ଦ୍ର, ହଠାତ୍ ତୁମେ ଆସିଲ, ହଠାତ୍ ଚାଲିଗଲ; କିନ୍ତୁ କେତେ ବଡ଼ ଆଦର୍ଶ ରଖିଗଲ ସତେ । ତୁମର ଏହି ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ କେତେ ମୃତ୍ୟୁଞ୍ଜୟୀ ବୀର ସନ୍ତାନ ନୂଆ ନୂଆ ଇତିହାସ ଲେଖି ଦେଇଗଲେ ।

ମାଷ୍ଟରଦା' ସେତେବେଳେ କୋୟାପଡାର ବିନୟ ସେନଙ୍କ ଘରେ । ବିନୟବାବୁ ଯେତିକି ବିନୟୀ, ସେତିକି ତେଜିୟାନ । ତାଙ୍କର ନମ୍ରତା ଭିତରେ ଦୃଢ଼ପ୍ରତିଜ୍ଞା ଓ ନିର୍ଭୀକତାର ଅପୂର୍ବ ସମନ୍ୱୟ । ସୁତରାଂ ମାଷ୍ଟରଦା'ଙ୍କ ଗ୍ରୁପ୍‌ର ସେଠାରେ ଏକ ସୁଦୃଢ଼ ନିରାପଦ ଆସନ ।

ଅମରେନ୍ଦ୍ରର ଆତ୍ମବିସର୍ଜନ ସମ୍ବାଦରେ ଦଳର ସମସ୍ତଙ୍କ ମନ ଶୋକାଭିଭୂତ । ନିର୍ମଳଦା' କହିଲେ, ''ଭାରି ଇଚ୍ଛା ଥିଲା ତାର ଯେ, ସେ କଲିକତାରୁ ଫେରି ୟୁରୋପିୟାନ କ୍ଲବ ଲଢ଼େଇରେ ଭାଗନେଇଥାନ୍ତା । ମିଳିଲା ନାହିଁ ସେତକ ସୁଯୋଗ, ଦି'ଦି'ଟା ରାଇଫେଲ ଚଳାଇବାରେ ତା'ର ଯେଉଁ ଦକ୍ଷତା ଭାବିଲେ ଅବାକ୍ ଲାଗେ ।''

**କାଲାରପୋଲ ଯୁଦ୍ଧ –**

ବିପ୍ଳବୀ ରଜତ ସେନ, ଦେବପ୍ରସାଦ ଗୁପ୍ତ, ସ୍ୱଦେଶ ରାୟ ଓ ମନୋରଞ୍ଜନ କିନ୍ତୁ ଅଥୟ କଲେଣି ମାଷ୍ଟରଦା'ଙ୍କୁ– ''ଆମକୁ ଗୋଟିଏ ଚାନ୍‌ସ ଦିଅନ୍ତୁ ଦାଦା !'' 'ୟୁରୋପିୟାନ କ୍ଲବ' ସବୁ ବଦମାସୀ ଓ ବଜ୍ଜାତିର କାରଖାନା; ସେଇଟାକୁ ଉଡାଇ ଦେବାକୁ ହେବ । ଚିଟାଗଞ୍ଜରେ ଥିବା ଏବଂ ମଝିରେ ମଝିରେ କଲିକତାରୁ ଆସୁଥିବା ସବୁ ବଡ଼ ବଡ଼ ଗୋରା ହାକିମଙ୍କ ଆଡ୍‌ଡ଼ାଏଇଟା । ବାହାରକୁ ଦେଖିଲେ ଜଣାଯିବ ମାମୁଲି କ୍ଲବଟା; କିନ୍ତୁ ଭିତରଟା ସବୁ ଡିପ୍ଲୋମାସି ଓ ପଲିଟିକ୍ସର ମୂଳପିଣ୍ଡ । ତତ୍‌କାଳୀନ ବେଂଗଲ ଶାସନକଳ ଉପରେ ଯେଉଁ କେତେକ ସଂସ୍ଥା ଓ ଅନୁଷ୍ଠାନର ପ୍ରଭାବ ଥିଲା ବେଶୀ, ସେହି କୁଖ୍ୟାତ ସଂଗଠନ ଭିତରୁ ଗୋଟିଏ ହେଉଛି ଇଂରେଜୀ ପତ୍ରିକା 'ଷ୍ଟେଟ୍‌ସମ୍ୟାନ' ଓ ଅନ୍ୟଟି ହେଉଛି 'ୟୁରୋପିୟାନ କ୍ଲବ' । ମାଷ୍ଟରଦା'ଙ୍କ ପ୍ଲାନ– 'ବାରମ୍ବାର ଆଘାତ ଦେବାକୁ ପଡ଼ିବ ଶ୍ୱେତାଂଗ ଶାସକ ଉପରେ, ଯେପରି କି ସେମାନେ ପ୍ରତି ମୁହୂର୍ତ୍ତରେ ଆତଙ୍କିତ ହୋଇପଡ଼ିବେ ।'

ସେମାନଙ୍କୁ କିନ୍ତୁ ସୁବିଧା ହେଲାନି କ୍ଲବ ଉପରେ ଚଢ଼ାଉକରିବାକୁ । ପାହାଡ ଯୁଦ୍ଧରୁ ଫେରିବା ପରେ କିଛି ଦିନ ବିଶ୍ରାମ ନେଇ ଛ' ବଂଧୁ–ରଜତ, ଦେବପ୍ରସାଦ, ସ୍ୱଦେଶ, ମନୋରଞ୍ଜନ, ସୁବୋଧ ଚୌଧୁରୀ ଓ ଫଣୀନ୍ଦ୍ର ନନ୍ଦୀ ରାଇଫଲ ନଳୀକୁ ସଫାକରି ଯାଇଥିଲେ ସେଦିନ । ସମସ୍ତଙ୍କ ମନରେ ଗୋଟିଏ ମାତ୍ର ପ୍ରତିଜ୍ଞା– ଜଲାଲାବାଦ ଯୁଦ୍ଧର ପ୍ରତିଶୋଧ ନେବାକୁ ହେବ, ଶ୍ୱେତାଙ୍ଗର ରକ୍ତରେ ହେବ ସହିଦମାନଙ୍କର ସ୍ମୃତି-ତର୍ପଣ ।

କଣ ଗୋଟାଏ ଫଙ୍କ୍‌ସନ ଥିବାରୁ କ୍ଲବ ଚାରିପଟେ କଡ଼ା ମିଲିଟାରୀ ପହରା । ଫର୍‌ଲଙ୍ଗେ ଦୂରରୁ ପ୍ରାୟ ପ୍ରତ୍ୟେକ ଲୋକକୁ ଚେକ୍ କରାଯାଉଛି । 'ପ୍ଲାନ୍‌ଟା ଆଜିପାଇଁ ପୋଷ୍ଟପନ୍

ରହୁ ।' ଗ୍ରୁପ ଲିଡ଼ର୍ ରଜତ ମତ ଦେଲା । ସକାଳୁ ସଂଧ୍ୟାଯାଏ ସେମାନଙ୍କର ଏତେ ପରିଶ୍ରମ ସତେ ଯେମିତି ପଣ୍ଡ ହୋଇଗଲା । "Never mind, we will see."

କ୍ଲବର ଅନତିଦୂରରେ ରଜତର ଘର । ରଜତର ମା' ଶ୍ରୀଯୁକ୍ତା ବିନୋଦିନୀ ଦେବୀ ବିଦ୍ରୋହୀଦଳର ସମସ୍ତଙ୍କର ମା' । ଅଳ୍ପ କେଇଦିନ ତଳେ ସେଇ ତ ପୁଣି ଆଶ୍ରୟ ଦେଇଥିଲେ ଅନନ୍ତ ସିଂହ ଓ ଗଣେଶ ଘୋଷଙ୍କୁ । ସ୍ୱର୍ଣ୍ଣଗର୍ଭା ମା' ବିନୋଦିନୀ ଦେବୀ କେବଳ ରଜତ ଭଳି ମୃତ୍ୟୁପାଗଳ ସନ୍ତାନର ସେ ଜନନୀ ନୁହନ୍ତି; ଅଗ୍ନିଯୁଗର ଅସଂଖ୍ୟ ନିର୍ଭୀକ ମୃତ୍ୟୁସଂଗ୍ରାମୀ ପୁଅ-ଝିଅ ତାଙ୍କର ମାନସସନ୍ତାନ । ବ୍ରିଟିଶ ମିଲିଟାରୀ ଓ ଅସଂଖ୍ୟ କଳା ପୋଲିସର ଶ୍ୟେନଦୃଷ୍ଟିକୁ ଉପହାସକରି ୟୁରୋପିୟାନ କ୍ଲବ୍‌ର ଆଖି ଆଗରେ ସେ କେତେ ଫେରାର ବିପ୍ଳବୀଙ୍କୁ ଆଶ୍ରୟଦେଇଛନ୍ତି ନିଜର ନିରାପଦ ଅଞ୍ଚଳ ଢ଼ାଙ୍କି । କୋଟି କୋଟି ପ୍ରଣାମ ତୁମକୁ ମା' !

''ମା' ! ଜଲଦି କ'ଣ ଗଣ୍ଡେ ଖାଇବାକୁ ଦିଅ, ଭୀଷଣ ଭୋକ ।''– କହି କହି ପ୍ରବେଶ କଲେ ରଜତ ଓ ତାଙ୍କ ପଛେ ପଛେ ପହଞ୍ଚିଲେ ଆଉ ପାଞ୍ଚଜଣ । ସାଙ୍ଗେ ସାଙ୍ଗେ ଖାଇବାର ଯୋଗାଡ଼ହୋଇଗଲା; କିନ୍ତୁ ଖାଇପାରିଲେନି କେହି ଜଣେ ହେଲେ । ରଜତର ସାନଭାଇ ଦଉଡ଼ି ଆସି ଖବରଦେଲା, 'ପୋଲିସ ପୋଲିସ' । ଖାଇବା ଛାଡ଼ି ରାଇଫଲ ନେଇ ଛ'ଜଣଯାକ ବିଦ୍ୟୁତ ଗତିରେ ବାଡ଼ି ଦରଜାବାଟେ ଜଣ ଜଣ କରି ବାହାରି ଚାଲିଗଲେ ।

ପୋଲିସ ଅବାକ୍ । କେହି କୁଆଡ଼େ ନାହାନ୍ତି, ଖବରଟା ତ କେବେ ଭୁଲ ନୁହେଁ; ତେବେ ଚାଲିଲା ପ୍ରତି କୋଠରି ଖାନତଲାସ ଏବଂ ଦଳେ ପୋଲିସ ଦଉଡ଼ିଲେ ନଦୀକୂଳକୁ । ପୋଲିସ 'କର୍ଣ୍ଣଫୁଲି' ନଦୀ ପାଖରେ ପହଞ୍ଚିବାବେଳକୁ ସେମାନେ ପହଞ୍ଚିଗଲେଣି ମଝିନଈରେ ଏକ ଦେଶୀ ଡିଂଗିରେ । କୌଣସିମତେ ଆରପାରିରେ ପହଞ୍ଚିବାକୁ ହେବ । ପଛେ ପଛେ ପୋଲିସ ବି ମଟର ଲଞ୍ଚ ଫିଟାଇଲା । ଛୁଟିଲା ପୁଲିସ । ଟର୍ଚ୍ଚଲାଇଟ୍‌ର ଆଲୁଅରେ 'କର୍ଣ୍ଣଫୁଲି' ନଦୀ ଭୟଙ୍କର ଦିଶିଲା । ଲାଇଟ ପଡ଼ିଲା ଡିଙ୍ଗି ଉପରେ । ''ଏ ଡିଙ୍ଗି ବାଲା ! ଡିଙ୍ଗି ଫେରାଅ । ଫେରାଅ ଡିଙ୍ଗି''– ପୁଲିସର ହୁଙ୍କାର ।

କିଏ ଶୁଣେ ପୋଲିସର ଧମକ । ଚାରିଜଣଙ୍କ ହାତରେ ଉଦ୍ଧତ ରିଭଲଭର । ଆଉ ଦି'ଜଣ ଆହୁଲା ଟାଣୁଛନ୍ତି । ସୁ-ସୁ କରି ଛୁଟିଚାଲିଛି ପୋଲିସର ମଟରଲଞ୍ଚ । –ଏ ଡିଙ୍ଗି, ଏ ଡିଙ୍ଗି !'

''ନା ନା, ଆଉ ପାଖକୁ ଭିଡ଼ାନା ଲଞ୍ଚ, ଦୂରେଇ ରୁହ, ଦୂରେଇ ରୁହ । ହଁ, ବେଶ୍ ଏତିକି । କେତେବେଳେ କେଉଁ କଥା ।'' ଲଞ୍ଚଚାଳକକୁ ପୋଲିସ ଚେତାବନୀ ଶୁଣାଉଛି । ପୋଲିସ ଲଞ୍ଚ ସେପାରିରେ ପହଞ୍ଚିବାର ବହୁ ଆଗରୁ ସେମାନେ ସେଠାରୁ ଅନ୍ତର୍ଦ୍ଧାନ ହେଲେଣି; ଖାଲି ଡିଙ୍ଗିଟା 'କର୍ଣ୍ଣଫୁଲ' ନଦୀରେ ଭାସି ଭାସି ଚାଲିଛି ।

ଖବର ପାଇ କ୍ରମେ ସେଠି ଜମାହେଲେଣି ଅସଂଖ୍ୟ ସଶସ୍ତ୍ର ପୋଲିସ ଓ ସୈନ୍ୟ-ବାହିନୀ । ସଦର ଥାନା ଇନଚାର୍ଯ୍ୟ ଅଫିସର ଆଜାମ ଖାଁ, ଡି.ଏସ୍.ପି: ଆସାନଉଲ୍ଲା, ପୁଟିଆର ଦାରୋଗା, ଡି.ଆଇ.ଜି. ଫରମାର, କର୍ଣ୍ଣେଲ ଡେଲାସ୍ମିଥ ଓ ମାକଡୋନାଲ୍ଡ଼ ପ୍ରଭୃତି ପାହାଡ଼ ଯୁଦ୍ଧରେ ଅର୍ଦ୍ଧମୃତ ଓ କ୍ଷତବିକ୍ଷତ ସେନାପତିମାନେ ବି ପହଞ୍ଚିଗଲେଣି ।

ବିଦ୍ରୋହୀମାନଙ୍କ ଠାବ କରିବା ଅସମ୍ଭବ ହୋଇପଡ଼ିଲେ ସୁଦ୍ଧା ପୋଲିସ ଭଲ ଭାବରେ ଜାଣେ ଯେ, ସେମାନେ ନିକଟବର୍ତ୍ତୀ କୌଣସି ଗ୍ରାମରେ ଆତ୍ମଗୋପନ କରିଥିବେ ନିଶ୍ଚୟ । ସୁତରାଂ ଗ୍ରାମବାସୀଙ୍କ ବିନା ସହାୟତାରେ ସେମାନଙ୍କୁ ଧରିବା ଖାଲି କଷ୍ଟସାଧ ନୁହେଁ; ଅସମ୍ଭବ ମଧ । ଫଳରେ ଆରମ୍ଭ ହୋଇଗଲା ବ୍ରିଟିଶ ଦଲାଲୀ, ଯାହାକୁ ଆମ ଦେଶରେ ଆଜି ବି ଦଳେ ଟେକାଟେକି କରି କହନ୍ତି 'ବ୍ରିଟିଶ ପଲିଟିକ୍ସ ।' "ତମ ଗାଁ ଭିତରେ ଦଳେ ଡକାୟତ ପଶିଛନ୍ତି, ଧରିଦିଅ ସେମାନଙ୍କୁ, ପୁରସ୍କାର ମିଳିବ, ସରକାର ବାହାଦୁର ଖୁବ୍ ଖୁସି ହେବେ । ତମ ଗାଁକୁ ବି ମିଳିବ ବହୁତ ଇନାମ ।" ପୁଲିସବାଲା ଅଶିକ୍ଷିତ ଅଜ୍ଞ ଗାଁବାଲାଙ୍କ ନିକଟରେ ଚାଲ୍ ଖେଳିଲେ । ସେ ଚାଲ୍‌ଟା ବୁଝିପାରିଲେନି ବିଚରା ଗ୍ରାମବାସୀଗୁଡ଼ିକ । ଏକେ ତ ଚଟ୍ଟଗ୍ରାମ ବିଦ୍ରୋହ ସଂପର୍କରେ ସଠିକ ତଥ୍ୟ ସେମାନଙ୍କ ଭିତରେ ପ୍ରଚାରିତ ହେବାକୁ ଯଥେଷ୍ଟ ସମୟ ମିଳିନଥିଲା; ବରଂ ବିଦ୍ରୋହୀମାନଙ୍କ ସଂପର୍କରେ ନାନା ଅତିରଂଜିତ ଭୟାବହ ବର୍ଣ୍ଣନା ଅହିଂସାବାଦୀମାନଙ୍କଦ୍ୱାରା ଦିଆଯାଇଥିବା, 'ଦେଶଦ୍ରୋହୀ' ସାର୍ଟିଫିକେଟ୍‌ଟା ବେଶି ପ୍ରଚାରିତ ହୋଇଥିଲା । ଫଳରେ ଚାରିଆଡ଼େ ଗୋଟାଏ ମାତ୍ର ଚିତ୍କାର ଶୁଣାଗଲା — "ଚୋର, ଚୋର, ଏହି ଗଲେ, ଧର ..."

ଯେଉଁମାନଙ୍କ ନିର୍ଭୟ ଆଶ୍ରୟରେ ରହି ସବୁ ଦେଶରେ ସବୁ ଯୁଗରେ ସଶସ୍ତ୍ର ବିଦ୍ରୋହୀମାନେ ମୁକ୍ତିସଂଗ୍ରାମ ପରିଚାଳନା କରିଥାଆନ୍ତି, ସେହି ଜନସାଧାରଣଙ୍କର ଅସହଯୋଗର ପରିଣତି ସହଜେ ଅନୁମେୟ । ବାରମ୍ବାର ବାଧା ପାଇଲେ ବିପ୍ଳବୀମାନେ ମୂର୍ଖ ଗ୍ରାମବାସୀମାନଙ୍କଠାରୁ ।

"ଆମକୁ ବାଟ ଛାଡ଼ିଦିଅ ଭାଇମାନେ ! ବାଧାଦିଅନା ଆମକୁ । ଆମେ ଚୋର ଡକାୟତ ନୋହୁଁ । ତୁମମାନଙ୍କର କିଛି କ୍ଷତି କରିବାକୁ ଆସିନାହୁଁ ।" ବିରକ୍ତ ଓ ବିବ୍ରତ ବିପ୍ଳବୀମାନେ ଅନୁରୋଧ କଲେ ଗାଁବାଲାଙ୍କୁ । କିଏ ଶୁଣୁଛି ସେ କଥା ? ଚାରିଆଡ଼େ ସେହି ଗୋଟିଏ ରବ, "ଚୋର— ଧର, ଧର..."

ବାଧାପାଇ ବେଳେ ବେଳେ ବିପ୍ଳବୀମାନଙ୍କର ରାଇଫଲ ଗର୍ଜିଉଠିଲା ବାଧ ହୋଇ ଏବଂ ତା ଫଳରେ କିଏ କେଉଁଠି ଖଣ୍ଡିଆଖାବରା ହେବା ବିଚିତ୍ର ନୁହେଁ । ଅଜଣା ଅଚିହ୍ନା ଅଞ୍ଚଳ ସେ । ରାସ୍ତାଘାଟ ସଂପର୍କରେ ସଂପୂର୍ଣ୍ଣ ଅନଭିଜ୍ଞ ବିପ୍ଳବୀମାନେ; ସେଥିରେ ପୁଣି ଚାରିଆଡ଼େ ଅନ୍ଧାର । ପୋଲିସ ଗୁଳିରେ ପ୍ରଥମେ ଧରାପଡ଼ିଲେ ସୁବୋଧ ଚୌଧୁରୀ । କିନ୍ତୁ ତା' ପୂର୍ବରୁ ସୁବୋଧଙ୍କର ରାଇଫଲମାଡ଼ରେ ଜଣେ ଗୁର୍ଖା ପୋଲିସ ମାଟି କାମୁଡ଼ି ସାରିଥିଲା ଏବଂ ଆଉ ଜଣେ ଗୋରା ପୋଲିସ ଗୁରୁତରଭାବେ ହୋଇଥିଲା ଆହତ । ସୁବୋଧଙ୍କ ପରେ ପୋଲିସର ଗୁଳିରେ ପଡ଼ିଲେ ଫଣୀନ୍ଦ୍ର ନନ୍ଦୀ । କିନ୍ତୁ ଫଣୀନ୍ଦ୍ରଙ୍କ ଗୁଳିର ଆଘାତରେ ମୃତ୍ୟୁ ବରଣ କଲା ଗୋଟିଏ ଗୋରା ସିପାହି ଏବଂ ଆହତ ହେଲେ ଦୁଇଜଣ ଗ୍ରାମବାସୀ, ଯେଉଁମାନେ ପୋଲିସ ପାଇଁ ଦଲାଲୀ କରୁଥିଲେ ।

ଗୁଳି ଚଳାଇ ଚଳାଇ ଅନ୍ୟ ଚାରିଜଣ 'ଜୁଲଧା' ଗାଁ ଭିତରେ ପଶିଗଲେ । ସେତେବେଳକୁ ପୂର୍ବାକାଶ ଫର୍ଚ୍ଚା ହୋଇଆସିଥିଛି । ପାହାନ୍ତିଆ ତରା କେତେ ଗୁଡ଼ାଏ ଉପରକୁ

ଉଠିଲାଣି । ଚାରିଆଡ଼େ ଟିକେ ଟିକେ ସଫା ଦିଶିଲାଣି । ଦୁଇଦିନ ହେବ କାହାରି ପେଟରେ କିଛି ପଡ଼ିନି । ମା' ବିନୋଦିନୀ ଦେବୀଙ୍କ ବଢ଼ା ଭାତ ଛାଡ଼ି- ଆସିବା ପରେ ଆଉ କେଉଁଠି କିଛି ମିଳିନି ଖାଇବାକୁ । ସେଥିରେ ପୁଣି କ୍ଳାନ୍ତ-ଶ୍ରାନ୍ତ ସମସ୍ତେ । ଗୋଡ଼ହାତ ଚଳୁନି । ଦି'ଟା କିଛି ପେଟରେ ନପଡ଼ିଲେ ଆଉ ପାଦେ ଚାଲିବା ବି କଷ୍ଟ ।

ଆଗରେ ଗୋଟାଏ ଘର । ଦାଣ୍ଡଦରଜା ଖୋଲା । ଠିଆହୋଇଛନ୍ତି ଜଣେ ପ୍ରୌଢ଼ା; ସମ୍ଭବତଃ ମୁସଲମାନ ମହିଳା । କ'ଣ ଭାବି ଚାରିଜଣଯାକ ପଶିଗଲେ ସେହି ଘର ଭିତରକୁ । ''ମା' ଆମକୁ ଗଣ୍ଡେ ଖାଇବାକୁ ଦିଅ, ପଖାଳ ଦି'ଟା ହେଲେ ଚଳିବ । କୌଣସିମତେ ଦି'ଟା ଖାଇଦେଲେ ତେଣିକି... ''

ଏହା ଉଲ୍ଲେଖ କରିବା ବାହୁଲ୍ୟମାତ୍ର ଯେ । ପ୍ରୌଢ଼ାଜଣକ ଏହି ଅପ୍ରତ୍ୟାଶିତ ଆଗନ୍ତୁକ ଚାରିଜଣଙ୍କୁ ଦେଖି ବିସ୍ମୟ-ବିମୂଢ଼ ହୋଇଗଲେ । ରାତିସାରା ହଇଚଇ ପଡ଼ିଛି, ଆଖପାଖ ଆଠ-ଦଶ ଖଣ୍ଡ ଗାଁ ପଡୁଛି, ଉଠୁଛି । ଚାରିଆଡ଼େ 'ହେଇ ଗଲେ, ଧର ଧର' ଶବ୍ଦରେ ଅଧିକାଂଶ ଲୋକଙ୍କୁ ନିଦ ହୋଇନି । ସୁତରାଂ ଆଗନ୍ତୁକ ଚାରିଜଣଙ୍କ ପରିଚୟ ପ୍ରୌଢ଼ାଙ୍କ ନିକଟରେ ଅଜଣା ହେବାର କୌଣସି କାରଣ ନଥିଲା । କିନ୍ତୁ ଏସବୁ ସତ୍ତ୍ୱେ ''ମା' ଆମକୁ ଖାଇବାକୁ ଦିଅ'' କଥାଟା କାହିଁକି ପ୍ରୌଢ଼ାଙ୍କୁ ଚହଲାଇ ଦେଲା ।' ମା'– ଆହା ! କି ଅମୃତନିସ୍ୟନ୍ଦିନୀ ସେ ସମ୍ବୋଧନ ! ସେହି ଗୋଟାଏ ଅକ୍ଷର ପ୍ରୌଢ଼ାଙ୍କର ସବୁ ଆଶଙ୍କା ଓ ଭୟ ଯେମିତି କୁଆଡ଼େ ଲୋପକରିଦେଲା । ପୋଲିସ ମିଲିଟାରୀର ରକ୍ତଚକ୍ଷୁ ଓ ଗାଁବାଲାଙ୍କ ଧମକ ସବୁ ଯେମିତି ନିଷ୍ପ୍ରଭ ହୋଇଗଲା ତାଙ୍କ ନିକଟରେ । ''ନିଶ୍ଚୟ ଖାଇବାକୁ ଦେବି ବାବା ! କିନ୍ତୁ ଏ ଘର ତୁମମାନଙ୍କ ପକ୍ଷରେ ନିରାପଦ ନୁହେଁ; ବରଂ ସେ ଅଣୁଖା ବଣ ଭିତରକୁ ପଶିଯାଅ ସମସ୍ତେ । ମୁଁ ସେଇଠି ଖାଇବାରକୁ ଦେଇଆସିବି ।''

ପଶିଗଲେ ନିକଟସ୍ଥ ଅଣୁଖା ବଣ ଭିତରକୁ ବିପ୍ଳବୀ ଚାରିଜଣଯାକ । ଖାଇବା କାହାରି ଭାଗ୍ୟରେ ଜୁଟିଲା ନାହିଁ । ଅଣୁଖା ବଣଭିତରେ କିଏ ଜଣେ ଦେଖିଦେଲା ସେମାନଙ୍କୁ ଏବଂ ସାଙ୍ଗେ ସାଙ୍ଗେ ଚିତ୍କାର କଲା – ''ହେଇ, ଏଇଠି ପଶିଛନ୍ତି ଚୋରଦଳ । ଧର ଧର...''

ଚିତ୍କାର ଶୁଣି ପହଞ୍ଚଗଲେ ଫୌଜ, ପୋଲିସ ଡି. ଆଇ. ଜି., ଦାରୋଗା, କର୍ଣ୍ଣେଲ ଲୋମାନ୍ ପ୍ରଭୃତି ଅଫିସରମାନେ । ଯେମିତି ରୀତିମତ ଯୁଦ୍ଧକ୍ଷେତ୍ର; ମାତ୍ର ଚାରିଜଣ କ୍ଳାନ୍ତ-ଶ୍ରାନ୍ତ ଓ କ୍ଷୁଧାକୁଳ କିଶୋର ବିପ୍ଳବୀଙ୍କୁ ହତ୍ୟା କରିବାକୁ ପ୍ରାୟ ଚାରିଶହ ପୋଲିସ ଓ ମିଲିଟାରୀ, ଏତେ ବଡ଼ ବଡ଼ ମାରଣାସ୍ତ୍ର ଏବଂ ଏତେ ଶକ୍ତିଶାଳୀ ବନ୍ଧୁକ ଥାଇ ମଧ୍ୟ କି ଭୟ ସେଦିନ ପୋଲିସର ବିପ୍ଳବୀଙ୍କ ମୁହାଁମୁହିଁ ହେବାକୁ । ଲାଇଂ ପୋଜିସନ୍‌ରେ ଘୁଷୁଡ଼ି ଘୁଷୁଡ଼ି ଫୌଜ ଆଗେଇଚାଲିଛନ୍ତି ଅଣୁଖା ବଣର ଚାରିଆଡ଼କୁ ଗୁଳି ଫୁଟାଇ ଫୁଟାଇ । ବିପ୍ଳବୀମାନେ ଗୋଟାଏ ଗୁଡୁମ୍ କଲାବେଳକୁ ପୋଲିସର ଦଶରାଉଣ୍ଡ ଫାୟାର ହେଉଛି ।

କ୍ରମେ ପୋଲିସ ପ୍ରାୟ କାବୁକରିଦେଲା ଅଣୁଖା ବଣକୁ । ପଳାଇଯିବାର ସବୁ ରାସ୍ତା ରୁଦ୍ଧ । ହେମ ଦାରୋଗା ହୁଙ୍କାରଦେଲା ''ଅସ୍ତ୍ର ସମ୍ବରଣ କର ଯୁବକ ! ଏମିତି ଯୁଦ୍ଧ କରିବାର କିଛି ମାନେହୁଏନା । ମୃତ୍ୟୁ ଅନିବାର୍ଯ୍ୟ । ସୁତରାଂ ଆତ୍ମସମର୍ପଣ କର । ""Hands up."

ବଜ୍ରକଣ୍ଠରେ ଜବାବ ଦେଲା ମନୋରଞ୍ଜନ । "We do not know how to surrender. Remember, we are the children of Baghajatin of Balasore."

''ଦେବୁକୁ ମୁଁ ଗୁଳିକରିବି ! ତୁ ମୋତେ । ତାକୁ ତୁ ଗୁଳି କରିବୁ । ସରେଣ୍ଡରର ପ୍ରଶ୍ନ ନାହିଁ । ଦଳର ନିର୍ଦ୍ଦେଶ, ଦାଦା'ଙ୍କର ନିର୍ଦ୍ଦେଶ । Yes, Ready, One, Two, Three" ଲିଡ଼ର ସ୍ୱଦେଶ ରାୟର ଅର୍ଡ଼ର ବାହାରକୁ ଶୁଣାଯିବାର ପରମୁହୂର୍ତ୍ତରେହିଁ ଏକାସାଙ୍ଗରେ ଚାରିଟା ରିଭଲଭର ଗର୍ଜିଉଠିଲା ଗୁଡୁମ୍, ଗୁଡୁମ୍, ଗୁଡୁମ୍ । ସ୍ୱଦେଶ; ମନୋରଞ୍ଜନ ଓ ରଜତ ପ୍ରାୟ ଏକାସାଙ୍ଗେ ସହିଦତ୍ୱ ବରଣକଲେ । ପୋଲିସ ବଣଭିତରେ ପହଞ୍ଚିବାବେଳକୁ ଦେବପ୍ରସାଦଙ୍କ ଭିତରେ ଜୀବନର ସାମାନ୍ୟ ଲକ୍ଷଣ ଥିବାପରି ଜଣାଗଲା; ସେ ଗୁଣୁଗୁଣୁ ହୋଇ କ'ଣ କହୁଛି ଯେମିତି । ହେମ ଦାରୋଗାର ଖୁସି କହିଲେ ନସରେ — ''ଯାହାହେଉ ଗୋଟାଏ ହେଲେ ବଞ୍ଚିଛି । ଯଦି ଶେଷବେଳେ ତା ପାଟିରୁ କିଛି ଗୋଟାଏ ଦରକାରି କଥା ବାହାରକରାଯାଇପାରେ ଅନ୍ତତଃ 'ସୂର୍ଯ୍ୟସେନ' ଖବରଟା.... ।'' ଦେବପ୍ରସାଦର ମୁହଁ ପାଖରେ ଝୁଙ୍କିପଡ଼ି ହେମ ଦାରୋଗା ନରମ ସ୍ୱରରେ କହିଲା, ''କ'ଣ କହିବାର ଅଛି କୁହ ? ବଡ଼ ସାହେବ ପାଖରେ ଠିଆହୋଇଛନ୍ତି । କ'ଣ କହିବ, କହ ।''

ଦେବପ୍ରସାଦ କି ଉତ୍ତର ଦେଲା ? କି ଖବର, କାହା ପାଖକୁ ବା ଦେଲା ?

କ'ଣ ବାପ-ମା'ଙ୍କ ପାଖକୁ ? ସାଙ୍ଗସାଥୀ ଭାଇଭଉଣୀଙ୍କ କଥା ? କ'ଣ ମାଷ୍ଟରଦା'ଙ୍କ କଥା ? ନା, ନା— ସେ ଯେ ଗୃହତ୍ୟାଗୀ ବିପ୍ଳବୀ ସନ୍ନ୍ୟାସୀ । ତା'ର ସାଙ୍ଗସାଥୀ ଭାଇଭଉଣୀ କିଏ ? ତା'ର ଗୋଟିଏ ମାତ୍ର ଧ୍ୟେୟ ସ୍ୱାଧୀନତା । ଗୋଟିଏ ମାତ୍ର ମାତୃମନ୍ତ୍ର- 'ବନ୍ଦେ ମାତରମ୍'

''କିଏ ତୋର ସାହେବ ? ଲୋମାନ ? ଇସ୍, ମୋ ହାତଟା ଜଖମ ହୋଇଯାଇଛି, ନହେଲେ ଏଇ ହାତରେ ବିଧା ମାରି ସେ ସଇତାନ ଲୋମାନ୍‌ର ମୁଣ୍ଡଟାକୁ ଚୁନା କରିଦିଅନ୍ତି । ହାଃ...ହାଃ ..ବ...ନ୍ଦେ...ମା.. ।'' ଆଉ ପାରିଲା ନାହିଁ କହି । ଦେବପ୍ରସାଦର ଶେଷ ସତର୍କବାଣୀ ଶୁଣି ଲୋମାନ୍ ମୁହଁରୁ ଅଲକ୍ଷ୍ୟରେ ବାହାରିପଡ଼ିଲା, "My God."

ବିପ୍ଳବ-ଇତିହାସ ପ୍ରସିଦ୍ଧ 'କାଇ । ରପୋଲ' ଯୁଦ୍ଧ ଶେଷ ହେଲା । ପୋଲିସର ରିପୋର୍ଟରେ ଲେଖାହେଲା— '' ଜଣେ ହେଲେ ଆସାମୀ ଜିଅନ୍ତା ଧରାଯାଇପାରିଲେ ନାହିଁ । ପୋଲିସ ପହଞ୍ଚିବା ପୂର୍ବରୁ ସମସ୍ତେ ଆତ୍ମହତ୍ୟା କରିସାରିଥିଲେ ।

ମୂର୍ଖ ! ଆତ୍ମହତ୍ୟା ? ପୋଲିସ ଅଭିଧାନରେ ଯାହାକୁ ଆତ୍ମହତ୍ୟା କୁହାଯାଏ, ବିପ୍ଳବ-ଭାଷାରେ ତାହା 'ଆତ୍ମୋତ୍ସର୍ଗ', 'ଆତ୍ମତ୍ୟାଗ' । ଦେଶମାତୃକାର ପବିତ୍ର ବେଦୀରେ ମୁକ୍ତିସଂଗ୍ରାମୀର 'ଆତ୍ମବଳିଦାନ', 'ରକ୍ତଦାନ' Self-emolation, ଆତ୍ମାହୁତି-ଶହ ଶହ ମୁକ୍ତି-ସଂଗ୍ରାମୀଙ୍କୁ ଜନ୍ମଦେବାପାଇଁ ଏହା ହେଉଛି ବୀର୍ଯ୍ୟରୋପଣର ମହୋତ୍ସବ । ଏହାହିଁ ଜଣେ ସାଧାରଣ ଅପରାଧୀ ଓ ଦେଶପ୍ରେମୀ ଭିତରେ ପାର୍ଥକ୍ୟ ।

X X X X

''ପ୍ରିୟ ମିଷ୍ଟର୍ ଲୋମାନ୍,

୧୯୩୦ ଜୁନ ୨୮ ତାରିଖରେ ମୁଁ ତୁମକୁ ଦେଖାକରିବି । ମୁଁ ନିଶ୍ଚିତରୂପେ ଜାଣେ ଯେ, ତୁମେ ମୋତେ ଗିରଫ କରିବାର ଏହି ସୁବର୍ଣ୍ଣ ସୁଯୋଗ କଦାପି ଛାଡ଼ିବ ନାହିଁ; କିନ୍ତୁ ମନେକରନାହିଁ ଯେ ମୁଁ 'ସରେଣ୍ଡର' କରୁଛି ବୋଲି । ମଣିଷ କେତେବେଳେ 'ସରେଣ୍ଡର' କରେ ? ଯେତେବେଳେ ସେ ନିଜକୁ ଏକାନ୍ତ ଅସହାୟ ମନେକରେ, ଆଶ୍ରୟହୀନ ମନେକରେ, ସେତେବେଳେହିଁ ତା'ର ମୁଣ୍ଡ ତଳକୁ ନଇଁଯାଏ ।

ମୋର ଆତ୍ମରକ୍ଷାର ଅସ୍ତ୍ର ରହିଛି । ଖର୍ଚ୍ଚ କରିବା ପାଇଁ ପ୍ରଚୁର ଅର୍ଥ ଅଛି । ସହାୟତା କରିବା ପାଇଁ ଯଥେଷ୍ଟ ଲୋକ ଅଛନ୍ତି । ଏପରି କି ଭାରତ ଓ ଭାରତ ବାହାରେ ଯଥେଷ୍ଟ ଆଶ୍ରୟସ୍ଥଳ ଅଛି । ତେବେ ତୁମେ କ'ଣ ଭାବୁଛ ଯେ ମୁଁ ଅନୁତପ୍ତ ? ନା, ତା'ବି ନୁହେଁ । ଏହା ସଂପୂର୍ଣ୍ଣ ବ୍ୟକ୍ତିଗତ ବ୍ୟାପାର ବ୍ୟକ୍ତିଗତ କାରଣ । ।ଇତି।

''ବିଦ୍ରୋହୀ ଅନନ୍ତ ଲାଲ ସିଂହ ।''

ଜୁନ ୨୮ ତାରିଖରେ ଅନନ୍ତ ସିଂହଙ୍କର ଏ ଚିଠି ପୋଲିସ ସାହେବ ମିଷ୍ଟର ଲୋମାନ୍ଙ୍କ ନିକଟକୁ । ଚିଠି ଖବର ଓ ଅନନ୍ତ ସିଂହଙ୍କର ସ୍ୱେଚ୍ଛାକୃତ ଗିରଫଦାରୀ ଖବର ଶୁଣି ସେଦିନ ସାରା ଦେଶରେ ବିସ୍ମୟ ଓ ଆଶ୍ଚର୍ଯ୍ୟର ଯେଉଁ ଚମକ ସୃଷ୍ଟି ହୋଇଥିଲା ତାହା ବର୍ଣ୍ଣନାତୀତ । ସୁରେଶ ଓ ଦେବପ୍ରସାଦଙ୍କ ଭଳି ଅପେକ୍ଷାକୃତ କିଶୋର ବିପ୍ଳବୀମାନେ ଯେତେବେଳେ ଆତ୍ମ-ସମର୍ପଣ କରିବା ଅପେକ୍ଷା ଆତ୍ମହୁତିକୁ ଅଧିକ ଶ୍ରେୟସ୍କର ମନେକରନ୍ତି, ସେତେବେଳ ଅନନ୍ତ ସିଂହ ଭଳି ପହିଲା ନମ୍ବର ବିପ୍ଳବୀ ନେତା ସ୍ୱେଚ୍ଛାରେ ଗିରଫ ହେଲେ – କ'ଣ ରହସ୍ୟ ଏହା ପଛରେ ?

କିଛି ଦିନ ପରେ ଅନନ୍ତ ସିଂହଙ୍କର ଏହି ରହସ୍ୟଜନକ ଗିରଫଦାରୀର ବାସ୍ତବ ତାତ୍ପର୍ଯ୍ୟ ଉଦ୍‌ଘାଟିତ ହେଲା । ତାଙ୍କର ଆରେଷ୍ଟ ହେବା ପୂର୍ବରୁ କେତୋଟି କିଶୋର ବିପ୍ଳବୀଙ୍କୁ ପୋଲିସ ଗିରଫ କରି ଜେଲରେ ରଖିଥିଲା ଏବଂ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରି ପୋଲିସ ସେମାନଙ୍କଠାରୁ କେତେକ ସ୍ୱୀକାରୋକ୍ତି ଆଦାୟ କରିବାକୁ ସମର୍ଥ ହୋଇଥିଲା । ଅନନ୍ତ ସିଂ ସେହି ଜେଲ ଭିତରେ ରହି ସେମାନଙ୍କୁ ଏମିତି ବ୍ରେନିଂ ଦେଲେ ଯେ, ବିଚାରବେଳେ ସେମାନେ ସବୁ କଥା ଫାଙ୍କିଦେଲେ । କୋର୍ଟରେ ସେମାନେ ଦୃଢ଼ଭାବରେ କହିଲେ ''ଏହି ସ୍ୱୀକାରୋକ୍ତି ଆମ୍ଭେମାନେ ନିଜ ଇଚ୍ଛାରେ ଦେଇନାହୁଁ; ପୋଲିସ ବଳପୂର୍ବକ ଏହା ଆମଠାରୁ ଆଦାୟକରିଛି ।''

ଏହି ଜମାନବନ୍ଦି କେଶ୍‌କୁ ପୂରା ଓଲଟପାଲଟ କରିଦେଲା ଏବଂ ଏହା ଯେ କେବଳ ଅନନ୍ତ ସିଂଙ୍କର କୃତିତ୍ୱ, ଏହାକୁ ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ ।

ତେଣେ ମାଷ୍ଟରଦା'ଙ୍କ ନିର୍ଦ୍ଦେଶରେ ଜେନେରାଲ ଲୋକନାଥ ବଲାଙ୍କୁ ଯିବାକୁ ପଡ଼ିଲା କଲିକତା । ବଲିଷ୍ଠ ଓ ସୁଦର୍ଶନ ଲୋକନାଥଙ୍କର ଚେହେରା କେତେକାଂଶରେ ନେତାଜୀ ସୁଭାଷଙ୍କ ଚେହେରା ସହ ମିଶିଯାଏ; ସୁତରାଂ ତାଙ୍କ ପକ୍ଷରେ ଅଧିକ ଦିନ ପୋଲିସକୁ ଠକେଇବା ସମ୍ଭବ ହେଲା ନାହିଁ ।

ସେଦିନ ପହିଲା ସେପ୍ଟେମ୍ବର । କୌଣସି ଗୋପନ ସୂତ୍ରରୁ ସମ୍ବାଦ ପାଇ ପୋଲିସ ଘେରାଉକରିନେଲା ଲୋକନାଥଙ୍କର ଆଶ୍ରୟସ୍ଥଳ । କଲିକତାର ପୋଲିସ କମିଶନର ସ୍ୱୟଂ ଚାଲର୍ସ ଟେଗାର୍ଟ ପୋଲିସ ବାହିନୀର ନେତୃତ୍ୱ ସେଦିନ ନେଇଥିଲେ । ଆରମ୍ଭ ହେଲା ଉଭୟ ପକ୍ଷର ଖଣ୍ଡଯୁଦ୍ଧ ଏବଂ ଶେଷରେ ଲୋକନାଥ, ଗଣେଶ ଘୋଷ ଓ ଆନନ୍ଦ ଗୁପ୍ତ ଧରାପଡ଼ିଲେ ପୋଲିସ ହାତରେ । ସ୍ୱାମୀ ସ୍ତ୍ରୀ ବୋଲି ଅଭିନୟ କରି ଆଜିଯାଏ ତିନିଜଣ ବିପ୍ଳବୀଙ୍କୁ ଆଶ୍ରୟଦେଇଥିବା ଶଶଧର ଆଚାର୍ଯ୍ୟ ଓ ସୁହାସିନୀ ଦେବୀ ମଧ୍ୟ ଆରେଷ୍ଟହେଲେ । କେବଳ ମୃତ୍ୟୁବରଣ କଲେ ଜୀବନ ଘୋଷାଲ; ଯାହାଙ୍କର ଦେହ ପୋଲିସ ଗୁଳିରେ ପ୍ରାୟ ଝାଞ୍ଜରା ହୋଇଯାଇଥିଲା କହିଲେ ଚଳେ ।

ଅକ୍ଟୋବର ୯ ତାରିଖରେ ଧରାପଡ଼ିଲେ ଅମ୍ବିକା ଚକ୍ରବର୍ତ୍ତୀ । ଜଲାଲାବାଦ ଯୁଦ୍ଧକ୍ଷେତ୍ରରୁ ଫେରି ସେପର୍ଯ୍ୟନ୍ତ ସେ ସୁସ୍ଥ ହୋଇନଥାନ୍ତି ।

ମାଷ୍ଟରଦା'ଙ୍କର ସେତେବେଳେ ଗୋଟିଏ ମାତ୍ର ଲକ୍ଷ୍ୟ ପୋଲିସର ସର୍ବୋଚ୍ଚ କର୍ତ୍ତା କ୍ରେଗ୍ ଉପରେ । ଚଟ୍ଟଗ୍ରାମରେ ପୋଲିସ ଅତ୍ୟାଚାରର କୁଖ୍ୟାତ ନାୟକ କ୍ରେଗ୍‌କୁ ଯେକୌଣସି ଉପାୟରେ ଖତମ କରିବାକୁ ହେବ ।

ଆଗେଇଆସିଲେ ଯୁବ-ବିଦ୍ରୋହୀ ରାମକୃଷ୍ଣ ବିଶ୍ୱାସ ଓ ତାଙ୍କର ସାଥୀ କାଳୀ ଚକ୍ରବର୍ତ୍ତୀ ଏବଂ ଯୋଜନା ଅନୁସାରେ ଚାଲିଲେ ଟ୍ରେନରେ ଚାନ୍ଦପୁର ଅଭିମୁଖେ । କ୍ରେଗ୍ ଯାଉଛି ସେଦିନ ଚାନ୍ଦପୁର; ସୁତରାଂ ଏହା ଏକ ସୁବର୍ଣ୍ଣ ସୁଯୋଗ ।

ପହିଲା ଡିସେମ୍ବର । ଚାନ୍ଦପୁର ଷ୍ଟେସନରେ କୁହୁଡ଼ି ଘେରିରହିଛି । ସୂଚୀଭେଦ୍ୟ କୁହୁଡ଼ି । ଟ୍ରେନ୍ ଇନ୍ କରିବା ସଙ୍ଗେ ସଙ୍ଗେ ଫାଷ୍ଟକ୍ଲାସ ଡବା ଭିତରକୁ ଆଗେଇଗଲେ ଦୁଇ ବନ୍ଧୁ ।

"ହଁ, ଏ ତ ନିଶ୍ଚୟ ଅତ୍ୟାଚାରୀ କ୍ରେଗ ।" ଓଭରକୋଟ ପନ୍ଧି ବସିଛି କ୍ରେଗ । ଆଉ ବିଳମ୍ବ କାହିଁକି । ଗୁଡୁମ୍ ଗୁଡୁମ୍ କରି ଗର୍ଜିଉଠିଲା କାଳୀ ଓ ରାମକୃଷ୍ଣଙ୍କର ରିଭଲଭର । ହୈ-ଚୈ ଆରମ୍ଭ ହୋଇଗଲା ଚାରିଦିଗରେ । "ଏଇ ବାଟେ ଗଲା, ଧର ଧର" । କିନ୍ତୁ ସବୁ ଉଭାନ । କେହି ଧରାପଡ଼ିଲେନି । କିନ୍ତୁ କ୍ରେଗ କାହିଁ ? ତଳେ ପଡ଼ିଛି ତାରିଣୀ ମୁଖାର୍ଜି । ରେଳ ଇନସପେକ୍ଟର ତାରିଣୀ ମୁଖାର୍ଜି । ଚିହ୍ନିବା ମୁସ୍କିଲ । ପ୍ରାୟ କ୍ରେଗର ଚେହେରା । ତାରିଣୀ ମୁଖାର୍ଜି ଉପରେ ଗୁଳି ବାଜିଛି । ସଙ୍ଗେ ସଙ୍ଗେ ଖବର ଗଲା କୁମିଲ୍ଲା, ଲାକସାମ ଓ ଚଟ୍ଟଗ୍ରାମ ।

"ଧର ବିପ୍ଳବୀ ଆତତାୟୀ ଦୁହିଁଙ୍କୁ । ସାମାନ୍ୟ ସନ୍ଦେହ ହେଲେ ଗିରଫ କର— ସେ ଯେ କେହି ହେଉନା କାହିଁକି ?"

ସମ୍ବାଦପତ୍ରରେ ୨ ଡିସେମ୍ବର ୧୯୩୧ରେ ନିମ୍ନଲିଖିତ ସମ୍ବାଦଟି ପ୍ରକାଶିତ ହୋଇଥିଲା ।

"ଚାନ୍ଦପୁର ୧-୧୨ । ଆଜି ବଡ଼ିସକାଳୁ ଚାନ୍ଦପୁର ରେଲଷ୍ଟେସନର ପ୍ଲାଟଫର୍ମରେ ପୋଲିସ ଇନସପେକ୍ଟର ବାବୁ ତାରିଣୀ ମୁଖାର୍ଜି ଉଦ୍ଧତ ଆତତାୟୀର ଗୁଳିରେ ନିହତ ହୋଇଅଛନ୍ତି । ତାରିଣୀବାବୁ ପୋଲିସ ଆଇ: ଜି: ମିଷ୍ଟର କ୍ରେଗକୁ ସ୍ୱାଗତ ଜଣାଇବାକୁ

ସେଠାରେ ଉପସ୍ଥିତ ଥିଲେ । ଆହତ ଅବସ୍ଥାରେ ତାଙ୍କୁ ହସପିଟାଲ ନେବାବେଳେ ତାଙ୍କର ମୃତ୍ୟୁ ହେଲା ।'' ('ଆନନ୍ଦବଜାର ପତ୍ରିକା')

ମୃତ୍ୟୁପୂର୍ବରୁ ତାରିଣୀବାବୁ କହିଯାଇଥିଲେ ଯେ ଆତତାୟୀଙ୍କ ଭିତରୁ ଜଣକ ଦେହରେ ନୀଳ ରଙ୍ଗର ସାର୍ଟ ଥିଲା ।

ସେହି ମାସ ୩ତାରିଖରେ ରାମକୃଷ୍ଣ ଓ କାଳୀ ଚକ୍ରବର୍ତ୍ତୀ ଧରାହେଲେ । ସେମାନଙ୍କ ଗିରଫଦାରୀ ସଂପର୍କରେ ନିମ୍ନଲିଖିତ ସମ୍ବାଦଟି 'ଆନନ୍ଦବଜାର ପତ୍ରିକା'ରେ ପ୍ରକାଶିତ ହୋଇଥିଲା ।.''୩ ତାରିଖ ଡିସେମ୍ବର ଜିଲାବୋର୍ଡ଼ ଅଫିସ ରାସ୍ତାରେ ଦୁଇଜଣ ଯୁବକ ଧରାପଡ଼ିଛନ୍ତି । ସେମାନଙ୍କଠାରୁ କେତୋଟି ଗୁଳି, ହାତବୋମା, ତିନୋଟି ଗୁଳିଭରା ରିଭଲଭର, ବୈଦ୍ୟୁତିକ ମସଲା (ସମ୍ଭବତଃ ଡିନାମାଇଟ— ଲେଖକ) ଧରାପଡ଼ିଛି । ସେମାନଙ୍କ ଦେହରେ ରଙ୍ଗିନ ଚାଦର ଥିଲା ଏବଂ ସେମାନେ ଚାନ୍ଦପୁରରୁ ଲାକସମା ଯାଉଥିବାର ଜଣାଯାଇଛି । ଯୁବକ ଦୁଇଟିଙ୍କର ନାମ ରାମକୃଷ୍ଣ ବିଶ୍ୱାସ ଓ କାଳୀ ଚକ୍ରବର୍ତ୍ତୀ । ଜଣାଯାଇଛି ଯେ, ସେମାନେ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ମାମଲାର ଫେରାର ଆସାମୀ ଅଟନ୍ତି ।''

ବିଚାର ପରେ ରାମକୃଷ୍ଣଙ୍କୁ ଫାଶୀଦିଆଗଲା ଏବଂ ଅଳ୍ପବୟସ୍କ ହୋଇଥିବାରୁ କାଳୀ ଚକ୍ରବର୍ତ୍ତୀଙ୍କୁ ଦିଆଗଲା ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ । ରାମକୃଷ୍ଣ ଫାଶୀମଞ୍ଚରେ ପ୍ରାଣ ଦେଇଗଲେ ସତ୍ୟ; କିନ୍ତୁ ତାଙ୍କର ଅପୂର୍ବ ଆତ୍ମତ୍ୟାଗ ଓ ଅବିଶ୍ୱାସ୍ୟ ନିର୍ଭୀକତା ତାଙ୍କୁ ଚିରଦିନ ଅମର କରି ରଖିଲା ଅଗ୍ନିଯୁଗର ଇତିହାସରେ ।

ରାମକୃଷ୍ଣଙ୍କର ଅଲୌକିକ ସାଂଗଠନିକ ଶକ୍ତି ଭିତରୁ ଜନ୍ମନେଇଥିଲେ ସଶସ୍ତ୍ର ସଂଗ୍ରାମ ଇତିହାସରେ ଅନ୍ୟ ଏକ ଆଗ୍ନେୟ ନାମ— ଅମୂଲ୍ୟ ରତ୍ନ— ପ୍ରୀତିଲତା ଓ୍ୟାଦ୍ଦେଦାର, ଯେ କି ଅଗ୍ନିଯୁଗ ଇତିହାସରେ ବହୁବର୍ଷ ପର୍ଯ୍ୟନ୍ତ ନାନା ଗୁରୁତ୍ୱପୂର୍ଣ୍ଣ ଦୁଃସାହସିକ ଅଭିଯାନ ସଂଗଠିତ କରିଥିଲେ ଏବଂ ଶେଷରେ କୁଖ୍ୟାତ 'ୟୁରୋପୀୟାନ କ୍ଲବ' ଉପରେ ଦୁଃସାହସିକ ଅଭିଯାନ ଚଳାଇ ଆତ୍ମବଳୀଦେଇଥିଲେ । ଖାଲି ସେତିକି ନୁହେଁ, ସେହି ପ୍ରୀତିଲତା ନିଜକୁ ରାମକୃଷ୍ଣଙ୍କ ଭଉଣୀ 'ଅନୀତା' ବୋଲି ପରିଚୟ ଦେଇ ସର୍ବମୋଟ ଚାଳିଶ ଥର ରାମକୃଷ୍ଣଙ୍କୁ ଜେଲଖାନାରେ ସାକ୍ଷାତ୍ କରିପାରିଥିଲେ । ପ୍ରୀତିଲତା ନିଜେ କହିଛନ୍ତି,— ''ରାମକୃଷ୍ଣ ଦାଦାଙ୍କର ଆତ୍ମତ୍ୟାଗ ମୋତେ ଅଧିକ ଦୁଃସାହସିନୀ କରିଦେଇଥିଲା ।''

ଚଟ୍ଟଗ୍ରାମ ସେତେବେଳେ ପୋଲିସ ଓ ମିଲିଟାରୀର ଛାଉଣୀରେ ପରିଣତ ହୋଇଥିଲା । ସ୍ଥାୟୀ କାଣ୍ଟନମେଣ୍ଟଗୁଡ଼ିକ ଭରିଯିବା ପରେ ତମ୍ବୁ ପକାଯାଇ ଅସ୍ଥାୟୀ ସୈନ୍ୟଛାଉଣୀ ମଧ୍ୟ ତିଆରି କରାଯାଇଥିଲା । ବିଦ୍ରୋହୀମାନଙ୍କର ଅଚାନକ ଓ ଆକସ୍ମିକ ଆକ୍ରମଣ ଓ ଚଢ଼ାଉରେ ସରକାରୀ ମହଲ ଆତଙ୍କିତ ଓ ଭୀତତ୍ରସ୍ତ । କେଉଁ ମୁହୂର୍ତ୍ତରେ କ'ଣ ଘଟିବ ଏବଂ କେଉଁ ଅନ୍ଧକାରର ଅନ୍ତରାଳରୁ କେତେବେଳେ କାହାର ରିଭଲଭର ଗର୍ଜିଉଠିବ; ତା'ର ଆଘାତରେ କେଉଁ ଗୋରା ବା କଳା ସାହେବଙ୍କର ମୁଣ୍ଡ ଶିକାର ହେବ, ସେକଥା କିଏ ଜାଣେ ? ଏ ସଂପର୍କରେ ଏକ ଖବରକାଗଜ କଟିଂରୁ ସେ ସମୟର ସରକାରୀ ମନୋଭାବ ଜଣାଯାଏ ।

**ଚଟ୍ଟଗ୍ରାମରେ ସାମରିକ ତତ୍‌ପରତା –**

''ପ୍ରତି ଛକରେ କମାଣସଜ୍ଜା । ଆଜି କମିଶନର ଅଫିସରେ ଯେଉଁ ବୈଠକ ବସିଥିଲା, ସେହି ବୈଠକରେ ହୋଇଥିବା ପ୍ରସ୍ତାବକୁ ସରକାର ଗ୍ରହଣ କରିନେଇ ଅଛନ୍ତି । ଏଣିକି ପ୍ରତି ଛକରେ ଥିବା ପୋଲିସ ପହରାକୁ ଆହୁରି କଡ଼ା କରିଦେବାକୁ ପଡ଼ିବ ଏବଂ ପ୍ରତି ଛକରେ ଜଣେ ଉଚ୍ଚ ପୋଲିସ ଅଫିସର ମୁତୟନ ରହିବେ । ରାସ୍ତାରେ ଏପର୍ଯ୍ୟନ୍ତ ଖାନତଲାସ ଚାଲୁରହିଛି ଏବଂ ଲୁହା କଣ୍ଟା ଦିଆଯାଇଥିବା କାଠ ଖୁଣ୍ଟରେ ରାସ୍ତାକୁ ସ୍ଥାନେ ସ୍ଥାନେ ଅବରୋଧ କରାଯାଇଅଛି; ଯେପରି କି ବିନା ଅନୁମତିରେ ଦ୍ରୁତଗତିରେ କୌଣସି ଯାନବାହନ ଯାଇ ନପାରେ । ପାହାଡ଼ ଉପରେ, ଘରଗୁଡ଼ିକ ଉପରେ ଏବଂ ପଲଟନ ରୋଡ଼ 'ବୁଲଫ ବ୍ରଦର୍ସ' ଘର ଉପରେ ଏବଂ ସାମରିକ ଗୁରୁତ୍ୱପୂର୍ଣ୍ଣ ସମସ୍ତ ଛକରେ କମାଣ ବସାଯାଇଛି ।'' ('ଆନନ୍ଦବଜାର ପତ୍ରିକା' ୨୮ଏପ୍ରିଲ, ୧୯୩୧)

**ବିଚାର ପ୍ରହସନ –**

ଚଟ୍ଟଗ୍ରାମ ବିପ୍ଳବୀଙ୍କର ବିଚାର ପ୍ରହସନ ଆରମ୍ଭ ହେଲା । ଅସାମୀ ମୋଟ ବତିଶ ଜଣ– ଗଣେଶ ଘୋଷ, ଅନନ୍ତ ସିଂହ, ଲୋକନାଥ ବଳ, ପ୍ରଭୃତି 'କାଲାରପୋଲ' ଯୁଦ୍ଧରେ ରଜତ ଓ ଦେବପ୍ରସାଦ ସହିଦତ୍ୱ ବରଣ କରିଥିଲେ । କିନ୍ତୁ ସେମାନଙ୍କର ଅଭିଭାବକମାନଙ୍କୁ ତ୍ରାହିମିଳିଲା ନାହିଁ; କାଠଗଡ଼ାରେ ଠିଆକରାଗଲା । ସେମାନଙ୍କୁ ଏବଂ ଏହି ଅନନ୍ତ ସିଂହଙ୍କର ପିତା ଗୋଲାପ ସିଂହଙ୍କୁ ମଧ୍ୟ ଆସାମୀରୂପେ ବିଚାରର ଅନ୍ତର୍ଭୁକ୍ତ କରାଗଲା ।

ଏହି ଅମିତବିକ୍ରମୀ ବୀର ସନ୍ତାନମାନଙ୍କର ଭବିଷ୍ୟତ୍ ବିଷୟରେ ସମଗ୍ର ବିଶ୍ୱ ସେଦିନ ଚିନ୍ତିତ । ସମସ୍ତ ସଭ୍ୟ ରାଷ୍ଟ୍ର ଓ ଭାରତର ସ୍ୱାଧୀନତା ସଂଗ୍ରାମକୁ ସମର୍ଥନ କରୁଥିବା ସମସ୍ତେ ସେଦିନ ଉଦ୍‌ବିଗ୍ନ । ପ୍ରତିଶୋଧପିପାସୁ ଇଂରେଜମାନେ ଯେ ବିଚାରର ଏକ ପ୍ରହସନ କରି ବିପ୍ଳବୀମାନଙ୍କୁ ଚରମଶାସ୍ତି ପ୍ରଦାନକରିବେ, ଏ ବିଷୟରେ ସମସ୍ତେ ପ୍ରାୟ ଏକମତ । ଆରମ୍ଭହେଲା ବିଦ୍ରୋହୀମାନଙ୍କ ବିରୁଦ୍ଧରେ ନାନା ଅସତ୍ୟ ଉଦ୍‌ଭଟ୍ଟ ଅଭିଯୋଗ ସଂଗ୍ରହ । ପୃଥିବୀର ସବୁ ଦେଶ ଭଳି ଏବଂ ଇତିହାସର ସବୁ ଯୁଗ ଭଳି ସେ ଯୁଗରେ ବି ଅଭାବ ନଥିଲା ବିଦ୍ରୋହୀମାନଙ୍କ ବିରୁଦ୍ଧରେ ମିଥ୍ୟା ସାକ୍ଷ୍ୟ ଦେବାପାଇଁ ଶିଖିମନାଇଁମାନଙ୍କର । କିଏ ଇଂରେଜମାନଙ୍କର ଅନୁକମ୍ପା ପାଇବା ଆଶାରେ, କିଏ ବା ଚାକିରିରେ ପ୍ରମୋଶନ ଆଶାରେ, କିଏ ବା ଅର୍ଥଲୋଭରେ ଏବଂ ଆଉ କିଏ ବା ପୋଲିସର ଅମାନୁଷିକ ଅତ୍ୟାଚାରରୁ ରକ୍ଷାପାଇବା ଆଶାରେ ଭାରତମାତାର ସେହି ବୀର ସନ୍ତାନମାନଙ୍କ ବିରୁଦ୍ଧରେ ମିଥ୍ୟା ସାକ୍ଷ୍ୟ ଦେବାକୁ ସେଦିନଆଗେଇଆସିଥିଲେ । ଭାରତର ମୁକ୍ତିସଂଗ୍ରାମର ଇତିହାସରେ ଏହି କୁଳାଙ୍ଗାରମାନଙ୍କର ସଂଖ୍ୟା କମ୍ ନଥିଲା ସେ ଦିନ ।

ଅନ୍ୟ ଦିଗରେ ବିପ୍ଳବୀମାନଙ୍କ ଅମୂଲ୍ୟ ଜୀବନ ରକ୍ଷାକରିବାକୁ ସେତେବେଳେ ଦେଶପ୍ରେମୀମାନଙ୍କର ବି ଅଭାବ ନଥିଲା । ପ୍ରଖ୍ୟାତ ଆଇନଜ୍ଞମାନେ ଆଗେଇ- ଆସିଲେ ବିପ୍ଳବୀମାନଙ୍କ ସପକ୍ଷରେ ମାଗଣାରେ ଲଢ଼ିବାକୁ । ଆଗେଇଆସିଲେ ନେତାଜୀଙ୍କର ବଡ଼ଭାଇ ଶରତ ଚନ୍ଦ୍ର ବସୁ, ପ୍ରଖ୍ୟାତ ଆଇନଜ୍ଞ ବୀରେନ୍ଦ୍ର ଶାସମଲ, ଶ୍ରୀଶ ବସୁ, ଅଖିଳ

ଦତ୍ତ, କାମିନୀ ଦତ୍ତ, ଏନ୍: ଆର: ଦାସଗୁପ୍ତ, କାଳୀଚରଣ ଘୋଷ, ଏନ: ସି: ମୁଖାର୍ଜୀ, ମହିମା ଗୁହ, ଜେ: କେ: ଘୋଷାଲ ଓ ସନ୍ତୋଷ ବସୁ ପ୍ରମୁଖ ନାମଜାଦା ଆଇନଜୀବୀମାନେ ।

ମାଷ୍ଟରଦା'ଙ୍କ ଯୋଜନା କିନ୍ତୁ ଅନ୍ୟପ୍ରକାର । ଏହାହିଁ ତ ବିପ୍ଳବୀର ଧର୍ମ । ସେ ଗଡ୍ଡ଼ାଳିକା ସ୍ରୋତ ନ୍ୟାୟର ସମର୍ଥକ ନୁହେଁ । ସେ ଗତାନୁଗତିକତାର ସ୍ତାବକ ନୁହେଁ । କିଛି ଗୋଟାଏ ନୂତନ, କିଛି ଗୋଟାଏ ଚମତ୍କାରିତା ଦେଖାଇବାକୁ ସେ ସର୍ବଦା ଉଦ୍ୟତ । ସାଧାରଣ ଦୃଷ୍ଟିରେ ଅସ୍ୱାଭାବିକ, ଅଚିନ୍ତନୀୟ ଓ ଅବିଶ୍ୱାସ୍ୟ ଯୋଜନା ହିଁ ବିପ୍ଳବର ପ୍ରକୃତ ମାଧୁର୍ଯ୍ୟ ।

''ବିଚାରର କୋଳାହଳ ଭିତରୁ ବନ୍ଦୀମାନଙ୍କୁ ମୁକ୍ତ କରାଗଲେ କେମିତି ହୁଅନ୍ତା ।'' —ମାଷ୍ଟରଦା' ଏହି ପ୍ଲାନ ନେଇ ସେଦିନ ଚିନ୍ତାମଗ୍ନ । ତାଙ୍କ ଆଗରେ ଦୁଇଟି ରାସ୍ତା, ହୁଏତ କୌଣସି ଉପାୟରେ ଜେଲଖାନାରେ ବିସ୍ଫୋରଣ ଘଟାଇ ବିପ୍ଳବୀମାନଙ୍କୁ ପଳାଇ ଆସିବାର ସୁଯୋଗ ଦେବା; ନଚେତ୍ ବିଚାରଚାଲିଥିବାବେଳେ କୋର୍ଟରୁମକୁ କୌଣସି ପ୍ରକାରେ ଡିନାମାଇଟରେ ଉଡ଼ାଇଦେଇ ବନ୍ଦୀମାନଙ୍କୁ ନେଇଆସିବା । ଏଥିରୁ 'ଅସମ୍ଭବ' କୌଣସିଟା ବି ନୁହେଁ । ବିପ୍ଳବୀ ଅଭିଧାନରେ 'ଅସମ୍ଭବ' ଶବ୍ଦ ଆସିବ କୁଆଡୁ ?

ପ୍ଲାନ ଅନୁଯାୟୀ କାମ ଆରମ୍ଭହୋଇଗଲା । ଆଗେଇଗଲା ବି ବହୁଦୂରଯାଏ । ଆଗେଇଆସିଲେ ବିପ୍ଳବୀ-ଗୋଷ୍ଠୀର ବଛା ବଛା ଯୁବକ । ଆଗେଇ-ଆସିଲେ ମାଷ୍ଟରଦା'ଙ୍କର ଏକାନ୍ତ ସହକାରୀ ନିର୍ମଳ ସେନ ଓ ତାରକେଶ୍ୱର ଦସ୍ତୀଦାର ପ୍ରଭୃତି । ପୂର୍ବରୁ ଅର୍ଦ୍ଧେନ୍ଦୁ ଗୁହ ଓ ମଧୁସୂଦନ ଦତ୍ତ ପ୍ରଭୃତି ଜାମିନରେ ଖଲାସ ହୋଇ ବାହାରେ ଥିଲେ, କେବଳ ବିଚାର ଦିନ କୋର୍ଟରେ ହାଜର ହେବାକୁ ପଡୁଥିଲା ସେମାନଙ୍କୁ ଏବଂ ସେହି ଅବସରରେ ସେମାନଙ୍କ ସହ ସାକ୍ଷାତ ହେଉଥିଲା ଅନ୍ୟାନ୍ୟ ବନ୍ଦୀମାନଙ୍କର । ଏହାର ସଂପୂର୍ଣ୍ଣ ସୁଯୋଗ ନେଲେ ମାଷ୍ଟରଦା' । କ୍ରମେ ଜେଲର ସେଣ୍ଟ୍ରି ଓ ସିପାହିମାନଙ୍କୁ ହାତକରାଗଲା । କିଛି କିଛି ଡିନାମାଇଟ୍ ଓ ବିସ୍ଫୋରକ ଦ୍ରବ୍ୟ ଜେଲ ଭିତରକୁ ଚାଲାଣ କରାଗଲା । କୋର୍ଟରୁମକୁ ଉଡାଇଦେବା ଯୋଜନା ମଧ୍ୟ ପୂରା ଦମ୍‌ରେ ଚାଲିଲା ।

କିନ୍ତୁ ନିୟତିର ବିଚାର ଭିନ୍ନ । ଭାଗ୍ୟଦେବୀ ଯେପରି ବିମୁଖ ସେଦିନ । ଦଳର ଜଣେ କିଶୋର ବିପ୍ଳବୀକୁ ପୋଲିସ ସେଦିନ ଗିରଫ କରି ବହୁ ଚେଷ୍ଟାରେ ତା'ଠାରୁ ଏ ଷଡ଼ଯନ୍ତ୍ର ସଂପର୍କରେ ଏକ ଅସ୍ପଷ୍ଟ ଖବର ପାଇଲା ଜୁନ ୨ ତାରିଖ ୧୯୩୧ରେ । ଖାଲି ସେତିକିରୁ ହୁଏତ ପୋଲିସ ଏତେ ଗଭୀରକୁ ଯାଇପାରିନଥାନ୍ତା; କିନ୍ତୁ ଆଉ ଏକ ଘଟଣାରେ ପୋଲିସ ଆଖି ଖୋଲିଗଲା । ଜେଲ ଭିତରେ ଦଳେ ରାଜମିସ୍ତ୍ରି ମରାମତି କାମ ପାଇଁ କାନ୍ଥ ଭାଙ୍ଗୁଥିବାବେଳେ ସନ୍ଧାନ ପାଇଲେ ବିପ୍ଳବୀମାନଙ୍କର ଏକ ଗୁପ୍ତ ଅସ୍ତ୍ରାଗାରର; ଫଳରେ ସବୁ ଉଦ୍ୟମ ଚରମ ବ୍ୟର୍ଥତାରେ ପରିଣତ ହେଲା । ଏ ସଂପର୍କରେ ତତ୍କାଳୀନ 'ଆନନ୍ଦ ବଜାର ପତ୍ରିକା'ର କେତେଗୁଡ଼ିଏ ସମ୍ବାଦର କଟିଂ ।

**''ଚଟ୍ଟଗ୍ରାମ ଜେଲରେ ମାରାତ୍ମକ ଅସ୍ତ୍ରଶସ୍ତ୍ର''**

ଜୁନ ୭ ତାରିଖ ୧୯୩୧ — ''ପ୍ରକାଶ ଯେ ସ୍ଥାନୀୟ ଜେଲରେ ଚଟ୍ଟଗ୍ରାମ ଅସ୍ତ୍ରାଗାର

ଲୁଣ୍ଠନ ମାମଲାରେ ଅଭିଯୁକ୍ତ ଅସାମୀମାନଙ୍କ ସେଲ ନିକଟରେ ଆଜି ସକାଳେ କେତେଗୁଡ଼ିଏ ମାରାତ୍ମକ ଅସ୍ତ୍ରଶସ୍ତ୍ର ଜବତ କରାଯାଇଛି । ସେ ସଂପର୍କରେ ଅଧିକ କିଛି ସଠିକ ସମ୍ବାଦ ଆମର ହସ୍ତଗତ ହୋଇନାହିଁ । ତେବେ ଶ୍ରୀ ଲୋକନାଥ ବଳ ଅସୁସ୍ଥଥିବାରୁ ବିଚାର ଟ୍ରାଇନବୁନାଲ ବୈଠକ ଆଜି ବସିନାହିଁ ହୋଲି ଜଣାଯାଇଛି ।''

X X X X X

## ଚଟ୍ଟଗ୍ରାମରେ ଡିନାମାଇନ ଅବିଷ୍କାର

ଅଦାଲତ ନିକଟରେ ଡିନାମାଇଟ୍‌ପୂର୍ଣ୍ଣ ବାକ୍ସ ମିଳିଛି ।

''ଆଜି ସକାଳେ ଚଟ୍ଟଗ୍ରାମ ଅଦାଲତ ନିକଟରେ ମାଟିତଳୁ ଏକ ଡିନାମାଇଟ୍ ବାକ୍ସ ମିଳିଥିବା ସମ୍ବାଦରେ ଜନସାଧାରଣ ତଟସ୍ଥ ଓ ଆଚମ୍ବିତ ହୋଇଯାଇଅଛନ୍ତି । ଜଣାଯାଇଛି ଯେ, କଲେକ୍ଟରିଏଟ୍‌ର ପଶ୍ଚିମ ଦିଗ କାଛତଳେ ଚାରିଗୋଟି ବାକ୍ସରେ ଡିନାମାଇଟ ପୂର୍ଣ୍ଣ ହୋଇ ରହିଛି ଏବଂ ବାକ୍ସଗୁଡ଼ିକ ଉତ୍ତର ଓ ପଶ୍ଚିମ ଦିଗରେ ଅଦାଲତର ପାହାଚ ତଳେ ତଳେ ବୈଦ୍ୟୁତିକ ତାର ଦ୍ୱାରା ସଂଯୁକ୍ତ ହୋଇଅଛି । ଏହି ବାକ୍ସଗୁଡ଼ିକ ଅଦାଲତ ଗୃହର ପ୍ରଧାନ ପ୍ରାଚୀରର ଠିକ୍ ତଳେ କେତେ ଫୁଟ ମାଟି ଖୋଳିବା ପରେ ବାହାର କରାଯାଇଛି ।

X X X X X

## ଚଟ୍ଟଗ୍ରାମରେ ସାଂଧ୍ୟ-ଆଇନ ଜାରି

ଫୌଜଦାରୀ ଦଣ୍ଡବିଧି ଆଇନର ୧୪୪ ଧାରା ଅନୁସାରେ ଅଦ୍ୟ ଜିଲାମାଜିଷ୍ଟ୍ରେଟ୍ ଆଦେଶ ଜାରି କରିଅଛନ୍ତି ଯେ, ୧୬ ରୁ ୨୬ ବର୍ଷ ବୟସ ପର୍ଯ୍ୟନ୍ତ କୌଣସି ହିନ୍ଦୁ ଯୁବକ ସନ୍ଧ୍ୟା ୭ ଘଣ୍ଟାରୁ ସକାଳ ୫ ଘଣ୍ଟା ପର୍ଯ୍ୟନ୍ତ ଗୃହ ତ୍ୟାଗ କରିପାରିବେ ନାହିଁ । ଆଗାମୀ ଜୁନ ଆଠ ତାରିଖରୁ ଏହି ଆଦେଶ କାର୍ଯ୍ୟକାରୀ ହେବ । ଚଟ୍ଟଗ୍ରାମ ମ୍ୟୁନିସିପାଲଟି ଅଞ୍ଚଳ, ଜେଟି ଓ ପାହାଡ଼ତଳ ଅଞ୍ଚଳ ମଧରେ ବାସକରୁଥିବା ସମସ୍ତ ହିନ୍ଦୁ ଯୁବକମାନଙ୍କ ପ୍ରତି ଏହି ଆଦେଶ ପ୍ରଯୁଜ୍ୟ ହେବ ।'' (ଜୁନ ୬ ତାରିଖ, ୧୯୩୧)

X X X X X

## ଚଟ୍ଟଗ୍ରାମରେ ନିତ୍ୟ ନୂତନ ଆବିଷ୍କାର

''ପ୍ରକାଶ ଯେ, ଅଦ୍ୟ ପ୍ରାତଃକାଳରେ ଦେୱାନ ବଜାରସ୍ଥ ଗୋଟିଏ ଘର ଖାନସଲାସ ସମୟରେ ପୋଲିସ କେତେଗୁଡ଼ିଏ ତାଜା କାର୍ତ୍ତୁଜ, ଦୁଇବାକ୍ସ ବିସ୍ଫୋରକ ପଦାର୍ଥ ଏସିଡ୍ ଓ ବୈଦ୍ୟୁତିକ ତାର ଜବତ କରିଅଛନ୍ତି । ଏ ସଂପର୍କରେ ହୃଦୟ ଦାସ ନାମକ ଜନୈକ ବ୍ୟକ୍ତିକୁ ପୋଲିସ ଗିରଫ କରିଛି । ଆଉ କେତେକ ଘର ଖାନତଲାସ କରି ଆଉ ତିନିଜଣ ଯୁବକଙ୍କୁ ମଧ ପୋଲିସ ଗିରଫ କରିଛି । ସେମାନଙ୍କ ମଧରେ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନରେ ଅଭିଯୁକ୍ତ ବିଚାରାଧୀନ ଏବଂ ଜାମିନରେ ଛାଡ଼ ପାଇଥିବା ଆସାମୀ ଅନୀଲ ରକ୍ଷିତ ନାମକ ଯୁବକ ଅନ୍ୟତମ । (୧୮-୬-୧୯୩୧)''



## ଅଧ୍ୟାୟ - ଛବିଶ

# ଅତ୍ୟାଚାରୀଙ୍କୁ ଖତମ୍ କର

ସାର୍ଥକତାହିଁ ମନୁଷ୍ୟ-ଜୀବନର ଧ୍ୟେୟ ; କିନ୍ତୁ ସବୁବେଳେ ତାହା ମିଳେନା । ବହୁ ତପସ୍ୟା, ବହୁ ସାଧନା, କଷ୍ଟ ବରଣକଲେ ଯାଇ ଆସେ ସେହି ଈପ୍‌ସିତ ଫଳ । କିନ୍ତୁ ବ୍ୟର୍ଥତା ମଣିଷର ମନୋବଳକୁ ଭାଙ୍ଗିଦିଏ । ସେ ଚାହିଁଆଡ଼େ ଦେଖେ ନିରନ୍ଧ୍ର ଅନ୍ଧକାର । ଆଶାବାଦୀ କିନ୍ତୁ ସାମୟିକ ବ୍ୟର୍ଥତାରେ ଭାଙ୍ଗିପଡ଼େନା; ବରଂ ସେଥିରେ ସେ ପାଏ ଆଗାମୀ ସାର୍ଥକତାର ସଂଧାନ । ନୈରାଶ୍ୟବାଦୀ ଗୋଟିଏ ଉଜ୍ଜ୍ୱଳ ଦିବସର ଦୁଇଦିଗରେ ଦୁଇଟି ଅନ୍ଧକାର ରାତ୍ରୀ ଦେଖେ । ଜଣେ ଆଶାବାଦୀର ବିଚାର କିନ୍ତୁ ଅନ୍ୟ ପ୍ରକାରର । ସେ ଗୋଟିଏ ଅନ୍ଧକାର ରାତ୍ରିର ଦୁଇ ଦିଗରେ ଦୁଇଟି ଉଜ୍ଜ୍ୱଳ ଆଲୋକିତ ଦିବସ ଦେଖିବାକୁ ପାଏ । ବିପ୍ଳବୀର ଚରିତ୍ର ଏହି ଶେଷୋକ୍ତ ଶ୍ରେଣୀର । ସାମୟିକ ବ୍ୟର୍ଥତା ତାକୁ ଦୋହଲାଇପାରେନାହିଁ । ସେ ଜାଣେ ଯେ, ସେ ସତ୍ୟ-ସଂଧାନୀ, ନ୍ୟାୟଯୁଦ୍ଧର ସେ ଜଣେ ସୈନିକ । ସୁତରାଂ ବିଜୟ ତା'ର ସୁନିଶ୍ଚିତ ଏବଂ ଏହି ବିଜୟଶ୍ରୀରେ ମଣ୍ଡିତ ହେବାପାଇଁ ତାକୁ କଠୋର ନିର୍ମମ ତପସ୍ୟା ଓ କୃଚ୍ଛ୍ର ସାଧନା କରିବାକୁ ପଡ଼ିବ । ଏକଥା ମଧ୍ୟ ସେ ଜାଣେ ଏବଂ ବିନା ଆତ୍ମତ୍ୟାଗ, ବିନା ବଳିଦାନରେ କେବେ କୌଣସି ଦେଶକୁ ସ୍ୱାଧୀନତା ମିଳିନାହିଁ – ଏହା ମଧ୍ୟ ତା'ର ଅସ୍ଥିମଜ୍ଜାଗତ ବିଚାର । ସୁତରାଂ ସାମୟିକ ପରାଜୟର ଗ୍ଲାନି ଓ ବ୍ୟର୍ଥତାର ଦୁଃଖ ତା'କୁ ଦବେଇ ଦେବା ଦୂରେ ଥାଉ, ବରଂ ତା'ମନରେ ଆଣିଦିଏ ଶତସିଂହର ବିକ୍ରମ । ମାଷ୍ଟରଦା' ଏହାର ବ୍ୟତିକ୍ରମ ନଥିଲେ । ସେ ଠିକ୍ ବୁଝିଥିଲେ ଯେ, ଭାରତର ସ୍ୱାଧୀନତା ସଶସ୍ତ୍ର ଯୁଦ୍ଧବାଟରେହିଁ ଆସିବ ଓ ଚଟ୍ଟଗ୍ରାମର ସ୍ୱାଧୀନତା ଘୋଷଣା ସେହି ମହାଯୁଦ୍ଧର ହେବ ଶୁଭାଧିବାସ ଏବଂ ଚଟ୍ଟଗ୍ରାମର ସ୍ୱାଧୀନତା ଅର୍ଜନ ପାଇଁ ଅସ୍ତ୍ରାଗାର ଦଖଲ ଏକ ଅପରିହାର୍ଯ୍ୟ କାର୍ଯ୍ୟକ୍ରମ । ଏସବୁଗୁଡ଼ିକ ପ୍ଲାନ୍ ତାଙ୍କର ଅକ୍ଷରେ ଅକ୍ଷରେ ସାର୍ଥକ ହୋଇଛି । ବିପ୍ଳବୀମାନଙ୍କର ଏହି ଦାରୁଣ ଧକ୍କା ଯେ ଇଂରେଜ ସାମ୍ରାଜ୍ୟବାଦର ମୂଳଦୁଆ ଦୋହଲାଇଦେବ ଏବଂ ତା'ର ପ୍ରତିକ୍ରିୟା ଯେ ଭୀଷଣ ପୈଶାଚିକ ରୂପ ଧରିବ ଓ ବ୍ରିଟିଶ ସରକାର ଆହତ ବ୍ୟାଘ୍ର ବା ଜଳାତଙ୍କଗ୍ରସ୍ତ କୁକୁର ପରି ହିଂସ୍ର ହୋଇଉଠିବ, ଏହା ମଧ୍ୟ ଅଙ୍କ-ମାଷ୍ଟର ମାଷ୍ଟରଦା'ଙ୍କର ହିସାବର ବାହାରେ ନଥିଲା । ଏହାର ସମ୍ମୁଖୀନ ହେବାକୁ କାହାପରେ କ'ଣ କରିବାକୁ ହେବ, ଏହା ତାଙ୍କୁ ଅବିଦିତ ନଥିଲା । ସୁତରାଂ ତାଙ୍କର ଦୁଃସାହସିକ ଯୋଜନା ସଫଳ ନହେବାରୁ ସେ ପରବର୍ତ୍ତୀ କାର୍ଯ୍ୟକ୍ରମକୁ ଯଥାଶୀଘ୍ର ପାଳନ କରିବା ପାଇଁ ସଂଗ୍ରାମୀର ସିପାହମାନଙ୍କୁ ନିର୍ଦ୍ଦେଶଦେଲେ । ଆଦେଶ ପାଇ ବାହାରିପଡ଼ିଲେ ଅଣ୍ଟାଭିଡ଼ି ବିନୋଦବିହାରୀ ଦତ୍ତ,

ସରୋଜ ଗୁହ, ରମେନ ଭୌମିକ ଓ ବିନୋଦ ଚୌଧୁରୀ ପ୍ରଭୃତି ଦୁଃସାହସିକ ଯୁବବିଦ୍ରୋହୀବୃନ୍ଦ ।

୧୯୩୧ ଅକ୍ଟୋବର ୨୮ ତାରିଖରେ ପ୍ରକାଶ୍ୟ ରାଜପଥର ଢାକା ଜିଲା- ମାଜିଷ୍ଟ୍ରେଟ ମିଷ୍ଟର 'ଖୁନୋ'ଙ୍କର ମୁଣ୍ଡ ଗଡ଼ିଗଲା ସରୋଜ ଓ ରମେନ୍‌ର ଅବ୍ୟର୍ଥ ଗୁଳିରେ । ତା' ପଛେ ପଛେ ପାଳିପଡ଼ିଲା କୁମିଲାର ପୋଲିସ ଏସ: ପି: ରାକ୍ଷସ ଏଲିସନ୍‌ର । ତା'ର ଘୃଣିତ ମସ୍ତକ ଭୂଲୁଣ୍ଠିତ ହେଲା ଶୈଳେଶ ରାୟର ସଂଧାନୀ ରିଭଲଭର୍‌ର ଆଗ୍ନେୟ ବିସ୍ଫୋରଣରେ । ତା'ପର ଲିଷ୍ଟ୍‌ରେ ଥିଲା ଚଟ୍ଟଗ୍ରାମର କୁଖ୍ୟାତ ଗୁଇନ୍ଦା ଅଫିସର ଆସାନୁଲ୍ଲା । ସେ ବି ବାଦ ପଡ଼ିଲାନି ବିଦ୍ରୋହୀମାନଙ୍କର ମରଣାନ୍ତକ ଆଘାତରୁ । ବିପ୍ଳବୀମାନଙ୍କ ଉପରେ ନିର୍ମମ ଅତ୍ୟାଚାର ଚଳାଇବାରେ ସେ ଥିଲା ସିଦ୍ଧହସ୍ତ । ତା ନାଁ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡୁଥିଲା । ଅମାନୁଷିକ ଓ ଲୋମହର୍ଷଣକାରୀ ଅତ୍ୟାଚାରରେ କୌଣସି ସୀମା ଥିଲା ବୋଲି ଆସାନୁଲ୍ଲା ବିଶ୍ୱାସ କରୁନଥିଲା । ଅସୁସ୍ଥ ଓ ରୁଗ୍‌ଣ ବିପ୍ଳବୀ ଅମ୍ବିକା ଚକ୍ରବର୍ତ୍ତୀ ଉପରେ ଯେଉଁ ନିର୍ଦ୍ଦୟ ପାଶବିକ ଅତ୍ୟାଚାର ହୋଇଥିଲା, ତା'ର ମୂକସାକ୍ଷୀ ଚଟ୍ଟଗ୍ରାମର ଆକାଶ ବତାସ, ରାସ୍ତାଘାଟ ଓ ବୃକ୍ଷଲତା । କିନ୍ତୁ ତା'ର ପ୍ରଧାନକର୍ତ୍ତା ଥିଲା ଭାରତମାତାର ଏହି କୁ-ସନ୍ତାନ ଆସାନୁଲ୍ଲା । ପ୍ରହାରଜର୍ଜରିତା ଅମ୍ବିକା ଅତ୍ୟଧିକ ତୃଷାର୍ତ୍ତ ହୋଇ ପାଣିଟୋପାଏ ମାଗିବାରୁ ଆସାନୁଲ୍ଲା ତା'ର ସର୍ବାଙ୍ଗରେ ମୂତ୍ରତ୍ୟାଗ ବି କରିଥିଲା ଓ ଅମ୍ବିକାର ଆକୁଳ ଚିତ୍କାରରେ ସେ ପ୍ରକାଶ କରିଥିଲା ପୈଶାଚିକ ଆନନ୍ଦ ଓ ନାରକୀୟ ଅଟ୍ଟହାସ୍ୟ । ସୁତରାଂ ଆସାନୁଲ୍ଲାକୁ ସଫା କରିବା ପାଇଁ ବିପ୍ଳବୀମାନେ ଯେ ସିଦ୍ଧାନ୍ତ କରିସାରିଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ।

୧୯୩୧ ଅକ୍ଟୋବର ୩୦, ଫାଇନାଲ ଫୁଟବଲ ଖେଳରେ ବିଜୟୀ ଦଳକୁ ପୁରସ୍କାର ବିତରଣ କରିବା ପାଇଁ ସେ ଦିନ ସମବେତ ହୋଇଥାଆନ୍ତି ଚଟ୍ଟଗ୍ରାମର ନିଜାମ ପଲଟନ ପଡ଼ିଆରେ ଜିଲା ମାଜିଷ୍ଟ୍ରେଟ ଓ ଏସ: ପି: ଆସାନୁଲ୍ଲା । ମୁଖ୍ୟ ଅତିଥିମାନଙ୍କୁ ଘେରିରହିଛନ୍ତି ସଶସ୍ତ୍ର ପୋଲିସ । ପୋଲିସର ଏହି ଅଭେଦ୍ୟ ଦୁର୍ଗକୁ ଭେଦକରି ମାଛିଟିଏ ବି ଭିତରକୁ ଯିବା କଷ୍ଟ । କିନ୍ତୁ ବିପ୍ଳବୀ ମାଛିଠାରୁ ବି କ୍ଷୁଦ୍ର; ସେ ତ ପବନରେ ମିଶିଯାଏ ।

ହଠାତ୍ ବିପ୍ଳବୀର ରିଭଲଭର୍ ଗର୍ଜନ କଲା ଗୁଡୁମ୍ ଗୁଡୁମ୍ । ଏକା ଗୁଳିରେ ଖାଁ-ବାହାଦୁର ଆସାନୁଲ୍ଲା ଖତମ୍ । ଆହା, ଅର୍ଦ୍ଧ-ପୃଥିବୀର ଅଧୀଶ୍ୱର, ମହାରାଜାଧିରାଜ ବ୍ରିଟିଶ ସିଂହ ତୁମକୁ ରକ୍ଷାକରିପାରିଲାନି ଆସାନୁଲ୍ଲା ? ଛି, ଛି ।

ଏଭଳି ଏକ ଆକସ୍ମିକ ଓ ଅପ୍ରତ୍ୟାଶିତ ପରିସ୍ଥିତିରେ ଯାହା ହେବାର କଥା ସେଇଆ ହେଲା । ପ୍ରଥମେ ସମବେତ ସମସ୍ତେ ଏପରିକି ସଶସ୍ତ୍ର ପୋଲିସ ମଧ୍ୟ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ତା'ପରେ ଚିତ୍କାର ହୈ-ଚୈ ପଡ଼ିଗଲା; ''ଧର— ଧର''— କିନ୍ତୁ ଗୋଡ଼େଇବାକୁ ପଡ଼ିଲାନାହିଁ କାହାକୁ ଆତତାୟୀକୁ ଧରିବା ପାଇଁ । ବୀରଭଳି ଠିଆହୋଇଛି ସେ ଧରାଦେବା ପାଇଁ । ଆଶ୍ଚର୍ଯ୍ୟ ! ମାତ୍ର ୧୩-୧୪ ବର୍ଷ ବୟସର କିଶୋରଟିଏ; କୈଶୋରର କମନୀୟତା ସାମାନ୍ୟ ମ୍ଳାନ ପଡ଼ିଛି କି ନା ସନ୍ଦେହ । ଯୌବନକୁ ପାଦ ବଢ଼ାଇଛି

ମାତ୍ର; ଅଥଚ ଏତେ ନିର୍ଭୀକ, ଏତେ ଦୁଃସାହସିକ ଏହି କିଶୋର । ବିଶ୍ୱାସ କରିବା କଷ୍ଟ ଯେ, ଏହିଭଳି ଗୋଟିଏ କିଶୋରର କୋମଳ ଅଙ୍ଗୁଳିର ଅବ୍ୟର୍ଥ ଲକ୍ଷ୍ୟରେ ଦୁର୍ଦ୍ଧର୍ଷ ଆସାନୁଲ୍ଲା ଗୋଟିଏ ମାତ୍ର ଗୁଳିରେ ଭୂଲଣ୍ଠିତ ହେବ ।

ପୁରାଣବର୍ଣ୍ଣିତ ବୀର ଭଳି ହରିପଦ ଭଟ୍ଟାଚାର୍ଯ୍ୟ ଠିଆହୋଇଗଲେ । ସୁତରାଂ ଅନାୟାସରେ ପୋଲିସ ତାଙ୍କୁ ବାନ୍ଧିପକାଇଲା । ବିପ୍ଳବର ପଥ ସବୁବେଳେ କଣ୍ଟକିତ । ସେଥିରେ ପୁଣି ସେ ଦିନ ସଶସ୍ତ୍ର ବିପ୍ଳବୀମାନଙ୍କ ଜୀବନ ତ ପ୍ରତି ମୂହୁର୍ତ୍ତରେ ବିପନ୍ନ । ଏପରି ସ୍ଥଳେ ମନରେ ସ୍ୱତଃ ପ୍ରଶ୍ନ ଉଠେ — ହରିପଦ ପଳାଇନଯାଇ କିମ୍ବା ତାଙ୍କର ଅନ୍ୟାନ୍ୟ ସତୀର୍ଥ ବନ୍ଧୁଙ୍କ ଭଳି ସେଠାରେ ଆତ୍ମତ୍ୟାଗ ନକରି ଏଭଳି ଅନାୟାସରେ ପୋଲିସ ହାତରେ ଧରାଦେଲେ କାହିଁକି ? ସେ କ'ଣ ଜାଣିନଥିଲେ ଯେ, ପୋଲିସ ହାତରେ ତାଙ୍କୁ ଅକଥନୀୟ ନିର୍ଯ୍ୟାତନା ସହିବାକୁ ପଡ଼ିବ ? ସେ କ'ଣ ଭାବିପାରିନଥିଲେ ଯେ, ତାଙ୍କଠାରୁ ଖବର ସଂଗ୍ରହ କରିବାପାଇଁ ତାଙ୍କ ଉପରେ ଅସହନୀୟ ଓ ଅବର୍ଣ୍ଣନୀୟ ଅତ୍ୟାଚାରର ସ୍ରୋତ ପ୍ରବାହିତ ହେବ ? ତେବେ କାହିଁକି ଏ କୃଚ୍ଛ ସାଧନା ?

ଆରେଷ୍ଟ ହେବା ସଙ୍ଗେ ସେଙ୍ଗ ଆରମ୍ଭ ହୋଇଗଲା ପୋଲିସର ନିର୍ମମ ଜୁଲମ । ପୋଲିସ ସାହେବ ଖାଁ-ବାହାଦୁର ଇଂରେଜ ରାଜାଙ୍କ ମାନସସନ୍ତାନ ଆସାନୁଲ୍ଲାଙ୍କୁ ଯେ ହତ୍ୟାକରିଛି, ତା ପାଇଁ ତ ଅତ୍ୟାଚାରର ନୂତନତମ ଓ ଅଭିନବ ଅସ୍ତ୍ର ସବୁ ପ୍ରୟୋଗ କରାଯିବ– ଏଥିରେ ଆଉ ଭାବିବାରେ କ'ଣ ଅଛି ? ଆରମ୍ଭ ହେଲା ଆଙ୍ଗୁଳିରେ ଛୁଞ୍ଚ ଫୁଟାଇବା, ହଣ୍ଟର୍‌ରେ ନିର୍ମମ ପ୍ରହାର, ମଳଦ୍ୱାରରେ ହଣ୍ଟର ବା ଠେଙ୍ଗାରେ ଭୂଷା, ଇଲେକ୍ଟ୍ରିକ କରେଣ୍ଟ ଚାର୍ଯ ପ୍ରଭୃତି । ଉଦ୍ଦେଶ୍ୟ, ହରିପଦ ମୁହଁରୁ ଦୁଇପଦ ସ୍ୱୀକାରୋକ୍ତି; ଅର୍ଥାତ ଏ ଘଟଣା ପଛରେ ଆଉ କିଏ କିଏ ଜଡ଼ିତ ।

କିନ୍ତୁ ମୂର୍ଖ ଶାସକ ଓ ତା'ର ଅତ୍ୟାଚାରୀ ଭୃତ୍ୟ କେହି ବୁଝିପାରୁନଥାନ୍ତି ଯେ, ହରିପଦ ଜଣେ ସାଧାରଣ ଖୁଣୀ ଆସାମୀ ନୁହେଁ, ଯେ କି ପୋଲିସର ଅତ୍ୟାଚାରରେ ଭାଙ୍ଗିପଡ଼ିବ କିମ୍ବା ଭୀତତ୍ରସ୍ତ ହେବ । ସେ ଯେଉଁ ମାଷ୍ଟରଠୁଁ ଶିକ୍ଷା ପାଇଛି, ସେ ମାଷ୍ଟର ତ କହନ୍ତି, "ମୁଁ ଦେହ ନୁହେଁ; ମୁଁ ଆତ୍ମା । ଦେହଠାରୁ ଆତ୍ମା ଭିନ୍ନ; ସୁତରାଂ ଏ ଦେହ ଉପରେ ଯେତେ ଅତ୍ୟାଚାର ହେଲେ ବି ଆତ୍ମା ଅଜର, ଅମର, ଅବିନଶ୍ୱର,

ପୋଲିସ ପଚାରିଚାଲିଛି- "କହ, ସୂର୍ଯ୍ୟସେନ କାହିଁ ? କାହାନ୍ତି ତୋର ଯୋଡ଼ିଦାରମାନେ ?" ହରିପଦ ମୁହଁରେ ଉଁ ନାହିଁ କି ଚୁଁ ନାହିଁ ।

ଚାଲିଲା ବୃଦ୍ଧ ପିତା-ମାତାଙ୍କ ଉପରେ ପୋଲିସର ପ୍ରହାର । ପୋଡ଼ି ଛାରଖାର କରିଦିଆଗଲା ତାଙ୍କର ବାସଗୃହ । ହେଇ ଦେଖ୍, ତୋ ଆଖି ଆଗରେ – କେମିତି ଲାଗୁଛି ? ବୃଦ୍ଧ ପିତା-ମାତାଙ୍କୁ ନିର୍ମମ ପ୍ରହାର ଦେଇ ପିଶାଚ ପୋଲିସ ନାରକୀୟ ଆନନ୍ଦରେ ପ୍ରଶ୍ନ କରୁଛି କିଶୋରପୁତ୍ର ହରିପଦଙ୍କୁ, "କହ, ସୂର୍ଯ୍ୟସେନ କେଉଁଠି ଲୁଚିଛି ? କହ, ନିର୍ମଳ ସେନ, ତାରକେଶ୍ୱର ଦସ୍ତୀଦାର, ବିନୋଦ ଦତ୍ତ କୁଆଡ଼େ ଏମାନେ ? ନଚେତ ଫେର ଚାଲିବ ।" ଅଟ୍ଟହାସ୍ୟ କରି ପୋଲିସ ପଚାରୁଛି ।

ତଥାପି ହରିପଦ ନିସ୍ପନ୍ଦ । ଗୋଟାଏ ଶବ୍ଦ ବି ପୋଲିସ ବାହାର କରିପାରୁନି ହରିପଦ ମୁହଁରୁ । ପୋଲିସ କ୍ଳାନ୍ତ ହୋଇ ଆରମ୍ଭକଲା ଶୋଭାଯାତ୍ରା, ଚାରିପାଖରେ ପୋଲିସକର୍ଡ଼ନ କରି ନେଇଚାଲିଲେ ହରିପଦଙ୍କୁ ପ୍ରକାଶ୍ୟ ରାଜପଥରେ ପ୍ରାୟ ଘୋଷାଡ଼ି ଘୋଷାଡ଼ି । ଲୋକେ ବେଶି ଜମିଗଲେ, ପ୍ରହାରସଂଖ୍ୟା ବଢ଼ିଚାଲେ ଏବଂ ତା ସଙ୍ଗେ ସଙ୍ଗେ ବଢ଼ିଯାଏ ପୋଲିସର ପୈଶାଚିକ ଆନନ୍ଦ, ଉଲ୍ଲାସ ଏବଂ ଅଟ୍ଟହାସ୍ୟ, ଅକଥ୍ୟ ଗାଳି ଅସଭ୍ୟ ଭାଷାରେ । ହରିପଦର କୋମଳ ଚମଡ଼ା କେରି କେରି ହୋଇ ଫାଟିଗଲା, ଝରଝର ବୋହିଗଲା ସେ ଦେହରୁ ଅମୂଲ୍ୟ ରକ୍ତଧାରା; ତଥାପି ପୋଲିସ ଛାଡୁନାହିଁ ।

ରାଗ ଓ କ୍ଷୋଭରେ ଫାଟିପଡ଼ିଲା ହରିପଦ, ଚିତ୍କାର କରି ସ୍ଲୋଗାନ ଦେଲା– ''ଜୟ ମାଷ୍ଟରଦା' କୀ ଜୟ ବ୍ରିଟିଶ୍ ସାମ୍ରାଜ୍ୟବାଦ ଧ୍ୱଂସ ହେଉ, ଇନକ୍ୱିଲାବ ଜିନ୍ଦାବାଦ ।''

ହରିପଦଙ୍କର ଏହି ଆଶ୍ଚର୍ଯ୍ୟଜନକ ଔଦ୍ଧତ୍ୟ ପୋଲିସପକ୍ଷରେ ଅସହନୀୟ ଏବଂ ପୋଲିସଶକ୍ତିକୁ ଏକ ମସ୍ତବଡ଼ ଚାଲେଞ୍ଜ । ସୁତରାଂ ହରିପଦ ଉପରେ ଅତ୍ୟାଚାରର ମାତ୍ରା ବଢ଼ିଚାଲିଲା । କିନ୍ତୁ ମାଡ଼ ଦେଇ ଛୁଆ ମୁହଁରୁ ମା'-ଡାକ ଛଡାଇ ନେବା ଯେପରି ଅସମ୍ଭବ, ପୋଲିସର ଉଦ୍ୟମ ସେହିପରି ବ୍ୟର୍ଥ ହେଲା ।

ଦିନେ ନୁହେଁ, ଦି'ଦିନ ନୁହେଁ, ବିଚାରର ଶେଷ ଦିନ ପର୍ଯ୍ୟନ୍ତ ହରିପଦ ମୁହଁରୁ ଶୁଭିଲା ସେହି ଗୋଟିଏ ସ୍ଲୋଗାନ– ''ମାଷ୍ଟରଦା' କୀ ଜୟ ।''

ବିଚାରରେ ହରିପଦଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ହେଲା; ଫାଶୀ ହୋଇପାରିଲା ନାହିଁ କୁଆଡ଼େ ତାଙ୍କର ବୟସ କମ୍ ହୋଇଥିବାରୁ । ଆହା, ଅଳ୍ପ ବୟସ୍କଙ୍କ ପ୍ରତି ବ୍ରିଟିଶ ଆଇନ କେତେ ଦରଦ ସତେ !

ହରିପଦ ଆଜି ବଞ୍ଚିଛନ୍ତି; କିନ୍ତୁ ଦେଶରେ କେତେ ଜଣ ବା ଚିହ୍ନିଛନ୍ତି ତାଙ୍କୁ ? କିଏ ଚିହ୍ନନ୍ତୁ ବା ନଚିହ୍ନନ୍ତୁ, କିଏ ତାଙ୍କୁ ମନେରଖନ୍ତୁ ବା ନରଖନ୍ତୁ, ଆମେ ତାଙ୍କୁ ଆଜି ସ୍ୱାଧୀନତା ସଂଗ୍ରାମୀ ବୋଲି ସ୍ୱୀକାର କରୁ ବା ନକରୁ, ଇତିହାସରେ ତାଙ୍କର ଅଲୌକିକ ତ୍ୟାଗ ଓ କଷ୍ଟସହିଷ୍ଣୁତାର ସ୍ୱୀକୃତି କେହି ଦିଅନ୍ତୁ ବା ନଦିଅନ୍ତୁ, ହରିପଦଙ୍କର ଅବଦାନ କିନ୍ତୁ ଇତିହାସରେ ତାଙ୍କ ଆସନ ପ୍ରତିଷ୍ଠିତ କରାଇନେଇଛି । ହରିପଦ ନିଜେ ନିଜର ପ୍ରତିଭା ଓ କଠୋର କୃଚ୍ଛ୍ରସାଧନାରେ ଉଜ୍ଜ୍ୱଳ ଓ ଭାସ୍ୱର ।

ହରିପଦ 'ମୁଁ ସୁଭାଷ କହୁଛି' ନାମକ ପ୍ରଖ୍ୟାତ ବଙ୍ଗଳା ଗ୍ରନ୍ଥର ମୁଖବନ୍ଧରେ ଲେଖିଛନ୍ତି– ''ଆଜି ଦେଶଗଠନ କାର୍ଯ୍ୟରେ ନିଃସ୍ୱାର୍ଥପରତାର ଅଭାବ ବିଶେଷ ଭାବରେ ଅନୁଭୂତ ହେଉଅଛି । ବର୍ତ୍ତମାନର ଯୁବକମାନଙ୍କ ହୃଦୟରେ ଦେଶାତ୍ମବୋଧ ଓ ଆତ୍ମତ୍ୟାଗର ଭାବନା ସୃଷ୍ଟି କରିବାକୁ ହେଲେ, ଭାରତ ଇତିହାସର ସେହି ସଶସ୍ତ୍ର ବିପ୍ଳବୀମାନଙ୍କର ଜୀବନୀ ଓ ମହନୀୟ ଆଦର୍ଶ ବିଷୟ ବିଶଦ ଭାବେ ଆଲୋଚନା ହେବା ଦରକାର ।''

X X X X X

ମାଷ୍ଟରଦା' ସେତେବେଳେ କାନୁନ୍‌ଗୋପଡ଼ାର ଗୋପନ ଆଶ୍ରୟ ସ୍ଥଳରେ ରହିଥାନ୍ତି । ସାଙ୍ଗରେ ଅଛନ୍ତି ତାଙ୍କର ପ୍ରଧାନ ସହକର୍ମୀ, ଡାହାଣ ହାତ ନିର୍ମଳ ସେନ ଓ ଆଉ କେତେ

ଜଣ ଏକାନ୍ତ ବିଶ୍ୱସ୍ତ ସହକର୍ମୀ । ଚାଲିଛି ପଛକାମର ପର୍ଯ୍ୟାଲୋଚନା, ଆଗକାମର ପ୍ଲାନ୍ ଓ ଏଷ୍ଟିମେଟ୍ । ପହଞ୍ଚିଗଲେ ତାରକେଶ୍ୱର ଓ ବୀରେନ ଦତ୍ତ କାମ ବରାଦ ନେବାକୁ । ତାରକେଶ୍ୱର ତ ତାଙ୍କ ନିଜ ହାତ ତିଆରି ବୋମାର ବିସ୍ଫୋରଣରେ ଯେଉଁ ଆଘାତ ପାଇଥିଲେ, ସେଥିରୁ ସେ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରି ନଥାଆନ୍ତି । ହାତରେ ବ୍ୟାଣ୍ଡେଜ ଗୁଡ଼ାଇ ସେ ଆସିଥାନ୍ତି କାମ ବରାଦ ନେବାକୁ । ଆଉ କେଇଦିନ ଅପେକ୍ଷା କରିବାକୁ ତାଙ୍କର ଧୈର୍ଯ୍ୟ ନାହିଁ ।

ଆଲୋଚନା ଶେଷ ହେଲା । ମାଷ୍ଟରଦା'ଙ୍କଠାରୁ ସିଗ୍ନାଲ ପାଇ ଦୁଇ ବଂଧୁ ବାହାରିଲେ ପଛ ଦରଜାରେ ଗୋପନରେ । ରାସ୍ତାକୁ ଉଠିବା ସଙ୍ଗେ ସଙ୍ଗେ ଆଖି ପଡ଼ିଲା ଗୋଟିଏ ଲୋକ ଉପରେ । 'କିଏ ସେ ?' ବଂଧୁ ଦୁଇଜଣଙ୍କ ମନରେ ସନ୍ଦେହାତ୍ମକ ପ୍ରଶ୍ନ– ''ଗାଉଁଲି ଲୋକ ଭଳି ଦିଶୁଛି ! ନା, ତା ବିଷୟରେ ନିଶ୍ଚିତ ହେବା ଦରକାର । ନିକଟରେ ମାଷ୍ଟରଦା' । ତାଙ୍କୁ ଧରିଦେବାକୁ ପୋଲିସ ଦଶହଜାର ଟଙ୍କା ପୁରସ୍କାର ଘୋଷଣା କରିଛି । ସଙ୍ଗରେ ପୁଣି ନିର୍ମଳଦା' । ସୁତରାଂ ଲୋକଟା କିଏ ଏବଂ କାହିଁକି ଅବେଳରେ ଏଠାରେ ଏମିତି ବୁଲୁଛି, ସେକଥା ଭଲକରି ବୁଝିନେବା ଦରକାର'' । ତାରକେଶ୍ୱର କହିଲେ ।

ଆଗେଇଗଲେ କିଛି ବାଟ; ପୁଣି ପଛକୁ ଫେରି ଅନେଇଲେ । ''ଲୋକଟା ତ କଣ ସେଠାରେ ଠିଆହୋଇଗଲା । ଏମିତି ଥା-ଥା ମା-ମା ହେଉଛି କଣ ?'' ବୀରେନ୍ କହିଲେ । ସନ୍ଦେହ ବଢ଼ିଗଲା, ଲୋକଟି ଆଗେଇଛି ସେହିମାନଙ୍କ ଆଡ଼କୁ । ''ବୀରେନ୍ ଚିହ୍ନିଛୁ ଏ ସଇତାନକୁ ?''

''ହଁ, ଏ ତ ଶଶାଙ୍କ ଦାରେଗା ବୋଧହୁଏ ।''

'ବୋଧହୁଏ କଣ, ନିଶ୍ଚୟ – ସେଣ୍ଟ ପରସେଣ୍ଟ ଶଶାଙ୍କ ଦାରୋଗା ! ସଇତାନ ଏଠି ଏମିତି ବୁଲୁଛି କାହିଁକି ? କଣ ତାର ଉଦ୍ଦେଶ୍ୟ ?' ତାରକେଶ୍ୱର ମନକୁ ମନ ପଚାରିଲେ । ଶଶାଙ୍କ ଦାରୋଗା ! ଶଶାଙ୍କ ଭଟ୍ଟାଚାର୍ଯ୍ୟ । ସାଦା ପୋଷାକରେ ବୁଲୁଛି ! କେଉଁଠୁ କିଛି ଖବର ପାଇଛି ବୋଧହୁଏ ।

''ଯାହା ହେଲେ ବି ଆଜି ୟାର ହିସାବ-ନିକାଶ କରିବାକୁ ହେବ । ଏମିତି ଛାଡ଼ି ଚାଲିଯିବା ଠିକ୍ ହେବନି ।'' 'ଦି' ଛକି ଉହାଡ଼ରେ ଦୁଇବଂଧୁ କଣ କଥାବାର୍ତ୍ତା ହୋଇ 'ଦି' ଆଡ଼କୁ ଚାଲିଗଲେ । ଦୁଇଜଣଙ୍କ ହାତରେ ଦି'ଟା ରିଭଲଭର । ''ସେ ଏ ବାଟେ ଯିବ, ନହେଲେ ସେ ବାଟେ ଯିବ । ଯା'... ଯେଉଁବାଟେ ଯାଉଛୁ । ତେବେ ଆଜି ତୋର ନିସ୍ତାର ନାହିଁ ଶଶାଙ୍କ !'' ତାରକେଶ୍ୱର ପାଟିରୁ ଅସ୍ପଷ୍ଟ ସ୍ୱରରେ ବାହାରିପଡ଼ିଲା ।

ଛକମୁଣ୍ଡରେ ଶଶାଙ୍କ ଦାରୋଗା ଠିଆହୋଇ ଭାବୁଛି, କୁଆଡ଼େ ଗଲେ ସେ ଦି'ଜଣ ? ଏଇ ବାଟେ ତ ଆସିଲେ; ତେବେ ଗଲେ କୁଆଡ଼େ ?''

ବୀରେନ୍ ଡାହାଣ ପାଖ ରାସ୍ତାର ବରଗଛ ଉହାଡ଼ରେ; ତାରକେଶ୍ୱର ବାଁ ପାଖ ରାସ୍ତାର ନଡ଼ାଗଦା ପଛରେ । ଭରା ରିଭଲଭର୍ ହାତରେ ଧରି ଉଭୟ ଅପେକ୍ଷମାଣ, ନିଜ ନିଜ ନିଶ୍ୱାସ-ଶବ୍ଦ ଛଡ଼ା ଅନ୍ୟ କିଛି ଶୁଭୁନାହିଁ ।

ନିଶ୍ଚୟ ଏ ରାସ୍ତାରେ ଗଲେ; ତେବେ କିଏ ଏ ଦୁଇଜଣ ? ସେମାନଙ୍କୁ ଫଲୋ କରିବାକୁ ହେବ । ଶଶାଙ୍କ ଦାରୋଗା କେବେ ଭୁଲ ଖବର ପାଏନା; କୁହୁଡ଼ିରେ ପହଁରେନା; ଶଶାଙ୍କ ମନେ ମନେ ଭାବୁଛି – ଓଃ, ଯଦି ସେ ଖବରଟା ସତ ହୋଇଥାଏ ତେବେ ତ ଆଉ... । ଆଉ ଭାବିପାରିଲାନି ଶଶାଙ୍କ । ପୁରସ୍କାର, ପ୍ରମୋସନ, କେତେ କଣ ଭାବିଯାଉଛି ସେ । କପାଳରେ ଝାଳ ଜକେଇଉଠିଲା ।

ବାଁ ପଟ ରାସ୍ତାରେ ଟିକିଏ ଜୋର ଜୋର କରି ପାଦ ପକାଇ ଆଗେଇଚାଲିଛି ଶଶାଙ୍କ ।

''ଏଇ ତ ଆସିଗଲା, ହଁ ଶଶାଙ୍କ ଦାରୋଗା । ନିଶ୍ଚୟ ଶଶାଙ୍କ, ଆ ଚାଲି ଆ, ଆଉ ଟିକିଏ ଆଗକୁ, ବାସ୍ ବାସ୍ ।''

ତାରକେଶ୍ୱରର ନିର୍ଦ୍ଦୟ ରିଭଲଭର ଗର୍ଜିଉଠିଲା ଏବଂ ଛୋଟିଆ ଚିତ୍କାରଟିଏ କରି ପଡ଼ିଗଲା ମାଟିକାମୁଡ଼ି କୁଖ୍ୟାତ ସି. ଆଇ. ଡି. ଦାରୋଗା ଶଶାଙ୍କ ଭଟ୍ଟାଚାର୍ଯ୍ୟ । ଅର୍ଦ୍ଧ ପୃଥିବୀର ସମ୍ରାଟ୍ ଇଂରେଜର ବିରାଟ ଛତ୍ରତଳେ ଆଶ୍ରୟ ନେଇ ସେ ରକ୍ଷା ପାଇ-ପାରିଲାନାହିଁ । କୁଳାଙ୍ଗାର, ବିଦ୍ରୋହୀମାନଙ୍କ ଉପରେ ପୋଲିସ ହାଜତରେ ନିର୍ମମ ଅତ୍ୟାଚାର କରିବାର ଏକ୍ସପର୍ଟ ଅଫିସରର ଅନ୍ତିମ ପରିଣତି ଆହା, କି ଦମନୀୟ ହେଲା । ସକାଳୁ ଲୋକେ ଦେଖିଲେ, ପୋଲିସ ଦେଖିଲା ତା'ର ମୃତ ଦେହଟା ହାମୁଡ଼େଇ ପଡ଼ିଛି; ଲାଗିଛି ପିମ୍ପୁଡ଼ି ଓ ମାଛିଙ୍କର ଆତତାୟୀର ପତ୍ତା ମିଳିଲା ନାହିଁ; ଗନ୍ଧ-ବାସନା ନାହିଁ । ପୋଲିସ ଅଫିସର ମିଷ୍ଟର ସ୍ମିଥ୍‌ଙ୍କ ପାଟିରୁ ବାହାରିପଡ଼ିଲା "Surprising."–

ସାବାସ୍ ତାରକେଶ୍ୱର, ସାବାସ୍ ବୀରେନ୍, କୋଟି କୋଟି ନମସ୍କାର ତୁମକୁ । ନେତା ପାଇଁ କର୍ମୀର ଆତ୍ମତ୍ୟାଗ !!

୧୯୩୨ ଜୁନ ୧୩ ତାରିଖ । ମୁକ୍ତିସଂଗ୍ରାମ ଇତିହାସରେ ବିଖ୍ୟାତ ଧଲଘାଟ- ସଂଘର୍ଷ । ବିଖ୍ୟାତ ଏଇଥିପାଇଁ ଯେ, ଏହି ଯୁଦ୍ଧରେ ସହିଦତ୍ୱ ବରଣ କରିଥିଲେ ଚଟ୍ଟଗ୍ରାମ ଯୁବ-ବିଦ୍ରୋହର ଅନ୍ୟତମ ରଥୀ ଓ ମାଷ୍ଟରଦା'ଙ୍କ ରାଇଟ ହ୍ୟାଣ୍ଡ ନିର୍ମଳ ସେନ ଏବଂ ସ୍ମରଣୀୟ ଏଇଥିପାଇଁ ଯେ ନିଜେ ମାଷ୍ଟରଦା' ପାହାଡ଼ଯୁଦ୍ଧ ପରେ ପ୍ରଥମ ଥର ପାଇଁ ପୋଲିସ ସହ ମୁହାଁମୁହିଁ ସଂଘର୍ଷ ପରେ ମଧ୍ୟ ନିରାପଦ ରହିପାରିଥିଲେ ।

ସେତେବେଳେ ଧଲଘାଟରେ ସାବିତ୍ରୀ ଦେବୀଙ୍କ ଘରେ ଗୋପନ ଆଶ୍ରୟ କେନ୍ଦ୍ର ହୋଇଛି ମାଷ୍ଟରଦା'ଙ୍କ ଗ୍ରୁପ୍‌ର । ଗ୍ରୁପ୍‌ରେ ଅଛନ୍ତି ନିର୍ମଳ ସେନ, ପ୍ରୀତିଲତା ଓ ଅପୂର୍ବ ସେନ (ଭୋଳାଦା') । ପୋଲିସକୁ ପ୍ରତାରିତ କରିବା ପାଇଁ ବାରମ୍ବାର ଆଶ୍ରୟସ୍ଥଳ ବଦଳାଇବାକୁ ପଡୁଛି । ଚୁପ୍‌ଚାପ୍ ଲୁଚିରହିଲେ କିଛି କଥା ନ ଥିଲା; ସେମିତି ହୋଇଥିଲେ ବର୍ଷବର୍ଷ ଧରି ପୋଲିସ ଦୃଷ୍ଟିର ଆଢୁଆଳରେ ରହିବା ସେମାନଙ୍କ ପକ୍ଷରେ ଆଦୌ ଅସମ୍ଭବ ହୋଇ ନଥାନ୍ତା ।

ସେଦିନ ଯେତେବେଳେ ବିରାଟ ଏକ ଗୁର୍ଖାବାହିନୀ ସାବିତ୍ରୀ ଦେବୀଙ୍କ ବାସଭବନ ଘେରାଉ କଲେ, ସେଥିରେ ବିପ୍ଳବୀମାନେ ଡରିଯିବାର କୌଣସି କାରଣ ନ ଥିଲା । ବରଂ ପୋଲିସବାହିନୀ ଆସିବା ଖବର ମିଳିବା ସଙ୍ଗେ ସଙ୍ଗେ ଯେ ଯାହାର ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ

ହୋଇଗଲେ । ସେ ଦିନ ପୋଲିସବାହିନୀର ନେତୃତ୍ୱ ନେଉଥିଲେ କ୍ୟାପଟେନ୍ କ୍ୟାମେରନ, ବ୍ରିଟିଶ ସାମରିକ ଏକାଡେମିରେ ଟ୍ରେନିଂପ୍ରାପ୍ତ ନାମଜାଦା ମିଲିଟାରୀ ଅଫିସର । ସାଙ୍ଗେ ସାଙ୍ଗେ ଆରମ୍ଭ ହୋଇଗଲା ସରକାରୀ ଫୌଜ ଓ ବିପ୍ଳବୀ ଫୌଜଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ । ଏକ ଦିଗରେ ନେତୃତ୍ୱ ନେଉଛି ବ୍ରିଟିଶ ସେନାପତି କ୍ୟାମେରନ୍ ଓ ଅନ୍ୟ ପଟେ ବିପ୍ଳବୀ ସେନାପତି ନିର୍ମଳ ସେନ ଏବଂ ସାରଥି ଅଛନ୍ତି ସର୍ବାଧିନାୟକ ମାଷ୍ଟରଦା' । ମାଷ୍ଟରଦା'ଙ୍କ ନିରାପତ୍ତା ପାଇଁ ନିର୍ମଳ ସେନଙ୍କ ମନରେ ଗୋଟିଏ ମାତ୍ର ପ୍ରଶ୍ନ, ''ଯେ କୌଣସି ମତେ ମାଷ୍ଟରଦା'ଙ୍କୁ ବଞ୍ଚାଇବାକୁ ହେବ; କାରଣ ଏତେ ଶୀଘ୍ର ଏବଂ ଏତେ ଅନାୟାସରେ ମାଷ୍ଟରଦା' ଧରାପଡ଼ିଲେ କେତେ ଯେ ପ୍ଲାନ୍‌ପ୍ରୋଗ୍ରାମ ପଣ୍ଡ ହୋଇଯିବ ।'' ସୁତରାଂ ନିଜର ପ୍ରାଣ ବିନିମୟରେ ମଧ୍ୟ ସେ ମାଷ୍ଟରଦା'ଙ୍କୁ ରକ୍ଷାକରିବାକୁ ବଦ୍ଧପରିକର । ତାଙ୍କର ସେତେବେଳେ ଯୁଦ୍ଧର କୌଶଳ ହେଲା କୌଣସିମତେ ଶତ୍ରୁପକ୍ଷକୁ ଅଟକାଇ ରଖିବା; ଯେପରି କି ସେହି ଅବସରରେ ମାଷ୍ଟରଦା' ଅନ୍ୟତ୍ର ପଳାଇ ଯାଇ ପାରିବେ ।

ଯୁଦ୍ଧର ପ୍ରଥମ ଶିକାର ହେଲେ କ୍ୟାପଟେନ କ୍ୟାମେରନ୍ । ଦଳର ସେନାପତି ନିହତ ହେଲେ ଦଳ ଭିତରେ ଯେମିତି ଗୋଟେ ହତାଶାଭାବ ସୃଷ୍ଟି ହୁଏ, ସେହିଭଳି ଏକ ପରିସ୍ଥିତି ସୃଷ୍ଟି ହୋଇଗଲା ଶତ୍ରୁ ଶିବିରରେ ଏବଂ ସେହି ହଟ୍ଟଗୋଳ ଭିତରେ ମାଷ୍ଟରଦା' ପ୍ରୀତିଲତାଙ୍କ ସହ ସେଠାରୁପଳାଇଯିବାକୁ ସମର୍ଥ ହେଲେ । କିନ୍ତୁ ଶତ୍ରୁପକ୍ଷର ଏକ ଗୁଳିରେ ସହିଦତ୍ୱ ବରଣ କଲେ ବୀର ନିର୍ମଳ ସେନ । ତାଙ୍କର ଦେହତ୍ୟାଗରେ ସେଦିନ ଭାରତ ତାର ମୁକ୍ତିସଂଗ୍ରାମର ଅନ୍ୟତମ ଶ୍ରେଷ୍ଠ ସେନାପତିଙ୍କୁ ହରାଇଲା । ତାଙ୍କର ଜୀବନଦୀପ ସେ ଦିନ ନ ଲିଭି ଆଉ କିଛିଦିନ ଆଲୋକ ପ୍ରଦାନ କରିଥିଲେ ଚଟ୍ଟଗ୍ରାମର ଖଣ୍ଡବିପ୍ଳବର ପରବର୍ତ୍ତୀ ଅଧ୍ୟାୟ ଆଉ ଟିକିଏ ରୋମାଞ୍ଚକର ଓ ବୀରତ୍ୱବ୍ୟଞ୍ଜକ ହୋଇଥାଆନ୍ତା ବୋଲି କେତେକ ଇତିହାସକାର ମତ ଦିଅନ୍ତି । ଐତିହାସିକମାନଙ୍କର ଏହି ମୂଲ୍ୟାୟନ ହୁଏତ ଠିକ୍ ହୋଇପାରେ; ନିୟତି କିନ୍ତୁ ସେ ବିଚାର କରେ ନାହିଁ । ମହାକାଳର ଚକ୍ର ନିରପେକ୍ଷ ଭାବରେ ଘୂରିଚାଲିଛି ବୋଲି ଆପ୍ତବାଣୀ ରହିଅଛି ।

ସେ ଯାହାହେଉ, ନିର୍ମଳଦା'ଙ୍କର ଆକସ୍ମିକ ବିଚ୍ଛେଦ ମାଷ୍ଟରଦା'ଙ୍କ ମନରେ ଆଣିଦେଇଛି ଗୁରୁତର ଧକ୍‌କା । ନିର୍ମଳ ସେନଙ୍କର ବଳିଷ୍ଠ ଶରୀର, ତୀକ୍ଷ୍ଣ ବୁଦ୍ଧିମତ୍ତା ଏବଂ ପ୍ରତ୍ୟୁତ୍ପନ୍ନମତିତା ତାଙ୍କୁ ବିପ୍ଳବୀ ଶିବିରରେ ଏକ ଅପରିହାର୍ଯ୍ୟ ବ୍ୟକ୍ତିରୂପେ ପ୍ରତିଷ୍ଠିତ କରିପାରିଥିଲା । ସୁତରାଂ ତାଙ୍କ ବିୟୋଗରେ ମାଷ୍ଟରଦା' ଏକାନ୍ତ ନିଃସଙ୍ଗତା ଅନୁଭବ କରିବା ସ୍ୱାଭାବିକ । ନିର୍ମଳଙ୍କର ବିଚାର କିନ୍ତୁ ଥିଲା ଠିକ୍ ଓଲଟା । ସେ ଠିକ୍ ଜାଣିଥିଲେ ଯେ, ଦେଶର ସ୍ୱାଧୀନତା ଅର୍ଜନ କାର୍ଯ୍ୟରେ ମାଷ୍ଟରଦା'ଙ୍କର ଆହୁରି ବହୁତ କିଛି କରିବାର ଅଛି । ଦୁର୍ଦ୍ଧର୍ଷ ବ୍ରିଟିଶ ଶକ୍ତିକୁ ଏମିତି ଚାଲେଞ୍ଜ ଦେବା ଲୋକ ଏବଂ ବିଭିନ୍ନ ଦୁଃସାହସିକ ଅଭିଯାନ ଚଳାଇ ସରକାରକୁ ଏମିତି ବ୍ୟସ୍ତ ରଖିବା ଲୋକ ବିଶେଷତଃ ବନ୍ଦୀ ବିପ୍ଳବୀମାନଙ୍କୁ ନିରାପଦରେ ମୁକ୍ତ କରିବାକୁ ଯୋଗାଡ଼ କରିବା ଲୋକ ନିର୍ମଳଦା'ଙ୍କ ଦୃଷ୍ଟିରେ ମାଷ୍ଟରଦା' ଛଡ଼ା ଆଉ କେହି ନ ଥିଲେ । ସୁତରାଂ ଚରମ ମୂଲ୍ୟର ବିନିମୟରେ ସେ ମାଷ୍ଟରଦା'ଙ୍କୁ

ଆଉ କିଛିଦିନ ରଖିବାକୁ ଉଦ୍ୟମ କଲେ ଏବଂ ସେଥିରେ ସେ ସଫଳ ମଧ ହେଲେ । ପୋଲିସର ବାରମ୍ବାର ବୁଲେଟ୍ ଆଘାତରେ ସେ ଶେଷରେ ଟଳିପଡ଼ିଲେ ସତ୍ୟ, କିନ୍ତୁ ସେତେବେଳକୁ ମାଷ୍ଟରଦା' ଏମିତି ଏକ ନିରାପଦ ସ୍ଥାନରେ ପହଞ୍ଚିସାରିଥିଲେ ଯେ, ତାଙ୍କର ସଂଧାନ ପାଇବା ପୋଲିସ ପକ୍ଷରେ ଅସମ୍ଭବ ଥିଲା ।

ନେତାପାଇଁ କର୍ମୀର ଏ ଚରମ ଆତ୍ମତ୍ୟାଗ ମୁକ୍ତିସଂଗ୍ରାମରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ । ବିଶେଷତଃ ଯେଉଁ କର୍ମୀଙ୍କୁ ନିଜ ଅପେକ୍ଷା ନେତା ଅଧିକ ଅପରିହାର୍ଯ୍ୟ ମନେକରେ, ସେ କର୍ମୀ ନେତାଙ୍କୁ ବଞ୍ଚାଇବା ପାଇଁ ନିଜେ ଆତ୍ମତ୍ୟାଗ କରିବା ଘଟଣା ଖୁବ୍ ବେଶି ଦେଖାଯାଏ ନାହିଁ । ଯୁଦ୍ଧରେ କିଏ ଆଗେ ମରିବ ବା କିଏ ପଛେ ମରିବ, ତାହା ସାଧାରଣତଃ ଯେହେତୁ ମରିବା ଲୋକର ଇଚ୍ଛା ଅପେକ୍ଷା 'ଚାନ୍ସ' ବା ସୁଯୋଗ ଉପରେ ଅଧିକ ନିର୍ଭର କରେ, ସେ ସଂପର୍କରେ ଅଧିକ ଆଲୋଚନା ନିଷ୍ପ୍ରୟୋଜନ । କିନ୍ତୁ ଏ କ୍ଷେତ୍ରରେ ନିର୍ମଳ ସେନ ଯେ ବହୁତ ଭାବିଚନ୍ତି ଏବଂ ଦୂରଦୃଷ୍ଟି ସହିତ ନିଜେ ମୃତ୍ୟୁବରଣ କଲେ, ତାହାହିଁ ଏକ ଉଲ୍ଲେଖଯୋଗ୍ୟ ଓ ସ୍ମରଣୀୟ ଘଟଣା । ଆମେ ସ୍ୱୀକାର କରୁ ବା ନକରୁ, ଏହା ନିଶ୍ଚିତରୂପେ ସତ୍ୟ ଯେ, ନିର୍ମଳ ସେନଙ୍କ ଭଳି ମୃତ୍ୟୁଞ୍ଜୟୀ ମୁକ୍ତି-ସୈନିକମାନଙ୍କର ସ୍ୱେଚ୍ଛାକୃତ ମରଣ ବିନିମୟରେ ଆମକୁ ସ୍ୱାଧୀନତା ମିଳିଛି ।

ଏହି ଧଲଘାଟ-ସଂଘର୍ଷ ସଂପର୍କରେ ବିପ୍ଳବୀଶିବିରର ଅନ୍ୟତମ ସୈନିକା ପ୍ରୀତିଲତାଙ୍କ ଡାଏରୀରୁ କିଛି ଅଂଶ ଏଠାରେ ଉଦ୍ଧାରକରାଗଲେ ବୋଧହୁଏ ଅବାନ୍ତର ହେବନାହିଁ । ପ୍ରୀତିଲତା ଲେଖିଛନ୍ତି- ''ସେ ଦିନ ସକାଳେ ନିର୍ମଳଦା' ଯେତେ କଥା କହିଯାଉଥାନ୍ତି, ସେଥିରୁ ମତେ କେମିତି ଲାଗୁଥାଏ ଯେ ଏଗୁଡ଼ାକ ତାଙ୍କର ଶେଷକଥା । ସେ କହୁଥିଲେ – ମାଷ୍ଟରଦା'ଙ୍କର ଆଉ ଗୋଟିଏ ପ୍ଲାନ ଅଛି; ତାହା ହେଉଛି- "Female Action Squad. (ନାରୀ ଯୋଦ୍ଧା ବାହିନୀ)" ଝିଅମାନଙ୍କର ଗୋଟାଏ ଗ୍ରୁପ୍ ଗଢ଼ି ସେମାନଙ୍କୁ ଆକ୍ସନକୁ ପଠାଇବା । ମୁଁ କହିଲି– ଦାଦା ! ମୋର ମରିବାକୁ ଭାରି ମନହେଉଛି – ମୋତେ ଅନୁମତି ଦିଅନ୍ତୁ ।

ସେ ଦିନ ସକାଳେ ଭୋଳାକୁ ଭୀଷଣଜର । ତା ପାଇଁ ସାଗୁ ତିଆରିକରୁଥିଲି । ସେ କିନ୍ତୁ ତାର ସେହି ସବୁଦିନିଆ ପ୍ରିୟ ଗୀତଟି ଭୁଲୁନଥାଏ 'ପରାନ ଆମର ନାଚେରେ ଆଜ କେ ମୟୂରେର ମତ ନାଚେରେ ।' ମୋ ହାତରୁ ସେ ଦିନ ତାର ଶେଷଖିଆ । 'ମାଷ୍ଟରଦା' ହଠାତ୍ ଦୌଡ଼ିଆସିଲେ ତଳ ମହଲାରୁ, କହିଲେ– ପୋଲିସ ଆସିଛି ।

ଭାବିଲି ବୋଧହୁଏ ସବୁ ଶେଷହୋଇଯିବ ଏହି ମୁହୂର୍ତ୍ତରେ । ପଚାରିଲି– ମୁଁ ଏଇଠି ରହିବି ।

ଶାସକସ୍ୱରରେ ମାଷ୍ଟରଦା' କହିଲେ– ''ତଳକୁ ଚାଲିଯାଅ, ସେଇଠି ସ୍ତ୍ରୀଲୋକମାନଙ୍କ ଭିତରେ ସେମାନଙ୍କ ଆତ୍ମୀୟା ବୋଲି ପରିଚୟ ଦିଅ ।''

ତଳକୁ ଓହ୍ଲେଇଗଲି, ଉପରେ ରହିଲେ ଭୋଳା, ନିର୍ମଳଦା' ଓ ମାଷ୍ଟରଦା' ।

ସେତେବେଳେ କ୍ୟାମେରନ୍ ରିଭଲଭର ଚଳାଇ ଚଳାଇ ଉପରକୁ ଉଠିଯାଉଥାଏ ।

ଉପରୁ ନିର୍ମଳଦା' ଗୁଳିଚଳାଉଥାନ୍ତି । ପ୍ରଥମେ କ୍ୟାମେରନ୍ ଗୁଳିବିଦ୍ଧ ହୋଇ ପଡ଼ିଗଲା । ଦୁଇଦିଗରୁ ଗୁଳି ଚାଲିଛି– ମାଷ୍ଟରଦା' ଉପରୁ ଓ ପୋଲିସ ତଳୁ ।

ହଠାତ୍ ନିର୍ମଳଦା'ଙ୍କର ଚିତ୍କାର ଶୁଣାଗଲା– ମୁଁ ଅସ୍ଥିର ହୋଇପଡ଼ିଲି ସେ ଚିତ୍କାର ଶୁଣି ।

ଠିକ୍ ଏହି ସମୟରେ ମାଷ୍ଟରଦା' ଓ ଭୋଲା ଓହ୍ଲାଇଆସୁଥିବା ଦେଖି ମନ ଖୁସିହୋଇଗଲା; କାରଣ ମୁଁ ଭାବିଥିଲି ସମସ୍ତେ ଚାଲିଗଲେ ।

ମାଷ୍ଟରଦା'ଙ୍କ ପାଦତଳେ ପଡ଼ି ମିନତି କଲି– ମୁଁ ଆପଣଙ୍କ ସାଙ୍ଗରେ ଯିବି ।

ଭୋଲା ଆଡ଼କୁ ଅନାଇଲି, ମୁହଁରେ ତାର ଚିର ହାସ୍ୟରେଖା । ଏଭଳି ଦୁଃସମୟରେ ମଧ୍ୟ ସେ ମୁହଁରେ ଟିକିଏ ହେଲେ ଚାଞ୍ଚଲ୍ୟ ଥିବାର ଲକ୍ଷ୍ୟ କଲିନାହିଁ । ଭୋଲା ବାସ୍ତବରେ ଅପୂର୍ବ !

ତିନିଜଣଯାକ ଆଗେଇଚାଲିଲୁ । ଆଗରେ ଭୋଲା ବାଟ କଢ଼ାଇ ଚାଲିଛି । ତା ପଛରେ ମାଷ୍ଟରଦା' ଓ ମୁଁ । ଶୁଖିଲା ପତ୍ର ଉପରେ ଆମର ପଦଶବ୍ଦ ଠଉରେଇ କେଉଁ ଅଜ୍ଞାତ ସ୍ଥାନରୁ କିଏ ଗୋଟାଏ ଗୁଳି ଚଳାଇଲା ଏବଂ ସେ ଗୁଳି ବାଜିଲା ଭୋଲା ଉପରେ । ସେ ସେଇଠି ଟଳିପଡ଼ିଲା ।

ବର୍ଷା ପିଟିଲା ଅବିରାମ ଗତିରେ ଏବଂ ସେହି ବର୍ଷଣମୁଖର ରଜନୀର ଘନ ଅନ୍ଧକାର ଭିତରେ ଆମେ ଆଶ୍ରୟନେଲୁ ଜ୍ୟୈଷ୍ଠପୁରାରେ ।''



## ଅଧ୍ୟାୟ - ସତେଇଶ

# ରକ୍ତସ୍ନାତା ପ୍ରୀତିଲତା *

ଧଲଘାଟ ଯୁଦ୍ଧର ମାତ୍ର ତିନିମାସ ପରେ, ୧୯୩୨ ସେପ୍ଟେମ୍ବର ୨୩ ତାରିଖ ଅଗ୍ନିଯୁଗର ଇତିହାସରେ ଆଉ ଏକ ଆଗ୍ନେୟ ଅଧ୍ୟାୟ । ମାଷ୍ଟରଦା'ଙ୍କ ସର୍ବଶେଷ ଏବଂ ଏକ ଗୁରୁତ୍ବପୂର୍ଣ୍ଣ ଆକ୍ସନ ପ୍ରୋଗ୍ରାମ– ''ୟୁରୋପୀୟାନ କ୍ଲବ ଉପରେ ଚଢ଼ାଉ ।'' ପାହାଡ଼ତଳି ୟୁରୋପୀୟାନ କ୍ଲବ୍ ସେ ଯୁଗର ସବୁ ବଦମାସି ଓ ବଜ୍ଜାତିର କାରଖାନା । ବାହାରକୁ ସିନା କ୍ଲବ୍ ଭଳି ଦିଶେ, ଭିତରଟା କିନ୍ତୁ ବଡ଼ ଭୟାବହ । ବିପ୍ଳବୀମାନଙ୍କ ବିରୁଦ୍ଧରେ ସବୁ ପ୍ରକାର ନୀଚ ଓ ହୀନ ଷଡ଼ଯନ୍ତ୍ର ଏବଂ ସ୍ୱାଧୀନତା ସଂଗ୍ରାମ ବିରୁଦ୍ଧରେ ତତ୍କାଳୀନ ଇଂରେଜ ସରକାରୀ କଳକୁ ପ୍ରଭାବିତ ଓ ପ୍ରୟୋଗ କରିବା ପାଇଁ ସବୁ ପ୍ରକାର ଗୁପ୍ତ ମନ୍ତ୍ରଣାଗାରର କାର୍ଯ୍ୟ କରେ ଏହି କ୍ଲବ୍‌ଟା । କଳାଲୋକଙ୍କର ପ୍ରବେଶ ଅଧିକାର ନଥିଲା ଏହି କ୍ଲବ୍‌ରେ; କେବଳ ଖାନସମା, ବବୁର୍ଚି ଓ ବେହେରା ରୂପରେ ସାଇବମାନଙ୍କୁ କୁର୍ଣ୍ଣିସ କରିବାକୁ ଟୋପି ଅଚକନା ପିନ୍ଧି କ୍ଲବ୍‌ର ଶୋଭା ବର୍ଦ୍ଧନ କରନ୍ତି କେତେଜଣ ଭାରତୀୟ । ମଦ୍ୟପାନ, ଉନ୍ମତ୍ତ ନୃତ୍ୟଗୀତ ଏବଂ ଥାର୍ଡ଼କ୍ଲାସ ରାଜନୀତି ଚର୍ଚ୍ଚାରେ ମସ୍ତ ଥାନ୍ତି ୟୁରୋପୀୟାନ ଅଫିସରମାନେ । ସୁତରାଂ ଏହି କ୍ଲବ୍ ଉପରେ ଏକ ତୋଫାନୀ ଆକ୍ରମଣ କରିବାକୁ ମୁକ୍ତିସଂଗ୍ରାମୀ ବହୁଦିନରୁ ସ୍ଥିରକରିସାରିଥିଲେ; କିନ୍ତୁ ଆଜିଯାଏ ସୁବିଧା ହୋଇପାରିନଥିଲା ସେହି ତୋଫାନୀ ଆକ୍ରମଣର ।

ଆଜି ଆସିଛି ସେ ସୁଯୋଗ ଏବଂ ଏହି ଐତିହାସିକ ଅଭିଯାନର ନେତୃତ୍ୱ ନେଉଛନ୍ତି ପ୍ରୀତିଲତା । ଫିମେଲ ଆକ୍ସନ ସ୍କ୍ୱାଡ୍‌ର ସର୍ବାଧିନାୟିକା ପ୍ରୀତିଲତା ଓ୍ୱାଦ୍ଦେଦାର । ଆକ୍ସନକୁ ଯିବା ପୂର୍ବରୁ ପ୍ରୀତିଲତା ମାଷ୍ଟରଦା'ଙ୍କଠାରୁ ଶେଷ ଆଶୀର୍ବାଦ ନେଲେ । ଆଶୀର୍ବାଦ ନେବାର କିଛି ନ ଥିଲା କହିଲେ ଚଳେ– କାରଣ ମାଷ୍ଟରଦା' ତାଙ୍କୁ ବହୁ ଦିନରୁ ଏ କାର୍ଯ୍ୟ ପାଇଁ ଫିଟେଷ୍ଟ ବୋଲି ଘୋଷଣା କରିସାରିଥିଲେ । ବି.ଏ.ରେ ଡିଷ୍ଟିଙ୍କସନ ରଖି ପାଶକରିବାର ବହୁପୂର୍ବରୁ ପ୍ରୀତିଲତା ନିଜକୁ ଏମିତି ଏକ ଦୁଃସାହସିକ କାମ ପାଇଁ ତିଆରିକରୁଥିଲେ । ବିପ୍ଳବୀ ରାମକୃଷ୍ଣଙ୍କର ଫାଶୀ ଏବଂ ନିର୍ମଳ ସେନଙ୍କର ନିର୍ଭୀକ ଯୁଦ୍ଧ ଓ ଆମ୍ବଦାନ ପ୍ରୀତିଲତାଙ୍କୁ ଆହୁରି ଦୁଃସାହସିନୀ କରିଦେଇଥିଲା ।

ମାଷ୍ଟରଦା' କହିଲେ, ''ଆସ ଭଉଣୀ– ଯଶସ୍ୱିନୀ ହୋଇ ଫେରିଆସ ପ୍ରୀତିଲତା ! ତୁମର ସାହସ ଓ ନିର୍ଭୀକତା ବନ୍ଦିନୀ ଭାରତମାତାର ମୁକ୍ତିକୁ ତ୍ୱରାନ୍ୱିତ କରୁ ।''

---

* ଭାରତର ନାରୀବିପ୍ଳବୀ 'ରକ୍ତସ୍ନାତା' ପୁସ୍ତକ ଦ୍ରଷ୍ଟବ୍ୟ ।

ରାତି ୧୦ଟା । ସାମରିକ ପୋଷାକରେ ସଜ୍ଜିତା ପ୍ରୀତିଲତା ଏକ ଚାଦର ଘୋଡ଼େଇ ହୋଇ ଚାଲିଛନ୍ତି; ସାଙ୍ଗରେ ଅଛନ୍ତି ଆହୁରି କେତେଜଣ ମରଣବିଜୟୀ ଯୁବକ—ମହେନ୍ଦ୍ର ଚୌଧୁରୀ, ସୁଶୀଲ ଦେ, ଶାନ୍ତି ଚକ୍ରବର୍ତ୍ତୀ, କାଳୀ ଦେ ଓ ପ୍ରଫୁଲ୍ଲ ଦାସ ।

ପ୍ରଥମେ ମହେନ୍ଦ୍ର ଓ ସୁଶୀଲ ପ୍ରବେଶକଲେ ମୁସଲମାନ କୋଚ୍‌ମ୍ୟାନ ବେଶରେ ସଦର ଦରଜାକଟେ । ପହରାବାଲାଠାରୁ କିଛି ବାଧା ପାଇଲେ ନାହିଁ । ସେ ଭାବିଲା, 'ସାହେବଙ୍କ ଗାଡ଼ିବାଲା ନାଚ-ଗୀତ ଟିକେ ଦେଖିବାକୁ ଭିତରକୁ ଯାଉଛନ୍ତି । ଯାନ୍ତୁ ଶଳେ ।' କ୍ଲାନ୍ତ ପହରାବାଲାଟି ହାଇମାରିଲା । ପ୍ରୀତିଲତା ଓ ଅନ୍ୟମାନେ କ୍ଲବ୍‌ର ପଛ ପାଖର ଏକ ସଂକୀର୍ଣ୍ଣ ଦ୍ୱାର ଦେଇ ପ୍ରବେଶକଲେ ଭିତରେ । ଶ୍ୱେତାଙ୍ଗ ଅଫିସରମାନେ ସେତେବେଳେ ନୃତ୍ୟଗୀତ ଓ ସୁରାପାନରେ ଉନ୍ମତ୍ତ । ଚାରିଆଡ଼େ କୋଳାହଳ ଓ ହସର ଫୁଆରା । ନର୍ତ୍ତକୀର ଚରଣନିକ୍ୱଣ ଓ ରୂପପାୟୀମାନଙ୍କର ପୈଶାଚିକ ଆନନ୍ଦ, ଅଟ୍ଟହାସ୍ୟ ଓ ଅସଭ୍ୟ ଇଙ୍ଗିତରେ କ୍ଲବ୍‌ଗୃହ କମ୍ପିତ ।

ଉପଯୁକ୍ତ ସମୟ ଦେଖି ପ୍ରୀତିଲତାର ଅର୍ଡ଼ରରେ ଆରମ୍ଭ ହେଲା ଆକ୍‌ସନ । ଏକ-ସଂଗେ ଗର୍ଜିଉଠିଲା ୬ଟା ରିଭଲଭର ଗୁଡୁମ୍, ଗୁଡୁମ୍, ଗୁଡୁମ୍, ଗୁଡୁମ୍, ଗୁଡୁମ୍, ଗୁଡୁମ୍—ଚାରିପାଞ୍ଚଟା ଗୋରା ଅଫିସର ଟଳିପଡ଼ିଲେ ନାଚୁଥିବା ଅବସ୍ଥାରେ । ଖାନସମା ମଦ୍ୟପାତ୍ର ସହ ଯାଉ ଯାଉ ସେ ବି ଭୂପତିତ ହେଲା । ଗୁଳିମାଡ଼ରେ କେତେ ଟେବୁଲ, ଚୌକି, ପେଗ୍, କପ, ପ୍ଲେଟ, ଗ୍ଲାସ, ଝାଡ଼, ଲଣ୍ଠନ ଝଣଝଣ ହୋଇ ଭାଙ୍ଗିଗଲା, ତାର ଇୟତ୍ତା ନାହିଁ ।

ପ୍ରଥମେ କେହି କିଛି ବୁଝିପାରିଲା ଭଳି ମନେ ହେଲା ନାହିଁ । ସମସ୍ତେ ଅତ୍ୟଧିକ ମଦ୍ୟପାନରେ ପ୍ରାୟ ଅଜ୍ଞାନ, କାଣ୍ଡଜ୍ଞାନ-ବିବର୍ଜିତ । ଯେଉଁମାନେ ସଜ୍ଞାନ ଅବସ୍ଥାରେ ଥିଲେ, ସେମାନେ ପ୍ରାଣବିକଳରେ ପଳାଇଗଲେଣି । ସଶସ୍ତ୍ର ପହରାବାଲା ମଧ୍ୟ ଏହି ଅପ୍ରତ୍ୟାଶିତ ଦାରୁଣ ବିପର୍ଯ୍ୟୟ ବିଶେଷତଃ ବିପ୍ଳବୀମାନଙ୍କର ଅବିଶ୍ରାନ୍ତ ଆକ୍ରମଣରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଦୌଡ଼ିଛି ସହର ଆଡ଼କୁ । ତା' ମୁଣ୍ଡରେ ପଶିଛି ଯେ, ନିଜେ ସୂର୍ଯ୍ୟସେନ ଏ ଆକ୍ରମଣ ଚଳାଇଛି, ସୁତରାଂ ତା'ର ମୁକାବିଲା କରିବା ତା'ପକ୍ଷରେ ହ୍ୟାସାସ୍ପଦ । ସେଥିପାଇଁ ଆବଶ୍ୟକ ବିରାଟ ବାହିନୀ ଓ ଦକ୍ଷ ସେନାପତି ।

ଅଭିଯାନରେ ବିପୁଳ ବିଜୟହେଲା ଏବଂ ପ୍ଲାନ ଅନୁସାରେ ସବୁକାମ ଶେଷ ହୋଇଗଲା । ପ୍ରୀତିଲତା ଅର୍ଡ଼ର ଦେଲେ— ''କାମ ଶେଷ । ଫେରିଯାଅ ଏଥର । Quick march,''

ମିଲିଟାରୀର ସାଞ୍ଜୁଆ ଗାଡ଼ି ସବୁ ଆଖିଝଲସା ଲାଇଟ ଜଳାଇ ସହର ଆଡୁ ଛୁଟିଆସୁଥାଏ ।

ସେନାପତିଙ୍କ ଅର୍ଡ଼ର ପାଇ ସୈନିକମାନେ ଫେରନ୍ତା ମାର୍ଚ୍ଚିଂ ଆରମ୍ଭ କରିଦେଲେ । ହଠାତ୍ ମହେନ୍ଦ୍ର ଫେରିପଡ଼ି ଦେଖିଲା ପ୍ରୀତିଲତା ନାହାନ୍ତି । ଦୌଡ଼ିଲା ସେଠୁ କ୍ଲବ୍‌ଆଡ଼େ ।

''ଦିଦି ! ଆପଣ ଏମିତି ଠିଆହୋଇଛନ୍ତି ଯେ । ମିଲିଟାରୀ ଗାଡ଼ି ଛୁଟିଆସୁଛି ତୀରବେଗରେ । ଡେରି କରନ୍ତୁ ନାହିଁ, ପଳାଇ ଆସନ୍ତୁ ଶୀଘ୍ର ।''

ପ୍ରୀତିଲତା କହିଲେ,- ''ନା ଭାଇ ମହେନ୍ଦ୍ର ! ଫେରିବାର ପ୍ଲାନ୍ ନାହିଁ । ନେଇଯାଅ ରିଭଲଭରଟା ମାଷ୍ଟରଦା'ଙ୍କୁ ଦେବ ଏବଂ ତାଙ୍କୁ ଜଣାଇବ ମୋର ଶେଷ ପ୍ରଣାମ, ଆଉ ବିଳମ୍ବ କର ନାହିଁ ମହେନ୍ଦ୍ର !''

ଏଭଳି ଏକ କଠୋର ନିଷ୍ପତ୍ତି ଶୁଣି ମହେନ୍ଦ୍ରଙ୍କର ବିସ୍ମୟ-ବିସ୍ଫାରିତ ନେତ୍ର ଲୋତକାର୍ଦ୍ର ହୋଇଗଲା । ସେ ଅସହାୟ ଭଳି ନେତ୍ରୀ ପ୍ରୀତିଲତାଙ୍କ ଆଡ଼କୁ ଅନାଇ କହିଲେ, ''ଦିଦି !''

''ଏହା ମୋର ଅର୍ଡ଼ର ମହେନ୍ଦ୍ର ! ମନେରଖ, ମୁଁ ତୁମର କମାଣ୍ଡର ।'' ହତାଶ ମହେନ୍ଦ୍ରଙ୍କର ଏହାପରେ ଆଉ କିଛି କହିବାର ନଥିଲା । ସେ ନେତ୍ରୀର ଚରମ ନିର୍ଦ୍ଦେଶକୁ ମୁଣ୍ଡପାତି ଗ୍ରହଣକରି ସେଠାରୁ ଯଥାଶୀଘ୍ର ନିଷ୍କ୍ରାନ୍ତହେଲେ ।

ମହାଦର୍ପରେ ବୀରପୁଙ୍ଗବ ମିଲିଟାରୀ ସଦଳବଳେ କ୍ଲବ୍ ହାଉସରେ ପହଞ୍ଚିବା ବେଳକୁ ମୃତ, ଅର୍ଦ୍ଧମୃତ, କ୍ଷତବିକ୍ଷତ ଓ ତ୍ରସ୍ତ ଶ୍ୱେତାଙ୍ଗ ବନ୍ଧୁଗଣ ଅରକ୍ଷିତ କ୍ଲବ୍ ଚଟାଣରେ ପଡ଼ିରହିଛନ୍ତି ।

'କିନ୍ତୁ କାହିଁ ତେବେ ସୂର୍ଯ୍ୟସେନ ?'– ମିଲିଟାରୀ କିଛି ବୁଝିପାରୁନାହିଁ ।

ସୂର୍ଯ୍ୟସେନ ନାହିଁ; ତା' ବଦଳରେ ପଡ଼ିରହିଛି ସାମରିକ ପୋଷାକପରିହିତା ଏକ ରମଣୀର ମୃତଦେହ । ସମ୍ଭବତଃ ବିଷଜ୍ୱାଳାରେ ସେ ମୃତ । କିନ୍ତୁ ସେହି ନିର୍ଭୀକ ମୁଖମଣ୍ଡଳରୁ ସେ ପର୍ଯ୍ୟନ୍ତ ଫୁଟିଉଠୁଛି ଏକ ବୀରତ୍ୱବ୍ୟଞ୍ଜକ ଓ ବିଜୟଶ୍ରୀମଣ୍ଡିତ ଆତ୍ମତୃପ୍ତିର ଉଜ୍ଜ୍ୱଳ ତେଜ ।

ଦେହ ଖାନତଲାସ ପରେ ବାହାରିଲା ପିତଳର ଏକ ଇନସିଗନିଆ । ସେଥିରେ ଲେଖାଅଛି, 'ଚଟ୍ଟଗ୍ରାମ ରିପବ୍ଲିକାନ୍ ଆର୍ମି ।' ଗୋଟିଏ ବେଲଟ୍ ଓ ଦୁଇଟି ପଟାସିୟମ ସାଇନାଇଡ୍ ଶିଶି । ଗୋଟିଏ ହ୍ୱିସିଲ ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏକ ଲମ୍ବା ଚିଠି – ଇଂରାଜୀରେ ଲେଖା । ଚିଠିତଳେ ନିଜର ସ୍ୱାକ୍ଷର– ଶ୍ରୀମତୀ ପ୍ରୀତିଲତା ୱାଦ୍ଦେଦାର ।

ମୂଳ ଇଂରାଜୀ ଲେଖାର ଓଡ଼ିଆ ଅନୁବାଦ ହେଉଛି –

## ବିପ୍ଳବ ଦୀର୍ଘଜୀବୀ ହେଉ

''ମୁଁ ଗମ୍ଭୀରତା ସହକାରେ ସ୍ୱୀକାର କରୁଅଛି ଯେ ମୁଁ ଇଣ୍ଡିଆନ ରିପବ୍ଲିକାନ୍ ଆର୍ମିର ଚଟ୍ଟଗ୍ରାମ ଶାଖାର ଅନ୍ତର୍ଭୁକ୍ତ, ଯାହାର ମହାନ୍ ଆଦର୍ଶ ହେଉଛି ଶୋଷକ ସାମ୍ରାଜ୍ୟବାଦୀ ବ୍ରିଟିଶଶକ୍ତି କବଳରୁ ମାତୃଭୂମିକୁ ମୁକ୍ତ କରି ଏକ ସଂଘୀୟ ଭାରତୀୟ ସାଧାରଣତନ୍ତ୍ର ପ୍ରତିଷ୍ଠା କରିବା । ଏହି ଗୁରୁତ୍ୱପୂର୍ଣ୍ଣ ଚିଟାଗଞ୍ଜ ଦଳ ଦେଶର ଯୁବଶକ୍ତିର ହୃଦୟରାଜ୍ୟକୁ ଅଧିକାରକରିପାରିଛି ଏବଂ ଏହାର ଚିରସ୍ମରଣୀୟ ୧୯୩୦ ମସିହା ଏପ୍ରିଲ ୧୮ ତାରିଖ ଐତିହାସିକ ଅଭ୍ୟୁତ୍ଥାନ ଓ ପରବର୍ତ୍ତୀ ବୀରତ୍ୱପୂର୍ଣ୍ଣ କୃତିତ୍ୱ, ଯାହା କି ପବିତ୍ର ଜଲାଲାବାଦ ପାହାଡ଼, ସମୀରପୁର, ଫେନି, ଚନ୍ଦନନଗର, ଚାନ୍ଦପୁର, ଢାକା, କୁମିଲ୍ଲା ଓ ଧଲଘାଟ ଯୁଦ୍ଧରେ ପ୍ରକଟିତ ହୋଇଥିଲା । ତା' ଫଳରେ ଖାଲି ବଙ୍ଗଳା ନୁହେଁ, ସାରା ଭାରତର ବିପ୍ଳବୀ ଯୁବଶକ୍ତି ମନରେ ଭରିଦେଇଛି ଅପୂର୍ବ ଉତ୍ସାହ ଓ ପ୍ରେରଣା । ଏଭଳି ଏକ ଗୌରବମୟ ଦଳର ସଭ୍ୟା ହେବାକୁ ଯୋଗ୍ୟା ବିବେଚିତ ହୋଇଥିବାରୁ ମୁଁ ପରମ ଗୌରବ ଓ ଗର୍ବବୋଧ କରୁଅଛି ।

''ଆମ୍ଭେମାନେ ସ୍ୱାଧୀନତା ଯୁଦ୍ଧ ଚଳାଇଅଛୁଁ । ଆଜିର ଏ ଅଭିଯାନ ସେହି ମହାନ୍ ଯୁଦ୍ଧର ଏକ ଅଂଶ ମାତ୍ର । ବ୍ରିଟିଶ ଲୋକେ ଆମର ସ୍ୱାଧୀନତା ଛଡ଼ାଇ ନେଇଯାଇଛନ୍ତି, ଶେଷରେ ଆମ୍ଭମାନଙ୍କୁ ନିରକ୍ତ କରିଦେଇଛନ୍ତି ଏବଂ ସ୍ତ୍ରୀ-ପୁରୁଷ-ନିର୍ବିଶେଷରେ କୋଟି କୋଟି ଭାରତୀୟ ଜୀବନକୁ ନେଇ ପୈଶାଚିକ ଖେଳ ଖେଳୁଛନ୍ତି । ସେମାନେ ଆମ୍ଭମାନଙ୍କର ନୈତିକ, ଦୈହିକ, ରାଜନୈତିକ ଓ ଆର୍ଥିକ ଦୁରବସ୍ଥାର ମୁଖ୍ୟ କାରଣ । ସୁତରାଂ ସେମାନେ ଆମ ଦେଶର ପ୍ରଧାନତମ ଶତ୍ରୁ ଏବଂ ସ୍ୱାଧୀନତା ପ୍ରାପ୍ତି ପଥରେ କଠୋରତମ ବାଧା । ଫଳରେ ଆମ୍ଭେମାନେ ସରକାରୀ-ବେସରକାରୀ-ନିର୍ବିଶେଷରେ ବ୍ରିଟିଶ ଜାତିର ଯେକୌଣସି ବ୍ୟକ୍ତି ବିରୁଦ୍ଧରେ ଅସ୍ତ୍ର ଧାରଣ କରିବାକୁ ବାଧହୋଇଅଛୁ; ଯଦିଓ ମଣିଷର ଜୀବନ ନାଶ କରିବା ଆମ୍ଭମାନଙ୍କ ପକ୍ଷରେ ଆଦୌ ଆନନ୍ଦଦାୟକ କାର୍ଯ୍ୟ ନୁହେଁ । ସ୍ୱାଧୀନତା ଯୁଦ୍ଧରେ ଆମକୁ ଯେକୌଣସି ଉପାୟରେ ହେଉନା କାହିଁକି ସ୍ୱାଧୀନତା ପଥର ସମସ୍ତ କଣ୍ଟକ ଦୂର କରିବାକୁ ପଡ଼ିବ ।

''ମୁଁ ଯେତେବେଳେ ମୋ ଦଳର ମହାନ୍ ନେତା ମାଷ୍ଟରଦା'ଙ୍କ ଦ୍ୱାରା ଆଜିର ସଶସ୍ତ୍ର ଅଭିଯାନରେ ଯୋଗଦେବା ପାଇଁ ଆହୂତା ହେଲି, ସେତେବେଳେ ମୋର ବହୁ ଦିନର ଈପ୍‌ସିତ ଇଚ୍ଛା ପୂର୍ଣ୍ଣହେଉଥିବାର ଜାଣିପାରି ନିଜକୁ ପରମ ଭାଗ୍ୟବତୀ ମନେକଲି ଏବଂ ପୂର୍ଣ୍ଣ ଦାୟିତ୍ୱସହକାରେ ଏହି ଆହ୍ୱାନକୁ ଗ୍ରହଣକଲି । କିନ୍ତୁ ଯେତେବେଳେ ମୋର ସେହି ପୂଜନୀୟ ନେତା ମୋତେ ଆଜିର ଏହି ଅଭିଯାନର ନେତୃତ୍ୱ ନେବାକୁ ନିର୍ଦ୍ଦେଶଦେଲେ, ସେତେବେଳେ ମୁଁ ଏହି ମହାନ୍ ଦାୟିତ୍ୱ ଗ୍ରହଣ କରିବାକୁ ନିଜକୁ ଯୋଗ୍ୟ ବୋଲି ବିଶ୍ୱାସ କରିପାରିଲିନାହିଁ ଏବଂ ଏ କାର୍ଯ୍ୟ ପାଇଁ ଏତେ ଦକ୍ଷ ଓ ଅଭିଜ୍ଞ ଭାଇମାନେ ଥାଉଁ ଥାଉଁ ଜଣେ ଭଉଣୀକୁ କାହିଁକି ଏ ଦାୟିତ୍ୱ ଦିଆଯାଇଛି ବୋଲି ପ୍ରତିବାଦ କଲି । ମାଷ୍ଟରଦା' ସଙ୍ଗେ ସଙ୍ଗେ ନାନା ଯୁକ୍ତି ଦେଖାଇ ଏହି ନିର୍ଦ୍ଦେଶର ଯଥାର୍ଥତା ବୁଝାଇଦେଲେ ଏବଂ ମୁଁ ମୁଣ୍ଡପାତି ନେତାର ନିର୍ଦ୍ଦେଶକୁ ଗ୍ରହଣ କଲି ଏବଂ ଯେଉଁ ସର୍ବଶକ୍ତିମାନ୍ ଭଗବାନ୍‌ଙ୍କୁ ମୁଁ ପିଲାଦିନୁ ବିଶ୍ୱାସ କରିଆସୁଥିଲି, ତାଙ୍କ ନିକଟରେ ପ୍ରାର୍ଥନା କଲି ଯେ, ଏହି ଗୁରୁଭାର ବହନ କରିବାକୁ ସେ ମୋର ସହାୟକ ହୁଅନ୍ତୁ ।

''ଏ ସଂପର୍କରେ ମୋର ଦେଶବାସୀଙ୍କ ନିକଟରେ କେତେକ କୈଫିୟତ ଦେବା ଉଚିତ । ଦୁର୍ଭାଗ୍ୟର କଥା, ଆମ ଦେଶରେ ଏଭଳି ବହୁଲୋକ ଅଛନ୍ତି, ଯେଉଁମାନେ ଜାଣିଲେ ହୁଏତ ଆଘାତ ପାଇବେ ଯେ, ଜଣେ ନାରୀ, ଯେ କି ଭାରତୀୟ ମାତୃଜାତିର ମହାନ୍ ପରମ୍ପରା ଭିତରେ ବଢ଼ିଛି, ସେ ମଣିଷମରା ଭଳି ଭୟାବହ କାର୍ଯ୍ୟକୁ କିପରି ହାତକୁ ନେଲା ? ମୁଁ ଆଶ୍ଚର୍ଯ୍ୟ ହୁଏ, କାହିଁକି ସେମାନେ ଏହି ମହାନ୍ କାର୍ଯ୍ୟରେ ନାରୀ ଓ ପୁରୁଷ ଭିତରେ ଏତେ ପାର୍ଥକ୍ୟ ଦେଖନ୍ତି ଏବଂ କାହିଁକି ଭଉଣୀମାନେ ଏ ଦାୟିତ୍ୱ ନେଇପାରିବେ ନାହିଁ ?

''ଆମ ଇତିହାସରେ ଏଭଳି ଉଦାହରଣର ଅଭାବ ନାହିଁ, ଯେଉଁଥିରେ କି ଚିର-ସ୍ମରଣୀୟା ରାଜପୁତ୍ ମହିଳାମାନେ ବୀରତ୍ୱସହକାରେ ଯୁଦ୍ଧକ୍ଷେତ୍ରରେ ଲଢ଼ିଅଛନ୍ତି ଏବଂ ଦେଶ ଓ ଜାତିର ଶତ୍ରୁକୁ ହତ୍ୟାକରିବାକୁ କେବେହେଲେ ପଛେଇନାହାନ୍ତି । ଏହି ବିଶିଷ୍ଟ

ମହିଳାମାନଙ୍କର ମହାନ୍ ଆତ୍ମତ୍ୟାଗ ଓ ଅଲୌକିକ ବୀରତ୍ୱ କାହାଣୀ ଆମ ଇତିହାସର ପ୍ରତି ପୃଷ୍ଠାରେ ଭରିରହିଛି । ତାହାହେଲେ ଆମେ ଆଧୁନିକ ଭାରତୀୟ ନାରୀ କାହିଁକି ବିଦେଶୀ ଶକ୍ତିହାତରୁ ଆମର ସ୍ୱାଧୀନତା ଛଡାଇଆଣିବା ଭଳି ଏକ ମହତ୍ କାର୍ଯ୍ୟ ସମ୍ପାଦନ କରିବାରୁ ବଂଚିତା ହେବୁଁ ? ଯଦି ସତ୍ୟାଗ୍ରହ ଆନ୍ଦୋଳନରେ ଭାଇ-ଭଉଣୀ ଏକାସାଂଗରେ ଠିଆହୋଇପାରନ୍ତି, ତେବେ ବୈପ୍ଳବିକ ଆନ୍ଦୋଳନରେ ତାହା କାହିଁକି ନ ହେବ ? ଏହି ଦୁଇଟି ଆନ୍ଦୋଳନର ପନ୍ଥା ଭିନ୍ନ ହୋଇଥିବାରୁ ନା ଝିଅମାନେ ଏ କାର୍ଯ୍ୟ ପାଇଁ ଯୋଗ୍ୟା ନୁହଁନ୍ତି ? ପୃଥିବୀର ବହୁଦେଶ ଏହାକୁ ଗ୍ରହଣକରିଛି ଏବଂ ଶହ ଶହ ସଂଖ୍ୟାରେ ନାରୀମାନେ ଏଥିରେ ଯୋଗଦେଇଅଛନ୍ତି । ସୁତରାଂ ଭାରତବର୍ଷ ଏ ପନ୍ଥା ଗ୍ରହଣ କରିବାକୁ ପରାଙ୍ମୁଖ କାହିଁକି ? ଯୋଗ୍ୟତା ସଂପର୍କରେ ବିଚାର କଲେ ମଧ୍ୟ କୁହାଯାଇପାରିବ ଯେ, ଏହା କଣ ଏକ ଅବିଚାର ନୁହେଁ ଯେ, ସ୍ୱାଧୀନତା ଯୁଦ୍ଧରେ ନାରୀମାନଙ୍କୁ ପୁରୁଷମାନଙ୍କ ଅପେକ୍ଷା ଦୁର୍ବଳା ଓ ଅଯୋଗ୍ୟା ବୋଲି ସର୍ବଦା କୁହାଯାଉଥିବ ।

''ଏହି ଭ୍ରମ ଧାରଣା ଦୂର କରିବାର ବେଳ ବର୍ତ୍ତମାନ ଆସିଛି । ଯଦି ସେମାନେ କମ୍ ଯୋଗ୍ୟ ହୋଇଥାନ୍ତି, ତାର କାରଣ ହେଉଛି ଏହା ଯେ, ସେମାନଙ୍କୁ ପଛରେ ପକାଇ ଦିଆଯାଇଛି । ପ୍ରତ୍ୟେକ କାର୍ଯ୍ୟରେ ତାହା ଯେତେ ବିପଜ୍ଜନକ ଓ ଅସୁବିଧାଜନକ ହୋଇଥିଲେ ବି ଭାଇମାନଙ୍କ ସହ ଭଉଣୀମାନେ ସମାନ ତାଳ ଦେଇ ଚାଲିବେ ଏବଂ ଆଉ ପଛରେ ପଡ଼ିବେ ନାହିଁ ବୋଲି ସେମାନେ କୃତସଂକଳ୍ପ । ମୋର ଦୃଢ଼ବିଶ୍ୱାସ ଯେ ଭଉଣୀମାନେ ଆଉ ନିଜକୁ ଦୁର୍ବଳା ବୋଲି ମନେ କରିବେ ନାହିଁ ଏବଂ ସମସ୍ତ ପ୍ରକାର ବାଧା ଓ ବିପଦର ସମ୍ମୁଖୀନ ହେବାକୁ ନିଜକୁ ପ୍ରସ୍ତୁତ କରି ରଖିବେ ଓ ବୈପ୍ଳବିକ ଆନ୍ଦୋଳନରେ ହଜାର ହଜାର ସଂଖ୍ୟାରେ ଯୋଗଦେବେ ।

''ମୁଁ କିପରି ଏହି ବୈପ୍ଳବିକ ସଙ୍ଗଠନ ଆଡ଼କୁ ଆକୃଷ୍ଟ ହେଲି, ତାହା ବର୍ତ୍ତମାନ ସଂକ୍ଷେପରେ ବର୍ଣ୍ଣନା କରୁଛି । ମୁଁ ଯେତେବେଳେ ଡାକ୍ତର ଖାସ୍ତାଗିରି ବାଳିକା ସ୍କୁଲରେ ମ୍ୟାଟ୍ରିକ ପଢୁଥିଲି, ସେତେବେଳେ ଚିଟ୍ଟାଗଞ୍ଜର ଏକ ବୈପ୍ଳବିକ ସଙ୍ଗଠନ ବିଷୟରେ ଜାଣିବାକୁ ପାଇଲି ଓ ଏହି ମହାନ୍ ସଙ୍ଗଠନର ଶୀର୍ଷରେ ମହତ ଗୁଣସମ୍ପନ୍ନ ଏକ ମହାଶକ୍ତିମାନ୍ ନେତା ଅଛନ୍ତି ବୋଲି ମଧ୍ୟ ଜାଣିଥିଲି । ଢାକାରେ ମୋର ଦୁଇବର୍ଷ ଆଇ.ଏ.ପଢ଼ା ସମୟ ଭିତରେ ମୁଁ ଏହି ମହାନ୍ ମାଷ୍ଟରଦା'ଙ୍କର ଏକ ଯୋଗ୍ୟ ସହକର୍ମୀ ହେବାପାଇଁ ନିଜକୁ ପ୍ରସ୍ତୁତ କରୁଥିଲି । ତଥାପି ମୁଁ ପଢ଼ାପଢ଼ିରେ କୌଣସି ତ୍ରୁଟି କଲିନାହିଁ ଏବଂ ୧୯୩୦ ମସିହାରେ ଝିଅମାନଙ୍କ ଭିତରେ ପ୍ରଥମ ସ୍ଥାନ ଓ ସାଧାରଣ ପ୍ରତିଯୋଗିତାରେ ପଞ୍ଚମ ସ୍ଥାନ ଅଧିକାର କରି ମୁଁ ଆଇ.ଏ. ପାଶକଲି ।

''ଏହା ହେଉଛି ୧୯୩୦ ମସିହା ଏପ୍ରିଲ ୧୯ ତାରିଖ ସକାଳ । ସେତେବେଳେ ମୁଁ ଘରକୁ ଫେରିଲି ଓ ଚିଟ୍ଟାଗଞ୍ଜ ବୀରମାନଙ୍କର ପୂର୍ବରାତ୍ରିର ଗୌରବମୟ ଗାଥା ଶୁଣିବାକୁ ପାଇଲି । ଏହି ମହାନ୍ ଆତ୍ମାମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାରେ ହୃଦୟ ମୋର ଭରିଗଲା । କିନ୍ତୁ ଏହି ବୀରତ୍ୱପୂର୍ଣ୍ଣ କାର୍ଯ୍ୟରେ ଭାଗ ନେଇପାରି ନଥିବାରୁ ଓ ଯେଉଁ ମାଷ୍ଟରଦା'ଙ୍କ

ନାମ ଶୁଣିଲାଦିନୁ ମୁଁ ତାଙ୍କୁ ହୃଦୟ-ସିଂହାସନରେ ବସାଇସାରିଥିଲି, ତାଙ୍କୁ ଥରକ ପାଇଁ ସୁଦ୍ଧା ଦର୍ଶନ କରିପାରି ନଥିବାରୁ ମନରେ ଦାରୁଣ ଆଘାତ ପାଇଲି । ଜଲାଲାବାଦ ସହିଦମାନଙ୍କ ସ୍ମୃତି ମୋର ହୃଦୟର ଗଭୀରତମ ପ୍ରଦେଶକୁ ମଧ୍ୟ ସ୍ପର୍ଶକଲା । ଏହିଭଳି ଏକ ମାନସିକ ଅବସ୍ଥାରେ ମୁଁ ବି.ଏ. ପଢ଼ିବାକୁ କଲିକତା ଆସିଲି । ଦେଶର ଚିନ୍ତା ମୋ' ମନରେ ସର୍ବଦା ସର୍ବାଧିକ ସ୍ଥାନ ଅଧିକାର କରିଥିଲା । ସ୍ୱାଧୀନତା ବେଦୀରେ ଆତ୍ମଦାନ କରିଥିବା ସନ୍ତାନଗଣଙ୍କର ଜନନୀମାନଙ୍କର ଆଖିର ଲୁହ ମୁଁ ଦେଖିବାକୁ ପାଇଲି ।

''ଏହି ପରିସ୍ଥିତିରେ ଯେତେବେଳେ 'ମାତୃଭୂମିକୁ ଭଲପାଇଥିବା ଅଭିଯୋଗରେ ବ୍ରିଟିଶ ଆଇନ ଦ୍ୱାରା ଅଭିଯୁକ୍ତ ଓ ଅଲ୍ଲୀପୁର ସେଣ୍ଟ୍ରାଲ ଜେଲର ନିର୍ଜନ କୋଠରିରେ ଚରମ ଦଣ୍ଡ ଅପେକ୍ଷାରେ ଥିବା ବିପ୍ଳବୀ ରାମକୃଷ୍ଣଦା'ଙ୍କୁ ଦେଖିବା ପାଇଁ ଜଣେ ଭାଇ ମୋତେ ଅନୁରୋଧ କଲେ, ସେତେବେଳେ ମୁଁ ନୂତନ ପ୍ରେରଣା ପାଇଲି । ରାମକୃଷ୍ଣଦା'ଙ୍କର ମାମୁଁ-ଝିଅ ଭଉଣୀ ବୋଲି ପରିଚୟ ଦେଲି ଏବଂ ସେହି ତରୁଣ ବୀରଙ୍କୁ ପ୍ରାୟ ଦୈନିକ ଜେଲଖାନାରେ ସାକ୍ଷାତ କରିବାକୁ ଆୟୋଜନ କରିପାରିଲି । ସେ ଫାଶୀ ପାଇବା ପୂର୍ବରୁ ମୁଁ ତାଙ୍କ ସହ ପ୍ରାୟ ୪୦ ଥର ସାକ୍ଷାତ କରିସାରିଥିଲି । ତାଙ୍କର ବିଶେଷତ୍ୱପୂର୍ଣ୍ଣ ଚେହେରା, ମନଖୋଲା କଥାବାର୍ତ୍ତା, ମୃତ୍ୟୁ ନିକଟରେ ନୀରବ ଆତ୍ମସମର୍ପଣ, ଭଗବାନ୍‌ଙ୍କ ପ୍ରତି ଆନ୍ତରିକ ଭକ୍ତି, ଶିଶୁସୁଲଭ ସରଳତା, ସ୍ନେହଶୀଳ ହୃଦୟ ବ୍ୟବହାର ଜ୍ଞାନ ଏବଂ ଆତ୍ମୋପଲବ୍ଧି ମୋତେ ବିଶେଷ ମୁଗ୍ଧ କଲା । ଏହି ମୃତ୍ୟୁଞ୍ଜୟୀ ଦେଶସେବକ ମୋତେ ମୋର ଜୀବନର ପୂର୍ଣ୍ଣତାପ୍ରାପ୍ତ ଦିଗରେ ଯଥେଷ୍ଟ ସାହାଯ୍ୟ କଲେ । ରାମକୃଷ୍ଣଦା'ଙ୍କ ଫାଶୀ କିଛି ଏକ ବାସ୍ତବ ବୈପ୍ଳବିକ କାର୍ଯ୍ୟକ୍ରମ ଗ୍ରହଣ କରିବାର ମୋର ଆଭିଳାଷକୁ ଅଧିକ ତୀବ୍ର କରିଦେଲା । ଯାହାହେଉ ବି.ଏ. ପରୀକ୍ଷା ଦେବାପାଇଁ ମୋତେ ଆଉ କେତେ ମାସ କଲିକତାରେ ରହିବାକୁ ପଡ଼ିଲା । ଇତିମଧ୍ୟରେ ମୁଁ ମାଷ୍ଟରଦା'ଙ୍କୁ ଥରେହେଲେ ଭେଟିବା ପାଇଁ ବହୁବାର ଉଦ୍ୟମ କଲି; କିନ୍ତୁ ବିଫଳ ହେଲି ।

''୧୯୩୨ ମସିହା ପରୀକ୍ଷା ପରେ ଯେକୌଣସି ପ୍ରକାରେ ମାଷ୍ଟରଦା'ଙ୍କୁ ଭେଟିବାକୁ ଦୁର୍ବାର ଅଭିଳାଷ ନେଇ ମୁଁ ଘରକୁ ଦୌଡ଼ିଲି । ଅଳ୍ପ କେତେଦିନ ଭିତରେ ମୋର ସେହି ଈପ୍‌ସିତ ଫଳ ଲାଭହେଲା ଏବଂ ବିଖ୍ୟାତ ଚିଟ୍ଟାଗଞ୍ଜ ବିପ୍ଳବକୁ ପରିଚାଳିତ କରୁଥିବା ଦୁଇ ବିରାଟ ବ୍ୟକ୍ତି-ମାଷ୍ଟରଦା' ଓ ନିର୍ମଳଦା'ଙ୍କ ସମ୍ମୁଖରେ ମୁଁ ଦଣ୍ଡାୟମାନ ହୋଇପାରିଲି । ନିର୍ମଳଦା'ଙ୍କ ସହ ମୋର ସଂକ୍ଷିପ୍ତ ସାକ୍ଷାତ୍‌କାର ଭିତରେ ମୁଁ ତାଙ୍କର ମହାନ୍ ଓ ସୁନ୍ଦର ହୃଦୟର ପରିଚୟ ପାଇବାକୁ ସମର୍ଥହେଲି; ଯେଉଁ ହୃଦୟ ଭିତରେ କଠୋର ବୈପ୍ଳବିକ ଆଦର୍ଶ ଓ ଧର୍ମୀୟ ଚିନ୍ତାଧାରାର ସୁନ୍ଦର ସମନ୍ୱୟ ସମ୍ପନ୍ନ ହୋଇପାରିଛି । ଏହି ମହାନ୍ ଆତ୍ମା ଯେ କି କେତେ ନିର୍ମଳ, କେତେ ବିରାଟ, କେତେ ଅସାଧାରଣ ତାହା ଦେଶବାସୀଙ୍କୁ ଜାଣିବାର ସୁଯୋଗ ନ ଦେଇ ନୀରବରେ ସଂସାରରୁ ଅପସରିଗଲା । ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିବାର ସୌଭାଗ୍ୟ ଅର୍ଜନ କରିଥିବାରୁ ମୁଁ ନିଜକୁ ଭାଗ୍ୟବତୀ ମନେକରୁଛି ।

''ନିର୍ମଳଦା'ଙ୍କର ଦୁଃଖଦାୟକ ଦେହତ୍ୟାଗରେ ମୋର ହୃଦୟରେ ଦାରୁଣ ଆଘାତ ଲାଗିଲା ଏବଂ ମୁଁ ବିଶେଷ ହତାଶ ଅନୁଭବକଲି । ଏହି ସମୟରେ ମୋର ବି:ଏ: ପରୀକ୍ଷା ଫଳ ବାହାରିଲା ଏବଂ ମୁଁ ଡିଷ୍ଟିଙ୍କସନ ସହ ବି:ଏ: ପାଶକଲି । ଏହାପରେ ମୋର ପ୍ରାଣପ୍ରିୟ ପରିବାରକୁ ଚିରଦିନ ପାଇଁ ତ୍ୟାଗକରି ବୈପ୍ଳବିକ ପ୍ରସ୍ତୁତି ପାଇଁ ମନପ୍ରାଣ ଢାଳିଦେଇ ଲାଗିପଡ଼ିଲି ।

''ସର୍ବଶକ୍ତିମାନ୍ ଭଗବାନ୍‌ଙ୍କ ପ୍ରତି ଅନନ୍ୟ ବିଶ୍ୱାସ ଏବଂ ଆନ୍ତରିକ ଭକ୍ତି ପିଲାଦିନୁ ମୋର ପ୍ରଧାନ ସମ୍ପଦ ହୋଇ ରହିଆସିଅଛି । ମୁଁ ଏହି ମହାନ୍ ସମ୍ପଦକୁ ପିଲାଦିନୁ ମୋର ହୃଦୟର ଏକମାତ୍ର ଆକାଂକ୍ଷା ଭାବେ ଗ୍ରହଣ କରିଆସିଛି ଏବଂ ଆଜି ଯେତେବେଳେ ମୁଁ ସେହି ପରମପଦକୁ ଆଲିଙ୍ଗନ କରିବାକୁ ପ୍ରସ୍ତୁତ ହୋଇ ଆସିବାକୁ ସମର୍ଥ ହୋଇଛି ବୋଲି ଭାବୁଛି, ସେତେବେଳେ ସେ ସମ୍ପଦ ମୋ ନିକଟରେ ଅଧିକ ମୂଲ୍ୟବାନ୍, ଅଧିକ ଆନନ୍ଦଦାୟକ ଓ ଅଧିକ ଉଜ୍ଜ୍ୱଳରୂପେ ପ୍ରତିଭାତ ହେଉଅଛି । ମୋର ବୈପ୍ଳବିକ ଆଦର୍ଶ ମୋର ଭଗବତ ବିଶ୍ୱାସ ସହ ଯଦି ସାମଞ୍ଜସ୍ୟ ରଖି ପାରିନଥାନ୍ତା, ତେବେ ମୁଁ କଦାପି ଜଣେ ବିପ୍ଳବିଣୀ ହୋଇପାରିନଥାନ୍ତି ।

''ତାଙ୍କପ୍ରତି ମୋର ଭକ୍ତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ମୁଁ ଆଜିର ମହାନ୍ ଦାୟିତ୍ୱ ସମ୍ପାଦନ କରିବାକୁ ଯାଉଛି ଏବଂ ତାଙ୍କୁ ପ୍ରାର୍ଥନା କରୁଅଛି, ସେ ମୋତେ ପବିତ୍ର ଓ ନିର୍ମଳ କରିଦିଅନ୍ତୁ; ଯେପରି କି ମୁଁ ତାଙ୍କର ପୂଜାବେଦୀ ନିକଟରେ ଏକ ଉପଯୁକ୍ତ ନୈବେଦ୍ୟ ହୋଇପାରିବି ।''

ବ୍ରିଟିଶ ସରକାରର ଆଇନ ପ୍ରୀତିଲତାଙ୍କୁ ସ୍ପର୍ଶ କରିପାରିଲା ନାହିଁ । ସେ ତା'ର ବହୁ ପୂର୍ବରୁ ଅନ୍ୟ ପୁରକୁ ଚାଲିଯାଇଥିଲେ ।

ପ୍ରୀତିଲତାଙ୍କର ଏହି ଷ୍ଟେଟମେଣ୍ଟ ବା ବିବୃତି, ଯାହାକୁ କି ବଙ୍ଗଳାରେ ଅନ୍ୟତମ ପ୍ରବୀଣ ବିପ୍ଳବୀ ଶ୍ରୀ ଭୂପେନ୍ଦ୍ର କିଶୋର ରକ୍ଷିତରାୟ ମହାଶୟ 'ଟେଷ୍ଟାମେଣ୍ଟ' ବୋଲି କହିଛନ୍ତି, ତାହା ଯଥାର୍ଥରେ ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଦଲିଲ । ଏଥିରୁ ତତ୍କାଳୀନ ସଶସ୍ତ୍ର ବିପ୍ଳବର ନେତୃତ୍ୱ ନେଇଥିବା ବ୍ୟକ୍ତିମାନଙ୍କର ଯୋଗ୍ୟତା ଏବଂ ତତ୍କାଳୀନ ଶିକ୍ଷିତ ଯୁବ-ସମାଜ ଉପରେ ସେମାନଙ୍କର, ବିଶେଷତଃ ଶିକ୍ଷିତା ଝିଅମାନଙ୍କ ଉପରେ, କିଭଳି ଗୁରୁତର ପ୍ରଭାବ ବିସ୍ତାରକରିଥିଲା, ତାହାର ସମ୍ୟକ୍ ପରିଚୟ ମିଳେ ।



## ଅଧ୍ୟାୟ - ଅଠେଇଶ

# ରାହୁଗ୍ରସ୍ତ 'ସୂର୍ଯ୍ୟ'

ବ୍ରିଟିଶ ଆଇନର ଏହି ସମସ୍ତ ପ୍ରକାର କସରତ ଏବଂ ଖଳବୁଦ୍ଧିସଂପନ୍ନ ବ୍ରିଟିଶ ଅଫିସରମାନଙ୍କର ସବୁ ବୁଦ୍ଧି-ବୃତ୍ତି ପ୍ରୟୋଗକରି ଜଣେ ଦି'ଜଣ ନୁହେଁ; ସର୍ବମୋଟ ତିରିଶ ଜଣ ଭାରତୀୟ ବୀର ବିପ୍ଳବୀଙ୍କୁ ଅଜ୍ଞାତ ସ୍ଥାନକୁ ଚାଲାଣ କରି ସୁଦ୍ଧା ସରକାର ଆଶ୍ୱସ୍ତିର ନିଃଶ୍ୱାସ ମାରିପାରିଲା ନାହିଁ । କାରଣ ସବୁ ଝିଂ-ତୋଫାନ ସତ୍ତ୍ୱେ ନାଟର ସୂର୍ଯ୍ୟସେନ ଏପର୍ଯ୍ୟନ୍ତ ଧରାହୋଇପାରିନାହାଁନ୍ତି, ତାହାହିଁ ସରକାରୀ ମହଲରେ ପ୍ରଧାନ ଦୁଶ୍ଚିନ୍ତାର କାରଣ । ''ଚଞ୍ଚଳ ସୂର୍ଯ୍ୟସେନ'' ବିପ୍ଳବ ସର୍ଦ୍ଦାର ବା ପୋଲିସ-ଭାଷାରେ ରିଂଲିଡ଼ର ସୂର୍ଯ୍ୟସେନ ବାରମ୍ବାର ପୋଲିସକୁ ଚିତାକାଟିଦେଉଛି ।

ମାଷ୍ଟରଦା'ଙ୍କୁ ମୃତ ବା ଜୀବିତ ଅବସ୍ଥାରେ ଧରାଇଦେଇପାରିଲେ ଏପରିକି ତାଙ୍କୁ ଧରିଦେବା ସମ୍ପର୍କରେ ନିର୍ଭୁଲ ସମ୍ବାଦ ଦେଇପାରିଲେ ସମ୍ବାଦ ତାଙ୍କୁ ଦଶହଜାର ଟଙ୍କା ନଗଦ ପୁରସ୍କାର ଦିଆଯିବ ବୋଲି ପୋଲିସ ତିନିବର୍ଷ ହେବ ବାରମ୍ବାର ଘୋଷଣା କଲାଣି, ତଥାପି ସୂର୍ଯ୍ୟସେନ ଧରାପଡୁନାହାନ୍ତି । କେତେ ନାମଜାଦା ପୋଲିସ ଗୋୟେନ୍ଦା ଅଫିସର, ଏପରି କି ପୃଥିବୀ ବିଖ୍ୟାତ ସ୍କଟଲାଣ୍ଡ ୟାର୍ଡ଼ ଗୋୟେନ୍ଦାମାନେ ବି, କ୍ଲାନ୍ତ ଶ୍ରାନ୍ତ ଓ ଲଜ୍ଜିତ ।

ଭିତିରିଆ ଖବର ପାଇ ପୋଲିସ ଯେଉଁଠି ସନ୍ଦେହକରି ଘେରାଉକରୁଛି, ସେଠାରେ ହୁଏତ ଆହୁରି କେତେଟା ପୋଲିସ ବା ମିଲିଟାରୀର ପ୍ରାଣ ଯାଉଛି । ହେଇ ସେଦିନ ଧଲଘାଟରେ ବିରାଟ ଗୁର୍ଖା ମିଲିଟାରୀ ଆଖିଆଗରୁ ସେ ଖସିଗଲେ, କେବଳ ଲାଭ ଭିତରେ ହେଲା କ୍ୟାପଟେନ କାମେରନ ଭଳି ଦକ୍ଷ ସେନାପତିର ଦୟନୀୟ ମୃତ୍ୟୁ । ଅବଶ୍ୟ ସୂର୍ଯ୍ୟସେନର ଡାହାଣହାତ ଛିଡ଼ିଲା ସେ ଯୁଦ୍ଧରେ ନିର୍ମଳସେନଙ୍କର ମୃତ୍ୟୁରେ । କିନ୍ତୁ ସୂର୍ଯ୍ୟସେନ କୁଆଡ଼େ ଅନ୍ତର୍ଦ୍ଧାନ ହେଲେ ପୋଲିସ ତା'ର ସାମାନ୍ୟ ଟେର ମଧ ପାଇଲା ନାହିଁ । ଉଚ୍ଚପଦସ୍ଥ ପୋଲିସ ଓ ମିଲିଟାରୀ ଗୁପ୍ତ ବୈଠକରେ ଏହାହିଁ ଥିଲା ସେଦିନ ମୁଖ୍ୟ ଆଲୋଚ୍ୟ ବସ୍ତୁ ।

ସେତିକିରେ ବିପ୍ଳବୀମାନେ ଚୁପ୍ ରହିଥିଲେ ସେ ଗୋଟାଏ ପ୍ରକାର ହୁଅନ୍ତା, କିନ୍ତୁ ପ୍ରତି ସପ୍ତାହରେ ସେମାନଙ୍କର ନିତ୍ୟନୂତନ ସଶସ୍ତ୍ର ଅଭିଯାନ ଓ ହତ୍ୟାକାଣ୍ଡ ପୋଲିସ ମୁଣ୍ଡବ୍ୟଥାର ପ୍ରଧାନ କାରଣ ହେଉଛି । ଯେକୌଣସି ମୁହୂର୍ତ୍ତରେ ଏପରିକି ଯେକୌଣସି ସ୍ଥାନରେ ବିଦ୍ରୋହୀମାନଙ୍କ ରିଭଲଭର ଗର୍ଜିଉଠୁଛି । କେଉଁ ବ୍ରିଟିଶ ହାକିମ ବା ସରକାରୀ ଦଲାଲଙ୍କ ମୁଣ୍ଡ ଯେ କେତେବେଳେ ଭୂଲୁଣ୍ଠିତ ହେଉଛି, ତା'ର ଠିକଣା ନାହିଁ । କୁଚକ୍ରୀ ବ୍ରିଟିଶର ସବୁ କୂଟଚକ୍ର ଓ ଡିପ୍ଲୋମେସି ଦଲାଲୀ ଫସରଫାଟିଯାଉଛି । ଆଜି ଚଟ୍ଟଗ୍ରାମ,

କାଲି ବରିସାଲ, ପଅରିଦିନ କଲିକତା, ତା' ପରଦିନ ମେଦିନୀପୁର – ଏମିତି ବିଭିନ୍ନ ଜାଗାରେ ଗର୍ଜିଉଠୁଛି ବିପ୍ଳବୀର ବନ୍ଧୁକ । ସରକାରର ଏଥିରେ ତିଳେ ହେଲେ ସନ୍ଦେହ ନାହିଁ ଯେ, ଏହା ସବୁ ସୂର୍ଯ୍ୟସେନର କାମ । ଅନ୍ତବହୁତେ ପୋଲିସ ବା ମିଲିଟାରୀ ପ୍ରାଣ ଦେଉଛନ୍ତି ଏସବୁ ଦୁଃସାହସିକ ଅଭିଯାନରେ । ''କି ଜିଦଖୋର ଏ ନେଟିଭଗୁଡ଼ା, କି ପ୍ରତିହିଂସାପରାୟଣ ଏ ଭାରତୀୟ ଜାତି ।'' ଇଂରେଜମାନଙ୍କ ଏହାହିଁ ଚିନ୍ତା ।

କିନ୍ତୁ ପୋଲିସର ଏହି ଅପାରଗତା ବିରୁଦ୍ଧରେ ସରକାର-ସମର୍ଥକମାନେ ଶତଜିହ୍ୱ ହୋଇପଡ଼ିଲେ । କଲିକତାର 'ଷ୍ଟେଟସମ୍ୟାନ' ଓ ଲଣ୍ଡନର 'ଗାର୍ଡ଼ିୟାନ' ପ୍ରଭୃତି ସମ୍ବାଦ-ପତ୍ରରେ କଡ଼ା କଡ଼ା ମନ୍ତବ୍ୟ ଓ ସମାଲୋଚନାମୂଳକ ଅଗ୍ରଲେଖା ପ୍ରକାଶପାଉଥାଏ । ଏପରି କି କେହି କେହି ମତ ଦେଉଥାନ୍ତି ଯେ, ସୂର୍ଯ୍ୟସେନ ଦଳ ସହ କେତେକ ଉଚ୍ଚ ପୋଲିସବାଲାଙ୍କର ଗୋପନ ସମ୍ପର୍କ ରହିଥିବାରୁ ସୂର୍ଯ୍ୟସେନ ଧରାପଡୁନାହିଁ । ଏସବୁ ଶୁଣି ଶୁଣି ପୋଲିସ ସୂର୍ଯ୍ୟସେନଙ୍କୁ ଧରିବାକୁ ଉନ୍ମାଦହୋଇଉଠିଥାଏ । ତେବେ ବାସ୍ତବରେ କେଉଁଠି ସେ ସୂର୍ଯ୍ୟସେନ ଆତ୍ମଗୋପନ କରିଛି ? କ'ଣ ବା ତା'ର ପରବର୍ତ୍ତୀ ଯୋଜନା ?

କିଛି ନୂଆ କଥା ନୁହେଁ; ସେହି ପୁରୁଣା କଥା – '' ଧରାପଡ଼ିବା ପୂର୍ବରୁ ଶତ୍ରୁର ସର୍ବାଧିକ କ୍ଷତିସାଧନକର । ସୁନାପିଲା ପରି ଚୁପ୍‌କରି ପୋଲିସ ହାତରେ ଧରା- ପଡ଼ିଲେ ଚଳିବ ନାହିଁ । ଏହା ବିପ୍ଳବୀର ପଥ ନୁହେଁ । ଯେତେ ଦିନ ସମ୍ଭବ ପୋଲିସର ଦୃଷ୍ଟି ଆଢୁଆଳରେ ରୁହ । କିନ୍ତୁ ସୁବିଧା ଦେଖି ଯେକୌଣସି ଉପାୟରେ ଶତ୍ରୁ ଉପରେ ମରଣାନ୍ତକ ପ୍ରହାର ଦିଅ । ଏ ପଥରେ ମୃତ୍ୟୁ ସୁନିଶ୍ଚିତ । କିନ୍ତୁ ମୃତ୍ୟୁପୂର୍ବରୁ ଏମିତି ଦାଗଟାଏ ଦେବ ଯେ ଶତ୍ରୁର ଛାତି ଉପରେ ସେ ଦାଗଟା ଅଲିଭା ରହିଯିବ । ଶତ୍ରୁ ବୁଝିବ, ଆଉ ଏ ଦେଶକୁ ଶାସନ କରିବା ସମ୍ଭବ ନୁହେଁ । ଭାରତକୁ ଆସୁଥିବା ପ୍ରତ୍ୟେକ ଶ୍ୱେତାଙ୍ଗ ଅଫିସର ଓ ସେମାନଙ୍କ ପାଇଁ ଦଲାଲୀ କରୁଥିବା ଭାରତମାତାର ପ୍ରତ୍ୟେକ କୁସନ୍ତାନ ଉପଲବ୍ଧି କରୁ ଯେ, ଜୀବନକୁ ପାଣି ନ ଛଡ଼େଇଲେ ଏ ଦେଶରେ ଆଉ ଓସ୍ତାତି ଚଳିବ ନାହିଁ ।''

କିନ୍ତୁ ଏହା ସମ୍ଭବ କିପରି ? ଜାଲଭଳି ବିଛେଇ ହୋଇ ରହିଛି ସରକାରୀ କୂଟନୀତି ଚକ୍ରବ୍ୟୂହ ଭଳି ପ୍ରତିଗାଁରେ, ଏପରିକି କେତେ ଗାଁର ପ୍ରତି ପରିବାରରେ । ସହର, ସ୍କୁଲ, କଲେଜ, କ୍ଲବ ଓ ଲାଇବ୍ରେରୀ ପ୍ରଭୃତି ପ୍ରତ୍ୟେକ ସାଧାରଣ ଅନୁଷ୍ଠାନରେ ପୋଲିସ ତା'ର ଦଲାଲ ରଖିବାକୁ ଚେଷ୍ଟାକରିଛି; ଯେଉଁମାନେ କି ବିପ୍ଳବୀମାନଙ୍କ ଗତିବିଧି ଉପରେ ଆଖି ରଖିବେ ଏବଂ ବରାବର ପୋଲିସ ସହ ସମ୍ପର୍କ ରଖିଥିବେ । ସାମାନ୍ୟ ସୁବିଧା ପାଇଲେ ବିଦ୍ରୋହୀମାନଙ୍କୁ ପୋଲିସ ହାତରେ ଧରାଇଦେଇ ମୋଟା ଅଙ୍କର ପୁରସ୍କାର ପାଇବା ସେମାନଙ୍କ ଆଶା । ସୁତରାଂ ଏହି ପ୍ରକାର ଦେଶଦ୍ରୋହୀମାନଙ୍କ ଗହଣରେ ଅଣ୍ଡରଗ୍ରାଉଣ୍ଡ କାମ କରିବା କେବଳ କଷ୍ଟସାଧ ନୁହେଁ; ବେଳେବେଳେ ଅସମ୍ଭବ ମଧ୍ୟ । ପୋଲିସ ଆଖିରୁ ଚୁପଚାପ ଲୁଚିରହିବା ହୁଏତ ସହଜ, କିନ୍ତୁ ସେ ତ ଚୋର, ଡକାୟତ ଶ୍ରେଣୀର କାର୍ଯ୍ୟ– ଦେଶପ୍ରେମୀ ବିପ୍ଳବୀର ଧର୍ମ ନୁହେଁ; ସେ ତ ଦୀକ୍ଷା ନେଇଛି ଅନ୍ୟ ସ୍କୁଲରେ ଓ ଅନ୍ୟ ମାଷ୍ଟରଠୁଁ ।

ଅନ୍ୟ ସ୍କୁଲ ଓ ଅନ୍ୟ ଗୁରୁଦ୍ୱାରା ଦୀକ୍ଷିତ ସେହି ଅମୃତସନ୍ତାନମାନଙ୍କର ସଂଖ୍ୟା କମ୍ ନଥିଲା ସେଦିନ ଜାତିର ସେହି ଜୀବନ-ମରଣ ଯୁଦ୍ଧରେ କିମ୍ବା ଅଭାବ ନଥିଲା ସେମାନଙ୍କର ସହାୟକ, ସମର୍ଥକ ଓ ପୃଷ୍ଠପୋଷକମାନଙ୍କର । ଯେଉଁମାନେ ଆଗ ଧାଡ଼ିରେ ଯୁଦ୍ଧକରନ୍ତି ଜୀବନକୁ ପାଣିଛଡ଼େଇ, ଯେଉଁମାନଙ୍କ ଶସ୍ତ୍ରଘାତରେ ଶତ୍ରୁର ମୁଣ୍ଡ ଭୂଲୁଣ୍ଠିତ ହୁଏ, ସେମାନଙ୍କର ଅବଦାନ ସ୍ୱାଧୀନତା ଯୁଦ୍ଧରେ ଯେତିକି ସ୍ମରଣୀୟ, ଯେଉଁମାନେ ଅନ୍ତରାଳରେ ରହି ବିପ୍ଳବୀଙ୍କୁ ସାହାଯ୍ୟକରନ୍ତି, ଯେଉଁମାନେ ନିଜର ଘରଦ୍ୱାର, ଧନ-ସମ୍ପତ୍ତି ବିପନ୍ନକରି ଫେରାର ବିପ୍ଳବୀକୁ ନିରାପଦ ଆଶ୍ରୟଦାନ କରନ୍ତି, କିମ୍ବା ସ୍ୱାଧୀନତାଯୁଦ୍ଧକୁ ନୈତିକ ଓ ଆର୍ଥିକ ସାହାଯ୍ୟ ଦେଇ ଶକ୍ତିଶାଳୀ କରନ୍ତି, ଏପରି କି ଯେଉଁମାନେ ସ୍ୱାଧୀନତା ଯୁଦ୍ଧ ଓ ଯୋଦ୍ଧାମାନଙ୍କ ସପକ୍ଷରେ ଜନମତ ସୃଷ୍ଟିକରନ୍ତି, ସେମାନଙ୍କ ଭୂମିକା ମଧ୍ୟ କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ବା ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏଭଳି ଘଟଣା ବା ଉଦାହରଣ ଅଭାବ ନାହିଁ ଆମର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଯେତେବେଳେ ଅନାମଧେୟ ମା' ଭଉଣୀ ସାରା ରାତି ଉଜାଗର ରହି ଅନେଇ ରହିଥାଏ ତା'ର ଫେରାର ବିପ୍ଳବୀ ସନ୍ତାନ ବା ଭାଇକୁ ମୁଠେ ଭାତ, ଟିକେ ଶାଗ ବା ମୁନ୍ଦେ ତୋରାଣି ଖୋଇବାକୁ । କୁହାଯାଏ, ଓଡ଼ିଶାର ଖୋର୍ଦ୍ଧା ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁ ଆତ୍ମଗୋପନ କରି ବିପ୍ଳବ ପରିଚାଳନା କରୁଥିବାବେଳେ ଖୋର୍ଦ୍ଧା ଅଞ୍ଚଳର ପ୍ରାୟ ପ୍ରତ୍ୟେକ ଘରେ ପ୍ରତିଦିନ ପଖାଳ ଓ ଶାଗଟିକେ ନିଶ୍ଚୟ ପ୍ରସ୍ତୁତ ହୋଇ ରହିଥାଏ, ଯେପରିକି ବକ୍ସି ଯେକୌଣସି ଘରେ ପହଞ୍ଚିଲେ ବି ଖାଲି ପେଟରେ ଫେରିବେ ନାହିଁ । ଦେଶସେବକ ପ୍ରତି ଦେଶବାସୀଙ୍କର କି ଅକୃତ୍ରିମ ସ୍ନେହ ଓ ଦରଦ । ସ୍ୱାଧୀନତା ଯୁଦ୍ଧରେ ଦେଶବାସୀଙ୍କର କି ସ୍ୱତଃସ୍ଫୁର୍ତ୍ତ ସମର୍ଥନ ! ଏହିଭଳି କେତେ ଅଜ୍ଞାତ ଓ ଅନାମଧେୟ ବ୍ୟକ୍ତିଙ୍କର ଅବିସ୍ମରଣୀୟ ଅବଦାନହିଁ ଆମର ମୁକ୍ତିସଂଗ୍ରାମର ଇତିହାସକୁ ସମୃଦ୍ଧ ଓ ମହିମାମଣ୍ଡିତ କରିଛି ! ଏହା ସ୍ୱୀକାର କରିବାକୁ ହେବ ଯେ, ସେମାନଙ୍କର ସେହି ମହନୀୟ ପ୍ରଚେଷ୍ଟାର ସ୍ୱୀକୃତି ଆମେ ଦେଇନୁ କିମ୍ବା ସେମାନଙ୍କ ଉଦ୍ଦେଶ୍ୟରେ ଆମେ ଦିନକ ପାଇଁ ସୁଦ୍ଧା ଶ୍ରଦ୍ଧାଞ୍ଜଳି ଅର୍ପଣ କରିନାହୁଁ । ତଥାପି ସେମାନେ ସ୍ୱ ପ୍ରତିଭାରେ ଭାସ୍ୱର ।

ଗୈରାଲଗାଁର ଏଭଳି ଏକ ପ୍ରାତଃସ୍ମରଣୀୟ ପରିବାରରେ ମାଷ୍ଟରଦା' ଓ ତାଙ୍କର ଗ୍ରୁପ୍‌ଟି ଡେରାପକାଇଥାନ୍ତି । ମାଷ୍ଟରଦା'ଙ୍କ ଏକାନ୍ତ ଶୁଭେଚ୍ଛୁ ବ୍ରଜେନ ବାବୁ ଧଲଘାଟ ସଂଘର୍ଷ ପରେ ତାଙ୍କ ପାଇଁ ଏକ ନିରାପଦ ସେଲ୍ଟର ଖୋଜି ଖୋଜି ଶେଷରେ ଏଠାରେ ଆଣି ପହଞ୍ଚାଇଛନ୍ତି । ଦଳର ଅନ୍ୟଜଣେ ସକ୍ରିୟ ସଭ୍ୟା ଓ ସମର୍ଥକ 'ବିଶ୍ୱାସଭବନ'ର କୁଳବଧୂ ଶ୍ରୀମତୀ କ୍ଷୀରୋଦା ବିଶ୍ୱାସ ଏହାକୁ ଏକ ପରମ ସୌଭାଗ୍ୟ ମନେକରି ମାଷ୍ଟରଦା'ଙ୍କୁ ଜଣାଇଛନ୍ତି ଆନ୍ତରିକ ସ୍ୱାଗତ । ସେ ତାଙ୍କୁ ଖାଲି ନିଜ ଘରେ ଯେ ରହିବାର ବ୍ୟବସ୍ଥା କରିଛନ୍ତି ତା' ନୁହେଁ; ନିଜେ ମାଷ୍ଟରଦା'ଙ୍କର ଖାଦ୍ୟପେୟ ଓ ବ୍ୟକ୍ତିଗତ ଭଲମନ୍ଦ ଖବର ମଧ୍ୟ ବୁଝିଛନ୍ତି । ସାଙ୍ଗରେ ଅଛନ୍ତି ଶାନ୍ତି ଚକ୍ରବର୍ତ୍ତୀ, କଳ୍ପନା ଦତ୍ତ, ସୁଶୀଲ ଦାସଗୁପ୍ତ ଓ ମଣି ଦତ୍ତ ପ୍ରଭୃତି ଏକାନ୍ତ ଅନ୍ତରଙ୍ଗ ସହକର୍ମୀ ଓ ଦୁଃସାହସୀ ମୁକ୍ତିଯୋଦ୍ଧାଗଣ । ତତ୍କାଳୀନ ବ୍ରିଟିଶ ସରକାରର ପ୍ରଧାନ ଶତ୍ରୁ —ଯାହାର ମୁଣ୍ଡ ପାଇଁ ଦଶହଜାର ଟଙ୍କାର ପୁରସ୍କାର ତିନିବର୍ଷ ହେବ ଝୁଲୁଛି,

ଯା' ନାଁରେ ଗଣ୍ଡା ଗଣ୍ଡା ୱାରେଣ୍ଟ ବୁଲୁଛି, ସେଭଳି ଏକ ବିପଜ୍ଜନକ ଲୋକକୁ ଘରେ ଆଶ୍ରୟଦେବା ଅର୍ଥ ଯେ ବିପଦକୁ କିଣିବା, ଏହା କ୍ଷୀରୋଦା ଦେବୀଙ୍କୁ ଅଜ୍ଞାତ ନଥିଲା । ତଥାପି ସେ ଝୁଙ୍କିକୁ ମୁଣ୍ଡକୁ ନେଇଥିଲେ ବାଧ୍ୟହୋଇ ନୁହେଁ; ବରଂ ଏହାକୁ ଏକ ପରମ ସୌଭାଗ୍ୟ ମନେକରି । ସେ ଏହା ଭଲଭାବରେ ଜାଣିଥିଲେ ଯେ, ତାଙ୍କ ଘର ରାତି ଅଧ ବା ପାହାନ୍ତି ବା ଯେକୌଣସି ମୁହୂର୍ତ୍ତରେ ପୋଲିସ ବା ମିଲିଟାରୀଦ୍ୱାରା ଘେରାଉ ହୋଇପାରେ । ନିର୍ମମ ଗୁଳି ରକେଟବୋମାର ଆଘାତରେ ସେ ନିଜେ ହୁଏତ ଚଳିଯାଇପାରନ୍ତି । ଘର ଜଳିପୋଡ଼ି ପାଉଁଶ ହୋଇଯାଇପାରେ; ଏପରିକି ନିଜର ମାନ ଇଜ୍ଜତ ମଧ ପୋଲିସ ହାତରେ ବରବାଦ ହୋଇଯାଇପାରେ । ଏ ସବୁକୁ ସେ ଦୁଃଖ ବୋଲି ନୁହେଁ; ବରଂ ଆର୍ଶୀବାଦ ଭାବରେ ଗ୍ରହଣକରିବାକୁ ପ୍ରସ୍ତୁତ ହୋଇସାରିଥିଲେ ।

ବହୁଲୋକଙ୍କର ଏହା ଏକ ସହଜାତ ପ୍ରକୃତି ଯେ, ସେମାନେ ସମ୍ପଦ ଅପେକ୍ଷା ବିପଦକୁ ଅଧିକ ଆନନ୍ଦସହକାରେ ସ୍ୱାଗତକରନ୍ତି । ଯେଉଁମାନେ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରରୂପେ ସର୍ବୋଚ୍ଚ ଡିଗ୍ରୀ ହାସଲକରି ସୁଦ୍ଧା ଏକ ସୌଖୀନ ଓ ବିଳାସପୂର୍ଣ୍ଣ ଜୀବନ ଅପେକ୍ଷା ସଶସ୍ତ୍ର ବିଦ୍ରୋହୀର କଣ୍ଟକିତ ଜୀବନକୁ ଅଧିକ ଶ୍ରେୟଃ ମନେକରନ୍ତି, ଯେଉଁମାନେ ଫାଶୀଦଣ୍ଡକୁ ଇଂରେଜ ସରକାରର 'ରସିକତା' ବୋଲି ମନେକରନ୍ତି, ସେମାନଙ୍କୁ ଇତିହାସ ଯାହା କହୁନା କାହିଁକି, ସେମାନେ ଯେ ଅନ୍ତତଃ ମାନସିକ ବ୍ୟାଧିଗ୍ରସ୍ତ ନୁହନ୍ତି, ଏହା ଆମକୁ ସ୍ୱୀକାର କରିବାକୁ ହେବ । ଶ୍ରୀମତୀ କ୍ଷୀରୋଦା ଦେବୀ ଠିକ୍ ଏହି ପର୍ଯ୍ୟାୟଭୁକ୍ତ ନହେଲେ ବି, ତାଙ୍କୁ ଯେ ଜଣେ ଦୁଃସାହସିନୀ ଓ ନିର୍ଭୀକା ମହିଳା କୁହାଯିବ ଏଥିରେ କୌଣସି ଦ୍ୱିରୁକ୍ତି ନାହିଁ ।

କିନ୍ତୁ ବିପଦ ଆସିଲା ଅନ୍ୟ ଦିଗରୁ– ପ୍ରତିବେଶୀ ନେତ୍ରସେନ ଆଡୁ । ବ୍ରଜେନଙ୍କ ବଡ଼ଭାଇ ନେତ୍ରସେନ ମଦ ଖାଇ ଜୁଆ ଖେଳି ପୈତୃକ ସମ୍ପତ୍ତିକୁ ବହୁଦିନୁ ଉଡ଼ାଇ ସାରିଥିଲେ । ଏବେ ଟାଉଟରୀ, ଦଲାଲୀ ଓ ଯା ମୁଣ୍ଡ ବୁଜୁଳା ତା ମୁଣ୍ଡତଳେ, ତା ମୁଣ୍ଡ ବୁଜୁଳା ଯା ମୁଣ୍ଡତଳେ ଦେଇ କୌଣସିମତେ ଚଳୁଛନ୍ତି । ସ୍ତ୍ରୀ କିନ୍ତୁ ସଂପୂର୍ଣ୍ଣ ଭିନ୍ନ ଧରଣର ଲୋକ । ବିପ୍ଳବୀମାନଙ୍କ ପ୍ରତି ତାଙ୍କର ଥିଲା ଅସରନ୍ତି ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି । ସୁତରାଂ ମାଷ୍ଟରଦା'ଙ୍କ ଭଳି ଜଣେ ଦେଶବରେଣ୍ୟ ନେତା ତାଙ୍କର ଏତେ ନିକଟରେ ଅଛନ୍ତି – ଏଥିରେ ଗର୍ବ ଓ ଆନନ୍ଦରେ ଛାତି ତାଙ୍କର ଫୁଲିଉଠୁଛି । ସ୍ୱାମୀଙ୍କ ଢଙ୍ଗ ସେ ଜାଣନ୍ତି, ସୁତରାଂ ତାଙ୍କର ସଂପୂର୍ଣ୍ଣ ଅଜ୍ଞାତରେ ଯେତେବେଳେ ଯେମିତି ପାରୁଛନ୍ତି ମାଷ୍ଟରଦା'ଙ୍କର ଟିକେ ସେବାକରିବାକୁ, ତାଙ୍କର ରୋମାଞ୍ଚକର କଥାବାର୍ତ୍ତାରୁ ଦି'ପଦ ଶୁଣିବାକୁ ସେ ଛୁଟିଯାଉଛନ୍ତି 'ବିଶ୍ୱାସଭବନ'କୁ ଆନନ୍ଦରେ; ତାଙ୍କ ଗୋଡ଼ ତଳେ ଲାଗୁନି । ସେ ଭାବନ୍ତି, 'ସେତୁବନ୍ଧ ନିର୍ମାଣରେ ସାମାନ୍ୟ ଗୁଣ୍ଡୁଚି ମୂଷା ଭଳି ପବିତ୍ର ସ୍ୱାଧୀନତା ଯୁଦ୍ଧରେ ସେ ଯେତିକି ସାହାଯ୍ୟ କରିପାରିବେ ତାହା ତାଙ୍କ ପକ୍ଷରେ ପରମ ସୌଭାଗ୍ୟର ବିଷୟ ।

ଧୂର୍ତ୍ତ ନେତ୍ରସେନର ଚତୁର ଦୃଷ୍ଟି କେବେଠୁଁ 'ବିଶ୍ୱାସଭବନ' ଉପରେ ପଡ଼ିଲାଣି । କିନ୍ତୁ ସେ ପର୍ଯ୍ୟନ୍ତ ନେତ୍ରସେନ ବିଷୟଟିର ସଂପୂର୍ଣ୍ଣ ତାତ୍ପର୍ଯ୍ୟ ବୁଝିପାରିନାହିଁ; ଅନତଃ

ଏଟା ସେ କଦାପି ବୁଝିନାହିଁ ଯେ, ମାଷ୍ଟରଦା'ଙ୍କ ଭଳି ଜଣେ ବିଖ୍ୟାତ ବିପ୍ଳବୀ ନେତା ତାଙ୍କ ହାତ ପାଖରେ ଆତ୍ମଗୋପନ କରିଛନ୍ତି । ତଥାପି ସନ୍ଦେହ ତାଙ୍କର ଦିନକୁ ଦିନ ବଢ଼ିଚାଲିଛି । କୁଆଡ଼େ ଯାଉଛି ଏ (ତାଙ୍କ ସ୍ତ୍ରୀ) ବେଳେବେଳେ ? କାହାଲାଗି ବେଳେ- ବେଳେ କ'ଣସବୁ ଖାଇବାର ନେଇ ଯାଉଛି ? ବ୍ରଜେନ ଘରେ ରାତିରେ କିଏ ସବୁ ଏତେ କାରବାର କରୁଛନ୍ତି ? ଏମିତି ଅଜସ୍ର ପ୍ରଶ୍ନ ସନ୍ଦେହୀ ନେତ୍ରସେନଙ୍କ ମନରେ ।

ବିଶ୍ୱାସୀ ଓ ଦରଦୀ ସ୍ୱାମୀର ଅଭିନୟକରି ଦିନେ ସୁବିଧା-ସୁଯୋଗ ଦେଖି ବୁଝିନେଲା ସ୍ତ୍ରୀଠାରୁ କେତେକ ବିବରଣୀ । ସରଳା ଗ୍ରାମ୍ୟ ସ୍ତ୍ରୀଟିର ବୁଝିବାର ଶକ୍ତି ନଥିଲା 'ସେ କ'ଣ କହୁଛି ବା କ'ଣ ସେ କଥାର ପରିଣତି !' ଆଉ ଟିକେ ନିଶ୍ଚିତ ହେବାପାଇଁ ନେତ୍ରସେନ ଆଉ ଟିକେ ଛଳନା କଲା– ''ଏକଥା ଆଉ ପଚାରିବାକୁ ଅଛି ? ଆରେ ଏଭଳି ଲୋକର ସେବା କରିବା ତ କେଡ଼େ ଭାଗ୍ୟର କଥା ! କେତେ ଜନ୍ମର ତପସ୍ୟାର ଫଳ !''

ସ୍ୱାମୀଠାରୁ ଏହି ଦରଦୀ କଥାପଦକରେ ସରଳବିଶ୍ୱାସୀ ସ୍ତ୍ରୀଙ୍କର ଆଖି ଛଳଛଳ ହୋଇଗଲା । ସାଙ୍ଗେ ସାଙ୍ଗେ ପରିବା ଝୁଲିଟି ଧରି ଝୁଲି ଝୁଲି ଚାଲିଲେ ବଜାରକୁ ନେତ୍ରସେନ; ଦେଖିଲେ ମନେହେବ ନିଶ୍ଚୟ ବଜାରକୁ ଯାଉଛନ୍ତି ସଉଦା କିଣିବାକୁ । ଏମିତି ସୁଯୋଗ ଆଉ ଛାଡ଼ିବାର ନୁହେଁ, ପୋଲିସ ଘୋଷଣା କରିଛି ଦଶହଜାର ଟଙ୍କା ନଗଦ ପୁରସ୍କାର – ହଜାର କି ଦି'ହଜାର ନୁହେଁ, ଏକାବେଳେ ଦଶହଜାର !

ଆଉ ଭାବିପାରିଲାନି ନେତ୍ରସେନ ! ନେତ୍ରସେନ ! କେଉଁ ଜାତିର ସେ ? କେଉଁ ଦେଶର ଅଧିବାସୀ ସେ ? ବଙ୍ଗାଳୀ ? ଭାରତୀୟ ? ନା, ତା'ର ଜାତି ନାହିଁ ବା ଦେଶ ନାହିଁ । ସବୁ ଜାତିରେ, ସବୁ ଦେଶରେ ନେତ୍ରସେନଜାତିର ଲୋକ ଅଛନ୍ତି, ସବୁ ଯୁଗରେ । ଦେଶଦ୍ରୋହିତା, ବିଶ୍ୱାସଘାତକତା, ମାତୃହତ୍ୟା ସେମାନଙ୍କର ଧର୍ମ, ସବୁ ଦେଶର, ଇତିହାସରେ ସେମାନେ କଳଙ୍କ । ସବୁ ଦେଶରେ ସେମାନେ ଘୃଣ୍ୟ, ଅପାଂକ୍ତେୟ, କୁ-ସନ୍ତାନ, କୁଳାଙ୍ଗାର ।

'ବିଶ୍ୱାସଭବନ'ର ଝରକା ପାଖରେ ରାତି ୯ଟାରେ କିଏ ଜଣେ ଠିଆହୋଇ ଘର ଭିତରକୁ ଟର୍ଚ୍ଚ ମାରୁଥାଏ । ଆଖି ପଡ଼ିଗଲା ବ୍ରଜେନ ବାବୁଙ୍କର– ''କାହାକୁ ଦାଦା ସେଠି କ'ଣ ଚିହ୍ନାଇଦେଉଛନ୍ତି ? ଏ ତ ନିଶ୍ଚୟ ଦାଦା, ତେବେ ସେ ଅନ୍ୟ ଲୋକଟି କିଏ ?'' ଦୁଶ୍ଚିନ୍ତା ଓ ଆଶଙ୍କାରେ ବ୍ରଜେନ୍ ବାବୁଙ୍କ ଛାତି ଥରିଉଠିଲା । ନେତ୍ରସେନର ସେ ଅସ୍ୱାଭାବିକ କାଣ୍ଡ ଦେଖି ଓ ଏହାର ଭୟାବହ ପରିଣତି କଥା କଳ୍ପନାକରିବା ବ୍ରଜେନବାବୁଙ୍କ ପକ୍ଷରେ ଆଦୌ ଅସମ୍ଭବ ନଥିଲା । ଅଣନିଶ୍ୱାସୀ ହୋଇ ଦୌଡ଼ିଲେ ସେଇ ଆଡ଼କୁ ବ୍ରଜେନବାବୁ । ଯାହାହେଲେ ବି ମାଷ୍ଟରଦା'ଙ୍କୁ ରକ୍ଷା କରିବାକୁ ହେବ ନିଜ ପ୍ରାଣ ବିନିମୟରେ । ଗାଁର ସମ୍ମାନ, ଦେଶର ଇଜ୍ଜତ, ମୁକ୍ତିସଂଗ୍ରାମର ଭବିଷ୍ୟତ୍ ! ବ୍ରଜେନବାବୁ ଦୌଡୁଛନ୍ତି ଏବଂ ଭାବୁଛନ୍ତି ।

ଅନେକ ଡେରିହୋଇଗଲାଣି, ସବୁ ସରିଗଲାଣି ସେତେବେଳକୁ । କାପ୍‌ଟେନ ଓୟାମସ୍ଲିର ନେତୃତ୍ୱରେ ବିରାଟ ଗୁର୍ଖାବାହିନୀ ଘେରାଉକରିନେଲାଣି 'ବିଶ୍ୱାସ ଭବନ'ର

ତିନି ପାଖରୁ । ଖାଲି ଗୁଳି ନୁହେଁ ରକେଟ ମାଡ଼ ବି ଚାଲିଲା ପୋଲିସପକ୍ଷରୁ, ଯେପରି କି ସଂପୂର୍ଣ୍ଣ ନିରାପଦରେ ପୋଲିସ ପ୍ରବେଶ କରିପାରିବ 'ବିଶ୍ୱାସ ଭବନ' ଭିତରେ । ତିନି ପଟରୁ ପୋଲିସର ଜାଲ କ୍ରମେ କ୍ରମେ ସଙ୍କୁଚିତ ହୋଇଆସୁଛି ଓ ରକେଟ୍‌ର ଘନ ଘନ ବିସ୍ଫୋରଣରେ ସେ ନିବିଡ଼ ଅନ୍ଧାର ରାତିଟାରେ ବି ଦିନ ଭଳି ଆଲୁଅ ବିଚ୍ଛୁରି ହୋଇଯାଉଛି ବିଶ୍ୱାସଭବନର ଆକାଶରେ ।

ବିଦ୍ରୋହୀମାନଙ୍କ ପକ୍ଷରୁ ବି ଆରମ୍ଭ କରିଦିଆଗଲା ଘନ ଘନ ଗୁଳିବର୍ଷଣ; ଯେପରି କି ସେହି ଅବସରରେ ମାଷ୍ଟରଦା'ଙ୍କୁ ଖସାଇ ନିଆଯାଇ ପାରିବ ଅନ୍ୟ କୌଣସି ଏକ ନିରାପଦ ସ୍ଥାନକୁ । ଧନ୍ୟ ବିପ୍ଳବୀ, ଧନ୍ୟ ତୁମର ଧୈର୍ଯ୍ୟ ଓ ଆତ୍ମବିଶ୍ୱାସ । ରକ୍ତମୁଖା ଏକ ବିରାଟ ଗୁର୍ଖାବାହିନୀର ଚକ୍ରବ୍ୟୂହ ଭେଦକରି ତୁମେ ବାହାରିଯିବାକୁ ଉଦ୍ୟମ କଲ !

'ବିଶ୍ୱାସ ଭବନ'ର ବାରିପଟେ ଏକ ଘଞ୍ଚ ବାଉଁଶ ବଣ; ତା' ପଛରେ ଗୋଟାଏ ପଚାପାଣିର ନର୍ଦ୍ଦମା । ଏହି ଦୁଇଟା ପ୍ରତିବନ୍ଧକ କୌଣସିମତେ ଅତିକ୍ରମ କରିଗଲେ ତେଣିକି ନିରାପଦ ସ୍ଥାନକୁ ପଳାଇଯିବା ନିହାତି ଅସମ୍ଭବ ନୁହେଁ । ପ୍ଲାନ୍ ସାଙ୍ଗେ ସାଙ୍ଗେ କାର୍ଯ୍ୟକାରୀ ହେବା ଆରମ୍ଭ ହୋଇଗଲା । ପ୍ରଥମେ ପାରିକରାଗଲା କଳ୍ପନା ଦତ୍ତଙ୍କୁ । ସୁଶୀଳ ଦତ୍ତ କାନ୍ଧରେ ବସାଇ ତାଙ୍କୁ ବାଉଁଶ ବଣ ଓ ନର୍ଦ୍ଦମା ଆରପାଖରେ ଛାଡ଼ିଦେଇ ଆସିଲେ ନିର୍ବିଘ୍ନରେ; ତା'ପରେ ଆଉ ଦି'ଜଣଙ୍କୁ ବି ପାରିକରିଦେଲେ ସେ । ଏଥର ମାଷ୍ଟରଦା'ଙ୍କୁ ନେବାର କଥା । ଦୁର୍ଭାଗ୍ୟର କଥା, ଶେଷ ଥର ଫେରିବାବେଳେ ସୁଶୀଲ ଦାସଗୁପ୍ତଙ୍କ ହାତରେ ହଠାତ୍ ଆସି ବାଜିଲା ପୋଲିସର ଗୁଳି; ସେଟା ଅଚଳ ହୋଇଗଲା ।

ଏକା ଏକା ଯିବାକୁ ଚେଷ୍ଟାକଲେ ମାଷ୍ଟରଦା'; ବାଉଁଶବଣକୁ ଅତିକ୍ରମ କରିଗଲେ ଅବଲୀଳାକ୍ରମେ । ତା'ପରେ ନର୍ଦ୍ଦମା । ସେଇ ନାଳଟାକୁ ଅତିକ୍ରମ କରିଗଲେ ତେଣିକି ଆଉ ଭୟ ନାହିଁ କିଛି । ନିରାପଦରେ ଆରପାଖରେ ପହଞ୍ଚିଯିବେ ବୋଲି ଆଶା କରି ମାଷ୍ଟରଦା' କୁଦାଟାଏ ମାରିଲେ ସେ ନାଳକୁ । ବ୍ୟର୍ଥ ହେଲା ନାହିଁ ତାଙ୍କର ସେ ଦୁଃସାହସିକ ଲମ୍ଫ । ସେ ନର୍ଦ୍ଦମାର ଠିକ ଆଉ ପାଖରେ ଠିଆହୋଇଗଲେ ସତ; କିନ୍ତୁ ପଡ଼ିଗଲେ ଗୋଟାଏ ଲୋକ ଉପରେ । ସେ ଲୋକଟା ଆଉ କେହି ନୁହେଁ–ସେ ଜଣେ ଗୁର୍ଖା ସିପାହି, ଧରିନେଲା ସେ ଖୁବ୍ ଜୋରରେ ମାଷ୍ଟରଦା'ଙ୍କୁ ।

'ଚଟ୍ଟଳସୂର୍ଯ୍ୟ' ପୋଲିସ ହାତରେ ! ଭାରତର ମୁକ୍ତିସଂଗ୍ରାମର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟର ଶେଷ ଯବନିକାର ପତନ ହେଲା । ଭାରତମାତାର ମୁକ୍ତି ଉତ୍ସବ ପଛେଇଗଲା ଆହୁରି କେତେ ବର୍ଷ । ମାଷ୍ଟରଦା' ବନ୍ଦୀ ! ସୂର୍ଯ୍ୟ ରାହୁଗ୍ରସ୍ତ !

X X X X

କି ଆନନ୍ଦ, କି ଉଲ୍ଲାସ ସରକାରୀ ମହଲରେ ମାଷ୍ଟରଦା'ଙ୍କ ବନ୍ଦୀ ହେବା ସମ୍ବାଦରେ, ତାହା ବର୍ଣ୍ଣନା କରିବାକୁ ଭାଷା ପରାଜିତ ହେବ । କିନ୍ତୁ ତା' ଅପେକ୍ଷା ଅଧିକ ଆନନ୍ଦ ଉଲ୍ଲାସ ନେତ୍ରସେନ ହୃଦୟରେ । ମନ ତା'ର ଉଚ୍ଛୁଳି ଉଠୁଛି ତା'ର ବାହାଦୁରୀ ଓ

ପାରିବାରପଣ ଚିନ୍ତାକରି, ନିଜକୁ ନିଜେ ପ୍ରଶଂସା କରି ଚାଲିଛି ନେତ୍ରସେନ । 'ଦଶହଜାର ଟଙ୍କା ନଗଦ ପୁରସ୍କାର,' ଏତେଗୁଡ଼ାଏ ଟଙ୍କା ସେ ଏକାଠି କେବେ ଦେଖିଛି ବୋଲି ତା'ର ମୋଟେ ମନେପଡୁନି । ଏ ଜନ୍ମରେ ତ କଦାପି ହୋଇନି; ପୂର୍ବଜନ୍ମରେ ହୋଇଥିବ ତ ହୋଇଥିବ । ନେତ୍ରସେନର ଧୂର୍ତ୍ତ ନେତ୍ର କ୍ରମେ ବନ୍ଦ ହୋଇଆସିଲା ସେ କଥା ଭାବୁ ଭାବୁ । ସେ ଆଉ ଭାବିପାରିଲାନି । ଜୁଆ ଓ ମଦ ଖଟିର ସୁନେଲି ସ୍ୱପ୍ନ ତାକୁ ଅଧୀର କରିପକାଇଲା । ସେଦିନ ରାତିରେ ଖାଇବସିବା ବେଳେ ଭାତଥାଳି ପାଖରେ ନେତ୍ରସେନ ଏହି ସ୍ୱପ୍ନହିଁ ଦେଖୁଥିଲା । ସମ୍ଭବତଃ ସେ ରାତିର ଅନ୍ନ-ବ୍ୟଞ୍ଜନ ତା ମନମୁତାବକ ହୋଇନଥିଲା । ପୁରସ୍କାର ଟଙ୍କାଟା ପାଇଲେ ସେ ପ୍ରଥମେ କ'ଣ ସବୁ କିଣିବ, ତାହାର ଗୋଟାଏ ତାଲିକା ବୋଧେ କରୁଥିଲା ମନେ ମନେ । ହଠାତ କାହାର ପାଦଶବ୍ଦରେ ଚମକିପଡ଼ିଲା ନେତ୍ରସେନ । ତା'ର ମନେହେଲା 'ପଛ ପଟରୁ ଯେମିତି କିଏ ଆସୁଛି । କ'ଣ ଥାନାକୁ ବଡ଼ବାବୁ ଡକେଇପଠେଇଛନ୍ତି ? ପୁରସ୍କାର ତାହାହେଲେ କ'ଣ ରାତିରେ ମିଳିବ ?'

କିନ୍ତୁ ହଠାତ କେଉଁ ଅଜ୍ଞାତ ଅପରିଚିତ ବ୍ୟକ୍ତିର ଲୌହଦୃଢ଼ ବଳିଷ୍ଠ ହାତରୁ ଖସିଲା ତାଙ୍କ ବେକ ଉପରେ ଏକ ତୀକ୍ଷ୍ଣ ଓଜନଦାର ଭୁଜାଲି । ଆଖିପିଛୁଳାକେ କାନ୍ଧରୁ ମୁଣ୍ଡଟା ଅଲଗାହୋଇଯାଇ ପଡ଼ିଲା ସେ ଅଧାଖିଆ ଭାତଥାଳି ଉପରେ । ଗୋଟାଏ ଚିତ୍କାର ବି ଶୁଭିଲା ନାହିଁ ନେତ୍ରସେନ ମୁହଁରୁ । ଆହା ! ଅର୍ଦ୍ଧ ପୃଥିବୀର ସମ୍ରାଟ୍‌ଙ୍କ ମାନସସନ୍ତାନର କି ଶୋଚନୀୟ ଓ ଦୟନୀୟ ପରିଣତି !

**ବିଚାରପତିଙ୍କ ବିଚାର –**

ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ସଂକ୍ରାନ୍ତୀୟ ଅଭିଯୋଗରେ ଯେଉଁ କେତେ ଜଣ ବିପ୍ଳବୀଙ୍କର ବିଚାରହେଉଥିଲା, ସେହି ଐତିହାସିକ ବିଚାରର ରାୟ ପ୍ରକାଶ ପାଇଲା ୨ ତାରିଖ ମାର୍ଚ୍ଚ ୧୯୩୨ରେ ଦୀର୍ଘ ଏକ ବର୍ଷ ସାତ ମାସ ଶୁଣାଣି ହେଲା ପରେ ।

ବିପ୍ଳବୀମାନଙ୍କୁ ସେ ଯୁଗର ଯେଉଁ ଲବ୍ଧପ୍ରତିଷ୍ଠ ଆଇନଜ୍ଞମାନେ ସାହାଯ୍ୟ କରୁଥିଲେ, ସେମାନଙ୍କ ଅକ୍ଳାନ୍ତ ପରିଶ୍ରମ ବୃଥା ହେଲା ନାହିଁ । ନାନା ଅକାଟ୍ୟ ଯୁକ୍ତି ଓ ଆଇନର ବ୍ୟାଖ୍ୟା ଓ ବିଚାରର ନଜିର ଦେଖାଇ ସେ ପ୍ରାତଃସ୍ମରଣୀୟ ଓକିଲମାନେ ଏଭଳି ପରିସ୍ଥିତି ସୃଷ୍ଟିକଲେ ଯେ, ସରକାରର ନାନା ଷଡ଼ଯନ୍ତ୍ର ସତ୍ତ୍ୱେ ଜଣେ ହେଲେ ବିପ୍ଳବୀଙ୍କୁ ପ୍ରାଣଦଣ୍ଡ ଦିଆଯାଇ ପାରିଲା ନାହିଁ । ୧୯୩୦ ମସିହା ଏପ୍ରିଲ ୧୮ ତାରିଖରେ ହୋଇଥିବା ଇତିହାସପ୍ରସିଦ୍ଧ ଏହି ଯୁବ ବିଦ୍ରୋହ ମାମଲାର ବିଚାର କରିବାକୁ ଗଠିତ ହୋଇଥିବା ବିଶେଷ ଟ୍ରାବ୍ୟୁନାଲରେ ଜିଲା ଓ ଦୌରାଜଜ୍ ମିଃ ଜେ: ଇଉନିଙ୍କୁ (ଆଇ. ସି. ଏସ.) ପ୍ରେସିଡ଼େଣ୍ଟ, ଅବସରପ୍ରାପ୍ତ ଜିଲା ଦୌରାଜଜ ମିଃ ଏନ୍: ଏନ୍; ଲାହିଡ଼ି ଓ ଖାଁ ବାହାଦୂର ଅବଦୂଲ ହାଇଙ୍କୁ ସଭ୍ୟରୂପେ ନିଯୁକ୍ତ କରାଯାଇଥିଲା ।

ବିପ୍ଳବୀମାନଙ୍କ ମଧ୍ୟରୁ ସବୁଠାରୁ ଗୁରୁତର ଅଭିଯୋଗ ଥିବା ଗଣେଶ ଘୋଷ, ଅନନ୍ତ ସିଂହ, ଲୋକନାଥ ବଳ, ଆଜି ଜଣକୁ ଦିଆଗଲା ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ।

୨ ଜଣଙ୍କୁ ତିନିବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା । ଅନ୍ୟ ଗୋଟିଏ ମାମଲାରେ ସରୋଜକାନ୍ତି ଗୁହଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଓ ଅମ୍ବିକା ଚକ୍ରବର୍ତ୍ତୀଙ୍କୁ ଦିଆଗଲା ପ୍ରାଣଦଣ୍ଡ । ଅବଶ୍ୟ ଅପିଲରେ ଏହି ପ୍ରାଣଦଣ୍ଡକୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡକୁ ହ୍ରାସ କରିଦିଆଗଲା ।

ଯେଉଁ ୧୬ ଜଣ ଆସାମୀଙ୍କୁ ଖଲାସ କରି ଦିଆଯାଇଥିଲା, ସେମାନଙ୍କୁ ସ୍ୱତନ୍ତ୍ର ଅର୍ଡ଼ିନାନ୍ସବଳରେ ଜେଲ ଫାଟକ ନିକଟରୁ ପୁନରାୟ ଗିରଫ କରାଗଲା । ଏହି ବିଚାର ଫଳରେ ୩୦ ଜଣ ବିପ୍ଳବୀଙ୍କର ବିଚାର ଶେଷହେଲା ଏବଂ ଏହି ତିରିଶଜଣଯାକ ବିପ୍ଳବୀଙ୍କୁ ଏକ ସ୍ୱତନ୍ତ୍ର ଜାହାଜରେ କୌଣସି ଏକ ଅଜ୍ଞାତ ସ୍ଥାନକୁ ନିଆଗଲା । ସେ ଯାହାହେଉ, କୋର୍ଟରୁ ଜାହାଜ ପାଖକୁ ନେବାବେଳେ ସମସ୍ତ ବିପ୍ଳବୀ ସମବେତ କଣ୍ଠରେ ଗର୍ଜନ କରି ଗାଇଲେ ମାତୃମନ୍ତ୍ର ''ବନ୍ଦେ ମାତରମ୍'' ଏବଂ ତାର ପ୍ରତିଧ୍ୱନି ଶୁଭିଲା ରକ୍ତସ୍ନାତ ଜଲାଲାବାଦ ପାହାଡ଼ ଓ ବଙ୍ଗୋପସାଗରର ଚକ୍ରବାଳଚୁମ୍ବୀ ଫେନିଳ ତରଙ୍ଗ ଦେହରେ – ''ବନ୍ଦେ ମାତରମ୍, ବନ୍ଦେ ମାତରମ'' ।



ଅଧ୍ୟାୟ - ଅଣତିରିଶ

# ଚଟ୍ଟଗ୍ରାମର ପ୍ରତିଧ୍ୱନି

ଚଟ୍ଟଗ୍ରାମ ବିପ୍ଳବୀମାନଙ୍କ ଲକ୍ଷ୍ୟ ସୀମିତ ଥିଲେ ମଧ୍ୟ ଏହାର ପ୍ରଭାବ ବ୍ୟାପକ ହୋଇଥିଲା । ମାଷ୍ଟରଦା' ଭାବିଥିଲେ ଚଟ୍ଟଗ୍ରାମ ଯେତେ କ୍ଷୁଦ୍ର ହେଲେ ବି ତାହାର ସ୍ୱାଧୀନତା ଘୋଷଣା ନିଶ୍ଚିତରୂପେ ଜନମାନସରେ ଆତ୍ମବିଶ୍ୱାସ ସୃଷ୍ଟିକରିବ ଏବଂ ସେହି ଆଦର୍ଶରେ ଦେଶବାସୀ ଉଦ୍‌ବୁଦ୍ଧ ହୋଇ ସ୍ୱ-ସ୍ୱ କ୍ଷେତ୍ରରେ ସଶସ୍ତ୍ର ସଂଗ୍ରାମ, ତାହା ବ୍ୟକ୍ତିଗତ ଭାବରେ ହେଉ କିମ୍ବା ସାମୂହିକ ଭାବରେ ହେଉ, ଆରମ୍ଭ କରିବେ ଏବଂ ତାହା ବ୍ରିଟିଶ ସରକାର ଭିତରେ ଆତଙ୍କ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବିପ୍ଳବୀମାନଙ୍କ ଦ୍ୱାରା ଆତ୍ମବିସର୍ଜନ ଓ କୃତିତ୍ୱ ପ୍ରଦର୍ଶନର ବହୁ ଉଦାହରଣ ସୃଷ୍ଟି କରିବ ଏବଂ ତା' ଫଳରେ ଆହୁରି ଅଧିକ ସଂଖ୍ୟାରେ ମୁକ୍ତିସଂଗ୍ରାମୀ ଯୁଦ୍ଧକ୍ଷେତ୍ରକୁ ଡେଇଁପଡ଼ିବେ; ଇଂରେଜ ଶକ୍ତି ମଧ୍ୟ ସେହି ଅନୁପାତରେ ଦୁର୍ବଳ ହୋଇପଡ଼ିବ । ଇତିହାସରେ ଅସଂଖ୍ୟ ପ୍ରମାଣ ରହିଅଛି, ଯେ ମାଷ୍ଟରଦା'ଙ୍କର ଏହି କଳ୍ପନା ଅକ୍ଷରେ ଅକ୍ଷରେ ସତ୍ୟରେ ପରିଣତ ହୋଇଥିଲା । ଏହାହିଁ ବିପ୍ଳବର ସାଧାରଣ ଧର୍ମ ଓ ପ୍ରକୃତି । ବିପ୍ଳବର ସାମାନ୍ୟ ଅଗ୍ନିକଣା ବିଶ୍ୱର ଯେକୌଣସି କୋଣରେ ଆତ୍ମପ୍ରକାଶ କଲେ ତାହା ବାୟୁମଣ୍ଡଳରେ ଯେଉଁ ଲଘୁଚାପ ସୃଷ୍ଟି କରିବ, ତାହା ନିଶ୍ଚିତରୂପେ ନୂତନ ବୈପ୍ଳବିକ କ୍ରିୟା-ପ୍ରତିକ୍ରିୟାର କାରଣ ହେବ । ଇଂରେଜ ଐତିହାସିକ 'ଲିଓନାର୍ଡ଼' ଯଥାର୍ଥରେ କହିଛନ୍ତି — "The Chittaganja effort which included proclamation of a free Government in a local area (Jalalabad) was the only successful attempt to create larger scale revolution." 1 ଜୈନୈକ ଭାରତୀୟ ଐତିହାସିକଙ୍କ ଭାଷାରେ — "It was unprecedented in the annals of the revolutionary activity in Bengal. Its immediate effect was to stir the youth of the province to join the various Revolutionary Party in a steady stream."2

ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଓ ଜଲାଲାବାଦ ପାହାଡ଼ଯୁଦ୍ଧର ଲୋମହର୍ଷଣକାରୀ ସମ୍ବାଦ ବିଦ୍ୟୁତ୍‌ବେଗରେ ସାରା ଦେଶରେ ପ୍ରଚାରିତ ହୋଇଥିଲା । ସଶସ୍ତ୍ର ମୁକ୍ତିଯୁଦ୍ଧର ସାଫଲ୍ୟ ଏବଂ ଇଂରେଜମାନଙ୍କର ଶୋଚନୀୟ ପରାଜୟର ଲଜ୍ଜାଜନକ ସମ୍ବାଦକୁ ସାଧାରଣ ଜନତା ପାଖରୁ ଲୁଚେଇରଖିବାକୁ ଇଂରେଜମାନେ କେତେକାଂଶରେ କୃତକାର୍ଯ୍ୟ ହୋଇଥିଲେ ସୁଦ୍ଧା ଦେଶ ଭିତରେ ଥିବା ବିଭିନ୍ନ ବିପ୍ଳବୀ ସଂଗଠନ ଓ ବିପ୍ଳବୀମାନଙ୍କ କ୍ଷେତ୍ରରେ ସେମାନେ ବିଫଳହୋଇଥିଲେ ବୋଲି ସ୍ୱୀକାର କରିବାକୁ ପଡ଼ିବ । ବର୍ମାଠାରୁ ପଞ୍ଜାବ ପର୍ଯ୍ୟନ୍ତ ଚଟ୍ଟଗ୍ରାମ

---

1. L.A. Gordon - Bengal - The Nationalistic Movement. Page 49.
2. Prof. B.B. Mishra - Indian Political Parties - Pg. 31

ବିପ୍ଳବର ପ୍ରତିଧ୍ୱନି ଭାରାକ୍ରାନ୍ତ କରି- ଦେଇଥିଲା ଭାରତର ଆକାଶ ବତାସ । ୧୯୩୦ରୁ ୧୯୩୪ ମସିହାରେ ମାଷ୍ଟରଦା'ଙ୍କ ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ଏହା ଚାଲିଥିଲା ଏବଂ ଏଥିମଧ୍ୟରୁ କେତେକ ଅଭ୍ୟୁତ୍‌ଥାନ ପଛରେ ମାଷ୍ଟରଦା' ଓ ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମିର ହାତ ଥିଲା ଓ ଅବଶିଷ୍ଟ ଘଟନା-ଗୁଡ଼ିକ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା ।

**ବଙ୍ଗଳାର ବାଟେଘାଟେ –**

(୧) ସଶସ୍ତ୍ର ମୁକ୍ତିସଂଗ୍ରାମର ଦୁଇଶହ ବର୍ଷ ଇତିହାସରେ ବଙ୍ଗବିପ୍ଳବୀମାନଙ୍କର ବୈପ୍ଳବିକ ସ୍ୱାକ୍ଷର ଯେମିତି ସବୁଠାରୁ ବେଶି ଉଲ୍ଲେଖଯୋଗ୍ୟ । 'ପୂର୍ବ-ଭାରତ ଯୁବ-ବିଦ୍ରୋହ' ମଧ୍ୟ ସେହିଭଳି ବଙ୍ଗଳାକୁ ସବୁଠାରୁ ବେଶି ପ୍ରଭାବିତ କରିଥିଲା । ୧୯୩୦ ମସିହା ମଇ ମାସରେ ଏକ ସଶସ୍ତ୍ର ଅଭିଯାନ ପାଇଁ ବୋମା ପ୍ରସ୍ତୁତ କରୁଥିବାବେଳେ ଅକସ୍ମାତ୍ ବିସ୍ଫୋରଣ ହେବାଫଳରେ ବରିଶାଲର ବିପ୍ଳବୀ ଦେବେନ୍ଦ୍ର ଓ ବିଜୟ ସେନଗୁପ୍ତ ଏକ ପରିତ୍ୟକ୍ତ କୁଟୀରରେ ପ୍ରାଣହରାଇଥିଲେ । ପୋଲିସ ସେହି ସମ୍ବାଦ ପାଇ ଘରଟିକୁ ଘେରାଉକଲା ଏବଂ ସନ୍ଦେହରେ କେତେକ ଯୁବକ ଗିରଫ ହେଲେ ।

(୨) ସେହି ବର୍ଷ ସେପ୍‌ଟେମ୍ବର ୨ ତାରିଖରେ ଚନ୍ଦନନଗରରେ ଗୋଟିଏ ଘଟଣା ଘଟିଲା; ଯାହା କି କେତେଜଣ ବିପ୍ଳବୀଙ୍କର ବିପଦର କାରଣ ହେଲା । ଚନ୍ଦନନଗର କଲିକତାର ଅଦୂରରେ ଏକ ଫରାସୀ ଉପନିବେଶ । ବ୍ରିଟିଶ ଆଇନ-କାନୁନ ସେଠାରେ ପ୍ରଚଳିତ ନଥିବାରୁ ଏବଂ ବେଳେବେଳେ ଫରାସୀ ଓ ଇଂରେଜମାନଙ୍କ ଭିତରେ ବୈରତା ସୃଷ୍ଟିହେଉଥିବାରୁ ତା'ର ସୁଯୋଗରେ ବହୁ ସମୟରେ ଭାରତୀୟ ମୁକ୍ତି-ସଂଗ୍ରାମୀମାନେ ଚନ୍ଦନନଗରରେ ଆଶ୍ରୟ ନିଅନ୍ତି; ଅସ୍ତ୍ରଶସ୍ତ୍ର ମଧ ସଂଗୃହୀତ ହୁଏ । କିନ୍ତୁ ଫରାସୀ ପୋଲିସ ଇଂରେଜମାନଙ୍କ ସହାୟତା କଲେ ଭାରତୀୟ ବିପ୍ଳବୀ ନିଃସହାୟ ଭାବେ ଧରାପଡ଼ନ୍ତି । ଏ କ୍ଷେତ୍ରରେ ତାହାହିଁ ହେଲା । କଲିକତା କାଳୀଘାଟର ୬ ନମ୍ବର ରାଜା ବସନ୍ତ ରାୟ ରୋଡ଼ରେ ଚାରିଜଣ ବିପ୍ଳବୀ ଦୀର୍ଘ ଦିନ ଆତ୍ମଗୋପନ କରିବାପରେ ତାହା ଆଉ ଅସମ୍ଭବ ବୋଧହେବାରୁ ସେମାନେ ଚନ୍ଦନନଗର ପଳାଇଯାଇଥିଲେ । କିନ୍ତୁ ଚନ୍ଦନନଗରର ଗୋନ୍ଦାଲପଡ଼ାଠାରେ ସେମାନେ ଆଶ୍ରୟ ନେଇଥିବା ଅବସ୍ଥାରେ ଫରାସୀ ପୋଲିସର ସହୟତାରେ ବ୍ରିଟିଶ ପୋଲିସ ଉକ୍ତ ଆଶ୍ରୟସ୍ଥଳକୁ ଘେରାଉ କଲା । ଉଭୟଙ୍କ ପକ୍ଷରୁ ପ୍ରବଳ ଗୁଳି ବିନିମୟ ହେଲା; କିନ୍ତୁ ତିନିଜଣ ବିପ୍ଳବୀଙ୍କୁ ଫରାସୀ ପୋଲିସ ଆରେଷ୍ଟ କରିବାକୁ ସମର୍ଥ ହେଲା । ୪ର୍ଥ ବ୍ୟକ୍ତି ହେଉଛନ୍ତି ଦଳର ନେତା ଜୀବନ ଓରଫ୍ ମାଖନ ଘୋଷାଲ । ତାଙ୍କ ଦେହରେ ଗୁଳି ବାଜିବାରୁ ସେ ପଳାଇବାକୁ ଚେଷ୍ଟା କଲାବେଳେ ନିକଟବର୍ତ୍ତୀ ଏକ ପୋଖରୀରେ ପଡ଼ିଗଲେ ଏବଂ ସେଠାରୁ ଉଠିବା ତାଙ୍କ ପକ୍ଷରେ ଆଉ ସମ୍ଭବ ହେଲା ନାହିଁ ।

(୩) 'ଚଟ୍ଟଗ୍ରାମ ବିପ୍ଳବ'ର ପ୍ରଭାବରେ ବ୍ୟକ୍ତିଗତ ପ୍ରଚେଷ୍ଟାରେ ସଶସ୍ତ୍ର ଅଭ୍ୟୁତ୍‌ଥାନ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ ଜନୈକ କଳ୍ପନାପ୍ରବଣ ଯୁବକ ଶ୍ରୀ ସୁକୁମାର କାନୁନ୍‌ଗୋ । ରିଭଲଭର ସାହାଯ୍ୟରେ ଆତ୍ମହତ୍ୟା କରିବାର ଅଭିନୟ କରୁ କରୁ ସେଥିରୁ ଗୁଳି ଫୁଟି

ତାଙ୍କର ଶୋଚନୀୟ ମୃତ୍ୟୁର କାରଣ ହେଲା । ସୁକୁମାରଙ୍କର ଧାରଣା ଥିଲା ଯେ, ସେ ସମସ୍ତ ଗୁଳି ଫୁଟାଇସାରିଛନ୍ତି ଏବଂ ରିଭଲଭର୍‌ରେ ଆଉ ଗୁଳି ନାହିଁ । ଅସାବଧାନତାବଶତଃ ଏହିଭଳି ଏକ ଦୁଃଖଦାୟକ ଘଟଣା ଜଣେ ବିକାଶୋନ୍ମୁଖୀ ବିପ୍ଳବୀର ଅକାଳ ବିୟୋଗର କାରଣ ହୋଇଥିଲା ।

(୪) ଚଟ୍ଟଗ୍ରାମର 'ୟୁରୋପୀୟାନ କ୍ଲବ ଗ୍ରାଉଣ୍ଡ' ଉପରେ ଚଢ଼ାଇ ହୋଇଥିଲା ୧୯୩୪ ମସିହା ଜାନୁୟାରୀ ୭ ତାରିଖରେ ଏବଂ ଜନୈକ ଗୋରା ପୋଲିସ ସୁପରିନ୍‌ଟେନ୍‌ଡେଣ୍ଟ ସେଥିରେ ନିହତ ହୋଇଥିଲେ । ବିପ୍ଳବୀ ନିତ୍ୟରଞ୍ଜନ ସେନ ସେହି ଅଭିଯାନରେ ମଧ୍ୟ ନିହତ ହୋଇଥିଲେ । ଅନ୍ୟତମ ବିପ୍ଳବୀ ହିମାଂଶୁ ବିମଳ ଚକ୍ରବର୍ତ୍ତୀଙ୍କ ଉପରେ ଗୋଟିଏ ନୁହେଁ, ଏକାସଙ୍ଗେ ତିନିଗୋଟି ଗୁଳି ବାଜିଲା ଏବଂ ତତ୍‌କ୍ଷଣାତ୍ ସେ ମୃତ୍ୟୁବରଣ କଲେ । ଅନ୍ୟ ଦୁଇଜଣ ବିପ୍ଳବୀ କୃଷ୍ଣଚନ୍ଦ୍ର ଚୌଧୁରୀ ଓ ହରେନ୍ଦ୍ର ନାଥ ଚକ୍ରବର୍ତ୍ତୀ ଫାଶୀପାଇଲେ ।

(୫) ଏତଦ୍‌ବ୍ୟତୀତ ବଙ୍ଗଳାର ବିଭିନ୍ନ ସ୍ଥାନରେ ବ୍ୟକ୍ତିଗତ ବା ସାମୂହିକ ପ୍ରଚେଷ୍ଟାରେ ପୋଲିସ ଓ ସରକାରୀ ଲୋକମାନଙ୍କ ଉପରେ ସଶସ୍ତ୍ର ଆକ୍ରମଣ ହୋଇଥିଲା ଏବଂ ତା ଫଳରେ ବହୁସଂଖ୍ୟକ ବିପ୍ଳବୀ ସହିଦତ୍ୱ ବରଣ କରିଥିଲେ । ହରିପଦ ମହାଜନ ନାମକ ଜନୈକ ବିପ୍ଳବୀ ପୋଲିସ-ଦୃଷ୍ଟି ଏଡ଼ାଇବା ପାଇଁ ବର୍ମା ପଳାଇଯାଇଥିଲେ; କିନ୍ତୁ ସେଠାରେ ଅସୁସ୍ଥ ହୋଇ ସେ ମୃତ୍ୟୁବରଣକଲେ ।

(୬) ବିପ୍ଳବୀ ଦୀନେଶ ଗୁପ୍ତ ଓ ରାମକୃଷ୍ଣ ବିଶ୍ୱାସଙ୍କର ବିଚାରକରି ଫାଶୀ ଦେଇଥିବା ବିଚାରପତି ଆର୍: ଆର୍: ଗାର୍ଲିକଙ୍କୁ ୧୯୩୧ ଜୁଲାଇ ୨୭ ତାରିଖରେ କୋର୍ଟ ରୁମ ଭିତରେ ପଶି ଗୁଳି କରାଯାଇଥିଲା । ସେଥିରେ ତାଙ୍କର ସଙ୍ଗେ ସଙ୍ଗେ ମୃତ୍ୟୁ ହେଲା । କିନ୍ତୁ ପୋଲିସଗୁଳିରେ ହତ୍ୟାକାରୀ ମଧ ମୃତ୍ୟୁବରଣ କଲେ । ତାଙ୍କ ପକେଟରୁ ମିଳିଲା ଖଣ୍ଡେ କାଗଜ । ସେଥିରେ ଲେଖାଥିଲା ''ଧ୍ୱଂସ ହୁଅ, ଦୀନେଶ ଗୁପ୍ତଙ୍କୁ ଅବିଚାରରେ ଫାଶୀଦେଇଥିବା କାର୍ଯ୍ୟର ପୁରସ୍କାର ନିଅ ।'' (ବିମଳ ଗୁପ୍ତ)

(୭) ଶ୍ରୀ ଶୀତଳ ପ୍ରସାଦ ପାଣ୍ଡେ ଚବିଶପ୍ରଗନ୍ନାର ଜନୈକ ପୋଲିସ କନେଷ୍ଟବଲ । ଚଟ୍ଟଗ୍ରାମ ବିପ୍ଳବ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା ଏବଂ ସେ ଚାକିରି ଛାଡ଼ି ବୈପ୍ଳବିକ ପ୍ରଚେଷ୍ଟାରେ ହାତଦେଲେ । ସରକାରୀ କର୍ତ୍ତୃପକ୍ଷ ଏହି ସମ୍ବାଦ ପାଇ ତାଙ୍କୁ ଆରେଷ୍ଟ କରିବାକୁ ଲାଗିପଡ଼ିଲେ । ୧୯୩୨ ମସିହା ଏପ୍ରିଲ ୩ ତାରିଖରେ ବିପ୍ଳବୀ ଶୀତଳ ପ୍ରସାଦ ସିଆଲଦା-ଦିଲ୍ଲୀ ଏକ୍ସପ୍ରେସରେ ଏକ ବିନା ଲାଇସେନ୍ସ ରିଭଲଭର ନେଇ ଯାଉଥିବାବେଳେ ମଜହର ହୁସେନ ନାମକ ଜଣେ ରେଳବାଇ ପୋଲିସ ସବ୍‌ଇନ୍ସପେକ୍ଟର ସେହି ଖବର ପାଇ ଡବାଭିତରେ ପ୍ରବେଶ କଲେ ଏବଂ ଶୀତଳ ପ୍ରସାଦଙ୍କୁ କେତେକ ପ୍ରଶ୍ନ କଲେ । ସଙ୍ଗେ ସଙ୍ଗେ ବିପ୍ଳବୀର ରିଭଲଭର ଗର୍ଜିଉଠିଲା; ମଜହର ହୁସେନ ଟଳିପଡ଼ିଲେ; କିନ୍ତୁ ନିଜେ ଧରାପଡ଼ିବା ପୂର୍ବରୁ ଶୀତଳ ପ୍ରସାଦ ନିଜ ଗୁଳିରେ ଆତ୍ମୋତ୍ସର୍ଗ କଲେ ।

(୮) ମୁନସୀଗଞ୍ଜର ଅତ୍ୟାଚାରୀ ସ୍ପେଶାଲ ମାଜିଷ୍ଟ୍ରେଟ କାମାକ୍ଷୀ ସେନକୁ ହତ୍ୟାକରି ବିପ୍ଳବୀ କାଳୀପଦ ମୁଖାର୍ଜିଙ୍କର ଫାଶୀ ଚଟ୍ଟଗ୍ରାମ ବିପ୍ଳବର ପ୍ରତିକ୍ରିୟା ବ୍ୟତୀତ କିଛି ନୁହେଁ । ନିର୍ଭୀକ କାଳୀପଦ ବିଚାରବେଳେ କହିଲେ, "I murdered Kamakshy Sen as he oppressed our people."

(୯) କୁମିଲ୍ଲାର ଏ. ଡ଼ି. ଏମ୍. ଇ. ବି. ଏଲିସନଙ୍କୁ ମଧ୍ୟ ହତ୍ୟା କରାଯାଇଥିଲା ୧୯୩୨ ମସିହା ଜୁଲାଇ ୨୯ ତାରିଖରେ; କିନ୍ତୁ କେହି ଧରାପଡ଼ିଲେନାହିଁ ।

(୧୦) ବ୍ରିଟିଶ ପୃଷ୍ଠପୋଷକତାରେ ପ୍ରକାଶିତ ହେଉଥିବା ଏବଂ ଚଟ୍ଟଗ୍ରାମ ବିପ୍ଳବ ବିରୁଦ୍ଧରେ ସବୁଠାରୁ ବେଶି ପ୍ରଚାରକରୁଥିବା କଲିକତାର କୁଖ୍ୟାତ ଦୈନିକ ପତ୍ରିକା 'ଷ୍ଟେଟସ୍‌ମ୍ୟାନ'ର ସଂପାଦକ ୱାଟସନ ସାହେବକୁ ଖତମ୍ କରିବାକୁ ବହୁବାର ଉଦ୍ୟମ ହେଉଥିଲା । ୱାଟସନ ମଲା ନାହିଁ ସତ୍ୟ; କିନ୍ତୁ ସର୍ବମୋଟ ଦୁଇଥର ଗୁରୁତର ଭାବରେ ଆହତହୋଇଥିଲା । ଦ୍ୱିତୀୟ ଥର ଆକ୍ରମଣବେଳେ ଧସ୍ତାଧସ୍ତିରେ ବିପ୍ଳବୀ ମଣି ଲାହିଡ଼ି ଓ ଅନିଲ ଭାଦୁଡ଼ି ସ୍ୱର୍ଗାରୋହଣକଲେ ।

(୧୧) ବିଭିନ୍ନ ସ୍ଥାନରେ ସଶସ୍ତ୍ର ଆକ୍ରମଣର ଆୟୋଜନ କରିଥିବାବେଳେ ବା ସନ୍ଦେହରେ ଗିରଫ ହୋଇ ଜେଲ ବା ପୋଲିସ ହାଜତରେ ରହିଥିବାବେଳେ କିମ୍ବା ଜେଲ ଭିତରେ ପହରାଦାର ଓ ପୋଲିସ ସହ ସଂଘର୍ଷ ବେଳେ ମଧ୍ୟ ଦେଶର ବହୁ ଅମୂଲ୍ୟ ରତ୍ନ ସହିଦତ୍ୱ ବରଣ କରିଥିଲେ । କେହି ବା ପୋଲିସ ଅତ୍ୟାଚାରରେ ମୃତ୍ୟୁ- ବରଣ କରିଥିଲେ । ସେଭଳି ବିପ୍ଳବୀ ସହିଦମାନଙ୍କ ତାଲିକା ଏବେ ମଧ୍ୟ ଅସଂପୂର୍ଣ୍ଣ; କାରଣ ସେଥିରୁ ବହୁଗୁଡ଼ିଏ ଲୋକଲୋଚନ ଅନ୍ତରାଳରେ ଘଟିଥିଲା । ତଥାପି କେତେକ ପ୍ରାତଃସ୍ମରଣୀୟ ନାମ ଉଲ୍ଲେଖ ନ କରେ ସେମାନଙ୍କ ପ୍ରତି ମହାଅନ୍ୟାୟ ହେବ ।

ହିଜଲି କ୍ୟାମ୍ପରେ ବିଚାରଧୀନ ବିପ୍ଳବୀ ଶୈଳେଶ ଚାଟାର୍ଜି ମ୍ୟାଲେରିଆରେ ପୀଡ଼ିତ ହେବା ସତ୍ତ୍ୱେ ତାଙ୍କର ଚିକିତ୍ସା ନକରି ତାଙ୍କୁ ରାଜପୁତାନାର ଦେଉଲି ଜେଲକୁ ପଠାଇଦିଆଗଲା । ଅତ୍ୟଧିକ ଉତ୍ତାପରେ ତାଙ୍କର ମୃତ୍ୟୁ ହେଲା ।

କାନୁନ୍‌ଗୋପଡ଼ାର ବିପ୍ଳବୀ ବ୍ରଜେନ ଚୌଧୁରୀଙ୍କଠାରୁ ମାଷ୍ଟରଦା'ଙ୍କ ସମ୍ପର୍କରେ ସ୍ୱୀକୃତି ଆଦାୟ କରିବା ପାଇଁ ତାଙ୍କ ଉପରେ ଅତ୍ୟଧିକ ଅତ୍ୟାଚାର ହେବାରୁ ସେ ବହରମପୁର ଜେଲ ଭିତରେ ଆତ୍ମହତ୍ୟାକଲେ ।

ପାଟିୟାର ପୟାଜ କାନ୍ତି ଚୌଧୁରୀ ଘରେ ଖାଇବସିଥିବାବେଳେ ପୋଲିସ ତାଙ୍କୁ ଧରିନେଇଗଲା । ତା ପରଦିନ ସକାଳେ ତାଙ୍କର ମୃତଦେହ ଘରକୁ ଫେରାଇ ଦିଆଗଲା । ଅନ୍ୟତମ ବିପ୍ଳବୀ ନରେନ୍ଦ୍ର ଲାଲ ଭଟ୍ଟାଚାର୍ଯ୍ୟ ହିଜଲୀ ଜେଲରେ ଆତ୍ମହତ୍ୟା କରିଥିଲେ । ପୋଲିସ ଜୁଲୁମ ତା'ର ପ୍ରଧାନ କାରଣ ।

ବିପ୍ଳବୀ ରାମକୃଷ୍ଣ ଚକ୍ରବର୍ତ୍ତୀ, ଯେ କି ବିପ୍ଳବୀ ନିର୍ମଳ ସେନଙ୍କ ସହ କାମେରନ୍‌ର ଯୁଦ୍ଧ ବେଳେ ସେଠାରେ ଉପସ୍ଥିତ ଥିଲେ, ତାଙ୍କୁ ପୋଲିସ ଆରେଷ୍ଟ କରି ଜେଲ ହାଜତକୁ ପଠାଇଥିଲା । ସେଠାକାର ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ଯକ୍ଷ୍ମାରୋଗରେ ପୀଡ଼ିତ ହୋଇ ସେ ଅକାଳ ମୃତ୍ୟୁବରଣ କଲେ ।

(୧୨) ବିପ୍ଲବିଣୀ ଶାନ୍ତି ସୁନୀତି– ଚଟ୍ଟଗ୍ରାମ ବିପ୍ଲବର ଆଗ୍ନେୟ ପ୍ରଭାବ କେବଳ ପ୍ରୀତିଲତା ନୁହନ୍ତି, ଅନ୍ୟ ଅଳ୍ପବୟସ୍କା ଝିଅମାନଙ୍କ ଉପରେ ମଧ୍ୟ ପଡ଼ିଥିଲା । ଶାନ୍ତି ଘୋଷ, ସୁନୀତି ଚୌଧୁରୀ ଉଭୟେ ଫୈଜୁନିସା ଗଭର୍ଣ୍ଣମେଣ୍ଟ ଗାର୍ଲ୍‌ସ ହାଇସ୍କୁଲର ଅଷ୍ଟମ ଶ୍ରେଣୀର ଛାତ୍ରୀ । ବୈପ୍ଲବିକ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ସେମାନେ ସ୍କୁଲରେ ଏକ ଛାତ୍ରୀ ସଂଘ ଗଢ଼ିଥିଲେ ଏବଂ ଛୁରା, ତରବାରି ଓ ବନ୍ଧୁକ ଚାଳନାର ଟ୍ରେନିଂ ନେଇଥିଲେ ମୈନାମତି ପାହାଡ଼ର ଗୋପନ ଶିକ୍ଷା କେନ୍ଦ୍ରରେ । କୁମିଲ୍ଲାର କୁଖ୍ୟାତ ଗୋରା ମାଜିଷ୍ଟ୍ରେଟ ସି. ଜି. ବି. ଷ୍ଟିଭେନ୍ସ ଥିଲା ସେମାନଙ୍କର ଲକ୍ଷ୍ୟ । ୧୯୩୨ ମସିହା ଡିସେମ୍ବର ୧୪ ତାରିଖରେ ବଡ଼ିସକାଳୁ ଏକ ଘୋଡ଼ାଗାଡ଼ିରେ ଷ୍ଟିଭେନ୍ସ ବଙ୍ଗଳାରେ ପହଞ୍ଚିଲା ପରେ ସ୍ଥାନୀୟ ଏସ୍. ଡ଼ି. ଓ. ସହ କ'ଣ ଆଲୋଚନା କରୁଥିଲେ । ନିଜକୁ 'ଇଳା ସେନ ଓ ମୀରା ଦେବୀ' ବୋଲି ପରିଚୟ ଦେଇ ସେମାନେ ଷ୍ଟିଭେନ୍ସ ସହ ଭେଟିବାକୁ ଚାହିଁଲେ । ଉଦ୍ଦେଶ୍ୟ– ସ୍କୁଲରେ ଏକ ସନ୍ତରଣ ପ୍ରତିଯୋଗିତାର ଆୟୋଜନରେ ମାଜିଷ୍ଟ୍ରେଟଙ୍କର ସହଯୋଗ ଆବଶ୍ୟକ ବୋଲି ସେମାନେ ଦରଖାସ୍ତରେ ଉଲ୍ଲେଖ କରିଥିଲେ । ଏଭଳି ଏକ ନିରୀହ ପ୍ରସ୍ତାବ ତଥା କିଶୋରୀ ଛାତ୍ରୀ ଦୁଇଜଣଙ୍କୁ ଦେଖି ଷ୍ଟିଭେନ୍ସ୍‌ର ସନ୍ଦେହର କୌଣସି ଅବକାଶ ନଥିଲା । ଶାନ୍ତି ମାଜିଷ୍ଟ୍ରେଟ ସହ କଥାବାର୍ତ୍ତା ହେଉଥିବାବେଳେ ହଠାତ୍ ସୁନୀତି ରିଭଲଭର ଚଳାଇଇଲା ମାତ୍ର ଦୁଇ ହାତ ଦୂରରୁ (ମଝିରେ କେବଳ ଟେବୁଲର ବ୍ୟବଧାନ) । ଏଭଳି ଅପ୍ରତ୍ୟାଶିତ ଘଟଣା ପାଇଁ କେହି ପ୍ରସ୍ତୁତ ନଥିଲେ । ଷ୍ଟିଭେନ୍‌ସ ପଳାଇଯିବାକୁ ଉଦ୍ୟମ କରିବାରୁ ଶାନ୍ତି ମଧ୍ୟ ଗୁଳି ଚଳାଇଲେ । ଷ୍ଟିଭେନ୍‌ସ ଅଧାବାଟରେ ପଡ଼ିଗଲା; ଏସ୍: ଡି: ଓ ମଧ୍ୟ ଆହତ ହେଲେ ।

ଶାନ୍ତି ଓ ସୁନୀତି ଆରେଷ୍ଟ ହେଲେ । ସେମାନଙ୍କୁ ଫାଶୀ ହୋଇ ନଥିଲା ମାତ୍ର ୧୫ ବର୍ଷ ବୟସ ଯୋଗୁଁ – ହେଲା ଯାବଜ୍ଜୀବନ ଜେଲ । ପରେ ସେମାନେ ଖଲାସ ହୋଇଥିଲେ ।

**ଉତ୍ତର ଭାରତର ଗ୍ରାମେ ଗ୍ରାମେ –**

ଚଟ୍ଟଗ୍ରାମର ବନ୍ଧୁକ ଗର୍ଜନ ଓ 'ବନ୍ଦେ ମାତରମ୍' ସ୍ଲୋଗାନ କେବଳ ବଙ୍ଗଳା-ବିହାର ଭିତରେ ସୀମାବଦ୍ଧ ନ ଥିଲା; ତାହା ଆକୁମାରୀ ହିମାଚଳ ସୃଷ୍ଟି କରିଥିଲା ବୈପ୍ଲବିକ ସ୍ପନ୍ଦନ ଓ ପ୍ରେରଣା ଏବଂ ବିପ୍ଲବୀମାନେ ସ୍ୱ-ସ୍ୱ କ୍ଷେତ୍ରରେ ଯେ ଯେମିତି ପାରିଲା, ସେ ଯେଉଁଠି ପାରିଲା, ବ୍ରିଟିଶ ଲୋକ କିମ୍ବା ତାଙ୍କ ସମର୍ଥକଙ୍କ ଉପରେ ଚଢ଼ାଉ ଆରମ୍ଭ କରିଦେଲା ।

୧୯୩୧ ମସିହା ଜାନୁୟାରୀ ୧୩ ତାରିଖରେ ଲାହୋରର ସୁଜାନ ସିଂ କ୍ୟାପଟେନ କୁର୍ଟିସ୍‌କୁ ହତ୍ୟା କରିବା ଉଦ୍ଦେଶ୍ୟରେ ତାହାର ଡାକବଙ୍ଗଳାରେ ପ୍ରବେଶ କରିଥିଲେ । କ୍ୟାପଟେନ ସେତେବେଳେ ବାହାରକୁ ଯାଇଥିବାରୁ ତା'ର ପତ୍ନୀ ଗୁଳିରେ ନିହତ ହେଲେ । ଏହି ଅପରାଧରେ ସୁଜାନ ସିଂଙ୍କୁ ଫାଶୀହୋଇଥିଲା ।

ସେହି ବର୍ଷ ମଇ ମାସରେ ଲାହୋରର ଏକ ବଗିଚାରେ ଜଗଦୀଶ ଓ ତାଙ୍କର ଜନୈକ ବନ୍ଧୁ ଚଟ୍ଟଗ୍ରାମ-ଦମନର ପ୍ରତିଶୋଧ ନେବା ପାଇଁ ବିଚାରୁଥିବାବେଳେ ପୋଲିସର ସମ୍ମୁଖୀନ ହୋଇଥିଲେ । ଉଭୟ ପକ୍ଷରୁ ଗୁଳିବର୍ଷଣ ହେଲା ଏବଂ ଜଗଦୀଶ ସେଠାରେ ସହିଦ ହେଲେ; ଅନ୍ୟ ଜଣକ ବନ୍ଦୀ ହେଲେ ।

ଏହି ଘଟଣାର ପ୍ରାୟ ୧୦ ଦିନ ପରେ ବିପ୍ଳବୀ ସର୍ଦ୍ଦାର ଚନ୍ଦନ ସିଂ ଅନ୍ୟ ଜଣେ ବିପ୍ଳବୀଙ୍କ ସହ କେତେକ ହାତବୋମା ନେଇଯାଉଥିବାବେଳେ ବୋମାର ଆକସ୍ମିକ ବିସ୍ଫୋରଣ ହେବାରୁ ସେ ପ୍ରାଣ ହରାଇଲେ ।

ପାଟନାର ଅତ୍ୟାଚାରୀ ପୋଲିସ ଏସ: ଆଇ: ରାମନାରାୟଣ ସିଂଙ୍କୁ ହତ୍ୟା କରିଥିବା ଅଭିଯୋଗରେ ବିପ୍ଳବୀ ସୁରଜ ନାଥ ଚୌବେ ଫାଶୀ ପାଇଥିଲେ । କିନ୍ତୁ ତାଙ୍କର ଜନୈକ ବଂଧୁ ରାମ ସିଂ ନିଜ ତିଆରି ହାତବୋମାର ବିସ୍ଫୋରଣରେ ପ୍ରାଣ ଦେଲେ ।

୧୯୩୨ ମସିହା ଏପ୍ରିଲ ୨୨ ତାରିଖରେ ଆଣ୍ଡାମାନ ଜେଲରୁ ପଞ୍ଜାବକୁ ସ୍ଥାନାନ୍ତରିତ ହେଉଥିବା ରାଜନୈତିକ ବନ୍ଦୀମାନେ ଚଳନ୍ତା ଟ୍ରେନରେ ପହରାଦାର ପୋଲିସ ଉପରେ ଚଢ଼ାଉ କରି ସେମାନଙ୍କଠାରୁ ବଂଧୁକ ଛଡ଼ାଇନେଲେ । ଏହି ଅପ୍ରତ୍ୟାଶିତ ଆକ୍ରମଣରେ ପହରାଦାରମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ବିପ୍ଳବୀମାନେ ଆଲାର୍ମ ଚେନ୍ ଟାଣି ଗାଡ଼ିରୁ ଓହ୍ଲାଇଗଲେ; କେହି ଜଣେ ସୁଦ୍ଧା ଧରାପଡ଼ିଲେ ନାହିଁ ।

ଚଟ୍ଟଗ୍ରାମ-ବିପ୍ଳବର ପ୍ରଭାବ ବିଳମ୍ବରେ ହେଲେ ସୁଦ୍ଧା ସୁଦୂର ଆଣ୍ଡାମାନ ଜେଲରେ ମଧ ପଡ଼ିଥିଲା । ସେଠାରେ କୁଖ୍ୟାତ ସେଲୁଲାର ଜେଲରେ ଆଜୀବନ କାରାଦଣ୍ଡ ଭୋଗୁଥିବା ରାଜନୈତିକ ବନ୍ଦୀମାନେ ଅତ୍ୟାଚାରରେ ଅତିଷ୍ଠ ହୋଇ ଆନ୍ଦୋଳନ ଆରମ୍ଭ କରିଥିଲେ ମହାନ୍ ବିପ୍ଳବୀ ମହାବୀର ସିଂଙ୍କର ନେତୃତ୍ୱରେ । ସେଠାରେ ଗଣ ଅନଶନ ହୋଇଥିଲା । ଜେଲ କର୍ତ୍ତୃପକ୍ଷ ଏଥିରେ ଆତଙ୍କିତ ହୋଇ ଅନଶନକାରୀମାନଙ୍କୁ ବଳପୂର୍ବକ ନଳୀ ସାହାଯ୍ୟରେ ଖାଇବାକୁ ଦେଲେ । ମହାବୀର ଏହାର ପ୍ରତିରୋଧ କଲେ ଏବଂ ଏହି ଧସ୍ତାଧସ୍ତିରେ ତାଙ୍କର ଫୁସ୍‌ଫୁସ୍‌ରେ ଖାଦ୍ୟ ପ୍ରବେଶକରିଯିବାରୁ ତାଙ୍କର ମୃତ୍ୟୁ ହେଲା । ମାନକୃଷ୍ଣ ନାମଦାସ ଏବଂ ମୋହିତ ମୋହନ ମୈତ୍ର ମଧ ସେହି କାରଣରୁ ମୃତ୍ୟୁବରଣ କରିଥିଲେ ।

**ଗାନ୍ଧୀଜୀଙ୍କ ଗୁଜୁରାଟରେ-**

(୧) ଚଟ୍ଟଗ୍ରାମ-ବିପ୍ଳବର ଠିକ୍ ମାସକ ପରେ ସୋଲାପୁରରେ ଭୟାବହ କାଣ୍ଡ ଘଟିଗଲା । ସ୍ଥାନୀୟ ଲୁଗାକଳ ଶ୍ରମିକମାନଙ୍କ ନେତୃତ୍ୱରେ ଲୋକେ ସ୍ଥାନୀୟ ସମସ୍ତ ସରକାରୀ ଅଫିସ ଦଖଲକରିଗଲେ ଏବଂ କେତେକକୁ ପୋଡ଼ିଜାଳି ଛାରଖାର କରିଦେଲେ । ଉଭୟ ପକ୍ଷରୁ ଗୁଳି ବିନିମୟ ପରେ ଅଧିକାଂଶ ସରକାରୀ ଲୋକ ସହର ଛାଡ଼ି ପଳାଇଗଲେ । ଚଟ୍ଟଗ୍ରାମ ଭଳି ସୋଲାପୁରରେ ମଧ ସ୍ୱାଧୀନ ସରକାର ପ୍ରତିଷ୍ଠା ହେଲା ବୋଲି ଘୋଷଣାକରାଗଲା । ବସ୍ତୁତଃ ଦଶଦିନକାଳ ସୋଲାପୁରରେ ବ୍ରିଟିଶ ସରକାରର ଅସ୍ତିତ୍ୱ ପର୍ଯ୍ୟନ୍ତ ରହିଲା ନାହିଁ । ସରକାର ବହୁସଂଖ୍ୟକ ସୈନ୍ୟ ସାହାଯ୍ୟରେ ସୋଲାପୁର ପୁନର୍ଦ୍ଦଖଲ ପର୍ଯ୍ୟନ୍ତ ଏହି ଅବସ୍ଥା ରହିଥିଲା ।

(୨) ବମ୍ବେଠାରେ ଦଳେ ଯୁବକ ଭଗତ ସିଂ ଏବଂ ମାଷ୍ଟରଦା'ଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସେଠାରେ ବିପ୍ଳବ ପ୍ରଚେଷ୍ଟା ଆରମ୍ଭ କରିଥିଲେ । କିନ୍ତୁ ସେଥିପାଇଁ ଆବଶ୍ୟକ ହେଲା କିଛି ଅସ୍ତ୍ରଶସ୍ତ୍ର । ଜନୈକ ସାହେବ ଏକ ବଂଧୁକ ନେଇ ଟ୍ରେନ୍‌ରେ ଏକା ଯାତ୍ରାକରୁଥିବା

ଦେଖି ବିପ୍ଳବୀ ଯଶୋବନ୍ତ ସିଂହ ଓ ଦେଓ ନାରାୟଣ ତିଓ୍ୱାରୀ ସେହି ଡବାରେ ଉଠିଲେ ଏବଂ ସୁଯୋଗ ଦେଖି ସାହେବକୁ ଛୁରିକାଘାତ କରି ବଂଧୁକ ଛଡ଼ାଇନେଲେ । ସେହି ଆଘାତରେ ସାହେବ ମୃତ୍ୟୁବରଣ କଲା । ପରେ ଉଭୟ ବିପ୍ଳବୀ ଧରା ପଡ଼ି ଫାଶୀପାଇଲେ ।

**ସୁଦୂର ସୀମାନ୍ତରେ –**

ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ଅଧିବାସୀମାନେ ଏକ ସ୍ୱାଧୀନତାପ୍ରିୟ ଜାତି । ଇଂରେଜମାନେ ସୀମାନ୍ତ ପ୍ରଦେଶକୁ ସଂପୂର୍ଣ୍ଣ ଦଖଲକରିବା ପର୍ଯ୍ୟନ୍ତ ସେମାନେ ତା' ବିରୁଦ୍ଧରେ ପ୍ରାଣପଣେ ଲଢ଼ିଥିଲେ । ପରାଧୀନ ହେବାପରେ ମଧ୍ୟ ସେମାନେ ସର୍ବଦା ଇଂରେଜମାନଙ୍କ ଚିନ୍ତାର କାରଣ ହୋଇଥିଲେ । ଏହି ଗ୍ରନ୍ଥର ୨ୟ ଭାଗରେ ସୀମାନ୍ତ ପ୍ରଦେଶର ମହାନ ବିପ୍ଳବୀ ହରିକିଶେନ ଓ ଭକ୍ତରାମଙ୍କ ବିଷୟରେ କିଞ୍ଚିତ୍ ଆଲୋଚନା ହୋଇଛି । ୱାହାବ ଓ କୁକା ବିଦ୍ରୋହରେ ସୀମାନ୍ତ ପ୍ରଦେଶ ଅଧିକାରୀମାନେ ବହୁ ଉଜ୍ଜ୍ୱଳ ସ୍ୱାକ୍ଷର ରଖିଯାଇଅଛନ୍ତି । କିନ୍ତୁ ଚଟ୍ଟଗ୍ରାମ-ବିପ୍ଳବର ଝଲକ କେବଳ ସାଧାରଣ ଅଧିବାସୀ ନୁହନ୍ତି, ବ୍ରିଟିଶ ସୈନ୍ୟବାହିନୀ ଉପରେ ଏଭଳି ଗଭୀର ଭାବରେ ପଡ଼ିଥିଲା ଯେ ସେମାନେ ବିଦ୍ରୋହୀ ଜନତା ଉପରେ ଗୁଳି ଚଳାଇବାକୁ ଅସ୍ୱୀକାର କରି- ଦେଇଥିଲେ । ସେଥିପାଇଁ ପେଶୱାର ବିଦ୍ରୋହକୁ ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ ଇତିହାସରେ ଏକ ଉଜ୍ଜ୍ୱଳତମ ଅଧ୍ୟାୟ ବୋଲି କୁହାଯାଏ । ମଦ ଦୋକାନ ଆଗରେ ଆରମ୍ଭ ହୋଇଥିବା ଶାନ୍ତିପୂର୍ଣ୍ଣ ସତ୍ୟାଗ୍ରହ ହିଂସାତ୍ମକ ପ୍ରତିବାଦରେ ପରିଣତ ହେଲା । ଡେପୁଟି କମିଶନରଙ୍କ ନିର୍ଦ୍ଦେଶରେ ଗୁଳି ବର୍ଷଣ ହେଲା ଜନତା ଉପରେ; କିନ୍ତୁ ସେଥିରେ ମଧ୍ୟ ଜନତା ପଛଘୁଞ୍ଚା ଦେଲା ନାହିଁ । ୨/୧୮ ନମ୍ବର ଗରିଓ୍ୱାଲା ରେଜିମେଣ୍ଟକୁ ଗୁଳି ଚଳାଇବାକୁ ନିର୍ଦ୍ଦେଶ ଦିଆଗଲା; କିନ୍ତୁ ପ୍ଲେଟୁନର ନେତା ଠାକୁର ଚନ୍ଦ୍ର ସିଂ ଗରିଓ୍ୱାଲି ତାଙ୍କ ଅଧୀନରେ ଥିବା ସୈନ୍ୟମାନଙ୍କୁ ଗୁଳି ନ ଚଳାଇବାକୁ ନିର୍ଦ୍ଦେଶ ଦେଲେ । ଏକ ଭୟାବହ ପରିସ୍ଥିତି ସୃଷ୍ଟି ହେଲା ଏବଂ ସରକାରୀ ଅନୁଗତ ସୈନ୍ୟମାନଙ୍କୁ ସେଠାରୁ ପ୍ରତ୍ୟାହାର କରିନିଆଗଲା । ପରେ ବିଦ୍ରୋହୀ ସୈନିକମାନଙ୍କର ବିଚାର ହୋଇ କେତେକଙ୍କୁ ଫାଶୀ ଓ କେତେକଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା ।

**ଶେଷ ଚେଷ୍ଟା –**

ମାଷ୍ଟରଦା' ବନ୍ଦୀ । ଏହା ଅସ୍ୱୀକାର କରିବାର ଉପାୟ ନାହିଁ । ଏହା ସୂର୍ଯ୍ୟାଲୋକ ଭଳି ସତ୍ୟ । ମେଘନାଦ ପାଚିରି ଭଳି ଆକାଶଛୁଆଁ ପାଚିରି ଘେରିରହିଛି ଚଟ୍ଟଗ୍ରାମ ସେଣ୍ଟ୍ରାଲ ଜେଲକୁ । ଚବିଶଘଣ୍ଟିଆ ସଶସ୍ତ୍ର ଜଗୁଆଳି ଜଗିରହିଛନ୍ତି ମାଷ୍ଟରଦା'ଙ୍କ ସେଲକୁ । ଏତେ ଦିନରେ, ଏତେ ପରିଶ୍ରମରେ, ଏତେ ଅର୍ଥ-ବ୍ୟୟରେ ଏବଂ ଏତେ ପୋଲିସ ମିଲିଟାରୀର ପ୍ରାଣ-ବିନିମୟରେ ବ୍ରିଟିଶ ସାମ୍ରାଜ୍ୟବାଦର ଏକନମ୍ବର ଶତ୍ରୁ ଯେଉଁ ସୂର୍ଯ୍ୟସେନକୁ ବନ୍ଦୀକରାଯାଇଛି, ସାରା ପୃଥିବୀର ସବୁ ସାମ୍ରାଜ୍ୟବାଦୀ ସମର୍ଥକମାନେ ତା' ଉପରେ ସତର୍କ ପ୍ରହରୀ ଭଳି ଦୃଷ୍ଟି ରଖିଛନ୍ତି – ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ବିପ୍ଳବୀ ତାରକେଶ୍ୱର ଦସ୍ତିଦାର କିନ୍ତୁ ଏହି କଠୋର ବାସ୍ତବତାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ଗତ ତିନିବର୍ଷ ହେବ ସର୍ବାଧିକ ସଂଖ୍ୟକ ସଶସ୍ତ୍ର ଅଭିଯାନର ପ୍ରତ୍ୟକ୍ଷ ଅଭିଜ୍ଞତା ରହିଛି ତାରକେଶ୍ୱରଙ୍କର ଏବଂ ସେହି ସବୁ ଦୁଃସାହସିକ ଅଭିଯାନର ପଦଚିହ୍ନ ତାଙ୍କର ସର୍ବାଙ୍ଗରେ ବିଦ୍ୟମାନ । ସୁତରାଂ ତାଙ୍କର ବଜ୍ରଗମ୍ଭୀର ଭୀଷ୍ମ ପ୍ରତିଜ୍ଞା ଜେଲଖାନାରୁ ମାଷ୍ଟରଦା'ଙ୍କୁ ମୁକୁଳାଇବାକୁହେବ ।

ଧନ୍ୟ ତାରକେଶ୍ୱର, ଧନ୍ୟ ବିପ୍ଳବୀ ! ନେପୋଲିଅନ କହିଥିଲେ, ''ଅସମ୍ଭବ ଶବ୍ଦ ମୋ ଅଭିଧାନରେ ନାହିଁ ।'' ତୁମ ପକ୍ଷରେ ତାହା ଅଧିକ ପ୍ରଯୁଜ୍ୟ ।

କଥା ଅନୁସାରେ କାମ; କାରଣ ବିପ୍ଳବୀ ତୁଚ୍ଛା କଳ୍ପନାବିଳାସୀ ନୁହେଁ । ସେ ଆକାଶରେ ଅଟ୍ଟାଳିକା ତିଆରିକରେନାଁ; ଯାହା କହେ ସେଇଆ କରେ ଏବଂ ଯେତିକି କରିପାରିବ ସେତିକି କହେ ।

ଯୋଜନା ଅନୁସାରେ କାମ ଆଗେଇଚାଲିଲା ଦ୍ରୁତଗତିରେ । ବିଚାରାଧୀନ ବନ୍ଦୀ ସୁଖେନ୍ଦୁ ଦତ୍ତ ଓ ଅମୂଲ୍ୟ ବିଶ୍ୱାସ ପ୍ରଭୃତିଙ୍କ ସହାୟତାରେ ଏ ପ୍ରସ୍ତୁତିର ଅଗ୍ରଗତି ଅବ୍ୟାହତ । ଜେଲର ସିପାହି, ସେଣ୍ଟ୍ରି, ଜମାଦାର, ୱାର୍ଡ଼ର ଓ ଡାକ୍ତର ସେ ଜାଲରେ ଛନ୍ଦିହୋଇଗଲେଣି । ଆଠଟା ରିଭଲଭର, ପ୍ରଚୁର ବିସ୍ଫୋରକ ଦ୍ରବ୍ୟ, ବିଭିନ୍ନ ସେଲ୍‌ର୍ ଏପରିକି ମେନ୍‌ଗେଟ୍‌ର ଡୁପ୍ଲିକେଟ ଚାବି ମଧ୍ୟ ଜେଲ ଭିତରକୁ ଚାଲାଣ କରାଯାଇ- ସାରିଲାଣି; ଖାଲି ଉପଯୁକ୍ତ ସୁଯୋଗର ଅପେକ୍ଷା । ସବୁ ରେଡ଼ି, ସମସ୍ତ ରେଡ଼ି— କିନ୍ତୁ ସବୁ ଯେମିତି ଗୋଳମାଳ ହୋଇଗଲା । ଶୈଳେଶ ରାୟର ଆକସ୍ମିକ ଆରେଷ୍ଟ ଫଳରେ ସବୁ ଷଡ଼ଯନ୍ତ୍ର ଧରାପଡ଼ିଗଲା । ଆଉ କିଛି କରାଯାଇପାରିଲା ନାହିଁ; ବରଂ ଷଡ଼ଯନ୍ତ୍ରକାରୀଙ୍କର ଗୋପନ ଆଡ୍‌ଡ଼ାର ଠିକଣା ପାଇଗଲା ପୋଲିସ । ଫଳରେ ବାଧ୍ୟ ହୋଇ ତାରକେଶ୍ୱର, କଳ୍ପନା ଦତ୍ତ ଓ ମନୋରଞ୍ଜନ ଦାସ ଗୋପନ ସ୍ଥାନକୁ ପଳାଇ ଯାଇ ଗହୀରା ଗ୍ରାମରେ ଆଶ୍ରୟନେଲେ । ସେଠାରେ ମଧ୍ୟ ସେମାନେ ଯେ ନିରାପଦ ନୁହଁନ୍ତି ଏହା ସମସ୍ତଙ୍କୁ ଜଣାଥିଲା । ସେଥିପାଇଁ ନୂଆ ଆକ୍ସନ୍‌ର ପ୍ରୋଗ୍ରାମ, ନକ୍ସା, ଅଟକଳ ଓ ଷ୍ଟ୍ରାଟେଜି ତିଆରି ଆରମ୍ଭ କରିଦେଲେ ସଙ୍ଗେ ସଙ୍ଗେ, କାରଣ ଯେକୌଣସି ମୁହୂର୍ତ୍ତରେ ସେମାନେ ଧରାପଡ଼ିଯାଇ ପାରନ୍ତି ବୋଲି ଆଶଙ୍କା କରାଗଲା । ବିପ୍ଳବୀମାନଙ୍କର ଏ ଆଶଙ୍କା ସତ୍ୟରେ ପରିଣତ ହେବାକୁ ବିଳମ୍ବ ହେଲା ନାହିଁ । ମୁକ୍ତି-ସଂଗ୍ରାମୀଙ୍କର ସମସ୍ତ ସମ୍ଭାବ୍ୟ ଆଶ୍ରୟସ୍ଥଳ ସେତେବେଳେ ପୋଲିସର ନଖ ଦର୍ପଣରେ । ମାଷ୍ଟରଦା'ଙ୍କ ଆରେଷ୍ଟ ପରେ ସମସ୍ତ ପ୍ରକାରର ସଶସ୍ତ୍ର ଅଭିଯାନର ଇତି ହୋଇଗଲା ବୋଲି ସରକାରର ଯେଉଁ ଧାରଣା ଥିଲା, ତାହା ଦ୍ୱିତିୟ ଚିଟ୍ଟାଗଞ୍ଜ ଜେଲ ଷଡ଼ଯନ୍ତ୍ର ଘଟଣାରେ ମିଥ୍ୟାରେ ପରିଣତ ହେବାରୁ ପୋଲିସ ବିଶେଷ ବିବ୍ରତ ଓ ଚିନ୍ତିତ ହେବା ସ୍ୱାଭାବିକ ।

ମଇ ମାସ ୧୮ ତାରିଖରେ ପୋଲିସ ଘେରାଉ କରିନେଲା ଗହୀରା ଗ୍ରାମ । ସଂଘର୍ଷ ଆରମ୍ଭ ହୋଇଗଲା ସଙ୍ଗେ ସଙ୍ଗେ । କେହି କାହାକୁ ଛାଡ଼ିବାକୁ ନାରାଜ । କିନ୍ତୁ ବିରାଟ ଗୁର୍ଖା ବାହିନୀର ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ରର ମୁକାବିଲା ବା କେତେ ସମୟ କରାଯାଇ ପାରିବ ?

ପୋଲିସ ଗୁଳିରେ ପ୍ରଥମେ ଟଳିପଡ଼ିଲେ ମନୋରଞ୍ଜନ । ତାଙ୍କ ପଛେ ପଛେ ଗୃହସ୍ୱାମୀ ପୂର୍ଣ୍ଣ ତାଲୁକଦାର ଓ ତାଙ୍କ ଭାଇ ନିଶି ତାଲୁକଦାର ନିହତ ହେଲେ । କଳ୍ପନା ଓ ତାରକେଶ୍ୱର ଧରା ହେଲେ । ବିପ୍ଳବୀମାନଙ୍କର ଏହି ପରାଜୟ ଫଳରେ ମାଷ୍ଟରଦା'ଙ୍କୁ ଜେଲରୁ ନେଇଆସିବା ଆଶା ଚିରଦିନ ପାଇଁ ଲୋପ ପାଇଗଲା । ଖାଲି ସେତିକି ନୁହେଁ, ଆରେଷ୍ଟ ଫଳରେ ଖଣ୍ଡ-ବିପ୍ଳବ ଅଧ୍ୟାୟର ଏକପ୍ରକାର ପରିସମାପ୍ତି ହୋଇଗଲା କହିଲେ ଚଳେ । କାରଣ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଓ ପୂର୍ବ-ଭାରତ ସଶସ୍ତ୍ର ଅଭ୍ୟୁତ୍‌ଥାନର ସେ ହେଉଛନ୍ତି ଶେଷ ସେନାପତି, ଯେ କି ମାଷ୍ଟରଦାଙ୍କର ଅନୁପସ୍ଥିତିରେ ସୁଦ୍ଧା କେତେକ ଆକ୍‌ସନ୍‌ର ନେତୃତ୍ୱ ନେବାକୁ ସମର୍ଥ ଥିଲେ । ଭାରତୀୟ ମୁକ୍ତିସଂଗ୍ରାମର ଏହି ଗୌରବୋଜ୍ଜ୍ୱଳ ପର୍ବ ତାରକେଶ୍ୱରଙ୍କ ଗିରଫ ଫଳରେ ପରିସମାପ୍ତି ହେଲା । ଅନନ୍ତ ସିଂହ ଓ ଗଣେଶ ଘୋଷଙ୍କ ପରି ଅମିତବିକ୍ରମୀ ନେତାମାନେ ସେତେବେଳେ ଅଣ୍ଡାମାନର କେଉଁ ଏକ ନିର୍ଜ୍ଜନ ସେଲରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡରେ ସଡୁଛନ୍ତ । ନିର୍ମଳ ସେନଙ୍କ ଭଳି ଦକ୍ଷ ସଂଗଠକ ବହୁଦିନରୁ ସହିଦତ୍ୱ ବରଣ କରିସାରିଛନ୍ତି ଏବଂ ତାଙ୍କର ବହୁପୂର୍ବରୁ ଅସଂଖ୍ୟ ବୀର ସେନାପତି ଦେଶମାତୃକାର ପବିତ୍ର ବେଦୀରେ ସେମାନଙ୍କ ଅମର ଜୀବନକୁ ଉତ୍ସର୍ଗ କରିଅଛନ୍ତି । ସର୍ବୋପରି ସର୍ବାଧିନାୟକ ସୂର୍ଯ୍ୟସେନ ଶୃଙ୍ଖଳାବଦ୍ଧ । ସୁତରାଂ ଭାରତଇତିହାସର ଏହି ରକ୍ତରଂଜିତ ଅଧ୍ୟାୟ ପ୍ରାୟ ଶେଷ ହେବା ଉପରେ ।



ଅଧ୍ୟାୟ - ତିରିଶ

# ଯବନିକା ପତନ

ଆମର ଏକ ଅଦ୍ଭୁତ ଦେଶ । ଭଗତ୍ ସିଂହ, ମଦନଲାଲ, ସୂର୍ଯ୍ୟସେନ ଓ ନେତାଜୀର ଭାରତବର୍ଷରେ ଏଭଳି ଲୋକଙ୍କର ଅଭାବ ନଥିଲା ସେ ଯୁଗରେ, ଯେଉଁମାନେ ବ୍ରିଟିଶ ସାମ୍ରାଜ୍ୟବାଦୀମାନଙ୍କର ସର୍ବଗ୍ରାସୀ ଶୋଷଣ ଓ ଅତ୍ୟାଚାର ମର୍ମେ ମର୍ମେ ଅନୁଭବ କରୁଥିଲେ ସୁଦ୍ଧା ସେମାନଙ୍କର ତଥାକଥିତ ନ୍ୟାୟପରାୟଣତାର ପ୍ରଶଂସାରେ ଶତଜିହ୍ୱ ହୋଇପଡୁଥିଲେ । ଆଜି ବି ବହୁ ତଥାକଥିତ ସଭ୍ୟ ଶିକ୍ଷିତ ଲୋକ ଏ ଦେଶରେ ଅଛନ୍ତି, ଯେଉଁମାନେ ଇଂରେଜମାନଙ୍କର 'ଗଣତନ୍ତ୍ର'କୁ ଶତମୁଖରେ ଧନ୍ୟ ଧନ୍ୟ କହିବା ସଙ୍ଗେ ସଙ୍ଗେ ସେମାନେ ଆଇନର ଶାସନ ବା Rule of Lawକୁ ସର୍ବୋଚ୍ଚ ସମ୍ମାନ ଦିଅନ୍ତି ବୋଲି ପ୍ରଶଂସାକରନ୍ତି । ଇଂରେଜମାନେ ଆଇନର କେବେ ଖିଲାପ କରନ୍ତି ନାହିଁ ବୋଲି ପିଲାଙ୍କ ପାଠ୍ୟପୁସ୍ତକଠାରୁ ଆରମ୍ଭକରି ବଡ଼ ବଡ଼ ଗବେଷଣାପ୍ରସୂତ ଇତିହାସ ବହିରେ ମଧ୍ୟ ଇଂରେଜ ଚାଟୁକାରମାନେ ଆମକୁ ଆଜିଯାଏଁ ଏହା ବୁଝାଇଆସିଛନ୍ତି । ଖାଲି ଇଂରେଜ ଜାତି ନୁହେଁ, ବିଶ୍ୱର ପ୍ରତ୍ୟେକ ସାମ୍ରାଜ୍ୟବାଦୀ ଜାତି ଉପନିବେଶବାସୀଙ୍କୁ ସେମାନଙ୍କ କ୍ରୀତଦାସଠାରୁ ମଧ୍ୟ ଅଧିକ ହୀନଦୃଷ୍ଟିରେ ଦେଖନ୍ତି ଏବଂ ସାମ୍ରାଜ୍ୟବାଦକୁ ଚାଲେଞ୍ଜ କରୁଥିବା ବ୍ୟକ୍ତିମାନଙ୍କୁ ଲୋପ କରିବାପାଇଁ ଯେକୌଣସି ଅମାନୁଷିକ ଓ ପାଶବିକ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । ସାମ୍ରାଜ୍ୟବାଦୀ ଶ୍ରେଣୀ ଚରିତ୍ର ହେଲା ଲୁଟକରିବା– ସେଥିରେ ସଭ୍ୟତା, ଭଦ୍ରତା, ମାନବିକତା ବା ନ୍ୟାୟପରାୟଣତାର ସ୍ଥାନ କାହିଁ ?

ଦେଶ-ବରେଣ୍ୟ ପଞ୍ଜାବକେଶରୀ ଲାଲା ଲଜପତ୍ ରାୟ ଦିନ ଦ୍ୱିପ୍ରହରରେ ପୋଲିସ ଲାଠିଚାର୍ଯରେ ଶୋଚନୀୟ ମୃତ୍ୟୁବରଣକଲେ । ହିଜଲି ଜେଲରେ ରାତି- ଅଧରେ ନିରସ୍ତ୍ର ବନ୍ଦୀଙ୍କ ଉପରେ ଅମାନୁଷିକ ଗୁଳିଚାଳନା ଫଳରେ କେତେ ଲୋମହର୍ଷଣକାରୀ ଘଟଣା ଘଟିଗଲା ଏହି ଭାରତ ବୁକୁରେ । ନେତାଜୀ ସୁଭାଷଙ୍କ ଭଳି ସର୍ବଜନପୂଜିତ ନେତାଙ୍କ ଉପରେ ଜେଲଭିତରେ ଲାଠିମାଡ଼ ସେହି ବ୍ରିଟିଶ ପୋଲିସର କୀର୍ତ୍ତି । ଆହତ, ପୀଡ଼ିତ ଓ ସଂଜ୍ଞାହୀନ ଅବସ୍ଥାରେ ହସପିଟାଲ ବେଡ଼ରେ ଶୋଇଥିବା ବିପ୍ଳବୀ ବିନୟର ଡାହାଣ ହାତ ଆଙ୍ଗୁଳି ସବୁ ବୁଟରେ ଚକଟି ଛିଡ଼ାଇ ଦେଇଥିବା ବ୍ୟକ୍ତି ଅନ୍ୟ କେହି ନୁହେଁ– ସେ ହେଉଛି ତତ୍କାଳୀନ ବଙ୍ଗଳା ପୋଲିସର ସର୍ବୋଚ୍ଚ କର୍ତ୍ତା ଶ୍ୱେତାଙ୍ଗ ସ୍ୱୟଂ ମିଷ୍ଟର୍ ଟେଗାର୍ଟ ।

ପୁରୁଷସିଂହ ଓ ଦେଶବରେଣ୍ୟ ମହାନାୟକ ସୂର୍ଯ୍ୟସେନଙ୍କୁ ପୋଲିସ ହାତ- ମୁଠାରେ ପାଇ ଏକ ଉନ୍ମତ୍ତ କୁକୁର ଭଳି ତାଙ୍କ ଉପରେ ଲମ୍ଫ ପ୍ରଦାନ କଲା । ତାରକେଶ୍ୱର ସେଥିରୁ ମଧ୍ୟ ବାଦ ପଡ଼ିଲେ ନାହିଁ । ପୋଲିସର ଲାଠିମାଡ଼ରେ ଓ ବୁଟ୍ ପ୍ରହାରରେ ମାଷ୍ଟରଦା'ଙ୍କର

ପ୍ରାୟ ସବୁଗୁଡ଼ିକ ଦାନ୍ତ ଭାଙ୍ଗିଦିଆଗଲା ଏବଂ ତାରକେଶ୍ୱର ପ୍ରାୟ ଅନ୍ଧ ହୋଇଗଲେ, କହିଲେ ଚଳେ । ଶରୀର ସର୍ବାଙ୍ଗ କ୍ଷତବିକ୍ଷତ ଓ ରକ୍ତରଂଜିତ ହୋଇଗଲା ଭୟଙ୍କର ଭାବରେ ।

ଯେଉଁମାନେ ଆଜନ୍ମ ଦେଶମାତୃକାର ବେଦୀମୂଳରେ ଉତ୍ସର୍ଗୀକୃତ, ଯେଉଁମାନେ ବିଶ୍ୱାସ କରନ୍ତି ଯେ ଆତ୍ମା ଓ ଶରୀର ଅଭିନ୍ନ; ସୁତରାଂ ଶରୀର ଉପରେ ଯେତେ ଅତ୍ୟାଚାର ହେଲେ ମଧ୍ୟ ଆତ୍ମାର ସେଥିରେ କୌଣସି ସମ୍ପର୍କ ନାହିଁ, ସେହି ମରଣଜୟୀ ବିପ୍ଳବୀମାନଙ୍କର ବରେଣ୍ୟ ଗୁରୁ ଓ ମନ୍ତ୍ରଦାତା ସୂର୍ଯ୍ୟସେନଙ୍କର ଏହି ଦୈହିକ କଷ୍ଟ ବା ଯନ୍ତ୍ରଣାରେ ଇତସ୍ତତଃ ହେବାର କିଛି ନଥିଲା । ସୁତରାଂ ସମସ୍ତ ପ୍ରକାର ଜୁଲମ ସତ୍ତ୍ୱେ ମାଷ୍ଟରଦା' କିମ୍ବା କାରକେଶ୍ୱର ମୁହଁରୁ ପୋଲିସ ପଦେହେଲେ କଥା ଆଦାୟ କରିପାରିଲାନାହିଁ ।

ଲୋକଲୋଚନର ଅନ୍ତରାଳରେ ଓ ପ୍ରାୟ ଅଜ୍ଞାତରେ ଜେଲ ଭିତରେ ବିଚାରର ପ୍ରହସନ ହେଲା । ୧୯୩୦ରୁ ୧୯୩୪ ପର୍ଯ୍ୟନ୍ତ ଓ ଚଟ୍ଟଗ୍ରାମଠାରୁ ଆରମ୍ଭ କରି ମେଦିନୀପୁର ପର୍ଯ୍ୟନ୍ତ ଯେତେ ସଶସ୍ତ୍ର ବିଦ୍ରୋହର ଘଟଣା ଘଟିଛି, ସେ ସବୁ ଘଟଣାରେ ମାଷ୍ଟରଦା'ଙ୍କୁ ଜଡ଼ିତ କରି ତାଙ୍କୁ ସର୍ବୋଚ୍ଚ ଦଣ୍ଡ ଦେବାକୁ ସରକାର କୃତସଂକଳ୍ପ ।

ମୂର୍ଖ ଅପରିଣାମଦର୍ଶୀ ସରକାର, କି ସର୍ବୋଚ୍ଚ ଦଣ୍ଡ ଦେବ ତୁମେ ? ସେ ତ ତାର ଗର୍ବୋନ୍ନତ ଶିରକୁ କେବେଠୁଁ ସମର୍ପଣ କରିସାରିଛି ଏହି ରକ୍ତକ୍ଷୟୀ ମୁକ୍ତିସଂଗ୍ରାମରେ । ତାର କ୍ଷତବିକ୍ଷତ ନିର୍ଜୀବ ଶରୀରଟାକୁ ଫାଶୀକାଠରେ ଝୁଲାଇ ଦେଇ ଏକ ପୈଶାଚିକ ନାରକୀୟ ଆନନ୍ଦ ପାଇବା ଛଡ଼ା କି ଲାଭ ହେବ ତୁମର ?

ମାଷ୍ଟରଦା ଓ ତାରକେଶ୍ୱରଙ୍କୁ ଦିଆଗଲା ଫାଶୀଦଣ୍ଡର ଉପହାର ଓ କଳ୍ପନା ଦତ୍ତଙ୍କୁ ଯାବଜ୍ଜୀବନ ଜେଲ ଦଣ୍ଡ ଦିଆଗଲା ।

X X X X

କ୍ଷତବିକ୍ଷତ ଓ ରକ୍ତ-ଜର୍ଜରିତ ମାଷ୍ଟରଦା'ଙ୍କର ଆଗ୍ନେୟ ଲେଖନୀରୁ ଦେଶବାସୀ ପାଇଲେ ତାଙ୍କର ମହାବିଦାୟର ବାଣୀ, ଦେଶବାସୀଙ୍କ ପ୍ରତି ତାଙ୍କର ଅନ୍ତିମ ଆହ୍ୱାନ, ନିର୍ଦ୍ଦେଶନାମା । ଫାଶୀର ଠିକ ପୂର୍ବଦିନ ଏହି ଚିଠିଟି ଲେଖାଯାଇଥିଲା ଏବଂ ଫାଶୀ- ମଞ୍ଚକୁ ଚୁମ୍ବନ ଦେବାର ତାରିଖ ଏଥିରେ ଉଲ୍ଲେଖ କରାଯାଇଥିଲା । ମୂଳ ଇଂରାଜୀ ଚିଠିର ଅନୁବାଦ ଓଡ଼ିଆରେ ନିମ୍ନରେ ଦିଆଗଲା ।

''ଆଦର୍ଶ ଓ ଏକତା ମୋର ବିଦାୟବାଣୀ । ଫାଶୀରଜ୍ଜୁ ମୋ ମୁଣ୍ଡ ଉପରେ ଝୁଲୁଛି । ମୃତ୍ୟୁ ମୋର ଦ୍ୱାରଦେଶରେ କରାଘାତ କରୁଛି । ମନ ମୋର ଛୁଟିଚାଲିଛି ସେହି ଅସୀମର ଅଭିମୁଖେ । ଏହା ତ ମୋର ସାଧନାର ସମୟ, ଏହା ତ ମୋର ମୃତ୍ୟୁକୁ ଆଲିଙ୍ଗନ କରିବାର ସମୟ, ହଜିଯାଇଥିବା ଦିନଗୁଡ଼ିକ ସ୍ମରଣ କରିବାର ସମୟ ।

''ମୋର ପ୍ରିୟ ଭାଇଭଉଣୀମାନେ, ତୁମ୍ଭମାନଙ୍କ ଉଦ୍ଦେଶ୍ୟରେ କହୁଛି ମୋର ଜୀବନର ଏହି ନିଃସଙ୍ଗତା ଭାଙ୍ଗିଦିଅ । ମୋତେ ଉତ୍ସାହ ଦିଅ । ଏହି ଆନନ୍ଦମୟ, ପବିତ୍ର ଓ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ମୁଁ ତୁମ୍ଭମାନଙ୍କ ପାଇଁ କ'ଣ ରଖିଗଲି ? କେବଳ ମାତ୍ର ଗୋଟିଏ ଜିନିଷ – ତାହା ହେଉଛି ମୋର ସ୍ୱପ୍ନ, ଗୋଟିଏ ସୁନେଲି ସ୍ୱପ୍ନ – 'ସ୍ୱାଧୀନ୍ ଭାରତ'ର ସ୍ୱପ୍ନ । ଏକ ଶୁଭ

ମୁହୂର୍ତ୍ତରେ ମୁଁ ଏହି ସ୍ୱପ୍ନ ଦେଖିଥିଲି । ଆଜୀବନ ସେହି ସ୍ୱପ୍ନ ପଛରେ ମୁଁ ଅକ୍ଳାନ୍ତ ଓ ପ୍ରଚୁର ଉତ୍ସାହସହକାରେ ଉନ୍ମାଦ ଭଳି ଦଉଡ଼ିଛି । ଜାଣେନା, ଏହି ସ୍ୱପ୍ନକୁ ସଫଳ କରିବା ଦିଗରେ ମୁଁ କେତେଦୂର ସଫଳହୋଇଛି । ଜାଣେନା, ସ୍ୱପ୍ନ ପଛରେ ମୋର ଏହି ଅନୁଧାବନ ମୁଁ କେଉଁଠାରେ ବାଧ ହୋଇ ବନ୍ଦକରିବି । ଏହି ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପୂର୍ବରୁ ଯଦି ମୃତ୍ୟୁର ଶୀତଳ ହସ୍ତ ତୁମକୁ ସ୍ପର୍ଶ କରେ ତା'ହେଲେ ଏହି ସ୍ୱପ୍ନକୁ ଅଧିକ ଅନୁଧାବନ କରିବାର ଦାୟିତ୍ୱ ତୁମର ଅନୁଗାମୀମାନଙ୍କ ଉପରେ ଛାଡ଼ିଦିଅ – ଯେପରି ଆଜି ମୁଁ ତୁମମାନଙ୍କ ଉପରେ ଛାଡ଼ିଦେଉଛି ।

ଆଗେଇ ଚାଲ ବନ୍ଧୁଗଣ, ଆଗେଇ ଚାଲ । କଦାପି ପଛରେ ପଡ଼ନା । ଦାସତ୍ୱର ଦିନ ଅସ୍ତାଚଳରେ ପ୍ରବେଶକରିଛି । ସ୍ୱାଧୀନତାର ଉଷା ଆସନ୍ନ । ଉଠ ! ଜାଗ୍ରତ ହୁଅ ! ବିଜୟ ଆମର ସୁନିଶ୍ଚିତ । ୧୯୩୦ ଏପ୍ରିଲ ୧୮ ତାରିଖ ପୂର୍ବଭାରତର ଯୁବ-ବିଦ୍ରୋହକୁ କଦାପି ବିସ୍ମୃତ ହୁଅନାହିଁ । ଜଲାଲାବାଦ, ଜୁଲୁଧା, ଚନ୍ଦନନଗର ଓ ଧଲଘାଟର ସାହସିକ ସଂଗ୍ରାମଗୁଡ଼ିକ ତୁମ୍ଭମାନଙ୍କ ମନରେ ସର୍ବଦା ଜାଗ୍ରତ ରହୁ । ଯେଉଁସବୁ ବୀର ସୈନିକ ସ୍ୱାଧୀନତାର ବେଦୀତଳେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନଙ୍କର ଅମର ନାମଗୁଡ଼ିକ ଇତିହାସରେ ରକ୍ତାକ୍ଷରରେ ଲିପିବଦ୍ଧ କରି ରଖ ।''

''ମୋର ଏକାନ୍ତ ଅନୁରୋଧ, ତୁମର ଏ ସଂଗଠନରେ କଦାପି ବିଭେଦ ସୃଷ୍ଟି କର ନାହିଁ । ଜେଲ ଭିତରେ ଓ ବାହାରେ ମୋର ସମସ୍ତଙ୍କ ପ୍ରତି ଶୁଭେଚ୍ଛା ଓ ଆଶୀର୍ବାଦ ।''

ବିଦାୟ — ବିପ୍ଳବ ଦୀର୍ଘଜୀବୀ ହେଉ

ବନ୍ଦେ ମାତରମ୍,

ଚଟ୍ଟଗ୍ରାମ ଜେଲ — ୧୧(୧୦ ?) ଜାନୁୟାରୀ ୧୯୩୪, ସନ୍ଧ୍ୟା ୭ଟା

୧୯୩୪ରେ ୧୧ ଜାନୁୟାରୀ । ନିଃଶବ୍ଦ ରାତ୍ରି ଧୀରେ ଧୀରେ ପାହିଆସୁଛି ସବୁ ଦିନ ଭଳି । ସେ ରାତ୍ରିଟା କିନ୍ତୁ ବଡ଼ ଭୟଙ୍କର ଭାରତର କୋଟି କୋଟି ସ୍ୱାଧୀନତା ପିପାସୁଙ୍କ ନିକଟରେ । ରାତ୍ରି ଶେଷରେ ସ୍ୱାଧୀନତା ଯୁଦ୍ଧର ମହାନ୍ ସେନାପତି ସୂର୍ଯ୍ୟସେନଙ୍କର ମରଦେହ ଅସ୍ତମିତ ହେବ ଚଟ୍ଟଗ୍ରାମ ଜେଲ ଭିତରେ, ଫାଶୀମଞ୍ଚ ଅନ୍ତରାଳରେ, ଯେଉଁ ପବିତ୍ର ବେଦୀ ସୂର୍ଯ୍ୟସେନଙ୍କ ପୂର୍ବସୂରୀ ବୀର ବିପ୍ଳବୀଙ୍କ ଆତ୍ମଦାନରେ ଆହୁରି ପବିତ୍ର ଓ ମହିମାମଣ୍ଡିତ ହୋଇଅଛି ।

ଚଟ୍ଟଗ୍ରାମ ସେଲର କଣ୍ଡେମଡ୍ ସେଲରେ କିନ୍ତୁ ଅନ୍ୟ ଦୃଶ୍ୟ । ଆଉ କେଇଘଣ୍ଟା ପରେ ଯା'ର ରକ୍ତମାଂସର ଶରୀର ଫାଶୀରଜ୍ଜୁର ଆଲିଙ୍ଗନରେ ଚିରଦିନ ପାଇଁ ନିଃଶେଷ ହୋଇଯିବ, ସେ କିନ୍ତୁ ଗଭୀର ନିଦ୍ରାରେ ଅଭିଭୂତ; ମୁଖମଣ୍ଡଳରେ ଉଦ୍‌ବେଗ ଓ ଆଶଙ୍କାର ସାମାନ୍ୟ ସଙ୍କେତ ସୁଦ୍ଧା ନାହିଁ– ଯେପରି ସମାଧିସ୍ଥ, ଯୋଗୀ । କାରଣ ସେ ବିଶ୍ୱାସ କରେ ଗୀତାରବାଣୀ –

ମଣିଷ ଯେମିତି ପୁରାତନ ବସ୍ତ୍ର ତ୍ୟାଗକରି ନୂତନ ବସ୍ତ୍ର ପରିଧାନ କରେ, ସେହିଭଳି ଆତ୍ମା ଜୀର୍ଣ୍ଣ ଶରୀର ତ୍ୟାଗକରି ନୂତନ ଶରୀର ପରିଗ୍ରହ କରେ ।

କବାଟ ଖୋଲାହେବା ଶବ୍ଦରେ ନିଦ ଭାଙ୍ଗିଗଲା ମାଷ୍ଟରଦା'ଙ୍କର । ଗାଧୁଆ, ନୂଆ

ପୋଷାକପିନ୍ଧା ପ୍ରଭୃତି ପ୍ରହସନ ଶେଷହେଲା । ଏଥର ଫାଶୀମଞ୍ଚକୁ ଯାତ୍ରା । ଦୃଢ଼ ଓ ନିର୍ବିକାର ଗତିରେ ଆଗେଇଚାଲିଲେ ସେଇ ଆଡ଼ୁକୁ ପୁରୁଷସିଂହ ସୂର୍ଯ୍ୟସେନ ଓ ଅମିତବିକ୍ରମୀ ତାରକେଶ୍ୱର ।

କଣ୍ଠରେ କୋଟିଏ ମାତୃମନ୍ତ୍ର – ''ବନ୍ଦେ ମାତରମ୍'' । ସଙ୍ଗେ ସଙ୍ଗେ ପ୍ରତିଧ୍ୱନିତ ହୋଇଉଠିଲା ସେହି ମାତୃବନ୍ଦନାର ସ୍ଲୋଗାନ ଚଟ୍ଟଗ୍ରାମ ଜେଲର ପ୍ରତି ସେଲ, ପ୍ରତି ବାରାକ୍‌ରେ ଥିବା ବିଚାରାଧୀନ ଓ ଦଣ୍ଡଭୋଗୀ ପ୍ରତ୍ୟେକ ବନ୍ଦୀର କଣ୍ଠରୁ । ଦୀର୍ଘଦିନ ହେବ ସମସ୍ତେ ଯେମିତି ଶ୍ୱାସରୁଦ୍ଧ ହୋଇ କାନ ଡ଼େରି ରହିଥିଲେ ମାଷ୍ଟରଦା'ଙ୍କର ସେହି ଅନ୍ତିମ ଦିବସକୁ ଭୟ, ଆଶଙ୍କା ଓ ଶୋକାକୁଳ ହୃଦୟରେ । ସୁତରାଂ ଫାଶୀମଞ୍ଚ ଆଡୁ ଏତେ ସକାଳୁ ''ବନ୍ଦେ ମାରତମ୍' ଧ୍ୱନି ଭାସିଆସିବା ଶୁଣି କାହାରି ମନରେ ଟିକିଏ ହେଲେ ସନ୍ଦେହ ରହିଲା ନାହିଁ ଯେ; ଏହା ମହାନାୟକ ମାଷ୍ଟରଦା'ଙ୍କର ମହା ଆହ୍ୱାନ ।

ଶତାଧିକ କଣ୍ଠର 'ବନ୍ଦେ ମାରତମ୍' ସ୍ଲୋଗାନ୍‌ରେ ଚଟ୍ଟଗ୍ରାମ ଜେଲର ମେଘନାଦ ପାଚେରି ଥରିଉଠିଲା । ତା' ପଛେ ପଛେ ବନ୍ଦୀମାନଙ୍କର ନିଷ୍ଫଳ ଆକ୍ରୋଶ ଓ ଇଂରେଜ ଅନ୍ୟାୟ ବିରୁଦ୍ଧରେ ନିରର୍ଥକ ପ୍ରତିଶୋଧ ଚିନ୍ତା ପୁଂଜୀଭୂତ ହୋଇ ପ୍ରକାଶପାଇଲା ପାଚେରି ଓ ଜେଲକାଛ ଉପରେ ବଜ୍ରସମ ମୁଷ୍ଟି ଆଘାତରେ । ଏହି ସ୍ପର୍ଦ୍ଧା ଅସହ୍ୟହୋଇଉଠିଲା ଜେଲ କର୍ତ୍ତୃପକ୍ଷଙ୍କ ପକ୍ଷରେ । ଏହି ଔଦ୍ଧତ୍ୟକୁ ସ୍ତବ୍ଧକରିଦେବାପାଇଁ ଝାମ୍ପିପଡ଼ିଲେ ବନ୍ଦୀମାନଙ୍କ ଉପରେ ଗୁର୍ଖା ପୋଲିସ । ଚାଲିଲା ନିର୍ମମ ଲାଠିଚାଳନା । କିନ୍ତୁ ଏ ସମସ୍ତ ନିର୍ମମତା ଓ କଠୋରତା ସତ୍ତ୍ୱେ ବନ୍ଦୀମାନେ ଗର୍ଜନ କଲେ ଶତକଣ୍ଠରେ – ମାଷ୍ଟରଦା' କୀ ଜୟ, ମାଷ୍ଟରଦା' ଜିନ୍ଦାବାଦ, ଇନକିଲାବ – ଜିନ୍ଦାବାଦ ।

ଫାଶୀମଞ୍ଚ ଆଡୁ ପୁଣି ଭାସିଆସିଲା ସେହି ମହାମନ୍ତ୍ର ''ବନ୍ଦେ ମାତରମ୍'' । ଧୀରେ ଧୀରେ ମିଳେଇଗଲା ଚଟ୍ଟଗ୍ରାମର ଆକାଶ-ବତାସରେ ଗୋଟିଏ ଧ୍ୱନି – ''ବନ୍ଦେ ମାତରମ୍, ବନ୍ଦେ ମାତରମ୍ ।''

କିନ୍ତୁ ମାଷ୍ଟରଦା' ଓ ତାରକେଶ୍ୱରଙ୍କ ମୃତଦେହରେ ଉପଯୁକ୍ତ ଓ ମର୍ଯ୍ୟାଦାପୂର୍ଣ୍ଣ ଶେଷ ସଂସ୍କାର କରିବାକୁ ତାହା ତାଙ୍କର କୋଟି କୋଟି ଗୁଣମୁଗ୍ଧ ଦେଶବାସୀଙ୍କୁ ଦିଆଯାଇନଥିଲା । ସରକାର ଭାବିଲେ – "If consigned to fire from his ashes might rise Phoenix- like hundreds as heroes who would fight the sworn enemy of the Motherland,"2 ଯଦି ନିଆଁରେ ପୋଡ଼ିଦିଆଯାଏ, ସେହି ଭସ୍ମରୁ ଫୋନେକ୍ସ(୨) ଭଳି ବୀର ଜନ୍ମଲାଭ କରିବେ, ଯେ କି ମାତୃଭୂମିର ଶତ୍ରୁ ବିରୁଦ୍ଧରେ ଲଢ଼ିପାରନ୍ତି ।

ସରକାର ନିରୁପାୟ ହୋଇ ଦୁଇଟିଯାକ ମୃତ ଦେହକୁ ଜନସାଧାରଣଙ୍କ ଅଜ୍ଞାତରେ 'ଏଚ: ଏମ୍: ଏସ୍: ଏପିନଘାମ' ନାମକ ଜାହାଜରେ ଗଭୀର ସମୁଦ୍ରକୁ ନେଇ ସେଠାରେ ଓଜନଦାର ଜିନିଷ ସହ ଜଳରେ ନିକ୍ଷେପ କରିଥିଲେ ।



1. K.C. Ghosh - The Roll of Honour - Pg. 489

2. ଫୋନେକ୍ସ - ଗ୍ରୀକ୍ ପୁରାଣବର୍ଣ୍ଣିତ ପକ୍ଷୀ; ଯେ କି ପାଞ୍ଚ ଶହ ବା ଛ'ଶହ ବର୍ଷ ପର୍ଯ୍ୟନ୍ତ ଆରବ ମରୁଭୂମିରେ ବାସ କରି ଚିତାରେ ପ୍ରାଣ ବିସର୍ଜନ କରିଥିଲା ଏବଂ ସେହି ଭସ୍ମସ୍ତୂପରୁ ଅଧିକ ଶକ୍ତିଶାଳୀ ହୋଇ ଜନ୍ମଗ୍ରହଣ କରିଥିଲା । F.N.58

ଅଧ୍ୟାୟ - ଏକତିରିଶ

# ମୁକ୍ତିତୀର୍ଥରେ ମୁକ୍ତିଯୁଦ୍ଧ

ବ୍ରିଟିଶ ଶାସନ କାଳରେ 'କଳାପାଣି' କହିଲେ କୋଟି କୋଟି ଭାରତବାସୀଙ୍କ ମନରେ ହୃତ୍‌କମ୍ପ ସୃଷ୍ଟିହେଉଥିଲା । ଏହି ଭୟାବହ ଶବ୍ଦ ଉଚ୍ଚାରଣ କଲେ କେତେ ଲାଞ୍ଛନା, ନିର୍ଯାତନା, ଦୁଃଖ ଓ ଯନ୍ତ୍ରଣାର ଚିତ୍ର ମନ ମଧ୍ୟରେ ନାଚିଉଠି ଲୋମ ଟାଙ୍କୁରି ଉଠୁଥିଲା । କିନ୍ତୁ ବାସ୍ତବରେ ଏହା ଏକ ପବିତ୍ର ଶବ୍ଦ । 'କଳାପାଣି' ବା ଦ୍ୱୀପାନ୍ତର ଦଣ୍ଡ ଯେତେ ଲୋମହର୍ଷଣକାରୀ ହେଲେ ମଧ୍ୟ ବଙ୍ଗୋପସାଗରର ଗଭୀର ବକ୍ଷରେ ଅବସ୍ଥିତ ଏହି କାରାଗାରରେ ଭାରତର ମୁକ୍ତି ସଂଗ୍ରାମର ଓ ଭାରତମାତାର ବହୁ ଅମୂଲ୍ୟରତ୍ନ କାରାରୁଦ୍ଧ ଅବସ୍ଥାରେ ପ୍ରାଣଦାନ କରିଥିବାରୁ ଏବଂ ଜେଲ କର୍ତ୍ତୃପକ୍ଷଙ୍କ ଅମାନୁଷିକତା ବର୍ବରତା ବିରୁଦ୍ଧରେ ଆନ୍ଦୋଳନ କରି ଚରମ ନିର୍ଯାତନା ସହ୍ୟ କରିଥିବାରୁ ଏହାକୁ ଯଥାର୍ଥରେ ଏକ 'ମୁକ୍ତିତୀର୍ଥ' ବୋଲି କୁହାଯାଇଅଛି । ୧୮୫୭ର ମହାବିଦ୍ରୋହ(୧ମ ଭାଗ ଦ୍ରଷ୍ଟବ୍ୟ)ରେ ଅଭିଯୁକ୍ତ ସିପାହିମାନଙ୍କୁ ଏଠାରେ କାରାରୁଦ୍ଧ କରାଯାଇଥିଲେ ସୁଦ୍ଧା ବିଂଶ ଶତାବ୍ଦୀର ୧ମ ଓ ୨ୟ ଦଶକରେ ହୋଇଥିବା ବିଭିନ୍ନ ସଶସ୍ତ୍ର ବିପ୍ଳବରେ ଅଭିଯୁକ୍ତ ଦେଶପ୍ରେମୀ ଏଠାକୁ ଆସିବା ପରେ ଯାଇ ଏହା ଦେଶବାସୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ନଚେତ୍ ଇଂରେଜ ସରକାର ବସ୍ତୁତଃ ଏହାକୁ ଲୋକଲୋଚନର ଅନ୍ତରାଳରେ ରଖିଥିଲେ । ଯଦିଓ ୧୯୨୧ ଓ ୧୯୩୧ ଜନଗଣନା ରିପୋର୍ଟରେ ଆଣ୍ଡାମାନ ଦ୍ୱୀପପୁଞ୍ଜ ସମ୍ପର୍କରେ ବିସ୍ତୃତ ବିବରଣୀ ରହିଛି; କିନ୍ତୁ ଏଥିରେ ଆଣ୍ଡାମାନର ବନ୍ଦୀ ଜୀବନ ସମ୍ପର୍କରେ ଜାଣିଶୁଣି ନୀରବତା ଅବଲମ୍ବନ କରାଯାଇଅଛି । ଫଳରେ 'କଳାପାଣି' ସବୁଦିନ ଭାରତୀୟମାନଙ୍କ ପାଇଁ ଏକ ଭୟାବହ ଶବ୍ଦ ଭାବରେ ଜନମାନସରେ ରହିଆସିଅଛି । ଇଂରେଜ ସରକାର ମଧ୍ୟ ଚାହୁଁଥିଲେ ଯେ, 'କଳାପାଣି'ର ହୃଦୟବିଦାରକ ସ୍ମୃତି ଭାରତୀୟ ଜନମାନସରେ ରହସ୍ୟାବୃତ ହୋଇ ରହିବା ସରକାର ପକ୍ଷରେ ଲାଭଜନକ । 'କଳାପାଣି'ର ଭୟ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭୀତତ୍ରସ୍ତ ରଖିବ ବୋଲି ସରକାର ଆଶା କରିବା ସ୍ୱାଭାବିକ । କିନ୍ତୁ ବାସ୍ତବରେ ତାହା ହୋଇନାହିଁ; ବରଂ କାରାଗାରର ନିର୍ମମତା ସତ୍ତ୍ୱେ ବନ୍ଦୀ ମୁକ୍ତିସଂଗ୍ରାମୀମାନେ ବାରମ୍ବାର କର୍ତ୍ତୃପକ୍ଷଙ୍କ ସହ ସଂଗ୍ରାମ କରିଛନ୍ତି ଏବଂଶେଷରେ ୧୯୩୭ ମସିହାରେ ସରକାର ବାଧ୍ୟ ହୋଇ 'ଦ୍ୱୀପାନ୍ତର'ଦଣ୍ଡକୁ ବାତିଲ କରି ଦେଇଛନ୍ତି ଏବଂ ସେତେବେଳେ ଜୀବିତ ଥିବା ସମସ୍ତ ରାଜନୈତିକ ବନ୍ଦୀ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଅଛନ୍ତି ।

ଦ୍ୱୀପାନ୍ତର-ଦଣ୍ଡକୁ କାହିଁକି 'କଳାପାଣି' ଦଣ୍ଡ ବୋଲି କୁହାଯାଉଥିଲା, ତା'ର କୌଣସି ଯୁକ୍ତିଯୁକ୍ତ କାରଣ ମିଳିବା ଏକ ଦୁରୂହ ବ୍ୟାପାର । ସ୍ୱୟଂ ବନ୍ଦୀମାନେ ସେଠାରୁ

ଖଲାସ ହେବାପରେ ସେମାନଙ୍କର ବନ୍ଦୀ-ଜୀବନର ଯେଉଁ ବିବରଣୀ ପୁସ୍ତକ ଆକାରରେ ପ୍ରକାଶ କରିଅଛନ୍ତି, ସେଗୁଡ଼ିକରେ ମଧ୍ୟ 'କଳାପାଣି'ର ନାମକରଣ ସମ୍ପର୍କରେ ବିଶେଷ କିଛି ଉଲ୍ଲେଖ ନାହିଁ । ଜନୈକ ସରକାରୀ କର୍ମଚାରୀ ସୁଶୀଲ ଚତୁର୍ବେଦୀ, ଯେ କି (୧୯୬୫- ୬୯) ପୋର୍ଟବ୍ଲେଆର୍‌ରେ ଏ. ଡ଼ି. ଏମ୍. ଥିଲେ, ସେ 'ଆଣ୍ଡାମାନ ଦ୍ୱୀପସମୂହ' ନାମରେ ହିନ୍ଦୀରେ ଖଣ୍ଡେ ବହି ଲେଖିଛନ୍ତି । ସେଥିରେ ଉଲ୍ଲେଖ ଅଛି ଯେ, ''ବିଷୁବରେଖା ଉପରେ ଅବସ୍ଥିତ ସମୁଦ୍ରରେ ସର୍ବଦା ମେଘ ଘୋଡ଼େଇ ହୋଇ ରହିଥିବାରୁ ଏଠାରେ ସମୁଦ୍ରଜଳ ଗାଢ଼ ନୀଳ ବା ଈଷତ୍ କଳା ରଙ୍ଗ ଦେଖାଯାଏ । ସେଥିପାଇଁ ଏହା 'କଳାପାଣି' ହୋଇପାରିଥାଏ ।''

ଶ୍ରୀ ଚତୁର୍ବେଦୀଙ୍କର ଉପରୋକ୍ତ ମତକୁ ଗ୍ରହଣ କରିବାକୁ ମନରେ ସ୍ୱତଃ ଦ୍ୱିଧା ହୁଏ । ସମ୍ଭବତଃ 'ଦ୍ୱୀପାନ୍ତର' ଦଣ୍ଡକୁ 'ମୃତ୍ୟୁଦଣ୍ଡ' ଅପେକ୍ଷା ଅଧିକ ଯନ୍ତ୍ରଣାଦାୟକ ବୋଲି ମନେ କରାଯାଉଥିବାରୁ ଏହାକୁ 'କଳାପାଣି'' ବୋଲି କୁହାଯାଏ । ଜନ୍ମଭୂମି- ଠାରୁ ଶହ ଶହ ମାଇଲ ଦୂରରେ (କଲିକତାଠାରୁ ଆଣ୍ଡାମାନର ଦୂରତା ୭୭୫ ସାମୁଦ୍ରିକ ମାଇଲ ଓ ମାନ୍ଦ୍ରାଜ ବନ୍ଦରଠାରୁ ୭୫୮ ସାମୁଦ୍ରିକ-ମାଇଲ ଅଟେ (୧ ସାମୁଦ୍ରିକ-ମାଇଲ = ୨୦୦୦ ଗଜ) । ଆତ୍ମୀୟସ୍ୱଜନଙ୍କଠାରୁ ବିଚ୍ଛିନ୍ନ ହୋଇ ସମୁଦ୍ରପରିବେଷ୍ଟିତ ଏକ ନିର୍ଜନ କୋଠରିରେ ଆଜୀବନ ବାସକରିବା, ସ୍ୱଳ୍ପ ଖାଦ୍ୟ, ଅଖାଦ୍ୟ ଏପରିକି ପଶୁଖାଦ୍ୟ ଖାଇ, ପଶୁ ଅପେକ୍ଷା ଅଧିକ ଶାରୀରିକ ଶ୍ରମକରିବା ଏବଂ ସେଥିରେ ପୁଣି ବେଡ଼ି-କୋରଡ଼ା ଓ ବେତ୍ରାଘାତ ନୀରବରେ ସହ୍ୟ କରିବା ଓ ଲାଞ୍ଛନା, ଅପମାନ ଅମ୍ଳାନବଦନରେ ଗ୍ରହଣ କରିବା ନିଶ୍ଚିତରୂପେ ମୃତ୍ୟୁଦଣ୍ଡ ଅପେକ୍ଷା ଅଧିକ ଭୟାବହ ଓ ଯନ୍ତ୍ରଣାଦାୟକ । ସେଥିପାଇଁ 'ଦ୍ୱୀପାନ୍ତର' ଦଣ୍ଡକୁ 'କଳାପାଣି' ବୋଲି ମନେ- କରିବାରେ କୌଣସି ବିଚିତ୍ରତା ନାହିଁ । ଆମ ସ୍ୱାଧୀନତା ସଂଗ୍ରାମର ପ୍ରଖ୍ୟାତ ଐତିହାସିକ ଡକ୍ଟର ରମେଶ ଚନ୍ଦ୍ର ମଜୁମଦାର ମହାଶୟ 'ଆଣ୍ଡାମାନ' ସମ୍ପର୍କରେ ଏକ ତଥ୍ୟପୂର୍ଣ୍ଣ ମୂଲ୍ୟବାନ୍ ଗ୍ରନ୍ଥ ଲେଖିଅଛନ୍ତି । ସେଥିରେ ଉଲ୍ଲେଖ କରିଅଛନ୍ତି– "It is indissolubly bound up with tragic memories of the sufferings and sacrifices of the heroic sons of India and has acquired a notoriety which time alone can efface. It is now looked upon as a sacred place of pilgrimage sanctified by the dust of Martyr's feet whose history naturally evokes interest and curiosity in the minds of every educated Indian"(1) ଭାରତମାତାର ବୀର ପୁତ୍ରମାନେ ଭୋଗିଥିବା ବହୁ ଲାଞ୍ଛନା, ନିର୍ଯାତନା ଓ ତ୍ୟାଗର ସ୍ମୃତି ଏହା ସହ ନିବିଡ଼ ଭାବେ ଜଡ଼ିତ ଏବଂ ଏହା ଏଭଳି କୁଖ୍ୟାତି ଅର୍ଜନ କରିଅଛି ଯେ, କେବଳ କାଳର ମହାସ୍ରୋତ ଏହାକୁ ଜନମାନସରୁ ନିଶ୍ଚିହ୍ନ କରିପାରେ । ସହିଦର ପଦଧୂଳିରେ ପବିତ୍ର ହୋଇଥିବା ଏହି ସ୍ଥାନକୁ ଆଜି ଏକ ପବିତ୍ର ତୀର୍ଥଭୂମି ରୂପେ ବିବେଚନା କରାଯାଉଅଛି; ଯାହାର ଇତିହାସ ପ୍ରତ୍ୟେକ ଶିକ୍ଷିତ ଭାରତୀୟ ମନରେ ସ୍ୱତଃ ଆଗ୍ରହ ଓ କୌତୂହଳ ସୃଷ୍ଟି କରେ ।

1. R.C. Majumdar - Penal Settlement in the Andamans - Pg. 47

ପ୍ରଥମେ ୧୯୫୭ ମହାବିଦ୍ରୋହରେ ଅଭିଯୁକ୍ତ ସିପାହିମାନଙ୍କୁ ଏଠାକୁ ରାଜନୈତିକ ବନ୍ଦୀରୂପେ ପଠାଯାଇଥିଲା । ସମ୍ବଲପୁର ଘେଁସର ସହିଦ ମାଧୋ ସିଂଙ୍କ ପୁତ୍ର ବିପ୍ଳବୀ ହାତୀ ସିଂ ମଧ୍ୟ କଳାପାଣି ଦଣ୍ଡ ପାଇ ଏଠାକୁ ଆସିଥିଲେ ଏବଂ ଏହିଠାରେ ସହିଦ ହେଲେ । ୧୯୦୬ର ସ୍ୱଦେଶୀ ଆନ୍ଦୋଳନ, ଯଥା – ଅଲ୍ଲୀପୁର ବମ୍ କେଶରେ ବାରୀନ୍ ଘୋଷ ପ୍ରଭୃତି ଓ ଜାକ୍ସନ ହତ୍ୟାମାମଲାରେ ସଭରକର ଭ୍ରାତୃଦ୍ୱୟ ପ୍ରଭୃତି ବିପ୍ଳବୀମାନେ ଏଠାରେ କାରାରୁଦ୍ଧ ହୋଇଥିଲେ । ଗାନ୍ଧିଜୀଙ୍କ ଅହିଂସ ଆନ୍ଦୋଳନ ଉପରୁ ଦେଶବସୀଙ୍କର ଆସ୍ଥା ତୁଟିଯିବାପରେ ୧୯୨୮-୩୦ରେ ଯେତେବେଳେ ଭାରତରେ ବ୍ୟାପକ ସଶସ୍ତ୍ର ବିପ୍ଳବ ପୁଣି ଆରମ୍ଭ ହେଲା, ବିଶେଷତଃ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନରେ ଯେତେବେଳେ ବହୁ ବିପ୍ଳବୀ ଅଭିଯୁକ୍ତ ହେଲେ,ସେମାନଙ୍କୁ ବହୁସଂଖ୍ୟାରେ ଏଠାକୁ ପଠାଗଲା । ମାଣ୍ଡାଲେ ଷଡ଼ଯନ୍ତ୍ର ଓ ବର୍ମାର ଥାରାଓ୍ୱାଡ଼ି ଷଡ଼ଯନ୍ତ୍ର ମାମଲାରେ ବହୁ ସଶସ୍ତ୍ର ମୁକ୍ତିସଂଗ୍ରାମୀଙ୍କୁ ଆଣ୍ଡାମାନଙ୍କୁ ପଠାଯାଇଥିଲା । ଆଣ୍ଡାମାନର ରାଜନୈତିକ ବନ୍ଦୀମାନଙ୍କର ଯେତିକି ତାଲିକା ମିଳୁଅଛି, ତାହା ଅନୁଧ୍ୟାନ କଲେ ଜଣାଯାଏ ଯେ, କେବଳ ସଶସ୍ତ୍ର ମୁକ୍ତିସଂଗ୍ରାମୀମାନଙ୍କୁ ଏଠାକୁ ପଠାଯାଉଥିଲା । ଗାନ୍ଧି-ଆନ୍ଦୋଳନର କୌଣସି ରାଜନୈତିକ ବନ୍ଦୀଙ୍କୁ ଦ୍ୱୀପାନ୍ତର କରାଯାଇଥିବାର କୌଣସି ପ୍ରମାଣ ନାହିଁ । ଅଷ୍ଟାଦଶ ଶତାବ୍ଦୀରେ କେବଳ ହତ୍ୟା ଓ ଡକାୟତି ଅଭିଯୋଗରେ ଦଣ୍ଡିତ ରାଜନୈତ ବନ୍ଦୀମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ ହୋଇଥିଲେ ମଧ୍ୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ୧୯୩୩ ମସିହା ପର୍ଯ୍ୟନ୍ତ କେବଳ ସଶସ୍ତ୍ର ବିପ୍ଳବୀମାନଙ୍କୁ ଏଠାରେ କାରାରୁଦ୍ଧ କରାଗଲା । ଆଣ୍ଡାମାନ କାରାଗାରର ଅମାନୁଷିକତା ଓ ନିଷ୍ଠୁରତାର ଶିକାର ହୋଇଥିବା ରାଜନୈତିକ ବନ୍ଦୀମାନେ ଏହାର ପ୍ରତିବାଦ କରି ଆନ୍ଦୋଳନ କରିବା ଆରମ୍ଭକଲେ ପ୍ରାୟ ୧୯୩୦ ମସିହାରେ । ସେହି ଦୃଷ୍ଟିରୁ 'ସଶସ୍ତ୍ର ମୁକ୍ତିସଂଗ୍ରାମ' ଇତିହାସର ଏହି ଅଧ୍ୟାୟରେ 'ମୁକ୍ତିତୀର୍ଥ ଆଣ୍ଡାମାନ'କୁ ସଂଯୋଜିତ କରାଯାଇଅଛି ।

ଆଣ୍ଡାମାନ ବନ୍ଦୀ-ଜୀବନ ସମ୍ପର୍କରେ ଭୁକ୍ତଭୋଗୀ ବନ୍ଦୀମାନଙ୍କଦ୍ୱାରା ଲିଖିତ ପୁସ୍ତକଗୁଡ଼ିକରୁ ସେଠାକାର ଲୋମହର୍ଷଣକାରୀ ଓ ହୃଦୟବିଦାରକ ବ୍ୟବସ୍ଥାର ବର୍ଣ୍ଣନା ଦେଖିବାକୁ ମିଳେ । ସେଭଳି ପୁସ୍ତକଗୁଡ଼ିକ ମଧ୍ୟରୁ ବିପ୍ଳବୀ ଉପେନ୍ଦ୍ର ନାଥ ବାନାର୍ଜି (ଅଲ୍ଲୀପୁର ବମ୍ କେଶରେ ଦଣ୍ଡିତ) ବଙ୍ଗଳା 'ନିର୍ବାସିତେର ଆତ୍ମକଥା', ବିପ୍ଳବୀ ବାରୀନ୍ ଘୋଷଙ୍କ (ଅଲ୍ଲୀପୁର ବମ କେଶରେ ଦଣ୍ଡିତ ଶ୍ରୀଅରବିନ୍ଦଙ୍କ ସାନ ଭାଇ) ' The Tale of My Exile.' (ମୋ ବନ୍ଦୀଜୀବନର କାହାଣୀ), ମହାରାଜା ତ୍ରୈଲୋକ୍ୟ ଚକ୍ରବର୍ତ୍ତୀଙ୍କର 'ଜେଲେ ତ୍ରିସ ବଛର' (ଜେଲରେ ତିରିଶ ବର୍ଷ) ଏବଂ ବିପ୍ଳବୀ ଦାମୋଦର ବିନାୟକ ସଭରକରଙ୍କ (ଜ୍ୟାକ୍ସନ ହତ୍ୟାରେ ଦଣ୍ଡିତ) 'The story of my Transportation for Life.' (ମୋର ନିର୍ବାସିତ ଜୀବନ କାହାଣୀ– ମୂଳ ଲେଖା ମରାଠି) ଦେଖିବାର ସୁଯୋଗ ମିଳିଛି । ବିପ୍ଳବୀ ଗଣେଶ ଘୋଷ ମଧ୍ୟ ତାଙ୍କର ଆଣ୍ଡାମାନର ବନ୍ଦୀ ଜୀବନ ସମ୍ପର୍କରେ ଖଣ୍ଡେ ବହି ଲେଖିଛନ୍ତି । ସେ ବିଷୟରେ ଅଧିକ ଜାଣିବା ପୂର୍ବରୁ ବନ୍ଦୀମାନଙ୍କ ସମ୍ପର୍କରେ ସମ୍ୟକ୍ ଧାରଣା ଥିବା ଆବଶ୍ୟକ । ଏହି ଗ୍ରନ୍ଥରେ ନାନା ସ୍ଥାନରେ ସଶସ୍ତ୍ର ବିପ୍ଳବୀମାନଙ୍କ ଶିକ୍ଷା ଓ ସାମାଜିକ

ସ୍ତର ସମ୍ପର୍କରେ ଆଲୋଚନା କରାଯାଇଛି । ଅଧିକାଂଶ ବିପ୍ଳବୀ ବିଶ୍ୱବିଦ୍ୟାଳୟର ଉଚ୍ଚ ଡିଗ୍ରୀ ହାସଲ କରିଥିବା ମେଧାବୀ ଛାତ୍ର ଥିଲେ । ଉଚ୍ଚ ଅଭିଜାତଶ୍ରେଣୀରୁ ଓ ଧନୀ ପରିବାରରୁ ଅଧିକାଂଶ ଆସିଥିଲେ ଏବଂ ବାଲ୍ୟକାଳରେ ସୌଖୀନ ଜୀବନଯାପନ କରିବାର ଅଭ୍ୟସ୍ତ ଥିଲେ । ସେଭଳି ସୁକୁମାର ଯୁବକମାନେ ଆଣ୍ଡାମାନ ସେଲୁ୍ୟଲାର ଜେଲରେ କଷ୍ଟଦାୟକ ଜୀବନଯାପନ କରିବା ନିଶ୍ଚିତ ଭାବରେ ଖୁବ୍ ଯନ୍ତ୍ରଣାଦାୟକ ବିଷୟ ଥିଲା ! ତାହା ଅପେକ୍ଷା ଅଧିକ କ୍ଳେଶଦାୟକ ଓ ମରଣାନ୍ତକ ଥିଲା ମୂର୍ଖ ଓ୍ୱାଡ଼ର ପ୍ରଭୃତି ଛୋଟିଆ କର୍ମଚାରିମାନଙ୍କର ସେମାନଙ୍କ ପ୍ରତି ଅପମାନଜନକ ବ୍ୟବହାର । ଅନ୍ୟ ବନ୍ଦୀମାନେ ଓ୍ୱାର୍ଡ଼ର ଜମାଦାରମାନଙ୍କୁ ଖୋସାମତ କରି ବା ନିଜ ସ୍ୱଳ୍ପ ଖାଦ୍ୟରୁ ଲାଞ୍ଚ ଦେଇ ସେମାନଙ୍କର ପ୍ରୀତିଭାଜନ ହେବାକୁ ଉଦ୍ୟମ କରୁଥିଲେ । ସ୍ୱାଭିମାନୀ ରାଜନୈତିକ ବନ୍ଦୀମାନଙ୍କ ପକ୍ଷରେ ସେଭଳି ତୋଷାମଦ କରିବା ସମ୍ଭବ ହେଉନଥିଲା; ଓଲଟି ସ୍ପଷ୍ଟବାଦିତାର ଅଭ୍ୟସ୍ତ ରାଜନୈତିକ ବନ୍ଦୀମାନେ ବେଳେବେଳେ ଜେଲ କର୍ତ୍ତୃପକ୍ଷଙ୍କ ବର୍ବରତା ଓ ଅସଭ୍ୟତାର ପ୍ରତିବାଦ କରି ଅଧିକ ଶାରୀରିକ କ୍ଳେଶ ଭୋଗକରୁଥିଲେ । ଅଧିକାଂଶ ବନ୍ଦୀ ସେମାନଙ୍କର ଡାଏରୀରେ ଶାରୀରିକ କଷ୍ଟ ଅପେକ୍ଷା ମାନସିକ ଅଶାନ୍ତି ଓ ଅପମାନ ଦ୍ୱାରା ସେମାନେ ଅଧିକ ପୀଡ଼ିତ ହେଉଥିଲେ ବୋଲି ଉଲ୍ଲେଖ କରିଅଛନ୍ତି । ଆତ୍ମସମ୍ମାନକୁ ସର୍ବୋଚ୍ଚ ସ୍ଥାନ ଦେଉଥିବା ରାଜନୈତିକ ବନ୍ଦୀମାନଙ୍କ ପକ୍ଷରେ ଏହା ଅତିଶୟ ସ୍ୱାଭାବିକ ଥିଲା ।

ଆଣ୍ଡାମାନର ସେଲୁଲାର ଜେଲ ସବୁଠାରୁ ଯନ୍ତ୍ରଣାଦାୟକ ଥିଲା । ଏହି ଜେଲଘର ତିଆରି ହେବା ପୂର୍ବରୁ ବନ୍ଦୀମାନେ ସାଧାରଣ ଜେଲରେ ରହୁଥିଲେ । ତାହା ସବୁ ବ୍ୟାରାକ ଭଳି ଥିଲା ଏବଂ ଏକାଧିକ ବନ୍ଦୀ ଏକସଙ୍ଗରେ ରହୁଥିଲେ । କିନ୍ତୁ ଏକାଠି ରହୁଥିବା ସୁଯୋଗରେ ସେମାନଙ୍କ ଭିତରେ ଭାବର ଆଦାନ-ପ୍ରଦାନ ହେଉଥିଲା ଏବଂ ରାଜନୈତିକ ବନ୍ଦୀମାନେ ଅନ୍ୟ କଏଦୀମାନଙ୍କୁ ରାଜନୈତିକ ଶିକ୍ଷା ଦେଇପାରୁଥିଲେ । ସରକାର ଏହା ଜାଣିପାରି ବନ୍ଦୀମାନଙ୍କୁ ପୃଥକ୍ ପୃଥକ୍ କରି ରଖିବାର ପରିକଳ୍ପନା କଲେ ଏବଂ ସେହି ପରିକଳ୍ପନାରୁହିଁ 'ସେଲୁଲାର ଜେଲ'ର ସୃଷ୍ଟି । ଏହା କେବଳ କେତେଗୁଡ଼ିଏ ସେଲ (Cell) ବା କୋଠରିର ସମଷ୍ଟି ମାତ୍ର । ସେଲୁଲାର ଜେଲର ନକ୍ସା ସମ୍ପର୍କରେ ସଂପୂର୍ଣ୍ଣ ଧାରଣା ନଥିଲେ 'ଆଣ୍ଡାମାନ ବନ୍ଦୀ ଜୀବନ'ର ଭୟାବହତା ସହଜରେ ଉପଲବ୍ଧି କରିହେବନି । ଏ ସଂପର୍କରେ ବିପ୍ଳବୀ ବାରୀନ ଘୋଷଙ୍କ ବହିରେ ଅଛି — ''ସେଲୁଲାର ଜେଲ ଦେଖିବାକୁ ହେଲେ ପ୍ରଥମେ ଗୋଟିଏ ବିନ୍ଦୁକୁ କଳ୍ପନା କରନ୍ତୁ । ଏହି ବିନ୍ଦୁଟି ହେଉଛି କେନ୍ଦ୍ର ଟାଓ୍ୱାର ବା ଗୁମଟି । ଏହା ତ୍ରିତଳବିଶିଷ୍ଟ ଏକ ଗୋଲାକାର ଅଟ୍ଟାଳିକା । ଏହି ବିନ୍ଦୁକୁ କେନ୍ଦ୍ର କରି ଏକ ବୃତ୍ତ ଟାଣନ୍ତୁ । ଏହି ବୃତ୍ତ ଜେଲର ବାହାର ପାଚେରି ଅଟେ । କେନ୍ଦ୍ର ବିନ୍ଦୁରୁ ବୃତ୍ତର ପରିଧି ପର୍ଯ୍ୟନ୍ତ ସାତଟି ବ୍ୟାସାର୍ଦ୍ଧ ଟାଣନ୍ତୁ । ସାତଟି ବ୍ୟାସାର୍ଦ୍ଧ ସାତ ଧାଡ଼ି ଅଟ୍ଟାଳିକା ଓ ପ୍ରତ୍ୟେକ ତ୍ରିତଳବିଶିଷ୍ଟ । ପ୍ରତି ମହଲାରେ ୨୦ରୁ ୩୦ଟି ପର୍ଯ୍ୟନ୍ତ କୋଠରି ରହିଛି । ପ୍ରତି କୋଠରିର ପଛ କାନ୍ଥରେ ପ୍ରାୟ ଛ' ଫୁଟ ଉଚ୍ଚରେ ଗୋଟିଏ କ୍ଷୁଦ୍ର ଝରକା ଏବଂ ତାହା ପୁଣି ଅଧଇଞ୍ଚ ବ୍ୟବଧାନରେ ଥିବା ଶକ୍ତ ଲୁହା ରେଲିଙ୍ଗ ଯୁକ୍ତ । କୋଠରି ଭିତରେ ୨ଫୁଟ ଚଉଡ଼ାର

ଗୋଟିଏ ଖଟ ଏବଂ ଆଲକାତରାବୋଳା ହୋଇଥିବା ଗୋଟିଏ ମାଟିପାତ୍ର । ଖଟ ଉପରେ ଶୋଇବାକୁ ହେଲେ ରାତିସାରା ସଚେତ ରହିବାକୁ ହେବ । ଟିକେ ଅସାବଧାନ ହେଲେ ଶୋଇଥିବା ଲୋକ ଭୟଙ୍କର ଶବ୍ଦ କରି ତଳେ ପଡ଼ିଯିବାକୁ ବାଧ୍ୟ । ଦୁର୍ଗନ୍ଧ ଦୃଷ୍ଟିରୁ ଆମର ଧୈର୍ଯ୍ୟଶକ୍ତିର ପରୀକ୍ଷା ପାଇଁ ଏହି ମାଟିପାତ୍ର ଏକ ଚମତ୍କାର ଆବିଷ୍କାର । ମାଟିପାତ୍ରଟି ବନ୍ଦୀର ମଳ-ମୂତ୍ର ତ୍ୟାଗ ପାଇଁ ଉଦ୍ଦିଷ୍ଟ ଏବଂ ସାରା ରାତି ବନ୍ଦୀକୁ ସେହି ଦୁର୍ଗନ୍ଧ ଭିତରେ ରହିବାକୁ ପଡ଼େ । ଏହି ପାତ୍ର-ଦୟାରେ ବନ୍ଦୀକୁ ୮୪ଟି ଯୋଗାସନ ଅଭ୍ୟାସ କରିବାକୁ ହୁଏ । ମେହେନ୍ତର ପ୍ରତିଦିନ ସକାଳୁ ଏହି ପାତ୍ରକୁ ନେଇଯାଏ ଓ ସନ୍ଧ୍ୟାରେ ପୁଣି ସେଠାରେ ରଖିଦେଇ ଯାଏ ।''

''କୋଠରିଗୁଡ଼ିକ ଧାଡ଼ି ଧାଡ଼ି ରହିଥାଏ । ସେହି ଧାଡ଼ିର ଆଗପଟରେ ୪/୫ ହାତ ଚଉଡ଼ାରେ ବାରଣ୍ଡା ଧାବମାନ । ବାରଣ୍ଡା ଲୁହା ରେଲିଂରେ ଆବୃତ । ସବୁଗୁଡ଼ିକ ବାରଣ୍ଡା କେନ୍ଦ୍ର ଟାୱାରରେ ସଂଯୁକ୍ତ ଏବଂ ଏହି ଭାବରେ ସବୁ ବାରଣ୍ଡାର ଗୋଟିଏ ମାତ୍ର ପ୍ରବେଶପଥ; ଯାହା କି ଟାୱାରଠାରେ ଅବସ୍ଥିତ । ଏହି ଫାଟକ ରାତିରେ ବନ୍ଦ ଥାଏ । କୋଠାରିଗୁଡ଼ିକରେ ଲୁହା ରେଲିଂର କବାଟ ଲାଗିଥାଏ – ପଟା କବାଟ ନଥାଏ । ବାହାରୁ ସେଥିରେ ତାଲା ପଡ଼ିଥାଏ । କୋଠାରି ଭିତରୁ ତାହା ଖୋଲିହେବନି । ପ୍ରତି ଧାଡ଼ିରେ ରାତିରେ ଚାରିଜଣ ପହରାଦାର ରହନ୍ତି; ପାଳିକରି ତିନି ଘଣ୍ଟା ଲେଖା ପହରା ଦିଅନ୍ତି । ପହରାଦାର ହାତରେ ଲଣ୍ଠନ ଧରି ରାତିସାରା ବାରଣ୍ଡାରେ ଏପଟ ସେପଟ ବୁଲୁଥାନ୍ତି ଏବଂ ପ୍ରତି କୋଠରି ଭିତରକୁ ନିରୀକ୍ଷଣ କରି ଦେଖନ୍ତି – ଭିତରେ ଥିବା ମଣିଷ-ପଶୁଗୁଡ଼ିକ କ'ଣ କରୁଛନ୍ତି । ୭ଟି ବ୍ଲକ୍‌ର ୨୧ଟି ଧାଡ଼ିରେ ଥରକୁ ୨୧ ଜଣ ପହରାଦାର ରାତିସାରା ପହରା ଦିଅନ୍ତି । କେନ୍ଦ୍ର ଟାୱାରରେ ଜଣେମାତ୍ର ସେଣ୍ଟ୍ରି ଥାଏ । ସେ ଏକ ଗ୍ରହ ବା ଉପଗ୍ରହ ଭଳି ରାତିସାରା ତଳମହଲାରୁ ଉପର ମହଲା ପର୍ଯ୍ୟନ୍ତ ଚଢ଼ୁଥାଏ, ଓହ୍ଲାଉଥାଏ । ସେ ବ୍ଲକ୍‌ର ଫାଟକ ପାଖରେ ପହଞ୍ଚିବା ସଙ୍ଗେ ସଙ୍ଗେ ପହରାଦାର ଚିତ୍କାର କରେ ''20 Cell locked, four warders. All right,'' (କୋଡ଼ିଏଟିଯାକ ସେଲରେ ତାଲା ବନ୍ଦ, ଚାରି ପହରାଦାର, ସବୁ ଠିକ୍ ଅଛି ।) ପ୍ରତି ବ୍ଲକ୍‌ରେ ୭୮ ଟି ଲେଖା କୋଠରି ବା ସେଲ ଥାଏ । ସର୍ବମୋଟ ୬୯୦ଟି ସେଲ । ଏଠାରେ ବ୍ୟାରାକ୍ ନାହିଁ; ସବୁ ସେଲ ବା କୋଠରି । ସେଥିପାଇଁ ଏହା 'ସେଲୁଲାର ଜେଲ ।''

ବିପ୍ଳବୀ ବାରୀନ୍‌ବାବୁଙ୍କ ଉପରୋକ୍ତ ବର୍ଣ୍ଣନାରୁ କୁଖ୍ୟାତ ସେଲୁଲାର ଜେଲର ଭୟାବହତା ସମ୍ପର୍କରେ ସମ୍ୟକ୍ ଧାରଣା କରିବା ସହଜ ହୁଏ । ରାଜନୈତିକ ବନ୍ଦୀମାନଙ୍କୁ ସରକାର କେତେ ଭୟକରୁଥିଲା ଏବଂ ସଶସ୍ତ୍ର ବିପ୍ଳବୀମାନଙ୍କ ଉପରେ ସରକାରୀ କ୍ରୋଧ କେତେ ଉଗ୍ର ଥିଲା, କେବଳ ସେଲୁଲାର ଜେଲର ଗଠନ ପ୍ରଣାଳୀ ଓ ନକ୍ସା ଦେଖିଲେ ତାହା ସ୍ପଷ୍ଟ ଜଣାଯାଏ । ଏହିଭଳି ଏକ ଭୟଙ୍କର ସ୍ଥାନ ପରିଚାଳନାର ଦାୟିତ୍ୱରେ ଯେଉଁମାନେ ରହୁଥିଲେ, ସେମାନେ ଜେଲ ଅପେକ୍ଷା ଲକ୍ଷେ ଗୁଣ ଭୟଙ୍କର ଥିଲେ । ସେଠାରେ ଶୃଙ୍ଖଳାରକ୍ଷା ନାମରେ ଯେଉଁ ଜୁଲମ ଓ ନିର୍ଯାତନା ବନ୍ଦୀମାନଙ୍କ ଉପରେ ଚାଲୁଥିଲା,

ବନ୍ଦୀମାନଙ୍କୁ ଯେଉଁ ନିକୃଷ୍ଟ ଧରଣର ଖାଦ୍ୟ ଦିଆଯାଉଥିଲା, ଯେଉଁ ସ୍ୱଳ୍ପ ଲୁଗାପଟା ଦିଆଯାଉଥିଲା, ଯେଉଁ କଠିନ ପରିଶ୍ରମ କରିବାକୁ ପଡୁଥିଲା ଏବଂ ସର୍ବୋପରି ସମ୍ଭ୍ରାନ୍ତ ଓ ଉଚ୍ଚଶିକ୍ଷିତ ବନ୍ଦୀମାନଙ୍କୁ ଯେଉଁ ଲାଞ୍ଛନା ଓ ଅପମାନ ସହ୍ୟ କରିବାକୁ ପଡୁଥିଲା, ତାହା ଚିନ୍ତାକଲେ ଯେକୌଣସି ଭାରତୀୟର ଲୋମ ଟାଙ୍କୁରି ଉଠିବ, ରକ୍ତ ଟକମକ ହେବ ଏବଂ ପ୍ରତିଶୋଧ-ଚିନ୍ତାରେ ଧୈର୍ଯ୍ୟ ଚରମ ସୀମାରେ ପହଞ୍ଚିଯିବ । ସେସବୁର ବିସ୍ତୃତ ଆଲୋଚନା କରିବାର କ୍ଷେତ୍ର ଏଠାରେ ସୀମିତ । ତଥାପି ସେ ସମ୍ପର୍କରେ ସାମାନ୍ୟ ଆଲୋଚନା ନକଲେ 'କଳାପାଣି' ଜେଲର ବର୍ଣ୍ଣନା ଅସଂପୂର୍ଣ୍ଣ ହେବ ।

ଆଣ୍ଡାମାନ ଜେଲର ପ୍ରାୟ ଅଶୀ ବର୍ଷର ଆୟୁଷ୍କାଳ ଭିତରେ ଏହାର ଶାସନ ଦାୟିତ୍ୱରେ ଅବସ୍ଥାପିତ ହୋଇଥିବା ବହୁ ଅତ୍ୟାଚାରୀ ଜେଲର୍‌ମାନଙ୍କ ଭିତରୁ ମିଷ୍ଟର ବାରୀ ଏକ ଅବିସ୍ମରଣୀୟ ନାମ । ଯେଉଁମାନେ ବାରୀର ଅତ୍ୟାଚାର ସହି ଆଜିଯାଏ ଆମ ମଧ୍ୟରେ ବଞ୍ଚିରହିଛନ୍ତି, ସେମାନଙ୍କୁ ବାରୀ ବିଷୟରେ କିଛି ପଚାରିଲେ ସେମାନେ ପ୍ରଥମେ ଗମ୍ଭୀର ହେବା ସଙ୍ଗେ ସଙ୍ଗେ କ୍ରୋଧ ଓ ପ୍ରତିଶୋଧ-ପିପାସାରେ ଅଧୀର ହୋଇପଡ଼ନ୍ତି । ବାରୀନ ବାବୁ, ସଭରକର, ତ୍ରୈଲୋକ୍ୟ ଚକ୍ରବର୍ତ୍ତୀ ପ୍ରଭୃତି ପ୍ରାୟ ସମସ୍ତ ବିପ୍ଳବୀ ସେମାନଙ୍କର ସ୍ୱ-ସ୍ୱ ପୁସ୍ତକରେ ତା' ସମ୍ପର୍କରେ ସମାନ ପ୍ରକାରର ବର୍ଣ୍ଣନା କରିଅଛନ୍ତି ।

ବାରୀନବାବୁ ଲେଖିଛନ୍ତି – ''ଜେଲରେ ପହଞ୍ଚି ବନ୍ଦୀମାନେ ଯାହାକୁ ଭେଟନ୍ତି ସେ ହେଉଛନ୍ତି ସର୍ବମୟ କର୍ତ୍ତା ମିଷ୍ଟର୍ ବାରୀ । ସେ ପ୍ରଥମେ ବନ୍ଦୀମାନଙ୍କୁ ଏକ ଭାଷଣ ଦିଅନ୍ତି– ''X X ତୁମର ଚାରିପଟରେ ସମୁଦ୍ର ! ଏହି ପାଚିରି ଏଭଳି ଅନୁଚ୍ଚ କାହିଁକି ଜାଣ ? କାରଣ ତୁମେ ଏଠାରୁ ପଳାଇଯିବାର କୌଣସି ଉପାୟ ନାହିଁ । ଏକ ହଜାର ମାଇଲବ୍ୟାପୀ ଏ ସମୁଦ୍ର ! ଅବଶ୍ୟ ଜଙ୍ଗଲରେ କେବଳ ବାର୍‌ହା ଓ ବଣ-ବିରାଡ଼ି ଛଡ଼ା ଅନ୍ୟ କୌଣସି ହିଂସ୍ର ଜନ୍ତୁ ନାହାନ୍ତି । କିନ୍ତୁ ସେଠାରେ ଯେଉଁ ଜଙ୍ଗଲୀ ଜାତିର ଲୋକ ଅଛନ୍ତି, ସେମାନେ ତୁମକୁ ଦେଖିବା ସଙ୍ଗେ ସଙ୍ଗେ ସେମାନଙ୍କର ତୀକ୍ଷ୍ଣ ତୀରରେ ତୁମକୁ ଖଣ୍ଡ ଖଣ୍ଡ କରିଦେବେ । ମୋତେ ଦେଖୁଛ ? ମୁଁ ହେଉଛି ଡି. ବାରୀ. (D. Barry) । ବାଧ୍ୟ ଓ ଶୃଙ୍ଖଳାପ୍ରିୟ ବନ୍ଦୀମାନଙ୍କର ମୁଁ ଜଣେ ବିଶ୍ୱସ୍ତ ଭୃତ୍ୟ; କିନ୍ତୁ ବଦମାସ୍‌ମାନଙ୍କ ପାଇଁ ମୁଁ ଶହେଗୁଣ ବଦମାସ୍ । ତୁମେ ଯଦି ଅବାଧ୍ୟ ହୁଅ ଭଗବାନ୍ ତୁମକୁ କ୍ଷମା କରିପାରନ୍ତି; କିନ୍ତୁ ମୁଁ ନୁହେଁ । ଆଉ ମନେରଖ, 'ଭଗବାନ୍' ଆଣ୍ଡମାନ ଜେଲରୁ ତିନିମାଇଲ ଦୂରରେ ରହନ୍ତି ।''

ଉପେନ୍ଦ୍ର ବାନାର୍ଜି ଲେଖିଛନ୍ତି, ''ଏହି ପାଞ୍ଚଫୁଟ ତିନିଇଞ୍ଚ ଉଚ୍ଚ ଅସୁର 'ଟମକକାଙ୍କ କୁଟୀର'ରେ ବର୍ଣ୍ଣିତ ଲେଗ୍ରୀ ଭଳି ଭୟଙ୍କର, ଯେମିତିକି ଖାସ ବନ୍ଦୀମାନଙ୍କୁ ଜବତ କରିବାକୁ ଭଗବାନ୍ ବାରୀକୁ ସୃଷ୍ଟିକରିଛନ୍ତି ।

ସଭରକରଙ୍କର ବର୍ଣ୍ଣନା ଅନୁସାରେ– ''ଶୁଣ ବନ୍ଦିଗଣ, ବିଶ୍ୱରେ ଏକମାତ୍ର ଜଣେ ଈଶ୍ୱର ଅଛନ୍ତି । ସେ ସ୍ୱର୍ଗଲୋକରେ ବାସକରନ୍ତି । କିନ୍ତୁ ପୋର୍ଟବ୍ଲେଆରରେ ଈଶ୍ୱର ହେଉଛି ମୁଁ ଡି. ବାରୀ । ଈଶ୍ୱର ତୁମକୁ ସ୍ୱର୍ଗରେ ପୁରସ୍କାର ଦେବେ; କିନ୍ତୁ ମୁଁ ଏଇଠି ସଙ୍ଗେ ସଙ୍ଗେ ପୁରସ୍କାର ଦେବି, ସାବଧାନ !'' ବାରୀ ଏକା ନଥାଏ; ତାକୁ ବେଢ଼ି ରହିଥାନ୍ତି ୱାଡ଼ର,

ପହରାଦାର, ଟିଣ୍ଡଲ, ଜମାଦାର ଓ ପେଟି ଅଫିସରମାନେ । ସେମାନେ ସମସ୍ତେ ଏକଦା କଏଦୀ ଥିଲେ । ପାଞ୍ଚ-ଦଶ ବରଷର 'ଭଲ କାର୍ଯ୍ୟକଳାପ'ର ପୁରସ୍କାର ସ୍ୱରୂପ ସେମାନଙ୍କୁ ଏହି ସବୁ ଦାୟିତ୍ୱ ଦିଆଯାଏ । ସେଲୁ୍ୟଲାର ଜେଲରେ ସେହିମାନେ ହିଁ ସବୁକିଛି । ବନ୍ଦୀମାନଙ୍କଠାରୁ ଖାଦ୍ୟ ଛଡ଼େଇ ଖାଇବାଠାରୁ ଆରମ୍ଭ କରି, ଯେତେବେଳେ ଇଚ୍ଛା ସେତେବେଳେ ନିର୍ମମ ମାଡ଼ଦେବା, ଅସଭ୍ୟ ଭାଷାରେ ଗାଳିଦେବା ଏବଂ ବାରୀ ପାଖରେ ମିଛ ସତ ରିପୋର୍ଟ ଦେଇ ଅଧିକ ଦଣ୍ଡର ବ୍ୟବସ୍ଥା କରିବା ପର୍ଯ୍ୟନ୍ତ ସବୁ ଏହିମାନେହିଁ କରନ୍ତି । ସେମାନଙ୍କ ଭିତରୁ ଅଧିକାଂଶ ମୁସଲମାନ ସଂପ୍ରଦାୟର ଓ ନରହତ୍ୟା ପ୍ରଭୃତି ଅପରାଧରେ ଆଜୀବନ କଏଦୀ । ଅଧିକାଂଶ ରାଜନୈତିକ ବନ୍ଦୀ ଉଚ୍ଚ ଜାତିର ହିନ୍ଦୁ ହୋଇଥିବାରୁ ସେମାନଙ୍କୁ 'ଶାସନ' କରିବାକୁ ଏହି ଅମଣିଷଗୁଡ଼ିକ ଯୋଗ୍ୟତମ ବୋଲି ଅତ୍ୟାଚାରୀ ବାରୀ ମନେକରୁଥିଲା । ଖୋୟାଦାଦ ନାମକ ଏହିଭଳି ଜଣେ 'ଅମଣିଷ ଜମାଦାର'ର ଅତ୍ୟାଚାରରେ ବାରୀନ ବାବୁଙ୍କ ଭଳି ବିପ୍ଳବୀର ଜୀବନ ସେଲୁ୍ୟଲାର ଜେଲରେ କିଭଳି ଦୁର୍ବିସହ ହୋଇଉଠିଲା ତା'ର ହୃଦୟବିଦାରକ ବର୍ଣ୍ଣନା ତାଙ୍କର ଡାଏରୀରେ ବହୁ ସ୍ଥାନରେ ଉଲ୍ଲେଖ କରି ଅଛନ୍ତି । ବ୍ୟକ୍ତିଗତ ସୁଖ-ସୁବିଧା – ଯେମିତି କାମରୁ ଟିକେ ବିଶ୍ରାମ ବା କୋହଳ ଦଣ୍ଡ ପ୍ରଭୃତି ପାଇଁ ରାଜନୈତିକ ବନ୍ଦୀମାନେ ଅନ୍ୟ କଏଦୀମାନଙ୍କ ଭଳି ତଳିଆ କର୍ମଚାରୀଙ୍କୁ ଖୋସାମତ କରିପାରୁନଥିଲେ । ଯଦି କରୁଥିଲେ, ତାହା ଆନ୍ଦୋଳନ କରି; ତୋଷାମଦ କରି ନୁହେଁ ଏବଂ ସେହି ଅପରାଧରେ ବେଳେବେଳେ ବରଂ ଅଧିକ ଦଣ୍ଡ ଭୋଗିବାକୁ ପଡୁଥିଲା ।

ବାରୀନ୍‌ବାବୁଙ୍କ ମତରେ ସେଲୁଲାର ଜେଲରେ ବନ୍ଦୀମାନଙ୍କୁ ଦୈନିକ ଚାଉଳ ଓ ଅଟା ମିଶି ୨୦ ତୋଳା, କିଛି ଲୁଣ, ସାମାନ୍ୟ ତେଲ ଏବଂ ପ୍ରାୟ ୧୫ ତୋଳା ପରିବା ଦିଆଯାଉଥିଲା । ସବୁ ମିଶି କେଜି ହିସାବରେ ଦିନକ ପାଇଁ ୪୫୦ ଗ୍ରାମ୍ ମିଳୁଥିଲା । କିନ୍ତୁ ଏଥିରୁ ଖୁବ୍ କମ୍ ଅଂଶ ବନ୍ଦୀମାନଙ୍କ ପାଖରେ ପହଂଚୁଥିଲା । ରୋଟିକୁ ପଠାଣ ପହରାଦାରମାନେ ଖାଇଯାଉଥିଲେ; ଭଲରେ ନ ଦେଲେ ଛଡ଼ାଇ ନେଇ ଯାଉଥିଲେ । ସେ ପୁଣି ଲେଖିଛନ୍ତି, ''ଖାଦ୍ୟ ଦେଖିଲେ ଆଖିରୁ ଲୁହ ଗଡ଼ିପଡୁଥିଲା । ସାରୁ ଚୋପା ନ ଛଡ଼ାଇ ରନ୍ଧାହେଉଥିଲା । କାଠି ପତ୍ର ମିଶି ସିଝାହେଉଥିଲେ ମଧ୍ୟ ସେଥିରେ ପୁଣି ଗୋଡ଼ି, ମୂଷାଲଣ୍ଡି ଏପରି କି ଗଣ୍ଡା ଗଣ୍ଡା ପୋକ ପଡ଼ି ସିଝୁଥିଲେ । ବେଳେବେଳେ ରୋଷେଇଘରର ଡିବିରିରୁ କିରୋସିନୀ ମଧ୍ୟ ସେଥିରେ ମିଶୁଥିଲା ।' କେହି ବୁଝିବାକୁ ନଥିଲେ ବା ଶୁଣିବାକୁ ନଥିଲେ । ପ୍ରତିବାଦ କଲେ ଆହୁରି ଭର୍ତ୍ସନା, ନଚେତ ବେତମାଡ଼ ।

ଲୁଗାପଟା କଥା ନ ଲେଖିଲେ ଭଲ । ଅଧିକାଂଶ ବନ୍ଦୀଙ୍କୁ ଲେଙ୍ଗୁଟି ମାରିବାକୁ ପଡୁଥିଲା । ସେହି ଲଜ୍ଜାଜନକ ପୋଷାକ ପିନ୍ଧିବାରେ ଅନଭ୍ୟସ୍ତ ବାରୀନବାବୁ ଲେଖିଛନ୍ତି, ''ଏଠାରେ ଭଦ୍ରଲୋକ କଥା ତେଣିକି ଥାଉ, ଆମ୍ଭେମାନେ ମଣିଷ ଭଳି ମଧ୍ୟ ନଥିଲୁ । ଆମର ଏକମାତ୍ର ପରିଚୟ 'ଆମେ କଏଦୀ' । ଆମକୁ ପ୍ରାୟ ଅଧାଲଙ୍ଗଳା ଅବସ୍ଥାରେ ଗାଧୋଇବାକୁ ଲାଇନରେ ଠିଆହେବାକୁ ପଡୁଥିଲା । ଗାଧୋଇବା ପୂର୍ବରୁ ଲଙ୍ଗଳା

ହେବାବେଳେ ମୁଁ ଲଜ୍ଜାରେ ନଇଁଯାଉଥିଲି । ମନେ ମନେ ଭାବୁଥିଲି 'ମା' ବସୁମତୀ ! ତୁ ଫାଟିଯା, ମୁଁ ତୋ' କୋଳରେ ଆଶ୍ରୟ ନେବି । ମା' ବସୁଧା ଫାଟୁନଥିଲା ଏବଂ ମୁଁ ସେହି ଅବସ୍ଥାରେ ଗାଧୋଉଥିଲି ।''

ଯେଉଁମାନେ ସେଲ୍ୟୁଲାର ଜେଲର ବାହାରେ କାମ କରିବାକୁ ଯାଉଥିଲେ, ବର୍ଷାଦିନେ ସେମାନଙ୍କ ଅବସ୍ଥା ଅତିଶୟ ଶୋଚନୀୟ ହେଉଥିଲା । କାରଣ ଓଦା ଲୁଗା ବଦଳାଇବାର ଉପାୟ ନଥିଲା । ଅବଶ୍ୟ ରାଜନୈତିକ ବନ୍ଦୀମାନଙ୍କୁ ବାହାରେ କାମ କରିବାକୁ ଛାଡ଼ି ଦିଆଯାଉ ନଥିଲା; କେବଳ ସାଧାରଣ କଏଦୀମାନେ ସେ 'ସୁବିଧା' ପାଉଥିଲେ ।

ଏତେ କମ୍ ଓ ଅସ୍ୱାସ୍ଥ୍ୟକର ଖାଦ୍ୟ ଖାଇ ମଧ ରାଜନୈତିକ ବନ୍ଦୀମାନଙ୍କୁ କଠିନ ପରିଶ୍ରମସାପେକ୍ଷ କାର୍ଯ୍ୟ ପ୍ରାୟ ଦଶଘଣ୍ଟା କରିବାକୁ ହେଉଥିଲା । ସେଥିରୁ ଗୋଟିଏ ହେଉଛି ନଡ଼ିଆକତା ଛେଚା ଓ ବଳା । କିନ୍ତୁ ସବୁଠାରୁ ଭୟାବହ କାମ ଥିଲା ତେଲ- ପେଡ଼ା । ଦୈନିକ ଅନ୍ତତଃ ୨୦ଟି ନଡ଼ିଆର କତା ଛେଚି ରଶି ତିଆରି କରିବାକୁ ହେଉଥିଲା; କରିନପାରିଲେ ବେତମାଡ଼ ଓ ଖାଇବା ବନ୍ଦ । ତା' ପରଦିନ ସେହି ଉପାସ ପେଟରେ ଦୁଇଦିନର କାମ କରିବାକୁ ପଡୁଥିଲା । ଘଣା ଟାଣିବା ସବୁଠାରୁ କଷ୍ଟଦାୟକ କାର୍ଯ୍ୟ ଥିଲା । ସେଠାରେ ବଳଦ-କାର୍ଯ୍ୟ ମଣିଷ କରୁଥିଲା ଏବଂ ତାହା ପୁଣି ବାରୀନ, ଉଲ୍ଲାସ ଦତ୍ତ, ନନୀଗୋପାଳ ଓ ସଭରକର୍‌ଙ୍କ ଭଳି ଭଦ୍ରଘରର ପିଲାମାନେ । ସାଧାରଣତଃ ଦୁର୍ବଳ ବା ଅସୁସ୍ଥ କଏଦୀମାନଙ୍କୁ ଏ କାର୍ଯ୍ୟ ଦିଆଯାଉନଥିଲା । କିନ୍ତୁ ଏହି ନିୟମ ସାଧାରଣ କଏଦୀମାନଙ୍କ ପାଇଁ, ରାଜନୈତିକ ବନ୍ଦୀମାନଙ୍କ ପାଇଁ ନୁହେଁ । ଦିନକ ଭିତରେ ପ୍ରତ୍ୟେକ ବନ୍ଦୀଙ୍କୁ ଅନ୍ତତଃ ତିରିଶ ପାଉଣ୍ଡ ବା ଚଉଦ କିଲୋ ତେଲ ବାହାର କରିବାକୁ ପଡୁଥିଲା । ଦିନ ଭିତରେ ନ ସରିଲେ ରାତିରେ ଶୋଇ ସେତକ କୋଟା ପୂରଣ କରିବାକୁ ହେଉଥିଲା; ନଚେତ ନିର୍ମମ ବେତ୍ରାଘାତ ଦିଆଯାଉଥିଲା । ଏହି କଷ୍ଟଦାୟକ କର୍ଯ୍ୟରୁ ରକ୍ଷା ପାଇବା ପାଇଁ ସାଧାରଣ କଏଦୀମାନେ ଅସୁସ୍ଥତାର ଛଳନା କରୁଥିଲେ । କେହି କେହି ବଣର ବିଷାକ୍ତ ଫଳମୂଳ ଖାଇ ଜ୍ୱର ବା ରକ୍ତଝାଡ଼ାରେ ଆକ୍ରାନ୍ତ ହେଉଥିଲେ – ଉଦ୍ଦେଶ୍ୟ ଡାକ୍ତର ଅସୁସ୍ଥତାର ସାର୍ଟିଫିକେଟ ଦେଲେ କାମରୁ ଛୁଟି ମିଳିବ । କିନ୍ତୁ ରାଜନୈତିକ ବନ୍ଦୀମାନେ ଏଭଳି ହୀନ କାର୍ଯ୍ୟ କରିବାକୁ ବିବେକର ବାଧା ପାଉଥିଲେ । ଏସବୁ ଦୃଷ୍ଟିରୁ ରାଜନୈତିକ ବନ୍ଦୀମାନଙ୍କର ଦୁଃଖ ଯନ୍ତ୍ରଣା ଚରମ ସୀମାରେ ପହଂଚୁଥିଲା । ଜେଲ ନିୟମର ସାମାନ୍ୟ ବିଶୃଙ୍ଖଳା କଲେ ରାଜନୈତିକ ବନ୍ଦୀମାନଙ୍କୁ ଯେଉଁ କଠିନ ଶାରୀରିକ ଦଣ୍ଡ ଦିଆଯାଉଥିଲା, ତାହା ବର୍ଣ୍ଣନାତୀତ, ଭାଷାତୀତ ।

ବେତ୍ରାଘାତ ଗୋଟିଏ ସାଧାରଣ ଦଣ୍ଡ ଥିଲା । ଲୁହାରଡ଼ରେ ତିଆରି ହୋଇଥିବା ଷ୍ଟାଣ୍ଡରେ ବନ୍ଦୀର ହାତ ଗୋଡ଼ ବାନ୍ଧି ଏବଂ ଲଙ୍ଗଳା କରି ଠିଆକରାଯାଉଥିଲା ଏବଂ ସେହି ଅବସ୍ଥାରେ ବେତମାଡ଼ ଦିଆଯାଉଥିଲା । ବେତ୍ରାଘାତରେ ଚମଡ଼ା ଫାଟି ରକ୍ତ ଝରୁଥିଲା । ସାଧାରଣ କଏଦୀ ଏହି ଦଣ୍ଡରେ ଚିତ୍କାର କରି ଆକାଶ ଫଟାଇ ଦେଉଥିଲେ କିନ୍ତୁ ଆଶ୍ଚର୍ଯ୍ୟର କଥା, ରାଜନୈତିକ ବନ୍ଦୀମାନେ ନୀରବ ନିଷ୍ପନ୍ଦ ଭାବରେ ଏହା ସହ୍ୟକରିଯାଉଥିଲେ ।

ଏତଦ୍‌ବ୍ୟତୀତ ସେଲ କାଛରେ ଥିବା କଣ୍ଟାରେ ଦୁଇହାତ ବାନ୍ଧିଦେଇ ବନ୍ଦୀମାନଙ୍କୁ ପ୍ରାୟ ଝୁଲାଇଦିଆଯାଉଥିଲା । ସେହି ଅବସ୍ଥାରେ ବନ୍ଦୀକୁ ଶୋଇବାକୁ ପଡୁଥିଲା । ଅତି କଷ୍ଟରେ ବେହୋସ ହୋଇଗଲେ କିଛି ସମୟ ପାଇଁ ଫିଟାଇ ଦେଇ ପୁଣି ବାନ୍ଧିଦିଆଯାଉଥିଲା । ନିର୍ଦ୍ଦିଷ୍ଟ ସମୟରେ ଝାଡ଼ା ପରିସ୍ରା ନଯାଇ ଅସମୟରେ ଅର୍ଥାତ ବନ୍ଧାହୋଇଥିବା ଅବସ୍ଥାରେ ଝାଡ଼ା ପରିସ୍ରା ତ୍ୟାଗ କଲେ ଅଧିକ ଦିନ ଝୁଲେଇ ରଖାଯାଉଥିଲା ଏବଂ ଘଣା ଟାଣିବାକୁ ହେଉଥିଲା । ଟୋପେ ଟୋପେ ପେଜ ଖାଇବାକୁ ଦେଇ ମାସ ମାସ ହାତ ବାନ୍ଧି ସେହି କାଳ କୋଠରିରେ ପକାଇଦିଆଯାଉଥିଲା । ଏଭଳି ଦୁର୍ବିସହ ଦଣ୍ଡରେ ବହୁ ରାଜନୈତିକ ବନ୍ଦୀ ଯକ୍ଷ୍ମା ରୋଗରେ ପଡୁଥିଲେ, କେହି କେହି ପାଗଳ ହୋଇଯାଉଥିଲେ । କେହି ବା ଆତ୍ମହତ୍ୟା କରିଦେଉଥିଲେ । ନିଜେ ସଭରକର କେତେ ଥର ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଥିବା କଥା ତାଙ୍କ ଡାଏରୀରେ ଉଲ୍ଲେଖ କରିଅଛନ୍ତି । କିନ୍ତୁ ତାଙ୍କର ଉଚ୍ଚ ନୈତିକ ଚରିତ୍ର ତାଙ୍କୁ ଏହି ନିନ୍ଦନୀୟ କାର୍ଯ୍ୟରୁ ନିବୃତ୍ତ କରିଅଛି ।

'ଆଣ୍ଡାମାନ ଜେଲ'ର ଅତ୍ୟାଚାର ସମ୍ପର୍କରେ ଯେତେ ବିବରଣୀ ମିଳୁଛି, ସେଗୁଡ଼ିକ ପ୍ରାୟ ସମାନ । ୧୯୧୦-୧୪, ୧୯୧୪-୨୦ ଓ ୧୯୩୨-୩୫ରେ ଯେଉଁ ତିନୋଟି ପ୍ରଧାନ ରାଜନୈତିକ ବନ୍ଦୀଦଳ ସେଠାରେ କାରାରୁଦ୍ଧ ହୋଇଥିଲେ, ସମସ୍ତେ ପୂର୍ବବର୍ଣ୍ଣିତ ଅତ୍ୟାଚାର ସମ୍ପର୍କରେ ଏକମତ । ମହାପଣ୍ଡିତ ରାହୁଳ ସାଂସ୍କୃତାୟନ, ବିଜୟ କୁମାର ସିହ୍ନା ଓ ମନ୍ମଥନାଥ ଗୁପ୍ତ ମଧ୍ୟ ସ୍ୱ-ସ୍ୱ ଅନୁଭୂତି ବିଷୟରେ ଯେଉଁ ପୁସ୍ତକ ପ୍ରଣୟନ କରିଅଛନ୍ତି, ସେଗୁଡ଼ିକରେ ଉପରୋକ୍ତ ଅତ୍ୟାଚାର ଘଟଣା ସତ୍ୟ ବୋଲି ସ୍ୱୀକାର କରାଯାଇଛି ।

ଏ ଦେଶର ମୁକ୍ତି କାମନରେ ବହୁ ପ୍ରାତଃସ୍ମରଣୀୟ ବିପ୍ଳବୀ ନିଜନିଜର ଜୀବନକୁ ତିଳ ତିଳ କରି ସେହି ମୁକ୍ତିଯଜ୍ଞରେ ଆହୁତି ଦେଇଥିଲେ । ବିପ୍ଳବୀ ଜ୍ୟୋତିଷ ପାଳ ମହାନାୟକ ବାଘାଯତୀନଙ୍କ ସହ ବାଲେଶ୍ୱରଠାରେ ଗିରଫ ହୋଇ ସେଲ୍ୟୁଲାର ଜେଲରେ ଥିବାବେଳେ ଅତ୍ୟାଚାରରେ ପାଗଳ ହୋଇଯାଇଥିଲେ । ଅଲ୍ଲୀପୁର ବୋମା ବିପ୍ଳବୀ ଇନ୍ଦୁଭୂଷଣ ରାୟ ଆତ୍ମହତ୍ୟା କରିଥିବାର ଜଣାଯାଏ । ଉଲ୍ଲାସକର ଦତ୍ତ — ଯାହାର ହାତତିଆରି ବୋମାକୁ କ୍ଷୁଦିରାମ ଓ ପ୍ରଫୁଲ୍ଲ ଚାକି ମୁଜାଫରପୁରରେ ନିକ୍ଷେପ କରି ସହିଦ ହୋଇଥିଲେ, ସେ ମଧ୍ୟ ସେଲ୍ୟୁଲାରରେ ଆତ୍ମହତ୍ୟା କରିବାକୁ ବାଧ୍ୟ ହୋଇଥିଲେ । ଖୁଲନା ଷଡ଼ଯନ୍ତ୍ର ମକଦ୍ଦମାର ଦଣ୍ଡିତ ନନୀଗୋପାଳଙ୍କୁ ଉନ୍ମାଦ କୁହାଯିବ କି ଗାନ୍ଧିବାଦୀ ଭାଷାରେ ସତ୍ୟାଗ୍ରହୀ କୁହାଯିବ, ଏହି ନଗଣ୍ୟ ଲେଖକ ତାହା ନିର୍ଣ୍ଣୟ କରିବାକୁ ଅକ୍ଷମ । ସେ ଯାହାହେଉ, ନନୀଗୋପାଳ ଯେଭଳି ଅମ୍ଳାନ ବଦନରେ ଅକଥନୀୟ କ୍ଳେଶ ବରଣ କରିଅଛନ୍ତି, ତାହା ଚିନ୍ତା କଲାବେଳେ ସେହି ମହାନ୍ ବିପ୍ଳବୀଙ୍କ ପ୍ରତି ମୁଣ୍ଡ ସ୍ୱତଃ ନଇଁଯାଏ ।

ନନୀଗୋପାଳଙ୍କର ବୟସ ଥିଲା ୧୬-୧୭ ବର୍ଷ । କଲିକତା ଡାଲହାଉସୀଠାରେ ବୋମା ନିକ୍ଷେପ କରି ସେ ଦଣ୍ଡିତ ହୋଇଥିଲେ । ଯଦିଓ ବୟସଦୃଷ୍ଟିରୁ ତାଙ୍କୁ ଘଣା ଟଣାଇବା ଅନୁଚିତ, ତାଙ୍କୁ ସେହି ଦଣ୍ଡ ଦିଆଯାଇଥିଲା । ସେ ତାହା କରିବାକୁ ଅସ୍ୱୀକାର କରିବାରୁ ତାଙ୍କୁ ଠିଆ ହାତକଡ଼ିରେ ଟାଙ୍ଗିଦିଆଗଲା । ତଥାପି ସେ ଟଳିଲେ ନାହିଁ । ନିଜ ଲୁଗାପଟା

ଧୋଇଲେ ନାହିଁ, ଲୁଗା ପିନ୍ଧିବା ଛାଡ଼ିଦେଲେ । ତାଙ୍କ ଦେହରେ ଅଖା ସିଲେଇ କରି ଦିଆଗଲା, ସେ ତାକୁ ରାତିରେ ଛିଡ଼େଇଦେଲେ । ତାଙ୍କ ହାତ-ଗୋଡ଼କୁ ଜଂଜିରରେ ବାନ୍ଧିଦିଆଗଲା; ସେ ତାକୁ ରାତିରେ କୌଣସି ଉପାୟରେ ଭାଙ୍ଗି ପକାଇଲେ ବୋଲି ନିଜେ ସଭରକର ଲେଖିଛନ୍ତି । ତାଙ୍କୁ ୱାଡ଼ରମାନେ ଅସଭ୍ୟ ଭାଷାରେ ଅଜସ୍ର ଗାଳିଦେଲେ; ସେ ଚୁପ ରହିଲେ; ସେ ଆଉ ସେଲ ଭିତରୁ ବାହାରିଲେ ନାହିଁ । ସେ ସବୁବେଳେ ଲଙ୍ଗଳା ରହିଲେ ଏବଂ ସେହି କାରଣରୁ ପ୍ରବଳ ଥଣ୍ଡାରେ ଥରୁଥିଲେ । ତାଙ୍କୁ ବହୁତ ଧମକ ଦିଆଗଲା; ସେ ଦବିଲେ ନାହିଁ ।

ନନୀଗୋପାଳଙ୍କ ପ୍ରଧାନ ଦାବିଥିଲା – ରାଜନୈତିକ ବନ୍ଦୀମାନଙ୍କୁ ଯଥୋପଯୁକ୍ତ ସମ୍ମାନ ଦିଆଯାଉ । କିନ୍ତୁ ସେଲୁ୍ୟଲାର ଜେଲରେ ସଶସ୍ତ୍ର ବିପ୍ଳବୀମାନଙ୍କୁ ରାଜନୈତିକ ବନ୍ଦୀଭାବେ ବିଚାରକରାନଯାଇ 'ଡେଞ୍ଜରସ କ୍ରିମିନାଲ' ବୋଲି କୁହାଯାଉଥିଲା; କିନ୍ତୁ କ୍ରିମିନାଲମାନଙ୍କ ଅପେକ୍ଷା ଅଧିକ ଦଣ୍ଡ ଦିଆଯାଉଥିଲା । ନନୀଗୋପାଳଙ୍କର ସତ୍ୟାଗ୍ରହ ଓ ହରତାଳ ଫଳରେ ସେଲୁ୍ୟଲାର ଜେଲର କର୍ମଚାରୀମାନଙ୍କ ଉପରେ କିଭଳି ପ୍ରଭାବ ପଡ଼ିଲା କେଜାଣି ଯେତେବେଳେ ତାଙ୍କୁ ବେତପାହାର ଦିଆଯିବାର ନିର୍ଦ୍ଦେଶ ହେଲା, ସେତେବେଳେ କେହି ତାଙ୍କୁ ଦଣ୍ଡ ଦେବାକୁ ବାହାରିଲେନାହିଁ ।

ନନୀଗୋପାଳଙ୍କୁ ବେତମାଡ଼ ଦିଆଯିବାକୁ ସ୍ଥିରହୋଇଥିବା କଥା ସଭରକର ଶୁଣିବା ମାତ୍ରେ ବାରୀ ନିକଟରେ ଏହାର ପ୍ରତିବାଦ କରିଥିଲେ । ଏହା ଦ୍ୱାରା ଭୟାବହ ପରିସ୍ଥିତି ସୃଷ୍ଟି ହେବ ବୋଲି ସେ ତାଙ୍କୁ ଚେତେଇଦେଇଥିଲେ । କାରଣ ନନୀଗୋପାଳ ଦୀର୍ଘଦିନ ଅଶେଷ ନିର୍ଯ୍ୟାତନା ସହ୍ୟକରି ସମସ୍ତଙ୍କୁ ଏମିତି ପ୍ରଭାବିତ କରିଦେଇଥିଲେ ଯେ, ଅନ୍ୟ କେତେକ ବନ୍ଦୀ ତାଙ୍କ ପ୍ରତି ସହାନୁଭୂତି ଜଣାଇ ଅନଶନ ଆରମ୍ଭ କରିଥିଲେ । ସଭରକର ବାରୀଙ୍କୁ ସ୍ପଷ୍ଟ କହିଦେଲେ ଭାଇସ୍‌ରୟ ଲର୍ଡ଼ ମର୍ଲେଙ୍କ ସଂଶୋଧିତ ନିର୍ଦ୍ଦେଶ ଅନୁସାରେ ରାଜନୈତିକ ବନ୍ଦୀମାନଙ୍କୁ ବେତ୍ରାଘାତ ଦେବା ଭାରତ ସରକାରଙ୍କ ଅନୁମତିସାପେକ୍ଷ ଏବଂ ଏ ସବୁ ନିୟମକୁ ଅବଜ୍ଞା କରି ବାରୀ ଯଦି ନନୀଙ୍କୁ ବେତମାଡ଼ ଦିଅନ୍ତି, ତା'ର ପ୍ରତିବାଦରେ ସେଲୁ୍ୟଲାର ଜେଲର ସମସ୍ତ ରାଜନୈତିକ ବନ୍ଦୀ, ଏପରକି ତାଙ୍କ ଭଳି ବୃଦ୍ଧ ମଧ୍ୟ ଅନଶନ କରିବେ ବୋଲି ସେ କହିଲେ । ବାରୀ ଚିଫ୍ କମିଶନରଙ୍କୁ ଫୋନ୍ କରି ଅନୁମତି ଚାହିଁଲେ । ଚିଫ୍ କମିଶନର ସେଲୁ୍ୟଲାର ଜେଲର ଉତ୍ତେଜନାମୟ ପରିସ୍ଥିତି ସମ୍ପର୍କରେ ସଂପୂର୍ଣ୍ଣ ଅବହିତ ଥିଲା । ସେ ହଁ ନାଁ କିଛି କହିପାରିଲାନି । ଚିଫ୍ କମିଶନଙ୍କର ଏ ଅବସ୍ଥା ଦେଖି ତଳିଆ କର୍ମଚାରୀମାନେ ଡରିଗଲେ ନନୀଙ୍କୁ ବେତମାଡ଼ ଦେବାକୁ । ତାଙ୍କୁ ବେତମରା ଷ୍ଟାଣ୍ଡରୁ ଫିଟାଇ ଅଣାଗଲା । ସଭରକର ପ୍ରଭୃତି ଏଥିରେ ଆଶ୍ୱସ୍ତ ହେଲେ, କିନ୍ତୁ ନନୀଙ୍କ ମନରେ ଖୁବ୍ ଦୁଃଖ ହେଲା । ସେ ଚାହୁଁଥିଲେ ଆହୁରି ଶାରୀରିକ କ୍ଳେଶ ଓ ନିର୍ଯାତନା ସହ୍ୟକରି ତାଙ୍କର ଦାବିକୁ ଆହୁରି ଦୃଢ଼ କରିବା ପାଇଁ । କିନ୍ତୁ ବେତମାଡ଼ ଦେଇନପାରି ବାରୀର ମୁଣ୍ଡ ଖରାପହୋଇଗଲା । ନନୀଙ୍କୁ ଆଉ ସେଲୁ୍ୟଲାରରେ ରଖାନହୋଇ ବାହାର ଜେଲକୁ ନିଆଗଲା । ଅନ୍ୟ ବନ୍ଦୀମାନେ ଏହି ସମ୍ବାଦରେ ବଡ଼ ବିବ୍ରତ ହୋଇପଡ଼ିଲେ ଏବଂ ନାନା

ସନ୍ଦେହ କଲେ । ନନୀ କିନ୍ତୁ ଛାଡ଼ିବାର ପାତ୍ର ନ ଥିଲେ; ସେ ସଙ୍ଗେ ସଙ୍ଗେ ଅନଶନ ଆରମ୍ଭ କରିଦେଲେ । ତାଙ୍କର ସେହି ଗୋଟାଏ ଦାବି "ଆମକୁ ରାଜନୈତିକ ବନ୍ଦୀର ମର୍ଯ୍ୟାଦା ଦିଆଯାଉ, ମୁଖ୍ୟ ଭୂଖଣ୍ଡ (ଭାରତ)ରେ ଜେଲ ଭିତରେ ଯେଉଁ ସୁବିଧା ମିଳୁଛି ତାହା ସବୁ ଯୋଗାଇ- ଦିଅ । ଅର୍ଥାତ୍ ବନ୍ଦୀ ଭଲ ବ୍ୟବହାର କଲେ ତା'ର ଦଣ୍ଡର ସମୟ ଯେମିତି କମି- ଯାଉଥିଲା, ସେଭଳି ସେଲ୍ୟୁଲାରରେ କରାଯାଉ ବୋଲି ସେ ଦାବି କରୁଥିଲେ । ଚିଫ୍ କମିସନର ନନୀଙ୍କୁ ଧମକାଇ କହିଲେ, "ତୁମେ ଏମିତି ଅନଶନ କରି ମରିଗଲେ ବି ଆମ ହୃଦୟ ତରଳାଇ ପାରିବ ନାହିଁ । ଆମେ ଭିନ୍ନ ଉପାଦାନରେ ଗଢ଼ା ।" ନନୀ ମଧ ଭିନ୍ନ ଉପାଦାନରେ ଗଢ଼ାହୋଇଥିଲେ । ତାଙ୍କୁ ପୁଣି କାଳ କୋଠରିକୁ ଅଣାଗଲା । ତାଙ୍କୁ ଠିଆ ହାତକଡ଼ି ଦଣ୍ଡ ଦିଆଗଲା; ତଥାପି ସେ ଟଳିଲେ ନାହିଁ; ଖାଇଲେ ନାହିଁ । ତାଙ୍କର ଅବସ୍ଥା ଶୋଚନୀୟ ହେବାରୁ ବଳପୂର୍ବକ ଖୁଆଇବା ଆରମ୍ଭହୋଇଗଲା । ସେ ତା'ର ପ୍ରତିରୋଧକଲେ । ରବରଟିଉବରେ ନାକ ଛିଡ଼ି ଘା'ହୋଇଗଲା । ଏଭଳି ଭାବରେ କିଛି ଦିନ ଚାଲିଲାପରେ ନନୀଗୋପାଳ ଅସ୍ଥିକଙ୍କାଳସାର ହୋଇଗଲେ । ନନୀଗୋପାଳଙ୍କର ଅନଶନ ସମ୍ବାଦ ସେଲ୍ୟୁଲାର ଜେଲରେ ପହଞ୍ଚିବାରୁ ଘୋର ଉତ୍ତେଜନା ସୃଷ୍ଟି ହେଲା । ସଭରକର ମଧ ଅନଶନକଲେ । ବାରୀର ମୁଣ୍ଡ ଖରାପ ହୋଇଗଲା, ଚିଫ୍ କମିଶନର ବୋକା ବନିଗଲା । ସଭରକରଙ୍କୁ ବହୁତ ବୁଝାଇଲେ । ସଭରକର ଅନଶନ ଭଙ୍ଗର ସର୍ତ୍ତ ରଖିଲେ ଯେ, ନନୀ ସହ ସେ ସାକ୍ଷାତ କରିବେ । ବାରୀ ରାଜିହେଲା; ନନୀଙ୍କୁ ସଭରକର ଭେଟିଲେ । ସଭରକର ଅନଶନ କରିଛନ୍ତି ଶୁଣି ନନୀ ବିବ୍ରତ ହୋଇଗଲେ । ସଭରକର ତାଙ୍କୁ ବହୁତ ବୁଝାଇଲେ ଅନଶନ ଭାଙ୍ଗିବାକୁ । "ତୁମେ ଏମିତି ସ୍ତ୍ରୀଲୋକଭଳି ଅଭିମାନ କରି ମରିବାକୁ ଜନ୍ମହୋଇନାହଁ । ତୁମେ ଭୀରୁ ନୁହଁ । ଏ ଦେହକୁ ଏମିତି ତିଳ ତିଳ କରି କାହିଁକି ମାରୁଛ ? ଯାହା ପାରୁଛ ଖାଅ; ଯାହା ଦେଉଛନ୍ତି ଖାଅ, ମଜବୁତ ହୁଅ; ସଶସ୍ତ୍ର ସଂଗ୍ରାମୀ ଏମିତି ମରେନା, ଏମିତି ହେଲେ କିଛି ହୋଇପାରିବନି । ଆମକୁ ପୁଣି ଭାରତକୁ ଫେରିଯିବାକୁ ପଡ଼ିବ । ଆମ ପାଇଁ ଆହୁରି ବହୁତ କାମ ବାକିରହିଛି । ମୋ' କଥା ମାନ ନନୀଗୋପାଳ, ତୁମେ ଅନଶନ କରି ମରିବ ତ ମୁଁ ମଧ୍ୟ ମରିବି ।" ନନୀଗୋପାଳ ଅନଶନ ଭଙ୍ଗକଲେ । ଏହା ପରେ ବାରୀ ପ୍ରଭୃତିଙ୍କର ମନୋଭାବ ଟିକେ ବଦଳିବାର ଜଣାଗଲା ।

ନନୀଗୋପାଳଙ୍କ ଆନ୍ଦୋଳନ ସେଲ୍ୟୁଲାର ଜେଲରେ ଏକ ନିତ୍ୟ-ନୈମିତ୍ତିକ-ଘଟଣାରେ ପରିଣତ ହେଲା । ଶିଖ ବିପ୍ଳବୀ ଛତର ସିଂ, ଧର୍ମବୀର ରାମରକ୍ଷା, ଭାଇ ପରମାନନ୍ଦ ପ୍ରଭୃତି ସେଥିପାଇଁ ଅଶେଷ ଦୁଃଖକଷ୍ଟ ବରଣ କରିଥିଲେ । ଗଦର ଦଳର ଜଗତରାମ ପ୍ରାଣତ୍ୟାଗକଲେ । ଭାରତରେ ଓ ହାଉସ ଅଫ୍ କମନ୍ସରେ ଏ ସମ୍ପର୍କରେ ତୁମୁଳ ଆଲୋଡ଼ନ ସୃଷ୍ଟି ହେଲା ଏବଂ ଫଳରେ ବାରୀନଦା' ପ୍ରଭୃତି କେତେକ ବନ୍ଦୀଙ୍କୁ ଭାରତ ଫେରାଇଅଣାଗଲା । ସେମାନଙ୍କୁ ଆଉ କାଳକୋଠରିର ନିର୍ମମତାରେ ସଢ଼ିବାକୁ ପଡ଼ିଲା ନାହିଁ ।

କିନ୍ତୁ ଚଟ୍ଟଗ୍ରାମ ବିପ୍ଳବ ପରେ ବହୁସଂଖ୍ୟାରେ ସଶସ୍ତ୍ର ବିପ୍ଳବୀଙ୍କୁ ପୁଣି ସେଲ୍ୟୁଲାର ପଠାଗଲା । ସେମାନେ ଖୁବ୍ ଲାଡୁଆ ବୀର ଥିଲେ; ସହଜରେ ଦବିଯିବା ଲୋକ ନ ଥିଲେ ।

କାକୋରୀ ଟ୍ରେନ ଲୁଣ୍ଠନ ମାମଲାରେ ମଧ୍ୟ ବନ୍ଦୀମାନେ ଏଠାକୁ ଆସିଲେ । କିନ୍ତୁ ପହଞ୍ଚିବା ସଂଗେ ସଂଗେ ସେଲ୍ୟୁଲାର ଜେଲର ନିଷ୍ଠୁର ନିୟମକାନୁନ ବିରୁଦ୍ଧରେ ସେମାନେ ଆନ୍ଦୋଳନ ଆରମ୍ଭ କରିଦେଲେ । ୧୯୩୩ ମସିହା ଆରମ୍ଭରେ ଏହି ସଂଘର୍ଷ ଆରମ୍ଭ ହୋଇଗଲା । ଏହି ଅନଶନ ସମୟରେହିଁ ବଳପୂର୍ବକ ଦୁଧ ଖୋଇବାକୁ ଯାଇ ବିପ୍ଳବୀ ମହାବୀର ସିଂହକୁ ମାରିଦିଆଗଲା । ମୋହିତ ମୋହନ ମୈତ୍ର ଓ ମୋହନ କିଶୋରଙ୍କର ମୃତ୍ୟୁ ହୋଇଥିଲା । କେତେକ ଐତିହାସିକଙ୍କ ମତରେ ମହାବୀର ସିଂହଙ୍କର ଶବକୁ ସମୁଦ୍ରରେ ଫୋପାଡ଼ି ଦିଆଯାଇଥିଲା । ଅନଶନ ସମ୍ବାଦ ଭାରତରେ ପହଞ୍ଚି ସେଠାରେ ଆଲୋଡ଼ନ ସୃଷ୍ଟିକଲା । ପ୍ରଥମେ କଠୋର କିନ୍ତୁ ପରେ ବନ୍ଦୀମାନଙ୍କର ମନୋବଳ ଦେଖି ସେମାନଙ୍କର ଦାବୀ ଜେଲକର୍ତ୍ତୃପକ୍ଷ କେତେକାଂଶରେ ପୂରଣ କରିଦେବାରୁ ୨୬ ଜୁନ ୧୯୩୩ରେ ଅନଶନ ବନ୍ଦ ହେଲା । ଆଣ୍ଡାମାନ ଅତ୍ୟାଚାର ଭାରତରେ ଓ ଇଂଲାଣ୍ଡରେ ଭାରତୀୟ ଲୋକଙ୍କ ଭିତରେ ଅଧିକ ପ୍ରଚାର ହେବାରୁ ଏବଂ ଏହି ଅମାନୁଷିକ ଜେଲବ୍ୟବସ୍ଥାକୁ ସଂପୂର୍ଣ୍ଣ ଲୋପ କରିଦେବାକୁ ଦେଶରେ ସବୁ ସ୍ତରରେ ଦୃଢ଼ ଦାବି ହେବାରୁ ସରକାର ଅଧିକ ଦିନ ତାକୁ ଚପେଇ ରଖିବା ସମ୍ଭବ ହେଲା ନାହିଁ । ଏହି ଦାବି ଫଳରେ ୧୯୩୬ ମସିହାରେ ହୋମ୍ ସେକ୍ରେଟାରୀଙ୍କୁ ଆଣ୍ଡାମାନ ପଠାଗଲା । କିନ୍ତୁ ସେ ଫେରିଯାଇ ଓଲଟା ରିପୋର୍ଟ ଦେଲେ– 'ସେଲ୍ୟୁଲାର ଜେଲ'ର ସବୁ ବ୍ୟବସ୍ଥା ଭାରତର ଅନ୍ୟାନ୍ୟ ଜେଲଠାରୁ ଉନ୍ନତ ଧରଣର । ଏହି ସମ୍ବାଦ ଅଣ୍ଡାମାନରେ ପ୍ରଚାରିତ ହେବା ସଂଗେ ସଂଗେ ରାଜନୈତିକ ବନ୍ଦୀମାନେ ଏକ ସ୍ମାରକପତ୍ର ଦେଇ ସେଥିରେ କ୍ରେଗର ଅଭିମତର ପ୍ରତିବାଦ କଲେ ଏବଂ ବେସରକାରୀ ଲୋକେ ଆସି ସେଲ୍ୟୁଲାର ଅବସ୍ଥା ଦେଖିଯାଆନ୍ତୁ ବୋଲି ଦାବି କଲେ । ୧୯୩୬ ଆଉ ୧୯୧୨ ହୋଇ ନଥିଲା । କେତେ ବିପ୍ଳବୀଙ୍କର ଆତ୍ମତ୍ୟାଗଫଳରେ ଏମିତି ଅବସ୍ଥା ସୃଷ୍ଟି ହୋଇଥିଲା ଯେ, ଉକ୍ତ ସ୍ମାରକପତ୍ରକୁ ଅଟକାଇବା କିମ୍ବା ଗାଏବ କରିଦେବା ସମ୍ଭବ ହେଲା ନାହିଁ । ସ୍ମାରକପତ୍ର ଭାରତରେ ପହଞ୍ଚିବା ସଂଗେ ସଂଗେ ଖବରକାଗଜରେ ମଧ୍ୟ ପ୍ରକାଶ ପାଇଗଲା । ୧୯୩୬ ମସିହା ଅକ୍ଟୋବର ମାସରେ କଂଗ୍ରେସର ରାୟଜାଦା ହଂସରାଜ ଓ ମୁସଲିମ ଲିଗ୍‌ର ସାର୍ ମୋହମ୍ମଦ ଜମିନ ଖାଁ ବେସରକାରୀ ତଦନ୍ତ କମିଟିରେ ଆଣ୍ଡାମାନ ଆସିଲେ । ସବୁ ସେମାନେ ଦେଖିଗଲେ; କିନ୍ତୁ ଅବସ୍ଥାର କୌଣସି ପରିବର୍ତ୍ତନ ହୋଇନଥିଲା ବା ରାଜନୈତିକ ବନ୍ଦୀମାନଙ୍କର ଦୁର୍ଦ୍ଦଶା ଦୂରହୋଇନଥିଲା । କାରଣ, ବା କଂଗ୍ରେସ ବା ମୁସଲିମ ଲିଗ- କାହାରି ହେଲେ ସଶସ୍ତ୍ର ବିପ୍ଳବୀଙ୍କ ପ୍ରତି ସହାନୁଭୂତି ନ ଥିଲା ।

୧୯୩୭ ମସିହା ଭାରତର ଅଧିକାଂଶ ରାଜ୍ୟରେ ଯେତେବେଳେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାଗଲା, ସେତେବେଳେ ସେଲ୍ୟୁଲାର ବନ୍ଦୀମାନଙ୍କ ଭିତରେ ସ୍ୱତଃ ଆଶାର ସଂଚାର ହେଲା ଯେ ଆମ ସରକାର ନିଶ୍ଚୟ ଆଣ୍ଡାମାନ ଅତ୍ୟାଚାରର କିଛି ପ୍ରତିକାର କରିବ । କିନ୍ତୁ କିଛି ହେଲା ନାହିଁ; ଫଳରେ ବାଧହୋଇ ବନ୍ଦୀମାନେ ଆନ୍ଦୋଳନ ଆରମ୍ଭ କଲେ । ୧୯୩୭ ମସିହା ଜୁଲାଇ ମାସରେ ୧୮୩ ଜଣ ରାଜନୈତିକ ବନ୍ଦୀ ଅନଶନ ଆରମ୍ଭ କଲେ । କ୍ରମେ ଏହି ସଂଖ୍ୟା ବଢ଼ିଲା । ଭାରତରେ ମଧ୍ୟ ଏହି ଗଣ-ଅନଶନ ସମ୍ବାଦ

ପହଞ୍ଚିଗଲା । ସଭାସମିତି, ଶୋଭାଯାତ୍ରା ଚାଲିଲା ଚାରିଆଡ଼େ– 'ଆଣ୍ଡାମାନ ବନ୍ଦୀଙ୍କୁ ଖଲାସକର' । ବନ୍ଦୀମାନେ ଅନଶନ ଭଙ୍ଗ କରିବାକୁ ଦେଶବାସୀ ସେମାନଙ୍କୁ ନିବେଦନ କଲେ । ବିଶ୍ୱକବି ରବୀନ୍ଦ୍ରନାଥ ଟେଲିଗ୍ରାମ୍ କରି ଜଣାଇଲେ ''ଆଣ୍ଡାମାନର ସେଲ୍ୟୁଲାର ଜେଲରେ ଅନଶନ କରିଥିବା ଆମର ଭାଇମାନେ, ଆପଣମାନଙ୍କ ଦାବି ଯଥାର୍ଥ । ସରକାର ସେ ଦାୟିତ୍ୱ ଯେମିତି ପାଳନକରେ ତାହା ଦେଖିବାକୁ ଆମକୁ ଛାଡ଼ିଦିଅନ୍ତୁ; ଅନଶନ କରି ଆପଣମାନଙ୍କର ଅମୂଲ୍ୟ ଜୀବନ ନଷ୍ଟ କରନ୍ତୁ ନାହିଁ । ଅନଶନ ଭଙ୍ଗ କରନ୍ତୁ ।'' ବଙ୍ଗଳାର ପ୍ରଧାନମନ୍ତ୍ରୀ (ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) ଫଜଲୁଲ ହକ, ନେହେରୁ, ସତ୍ୟମୂର୍ତ୍ତି ଓ ଭୁଲାଭାଇ ମଧ ନିବେଦନ କଲେ ବନ୍ଦୀମାନଙ୍କୁ ଅନଶନ ଭଙ୍ଗ କରିବାକୁ । କିନ୍ତୁ ବନ୍ଦୀମାନେ ତାହା ଶୁଣିବାକୁ ରାଜି ହେଲେ ନାହିଁ । ସେଲ୍ୟୁଲାର ଜେଲରେ ଆଉ କିଛି ସୁବିଧା-ସୁଯୋଗ ଆଦାୟ କରିବା ବର୍ତ୍ତମାନ ଉଦ୍ଦେଶ୍ୟ ହୋଇ ରହିଲା ନାହିଁ । ବନ୍ଦୀମାନେ ପୂର୍ଣ୍ଣ ମୁକ୍ତି ଦାବିକରିଥିଲେ । ୧୯୩୭ ମସିହା ନିର୍ବାଚନ ଇସ୍ତାହାରରେ କଂଗ୍ରେସ 'ଭାରତୀୟଙ୍କର ନାଗରିକ ଅଧିକାର ଫେରାଇଦେବ' ବୋଲି ପ୍ରତିଶ୍ରୁତି ଦେଇଥିଲା । ସେ ସମ୍ପର୍କରେ ଆଣ୍ଡାମାନ ବନ୍ଦୀମାନେ କ'ଣ ଭାବୁଥିଲେ, ତାହା ବିଜୟ କୁମାର ସିହ୍ନା ତାଙ୍କର ଡାଏରୀ ରେ ଉଲ୍ଲେଖ କରିଛନ୍ତି । ଶ୍ରୀଯୁକ୍ତ ସିହ୍ନା 'ଟାଇମ୍ସ ଅଫ୍ ଇଣ୍ଡିଆ', 'ପାଇଓନିୟର' ଓ 'ଆସୋସିଏଟେଡ୍ ପ୍ରେସ ଅଫ୍ ଇଣ୍ଡିଆ'ର ପ୍ରତିନିଧି ଥିଲେ । କିନ୍ତୁ ହିନ୍ଦୁସ୍ଥାନ ରିପବ୍ଲିକାନ ସୋସାଲିଷ୍ଟ ଆସୋସିଏସନରେ ଯୋଗଦେଇ ଲାହୋର ଷଡ଼ଯନ୍ତ୍ର ମାମଲାରେ ଦ୍ୱୀପାନ୍ତର ଦଣ୍ଡ ପାଇଥିଲେ । ଉପରୋକ୍ତ ଆନ୍ଦୋଳନ ସମ୍ପର୍କରେ ସିହ୍ନାଙ୍କର ଡାଏରୀରେ ଉଲ୍ଲେଖ ଅଛି- "We had no other method of struggle open to us. We beleived that if at least a few of us succeded in courting death, the agitation would be raised to the highest pitch."

ଆଣ୍ଡାମାନ ବନ୍ଦୀଙ୍କର ଅନଶନ ସମ୍ବାଦରେ ଭାରତରେ ମଧ ବିଭିନ୍ନ ଜେଲରେ ଥିବା ରାଜନୈତିକ ବନ୍ଦୀମାନେ ଅନଶନ ଆରମ୍ଭ କଲେ । ବ୍ରିଟିଶ ସରକାର ବଡ଼ ଅଖାଡୁଆ ପରିସ୍ଥିତିରେ ପଡ଼ିଲା । ଯଦିଓ ସେତେବେଳେ ପ୍ରକାଶ ପାଇଥିବା ପ୍ରେସ ଇସ୍ତାହାରେ ''ଅନଶନ ବନ୍ଦ ନକଲେ ବନ୍ଦୀମାନଙ୍କର କୌଣସି ଦାବି ଶୁଣାଯିବନାହିଁ'' ବୋଲି ଧମକ ଦିଆଯାଉଥିଲା; ତଥାପି ସରକାର ଆଉ ସେଲ୍ୟୁଲାର ଜେଲକୁ ଚାଲୁ- ରଖିବା ଅବସ୍ଥାରେ ନଥିଲା । ଭାରତର କେନ୍ଦ୍ରୀୟ ପାର୍ଲିଆମେଣ୍ଟରେ ଏକ ପ୍ରସ୍ତାବ ଗୃହୀତ ହୋଇ ସେଥିରେ ସମସ୍ତ ବନ୍ଦୀଙ୍କୁ ଦେଶକୁ ଫେରାଇ ଆଣିବାକୁ ନିର୍ଦ୍ଦେଶ ଦିଆଯାଇଥିଲା ।

କିନ୍ତୁ ବନ୍ଦୀମାନେ ସମସ୍ତେ ଆଶାକରୁଥିଲେ ଯେ, ଗାନ୍ଧିଜୀ ନିଶ୍ଚୟ ବନ୍ଦୀମାନଙ୍କର କ୍ଳେଶ ଓ ନିର୍ଯାତନା ଉପଲବ୍ଧି କରିବେ ଏବଂ ହୁଏତ ସ୍ୱଚକ୍ଷୁରେ ସେମାନଙ୍କର ଅବସ୍ଥା ଦେଖିବାକୁ ଆଣ୍ଡାମାନ ଆସିବେ କିମ୍ବା ବନ୍ଦୀମାନଙ୍କୁ ସ୍ୱଦେଶକୁ ନେଇଯିବା ପାଇଁ ଭାଇସରୟଙ୍କ ଉପରେ ଚାପପକେଇବେ । କାରଣ ଏହି ଅନଶନ ଆନ୍ଦୋଳନ ଭିତରେ କେତେଜଣ ଯକ୍ଷ୍ମା-ପୀଡ଼ିତ ବନ୍ଦୀ ପ୍ରାଣତ୍ୟାଗ କରିଥିଲେ; ତିନିଗଣ ପାଗଳ ହୋଇ

ଯାଇଥିଲେ । ଅସଂଖ୍ୟା ବନ୍ଦୀ ଝାଡ଼ା, ବାନ୍ତି ଓ ମ୍ୟାଲେରିଆରେ ଶଯ୍ୟାଶାୟୀ ହୋଇ-ସାରିଥିଲେ । କିନ୍ତୁ ସେମାନଙ୍କର ମନୋବଳ ଓ ନୈତିକ ଚରିତ୍ର ଏତେ ଦୃଢ଼ ଥିଲା ଯେ, ସେମାନଙ୍କ ଦାବି ପୂରଣ ନ ହେବା ପର୍ଯ୍ୟନ୍ତ ସେମାନେ ଅନଶନ ପରିତ୍ୟାଗ କରିବାକୁ ଆଦୌ ପ୍ରସ୍ତୁତ ନଥିଲେ । ସେମାନଙ୍କୁ ବଳପୂର୍ବକ ଖୁଆଇବାକୁ ଚେଷ୍ଟା କରି ବହୁ ଦୁଃଖଦାୟକ ଘଟଣା ଘଟିଲା । ପ୍ରଥମରୁ ଯକ୍ଷ୍ମା, ଆଜମା ଓ ଆଣ୍ଠୁ-ଗଣ୍ଠି ବାତ ପ୍ରଭୃତି ଭୋଗୁଥିବା ବନ୍ଦୀମାନଙ୍କୁ ଆନ୍ଦୋଳନରୁ ବାଦ୍‌ଦିଆଯାଇଥିଲା । କିନ୍ତୁ ଯେତେବେଳେ ଦେଖାଗଲା ଯେ ଆନ୍ଦୋଳନ ଭିତରେ କେତେକ ବନ୍ଦୀ ମରିନଗଲେ ଆନ୍ଦୋଳନ ସଫଳ ହେବନାହିଁ, ସେତେବେଳେ ସେମାନେ ମଧ୍ୟ ଅନଶନରେ ଯୋଗଦେଲେ; ଫଳରେ ଆନ୍ଦୋଳନକାରୀଙ୍କ ସଂଖ୍ୟା ବଢ଼ିଗଲା ।

କ୍ୟାପ୍‌ଟେନ୍ ଚୌଧୁରୀ ଜଣେ ବୁଦ୍ଧିମାନ୍ ଜେଲ ଡାକ୍ତର ଥିଲେ । ଜଣେହେଲେ ବନ୍ଦୀ ଯେଭଳି ନ ମରନ୍ତି, ସେଥିପାଇଁ ସେ ଉଦ୍ୟମ କଲେ ଏବଂ ଟିଉବ ସାହାଯ୍ୟରେ ଗ୍ଳୁକୋଜ, ବ୍ରାଣ୍ଡି ଓ ଅଣ୍ଡା ପ୍ରଭୃତି ବଳକାରକ ଜିନିଷ ବନ୍ଦୀମାନଙ୍କୁ ଖୁଆଇବାର ବ୍ୟବସ୍ଥା କଲେ; କାରଣ ବନ୍ଦୀଙ୍କର ମୃତ୍ୟୁ ହେଲେ ତାହାର ପ୍ରତିକ୍ରିୟା ଦେଶ ଭିତରେ ଅଧିକ ଖରାପ ହେବ ବୋଲି ସେ ଆଶଙ୍କା କରୁଥିଲେ । ସେତିକି ବେଳେ ଏକ ନୂଆ ଘଟଣା ଘଟିଲା, ଯାହା ସମଗ୍ର ଆନ୍ଦୋଳନର ମୋଡ଼ ଅନ୍ୟ ଆଡ଼କୁ ଫେରାଇଦେଲା । ବଳପୂର୍ବକ ଖୁଆଇବା ଦାୟିତ୍ୱ ଯେଉଁ କଏଦୀ କର୍ମଚାରୀଙ୍କ ଉପରେ ନ୍ୟସ୍ତ ଥିଲା; ସେମାନେ ତାହା କରିବାକୁ ଅସ୍ୱୀକାର କଲେ । ସେମାନେ ସ୍ପଷ୍ଟ କହିଦେଲେ ‘‘ବାବୁମାନେ ଆମର ଭାଇ, ଆମେ ଏଭଳି କାର୍ଯ୍ୟ କରିପାରିବୁ ନାହିଁ ।’’

ଭାରତରେ ଥିବା ବନ୍ଦୀମାନଙ୍କର ଆତ୍ମୀୟମାନଙ୍କ ଜରିଆରେ ବନ୍ଦୀମାନଙ୍କୁ ଅନୁରୋଧ କରିବାକୁ ସରକାର ଚେଷ୍ଟାକଲେ । ସେଭଳି ବହୁ ତାର-ବାର୍ତ୍ତା ସେଲୁ୍ୟଲାରରେ ଯାଇ ପହଞ୍ଚିଗଲା । କିନ୍ତୁ ଗୋଟିଏ ମାତ୍ର ଧାଡ଼ିରେ ତା’ର ଜବାବ ଦେଲେ ବନ୍ଦୀମାନେ– "Donot Worry" ବ୍ୟସ୍ତ ହୁଅ ନାହିଁ; କିନ୍ତୁ ବନ୍ଦୀମାନଙ୍କର କଥା ସିହ୍ନାଙ୍କ ଡାଏରୀରୁ ଜଣାଯାଏ "The constant woes and hardship that we had caused to our helpless dependant relatives, specially to ladies distrubed us profoundly. Many of us had in our homes old mothers, little brothers and sisters with no one to look after them."1

ତାହା ହେଲେ କ’ଣ ବନ୍ଦୀମାନେ ଭାଙ୍ଗିପଡ଼ିଥିଲେ ? ଆଦୌ ନୁହେଁ; ବରଂ ଦିନକୁ ଦିନ ଅନଶନକାରୀଙ୍କ ସଂଖ୍ୟା ବଢୁଥିଲା । ରୁଗ୍‌ଣ ବନ୍ଦୀ ଓ କଏଦୀ କର୍ମଚାରୀମାନେ ଆନ୍ଦୋଳନରେ ଯୋଗଦେଇଥିବାରୁ ସେଲୁ୍ୟଲାରର ଅବସ୍ଥା କ୍ରମଶଃ ନିୟନ୍ତ୍ରଣ ବାହାରକୁ ଚାଲିଯାଉଥିଲା । ଦେଶ ଭିତରେ ବନ୍ଦୀମାନଙ୍କ ପାଇଁ ଯେଉଁ ବ୍ୟାପକ ଜନ ଆନ୍ଦୋଳନ କ୍ରମେ ବୃଦ୍ଧି ପାଉଥିଲା, ତାହା ଆନ୍ଦୋଳନକାରୀଙ୍କର ମନୋବଳ ବଢ଼ାଉଥିଲା । ଅଗଷ୍ଟ ୧୨ ତାରିଖ ୧୯୩୭ରେ ସରକାର ଏକ ବିବୃତି ଦେଲେ ‘‘ଅନଶନ ଫଳରେ ବନ୍ଦୀମାନଙ୍କର ଜୀବନହାନିର ଆଶଙ୍କା ଥିବାରୁ ଭାରତ ସରକାର ସେଥିପାଇଁ ବିଶେଷ

1. B.K. Sinha - In the Andamans- The Indian Bastile - Pg. 192

ଉଦବିଗ୍ନ । ଏହି ସବୁ ପରିସ୍ଥିତିକୁ ବିଚାର କରି ସରକାର ସ୍ପଷ୍ଟ ଜଣାଇଦେବାକୁ ଚାହାଁନ୍ତି ଯେ, ଅନଶନ ଭଙ୍ଗ ନକଲେ ଆନ୍ଦୋଳନକାରୀ କିମ୍ବା ସେମାନଙ୍କ ପକ୍ଷରୁ ଅନ୍ୟ କାହା ସଙ୍ଗେ ଆଲୋଚନା କରିବାକୁ ସରକାର ପ୍ରସ୍ତୁତ ନୁହନ୍ତି ।''

ଉପରୋକ୍ତ ଇସ୍ତାହାରର ଭାଷାରୁ ସ୍ପଷ୍ଟ ଜଣାଯାଉଥିଲା ଯେ ସରକାରର ମନୋଭାବର ମୌଳିକ ପରିବର୍ତ୍ତନ ହୋଇଛି । ସେଲ୍ୟୁଲାରର ଜୀବନକାଳ ଭିତରେ ବନ୍ଦୀମାନଙ୍କ ପକ୍ଷରୁ ଯେତେ ଯେତେ ଆନ୍ଦୋଳନ ହୋଇଛି, ସରକାର ତାକୁ ଘୋର ନିର୍ମମତା ସହକାରେ ଦବେଇବାକୁ ଚେଷ୍ଟାକରିଆସିଛି । ଅନଶନକାରୀଙ୍କୁ ବେତ୍ରାଘାତ ବା ଠିଆହାତକଡ଼ି ଦେଇ ବା ଅଧିକ ଦିନ ଘଣାରେ ଖଟାଇ ଜବତ କରିବା ଆଜିଯାଏ, ସରକାରୀ ନୀତି ହୋଇ ଆସିଥିଲା । କିନ୍ତୁ ଏଥର ପରିସ୍ଥିତି ସଂପୂର୍ଣ୍ଣ ଅଲଗା ହୋଇଯାଇଛି । ସେମାନଙ୍କୁ ଖଲାସ କରିଦେବା ପାଇଁ ନୀତିଗତଦୃଷ୍ଟିରୁ ପ୍ରାୟ ସ୍ଥିର ହୋଇସାରିଥିଲା । ଦ୍ୱୀପାନ୍ତର ବ୍ୟବସ୍ଥା ବିଶେଷତଃ ସେଲ୍ୟୁଲାରକୁ ସଂପୂର୍ଣ୍ଣ ଉଠାଇଦେବେ କି ନା ତାହାହିଁ ଆଜି ସେମାନଙ୍କର ବିଚାର୍ଯ୍ୟ । ସରକାରର ଏହି ମନୋଭାବ ବୁଝିବାକୁ ବନ୍ଦୀମାନଙ୍କୁ ବିଳମ୍ବ ହେଲା ନାହିଁ ।

ମୂଳଭୂଖଣ୍ଡରେ ଦେଶବାସୀ ମଧ ପ୍ରବଳ ଆନ୍ଦୋଳନ ଆରମ୍ଭକରିଦେଇଥିଲେ । ଆନ୍ଦୋଳନ ଯେତେବେଳେ ସାଫଲ୍ୟର ଦ୍ୱାରଦେଶରେ, ଠିକ୍ ସେତିକିବେଳେ ଗାନ୍ଧିଜୀଙ୍କର ଟେଲିଗ୍ରାମ୍ ଅଗଷ୍ଟ ୧୮ ତାରିଖରେ ସେଲ୍ୟୁଲାରରେ ପହଞ୍ଚିଲା, ଯାହା କି ଅଧିକାଂଶ ବନ୍ଦୀଙ୍କ ମନରେ ବିରକ୍ତି ଓ ଅସ୍ୱସ୍ତି ସୃଷ୍ଟିକଲା । ଗାନ୍ଧିଜୀ ସେମାନଙ୍କୁ ଅନଶନ ପରିତ୍ୟାଗ କରିବାକୁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ଏକ ବିରକ୍ତିଜନକ ସର୍ତ୍ତ ଆରୋପ କରିଥିଲେ, ".......to assure him that those who belived in terrorism as a method of gaining independence had given up the idea and now had faith in nonviolence." ଅର୍ଥାତ୍ ସ୍ୱାଧୀନତାପ୍ରାପ୍ତି ପାଇଁ ହିଂସାତ୍ମକ ପଥରୁ ସେମାନଙ୍କର ବିଶ୍ୱାସ ତୁଟିଯାଇଛି ଏବଂ ଅହିଂସା ଉପରେ ସେମାନେ ବିଶ୍ୱାସ କରୁଅଛନ୍ତି ବୋଲି ତାଙ୍କୁ ଜବାବ ଦେବାକୁ ପଡ଼ିବ, ତେବେ ଯାଇ ତାଙ୍କର ହାତ ମଜବୁତ ହେବ ଏବଂ ସେ (ଗାନ୍ଧିଜୀ) ସେମାନଙ୍କର ମୁକ୍ତିପାଇଁ ସରକାରଠାରେ ଦାବି କରିବେ ବୋଲି ଗାନ୍ଧିଜୀ ବନ୍ଦୀମାନଙ୍କୁ ଲେଖିଥିଲେ ।

ନିରପେକ୍ଷଦୃଷ୍ଟିରେ ବିଚାରକଲେ ଏହା ନିର୍ବିବାଦରେ କୁହାଯାଇପାରେ ଯେ, ଗାନ୍ଧିଜୀଙ୍କର ଏହା ଏକ ନିରର୍ଥକ ଓ ଅବାନ୍ତର ସର୍ତ୍ତ । ଆନ୍ଦୋଳନକାରୀଙ୍କୁ ଏଭଳି ହେୟ ମନେକରିବା ଜାତିର ଜନକଙ୍କ ପକ୍ଷରେ ଏକ ଅନୁଚିତ କାର୍ଯ୍ୟ ହେଲା । କାରଣ ଆଣ୍ଡାମାନର ବନ୍ଦୀମାନେ କିଛି ବାଜେ ଲୋକ ନଥିଲେ, ଖୁବ୍ ଉଚ୍ଚଶିକ୍ଷିତ ଓ ସାଧାରଣ ଜୀବନରେ ସେମାନେ ସ୍ୱ-ସ୍ୱ କ୍ଷେତ୍ରରେ ପ୍ରତିଷ୍ଠିତ ବ୍ୟକ୍ତି ଥିଲେ । ଗାନ୍ଧିଜୀଙ୍କଠାରୁ ସେମାନଙ୍କର ଏତିକି ପାର୍ଥକ୍ୟ ଥିଲା ଯେ, ସେମାନେ ହିଂସାବାଦରେ ବିଶ୍ୱାସ କରୁଥିଲେ । ସଶସ୍ତ୍ର ଯୁଦ୍ଧ ବ୍ୟତୀତ ସ୍ୱାଧୀନତାପ୍ରାପ୍ତିର ଅନ୍ୟ କୌଣସି ଉପାୟ ନାହିଁ ବୋଲି ବିଶ୍ୱଇତିହାସରେ ବାରମ୍ବାର ପ୍ରମାଣିତ ହୋଇଥିବା ଦୃଷ୍ଟିରୁ ସେମାନେ ସେହି ବାଟ୍‌କୁ ନିର୍ଭୁଲ ଏବଂ ଅପରିହାର୍ଯ୍ୟ ବାଟ ବୋଲି ଗ୍ରହଣ କରିଥିଲେ । ଅଥଚ ଗାନ୍ଧିଜୀଙ୍କର 'ଅହିଂସା' ତ ଏକ୍ସପେରିମେଣ୍ଟ ବା 'ପରୀକ୍ଷା'

ଅବସ୍ଥାରେ ଥିଲା । ଆନ୍ଦୋଳନକାରୀମାନେ 'ସଶସ୍ତ୍ର ପନ୍ଥା'କୁ ଜୀବନର ଆଦର୍ଶରୂପେ ଗ୍ରହଣ କରିଥିଲେ ଏବଂ ସେଥିପାଇଁ ଅଶେଷ ଦୁଃଖ ନିର୍ଯ୍ୟାତନା ସହ୍ୟକରିଥିଲେ । ସୁତରାଂ ସେହି ଆଦର୍ଶର ଚରମ ବିଜୟ ମୁହୂର୍ତ୍ତରେ ସେମାନେ ତାହାକୁ ବିସର୍ଜନ ଦିଅନ୍ତେ କାହିଁକି ? ଗାନ୍ଧିଜୀ କ'ଣ, ସୁପରିନ୍‌ଟେନଡ଼େଣ୍ଟ ବାରୀ ପାଖରେ ଏଭଳି ଏକ 'କ୍ଷମାପ୍ରାର୍ଥନା' ଦରଖାସ୍ତ ସେମାନେ ଦେଇଥାନ୍ତେ ତ ବାରୀ ତାଙ୍କୁ ହୁଏତ କେବେଠୁଁ ଖଲାସ କରିସାରିଥାନ୍ତା ।

ଗାନ୍ଧିଜୀଙ୍କ ଭଳି ଜଣେ ମାନବପ୍ରେମୀ ମୁମୂର୍ଷୁ ବନ୍ଦୀମାନଙ୍କଠାରୁ ଏଭଳି ସର୍ତ୍ତ ଆଦାୟ କରିବା କେତେଦୂର ମାନବୋଚିତ ତାହା ମଧ୍ୟ ବିଚାର୍ଯ୍ୟ । ଗାନ୍ଧି-ଚରିତ୍ରରେ ଏହା ଏକ ଦୁର୍ବୋଧ୍ୟ ବିଚାର !

ଦୀର୍ଘ ଦେଢ଼ ମାସ ପରେ ବନ୍ଦୀମାନେ ଅନଶନ ଭଙ୍ଗକଲେ ଏବଂ ଦେଶବାସୀଙ୍କୁ ତାହା ଜଣାଇଦିଆଗଲା । କିନ୍ତୁ ସେମାନଙ୍କର ଆଦର୍ଶ ସେତେବେଳେ ନିଛକ ହିଂସାତ୍ମକ ବିପ୍ଳବରେ ପର୍ଯ୍ୟବସିତ ହୋଇନଥିଲା । ବନ୍ଦୀ-ଜୀବନରେ ସାମ୍ୟବାଦୀ ବିଚାର ଓ ଦର୍ଶନର ଅନୁଶୀଳନ ଫଳରେ ଆଗାମୀ ସମାଜ-ବ୍ୟବସ୍ଥା ସମ୍ପର୍କରେ ମଧ୍ୟ ଏକ ସ୍ପଷ୍ଟ ଚିତ୍ର ସେମାନଙ୍କ ଆଗରେ ପ୍ରତିଭାତ ହୋଇଥିଲା । ବିଜୟ କୁମାର ସିହ୍ନାଙ୍କ ନିମ୍ନଲିଖିତ ଉକ୍ତିରୁ ଏହାର ସମ୍ୟକ୍ ସୂଚନା ମିଳେ – "We had been deligent student of dialectical materialism for a period of three years. Historical materislism was not only a mere theory but also teaches how to act. We now felt tired and restless, for how long can one go on studying revolutionary philosophy without hurling one-self in the thick of the fray. Our restlesness got impetus from the event in Spain, France and Abysinia where people were fighting to liberty".1 ଅର୍ଥାତ ବନ୍ଦୀମାନେ ମାର୍କ୍ସୀୟ ଦର୍ଶନ ଅଧ୍ୟୟନକରି ସମସ୍ତେ ଦ୍ୱନ୍ଦ୍ୱାତ୍ମକ ସମର୍ଥକ ହୋଇଯାଇଥିଲେ ଏବଂ ସେହି ଦର୍ଶନର ପ୍ରୟୋଗ କରିବାକୁ ଯଥାଶୀଘ୍ର ସ୍ୱଦେଶକୁ ଫେରିଯିବାକୁ ଚାହୁଁଥିଲେ । ଫ୍ରାନ୍ସ, ସ୍ପେନ ଓ ଆବିସିନିଆର ମୁକ୍ତିସଂଗ୍ରାମ ବନ୍ଦୀମାନଙ୍କୁ ବିଶେଷ ଉତ୍ସାହିତ କରିଥିଲା । ଅନଶନ ଭଙ୍ଗ କରିବାର ମାସକ ଭିତରେ ସେଲ୍ୟୁଲାର ବନ୍ଦୀମାନଙ୍କୁ ଖଲାସ କରାଯିବା କାର୍ଯ୍ୟ ଆରମ୍ଭହେଲା ଏବଂ ୧୯୩୮ ଜାନୁୟାରୀ ୧୮ ତାରିଖରେ ଶେଷ ଦଳ ବନ୍ଦୀ ଆଣ୍ଡାମାନ ପରିତ୍ୟାଗ କଲେ । ଏହିଭଳି ଭାବରେ ୧୮୫୭ର ମହାବିଦ୍ରୋହଠାରୁ ଆରମ୍ଭହୋଇଥିବା ଲୁହଲହୁର ଇତିହାସ ପ୍ରାୟ ଅଶୀ ବର୍ଷର ମୁକ୍ତିଯୁଦ୍ଧ ଫଳରେ ବିଜୟଶ୍ରୀମଣ୍ଡିତ ହେଲା ଏବଂ ଏହି ଅଗ୍ନିପରୀକ୍ଷାରୁ ଯେଉଁ କେତେଜଣ ମୁକ୍ତିସଂଗ୍ରାମୀ କେବଳ ମାତ୍ର ଜୀବନ ନେଇ ସ୍ୱଦେଶକୁ ଫେରିଥିଲେ, ପରବର୍ତ୍ତୀ ଆନ୍ଦୋଳନରେ ସେମାନେ ସଶସ୍ତ୍ର ମୁକ୍ତି ସଂଗ୍ରାମ ପୁରୋଭାଗରେ ରହିଲେ ଓ ସାମ୍ୟବାଦର ମହାନ୍ ଦର୍ଶନରେ ଅନୁପ୍ରାଣିତ ହୋଇ ଦେଶସେବାରେ ବ୍ରତୀ ହେଲେ । ବାସ୍ତାଇଲ ଦୁର୍ଗର ପତନ ହେଲା ଓ ଆଜି ତାହା ଜାତୀୟ ମ୍ୟୁଜିଅମରେ ପରିଣତ ହୋଇଛି ।' ❑ ❑ ❑

1. B.K. Sinha - In Andamans- The Indian Bastile - Pg. 174-175
''କଳାପାଣିରେ ଅଗ୍ନିଶିଖା'' ପୁସ୍ତକ ଦ୍ରଷ୍ଟବ୍ୟ

## ଅଧ୍ୟାୟ - ବତିଶ

# ବିପ୍ଳବୀ ସୁଭାଷ

ଚଟ୍ଟଗ୍ରାମ ଖଣ୍ଡ-ଅଭ୍ୟୁତ୍‌ଥାନର ପ୍ରାୟ ୩-୪ ବର୍ଷ ଭିତରେ ଏହି ବିପ୍ଳବର ଅଧିକାଂଶ ନାୟକ ଜେଲ, ଦ୍ୱୀପାନ୍ତର କିମ୍ବା ଫାଶୀ ଦଣ୍ଡ ପାଇବା ପରେ ସରକାର ଆଶାକରିଥିଲେ ଯେ, ସଶସ୍ତ୍ର ମୁକ୍ତିସଂଗ୍ରାମ କିଛିଦିନ ପାଇଁ ଅନ୍ତତଃ ସ୍ତବ୍ଧ ହୋଇଯିବ । କିନ୍ତୁ ବିପ୍ଳବର ଗତିଧାରା କେବେ ବିଚ୍ଛିନ୍ନ ବା ଅସଂଲଗ୍ନ ଭାବରେ ଚାଲେନା; ଏହା ଏକ ଅବିଚ୍ଛିନ୍ନ ଧାରା ଓ କ୍ରମବର୍ଦ୍ଧିଷ୍ଣୁ ବିଚାର । ଚଟ୍ଟଗ୍ରାମ ବିପ୍ଳବ ଭାରତୀୟ ଜନତାର ଅନ୍ତର୍ନିହିତ ଶକ୍ତି, ସାମର୍ଥ୍ୟ ଏବଂ ଏକ ଗଣବିପ୍ଳବ ପାଇଁ ତାହାର ଐକାନ୍ତିକ ଇଚ୍ଛା, ବ୍ୟାକୁଳତା, ଶକ୍ତି ଓ ସାମର୍ଥ୍ୟକୁ ପ୍ରମାଣିତ କରିଗଲା । କିନ୍ତୁ ପାଶବିକ ଶକ୍ତି ଉପରେ ତିଷ୍ଠି ରହିଥିବା ସରକାର ପକ୍ଷରେ ଏହାର ମୂଲ୍ୟାୟନ କରିବା ସମ୍ଭବ ନଥିଲା । କାରଣ ସମସ୍ତ ପ୍ରକାର ସଶସ୍ତ୍ର ଅଭ୍ୟୁତ୍‌ଥାନକୁ ବଳପ୍ରୟୋଗ କରି ଦବେଇ ହେବ ବୋଲି ସରକାର ହିସାବ କରୁଥିଲେ ।

କିନ୍ତୁ ଭାରତରେ ସେତେବେଳେ ଅନ୍ତତଃ ଜଣେ ନେତା ଥିଲେ, ଯେ କି ଭାରତୀୟମାନଙ୍କର ଏହି ମାନସିକ ପ୍ରସ୍ତୁତି କଥା ଠିକ୍‌ରୂପେ ବୁଝିପାରୁଥିଲେ । ସେ ନେତା ଗାନ୍ଧିଜୀ ନୁହଁନ୍ତି, ନେହେରୁ ନୁହଁନ୍ତି କିମ୍ବା ପଟେଲ ନୁହଁନ୍ତି; ସେ ହେଉଛନ୍ତି ବିପ୍ଳବୀ ସୁଭାଷ । ୧୯୩୦ରେ ନୁହେଁ, ତା'ର ବହୁପୂର୍ବରୁ ୧୯୧୮ ପ୍ରଥମ ବିଶ୍ୱଯୁଦ୍ଧର ପରିଣତି ପର୍ଯ୍ୟାଲୋଚନା କରି ସେ ଠିକ୍ ବୁଝିସାରିଥିଲେ ଯେ, ଇଂରେଜମାନେ ଶକ୍ତିର ଭାଷା (Language of strength) ବ୍ୟତୀତ ଅନ୍ୟ କୌଣସି ଭାଷା ବୁଝନ୍ତି ନାହିଁ ଏବଂ ଏହି ଶକ୍ତିକୁ ପ୍ରଦର୍ଶନ କରିବାର ଏକମାତ୍ର ମାଧ୍ୟମ ବ୍ୟାପକ ଗଣ-ଅଭ୍ୟୁତ୍‌ଥାନ ଓ ସଶସ୍ତ୍ର ଗଣ-ବିପ୍ଳବ ।

ସୁଭାଷଙ୍କ ଛଡ଼ା ଅନ୍ୟ କୌଣସି ନେତାଙ୍କର ଏତେ ରାଜନୈତିକ ଦୂରଦର୍ଶିତା ନ ଥିଲା । ସେଥିପାଇଁ କଂଗ୍ରେସ ଆନ୍ଦୋଳନରେ ଝାସ ଦେବା ଦିନଠାରୁ ସେ ଏହି ଅନୁଷ୍ଠାନକୁ ଗଣ-ବିପ୍ଳବ ପାଇଁ ପ୍ରସ୍ତୁତ କରିବାକୁ ଉଦ୍ୟମ ଆରମ୍ଭକରିଦେଇଥିଲେ । ୧୯୨୮ର କଲିକତା କଂଗ୍ରେସରେ ଏହାର ସୂଚନା ମିଳିଥିଲା ଯେତେବେଳେ ସୁଭାଷ ଗାନ୍ଧିଜୀଙ୍କର ପ୍ରସ୍ତାବିତ 'ସ୍ୱାୟତ୍ତଶାସନ' ପ୍ରସ୍ତାବ ବିରୁଦ୍ଧରେ ଏକ ସଂଶୋଧନ ପ୍ରସ୍ତାବ ଆଣି ଦାବି କଲେ — ଔପନିବେଶିକ ସ୍ୱାୟତ୍ତଶାସନ ନୁହେଁ, ପୂର୍ଣ୍ଣ ସ୍ୱାଧୀନତା ଆମର ଦରକାର । ଏଠାରୁ ଟିକିଏ କମ୍‌ହେଲେ ଆମେ ରାଜି ନୋହୁଁ ।

ସୁଭାଷଙ୍କର ଏ ପ୍ରସ୍ତାବ ୯୭୩-୧୩୫୦ ଭୋଟରେ କାଟ ଖାଇଗଲା ସତ, କିନ୍ତୁ ଏହା ସୁଭାଷଙ୍କର ପରାଜୟ ନୁହେଁ, ବରଂ କଂଗ୍ରେସର ପରାଜୟ ହେଲା, ମୂଳ ପ୍ରସ୍ତାବ

ଗୃହୀତ ନହେଲେ ଗାନ୍ଧିଜୀ ଇସ୍ତଫା ଦେବାର ଧମକଦେଲେ । ଜଣେ ଇଂରେଜ ଐତିହାସିକଙ୍କ ମତରେ "The entire intellect of the Congress has been mortagaged in one man" 1 (କଂଗ୍ରେସର ସମସ୍ତ ବିବେକ ଜଣେ ବ୍ୟକ୍ତି ନିକଟରେ ବନ୍ଧାପଡ଼ିଛି ।)

ନିଜେ ସୁଭାଷ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି – "Whenever any opposition raised outside his Cabinet he would always coerce the public by threatening to retire from the Congress or to fast unto death." 2 (ଯେତେବେଳେ ତାଙ୍କୁ କୌଣସି ବିରୋଧର ସମ୍ମୁଖୀନ ହେବାକୁ ପଡୁଥିଲା ସେ ତାଙ୍କର ପ୍ରସ୍ତାବ ଗ୍ରହଣ କରିବାକୁ ଦେଶବାସୀଙ୍କୁ ବାଧ କରୁଥିଲେ ଇସ୍ତଫା ବା ଅନଶନର ଧମକ ଦେଇ ।).

ସୁତରାଂ ଗାନ୍ଧିଜୀଙ୍କର ମୂଳ ପ୍ରସ୍ତାବ ଗୃହୀତ ହେବାରେ କିଛି ବିଚିତ୍ରତା ନଥିଲା ।

X X X X

ସେଇଆ ହେଲା ; ସୁଭାଷଙ୍କ ପ୍ରସ୍ତାବର ଯୌକ୍ତିକତା ଏତେ ଦୃଢ଼ ଥିଲା ଯେ କଲିକତା ପରବର୍ତ୍ତୀ ଲାହୋର ଅଧିବେଶନରେ 'ପୂର୍ଣ୍ଣ ସ୍ୱାଧୀନତା' ପ୍ରସ୍ତାବ ଗ୍ରହଣ କରିବାକୁ କଂଗ୍ରେସ ବାଧହେଲା । କିନ୍ତୁ ସେତେବେଳକୁ ସୁଭାଷ ଆହୁରି ଆଗରେ । ତାଙ୍କର ପ୍ରସ୍ତାବ 'ପୂର୍ଣ୍ଣ ସ୍ୱାଧୀନତା ଦାବି ସଙ୍ଗେ ସଙ୍ଗେ ଏକ ଅସ୍ଥାୟୀ ବିପ୍ଳବୀ ସରକାର ଗଠିତ ହେଉ' । ସୁଭାଷଙ୍କ ଏହି ବୈପ୍ଳବିକ ପ୍ରସ୍ତାବ ଗ୍ରହଣ କରିବାକୁ କାହାରି ଛାତି ନଥିଲା– ନା ଗାନ୍ଧିଜୀ ନା କଂଗ୍ରେସର; କିନ୍ତୁ ପରବର୍ତ୍ତୀ ଘଟଣାବଳୀ ସୁଭାଷଙ୍କ ବିଚାର ନିର୍ଭୁଲ ବୋଲି ପ୍ରମାଣିତକଲା ।

ଏହି ଲାହୋର କଂଗ୍ରେସଠାରୁ ହରିପୁରା(୧୯୩୮) ଓ ତିରୁପୁରି (୧୯୩୯) କଂଗ୍ରେସ ଅଧିବେଶନ ପର୍ଯ୍ୟନ୍ତ କଂଗ୍ରେସ ରାଜନୀତିରେ ଯାହା ଯାହା ଘଟିଲା, ତାହା କେବଳ ଅପ୍ରୀତିକର ନୁହେଁ– ଇତିହାସରେ ଏକ କଳଙ୍କମୟ ଅଧ୍ୟାୟ । ଲାହୋର କଂଗ୍ରେସର ସଭାପତି ନେହେରୁ ସୁଭାଷଙ୍କୁ କାର୍ଯ୍ୟକାରୀ କମିଟିରେ ନେଲେନାହିଁ । ନେହେରୁଙ୍କ ଏହି କାର୍ଯ୍ୟକୁ କେହି ପସନ୍ଦ କରିନଥିଲେ; କାରଣ ତତ୍କାଳୀନ ରାଜନୈତିକ ପରିସ୍ଥିତି ଦୃଷ୍ଟିରୁ ସୁଭାଷଙ୍କ ଭଳି ଜଣେ ଦୂରଦୃଷ୍ଟିସଂପନ୍ନ ନେତାର ବିଶେଷ ଆବଶ୍ୟକତା ଥିଲା । ସେତେବେଳେ ଆନ୍ତର୍ଜାତିକ ଘଟଣାବଳୀର ଯେପରି ଦ୍ରୁତ ପରିବର୍ତ୍ତନ ହେଉଥାଏ, ସେ ଦୃଷ୍ଟିରୁ ବିଶ୍ୱରାଜନୀତିକୁ ଉତ୍ତମରୂପେ ଉପଲବ୍ଧି କରିଥିବା ବ୍ୟକ୍ତିର ଆବଶ୍ୟକତା ଅପରିହାର୍ଯ୍ୟ ଥିଲା ଏବଂ ସୁଭାଷଙ୍କରହିଁ ଆନ୍ତର୍ଜାତିକ ରାଜନୀତି ସଂପର୍କରେ ଗଭୀର ଜ୍ଞାନ ଥିଲା । କିନ୍ତୁ ଅସଲ କଥା ହେଉଛି ଯେ, କଂଗ୍ରେସ ଭିତରେ ସୁଭାଷଙ୍କର କ୍ରମବର୍ଦ୍ଧମାନ ଲୋକପ୍ରିୟତାରେ କଂଗ୍ରେସର ପୁରୁଣା ନେତାମାନେ ବାସ୍ତବରେ ଆତଙ୍କିତ ହୋଇପଡ଼ିଥିଲେ ଏବଂ ଯେତେଦୂର ସମ୍ଭବ ସୁଭାଷଙ୍କୁ ଦୂରରେ ରଖିବାକୁ ବା ଅନ୍ତତଃ କଂଗ୍ରେସ ନୀତିନିୟାମକ କମିଟିରେ ନରଖିବାକୁ ସ୍ଥିରକରିଥିଲେ । ନେହେରୁ ତାଙ୍କୁ କାର୍ଯ୍ୟକାରୀ କମିଟିରେ ନରଖିଲେ ବି ସେ

1. M. Edwards - The last year of British India, pg - 172
2. S.C. Bose - The Indian struggle - Pg. 245

ସେହି ବର୍ଷ ଇଣ୍ଡିଆନ ଟ୍ରେଡ୍ ୟୁନିଅନ କଂଗ୍ରେସର ସଭାପତିରୂପେ ନିର୍ବାଚିତ ହେଲେ ଏବଂ ଏହି ଦାୟିତ୍ୱରେ ସେ ଦୁଇବର୍ଷ ରହିଲେ । ଏହି ସମୟ ମଧ୍ୟରେ ସୁଭାଷଙ୍କର ପ୍ରଗତିଶୀଳ ଓ ସଂଗ୍ରାମୀ କାର୍ଯ୍ୟକ୍ରମ ଦେଶର ଯୁବଶକ୍ତିକୁ ବିଶେଷଭାବେ ଆକୃଷ୍ଟ କଲା ଏବଂ ଗାନ୍ଧିନୀତି ନୁହେଁ, ସୁଭାଷଙ୍କର ଲଢୁଆ ପ୍ରୋଗାମ୍‌ରେହିଁ ସ୍ୱାଧୀନତା ମିଳିବ ବୋଲି ସମସ୍ତେ ଅନୁଭବ କଲେ । ତା'ପରେ ୩୩ ବର୍ଷ ବୟସରେ କଲିକତା କର୍ପୋରେସନର ମେୟର ହେବା, ଚିକିତ୍ସା ପାଇଁ ୟୁରୋପ ଯାତ୍ରା, ବିଠଲ ଭାଇଙ୍କ ସହ ସମ୍ପର୍କ, କଲିକତା ପ୍ରତ୍ୟାବର୍ତ୍ତନ, ପୁଣି ୟୁରୋପ ଯାତ୍ରା; ଭିଏନାରେ Indian Central European Societyରେ ଭାଷଣ, ମୁସୋଲିନିଙ୍କଦ୍ୱାରା ଉଦ୍‌ଘାଟିତ ରୋମରେ ଏସିୟା ଛାତ୍ର ସମ୍ମିଳନୀରେ ଯୋଗଦାନ ପ୍ରଭୃତି ଘଟଣା ବିଦ୍ୟୁତ୍ ଗତିରେ ଘଟିଗଲା ।

୧୯୨୮ କଲିକତା କଂଗ୍ରେସର 'ପାର୍କସର୍କସର ସର୍କସ'ର ରିଙ୍ଗ ମାଷ୍ଟର ୧୦ ବର୍ଷ ଭିତରେ ଏତେ ଲୋକପ୍ରିୟତା ଅର୍ଜନ କଲେ ଯେ, ୧୯୩୮ରେ ସୁଭାଷ ୟୁରୋପରେ ଥିବାବେଳେ କଂଗ୍ରେସର ସଭାପତିରୂପେ ନିର୍ବାଚିତ ହେଲେ ।

ସୁଭାଷ ଓ ଗାନ୍ଧିଜୀଙ୍କର ପ୍ରଥମ ସାକ୍ଷାତ ସମ୍ପର୍କରେ ଭୂପେନ୍ଦ୍ର ରକ୍ଷିତରାୟ ଲେଖିଛନ୍ତି – ''ସ୍ୱଦେଶପ୍ରେମରେ ତନ୍ମୟ ଓ କର୍ମଚେତନାରେ ଚଞ୍ଚଳ ସୁଭାଷ ଆଇ. ସି. ଏସ.ର ଦୁର୍ଜ୍ଜୟ ଲୋଭ ତ୍ୟାଗକରି ଦେଶସେବାର ବନ୍ଧୁର ପଥରେ ଅବତୀର୍ଣ୍ଣ ହୋଇଥିଲେ । ଭାରତବର୍ଷରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ସେ ଚାଲିଲେ ସାବରମତୀର ପୁରୁଷ-ଶ୍ରେଷ୍ଠଙ୍କ ପାଖକୁ ଚାଜନୀତି କର୍ମକାଣ୍ଡର ଦୀକ୍ଷା ଗ୍ରହଣର ସଂକଳ୍ପରେ । ଆଳାପ-ଆଲୋଚନାମାଧ୍ୟମରେ ହୁଏତ ଉଭୟ ଉଭୟଙ୍କୁ ଚିହ୍ନିପାରିଥିଲେ ।୧

ଶ୍ରୀ ଏସ. ଏ. ଆୟାରଙ୍କ ଭାଷାରେ – "Subhas was keen to find out from Gandhi himself the answers to three questions that he had in mind" (2)

ସେ ତିନୋଟି ପ୍ରଶ୍ନ ହେଲା– କଂଗ୍ରେସ କାର୍ଯ୍ୟକ୍ରମ କିପରି ଖଜଣାବନ୍ଦ ଆନ୍ଦୋଳନରେ ପରିଣତ ହେବ ଏବଂ ଖଜଣାବନ୍ଦ ଓ ଆଇନ-ଅମାନ୍ୟ ଆନ୍ଦୋଳନ କିପରି ସ୍ୱାଧୀନତା ଆଣିବ ? ଶେଷରେ ଗାନ୍ଧିଜୀ ବର୍ଷକ ଭିତରେ ସ୍ୱାଧୀନତା କିପରି ଆଣିଦେବେ ? ପ୍ରଥମ ପ୍ରଶ୍ନର ଜବାବରେ ସୁଭାଷ ସନ୍ତୁଷ୍ଟ ହୋଇଥିଲେ ମଧ୍ୟ ଅନ୍ୟ ଦୁଇଟିର ସନ୍ତୋଷଜନକ ଉତ୍ତର ଗାନ୍ଧିଜୀ ତାଙ୍କୁ ଦେଇପାରିଲେନାହିଁ ।

''ଗାନ୍ଧିଜୀ ସେଥିପାଇଁ ପଠାଇଦେଲେ ସୁଭାଷଙ୍କୁ ଦେଶବନ୍ଧୁ ଚିତ୍ତରଂଜନଙ୍କ ପାଖକୁ । ସରୋଜିନୀଙ୍କ ଭାଷାରେ ସେହି "Flaming Sword' ବା 'ଜ୍ୱଳନ୍ତ ତରବାରି'କୁ ସହଜରେ ଆୟତ୍ତ କରିବା ଅସମ୍ଭବ ମନେକରି ବୋଧେ ସୁଭାଷଙ୍କୁ ଗାନ୍ଧିଜୀ ଟାଣିରଖି- ପାରିଲେ ନାହିଁ କିମ୍ବା ଗାନ୍ଧିଜୀଙ୍କ ଟେକ୍‌ନିକ ସୁଭାଷଙ୍କୁ ହୁଏତ ସ୍ପର୍ଶ ନକରିବାରୁ ସେ ଚାଲିଲେ ଦେଶବନ୍ଧୁଙ୍କ ପାଖକୁ । ଯାହାହେଉ ଆସି କୃତାର୍ଥ ହେଲେ । ମନମୁତାବକ ଗୁରୁର ପାଦତଳେ ଆରମ୍ଭହେଲା

1. ଭୂପେନ୍ଦ୍ର କିଶୋର ରକ୍ଷିତରାୟ - 'ଭାରତରେ ସଶସ୍ତ୍ର ବିପ୍ଳବ' (ବଙ୍ଗଳା) ପୃଷ୍ଠା - ୨୧୨
2. S. A. Ayer - The Story of the I.N.A. - Pg. 59

ନବୀନ ସୁଭାଷଙ୍କର ଅନନ୍ୟସାଧନା ଦେଶ - ଜନନୀର ଶୃଙ୍ଖଳମୋଚନକଳ୍ପେ । ଦେଶବନ୍ଧୁ ଚିତ୍ତରଂଜନଙ୍କ ବିରାଟ ନେତୃତ୍ୱରେ ସୁଭାଷଙ୍କର ଯାତ୍ରା ନାତିଦୀର୍ଘ; କାରଣ ୧୯୨୫ ସାଲର ଜୁନ ମାସ ୧୬ ତାରିଖରେ ଏହି ସର୍ବତ୍ୟାଗୀ ସର୍ବବରେଣ୍ୟ ନେତା ଦେହତ୍ୟାଗକଲେ । କିନ୍ତୁ କର୍ମଗୁରୁରୂପେ କର୍ମଶିଷ୍ୟ ସୁଭାଷଚନ୍ଦ୍ରଙ୍କୁ ସ୍ୱସ୍ଥାନରେ ବସାଇଦେଇ ଯିବାକୁ ସେ କାଳବିଳମ୍ବ କରିନଥିଲେ । ତାପରେ ଆରମ୍ଭହେଲା ସୁଭାଷଙ୍କର ଆତ୍ମବିକାଶର ସଂଗ୍ରାମ । ତାଙ୍କ ପାଖରେ ଠିଆହେଲେ ବଙ୍ଗଳାର ବିପ୍ଳବୀଦଳ । ମହାତ୍ମାଙ୍କ ସହ ଟକ୍କର ଦେବାକୁ ହେବ ସେମାନଙ୍କୁ, କାରଣ ଚରମ ଉଦ୍ଦେଶ୍ୟ ଏକ ହେଲେ ବି ଆପାତ-ଆଦର୍ଶର ସାମଞ୍ଜସ୍ୟ ନାହିଁ ଗାନ୍ଧିଜୀଙ୍କ ସହ । ସେଥିପାଇଁ ପଦେ ପଦେ ସଂଘର୍ଷ ଆରମ୍ଭ ହେଲା । ଏହି ସଂଘର୍ଷ ଆଘାତରେ ସୁଭାଷଙ୍କ ପ୍ରତିଭା କ୍ରମଶଃ ଉଲ୍‌କା ଭଳି ଉଜ୍ଜ୍ୱଳ ହେବାକୁ ଲାଗିଲା । ଝରଣାର ଧାରା ଉପଳଖଣ୍ଡର ଅବିରାମ ପ୍ରଚଣ୍ଡ ଆଘାତରେ ପ୍ରାଣବନ୍ତ ହୋଇ ଯେପରି ଦୁର୍ଦ୍ଧର୍ଷ ହୋଇଉଠେ, ସୁଭାଷ ସେହିପରି ମହାତ୍ମାଙ୍କ ସହ ସଂଘର୍ଷରେ ଅଜେୟ ହୋଇଉଠିଲେ । ଏହି ସଂଘର୍ଷର କାହାଣୀ ଦେଶବନ୍ଧୁଙ୍କ ପରଲୋକ ପରେ ୧୯୪୦ ମସିହା ପର୍ଯ୍ୟନ୍ତ ଭାରତ ଇତିହାସରେ ଲେଖାହୋଇରହିଅଛି । ଗୋଟିଏ ଦୃଷ୍ଟିରେ ସୁଭାଷ ନେତାଜୀ ହେବା ପଛରେ ଗାନ୍ଧିଜୀଙ୍କର ମଧ୍ୟ ଅସାମାନ୍ୟ ଅବଦାନ ରହିଅଛି । ପ୍ରବଳ ପାହାଡ଼ୀ ସ୍ରୋତକୁ ଜ୍ୱଳନ୍ତ ଝରଣାରେ ପରିଣତ କରିବାରେ କଠିନ ଉପଳଖଣ୍ଡ ଯେପରି ନିର୍ମମ ଓ ସାର୍ଥକ ବାଧାଦାନକରେ, ଗାନ୍ଧିଜୀଙ୍କ ଅବଦାନ ସେହିଭଳି । ଏହି ବାଧା ଓ ଆଘାତ ପାଇନଥିଲେ ସୁଭାଷ ସମ୍ଭବତଃ ନେତାଜୀ.ହୋଇପାରିନଥାନ୍ତେ ।''

ହରିପୁରା କଂଗ୍ରେସରେ ସୁଭାଷ ସଭାପତି ନିର୍ବାଚିତ ହେବା ଉଭୟ ସୁଭାଷ ଓ କଂଗ୍ରେସ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । କଂଗ୍ରେସକୁ ଅଧିକ ସଂଗ୍ରାମ ଅଭିମୁଖୀ କରିବାର ଯେଉଁ ଅଭିଳାଷ ସେ କଂଗ୍ରେସରେ ପଶିବା ଦିନଠାରୁ ମନରେ ପୋଷଣ କରିଥିଲେ, ତାକୁ କାର୍ଯ୍ୟକାରୀ କରିବାର ଏହା ତାଙ୍କର ପ୍ରଥମ ସୁଯୋଗ । ଦ୍ୱିତୀୟତଃ ଭାରତ ସ୍ୱାଧୀନ ହେଲେ ଯେଉଁ ଯୋଜନାବଦ୍ଧ ଆର୍ଥନୀତିକ ବିକାଶ କାର୍ଯ୍ୟ କରାଯିବ, ତା'ର ପ୍ରଥମ ସୂଚନା ଦେଇଥିଲେ ସୁଭାଷ । ଏକ ଯୋଜନା କମିଶନ ଗଠନ କରି ସେଥିରେ ସେ ନେହେରୁଙ୍କୁ ସଭାପତି ରଖିଥିଲେ । ସୁଭାଷ-ପରିକଳ୍ପିତ ଏହି ଯୋଜନା କମିଶନକୁହିଁ ଭିତ୍ତିକରି ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ଭାରତରେ ଯୋଜନାବଦ୍ଧ ବିକାଶ ପାଇଁ ବ୍ୟବସ୍ଥା କରାଯାଇଅଛି । ନେହେରୁହିଁ ଯୋଜନାବଦ୍ଧ ଅର୍ଥନୀତିର ପ୍ରବକ୍ତା ବୋଲି ଆଜି ଯାହା କୁହାଯାଉଅଛି, ତାହା ଠିକ୍ ନୁହେଁ । ଏହାର ମୂଳ ପ୍ରବକ୍ତା ସୁଭାଷ — ନେହେରୁ ନୁହନ୍ତି । ସୁତରାଂ କେବଳ ସଂଗ୍ରାମରେ ନୁହେଁ, ଦେଶଗଠନ କାର୍ଯ୍ୟରେ ମଧ୍ୟ ସୁଭାଷ ନେହେରୁଙ୍କ ଅଗ୍ରଗାମୀ । ନିଜେ ନେହେରୁ କେଉଁଠାରେ ହେଲେ ଏହା ଉଲ୍ଲେଖ କରିନଥିଲେ ସୁଦ୍ଧା ଏହା ଏକ ଐତିହାସିକ ସତ୍ୟ । ନେହେରୁଚରିତ୍ରରେ ଏହା ଏକ ସର୍ବଜନବିଦିତ ଦୁର୍ବଳତା । ଭାରତରେ ଯୋଜନାର ଇତିହାସ ପ୍ରଣୟନବେଳେ ସୁଭାଷଙ୍କୁ ଯଥୋପଯୁକ୍ତ ସ୍ଥାନ ଦେବାପାଇଁ ଅଧ୍ୟାପକ ସମର ଗୁହ ପ୍ରଭୃତି

1. ଉପେନ୍ଦ୍ର କିଶୋର ରକ୍ଷିତରାୟ - ଭାରତରେ ସଶସ୍ତ୍ର ବିପ୍ଳବ (ବଙ୍ଗଳା)

ଯେଉଁ ଦାବି କରୁଛନ୍ତି, ସେହି ଦାବି ପଛରେ ଐତିହାସିକ ସତ୍ୟ ନିହିତ ଅଛି, ଏହା ଏକ ଅବାନ୍ତର ଦାବି ନୁହେଁ ।

ହରିପୁରାରେ ସଭାପତି ଅଭିଭାଷଣରେ ସୁଭାଷ କହିଲେ ଯେ — ''ୟୁରୋପରେ ଯୁଦ୍ଧ ଆସନ୍ନ; ଭାରତ ତା'ର ସୁଯୋଗ ନେଉ । ଭାରତ କୌଣସି ସାମ୍ରାଜ୍ୟବାଦୀ ଯୁଦ୍ଧରେ ଅଂଶ ଗ୍ରହଣ କରିବ ନାହିଁ । ସାମ୍ରାଜ୍ୟବାଦର ସ୍ୱାର୍ଥପାଇଁ ଭାରତର ଅର୍ଥ ବା ଲୋକବଳ ନିୟୋଗ କରିବା ଚଳିବ ନାହିଁ । ଭାରତରେ ଯେଉଁ ସମରାୟୋଜନ ହେଉଛି, ସେଥିରେ କଂଗ୍ରେସର ସମର୍ଥନ ନାହିଁ । ଭାରତବର୍ଷକୁ ଯୁଦ୍ଧରେ ଜଡ଼ିତ କରିବାକୁ ଉଦ୍ୟମ କଲେ କଂଗ୍ରେସ ତା'ର ବିରୋଧ କରିବ ।'

ବିଶ୍ୱରାଜନୀତି ସମ୍ପର୍କରେ ଅସାଧାରଣ ବ୍ୟୁତ୍ପତ୍ତି ଅର୍ଜନ କରିଥିବା ସୁଭାଷ ୟୁରୋପ ବିଷୟରେ ଯେଉଁ ମତ ପ୍ରକାଶ କରିଥିଲେ, ତାହା ଅଳ୍ପଦିନ ଭିତରେ ସତ୍ୟରେ ପରିଣତ ହେଲା । କିନ୍ତୁ ହରିପୁରା କଂଗ୍ରେସରେ ସୁଭାଷ ଭାଷଣରେ ଏହି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଅଂଶ କଂଗ୍ରେସର ପୁରୁଣା ନେତାମାନଙ୍କୁ ସୁହାଇଲାନାହିଁ । ଏକେ ତ ସେମାନେ ବାସ୍ତବରେ ନିକଟ-ଭବିଷ୍ୟତରେ ଯେ ୟୁରୋପ ଯୁଦ୍ଧ ଆରମ୍ଭ ହେଇଯିବ ଏହା ବିଶ୍ୱାସ କରୁନଥିଲେ । ଦ୍ୱିତୀୟତଃ ଯୁଦ୍ଧ ଆରମ୍ଭ ହେଲେ ସୁଦ୍ଧା ଇଂଲାଣ୍ଡକୁ ଅଡୁଆରେ ପକାଇବାକୁ ଗାନ୍ଧିଜୀ ପ୍ରଭୃତି ଚାହୁଁ ନଥିଲେ । ଏହିଠାରେହିଁ ଗାନ୍ଧି-ସୁଭାଷଙ୍କ ଭିତରେ ମୌଳିକ ପାର୍ଥକ୍ୟ ।

ବର୍ଷକପରେ ସୁଭାଷଙ୍କ ସଭାପତି-କାର୍ଯ୍ୟକାଳ ପୂରିଗଲା । ଏହି ଗୋଟିଏ ବର୍ଷରେ ସୁଭାଷ କିପରି ସଭାପତି କାର୍ଯ୍ୟ ତୁଲାଇଥିଲେ ତାହା ତାଙ୍କର ଉତ୍କଟ ବିରୋଧୀ ପଟ୍ଟାଭି ସୀତାରାମାୟାଙ୍କ ଦ୍ୱାରା ମଧ୍ୟ ଉଚ୍ଚ ପ୍ରଶଂସିତ ହୋଇଅଛି — ''ଭିନ୍ନ ଭିନ୍ନ ବ୍ୟାପାରରେ ସୁଭାଷଙ୍କ ସହ ମତପାର୍ଥକ୍ୟ ଥିଲା; କିନ୍ତୁ ତା'ବୋଲି ସେ ନିଜକୁ କେବେ ଅନ୍ୟ ଉପରେ ଜାହିର କରିନାହାନ୍ତି; ବିତଣ୍ଡାରେ କେଉଁ ପ୍ରବୃତ୍ତ ହୋଇନାହାନ୍ତି । ପକ୍ଷପାତିତା ତାଙ୍କର କେଉଁ ନଥିଲା । ନେତାମାନଙ୍କ ସହ ଅବଶ୍ୟ ତାଙ୍କର ବେଳେବେଳେ ମତଭେଦ ହେଉଥିଲା; କିନ୍ତୁ ସେଥିପାଇଁ କୌଣସି ସମସ୍ୟା କିମ୍ବା ଅବାଞ୍ଛିତ ପରିସ୍ଥିତି ସୃଷ୍ଟି ହୋଇନି । କହିବାକୁ ଗଲେ ଗୋଟିଏ ବର୍ଷ ଶାନ୍ତିରେ କଟିଗଲା । ୧

ମାତ୍ର ଗୋଟିଏ ବର୍ଷ ତାଙ୍କର ସମସ୍ତ ଯୋଜନା ରୂପାୟନ କରିବାକୁ ପର୍ଯ୍ୟାପ୍ତ ନୁହେଁ ବୋଲି ଅନୁଭବ କରି ସେ ଦ୍ୱିତୀୟ ବାର ସଭାପତି ହେବାକୁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ସେତେବେଳକୁ ଗାନ୍ଧିଜୀ ତାଙ୍କୁ ଆଉ ଥରେ ସୁଯୋଗ ଦେବେନାହିଁ ବୋଲି ସ୍ଥିରକରିସାରିଥିଲେ ଏବଂ ତାଙ୍କର ଅନ୍ୟତମ ଘନିଷ୍ଠ ଅନୁଗାମୀ ଡକ୍ଟର ପଟ୍ଟାଭିଙ୍କୁ ସଭାପତି ପଦପାଇଁ ମନୋନୀତ କଲେ । ଏହିଠାରୁ ହିଁ ଗାନ୍ଧିଜୀ ଓ ସୁଭାଷଙ୍କର ମୁହାଁମୁହିଁ ସଂଘର୍ଷ ଆରମ୍ଭହେଲା । ତଥାପି ତ୍ରିପୁରୀ କଂଗ୍ରେସଠାରୁ ୧୯୪୧ରେ ସୁଭାଷଙ୍କର ରହସ୍ୟମୟ ଅନ୍ତିମ ଅନ୍ତର୍ଦ୍ଧାନ ପର୍ବ ପର୍ଯ୍ୟନ୍ତ ସର୍ବଦା ଗାନ୍ଧିଜୀଙ୍କ ସହ ସୁଭାଷ ଅତିଶୟ ସମ୍ମାନଜନକ ସଂପର୍କ ବଜାୟରଖିବାକୁ ଚେଷ୍ଟାକରିଥିବାର ଅସଂଖ୍ୟ ପ୍ରମାଣ ଇତିହାସରେ ରହିଛି । ଅପରପକ୍ଷରେ ଗାନ୍ଧିଜୀ ଓ

1. P. Sitaramaya - History of the Congress, Pg. 104

ତାଙ୍କର ଘନିଷ୍ଠ ସହଯୋଗୀମାନେ ସୁଭାଷଙ୍କୁ ଯେପରି ପଦେ ପଦେ ଅପଦସ୍ଥ ଓ ହଇରାଣ କରି କରି ଚାଲିଲେ ତାହା ଭାରତର ମୁକ୍ତିସଂଗ୍ରାମର ଇତିହାସରେ ବଡ଼ ଦୁଃଖଦାୟକ ଓ ଲଜ୍ଜାଜନକ ଅଧ୍ୟାୟ ।

ଗାନ୍ଧିଜୀଙ୍କର ବିରୋଧ ସତ୍ତ୍ୱେ ସୁଭାଷ କଂଗ୍ରେସ ସଭାପତି ପଦପାଇଁ ପ୍ରାର୍ଥୀ ହେଲେ, କାରଣ ଏହା ବ୍ୟକ୍ତିଗତ ଭାବରେ ଗାନ୍ଧିଜୀଙ୍କ ବିରୁଦ୍ଧରେ କୌଣସି ସଂଗ୍ରାମ ନଥିଲା; ଏହା ଥିଲା ପୂରାପୂରି ଏକ ଆଦର୍ଶଗତ ପ୍ରତିଯୋଗିତା ଏବଂ ବିଚାରଗତ ସଂଘର୍ଷ । କଂଗ୍ରେସଭଳି ଏକ ବିରାଟ ଗଣ-ଅନୁଷ୍ଠାନରେ ଏଭଳି ପ୍ରତିଦ୍ୱନ୍ଦ୍ୱିତା ଖାଲି ଅବଶ୍ୟମ୍ଭାବୀ ବା ସ୍ୱାଭାବିକ ନୁହେଁ; ସୁସ୍ଥ ଗଣତାନ୍ତ୍ରିକ ଜୀବନର ବିକାଶ ପାଇଁ ଏହା ବରଂ ଏକାନ୍ତ ସ୍ପୃହଣୀୟ ଏବଂ ସ୍ୱାଗତଯୋଗ୍ୟ । କିନ୍ତୁ ଦୁର୍ଭାଗ୍ୟର କଥା, କେତେକ ଏହାକୁ ଗାନ୍ଧିଜୀ ଓ ସୁଭାଷଙ୍କ ମଧରେ ଏକ ବ୍ୟକ୍ତିଗତ ସଂଘର୍ଷରେ ନେଇ ପହଞ୍ଚାଇ- ଦେଲେ ଏବଂ ଜାଣିଶୁଣି ଏକ ଉତ୍ତେଜନାମୟ ପରସ୍ଥିତି ସୃଷ୍ଟିକରିଦେଲେ ।

କଂଗ୍ରେସ ସଭାପତି ପଦପାଇଁ ଏହି ଦ୍ୱିମୁଖୀ ପ୍ରତିଯୋଗିତା ବର୍ତ୍ତମାନ ତ୍ରିମୁଖୀ ପ୍ରତିଯୋଗିତାରେ ପରିଣତ ହେଲା । କାରଣ ଆଜାଦ ମଧ୍ୟ ପ୍ରତିଦ୍ୱନ୍ଦ୍ୱିତା କରିବେ ବୋଲି ଘୋଷଣା କଲେ । କିନ୍ତୁ ସୁଭାଷଙ୍କ ପ୍ରତି କଂଗ୍ରେସର ସାଧାରଣ କର୍ମୀମହଲରେ ଏଭଳି ଆକର୍ଷଣ ସୃଷ୍ଟିହୋଇଥିଲା ଯେ, କଂଗ୍ରେସର ଯୁବ-ସଂପ୍ରଦାୟ, କମ୍ୟୁନିଷ୍ଟ, କଂଗ୍ରେସ ସୋସାଲିଷ୍ଟ ପାର୍ଟି, ଶ୍ରମିକଦଳ ପ୍ରଭୃତି ବାମ୍‌ପନ୍ଥୀ ମନୋଭାବାପନ୍ନ ଗୋଷ୍ଠୀ ତାଙ୍କୁ ସମର୍ଥନ କରିବେ ବୋଲି ଘୋଷଣାକଲେ । କାରଣ ସେମାନେ ଅନୁଭବ କରୁଥିଲେ ଯେ, ଆସନ୍ନ ୟୁରୋପୀୟ ଯୁଦ୍ଧ ଦୃଷ୍ଟିରୁ ଏକମାତ୍ର ସୁଭାଷହିଁ ଗଣ-ସଂଗ୍ରାମର ଡାକରା ଦେଇପାରିବେ । କମ୍ୟୁନିଷ୍ଟ ପାର୍ଟିର 'ନ୍ୟାସନାଲ ଫ୍ରଣ୍ଟ' କାଗଜରେ ସୁଭାଷଙ୍କୁ ସମର୍ଥନ କରି ଅଗ୍ରଲେଖ ପ୍ରକାଶିତ ହେଲା । ମୁସଲିମ ସଂପ୍ରଦାୟପକ୍ଷରୁ ସାହାଜାଦା ଜାହିର ଓ ଜେଡ୍. ଏ. ଅହମଦ ହୁମାୟୁନ, କବିର, ନବାବଜାଦା, ସୟଦବ ହାସନାଅଲ୍ଲୀ, ପ୍ରଭୃତି ଏବଂ ପି. ସୁନ୍ଦରାୟ, ନାମ୍ବଦ୍ରିପଦ, ଓ. ପିଁ. ରାମମୂର୍ତ୍ତି ପ୍ରଭୃତି ବାମପନ୍ଥୀମାନେ ସୁଭାଷଙ୍କ ପାଇଁ ପ୍ରଚାର ଆରମ୍ଭ କରିଦେଲେ । ସୁଭାଷଙ୍କ ପଛରେ ଏହି କ୍ରମବର୍ଦ୍ଧମାନ ସମର୍ଥନ ଦେଖି ଏବଂ ସୁଭାଷ-ବିରୋଧୀ ଭୋଟ ଗାନ୍ଧିଜୀଙ୍କର ଦୁଇ ଅନୁଗାମୀ, ଯଥା – ଆଜାଦ ଓ ପଟ୍ଟାଭିଙ୍କ ଭିତରେ ଭାଗ ଭାଗ ହେବାର ଆଶଙ୍କା ଦେଖି ଗାନ୍ଧିଜୀଙ୍କ ମହଲରେ ଭାଳେଣି ପଡ଼ିଲା । ଶେଷରେ ଆଜାଦ ତାଙ୍କର ପ୍ରାର୍ଥୀ- ପତ୍ର ପ୍ରତ୍ୟାହାର କରିନେଲେ ଏବଂ ପଟ୍ଟାଭିଙ୍କୁ ସମର୍ଥନ କରି ବିବୃତ୍ତି ଦେଲେ । ତା' ସଙ୍ଗେ ସଙ୍ଗେ ଏକଥା ମଧ କହିଲେ ଯେ, ନିର୍ବାଚନ ସର୍ବସମ୍ମତିକ୍ରମେ ହେଉ । ସୁଭାଷ ବୁଝିଲେ, ଏହା ତାଙ୍କ ବିରୁଦ୍ଧରେ ଏକ ଚକ୍ରାନ୍ତ ମାତ୍ର । ସୁତରାଂ ସେ ମଧ କହିଲେ – ''ମୌଲାନା ଆଜାଦଙ୍କ ଭଳି ବିଶିଷ୍ଟ ନେତାଙ୍କର ଆବେଦନଫଳରେ କଂଗ୍ରେସର ଅଧିକାଂଶ ପ୍ରତିନିଧି ଯଦି ମୋ' ବିରୁଦ୍ଧରେ ଭୋଟ ଦିଅନ୍ତି, ମୁଁ ସେ ସିଦ୍ଧାନ୍ତ ଅବଶ୍ୟ ମାନିନେବି ଏବଂ ଜଣେ ସାଧାରଣ ସୈନିକ ଭାବରେ ମୁଁ କଂଗ୍ରେସ ଓ ଦେଶର ସେବା କରିବି ।''

ସୁଭାଷଙ୍କର ଏହି ସ୍ପଷ୍ଟ ବିବୃତି କିନ୍ତୁ ଗାନ୍ଧିଜୀଙ୍କୁ ସନ୍ତୁଷ୍ଟ କରି ପାରିନଥିଲା । ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ନେହେରୁ ଓ ପଟେଲ ଆଉ ଟିକେ ଆଗେଇଗଲେ । ସେତେବେଳେ କଂଗ୍ରେସ ସଭାପତି ପଦରେ ଥାଆନ୍ତି ସୁଭାଷ । କିନ୍ତୁ ସେହି ସଭାପତିଙ୍କ ବିରୁଦ୍ଧରେ ସଭାପତିଙ୍କ ଦ୍ୱାରା ନିଯୁକ୍ତ କାର୍ଯ୍ୟକାରୀ କମିଟିର ସଭ୍ୟ ନେହେରୁ ଓ ପଟେଲ ବିବୃତି ଦେଲେ । ଏଭଳି କଥା କେଉଁ ଶୁଣାନଥିଲା । ଏହା ଏକ ଅନୁଚିତ ଓ ଅଗଣତାନ୍ତ୍ରିକ ପନ୍ଥା । ଏ ସମ୍ପର୍କରେ ସବୁଠୁ ଭଲ ବାଟ ହେଲା କାର୍ଯ୍ୟକାରୀ କମିଟିର ସଭ୍ୟପଦରୁ ଇସ୍ତଫା ଦେଇ ସଭାପତିଙ୍କ ବିରୁଦ୍ଧରେ ଅଭିଯାନ କରିବା । କିନ୍ତୁ କଂଗ୍ରେସର ପ୍ରବୀଣ ନେତାମାନେ ଏହି ସର୍ବନିମ୍ନ ଶାଳୀନତା ମଧ୍ୟ ଭୁଲିଗଲେ । ପଟେଲ, କୃପାଳିନୀ, ବୁଲାଭାଇ ଓ ରାଜେନ୍ଦ୍ର ବାବୁ ପ୍ରଭୃତି ପଟ୍ଟାଭିଙ୍କୁ ଭୋଟ ଦେବାକୁ ବିବୃତି ଦେଲେ । ସେମାନଙ୍କର ଏହି ଅବୈଧାନିକ କାର୍ଯ୍ୟକଳାପ ଦେଶସାରା ସମାଲୋଚିତ ହେଲା । ଶ୍ରୀ ରଫି ଅହମ୍ମଦ କିଦଆଇ ଏହା କଂଗ୍ରେସ ସମ୍ବିଧାନର ବିରୋଧୀ ବୋଲି ସମାଲୋଚନା କଲେ । କମ୍ୱେର କଂଗ୍ରେସ ନେତା ଡାକ୍ତର ଖାରେ ପଟ୍ଟାଭିଙ୍କୁ ଅଯୋଗ୍ୟ ବୋଲି ବିବୃତି ଦେଲେ । ବମ୍ବେ କଂଗ୍ରେସର ବିଶିଷ୍ଟ ସଭ୍ୟ ନାରିମାନ ଏହା ଅଗଣତାନ୍ତ୍ରିକ ବୋଲି କହିଲେ । ମିନୁ ମାସାନି, ୟୁସୁଫ ମୋହେର ଅଲ୍ଲୀ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ଓ ସାର୍ଦ୍ଦୁଳ ସିଂହ କବିଶେଖର ପ୍ରଭୃତି ଏହି କାର୍ଯ୍ୟର ତୀବ୍ର ସମାଲୋଚନା କଲେ ।

ଅବସ୍ଥା ଏତେଦୂର ଯିବାର କାରଣ ନ ଥିଲା । ଜଣେ ବ୍ୟକ୍ତି ଏକାଧିକ ବାର କଂଗ୍ରେସ ସଭାପତି ହେବାର ନଜିର ରହିଛି, ସୁତରାଂ ସୁଭାଷଙ୍କୁ ଏତେ ବିରୋଧ କରାଯିବାର ମୁଖ୍ୟ କାରଣ ଥିଲା ତାଙ୍କର ସଂଗ୍ରାମୀ କାର୍ଯ୍ୟକ୍ରମ । ତଥାକଥିତ ଅହିଂସା ବା ଶାନ୍ତିପୂର୍ଣ୍ଣ ନୀତି ଓ ଇଂରେଜମାନଙ୍କୁ ହଇରାଣ ନକରିବା ମନୋବୃତ୍ତି ଗାନ୍ଧି ଅନୁଗାମୀମାନଙ୍କୁ ଏଭଳି ଆଚ୍ଛନ୍ନ କରିଦେଇଥିଲା ଯେ, ସେମାନେ ସୁଭାଷଙ୍କ ବୈପ୍ଳବିକ ବିଚାରଧାରାରେ ରୀତିମତ ଆତଙ୍କିତ ହୋଇଯାଇଥିଲେ । ଏହି ପ୍ରତିଯୋଗିତା ଏକ ଚରମ ଅବସ୍ଥାକୁ ମୁହାଁଉଛି ଲକ୍ଷ୍ୟ କରି ସୁଭାଷ ମତପ୍ରକାଶ କଲେ- ''ମୁଁ ସଭାପତି ପଦପାଇଁ ଲାଳାୟିତ ନୁହେଁ । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଭଳି ସମାଜବାଦୀ ନେତାଙ୍କୁ ଯଦି ଏହି ପଦପାଇଁ ମନୋନୀତ କରାଯାଏ, ତେବେ ମୁଁ ମୋର ନାମ ପ୍ରତ୍ୟାହାର କରିନେବି ।'' ସୁଭାଷଙ୍କ ଏହି ବିବୃତି ଗାନ୍ଧିଜୀଙ୍କ ଅନୁଗାମୀମାନଙ୍କୁ ଏକ ସମ୍ମାନଜନକ ମିଳାମିଶାର ଶେଷ ସୁଯୋଗ ଦେଇଥିଲା । କିନ୍ତୁ ଏ ସୁଯୋଗ ସେମାନେ ଗ୍ରହଣ କରିପାରି ନ ଥିଲେ । ପାର୍ଟି ଭିତରେ ଗଣତନ୍ତ୍ର ରକ୍ଷାକରିବା ସେମାନଙ୍କ ନିକଟରେ ପ୍ରଶ୍ନ ନ ଥିଲା— ପ୍ରଶ୍ନ ଥିଲା ନେତୃତ୍ୱର । ସୁଭାଷଙ୍କ ପ୍ରସ୍ତାବ ଗ୍ରହଣକଲେ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱରେ ଆଞ୍ଚ ଆସିବ ବୋଲି ଆଶଙ୍କା କରାଗଲା ।

ଭୋଟ ହେଲା । ବିହାର, ଓଡ଼ିଶା, ଗୁଜୁରାଟ, ଆନ୍ଧ୍ର, ବମ୍ବେ, ନାଗପୁର ଓ ମହାରାଷ୍ଟ୍ରର କଂଗ୍ରେସ ସଭ୍ୟମାନେ ପ୍ରାୟ ସର୍ବସମ୍ମତକ୍ରମେ ପଟ୍ଟାଭିଙ୍କୁ ଭୋଟଦେଲେ । ଅପରପକ୍ଷରେ ବଙ୍ଗଳା, ଯୁକ୍ତପ୍ରଦେଶ, ପଞ୍ଜାବ, କେରଳ, କର୍ଣ୍ଣାଟକ, ଆସାମ, ଆଜାମୀର ଓ ତାମିଲନାଡୁର ସଭ୍ୟମାନେ ସୁଭାଷଙ୍କ ପଛରେ ଛିଡ଼ାହେଲେ । ସୁଭାଷ

ପାଇଲେ ୧୫୭୫ ଭୋଟ ଓ ପଟ୍ଟାଭି ?— ସେ ପାଇଲେ ୧୩୪୬ । ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ ସୁଭାଷ ଜିତିଲେ ।

ଆଶା କରାଯାଉଥିଲା, ଏତିକିରେ ଏ ପର୍ବ ଶେଷହେଲା; କାରଣ ଏହାହିଁ ଗଣତାନ୍ତ୍ରିକ ନୀତି । ନିର୍ବାଚନର ଫଳାଫଳକୁ ଖେଳୁଆଡ଼ ମନୋବୃତ୍ତି ନେଇ ଗ୍ରହଣ କରିବାର ଦାୟିତ୍ୱ ପ୍ରତିଦ୍ୱନ୍ଦ୍ୱୀ ଦଳମାନଙ୍କର । ଗଣତାନ୍ତ୍ରିକ ଅନୁଷ୍ଠାନମାନଙ୍କରେ ଏହାହିଁ ସର୍ବନିମ୍ନ ଅନୁଶାସନ; କିନ୍ତୁ ଦୁର୍ଭାଗ୍ୟର କଥା, କଂଗ୍ରେସର ପୁରୁଖା ନେତାମାନେ ଏହି ସର୍ବନିମ୍ନ ଶୃଙ୍ଖଳାକୁ ଗ୍ରହଣ କରିପାରିଲେ ନାହିଁ; ଏପରି କି ନିଜେ ମହାତ୍ମାଜୀ ମଧ୍ୟ ଇତିହାସର ବିଚାରାଳୟରେ ଏହି ଅଭିଯୋଗରେ ଅଭିଯୁକ୍ତ ।

ଗାନ୍ଧିଜୀ କହିଲେ, "ପଟ୍ଟାଭିଙ୍କର ପରାଜୟହିଁ ମୋର ପରାଜୟ ।" ଯାହା ହେଉ ଶେଷରେ ଦୟା କଲାଭଳି କହିଲେ, "ଯାହାହେଲେ ବି ସୁଭାଷବାବୁ ଦେଶର ଶତ୍ରୁ ନୁହଁନ୍ତି ।" ଏହି ଉକ୍ତିର ତାତ୍ପର୍ଯ୍ୟ କଣ ? ସୁଭାଷଙ୍କ ପ୍ରତି ଗାନ୍ଧିଜୀଙ୍କ ଅସହିଷ୍ଣୁତାର ଏହା ଆରମ୍ଭ ମାତ୍ର । ଏହା କ୍ରମେ ବଢ଼ି ବଢ଼ି ଚାଲିଲା । ସୁଭାଷଙ୍କ ପ୍ରତି ଏହି ମନୋଭାବ ଏତେ ଦୁର୍ବୋଧ୍ୟ ଯେ, ଗାନ୍ଧିଜୀଙ୍କ ଏକାନ୍ତ ବିଶ୍ୱସ୍ତ ସହକର୍ମୀ ନିଜେ ପଟ୍ଟାଭି ମଧ୍ୟ ବୁଝିପାରିନାହାନ୍ତି ବୋଲି ସ୍ୱୀକାର କରିଅଛନ୍ତି । 'ସୁଭାଷଙ୍କ ଦ୍ୱିତୀୟବାର ସଭାପତି ହେବା ପ୍ରଶ୍ନକୁ ଗାନ୍ଧିଜୀ ଏତେବେଡ଼ ଦୋଷାବହ ବୋଲି କାହିଁକି ମନେକଲେ, ବୁଝିବା କଷ୍ଟ । ନିର୍ବାଚନ ପରେ ମଧ ଗାନ୍ଧିଜୀଙ୍କ ମନୋଭାବର ଯେ କୌଣସି ପରିବର୍ତ୍ତନ ହେଲା ନାହିଁ, ଏହା ଖୋଲାଖୋଲିଭାବରେ ସ୍ୱୀକାର କରାଯାଇପାରେ । ସୁଭାଷଙ୍କ ବିଷୟରେ ଗାନ୍ଧିଜୀଙ୍କ ମନରେ ଆଉ କି କଥା ଥିଲା ତାହା କେବଳ ଗାନ୍ଧିଜୀହିଁ ଜାଣନ୍ତି ।"

କିନ୍ତୁ ସୁଭାଷ ଓ ନିଜେ ଗାନ୍ଧିଜୀ ଏହି ନିର୍ବାଚନ ସମ୍ପର୍କରେ କ'ଣ ଭାବୁଥିଲେ, ତାହା ତତ୍କାଳୀନ 'ଆନନ୍ଦବଜାର ପତ୍ରିକା' (୪-୨-୩୯)ରେ ପ୍ରକାଶିତ ହୋଇଥିଲା । ଉକ୍ତ ବିବୃତିରେ ସୁଭାଷ କହିଥିଲେ, "ଏଥରର ପ୍ରତିଦ୍ୱନ୍ଦ୍ୱିତା ଦେଖି ଆମ ସ୍ୱାଧୀନତାର ଶତ୍ରୁମାନେ ଯଦି ମନେକରନ୍ତି ଯେ କଂଗ୍ରେସ ଭିତରେ ଆତ୍ମକଳହ ଦେଖାଦେଇଛି ତାହାହେଲେ ମୁଁ ସ୍ପଷ୍ଟ ଭାବରେ କହିବି ଯେ ଆମ୍ଭମାନଙ୍କ ଭିତରେ ଏକତା ସବୁଦିନ ଅତୁଟ ରହିବ । କଂଗ୍ରେସ ସଭ୍ୟମାନଙ୍କ ଭିତରେ ମତାନ୍ତର ରହିବା ଅସମ୍ଭବ ନୁହେଁ । କିନ୍ତୁ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ଯେତେବେଳେ ସଂଗ୍ରାମ ହେବ, ସେତେବେଳେ କଂଗ୍ରେସର ସମସ୍ତେ ଏକ ଓ ଅଭିନ୍ନ । ମହାତ୍ମାଙ୍କ ସହ କୌଣସି ବିଷୟରେ କିଞ୍ଚିତ୍ ମତଭେଦ ଥିଲେ ସୁଦ୍ଧା 'ମହାତ୍ମା'ଙ୍କର ବ୍ୟକ୍ତିତ୍ୱ ପ୍ରତି ମୁଁ ଅନ୍ୟ କାହା ଅପେକ୍ଷା କମ୍ ଶ୍ରଦ୍ଧାବାନ୍ ନୁହେଁ । ମୋ ସମ୍ପର୍କରେ ମହାତ୍ମାଜୀ କି ଅଭିମତ ପୋଷଣ କରନ୍ତି ତାହା ମୁଁ ଜାଣେନା । ସେ ଯାହା ହେଉ ନା କାହିଁକି, ତାଙ୍କର ଆସ୍ଥା ଓ ଶ୍ରଦ୍ଧାଭାଜନ ହେବାକୁ ମୁଁ ସର୍ବଦା ଚେଷ୍ଟିତ । କାରଣ ସମସ୍ତଙ୍କ ବିଶ୍ୱାସ ଓ ଆସ୍ଥାଭାଜନ ହେବା ସତ୍ତ୍ୱେ ମୁଁ ଯଦି ଭାରତର ସର୍ବଶ୍ରେଷ୍ଠ ମାନବଙ୍କର ଆସ୍ଥାଭାଜନ ହୋଇନପାରେ ତେବେ ବାସ୍ତବରେ ତାହା ମୋ ପକ୍ଷରେ ଅତ୍ୟନ୍ତ ମର୍ମନ୍ତୁଦ ହେବ ।"

ଭାରତର ସର୍ବଶ୍ରେଷ୍ଠ ମାନବଙ୍କର ଆଶୀର୍ବାଦ ଲାଭ କରିବାକୁ ଆରମ୍ଭ ହେଲା ସୁଭାଷଙ୍କର ଐକାନ୍ତିକ ସାଧନା । ସଭାପତିରୂପେ ନିର୍ବାଚିତ ହେବାପରେ ସେ ନିଜ ଇଚ୍ଛା ଅନୁସାରେ ତାଙ୍କର କାର୍ଯ୍ୟକାରୀ କମିଟି ଗଠନ କରିବାର କଥା । ଏ ବିଷୟରେ ସଭାପତି ସଂପୂର୍ଣ୍ଣ ସ୍ୱାଧୀନ । ତଥାପି ଗାନ୍ଧିଜୀଙ୍କ ପରାମର୍ଶ ନେବାକୁ ସେ ଦୌଡ଼ିଲେ ସେବାଗ୍ରାମ । କିନ୍ତୁ ପଟ୍ଟାଭିଙ୍କର ପରାଜୟ ଧକ୍‌କା ଗାନ୍ଧିଜୀଙ୍କୁ ସେ ପର୍ଯ୍ୟନ୍ତ ଛାଡ଼ି ନ ଥାଏ । ସେ ସୁଭାଷଙ୍କୁ କୌଣସି ପରାମର୍ଶ ଦେବାକୁ ରାଜି ହେଲେ ନାହିଁ; ବରଂ ସେ କହିବାର ଶୁଣାଗଲା– ''ମୋତେ ସ୍ୱୀକାର କରିବାକୁ ହେବ ଯେ, ମୁଁ ମୂଳରୁ ତାଙ୍କର ପୁନର୍ନିର୍ବାଚନର ବିରୋଧୀ ଥିଲି, ସେଥିପାଇଁ ମୁଁ କିଛି କହିବାକୁ ଚାହେଁନା ।'' ସୁଭାଷ ନିରାଶ ହୋଇ ଫେରିଲେ ଏବଂ ଭୀଷଣ ଅସୁସ୍ଥ ହେଲେ । ଫେବୃୟାରୀ ୨୨ ତାରିଖରେ ୱାର୍କିଂ କମିଟି ଡକାହେଲା ସେବାଗ୍ରାମରେ । ଉକ୍ତ ବୈଠକ ସ୍ଥଗିତରଖିବାକୁ ସୁଭାଷ ଟେଲିଗ୍ରାମ କଲେ; କିନ୍ତୁ କିଛି ଫଳ ହେଲା ନାହିଁ ।

ମଧ୍ୟପ୍ରଦେଶର ତ୍ରିପୁରୀଠାରେ କଂଗ୍ରେସ ଅଧିବେଶନ ବସିଲା । ସେହି ଅଧିବେଶନରେ ସୁଭାଷ ଓ ଗାନ୍ଧିଜୀଙ୍କ ଅନୁଗାମୀମାନଙ୍କ ଭିତରେ ଏକ ବଳକଷାକଷି ହେବ ବୋଲି ସମସ୍ତେ ଆଶଙ୍କାକଲେ । ଗାନ୍ଧିଜୀଙ୍କ ନିଜଲୋକମାନେ ଦାବୀକଲେ ଯେ ୱାର୍କିଂ କମିଟିରେ କେବଳ ଗାନ୍ଧିପନ୍ଥୀମାନେ ରହିବା ଉଚିତ, କାରଣ ସମମତାବଲମ୍ବୀ ନ ହେଲେ କୁଆଡ଼େ କଂଗ୍ରେସ କାମ ଚଳିବ ନାହିଁ । ଭଲକଥା ! କିନ୍ତୁ ଏତିକି କଥା କେହି କହିଲେ ନାହିଁ ଯେ, ସଭାପତିଙ୍କ ସହ ମତ ନମିଳିଲେ ସେମାନେ ୱାର୍କିଂ କମିଟିରେ ସଭ୍ୟ ହେବେ କିମିତି ? ଗାନ୍ଧି-ଅନୁଗାମୀମାନଙ୍କର ଏହି ଦାବି ଏକାନ୍ତ ଅବାନ୍ତର ଓ ଅଯୌକ୍ତିକ ଥିଲା । ଦେଖିବାକୁ ଗଲେ, ସୁଭାଷଙ୍କୁ ଜୟଯୁକ୍ତ କରି ଏବଂ ଗାନ୍ଧିଜୀଙ୍କ ପ୍ରାର୍ଥୀ ପଟ୍ଟାଭିଙ୍କୁ ଶୋଚନୀୟଭାବେ ପରାସ୍ତ କରି କଂଗ୍ରେସ ଲୋକେ ତ ପ୍ରମାଣିତ କରିଦେଇଥିଲେ ଯେ ସେମାନେ ଗାନ୍ଧିନୀତିର ବିରୋଧୀ ଏବଂ ସୁଭାଷ ନୀତିର ସମର୍ଥକ । ଏ ପରିସ୍ଥିତିରେ ଗାନ୍ଧିଜୀ କଂଗ୍ରେସରୁ ସଂପୂର୍ଣ୍ଣ ଭାବେ ଇସ୍ତଫା ଦେଇଦେବା ଉଚିତ ଥିଲା ଏବଂ କଂଗ୍ରେସ ବ୍ୟାପାରରେ ମୁଣ୍ଡ ପୂରାଇବା ତାଙ୍କର ଉଚିତ ନ ଥିଲା । ଆଜି ସମସ୍ତେ କାଳଗର୍ଭରେ ଲୁକ୍‌କାୟିତ; କିନ୍ତୁ ଇତିହାସ ଚିରଜାଗ୍ରତ । ଇତିହାସର କଠୋର ନିର୍ମମ ଅଙ୍ଗୁଳି ଆଜି କଣ ନିର୍ଦ୍ଦେଶ ଦେଉଛି ?

ତ୍ରିପୁରୀ ଅଧିବେଶନବେଳକୁ ସୁଭାଷ ଭୀଷଣ ଅସୁସ୍ଥ ହୋଇପଡ଼ିଲେ । ଶହେ ଦୁଇ ଡିଗ୍ରୀ ଜର ଶହେ ଛ'ରେ ପହଞ୍ଚିଲା; ଫଳରେ ତାଙ୍କର କଂଗ୍ରେସ ଅଧିବେଶନରେ ଯୋଗଦେବା ଅସମ୍ଭବ ହୋଇପଡ଼ିଲା । ଡାକ୍ତର ନୀଳରତନ ସରକାର ପ୍ରଭୃତି ପ୍ରବୀଣ ଚିକିତ୍ସକମାନେ ଦୃଢ଼ ମତ ଦେଲେ ଯେ, ''ଏଭଳି ଅବସ୍ଥାରେ ସୁଭାଷ ଶଯ୍ୟାତ୍ୟାଗ କରିବା ମଧ୍ୟ ବିପଜ୍ଜନକ ।'' ସୁଭାଷ ପ୍ରାୟ ସଂଜ୍ଞାହୀନ ଅବସ୍ଥାରେ ବିଛଣାରେ ପଡ଼ିଥାନ୍ତି । ସଭାପତିଙ୍କ ଶୋଭାଯାତ୍ରାରେ 'ସୁଭାଷ'ଙ୍କ ପ୍ରତିକୃତି ନେବାକୁ ପଡ଼ିଲା । କିନ୍ତୁ ଦୁଃଖର କଥା, ସୁଭାଷଙ୍କ ପ୍ରତି ଅହିଂସାବାଦୀମାନଙ୍କ ପକ୍ଷରୁ ସାମାନ୍ୟ ସହାନୁଭୂତି ମଧ୍ୟ ପ୍ରକାଶ ପାଇଲା ନାହିଁ । ଗାନ୍ଧିଜୀ ତ ତ୍ରିପୁରୀ ଗଲେ ନାହିଁ; ଗଲେ ରାଜକୋଟ ନାମକ ଏକ କରଦ ରାଜ୍ୟକୁ ଏକ

ସାମାନ୍ୟ ବିବାଦରେ ମଧ୍ୟସ୍ଥତା କରିବାକୁ । ତିରୁପୁରୀ କଂଗ୍ରେସ ଅପେକ୍ଷା ରାଜକୋଟ ଘଟଣାଟା ଗାନ୍ଧିଜୀଙ୍କୁ ବଡ଼ ଦେଖାଗଲା । ତେଣେ ତିରୁପୁରୀରେ ଗାନ୍ଧିଜୀଙ୍କର ପଞ୍ଚଶିଷ୍ୟମାନେ ସୁଭାଷଙ୍କ ବିରୁଦ୍ଧରେ ସଂଗ୍ରାମକୁ ତୀବ୍ର କରିବାକୁ ଲାଗିଲେ; ଏପରି କି ସୁଭାଷଙ୍କୁ ବ୍ୟଙ୍ଗ-ବିଦ୍ରୂପ କରିବାକୁ ଛାଡ଼ିଲେ ନାହିଁ । ପଟେଲ ସମସ୍ତ ମାନବିକତା ଭୁଲିଯାଇ ସୁଭାଷଙ୍କର ଏହା 'ରାଜନୈତିକ ଜ୍ୱର' ବୋଲି କହିବାକୁ ଛାଡ଼ିଲେ ନାହିଁ ।

ସୁଭାଷଙ୍କ ଅନୁପସ୍ଥିତିରେ ତାଙ୍କର ବଡ଼ଭାଇ ବିଶିଷ୍ଟ କଂଗ୍ରେସ ନେତା ଶରତ୍‌ବାବୁ ତାଙ୍କର ଅଭିଭାଷଣ ପଢ଼ିଲେ । ସେଥିରେ ମୁଖ୍ୟକଥା ଥିଲା, ''ୟୁରୋପରେ ଯୁଦ୍ଧ ଆସନ୍ନ; ତେଣୁ କଂଗ୍ରେସ ଚରମ ସଂଗ୍ରାମ ପାଇଁ ପ୍ରସ୍ତୁତ ହେଉ । ଏହା ଆମ ପକ୍ଷରେ ଶେଷ ସୁଯୋଗ ।''

କିନ୍ତୁ ଗାନ୍ଧିଜୀଙ୍କ ପଞ୍ଚଶିଷ୍ୟମାନେ ସଂଗ୍ରାମ ଆରମ୍ଭ କରିଦେଲେ ନିଜ ଦଳର ସଭାପତି ସୁଭାଷଙ୍କ ବିରୁଦ୍ଧରେ । ଶ୍ରୀ ଗୋବିନ୍ଦବଲ୍ଲଭ ପନ୍ଥ ଏକ ଅଦ୍ଭୁତ ପ୍ରସ୍ତାବ ଦେଲେ ଯେ, ଗାନ୍ଧିଜୀଙ୍କ ଅନୁମୋଦନ ନ ହେଲେ କଂଗ୍ରେସ ସଭାପତି କାର୍ଯ୍ୟକାରୀ କମିଟି ଗଠନ କରିପାରିବେନାହିଁ ।' ଚମତ୍କାର ପ୍ରସ୍ତାବ ! ସୁଭାଷ ହେଉଛନ୍ତି କଂଗ୍ରେସ ସଭାପତି, ସେ ପୁଣି ଗାନ୍ଧିଜୀଙ୍କ ପ୍ରାର୍ଥୀଙ୍କୁ ପରାଜିତ କରି ସଭାପତି ନିର୍ବାଚିତ ହୋଇ ଅଛନ୍ତି, ସୁତରାଂ କାର୍ଯ୍ୟକାରୀ କମିଟି ଗଠନ କରିବାର ଆଇନଗତ କ୍ଷମତା କେବଳ ସୁଭାଷଙ୍କର । କିନ୍ତୁ ତାଙ୍କ ଉପରେ ତାଙ୍କର ଅନୁପସ୍ଥିତିରେ ଏକପ୍ରକାର ବଳପ୍ରୟୋଗ କରାଗଲା ଏହି ପ୍ରସ୍ତାବରେ । ସେ ପ୍ରସ୍ତାବ ମଧ୍ୟ ଗୃହୀତ ହେଲା । ରକ୍ଷଣଶୀଳ କଂଗ୍ରେସ ନେତା ସେଠ ଗୋବିନ୍ଦଦାସ ଆଉ ଟିକେ ଆଗେଇଯାଇ କହିଲେ– ''ଫାସିଷ୍ଟମାନଙ୍କ ଭିତରେ ମୁସୋଲିନୀ, ନାଜୀମାନଙ୍କ ଭିତରେ ହିଟଲର, କମ୍ୟୁନିଷ୍ଟଙ୍କ ଭିତରେ ଷ୍ଟାଲିନଙ୍କର ଯେଉଁ ସ୍ଥାନ, କଂଗ୍ରେସସେବୀଙ୍କ ଭିତରେ ଗାନ୍ଧିଜୀଙ୍କର ସେହି ସ୍ଥାନ । କଂଗ୍ରେସ ସମ୍ବିଧାନରେ ଯାହା ଥାଉ ନା କାହିଁକି, ଗାନ୍ଧିଜୀଙ୍କର ଅନୁମୋଦନରେହିଁ ସବୁ କିଛି ଚାଲିବ ।'' ସେଠଜୀଙ୍କର ଅଭିମତ ସମର୍ଥନରେ ଖୁବ୍ ତାଳି ବାଜିଲା । 'ହିନ୍ଦୁସ୍ଥାନ କୀ ହିଟଲରଙ୍କର ଜୟ, ଗାନ୍ଧିଜୀଙ୍କ ଜୟ ।' ଚମତ୍କାର କାର୍ଯ୍ୟ ହେଲା । ଗାନ୍ଧିଜୀଙ୍କର ପଞ୍ଚଶିଷ୍ୟମାନେ ତାଙ୍କୁ ନେଇ ହିଟଲର ଆସନରେ ବସାଇଦେଲେ । ସୁଭାଷଙ୍କୁ ଅପମାନିତ କରିବାକୁ ଯାଇ ଉନ୍ମତ୍ତପ୍ରାୟ କଂଗ୍ରେସ ନେତାମାନେ ଗାନ୍ଧିଜୀଙ୍କୁ ଯେ ଅପମାନିତ କଲେ ଏହା ସମ୍ଭବତଃ ବୁଝିପାରିଲେନାହିଁ ।

ସାରା ଦେଶରେ କଂଗ୍ରେସପ୍ରେମୀ ବୁଦ୍ଧିଜୀବୀମାନେ କଂଗ୍ରେସର ଏହି ଅହେତୁକ ପ୍ରସ୍ତାବରେ ଦୁଃଖ ପ୍ରକାଶ କଲେ । ଗାନ୍ଧିଜୀଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିବା ବିଶ୍ୱକବି ରବୀନ୍ଦ୍ରନାଥ ଏକ ବିବୃତିରେ କହିଲେ, ''ଶେଷରେ ଆଜି କଂଗ୍ରେସର ସଭାମଞ୍ଚରୁ ହିଟଲରୀ ନୀତିର ଜୟଧ୍ୱନି ଶୁଣାଗଲା । ସ୍ୱାଧୀନତାର ମନ୍ତ୍ର ଉଚ୍ଚାରଣ କରିବାକୁ ଯେଉଁ ସଭାମଞ୍ଚ ଉତ୍ସର୍ଗୀକୃତ, ସେହି ବେଦୀ ଉପରୁ ଆଜି ଫାସିଷ୍ଟ ସର୍ପ ଗର୍ଜନକରୁଛି । କଂଗ୍ରେସର ଅନ୍ତଃସଂଚିତ କ୍ଷମତାର ଉତ୍ତାପ ହୁଏତ ଅସ୍ୱାସ୍ଥ୍ୟର କାରଣ ହୋଇଉଠିଛି ବୋଲି ସନ୍ଦେହ ହୁଏ । ଯେଉଁମାନେ ଏହି

କ୍ଷମତାର କେନ୍ଦ୍ରବିନ୍ଦୁକୁ ବିଶେଷଭାବେ ଅଧିକାର କରିଛନ୍ତି, ସଂକଟ ସମୟରେ ସେମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟିଛି । ବିଚାରବୁଦ୍ଧି ସିଧା ବାଟରେ ଚାଲିନାହିଁ । ପରସ୍ପର ପ୍ରତି ଯେଉଁ ଶ୍ରଦ୍ଧା, ଯେଉଁ ସୌଜନ୍ୟ, ଯେଉଁ ବୈଧତା ରକ୍ଷାହେଲେ କଂଗ୍ରେସର ଶକ୍ତି ଓ ସମ୍ମାନ ଯଥାର୍ଥଭାବେ ରକ୍ଷା ହୁଅନ୍ତା, ତାର ବ୍ୟଭିଚାର ହେଉଥିବାର ଦେଖାଯାଉଛି । ବ୍ୟବହାରର ଏହି ବିକୃତି ମୂଳରେ ଶକ୍ତି ଓ ସ୍ପର୍ଦ୍ଧାର ପ୍ରଭାବ ରହିଛି ।

''ଏହି ତପଃ କ୍ଷେତ୍ରରେ ଯେଉଁମାନେ ରକ୍ଷକରୂପେ ଏକତ୍ର ହୋଇଅଛନ୍ତି, ସେମାନଙ୍କର ମନ କଣ ଉଦାର ଭାବରେ ଅନାସକ୍ତ ? ସେମାନେ ପରସ୍ପରକୁ ଆଘାତ କରି ଯେଉଁ ବିରୋଧ ସୃଷ୍ଟି କରନ୍ତି, ତାହା କଣ ବାସ୍ତବରେ ସତ୍ୟ ପାଇଁ ? ଯେଉଁ ଉତ୍ତାପ ଶକ୍ତି ଗର୍ବ ଓ ଶକ୍ତି ଲୋଭରୁ ଉଦ୍‌ଭୂତ, ତା' ଭିତରେ କଣ ସେହି ଉତ୍ତାପ ଏକାବେଳକେ ନାହିଁ ? ଭିତରେ ଭିତରେ ଏ ଯେଉଁ ଶକ୍ତିପୂଜାର ବେଦୀ ଗଢ଼ିଉଠିଛି, ତାର ସ୍ପର୍ଦ୍ଧିତ ପ୍ରମାଣ କଣ ଏଥିରୁ ମିଳିନି, ଯେତେବେଳେ ମହାତ୍ମାଜୀଙ୍କୁ ତାଙ୍କର ଭକ୍ତମାନେ ମୁସୋଲିନୀ ଓ ହିଟଲରର ସମକକ୍ଷ କରି ବିଶ୍ୱଦରବାରରେ ତାଙ୍କୁ ଅପମାନିତ କରିପାରିଲେ ?

ମୁଁ ସର୍ବାନ୍ତଃକରଣରେ ଶ୍ରଦ୍ଧା କରେ ଜବାହରଲାଲଙ୍କୁ, ମୁଁ ତାଙ୍କୁ ପ୍ରଶ୍ନ କରେ, କଂଗ୍ରେସର ଦୁର୍ଗଦ୍ୱାରର ପ୍ରହରୀମାନେ ବ୍ୟକ୍ତିଗତ ଶକ୍ତିମଦର ଏହି ସାଂଘାତିକ ଲକ୍ଷଣ କଣ ପ୍ରକାଶ କରିନାହାନ୍ତି କି ?''

ତିରୁପୁରୀ ଅଧିବେଶନ ଶେଷ ହେଲା; କିନ୍ତୁ ସୁଭାଷଂକ ବିରୁଦ୍ଧରେ ଗାନ୍ଧି- ଭକ୍ତମାନଙ୍କର ଆକ୍ରମଣ ଶେଷ ହେଲା ନାହିଁ, ବରଂ ଆରମ୍ଭ ହେଲା ମାତ୍ର । ପଟେଲ ଓ ନେହେରୁ ଏହି ଆକ୍ରମଣର ପୁରୋଭାଗରେ ରହିଲେ । ମୁଖ୍ୟ ଉଦ୍ଦେଶ୍ୟ– ଏମିତି ପରିସ୍ଥିତି ସେମାନେ ସୃଷ୍ଟିକରିବେ ଯେ, ବାଧ୍ୟହୋଇ ସୁଭାଷ ଇସ୍ତଫା ଦେବେ । କେବଳ ଗାନ୍ଧିଜୀ ନୁହନ୍ତି, ନେହେରୁ ମଧ୍ୟ ସୁଭାଷଙ୍କୁ ତାଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଭାବେ ବିଚାର କରୁଥିଲେ । ସମସ୍ତେ ଆଶଂକା କରୁଥିଲେ ଯେ, ସୁଭାଷଙ୍କ ହାତକୁ କଂଗ୍ରେସର ନେତୃତ୍ୱ ଚାଲିଯାଇଥିବାରୁ ସେ ଯେକୌଣସି ସମୟରେ ଗଣବିପ୍ଳବର ଡାକରା ଦେଇପାରନ୍ତି । ତାହା ହେଲେ ଗାନ୍ଧିଜୀଙ୍କ ଆପୋଷ ମିଳାମିଶା ନୀତିର ଭାଗ୍ୟରେ କଣ ଘଟିବ ?

ଆଗରୁ ତ କାର୍ଯ୍ୟକାରୀ କମିଟିର ଗାନ୍ଧିଜୀଙ୍କ ଅନୁଗାମୀମାନେ ଇସ୍ତଫା ପ୍ରଦାନ କରି ସୁଭାଷଙ୍କୁ ଏକ ଅଡୁଆ ପରିସ୍ଥିତିରେ ପକାଇଦେଇଥାନ୍ତି । ଗାନ୍ଧିଜୀଙ୍କ ସହାୟତାରେ ଏହାର ଏକ ସମାଧାନ ପାଇଁ ସୁଭାଷ ବାରମ୍ବାର ଉଦ୍ୟମ କଲେ; କିନ୍ତୁ ଗାନ୍ଧିଜୀ ଧରାଛୁଆଁ ଦେଲେ ନାହିଁ । ତାଙ୍କର ସେହି ଗୋଟିଏ କଥା– ''ମୁଁ ସେ ବିଷୟରେ କୌଣସି ମତ ଦେଇପାରିବି ନାହିଁ ।'' ଅଥଚ ତେଣେ ତିରୁପୁରୀ ପ୍ରସ୍ତାବ ନିର୍ଦ୍ଦେଶ ଦେଇଛି ଯେ 'ଗାନ୍ଧିଜୀଙ୍କ ବିନା ଅନୁମୋଦନରେ ଓ୍ୱାର୍କିଂ କମିଟି ଗଠିତ ହୋଇ ପାରିବ ନାହିଁ ।' ଏକ ଅଚଳ ଅବସ୍ଥା ସୃଷ୍ଟି ହେଲା । ସୁଭାଷ ଏକ ବିକଳ୍ପ ପ୍ରସ୍ତାବ ଦେଲେ ଯେ, ଓ୍ୱାର୍କିଂ କମିଟିରେ ସବୁ ମତବାଦର ସଭ୍ୟଙ୍କୁ ରଖାଯାଉ ଅର୍ଥାତ୍ କେତେକ ବାମପନ୍ଥୀ ମଧ୍ୟ ରହନ୍ତୁ । କିନ୍ତୁ ଗାନ୍ଧିଜୀଙ୍କ ଦଳଟିର ଦାବି– ଓ୍ୱାର୍କିଂ କମିଟିରେ କେବଳ ଗାନ୍ଧିପନ୍ଥୀମାନେ ରହିବେ; ନହେଲେ ତୁମେ ସେଆଡ଼େ, ଆମେ ଏଆଡ଼େ ।'' ସୁଭାଷଙ୍କର ବକ୍ତବ୍ୟ– ''ବିଶ୍ୱଯୁଦ୍ଧ ଆସନ୍ନ । ସୁତରାଂ କଂଗ୍ରେସକୁ

ବଡ଼ କଠିନ ପରିସ୍ଥିତିର ମୁକାବିଲା କରିବାକୁ ପଡ଼ିବ । ଏପରି ସ୍ଥଳେ ୱାର୍କିଂ କମିଟିରେ ସବୁ ମତବାଦର ସଭ୍ୟ ରହିବା ବାଞ୍ଛନୀୟ''; କିନ୍ତୁ ସେକଥା କେହି ଶୁଣିବାକୁ ନାରାଜ । ସବୁଠାରୁ ବେଶି ଗୋଳମାଳିଆ ପରିସ୍ଥିତି ସୃଷ୍ଟିକରୁଥାନ୍ତି ଜବାହରଲାଲ । ତାଙ୍କର ବାରମ୍ବାର ବାଧାଦାନଫଳରେ ସୁଭାଷ ବଡ଼ ବ୍ୟସ୍ତ ହୋଇପଡ଼ିଲେ । ଶେଷରେ ତାଙ୍କୁ ଏକ ଚିଠି ଲେଖିଲେ । ଚିଠିଟି ବଡ଼ କରୁଣ । ନେହେରୁଚରିତ୍ର ଉଦ୍‌ଘାଟନ କରିବାରେ ଏହା ଏକ ଚମତ୍କାର ଐତିହାସିକ ଦଲିଲ ।

''ପ୍ରିୟ ଜବାହାର,

''ଗତ କେତେଦିନ ହେବ ମୁଁ ଲକ୍ଷ୍ୟକରୁଅଛି, ତୁମେ ମୋର ସାମାନ୍ୟ ତ୍ରୁଟି ଦେଖିଲେ ତାର ସଦ୍‌ବ୍ୟବହାର କରିବାକୁ ଛାଡୁନା । ନିଜର ସବୁ ଦୋଷ ସହଜରେ ତୁମର ଦୃଷ୍ଟି ଏଡ଼ାଇ ଚାଲିଯାଉଛି ।

''କି ବ୍ୟକ୍ତିଗତ ଜୀବନରେ, କି କର୍ମକ୍ଷେତ୍ରରେ ମୁଁ ତୁମକୁ ସର୍ବଦା ଶ୍ରଦ୍ଧା ଓ ସୌଜନ୍ୟ ଦେଖାଇଆସିଛି । ଜୀବନରେ ମୁଁ ତୁମକୁ ସର୍ବଦା ବଡ଼ଭାଇ ଓ ନେତାର ସମ୍ମାନ ଦେଇଆସିଛି, ଉପଦେଶ ମଧ ନେଇଛି ବହୁ ସମୟରେ । ତା ସତ୍ତ୍ୱେ ପ୍ରକାଶ୍ୟ ଜନସଭାରେ ଠିଆହୋଇ ମୋତେ ଜନସାଧାରଣଙ୍କ ନିକଟରେ ହେୟ ଓ ତୁଚ୍ଛ ପ୍ରତିପନ୍ନ କରିବାକୁ ତୁମକୁ ବାଧେନା ? ସତ କହିବାକୁ ଗଲେ, ବାରଜଣ ୱାର୍କିଂ କମିଟି ସଦସ୍ୟ ଏକାସାଙ୍ଗରେ ଇସ୍ତଫା ଦେଇ ମୋତେ ଅପମାନିତ କରିବାକୁ ଯେତିକି ସମର୍ଥ ହୋଇନାହାନ୍ତି, ତୁମେ ଏକା ତା'ଠାରୁ ଅଧିକ କରିପାରିଛ ।

''ମୁଁ ୱାର୍କିଂ କମିଟିର ସଭାପତି । ମୋର ଅଜ୍ଞାତରେ ୱାର୍କିଂ କମିଟିର ସଦସ୍ୟମାନେ ପଟ୍ଟାଭିଙ୍କୁ ସଭାପତି ପଦପାଇଁ ମନୋନୀତ କଲେ । ସେଥିରେ କୌଣସି ଅନ୍ୟାୟ ତୁମ ଆଖିରେ ପଡ଼ିଲା ନାହିଁ । ୱାର୍କିଂ କମିଟିର ସଦସ୍ୟ ହୋଇ ସୁଦ୍ଧା ପଟେଲ ଓ ଅନ୍ୟ ସଦସ୍ୟମାନେ ମୋ ବିରୁଦ୍ଧରେ ନିବେଦନ ପ୍ରକାଶ କଲେ ତାହା ତୁମ ବିଚାରରେ ଅନ୍ୟାୟ ହେଲା ନାହିଁ ।

''ତୁମର ଅଭିଯୋଗ ଯେ, ସଭାପତିଭାବେ ସଭାର କାର୍ଯ୍ୟ ପରିଚାଳନା କରିବାରେ ମୋ'ର ଦାୟିତ୍ୱ ମୁଁ ସଂପୂର୍ଣ୍ଣରୂପେ ପାଳନ କରିପାରିନି । ତୁମେ ସଭାରେ ଉପସ୍ଥିତ ଥିଲେ କାହାର ସାଧ୍ୟ ସଭାପତି-କାର୍ଯ୍ୟ ତୁଲାଇବ ? ୱାର୍କିଂ କମିଟିରେ ତୁମଭଳି ଆଉ ଜଣେ କେହି ବାକ୍‌ବାଗୀଶ ଥାନ୍ତା ତ ମୋର ମନେହୁଏନା ମୁଁ କେବେ ସେ ସଭା ଶେଷ କରିପାରନ୍ତି ।

''ନିର୍ମମ ସତ୍ୟ କହିଲେ କୁହାଯିବ ଯେ, ତୁମେ ୱାର୍କିଂ ବୈଠକରେ ବେଳେବେଳେ ସୁନାପିଲା ହୁଅ ଏବଂ ବେଳେବେଳେ ସାଂଘାତିକ ଭାବେ ରାଗିଉଠ । ତୁମର ଏହି ସ୍ନାୟବିକ ଦୁର୍ବଳତା ଓ ନାଚକୁଦରେ କି ଫଳ ପାଅ ?

ତୁମେ ସାଧାରଣତଃ ଘଣ୍ଟାପରେ ଘଣ୍ଟା ଠିକ୍ ରୁହ; କିନ୍ତୁ ତା' ପରେ ଟଳିପଡ଼ । ସର୍ଦ୍ଦାର ପଟେଲ ଓ ଅନ୍ୟମାନେ ତୁମସହ ବ୍ୟବହାର କରିବାର ଚମତ୍କାର କୌଶଳ ଜାଣନ୍ତି । ସେମାନେ ପ୍ରଥମେ ତୁମକୁ ବକ୍‌ବକ୍ ହେବାକୁ ଛାଡ଼ିଦେବେ, ଶେଷରେ ତୁମକୁ ସେମାନଙ୍କ ପ୍ରସ୍ତାବର ଚିଠା କରିବାକୁ ଦେଇ ଖସିଯିବେ । ତୁମକୁ କେବଳ କୌଣସି ପ୍ରସ୍ତାବର ଚିଠା

କରିବାର ସୁଯୋଗ ମିଳିଲେ ତୁମେ ମହାଖୁସି– ସେ ପ୍ରସ୍ତାବ ଯାହାର ହେଉନା କାହିଁକି । ମୁଁ ତ ଖୁବ୍ କମ୍ ଦେଖିଛି, ଯେତେବେଳେ କି ତୁମେ ତୁମ ଯୁକ୍ତିରେ ଶେଷ ପର୍ଯ୍ୟନ୍ତ ଅଟଳ ରହିଛ । ମୁଁ ଜାଣେନା, ରାଷ୍ଟ୍ରପତିର (ସେ ଯୁଗରେ କଂଗ୍ରେସ ସଭାପତିଙ୍କୁ ରାଷ୍ଟ୍ରପତି ବୋଲି କୁହାଯାଉଥିଲା- ଲେଖକ) କ୍ଷମତା ଓ କର୍ତ୍ତବ୍ୟ ସମ୍ପର୍କରେ ତୁମେ କଣ ଭାବ ? ତୁମେ ରାଷ୍ଟ୍ରପତି ଥିବାବେଳେ ସେକ୍ରେଟାରୀଙ୍କ କାମକୁ ଯେମିତି ଜବର-ଦଖଲ କରୁଥିଲ, ସବୁ ରାଷ୍ଟ୍ରପତି ଯେ ସେଇଆ କରିବେ ଏହାର କୌଣସି ମାନେ ହୁଏନା ।

''ବର୍ତ୍ତମାନ ତୁମର ନୀତି ଓ କର୍ମପନ୍ଥା ସମ୍ପର୍କରେ ବ୍ୟାଖ୍ୟା କରିବାକୁ ନିମନ୍ତ୍ରଣ କରିବା ମୋର ଉଚିତ । କିନ୍ତୁ ତା ଅସ୍ପଷ୍ଟତାରେ ଆବୃତ ହେଲେ ଚଳିବ ନାହିଁ; ତାହା ବ୍ୟାପକଭାବେ ବିସ୍ତାରିତ ହେବା ଉଚିତ । ମୁଁ ଜାଣିବାକୁ ଚାହେଁ ଯେ, ତୁମେ ସମାଜବାଦୀ ନା ବାମପନ୍ଥୀ ଅଥବା ମଧ୍ୟମପନ୍ଥୀ ନା ଦକ୍ଷିଣପନ୍ଥୀ ନା ଗାନ୍ଧିପନ୍ଥୀ ନା ଆଉ କିଛି ?''

ତୁମର କଣ ମନେହୁଏନା ତିରୁପୁରୀ କଂଗ୍ରେସର 'ପନ୍ଥ ପ୍ରସ୍ତାବ'ର ମୂଳ ଉଦ୍ଦେଶ୍ୟ ହେଲା ମହାତ୍ମାଙ୍କୁ ମୋ ବିରୁଦ୍ଧରେ ଛିଡାକରାଇବା ? ଯଦି ପୁରାତନ-ପଂଥିମାନେ ମୋ ବିରୁଦ୍ଧରେ ପୁଣି ଲଢ଼ିବାକୁ ଚାହୁଁଥିଲେ, ସେମାନେ ତାହା ଖୋଲାଖୋଲି ନ କଲେ କାହିଁକି ? ଏହା ଅବଶ୍ୟ ଏକ ଚମତ୍କାର କୌଶଳ ! କିନ୍ତୁ ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ, ଏହି କୌଶଳ ସତ୍ୟ ଅହିଂସା ସହ ଖାପ ଖାଉଛି ତ ?

X X X X

ଗାନ୍ଧିଜୀଙ୍କର ଅସହଯୋଗ ଫଳରେ ସୁଭାଷ ଶେଷ ପର୍ଯ୍ୟନ୍ତ ଏହି ଅଚଳ ଅବସ୍ଥାର କୌଣସି ସମାଧାନ କରିପାରିଲେ ନାହିଁ । "Subhash failed to pursuade Gandhi to help him to choosing his "cabinet' colle gues. There could be no rapproachment between the two." 1 କିନ୍ତୁ ଗାନ୍ଧିଜୀ ତାଙ୍କର ଜିଦ୍ ଛାଡ଼ିଲେ ନାହିଁ । "Gandhiji now turned the technique of non-coperation not against the British but against Congress's own President. Bose was forced to resign." 2 (ଗାନ୍ଧିଜୀ ବର୍ତ୍ତମାନ ତାଙ୍କର ଅସହଯୋଗ କୌଶଳ ବ୍ରିଟିଶ ବିରୁଦ୍ଧରେ ପ୍ରୟୋଗ ନକରି କଂଗ୍ରେସର ସ୍ୱୟଂ ସଭାପତିଙ୍କ ବିରୁଦ୍ଧରେହିଁ ପ୍ରୟୋଗ କଲେ । ଇସ୍ତଫା ଦେବାକୁ ବୋଷଙ୍କୁ ବାଧ୍ୟ କରାଗଲା ।)

ସୁଭାଷ ସଭାପତି ପଦରୁ ଇସ୍ତଫାଦେଲେ । ଇସ୍ତଫାପତ୍ରରେ ସେ ଲେଖିଥିଲେ– ତ୍ରିପୁରୀ କଂଗ୍ରେସର ପ୍ରସ୍ତାବମତେ ୱାର୍କିଂ କମିଟି ଗଠନକରିବାକୁ ମୁଁ ବାରମ୍ବାର ଅନୁରୋଧ କରିଛି; କିନ୍ତୁ ଅତୀତରେ ବହୁ ନିଷ୍ଫଳ ଆବେଦନ ଭଳି ଏ ଆବେଦନ ମଧ୍ୟ ବ୍ୟର୍ଥ ହୋଇଛି । ମୁଁ ଯଦି ନିଜ ଇଚ୍ଛା ଅନୁସାରେ କମିଟି ଗଢ଼େ, ତାହା ତାଙ୍କର ମନମୁତାବକ ହୁଅନ୍ତା ନାହିଁ । ତା'ପରେ ମୋର ନିଜର ଆଦର୍ଶ ଓ ବିଶ୍ୱାସ କଥା ମଧ୍ୟ ଏଥିସହ ଜଡ଼ିତ । ସେଥିପାଇଁ

1. The story of I.N.A. - S.A. Ayer
2. The Last years of British Rule - Micheel Edwards

ଅନେକ ଚିନ୍ତାକରି ମୁଁ ସଭାପତି ପଦରୁ ଇସ୍ତଫା ପତ୍ର ଆପଣମାନଙ୍କ ଆଗରେ ଉପସ୍ଥାପିତ କଲି ।୧

ଏହି ଇସ୍ତଫାଫଳରେ ଗାନ୍ଧିପଂଥିମାନଙ୍କର ଦୀର୍ଘ ଦେଢ଼ବର୍ଷର ଷଡ଼ଯନ୍ତ୍ର ସଫଳ ହେଲା । ସେମାନଙ୍କର ଆନନ୍ଦ କହିଲେ ନସରେ । ଇସ୍ତଫାପତ୍ର ସେମାନେ ଗ୍ରହଣ କରିନେଲେ; କିନ୍ତୁ କଂଗ୍ରେସର ଯୁବ-ସଂପ୍ରଦାୟ ବିଶେଷତଃ ସୁଭାଷଙ୍କର ପ୍ରଗତିଶୀଳ ସଂଗ୍ରାମୀ କାର୍ଯ୍ୟକ୍ରମରେ ନିଷ୍ଠାବାନ୍ ବାମପଂଥୀମାନେ ସୁଭାଷଙ୍କୁ ବିପୁଳ ଅଭିନନ୍ଦନ ଜଣାଇ କଂଗ୍ରେସ ନେତୃବୃନ୍ଦଙ୍କୁ ଆହ୍ୱାନ ଦେଲେ । ସାରା ଦେଶରୁ ଅସଂଖ୍ୟ ଚିଠି ଓ ଟେଲିଗ୍ରାମ ଆସିଲା- ''ଦେଖାଯାଉ, ଏଥର କଂଗ୍ରେସର ନେତୃସ୍ଥାନୀୟ ଲୋକେ କ'ଣ କରୁଛନ୍ତି ? କଂଗ୍ରେସ ଦେଶବାସୀଙ୍କୁ କିଭଳି ସଂଗ୍ରାମର ଆହ୍ୱାନ ଦେଉଅଛି– ତା'ର ପରୀକ୍ଷା ହୋଇଯାଉ ।''

କବିଗୁରୁ ରବୀନ୍ଦ୍ରନାଥ ଲେଖିଲେ- ''ଆପାତଦୃଷ୍ଟିରୁ ଯାହା ତୁମର ପରାଜୟ ବୋଲି ମନେହେଉଅଛି, ତାହା ତୁମ ପକ୍ଷରେ ଚିରନ୍ତନ ଜୟରେ ପରିଣତ ହେବ ।'' ଇସ୍ତଫା ସମ୍ପର୍କରେ ସୁଭାଷ ନିଜେ ତାଙ୍କ 'ଆତ୍ମଜୀବନୀ'ରେ ଯାହା ଲେଖିଛନ୍ତି, ତାହା ପାଠକଲେ ତତ୍କାଳୀନ କଂଗ୍ରେସ ନେତାମାନଙ୍କ ପ୍ରତି ଘୃଣାରେ ନାସିକା କୁଞ୍ଚନ ହୋଇଯାଏ ।

''ଗାନ୍ଧିଜୀ ଓ ନେହେରୁଙ୍କର ପ୍ରକାଶ୍ୟ ବିରୋଧ ସତ୍ତ୍ୱେ ସାରା ଦେଶରେ ମୋର ସହଯୋଗୀମାନଙ୍କର ସଂଖ୍ୟା କେତେ ପ୍ରବଳ ଓ ତାର ପ୍ରଭାବ କେତେ ବେଶି, ତାହା ନିର୍ବାଚନରେ ପ୍ରମାଣିତ ହୋଇଯାଇଥିଲା ।''

''କଂଗ୍ରେସର ଗଠନତନ୍ତ୍ର କହୁଛି, କଂଗ୍ରେସ ସଭାପତି ପରବର୍ତ୍ତୀ ବର୍ଷପାଇଁ ୱାର୍କିଂ କମିଟି ଗଠନ କରିବାକୁ ସଂପୂର୍ଣ୍ଣ ହକ୍‌ଦାର । କିନ୍ତୁ ସ୍ପଷ୍ଟ ବୁଝିପାରିଲି ଯେ, ଗାନ୍ଧିପଂଥୀଙ୍କ ମତାନୁସାରେ ୱାର୍କିଂ କମିଟି ଗଠିତ ନ ହେଲେ ସେମାନେ ତାହାର ବିରୋଧ କରିବେ ଏବଂ କାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟି କରିବେ । ସେ ଅବସ୍ଥାରେ ସ୍ୱାଧୀନଭାବେ ସଭାପତି କାର୍ଯ୍ୟ ତୁଲାଇବା ଅସମ୍ଭବ ହୋଇପଡ଼ିବ । ଗାନ୍ଧିବାଦୀ ଦଳର ମନୋଭାବରୁ ବୁଝାଗଲା ଯେ, ସେମାନେ ମୋ ନିର୍ଦ୍ଦେଶ ମାନି ଚଳିବେ ନାହିଁ । କଂଗ୍ରେସର ପରିଚାଳନା ବ୍ୟବସ୍ଥା ନିୟନ୍ତ୍ରିତ କରିବାର ସୁଯୋଗ ସେମାନେ ମୋତେ ଦେବେନାହିଁ । ମୁଁ ଯଦି ନାମକୁମାତ୍ର ସଭାପତି ହୋଇ ସେହିମାନଙ୍କର ପସନ୍ଦ ଅନୁସାରେ ପରିଚାଳିତ ହେବି, ତେବେ ସେମାନେ ମୋତେ ବରଦାସ୍ତ କରିବେ; ଫଳରେ ସଭାପତି ପଦରୁ ଇସ୍ତଫା ଦେବା ଛଡ଼ା ମୋ' ଆଗରେ ଅନ୍ୟ କୌଣସି ବାଟ ନ ଥିଲା ।''

ସଭାପତି ପଦରୁ ଇସ୍ତଫା ଦେଇଥିଲେ ସୁଦ୍ଧା ସୁଭାଷ କଂଗ୍ରେସ ଛାଡ଼ିନଥିଲେ । କଂଗ୍ରେସ ଭିତରେ ଥିବା କଂଗ୍ରେସ-ସୋସଲିଷ୍ଟ ପାର୍ଟି ଭଳି ସେ ନିଜର ସଂଗ୍ରାମୀ କାର୍ଯ୍ୟକ୍ରମ ସପକ୍ଷରେ କଂଗ୍ରେସ ଦଳକୁ ପ୍ରଭାବିତ କରିବାକୁ 'ଫରୱାଡ଼ ବ୍ଲକ' ଗଠନକରିଥିଲେ ।

ସଭାପତି ପଦରୁ ଇସ୍ତଫା ଦେବା ସତ୍ତ୍ୱେ ତାଙ୍କ ବିରୁଦ୍ଧରେ ଗାନ୍ଧିପଂଥୀମାନଙ୍କର ହୀନ ଷଡ଼ଯନ୍ତ୍ର ବନ୍ଦ ହେଲା ନାହିଁ । ସୁଭାଷଙ୍କୁ କଂଗ୍ରେସରୁ ତଡ଼ିବାପାଇଁ କିମ୍ବା ଖୁବ୍ କମରେ ତାଙ୍କୁ

1. Subhas Chandra Bose - The Indian Struggle , Pg - 67

ଯେପରି ଭବିଷ୍ୟତ୍‌ରେ କେଭେଁ ହେଲେ ସଭାପତି କରାନଯାଏ, ତା'ର ଯୋଗାଡ଼ରେ ଲାଗିଗଲେ । ସେତେବେଳେ '୧୯୩୫ ମସିହା ଭାରତ ଶାସନ ଆଇନ' ଅନୁସାରେ କେତୋଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିଥାଏ ଏବଂ ଏହି କଂଗ୍ରେସ ମନ୍ତ୍ରୀମାନଙ୍କ ବିରୁଦ୍ଧରେ କୌଣସି ସମାଲୋଚନା କରିବା ପାଇଁ କଂଗ୍ରେସ କର୍ମୀମାନଙ୍କୁ ନିଷେଧ କରାଯାଇଥିଲା । ସୁଭାଷ ସେତେବେଳେ ବଙ୍ଗ କଂଗ୍ରେସର ସଭାପତି । କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାହେବା ସଙ୍ଗେ ସଙ୍ଗେ ତା' ବିରୁଦ୍ଧରେ ଦୁର୍ନୀତିର ଅସଂଖ୍ୟ ଅଭିଯୋଗ ହେଲା ଚାରିଆଡ଼େ । ସୁଭାଷ ଏ ସମ୍ପର୍କରେ କଂଗ୍ରେସ ସଭାପତି ରାଜେନ୍ଦ୍ର ପ୍ରସାଦଙ୍କୁ ଲେଖିଲେ । କଂଗ୍ରେସ କମିଟି ଏହାକୁ ଏକ ସୁବର୍ଣ୍ଣ ସୁଯୋଗ ମନେକଲେ ଏବଂ ସୁଭାଷଙ୍କୁ ତିନିବର୍ଷ ପର୍ଯ୍ୟନ୍ତ କୌଣସି ନିର୍ବାଚିତ ପଦବୀରେ ରହି- ପାରିବେ ନାହିଁ ସସପେଣ୍ଡ ଆଦେଶ ଦେଲେ । ଶ୍ରୀ ଏସ୍: ଏ: ଆୟାରଙ୍କ ଭାଷାରେ– ''ଦୁଇଥର କଂଗ୍ରେସ ସଭାପତି ହୋଇଥିବା ସୁଭାଷଙ୍କୁ ଦଣ୍ଡ ଦେବାକୁ ଏହି ସସ୍‌ପେଣ୍ଡ ଆଦେଶ ଦିଆଗଲା ।'' କଂଗ୍ରେସର ଦକ୍ଷିଣପଂଥୀଙ୍କ ସହ ଥିବା ଆଦର୍ଶଗତ ସଂଘର୍ଷକୁ ଏହିଭଳି ଭାବରେ ଏକ ବ୍ୟକ୍ତିଗତ ସଂଘର୍ଷରେ ପରିଣତ କରାଗଲା ।

ହରିପୁରା କଂଗ୍ରେସରେ ସିଦ୍ଧାନ୍ତ ନିଆଯାଇଥିଲା ଯେ, ଇଂରେଜମାନେ କୌଣସି ଯୁଦ୍ଧରେ ଜଡ଼ିତ ହେଲେ ମଧ୍ୟ କଂଗ୍ରେସ ସେଥିରେ ଜଡ଼ିତ ହେବ ନାହିଁ । କିନ୍ତୁ ୱାର୍ଦ୍ଧାଠାରେ ହୋଇଥିବା କଂଗ୍ରେସ ୱାର୍କିଂ କମିଟି ବୈଠକରେ ହରିପୁରା ପ୍ରସ୍ତାବକୁ ରଦ୍ଦ କରିଦିଆଗଲା । ଏକମାତ୍ର ସୁଭାଷ ତାର ବିରୋଧ କରିଥିଲେ ।

ସୁଭାଷଙ୍କର ଭବିଷ୍ୟତ୍ ବାଣୀକୁ ସତ୍ୟରେ ପରିଣତ କରି ସତକୁ ସତ ୟୁରୋପରେ ଯୁଦ୍ଧ ଆରମ୍ଭ ହୋଇଗଲା । ତାଙ୍କ ମନରେ ଦୃଢ଼ଧାରଣା ଥିଲା ଯେ, କଂଗ୍ରେସ ସଂଗ୍ରାମର ଡାକରା ଦେବ ନାହିଁ । କାରଣ ଗାନ୍ଧିଜୀ ବାରମ୍ବାର ଘୋଷଣା କରୁଥାନ୍ତି ଯେ, ଭାରତବର୍ଷର ସ୍ୱାଧୀନତା ବିଷୟରେ ଇଂଲାଣ୍ଡ ଓ କଂଗ୍ରେସଦଳ ଭିତରେ ମତଭେଦ ଥିଲେ ସୁଦ୍ଧା ଇଂଲାଣ୍ଡର ସଙ୍କଟବେଳେ ତାହା ସହ ସହଯୋଗ କରିବା ଭାରତର କାମ୍ୟ । ଇଂଲାଣ୍ଡର ଧ୍ୱଂସପଥରେ ଭାରତର ସ୍ୱାଧୀନତା ମୁଁ କାମନା କରେ ନାହିଁ; କାରଣ ଏହା 'ଅହିଂସା' ନୁହେଁ ।

କିନ୍ତୁ ସୁଭାଷ ଇଂଲାଣ୍ଡର ଯୁଦ୍ଧ-ଆୟୋଜନକୁ ବିପର୍ଯ୍ୟସ୍ତ କରିବାକୁ ଲାଗିପଡ଼ିଲେ । ସାରା ଭାରତରେ ବୁଲି ସେ ପ୍ରଚାର କଲେ- ''ଏ ଯୁଦ୍ଧରେ ଇଂଲାଣ୍ଡକୁ ସାହାଯ୍ୟ କରି ଆମର କୌଣସି ଲାଭ ନାହିଁ; ବରଂ ଏହା ଫଳରେ ଇଂରେଜ ସାମ୍ରାଜ୍ୟବାଦ ଭାରତରେ ଆହୁରି ସୁଦୃଢ଼ ହେବ ଏବଂ ଭାରତର ସ୍ୱାଧୀନତା ହେବ ସୁଦୂରପରାହତ । ଅପର- ପକ୍ଷରେ ଇଂଲାଣ୍ଡର ପରାଜୟହିଁ ଆମର ସ୍ୱାଧୀନତା ପଥକୁ ଅଧିକ ପ୍ରଶସ୍ତ ଓ ନିଷ୍କଣ୍ଟକ କରିଦେବ । ସୁତରାଂ ଚରମ ଗଣ-ସଂଗ୍ରାମ ପାଇଁ ପ୍ରସ୍ତୁତ ହେବାର ଏହାହିଁ ଉପଯୁକ୍ତ ସମୟ– ସଂଗ୍ରାମ, ସଂଗ୍ରାମ, ସଂଗ୍ରାମ ।

"India's immediate requirement were an uncompromising struggle with British imperialism and the methods of struggle more effective than what Mahatma Gandhi had produced, The Indian. People should

not be pampered by any philosophical notions like Gandhian non-violence or any sentimentalism like Nehru's Anti- Axis foreign policy." (1). (ଭାରତର ଜରୁରୀ ଆବଶ୍ୟକତା ହେଉଛି ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସାଲିସହୀନ ସଂଗ୍ରାମ ଏବଂ ଗାନ୍ଧିଜୀଙ୍କ ସୃଷ୍ଟ ଉପାୟ ଅପେକ୍ଷା ଅଧିକ କ୍ରିୟାଶୀଳ ଉପାୟ । ଗାନ୍ଧିଜୀଙ୍କ ଅହିଂସାରୂପୀ ଏକ ଦାର୍ଶନିକ ଖିଆଲ ବା ନେହେରୁଙ୍କର ଅକ୍ଷଶକ୍ତି-ବିରୋଧୀରୂପୀ ଏକ ଭାବପ୍ରବଣତା ଦ୍ୱାରା ଭାରତୀୟମାନେ ପ୍ରଭାବିତ ହେବା ଉଚିତ ନୁହେଁ ।)

"Bose himself welcomed the conflict, because a blow to Britain in Europe would undoubtedly weaken her grasp on India. Other Congress leaders had no such clearest vision of the future." 2 (ବୋଷ ନିଜେ ଏହି ସଂଘର୍ଷ(ଯୁଦ୍ଧ)କୁ ସ୍ୱାଗତ କଲେ; କାରଣ ୟୁରୋପରେ ଇଂଲାଣ୍ଡ ଯେମିତି ଧକ୍କା ଖାଇବ, ଭାରତ ଉପରେ ଥିବା ତା'ର ହାତମୁଠା ସେତିକି ଢିଲା ହେବ । ଅନ୍ୟ କୌଣସି କଂଗ୍ରେସ ନେତାଙ୍କର ଏଭଳି ପରିଷ୍କାର ଦୂରଦୃଷ୍ଟି ନଥିଲା ।)

ଯୁଦ୍ଧ ବିରୁଦ୍ଧରେ ସୁଭାଷଙ୍କର ଏହି ପ୍ରଚାରରେ ସରକାର ଭୀଷଣ ଭାବରେ ଆତଙ୍କିତ ହୋଇପଡ଼ି ତାଙ୍କୁ ଗିରଫକଲେ । ସାରା ଦେଶରେ ଏହି ଅନ୍ୟାୟ ଗିରଫଦାରିର ଘୋର ପ୍ରତିବାଦ କରାଗଲା, କିନ୍ତୁ କଂଗ୍ରେସପକ୍ଷରୁ କୌଣସି ପ୍ରତିବାଦ ହେଲା ନାହିଁ । ଦୁଇ-ଦୁଇ ଥର କଂଗ୍ରେସର ସଭାପତି ହୋଇଥିବା ସୁଭାଷଙ୍କ ଭଳି ଜଣେ ସର୍ବଜନବରେଣ୍ୟ ନେତାଙ୍କ ପ୍ରତି କଂଗ୍ରେସ ଓ ଗାନ୍ଧିଜୀଙ୍କର ଏହି ମନୋଭାବ ବିରୁଦ୍ଧରେ ତୀବ୍ର ସମାଲୋଚନା ହେଲା । ଶେଷରେ ଯଦିଓ ଗାନ୍ଧିଜୀ ଏ ସମ୍ପର୍କରେ ଏକ ସ୍ୱଷ୍ଟୀକରଣ ଦେଲେ, ତାହା କାହାକୁ ସନ୍ତୋଷ ଦେଲା ନାହିଁ ।

ସୁଭାଷ ଜେଲ ଭିତରେ ରହିଲେ ଏବଂ ସେହି ଜେଲ ଭିତରେହିଁ ସେ ଚୂଡ଼ାନ୍ତ ସିଦ୍ଧାନ୍ତ କଲେ ତାଙ୍କର ଭବିଷ୍ୟତ୍ ଯୋଜନା । କଂଗ୍ରେସ ନେତାମାନଙ୍କ ଦୁର୍ବ୍ୟବହାରରେ ସେ ବ୍ୟକ୍ତିଗତ ଭାବେ ବହୁ ଅସୁବିଧା ଓ କ୍ଳେଶଦାୟକ ପରିସ୍ଥିତିରେ ପଡ଼ିଥିଲେ ବି ତାଙ୍କର ସବୁବେଳେ ଆଶା ଥିଲା ଯେ, 'କାଂଥବାଡ଼ର ଲେଖା' ପ୍ରତି କଂଗ୍ରେସ ନେତାମାନେ ଅଧିକ ଦିନ ଆଖିବୁଜି ରହିପାରିବେନାହିଁ । ଏକ ପୂର୍ଣ୍ଣାଙ୍ଗ ଗଣବିପ୍ଳବ ପାଇଁ ଓ ସଶସ୍ତ୍ର ଅଭ୍ୟୁତ୍ଥାନ ପାଇଁ ୟୁରୋପ ଯୁଦ୍ଧ ଫଳରେ ଯେଉଁ ସୁବର୍ଣ୍ଣ ସୁଯୋଗ ସୃଷ୍ଟିହୋଇଅଛି, କଂଗ୍ରେସ ତାର ସଂପୂର୍ଣ୍ଣ ଫାଇଦା ଉଠାଉ ବୋଲି ସେ ଆଶା କରିଥିଲେ । କିନ୍ତୁ ଗତ ଦୁଇ ବର୍ଷର ଅଭିଜ୍ଞତାରେ ତାଙ୍କର ସକଳ ଆଶା ଧୂଳିସାତ୍ ହୋଇଗଲା । ସେ କଂଗ୍ରେସ ଓ କଂଗ୍ରେସ ନେତାମାନଙ୍କ ଉପରୁ ସମସ୍ତ ଭରସା ହରାଇବସିଲେ । ସେ ଦେଖିଲେ ଯେ, ତାଙ୍କ ସମ୍ପର୍କରେ ଇଂରେଜ ଓ କଂଗ୍ରେସର ମନୋଭାବ ଭିତରେ ପାର୍ଥକ୍ୟ ନାହିଁ । ଉଭୟ ତାଙ୍କୁ ଶତ୍ରୁ ଭାବରେ ଦେଖୁଛନ୍ତି । ଏପରି କି ସୁଭାଷଙ୍କ କାର୍ଯ୍ୟକଳାପକୁ ସତର୍କ ଦୃଷ୍ଟିରେ ଲକ୍ଷ୍ୟ କରି ଦେଖିବା ବିଷୟରେ କଂଗ୍ରେସ ନେତା ଓ ସରକାରୀ କର୍ତ୍ତାମାନଙ୍କ ଭିତରେ ଗୋପନ ସମ୍ପର୍କ ଥିବା ବିଷୟରେ

1. S. C. Bose - The Indian Struggle - Pg. 337
2. Micheel Edwards - The Last years of British Rule - Pg. 197

ସନ୍ଦେହ ପ୍ରକାଶ ପାଇଲା । ସୁଭାଷଙ୍କ ରାଜନୈତିକ ଗତିବିଧି ସମ୍ପର୍କରେ ସରକାର ଯେଉଁ ଗୋଏନ୍ଦା ରିପୋର୍ଟ ପାଉଥିଲା, ତାହା କଂଗ୍ରେସ ନେତାମାନଙ୍କୁ ଦେଖାଇ ଦିଆଯାଉଥିଲା । ଆଲୋଚନା ପ୍ରସଙ୍ଗରେ ଡକ୍ଟର ଏ. କେ. ମଜୁମଦାରଙ୍କ ରଚିତ ପୁସ୍ତକର ଏକ ଅଂଶ ପ୍ରତି ସ୍ୱତଃ ଦୃଷ୍ଟି ଆକୃଷ୍ଟ ହୁଏ– "ମୋ ସହ (କେ: ଏମ: ମୁନ୍‌ସୀ) ଗାନ୍ଧିଜୀ, ସର୍ଦ୍ଦାର ପଟେଲ ଓ ଅନ୍ୟ କଂଗ୍ରେସ ନେତାମାନଙ୍କର ଘନିଷ୍ଠ ସମ୍ପର୍କ ଥିବା କଥା ସରକାରଙ୍କୁ ଭଲଭାବରେ ଜଣାଥିଲା ଏବଂ କେତେକ ସରକାରୀ ଗୋପନୀୟ ରିପୋର୍ଟ ମୋ' ଜରିଆରେ ସେମାନଙ୍କୁ ଦିଆଯାଉଥିଲା ।

"ଥରେ ମୋତେ ଏକ ଗୋପନୀୟ ରିପୋର୍ଟ ଦେଖାଇଦିଆଯାଇଥିଲା ଯେ, ନେତାଜୀ କଲିକତାସ୍ଥ ଜର୍ମାନ୍ କନସଲ ସହ ସମ୍ପର୍କ ରଖିଥିଲେ ଏବଂ ଯୁଦ୍ଧ ଆରମ୍ଭ ହେଲେ ଜର୍ମାନୀ ପକ୍ଷ ତାଙ୍କ ଉପରେ ନିର୍ଭରକରିପାରନ୍ତି ବୋଲି ଏକ ବୁଝାମଣା ସେମାନଙ୍କ ମଧ୍ୟରେ ହୋଇଥିଲା ।" (1)

ସୁଭାଷଙ୍କ ବିରୁଦ୍ଧରେ କଂଗ୍ରେସଦଳ ଓ ଇଂରେଜ ସରକାର କାହିଁକି ଏତେ ଦୂର ଯାଉଥିଲେ, ତାହା କେବଳ କଂଗ୍ରେସ ନେତାମାନେହିଁ ଜାଣନ୍ତି । ସବୁଠାରୁ ବଡ଼କଥା ହେଲା ଯେ, ଯେଉଁ ଗଣ-ଅଭ୍ୟୁତ୍‌ଥାନ କଥା ସେ ଭାବୁଛନ୍ତି, ତାହା ଦେଶ ଭିତରେ ରହି ସେ କରିପାରିବେ ନାହିଁ । କାରଣ ଏଥର ଜେଲରୁ ଖଲାସ ହେଲେ ପୁନର୍ବାର କୌଣସି ନା କୌଣସି ଆଳରେ ତାଙ୍କୁ ପୁଣି ଜେଲରେ ଭର୍ତ୍ତିକରାଯିବ । ତେବେ ଉପାୟ କ'ଣ ?

X X X X

୧୯୩୯ ସେପ୍‌ଟେମ୍ବର ପହିଲା ଦିନ ରାତିପାହିବା ବେଳକୁ ପୋଲାଣ୍ଡବାସୀ ଦେଖିଲେ ଯେ, ହିଟଲରର ତୋଫାନୀ ସୈନ୍ୟ ପୋଲାଣ୍ଡ ଅଧିକାର କରିସାରିଲେଣି । ସାରା ବିଶ୍ୱକୁ ହୁଲସ୍ଥୁଲ କରି ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା । ଚାହୁଁ ଚାହୁଁ ବିଦ୍ୟୁତ୍ ଗତିରେ ହିଟଲର ଗୋଟାକ ପରେ ଗୋଟାଏ ପଶ୍ଚିମ ୟୁରୋପୀୟ ରାଷ୍ଟ୍ର ଦଖଲ କରିଚାଲିଲା । କଳଙ୍କିତ 'ମ୍ୟୁନିକ ଚୁକ୍ତି' ଆଖିପିଛୁଳାକେ ତାସର ଘର ଭଳି ଭୁଷୁଡ଼ି ପଡ଼ିଲା । ୧୯୪୦ ଏପ୍ରିଲରେ ଡେନ୍‌ମାର୍କ, ନରୱେ, ଫ୍ରାନ୍ସ ଓ ବେଲଜିଅମ ନାଜୀ ସୈନ୍ୟର ବୁଟ୍‌ତଳେ ନିଷ୍ପେଷିତ ହୋଇଗଲେ । ସେ ପର୍ଯ୍ୟନ୍ତ ଇଂଲାଣ୍ଡ କେବଳ ନୀରବଦର୍ଶକ ମାତ୍ର । ୟୁରୋପୀୟ ରାଷ୍ଟ୍ରଗୁଡ଼ିକ ସହିତ ଦେଶରକ୍ଷା ଚୁକ୍ତି ସତ୍ତ୍ୱେ ଇଂଲାଣ୍ଡ ଅସହାୟ ଦର୍ଶକଭାବେ ଖାଲି ଚାହିଁରହିଲା । ସତ କଥା ହେଉଛି, ଜର୍ମାନୀର ଅଚିନ୍ତନୀୟ ଅଗ୍ରଗତି ଇଂଲାଣ୍ଡର ହୃତ୍‌କମ୍ପ ସୃଷ୍ଟିକରିଥିଲା । ପ୍ରଥମ ଅବସ୍ଥାରେ ଇଂଲାଣ୍ଡ ଆଶା କରୁଥିଲା ଯେ, ହିଟଲର ହୁଏତ ତା' ଉପରେ ଆକ୍ରମଣ କରିବ ନାହିଁ । ହିଟଲର୍‌ର ମତିଗତି ଓ ପରବର୍ତ୍ତୀ ଯୋଜନା ସମ୍ପର୍କରେ ଇଂଲାଣ୍ଡ କିଛି କୂଳକିନାରା ପାଉନଥିଲା; ଫଳରେ ତଥାକଥିତ ମିତ୍ର-ଶକ୍ତିକୁ ସାହାଯ୍ୟ କରି ଜର୍ମାନୀର ବିରାଗଭାଜନ ହେବାକୁ ଇଂଲାଣ୍ଡ ହୁଏତ ଭରସିଲା ନାହିଁ । ସାରା ପୃଥିବୀ ଅଣନିଃଶ୍ୱାସୀ ହୋଇ ଚାହିଁରହିଲା ହିଟଲରକୁ – "ଏହା ପରେ କିଏ ? ଏହା ପରେ କାହାର ପାଳି ?" ୧୯୪୦ ଜୁଲାଇ

1. A.K. Majumdar - Advent of Independence - Pg. 212

୨୯ ତାରିଖରେ ଏହାର ଫଳସଲା ହୋଇଗଲା । ଜର୍ମାନୀ ଆକ୍ରମଣ କଲା ଇଂଲାଣ୍ଡ । ଖାଲି ସେତିକି ନିହେଁ– ଇଟାଲୀ, ଜାପାନ ଓ ଜର୍ମାନୀ ପକ୍ଷରୁ ମିଳିତ ଦେଶରକ୍ଷା-ଚୁକ୍ତି ସ୍ୱାକ୍ଷରିତ ହେଲା ।

X X X X

ଜେଲ ଭିତରେ ସୁଭାଷ ଅଥୟ ହୋଇପଡ଼ିଲେ– ଆଉ ସମୟ ନଷ୍ଟ କରିବାର ନୁହେଁ; ଏ ସୁଯୋଗ ଆଉ ଛାଡ଼ିବାର ନୁହେଁ । ମନେପଡ଼ିଲା ତାଙ୍କର ସଶସ୍ତ୍ର ବିପ୍ଳବର ଗତ ଏକ ଶତ ବର୍ଷର ସଫଳତା ଓ ବିଫଳତାର ଇତିହାସ; ପ୍ରଥମ ମହାଯୁଦ୍ଧ ସମୟରେ ଭାରତୀୟ ବିପ୍ଳବୀଙ୍କର ସେହି ପ୍ରଚେଷ୍ଟା । ଜର୍ମାନୀରୁ ଅସ୍ତ୍ରଶସ୍ତ୍ର ସାହାଯ୍ୟ ଆଣି ଭାରତରେ ବ୍ୟାପକ ସଶସ୍ତ୍ର ଅଭ୍ୟୁତ୍‌ଥାନ ପାଇଁ ରାସବିହାରୀ ଓ ବାଘା ଯତିନ୍‌ଙ୍କର ସେହି ଐକାନ୍ତିକ ପ୍ରଚେଷ୍ଟା, ମାଭେରିକ ଜାହାଜରେ ଅସ୍ତ୍ର, ଜର୍ମାନୀରେ ମାଡାମ କାମା ଓ ଏମ. ଏନ୍. ରାୟଙ୍କର ସେହି ଅକ୍ଲାନ୍ତ ପରିଶ୍ରମ, ରାଜା ମହେନ୍ଦ୍ର ପ୍ରତାପଙ୍କ ଦ୍ୱାରା କାବୁଲରେ 'ବିପ୍ଳବୀ ସ୍ୱାଧୀନ ସରକାର' ଗଠନ, ପିଙ୍ଗଲେଙ୍କ ଦ୍ୱାରା ସେନାବାହିନୀ ଭିତରେ ବିଦ୍ରୋହବାର୍ତ୍ତା ପ୍ରଚାର, ସିଙ୍ଗାପୁରର ସ୍ୱାଧୀନତା ଘୋଷଣା, ଚଟ୍ଟଗ୍ରାମର ସ୍ୱାଧୀନତା । ମନେ ପଡ଼ିଗଲା କ୍ଷୁଦିରାମ, ବିଜୟ, ବାଦଲ-ଦୀନେଶ ଗୋପୀନାଥ, ଭଗତ୍ ସିଂହ, ହରିକିଶନ, ମାଷ୍ଟରଦା' କେତେ କିଏ । ମୁଣ୍ଡ ନଇଁଗଲା ସେହି ସବୁ ମୃତ୍ୟୁଞ୍ଜୟୀମାନଙ୍କ ଉଦ୍ଦେଶ୍ୟରେ– ଆଖି ଛଳଛଳ ହୋଇଗଲା । ପୁଣି ମନେପଡ଼ିଗଲା ତାଙ୍କର ଗୁରୁ ଚିତ୍ତରଞ୍ଜନଙ୍କ ନିକଟରେ ଗାନ୍ଧିଜୀଙ୍କର ସେହି ଯୁକ୍ତିତର୍କ । ଗାନ୍ଧିଜୀ ପରାଜୟ ସ୍ୱୀକାର କରିଥିଲେ ଚିତ୍ତରଞ୍ଜନଙ୍କ ନିକଟରେ ଏବଂ କହିଥିଲେ, "ଭାରତବାସୀଙ୍କ ନିକଟରେ ଯଦି ତରବାରି ଥା'ନ୍ତା, ତେବେ ମୁଁ ସେହି ତରବାରି ଉତ୍ତୋଳନ କରିବାକୁ ଭାରତବାସୀଙ୍କୁ ଆହ୍ୱାନ ଜଣାଇଥାଆନ୍ତି; କିନ୍ତୁ ଭାରତବାସୀଙ୍କ ପାଖରେ କୌଣସି ତରବାରି ନାହିଁ । ସେଥିପାଇଁ ମୁଁ ସେମାନଙ୍କୁ ଅହିଂସା ଅସହଯୋଗ ପନ୍ଥା ଗ୍ରହଣ କରିବାକୁ ଆହ୍ୱାନ ଦେଉଅଛି । ଅହିଂସାକୁ ଏକ ଆଦର୍ଶ କିମ୍ବା କୌଶଳରୂପେ ଗ୍ରହଣ କରାଯାଇପାରେ । ମୁଁ ଏହି ସଇତାନ ସରକାରକୁ ଖତମ୍ କରିବାକୁ କୃତସଂକଳ୍ପ ।" Had India sword I would have asked her to draw it. But she had no sword. I ask her to adopt non-violent non-cooperation. Non-violence may be accepted as a creed or policy. I am out to destroy this Satanic Government. (1)

ଗାନ୍ଧିଜୀ ତାହାହେଲେ ଠିକ୍ କହିଛନ୍ତି, ଭାରତବାସୀଙ୍କ ହାତରେ ତରବାରି ନାହିଁ । ତରବାରି ଦରକାର– ତରବାରି ।

ସୁଭାଷ ଦେଶ ବାହାରକୁ ଯିବାକୁ ମନ ସ୍ଥିରକରିନେଲେ । "ଜର୍ମାନୀ ଇଂଲାଣ୍ଡ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛି; କିନ୍ତୁ ରୁଷିୟା ? ସାମ୍ୟବାଦୀ ଦେଶ ରୁଷିୟା । ସାମ୍ୟବାଦର ଜନ୍ମଭୂମି, ମାତୃଭୂମି, ବିଶ୍ୱଦଳିତ ଅତ୍ୟାଚାରିତ ଜାତିର ଏକମାତ୍ର ଆଶା-ଭରସା ସୋଭିଏତ ରୁଷିଆ – ତା'ଠୁଁ କ'ଣ କିଛି ସାହାଯ୍ୟ ମିଳିବନି ? କାହିଁକି ନ ମିଳିବ ? ରୁଷ ସହ ଇଂଲଣ୍ଡର

1. ଭୂପେନ୍ଦ୍ର ରକ୍ଷିତରାୟ - ଭାରତର ସଶସ୍ତ୍ର ବିପ୍ଳବ (ବଙ୍ଗଳା) Pg. 139

ବନ୍ଧୁତା କଣ ଏଥିରେ ପ୍ରତିବନ୍ଧକ ହେବ ? ଅସମ୍ଭବ ! ରୁଷ ଏକ ସାମ୍ୟବାଦୀ ଦେଶ; ଅଥଚ ଇଂଲାଣ୍ଡ ତ ଏକ ସାମ୍ରାଜ୍ୟବାଦୀ– ପୁଞ୍ଜିବାଦୀ ଦେଶ ! ଏ ଦୁହିଁଙ୍କ ଭିତରେ କି ବନ୍ଧୁତା ? ଜର୍ମାନୀ ହେଉ ରୁଷିୟା ହେଉ, ଅସୁର ହେଉ ବା ସଇତାନ ହେଉ, ଯେ କେହି ହେଉ, ଭାରତର ସ୍ୱାଧୀନତା ପାଇଁ ଯେ କେହି ଆମକୁ ସାହାଯ୍ୟ କରିବ ସେ ଆମର ବନ୍ଧୁ । ଶତ୍ରୁର ଶତ୍ରୁ ଆମର ବନ୍ଧୁ । ଇଂଲାଣ୍ଡ ଆମର ଶତ୍ରୁ । ଜର୍ମାନୀ ଇଂଲାଣ୍ଡର ଶତ୍ରୁ । ରୁଷିଆ ଇଂଲାଣ୍ଡର ଶତ୍ରୁ । ସୁତରାଂ ରୁଷିୟା ଆମର ବନ୍ଧୁ, ଜର୍ମାନୀ ଆମର ବନ୍ଧୁ, ଇଟାଲି ଆମର ବନ୍ଧୁ । ପୃଥିବୀର ଯେକୌଣସି ଅଂଶରେ ଇଂଲାଣ୍ଡର ଯେକୌଣସି ଶତ୍ରୁ ଭାରତର ବନ୍ଧୁ । ବେଶ୍, ସେତିକି ଯଥେଷ୍ଟ ।'' ଇଟାଲୀୟ ଲେଖକ ହ୍ୟୁଗ ଟୋୟେଙ୍କ ଭାଷାରେ- "Russia who still remember the agony of her own revolution might understand India's need," (2) (ରୁଷିୟା ନିଜର ବିପ୍ଳବବେଳେ ଯେଉଁ ଯନ୍ତ୍ରଣା ସହ୍ୟ କରିଛି, ସେ ଦୃଷ୍ଟିରୁ ସେ ଭାରତର ଆବଶ୍ୟକତା ନିଶ୍ଚୟ ଉପଲବ୍ଧି କରିବ ।)

ଜେଲ ଭିତରେ ସୁଭାଷ ଅନଶନକଲେ ଏବଂ ତାଙ୍କୁ ଖଲାସ ନ କରିବା ପର୍ଯ୍ୟନ୍ତ ଅନଶନ ଚାଲିବ ବୋଲି କହି ସରକାରଙ୍କୁ ଏକ ଚରମପତ୍ର ଦେଲେ । ସୁଭାଷଙ୍କର ଜୀବନହାନୀ ହେଲେ ଭୟାବହ ଅବସ୍ଥା ସୃଷ୍ଟିହେବାର ଆଶଙ୍କା କରି ବାଧହୋଇ ସରକାର ତାଙ୍କୁ ଖଲାସ କରିଦେଲେ, କିନ୍ତୁ ତାଙ୍କୁ ନଜରବନ୍ଦିରେ ରଖାଗଲା ତାଙ୍କର ନିଜ ବାସଭବନ ଏଲଗିନ ରୋଡ଼ରେ । ଦିନରାତି ସଶସ୍ତ୍ର ପ୍ରହରୀ ଓ ଶହ ଶହ ସାଦାପୋଷାକପିନ୍ଧା ଗୋଏନ୍ଦାଙ୍କର ସତର୍କ ଦୃଷ୍ଟି ସୁଭାଷଙ୍କ ଉପରେ । ''ଇଂରେଜ ସାମ୍ରାଜ୍ୟବାଦର ପହିଲା ନମ୍ବର ଦୁସ୍ମନ୍ ସୁଭାଷ ବୋଷ– କଡା ନଜର ରଖ ତା'ଉପରେ ।''

X X X X

୧୯୪୧ ଜାନୁୟାରୀ ମାସ ୨୭ ତାରିଖ ରାତି ପାହିଲାବେଳକୁ ଭାରତର ଚାଳିଶ କୋଟି ଲୋକଙ୍କୁ ଚଟସ୍ଥ କରିଦେଇ ଖବର ପ୍ରକାଶ ପାଇଲା ଯେ, ''ସୁଭାଷ ନାହାନ୍ତି, ସୁଭାଷ ଅନ୍ତର୍ଦ୍ଧାନ ।''

ସରକାରୀ ମହଲ ଚିତ୍କାରକଲେ, ''ହେଇ ଗଲା– ଧର, ଧର,'' କିନ୍ତୁ ସୁଭାଷ ସେତେବେଳେ କାବୁଲରେ; ଇଂରେଜ ପୋଲିସର ରେଞ୍ଜର ବାହାରେ । ସାରା ବିଶ୍ୱ ଚକିତ ଓ ବିସ୍ମିତ । ''ସୁଭାଷ ତେବେ କୁଆଡ଼େ ଗଲା !'' ଉକ୍ରଣ୍ଠିତ ଭାରତବାସୀ ପରସ୍ପରକୁ ପଚାରୁଛନ୍ତି, ''ସୁଭାଷ କାହିଁ ! ସୁଭାଷ, ସୁଭାଷ !''

ଠିକ୍ ନ' ମାସ ପରେ ପୁଣି ଥରେ ଭାରତବାସୀଙ୍କୁ ଆଶ୍ଚର୍ଯ୍ୟ କରି ଭାସିଆସିଲା ରେଡ଼ିଓ-ତରଙ୍ଗରେ - "It is Aaid Hind Radio, Berlin, I am Subhas speaking." ''ଆଜାଦ ହିନ୍ଦ୍ ରେଡ଼ିଓ, ବର୍ଲିନ, ମୁଁ ସୁଭାଷ କହୁଛି.....''



1. Hugh Toye - The Springing Tiger - Pg. 56
'ନେତାଜୀ ଆଉ ଫେରିନାହାନ୍ତି' ପୁସ୍ତକ ଦ୍ରଷ୍ଟବ୍ୟ ।

ଅଧ୍ୟାୟ - ତେତିଶ

# ଜର୍ମାନୀରେ ସୁଭାଷ (୧)

''ଦେଶବାସୀଙ୍କ ପକ୍ଷରୁ ଲୋକଚକ୍ଷୁର ଅନ୍ତରାଳରେ ତିଳେ ତିଳେ ଜୀବନ ଦେଇ ତପସ୍ୟା କରିଯିବି, ତା'ପରେ ଉପରେ ଯଦି ଭଗବାନ୍ ଥା'ନ୍ତି, ପୃଥିବୀରେ ଯଦି ସତ୍ୟ ପ୍ରତିଷ୍ଠା ହୁଏ, ତେବେ ମୋର ଅନ୍ତରର କଥା ଲୋକେ ନିଶ୍ଚୟ ଦିନେ ବୁଝିବେ ।'' ସୁଭାଷଙ୍କର ଏ ଅନ୍ତରର ବେଦନା ଆଜି ବି ଏ ଦେଶରେ ସବୁଲୋକେ ଉପଲବ୍ଧି କରିଛନ୍ତି କି ନା ମନରେ ସନ୍ଦେହ ହୁଏ । ଏହି ଲେଖକର ଆଜି ବି ମନେପଡ଼େ ସେହି ଦୁର୍ଦିନର ସ୍ମୃତି; ଯେତେବେଳେ ଇଂରେଜର ପ୍ରବଳ ଶକ୍ତିଶାଳୀ ଯୁଦ୍ଧକାଳୀନ ପ୍ରଚାର ଯନ୍ତ୍ର ସୁଭାଷଙ୍କୁ 'ଦେଶର ଶତ୍ରୁ' ବୋଲି ଚିତ୍ର କରି ତାଙ୍କୁ ଦେଶରେ ଏକ ଘୃଣ୍ୟ ଓ ଅବାଞ୍ଛିତ ବ୍ୟକ୍ତି ଭାବରେ ପ୍ରମାଣିତ କରିବାକୁ ସମର୍ଥ ହୋଇଥିଲା । ସୁଭାଷଙ୍କର ଦୋଷ ଯେ, ସେ ଇଂରେଜମାନଙ୍କ ଶତ୍ରୁ ଜର୍ମାନୀ ସହ ହାତମିଳାଇଅଛନ୍ତି ।'' ସୁଭାଷ 'କ୍ୱିସ୍ଲିଂ... ଦଲାଲ'..., ଶତ୍ରୁର ବଂଧୁ !

ସୁଭାଷ କ୍ୱିସ୍ଲିଂ ହୋଇଥିଲା ତାର ମାତୃଭୂମି ପାଇଁ; 'ଦଲାଲ' ହୋଇଥିଲା ଭାରତପାଇଁ । ଶତ୍ରୁର ବଂଧୁ ? ଜର୍ମାନୀ ବ୍ରିଟିଶର ଶତ୍ରୁ ଭାରତର ଶତ୍ରୁ ନୁହେଁ, ଭାରତର ବଂଧୁ, ସେ ବ୍ରିଟିଶର ଶତ୍ରୁ, ସେଥିପାଇଁ ତ ଭାରତର ବନ୍ଧୁ ।

'ମଡ଼ର୍ଣ୍ଣ ରିଭ୍ୟୁ' ପତ୍ରିକାର ପ୍ରଖ୍ୟାତ ସମ୍ପାଦକ ରାମାନନ୍ଦ ଚାଟାର୍ଜି କହିଲେ– ''କିଏ କହେ ସୁଭାଷ କ୍ୱିସ୍ଲିଂ ? ଗାରିବାଲ୍ଡ଼ି, ସନୟାତ ସେନ, ଡି. ଭେଲେରା ପ୍ରମୁଖ ସ୍ୱାଧୀନତାର ବୀର ଯୋଦ୍ଧାମାନେ ସମସ୍ତେ ସେମାନଙ୍କର ମାତୃଭୂମିକୁ ସ୍ୱାଧୀନ କରିବା ପାଇଁ ବିଦେଶୀ ରାଷ୍ଟ୍ରର ସାହାଯ୍ୟ ନେଇନାହାନ୍ତି କି ? ସେମାନେ କଣ କ୍ୱିସ୍ଲିଂ ? ସଂପ୍ରତି ଫ୍ରାନ୍ସର ଦି'ଗଲ୍ ବି ତୁମ ଦେଶ(ଇଂଲାଣ୍ଡ)ର ସାହାଯ୍ୟନେଇଛି । ତାଙ୍କର ଉଦ୍ଦେଶ୍ୟ- ମୁକ୍ତି ଫୌଜ ଗଠନ କରି ଫ୍ରାନ୍ସକୁ ମୁକ୍ତ କରିବେ । କାହିଁ – ତୁମେ ତ ତାଙ୍କୁ କୁଇସ୍ଲିଂ କହୁନା ? ବରଂ ପ୍ରଶଂସାରେ ଶତମୁଖ । ସୁଭାଷ ପାଇଁ ଏହାର ବ୍ୟତିକ୍ରମ କାହିଁକି ? କାରଣ ସୁଭାଷ ଇଂରେଜର ଶତ୍ରୁ– ସାମ୍ରାଜ୍ୟବାଦର ଯମ ।''

ସେ ନିଜେ ବର୍ଲିନ ରେଡ଼ିଓରେ ଗର୍ଜନ କରି କହିଥିଲେ, ''ବ୍ରିଟିଶର ବେତନଭୋଗୀ ପ୍ରଚାରକମାନେ ମୋତେ ସେମାନଙ୍କର ଶତ୍ରୁର ଦଲାଲ ବୋଲି ପ୍ରଚାର କରିଆସୁଛନ୍ତି । ମୁଁ ମୋର ଦେଶବାସୀଙ୍କ ସହ କଥାବାର୍ତ୍ତା ହେବାବେଳେ କାହାର ସାର୍ଟିଫିକେଟ ଆବଶ୍ୟକ କରେ ନାହିଁ । ମୋର ସମଗ୍ର ଜୀବନ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ସାଲିସହୀନ ସଂଗ୍ରାମ ଏବଂ ତାହାହିଁ ମୋର ଯଥେଷ୍ଟ ପରିଚୟ । ଆଜୀବନ ମୁଁ ଭାରତର ଏକ ନମ୍ର ସେବକ ହୋଇ ରହିଛି ଏବଂ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ମୁଁ ତାହାହିଁ ହୋଇ ରହିବି । ମଥାନୀର

ଯେକୌଣସି ସ୍ଥାନରେ ମୁଁ ରହିଲେ ସୁଦ୍ଧା ମୋର ଆନୁଗତ୍ୟ ଚିରଦିନ କେବଳ ଭାରତବର୍ଷ ପ୍ରତିହିଁ ରହିଆସିଛି ଏବଂ ଭବିଷ୍ୟତ୍‌ରେ ମଧ୍ୟ ରହିବ ।''

ସୁଭାଷ ଜର୍ମାନୀକୁ କାହିଁକି ତାଙ୍କର ନୂତନ କର୍ମକ୍ଷେତ୍ରରୂପେ ବାଛିଲେ, ତାହାର ବିସ୍ତୃତ ଆଲୋଚନା ପରେ କରାଯିବ; କିନ୍ତୁ ଏଠାରେ ସେ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ ରୁଷିୟାରେ ଯଦି ସେ ଆବଶ୍ୟକୀୟ ସାହାଯ୍ୟ ସମର୍ଥନ ପାଇଥାନ୍ତେ, ତାହାହେଲେ ସେ ଜର୍ମାନୀ ଯାଇ ନ ଥାନ୍ତେ । ଭାରତତ୍ୟାଗ ପୂର୍ବରୁ ରୁଷିଆ ଯିବା କଥାଟାହିଁ ତାଙ୍କ ମନରେ ରହିଥିଲା । ସେଥିପାଇଁ 'ଅର୍ଲାଣ୍ଡୋ ମାସୋଟା' ଇଟାଲୀୟ ଛଦ୍ମନାମରେ ସେ କାବୁଲରୁ ବର୍ଲିନ ନ ଯାଇ ସିଧା ମସ୍କୋ ଯାଇଥିଲେ । କାବୁଲରେ ତାଙ୍କର ଆଶ୍ରୟଦାତା ପରମବନ୍ଧୁ ଉତ୍ତମଚାନ୍ଦ ଏ ସମ୍ପର୍କରେ ସୁଭାଷଙ୍କର ଏକ ଉକ୍ତି ଉଦ୍ଧାର କରି ଲେଖିଅଛନ୍ତି, "I am not altogether happy about going to Berlin or Rome. But there is no choice." 1 ଅତୀତର ବହୁ ନିଷ୍ଫଳ ପ୍ରଚେଷ୍ଟା ଭଳି ସୁଭାଷଙ୍କର ରୁଷିୟା ପ୍ରତି ଅନୁରୋଧ ପ୍ରତ୍ୟାଖ୍ୟାତ ହୋଇଥିଲା ।

ମସ୍କୋରୁ ରିକ୍ତହସ୍ତରେ ଫେରି ସେ ବାଧହୋଇ ବର୍ଲିନ ଗଲେ; ତଥାପି ସେ ଜର୍ମାନୀ ଅପେକ୍ଷା ରୋମ(ଇଟାଲୀ)କୁ ଅଧିକ ପସନ୍ଦ କରିଥିଲେ ଏବଂ ସେଥିପାଇଁ ସେ ଇଟାଲୀର ମୁସୋଲିନୀ ସହ ଘନିଷ୍ଠ ସମ୍ପର୍କ ରଖିଥିଲେ । କିନ୍ତୁ ସେତେବେଳକୁ ଜର୍ମାନୀ-ଇଟାଲୀ 'ଦେଶରକ୍ଷା ଚୁକ୍ତି' ହୋଇସାରିଥିବାରୁ ରାଜନୈତିକ ଦୃଷ୍ଟିରୁ ଜର୍ମାନୀ ଓ ଇଟାଲୀ ଭିତରେ କୌଣସି ପାର୍ଥକ୍ୟ ନ ଥିଲା; ବରଂ ଜର୍ମାନୀରେ ଭନ୍ ଟ୍ରଟ ସୁଲ୍ଜ (Von Trot Sulz)ଙ୍କ ଭଳି ଭାରତର ଜଣେ ଅକୃତ୍ରିମ ବଂଧୁ ଥିଲେ । ଟ୍ରଟଙ୍କର ଏକ ବିଶେଷ ଗୁଣ ଥିଲା ଯେ, ସେ ହିଟଲରଙ୍କର ଅଂଧସ୍ତାବକ ନ ଥିଲେ ଏବଂ ସେହି ବିଶେଷତାଯୋଗୁଁ ତାଙ୍କ ସହ ଥିଲା ସୁଭାଷଙ୍କର ଘନିଷ୍ଠ ବଂଧୁତା । ଏହି ଟ୍ରଟଙ୍କ ସାହାଯ୍ୟରେ ସେ ଜର୍ମାନୀରେ ଆସ୍ଥାନ ଜମାଇବାର ସୁଯୋଗ ପାଇଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ଟ୍ରଟ ହିଟଲରର ବିଭାଗଭାଜନ ହୋଇ ସେହି ଯୁଦ୍ଧ ସମୟ ଭିତରେ ନାଜୀ ବନ୍ଦୀ ଶିବିରରେ ଫାଶୀକାଠରେ ଝୁଲିଲେ ।

ଟ୍ରଟଙ୍କର ସହକାରୀ ଥିଲେ ଅନ୍ୟତମ ଭାରତବନ୍ଧୁ ଆଲେକଜାଣ୍ଡାର୍ ୱାର୍ଥ । ଏହି ଦୁଇଜଣଙ୍କୁ କେନ୍ଦ୍ରକରି ଯେଉଁ ଭାରତ ଓ ସୁଭାଷପ୍ରେମୀ ଗ୍ରୁପ୍‌ଟି ଥିଲା, ସେହି ଗ୍ରୁପ୍‌ଟି ହେଲା ସୁଭାଷଙ୍କର ପ୍ରଧାନ ସହାୟକ ଏବଂ ସେହିମାନଙ୍କ ପ୍ରଚେଷ୍ଟାରେ ସୁଭାଷ ଜର୍ମାନୀରେ ଅସାଧ୍ୟ ସାଧନ କରିବାକୁ ସମର୍ଥ ହୋଇଥିଲେ । ସେତେବେଳେ ଜର୍ମାନୀର ବୈଦେଶିକ ମନ୍ତ୍ରୀ ଥିଲେ ରିବେନ୍‌ଟ୍ରପ । ତାଙ୍କ ସହ ସୁଭାଷଙ୍କର ସାକ୍ଷାତ ହେଲା । ସୁଭାଷ ତାଙ୍କର ଯୋଜନା ସମ୍ବନ୍ଧରେ ଏକ ସ୍ମାରକପତ୍ର ଦେଲେ । ''ବ୍ରିଟିଶ ସାମ୍ରାଜ୍ୟବାଦ କେବଳ ମାନବସମାଜ ପ୍ରତି ନୁହେଁ, ଭାରତର ପ୍ରଗତିପଥରେ ମଧ୍ୟ ଏକ ଅଲଂଘନୀୟ ପ୍ରତିବଂଧକ। ଭାରତର ପ୍ରତ୍ୟେକ ନରନାରୀ ଆଜି ବ୍ରିଟିଶ ସାମ୍ରାଜ୍ୟବାଦର ସମୂଳଧ୍ୱଂସ କାମନା କରନ୍ତି, କାରଣ ବ୍ରିଟିଶ ଧ୍ୱଂସ ହେଲେହିଁ ଭାରତ ତା'ର ବହୁଈପ୍‌ସିତ ସ୍ୱାଧୀନତା ଅର୍ଜନ କରିପାରିବ ।''

1. UttamChand - When Bose was Ziauddin

''ଭାରତବାସୀ ବ୍ରିଟିଶ୍‌କୁ ସେମାନଙ୍କର ଶତ୍ରୁ ମନେକରନ୍ତି । ସୁତରାଂ ବ୍ରିଟିଶର ପରାଜୟରେ ଭାରତୀୟମାନେ ସ୍ୱଭାବତଃ ସାହାଯ୍ୟ କରିବେ ଏବଂ ସେହି ସହଯୋଗିତା ଲାଭକରିବାକୁ ହେଲେ ସର୍ବାଗ୍ରେ ଏହି ପ୍ରତିଶ୍ରୁତି ଦେବାକୁ ହେବ ଯେ, ଅକ୍ଷଶକ୍ତି ବିଜୟୀ ହେଲେ ଭାରତବର୍ଷ ସ୍ୱାଧୀନ ହେବ ।''

ଉପରୋକ୍ତ ସ୍ମାରକପତ୍ରରେ ଶେଷୋକ୍ତ ପଂକ୍ତିଟି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । କାରଣ ସୁଭାଷ ମୂଳରୁ ଭାରତରେ ଜର୍ମାନୀ ସାମ୍ରାଜ୍ୟବାଦର ବିରୋଧକରିଥିଲେ, ଅର୍ଥାତ୍ ସେ ଭାରତରେ ବ୍ରିଟିଶ ବଦଳରେ ଜର୍ମାନୀ ସାମ୍ରାଜ୍ୟବାଦ ଚାହୁଁ ନଥିଲେ ।

ସେଥିପାଇଁ ସ୍ମାରକପତ୍ରରେ ଦାବିକରାଯାଇଥିଲା ଯେ ''ଜାର୍ମାନୀରେ ଭାରତର ଏକ ବିପ୍ଳବୀ ସରକାର ଗଠିତହେବ । ପ୍ରତ୍ୟେକ ମିତ୍ରରାଷ୍ଟ୍ରରେ ସେହି ବିପ୍ଳବୀ ସରକାରର କୂଟନୈତିକ ଦୂତାବାସ ରହିବ । ଭାରତରେ ହେବାକୁ ଯାଉଥିବା ସଶସ୍ତ୍ର ବିଦ୍ରୋହରେ ସହାୟତା କରିବାକୁ ଆଫଗାନିସ୍ଥାନ ବାଟେ ସାହାଯ୍ୟ ପଠାଇବାକୁ ହେବ । ଭାରତରୁ ବ୍ରିଟିଶ ପ୍ରଭାବ ଦୂର କରିବାକୁ ହେଲେ, ବର୍ତ୍ତମାନ ରୁଷିୟା ସହ ଜର୍ମାନୀର ଯେଉଁ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରହିଛି ତାକୁ ଅକ୍ଷୁଣ୍ଣ ରଖିବାକୁ ପଡ଼ିବ ।''

ଜର୍ମାନୀ ସହ ରୁଷିୟାର ସଂଘର୍ଷ ଏଡ଼ାଇବାକୁ ସୁଭାଷ କେତେ ଗୁରୁତ୍ୱ ଦେଇଥିଲେ ସ୍ମାରକପତ୍ରର ଉପରୋକ୍ତ ଅଂଶଟିରୁ ସ୍ପଷ୍ଟ ବୁଝାଯାଏ । ଜଣେ ଅଭିଜ୍ଞ ରାଜନୀତିଜ୍ଞ ଭାବରେ ସେ ଠିକ୍ ବୁଝିଥିଲେ ଯେ ସାମ୍ୟବାଦୀ ସୋଭିଏଟ୍ ରୁଷିୟା ସହ ନାଜୀ ଜର୍ମାନୀର ଯୁଦ୍ଧ ଲାଗିଲେ ଇଂଲାଣ୍ଡ ଓ ଋଷିୟାର ସ୍ୱାର୍ଥ ଏକ ହୋଇଯିବ । ଫଳରେ ଭାରତର ଆସନ୍ନ ସ୍ୱାଧୀନତା ଯୁଦ୍ଧରେ ଭାରତ ଋଷିୟାର ସହଯୋଗ ପାଇନପାରେ । ଏହି ସ୍ମାରକପତ୍ରର ଉତ୍ତର ପାଇବାକୁ ସୁଭାଷଙ୍କୁ ବହୁଦିନ ଅପେକ୍ଷା କରିବାକୁ ପଡ଼ିଥିଲା । ଏଥିରେ ସୁଭାଷ ନିରୁତ୍ସାହିତ ହୋଇ ମୁସୋଲିନୀଙ୍କୁ ଭେଟିଲେ । କାବୁଲରେ ଥିବାବେଳେ ସେ ଇଟାଲୀର ରାଷ୍ଟ୍ରଦୂତ ଆଲବର୍ଟ କୋରନ୍‌ଙ୍କର ଘନିଷ୍ଠ ସହଯୋଗରେ ଆସିଥିଲେ । କୋରନ ମୁସୋଲିନୀଙ୍କୁ ଏକ ଗୋପନୀୟ ରିପୋର୍ଟ ମଧ୍ୟ ଦେଇଥିଲେ । ସେଥିରେ ସେ ସ୍ପଷ୍ଟ ଲେଖିଥିଲେ ''ବସୁଙ୍କ ମତରେ ୟୁରୋପରେ ଏକ ଅସ୍ଥାୟୀ ଭାରତ ସରକାର ଗଠିତ ହେବ ଏବଂ ଜର୍ମାନୀ, ଇଟାଲୀ ଓ ଜାପାନ ସରକାର ଭାରତର ସ୍ୱାଧୀନତା ପାଇଁ ଗ୍ୟାରେଣ୍ଟି ଦେବାକୁ ପଡ଼ିବ । ଏହି ପ୍ରତିଶ୍ରୁତି ମିଳିଲେ ବିପ୍ଳବୀ ସ୍ୱାଧୀନ ଭାରତର ନିଜସ୍ୱ ବେତାର କେନ୍ଦ୍ରରୁ ସେ ତାଙ୍କର ପ୍ରଚାର ଅଭିଯାନ ଆରମ୍ଭ କରିବାକୁ ପ୍ରସ୍ତୁତ । ଏଥିପାଇଁ ଯେଉଁ ଅର୍ଥ ପ୍ରୟୋଜନ ହେବ, ତାହା ଆମକୁ ବର୍ତ୍ତମାନ ଋଣସ୍ୱରୂପ ଦେବାକୁ ପଡ଼ିବ । ଭାରତର ସ୍ୱାଧୀନତାପ୍ରାପ୍ତି ପରେ ସେ ସେହି ଋଣ ପରିଶୋଧ କରିଦେବେ ।''

''ଶ୍ରୀଯୁକ୍ତ ବସୁଙ୍କୁ ଆମ୍ଭେମାନେ ଭଲଭାବରେ ଜାଣୁ । ଭାରତର ରାଜନୈତିକ ନେତାମାନଙ୍କ ଭିତରେ ସେହିଁ ଏକମାତ୍ର ଜଣେ ବାସ୍ତବବାଦୀ ନେତା ବୋଲି ନିଃସନ୍ଦେହରେ କୁହାଯାଇପାରେ । ଗତବର୍ଷ ଜୁନ ମାସରେ ଯେତେବେଳେ ଇଂଲାଣ୍ଡର ପରାଜୟ ପ୍ରାୟ ଅବଶ୍ୟମ୍ଭାବୀ ହୋଇପଡ଼ିଥିଲା, ସେତେବେଳ ବସୁଙ୍କର ଯୋଜନାନୁସାରେ କୌଣସି

ସଂଗଠନ ଥା'ନ୍ତା ତ' ଅନାୟାସରେ ଭାରତ ବ୍ରିଟିଶ କବଳରୁ ମୁକ୍ତି ପାଇପାରିଥାନ୍ତା । ଗତବର୍ଷ ଏହି ସୁଯୋଗ ଆମେ ହରାଇଛେଁ । ସେ ସୁଯୋଗ ଏ ବର୍ଷ ମଧ୍ୟ ଆସିପାରେ; ତାର ସଦ୍‌ବ୍ୟବହାର କରିବାକୁ ପ୍ରସ୍ତୁତ ହେବାକୁ ପଡ଼ିବ ।

ମୁସୋଲିନୀ ସୁଭାଷଙ୍କ ଯୋଜନା ପ୍ରତି ଯଥେଷ୍ଟ ସହାନୁଭୂତି ଓ ସମର୍ଥନ ପ୍ରକାଶ କଲେ । କିନ୍ତୁ ସେ ମଧ୍ୟ ଜର୍ମାନୀର ମତିଗତିକୁ ଅପେକ୍ଷା କଲେ । ସୁଭାଷ ବର୍ଲିନ ଫେରିଲେ ।

ସେତେବେଳେ ଜର୍ମାନୀ ଓ ୟୁରୋପରେ ଥିବା ଭାରତୀୟମାନଙ୍କ ଠିକଣା ସଂଗ୍ରହ କରି ସୁଭାଷ ସେମାନଙ୍କୁ ଭେଟିଲେ । ପୂର୍ବତନ ରାଷ୍ଟ୍ରଦୂତ ଏ. ସି. ଏନ. ନାମ୍ବିଆର, ଡକ୍ଟର ଏମ. ଆର. ବ୍ୟାସ. ଏକାଠି ହେଲେ ଓ ସୁଲତାନ, ହବିବୁର ରହମାନ, ପ୍ରମୋଦ ବାସଗୁପ୍ତ, ଆବିଦ ହାସନ, ଏମ. ଭି. ରାଓ, କାନ୍ତିରାମ, ଡାକ୍ତର ଗିରିଜା ମୁଖାର୍ଜୀ ପ୍ରଭୃତି କ୍ରମେ କ୍ରମେ ସୁଭାଷଙ୍କ ସହ ଏକଯୁଟ ହେଲେ । ଗିରିଜାବାବୁ ଜଣେ ବିପ୍ଳବୀ । ଏମାନଙ୍କ ସହ ଆଉ ଦୁଇଜଣ ମଧ୍ୟ ଆସିଥିଲେ । ସେମାନେ ହେଉଛନ୍ତି କଟକ ରେଭେନ୍ସା କଲେଜିଏଟ ସ୍କୁଲରେ ସୁଭାଷଙ୍କ ସହପାଠୀ କୁସୁମ ପାଲ ଓ ଆର. ଚୌଧୁରୀ । ଭାରତର ସ୍ୱାଧୀନତା ପାଇଁ ନିବେଦିତ ଏହିଭଳି ୩୫ ଜଣ ଦେଶପ୍ରେମୀ ଭାରତୀୟଙ୍କୁ ନେଇ ସୁଭାଷ ଗଠନ କଲେ 'ବର୍ଲିନ ଫ୍ରି ଇଣ୍ଡିଆ ସେଣ୍ଟର' । ଜର୍ମାନୀ ସରକାରଙ୍କ ସହାନୁଭୂତିକ୍ରମେ ତାହା ବଢ଼ିବାକୁ ଲାଗିଲା ।

ସୁଭାଷ ମୂଳରୁ ଗୋଟିଏ ବିଷୟରେ ସାବଧାନ ଥିଲେ ଯେ, ସେ ଭାରତର ସ୍ୱାଧୀନତାଯୁଦ୍ଧରେ ନାଜୀ ଜର୍ମାନୀଠାରୁ ଯେଉଁ ସାହାଯ୍ୟ ଗ୍ରହଣ କରିବେ, ତାହା ନିଃସର୍ତ୍ତ ସାହାଯ୍ୟ ହେବ, ଅର୍ଥାତ୍ ସେହି ସାହାଯ୍ୟର ବିନିମୟରେ ନାଜୀ ଜର୍ମାନୀ ସୁଭାଷ କିମ୍ବା ତାଙ୍କର ସଙ୍ଗଠନଠାରୁ କୌଣସି ପ୍ରତିଦାନ ଆଶା କରିବେ ନାହିଁ । ହିଟଲର ଭଳି ଏକ ଦୁର୍ଦ୍ଧର୍ଷ ଓ ଜିଦଖୋର ଡିକ୍ଟେଟରଠାରୁ ସେଭଳି ପ୍ରତିଶ୍ରୁତି ଆଦାୟକରିବା କିଛି ସହଜ କଥା ନଥିଲା । କିନ୍ତୁ ସୁଭାଷ ଏହା ଯେ ଆଦାୟ କରିପାରିଥିଲେ, ଏହା ତାଙ୍କର ଏକ ଅସାଧାରଣ କୃତିତ୍ୱ ବୋଲି ଇତିହାସ ସ୍ୱୀକାରକରିବ । ଏକ ବିଦେଶୀ ରାଜ୍ୟଠାରୁ ଏଭଳି ସମ୍ମାନଜନକ ସାହାଯ୍ୟ ଆଦାୟକରିବା ଏକ ଅବିସ୍ମରଣୀୟ ଘଟଣା । ସୁଭାଷ ଜର୍ମାନୀ ଭଳି ଏକ ସ୍ୱାଧୀନ ରାଷ୍ଟ୍ରରେ ଏକ ପରାଧୀନ ଦେଶର ଆଶ୍ରୟପ୍ରାର୍ଥୀଭାବେ ନଥିଲେ; ସେ ଥିଲେ ଗୋଟିଏ ସ୍ୱାଧୀନ ଦେଶର ସର୍ବୋଚ୍ଚକର୍ତ୍ତାର ସମ୍ମାନର ଅଧିକାରୀ ହୋଇ । ଫ୍ରି ଇଣ୍ଡିଆ ସେଣ୍ଟର ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଯେଉଁ ଅର୍ଥ ଜର୍ମାନୀ ସରକାର ସୁଭାଷଙ୍କୁ ଦେଇଥିଲେ, ତାହା ଦାନ ବା ଉପହାର ରୂପରେ ନୁହେଁ; ଋଣ ରୂପରେ ସେ ଗ୍ରହଣ କରିଥିଲେ । ଏହି ଋଣ କେବଳ କଥାର କଥା ନଥିଲା, ସୁଭାଷ ଦକ୍ଷିଣ-ପୂର୍ବ ଏସିଆକୁ ଆସିବା ପରେ ସତକୁ ସତ ସେହି ଋଣ ମଧ୍ୟରୁ ପାଞ୍ଚଲକ୍ଷ ୟେନ (ଜାପାନୀ ମୁଦ୍ରା) ପରିଶୋଧ କରିଥିଲେ । ଏହିଭଳି ଭାବରେ ଜର୍ମାନୀରେ ସୁଭାଷଙ୍କ କାର୍ଯ୍ୟକଳାପ ସଂପୂର୍ଣ୍ଣ ସ୍ୱାଧୀନ ଥିଲା ।

ଉଇଲେମ କେପଲର ଥିଲେ ସୁଭାଷ ଓ ଜର୍ମାନୀ ସରକାର ଭିତରେ ଯୋଗସୂତ୍ର ଅଫିସର । ୧୯୪୧ ମସିହା ନଭେମ୍ବର ଦୁଇ ତାରିଖ 'ଫ୍ରି ଇଣ୍ଡିଆ ସେଣ୍ଟର' ଉଦ୍‌ଘାଟିତ

ହେଲା । ବମ୍ବେ କଂଗ୍ରେସ କମିଟିର ସଭ୍ୟ ଶ୍ରୀ ଜି. ଏନ. ଗଣପୁଲେ ସେତେବେଳେ ଜର୍ମାନୀରେ ଥା'ନ୍ତି । ସେ ମଧ୍ୟ ସୁଭାଷଙ୍କ ସହ ଯୋଗଦେଇଥିଲେ । 'ଫ୍ରିଇଣ୍ଡିଆ ସେଣ୍ଟର'ର ପ୍ରଧାନ କାର୍ଯ୍ୟ ହେଲା ପ୍ରଚାର ପାଇଁ ବେତାରକେନ୍ଦ୍ର ସ୍ଥାପନ । ବର୍ଲିନରେ ସର୍ବମୋଟ ତିନିଗୋଟି ବେତାର କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । 'ଆଜାଦ୍‌ହିନ୍ଦ୍ ରେଡ଼ିଓ ସଟୱେଭ୍' ୧୯.୭୧ ମିଟର, 'ଇଣ୍ଡିଆନ ନ୍ୟାସନାଲ କଂଗ୍ରେସ ରେଡ଼ିଓ' ସଟୱେଭ ୨୦.୩୪ ମିଟର ଏବଂ 'ଆଜାଦ୍ ମୁସଲିମ ରେଡ଼ିଓ' ସଟ୍‌ୱେଭ୍ ୨୨.୬୫ ମିଟର । ବେତାରକେନ୍ଦ୍ର ଉଦ୍‌ଘାଟନ ଦିବସ ସୁଭାଷଙ୍କ ଜୀବନରେ ଏକ ସ୍ମରଣୀୟ ଘଟଣା । କେବଳ ସୁଭାଷ କାହିଁକି, ପ୍ରତ୍ୟେକ ଭାରତବାସୀପକ୍ଷରେ ଏହା ଏକ ଅଭାବନୀୟ ସ୍ମୃତି । ଶ୍ରୀ ଗଣପୁଲେ ଏ ସମ୍ପର୍କରେ 'Netaji in Germany' ପୁସ୍ତକରେ ଲେଖିଛନ୍ତି, "The first day of broadcasting to India was an eventful day both for Netaji and India. It was the day for which Netaji was feverishly waiting. Although by termparment a very patient man, be looked that day unusually enthusiasitc and even a little excited."

ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଓ ପାର୍ଶୀ ସଂପ୍ରଦାୟର କୋଡ଼ିଏ ଜଣ କର୍ମୀ ଏହି ସବୁ ପ୍ରଚାରକେନ୍ଦ୍ରର ଦାୟିତ୍ୱରେ ଥିଲେ । ଗୋଟିଏ ଦୁଇଟି ନୁହେଁ- ଇଂରାଜୀ, ହିନ୍ଦୀ ବଙ୍ଗଳା, ଫାର୍ଶୀ, ତେଲଗୁ, ତାମିଲ ଓ ପୁସ୍ତୁ ପ୍ରଭୃତି ସାତିଟି ଭାଷାରେ ଏହି ବେତାର କେନ୍ଦ୍ରରୁ ପ୍ରଚାରହେଉଥିଲା । ଗୋଟିଏ ବିଦେଶୀ ରାଷ୍ଟ୍ରରେ ବିଶେଷତଃ ଜର୍ମାନୀ ଭଳି ଏକ ଦୁର୍ଦ୍ଧର୍ଷ ରାଷ୍ଟ୍ରରେ ଭାରତର ସ୍ୱାଧୀନତା ପାଇଁ ଜଣେ କଣପରିପାରେ, ସୁଭାଷ- ପରିଚାଳିତ ବେତାରକେନ୍ଦ୍ର ଏବଂ ବିରାଟ ସଙ୍ଗଠନ ତାର ଜ୍ୱଳନ୍ତ ଉଦାହରଣ ।

ସେହି ସମୟରେ ଏକ ବେତାର ଭାଷଣ ପ୍ରସଙ୍ଗରେ ନେତାଜୀ କହିଥିଲେ — ''ଆଜିଯାଏ ଆପଣମାନଙ୍କୁ ମୋର ବକ୍ତବ୍ୟ ଶୁଣାଇବାର ସୁଯୋଗ ନଥିଲା । ଶତ୍ରୁପକ୍ଷ ଯେତେ ଅପବାଦ ଦେଲେ ବି, ମୁଁ ଜାଣେ, ଆପଣମାନେ ତାହା ବିଶ୍ୱାସ କରିବେ ନାହିଁ । ମୁଁ ମୋର କାର୍ଯ୍ୟ କରିଚାଲିଯିବି — କିଏ କଣ କହୁଛନ୍ତି ବା ନ କହୁଛନ୍ତି ସେଥିରେ ଆମର କିଛି ଯାଏ-ଆସେନା । ନିଜର ସାମ୍ରାଜ୍ୟ ରକ୍ଷାକରିବାକୁ ଯଦି ବ୍ରିଟିଶ ଆଜି ଋଷିୟା ଓ ଆମେରିକାର ସାହାଯ୍ୟ ନିଏ, ତେବେ ଭାରତବର୍ଷର ସ୍ୱାଧୀନତା ଅର୍ଜନ ପାଇଁ ଅନ୍ୟ କୌଣସି ଜାତିର ସାହାଯ୍ୟପ୍ରାର୍ଥୀ ହେବା ଅନ୍ୟାୟ ନୁହେଁ; ଅପରାଧ ମଧ୍ୟ ନୁହେଁ ।

'ଫ୍ରି ଇଣ୍ଡିଆ ସେଣ୍ଟର' ବା ଆଜାଦ ହିନ୍ଦ୍ ସଂଘର ପ୍ରଥମ ଅଧିବେଶନରେ ଜାତୀୟ ସଙ୍ଗୀତରୂପେ ଗୃହୀତ ହେଲା—'ଜନଗଣମନ ଅଧିନାୟକ' ଯାହା କି ପରେ ଭାରତରେ ମଧ୍ୟ ଜାତୀୟସଙ୍ଗୀତରୂପେ ଗୃହୀତହୋଇଥିଲା ଶାସନବିଧାୟକ ସଭାରେ । ଭାରତୀୟମାନଙ୍କ ଭିତରେ ସମ୍ଭାଷଣ ରୂପେ ଗୃହୀତହେଲା — 'ଜୟ ହିନ୍ଦ୍' । ଜାତୀୟ ପତାକା ରୂପେ ଗୃହୀତ ହୋଇଥିଲା ତତ୍କାଳୀନ ଭାରତର ଜାତୀୟ ପତାକା (ଅରଟ ଚିହ୍ନିତ ତ୍ରିରଙ୍ଗା ପତାକା ।) କେବଳ ସେଥିରେ ଅରଟ ଚିହ୍ନ ପରିବେର୍ତ୍ତେ ଏକ ଲମ୍ଫ ପ୍ରଦାନ କରୁଥିବା ବ୍ୟାଘର ଚିହ୍ନ । ଗାନ୍ଧିଜୀଙ୍କୁ ଜାତିର ଜନକରୂପେ ସମ୍ବୋଧନ କଲେ ନେତାଜୀ । ଆଜାଦ ହିନ୍ଦ୍ ସଂଘର

ସେ ଅଧିବେଶନ ଆଉ ଏକ କାରଣରୁ ମଧ୍ୟ ଚିରସ୍ମରଣୀୟ ହୋଇ ରହିଲା । କାରଣ ସେହି ଅଧିବେଶନଠାରୁ 'ସୁଭାଷ' ଆଉ 'ସୁଭାଷ' ହୋଇ ରହିଲେ ନାହିଁ—ଆଜାଦ ହିନ୍ଦ ସଂଘର ସଭ୍ୟ ଓ ସହଯୋଗୀମାନଙ୍କ ନିକଟରେ ସେ ହେଲେ 'ନେତାଜୀ' — କେବଳ 'ସୁଭାଷ' ନୁହନ୍ତି । ଭାରତରେ 'ନେତା'ଥିଲେ ଅସଂଖ୍ୟ; 'ନେତାଜୀ' ହେବାର ଗୌରବ ଅର୍ଜନ କଲେ କେବଳ 'ନେତାଜୀ ସୁଭାଷ' ।

ବେତାରକେନ୍ଦ୍ର ଓ ଆଜାଦ୍ ହିନ୍ଦ୍ ସଂଘ ଗଠନପରେ ଆରମ୍ଭହେଲା ଅସଲ କାମ; ଭାରତୀୟ ଜାତୀୟ ବାହିନୀ ଗଠନର କାମ । ଭବିଷ୍ୟତ୍‌ରେ ଗଠିତ ହେବାକୁ ଯାଉଥିବା ଭାରତୀୟ ଜାତୀୟ ବାହିନୀର ମୂଳ-ଦୁଆ ପଡ଼ିଲା ଜର୍ମାନୀରେ ନେତାଜୀଙ୍କଦ୍ୱାରା । ପୂର୍ବ-ଏସିଆରେ ଜେନେରାଲ ମୋହନ ସିଂହ କର୍ତ୍ତୃକ ଜାତୀୟ ବାହିନୀ ଗଠିତ ହେବା ଠିକ୍ ସେହି ସମୟର କଥା । ନେତାଜୀଙ୍କ ଦ୍ୱାରା ଗଠିତ ବାହିନୀ ଅବଶ୍ୟ ଭାରତର ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ପଠାଯାଇପାରିଲା ନାହିଁ । ତା' ହୋଇଥିଲେ ଭାରତ ପୂର୍ବପଟରୁ ମୋହନ ସିଂହ (ରାସବିହାରୀ ପରିଚାଳିତ) ଙ୍କ ନେତୃତ୍ୱରେ ଜାତୀୟ ବାହିନୀ ଓ ପଶ୍ଚିମ ପଟରୁ ନେତାଜୀଙ୍କ ବାହିନୀ ଭାରତରୁ ବ୍ରିଟିଶ ବିରୁଦ୍ଧରେ ଏକ ସଙ୍ଗରେ ଅଭିଯାନ ଆରମ୍ଭକରିପାରିଥାନ୍ତେ ୧୯୪୪ ଫେବୃୟାରୀ ମାସରେ । 'ଫ୍ରି ଇଣ୍ଡିଆ ସେଣ୍ଟର' ଓ 'ଇଣ୍ଡିୟାନ ଲିଜିୟନ' ଗଠନ ଏବଂ ପରିଚାଳନା କରି ନେତାଜୀ ଯେଉଁ ଅମୂଲ୍ୟ ଅଭିଜ୍ଞତା ଅର୍ଜନ କରିଥିଲେ, ତାହା ତାଙ୍କୁ ବର୍ମାରେ 'ଜାତୀୟ ବାହିନୀ' ଗଠନ କରିବାରେ ଯଥେଷ୍ଟ ସାହାଯ୍ୟ କରିଥିଲା ବୋଲି ଅବଶ୍ୟ ସ୍ୱୀକାର କରିବାକୁ ପଡ଼ିବ । ଯୁଦ୍ଧକାଳୀନ ସରକାର ପରିଚାଳନା କରିବା ଏକ ଜାତୀୟ ସୈନ୍ୟବାହିନୀର ପରିଚାଳନାର ଦକ୍ଷତା ଓ କୌଶଳ ନେତାଜୀ ଅର୍ଜନ କରିଥିଲେ ଜର୍ମାନୀରୁ ।

ଯୁଦ୍ଧରତ ଗୋଟିଏ ବିଦେଶୀ ରାଷ୍ଟ୍ରରେ ବିଶେଷତଃ ହିଟଲର୍‌ର ଜର୍ମାନୀ ଭଳି ଏକ ଡିକ୍ଟେଟରୀ ଶାସନରେ ଭାରତର ସ୍ୱାଧୀନତା ପାଇଁ ଏକ ସ୍ୱାଧୀନ ସୈନ୍ୟବାହିନୀ ଗଠନ କରିବା ପାଇଁ ଅନୁମତି ଲାଭକରିବା ଏକ ଅକଳ୍ପନୀୟ ଘଟଣା । କିନ୍ତୁ ନେତାଜୀ ସେହି ଅସମ୍ଭବକୁ କିଭଳି ସମ୍ଭବ କରିଥିଲେ, ତାହା ସଶସ୍ତ୍ର ମୁକ୍ତି ସଂଗ୍ରାମର ଇତିହାସରେ ଗୋଟିଏ ରୋମାଞ୍ଚକର ଅଧ୍ୟାୟ । ଆଲେକ୍‌ଜାଣ୍ଡର ୱର୍ଥ ଲେଖିଛନ୍ତି— ''ନେତାଜୀ ପ୍ରଥମେ ଜର୍ମାନୀ ସରକାରଙ୍କ ଇଣ୍ଡିଆ ଡିଭିଜନ ଜରିଆରେ ଜର୍ମାନୀର ସାମରିକ କର୍ତ୍ତାମାନଙ୍କ ସହ ସଂଯୋଗ ସ୍ଥାପନ କଲେ; ପରେ ସିଧା ସମ୍ପର୍କ ପ୍ରତିଷ୍ଠା ହେଲା ।'' ସବୁଠାରୁ ମଜାର କଥା ହେଉଛି — ନେତାଜୀଙ୍କ ସହ ହିଟଲର୍‌ର ସାକ୍ଷାତ ହୋଇଥିଲା ନେତାଜୀ ଜର୍ମାନୀରେ ପହଞ୍ଚିବାର ପ୍ରାୟ ବର୍ଷକ ପରେ । ତା' ପୂର୍ବରୁ ସେ ଭନ୍ ରିବେନଟ୍ରପଙ୍କ ଜରିଆରେ ସବୁକାମ ଆଦାୟ କରୁଥିଲେ । ଏହାର ଅନ୍ୟ କାରଣ ହେଉଛି ଏହା ଯେ, ନେତାଜୀ ହିଟଲର୍‌ଙ୍କୁ ଆନ୍ତରିକ ଭଲପାଉନଥିଲେ । କେତେକ ଐତିହାସିକଙ୍କ ମତରେ ଏହାର ଅନ୍ୟ ଏକ କାରଣ ହେଉଛି — ହିଟଲର୍ ଇଂଲାଣ୍ଡ ବିରୁଦ୍ଧରେ ଯୁଦ୍ଧ କରିଥିଲେ ସୁଦ୍ଧା ଇଂରେଜଜାତି ପ୍ରତି ତାର ଟିକେ ଦୁର୍ବଳତା ଥିଲା । ଏପରିକି ଅନେକଙ୍କର ଧାରଣା ଫ୍ରାନ୍ସ ଦଖଲ ପର୍ଯ୍ୟନ୍ତ ହିଟଲର୍‌ର ଇଂଲାଣ୍ଡ

ଆକ୍ରମଣର ଯୋଜନା ନଥିଲା । ସେ ତ ସ୍ୱଭାବତଃ ବଡ଼ ଅହଙ୍କାରୀ ଥିଲା । ସେ କୁଆଡ଼େ ଆଶା କରୁଥିଲା ଜର୍ମାନୀର ଅଚିନ୍ତନୀୟ ଦିଗ୍‌ବିଜୟ ଦେଖି ଇଂଲାଣ୍ଡ ଯଦି ତା ସହ ବନ୍ଧୁତା କରିଥାନ୍ତା, ତେବେ ହୁଏତ ଶେଷ ପର୍ଯ୍ୟନ୍ତ ସେ ଇଂଲାଣ୍ଡ ଆକ୍ରମଣ କରିଥାନ୍ତା କି ନା ସନ୍ଦେହ । ହିଟଲରର ଇଂରେଜପ୍ରେମ ମନୋଭାବର ପ୍ରମାଣସ୍ୱରୂପ ସେମାନେ ଡନକାର୍କ ବନ୍ଦର ପତନ ସମୟରେ ହିଟଲରର ରହସ୍ୟଜନକ ନିର୍ଦ୍ଦେଶ କଥା କହନ୍ତି । ହିଟଲର ଇଚ୍ଛାକରିଥିଲେ ପଛଘୁଞ୍ଚା ଦେଉଥିବା ସେହି ଲକ୍ଷ ଲକ୍ଷ ଇଂରେଜ ସୈନ୍ୟଙ୍କୁ ନିଶ୍ଚିହ୍ନ କରିଦେଇଥାନ୍ତେ । କାରଣ ସେମାନଙ୍କ ତିନି ପଟରେ ଥିଲେ । ଜର୍ମାନୀ ସୈନ୍ୟ ଏବଂ ସମ୍ମୁଖରେ ବିରାଟ ନୀଳ ସମୁଦ୍ର ଛଡ଼ା କିଛି ନଥିଲା । ହିଟଲର କାନରେ ଇଂଲାଣ୍ଡ ସୈନ୍ୟଙ୍କର ସେହି ଅସହାୟ ଅବସ୍ଥା ଖବର ପହଞ୍ଚିବା ସଙ୍ଗେ ସଙ୍ଗେ ସେ ତା'ର ନିଜ ସୈନ୍ୟବାହିନୀକୁ 'ହଲଟ' ଅର୍ଡ଼ର ଦେଇଥିଲା । ଦିନେ-ଓଳିଏ ନୁହେଁ; ଦୀର୍ଘ ୫ ଦିନକାଳ ସେ ଇଂରେଜ ସୈନ୍ୟଙ୍କୁ ସମୟଦେଲା ଏବଂ ସେହି ସମୟ ଭିତରେ ଇଂଲାଣ୍ଡର ସମସ୍ତ ଯୁଦ୍ଧଜାହାଜ, ବାଣିଜ୍ୟ ପୋତ ଏପରିକି ସୌଖିନ୍ ଲଞ୍ଚ ଓ ଘରୋଇ ଜାହାଜକୁ ଦିନରାତି ଖଟାଇ ସେହି ପିଞ୍ଜରାବଦ୍ଧ ସୈନ୍ୟମାନଙ୍କୁ ସେଠାରୁ ଖଲାସ କରିପାରିଲା । ସାଧାରଣ ଯୁଦ୍ଧ-ନୀତିରେ ବିଶେଷତଃ ନାଜୀ ସୈନ୍ୟମାନଙ୍କର ନିଷ୍ଠୁର ନିର୍ମମ ଯୁଦ୍ଧପରିଚାଳନା ଦୃଷ୍ଟିରୁ ଏହା ଏକ ଅସ୍ୱାଭାବିକ ଘଟଣା ।

ତା' ଆଗରୁ ୧୯୩୫ ମସିହାରେ ଥରେ ବର୍ଲିନ୍‌ରେ କୌଣସି ଏକ ଉତ୍ସବରେ ହିଟଲର ଯୋଗଦେଇଥାଏ । ଦୈବାତ୍ ଚିକିତ୍ସା ପାଇଁ ସୁଭାଷ ସେତେବେଳେ ବର୍ଲିନ ଯାଇଥାଆନ୍ତି । ଆଲୋଚ୍ୟ ଭୋଜିରେ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । କିନ୍ତୁ ସେଠାରେ ହିଟଲର କଣ ଟିକେ ଇଂରେଜମାନଙ୍କ ପ୍ରଶଂସା କରି ଦି'ପଦ କହିଦେବାରୁ ତା'ର ପ୍ରତିବାଦରେ ସୁଭାଷ ଭୋଜିସଭା ପରିତ୍ୟାଗ କରି ଚାଲିଆସିଲେ । ତାଙ୍କୁ ଅଟକାଇବାରୁ ସୁଭାଷ ଉତ୍ତେଜିତ କଣ୍ଠରେ କହିଥିଲେ – "Hitler is at his liberty to lick the British boots." ଅର୍ଥାତ୍ ''ଇଂରେଜମାନଙ୍କ ଜୋତା ଚାଟିବାକୁ ହିଟଲରଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିଛି । ତାହା ଯେ ସମସ୍ତେ କରିବେ ଏହାର କୌଣସି ଅର୍ଥ ହୁଏନା ।'' ଏଭଳି ନିର୍ଭୀକ ଉକ୍ତି ସୁଭାଷ ବ୍ୟତୀତ ଆଉ କିଏ ବା କହିପାରେ ?

ଆଜାଦ୍ ହିନ୍ଦ୍ ସରକାର ଗଠନ ଓ ଭାରତର ସ୍ୱାଧୀନତା ପାଇଁ ଜର୍ମାନୀର ଗ୍ୟାରେଣ୍ଟି ଦେବା ସମ୍ପର୍କରେ ଥରେ ସେହିଭଳି ଏକ ଅପ୍ରୀତିକର ଘଟଣା ଘଟିଥିଲା । ଏହାକୁ ନେତାଜୀଙ୍କ ସହ ହିଟଲରଙ୍କ ମୁହାଁମୁହିଁ ସଂଘର୍ଷ ବୋଲି କୁହାଯାଇପାରେ । ନେତାଜୀଙ୍କ ସ୍ମାରକପତ୍ର ସମ୍ପର୍କରେ ହିଟଲର ଗୁଡ଼ାଏ ବିତଣ୍ଡା ଯୁକ୍ତି ଆରମ୍ଭକଲେ । ଏହାର ରାଜନୈତିକ ଗୁରୁତ୍ୱ ଉପଲବ୍ଧି କରିବାର ଦୂରଦର୍ଶିତା ହିଟଲରଙ୍କ ଆଦୌ ନଥିଲା । ନେତାଜୀ ବିରକ୍ତହେଲେ, ଭନ ଟ୍ରଟ ଥିଲେ ଦୋଭାଷୀ । ସେ ହିଟଲଙ୍କର ଜର୍ମାନ ଭାଷଣକୁ ଅନୁବାଦ କରୁଥିଲେ । ନେତାଜୀ ଟ୍ରଟଙ୍କୁ କହିଲେ ''ତୁମ ମହାମାନ୍ୟଙ୍କୁ କହିଦିଅ ମୁଁ ଆଜୀବନ ରାଜନୀତି କରିଆସୁଅଛି ଏବଂ କାହାରି ପରାମର୍ଶ ମୋର ଆବଶ୍ୟକ ନାହିଁ ।'' (Tell your Excellency that I have been in politics all my life and I dont need advice from any side.)

ହିଟ୍‌ଲର ନିଜେ ଭଲ ଇଂରେଜୀ ବୁଝୁନଥିଲେ, ଭନ ଟ୍ରଟ ନେତାଜୀଙ୍କର ସେହି କଠୋର ମନ୍ତବ୍ୟକୁ ଟିକେ ନରମ ଭାଷାରେ ହିଟଲରଙ୍କୁ ବୁଝାଇଦେଇଥିଲେ । ଏ ଘଟଣାଟି ଉଲ୍ଲେଖ କରିବାର କାରଣ ହେଉଛି ଏହା ଯେ, ନେଜାତୀ ହିଟଲରଙ୍କ ବହୁକଥା ପସନ୍ଦକରୁନଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମର ଦୁର୍ଦ୍ଦିନରେ ଯଦିଓ ସେ ଜର୍ମାନୀର ଦ୍ୱାରସ୍ଥ ହୋଇଥିଲେ, ତଥାପି ସେ ନିଜର ବ୍ୟକ୍ତିତ୍ୱକୁ କେଉଁଠି କାହା ନିକଟରେ ବଳିଦେବାକୁ ପ୍ରସ୍ତୁତ ନଥିଲେ ।

ତତ୍କାଳୀନ ବମ୍ବେର ପିସିସି ସଭ୍ୟ ଶ୍ରୀ ଗଣପୁଲେଙ୍କ ଭାଷାରେ – ''ହିଟଲରଙ୍କ ବ୍ରିଟିଶପ୍ରେମୀ ମନୋଭାବ (Pro-British attitude)କୁ ଭାରତର ବ୍ରିଟିଶ ବିରୋଧୀ ମନୋଭାବରେ ପରିବର୍ତ୍ତନ କରିବା କିଛି ସହଜ କଥା ନଥିଲା ।(1)

ନାଜୀ ସରକାର ସହ କଥା ହେଲା ଯେ, ଉତ୍ତର-ଆଫ୍ରିକା ଓ ଅନ୍ୟ ଇଂରେଜ- ଅଧିକୃତ ଅଞ୍ଚଳକୁ ଜର୍ମାନୀ ଦଖଲକରି ଯେଉଁ ଭାରତୀୟ ସୈନ୍ୟଙ୍କୁ ବନ୍ଦୀକରିଛି, ସେହି ବନ୍ଦୀ ଭାରତୀୟ ସୈନ୍ୟଙ୍କୁ ନେଇ ସେ ଆଜାଦ ହିନ୍ଦ ବାହିନୀ ଗଠନକରିବେ । ସେହି ସୈନ୍ୟବାହିନୀର କାର୍ଯ୍ୟପଳାପ ସଂପୂର୍ଣ୍ଣ ସ୍ୱାଧୀନ ରହିବ, ଅର୍ଥାତ କେବଳ ଆଜାଦ ହିନ୍ଦ ବାହିନୀର ସର୍ବୋଚ୍ଚ କର୍ତ୍ତାରୂପେ ନେତାଜୀଙ୍କ ନିର୍ଦ୍ଦେଶ ଛଡ଼ା ସୈନ୍ୟମାନେ ଆଉ କାହାରି ନିର୍ଦ୍ଦେଶ ମାନିବାକୁ ବାଧ୍ୟ ନୁହନ୍ତି ଏବଂ ଇଂରେଜମାନଙ୍କ ବ୍ୟତୀତ ଆଉ କାହା ବିରୁଦ୍ଧରେ ସେମାନେ ଲଢ଼ିବେ ନାହିଁ । ଭାରତବନ୍ଧୁ ଭନଟ୍ରଟ ଏହି ପ୍ରତିଶ୍ରୁତି ନାଜୀ ସରକାରଠାରୁ ଆଦାୟ କରିବାପରେ ସୈନ୍ୟ ସଂଗ୍ରହ କାର୍ଯ୍ୟ ଆରମ୍ଭ ହୋଇଗଲା ।

ପ୍ରଥମେ ଏନ. ଜି. ସ୍ୱାମୀ ଓ ଆବିଦ ହାସାନ ଉତ୍ତର-ଆଫ୍ରିକାର ଆନାବର୍ଗ ବନ୍ଦୀ ଶିବିରକୁ ଯାଇ ସେଠାରେ ଭାରତୀୟ ଯୁଦ୍ଧବନ୍ଦୀମାନଙ୍କୁ ଭେଟିଥିଲେ । ଯୁଦ୍ଧବନ୍ଦୀମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଉଦ୍‌ବୁଦ୍ଧ କରିବା ସହଜ କଥା ନଥିଲା । କାରଣ ସେମାନେ ମୂଳରୁ ଇଂରେଜମାନଙ୍କ ପ୍ରତି ଅନୁରକ୍ତ – ବସ୍ତୁତଃ ସୈନ୍ୟବାହିନୀରେ ଚାକିରି କରିବା ଦିନଠାରୁ ସେମାନେ ଶପଥବଦ୍ଧ ଯେ, ସେମାନଙ୍କର ଇଂରେଜପ୍ରେମ ସ୍ୱଭାବସିଦ୍ଧ ଓ ଅଭ୍ୟାସସିଦ୍ଧ । ଦ୍ୱିତୀୟତଃ ସୈନ୍ୟବାହିନୀରେ ଚାକିରି କରି ସୁବିଧାଭୋଗୀ ଶ୍ରେଣୀ ଭାବରେ ସେମାନେ ନ୍ୟସ୍ତସ୍ୱାର୍ଥ ଶ୍ରେଣୀଭୁକ୍ତ । ଚାକିରି ବେଳେ ନିୟମିତ ବେତନ, ଭଲ ଖାଦ୍ୟପେୟ ପୋଷାକ-ପରିଚ୍ଛଦ ଉପଭୋଗ କରିବା ଏବଂ ଯୁଦ୍ଧରେ ଆହତ ବା ନିହତ ହେଲେ ପେନସନ ସୁବିଧା ପାଉଥିବା ଶ୍ରେଣୀ-ସ୍ୱାଧୀନତା ଯୁଦ୍ଧ ଭଳି ଏକ ଅନିଶ୍ଚିତ ଓ ବିପଦପୂର୍ଣ୍ଣ ପଥକୁ ଏବଂ ତାହା ପୁଣି ସେମାନଙ୍କ ଆଜୀବନ 'ବନ୍ଧୁ' ଇଂରେଜମାନଙ୍କ ବିରୁଦ୍ଧରେ ଯିବାକୁ କିଏ ବା ଚାହିଁବ ? ଏଭଳି ନ୍ୟସ୍ତସ୍ୱାର୍ଥ ଶ୍ରେଣୀଠାରୁ କ'ଣ ବା ଆଶା କରାଯାଇପାରେ ? ଫଳରେ ଶ୍ରୀ ସ୍ୱାମୀ ଓ ହାସାନ ବିଶେଷ କିଛି ଅଗ୍ରଗତି କରିପାରିଲେନାହିଁ ।

ନେତାଜୀ ସବୁକଥା ଶୁଣିଲେ । ସେ ଦେଖିଲେ, ଭାରତୀୟ ବନ୍ଦୀମାନଙ୍କ ସହ ଯେଉଁ ଇଂରେଜ ବନ୍ଦୀମାନେ ଅଛନ୍ତି, ସେମାନଙ୍କୁ ପୃଥକ୍ ନରଖିଲେ ଭାରତୀୟ ବନ୍ଦୀ ଶିବିରରେ କିଛି କାର୍ଯ୍ୟ କରିବା କଷ୍ଟସାଧ୍ୟ । ନେତାଜୀଙ୍କର ପରାମର୍ଶ ଅନୁସାରେ ସେଇଆ କରାଗଲା

1. G.N. Ganpulay - Netaji in Germani - Pg. 39

ଏବଂ ନେତାଜୀ ଭାରତୀୟ ବନ୍ଦୀମାନଙ୍କ ହୃଦୟରେ ପ୍ରବେଶ କଲେ । ନେତାଜୀଙ୍କର ଓଜସ୍ୱିନୀ ଭାଷଣ, ଦେଶର ସ୍ୱାଧୀନତା ପାଇଁ ତାଙ୍କର ଦୁର୍ବାର ବ୍ୟାକୁଳତା ବନ୍ଦୀମାନଙ୍କର ଅନ୍ତର ସ୍ପର୍ଶକଲା ଏବଂ ଯେଉଁମାନେ ଇଂରେଜମାନଙ୍କ ପ୍ରତି ଅନୁରକ୍ତ ରହିବେ ବୋଲି ଶପଥବଦ୍ଧ ହୋଇଥିଲେ ଏବଂ ଯେଉଁମାନେ ଇଂରେଜ ସାମ୍ରାଜ୍ୟବାଦକୁ ରକ୍ଷାକରିବାକୁ ମାତୃଭୂମିଠାରୁ ହଜାର ହଜାର ମାଇଲ ଦୂରରେ ନାଜୀ କମାଣ ଓ ବନ୍ଧୁକ ଆଗରେ ଛାତିଦେଖାଇଥିଲେ, ସେହି ସୈନ୍ୟମାନେ ନେତାଜୀଙ୍କ ଆହ୍ୱାନରେ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ତିଆରି ହୋଇଗଲେ । ଏ ସମ୍ପର୍କରେ ନେତାଜୀଙ୍କ ଜର୍ମାନୀ ସହକର୍ମୀ ଡାକ୍ତର ଗିରିଜା ମୁଖାର୍ଜି କହନ୍ତି, ''ସୈନ୍ୟବାହିନୀରେ ଲୋକ ନିଯୁକ୍ତି ନୀତି ବ୍ରିଟିଶ ସରକାରଙ୍କ ଦ୍ୱାରା ଏଭଳି ଭାବରେ ନିୟନ୍ତ୍ରିତ ହେଉଥିଲା ଯେପରି କି ସେମାନଙ୍କ ଭିତରେ ଜାତୀୟତାର ସାମାନ୍ୟ ପ୍ରେରଣା ମଧ୍ୟ ପ୍ରକାଶିତ ନହୁଏ । ଯଦିଓ ସୈନ୍ୟମାନଙ୍କ ମୂଳ ସୁଦୂର ଭାରତୀୟ ଗାଁଗହଳରେ ରହିଥିଲା, ଇଂରେଜମାନେ ସେମାନଙ୍କର ମସ୍ତିଷ୍କକୁ ଏଭଳି ବିକୃତ କରିଦେଇଥିଲେ ଯେ, ଭାରତର ଜାତୀୟ ଅଭ୍ୟୁତ୍ଥାନର ଉତ୍ତାଳ ତରଙ୍ଗର ସ୍ପନ୍ଦନ ତାହାକୁ ସ୍ପର୍ଶ କରୁନଥିଲା । ୧୯୨୦ରୁ ୧୯୩୯ ପର୍ଯ୍ୟନ୍ତ ଭାରତବର୍ଷରେ ବାରମ୍ବାର ଜାତୀୟ ଆନ୍ଦୋଳନ ହୋଇଥିବା ସତ୍ତ୍ୱେ ସୈନ୍ୟବାହିନୀ ତଦ୍ଦ୍ୱାରା ପ୍ରଭାବିତ ହୋଇଥିଲା ଭଳି ବୋଧହୁଏ ନାହିଁ । ମହାତ୍ମା ଗାନ୍ଧି ବା ଜବାହାରଲାଲ ନେହୁରୁ କେହି ସୈନ୍ୟବାହିନୀର ହୃଦୟକୁ ସ୍ପର୍ଶ କରିଥିଲେ ବୋଲି ପ୍ରମାଣ ମିଳେନା । ନେତାଜୀଙ୍କ ବ୍ୟତୀତ ଅନ୍ୟ କୌଣସି ଜାତୀୟ ନେତା ସୈନ୍ୟବାହିନୀକୁ ସ୍ୱାଧୀନତା ସଂଗ୍ରାମ ବାହିନୀରେ ପରିଣତ କରିପାରି ନଥିଲେ । ଯେଉଁ କାର୍ଯ୍ୟରେ ଭାରତର ଅନ୍ୟ ନେତାମାନେ ପରାଜୟ ସ୍ୱୀକାର କରିଥିଲେ, ନେତାଜୀ ସେଠାରେ ବିଜୟଶ୍ରୀମଣ୍ଡିତ ହୋଇପାରିଲେ । ସ୍ୱାଧୀନତା ସଂଗ୍ରାମର ଇତିହାସକୁ ଏହା ନେତାଜୀଙ୍କ ଅନ୍ୟତମ ଶ୍ରେଷ୍ଠ ଅବଦାନ ।

''ଭାରତରେ ମଧ୍ୟ ଏକ ବିପ୍ଳବୀ ସେନାବାହିନୀ ଗଠନ କରିବା ଅନ୍ୟ କେହି ନେତା ସ୍ୱପ୍ନରେ ସୁଦ୍ଧା ଭାବିପାରିନଥିବେ । ସେଭଳି କରିବାକୁ ସମର୍ଥ ହୋଇଥିଲେ ସେମାନେ ନିଶ୍ଚୟ ଖୁବ୍ ଖୁସିହୋଇଥାନ୍ତେ ।''

ପ୍ରଥମେ ମାତ୍ର ପନ୍ଦର ଜଣ ଭାରତୀୟ ଯୁଦ୍ଧବନ୍ଦୀଙ୍କୁ ନେଇ ଫୌଜ ଗଠନ କରାଗଲା । ସେମାନଙ୍କୁ ଟ୍ରେନିଂ ଦେଲେ ଜର୍ମାନୀ ଯୁଦ୍ଧ ଶିକ୍ଷକ ୱାଲଟର ହାରବିକ ଏବଂ ତାଙ୍କର ସହାୟକ ହେଲେ ଦୁଇଜଣ ଭାରତୀୟ ସିଭିଲିୟାନ କର୍ମଚାରୀ – ଶ୍ରୀଯୁକ୍ତ ସ୍ୱାମୀ ଓ ଆବିଦ ହାସାନ । ଆଜାଦ ହିନ୍ଦ୍ ଫୌଜର ଶପଥ ଗ୍ରହଣ ଉତ୍ସବ ଏକ ସ୍ମରଣୀୟ ଘଟଣା । ତ୍ରିରଙ୍ଗା ଜାତୀୟ ପତାକା ତଳେ ଜଣ ଜଣ କରି ଆସି ଶପଥ ନେଉଥାନ୍ତି; ''ଭଗବାନ୍‌ଙ୍କ ନାମରେ ମୁଁ ଏହି ପବିତ୍ର ଶପଥ ଗ୍ରହଣ କରୁଅଛି ଯେ, ମୁଁ ମୋର ପବିତ୍ର ଜନ୍ମଭୂମି ଭାରତବର୍ଷ ଓ ତାର ଚାଳିଶି କୋଟି ଅଧିବାସୀଙ୍କୁ ମୁକ୍ତ କରିବା ପାଇଁ ମୋର ନେତା ଶ୍ରୀଯୁକ୍ତ ସୁଭାଷ ଚନ୍ଦ୍ର ବୋଷଙ୍କର ନେତୃତ୍ୱ ପ୍ରତି ସଂପୂର୍ଣ୍ଣ ଅନୁରକ୍ତ ରହିବି ଏବଂ ସେଥିପାଇଁ ମୋର ସର୍ବସ୍ୱ ଏପରିକି ମୋର ଜୀବନ ବିସର୍ଜନ କରିବାକୁ ସର୍ବଦା ପ୍ରସ୍ତୁତ ରହିବି ।'' ଶପଥ ଗ୍ରହଣ ପରେ ନେତାଜୀ

ଏକ ଉଦ୍ଦୀପନାମୟୀ ମର୍ମସ୍ପର୍ଶୀ ଭାଷଣ ଦେଇ କହିଲେ ''ବନ୍ଧୁଗଣ, ଆପଣମାନେ ଆଜି ଶପଥ ଗ୍ରହଣ କରିଛନ୍ତି ଯେ, ଏହି ତ୍ରିରଙ୍ଗା ଜାତୀୟ ପତାକା ତଳେ ଠିଆହୋଇ ଆପଣମାନେ ମୃତ୍ୟୁ ପର୍ଯ୍ୟନ୍ତ ଶତ୍ରୁ ବିରୂଦ୍ଧରେ ଲଢ଼ିବେ । ଆପଣମାନେ ସ୍ୱାଧୀନ ଭାରତର ଜାତୀୟ ସେନାବାହିନୀର ବୀର ସେନା । ସ୍ୱେଚ୍ଛାରେ ଆପଣମାନେ ଚାଳିଶ କୋଟି ଭାରରବାସୀଙ୍କ ଦାୟିତ୍ୱ ମୁଣ୍ଡପାତି ଗ୍ରହଣ କରିଅଛନ୍ତି । ଆପଣଙ୍କର ଯାହାକିଛି ଅଛି, ଆଜିଠାରୁ ସେ ସବୁ ଭାରତର ଜାତୀୟ ସମ୍ପତ୍ତି । ଆଜାଦ ହିନ୍ଦ ଫୌଜର ଅଗ୍ରଗାମୀ ସୈନିକଭାବରେ ଆପଣମାନେ ପ୍ରଭୂତ ଗୌରବର ଅଧିକାରୀ । ସ୍ୱାଧୀନତା ସଂଗ୍ରାମର ଇତିହାସରେ ଆପଣମାନଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । । ଆଜିର ଏହି ସଂଗ୍ରାମର ପ୍ରତ୍ୟେକ ସହିଦର ସମ୍ମାନରେ ସ୍ୱାଧୀନ ଭାରତରେ ସ୍ମୃତିସ୍ତମ୍ଭ ନିର୍ମିତ ହେବ । ଆଗାମୀ ଦିନର ମନୁଷ୍ୟମାନେ ସେହି ସ୍ମୃତିସ୍ତମ୍ଭରେ ଶ୍ରଦ୍ଧାର୍ଘ୍ୟ ଅର୍ପଣ କରିବେ ।

''ଯଦିଓ ଏହି ପବିତ୍ର ଉତ୍ସବ ଆମ୍ଭେମାନେ ବିଦେଶରେ ପାଳନକରୁଛୁଁ, ତଥାପି ଆମ୍ଭମାନଙ୍କର ଧ୍ୟାନ, ଜ୍ଞାନ, ଭାବନା, ଚିନ୍ତା ସବୁକିଛି ପଡ଼ିରହିଛ ନିଜ ଦେଶରେ । ଯେତେଶୀଘ୍ର ସମ୍ଭବ ଆମ୍ଭେମାନେ ସବୁ ଦିଗରୁ ନିଜକୁ ପ୍ରସ୍ତୁତ କରିନେବା ଯାହା ଫଳରେ କି ଆମ୍ଭେମାନେ ଯେଉଁ ଦାୟିତ୍ୱ ସ୍ୱେଚ୍ଛାରେ ଗ୍ରହଣକରିନେଇଅଛୁଁ ତାହାକୁ ସାର୍ଥକ ଭାବେ ପାଳନ କରିପାରିବୁ ।

''ସେଦିନ ଆଉ ବେଶୀ ଡେରି ନାହିଁ, ଯେଉଁ ଦିନ ଆପଣମାନଙ୍କର ଏହି ସାମରିକ ଶକ୍ତିକୁ ପ୍ରତ୍ୟକ୍ଷଭାବରେ କାର୍ଯ୍ୟରେ ଲଗାଇବେ ।

''ଆଜି ଆମ୍ଭେମାନେ ଏହି ଜାତୀୟ ପତାକାତଳେ ଠିଆହୋଇ ସ୍ୱାଧୀନତା ପାଇଁ ଶପଥ ନେଉଛୁ । ଏମିତି ଦିନ ଆସିବ ଯେତେବେଳ ଆପଣମାନେ ଲାଲକିଲ୍ଲା ଉପରେ ଠିଆହୋଇ ଜାତୀୟ ପତାକାକୁ ଅଭିବାଦନ ଜଣାଇବେ । ମନେରଖିବେ ଯେ, ସ୍ୱାଧୀନତା ଅର୍ଜନପାଇଁ ଉପଯୁକ୍ତ ମୂଲ୍ୟ ଦେବାକୁ ହେବ । ଭିକ୍ଷାଦ୍ୱାରା କେଉଁ ସ୍ୱାଧୀନତା ଆସେନା; ଆସେ ଶକ୍ତି ଓ ବଳର ବିନିମୟରେ; ଆସେ ରକ୍ତର ବିନିମୟରେ । ଆମ୍ଭେମାନେ କଦାପି କୌଣସି ବିଦେଶୀ ଶକ୍ତିପକ୍ଷରୁ ସ୍ୱାଧୀନତା ଭିକ୍ଷା କରିବା ନାହିଁ । ଯଥାଯୋଗ୍ୟ ମୂଲ୍ୟ ଦେଇ ଆମ୍ଭେମାନେ ସ୍ୱାଧୀନତା ଅର୍ଜନ କରିବୁ । ମୁଁ ନିଶ୍ଚୟ କହିପାରେ ଯେ, ଆମ୍ଭେମାନେ ଯେତେବେଳେ ସମସ୍ତେ ମିଶି ଭାରତ ଆଡ଼କୁ ଆଗେଇଯିବା, ମୁଁ ଆପଣମାନଙ୍କ ସମ୍ମୁଖରେ ରହି ବାହିନୀ ପରିଚାଳନା କରିବାକୁ ଶପଥ କରୁଅଛି ।

''ଆଜି ଆମ୍ଭେମାନେ ଯେଉଁ ଉତ୍ସବ ପାଳନ କରୁଛୁଁ, ସେ ଖବର ବର୍ତ୍ତମାନ ସୁଦ୍ଧା ଭାରତବର୍ଷରେ ପହଞ୍ଚିସାରିଥିବ । ଆମ ଦେଶର ଯେଉଁ ବୀର ଦେଶସେବକ ଖାଲି ହାତରେ ବ୍ରିଟିଶ ବିରୁଦ୍ଧରେ ଲଢ଼େଇ କରି ଚାଲିଛନ୍ତି, ସେମାନେ ଏ ସମ୍ବାଦ ପାଇ ନିଶ୍ଚୟ ଉତ୍ସାହିତ ହେବେ ।

''ମୋର ସାରା ଜୀବନର ସ୍ୱପ୍ନ– ଏଭଳି ଗୋଟିଏ ସୈନ୍ୟବାହିନୀ ଗଢ଼ିତୋଳିବା । ଯେଉଁମାନେ ଶତ୍ରୁ ସହ ଲଢ଼େଇ କରି ସ୍ୱାଧୀନତା ଅର୍ଜନ କରିବେ, ସେମାନେ ଅଭିନନ୍ଦିତ

ହେବେ । କାରଣ ଏଭଳି ଗୋଟିଏ ସୁସଜ୍ଜିତ ବୀର ସେନାବାହିନୀ ଗଢ଼ିତୋଳିବାର ସମ୍ମାନ ଆଜି ଆପଣମାନଙ୍କର ପ୍ରାପ୍ୟ । ଈଶ୍ୱର ଆପଣମାନଙ୍କର ସହାୟ ହୁଅନ୍ତୁ । ଆଜି ଯେଉଁ କଠିନ ଶପଥ ପାଳନ କରିବା ପାଇଁ ଆପଣମାନେ କୃତସଂକଳ୍ପ ହୋଇଛନ୍ତି, ତାହା ସଂପୂର୍ଣ୍ଣରୂପେ ପାଳନ କରିବା ପାଇଁ ସେ ଆପଣମାନଙ୍କୁ ଶକ୍ତି ଦିଅନ୍ତୁ । ଜୟ ହିନ୍ଦ, ଇନ୍‌କ୍ୱିଲାବ ଜିନ୍ଦାବାଦ ।''

କ୍ରମେ ସହସ୍ରାଧିକ ଯୁଦ୍ଧବନ୍ଦୀ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗଦେଲେ ଏବଂ ତିନି ବାଟାଲିଅନ ସୈନ୍ୟ ସଙ୍ଗଠିତ ହେଲେ । ନେତାଜୀଙ୍କ ଆନନ୍ଦ କହିଲେ ନସରେ । ତାଙ୍କର ଯୋଜନା - ଏହି ସୈନ୍ୟବାହିନୀକୁ ଆଫଗାନିସ୍ଥାନ ବାଟେ ଭାରତରେ ପ୍ରବେଶ କରାଇବେ । ସୈନ୍ୟବାହିନୀକୁ ଉଦ୍‌ବୁଦ୍ଧ କରିବା ପାଇଁ ନେତାଜୀ ପ୍ରତ୍ୟେକ ସୈନିକ ସହ ଘନିଷ୍ଠ ବ୍ୟକ୍ତିଗତ ସମ୍ପର୍କ ରଖନ୍ତି । ତାଙ୍କର ଅଫୁରନ୍ତ ଉତ୍ସାହ, ଅସରନ୍ତି ଉଦ୍ଦୀପନା ଓ ଦେଶମୁକ୍ତିପାଇଁ ତାଙ୍କର ଆନ୍ତରିକ ବ୍ୟାକୁଳତା ଏବଂ ସର୍ବୋପରି ସୈନିକମାନଙ୍କ ପ୍ରତି ତାଙ୍କର ଅକୃତ୍ରିମ ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ତାଙ୍କୁ ଏତେ ଜନପ୍ରିୟ କରିଥିଲା ଯେ, ସୈନ୍ୟ-ଶିବିରକୁ ନେତାଜୀଙ୍କର ଆଗମନ ଏକ ମାମୁଲି ଘଟନା ହୋଇଥିଲେ ମଧ୍ୟ ବାସ୍ତବରେ ତାହା ଏକ ଉତ୍ସବଭଳି ପାଳିତ ହେଉଥିଲା । 'ନେତାଜୀ ଆସିଛନ୍ତି' ଖବରଟା ସୈନ୍ୟ-ଶିବିରରେ ବିଦ୍ୟୁତ୍‌ଗତିରେ ପ୍ରଚାରିତ ହୋଇଯାଉଥିଲା ଏବଂ ସମସ୍ତେ ପାଗଳ ଭଳି ନେତାଜୀଙ୍କୁ ଦେଖିବାକୁ ଦଉଡୁଥିଲେ । ନେତାଜୀ ସେମାନଙ୍କ ନିକଟରେ କେବଳ ସୁପ୍ରିମ କମାଣ୍ଡର ନ ଥିଲେ; ସେ ଥିଲେ ଏକାଧାରରେ କମାଣ୍ଡର, ବନ୍ଧୁ, ବଡ଼ଭାଇ ବା ପିତା । ତା' ହୋଇନଥିଲେ ଏକଦା ସୁବିଧାଭୋଗୀ ସୈନ୍ୟବାହିନୀ ସବୁ ସୁଖ-ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ନେତାଜୀଙ୍କ ପାଖରେ ନିଜକୁ ସମର୍ପଣ କରିନଥାନ୍ତେ ।

ଫୌଜର ଜର୍ମାନୀ ଯୁଦ୍ଧବିଦ୍ୟା ଶିକ୍ଷକ ୱାଲଟର ହାରବିଚ୍ କହନ୍ତି, ''ମହାମାନ୍ୟ ବୋଷ ତାଙ୍କର କାର୍ଯ୍ୟବ୍ୟସ୍ତତା ଭିତରେ ଯେତେବେଳେ ସମୟ ପାଆନ୍ତି ସେତେବେଳେ ଫ୍ରି ଇଣ୍ଡିଆ ସେଣ୍ଟର୍‌ର କେତେ ଭଦ୍ରଲୋକଙ୍କୁ ସାଙ୍ଗରେ ଧରି ସନ୍ଧ୍ୟାବେଳେ ଶିବିରକୁ ଚାଲିଆସନ୍ତି ଏବଂ ଭାରତୀୟ ସୈନ୍ୟମାନଙ୍କର ଉଚ୍ଚ ମନୋବଳ ଓ ସ୍ଫୂର୍ତ୍ତି ଅନୁଭବ କରି ଅଶେଷ ଆନନ୍ଦ ପାଇଥାଆନ୍ତି ।''

୧୯୪୧ ମସିହା ସେପ୍‌ଟେମ୍ବର ମାସରେ ଆଜାଦ୍ ହିନ୍ଦ୍ ବାହିନୀର ପ୍ରଥମ ସମର-କୌଶଳ ପ୍ରଦର୍ଶିତ ହୋଇଥିଲା । ନେତାଜୀଙ୍କର ସହ ଜର୍ମାନୀରେ ଥିବା ଜାପାନୀ ମିଲିଟାରୀ ଆଟାଚି କର୍ଣ୍ଣେଲ ୟାମାମାଟୋ ଏହି ପ୍ରଦର୍ଶନୀ ନିରୀକ୍ଷଣ କରିଥିଲେ । ମୁକ୍ତି ସେନାନୀମାନଙ୍କର ସେହି ଦକ୍ଷ ସମରକୌଶଳ ଦେଖି ନେତାଜୀ ବିସ୍ମିତ ଓ ଅଭିଭୂତ ହୋଇପଡ଼ିଲେ । ଏହିଭଳି ଭାବରେ 'ଫ୍ରି ଇଣ୍ଡିଆ ସେଣ୍ଟର' ଓ 'ଇଣ୍ଡିଆନ ଲେଜିଅନ' ପ୍ରତିଷ୍ଠାରେ ସଫଳତା ଅର୍ଜନକରି ନେତାଜୀ ଜର୍ମାନୀରେ ପ୍ରାଥମିକ ବିଜୟ ହାସଲ କଲେ; କିନ୍ତୁ ଏକ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ପ୍ରଚେଷ୍ଟାରେ ସଫଳତା ଅର୍ଜନ କରିବାରେ ବହୁ ବାଧାର ସମ୍ମୁଖୀନ ହେଲେ ।

ଆଜାଦ୍ ହିନ୍ଦ୍ ବାହିନୀର ସର୍ବୋଚ୍ଚ କର୍ତ୍ତାରୂପେ ଜର୍ମାନୀ, ଜାପାନ ଓ ଇଟାଲୀ ନେତାଜୀଙ୍କୁ କୂଟନୈତିକ ସ୍ୱୀକୃତି ଦେଇଥିଲେ ଏବଂ ତାଙ୍କୁ ସେହି ଅନୁସାରେ ପଦମର୍ଯ୍ୟାଦା ଦିଆଯାଇଥିଲା । ଆଜାଦ୍ ହିନ୍ଦ୍ ସରକାର ପକ୍ଷରୁ ଉପରୋକ୍ତ ଦେଶଗୁଡ଼ିକରେ କୂଟନୈତିକ ଦୂତାବାସ ମଧ୍ୟ ରଖାଯାଇଥିଲା । କିନ୍ତୁ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ହିଟଲର ପଛେଇଗଲେ । ନେତାଜୀ ଚାହିଁଲେ, ଉପରୋକ୍ତ ତିନିଗୋଟି ଦେଶପକ୍ଷରୁ ଏକ ମିଳିତ ଘୋଷଣା ପ୍ରକାଶ ପାଉ ଏବଂ ଉକ୍ତ ଘୋଷଣାପତ୍ରରେ ଯୁଦ୍ଧପରେ ଭାରତର ସ୍ୱାଧୀନତା ସମ୍ପର୍କରେ ସେମାନଙ୍କର ସ୍ପଷ୍ଟ ନୀତି ପ୍ରକାଶ ପାଉ । ଏ ସମ୍ପର୍କରେ ଏକ ଚିଠା ଘୋଷଣାପତ୍ରକୁ ମୁସୋଲିନୀ ଓ ଜାପାନ ପ୍ରଧାନମନ୍ତ୍ରୀ ତୋଜୋ ସ୍ୱୀକୃତି ଦେଇଥିଲେ । କିନ୍ତୁ ହିଟଲର ଏଥିରେ ଟାଳଟୁଳ କଲେ । ତାଙ୍କର ଯୁକ୍ତି ଥିଲା ଯେ, ଏଭଳି ଘୋଷଣାପତ୍ର ପ୍ରକାଶ କରିବାର ବେଳ ବର୍ତ୍ତମାନ ଆସିନାହିଁ; କାରଣ ଯୁଦ୍ଧର ଫଳାଫଳ ଜାଣିବାକୁ କିମ୍ବା ଅକ୍ଷଶକ୍ତିର ଜୟ ପରାଜୟ ଫଏସଲା ହେବାକୁ ସେତେବେଳେ ସମୟ ଆସିନଥିଲା । ହିଟଲରଙ୍କ ଅବ୍ୟବସ୍ଥିତ ମନର ଆଉ ଏକ କାରଣ ଯେ, ସେତେବେଳେ ଋଷିଆରେ ନାତ୍ସୀ ସୈନ୍ୟମାନେ ଘୋର ବିପର୍ଯ୍ୟୟର ସମ୍ମୁଖୀନ ହୋଇଥାନ୍ତି । ଫଳରେ ହିଟଲ୍‌ରଙ୍କ ମନର ଅବସ୍ଥା ବଡ଼ ଅସ୍ଥିର ଥିଲା ।



ଅଧ୍ୟାୟ - ଚଉତିରିଶ

# ଜର୍ମାନୀରେ ସୁଭାଷ (୨)

**ଏକ ସମୀକ୍ଷା –**

ଆଜୀବନ ରହସ୍ୟମୟ ସୁଭାଷଙ୍କ ରୋମାଞ୍ଚକର ଜୀବନଗାଥା, କାର୍ଯ୍ୟକଳାପ, ତାଙ୍କର ସାଫଲ୍ୟ, ତାଙ୍କର କୃତିତ୍ୱ ଏବଂ ସେହିପରି ତାଙ୍କର ବ୍ୟର୍ଥତା ଓ ବିଫଳତା ସମ୍ପର୍କରେ ଆଜିପର୍ଯ୍ୟନ୍ତ ଅସଂଖ୍ୟ ଗ୍ରନ୍ଥ ଲେଖାସରିଲାଣି; ଆହୁରି କେତେ ଲେଖା ମଧ୍ୟ ହେବ । ତାଙ୍କର ରାଜନୈତିକ ଆଦର୍ଶ, କାର୍ଯ୍ୟଧାରାର ସପକ୍ଷ ଓ ବିପକ୍ଷରେ ଯୁକ୍ତିତର୍କର ଅବସାନ ହୋଇନାହିଁ । ଇତିହାସ ଓ ରାଜନୀତିର ଜିଜ୍ଞାସୁ ଓ ଅନିସନ୍ଧିତ୍ସୁ ଛାତ୍ରମାନେ ହୁଏତ ଆଗାମୀ ବହୁବର୍ଷ ପର୍ଯ୍ୟନ୍ତ 'ନେତାଜୀ'ଙ୍କ ସମ୍ପର୍କରେ ଗବେଷଣା କରିଚାଲିବେ; କାରଣ ତାଙ୍କର ତଥାକଥିତ ମୃତ୍ୟୁ ଯେପରି ବିବାଦୀୟ, ତାଙ୍କର ଜୀବନ ମଧ୍ୟ ସେହିପରି ରହସ୍ୟମୟ ହୋଇ ରହିଛି । ଯାହାହେଉ, ଏହି ଅଧ୍ୟାୟରେ 'ନେତାଜୀ'ଙ୍କର ଭାରତତ୍ୟାଗର ଆବଶ୍ୟକତା ଓ ଜର୍ମାନୀ ସାହାଯ୍ୟରେ ଏକ ମୁକ୍ତିବାହିନୀ ଗଠନର ଯୌକ୍ତିକତା ସମ୍ପର୍କରେ ସମ୍ୟକ୍ ଆଲୋଚନା କରିବାର ଉଦ୍ୟମ କରାଯାଇଛି; ଯଦିଓ ପୂର୍ବରୁ ଏ ବିଷୟରେ ସାମାନ୍ୟ ସାଙ୍କେତିକ ଆଲୋଚନା ହୋଇଯାଇଛି ।

ସୁଭାଷଙ୍କର 'ଭାରତତ୍ୟାଗ' ସମୟରେ ଭାରତର ରାଜନୈତିକ ପରିସ୍ଥିତି କଥା ପ୍ରଥମେ ବିଚାର କରାଯାଉ । ଏହା ଜଣାଶୁଣା କଥା ଯେ, ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ବେଳେ ବ୍ରିଟିଶ-ଶକ୍ତି ତାର ମିଲିଟାରୀ ଓ ଅର୍ଥବଳରେ ପୃଥିବୀରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ଫରାସୀ ସାମ୍ରାଜ୍ୟବାଦ ମଧ୍ୟ ଶକ୍ତି ଓ ସାମର୍ଥ୍ୟର ଚୂଡ଼ାନ୍ତ ଶିଖରରେ ପହଞ୍ଚିଥିଲା । ସୁତରାଂ ବ୍ରିଟିଶ ଓ ଫରାସୀର ମିଳିତ ଶକ୍ତି ସମ୍ଭବତଃ ସୋଭିଏତ୍ ଋଷିୟା ଓ ଆମେରିକା ବ୍ୟତୀତ ପୃଥିବୀରେ ଆଉ କାହାକୁ ଖାତିର କରିବାର କୌଣସି କାରଣ ନ ଥିଲା । ଅପରପକ୍ଷେ ୧୯୨୦ରୁ ଆରମ୍ଭ ହୋଇଥିବା ଅହିଂସ ଅସହଯୋଗ ଆନ୍ଦୋଳନ ଫଳରେ ମାତ୍ର '୧୯୩୫ ମସିହା ଭାରତ ଶାସନ ଆଇନ' ଜରିଆରେ କେତେକ ସ୍ୱାୟତ୍ତଶାସନ କ୍ଷମତା ଭାରତୀୟମାନଙ୍କୁ ମିଳିଥିଲା; ଯାହାଫଳରେ କଂଗ୍ରେସ ଦଳ କେତେଗୋଟି ପ୍ରଦେଶରେ ସୀମିତ କ୍ଷମତାସମ୍ପନ୍ନ ମନ୍ତ୍ରିମଣ୍ଡଳ ଗଢ଼ିବାର ଅଧିକାର ପ୍ରାପ୍ତ ହୋଇଥିଲା । ସେହିସବୁ ତଥାକଥିତ ମନ୍ତ୍ରିମଣ୍ଡଳକୁ ବ୍ରିଟିଶ ସରକାର କେତେ ଗୁରୁତ୍ୱ ବା ମୂଲ୍ୟ ଦେଉଥିଲା, ତାହାର ପ୍ରମାଣ ମିଳିଲା ଯେତେବେଳେ ମନ୍ତ୍ରିମଣ୍ଡଳକୁ ନ ଜଣାଇ ସରକାର ଭାରତକୁ ଯୁଦ୍ଧରେ ଅନ୍ତର୍ଭୁକ୍ତ କରିଦେଲା । କାରଣ ସରକାର ଠିକ୍ ଜାଣିଥିଲା ଯେ, ଏକ ବ୍ୟାପକ ସଶସ୍ତ୍ର

ବିଦ୍ରୋହ ବ୍ୟତିରେକେ ସେମାନଙ୍କର ଆସ୍ଥାନ ଭାରତରୁ ଉଠିଯିବାର ପ୍ରଶ୍ନ ନାହିଁ । ଅହିଂସ ଅସହଯୋଗର ତିକ୍ତ ଅଭିଜ୍ଞତା ନେଇ ଭାରତବାସୀ ମଧ୍ୟ ଠିକ୍ ବୁଝିସାରିଥିଲେ ଯେ ସଂପୂର୍ଣ୍ଣ ନୂତନ କୌଶଳ ଏବଂ ନୂତନ ଆଦର୍ଶ ନେଇ ଏକ ବ୍ୟାପକ ଆନ୍ଦୋଳନ ନ ହେଲେ ସ୍ୱାଧୀନତା ସୁଦୂରପରାହତ । ୧୯୩୯ରେ ଭାରତ ନୂତନ ଆଶା ଓ ଆକାଙ୍‌କ୍ଷାକୁ ଅପେକ୍ଷା କରିଥିଲା । ସୁତରାଂ ସେହି ପରିପ୍ରେକ୍ଷୀରେ ନେତାଜୀଙ୍କ ଭାରତତ୍ୟାଗ ଏକପ୍ରକାର ଅବଶ୍ୟମ୍ଭାବୀ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କଂଗ୍ରେସ ଓ ଗାନ୍ଧିଜୀଙ୍କର ମିଳାମିଶା ମନୋଭାବ ଏବଂ ଏକ ସଂଗ୍ରାମୀ କାର୍ଯ୍ୟକ୍ରମ ଗ୍ରହଣ କରିବାର କଂଗ୍ରେସର ଇତସ୍ତତଃ ଭାବ ସୁଭାଷଙ୍କୁ କିଭଳି ନିରାଶ କରିଦେଇଥିଲା, ତାହା ପୂର୍ବରୁ ଆଲୋଚିତ ହୋଇସାରିଛି । ଦ୍ୱିତୀୟ ମହାଯୁଦ୍ଧ ସାମ୍ରାଜ୍ୟବାଦର ମୃତ୍ୟୁଘଣ୍ଟି ବଜାଇବାକୁ ଅଭିପ୍ରେତ ବୋଲି ସୁଭାଷ ଭଲରୂପେ ଉପଲବ୍ଧି କରିଥିବାରୁ ସେ ଝଡ଼ର କେନ୍ଦ୍ରବିନ୍ଦୁ (Cyclone's eye)ରେ ଉପସ୍ଥିତ ରହିବା ଅପରିହାର୍ଯ୍ୟ ବୋଲି ମନେକରିଥିଲେ । ସୁଭାଷଙ୍କର ରାଜନୈତିକ ଦୂରଦର୍ଶିତା କିଭଳି ନିର୍ଭୁଲ ବୋଲି ପ୍ରତିପାଦିତ ହେଲା; ଇତିହାସ ତାର ଜ୍ୱଳନ୍ତ ସାକ୍ଷୀ । ଭାରତର ସ୍ୱାଧୀନତାପ୍ରାପ୍ତିର ବହୁବର୍ଷପରେ ଆମ୍ଭେମାନେ ଏହାର ଗୁରୁତ୍ୱ ଉପଲବ୍ଧି କରିବା ହୁଏତ କଷ୍ଟକର ହୋଇପାରେ; କିନ୍ତୁ ୧୯୪୦ ମସିହାରେ ରାଜନୈତିକ ପରିସ୍ଥିତି ଏହିଭଳି ଅସ୍ୱସ୍ତିକର ଥିଲା ।

ସୁଭାଷଙ୍କର ଭାରତତ୍ୟାଗ ଓ ଜାତୀୟ ବାହିନୀଗଠନ— ପ୍ରଥମେ ଜର୍ମାନୀରେ ଏବଂ ପରେ ପୂର୍ବ-ଏସିଆରେ— ତତ୍କାଳୀନ ରାଜନୈତିକ କ୍ଷେତ୍ରରେ ଯେଉଁ ନୂତନ ଶକ୍ତି ସୃଷ୍ଟିକରିଥଲା, ତାହା ସହିତ ମିଶିଥିଲା ଶତାବ୍ଦୀବ୍ୟାପୀ ସ୍ୱାଧୀନତା ସଂଗ୍ରାମର ତ୍ୟାଗ ଓ ଆତ୍ମୋତ୍ସର୍ଗ ଏବଂ ୧୯୪୨ର ଗଣ-ଅଭ୍ୟୁତ୍‌ଥାନ ପରେ ୧୯୪୭ରେ ବ୍ରିଟିଶ ଶକ୍ତି କ୍ଷମତା ହସ୍ତାନ୍ତର କରିବାକୁ ଏକପ୍ରକାର ବାଧ୍ୟହୋଇଥିଲା କହିଲେ ଚଳେ । ସେଥିପାଇଁ ଗାନ୍ଧିଜୀ ଓ ନେହେରୁଙ୍କ ଭଳି ସୁଭାଷଙ୍କୁ ମଧ୍ୟ ସ୍ୱାଧୀନତାର ବିନ୍ଧାଣି ବୋଲି ଇତିହାସ ମୁକ୍ତକଣ୍ଠରେ ସ୍ୱୀକାର କରିଯାଇଛି । ସୁଭାଷଙ୍କର ଜର୍ମାନୀ ସହଯୋଗ ଓ ଜାତୀୟ ବାହିନୀଗଠନର ଭୂମିକା ମଧ୍ୟ ସେହି ଦୃଷ୍ଟିରୁ ବିଚାର୍ଯ୍ୟ । ଜାତୀୟ ବାହିନୀକୁ ଲଘୁ-ଭାବରେ ବିଚାର କଲେ ଆମକୁ ପ୍ରଥମେ କହିବାକୁ ପଡ଼ିବ ଯେ, ସଶସ୍ତ୍ର ସଂଗ୍ରାମୀ ଅପେକ୍ଷା ଅହିଂସ ଅସହଯୋଗୀ ଅଧିକ ଦେଶପ୍ରେମୀ । ପୃଥିବୀରେ ଭାରତବର୍ଷ ବ୍ୟତୀତ ଅନ୍ୟ କୌଣସି ଦେଶର ଅଧିବାସୀ ତା'ର ସ୍ୱାଧୀନତା ସଂଗ୍ରାମୀକୁ ତା'ର ସଶସ୍ତ୍ର ବିପ୍ଳବ ପାଇଁ ଏଭଳି ହେୟ ବା ଅନାଦର କରେ ନାହିଁ । ଜାତୀୟବାହିନୀର ଗଠନ ଓ କାର୍ଯ୍ୟକଳାପ ଭାରତର ସ୍ୱାଧୀନତାକୁ ତ୍ୱରାନ୍ୱିତ କରିବାରେ କେତେଦୂର ସହାୟକ ହୋଇପାରିଥିଲା, ତା'ର ସଠିକ ମୂଲ୍ୟାୟନ କରିବାକୁ ଆହୁରି ବହୁବର୍ଷ ଲାଗିପାରେ । କାରଣ ସେ ସମ୍ପର୍କରେ ଇଂରେଜ ସରକାରଙ୍କ ଯୁଦ୍ଧ ବିଭାଗ ଓ ଗୋଏନ୍ଦା ବିଭାଗ ଭିତରେ ହୋଇଥିବା ଚିଠିପତ୍ର ସାଧାରଣରେ ପ୍ରକାଶିତ ହେବା ପର୍ଯ୍ୟନ୍ତ ଆମକୁ ଅପେକ୍ଷା କରିବାକୁ ପଡ଼ିବ । ଇତିହାସର ଗବେଷକମାନେ ଯେତିକି ଅଧିକ ଗଭୀରକୁ ପ୍ରବେଶ କରୁଅଛନ୍ତି, ସେତିକି ଅଧିକରୁ ଅଧିକ ସେମାନେ ଉପଲବ୍ଧି କରୁଅଛନ୍ତି ଯେ, 'ଜାତୀୟ ବାହିନୀ'ର ଉଦ୍ଭବ ହୋଇନଥିଲେ ବିଶେଷତଃ ୧୯୪୩ରୁ ୧୯୪୬ ପର୍ଯ୍ୟନ୍ତ

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ 'ଜାତୀୟ ବାହିନୀ'ର ଅବିଶ୍ୱାସ୍ୟ ଆତ୍ମତ୍ୟାଗ, ତପସ୍ୟା ଓ ସାଧନାର ଶକ୍ତି ମିଳିତ ହୋଇନଥିଲେ ୧୯୪୭ରେ ଭାରତର ସ୍ୱାଧୀନତା ପ୍ରାପ୍ତି ନିଶ୍ଚୟ ଆହୁରି କେତେବର୍ଷ ପଛେଇଯାଇଥା'ନ୍ତା । ଦ୍ୱିତୀୟ ମହାଯୁଦ୍ଧ ଶେଷବେଳକୁ 'ଜାତୀୟବାହିନୀ'ର ଅଲୌକିକ ଭୂମିକା ଯଦି ଇତିହାସକୁ ଆଲୋକିତ କରିନଥା'ନ୍ତା, ଯୁଦ୍ଧବିଜୟୀ ବ୍ରିଟିଶଶକ୍ତି ଏତେ ଶୀଘ୍ର ଭାରତୀୟମାନଙ୍କୁ କ୍ଷମତା ହସ୍ତାନ୍ତର କରିବାକୁ 'କ୍ୟାବିନେଟ ମିଶନ'କୁ ଭାରତକୁ କଦାପି ପଠାଇନଥାନ୍ତା ବୋଲି ଇତିହାସକାରମାନେ ମତ ଦିଅନ୍ତି । ଏକଥା ଆଜି ଅଛପା ନାହିଁ ଯେ, ବ୍ରିଟିଶର କ୍ଷମତା ହସ୍ତାନ୍ତର ପ୍ରସ୍ତାବକୁ ତା ମିତ୍ର ଫରାସୀ ଓ ଓଲନ୍ଦାଜ ସରକାରଗୁଡ଼ିକ ଘୋର ବିରୋଧ କରିଥିଲେ ।

'ମହାବିଦ୍ରୋହ' (୧୮୫୭), 'ବ୍ୟାପକ ବିଦ୍ରୋହ' (୧୯୧୫) ପ୍ରତିଷ୍ଠା ସମୟରେ ଭାରତୀୟ ନେତାମାନେ ସୈନ୍ୟବାହିନୀ ଭିତରେ ଯେତିକି ଅସନ୍ତୋଷ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ, ସେତିକି । ତା'ପରେ ସୈନ୍ୟବାହିନୀ ଭିତରେ ଦେଶର ସ୍ୱାଧୀନତା ପାଇଁ କୌଣସି ଆକାଙ୍କ୍ଷା ସୃଷ୍ଟି କରାଯାଇ ପାରିଲାନାହିଁ । କିନ୍ତୁ ୧୯୪୧ ମସିହାରେ ଭାରତୀୟ ଯୁଦ୍ଧବନ୍ଦୀମାନଙ୍କୁ ନେଇ ଜାତୀୟ ବାହିନୀ ଗଠନ କରିବାଠାରୁ ଆରମ୍ଭ କରି ୧୯୪୩ର ପୂର୍ବ-ଏସିଆରେ ଗଠିତ ଜାତୀୟବାହିନୀ ଜରିଆରେ ଭାରତର ବ୍ରିଟିଶ ସୈନ୍ୟବାହିନୀକୁ ଆକ୍ରମଣ କରିବା ପର୍ଯ୍ୟନ୍ତ ସୁଭାଷଙ୍କର ଅଭୂତପୂର୍ବ ସାଫଲ୍ୟ ସୈନ୍ୟବାହିନୀ ଭିତରେ ବ୍ରିଟିଶ-ବିରୋଧୀ ଭାବ କେତେ ଉଗ୍ରଭାବରେ ସୃଷ୍ଟି କରିଥିଲା ଏବଂ ତାହା କିଭଳି ଭାରତର ସ୍ୱାଧୀନତାକୁ ତ୍ୱରାନ୍ୱିତ କରିଥିଲା, ଇତିହାସ ତାର ଜ୍ୱଳନ୍ତ ସାକ୍ଷୀ । ତତ୍କାଳୀନ ବ୍ରିଟିଶ ଅଫିସର ଓ ପ୍ରଶାସକମାନେ ଭାରତୀୟ ସୈନ୍ୟବାହିନୀ ଭିତରେ ସୁଭାଷ ଏବଂ ଜାତୀୟବାହିନୀ ପ୍ରତି ଯେଉଁ ଆନୁଗତ୍ୟ ଓ ଶ୍ରଦ୍ଧା ରହିଥିଲା, ତାହା ଗୋପନ ରିପୋର୍ଟମାନଙ୍କରେ ମୁକ୍ତକଣ୍ଠରେ ସ୍ୱୀକାର କରିଅଛନ୍ତି । ସେ ସବୁ- ଗୁଡ଼ିକର ଉଲ୍ଲେଖ କରିବା ଏଠାରେ ସମ୍ଭବ ନୁହେଁ । ଯୁଦ୍ଧ ସମୟରେ ଭାରତୀୟ ସୈନ୍ୟ- ବାହିନୀର ମୁଖ୍ୟ ସେନାପତି ସାର୍ କ୍ଲଡ୍ ଅଚିନଲେକ ତତ୍କାଳୀନ ଭାଇସରୟ ଲିନଲିଥ୍‌ଗୋଙ୍କୁ ଗୋପନ ରିପୋର୍ଟରେ ଉଲ୍ଲେଖ କରିଥିଲେ "ଜାତୀୟ ବାହିନୀ (I.N.A.)ରେ ଯୋଗଦେଇଥିବା ଅଧିକାଂଶ ଭାରତୀୟ ସୈନ୍ୟ ଦୃଢ଼ଭାବରେ ବିଶ୍ୱାସ କରନ୍ତି ଯେ ସୁଭାଷ ଜଣେ ସଚ୍ଚା ଦେଶସେବୀ ଏବଂ ସେମାନେ ତାଙ୍କର ନେତୃତ୍ୱକୁ ସ୍ୱୀକାର କରି ଠିକ୍‌କରିଅଛନ୍ତି । ମୋ' ପାଖରେ ବହୁସଂଖ୍ୟକ ପ୍ରମାଣ ରହିଅଛି ଯେ ସୁଭାଷଙ୍କର ସେମାନଙ୍କ ଉପରେ ବିଶେଷ ପ୍ରଭାବ ଏବଂ ତାଙ୍କର ବିରାଟ ବ୍ୟକ୍ତିତ୍ୱର ପ୍ରଭାବ ରହିଅଛି ।"

ଯେଉଁ ବ୍ରିଟିଶ ସୈନ୍ୟମାନେ ସେତେବେଳେ ଜାପାନୀମାନଙ୍କ ବିରୁଦ୍ଧରେ ଲଢୁଥିଲେ ଏବଂ ବେଳେବେଳେ ସୁଭାଷଙ୍କର ଜାତୀୟ ବାହିନୀର ସମ୍ମୁଖୀନ ହେଉଥିଲେ, ସେମାନଙ୍କର ବ୍ରିଟିଶ ଆନୁଗତ୍ୟ ମଧ୍ୟ ନିର୍ଭରଯୋଗ୍ୟ ନ ଥିଲା ବୋଲି ସ୍ୱୀକାର କରି ଉପରୋକ୍ତ ଗୋପନ ରିପୋର୍ଟରେ ପ୍ରଧାନ ସେନାପତି ଆହୁରି ମଧ୍ୟ ଲେଖିଥିଲେ, "ଭାରତୀୟ ସୈନ୍ୟମାନଙ୍କ ସମ୍ପର୍କରେ ମୋର ଦୀର୍ଘ ଅଭିଜ୍ଞତାଦୃଷ୍ଟିରୁ ମୁଁ ଏବଂ ମୋ' ଭଳି ବ୍ରିଟିଶ ଶାସନର ଅନ୍ୟ ବହୁ ସମର୍ଥକମାନେ ମଧ୍ୟ ସୈନ୍ୟବାହିନୀର ମନକଥା ବୁଝିବା କଷ୍ଟକର ହେଉଅଛି । ଇତିହାସ

ମୋର ସନ୍ଦେହକୁ ସମର୍ଥନ କରେ, (ସୁଭାଷଙ୍କ) ଜାତୀୟ ବାହିନୀ ସମ୍ପର୍କରେ ଆମ ସୈନ୍ୟମାନେ କି ଧାରଣା ପୋଷଣ କରନ୍ତି, ତାହା ବୁଝିବା ଆମର ପୁରୁଖା ସେନାପତିମାନଙ୍କ ପକ୍ଷରେ ମଧ୍ୟ ସମ୍ଭବ ହେଉନାହିଁ । ମୋର ନିଜ ବିବେକ-ବୁଦ୍ଧି ଖଟାଇ ଏକ ସଂଗୃହୀତ ତଥ୍ୟକୁ ମିଳାଇ ମୁଁ ସ୍ପଷ୍ଟ କହିପାରେ ଯେ, ଜାତୀୟ ବାହିନୀ ପ୍ରତି ଆମ ସୈନ୍ୟବାହିନୀର ଶ୍ରଦ୍ଧା ଓ ସମର୍ଥନ ବଢ଼ିବାରେ ଲାଗିଛି ।'' ଭାରତୀୟ ସୈନ୍ୟବାହିନୀ ଉପରେ ସୁଭାଷଙ୍କର ପ୍ରଭାବ ବିଷୟରେ ଉଲ୍ଲେଖ କରି ପ୍ରଖ୍ୟାତ ବ୍ରିଟିଶ ଐତିହାସିକ ମାଇକେଲ ଏଡ୍‌ୱାର୍ଡ଼ସ ଯଥାର୍ଥରେ ସ୍ୱୀକାର କରିଥିଲେ— ''ଭାରତସରକାର କ୍ରମେ ସ୍ୱୀକାର କରୁଅଛନ୍ତି ଯେ ଯେଉଁ ସୈନ୍ୟବାହିନୀ ସରକାରର ମେରୁଦଣ୍ଡ ସ୍ୱରୂପ ଅଟେ, ସେହି ମେରୁଦଣ୍ଡ ଦୋହଲି-ଯାଇଛି ଏବଂ ତା ଉପରେ ଆଉ ବିଶ୍ୱାସ କରିବା ଉଚିତ ନୁହେଁ ।''

'ଆଜାଦ୍ ହିନ୍ଦ୍‌ର ସାଫଲ୍ୟ' ଶିରୋନାମାରେ ବାରାନ୍ତରେ ଅଧିକ ଆଲୋଚନା ହେବ । ଜର୍ମାନୀରେ ସୁଭାଷ ଭାରତର ସ୍ୱାର୍ଥ ଓ ନିଜର ବ୍ୟକ୍ତିତ୍ୱ ଜଳାଞ୍ଜଳି ଦେଇ ନାଜୀବାଦର ସମର୍ଥକ ହୋଇଥିଲେ ବୋଲି ଯେଉଁ ପ୍ରଚାର କରାଯାଏ, ତାହା ନିଛକ ପିଲାଳିଆ କଥା । ଏଭଳି ଅଭିଯୋଗର କାରଣ ହେଉଛି ଏହା ଯେ, ଯେତେବେଳେ ପୃଥିବୀର ଅଧିକାଂଶ ଦେଶ 'ନାଜୀ ଜର୍ମାନୀ' ନାମ ଶୁଣିଲେ ଘୃଣାରେ ନାସିକା କୁଞ୍ଚନ କରୁଥିଲେ, ଠିକ୍ ସେହି ସମୟରେ ଦୀର୍ଘ ଦୁଇବର୍ଷକାଳ ସୁଭାଷ ଜର୍ମାନୀରେ ରହିଥିଲେ । କିନ୍ତୁ ଏ ସମ୍ପର୍କରେ ପ୍ରଶ୍ନ ଉଠେ ଯେ, ଯେତେବେଳେ ସାରା ପୃଥିବୀରେ କେବଳ ଦୁଇଟି ପ୍ରଧାନ ଦେଶ— ଜର୍ମାନୀ ଓ ଜାପାନ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ ସେତେବେଳେ ଭାରତରୁ ବ୍ରିଟିଶକୁ ବିତାଡ଼ିତ କରିବାକୁ ଚାହୁଁଥିବା ସୁଭାଷ ଉକ୍ତ ଦୁଇଟି ଦେଶଠାରୁ ସାହାଯ୍ୟ ଗ୍ରହଣ କରିବା କଣ ଭୁଲ ? ଇଟାଲୀର ଏକୀକରଣ ଓ ସ୍ୱାଧୀନତା ପାଇଁ ଗାରିବାଲ୍‌ଡ଼ି ଯେଉଁ ପରିସ୍ଥିତିରେ ଅଷ୍ଟ୍ରିଆର ଶତ୍ରୁମାନଙ୍କଠାରୁ ସାହାଯ୍ୟ ଗ୍ରହଣ କରିଥିଲେ, ଚୀନରେ ରାଜୁଡ଼ା ଶାସନ ଲୋପକରିବାକୁ ସନୟାତ୍-ସେନ ଯେଉଁ ପରିସ୍ଥିତିରେ ଜାପାନଠାରୁ ସାହାଯ୍ୟ ଗ୍ରହଣ କରିଥିଲେ, ଆୟାରଲ୍ୟାଣ୍ଡର ସ୍ୱାଧୀନତା ପାଇଁ ଡି. ଭେଲେରା ଓ ସିନଫିନ ବିଦ୍ରୋହୀମାନେ ଯେଉଁ ପରିସ୍ଥିତିରେ ଆମେରିକାଠାରୁ ସାହାଯ୍ୟ ନେଇଥିଲେ, ସେହି ପରିସ୍ଥିତିରେ ସୁଭାଷ ତାଙ୍କର ଦେଶକୁ ସ୍ୱାଧୀନ କରିବାକୁ ଜର୍ମାନୀ ବା ଜାପାନର ସାହାଯ୍ୟ ନେବାରେ ଅପରାଧ କଣ ? କାହିଁ ଗାରିବାଲ୍‌ଡ଼ି, ସନୟାତ-ସେନ ବା ଡି. ଭେଲେରା କେହି ହେଲେ ସେମାନଙ୍କ ଦେଶରେ ତ ନିନ୍ଦିତ ହେଲେ ନାହିଁ ! ସେମାନେ ଆଜି ସ୍ୱ-ସ୍ୱ ଦେଶରେ ପୂଜନୀୟ ଓ ବନ୍ଦନୀୟ ।

ଯେଉଁ ଇଂରେଜ ସରକାରର ପ୍ରଚାରଯନ୍ତ୍ର ସୁଭାଷଙ୍କୁ ନାଜୀ ସମର୍ଥକ ବୋଲି ପ୍ରଚାର କରି ଆମ ଦେଶର ଶିକ୍ଷିତ ଲୋକଙ୍କର ମନକୁ ପ୍ରଭାବିତ କଲା, ସେହି ଇଂରେଜ ଜାତି ତ ପୁଣି ଋଷିୟା ଭଳି ଏକ କମ୍ୟୁନିଷ୍ଟ ଦେଶର ସାହାଯ୍ୟ ନେଇ ଜର୍ମାନୀ ବିରୁଦ୍ଧରେ ସଂଗ୍ରାମ କଲା ; କିନ୍ତୁ ଯୁଦ୍ଧରେ ଜିତିସାରିବାପରେ ସେଥିପାଇଁ ଦୁଃଖ ପ୍ରକାଶ କଲା । ଗ୍ରୀସ ଭଳି ଏକ ଫାସିଷ୍ଟ ଦେଶକୁ ଜର୍ମାନୀ କବଳରୁ ରକ୍ଷାକରିବାକୁ ଯେଉଁ ଅସଂଖ୍ୟ ଇଂରେଜ ଯୁବକ ପ୍ରାଣ

ବିସର୍ଜନ କଲେ, ସେମାନଙ୍କୁ ଇଂରେଜମାନେ ସହିଦର ସମ୍ମାନ ଦେବାକୁ ଲଜ୍ଜା ବୋଧ କଲେ ନାହିଁ । ଫ୍ରାନ୍ସର ଦିଗଲ ଫ୍ରାନ୍ସକୁ ଜର୍ମାନୀ କବଳରୁ ଉଦ୍ଧାର କରିବାକୁ ଇଂରେଜ ଓ ଆମେରିକାର ସାହାଯ୍ୟ ନେବା ଇତିହାସରେ ଏକ ପରିଚିତ କଥା । ଜଣେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଯଥାର୍ଥରେ କହିଥିଲେ ଯେ— ଇଂଲଣ୍ଡର କେହି ଚିରଶତ୍ରୁ ନୁହଁନ୍ତି ବା ଚିରମିତ୍ର ନାହାନ୍ତି । କିନ୍ତୁ ତାର ଜାତୀୟସ୍ୱାର୍ଥହିଁ ଏକମାତ୍ର ଚିର; ଅର୍ଥାତ ଜାତୀୟ ସ୍ୱାର୍ଥପାଇଁ ଆଜିର ଶତ୍ରୁକୁ କାଲି ମିତ୍ର କରାଯାଇପାରେ ଓ ମିତ୍ରକୁ ଶତ୍ରୁ କରାଯାଇପାରେ । ସୁତରାଂ ଏକ ସୀମିତ ବା ନିର୍ଦ୍ଦିଷ୍ଟ ଜାତୀୟ ସ୍ୱାର୍ଥର ସଂରକ୍ଷଣ ପାଇଁ ବା ଜାତୀୟ ଅଭିଳାଷ ଚରିତାର୍ଥ କରିବା ପାଇଁ ଯେକୌଣସି ଶକ୍ତିର ସାହାଯ୍ୟ ନେଲେ ମହାଭାରତ ଅଶୁଦ୍ଧ ହୋଇଯାଏ ନାହିଁ; ବରଂ ତାହା ଏକ ରାଜନୈତିକ କୌଶଳ ବା ବୁଦ୍ଧିମତ୍ତା ଏବଂ ହୁଏତ ଏକ ଅପରିହାର୍ଯ୍ୟ ଆବଶ୍ୟକତା ।

ସୁଭାଷଙ୍କର ଜୀବନୀ, ଭାଷଣ ବା ରଚନା ଏବଂ ବିଶେଷତଃ ସୁଭାଷଙ୍କର ରାଜନୈତିକ ଆଦର୍ଶବାଦ ସମ୍ପର୍କରେ କୌଣସି ଧାରଣା ନଥିବା ବ୍ୟକ୍ତିମାନେହିଁ କେବଳ କହନ୍ତି ଯେ ସୁଭାଷ ହୁଏତ ନାଜୀବାଦର ସମର୍ଥକ ଥିଲେ । ଉନବିଂଶ ଶତାବ୍ଦୀର ଭାରତୀୟ ନବଜାଗରଣର ସନ୍ତାନ ଓ ଅରବିନ୍ଦ-ବିବେକାନନ୍ଦ-ରବୀନ୍ଦ୍ରନାଥ ଆଦର୍ଶପୁଷ୍ଟ ସୁଭାଷ ମାନବତାବାଦର ଏଭଳି ଏକ ମୂର୍ତ୍ତି ମନ୍ତ ପ୍ରତୀକ ଥିଲେ ଯେ, ନାଜୀ ଓ ଫାସିବାଦର ଅମାନୁଷିକ ଆଦର୍ଶ ପ୍ରତି ସହାନୁଭୂତିଶୀଳ ହେବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ଜର୍ମାନୀରେ ଥିବାବେଳେ ତାଙ୍କର ଅସଂଖ୍ୟ ବେତାର ଭାଷଣ ଓ ଚିଠିପତ୍ର ଭିତରେ ନାଜୀବାଦର ସମର୍ଥନରେ ଗୋଟିଏ ଶବ୍ଦ ମଧ୍ୟ ମିଳିବା କଷ୍ଟକର ।

ସୁଭାଷଙ୍କ ଭଳି ଜଣେ ଉଦାର ମାନବବାଦୀ ଓ ବ୍ୟକ୍ତିସ୍ୱାଧୀନତାର ପୂଜାରୀ ନାଜୀ ବା ଫାସିବାଦର ଏକଚ୍ଛତ୍ରବାଦକୁ କେମିତି ବା ସମର୍ଥନ କରନ୍ତେ ? ନାଜୀବାଦର ବର୍ଣ୍ଣ-ବୈଷମ୍ୟ ନୀତି ଓ ୟୁରୋପୀୟମାନେ ଏସିୟମାନଙ୍କଠାରୁ ସର୍ବକ୍ଷେତ୍ରରେ ଉତ୍କୃଷ୍ଟ ବୋଲି ଆନ୍ତରିକ ବିଶ୍ୱାସ କରୁଥିବା ହିଟଲରଙ୍କ ସହ ସୁଭାଷଙ୍କର ମନ ମିଳିବା କଥା କେହି ସ୍ୱପ୍ନରେ ସୁଦ୍ଧା କଳ୍ପନା କରିବା ଅନୁଚିତ । ୧୯୩୫ ମସିହାରେ ନାଜୀ ଜର୍ମାନୀର ଏହି ମନୋଭାବ ଦେଖି ସୁଭାଷ କିଭଳି ବିରକ୍ତି ଭାବ ପ୍ରକାଶ କରିଥିଲେ ତାହା 'ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମ୍ୟୁନିକ'ର ପ୍ରତିଷ୍ଠାତା ଜର୍ମାନୀର ବିଶିଷ୍ଟ ପଣ୍ଡିତ ଓ ରାଜନୀତିଜ୍ଞ ଡକ୍ଟର ଥିଏର ଫିଲ୍‌ଡ଼ରଙ୍କର ଅଧୁନା ପ୍ରକାଶିତ ପତ୍ରାବଳୀରୁ ସ୍ପଷ୍ଟ ପରିଚୟ ମିଳେ । ଉକ୍ତ ପୁସ୍ତକର ମୁଖବନ୍ଧରେ ଥିଏର୍ ଫିଲ୍‌ଡ଼ ଲେଖିଛନ୍ତି— ''ଭବିଷ୍ୟତ୍‌ର ଐତିହାସିକମାନେ ଏହି ମହାନ୍ ଓ ଅବିସ୍ମରଣୀୟ ବଙ୍ଗ ବିପ୍ଳବୀଙ୍କୁ ଯୁଦ୍ଧର ଶେଷ ସମୟରେ ଭାରତର ସ୍ୱାଧୀନତା ପାଇଁ ଜର୍ମାନୀରେ ତାଙ୍କର କାର୍ଯ୍ୟକୁ କଦର୍ଥ କରିବାର ବିପଦ ରହିଅଛି ଏବଂ ତାହାହେଲେ ସେହି ମହାନ୍ ବ୍ୟକ୍ତିଙ୍କର ଚରିତ୍ର ଏବଂ ରାଜନୈତିକ ଆଦର୍ଶ ପ୍ରତି ଘୋର ଅନ୍ୟାୟ ହେବ ।''

୧୯୩୫ ମସିହାରେ ଜର୍ମାନୀ ପରିତ୍ୟାଗ କଲାବେଳେ ସୁଭାଷ ଡକ୍ଟର ଫିଏଲଡରଙ୍କୁ ଏହି ପତ୍ରଗୁଡ଼ିକ ଦେଇଥିଲେ ।

ସେଥିରେ ସେ ହିଟଲରଙ୍କ ଅହଂକାର ଓ ଦମ୍ଭର କଠୋର ସମାଲୋଚନା କରି ଅଛନ୍ତି ।

ଉକ୍ତ ପତ୍ରରେ ସୁଭାଷ ଲେଖିଥିଲେ– ''ହିଟଲରଙ୍କ ଦୃଢ଼ ବିଶ୍ୱାସ ଯେ, ଶ୍ୱେତାଙ୍ଗ ୟୁରୋପୀୟମାନେହିଁ ଚିରଦିନ କୃଷ୍ଣାଙ୍ଗ ଏସୀୟମାନଙ୍କ ଉପରେ ରାଜତ୍ୱ କରିଆସିଛନ୍ତି ଓ ଭବିଷ୍ୟତ୍‌ରେ ମଧ୍ୟ କରିବେ । କିନ୍ତୁ ଇତିହାସ କହେ ଯେ, ୟୁରୋପୀୟମାନଙ୍କ ଅପେକ୍ଷା ଏସୀୟମାନେହିଁ ୟୁରୋପୀୟମାନଙ୍କ ଉପରେ ଅଧିକ ଦିନ ରାଜତ୍ୱ କରିଆସିଛନ୍ତି । ଆମେ ଭାରତବାସୀ ଯେଉଁ ସ୍ୱାଧୀନତା ପାଇଁ ଲଢୁଛୁ, ତାହା ଜାତି ଜାତି ଭିତରେ ସମତା ପ୍ରତିଷ୍ଠା କରି ସାରା ବିଶ୍ୱକୁ ଏକ ପରିବାର ଗଠନ ପରିକଳ୍ପନା ପାଇଁ ଉଦ୍ଦିଷ୍ଟ । ମୁଁ ଜାଣେ, ଇଂରେଜମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ହିଟଲରଙ୍କର ଉଦ୍ୟମର ଅନ୍ତ ନାହିଁ । ଜର୍ମାନୀ ସରକାରଙ୍କର ପ୍ରଚାର ବିଭାଗ ହିଟଲର ଓ ଡକ୍ଟର ରୋଜେନ ବର୍ଗଙ୍କ ରଚନାକୁ ଉଦ୍ଧାରକରି ଇଂଲାଣ୍ଡରେ ଭାରତର ସ୍ୱାଧୀନତା-ବିରୋଧୀ ପ୍ରଚାରପତ୍ର ବିତରଣ କରିବା କଥା କିଏ ବା ନଜାଣେ ? ଏସବୁ ସତ୍ତ୍ୱେ ମୁଁ ଜର୍ମାନୀ ସହ କିଛି ଗୋଟାଏ ବୁଝାମଣା କରିବାକୁ ବର୍ତ୍ତମାନ ମଧ୍ୟ ପ୍ରସ୍ତୁତ ଅଛି । କିନ୍ତୁ ଏହି ବୁଝାମଣା ଭାରତର ଜାତୀୟ ମର୍ଯ୍ୟାଦା ବା ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ହୋଇପାରିବନାହିଁ । କାରଣ ମୁଁ ଜାଣେ, ଆମେ ଯେଉଁ ସ୍ୱାଧୀନତା ଓ ସ୍ୱାଧିକାର ପାଇଁ ସଂଗ୍ରାମ କରୁଛୁ, ଯେତେ କଷ୍ଟସାଧ ହେଲେ ମଧ୍ୟ ତାର ବିଜୟ ସୁନିଶ୍ଚିତ । ସୁତରାଂ ଏକ ସୁନିଶ୍ଚିତ ବିଜୟ ଉପରେ ଭରସା ନରଖି ଆମେ ଆମର ଜାତୀୟ ସମ୍ମାନ ଓ ମର୍ଯ୍ୟାଦାକୁ କାହିଁକି କାହା ପାଖରେ ବଳିଦେବାକୁ ଯିବୁ ?''

୧୯୪୦ ମସିହାରେ ଏକପ୍ରକାର ବାଧ ହୋଇ ସେ ଜର୍ମାନୀର ସହାୟତା ନେଇଥିଲେହେଁ ସେ ସେହି ଜାତୀୟ ମର୍ଯ୍ୟାଦା ବା ସମ୍ମାନ କଥା ଗୋଟିଏ ମୁହୂର୍ତ୍ତ ସୁଦ୍ଧା ବିସ୍ମୃତ ହୋଇ ନ ଥିଲେ । ହିଟଲର୍‌ଙ୍କ 'ଜାତୀୟସମାଜବାଦ'ରେ ସଂପୃକ୍ତ ନ ହୋଇ ସଂପୂର୍ଣ୍ଣ ସ୍ୱାଧୀନଭାବେ ସୁଭାଷ ଜର୍ମାନୀରେ ତାଙ୍କର କାର୍ଯ୍ୟ ଆରମ୍ଭ କରିଦେଇଥିଲେ, ଏହି କାର୍ଯ୍ୟରେ ଭନ ଟ୍ରଟଙ୍କର ସହାୟତା ସମ୍ପର୍କରେ ପୂର୍ବ ଅଧ୍ୟାୟରେ ଆଲୋଚିତ ହୋଇଅଛି ।

ଭନ ଟ୍ରଟ୍‌ଙ୍କର ସହକାରୀ ଆଲେକଜାଣ୍ଡର ୱାର୍ଥ "Nataji in Germany" ପୁସ୍ତକରେ ଯଥାର୍ଥରେ ଲେଖିଛନ୍ତି– ''ଜର୍ମାନୀ ବୈଦେଶିକ ବିଭାଗର ଏକ ସ୍ୱତନ୍ତ୍ର 'ଭାରତ ଡିଭିଜନ' ରହିଥିଲା ଏବଂ ତାର ଦାୟିତ୍ୱରେ ଥିଲେ ଭନ ଟ୍ରଟ । ମୁଁ ଟ୍ରଟଙ୍କର ସହକାରୀ ଥିଲି । ଏହି ଡିଭିଜନ ନେତାଜୀଙ୍କର ଜର୍ମାନୀ କାର୍ଯ୍ୟକଳାପ ସହ ସମ୍ପର୍କ ରଖିଥିଲା । ମୂଳରୁ ନେତାଜୀ ଦାବି କରିଥିଲେ ଯେ, ଜର୍ମାନୀର କୌଣସି ରାଜନୈତିକ ନେତା ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବେ ନାହିଁ । ଜର୍ମାନୀ ସରକାର ତାଙ୍କୁ ଯେଉଁ ଆର୍ଥିକ ସାହାଯ୍ୟ ଦେବେ, ତାହା 'ଦାନ' ବା 'ସାହାଯ୍ୟ' ରୂପରେ ନୁହେଁ, ଋଣସୂତ୍ରରେ ଦେବେ ଏବଂ ଭାରତର ସ୍ୱାଧୀନତା ପରେ ସେହି ଋଣ ଭାରତ ସରକାର ଅବଶ୍ୟ ପରିଶୋଧ କରିଦେବେ ଏବଂ ଜର୍ମାନୀର ବୈଦେଶିକ ବିଭାଗ ମଧ୍ୟ ତାଙ୍କୁ ବିନା ସର୍ତ୍ତରେ ବୈଷୟିକ ସାହାଯ୍ୟ କରିବେ । ଉପରୋକ୍ତ ସମସ୍ତ ଦାବି ଆମେ ଗ୍ରହଣ କରିଥିଲୁ । ଅନ୍ୟ ଦେଶ ସହ ବା ନିଜ ଦେଶ ଭିତରେ ହିଟଲର୍‌ଙ୍କ ସହ ଯେଉଁ ମତଭେଦ ବା କଳହ ରହିଛି, ସେଥିସହ ନେତାଜୀ ବା ତାଙ୍କର ସଙ୍ଗଠନ ଆଦୌ ଜଡ଼ିତ ହୋଇପାରିବ ନାହିଁ ବୋଲି ନେତାଜୀ ମୂଳରୁ ଆମ ସହ ପରିଷ୍କାର ସର୍ତ୍ତ ରଖିଥିଲେ । ଜର୍ମାନୀର

ବୈଦେଶିକ ବିଭାଗ ମଧ୍ୟ କେଉଁ ନେତାଜୀଙ୍କଠାରୁ ଏହା ଆଶା କରିନଥିଲା । ନେତାଜୀ କିମ୍ବା ତାଙ୍କର ଆଜାଦ୍ ହିନ୍ଦ୍ ଫୌଜ ସେମାନଙ୍କର ବେତାର ପ୍ରଚାରରେ କେଉଁ ହେଲେ ହିଟଲରଙ୍କର 'ଜାତୀୟ ସମାଜବାଦ'କୁ ସମର୍ଥନ କରି ପଦେ କହିଥିବାର ମୁଁ ଜାଣେନା ।''

ସୁଭାଷ ଜର୍ମାନୀର 'ଜାତୀୟ ସମାଜବାଦ'ର ଉଗ୍ର ବିରୋଧୀ ଓ ସୋଭିଏତ୍ ସାମ୍ୟବାଦର ସମର୍ଥକ ଥିବାରୁହିଁ ସେ ଜର୍ମାନୀ ଦ୍ୱାରା ଋଷିଆ ଆକ୍ରମଣର ବିରୋଧ କରୁଥିଲେ ।

ସୁତରାଂ ମାତ୍ର ତିନିଗୋଟି କାରଣରୁ ସେ ଜର୍ମାନୀ ଯାଇଥିଲେ । ପ୍ରଥମତଃ ଭାରତର ଶତ୍ରୁ ଇଂଲଣ୍ଡ ସହ ଜର୍ମାନୀ ଯୁଦ୍ଧରତ ଥିଲା । ଦ୍ୱିତୀୟତଃ ସେ ଜର୍ମାନୀ ସହ ଭାରତର ସ୍ୱାଧୀନତା ପାଇଁ କିଛିଟା ବୁଝାମଣା କରିପାରିବେ ବୋଲି ବିଶ୍ୱାସକରୁଥିଲେ ଏବଂ ତୃତୀୟତଃ ସେ ଋଷିଆଠାରୁ କୌଣସି ଭରସା ପାଇଲେ ନାହିଁ ।

ସୁଭାଷ ଓ ଟ୍ରଟଙ୍କର ରାଜନୈତିକ ଆଦର୍ଶବାଦରେ ବହୁ ସାମଞ୍ଜସ୍ୟ ଥିବାରୁ ସେମାନେ ପରସ୍ପରର ଅନ୍ତରଙ୍ଗ ବନ୍ଧୁ ହୋଇପାରିଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟର ଜର୍ମାନୀ ଇତିହାସ ସହ ଯେଉଁମାନେ ପରିଚିତ, ସେମାନେ ଟ୍ରଟଙ୍କର ଆଦର୍ଶବାଦ ସମ୍ପର୍କରେ ଅବଶ୍ୟ ଜାଣିଥିବେ । ଅକ୍ସଫୋର୍ଡ଼ର ଛାତ୍ର ଟ୍ରଟ ଜଣେ ଫେବିଅନ ସୋସଲିଷ୍ଟ ଥିଲେ । ଅକ୍ସଫୋର୍ଡ଼ରେଥିବା ବେଳେ ସେ କେତେକ ଭାରତୀୟ ନେତାମାନଙ୍କ ସମ୍ପର୍କରେ ଆସିଥିଲେ ଏବଂ ଭାରତର ସ୍ୱାଧୀନତା ପାଇଁ ଖୁବ ଆଗ୍ରହ ପ୍ରକାଶ କରୁଥିଲେ । ଯୁଦ୍ଧ ପୂର୍ବରୁ ସେ ଜର୍ମାନୀର ବୈଦେଶିକ ବିଭାଗରେ ଯୋଗଦେଇସାରିଥିଲେ । ସୁଭାଷ ଜର୍ମାନୀରେ ପହଞ୍ଚିବା ବେଳକୁ ଟ୍ରଟ ଜର୍ମାନୀର ବୈଦେଶିକ ଅଫିସର ଜଣେ ବିଶିଷ୍ଟ ବ୍ୟକ୍ତି ହୋଇସାରିଥିଲେ । ତାଙ୍କର ଭାରତପ୍ରୀତିଯୋଗୁଁହିଁ ସୁଭାଷଙ୍କୁ ସେ ସବୁପ୍ରକାର ସାହାଯ୍ୟ କରିବାକୁ ଆଗେଇଆସିଲେ । ସୋସଲିଷ୍ଟ ଟ୍ରଟଙ୍କର ନାଜୀ ଓ ଫାସିଷ୍ଟ ବିରୋଧୀ ମନୋଭାବ ସହ ନେତାଜୀଙ୍କର ହୃଦୟର ମିଳନ ହୋଇଥିଲା ଅତି ସ୍ୱାଭାବିକ ଭାବରେ । ଟ୍ରଟ ବସ୍ତୁତଃ ନାଜୀବାଦ ବିରୁଦ୍ଧରେ କାମକରୁଥିବାର ଜଣାଯାଏ । ଯୁଦ୍ଧର ଘନଘଟା ଭିତରେ ଟ୍ରଟ ସୁଇଡେନ ଓ ସୁଇଜରଲାଣ୍ଡ ଗସ୍ତ କରିବା, ଏପରି କି ଷ୍ଟକହୋମର ଜନୈକ ବିଶପଙ୍କ ଜରିଆରେ ନାଜୀବାଦର ମୂଳୋତ୍ପାଟନ ପାଇଁ ହେଉଥିବା ଷଡ଼ଯନ୍ତ୍ରର ଅଂଶ ଗ୍ରହଣ କରୁଥିଲେ ବୋଲି ପରେ ଜଣାଗଲା । ସୁଭାଷ ନାଜୀବାଦର ସ୍ତାବକ ହୋଇଥିଲେ ଟ୍ରଟଙ୍କର ବିଶ୍ୱାସଭାଜନ ହୋଇପାରିନଥାନ୍ତେ । ଯେହେତୁ ଟ୍ରଟ ନାଜୀବାଦ ବିରୁଦ୍ଧରେ ଭାରତର ସ୍ୱାଧୀନତା ଚାହୁଁଥିଲେ, ସେଥିପାଇଁ ହିଁ ସେ ସୁଭାଷଙ୍କୁ ସବୁପ୍ରକାର ସାହାଯ୍ୟ କରିଥିଲେ ।

ଯୁଦ୍ଧକାଳୀନ ଜର୍ମାନୀର ବହୁ ନଥିପତ୍ର ଓ ସରକାରୀ ରେକର୍ଡ଼ କ୍ରମେ ଲୋକ- ଲୋଚନକୁ ଆସିବା ଫଳରେ ସୁଭାଷଙ୍କର ଜର୍ମାନୀ କାର୍ଯ୍ୟକଳାପର ସତ୍ୟତା କ୍ରମେ ଅଧିକରୁ ଅଧିକ ସ୍ୱଷ୍ଟ ହୋଇଯିବ ଏବଂ ଏହାକୁ କେନ୍ଦ୍ର କରି ସମସ୍ତ ସନ୍ଦେହ ଓ ରହସ୍ୟ କ୍ରମେ ଦୂର ହୋଇପାରିବ ବୋଲି ଆଶା କରାଯାଏ ।



## ଅଧ୍ୟାୟ - ପଞ୍ଚତିରିଶ

# ''ଏସିଆ, ଏସିଆବାସୀଙ୍କର''

### ରାସବିହାରୀଙ୍କ ଜୟଯାତ୍ରା

୧୯୪୦ରେ ବିପ୍ଳବୀ ରାସବିହାରୀ ବୋଷଙ୍କର ନୂଆ ସ୍ଲୋଗାନ (Asia for the Asians, go home White)– ଏସିଆ ହେଉଛି ଏସିଆବାସୀଙ୍କର; ଗୋରାମାନେ ଏସିଆ ଛାଡ଼ । ରାସବିହାରୀଙ୍କୁ 'ଲର୍ଡ଼ ହାଡ଼ିଞ୍ଜାଙ୍କ ଉପରେ ବୋମା ନିକ୍ଷେପ' ଅଭିଯୋଗରେ ଖୋଜିବା ବେଳେ ସେ କିପରି 'ରାଜା ପି. ଏନ. ଠାକୁର ଛଦ୍ମନାମରେ ୧୯୧୫ରେ ଭାରତ ପରିତ୍ୟାଗ କରି ଆସିଲେ ଏବଂ ବ୍ରିଟିଶ ପୋଲିସର ୱାରଣ୍ଟକୁ ଅକାମି କରିବା ପାଇଁ ସେ କିପରି ଜାପାନର ନାଗରିକତା ଗ୍ରହଣ କରିଥିଲେ, ତାହା ଏହି ଗ୍ରନ୍ଥର ୨ୟ ଭାଗରେ ବର୍ଣ୍ଣନା କରାଯାଇଛି । ଭାରତ ଛାଡ଼ିବା ଏହା ଭିତରେ ପ୍ରାୟ ପଚିଶ ବର୍ଷ ବିତିଗଲାଣି । ରାସବିହାରୀ ଜାପାନର ନାଗରିକ ହୋଇ ଜାପାନରେ ଆଜୀବନ ବସବାସ କରିବାକୁ ଆସିନଥିଲେ; ସେ ଆସିଥିଲେ ଭାରତବାହାରୁ ଭାରତର ସଶସ୍ତ୍ର ସଂଗ୍ରାମକୁ ତୀବ୍ର କରିବାର ଆୟୋଜନ କରିବାକୁ ଏବଂ ସେଥିରେ ତ୍ରୁଟି କରିନଥିଲେ ସେ । ୧୯୧୫ରେ ଭାରତର ସଶସ୍ତ୍ର ଆନ୍ଦୋଳନର ମୂଲ୍ୟାୟନ କରିବାକୁ ଗଠିତ ହୋଇଥିବା 'ସେଡ଼ିସନ କମିଟି' ଜାପାନରେ ରାସବିହାରୀଙ୍କର ଗତିବିଧି ଓ କାର୍ଯ୍ୟକଳାପର ମୂଲ୍ୟାୟନ କରିବାକୁ ଛାଡ଼ିନଥିଲେ । ଏ ସମ୍ପର୍କରେ କମିଟି ଲେଖିଥିଲେ– ''ତାଙ୍କର ଗୁରୁତ୍ୱ ଓ ବ୍ୟକ୍ତିତ୍ୱ ଆଦୌ ମ୍ଳାନପଡ଼ିନାହିଁ । ତାଙ୍କର ଶକ୍ତି, କ୍ଷମତା ଓ କାର୍ଯ୍ୟପରିସର ସୀମିତ ହୋଇପଡ଼ିଥିଲେ ମଧ୍ୟ ତାଙ୍କର କାର୍ଯ୍ୟକଳାପ ବନ୍ଦ ହୋଇଯାଇଛି ବୋଲି କୁହାଯାଇପାରିବନାହିଁ । ଜାପାନରେ ଅବସ୍ଥାପିତ ଅନ୍ୟତମ ଭାରତୀୟ ବିପ୍ଳବୀ ତାରକ ଦାସଙ୍କ ସହ ବୋଷଙ୍କର ସମ୍ପର୍କ ରହିଅଛି । ବ୍ରିଟିଶ ଜାହାଜ ଭିତରେ ଗୋପନରେ ବିସ୍ଫୋରକ ଦ୍ରବ୍ୟ ରଖି ସେଗୁଡ଼ିକ ଧ୍ୱଂସ କରିବାର ସେମାନଙ୍କର ପରିକଳ୍ପନା ସମ୍ପର୍କରେ ଆମ୍ଭେମାନେ ନିଶ୍ଚିତ ପ୍ରମାଣ ପାଇଲୁ । ବୋଷଙ୍କ ନିକଟକୁ ଲେଖାଯାଇଥିବା କେତେକ ଚିଠି ଜବତ କରି ଆମ୍ଭେମାନେ ପ୍ରମାଣପାଇଅଛୁଁ ଯେ, ସେ ଆମେରିକାରେ ଅବସ୍ଥାପିତ ନରେନ ଭଟ୍ଟଚାର୍ଯ୍ୟ (୨ୟ ପର୍ବ ଦ୍ରଷ୍ଟବ୍ୟ) ବା ଏମ୍. ଏନ. ରାୟଙ୍କ ସହ ବିପ୍ଳବ ସମ୍ପର୍କରେ ସଂଯୋଗ ସ୍ଥାପନ କରିଅଛନ୍ତି ।''

୧୯୨୬ ମସିହା ଅଗଷ୍ଟ ପହିଲାରେ ଜାପାନର 'ନାଗାସାକୀ ସମ୍ମିଳନୀ'ରେ ରାସବିହାରୀ ଯୋଗଦେଲେ । ଉକ୍ତ ସମ୍ମିଳନୀରେ ଚୀନ, ଭାରତ, ଆଫଗାନିସ୍ଥାନ, ଫିଲିପାଇନ, ଭିଏତ୍‌ନାମ ଓ ଜାପାନରୁ ୧୪୨ ଜଣ ପ୍ରତିନିଧି ଯୋଗଦେଇଥିଲେ ।

ଏସିଆବାସୀଙ୍କର ଏହା ସର୍ବପ୍ରଥମ ରାଜନୈତିକ ସମ୍ମିଳନୀ ବୋଲି କୁହାଯାଇପାରେ । ୧୯୩୭ ମସିହା ଅକ୍ଟୋବର ୨୮ ତାରିଖରେ ଟୋକିଓର ସାଙ୍କାଇଡୋଠାରେ ରାସବିହାରୀଙ୍କ ନେତୃତ୍ୱରେ ଗଠିତହେଲା 'ଭାରତୀୟ ସ୍ୱାଧୀନତା ସଂଘ' (Indian Independece League.) ଏବଂ ଭାରତର ସ୍ୱାଧୀନତା ପାଇଁ ସମର୍ଥନ ସଂଗ୍ରହ କରିବା ଉଦ୍ଦେଶ୍ୟରେ ରାସବିହାରୀ କେତେକ ପୁସ୍ତକ ସେହି ସମୟରେ ରଚନା କରିଥିବାର ଜଣାଯାଏ । ଏପରି କି, ସେ ଜାପାନୀ ଓ ଇଂରାଜୀ ଭାଷାରେ ଦୁଇଟି ପତ୍ରିକା ମଧ୍ୟ ଚଳାଇଥିଲେ ।

ହଠାତ୍ ୧୯୪୧ ମସିହା ଡିସେମ୍ବର ସାତ ତାରିଖରେ ଇତିହାସର ପୃଷ୍ଠା ଓଲଟିଗଲା । ୨ୟ ବିଶ୍ୱଯୁଦ୍ଧର ୨ୟ ବର୍ଷ ଶେଷରେ ଜାପାନ ଆମେରିକାର ପାର୍ଲହାର୍ବର ଉପରେ ଅଚାନକ ଆକ୍ରମଣ କରି ଯୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ଯୋଗଦେଲା ଏବଂ ଡିସେମ୍ବର ସାତ ତାରିଖରେ ଇଂଲାଣ୍ଡ ଓ ଆମେରିକା ବିରୁଦ୍ଧରେହିଁ ଆନୁଷ୍ଠାନିକ ଯୁଦ୍ଧ ଘୋଷଣା କଲା । ରାତି ପାହିଲାବେଳକୁ ସମଗ୍ର ଜାପାନୀ ଜାତି ପାଲଟିଗଲା ଇଂଲଣ୍ଡର ଶତ୍ରୁ ଏବଂ ସେହି ଦୃଷ୍ଟିରୁ ଭାରତର ପରମବନ୍ଧୁ । ରାସବିହାରୀ ସ୍ଲୋଗାନ ଦେଲେ ''ଏସିଆ ଏସିଆବାସୀଙ୍କର; ଗୋରାମାନେ ଏସିଆ ଛାଡ଼ ।''

ଏକା ରାସବିହାରୀ ନୁହନ୍ତି, ବର୍ମାଠାରୁ ଜାପାନ ପର୍ଯ୍ୟନ୍ତ ସବୁ ପ୍ରବାସୀ ଭାରତୀୟ ଜାଗିଉଠିଲେ । ଦେଶ ଭିତରେ ଚାଲୁଥିବା ସଶସ୍ତ୍ର ବିପ୍ଳବକୁ ସାଫଲ୍ୟମଣ୍ଡିତ କରିବାପାଇଁ ପ୍ରବାସୀ ଭାରତୀୟମାନେ ତ ବହୁ ଦିନୁ ମନ ସ୍ଥିର କରିଥିଲେ । ବିଶ୍ୱର ମହାଶକ୍ତିଗୁଡ଼ିକ ଭିତରେ ଆରମ୍ଭ ହୋଇଯାଇଥିବା କଳହର ସୁଯୋଗ ନେଇ ସେମାନେ ସଶସ୍ତ୍ର ବିପ୍ଳବର ଆୟୋଜନ କରୁଥିଲେ ଭାରତ ବାହାରୁ । ବାବା ଅମର ସିଂ ପ୍ରଥମ ବିଶ୍ୱଯୁଦ୍ଧ ବେଳେ ଭାରତରେ ସଶସ୍ତ୍ର ବିପ୍ଳବରେ ଯୋଗଦେଇ ବର୍ମାର ମାଣ୍ଡାଲେ ଜେଲରେ ବାଇଶବର୍ଷ କାଳ କାରାଦଣ୍ଡ ଭୋଗିସାରିଥିଲେ । ଜେଲରୁ ମୁକ୍ତହୋଇ ସେ ପଳାଇଗଲେ ଥାଇଲାଣ୍ଡ, ଯାହା କି ସେତେବେଳେ 'ଶ୍ୟାମ' ନାମରେ ପରିଚିତ ଥିଲା । ଥାଇଲାଣ୍ଡରେ ପହଞ୍ଚିବା ସଙ୍ଗେ ସଙ୍ଗେ ଆରମ୍ଭ କରିଦେଇଥିଲେ ସଶସ୍ତ୍ର ବିପ୍ଳବର ଆୟୋଜନ । ଦୀର୍ଘ ବାଇଶବର୍ଷ ଜେଲରେ ରଖି ଇଂରେଜ ସରକାର ତାଙ୍କୁ ଦବାଇପାରିନଥିଲେ; ବରଂ ଭାରତର ସ୍ୱାଧୀନତା-ପିପାସୀ ତାଙ୍କର ହୋଇଉଠିଥିଲା ଆହୁରି ଦୁର୍ବାର । ଭାରତୀୟମାନଙ୍କ ଭିତରେ ବ୍ରିଟିଶ-ବିରୋଧୀ ପ୍ରଚାର କରିବା ଥିଲା ତାଙ୍କର ମୁଖ୍ୟ କାର୍ଯ୍ୟକ୍ରମ । ତାଙ୍କର ସାଥି ଥିଲେ ପଞ୍ଜାବର ଜ୍ଞାନୀ ପ୍ରୀତମ ସିଂହ । ପ୍ରୀତମ ସିଂହ ବ୍ୟାଙ୍କକରେ ଶିଖ ଧର୍ମ ପ୍ରଚାର କାର୍ଯ୍ୟ କରୁଥିଲେ । ପରିଣତ ବୟସରେ ବାବା ଅମର ସିଂହ ସବୁ ଦାୟିତ୍ୱ ଅର୍ପଣ କରିଥିଲେ ପ୍ରୀତମ ସିଂହଙ୍କ ଉପରେ । ପ୍ରୀତମ ସିଂହ ଓଜସ୍ୱିନୀ ଭାଷାରେ ଯେଉଁ ସବୁ ଗୋପନ ଚିଠି ଭାରତୀୟମାନଙ୍କ ଉଦ୍ଦେଶ୍ୟରେ ଲେଖୁଥିଲେ ତାହା ବର୍ମା, ମାଳୟ ଏପରିକି ଭାରତରେ ଥିବା ସୈନ୍ୟମାନଙ୍କ ଶିବିରରେ ମଧ୍ୟ ପହଞ୍ଚିଯାଉଥିଲା ।

ସେହିଭଳି ବାବା ଉସମାନ ଖାଁ ସାଂଘାଇରେ ଏକ ଗୁପ୍ତ ବିପ୍ଳବୀଦଳ ଗଠନ କରି ବହୁ

ବୈପ୍ଳବିକ ପ୍ରଚାର କାର୍ଯ୍ୟ କରୁଥିଲେ । ସେଥିପାଇଁ ସେ ଏକ ପ୍ରଚାରପତ୍ର ମଧ୍ୟ ନିୟମିତ ଛାପୁଥିଲେ ଏବଂ ସେହି ସବୁ ପ୍ରଚାରପତ୍ର ଭାରତୀୟ ସୈନ୍ୟବାହିନୀ ମଧ୍ୟରେ ବଣ୍ଟାଯାଉଥିଲା । ମହାନ୍ ପଣ୍ଡିତ, ଦାର୍ଶନିକ ଓ ରବୀନ୍ଦ୍ରନାଥଙ୍କର ଏକନିଷ୍ଠ ଛାତ୍ର ସ୍ୱାମୀ ସତ୍ୟାନନ୍ଦପୁରୀ ମଧ୍ୟ ସେତେବେଳେ ଥାଇଲାଣ୍ଡରେ । ସତ୍ୟାନନ୍ଦପୁରୀଙ୍କ ଜୀବନ-ଚରିତ ବଡ଼ ବୈଚିତ୍ର୍ୟପୂର୍ଣ୍ଣ । ସନ୍ନ୍ୟାସ ନେବା ପୂର୍ବରୁ ତାଙ୍କର ନାମ ଥିଲା ପ୍ରଫୁଲ୍ଲ କୁମାର ସେନ । କଲିକତା ବିଶ୍ୱବିଦ୍ୟାଳୟରୁ ଏମ. ଏ. ପାଶକରି ସେ ବିପ୍ଳବୀଦଳ 'ଅନୁଶୀଳନ ସମିତି'ରେ (୨ୟ ପର୍ବ ଦ୍ରଷ୍ଟବ୍ୟ) ଯୋଗଦାନ କରିଥିଲେ । କେତେକ ବୈପ୍ଳବିକ ଆନ୍ଦୋଳନରେ ଯୋଗଦେଇ ସେ ସନ୍ନ୍ୟାସ ଗ୍ରହଣ କରିଥିଲେ ଏବଂ ସାରା ଭାରତ ପଦବ୍ରଜରେ ଭ୍ରମଣ କରିଥିଲେ; ଏପରି କି କିଛିଦିନ ହିମାଳୟରେ ତପସ୍ୟା କରିଥିବାର ପ୍ରମାଣ ମିଳେ । ତା'ପରେ ସେ କଲିକତା ବିଶ୍ୱବିଦ୍ୟାଳୟରେ 'ପ୍ରାଚ୍ୟ ଦର୍ଶନ' ବିଷୟରେ ଅଧ୍ୟାପନା ମଧ୍ୟ କରିଥିଲେ । ୧୯୩୨ ମସିହାରେ ଥାଇଲାଣ୍ଡ ଶିକ୍ଷା ବିଭାଗର ଆମନ୍ତ୍ରଣକ୍ରମେ ସେ ଗଲେ ଥାଇଲାଣ୍ଡ । ସେହିଠାରେ ପୁଣି ଆରମ୍ଭହେଲା ଭାରତର ସ୍ୱାଧୀନତା ପାଇଁ ଅନନ୍ୟତପସ୍ୟା । ତାଙ୍କରି ନେତୃତ୍ୱରେ ଗଠିତ ହେଲା 'ଥାଇ ଭାରତ ସାଂସ୍କୃତିକ ସଂଘ' । ଏହି ସଂଘକୁ କେନ୍ଦ୍ରକରି ଗଢ଼ିଉଠିଥାଏ ଗୋଟିଏ ଭାରତୀୟ ବିପ୍ଳବୀ ଗୋଷ୍ଠୀ । ସମସ୍ତଙ୍କର ସେହି ଗୋଟିଏ ଲକ୍ଷ୍ୟ ଭାରତର ସ୍ୱାଧୀନତା । ଏହିଭଳି ଭାବେ ଥାଇଲାଣ୍ଡ ସାଂଘାଇ, ମାଳୟ, ସୁମାତ୍ରା, ବୋର୍ଣ୍ଣିଓ ଓ ଜାପାନ ପ୍ରଭୃତିରେ ଯେତେବେଳେ ସରଗରମ ଅବସ୍ଥା, ସେତିକି ବେଳେ ଜାପାନ ଯୁଦ୍ଧରେ ଲମ୍ଫ ପ୍ରଦାନ କଲା । ସୁନାରେ ସୋହାଗା ଭଳି ଏହା ଆଣିଦେଲା ଏକ ସୁବର୍ଣ୍ଣ ସୁଯୋଗ । ଜାପାନ ଯୁଦ୍ଧ ଘୋଷଣା କରିବା ସଙ୍ଗେ ସଙ୍ଗେ ଡିସେମ୍ବର ୮ ତାରିଖରେ ଜାପାନୀ ସୈନ୍ୟମାନେ ଥାଇଲାଣ୍ଡ ଦଖଲ କରିଗଲେ ଏବଂ ଏହାର ପ୍ରାୟ ୨୪ ଘଣ୍ଟା ପରେ ବାବା ଅମର ସିଂହଙ୍କ ନେତୃତ୍ୱରେ ଗଠିତ ହେଲା ''ଭାରତୀୟ ସ୍ୱାଧୀନତା ସଂଘ' । ସଙ୍ଗେ ସଙ୍ଗେ ସ୍ୱାମୀ ସତ୍ୟାନନ୍ଦଙ୍କର 'ଥାଇ-ଭାରତ ସାଂସ୍କୃତିକ ସଂଘ'ର ନାମ ହେଲା "Indian National Council." । ଜାପାନୀ ସୈନ୍ୟମାନଙ୍କ ଅଗ୍ରଗତି ଓ ବ୍ରିଟିଶ ସୈନ୍ୟମାନଙ୍କର ଦାରୁଣ ପରାଜୟ ଭାରତୀୟ ବିପ୍ଳବୀମାନଙ୍କ ଭିତରେ ସୃଷ୍ଟିକଲା ଅସୀମ ଆନନ୍ଦ, ଉତ୍ସାହ ଓ ଉଦ୍ଦୀପନା । ବାବା ଅମର ସିଂହ, ଜ୍ଞାନୀ ପ୍ରୀତମ ସିଂହ, ବାବା ଉସମାନ ଖାଁ ଓ ସ୍ୱାମୀ ସତ୍ୟାନନ୍ଦ ପୁରୀଙ୍କର ସମସ୍ତ ଅନୁଷ୍ଠାନ ଏକଜୁଟ ହୋଇଗଲେ ଏବଂ ଖବର ଗଲା ରାସବିହାରୀଙ୍କ ପାଖକୁ ।

ଚାହୁଁ ଚାହୁଁ ପୂର୍ବ-ଏସିଆରେ ଥିବା ପ୍ରାୟ ତିରିଶ ଲକ୍ଷ ଭାରତୀୟଙ୍କ ଭିତରେ ବିଭିନ୍ନ ଦେଶରେ 'ଭାରତ ସ୍ୱାଧୀନତା ସଂଘ'ର ଶାଖାସମୂହ ପ୍ରତିଷ୍ଠିତ ହୋଇଗଲା । ଭାରତୀୟମାନଙ୍କ ଭିତରେ ସୃଷ୍ଟିହେଲା ଅଭୂତପୂର୍ବ ଆଶା ଓ ଉଦ୍ଦୀପନା । ଜାପାନ ଏକ ଏସୀୟ ଦେଶ, ସୁତରାଂ ତାହାର ବିଜୟରେ ଏସିଆବାସୀଙ୍କ ମନରେ ଗର୍ବବୋଧ ସୃଷ୍ଟି ହେବା ଏକାନ୍ତ ସ୍ୱାଭାବିକ । ଆଜିଯାଏ ୟୁରୋପୀୟମାନେ ଏସିଆରେ ସାମ୍ରାଜ୍ୟ ବିସ୍ତାର କରି ଏବଂ ଉପନିବେଶ ସ୍ଥାପନ କରିଆସିଛନ୍ତି ।

ଏସିଆବାସୀଙ୍କୁ ଶୋଷଣକରି, ସେମାନଙ୍କୁ ରକ୍ତଶୂନ୍ୟ କରି ଛିଡ଼ାହୋଇଛି ଇଂରେଜ ସାମ୍ରାଜ୍ୟବାଦର ନଭଶ୍ଚୁମ୍ବୀ ଅଟ୍ଟାଳିକା । ଇଂରେଜର ସାମ୍ରାଜ୍ୟ ବିସ୍ତାରର ଇତିହାସ କେବଳ ବିଜୟର ଇତିହାସ । ପରାଜୟର ଗ୍ଲାନି ସେ କେବେ ଅନୁଭବ କରିନଥିଲା; ଏହି ପ୍ରଥମ ଥରପାଇଁ ବିପର୍ଯ୍ୟୟର ତିକ୍ତତା ତାକୁ ଚାଖିବାକୁ ପଡୁଛି ତା'ର ଶହ ଶହ ବର୍ଷର ଇତିହାସରେ । ଏହି ପ୍ରଥମ ଥର ପାଇଁ ଏକ ଏସୀୟ ଶକ୍ତି ପାଖରେ ତାକୁ ପରାଜୟ ବରଣ କରିବାକୁ ପଡ଼ିଲା । ସୁତରାଂ ସ୍ୱାଧୀନତାକାମୀ ପ୍ରତ୍ୟେକ ଏସିଆବାସୀ ଆଜି ଜାପାନର ବିଜୟରେ ଉଲ୍ଲସିତ । ସ୍ୱାଧୀନତାକାମୀ ପ୍ରତ୍ୟେକ ଭାରତବାସୀ ଜାପାନର ଏହି ବିଜୟକୁ କାମରେ ଲଗାଇବାକୁ ପ୍ରସ୍ତୁତ । ରାସବିହାରୀଙ୍କର ସେଥିପାଇଁ ନୂଆ ସ୍ଲୋଗାନ "India for Indians, Asia for the Asians, Go home white," (ଭାରତ ଭାରତବାସୀଙ୍କର, ଏସିଆ ଏସିଆବାସୀଙ୍କର, ଗୋରାମାନେ ନିଜ ଘରକୁ ଯାଅ ।) ଦୀର୍ଘ ୨୫ ବର୍ଷ ଧରି ରାସବିହାରୀ ଉଦ୍ୟମ କରିଆସିଛନ୍ତି ଜାପାନର ସାମରିକ ଶକ୍ତିକୁ ଓ ସରକାରୀ ନୀତିକୁ ତଥା ଜାପାନର ଜନମତକୁ ଲଗାଇବେ ଭାରତର ମୁକ୍ତିପାଇଁ, ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଓ ସଶସ୍ତ୍ର ବିପ୍ଳବର ସାଫଲ୍ୟ ପାଇଁ । ତାଙ୍କର ସେହି ଅନନ୍ୟ ତପସ୍ୟା ସେହି କୃଚ୍ଛ୍ର ସାଧନା ଆଜି ମୂର୍ତ୍ତିମନ୍ତ ହେବାକୁ ଯାଉଛି ଜାପାନର ବିଜୟରେ ।

୧୯୪୧ ମସିହାରେ ଥାଇଲାଣ୍ଡର ପତନ ହେଲା, ପଞ୍ଜାବ ରେଜିମେଣ୍ଟ ଜିତ୍ରା ନାମକ ସ୍ଥାନରେ ତିନିଦିନ କାଳ ଜାପାନୀ ସୈନ୍ୟମାନଙ୍କ ସହ ଲଢ଼େଇ କରି ଆତ୍ମସମର୍ପଣ କଲେ । ବନ୍ଦୀ ହେଲା ସମଗ୍ର ରେଜିମେଣ୍ଟ ଏବଂ ବନ୍ଦୀ ହେଲେ କ୍ୟାପ୍‌ଟେନ ମୋହନ ସିଂହ । ସମୁଦାୟ ପୂର୍ବ-ଏସିଆରେ ଏହି ପରିସ୍ଥିତି । ଜାପାନ ମାଡ଼ିଚାଲିଥାଏ; ବ୍ରିଟିଶସୈନ୍ୟ ଛାଡ଼ି ପଳାଉଥାନ୍ତି । ଏଇଠି ଇଂରେଜମାନଙ୍କର ଅସଲରୂପ ଧରାପଡ଼ିଗଲା । ପଳାଇଗଲାବେଳେ ଇଂରେଜ ସୈନ୍ୟାଧକ୍ଷମାନେ ଚେଷ୍ଟା କରୁଥିଲେ ଗୋରା ସୈନ୍ୟମାନଙ୍କୁ ଯଥାସମ୍ଭବ ନିରାପଦ ସ୍ଥାନକୁ ପଠାଇଦେବାକୁ । କିନ୍ତୁ ଭାରତୀୟ ସୈନ୍ୟମାନଙ୍କୁ ପଠାଇଦେଉଥିଲେ ଅଧିକ ବିପଜ୍ଜନକ ଫ୍ରଣ୍ଟକୁ । ଏହି ଭଳି ହଜାର ହଜାର ଭାରତୀୟ ସୈନ୍ୟ ବିଶେଷ ଅରକ୍ଷିତ ଓ ବିପନ୍ନ ଅବସ୍ଥାରେ ଜାପାନୀ ସୈନ୍ୟଙ୍କର ସମ୍ମୁଖୀନ ହେଉଥିଲେ । ଏପରି କି ପରାଜୟର ନିଶ୍ଚିତ ଆଶଙ୍କା ଦେଖି ଇଂରେଜ କ୍ୟାପ୍‌ଟେନମାନେ ଛାଉଣିରୁ ଭଲ ଭଲ ଖାଦ୍ୟଦ୍ରବ୍ୟମାନ ନେଇ ପଳାଇଯାଉଥିଲେ ଏବଂ ଭାରତୀୟ ସୈନ୍ୟମାନଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ରଖୁନଥିଲେ । ସୁତରାଂ ଏକପକ୍ଷରେ ବିଜୟୋଲ୍ଲାସରେ ଉନ୍ମତ୍ତ ଜାପାନୀ ସୈନ୍ୟ ଓ ଅନ୍ୟ ଦିଗରେ ଆତଙ୍କିତ ଓ ପଳାୟମାନ ସ୍ୱାର୍ଥପର ଇଂରେଜ ସୈନ୍ୟାଧକ୍ଷଙ୍କ ମଝିରେ ପେଷି ହୋଇ ମର୍ମନ୍ତୁଦ ଯନ୍ତ୍ରଣା ଭୋଗକରୁଥିଲେ ଭାରତୀୟ ସୈନ୍ୟମାନେ । ଯେଉଁମାନଙ୍କର ସାମ୍ରାଜ୍ୟ ରକ୍ଷା କରିବାକୁ ସେମାନେ ବିପନ୍ନ, ସେହି ଇଂରେଜମାନଙ୍କ ଦ୍ୱାରା ସେମାନେ ଉପେକ୍ଷିତ । ଏହିଭଳି ପରିସ୍ଥିତିରେ ବହୁ ଭାରତୀୟ ସୈନ୍ୟଙ୍କ ମଧ୍ୟରେ ଇଂରେଜମାନଙ୍କ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ଦେଖାଦେଇଥିଲା । କ୍ୟାପ୍‌ଟେନ୍ ମୋହନ ସିଂହଙ୍କ ମନରେ ମଧ୍ୟ ଠିକ୍ ସେହି ପ୍ରତିକ୍ରିୟା ଏବଂ ଅସନ୍ତୋଷ ସୃଷ୍ଟି ହୋଇଥିଲା ।

ଡିସେମ୍ବର ୧୧ ତାରିଖରେ ଜ୍ଞାନି ପ୍ରୀତମ ସିଂ ଜାପାନର ପ୍ରଧାନ ସେନାପତି ଫୁଜିୟାରାଙ୍କୁ ନେଇ ଥାଇଲାଣ୍ଡର କେତବାରୁଠାରେ ଆତ୍ମସମର୍ପଣ କରିଥିବା ୧୪ ନମ୍ବର ପଞ୍ଜାବ ରେଜିମେଣ୍ଟ ଶିବିରରେ ପହଞ୍ଚିଲେ । ସେଠାରେ ପ୍ରୀତମ ସିଂ ଭାରତର ସ୍ୱାଧୀନତା ପାଇଁ ଏକ ଜାତୀୟ ସେନାବାହିନୀ ଗଢ଼ିବାର ଆବଶ୍ୟକତା କଥା ମୋହନ ସିଂଙ୍କୁ ବୁଝାଇ ଥିଲେ ଏବଂ ଏଥିପାଇଁ ଜାପାନ ସରକାରଙ୍କର ସମର୍ଥନ ରହିଥିବା କଥା ତାଙ୍କୁ ଜଣାଇଥିଲେ ।

ମୋହନ ସିଂ ଏଥିରେ ରାଜିହେଲେ; ସୈନ୍ୟବାହିନୀ ଭିତରେ ମଧ୍ୟ ସେହିଭଳି ମନୋଭାବ ଥିଲା । ନେତାଜୀଙ୍କର ଆଜାଦ ହିନ୍ଦ ଫୌଜର ଆଦର୍ଶରେ ଏସିଆରେ ପ୍ରଥମ ଆଜାଦ ହିନ୍ଦ ଫୌଜ ଗଠିତହେଲା । ସେ ଦିନ ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ ଇତିହାସରେ ନିଶ୍ଚୟ ଏକ ସ୍ମରଣୀୟ ଦିବସ । ମୋହନ ସିଂ ପ୍ରଥମେ ତାଙ୍କ ରେଜିମେଣ୍ଟରେ ଚଉବନ ଜଣ ସୈନିକଙ୍କର ସ୍ୱୀକୃତି ପାଇ ୧୯୪୧ ଡିସେମ୍ବର ମାସ ୧୦ ତାରିଖରେ ଆଇ. ଏନ୍. ଏ. ଗଠନ କଲେ ଏବଂ କ୍ୟାପ୍‌ଟେନ ମୋହନ ସିଂ ହେଲେ ଏହାର ପ୍ରଥମ ଜି. ଓ. ସି. (ଜେନେରାଲ ଅଫିସର କମାଣ୍ଡିଂ) ଏବଂ ନୂତନ ଇତିହାସର ଯେଉଁମାନେ ନାୟକ ଥିଲେ, ସେମାନେ ହେଉଛନ୍ତି ଜ୍ଞାନି ପ୍ରୀତମ ସିଂ ଓ ଜାପାନ ସେନାପତି ଫୁଜିୟାରା । ଯୁଦ୍ଧବନ୍ଦୀମାନଙ୍କ ଉଦ୍ଦେଶ୍ୟରେ ମୋହନ ସିଂ କହିଥିଲେ- ମୁଁ ମୋର ବିବେକକୁ ଏହା ବୁଝାଇପାରୁନାହିଁ ଯେ ଯେଉଁ ଆଦର୍ଶ ଭାରତ ପାଇଁ ପ୍ରଯୁଜ୍ୟ ହେଉନାହିଁ ସେହି ଆଦର୍ଶ ବା ଲକ୍ଷ୍ୟ ପ୍ରତିଷ୍ଠା ପାଇଁ ଭାରତୀୟ ତାର ରକ୍ତଦାନ କରିବ । ଆକ୍ରମଣର ଆଶଙ୍କାରେ ବର୍ତ୍ତମାନ ବ୍ରିଟିଶ ସରକାର ଘୋଷଣା କରୁଅଛି ଯେ ତାହା ସ୍ୱାଧୀନତା, ଗଣତନ୍ତ୍ର ଓ ଅନ୍ୟାନ୍ୟ ମହାନ୍ ଆଦର୍ଶ ପାଇଁ ଯୁଦ୍ଧକରୁଅଛି । ତାକୁ ସାହାଯ୍ୟ କରିବା ପାଇଁ ସେ ବର୍ତ୍ତମାନ ସମସ୍ତଙ୍କୁ ନିବେଦନ କରୁଅଛି । ତାର ଜାତୀୟଜୀବନର ସବୁଠାରୁ ଜଟିଳ ସମୟରେ ଏବଂ ଯେତେବେଳେ ସେ ନିଜର ସ୍ୱାଧୀନତାକୁ ରକ୍ଷା କରିବା ପାଇଁ ଭାରତକୁ ବ୍ୟବହାର କରୁଅଛି, ସେତେବେଳେ ମଧ୍ୟ ଭାରତୀୟ ସ୍ୱାଧୀନତା ପ୍ରଶ୍ନ ବିଚାର କରିବାକୁ ସେ ନାସ୍ତିକରିଦେଇଛି । ତା' ପରିବର୍ତ୍ତେ ଭାରତୀୟ ନେତାମାନଙ୍କୁ ଗିରଫ କରିବାକୁ ନିର୍ଦ୍ଦେଶ ଦିଆଗଲା । ସେମାନଙ୍କର ଦୋଷ ଯେ, ସେମାନେ ଭାରତର ସ୍ୱାଧୀନତା ପାଇଁ ଦାବିକଲେ । ଆମେ ଭାରତୀୟମାନେ କାହିଁକି ସେଭଳି ଲକ୍ଷ୍ୟ ହାସଲ ପାଇଁ ଲଢ଼ିବୁ, ଯାହାର ନାମୋଚ୍ଚାରଣ ମାତ୍ର କଲେ ଆମର ବିଶିଷ୍ଟ ନେତାମାନଙ୍କୁ କାରାବରଣ କରିବାକୁ ପଡ଼ିବ ? ଆମେ ଭାରତୀୟମାନେ କାହିଁକି ଲଢୁଛୁ ? ଏହାର ଏକମାତ୍ର ଯେଉଁ ଉତ୍ତର ମୋ' ମନକୁ ଆସୁଛି, ତାହା ହେଉଛି ଆମ୍ଭମାନଙ୍କୁ ପୁରା ବୋକା ବନେଇଦିଆଯାଇଛି ଏବଂ ଆମେ ଦରିଦ୍ର ଭାରତବାସୀଙ୍କର ଜୀବନ ବିନିମୟରେ ଓ କେବଳ ବ୍ରିଟିଶର ମଙ୍ଗଳପାଇଁ ଆମେ ଭଡାଟିଆ ସୈନ୍ୟ ଭାବରେ ଲଢୁଛୁଁ । ଏହିଭଳି ଭାବରେ ଭାରତର ଧନବଳ, ଲୋକବଳ ଏବଂ ଅସ୍ତ୍ରଶସ୍ତ୍ରକୁ ସମ୍ବଳ କରି ଆମେ ଭାରତକୁ ପରାଧୀନ ରଖିବା ପାଇଁ ବ୍ରିଟିଶ ପାଇଁ ଲଢୁଛୁଁ ।

୧୯୪୨ ମସିହା ଜାନୁୟାରୀ ମାସରେ ମାଲୟର କୁଆଲାଲମପୁରରେ 'ଭାରତୀୟ ସ୍ୱାଧୀନତା ସଂଘ'ର ଶାଖା ପ୍ରତିଷ୍ଠିତ ହେଲା ଏବଂ ସେଠାରେ ଥିବା ୫୦୦୦ (ପାଞ୍ଚହଜାର)

ଭାରତୀୟ ବନ୍ଦୀ ସୈନ୍ୟମାନଙ୍କ ମଧ୍ୟରୁ ଚାରି ହଜାର ବନ୍ଦୀ ମୋହନ ସିଂଙ୍କ ଭାଷଣରେ ଉଦ୍‌ବୁଦ୍ଧ ହୋଇ ଆଇ. ଏନ. ଏ.ରେ ଯୋଗଦେଲେ । ମେଜର ଫୁଜିୟାରା ମଧ୍ୟ ଏହି ସଭାରେ ଭାଷଣ ଦେଇଥିଲେ । ସିଙ୍ଗାପୁରର ପତନ ହେଲା ଫେବୃୟାରୀ ୧୫ ତାରିଖରେ । ସିଙ୍ଗାପୁରରେ ଇଂରେଜ ସୈନ୍ୟମାନେ ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ ହେଲେ ଏବଂ ଆତ୍ମସମର୍ପଣ ସମୟରେ ଭାରତୀୟ ସୈନ୍ୟମାନଙ୍କର ଅବସ୍ଥା ଅତିଶୟ ଦୟନୀୟ ହୋଇଯାଇଥିଲା; ଫଳରେ ସେମାନଙ୍କ ଭିତରେ ସୃଷ୍ଟିହୋଇଥିଲା ତୀବ୍ର ବ୍ରିଟିଶ-ବିରୋଧୀ ମନୋଭାବ । ଫେବୃୟାରୀ ୧୬ ତାରିଖରେ ଜାପାନ ପ୍ରଧାନମନ୍ତ୍ରୀ ଟୋଜୋ ଜାପାନ ପାର୍ଲିଆମେଣ୍ଟ 'ଡେଟ୍'ରେ ଭାଷଣ ଦେଇ ଭାରତର ସ୍ୱାଧୀନତା ପାଇଁ ପ୍ରତିଶ୍ରୁତି ଘୋଷଣା କରିଥିଲେ ।

ଠିକ୍ ସେହି ଦିନ ଫାରେକ ପାର୍କର ସମସ୍ତ ବନ୍ଦୀ ସୈନ୍ୟଙ୍କୁ ଏକତ୍ରିତ କରାଗଲା । ଏହି ସମାବେଶରେ ଇଂରେଜ ସେନାପତି ଲେଫ୍‌ଟନାଣ୍ଟ କର୍ଣ୍ଣେଲ ହଣ୍ଟ, ଜାପାନୀ ସୈନ୍ୟାଧ୍ୟକ୍ଷ ମେଜର ଫୁଜିୟାରା ଓ କ୍ୟାପ୍‌ଟେନ ମୋହନ ସିଂ ଉଦ୍‌ବୋଧନ ଦେଇଥିଲେ । ପ୍ରଥମେ ତାଙ୍କ ଅଧୀନରେ ଥିବା ସମସ୍ତ ସୈନ୍ୟଙ୍କୁ ଆନୁଷ୍ଠାନିକ ଭାବେ ମେଜର ଫୁଂଜିୟାରାଙ୍କ ହାତରେ ସମର୍ପଣ କଲେ । ଫୁଜିୟାରା ବନ୍ଦୀ ସୈନ୍ୟମାନଙ୍କୁ ଗ୍ରହଣ କରି ଭାଷଣରେ କହିଲେ — ''ମୁଁ ଜାପାନ ସରକାରଙ୍କ ପକ୍ଷରୁ ବନ୍ଦୀ ସୈନ୍ୟମାନଙ୍କୁ ଗ୍ରହଣ କରି ଆଇ.ଏନ୍.ଏ.ର ଜି.ଓ ସି. କ୍ୟାପ୍‌ଟେନ୍ ମୋହନ ସିଂଙ୍କ ହସ୍ତରେ ଅର୍ପଣ କରୁଅଛି । ବ୍ରିଟିଶ ସାମ୍ରାଜ୍ୟବାଦର ଦିନ ଶେଷହୋଇଆସୁଛି ଏବଂ ଏହା ଭାରତର ସ୍ୱାଧୀନତା ପାଇଁ ଏକ ସୁବର୍ଣ୍ଣ ସୁଯୋଗ । ଜାଗ୍ରତ ହେବା ପାଇଁ ଓ ଆପଣମାନଙ୍କ ଦେଶର ସ୍ୱାର୍ଥପାଇଁ ସଂଗ୍ରାମ କରିବାକୁ ଏହା ପ୍ରକୃଷ୍ଟ ସମୟ । ଭାରତୀୟମାନେ ବ୍ରିଟିଶ ନାଗରିକ ହୋଇଥିଲେ ବି ଏବଂ ସେ ଦୃଷ୍ଟିରୁ ଜାପାନର ଶତ୍ରୁପକ୍ଷ ହୋଇଥିଲେ ମଧ୍ୟ ଜାପାନ ଭାରତୀୟମାନଙ୍କ ସ୍ୱାଧୀନତା ସଂଗ୍ରାମରେ ସବୁମତେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛି । କାରଣ ଆମ୍ଭେମାନେ ଜାଣୁ ଯେ, ଭାରତୀୟମାନେ ନିଜ ଇଚ୍ଛାରେ ନାଗରିକ ନୁହଁନ୍ତି ।

କ୍ୟାପ୍‌ଟେନ ମୋହନ ସିଂଙ୍କର ଭାଷଣ ଖୁବ୍ ଉତ୍ତେଜନାକାରୀ ହୋଇଥିଲା । ଭାରତୀୟ ବନ୍ଦୀମାନଙ୍କ ଉଦ୍ଦେଶ୍ୟରେ ସେ କହିଲେ — ''ପ୍ରାଚ୍ୟରେ ବ୍ରିଟିଶ ଶୋଷଣର ଦିନ ଶେଷହୋଇଗଲାଣି; ଶେଷହୋଇଗଲାଣି ସେମାନଙ୍କର ଘୃଣ୍ୟ ଶାସନ । ସେମାନେ ମାଳୟ ଓ ସିଙ୍ଗାପୁରରୁ ବିତାଡ଼ିତ ହୋଇସାରିଲେଣି; ଖୁବ୍ ଶୀଘ୍ର ବର୍ମାରୁ ମଧ୍ୟ ବିତାଡ଼ିତ ହେବେ । ସୁତରାଂ ଭାରତ ଆଜି ସ୍ୱାଧୀନତାର ଦ୍ୱାରଦେଶରେ ଦଣ୍ଡାୟମାନ ଏବଂ ଏହି ରାକ୍ଷସୀ ଇଂରେଜ ଶାସନ ଚିରଦିନ ପାଇଁ ଭାରତରୁ ନିଶ୍ଚିହ୍ନ କରିଦେବାର ଦାୟିତ୍ୱ ଆଜି ପ୍ରତ୍ୟେକ ଭାରତୀୟ ଉପରେ ପଡ଼ିଛି । ସୁଖର କଥା ଜାପାନୀମାନେ ଆମ୍ଭମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟଦାନର ପ୍ରତିଶ୍ରୁତି ଦେଇଅଛନ୍ତି ଏବଂ ଏହାର ସୁଯୋଗ ନେଇ ଆମେ ଭାରତରେ ଚାଳିଶ କୋଟି ଲୋକଙ୍କର ମୁକ୍ତିର ଦାୟିତ୍ୱ ନେବା କି ନାହିଁ ତାହା ଆମକୁହିଁ ସ୍ଥିର କରିବାକୁ ହେବ । ଏହି ଉଦ୍ଦେଶ୍ୟରେହିଁ ଆମ୍ଭେମାନେ ଗଠନ କରୁଛୁ ଭାରତୀୟ ଜାତୀୟବାହିନୀ ଏବଂ

ଏହି ବାହିନୀରେ ଯୋଗଦେବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି ।'' ମୋହନ ସିଂ ଭାଷଣ ଶେଷ କରିବା ସଙ୍ଗେ ସଙ୍ଗେ ସମବେତ ବନ୍ଦୀ ସୈନ୍ୟମାନେ ବିପୁଳ ହର୍ଷଧ୍ୱନି କରିଥିଲେ । ପ୍ରାୟ ତିରିଶ ହଜାର ବନ୍ଦୀ ସୈନ୍ୟ କ୍ରମେ ଆଇ. ଏନ. ଏ.ରେ ଯୋଗଦେଲେ ।

୧୯୪୨ ମସିହା ମାର୍ଚ୍ଚ ୨୮ରୁ ୩୦ ପର୍ଯ୍ୟନ୍ତ ରାସବିହାରୀଙ୍କ ପରାମର୍ଶକ୍ରମେ ଟୋକିଓଠାରେ ଏକ ବୈଠକ ବସିଥିଲା । 'ଭାରତୀୟ ସ୍ୱାଧୀନତା ସଂଘ' ଯାହାକି ଆଜିଯାଏଁ ପ୍ରାୟ ଅନିଶ୍ଚିତ ଅବସ୍ଥାରେ ଥିଲା, ତାକୁ ପ୍ରକାଶ୍ୟ ଭାବରେ ଘୋଷଣା କରାଗଲା । ଉକ୍ତ ବୈଠକରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ପାଶ ହୋଇଥିଲା, ସେଥି ମଧ୍ୟରୁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବର ଉଲ୍ଲେଖ ଥିଲା ଭାରତୀୟମାନଙ୍କ ଦ୍ୱାରାହିଁ ଭାରତ ବିରୁଦ୍ଧରେ ସାମରିକ ଅଭିଯାନ କରାଯିବ । ଆବଶ୍ୟକ ହେଲେ ଜାପାନ ସରକାରଙ୍କଠାରୁ ସାମରିକ, ନୌବାହିନୀ ଓ ଆକାଶବାହିନୀ ସାହାଯ୍ୟ ନିଆଯାଇପାରିବ । ଭାରତୀୟ ସ୍ୱାଧୀନତା ସଂଘ ଦ୍ୱାରା ଗଠିତ କ୍ରିୟାନୁଷ୍ଠାନ କମିଟିହିଁ ସମସ୍ତ ଅଭିଯାନ ପରିଚାଳନା କରିବ । ଭାରତର ଭବିଷ୍ୟତ୍ ସମ୍ବିଧାନ ପ୍ରଣୟନ ସଂପୂର୍ଣ୍ଣରୂପେ ଭାରତୀୟମାନଙ୍କ ଉପରେ ଛାଡ଼ିଦିଆଯିବ ।

ଏହି ସମ୍ମିଳନୀରେ ଆହୁରି ସ୍ଥିର ହେଲା ଯେ ଜୁନ ମାସ ଭିତରେ ବ୍ୟାଙ୍କକ୍‌ଠାରେ ଆଉ ଏକ ବଡ଼ ସମ୍ମିଳନୀ ବସିବ ଏବଂ ସେହି ସମ୍ମିଳନୀରେହିଁ ଭାରତ ସ୍ୱାଧୀନତା ସଂଗ୍ରାମ ଆନୁଷ୍ଠାନିକ ଭାବେ ଆରମ୍ଭ ହେବ । ତଦନୁଯାୟୀ ଜୁନ ୧୫ରୁ ୨୩ ପର୍ଯ୍ୟନ୍ତ ବ୍ୟାଙ୍କକ ସମ୍ମିଳନୀ ବସିଲା । ଏଥିରେ ଜାପାନ, ହଂକଂ, ମାଞ୍ଚୁରିଆ, ବର୍ମା, ବୋର୍ଣ୍ଣିଓ, ସୁମାତ୍ରା, ମାଲୟ ଓ ଥାଇଲ୍ୟାଣ୍ଡରେ ଥିବା ଭାରତୀୟମାନଙ୍କ ପ୍ରତିନିଧିମାନେ ଯୋଗଦେଇଥିଲେ ।

ସେଠାରେ କ୍ରିୟାନୁଷ୍ଠାନ କମିଟି (Council of Action) ଗଠିତ ହେଲା । ରାସବିହାରୀଙ୍କୁ ସର୍ବସମ୍ମତିକ୍ରମେ ଏହାର ସଭାପତିରୂପେ ନିର୍ବାଚିତ କରାଗଲା । ଏଥିରେ ସ୍ଥିର ହେଲା –''ଜାତୀୟ ବାହିନୀର ଗଠନ, ପରିଚାଳନା ଓ ସାମରିକ ଅଭିଯାନ ଭାରତୀୟମାନଙ୍କ ଦ୍ୱାରାହିଁ ହେବ ।'' କ୍ରିୟାନୁଷ୍ଠାନ କମିଟିର ଅନ୍ୟ ତିନିଜଣ ସଭ୍ୟ ହେଲେ ମୋହନ ସିଂ, କେ.ପି ମେନନ, କର୍ଣ୍ଣେଲ ଗିଲାନି ।

''ଭାରତରୁ ଇଂରେଜମାନଙ୍କ ନିଷ୍କାସନ ସଙ୍ଗେ ସଙ୍ଗେ ଜାପାନ ସରକାର ଭାରତୀୟମାନଙ୍କ ସାର୍ବଭୌମ କ୍ଷମତାକୁ ସ୍ୱୀକାର କରିବେ ଏବଂ ଏଥିରେ କୌଣସି ବାହାର ଶକ୍ତିର ହସ୍ତକ୍ଷେପ ରହିବ ନାହିଁ ।''

ଅନ୍ୟ ଏକ ପ୍ରସ୍ତାବରେ କୁହାଯାଇଥିଲା – ''ଯୁଦ୍ଧ ପରେ ପରେ ଜାପାନୀମାନଙ୍କ ଦ୍ୱାରା ଅଧିକୃତ ଭାରତୀୟମାନଙ୍କ ସମସ୍ତ ସମ୍ପତ୍ତି କ୍ରିୟାନୁଷ୍ଠାନ କମିଟି ହାତରେ ଛାଡ଼ି-ଦେବାକୁ ହେବ ।''

ଏହି ସମ୍ମିଳନୀରେ ଗୃହୀତ ୩୨ ନମ୍ବର ପ୍ରସ୍ତାବରେ ନେତାଜୀ ସୁଭାଷଙ୍କୁ ଯଥାଶୀଘ୍ର ପୂର୍ବ-ଏସିଆକୁ ଆସି ଏହି ସଶସ୍ତ୍ର ଅଭିଯାନର ନେତୃତ୍ୱ ନେବାକୁ ଅନୁରୋଧ କରାଯାଇଥିଲା ଏବଂ ନେତାଜୀଙ୍କୁ ଜର୍ମାନୀରୁ ଆଣିବା ପାଇଁ ବ୍ୟବସ୍ଥା କରିବାକୁ ଜାପାନ ସରକାରଙ୍କୁ ଅନୁରୋଧ କରାଗଲା । ଉପରୋକ୍ତ ପ୍ରସ୍ତାବ ସହ ଏକ ବ୍ୟକ୍ତିଗତ ଚିଠି ପଠାଇ ନେତାଜୀଙ୍କୁ

ସବୁକଥା ରାସବିହାରୀ ଜଣାଇଦେଲେ । ଏହିଭଳି ମାତ୍ର ଛ'ମାସ ତଳେ ଆରମ୍ଭହୋଇଥିବା ଭାରତର ସ୍ୱାଧୀନତା ସଂଗ୍ରାମ ବର୍ତ୍ତମାନ ଏକ ବିଧିବିଦ୍ଧ ରୂପ ନେଲା ।

ଯୁଦ୍ଧର ଘନଘଟା ଭିତରେ, ତାହା ପୁଣି ଜାପାନୀମାନଙ୍କ ସାମରିକ କର୍ତ୍ତୃତ୍ୱ ଭିତରେ, ଭାରତୀୟମାନେ ଏ ଯେଉଁ ଦୁଃସାହସିକ ଅଭିଯାନ ଆୟୋଜନ କରିପାରିଥିଲେ, ତାହା ପଛରେ ବିପ୍ଳବୀ ରାସବିହାରୀଙ୍କ ଐକାନ୍ତିକ ଉଦ୍ୟମ ଥିଲା । ଜାପାନ ସରକାରଙ୍କର ପରିବର୍ତ୍ତିତ ମନୋଭାବ ଯେ ରହିଥିଲା ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ । ଜାପାନ ପ୍ରଧାନମନ୍ତ୍ରୀ ତୋଜୋଙ୍କର ସେହି ଐତିହାସିକ ଭାଷଣ ଏସମ୍ପର୍କରେ ଚିରସ୍ମରଣୀୟ ଅଟେ । ସିଙ୍ଗାପୁର ପତନ ପରେ ପରେ ସେ ଏହି ଭାଷଣ ଦେଇ କହିଥିଲେ– "ସହସ୍ର ସହସ୍ର ବର୍ଷର ସାଂସ୍କୃତିକ ପରମ୍ପରା ଓ ଇତିହାସର ଉତ୍ତରାଧିକାରୀ ଭାରତ ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ ଯେ, ସେ ଏହି ଅବସରରେ ଇଂରେଜର କ୍ରୂର ଅତ୍ୟାଚାର ଓ ଶୋଷଣରୁ ନିଜକୁ ମୁକ୍ତି କରିପାରିବ ଏବଂ ଏହା ଫଳରେ ବୃହତ୍ତର ଏସିଆ ସମୃଦ୍ଧି ଅଭିଯାନରେ ଭାରତ ସଫଳ ଭାବରେ ଯୋଗଦାନ କରିପାରିବ । ଜାପାନ ଆଶାକରେ ଯେ, 'ଭାରତୀୟମାନଙ୍କରହିଁ ଭାରତ' ଏହା ପ୍ରତିପାଦିତ ହେବ ଓ ଜାପାନ ଏହି କାର୍ଯ୍ୟରେ ଭାରତୀୟମାନଙ୍କୁ ଯତ୍‌ପରୋନାସ୍ତି ସାହାଯ୍ୟ କରିବାକୁ ପଛେଇବ ନାହିଁ । ଭାରତ ଯଦି ଏହି କାର୍ଯ୍ୟ ସାଧନ କରିବାରେ ବ୍ୟର୍ଥ ହୁଏ ଏବଂ ତାର ସଂସ୍କୃତି ଓ ଇତିହାସକୁ ପୁନରୁଦ୍ଧାର କରିବା କାର୍ଯ୍ୟରେ ଅଗ୍ରସର ନହୁଏ ଏବଂ ଇଂରେଜମାନଙ୍କର ଖୋସାମଦ ଓ ଚକ୍ରାନ୍ତର ଶିକାର ହୁଏ, ମୋର ଆଶଂକା ହୁଏ ଯେ ଭାରତୀୟମାନେ ହୁଏତ ଚିରଦିନ ପାଇଁ ଏହି ସୁଯୋଗ ହରାଇବସିବେ ।"

ତୋଜୋଙ୍କର ଏହି ଘୋଷଣା ରାସବିହାରୀଙ୍କଠାରୁ ଜର୍ମାନୀରେ ଥିବା ସୁଭାଷଙ୍କ ପର୍ଯ୍ୟନ୍ତ ସମସ୍ତ ପ୍ରବାସୀ ଭାରତୀୟଙ୍କ ଭିତରେ ଖେଳାଇଦେଲା ଯୁଗପତ୍ ଆନନ୍ଦ ଓ ଉତ୍ସାହ । ଭାରତର ସ୍ୱାଧୀନତା ଯୁଦ୍ଧରେ ଜାପାନର ସହାୟତା ମିଳିବ, ଏହା କମ୍ ଆନନ୍ଦର କଥା ନୁହେଁ !

ବ୍ୟାଙ୍କକ୍ ସମ୍ମିଳନୀକୁ ମଧ୍ୟ ତୋଜୋ ଅନୁରୂପ ଏକ ବାର୍ତ୍ତା ପଠାଇ କହିଥିଲେ– "ଜାପାନ ସରକାର ଆପଣମାନଙ୍କର ଉଦ୍ୟମ ପ୍ରତି ପୂର୍ଣ୍ଣ ସମର୍ଥନ ଜଣାଇଅଛନ୍ତି ଏବଂ ଏହାକୁ ସଫଳ କରିବାକୁ ଆପଣମାନଙ୍କୁ ସକଳ ପ୍ରକାର ସାହାଯ୍ୟ ଦେବାକୁ ପ୍ରସ୍ତୁତ ଅଛନ୍ତି ।"



## ଅଧ୍ୟାୟ - ଛତିଶ

# ପ୍ରତିଶୋଧ, ପ୍ରତିଶୋଧ, ପ୍ରତିଶୋଧ !!!

ଭାରତୀୟମାନଙ୍କର ସ୍ୱାଧୀନତା ଆଶା-ଆକାଂକ୍ଷାକୁ ପଦଦଳିତ କରିବାକୁ ଇଂରେଜମାନେ ସେମାନଙ୍କର ଦୁଇଶହ ବର୍ଷର ରାଜତ୍ୱକାଳ ଭିତରେ ଏ ଦେଶରେ ଯେତେ ନିର୍ମମ ନିଷ୍ଠୁର ଆଚରଣ ପ୍ରଦର୍ଶନ କରିଅଛନ୍ତି, ସେଥିମଧ୍ୟରୁ ଜାଲିଆନାଓ୍ୱାଲା ବାଗ୍ ହତ୍ୟାକାଣ୍ଡ ସର୍ବାଧିକ ରକ୍ତରଂଜିତ ଏବଂ ଲୋମହର୍ଷଣକାରୀ (ସବିଶେଷ ୨ୟ ଭାଗର 'ନରମେଧ ଯଜ୍ଞ'ରେ ଦ୍ରଷ୍ଟବ୍ୟ) । ନିରସ୍ତ୍ର ଅହିଂସ ପଞ୍ଜାବବାସୀଙ୍କୁ ସଂପୂର୍ଣ୍ଣ ଅତର୍କିତ ଆକ୍ରମଣ କରି ଅତ୍ୟାଚାରୀ ଜେନେରାଲ ଡାୟାର ଓ ପଞ୍ଜାବର ତତ୍କାଳୀନ ଗଭର୍ଣ୍ଣର ସାର ମାଇକେଲ୍ ଓଡାୟାର ସେ ଦିନ ପ୍ରାୟ ବାରଶହ ଲୋକଙ୍କର ରକ୍ତରେ ପ୍ଲାବିତ କରିଦେଇଥିଲେ ଜାଲିଆନାଓ୍ୱାଲା ବାଗ୍‌କୁ । ଡାୟାର ଏବଂ ଓ'ଡ଼ାୟାରର ବାହାଦୁରୀ ପାଇଁ ଇଂଲାଣ୍ଡ ଲୋକଙ୍କଦ୍ୱାରା ସେ ଦୁଇ ଜଣ ଯେତିକି ପ୍ରଶଂସିତ ଓ ପୁରସ୍କୃତ ହେଲେ, ବିଦ୍ରୋହୀ ଭାରତ ମଧ୍ୟ ସେହି ଅନୁପାତରେ ହୋଇଉଠିଲା ପ୍ରତିହିଂସାପରାୟଣ ଓ ପ୍ରତିଶୋଧ-ପିପାସୁ ।

''ପଞ୍ଜାବ ହତ୍ୟାକାଣ୍ଡ''ରୁ ଜନ୍ମ ନେଇଥିଲା ଏକ ଦୁର୍ଦ୍ଧର୍ଷ ବିପ୍ଳବୀ ବାହିନୀ 'ବାବର ଅକାଳୀଦଳ' । ଜଣେ ଇତିହାସକାର ଲେଖିଛନ୍ତି— ଜାଲିଆନାଓ୍ୱାଲାବାଗ୍ ହତ୍ୟାକାଣ୍ଡ ସାରା ଦେଶରେ ପ୍ରବଳ ଚହଳ ସୃଷ୍ଟି କରିଦେଲା ଏବଂ ଅତି ସ୍ୱାଭାବିକ ଭାବରେ ଦଳେ ପଞ୍ଜାବୀଙ୍କ ମଧ୍ୟରେ ତୀବ୍ର ଘୃଣା ଅସନ୍ତୋଷ ଜାତହେଲା ଯେଉଁମାନେ କି ଏହାର ପ୍ରତିଶୋଧସ୍ୱରୂପ ସଶସ୍ତ୍ର ବିଦ୍ରୋହ ପରିକଳ୍ପନା କଲେ । ବିପ୍ଳବୀ ବିସେନ୍ ସିଂ ଗଦାଗଡ଼ଙ୍କର 'ବାବର ଅକାଳୀଦଳ' ସେହି ଅସନ୍ତୋଷର ସନ୍ତାନ । ଏହି ଦଳକୁ 'ଚକ୍ରବର୍ତ୍ତୀ ଦଳ' ବୋଲି ମଧ୍ୟ କୁହାଯାଉଥିଲା । ପ୍ରାୟ ଦୁଇବର୍ଷ ଭିତରେ 'ବାବର ଅକାଳୀ ଦଳ' ଏକ ଦୁର୍ଦ୍ଧର୍ଷ ବିପ୍ଳବୀ ଦଳରେ ପରିଣତ ହେଲା । ଏ ଦଳକୁ ସଂପୂର୍ଣ୍ଣ ଭାବରେ ଦବେଇଦେବାକୁ ବ୍ରିଟିଶ ପୋଲିସକୁ ବହୁ କ୍ଳେଶ ବରଣ କରିବାକୁ ପଡ଼ିଥିଲା ଏବଂ ବହୁ ପ୍ରାଣବଳି ଦେବାକୁ ହେଲା । ୧୯୨୬ ମସିହାରେ ବିପ୍ଳବୀ କିଶେନ ସିଂ, କରମ ସିଂ, ନନ୍ଦ ସିଂ, ସନ୍ତ ସିଂ, ଦଲୀପ ସିଂ ଓ ଧରମ ସିଂଙ୍କୁ ଫାଶୀଖୁଣ୍ଟରେ ପ୍ରାଣ ଦେବାକୁ ହେଲା ସତ୍ୟ, କିନ୍ତୁ ପଞ୍ଜାବ ବିପ୍ଳବୀ ସେଥିରେ ଦବିଯାଇନଥିଲେ । ବିଶେଷତଃ ପଞ୍ଜାବ ହତ୍ୟାକାଣ୍ଡର ଦୁଇ ଖଳନାୟକ ଡାୟାର ଏବଂ ଓ'ଡାୟାର ସେପର୍ଯ୍ୟନ୍ତ ବଞ୍ଚିରହିଥିଲେ । ସେମାନଙ୍କର ରକ୍ତରେ ତର୍ପଣ କରି ଜାଲିଆନାଓ୍ୱାଲା ବାଗ୍‌ର ପ୍ରତିଶୋଧ ସେ ପର୍ଯ୍ୟନ୍ତ ନିଆହୋଇ- ପାରିନଥିଲା । ସେମାନଙ୍କର ଅହଙ୍କାର ଏବଂ ଔଦ୍ଧତ୍ୟ ସୀମା ଲଂଘନ କରିଥିଲା ।

ଉଧାମ ସିଂ ଡାୟାର ଏବଂ ଓ'ଡାୟାରର ଔଦ୍ଧତ୍ୟର ଜବାବ ଦେବାକୁ ଜନ୍ମ ହୋଇଥିଲେ ପଞ୍ଜାବର ଜଲନ୍ଧରଠାରେ । ପିତା ତାଙ୍କର ଥିଲେ ଜନୈକ ଗରିବ ଚାଷୀ; ଉଧାମଙ୍କର ଅଳ୍ପ ବୟସରେ ସେ ଦରିଦ୍ର ପିତା ମଧ୍ୟ ପରଲୋକ ଗମନ କରିଥିଲେ ଏବଂ ଉଧାମ ହେଲେ ସଂପୂର୍ଣ୍ଣ ଅନାଥ । ସତକୁ ସତ ଉଧାମଙ୍କର ବାଲ୍ୟଜୀବନ ଗୋଟିଏ ଅନାଥାଶ୍ରମରେହିଁ ଅତିବାହିତ ହୋଇଥିଲା । କିନ୍ତୁ 'ଅନାଥାଶ୍ରମ'ର ଦୟନୀୟ ଜୀବନ ତାଙ୍କର ହୃଦୟର ସ୍ୱାଧୀନତା-ପିପାସା ଲୋପକରିପାରିନଥିଲା; ବରଂ ତାହା ବହୁଗୁଣିତ ହୋଇଥିଲା । ଶୈଲେନ୍ ନିୟୋଗୀ 'Udham Singh, the Born Revolutionary' ରେ ଉଲ୍ଲେଖ କରିଅଛନ୍ତି ଯେ, ଜାଲିଆନାୱାଲାବାଗ୍‌ର ହତ୍ୟାକାଣ୍ଡ ସଂଘଟିତ ହେଲାବେଳେ ଉଧାମ ସିଂ ସେଠାରେ ଉପସ୍ଥିତ ଥିଲେ । ସେ ଯେ କେବଳ ସେହି ନାରକୀୟ କାଣ୍ଡର ଜଣେ ପ୍ରତ୍ୟକ୍ଷଦର୍ଶୀ ତା' ନୁହେଁ; ସେ ସେଠାରେ ଆହତ ମଧ୍ୟ ହୋଇଥିଲେ ଏବଂ ସେହି ଦିନଠାରୁ ଏହାର ପ୍ରତିଶୋଧ ନେବା ପାଇଁ ହୁଏତ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ଏହା ହେଉଛି ୧୯୧୯ ମସିହାର କଥା ।

ସେହି ପ୍ରତିଜ୍ଞା ପୂରଣ କରିବାକୁ ଉଧାମଙ୍କୁ ଅପେକ୍ଷା କରିବାକୁ ପଡ଼ିଲା ଦୀର୍ଘ ୨୧ ବର୍ଷ । ଉଭୟ ଡାୟାର ଏବଂ ଓ'ଡାୟାର ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ଫେରିଗଲେ ଇଂଲାଣ୍ଡ । ଉଧାମ ଅଥୟ ହୋଇପଡ଼ିଲେ । ୧୯୩୯ରେ ଡାୟାର ପ୍ରାଣତ୍ୟାଗକଲା । ଉଧାମଙ୍କର ଧୈର୍ଯ୍ୟବନ୍ଧ ଭାଙ୍ଗିଗଲା କହିଲେ ଚଳେ । ''ଜଣେ ତ ଚାଲିଗଲା ! ଚାହୁଁ ଚାହୁଁ ଓ'ଡାୟାର ବି ହୁଏତ ଚାଲିଯିବ । ମୁଁ କ'ଣ ଆଉ ସେହି ଜାତୀୟ ଅପମାନର ପ୍ରତିଶୋଧ ନେଇପାରିବି ନାହିଁ ? ନାଃ, ଅଲବତ୍ ତାହା କରିବାକୁ ପଡ଼ିବ ?'' ଦିନରାତି ଉଧାମଙ୍କର ସେହି ଗୋଟିଏ ଚିନ୍ତା – ଡାୟାର ଚାଲିଗଲା ଓ'ଡାୟାର ମଧ୍ୟ ଚାଲିଯିବ !

୧୯୪୦ ମସିହା ଆରମ୍ଭରେ ଉଧାମ ଇଂଲଣ୍ଡରେ ପହଞ୍ଚିଗଲେ ଏବଂ ସେଠାରେ ଏକ ଇଂଜିନିୟରିଂ ପାଠ୍ୟକ୍ରମରେ ନାମ ଲେଖାଇବାର ବ୍ୟବସ୍ଥା କରିଥିଲେ ଏବଂ ସେହି ସମୟରେ ସେ ଗୋଟିଏ ଛ'ଚେମ୍ବରବାଲା ରିଭଲଭର ଓ ଆବଶ୍ୟକୀୟ ଗୁଳିଗୁଳା ସଂଗ୍ରହ କରିଥିଲେ ବୋଲି ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ "Who's Who of Indian Martyrsରେ ଉଲ୍ଲେଖ ଅଛି ।

୧୯୪୦ ମାର୍ଚ୍ଚ ୧୩ ତାରିଖ । ଲଣ୍ଡନର କାକ୍ସଟନ ହଲ୍‌ର ଟିଉଡ଼ର ରୁମ୍‌ରେ ପ୍ରବଳ ଭିଡ଼ । ରୟାଲ ସେଣ୍ଟ୍ରାଲ ଏସିୟାନ ସୋସାଇଟି ଓ ଇଷ୍ଟଇଣ୍ଡିଆ ଆସୋସିଏନର ମିଳିତ ଉଦ୍ୟମରେ ଆଫଗାନିସ୍ଥାନର ରାଜନୈତିକ ପରିସ୍ଥିତି ଉପରେ ଏକ ଆଲୋଚନା ସଭା । ସଭାପତି ଲର୍ଡ଼ ଜେଟଲାଣ୍ଡ ଓ ପ୍ରଧାନ ବକ୍ତା ମାଇକେଲ ଓ'ଡାୟାର ।

ସେଦିନ ଅପରାହ୍ଣ ୩ଟା ବେଳେ ଓ'ଡାୟାର ତା'ର କେସିଂଟନ୍ ବାସଭବନରୁ ବାହାରି ସ୍ତ୍ରୀକୁ କହିବାର ଶୁଣାଗଲା- "Good bye Darling,I shall be back for tea at 5 o' clock," ଅତ୍ୟାଚାରୀ ଓ'ଡାୟାର ସ୍ୱପ୍ନରେ ସୁଦ୍ଧା ଭାବିନଥିଲା ଯେ ଏହା ତା'ର ଶେଷ ବିଦାୟ ।

ପ୍ରଥମେ ଲର୍ଡ଼ ଜେଟଲାଣ୍ଡ ଭାଷଣଦେଲେ । ତା'ପରେ ଓ'ଡାୟାରର ପାଳି । ପଞ୍ଜାବରେ ବହୁ ବର୍ଷ ଲାଟଗିରି କରି ତା'ର କୁଆଡ଼େ ପଡ଼ୋଶୀ ଆଫ୍‌ଗାନିସ୍ଥାନ ସମ୍ପର୍କରେ ପ୍ରଚୁର ଧାରଣା ଏବଂ ସେହି କାରଣରୁ ସେ ଦିନର ସଭାରେ ଓ'ଡାୟାରର ଭାଷଣ ସର୍ବାଧିକ ଆକର୍ଷଣୀୟ । ତା'ପରେ ସଭାରେ ଯାହା ଘଟିଲା ତାହାର ଟିକିନିଖି ବିବରଣୀରେ କେତେକ ତାରତମ୍ୟ ପରିଲକ୍ଷିତ ହୁଏ । କାନ୍ଥ ଉହାଡ଼ରେ ଲୁଚି ରହି ଗୁଳିକରିବା ଓ ଗୁଳିକରି ପଳାଇଯିବାକୁ ଚେଷ୍ଟାକରିବା ପ୍ରଭୃତି ବିଷୟରେ ବିଭିନ୍ନ ଐତିହାସିକ ବିଭିନ୍ନ ମତ ଦେଇଅଛନ୍ତି । ଯାହାହେଉ, ନାନା କାରଣରୁ ଶ୍ରୀ କାଳୀଚରଣ ଘୋଷଙ୍କର "The Roll of Honour"ରେ ଥିବା ବିବରଣୀ ବିଶେଷ ନିର୍ଭରଯୋଗ୍ୟ ହୋଇଥିବାରୁ ତାହା ଏଠାରେ ଅବିକଳ ଦିଆଗଲା- "The Meeting ended at 4.30 P.M. The vote of thanks had just been given and the visitors were on the point of pharting and speaking farewell to one another, the assailant, hurriedly advanced towards the paltform and fired five or six shots in quick succession, Naturally there was a stampede for gate." (ଅପରାହ୍ଣ ୪ଟା ୩୦ ମିନିଟରେ ସଭା ଶେଷହେଲା । ଧନ୍ୟବାଦାର୍ପଣ କାର୍ଯ୍ୟ ଠିକ୍ ସରିଗଲା । ଆଗନ୍ତୁକମାନେ ପରସ୍ପରଠାରୁ ବିଦାୟ ନେବା ମୁହୂର୍ତ୍ତରେହିଁ ଆତତାୟୀଜଣକ ଦ୍ରୁତଗତିରେ ପେଣ୍ଡାଲ ଆଡ଼କୁ ଦୌଡ଼ିଆସିଲା ଏବଂ ଲାଗ ଲାଗ ପାଞ୍ଚଟା ବା ଛ'ଟା ଗୁଳି ଫୁଟାଇଲା; ଫଳରେ ସ୍ୱାଭାବିକ ଭାବରେ ଫାଟକ ପାଖରେ ପ୍ରବଳ ଭିଡ଼ ଓ ଦଳାଦଳି ଆରମ୍ଭ ହୋଇଗଲା ।)

ଓ'ଡାୟାର ପିଠିରେ ଦୁଇଟି ଗୁଳି ବାଜିଥିଲା । ଗୋଟାଏ ଗୁଳି ବାଁପାଖରେ ବାଜି ଆରପଟକୁ ଫୁଟି ବାହାରିଯାଇଥିଲା ଏବଂ ଆଉ ଗୋଟାଏ ଗୁଳି ପେଟରେ ଅଟକି ଯାଇଥିଲା । ପ୍ରଥମ ଗୁଳିରେହିଁ ଓ'ଡାୟାର ଖତମ ହୋଇଯାଇଥିଲା । ହଜାର ହଜାର ନିରପରାଧ ଲୋକଙ୍କୁ ନିର୍ମମଭାବେ ହତ୍ୟାକରିଥିବା ଆତତାୟୀ ଓ'ଡାୟାରର ଚରମ ପରିଣତି ଏହିଭଳି ଭାବରେ ଦୟନୀୟ ହୋଇଥିଲା ।

ଖବରଟା ଭାରତରେ ପହଞ୍ଚିବା ସଙ୍ଗେ ସଙ୍ଗେ କୋଟି କଣ୍ଠରେ ଶୁଭିଲା ଗୋଟିଏ ଆବାଜ– ''ସାବାସ୍ ଉଧାମ ସିଂ । ଦେଖାଇଲ ତୁମେ ଭାରତବାସୀର ଧୈର୍ଯ୍ୟ, ସାହସ ଓ ବୀରତ୍ୱର ଚରମ ପରାକାଷ୍ଠା । କୋଟି କୋଟି ସଲାମ ତୁମକୁ ।

ତା' ପରଦିନ ଉଧାମ ସିଂଙ୍କୁ ଯେତେବେଳେ ବିଚାରାଳୟରେ ଉପସ୍ଥାପିତ କରାଗଲା, ସେ ଦିଶୁଥିଲେ ସଂପୂର୍ଣ୍ଣ ନିର୍ବିକାର, ନିର୍ଭୀକ ଓ ନିର୍ଲିପ୍ତ । ମନରେ ତାଙ୍କର ଆତ୍ମତୃପ୍ତିର ଉଜ୍ଜ୍ୱଳ ସ୍ୱାକ୍ଷର ।

ଜଜ୍ ପଚାରିଲେ –''ନାମ କ'ଣ ତୁମର ?''

ଉଧାମ ନିରୁତ୍ତର ।

''କାଗଜପତ୍ରରୁ ଜଣାଯାଉଅଛି ତୁମର ନାମ ରାମ ମହମ୍ମଦ ସିଂ ଆଜାଦ, ପେଶା ଇଂଜିନିୟରିଂ – କ'ଣ କହୁଛ ?''

ଉଧାମ ନୀରବ ।

ଭାରତରେ ପୋଲିସ ପକ୍ଷରୁ ଯେଉଁ ତଦନ୍ତ କରାଯାଇଥିଲା, ତା'ର ରିପୋର୍ଟ କୋର୍ଟରେ ଦାଖଲହେଲା । ସେଥିରୁ ଜଣାଗଲା "ଆସାମୀ ପଞ୍ଜାବର ଅଧିବାସୀ, ମୂଳ ନାମ ଉଧାମ ସିଂ । କିନ୍ତୁ ଗତ ବର୍ଷ ସେ ନିଜକୁ ରାମ ମହମ୍ମଦ ସିଂ ଆଜାଦ ନାମରେ ପରିଚିତ କରାଇଆସିଛି । ଦ୍ୱିତୀୟତଃ ଆସାମୀ ଯେ ସାମୟିକ ଉତ୍ତେଜନା-ବଶତଃ ଏହି କାର୍ଯ୍ୟ କରିଛି ତାହା ନୁହେଁ, ଏହା ତା'ର ସୁଚିନ୍ତିତ ଯୋଜନା । ଗତ ବହୁ ବର୍ଷ ହେବ ସେ ଏଥିପାଇଁ ପ୍ରସ୍ତୁତ ହେଉଥିଲା ବୋଲି ପ୍ରମାଣ ମିଳୁଛି । କଂଗ୍ରେସ ସୋସଲିଷ୍ଟ ପାର୍ଟିର କର୍ମୀ ଭାବରେ ସେ ପୂର୍ବରୁ ଥରେ ରାଜଦ୍ରୋହମୂଳକ ଅଭିଯୋଗରେ ଜେଲଦଣ୍ଡ ଭୋଗିଛି ।' ଏପ୍ରିଲ ୨ ତାରିଖରେ ପୁନର୍ବାର ଠିଆକରାଗଲା ତାଙ୍କୁ ବିଚାରାଳୟରେ ।

"ତୁମକୁ ଗୋଟିଏ କଥା ପଚାରିବାକୁ ଚାହେଁ ଉଧାମ ସିଂ !" ଅପେକ୍ଷାକୃତ ନମ୍ର-କଣ୍ଠରେ ପଚାରିଥିଲେ ବିଚାରପତି ।

"କିଏ ଉଧାମ ସିଂ ? ମୁଁ ଉଧାମ ସିଂ ନୁହେଁ— ମୋର ନାମ ରାମ ମହମ୍ମଦ ସିଂ ଆଜାଦ ।" ଉଧାମ ସିଂଙ୍କ ଉଦ୍ଧତ ଜବାବ ।

"କିନ୍ତୁ ସମସ୍ତେ ଜାଣନ୍ତି – ତୁମର ଅସଲ ନାମ ହେଲା ଉଧାମ ସିଂ । କାହିଁକି ତୁମେ ନାମକୁ ଏଭଳି ପରିବର୍ତ୍ତନ କରିଅଛ ?" ଜଜ୍ ପଚାରିଲେ ।

"ମୋର ଖୁସି, ସେଟା ମୋର ଅଧିକାର ।"

"ତଥାପି ପ୍ରତ୍ୟେକ କାର୍ଯ୍ୟ ପଛରେ କିଛି ଯୁକ୍ତି ଥାଏ – ତୁମର କି ଯୁକ୍ତି ଅଛି ?" ବିଚାରପତିଙ୍କର ବିନମ୍ର ନିବେଦନ ।

"ମୋର ମଧ୍ୟ ଯୁକ୍ତି ଅଛି –

"ଉଧାମ ସିଂ – ପଞ୍ଜାବୀ ବା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଲୋକଙ୍କୁ ବୁଝାଏ । ଏଭଳି କ୍ଷୁଦ୍ର ଗଣ୍ଡି ଭିତରେ ମୁଁ ଆବଦ୍ଧ ହେବାକୁ ଚାହେଁନା । ମୋ' ଦେଶ ବହୁଜାତି ଓ ବହୁ ଧର୍ମର ଦେଶ– କେହି ହିନ୍ଦୁ, କେହି ମୁସଲମାନ, କେହି ଶିଖ୍, କେହି ବା ଖ୍ରୀଷ୍ଟିୟାନ । 'ରାମ ମହମ୍ମଦ ସିଂ ଆଜାଦ' ନାମ ଭିତରେ ମୁଁ ସବୁ ଜାତି ଓ ଧର୍ମର ସମନ୍ୱୟ ଥିବାର ଅନୁଭବକରେ । ସୁତରାଂ ଏହି ନାମରେ ମୁଁ ନିଜକୁ ପରିଚିତ କରାଏ ।"

"ତୁମେ ଦୋଷୀ ନା ନିର୍ଦ୍ଦୋଷ ?" ଜଜ୍ ପ୍ରଶ୍ନ କଲେ ।

"କାହିଁକି, ଏଥିରେ କ'ଣ କିଛି ସନ୍ଦେହ ଅଛି ?" ଉଧାମ ସିଂ ତାଚ୍ଛଲ୍ୟଭରା ସ୍ୱରରେ ଓଲଟି ପ୍ରଶ୍ନ କଲେ ।

"ତୁମର ଏହି ଅପରାଧ ପାଇଁ ତୁମେ କ'ଣ ଅନୁତପ୍ତ ନୁହଁ ?"

"ନେଭର୍, ନେଭର୍ – କଦାପି ନୁହେଁ ।" ଉଧାମ ସିଂ ଗର୍ଜନ କଲେ ।

"ତୁମେ ଯାହା କହୁଛ ନିଶ୍ଚୟ ଭାବିଚିନ୍ତି କହୁଛ ?" ପଚାରିଲେ ବିଚାରପତି ।

– ମୁଁ ଏହା କରିଛି କାରଣ ତା'ବିରୁଦ୍ଧରେ ମୋର ବହୁ ଅଭିଯୋଗ । ତା'ର ଏହା ଦରକାର ଥିଲା । ମୁଁ ସେଥିପାଇଁ ପରବା କରିନାହିଁ । ମୁଁ ମରିବାକୁ ପ୍ରସ୍ତୁତ ଅଛି ।

ବୁଢ଼ାହେବାଯାଏ ବଞ୍ଚିରହି ଲାଭ କ'ଣ — ଯୁବା ବୟସରେ ମରିବା ଦରକାର । ସେଥିପାଇଁ ମୁଁ ମରିବାକୁ ଯାଉଛି । ମୁଁ ମୋ' ଦେଶ ପାଇଁ ମରୁଛି । ଲର୍ଡ୍ ଜେଟଲାଣ୍ଡ କ'ଣ ମରିନାହିଁ ? ତା'ର ମରିବା ଉଚିତ ଥିଲା । ମୁଁ ତାକୁ ଲକ୍ଷ୍ୟ କରି ଦି'ଟା ଗୁଳି ମାରିଥିଲି ।

''ଡାୟାର ଏବଂ ଓ'ଡାୟାର ବିରୁଦ୍ଧରେ ମୋ'ର ଅସଂଖ୍ୟ ଅଭିଯୋଗ ଅଛି । ସେମାନେ ମୋର ଦେଶବାସୀଙ୍କୁ ଯେଉଁଭଳି ନିର୍ମମ ଭାବରେ ହତ୍ୟା କରିଅଛନ୍ତି ତାହା ଆମେ କଦାପି ବିସ୍ମୃତ ହୋଇପାରିବୁ ନାହିଁ ।''

କେବଳ ଜାଲିଆନାଓ୍ୱାଲା ହତ୍ୟାକାଣ୍ଡ ନୁହେଁ, ବ୍ରିଟିଶ ସାମ୍ରାଜ୍ୟବାଦର ଶୋଷଣ ମଧ ଉଧାମଙ୍କୁ କରିଥିଲା ଉତ୍ତେଜିତ, ବ୍ୟସ୍ତ, ବିବ୍ରତ । ସେ ଯଥାର୍ଥରେ କହିଥିଲେ —ବ୍ରିଟିଶ ସାମ୍ରାଜ୍ୟବାଦ ଅଧୀନରେ ଭାରତର ଲୋକେ କିଭଳି ନିୟତ ଶୋଷିତ ହେଉଅଛନ୍ତି ତାହା ମୁଁ ଦେଖୁଛି । ମୁଁ ଏହାର ପ୍ରତିବାଦ କରିଥିବାରୁ ଦୁଃଖିତ ନୁହେଁ ଏବଂ ମୋ ଦେଶର ସ୍ୱାର୍ଥରକ୍ଷା ପାଇଁ ଏହା ମୋର କର୍ତ୍ତବ୍ୟ ଅଟେ । ତୁମେ କିଭଳି ଦଣ୍ଡ ଦେବ, ମୁଁ ସେଥିପାଇଁ ପରୁଆ କରିନାହିଁ — ଦଶ ବର୍ଷ- କୋଡ଼ିଏ ବର୍ଷ କିମ୍ୱା ପଚାଶ ବର୍ଷ କିମ୍ୱା ଫାଶୀଦଣ୍ଡ, ଯାହା ଦେଇପାର ।''

ଇଚ୍ଛାକୃତ ନରହତ୍ୟା (Wilful murder) ଅଭିଯୋଗରେ ଉଧାମ ସିଂଙ୍କୁ ଫାଶୀ ଦିଆଗଲା । ୧୯୪୦ ଜୁନ୍ ପହିଲାର ସ୍ମରଣୀୟ ପ୍ରଭାତରେ ବୀର ଉଧାମ ସିଂ ବୀର ଭଳି ନିଜର ପ୍ରତିଜ୍ଞା ପୂରଣକରିଥିବାରୁ ଏବଂ ତା'ର ଦେଶବାସୀଙ୍କ ଉପରେ ହୋଇଥିବା ଅନ୍ୟାୟର ପ୍ରତିଶୋଧ ନେଇପାରିଥିବାରୁ ଚରମ ଆତ୍ମତୃପ୍ତି ସହ ଫାଶୀମଞ୍ଚରେ ଆରୋହଣକଲେ ।



## ଅଧ୍ୟାୟ - ସତତିରିଶ

# ଅଗଷ୍ଟ ବିପ୍ଳବ : ୧୯୪୦-୪୨

ୟୁରୋପ ଓ ଏସିୟାର ପ୍ରବାସୀ ଭାରତୀୟ ଯେତେବେଳେ ବ୍ରିଟିଶ ଯୁଦ୍ଧ- ଆୟୋଜନକୁ ବିପର୍ଯ୍ୟସ୍ତ କରି ମୁକ୍ତି-ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାକୁ ଆପ୍ରାଣ ଉଦ୍ୟମ କରୁଥିଲେ, ସେତେବେଳେ ଦେଶ ଭିତରେ 'କଂଗ୍ରେସ ଦଳ' ଯୁଦ୍ଧରେ ଇଂରେଜକୁ ସାହାଯ୍ୟ କରିପାରିବୁ କି ନା, ଏହି ଦ୍ୱନ୍ଦ୍ୱ ଭିତରେ ଦୋଳାୟମାନ ହୋଇ ଯୁକ୍ତିତର୍କ ବିତଣ୍ଡା ଭିତରେ ଓଲଟପାଲଟ ହେଉଥିଲା । ''ଯୁଦ୍ଧ ବିରୁଦ୍ଧରେ ପ୍ରଚାର କରିବାର ଅଧିକାରକୁ ସାବ୍ୟସ୍ତ କରିବାକୁ ଆରମ୍ଭ ହୋଇଥିବା ୧୯୪୦ରେ 'ବାଣୀ ସତ୍ୟାଗ୍ରହ' ୧୯୪୧ ବେଳକୁ ପ୍ରାୟ ନିଷ୍ପ୍ରଭ ହୋଇଯାଇଥିଲା । କାରଣ ତାହା ଭାରତୀୟ ଜନମତ ଉପରେ ବା ସରକାର ଉପରେ କୌଣସି ପ୍ରଭାବ ପକାଇପାରିନଥିଲା । ରାଜନୈତିକ ଅପେକ୍ଷା ଏହା ମୁଖ୍ୟତଃ ଏକ ନୈତିକ ଆନ୍ଦୋଳନର ରୂପ ନେଇଥିଲା । ୧୯୪୦ ଅଗଷ୍ଟ ମାସରେ 'ବାଣୀ ସତ୍ୟାଗ୍ରହ'ର ପ୍ରାକ୍‌କାଳରେ ୱାର୍ଦ୍ଧାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଯେଉଁ ବୈଠକ ବସିଥିଲା, ସେଥିରେ ତ ଗାନ୍ଧିଜୀ ସ୍ପଷ୍ଟ କହିଥିଲେ – ''ବ୍ରିଟିଶ ପରାଜିତ ହେଉ, ଏହା ମୁଁ ଚାହେଁନା; ବ୍ରିଟିଶ ଅପମାନିତ ହେଉ, ଏ ଇଚ୍ଛା ମଧ୍ୟ ମୋର ନାହିଁ । ଯେଉଁମାନେ ନିଜେ ବିପଦଗ୍ରସ୍ତ, ସେମାନେ ଅନ୍ୟକୁ ରକ୍ଷା କରି ପାରିବେ ନାହିଁ ।'' ଯୁଦ୍ଧରେ ଜିତିବାକୁ ବ୍ରିଟିଶ ସରକାର ଭାରତବାସୀଙ୍କୁ ନିଃଶେଷ କରିବାକୁ ବଦ୍ଧପରିକର ହୋଇଥିବାରୁ ସମଗ୍ର ଦେଶର ମନୋଭାବ ଯେତେବେଳେ ବ୍ରିଟିଶ ବିରୁଦ୍ଧରେ ରୀତିମତ ଉତ୍ତେଜିତ, ସେତେବେଳେ ଗାନ୍ଧିଜୀ ଓ କଂଗ୍ରେସଦଳର ଏହି ଭଳି ମନୋଭାବ ! ଏହି ପରିପ୍ରେକ୍ଷୀରେ 'ବାଣୀ ସତ୍ୟାଗ୍ରହ' ଜନମତ ଓ ସରକାର ଉପରେ ବା କି ପ୍ରଭାବ ପକାଇଥାନ୍ତା ?

''ଯୁଦ୍ଧ ବିରୁଦ୍ଧରେ କହିବାର ଆମର ପୂର୍ଣ୍ଣ ଅଧିକାର ଅଛି'' କହି 'ବାଣୀ ସତ୍ୟାଗ୍ରହ' କରିବା ଏବଂ 'ଯୁଦ୍ଧରେ ବ୍ରିଟିଶର ପରାଜୟ ଆମେ ଚାହୁଁନା' ବୋଲି କହିବା ଏକ ନିରର୍ଥକ ଏବଂ ହାସ୍ୟାସ୍ପଦ କଥା । ସେଥିପାଇଁ ଏହି ଆନ୍ଦୋଳନ ଉପରେ ସରକାର କୌଣସି ଗୁରୁତ୍ୱ ନଦେଇ ୧୯୪୧ ଡିସେମ୍ବରରେ ସବୁ ସତ୍ୟାଗ୍ରହୀଙ୍କୁ ଜେଲରୁ ଖଲାସକରିଦେଲା ।

୧୯୪୦ ମସିହା ଜୁଲାଇ ମାସରେ ପୁନାଠାରେ କଂଗ୍ରେସ କମିଟି ପ୍ରସ୍ତାବ ପର୍ଯ୍ୟନ୍ତ କରିଥିଲା ଯେ, ''କଂଗ୍ରେସ ଯୁଦ୍ଧରେ ସରକାରଙ୍କୁ ସାହାଯ୍ୟ କରିବ ।'' ଅବଶ୍ୟ ସରକାର ଏହି ପ୍ରସ୍ତାବ ପ୍ରତି ଔଦାସିନ୍ୟ ପ୍ରଦର୍ଶନ କରିବାରୁ ସେହି ବର୍ଷ ପୁଣି ସେପ୍ଟେମ୍ବର ମାସରେ କଂଗ୍ରେସ ଏହାକୁ ପ୍ରତ୍ୟାହାର କରିନେଇଥିଲା । ଏହା କଳଙ୍କିତ 'ପୁନା ପ୍ରସ୍ତାବ' (Poona

Offer) ନାମରେ କୁଖ୍ୟାତ । ଏହି ପରିପ୍ରେକ୍ଷୀରେ 'ବାଣୀ ସତ୍ୟାଗ୍ରହ'ର ବିଫଳତା ପାଇଁ ଦୁଃଖ କରିବାର କିଛି ନାହିଁ ।

୧୯୪୦ରୁ ୧୯୪୨ ଜୁନ ଭିତରେ ଭାରତକୁ ସ୍ୱାଧୀନତା ଦେବା ପ୍ରଶ୍ନ ନେଇ ଇଂଲାଣ୍ଡ, ଆମେରିକା ଓ ଭାରତରେ ଯେଉଁ ଚପ୍‌ରତା ପ୍ରକାଶପାଇଥିଲା, ତା'ର ଇତିହାସ କେବଳ ନିରୁତ୍ସାହଜନକ ନୁହେଁ, ତତୋଧିକ ଅସ୍ୱସ୍ତିକର । ଟୋରି ଓ ଶ୍ରମିକ-ମାନ୍ଦାଦଳିଆଙ୍କ ମିଳିତ ସରକାର ସେତେବେଳେ ଜର୍ମାନୀ ଓ ଜାପାନର ଚଢ଼ାଉରୁ ବ୍ରିଟିଶ ସାମ୍ରାଜ୍ୟବାଦକୁ ରକ୍ଷାକରିବାକୁ କଣ୍ଠାଗତପ୍ରାଣ । ଚୀନର ଚ୍ୟାଂ କୈସେକ ଓ ଆମେରିକାର ରୁଜଭେଲଟଙ୍କ ଚାପ ପାଖରେ ପରାଜିତ ହୋଇ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଭାରତକୁ ତଥାକଥିତ 'ଡୋମିନିୟନ ଷ୍ଟାଟସ୍' ଦେବାକୁ ଷ୍ଟାଫୋର୍ଡ଼ କ୍ରିପ୍‌ସଙ୍କୁ ପଠାଇଲେ ସତ୍ୟ; କିନ୍ତୁ ସେଥିପ୍ରତି ତାଙ୍କର ତିଳେହେଲେ ଆନ୍ତରିକତା ନଥିଲା । ଚର୍ଚ୍ଚିଲଙ୍କ ସାଙ୍ଗକୁ ସେକ୍ରେଟାରୀ ଫର୍ ଦି ଷ୍ଟେଟ ଅଫ୍ ଇଣ୍ଡିଆ (Secretary for the state of India) ଆମେରୀ ଓ ଭାଇସରୟ ଲର୍ଡ଼ ଲିନଲିଥଗୋଙ୍କ ଭଳି ନିଆଁଗିଳା ଟୋରି ନେତାମାନେ ମଧ୍ୟ ରହିଥିଲେ । ନିଜକୁ ସାମ୍ୟବାଦୀ ବୋଲାଉଥିବା କ୍ରିପସ୍ ବା ଅଟଲିଙ୍କର ଭାରତବାସୀଙ୍କ ପ୍ରତି ସହାନୁଭୂତି ରହିଛି ବୋଲି ପ୍ରଚାର ହେଉଥିଲେ ମଧ୍ୟ ସେମାନଙ୍କ ମୌଳିକ ଚରିତ୍ର ମୁଖ୍ୟତଃ ସାମ୍ରାଜ୍ୟବାଦୀ ଥିଲା । ସୁତରାଂ 'କ୍ରିପସ ଅଭିଯାନ' ବିଫଳ ହେଲା । ଦେଶରକ୍ଷା ବିଭାଗ ବ୍ୟତୀତ ଅନ୍ୟ ସମସ୍ତ ବିଭାଗ ବଡ଼ଲାଟ କାଉନ୍‌ସିଲ ହାତରେ ରହିବ ଓ ଉକ୍ତ କାଉନସିଲ କେବଳ ଭାରତୀୟମାନଙ୍କୁ ନେଇ ଗଠିତ ହୋଇ ବସ୍ତୁତଃ ଏକ ମନ୍ତ୍ରିମଣ୍ଡଳ ଭଳି କାର୍ଯ୍ୟ କରିବ ଏବଂ ଇଂଲାଣ୍ଡ ରାଜାଙ୍କ କ୍ଷମତା ଭଳି ବଡ଼ଲାଟଙ୍କ କ୍ଷମତା ମଧ୍ୟ ସୀମାବଦ୍ଧ ରହିବ ବୋଲି କ୍ରିପ୍‌ସ କଂଗ୍ରେସଦଳକୁ ବୁଝାଇବାରୁ ନେହେରୁ ଓ ଆଜାଦ ପ୍ରଭୃତି ଖୁବ୍ ଉତ୍ସାହ ଅନୁଭବ କରିଥିଲେ ।

କ୍ରିପସ ନେହେରୁଙ୍କର ଏକ ବ୍ୟକ୍ତିଗତ ବନ୍ଧୁ ହୋଇଥିବାରୁ ସେହି ସୁଯୋଗରେ କ୍ରିପସଙ୍କ ଜରିଆରେ ନେହେରୁଙ୍କ କଂଗ୍ରେସଦଳକୁ ଏକ 'ମନ୍ତ୍ରିମଣ୍ଡଳ ଭାଲୁ' ଧରାଇଦେଇ ଯୁଦ୍ଧରେ ଭାରତରୁ ସର୍ବାଧିକ ସାହାଯ୍ୟ ସମର୍ଥନ ଆଦାୟ କରିବାହିଁ 'କ୍ରିପସ ମିଶନ'ର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ରହିଥିଲା । 'ଯୁଦ୍ଧପରେ ସ୍ୱାଧୀନତା କଥା ବିଚାର କରାଯିବ' କହି ପ୍ରଥମ ମହାଯୁଦ୍ଧ ପରେ 'ଜାଲିଆନାୱାଲାବାଗ' ଉପହାର ଦେଇଥିବା ବ୍ରିଟିଶ ଶାସକମାନେ ୨ୟ ମହାଯୁଦ୍ଧ ବେଳେ ମଧ୍ୟ ସେହି ପୁରୁଣା ଚାଲ ଖେଳିଲେ ଏବଂ କ୍ଷମତା-ପିପାସୁ କଂଗ୍ରେସଦଳ ମଧ୍ୟ କ୍ରିପ୍‌ସ-ଜାଲ ଭିତରେ କ୍ରମେ ଛନ୍ଦିହେବାକୁ ଲାଗିଲେ ।

ଦେଶର ଜୀବନ-ମରଣ ସମସ୍ୟାଜଡ଼ିତ ଏକ ପ୍ରଶ୍ନ ଉପରେ କଂଗ୍ରେସର ଆପୋଷ ମିଳାମିଶା ନୀତି ଏକ ବିପଜ୍ଜନକ ନୀତି ବୋଲି ରାସବିହାରୀ ଥାଇଲ୍ୟାଣ୍ଡ ରେଡ଼ିଓରେ ଓ ସୁଭାଷ ବର୍ଲିନ ରେଡ଼ିଓରେ ସତର୍କବାଣୀ ଶୁଣାଇଲେ । ସେତେବେଳକୁ ଯୁଦ୍ଧ ଆସି ଭାରତର ଦ୍ୱାରଦେଶରେ ଧକ୍‌କା ମାରିଲାଣି । ୧୯୪୨ ଫେବୃୟାରୀ ୧୫ ତାରିଖରେ ସିଙ୍ଗାପୁର, ମାର୍ଚ୍ଚ ୭ ତାରିଖରେ ରେଙ୍ଗୁନ, ମାର୍ଚ୍ଚ ୧୨ ତାରିଖରେ ଆଣ୍ଡାମାନ ଜାପାନୀମାନଙ୍କ ଦ୍ୱାରା ଅଧିକୃତ ହେଲା । ଭାରତର ତ୍ରିଙ୍କମାଳି, କାକିନଡ଼ା ଓ

ବିଶାଖାପାଟଣାରେ ଜାପାନ ପକ୍ଷରୁ ଯେତେବେଳେ ଆକ୍ରମଣ ହେଉଥାଏ ସେତେବେଳେ କ୍ରିପସ୍ ଦିଲ୍ଲୀରେ । ପ୍ରତାରକ କ୍ରିପସ୍‌କୁ ଫେରାଇଦେବାକୁ ରାସବିହାରୀ ଓ ସୁଭାଷ ଗାନ୍ଧିଜୀଙ୍କୁ ବେତାରଜରିଆରେ ନିବେଦନ କଲେ । ବର୍ଲିନରୁ ସୁଭାଷ କହିଲେ- "Freedom is not given, it is taken Freedom never could be a gift, because every gift carries its obligation, its ties." (ସ୍ୱାଧୀନତା କେହି ଦାନକରେନାହିଁ; ଏହାକୁ ଆଦାୟ କରିବାକୁ ପଡ଼େ । କାରଣ ପ୍ରତ୍ୟେକ ଦାନ ପାଇଁ ଆନୁଗତ୍ୟ ପ୍ରକାଶ କରିବାକୁ ହୁଏ ।) ସୁତରାଂ ଭାରତୀୟଙ୍କଠାରୁ ଆନୁଗତ୍ୟ ବିନିମୟରେ ତଥାକଥିତ ସ୍ୱାଧୀନତା ଯାଚୁଥିବା କ୍ରିପସ୍‌କୁ ଫେରାଇଦିଅ । ଆମେ ଆମର ଶକ୍ତି ଓ ସାମର୍ଥ୍ୟ ବିନିମୟରେ ସ୍ୱାଧୀନତା ଅର୍ଜନକରିବୁ । ଆମେ କାହାକୁ ସ୍ୱାଧୀନତା ଭିକ୍ଷାକରୁନାହୁଁ – ଏହାହିଁ ଥିଲା ସୁଭାଷଙ୍କ ଆଗ୍ନେୟ ଆହ୍ୱାନ ।

ଅବଶ୍ୟ ଗାନ୍ଧିଜୀ କ୍ରିପ୍‌ସ ମିଶନ ପ୍ରତି ବିଶେଷ ଆଗ୍ରହୀ ନଥିଲେ । ତଥାପି ପରିସ୍ଥିତିର ଚାପରେ ସେ କ୍ରିପ୍‌ସଙ୍କୁ ଭେଟିବାକୁ ଦିଲ୍ଲୀ ଗଲେ । କ୍ରିପ୍‌ସଙ୍କର ଯୋଜନା ବ୍ରିଟିଶ ମନ୍ତ୍ରିମଣ୍ଡଳରେ ପୂର୍ବରୁ ଅନୁମୋଦିତ ହୋଇଥିଲା । ସେହି ଘୋଷଣା ପ୍ରତି ଭାରତୀୟ ନେତାମାନଙ୍କର ଅନୁମୋଦନ ଲାଭକରିବାହିଁ କ୍ରିପ୍‌ସଙ୍କ ଭାରତ ଆଗମନର ମୁଖ୍ୟ ଉଦ୍ଦେଶ୍ୟ ଥିଲା । କିନ୍ତୁ ସେ କଂଗ୍ରେସ ନେତାମାନଙ୍କ ଆଗରେ ଛଳନା କଲେ ଯେ ମନ୍ତ୍ରିମଣ୍ଡଳର ଅନୁମୋଦିତ ଯୋଜନାକୁ ସେମାନେ ଚାହିଁଲେ ବଦଳାଇପାରନ୍ତି । କ୍ରିପ୍‌ସଙ୍କ ଛଳନାକୁ କଂଗ୍ରେସ ନେତାମାନେ ବୁଝିପାରିଲେନାହିଁ । କିନ୍ତୁ କ୍ରିପ୍‌ସଙ୍କର ଏହି ଛଳନା ପ୍ରତି ନା ଭାଇସରୟ ନା ଚର୍ଚ୍ଚିଲଙ୍କର ସମର୍ଥନ ଥିଲା । ଫଳରେ କଥାବାର୍ତ୍ତା ମଝିରେ ଚର୍ଚ୍ଚିଲ କ୍ରିପ୍‌ସଙ୍କୁ ଗୋପନ ପରାମର୍ଶ ଦେଲେ ଯେ କଂଗ୍ରେସ ଓ ଗାନ୍ଧିଙ୍କ ଉପରେ ସବୁ ଦୋଷ ଲଦିଦେଇ ତୁମେ ଫେରିଆସ । ବିଶେଷତଃ ସଂଖ୍ୟାଲଘୁ ମୁସଲମାନ ସଂପ୍ରଦାୟଙ୍କୁ ଖୁସି କରିବା ପାଇଁ ଏବଂ କଂଗ୍ରେସ ଓ ହିନ୍ଦୁମାନଙ୍କ ପ୍ରତି ସେମାନଙ୍କୁ ଉତ୍ତେଜିତ କରିବାକୁ ସେହି ପ୍ରସ୍ତାବରେ ଯେଉଁ ବ୍ୟବସ୍ଥା ଥିଲା, ସେଥିରୁ ଇଞ୍ଚେ ସୁଦ୍ଧା ନ ଓହରିବାକୁ ବ୍ରିଟିଶ ପ୍ରଧାନମନ୍ତ୍ରୀ ପରାମର୍ଶ ଦେଲେ । କ୍ରିପ୍‌ସଙ୍କ ଛଳନା ୨ୟ ଓ ୩ୟ ବୈଠକରେ ଧରାପଡ଼ିଗଲା ।

ଗାନ୍ଧିଜୀ ତ ପରିଷ୍କାର କହିଦେଲେ, ''ଆପଣଙ୍କର ଯଦି ଏହି ଯୋଜନା ଆମକୁ ଦେବାର ଥିଲା, ଆପଣ ନ ଆସିଥିଲେ ଚଳିଥାନ୍ତା ।'' ସେ କ୍ରିପ୍‌ସ ପ୍ରସ୍ତାବକୁ 'ଏକ ପୋଷ୍ଟ ଡେଟେଡ଼ ଚେକ୍' ବୋଲି କହି ପରାମର୍ଶ ଦେଲେ ଯେ, ''ଆପଣ ଯଥାଶୀଘ୍ର ସ୍ୱଦେଶକୁ ବାହୁଡ଼ିଯାଆନ୍ତୁ ।''

ସେୟା ହେଲା, କ୍ରିପ୍‌ସ ଫେରିଗଲେ । ଯୁଦ୍ଧ ଭିତରେ ସୀମିତ ସ୍ୱାୟତ୍ତଶାସନ ମିଳିବାର ଯେଉଁ କ୍ଷୀଣ ଆଶା ସଂଚାରହୋଇଥିଲା ତାର ପୂର୍ଣ୍ଣଚ୍ଛେଦ ପଡ଼ିଲା । ଚାରିଆଡ଼େ ଅସନ୍ତୋଷ, ହତାଶା ଓ ନୈରାଶ୍ୟର ବାତାବରଣ ଖେଳିଗଲା । ସଶସ୍ତ୍ର ସଂଗ୍ରାମୀମହଲରେ କିନ୍ତୁ ଉତ୍ସାହ ଓ ଉନ୍ମାଦନାର ଢେଉ – ଏଥର ପ୍ରସ୍ତୁତ ହେଉ ଦେଶ ଚରମ ସଂଗ୍ରାମପାଇଁ । ପ୍ରବାସୀ ଭାରତୀୟମାନେ ହୁଙ୍କାର ଦେଲେ – ''ଆପଣମାନେ ସଂଗ୍ରାମ ପାଇଁ ପ୍ରସ୍ତୁତ ହୁଅନ୍ତୁ । ଆମେ

ଏଠାରୁ ମଧ୍ୟ ଯେକୌଣସି ମୁହୂର୍ତ୍ତରେ ଅଭିଯାନ ଆରମ୍ଭ କରିଦେବୁ । ଆଉ କଥାବାର୍ତ୍ତାରେ ସମୟ ନଷ୍ଟ କରନାହିଁ– ସଂଗ୍ରାମ, ସଂଗ୍ରାମ, ସଂଗ୍ରାମ ।'' ଏହାହିଁ ଥିଲା ସୁଭାଷଙ୍କର ଆହ୍ୱାନ, ଆଜାଦ ହିନ୍ଦର ଡାକରା । ପ୍ରବାସୀ ଭାରତୀୟମାନଙ୍କର ନିବେଦନ ଦେଶବାସୀଙ୍କ ପ୍ରତି, କଂଗ୍ରେସ ପ୍ରତି ଓ ଗାନ୍ଧିଜୀଙ୍କ ପ୍ରତି ।

ଥାଇଲାଣ୍ଡ ରେଡ଼ିଓରୁ ରାସବିହାରୀ କହିଲେ- "I Rashbihari Bose representing the Indians living in South Asia pay my homage to you, Bapuji. I also pay my homage to all those Indians some of them known and honoured by thier countrymen but most of them unwept, unhonoured and unsung who since India lost freedom to the British have individually and collectively made an offer of thier lives to regain it."

ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ରାସବିହାରୀ ପୁଣି କହିଲେ- "The Indians living in East- Asia regard you as the sole leader of the Indian Nation and have no hesitation in saying that the fate of the Indian nation is secure in your hand." ଅର୍ଥାତ, ପୂର୍ବ-ଏସିଆର ବାସକରୁଥିବା ତିରିଶ ଲକ୍ଷ ଭାରତବାସୀ ଆପଣଙ୍କୁ ଆମ ଜାତିର ଏକମାତ୍ର ନେତା ବୋଲି ମନେକରନ୍ତି ଏବଂ ଆମର ସାମାନ୍ୟ ସନ୍ଦେହ ନାହିଁ ଯେ ଭାରତର ଭାଗ୍ୟ ଆପଣଙ୍କ ହାତରେ ନିରାପଦ ରହିଛି ।

X X X X

ବ୍ରିଟିଶ ସରକାର ଯେ, ବାସ୍ତବରେ ଭାରତୀୟମାନଙ୍କୁ ସୀମିତ ସ୍ୱାୟତ୍ତଶାସନ ଅଧିକାର ଦେବାକୁ ଚାହୁଁନଥିଲା, ତାହା କ୍ରିପ୍‌ସ ଫେରିଗଲା ପରେ ସ୍ପଷ୍ଟ ଜଣାଗଲା । ରୁଜଭେଲଟ କ୍ରିପସଙ୍କ ବିଫଳତାରେ ଦୁଃଖିତ ହୋଇ ଯେତେବେଳେ ଚର୍ଚ୍ଚିଲଙ୍କୁ ପରାମର୍ଶ ଦେଲେ ଯେ, କ୍ରିପସଙ୍କୁ ଆଉ କିଛିଦିନ ଭାରତରେ ରଖାଯାଉ, ଚର୍ଚ୍ଚିଲ କୁମ୍ଭୀର-କାନ୍ଦଣା କାନ୍ଦି କହିଲେ, ''କ'ଣ କରାଯିବ ? ଆପଣଙ୍କ ପରାମର୍ଶ କ୍ରିପସଙ୍କୁ ଶୁଣାଇବାର ଆଉ ସୁଯୋଗ ନାହିଁ । ସେ ଭାରତ ଛାଡ଼ିସାରିଲାଣି ।'' ଏହି ବିଫଳତାର ସଂପୂର୍ଣ୍ଣ ଦୋଷ କଂଗ୍ରେସ ଓ ଗାନ୍ଧିଜୀଙ୍କର ବୋଲି କ୍ରିପସ ବିଲାତରେ ପହଞ୍ଚିବା ସଙ୍ଗେ ସଙ୍ଗେ ପ୍ରଚାର ଆରମ୍ଭ କରିଦେଲେ । କିନ୍ତୁ ଚର୍ଚ୍ଚିଲ ବାସ୍ତବରେ ଖୁସିହୋଇଥିଲେ; କାରଣ କ୍ରିପସ ଫେରିଯିବାଦ୍ୱାରା ଚର୍ଚ୍ଚିଲଙ୍କର ସମସ୍ତ ଉଦ୍ଦେଶ୍ୟ ସଫଳହେଲା ।

ଚର୍ଚ୍ଚିଲ ଯେତେବେଳେ କ୍ରିପସଙ୍କର ବିଫଳତା ସମ୍ବାଦ ପାଇଲେ, ସେ ତାଙ୍କର ଅଫିସରେ ଖୁସିରେ ନାଚିବାକୁ ଲାଗିଲେ– ''ବେଶ୍, ଆମେରିକା ବି ଆମକୁ ଆଉ ଦୋଷ ଦେବେ ନାହିଁ କିମ୍ବା ଶ୍ରମିକଦଳର ଭାବପ୍ରବଣତା ଆମକୁ ଆଉ ବିବ୍ରତ କରିବ ନାହିଁ । ଏଥର ଚାଲ, ଯୁଦ୍ଧ ଭଳି ମହାନ୍ ଓ ଗମ୍ଭୀର କାର୍ଯ୍ୟରେ ମନୋନିବେଶ କରିବା ।''[୧]

କିନ୍ତୁ ବାସ୍ତବରେ ନା ଜାଠନେତା ଚର୍ଚ୍ଚିଲ୍ ନା ଶ୍ରମିକ ନେତା ଅଟଲି ଓ କ୍ରିପସ କମ୍ପାନୀ ନା ଭାଇସରୟ ଲିନଲିଥିଗୋ କେହି ଯୁଦ୍ଧର ଘଡ଼ିସନ୍ଧି ସମୟରେ ଭାରତକୁ କୌଣସି ପ୍ରକାରର

1. The Last year of British Rule - M. Edward - Pg. 79

ସ୍ୱାୟତ୍ତଶାସନ ମଧ୍ୟ ଦେବାକୁ ରାଜି ନଥିଲେ । ଲିନଲିଥଗୋ ପ୍ରସିଦ୍ଧ ସାମ୍ବାଦିକ ଦୁର୍ଗାଦାସଙ୍କୁ ସ୍ପଷ୍ଟ କହିଥିଲେ – "ଭାରତ ଆସନ୍ତା ପଚାଶ ବର୍ଷ ଭିତରେ ମଧ୍ୟ ସ୍ୱାଧୀନତା ଲାଭ କରିବାକୁ ଆଶା କରିବା ବୃଥା । ପାର୍ଲିଆମେଣ୍ଟାରୀ ରାଜନୀତିରେ ଅନଭିଜ୍ଞ ଭାରତବାସୀଙ୍କୁ ତାଲିମ ଦେବାକୁ ବହୁ ସଂଖ୍ୟକ ଇଂରେଜଙ୍କୁ ଭାରତରେ ରହିବାକୁ ପଡ଼ିବ । ଆଜିକାଲି ଏୟାରକଣ୍ଡିସନ୍ଡ଼ ବିଜ୍ଞାନ ଯୁଗରେ ଡେରାଡୁନ ଭଳି ଶୀତପ୍ରଧାନ ସ୍ଥାନରେ ଆଜୀବନ ବାସକଲେ ମଧ୍ୟ ଇଂରେଜମାନଙ୍କର ବିଶେଷ କୌଣସି ଅସୁବିଧା ହେବନାହିଁ ।"(୧)

ଇଂରେଜମାନଙ୍କର ଏଭଳି ମନୋଭାବ ଦେଖି କଂଗ୍ରେସ ଓ ଗାନ୍ଧିଜୀ ଏକ ଘୋର ଅସ୍ୱସ୍ତିକର ପରିସ୍ଥିତିରେ ପଡ଼ିଲେ । ନେହେରୁ ଓ ଆଜାଦ ପ୍ରଭୃତିଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ବହୁ କଂଗ୍ରେସ ନେତା ଓ ନିଜେ ଗାନ୍ଧିଜୀ ବର୍ତ୍ତମାନ ଏଭଳି ପରିସ୍ଥିତିର ସମ୍ମୁଖୀନ ହେଲେ ଯେ, ପ୍ରତ୍ୟକ୍ଷ ସଂଗ୍ରାମର ଡାକରା ଦେବା ବ୍ୟତୀତ ସେମାନଙ୍କ ଆଗରେ ଅନ୍ୟ କୌଣସି ରାସ୍ତା ରହିଲା ନାହିଁ । ନେହେରୁ ଓ ଗାନ୍ଧିଜୀଙ୍କ ଭିତରେ ମତଭେଦର ମୁଖ୍ୟ କାରଣ ହେଲା ଯୁଦ୍ଧର ଘନଘଟା ଭିତରେ ବିଶେଷତଃ ଭାରତର ପୂର୍ବ-ସୀମାନ୍ତରେ ଜାପାନ ପଇଁତରା ମାରୁଥିବାବେଳେ ଦେଶ ଭିତରେ ପ୍ରତ୍ୟକ୍ଷ ସଂଗ୍ରାମର ଆହ୍ୱାନ ଦିଆଯିବା ଉଚିତ କି ନୁହେଁ । ଯୁଦ୍ଧପରେ ସ୍ୱାଧୀନତା ମିଳିବ ବୋଲି ଭରସାକରି ଇଂରେଜମାନଙ୍କ ସମରାୟୋଜନରେ ସବୁପ୍ରକାର ସାହାଯ୍ୟ କରିବାକୁ ଗାନ୍ଧିଜୀଙ୍କର ବିବେକ ତାଙ୍କୁ ବାଧାଦେଲା । ପ୍ରଥମ ମହାଯୁଦ୍ଧର ତିକ୍ତ ଅଭିଜ୍ଞତା ସେ ଭୁଲିନଥିଲେ । ତେଣୁ ଗାନ୍ଧିଜୀ ସଂଗ୍ରାମ ଡାକରା ଦେବାକୁ ମନକୁ ପ୍ରସ୍ତୁତ କରିନେଲେ ।

କିନ୍ତୁ କି ସଂଗ୍ରାମର ଡାକରା ଦେବେ ଗାନ୍ଧିଜୀ ? ଚରମ ସଂଗ୍ରାମ କରିବାର ନୈତିକ ସାହସ କ'ଣ ଅଛି କଂଗ୍ରେସର ? ବର୍ତ୍ତମାନ ସଂଗ୍ରାମର ଅର୍ଥ – ବ୍ରିଟିଶର ପରାଜୟ । କଂଗ୍ରେସ ଛାତିରେ ସେ ତାକତ ଅଛି ଇଂରେଜମାନଙ୍କୁ ଏ ବିପଦରେ ପକେଇବାକୁ ? ଇଂରେଜର ପରାଜୟ ଡାକିଆଣିବାକୁ ହିମ୍ମତ ଅଛି କଂଗ୍ରେସର ?

**ଭାରତ ଛାଡ଼**

"ସୁଭାଷ କି ସଂଗ୍ରାମ କଥା କହୁଛି ?" ଗାନ୍ଧିଜୀଙ୍କ ମନରେ ସମ୍ଭବତଃ ସେହି ପ୍ରଶ୍ନ । ସଶସ୍ତ୍ର ବିପ୍ଳବ ? ନା-ନା, ଅସମ୍ଭବ । ଗାନ୍ଧିଜୀ ତ ଚିତ୍ତରଞ୍ଜନ ଦାସଙ୍କୁ ଦିନେ ଯୁକ୍ତିଛଳରେ କହିଥିଲେ, "ଭାରତବାସୀଙ୍କ ପାଖରେ ଯଦି ତରବାରି ଥାନ୍ତା, ମୁଁ ସେମାନଙ୍କୁ ତରବାରି ଉତ୍ତୋଳନ କରିବାକୁ କହନ୍ତି । ଆଜି ଭାରତବାସୀ ନିରସ୍ତ୍ର; ସୁତରାଂ ଅହିଂସା ଛଡ଼ା ବାଟ କ'ଣ ?" ଲୋକମତ ଉତ୍ତେଜିତ – "ସଂଗ୍ରାମ, ସଂଗ୍ରାମ ଦରକାର । ବ୍ରିଟିଶ ସିଂହ ବର୍ତ୍ତମାନ କ୍ଷତବିକ୍ଷତ, ସୁତରାଂ ଏହାହିଁ ସୁବର୍ଣ୍ଣ ସୁଯୋଗ ।"

ସୁଭାଷଙ୍କର ସଶସ୍ତ୍ର ସଂଗ୍ରାମର ଆହ୍ୱାନ କ'ଣ ଗାନ୍ଧିଜୀଙ୍କ ଉପରେ କିଛି ପ୍ରଭାବ ପକାଇଥିଲା ?– ଏହା ଏକ ବିବାଦୀୟ ପ୍ରଶ୍ନ ।

---

1. Durga Das - India from curzon to Nehru and after - Pg. 208

ଗାନ୍ଧିଜୀଙ୍କ ସେକ୍ରେଟାରୀ ପ୍ୟାରେଲାଲ ଲେଖିଛନ୍ତି – "ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଦେଶପ୍ରେମ, ସାମର୍ଥ୍ୟ ଓ ସାହସକୁ ସେ ପ୍ରଶଂସା କରିବାକୁ ଲାଗିଲେ !" ତତ୍କାଳୀନ କଂଗ୍ରେସ ସଭାପତି ଆଜାଦ ଆହୁରି ସ୍ପଷ୍ଟଭାବରେ ଲେଖିଛନ୍ତି – "ମୁଁ ମଧ୍ୟ ଲକ୍ଷ୍ୟ କଲି ଯେ, ସୁଭାଷଙ୍କର ପଳାୟନ ଗାନ୍ଧିଜୀଙ୍କ ମନ ଉପରେ ଗଭୀର ପ୍ରଭାବ ପକାଇଥିଲା ଏବଂ ମୁଁ ତାଙ୍କର ମନୋଭାବରେ ବହୁ ପରିବର୍ତ୍ତନ ଅନୁଭବକଲି । ଗାନ୍ଧିଜୀଙ୍କର କେତେକ ମନ୍ତବ୍ୟ ଶୁଣି ମୋର ପୂର୍ଣ୍ଣ ହୃଦ୍‌ବୋଧହେଲା ଯେ, ସେ ସୁଭାଷଙ୍କର ସାହସ ଶକ୍ତି ଦେଖି ବିସ୍ମିତ ହୋଇଯାଇଅଛନ୍ତି ।"

ଯୁଦ୍ଧଜନିତ ପରିସ୍ଥିତି ଗାନ୍ଧିଜୀଙ୍କୁ ବିଶେଷ ବିବ୍ରତକଲା । ଜାପାନୀମାନେ ଯେକୌଣସି ମୁହୂର୍ତ୍ତରେ ଭାରତ ଦଖଲ କରିବେ ବୋଲି ପ୍ରବଳ ଜନରବ ସୃଷ୍ଟି ହେଲା । ଇଂରେଜମାନେ ଜାପାନୀ ଅଗ୍ରସରକୁ ରୋକିବାକୁ ଯେଉଁ ସବୁ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣକଲେ, ତାହା ରୋଗର ଯନ୍ତ୍ରଣାଠାରୁ ଅଧିକ ଯନ୍ତ୍ରଣାଦାୟକ ହେଲା । ସମୁଦ୍ର ଉପକୂଳସ୍ଥ ଅଧିବାସୀମାନଙ୍କୁ ଅକଥନୀୟ ଦୁଃଖ ସହିବାକୁ ପଡ଼ିଲା । ଦେଶୀ ଲଞ୍ଚ, ମଟର, ଏପରି କି ସାଇକେଲ ପ୍ରଭୃତି ଜାପାନୀମାନଙ୍କ ହାତରେ ପଡ଼ିଲେ ସେମାନେ ଦେଶର ଅଭ୍ୟନ୍ତରକୁ ସହଜରେ ଯାଇପାରିବେ ବୋଲି ଆଶଙ୍କାକରି ସରକାର ସାଧାରଣ ଲୋକଙ୍କଠାରୁ ସେହି ଯାନବାହନଗୁଡ଼ିକ ହୁଏତ ଜବତ କରିନେଲେ ବା ନଷ୍ଟକରିଦିଆଗଲା । ସୈନ୍ୟମାନଙ୍କ ପାଇଁ ପ୍ରଚୁର ଖାଦ୍ୟଶସ୍ୟ ଆବଶ୍ୟକ ପଡ଼ିବାରୁ ସାଧାରଣ ଭାବରେ ଖାଦ୍ୟ ଅଭାବ ପଡ଼ିଲା । ଓଡ଼ିଶା ଓ ବଙ୍ଗଳାରେ ଘୋର ଦୁର୍ଭିକ୍ଷ ଆଶଙ୍କା ଦେଖାଗଲା । ଲୋକେ ଆତଙ୍କିତ ତ୍ରସ୍ତ ଓ ଉତ୍ତେଜିତ ହୋଇଗଲେ । ସରକାରୀ କଳ ମୁଖ୍ୟତଃ ଯୁଦ୍ଧ ଆୟୋଜନରେ ଲାଗିରହିବାରୁ ସାଧାରଣ ଶାସନ ପ୍ରତି କେହି ଧ୍ୟାନ ଦେଇପାରିଲେନାହିଁ । ଯୁଦ୍ଧ-ଖର୍ଚ୍ଚ ତୁଲାଇବାକୁ ବହୁ ପରିମାଣରେ ନୋଟ ଛପା ହେବାରୁ ମୁଦ୍ରାସ୍ଫୀତି ମଧ୍ୟ ଉତ୍କଟ ଆକାର ଧାରଣ କଲା । ଅତ୍ୟାବଶ୍ୟକ ଜିନିଷର ମୂଲ୍ୟବୃଦ୍ଧି ହେବାରୁ ଲୋକେ ଅତିଷ୍ଠ ହୋଇଗଲେ । ଚାରିଆଡ଼େ ଆତଙ୍କ ଓ ଅସନ୍ତୋଷର ବାତାବରଣ ସୃଷ୍ଟି ହେଲା ।

ମଇ ମାସରେ ନିଜେ ଆଜାଦ କଲିକତାର ଅବସ୍ଥା ନିମ୍ନପ୍ରକାରେ ଗାନ୍ଧିଜୀଙ୍କୁ ଜଣାଇଥିଲେ – "ସବୁ କ୍ଷେତ୍ରରେ ପରିସ୍ଥିତିର ଅବନତି ଦେଖି ମୁଁ ବିଶେଷ ବିବ୍ରତବୋଧ କରୁଅଛି । କଲିକତା ସହରକୁ ଖାଲିକରିଦିଆଯିବ ବୋଲି ପ୍ରବଳ ଜନରବ ସୃଷ୍ଟି ହୋଇଥିବାରୁ କଲିକତା ଲୋକେ ଆତଙ୍କିତ ହୋଇ ସହର ଛାଡ଼ି ପଳାଇଯାଉଛନ୍ତି । ଇଂରେଜମାନେ ଏହି ଯୁଦ୍ଧରେ ନିଶ୍ଚୟ ପରାଜିତ ହେବେ ବୋଲି ଏଠାରେ ଅଧିକାଂଶ ଲୋକେ ଦୃଢ଼ବିଶ୍ୱାସ କରୁଅଛନ୍ତି ଏବଂ ସମସ୍ତେ ଜାପାନୀମାନଙ୍କୁ ସ୍ୱାଗତ ଜଣାଇବାକୁ ପ୍ରସ୍ତୁତ ହୋଇ ରହିଅଛନ୍ତି । ଇଂରେଜମାନଙ୍କ ବିରୁଦ୍ଧରେ ତିକ୍ତତା ଏତେ ବଢ଼ିଯାଇଅଛି ଯେ, ଏଠା ଲୋକେ ପରିଣତି ଯାହା ହେଉନା କାହିଁକି, ଜାପାନୀମାନଙ୍କର ଆଗମନକୁ ଆଗ୍ରହସହକାରେ ଅପେକ୍ଷା କରି ରହିଅଛନ୍ତି । ସେ ଜାଣିପାରିଛନ୍ତି ଓ ସରକାର ମଧ୍ୟ ଆଶଙ୍କା କରୁଅଛନ୍ତି ଯେ, ଜାପାନୀମାନେ 'ଡାଇମଣ୍ଡ ହାର୍ବର' ବାଟେ କଲିକତାରେ ପ୍ରବେଶ କରିବେ ।"୧

1. India wins freedom - M.A.K. Azad - Pg. 71-72

ଜାପାନୀମାନଙ୍କର ଅଭିଯାନର ସମ୍ମୁଖୀନ ହେବାକୁ ଅସମର୍ଥ ଇଂରେଜ ସରକାର ପୋଡ଼ାଜଳା ନୀତି ଗ୍ରହଣ କରିବେ ବୋଲି ଆଜାଦ ଗାନ୍ଧିଜୀଙ୍କୁ ଲେଖିଥିଲେ । ଏପରି କି ଜାପାନୀ ସୈନ୍ୟମାନେ ଆସିବାର ଅବ୍ୟବହିତ ପୂର୍ବରୁ ଇଂରେଜ ସୈନ୍ୟମାନେ କଲିକତା ଖାଲି କରି ପଳାଇବେ ଏବଂ ରାସ୍ତା, ପୋଲ ଓ ଗୁରୁତ୍ୱପୂର୍ଣ୍ଣ ଶିଳ୍ପାନୁଷ୍ଠାନକୁ ଧ୍ୱଂସ କରି ଚାଲିଯିବେ ବୋଲି ଯୋଜନା ହୋଇଥିଲା ।

ଠିକ୍ ସେହି ସମୟରେ ମୀରାବେନ ଗାନ୍ଧିଜୀଙ୍କୁ ଓଡ଼ିଶା ଉପକୂଳର ପରିସ୍ଥିତି ସମ୍ପର୍କରେ ମଧ୍ୟ ଏକ ଦୀର୍ଘ ପତ୍ର ଲେଖିଥିଲେ । ସେଥିରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଉଲ୍ଲେଖ ଥିଲା ଯେ, ''ଓଡ଼ିଶାରେ ଘୋର ଆତଙ୍କରାଜ ଖେଳିଯାଇଛି ଏବଂ ସରକାରର ଅଯୋଗ୍ୟତା ସମ୍ପର୍କରେ ଜନସାଧାରଣଙ୍କର ଆଉ ସାମାନ୍ୟ ସନ୍ଦେହ ସୁଦ୍ଧା ନାହିଁ । ଜାପାନ କଣ– ଯେକୌଣସି ବ୍ରିଟିଶ ବିରୋଧୀ ସରକାରକୁ ଲୋକେ ଉତ୍କଣ୍ଠିତ ହୋଇ ଅପେକ୍ଷା କରି ରହିଅଛନ୍ତି ।''୧

ଡକ୍ଟର ମହତାବଙ୍କ ଇତିହାସରେ ରହିଅଛି – ଓଡ଼ିଶାରେ ଏଭଳି ଆତଙ୍କରାଜ ଖେଳିଯାଇଥିଲା ଯେ, ଓଡ଼ିଶାର ରାଜଧାନୀ କଟକରୁ (ସେତେବେଳେ କଟକ ଓଡ଼ିଶାର ରାଜଧାନୀ ଥିଲା) ସମ୍ବଲପୁରକୁ ଉଠାଇନେବାକୁ ଯୋଜନା ହୋଇ କେତେକ ସରକାରୀ କାଗଜପତ୍ର ସମ୍ବଲପୁରକୁ ପଠାଇ ଦିଆଯାଇଥିଲା ।

ତେଣେ ମାଲୟ ଓ ବର୍ମା ଦଖଲହେବାରୁ କେତେକ ଭାରତୀୟ ସୈନ୍ୟ ଭାରତ ଆଡ଼କୁ ପଳାଇଆସିଲେ । କିନ୍ତୁ ଏହି ପଳାୟମାନ ଭାରତୀୟମାନଙ୍କ ପାଇଁ ମଧ୍ୟ ସରକାରଙ୍କ ପକ୍ଷରୁ କୌଣସି ସୁବ୍ୟବସ୍ଥା କରାଯାଇ ନ ଥିଲା । ଗୋରା ସୈନ୍ୟମାନଙ୍କ ପାଇଁ କେତେକ ନିରାପଦ ରାସ୍ତାକୁ ନିର୍ଦ୍ଦିଷ୍ଟ ରଖାଯାଇଥିଲା ଏବଂ ସେହି ରାସ୍ତା ଭାରତୀୟ କିମ୍ବା ଭାରତୀୟ ସୈନ୍ୟମାନଙ୍କ ପାଇଁ ନିଷିଦ୍ଧ ହୋଇଥିଲା ।

ଭାରତୀୟମାନଙ୍କର ଏହି ଅସହାୟ ଅବସ୍ଥା ଏବଂ ସରକାରର ଅପାରଗତାରେ ଗାନ୍ଧିଜୀ ବିଶେଷ ବିବ୍ରତ ବୋଧ କଲେ ଏବଂ ତାଙ୍କର ସ୍ୱଭାବସୁଲଭ ନୀତିରେ ଏହାର ସମାଧାନ ପାଇଁ 'ଭଗବାନ୍'ଙ୍କୁ ପ୍ରାର୍ଥନା କଲେ । ନେହେରୁ କିନ୍ତୁ ସେ ପର୍ଯ୍ୟନ୍ତ ଭାବୁଥାନ୍ତି ଯେ, ଏ ଯୁଦ୍ଧରେ ଇଂରେଜମାନଙ୍କୁ ଅଡୁଆରେ ପକାଇବା ଉଚିତ ନୁହେଁ; ଅର୍ଥାତ୍ ସେମାନେ ନିଜେ ବିପନ୍ନ ଥିବାବେଳେ ଭାରତର ସ୍ୱାଧୀନତାପାଇଁ ଦାବି କରିବା ଏକ ଆତ୍ମଘାତୀ ନୀତି । ''ଭାରତବାସୀ ଯେ 'ଗଣତନ୍ତ୍ର' ସପକ୍ଷରେ ଲଢ଼ିପାରିବେ ନାହିଁ ଏହା ତାଙ୍କୁ ଖୁବ ଆହତ କରିଥିଲା ।'' (୨)

ସୋମବାର 'ମୌନ ଦିବସ'ରେ ଗାନ୍ଧିଜୀ 'ଭଗବାନ୍'ଙ୍କର ନିର୍ଦ୍ଦେଶ ପାଇଲେ ଏବଂ ସର୍ବପ୍ରଥମେ ହୋରେସ ଆଲୋକଜାଣ୍ଡାରଙ୍କୁ ଏକ ପତ୍ର ଲେଖି ତାଙ୍କର ସମାଧାନ ସୂତ୍ର ଜଣାଇଥିଲେ । ସେଥିରେ ସେ ଲେଖିଥିଲେ, 'ବ୍ରିଟିଶ ସରକାର ତାର ସାମ୍ରାଜ୍ୟବାଦୀ ଚରିତ୍ରକୁ

1. Mahatma Gandhi - Last Phase - Pyarelal
2. India wins freedom - M.A.K. Azad - Pg. 71-72

ପ୍ରକାଶ୍ୟଭାବେ ପ୍ରତିପାଦିତ କରିଅଛି । ସେ ଯଦି ସାମ୍ରାଜ୍ୟବାଦୀ ନୀତି ପରିତ୍ୟାଗ କରି 'ସ୍ୱାଧୀନତା ଓ ଗଣତନ୍ତ୍ର' ରୂପ ପରିଗ୍ରହ କରିପାରନ୍ତା, ତା'ର ନୈତିକ ଶକ୍ତି ବୃଦ୍ଧିପା'ନ୍ତା ।'' ସେ ଲେଖିଥିଲେ— ''ମୋର ଦୃଢ଼ମତ ଯେ ବ୍ରିଟିଶ ଚୁପ୍‌ଚାପ୍ ଭାରତ ପରିତ୍ୟାଗ କରି ଚାଲିଯାଉ, ତାହା ହେଲେ ବର୍ମା ଓ ମାଲୟରେ ସେମାନେ ଯେଉଁ ବିପର୍ଯ୍ୟୟର ସମ୍ମୁଖୀନ ହେଲେ ତାହାର ପୁନରାବୃତ୍ତି ହୁଅନ୍ତା ନାହିଁ ।''(୧)

ଏପ୍ରିଲ ୨୬ ତାରିଖରେ 'ହରିଜନ' ପତ୍ରିକାରେ ମଧ୍ୟ ଗାନ୍ଧିଜୀ ସେହି ଦାବିକୁ ଦୋହରାଇଲେ । ଏପ୍ରିଲ ୨୯ ତାରିଖରେ ଆହ୍ଲାବାଦଠାରେ ଯେତେବେଳେ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକ ବସିଲା, ସେ 'ଭାରତଛାଡ଼' ପ୍ରସ୍ତାବ ଗ୍ରହଣ କରିବାକୁ କମିଟିକୁ ପରାମର୍ଶ ଦେଲେ । ସେ କହିଲେ, ''ମୁଁ ଅନୁଭବ କରୁଛି ଯେ, ମୋ' ଜୀବନର ଏହି ମହାନ୍ କାର୍ଯ୍ୟ ସମ୍ପନ୍ନ କରିବାକୁ ମୋର ସମସ୍ତ ଶକ୍ତି ନିୟୋଜିତ କରିବି ।''

ତାଙ୍କର ସ୍ପଷ୍ଟ ମତ ଯେ, ''ଇଂରେଜମାନେ ଭାରତ ଛାଡ଼ି ଚାଲିଗଲେ ଜାପାନ ପାଖରେ ଭାରତ ଆକ୍ରମଣ କରିବାର କୌଣସି ଯୁକ୍ତି ରହିବ ନାହିଁ । କାରଣ ଇଂରେଜ ହେଉଛି ଜାପାନର ଶତ୍ରୁ — ଭାରତର ନୁହେଁ । ବ୍ରିଟେନ ବଳପୂର୍ବକ ଭାରତକୁ ଯୁଦ୍ଧରେ ପୂରାଇଦେଉଛି ଏବଂ ସୈନ୍ୟଦଳ ସାହାଯ୍ୟରେ ଭାରତକୁ ବଳପୂର୍ବକ ପରାଧୀନ କରିରଖିଛି; ସୁତରାଂ ଏ ଯୁଦ୍ଧରେ ଭାରତର ଲାଭ କଣ ?''

''ବ୍ରିଟେନ ତେବେ କାହା ହାତରେ ଭାରତର ଶାସନ ଦାୟିତ୍ୱ ଛାଡ଼ିଯିବ ?'' ଏ ପ୍ରଶ୍ନର ଉତ୍ତରରେ ଗାନ୍ଧିଜୀଙ୍କର ବକ୍ତବ୍ୟ ହେଲା— ''ମୋର ପ୍ରସ୍ତାବ ହେଉଛି- ଶାସନ ଦାୟିତ୍ୱ 'ଭଗବାନ୍'ଙ୍କ ହାତରେ ଛାଡ଼ିଦେଇ ଯାଅ । ଆଧୁନିକ ପରିଭାଷାରେ ତାକୁ ତୁମେ 'ଅରାଜକତା' ବୋଲି କହିପାର । ଅରାଜକତା ଅର୍ଥ ଅନ୍ତର୍ଯୁଦ୍ଧ ମଧ୍ୟ ହୋଇପାରେ । କିନ୍ତୁ ସେହି ଅନ୍ତର୍ଯୁଦ୍ଧ ମଧ୍ୟରୁ ବାସ୍ତବ ଭାରତ ଜନ୍ମଲାଭ କରିବ । ଇଂରେଜମାନଙ୍କ ଦ୍ୱାରା ଏଠାରେ ଯେଉଁ ସରକାରୀ ଅରାଜକତା ଚାଲିଛି, ତାହା ଅପେକ୍ଷା ଅନ୍ତର୍ଯୁଦ୍ଧ ଶତଗୁଣେ ଶ୍ରେୟସ୍କର ।''

"Under my proposal, they have to leave India in God's hands but in the modern parlance, to anarchy, and that anarchy may lead to interecine warfare for a time or to unrestrained dacoities. From there, a true India will rise in the place of the false one we see."

''ଇଂରେଜମାନେ କାର୍ଯ୍ୟଦ୍ୱାରା ପ୍ରଭାବିତ ହୁଅନ୍ତି- କଥାରେ ନୁହେଁ । ଆମ୍ଭମାନଙ୍କୁ ବର୍ତ୍ତମାନ କାର୍ଯ୍ୟରେ କିଛି ଦେଖାଇବାକୁ ପଡ଼ିବ'' — ଗାନ୍ଧିଜୀ କହିଲେ ।

ଆମେରିକାନ୍ ସାମ୍ବାଦିକ ଲୁଇଫିସର ଗାନ୍ଧିଜୀଙ୍କୁ ପଚାରିଲେ- ''ଏହା ଫଳରେ ହିଂସାକାଣ୍ଡ ସୃଷ୍ଟି ହୋଇପାରେ ।'' ଗାନ୍ଧିଜୀ ଜବାବ ଦେଲେ— ''ହୋଇପାରେ । ପନ୍ଦର ଦିନ ହିଂସାକାଣ୍ଡ । କିନ୍ତୁ ଆମେ ଯଥାଶୀଘ୍ର ତାକୁ ଆୟତ୍ତକୁ ଆଣିପାରିବୁ । ମିତ୍ର-ଶକ୍ତିର ବିଜୟ ଯେଉଁମାନେ ଚାହାଁନ୍ତି, ସେମାନଙ୍କୁ ଆମ ପ୍ରସ୍ତାବ ଗ୍ରହଣ କରିବାକୁ ହେବ । ମାନବିକ ସ୍ୱାଧୀନତା ଭଳି ବଡ଼ ବଡ଼ କଥା କହୁଥିବା ବ୍ରିଟେନ ନିଜେ 'ମାନବିକ ସ୍ୱାଧୀନତା' ଆମକୁ

1. Mahatma Gandhi - Vol. VI D.G. Tendulkar - P.75

ନ ଦେଲେ ସେ ପାପରୁ ମୁକ୍ତ ହେବ କେମିତି ?'' ଏହି ପ୍ରସ୍ତାବ ସମ୍ପର୍କରେ ମିଳାମିଶାର ପ୍ରଶ୍ନ ନାହିଁ । ହୁଏତ ଏହାକୁ ଗ୍ରହଣ କର ନଚେତ ପ୍ରତ୍ୟାଖ୍ୟାନ କର ।''

ଏହିଭଳି ଏକ ଉତ୍ତେଜନାମୟ ପରିସ୍ଥିତି ଭିତରେ 'ଭାରତ ଛାଡ଼' ପ୍ରସ୍ତାବ ସମ୍ପର୍କରେ ବିସ୍ତୃତ ଆଲୋଚନା କରିବା ପାଇଁ ଜୁଲାଇ ୬ ତାରିଖରେ ୱାର୍ଦ୍ଧାଠାରେ କାର୍ଯ୍ୟକାରୀ କମିଟିର ବୈଠକ ବସିଥିଲା । ଜୁଲାଇ ୬ରୁ ଜୁଲାଇ ୧୪ ତାରିଖ ପର୍ଯ୍ୟନ୍ତ 'ଭାରତ ଛାଡ଼' ପ୍ରସ୍ତାବ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା ହେଲା । ଜାପାନୀ ଆକ୍ରମଣର ପ୍ରତିରୋଧ ପାଇଁ ଇଂରେଜର ଅସହାୟତା ଦେଖି କଂଗ୍ରେସ ନେତାମାନେ ନିଜେ ଅସହାୟ ବୋଧକଲେ । ତେଣେ ସୁଭାଷ ଓ ରାସବିହାରୀଙ୍କ ନେତୃତ୍ୱରେ ବିଦେଶରେ ଚାଲିଥିବା ସଶସ୍ତ୍ର ଅଭିଯାନର ଆୟୋଜନ ସେମାନଙ୍କୁ ବିସ୍ମିତ କରୁଥାଏ । ସାଧାରଣ ଆଲୋଚନାରେ ନେତାମାନେ ସେହି ସବୁ ସମରାୟୋଜନର ଉପଯୋଗିତା ସମ୍ପର୍କରେ ସନ୍ଦେହ ପ୍ରକାଶ କରୁଥିଲେ ସୁଦ୍ଧା ବ୍ୟକ୍ତିଗତ ଭାବରେ ଆଜାଦ ହିନ୍ଦ୍ ଫୌଜର ବିସ୍ମୟକର କାର୍ଯ୍ୟକଳାପରେ ମୁଗ୍ଧ ହୋଇଯାଉଥିଲେ । କେତେକ କଂଗ୍ରେସ ନେତା ନିୟମିତ ସୁଭାଷ ଓ ରାସବିହାରୀଙ୍କ ବେତାର ଭାଷଣ ଶୁଣୁଥିଲେ ଏବଂ ଏସବୁର ସମ୍ଭାବ୍ୟ ପରିଣତି ସମ୍ପର୍କରେ ସେମାନଙ୍କ ଭିତରେ ନିୟମିତ ଆଲୋଚନା ହେଉଥିଲା । କିନ୍ତୁ, ଗାନ୍ଧିଜୀ, ନେହେରୁ, ପଟେଲ ଓ ଆଜାଦ ପ୍ରଭୃତି ନେତାମାନଙ୍କ ମନୋଭାବ ସଶସ୍ତ୍ର ବିପ୍ଳବ ବିଶେଷତଃ ସୁଭାଷଙ୍କ ପ୍ରତି ଅନୁକୂଳ ନଥିବାରୁ କଂଗ୍ରେସର ସାଧାରଣ କର୍ମୀମାନେ ପ୍ରକାଶ୍ୟରେ ସେମାନଙ୍କର ପ୍ରଶଂସା କରିବାକୁ ସାହସ କରୁନଥିଲେ । କିନ୍ତୁ ଏକଥା ନିଶ୍ଚୟ ଯେ, କଂଗ୍ରେସର ଅଧିକାଂଶ ସଭ୍ୟ ଓ ସାଧାରଣ କର୍ମୀ ସୁଭାଷ ଓ ସଶସ୍ତ୍ର ବିପ୍ଳବୀମାନଙ୍କର କାର୍ଯ୍ୟକଳାପରେ ମୁଗ୍ଧହୋଇଯାଇଥିଲେ ଏବଂ କଂଗ୍ରେସପକ୍ଷରୁ 'ଅହିଂସ ଆଇନ ଅମାନ୍ୟ ଆନ୍ଦୋଳନ'ର ଡାକରା ଦିଆଗଲେ ସେମାନେ କେଉଁ ବାଟ ଧରିବେ, ତାହା ମନେ ମନେ ସ୍ଥିରକରିସାରିଥିଲେ । ଗାନ୍ଧିଜୀଙ୍କ ଅହିଂସ ଆନ୍ଦୋଳନ ପ୍ରତି ଅଧିକାଂଶ କଂଗ୍ରେସ ସଭ୍ୟଙ୍କର ଆଉ ବିଶ୍ୱାସ ନ ଥିଲା । ଗତ ୨୦-୨୨ ବର୍ଷ ଭିତରେ ବାରମ୍ବାର ଅହିଂସ ସଂଗ୍ରାମ କରି ତା'ର ପରିଣତି କଣ ହୋଇଛି ସେ ବିଷୟ କାହାକୁ ଅବିଦିତ ନ ଥିଲା । ସୁତରାଂ ପ୍ରତ୍ୟେକ କଂଗ୍ରେସ କର୍ମୀ ଅଣନିଶ୍ୱାସୀ ହୋଇ ନେତାମାନଙ୍କ ଆଡ଼କୁ ଚାହିଁରହିଥିଲେ ।

ଆଲ୍ଲାହାବାଦ ବୈଠକକୁ ଗାନ୍ଧିଜୀ ଯେଉଁ ନୋଟ୍ ଦେଇଥିଲେ ତାହାରି ଉପରେ ହିଁ ମୁଖ୍ୟତଃ ଆଲୋଚନା ହେଲା । କିନ୍ତୁ ନେହେରୁ, ଆଜାଦ ଓ ଭୁଲାଭାଇ ପ୍ରଭୃତି ନେତା ମୂଳରୁ ଏହି ପ୍ରସ୍ତାବର ବିରୋଧକଲେ । ଇଂରେଜଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ଉଚିତ ବୋଲି ନେହେରୁ ଭାବୁଥିଲେ ଏବଂ ଏହି ଉପାୟରେ ନାଜୀବାଦ ଓ ଫାଶୀବାଦର ପ୍ରତିରୋଧ କରାଯାଇପାରିବ ବୋଲି ତାଙ୍କର ବିଚାର ଥିଲା । ସେ କହିଲେ, ''ବର୍ତ୍ତମାନ ସଂଗ୍ରାମର ଡାକରା ଦେବା ଅର୍ଥ ଅକ୍ଷଶକ୍ତିର ବିଜୟ-କାମନା କରିବା ।'' କିନ୍ତୁ ଗାନ୍ଧିଜୀଙ୍କର ବିଚାର ସେତେବେଳେ ବହୁ ଆଗରେ । ତାଙ୍କ ବିଚାର ଓ ସିଦ୍ଧାନ୍ତ ଉପରେହିଁ ୪୦ କୋଟି ଲୋକଙ୍କର ଭାଗ୍ୟ ନିର୍ଭରକରୁଥିଲା ଏବଂ ସେ ସିଦ୍ଧାନ୍ତ ଭୁଲହୋଇଥିଲେ ଇତିହାସ ତାଙ୍କୁ କଦାପି କ୍ଷମା

ଦେଇନଥା'ନ୍ତା; ଦେଶର ଭାବୀ ବଂଶଧରଙ୍କ ନିକଟରେ ତାଙ୍କୁ କୈଫିୟତ ଦେବାକୁ ପଡ଼ିଥାନ୍ତା — ନେହେରୁଙ୍କୁ ନୁହେଁ । ସୁତରାଂ ନେହେରୁଙ୍କର ଉପରୋକ୍ତ ଉକ୍ତିକୁ ପ୍ରତ୍ୟାଖ୍ୟାନ କରି ଗାନ୍ଧିଜୀ କହିଲେ– ''ଏହା ଅଯୌକ୍ତିକ । ଜାପାନ ଆମର ଶତ୍ରୁ ନୁହେଁ; ସେ ବ୍ରିଟିଶର ଶତ୍ରୁ । ଜାପାନ ଯଦି ଆମ ଦେଶକୁ ଆସେ, ବ୍ରିଟେନ ପାଇଁ ଆସିବ, ଆମପାଇଁ ନୁହେଁ । ସୁତରାଂ ଆମର ଦାବି ବ୍ରିଟେନ ଯାଉ ।''

''ଲୋକେ ମୋତେ ପାଗଳ ବୋଲି ଭାବନ୍ତୁ ପଛେ, ମୁଁ ଯେଉଁ ସତ୍ୟ ଉପଲବ୍ଧି କରିଛି, ତାହା ପ୍ରକାଶ କରିବାକୁ ବିରତ ହେବିନାହିଁ । ଭାରତୀୟମାନଙ୍କୁ ଆସନ୍ନ ଯୁଦ୍ଧମୁଖରୁ ରକ୍ଷାକରିବା ପାଇଁ ଏହା ମୋର ନିଶ୍ଚିତ ଅବଦାନ ବୋଲି ମୁଁ ବିଚାର କରେ । ଇଂରେଜମାନେ ଏଠାରେ ରହିପାରନ୍ତି ଓ ଯୁଦ୍ଧ ଚଳାଇପାରନ୍ତି । କିନ୍ତୁ ସେଥିପାଇଁ ମୋର ଏକମାତ୍ର ସର୍ତ୍ତ ଯେ, ଏହି ମୁହୂର୍ତ୍ତରେ କ୍ଷମତା ହସ୍ତାନ୍ତର କରିବା । ଯଦି ଏହା ବି ଅଗ୍ରାହ୍ୟ ହୁଏ, ମୁଁ କଂଗ୍ରେସ ଦଳ ପରିତ୍ୟାଗ କରିବି ଏବଂ ଭାରତର ଗୋଡ଼ିମାଟି ଭିତରୁ ଏମିତି ଏକ ଆନ୍ଦୋଳନ ସୃଷ୍ଟି କରିବି, ଯାହା କି କଂଗ୍ରେସ ଅନୁଷ୍ଠାନରୁ ମଧ୍ୟ ବଡ଼ ହେବ ।'' (୧)

କିନ୍ତୁ ଗାନ୍ଧିଜୀଙ୍କର ଏହି ବକ୍ତବ୍ୟ ମଧ୍ୟ ସବୁ ମତଭେଦର ସମାଧାନ କରିପାରିଲା ନାହିଁ । କଂଗ୍ରେସ ଭିତରେ ''ସଂଗ୍ରାମର ସପକ୍ଷ ଓ ବିପକ୍ଷ'' ଏହିଭଳି ଦୁଇଟି ଦଳ ହୋଇଗଲା । ଗାନ୍ଧିଜୀ ପ୍ରାୟ ଏକା ହୋଇଗଲେ । ଏ ସମ୍ପର୍କରେ ଆଜାଦ ଲେଖିଛନ୍ତି- "Things reached a climax when he (Gandhiji) sent me a letter to the effect that my stand is so different from his that we could not work together." ଅର୍ଥାତ୍ ଘଟଣାଟା ଏକାବେଳକେ ଚରମ ସୀମାରେ ପହଞ୍ଚିଗଲା, ଯେତେବେଳେ ଗାନ୍ଧିଜୀ ମୋତେ ଏକ ପତ୍ର ଲେଖି ଜଣାଇଦେଲେ ଯେ, ମୋର ଏବଂ ତାଙ୍କ ବିଚାର ଏତେ ପୃଥକ୍ ଯେ ଆମେ ଆଉ ଏକତ୍ର କାର୍ଯ୍ୟ କରିପାରିବା ନାହିଁ ।

ଆଜାଦ ପୁଣି ଲେଖିଛନ୍ତି, ଗାନ୍ଧିଜୀ କହିଲେ- "I shall have to fight against the whole world and stand alone, Even if all the united Nations oppose me that I am wrong, even then I will go ahead, not for India's sake but for the sake of the whole world. I cannot wait anylonger for India's freedom. I cannot wait untill Mr. Jinah is converted. If I wait any longer, God will punish me. This is the last struggle of my life." (ଆବଶ୍ୟକ ହେଲେ ସାରା ବିଶ୍ୱବିରୁଦ୍ଧରେ ମୋତେ ଲଢ଼ିବାକୁ ପଡ଼ିବ । ଯଦି ମିଳିତ ରାଷ୍ଟ୍ରଗୋଷ୍ଠୀ ମୋତେ କୁହେ ଯେ ମୁଁ ଭୁଲ କରୁଛି ତଥାପି ମୁଁ ଆଗେଇଯିବି– କେବଳ ଭାରତର ସ୍ୱାର୍ଥ ପାଇଁ ନୁହେଁ; ସାରା ପୃଥିବୀର ସ୍ୱାର୍ଥପାଇଁ । ଭାରତର ସ୍ୱାଧୀନତାପାଇଁ ମୁଁ ଆଉ ମୁହୂର୍ତ୍ତେ ଅପେକ୍ଷା କରିପାରିବି ନାହିଁ । ଜିନ୍ନା ବଦଳିବା ପର୍ଯ୍ୟନ୍ତ ମଧ୍ୟ ମୁଁ ଅପେକ୍ଷା କରିବାକୁ ଚାହେଁନା । ମୁଁ ଯଦି ଅପେକ୍ଷା କରେ, ଭଗବାନ୍ ମୋତେ ଦଣ୍ଡିତ କରିବେ । ଏହା ମୋର ଜୀବନର ଶେଷ ସଂଗ୍ରାମ ।)

1. Freedom Struggle -Dey-Tripathy, P.219

ଯାହା ହେଉ, ଶେଷରେ କଂଗ୍ରେସ ନେତାମାନଙ୍କର ଜ୍ଞାନୋଦୟ ହେଲା ଏବଂ 'ଭାରତ ଛାଡ଼' ପ୍ରସ୍ତାବ କାର୍ଯ୍ୟକାରୀ କମିଟିରେ ସର୍ବସମ୍ମତି କ୍ରମେ ଗୃହୀତ ହେଲା— 'ସଶସ୍ତ୍ର ସଂଗ୍ରାମ'ର ଚରମ ଅଧ୍ୟାୟର ଶୁଭାରମ୍ଭ ହେଲା । ଯେମିତି 'ଓ୍ୱାର୍ଦ୍ଧା ପ୍ରସ୍ତାବ' ପାଶ୍ ହେଲା, ସଙ୍ଗେ ସଙ୍ଗେ ବିଦେଶରେ ସଶସ୍ତ୍ର ସଂଗ୍ରାମୀମାନଙ୍କ ମନରେ ଅଭୂତପୂର୍ବ ଉତ୍ସାହ, ଉଦ୍ଦୀପନା ସୃଷ୍ଟି ହେଲା । ଇଂଲାଣ୍ଡ-ଆମେରିକାରେ ସରକାରୀ ସମର୍ଥକ ମହଲରେ ସେମିତି ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ସରକାର ତ ଏକାବେଳକେ ରାଗୀ ନିଆଁବାଣ । ''ଏ ଯୁଦ୍ଧବେଳେ ଆନ୍ଦୋଳନର ଅର୍ଥ ଅରାଜକତା ।'' ଷ୍ଟାଫୋର୍ଡ଼ କ୍ରିପ୍‌ସ ଏଠୁ ଚାପଡ଼ ଖାଇ ଯାଇଥାନ୍ତି ଅଳ୍ପଦିନ ହେବ; ସୁତରାଂ ତାଙ୍କର କଣ୍ଠସ୍ୱର ଏକାବେଳେ ପଞ୍ଚମରେ— ''ଆମେ ଏ ଆନ୍ଦୋଳନକୁ ଦବେଇଦେବୁ । ମିତ୍ରଶକ୍ତିର ପ୍ରଧାନ ଯୁଦ୍ଧଘାଟି ହେଉଛି ଭାରତ । ସୁତରାଂ ଏହି ଆନ୍ଦୋଳନକାରୀମାନେ ଆମର ଶତ୍ରୁରୂପେ ବିବେଚିତ ହେବେ ।'' ଭାରତ ସଚିବ ଆମେରୀ ମଧ୍ୟ କମ୍ ନୁହନ୍ତି । ସେ କ୍ରିପ୍‌ସଙ୍କଠାରୁ ଆଉ ଧାପେ ଆଗେଇଗଲେ— ''ଭାରତରେ ଯେଉଁମାନେ ଆନ୍ଦୋଳନ କରିବାକୁ ବାହାରିବେ ବା ଆନ୍ଦୋଳନକୁ ସମର୍ଥନ କରିବେ, ସେମାନେ ଅକ୍ଷଶକ୍ତିର ବିଜୟ କାମନା କରୁଛନ୍ତି ବୋଲି ଆମ୍ଭେମାନେ ବୁଝିବୁ ଏବଂ ସେହି ଅନୁସାରେ ତାର ସମ୍ମୁଖୀନ ହେବୁ । ସାବଧାନ !''

ଏହାର ଜବାବରେ ଗାନ୍ଧିଜୀ କହିଲେ- ''ମୋର ବକ୍ତବ୍ୟ ଏତେ ସ୍ପଷ୍ଟ ଯେ, ଅତି ନିର୍ବୋଧ ମଧ୍ୟ ଏହା ବୁଝିପାରିବ । ଏ ଯୁଦ୍ଧ-ଆୟୋଜନ ବ୍ରିଟିଶ ସାମ୍ରାଜ୍ୟବାଦକୁ ରକ୍ଷାକରିବାକୁ— ଭାରତକୁ ରକ୍ଷାକରିବାକୁ ନୁହେଁ । ସୁତରାଂ ମୋର ମନ ବ୍ରିଟିଶକୁ ସାହାଯ୍ୟ କରିବାକୁ ସ୍ୱତଃ ବାଧାଦେଉଅଛି । ମୁଁ ଏକଥା ମଧ୍ୟ ବିଶ୍ୱାସ କରେ ଯେ, ଏଠାରେ ବ୍ରିଟିଶର ଉପସ୍ଥିତିହିଁ ଜାପାନକୁ ଭାରତ ଆକ୍ରମଣ କରିବାକୁ ସାହାଯ୍ୟ କରୁଅଛି ।''

"Let them withdraw from India. I promise that the Corgress and the Muslim League will find to their interest to come together and devise a home made solution for the Government of India." ଅର୍ଥାତ୍ ସେମାନେ ଭାରତ ଛାଡ଼ି ଚାଲିଯାନ୍ତୁ । ମୁଁ ପ୍ରତିଶ୍ରୁତି ଦେଉଅଛି ଯେ, କଂଗ୍ରେସ ଓ ମୁସଲିମ ଲିଗ୍ ନିଜ ନିଜ ସ୍ୱାର୍ଥଦୃଷ୍ଟିରୁହିଁ ଯଥାଶକ୍ତି ଏକଜୁଟ ହୋଇଯିବେ ଏବଂ ସରକାର ଗଢ଼ିବାପାଇଁ ଏକ ସମାଧାନର ସୂତ୍ର ଉଦ୍ଭାବନ କରିପାରିବେ ।

ଗାନ୍ଧିଜୀ ନଛୋଡ଼ବନ୍ଧା; ସେ ଆଉ ଫେରିବାକୁ ପ୍ରସ୍ତୁତ ନୁହଁନ୍ତି । କାରଣ ସେ ଭଲଭାବରେ ବୁଝିସାରିଛନ୍ତି ଯେ, ସଂଗ୍ରାମ ଛଡ଼ା ଅନ୍ୟ ବାଟ ନାହିଁ । ଭାରତୀୟ ଜନତାର ଆଉ ଅପେକ୍ଷା କରିବାର ଧୈର୍ଯ୍ୟ ନାହିଁ । ପରିଣାମ ଯାହା ହେଉନା କାହିଁକି, ତାଙ୍କୁ ଚରମ ସଂଗ୍ରାମର ଆହ୍ୱାନ ଦେବାକୁହିଁ ପଡ଼ିବ ।

ଅଗଷ୍ଟ ଦୁଇ ତାରିଖ 'ହରିଜନ' ପତ୍ରିକାରେ ଗାନ୍ଧିଜୀ ଇଂଲାଣ୍ଡ-ଆମେରିକା ଧମକର ଜବାବରେ ଲେଖିଥିଲେ ଯେ, ''ଦମନ ଭିତରୁହିଁ ତା'ର ବିକାଶ ହୋଇଆସିଛି; ଏଥର ଅନ୍ୟ କିଛି ହେବ ନାହିଁ ।''

1. D.G. Tendulkar - Mahatma Gandhi - Vol. VI pg.43

ସରକାର ମଧ୍ୟ ତାର ସେ ଚିରାଚରିତ ବଦମାସୀ ନୀତି ପ୍ରୟୋଗ ନ କରି ଛାଡ଼ିଲେ ନାହିଁ । ଚର୍ଚ୍ଚିଲ କହିଲେ, ''କଂଗ୍ରେସ ସମଗ୍ର ଭାରତର ଏକମାତ୍ର ପ୍ରତିନିଧି ନୁହେଁ । ଦେଶର ଆହୁରି ବିରାଟ ଓ ଶକ୍ତିଶାଳୀ ଅନ୍ୟାନ୍ୟ ଦଳ ମଧ୍ୟ ରହିଛି । ସେମାନେ ଆନ୍ଦୋଳନର ବିରୋଧ କରୁଅଛନ୍ତି ।'' ତଥାପି ଗାନ୍ଧିଜୀ ଅଚଳ ଓ ଅଟଳ । ନେହେରୁ- ଆଜାଦଙ୍କ ଭଳି ତୁଙ୍ଗ ନେତାଙ୍କ ବିରୁଦ୍ଧରେ ଛିଡ଼ାହେଲେ ବି ତାଙ୍କ ଭାଷାରେ 'ଜୀବନର ଶେଷ ସଂଗ୍ରାମ' ଚଳାଇବାକୁ ଯେତେବେଳେ ସେ ପ୍ରସ୍ତୁତ, ସେତେବେଳେ ସେ ସରକାରର ସଇତାନି ପ୍ରଚାରରେ ଦବିଯାଇଥାନ୍ତେ କାହିଁକି ?

ତେଣେ ପ୍ରବାସୀ ଭାରତୀୟମାନଙ୍କର ଆନନ୍ଦ କହିଲେ ନ ସରେ । ୧୮ ଜୁଲାଇରେ ରାସବିହାରୀ ତାଙ୍କର ବେତାର ଭାଷଣରେ କହିଲେ, ''ସମୟ ଆସି ଅହଞ୍ଚିଗଲା । ବ୍ରିଟେନ ଯେଉଁ ଶିକୁଳିରେ ଆମର ହାତଗୋଡ଼କୁ ବାନ୍ଧିରଖିଛି ତାକୁ ବର୍ତ୍ତମାନ ଆମକୁ ଭାଙ୍ଗିଦେବାକୁ ପଡ଼ିବ । ଶତାବ୍ଦୀ-ଶତାବ୍ଦୀବ୍ୟାପୀ ଶୋଷଣ ଓ ଅତ୍ୟାଚାର ତା'ର ଆତ୍ମାକୁ ମାରିପାରିନାହିଁ । ତେଣୁ ମୋ ଦେଶ ଭିତରେ ସହକର୍ମୀମାନଙ୍କୁ ମୁଁ ନିବେଦନ କରୁଅଛି ଯେ, ସେମାନେ ଯଥାଶୀଘ୍ର ବ୍ରିଟେନକୁ ଆମ ଦେଶରୁ ତଡ଼ିଦେବାକୁ ମହାତ୍ମା ଗାନ୍ଧିଙ୍କ ପଛରେ ଏକଜୁଟ ହୁଅନ୍ତୁ ।''

"Friends, the hour has struck, we must now break the shakles with which the British has bound us hand and foot. India has lost everything but she has not lost her soul. Centuruies of oppression and exploitation have not be able to kill her soul. I therefore earnestly appeal to our compatriots at home to rally round Mahatma Gandhi in campaign to compel the British to leave India immediately.

ଅଗଷ୍ଟ ପହିଲାରେ ରାସବିହାରୀ ପୁଣି କହିଲେ-- "In my last broadcast to you, I appealed for unqualified support to Mahatma Gandhi in his coming final fight for our freedom. In the name of our sacred motherland, I implore you all, my compatriots to rally under Mahatma Gandhi's banner of national independence and march on to victory."

'ୱାର୍ଦ୍ଧା ପ୍ରସ୍ତାବ'କୁ ଅନୁମୋଦନ କରିବାକୁ ବମ୍ବେଠାରେ ଅଗଷ୍ଟ ଆଠ ତାରିଖରେ ଏ. ଆଇ. ସି. ସି.ର ବୈଠକ ବସିଲା । ନାନା କାରଣରୁ ଏହା କଂଗ୍ରେସ ଇତିହାସରେ ଏକ ସ୍ମରଣୀୟ ଅଧିବେଶନ । ସ୍ମରଣୀୟ ଏଥିପାଇଁ ଯେ, ୧୯୨୦ ମସିହାରୁ ଗାନ୍ଧିଜୀଙ୍କ ନେତୃତ୍ୱରେ ଚାଲିଆସିଥିବା 'ସବିନୟ ଆଇନ-ଅମାନ୍ୟ ଆନ୍ଦୋଳନ' ଏହି ପ୍ରସ୍ତାବ ଫଳରେ ସଶସ୍ତ୍ର ସଂଗ୍ରାମର ରୂପ ନେଲା । ଆବେଦନ ନିବେଦନ ସ୍ତରରୁ ଯାଇ ଭାରତର ମୁକ୍ତି-ସଂଗ୍ରାମ ନିଶ୍ଚିତ ରୂପେ ଉଗ୍ର ଜାତୀୟତାବାଦୀ ଆନ୍ଦୋଳନରେ ପରିଣତ ହେଲା । ଇଚ୍ଛାରେ ହେଉ, ଅନିଚ୍ଛାରେ ହେଉ, ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, ଏହି ଅଧିବେଶନରେ ଗୃହୀତ ପ୍ରସ୍ତାବ ଦ୍ୱାରା କଂଗ୍ରେସ ଭାରତର ଜାଗ୍ରତ ସଂଗ୍ରାମୀ ଜନତାକୁ

ପ୍ରତ୍ୟକ୍ଷ-ସଂଗ୍ରାମର ଆହ୍ୱାନ ହେଲା । ଯୁଦ୍ଧ ଭିତରେ ସରକାର ବିରୁଦ୍ଧରେ କୌଣସି ଆନ୍ଦୋଳନ ହେବ ନାହିଁ ବୋଲି ଆଜି ପର୍ଯ୍ୟନ୍ତ କହିଆସିଥିବା ଗାନ୍ଧିଜୀ ବର୍ତ୍ତମାନ ପ୍ରତ୍ୟକ୍ଷ-ସଂଗ୍ରାମର ଆହ୍ୱାନ ଦେଲେ । ଯେଉଁ କଥା ସୁଭାଷ ୧୯୨୮ରୁ କହିଆସୁଥିଲେ ଏବଂ ଯାହାକୁ ଗାନ୍ଧିଜୀ ଚିରଦିନ ଅଗ୍ରାହ୍ୟ କରିଆସିଥିଲେ, ପରିସ୍ଥିତିର ଚାପରେ ଜନମତର ପ୍ରଭାବରେ ପଡ଼ି ତାହା ସେମାନଙ୍କୁ ସ୍ୱୀକାର କରିବାକୁ ପଡ଼ିଲା । ଗାନ୍ଧିଜୀଙ୍କର ଶାନ୍ତିପୂର୍ଣ୍ଣ ନୀତି ପ୍ରତ୍ୟାଖ୍ୟାତ ହୋଇ ସୁଭାଷଙ୍କ ଗଣବିପ୍ଳବ ସ୍ୱୀକୃତ ହେଲା ।

ଏହି ଚରମ ସଂଗ୍ରାମର ଡାକରା ପଛରେ, ଭାରତର ମୁକ୍ତି ନିହିତ ବୋଲି ନିଶ୍ଚିତ ଜାଣି ପ୍ରବାସୀ ଭାରତୀୟମାନଙ୍କ ଭିତରେ ଆଶା ଆକାଙ୍କ୍ଷା ସୃଷ୍ଟିକରିଥିଲା ଏବଂ ସେହି କାରଣରୁହିଁ ସୁଭାଷ, ରାସବିହାରୀଙ୍କ ଭଳି ଚରମପନ୍ଥୀ ବିପ୍ଳବୀମାନେ ଗାନ୍ଧିଜୀଙ୍କ ନେତୃତ୍ୱ ପ୍ରତି ଅକୁଣ୍ଠ ସମର୍ଥନ ଜଣାଇଥିଲେ ଏବଂ ଦେଶବାସୀଙ୍କୁ ସମର୍ଥନ ଜ୍ଞାପନ କରିବାକୁ ନିବେଦନ କରିଥିଲେ ।

ଅଗଷ୍ଟ ଆଠ ତାରିଖରେ ରାସବିହାରୀ ଏକ ବେତାର ଭାଷଣରେ କହିଲେ— "ବ୍ରିଟେନକୁ ଯେକୌଣସିମତେ ଭାରତ ଛାଡ଼ି ଯିବାକୁ ହେବ । ହଜାରେ ରୁଜଭେଲଟ୍ ବା ଚର୍ଚ୍ଚିଲ ତାକୁ ରକ୍ଷା କରି ପାରିବେ ନାହିଁ । ଭାରତର ସ୍ୱାଧୀନତା ସଂଗ୍ରାମକୁ ଦଳି- ଚକଟି ଦେବାକୁ ବ୍ରିଟେନ ଧମକ ଦେଇଛି । ମୁଁ କହିଦେବାକୁ ଚାହେଁ, ପୂର୍ବ-ଏସିଆରେ ବାସକରୁଥିବା ଆମେ ଭାରତୀୟମାନେ ସବୁ ପ୍ରକାର ପରିସ୍ଥିତିର ମୁକାବିଲା କରିବାକୁ ପ୍ରସ୍ତୁତ ଅଛୁ । ଯଦି ବ୍ରିଟେନ ଆପଣମାନଙ୍କୁ ଦବେଇଦେବ ବୋଲି ଭାବୁଥାଏ, ତେବେ ସେ ପ୍ରବାସୀ ସ୍ୱାଧୀନତା ସଂଗ୍ରାମୀଙ୍କୁ ଦେଖିନାହିଁ ବୋଲି ବୁଝିବାକୁ ହେବ । ଆପଣମାନଙ୍କୁ ଦଳିଦେବାକୁ ବ୍ରିଟେନ ଧମକ ଦେଉଛି । କିନ୍ତୁ ଆମେ ପୂର୍ବ-ଏସିଆରେ ବାସକରୁଥିବା ଭାରତ ସନ୍ତାନଗଣ ତାକୁ ସମୂଳେ ଖତମ୍ କରିଦେବାକୁ ତିଆର ଏବଂ ମୋ ମନରେ ତିଳେ ହେଲେ ସନ୍ଦେହ ନାହିଁ ଯେ, ଏ ଯୁଦ୍ଧରେ ଭାରତ ଜିତିବ— ନିଶ୍ଚୟ ଜିତିବ । ମନେପକାନ୍ତୁ, ଭାରତର ସେହି ଗୌରବମୟ ଅତୀତକୁ, ବର୍ତ୍ତମାନର ଅଧଃପତନକୁ ଓ ଭବିଷ୍ୟତ୍‌ର ଉଜ୍ଜ୍ୱଳ ସମ୍ଭାବନାକୁ । ଭାରତର ଉଜ୍ଜ୍ୱଳ ଭବିଷ୍ୟତ୍ ଉପରେ ଏବଂ ଆତ୍ମବିଶ୍ୱାସ ଉପରେ ଭରସାରଖି ଆଗେଇଚାଲନ୍ତୁ; ପଛକୁ ଚାହାଁନ୍ତୁ ନାହିଁ— ସଂଗ୍ରାମପଥରେ, ବିଜୟପଥରେ, ଭାରତର ପୂର୍ଣ୍ଣ-ସ୍ୱାଧୀନତାପଥରେ ଆଗେଇ ଚାଲ ବନ୍ଧୁ ।"

'ୱାର୍ଦ୍ଧା ପ୍ରସ୍ତାବ'ରେ ସରକାରଙ୍କୁ ଏହି ପ୍ରସ୍ତାବ ଗ୍ରହଣ କରିବାକୁ ସୁଯୋଗ ଦିଆଯାଇଥିଲା ଏବଂ ଏହା ଗ୍ରହଣ ନ କଲେ ଆଇନଅମାନ୍ୟ ଆନ୍ଦୋଳନ ଆରମ୍ଭ କରାଯିବ ବୋଲି କୁହାଯାଇଥିଲା ।

ଜୁଲାଇ ୧୪ ତାରିଖ ଓ ଅଗଷ୍ଟ ଆଠ ତାରିଖ ଭିତରେ ବହୁତ ଘଟନା ଘଟିଗଲା । ସରକାର କଂଗ୍ରେସର ଏହି ନିବେଦନ ପ୍ରତି କୌଣସି କର୍ଣ୍ଣପାତ କଲା ନାହିଁ । ନ କରିବା ସ୍ୱାଭାବିକ; କାରଣ ଭାରତକୁ ସ୍ୱାଧୀନତା ଦେବା କଥା ସରକାରୀ କଳ୍ପନାର ବହୁ ଦୂରରେ ଥିଲା । ଯୁଦ୍ଧ ଭିତରେ ସେ ସମ୍ପର୍କରେ କୌଣସି ଆଲୋଚନା କରିବାକୁ ମଧ୍ୟ ସେ ପ୍ରସ୍ତୁତ ନ

ଥିଲା । 'ୱାର୍ଦ୍ଧାପ୍ରସ୍ତାବ' ଜାପାନକୁ ପ୍ରତ୍ୟକ୍ଷ ନିମନ୍ତ୍ରଣ ବୋଲି ସରକାର ବିଚାର କରୁଥିଲା । ବଡ଼ଲାଟ ଲିନଲିଥଗୋଙ୍କ ଭାଷାରେ– ''କଂଗ୍ରେସକୁ ଦବେଇ- ଦେବାକୁ ସରକାର ଦୀର୍ଘ ଦୁଇବର୍ଷକାଳ ଧୈର୍ଯ୍ୟସହକାରେ ଅପେକ୍ଷା କରିଥିଲା । ବର୍ତ୍ତମାନ ସେ ସୁଯୋଗ ପହଞ୍ଚିଯାଇଛି ।' (1)

ସରକାର ରୀତିମତ ଆତଙ୍କିତ ହୋଇଗଲା । କଂଗ୍ରେସର ପ୍ରସ୍ତାବ, ଚୀନ ଓ ବର୍ମାରେ ପରାଜୟ, ଜାପାନ ବିରୁଦ୍ଧରେ ଲଢ଼ିବାକୁ ସରକାରୀ ସାମର୍ଥ୍ୟ ବିଷୟରେ ଜନ- ସାଧାରଣଙ୍କ ସନ୍ଦେହ ଏହାର କାରଣ ହୋଇପାରେ । ଜିନ୍ନାଙ୍କର ସେହି ପ୍ରସିଦ୍ଧ ବିବୃତି ମଧ୍ୟ ସରକାରର ଦିମାକକୁ ଆହୁରି ବଢ଼ାଇଦେଲା । ଜିନ୍ନା କହିଲେ– ''ଆନ୍ଦୋଳନର ଧମକ ଦେଖାଇ ମିଷ୍ଟର ଗାନ୍ଧି ଓ ତାଙ୍କର ହିନ୍ଦୁ କଂଗ୍ରେସ ବ୍ରିଟେନଠାରୁ ଯେଉଁ ସ୍ୱାଧୀନତା ଆଦାୟ କରିବାକୁ ବସିଛନ୍ତି, ତଦ୍ୱାରା ଭାରତରେ ଏକ ହିନ୍ଦୁ କଂଗ୍ରେସ ସରକାର ଗଠିତ ହେଲେ ମୁସଲମାନ ଏବଂ ଅନ୍ୟାନ୍ୟ ସଂଖ୍ୟାଲଘୁମାନଙ୍କର ସ୍ୱାଧୀନତା ଚିରଦିନ ପାଇଁ ଲୋପପାଇବ ।''

ହିନ୍ଦୁ ମହାସଭା ଓ ସାପ୍ରୁ ଶାସ୍ତ୍ରୀ ପ୍ରଭୃତି ମାନ୍ଧାଦଳିଆ ନେତାମାନେ ମଧ୍ୟ ଜିନ୍ନାଙ୍କ ସହ ସ୍ୱର ମିଳାଇ 'ଭାରତ ଛାଡ଼' ପ୍ରସ୍ତାବର ବିରୋଧକଲେ; ଫଳରେ ସରକାରର ଆଉ କୌଣସି ସନ୍ଦେହ ରହିଲା ନାହିଁ ଯେ ତା ପଛରେ ବିପୁଳ ଜନସମର୍ଥନ ରହିଛି ।

ଜୁଲାଇ ୧୭ ତାରିଖରେ ସରକାରଙ୍କ ପ୍ରଚାରବିଭାଗ ସମସ୍ତ ପ୍ରାଦେଶିକ ସରକାରମାନଙ୍କୁ 'ପ୍ରସ୍ତାବ' ବିରୁଦ୍ଧରେ ଜନମତ ସୃଷ୍ଟି କରିବାକୁ ସର୍କୁଲାର ପଠାଇଲେ । ଏପରି କି ନାନା ବିଚିତ୍ର ବ୍ୟଙ୍ଗଚିତ୍ର ଓ ପ୍ରଚାରପତ୍ର ମଧ୍ୟ ଛାପାହେଲା । ସେଥିରୁ ଗୋଟିଏ ବ୍ୟଙ୍ଗଚିତ୍ରରେ ଥିଲା- ''ହିଟଲର, ମୁସୋଲିନୀ ଓ ଟୋଜୋ ଟେଲିଫୋନରେ କଥାବାର୍ତ୍ତା ହେଉଛନ୍ତି– 'ମୁଁ କଂଗ୍ରେସ ପ୍ରସ୍ତାବକୁ ସମର୍ଥନ କରୁଅଛି' ଇତ୍ୟାଦି ଇତ୍ୟାଦି ।

ଅଗଷ୍ଟ ଆଠ ତାରିଖରେ ସରକାରୀ ଗେଜେଟ୍‌ରେ ପ୍ରକାଶପାଇଲା– 'ଭାରତ ଛାଡ଼ ପ୍ରସ୍ତାବ'ରେ କଂଗ୍ରେସ ଦେଶରେ ହିଂସାକାଣ୍ଡ ସୃଷ୍ଟି କରିବାକୁ ଆହ୍ୱାନ ଦେଇଛି । ଯୁଦ୍ଧ ଆୟୋଜନକୁ ବିପର୍ଯ୍ୟସ୍ତ କରିବା, ସରବରାହ ପଥ ବିଚ୍ଛିନ୍ନ କରିବା, ସରକାରୀ କର୍ମଚାରୀ ଏପରି କି ପୋଲିସ ଓ ସୈନ୍ୟବାହିନୀର ଆନୁଗତ୍ୟ ନଷ୍ଟକରିବା ଓ ଜନସାଧାରଣଙ୍କ ମନରେ ସରକାରଙ୍କ ପ୍ରତି ଘୃଣାଭାବ ସୃଷ୍ଟି କରିବା 'ଭାରତ ଛାଡ଼' ପ୍ରସ୍ତାବର ଉଦ୍ଦେଶ୍ୟ ଥିବାରୁ ଏହାକୁ କୌଣସି ପ୍ରକାର ବରଦାସ୍ତ କରାଯାଇ ପାରିବ ନାହିଁ । ସରକାର ସମସ୍ତ ଶକ୍ତି ଦେଇ ଏହାର ସମ୍ମୁଖୀନ ହେବ ।''

ଏହିଭଳି ଏକ ଉତ୍ତେଜନାପୂର୍ଣ୍ଣ ବାତାବରଣ ଭିତରେ ଅଗଷ୍ଟ ସାତ ତାରିଖରେ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ବସିଲା । ଗାନ୍ଧିଜୀଙ୍କର ବିଚାର ଥିଲା ଯେ, ସେ ଏହି ପ୍ରସ୍ତାବ ସମ୍ପର୍କରେ ପ୍ରଥମେ ଭାଇସରୟଙ୍କ ସହ ଆଲୋଚନା କରିବେ ଏବଂ ତାଙ୍କୁ ବୁଝାଇବାକୁ ଚେଷ୍ଟାକରିବେ ଯେ; ବ୍ରିଟିଶର ପରାଜୟ କଂଗ୍ରେସର କାମ୍ୟ ନୁହେଁ; ବରଂ ଯୁଦ୍ଧରେ ବ୍ରିଟିଶର ବିଜୟ କଂଗ୍ରେସ ସର୍ବାନ୍ତଃକରଣରେ ଇଚ୍ଛା କରେ । କିନ୍ତୁ ଭାରତର

1. Mansaregh & Lumby - Transfer of Power, Pg.534-35

ସ୍ୱାଧୀନତାପାଇଁ ଯୁଦ୍ଧ ଭିତରେ ବ୍ରିଟିଶ ସରକାର ନିର୍ଦ୍ଦିଷ୍ଟ ପଦକ୍ଷେପ ନ ନେଲେ 'ମିତ୍ରଶକ୍ତି' 'ଅକ୍ଷଶକ୍ତି' ଅପେକ୍ଷା ଅଧିକ ଗଣତାନ୍ତ୍ରିକ ବୋଲି ଦାବିକରିପାରିବନାହିଁ ।

କଂଗ୍ରେସ ଓ ଗାନ୍ଧିଜୀଙ୍କର ଏହି ଆଭିମୁଖ୍ୟ ଏକ ଭୁଲବିଚାର ଏବଂ ବ୍ରିଟିଶର ତଥାକଥିତ 'ଗଣତନ୍ତ୍ରପ୍ରେମ' ଉପରେ ବିଶ୍ୱାସ ସ୍ଥାପନ କରିବା କଂଗ୍ରେସର ରାଜନୈତିକ ଦୂରଦର୍ଶିତା ବୋଲି କୁହାଯାଇ ପାରିବ ନାହିଁ । ପରବର୍ତ୍ତୀ ଘଟନାପ୍ରବାହରୁ ତାହାହିଁ ପ୍ରମାଣିତ ହୋଇଗଲା । କାରଣ ନିଜ ଦେଶ ପାଇଁ ଯେତେ ଗଣତନ୍ତ୍ର ଓ ବ୍ୟକ୍ତି-ସ୍ୱାଧୀନତା କଥା କୁହାଯାଉଥିଲେ ମଧ୍ୟ ବ୍ରିଟିଶ-ଶକ୍ତି ଏକ ନିଛକ ସାମ୍ରାଜ୍ୟବାଦୀ ରାଷ୍ଟ୍ର । ଯୁଦ୍ଧରେ ତାର ଏକମାତ୍ର ଲକ୍ଷ୍ୟ ଥିଲା ବିଜୟ ଏବଂ ସେହି ବିଜୟଦ୍ୱାରା ସମସ୍ତ ଉପନିବେଶରେ ସାମ୍ରାଜ୍ୟବାଦୀ ଆଇନ ଦୃଢ଼ କରିବା, ଭାରତୀୟମାନଙ୍କୁ ମିଥ୍ୟା ପ୍ରତିଶ୍ରୁତି ଦେଇ ଯୁଦ୍ଧ ପାଇଁ ସମସ୍ତ ପ୍ରକାର ସାହାଯ୍ୟ ସଂଗ୍ରହ କରିବା ଥିଲା ସରକାରର ଉଦ୍ଦେଶ୍ୟ । ସୁତରାଂ ଗାନ୍ଧିଜୀ ବା ନେହେରୁଙ୍କ ଅଭିମତ ଓ 'ଭାରତ ଛାଡ଼' ପ୍ରସ୍ତାବ ସରକାରୀ ଲକ୍ଷ୍ୟର ବିରୁଦ୍ଧାଚରଣ କରୁଥିଲା ।

ଅଗଷ୍ଟ ୯ ତାରିଖରେ 'ଭାରତ ଛାଡ଼' ପ୍ରସ୍ତାବ ଉପରେ ଆଲୋଚନା ପାଇଁ ଦିନ ସ୍ଥିର ହୋଇଥିଲା । ପ୍ରସ୍ତାବଟିର ଅବିକଳ ନକଲ ତଳେ ଦିଆଗଲା ।

**'ଭାରତ ଛାଡ଼' ପ୍ରସ୍ତାବ –**

''କାର୍ଯ୍ୟକାରୀ କମିଟିର ୧୯୪୨ ସାଲ ଜୁଲାଇ ୧୪ ତାରିଖ ପ୍ରସ୍ତାବ ଓ ତା'ପରେ ଘଟିଯାଇଥିବା ଯୁଦ୍ଧ ଅବସ୍ଥା ଓ ଅନ୍ୟାନ୍ୟ ଘଟନାବଳୀ, ବ୍ରିଟିଶ ସରକାରଙ୍କର ଦାୟିତ୍ୱ-ସମ୍ପନ୍ନ ପ୍ରଧାନ ପଣ୍ଡାମାନଙ୍କର ବିବୃତି ଓ ଭାରତ ଭିତରେ ଓ ବାହାରେ ହେଉଥିବା ମନ୍ତବ୍ୟ ଓ ସମାଲୋଚନା ପ୍ରତି ନିଖିଳ ଭାରତ କଂଗ୍ରେସ କମିଟି ଯତ୍ନସହକାରେ ଧ୍ୟାନ ଦେଇଅଛନ୍ତି । କମିଟି ସେ ପ୍ରସ୍ତାବକୁ ଅନୁମୋଦନ ଓ ଗ୍ରହଣ କରିଅଛି ଓ ମତ ପ୍ରକାଶ କରୁଅଛି ଯେ, ଏବେ ଘଟିଯାଇଥିବା ଘଟଣାରୁ ସ୍ପଷ୍ଟ ଜଣାଯାଉଅଛି, ଭାରତର ସ୍ୱାର୍ଥଦୃଷ୍ଟିରୁ ଭାରତରେ ଇଂରେଜ ରାଜତ୍ୱର ଅବସାନ ଜରୁର ଆବଶ୍ୟକ । ସେହି ଶାସନର ସ୍ଥାୟିତ୍ୱ ଭାରତର ଅବନତି ଘଟାଉଅଛି ଓ ଭାରତକୁ ଦୁର୍ବଳ କରିଦେଉଅଛି ଓ ନିଜର ରାଜ୍ୟକୁ ରକ୍ଷାକରିବାକୁ ଏବଂ ପୃଥିବୀର ସ୍ୱାଧୀନତା ପାଇଁ ସାହାଯ୍ୟ କରିବାକୁ ଦିନକୁ ଦିନ ଅକ୍ଷମ ହୋଇପଡୁଛି ।

''ରୁଷ ଓ ଚୀନ ରଣକ୍ଷେତ୍ରରେ ଅବସ୍ଥା ଖରାପ ହୋଇଯାଇଥିବାରୁ ଏହି କମିଟି ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସ୍ୱାଧୀନତା ରକ୍ଷା କରିବା ପାଇଁ ରୁଷ ଓ ଚୀନ ଅଧିବାସୀମାନେ ଯେଉଁ ବୀରତ୍ୱର ପରିଚୟ ଦେଇଅଛନ୍ତି, ସେଥିପାଇଁ କମିଟି ସେମାନଙ୍କୁ ଅଭିନନ୍ଦନ ଜଣାଉଅଛି । ଏହି କ୍ରମବର୍ଦ୍ଧମାନ ବିପଦ ବାଧ କରୁଅଛି ଯେ, ଯେଉଁମାନେ ସ୍ୱାଧୀନତାପାଇଁ ଲଢୁଅଛନ୍ତି ଏବଂ ଆକ୍ରମଣ କବଳରେ ପଡ଼ିଥିବା ଦେଶମାନଙ୍କ ପ୍ରତି ସହାନୁଭୂତି ଜ୍ଞାପନକରୁଅଛନ୍ତି, ସେମାନେ ମିତ୍ର-ଶକ୍ତିର ପ୍ରଚଳିତ ନୀତିର ମୂଳଭିତ୍ତିକୁ ଆଲୋଚନା କରନ୍ତୁ ।

''ଯେଉଁଥିପାଇଁ ଆଜି ଏପରି ବାରମ୍ବାର ବିପତ୍ତି ପଡୁଅଛି – ଏପରି ଲକ୍ଷ୍ୟ, ନୀତି ଓ ପ୍ରଣାଳୀକୁ ଜାବୁଡ଼ିଧରିଲେ ବିଫଳତା ପରିବର୍ତ୍ତେ ସଫଳତା କଦାପି ଆସିବ ନାହିଁ । କାରଣ

ଗତ ଅଭିଜ୍ଞତା ଆମକୁ ଦେଖାଇଦେଉଅଛି ଯେ, ଏସବୁ ଭିତରେ ପରାଜୟର ବୀଜ ନିହିତଅଛି ଏବଂ ଏହି ସବୁ ନୀତି ପଛରେ ସ୍ୱାଧୀନତା ନାହିଁ – ଅଛି ପରାଧୀନ ଓ ଉପନିବେଶ ରାଷ୍ଟ୍ରମାନଙ୍କ ଉପରେ ପ୍ରଭୁତ୍ୱ ଓ ସାମ୍ରାଜ୍ୟବାଦର ପରଂପରା ଓ ପନ୍ଥା । ଏହି ସାମ୍ରାଜ୍ୟ ଅଧିକାର ଶାସନ ଶକ୍ତିର ବଳ ବଢ଼ାଇବା ପରିବର୍ତ୍ତେ ଏକ ବୋଝ ଓ ଅଭିଶାପ ହୋଇପଡ଼ିଛି ।

''ଆଧୁନିକ ସାମ୍ରାଜ୍ୟବାଦର ପୀଠ ଭାରତ ଆଜି ମୌଳିକ ପ୍ରଶ୍ନ ହୋଇ ଠିଆହୋଇଛି । କାରଣ ସ୍ୱାଧୀନ ଭାରତର ମାପକାଠିରେ ଇଂଲାଣ୍ଡ ଓ ମିଳିତ ରାଷ୍ଟ୍ରର ବିଚାରହେବ ଏବଂ ଏସିଆ ଓ ଆଫ୍ରିକା ଆଶା-ଉତ୍ସାହରେ ଅନୁପ୍ରାଣିତ ହେବ ।

''ତେଣୁ ଏଠାରେ, ଏ ଦେଶରେ ଇଂରେଜ ଶାସନର ଅବସାନ ଏକ ମୌଳିକ ଓ ଜରୁରୀ ପ୍ରଶ୍ନ, ଯାହା ଉପରେ ଯୁଦ୍ଧର ଭବିଷ୍ୟତ୍ ଓ ସ୍ୱାଧୀନତା ଓ ଗଣତନ୍ତ୍ରର ସାଫଲ୍ୟ ନିର୍ଭର କରୁଛି । ସ୍ୱାଧୀନତା ସଂଗ୍ରାମରେ ନାଜୀବାଦ, ଫାସିଷ୍ଟବାଦ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ହେଉଥିବା ସଂଗ୍ରାମରେ ସ୍ୱାଧୀନ ଭାରତ ତାହାର ସମସ୍ତ ଶିଳ୍ପ ସମ୍ପତ୍ତି ଉତ୍ସର୍ଗ କରିପାରିବ । ଏହା ଦ୍ୱାରା ଯୁଦ୍ଧର ଗତି ବଦଳିଯିବ ଏବଂ ପରାଧୀନ ଓ ପଦଦଳିତ ମାନବସମାଜ ମିଳିତ ଜାତି ପଛରେ ଠିଆହେବ ଏବଂ ଭାରତ ସେମାନଙ୍କର ବନ୍ଧୁ ହୋଇ ଜଗତ୍‌ର ନୈତିକ ଓ ଆଧ୍ୟାତ୍ମିକ ନେତୃତ୍ୱ ନେବ । ପରାଧୀନ ଭାରତ ବ୍ରିଟିଶ ସାମ୍ରାଜ୍ୟବାଦର ସଂକେତ ହୋଇ ରହିବ ଓ ସେହି ସାମ୍ରାଜ୍ୟବାଦର କଳଙ୍କ ଯୁଦ୍ଧର ଗତିରେ ବାଧା ସୃଷ୍ଟି କରିବ ।

''ତେଣୁ ଆଜିକାର ବିପତ୍ତିଦୃଷ୍ଟିରୁ ଭାରତର ସ୍ୱାଧୀନତା ଓ ବ୍ରିଟିଶ କର୍ତ୍ତୃତ୍ୱର ଅବସାନ ଲୋଡ଼ା । ଭବିଷ୍ୟତ୍ ପାଇଁ ପ୍ରତିଜ୍ଞା ବା ନିର୍ଭରତା ବର୍ତ୍ତମାନ ଅବସ୍ଥାକୁ ସୁଧାରିପାରିବ ନାହିଁ କିମ୍ବା ବିପଦକୁ ଏଡାଇପାରିବ ନାହିଁ । ତଦ୍ୱାରା ଜନସାଧାରଣଙ୍କର ମନରେ ପ୍ରଭାବ ବିସ୍ତାର କରିପାରିବ ନାହିଁ; କେବଳ ସ୍ୱାଧୀନତାର ଆଲୋକ କୋଟି କୋଟି ଜନସାଧାରଣଙ୍କର ବିରାଟ ଶକ୍ତି ଓ ଆଗ୍ରହର ସ୍ରୋତ ଆଣିପାରିବ, ଯାହା ଫଳରେ ଯୁଦ୍ଧର ସ୍ୱରୂପ ବଦଳିଯିବ ।

''ତେଣୁ ନିଖିଳ ଭାରତ କଂଗ୍ରେସ କମିଟି ଦୃଢ଼ଭାବରେ ଦାବି କରୁଅଛି ଯେ, ଭାରତରୁ ଇଂରେଜ ଶକ୍ତି ଚାଲିଯାଉ । ଭାରତରେ ସ୍ୱାଧୀନତା ଘୋଷଣା ହେଲା ପରେ ଏକ ଅସ୍ଥାୟୀ ସରକାର ଗଠିତ ହେବ ଏବଂ ସେ ସରକାର ମିଳିତ ଶକ୍ତିର ମିତ୍ର ହୋଇ ସ୍ୱାଧୀନତା ପାଇଁ ହେଉଥିବା ମିଳିତ ସଂଗ୍ରାମରେ ସେମାନଙ୍କ ଦୁଃଖକଷ୍ଟର ଭାଗୀଦାର ହେବ । ରାଷ୍ଟ୍ରର ବିଭିନ୍ନ ମୁଖ୍ୟ ଦଳ ଓ ଗୋଷ୍ଠୀର ସହଯୋଗରେ ସେହି ଅସ୍ଥାୟୀ ସରକାର ଗଢ଼ାହେବ; ତାର ମୁଖ୍ୟ କାମ ହେବ ଭାରତକୁ ରକ୍ଷାକରିବା ଓ ମିତ୍ରଶକ୍ତିର କାନ୍ଧରେ କାନ୍ଧ ମିଳାଇ ସମସ୍ତ ପ୍ରକାର ଅସ୍ତ୍ରଶସ୍ତ୍ର ଓ ଅହିଂସା ସାହାଯ୍ୟରେ ଆକ୍ରମଣର ସମ୍ମୁଖୀନ ହେବା ସମସ୍ତ କ୍ଷମତା ଓ ଶକ୍ତିର ମୂଳଅଧିକାରୀ ଯଥା– କ୍ଷେତର ଶ୍ରମିକ ଓ କୃଷକମାନଙ୍କର ସମସ୍ତ ସୁବିଧା କରିଦେବାକୁ ହେବ । ସବୁ ଗୋଷ୍ଠୀର ଗ୍ରହଣଯୋଗ୍ୟ ଏକ ଶାସନ-ବିଧାନ ଗଢ଼ିବା ପାଇଁ ଏକ ଶାସନ ବିଧାୟକ ସଭାର ଯୋଜନା ମଧ୍ୟ ସେହି ଅସ୍ଥାୟୀ ସରକାର କରିବ । କଂଗ୍ରେସ ମତରେ ସେହି ଶାସନ-ବିଧାନ ସଂଘୀୟ ହେବ; ଯେଉଁଥିରେ ପ୍ରତି ପ୍ରଦେଶର ଅଧିକ ମାତ୍ରାରେ ସ୍ୱାଧୀନତା ରହିବ ଏବଂ ସେମାନଙ୍କର ପ୍ରତିନିଧିମାନେ ବସି ପରସ୍ପରର ସୁବିଧାଦୃଷ୍ଟିରୁ

ଆକ୍ରମଣର ସମ୍ମୁଖୀନ ହେବାପାଇଁ ଆଲୋଚନା କରିବେ । ଭାରତ ମୁକ୍ତି ହାସଲ କଲେ ଜନସାଧାରଣଙ୍କର ମିଳିତ ଶକ୍ତି ଏବଂ ଇଚ୍ଛା ସାହାଯ୍ୟରେ ସଫଳତାସହକାରେ ଆକ୍ରମଣର ପ୍ରତିରୋଧ କରିହେବ ।

''ଭାରତର ସ୍ୱାଧୀନତା, ବିଦେଶୀ କର୍ତ୍ତୃତ୍ୱରେ ଥିବା ଏସିଆର ଅନ୍ୟାନ୍ୟ ଜାତିମାନଙ୍କ ପାଇଁ ଏକ ସଙ୍କେତ ଓ ପ୍ରାରମ୍ଭ ହେବ । ବର୍ମା, ମାଳୟ, ଇଣ୍ଡୋଚୀନ, ଓଲନ୍ଦାଜ ଭାରତ, ପାରସ୍ୟ ଓ ଇରାକ ମଧ୍ୟ ସେମାନଙ୍କର ସ୍ୱାଧୀନତା ପାଇବେ । ଏକଥା ମଧ୍ୟ ପରିଷ୍କାର ଭାବେ ଜାଣିବା ଦରକାର ଯେ ବର୍ତ୍ତମାନ ଜାପାନ ଅଧୀନରେ ଥିବା ରାଷ୍ଟ୍ରସବୁ ଔପନିବେଶିକ ଶକ୍ତିଙ୍କର ଅଧୀନରେ ବା କର୍ତ୍ତୃତ୍ୱରେ ରହିବେ ନାହିଁ ।

''ଏହି ବିପଦ ସମୟରେ ମୁକ୍ତି ଓ ରାଜ୍ୟରକ୍ଷାପାଇଁ ନିଖିଳ ଭାରତ କଂଗ୍ରେସ କମିଟି ବିଶେଷଭାବେ ଦୃଷ୍ଟି ଦେଇଥିଲେ ମଧ୍ୟ ମତ ପ୍ରକାଶ କରୁଅଛି ଯେ, ପୃଥିବୀରେ ଭବିଷ୍ୟତ୍ ଶାନ୍ତି, ନିରାପତ୍ତା ଓ ଶୃଙ୍ଖଳିତ ପ୍ରଗତି ପାଇଁ ସ୍ୱାଧୀନ ରାଷ୍ଟ୍ରମାନଙ୍କର ଏକ ବିଶ୍ୱରାଷ୍ଟ୍ର ସଂଘ ଆବଶ୍ୟକ ଓ ଅନ୍ୟ କୌଣସି ଭିତ୍ତିଉପରେ ଆଧୁନିକ ପୃଥିବୀର ସମସ୍ୟା ସମାଧାନ ସମ୍ଭବ ନୁହେଁ । ବିଭିନ୍ନ ରାଷ୍ଟ୍ରର ସ୍ୱାଧୀନତା ଓ ଏକ ରାଷ୍ଟ୍ରର ଅନ୍ୟ ରାଷ୍ଟ୍ର ଉପରେ ଆକ୍ରମଣ ବା ଶୋଷଣର ନିରାକରଣ, ସଂଖ୍ୟାଲଘିଷ୍ଠ ସଂପ୍ରଦାୟର ସ୍ୱାର୍ଥରକ୍ଷା, ଅନୁନ୍ନତ ଅଞ୍ଚଳ ଓ ଜାତିର ଉନ୍ନତି ଓ ମାନବସମାଜର ହିତପାଇଁ ପୃଥିବୀର ସମ୍ପତ୍ତିର ଏକତ୍ରୀକରଣ କାର୍ଯ୍ୟ ଏହି ବିଶ୍ୱ ରାଷ୍ଟ୍ରସଂଘ ସମ୍ପନ୍ନ କରିବ; ଏପରି କି ଗୋଟିଏ ରାଷ୍ଟ୍ରସଂଘ ଗଠିତ ହେଲେ ନିରସ୍ତ୍ରୀକରଣ କରିବା ସମ୍ଭବ ହେବ । ଜାତୀୟ ସୈନ୍ୟବାହିନୀ, ନୌସେନା ଏବଂ ଆକାଶବାହିନୀର ଆବଶ୍ୟକତା ରହିବ ନାହିଁ । ରାଷ୍ଟ୍ର ସଂଘର ରାଷ୍ଟ୍ରରକ୍ଷା ଶକ୍ତି ପୃଥିବୀରେ ଶାନ୍ତିରକ୍ଷା କରିବ ଓ ଆକ୍ରମଣର ବିପଦ ଏଡ଼ାଇବ ।

''ସ୍ୱାଧୀନ ଭାରତ ଏପରି ଏକ ବିଶ୍ୱରାଷ୍ଟ୍ର ସଂଘରେ ଆନନ୍ଦର ସହ ଯୋଗଦେବ ଏବଂ ଆନ୍ତରାଷ୍ଟ୍ରୀୟ ସମସ୍ୟାର ସମାଧାନ କରିବା ପାଇଁ ଅନ୍ୟ ରାଷ୍ଟ୍ରଗୁଡ଼ିକ ସହ ସମସ୍କନ୍ଧ ଭାବରେ ସହଯୋଗ କରିବ ।

''ଏପରି ରାଷ୍ଟ୍ରସଂଘ ଦ୍ୱାରା ଏହାର ମୌଳିକ ନୀତି ସ୍ୱୀକାର କରୁଥିବା ସମସ୍ତ ରାଷ୍ଟ୍ରଙ୍କ ପାଇଁ ମୁକ୍ତ ରହିବା ଉଚିତ । ଚଳିତ ଯୁଦ୍ଧ ଦୃଷ୍ଟିରୁ ଏପରି ରାଷ୍ଟ୍ରସଂଘର ଆରମ୍ଭ କାଳରେ ମିଳିତ ରାଷ୍ଟ୍ର ମଧ୍ୟରେ ସୀମାବଦ୍ଧ ରହିବ । ବର୍ତ୍ତମାନ ଏପରି କାର୍ଯ୍ୟଦ୍ୱାରା ଯୁଦ୍ଧ ଉପରେ ଚକ୍ରଶକ୍ତିର ଜନସାଧାରଣଙ୍କ ଉପରେ ଓ ଭବିଷ୍ୟତ୍ ଶାନ୍ତି ଉପରେ ଖୁବ୍ ଶକ୍ତିଶାଳୀ ପ୍ରଭାବ ପକାଇବ ।

''କମିଟି ଦୁଃଖର ସହିତ ଅନୁଭବ କରୁଅଛି ଯେ ଯୁଦ୍ଧ ଏବଂ ପୃଥିବୀକୁ ମାଡ଼ି ଆସୁଥିବା ବିପଦରୁ ଦୁଃଖପୂର୍ଣ୍ଣ ଶିକ୍ଷାଲାଭ କଲେ ମଧ୍ୟ ବିଶ୍ୱ-ରାଷ୍ଟ୍ରସଂଘ ଗଠନ ଦିଗରେ କାମ କରିବାକୁ କୌଣସି ରାଷ୍ଟ୍ର ପ୍ରସ୍ତୁତ ନୁହନ୍ତି । ବର୍ତ୍ତମାନ ବିପଦର ସମ୍ମୁଖୀନ ହେବାକୁ, ଭାରତ ନିଜ ରାଷ୍ଟ୍ର ରକ୍ଷା କରିବା ପାଇଁ ସକ୍ଷମ ହେବାକୁ ଓ ଦରକାର ବେଳେ ଚୀନ ଓ ଋଷ୍‌କୁ ସାହାଯ୍ୟ କରିବାକୁ ମୁଖ୍ୟତଃ ଭାରତର ସ୍ୱାଧୀନତା ଦାବି କରାଗଲେ ମଧ୍ୟ ବ୍ରିଟିଶ ସରକାରଙ୍କ

ଘୋଷଣା ଓ ବିଦେଶୀ ଖବରକାଗଜମାନଙ୍କରେ ସମାଲୋଚନା ପରିଷ୍କାର ଦେଖାଇଦେଉଅଛି ଯେ, ଭାରତର ଯୁକ୍ତିଯୁକ୍ତ ଦାବିକୁ ବିରୋଧ କରାଯାଉଅଛି । ଚୀନ ଓ ଋଷିୟାର ସ୍ୱାଧୀନତା ମୂଲ୍ୟବାନ୍ ଓ ତାକୁ ରକ୍ଷା କରିବାକୁ ହେବ । ସେମାନଙ୍କର ରାଷ୍ଟ୍ରରକ୍ଷାରେ ଯେପରି କୌଣସି ବାଧା ନ ପହଞ୍ଚେ ଏବଂ ମିଳିତ ପ୍ରତିରୋଧ ଶକ୍ତିରେ ଯେପରି ଆଞ୍ଚ ନ ଆସେ, ସେଥିପାଇଁ କମିଟି ବଡ଼ ଉଦ୍‌ବିଗ୍ନ । କିନ୍ତୁ ଭାରତ ଓ ଅନ୍ୟ ସବୁ ଦେଶକୁ ବିପଦ ମାଡ଼ିଆସୁଛି ଏବଂ ଏ ସମୟରେ ଆଳସ୍ୟ ଓ ବିଦେଶୀ ପାଖରେ ମୁଣ୍ଡ ନୁଆଇଁ ରହିବା ଦ୍ୱାରା ଭାରତର ଅବନତି ଘଟାଇବ ଓ ତାର ରାଷ୍ଟ୍ରରକ୍ଷା କରିବା ଓ ଆକ୍ରମଣ ବିରୋଧ କରିବା ଶକ୍ତିକୁ କମାଇଦେବ ଏବଂ ତଦ୍ୱାରା ଆମେ ଆସ୍ତେ ମାଡ଼ିଆସୁଥିବା ବିପଦ ବିରୁଦ୍ଧରେ କିଛି କରିପାରିବୁ ନାହିଁ କି ମିଳିତ ରାଷ୍ଟ୍ରର ଜନସାଧାରଣଙ୍କର କୌଣସି ସେବା କରିପାରିବୁ ନାହିଁ । ବିଦେଶର ସମାଲୋଚନା ଦେଖାଇଦେଇଛି ଯେ, ଭାରତ ଓ ପୃଥିବୀର ଆବଶ୍ୟକତା ବିଷୟରେ ସେମାନେ ଅଜ୍ଞ । ଭାରତର ସ୍ୱାଧୀନତାର ଶତ୍ରୁତା ଆଚରଣ କରି କର୍ତ୍ତୃତ୍ୱ ଜାରି କରିବାର ମନୋଭାବ ଜାତିଗତ ଉଚ୍ଚଭାବର ପରିଚୟ ଦେଉଅଛି ଯାହାକି ନିଜର ଶକ୍ତି ବିଷୟରେ ଓ ଦାବିର ଯଥାର୍ଥତା ବିଷୟରେ ଦୃଢ଼ବିଶ୍ୱାସୀ ଏକ ଜାତି ପକ୍ଷରେ ସହିବା ଅସମ୍ଭବ । ଏହି ଶେଷ ମୁହୂର୍ତ୍ତରେ ନିଖିଳ ଭାରତ କଂଗ୍ରେସ କମିଟି ପୃଥିବୀର ସ୍ୱାଧୀନତା ଦୃଷ୍ଟିରୁ ପୁନର୍ବାର ଇଂଲଣ୍ଡ ଓ ମିଳିତ ରାଷ୍ଟ୍ର ଆଗରେ ତା'ର ନିବେଦନ ପେଶ୍ କରୁଛି । କମିଟି ମନେକରେ ଯେ, ଯେଉଁ ସାମ୍ରାଜ୍ୟବାଦୀ ଓ ପ୍ରଭୁତ୍ୱପ୍ରିୟ ସରକାର ଭାରତବର୍ଷକୁ ଦମନ କରି ରଖିଅଛି ଓ ତାକୁ ନିଜର ସ୍ୱାର୍ଥ ଏବଂ ମାନବିକତାର ସ୍ୱାର୍ଥ ଅନୁସାରେ କାର୍ଯ୍ୟ କରିବାକୁ ବାଧାଦେଉଅଛି, ସେହି ସରକାର ବିରୁଦ୍ଧରେ ଜାତି ଆଜି ନିଜକୁ ପ୍ରତିଷ୍ଠିତ କରିବାକୁ ଚାହେଁ । ତାହା ହେଲେ କମିଟି ସେହି କାର୍ଯ୍ୟରେ ଜାତିକୁ ବିରତ କରିବାକୁ ଯୁକ୍ତିଯୁକ୍ତ ବୋଲି ମନେକରେନା ।

''ଗତ ବାଇଶବର୍ଷଧରି ଅହିଂସ ଓ ଶାନ୍ତିପୂର୍ଣ୍ଣ ସଂଗ୍ରାମରେ ଅର୍ଜିତ ଶକ୍ତିର ସାହାଯ୍ୟରେ ଭାରତ ତାର ଅବିଚ୍ଛେଦ୍ୟ ଦାବି ପ୍ରତିଷ୍ଠିତ କରିବ, ସେହି ଉଦ୍ଦେଶ୍ୟରେ କମିଟି ଗଣଆନ୍ଦୋଳନ କରିବା ନିଷ୍ପତ୍ତି କରୁଅଛି । ଏହିଭଳି ଏକ ସଂଗ୍ରାମର ନେତୃତ୍ୱ ଅବଶ୍ୟ ଗାନ୍ଧିଜୀଙ୍କ ଉପରେ ନ୍ୟସ୍ତ ରହିବ । ଜାତିକୁ ଉପଯୁକ୍ତ ପଥରେ ପରିଚାଳିତ କରିବାକୁ କମିଟି ତାଙ୍କୁ ଅନୁରୋଧ କରୁଅଛି ।

''କମିଟି ଭାରତର ଜନସାଧାରଣଙ୍କୁ ଏହି ଅନୁରୋଧ କରୁଅଛି ଯେ, ସେମାନେ ଯେପରି ଧୈର୍ଯ୍ୟ ଓ ସାହସର ସହିତ ସମସ୍ତ ବିପଦ ଓ କଷ୍ଟର ସମ୍ମୁଖୀନ ହୁଅନ୍ତି ଓ ଗାନ୍ଧିଜୀଙ୍କର ନେତୃତ୍ୱରେ ଭାରତର ମୁକ୍ତି-ସଂଗ୍ରାମରେ ଅନୁରକ୍ତ ସୈନ୍ୟ ହିସାବରେ ତାଙ୍କର ଆଦେଶ ମାନି ଚଳିବେ । ସେମାନେ ଅବଶ୍ୟ ସ୍ମରଣ ରଖିବେ ଯେ, ଅହିଂସାହିଁ ଏହି ଆନ୍ଦୋଳନର ଭିତ୍ତି । ଏପରି ଗୋଟିଏ ସମୟ ଆସିବ ଯେତେବେଳେ ବିଭିନ୍ନ ନେତାମାନଙ୍କର ନିର୍ଦ୍ଦେଶ ଜନସାଧାରଣଙ୍କ ନିକଟରେ ପହଞ୍ଚିବା ସମ୍ଭବ ହେବନାହିଁ ଏବଂ ଯେତେବେଳେ କୌଣସି କଂଗ୍ରେସ କମିଟି କାର୍ଯ୍ୟକାରୀ ହେଉନଥିବ । ଏଭଳି ଅବସ୍ଥା ହେଲେ କେହି ସୀମାଲଂଘନ ନକରି ନିଜେ କାର୍ଯ୍ୟ କରିବେ । ମୁକ୍ତିକାମୀ ଭାରତବାସୀ, ଯେଉଁମାନେ ସ୍ୱାଧୀନତା ପାଇଁ

ସଂଗ୍ରାମ କରିବେ, ସେମାନେ ନିଜେ ନିଜର ପଥପ୍ରଦର୍ଶକ ହେବେ ଏବଂ ନିଜକୁ ସେହି ବନ୍ଧୁର ପଥରେ ପରିଚାଳିତ କରିବେ, ଯେଉଁ ପଥରେ ବିଶ୍ରାମର ସ୍ଥାନ ନାହିଁ ଏବଂ ଯେଉଁ ପଥର ପ୍ରାନ୍ତ ସ୍ୱାଧୀନତା ଓ ମୁକ୍ତିସହିତ ମିଶିଯାଇଛି ।

''ଶେଷରେ ନିଖିଳ ଭାରତ କଂଗ୍ରେସ କମିଟି ସ୍ପଷ୍ଟ କରି ସମସ୍ତଙ୍କ ଆଗରେ କହିଦେବାକୁ ଚାହେଁ ଯେ, ଯଦିଓ ଏହା ଭାରତର ଶାସନ ସମ୍ପର୍କରେ ମତବ୍ୟକ୍ତ କରିଅଛି ଏବଂ ତାହାର ଗଣଆନ୍ଦୋଳନ ଆରମ୍ଭ କରିଅଛି, ତଥାପି କଂଗ୍ରେସ ପାଇଁ କ୍ଷମତା ହସ୍ତାନ୍ତର ଉଦ୍ଦେଶ୍ୟରେ ଏହା କରିନାହିଁ । ଯେତେବେଳେ କ୍ଷମତା ଆସିବ, ସେତେବେଳେ ତାହା ସମଗ୍ର ଜନସାଧାରଣଙ୍କ ହାତକୁହିଁ ଆସିବ ।(୧)

''ସରକାର ବହୁ ପୂର୍ବରୁ ପ୍ରସ୍ତୁତ ରହିଥିଲା ଏହାର ସମ୍ମୁଖୀନ ହେବାକୁ । ଯୁଦ୍ଧରେ ଯେମିତି ଆକସ୍ମିକ ଆକ୍ରମଣ ଓ ତୀବ୍ର ଗତିରେ ଆକ୍ରମଣ ସର୍ବଦା ଶତ୍ରୁପକ୍ଷକୁ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ପକାଇଦିଏ, ସରକାର ଏ କ୍ଷେତ୍ରରେ ସେହି କୌଶଳ ଅବଲମ୍ବନ କଲା । ଅଗଷ୍ଟ ୯ରେ ଆନ୍ଦୋଳନର ଟିକିନିଖି ପ୍ରସ୍ତୁତି ଓ ଆଲୋଚନା କରିବାର ସୁଯୋଗ ନ ଦେଇ ବଡ଼ିସକାଳୁ ଗାନ୍ଧିଜୀ ଓ ଅନ୍ୟାନ୍ୟ ନେତାମାନଙ୍କୁ ଗିରଫ କରାଗଲା; କଂଗ୍ରେସ କାର୍ଯ୍ୟକାରୀ କମିଟିର ଜଣେ ହେଲେ ସଦସ୍ୟ ବାକି ରହିଲେ ନାହିଁ ।''

ଜନସାଧାରଣ ଏଥିରେ ସ୍ତମ୍ଭୀତ ହୋଇଗଲେ ଏବଂ ହଠାତ ଚାରିଆଡ଼େ ଘୋର ଉତ୍ତେଜନା ଓ ଅସନ୍ତୋଷର ବିସ୍ଫୋରଣ ହେଲା । 'ଭାରତଛାଡ଼' ପ୍ରସ୍ତାବରେ ଯେଉଁ କୋମଳ ଓ ନମ୍ର ଭାଷା ବ୍ୟବହାର କରାଯାଇଥିଲା ଏବଂ ଆନ୍ଦୋଳନ ସମୟରେ ଯେଭଳି ଅହିଂସ ଓ ଶାନ୍ତିପୂର୍ଣ୍ଣ ରହିବାକୁ ଜନସାଧାରଣଙ୍କୁ ନିବେଦନ କରାଯାଇଥିଲା, ତାହାର କୌଣସି ତାତ୍ପର୍ଯ୍ୟ ରହିଲା ନାହିଁ । କାରଣ ଜନସାଧାରଣଙ୍କ ପକ୍ଷରେ ଏହା ଗ୍ରହଣ କରିବା ଅସମ୍ଭବ ଥିଲା । ଏହା ଗାନ୍ଧିଜୀ କିପରି ହିସାବକୁ ନେଇନଥିଲେ ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । କାରଣ ନିଜେ ଗାନ୍ଧିଜୀ ସ୍ୱୀକାର କରିଅଛନ୍ତି ଯେ, ୧୯୨୦ରୁ ବାଇଶବର୍ଷକାଳ କୌଣସି ଗୋଟିଏ ହେଲେ ଆନ୍ଦୋଳନ ତ ପରିପୂର୍ଣ୍ଣ ଅହିଂସ ଆନ୍ଦୋଳନ ନ ଥିଲା, ସୁତରାଂ 'ଭାରତ ଛାଡ଼' ଆନ୍ଦୋଳନ ଅହିଂସ ରହିବ ବୋଲି ଆଶା କରିବା ଏକ ଆତ୍ମପ୍ରବଞ୍ଚନା ଛଡ଼ା କିଛି ନୁହେଁ । ୧୯୨୦ ବା ୧୯୩୦ରେ ଦେଶରେ ଅପେକ୍ଷାକୃତ କମ୍ ଉତ୍ତେଜନା ଥିବା ସମୟରେ ଯଦି ଭାରତବାସୀ 'ଅହିଂସା'କୁ କାର୍ଯ୍ୟକାରୀ କରିପାରିଲେ ନାହିଁ, ତେବେ ୧୯୪୨ର ଘୋର ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିରେ ଆନ୍ଦୋଳନ ଅହିଂସ ରହିଥା'ନ୍ତା କେମିତି ? ବର୍ଷକ ଭିତରେ ସ୍ୱରାଜ୍ୟ ମିଳିବ ବୋଲି ୧୯୨୦ ମସିହାରୁ ଗାନ୍ଧି କହି- ଆସିଥିଲେ ତ ? ଏ ସମ୍ପର୍କରେ ଗାନ୍ଧିଜୀଙ୍କ ରଚନାବଳୀରୁ ଉଦ୍ଧୃତ କଲେ ଏହି ଉକ୍ତିର ସତ୍ୟତା ପ୍ରମାଣିତ ହୋଇପାରିବ ।

''ମୂଳ ପ୍ରସ୍ତାବ ଗୃହୀତ ହେଲା । ତା'ପରେ ଗାନ୍ଧିଜୀ ହିନ୍ଦୀ ଓ ଇଂରେଜୀରେ ଭାଷଣ ଦେଲେ । ସେହି ଭାଷଣ ଶେଷରେ ସେ 'କର ବା ମର' ମନ୍ତ୍ର ଦୀକ୍ଷା ଦେଇ କହିଲେ—

1. ଅଗଷ୍ଟ ବିପ୍ଳବ - ବଳରାମ ମହାନ୍ତି, ପୃ. ୬୩

ଆମେ ଭାରତକୁ ସ୍ୱାଧୀନ କରିବୁ, ନଚେତ୍ ସ୍ୱାଧୀନ ହେବାର ଉଦ୍ୟମ କରୁଁ କରୁଁ ପ୍ରାଣ ଦେବୁ । ଆମର ଗୋଲାମି ବଜାୟ ରହିଥିବା ଦେଖିବା ପାଇଁ ଆମେ କଦାପି ବଞ୍ଚିବୁ ନାହିଁ, ଏହାହିଁ ଆପଣଙ୍କର ଶପଥ ହେଉ । କା-ପୁରୁଷ, ଦୁର୍ବଳମନା ବ୍ୟକ୍ତିକୁ କେଉଁ ସ୍ୱାଧୀନତା ମିଳେ ନାହିଁ ।

ତା'ପରେ ଗାନ୍ଧିଜୀ ତାଙ୍କର ସ୍ୱଭାବସୁଲଭ ଭାଷାରେ କହିଲେ— ''ଲୁଚେଇ ଛପେଇ କରି କୌଣସି କାମ କରିବା ଉଚିତ ନୁହେଁ, ଏହା ଏକ ପ୍ରକାଶ୍ୟ ବିଦ୍ରୋହ । ଏ ଯୁଦ୍ଧରେ ଗୋପନୀୟତା ପାପ; ମୁକ୍ତ ମାନବ କୌଣସି ଗୁପ୍ତ ଆନ୍ଦୋଳନରେ ପଶେ ନାହିଁ; ଏଥରକ ଯୁଦ୍ଧରେ ଆମକୁ ଖୋଲାଖୋଲି ଲଢ଼ିବାକୁ ପଡ଼ିବ ଏବଂ ପୃଷ୍ଠ-ପ୍ରଦର୍ଶନ ନକରି ନିଜ ଛାତିରେ ଗୁଳିମାଡ଼ ଖାଇବାକୁ ପଡ଼ିବ ।''

ସରକାର କିନ୍ତୁ 'ଅହିଂସା'କୁ କେଉଁ ଭୟକରୁନଥିଲା କାରଣ ଅହିଂସା ଦ୍ୱାରା କ୍ଷତି କାହାର ? କ୍ଷତି ଅହିଂସା ସତ୍ୟାଗ୍ରହୀର, ସରକାରର ନୁହେଁ । ଅହିଂସା ଓ କାଁ-ଭାଁ ହିଂସାକାଣ୍ଡକୁ ଦବେଇଦେବାକୁ ସରକାର ସର୍ବଦା ସମର୍ଥ ହୋଇଛି; କିନ୍ତୁ ବ୍ୟାପକ ହିଂସାତ୍ମକ ବିଦ୍ରୋହକୁ କୌଣସି ସରକାର କେଉଁ ହେଲେ ଦଳିଦେଇପାରେନା । ସୁତରାଂ 'ଭାରତ ଛାଡ଼' ପ୍ରସ୍ତାବ ପଢ଼ି ସରକାରର ଆଉ କୌଣସି ସନ୍ଦେହ ରହିଲା ନାହିଁ ଯେ ଗାନ୍ଧିଜୀ ଯାହା କହନ୍ତୁ ନା କାହିଁକି ଏହି ପ୍ରସ୍ତାବର ନିଶ୍ଚିତ ପରିଣତି ଏକ ସର୍ବାତ୍ମକ ସଶସ୍ତ୍ର ବିପ୍ଳବ ।

ପ୍ରସ୍ତାବ ପାଶ୍ ଓ ଗାନ୍ଧିଜୀ ପ୍ରଭୃତିଙ୍କ ଗିରଫ ପରେ କିଭଳି ଅବସ୍ଥା ସୃଷ୍ଟି ହୋଇ ଥିଲା, ତାହା 'ଗାନ୍ଧିରଚନାବଳୀ'ରୁ ସଂଗୃହୀତ ଅଂଶଗୁଡ଼ିକ ଦେଖାଯାଉ ।

''ନେତାମାନଙ୍କୁ ଗିରଫ କରିନେବାଫଳରେ ସେମାନଙ୍କ ସମ୍ବନ୍ଧରେ ବା ସତ୍ୟାଗ୍ରହ ସମ୍ବନ୍ଧରେ କୌଣସି ଖବର ମିଳିପାରିଲା ନାହିଁ । ତେଣୁ ଦେଶରେ ନାନାପ୍ରକାର ଜନରବ ଶୁଣାଗଲା । କଂଗ୍ରେସ କେଉଁ ପ୍ରକାରର ସତ୍ୟାଗ୍ରହ ଆରମ୍ଭକରିବାକୁ ସ୍ଥିରକରିଥିଲା, ତା'ର ରୂପରେଖ ଓ କାର୍ଯ୍ୟପ୍ରଣାଳୀ ସମ୍ପର୍କରେ ଲୋକେ କିଛି ଜାଣିପାରିଲେ ନାହିଁ । ଗଭର୍ଣ୍ଣର ଓ ଭାରତ ସଚିବ ଆମେରୀ ସାହେବ ଯେଉଁ କାଳ୍ପନିକ ହିଂସାତ୍ମକ ବିଦ୍ରୋହ କଥା ତାଙ୍କ ବିବୃତିରେ କହିଥିଲେ, ଲୋକେ ତାକୁହିଁ ସତ୍ୟବୋଲି ମନେକଲେ । କଂଗ୍ରେସ ସଙ୍ଗଠନ ଛିନ୍ନଭିନ୍ନ ହୋଇସାରିଥିଲା । ଜନସାଧାରଣ ରଣପ୍ରାଙ୍ଗଣରେ ଅବତୀର୍ଣ୍ଣ ହେଲେ । ଗୋଟିଏ ବିଦେଶୀ ସରକାର ହାତମୁଠାରୁ ଭାରତକୁ ସ୍ୱାଧୀନ କରିବା ପାଇଁ ଲୋକେ ଯାହା ଉଚିତ ମନେକଲେ ତାହା କରିଗଲେ ।''

''ପ୍ରକୃତରେ ଦେଖିବାକୁ ଗଲେ, ଏ ଆନ୍ଦୋଳନ ଆଉ ଗାନ୍ଧିଜୀଙ୍କର ସତ୍ୟାଗ୍ରହ ବା କଂଗ୍ରେସ-ପ୍ରବର୍ତ୍ତିତ ସବିନୟ ଆଇନ-ଅମାନ୍ୟ ଆନ୍ଦୋଳନ ହୋଇ ରହିଲା ନାହଁ । ଏହା ବିଶୁଦ୍ଧ ଗଣ-ଆନ୍ଦୋଳନର ରୂପ ଗ୍ରହଣକଲା । ଦେଶରେ ଆଇନକୁ ଅବଜ୍ଞା କରି ସ୍ଥାନେ ସ୍ଥାନେ ଅନେକ ପ୍ରଚାରପତ୍ର ପ୍ରକାଶପାଇଲା । ଗୁପ୍ତଭାବରେ ଆନ୍ଦୋଳନ ଓ ସରକାରୀ ଦମନନୀତିର ବିବରଣୀ ପ୍ରକାଶ ପାଉଥିଲା । ଗାନ୍ଧିଜୀ ଗୁପ୍ତ ଆନ୍ଦୋଳନ ଓ ହିଂସା ବିରୁଦ୍ଧରେ ସ୍ପଷ୍ଟଭାଷାରେ ଚେତବନୀ ଦେଇଥିଲେହେଁ ଏହି ଆନ୍ଦୋଳନ ଗୁପ୍ତ ରୀତିରେ ପରିଚାଳିତ ହେଲା ।'' (ଗାନ୍ଧିଜି ରଚନାବଳୀ— ପୃଷ୍ଠା-୩; ୬୨)

'ଅଗଷ୍ଟ ବିପ୍ଳବ'ର ଅନ୍ୟତମ ମୁଖ୍ୟ ସେନାପତି ଜୟପ୍ରକାଶ 'ଭାରତ ଛାଡ଼' ପ୍ରସ୍ତାବର ବ୍ୟାଖ୍ୟା କରି କହିଲେ- କଂଗ୍ରେସର ସ୍ଥିତି (ଗାନ୍ଧିଜୀଙ୍କ ସ୍ଥିତି ନୁହେଁ) ସମ୍ପର୍କରେ ମୋ'ର ବ୍ୟାଖ୍ୟା ଅତି ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ । ହିଂସାତ୍ମକ ଉପାୟରେ ଆକ୍ରମଣକାରୀଙ୍କର ପ୍ରତିରୋଧ କରିବାକୁ କଂଗ୍ରେସ ପ୍ରସ୍ତୁତ ଅଛି । ଆମେ ନିଜକୁ 'ସ୍ୱାଧୀନ' ବୋଲି ଘୋଷଣା କରିଅଛୁଁ ଏବଂ ବ୍ରିଟେନକୁ ଆକ୍ରମଣକାରୀ ବୋଲି ଚିହ୍ନିତକରିସାରିଛୁଁ । ସୁତରାଂ ବମ୍ବେ କଂଗ୍ରେସର ପ୍ରସ୍ତାନ ଅନୁସାରେ ବ୍ରିଟେନ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରିବାକୁ ଆମର ଆଭିମୁଖ୍ୟ ସଂପୂର୍ଣ୍ଣ ଯୁକ୍ତିଯୁକ୍ତ ଅଟେ । ଗାନ୍ଧିନୀତି ସହ ଏହା ଯଦି ଖାପଖାଉନଥାଏ, ତେବେ ସେଇଟା ମୋର ଦୋଷ ନୁହେଁ ।

ତତ୍କାଳୀନ କଂଗ୍ରେସ ସଭାପତି ଆଜାଦ ଏ ସମ୍ପର୍କରେ ଯାହା ଲେଖିଛନ୍ତି ତାକୁ ଅନୁଶୀଳନ କଲେ ସ୍ପଷ୍ଟ ଜଣାଯାଏ ଯେ, 'ଭାରତ ଛାଡ଼' ଆନ୍ଦୋଳନ ଯେ ସଶସ୍ତ୍ର ସଂଗ୍ରାମର ରୂପ ନେବ ଏହା ଉଭୟ ଗାନ୍ଧିଜୀ ଓ କଂଗ୍ରେସ ନେତାମାନେ ଭଲଭାବରେ ଜାଣିଥିଲେ । କ୍ରିପ୍‌ସ ଫେରିଗଲା ପରେ ଗାନ୍ଧିଜୀଙ୍କର ମନୋଭାବରେ ବିଶେଷ ପରିବର୍ତ୍ତନ ହୋଇଥିଲା ।

ଯୁଦ୍ଧଭିତରେ ଭାରତରେ କୌଣସି ପ୍ରକାର ଆନ୍ଦୋଳନ କରାଯିବ ନାହିଁ ବୋଲି ଯେଉଁ ଗାନ୍ଧିଜୀ ସେ ପର୍ଯ୍ୟନ୍ତ କହିଆସୁଥିଲେ, ତାଙ୍କର ମନ ବ୍ରିଟିଶ-ମନୋଭାବ ଦେଖି ବଦଳିଯାଇଥିଲ । ଆଜାଦ ଲେଖିଛନ୍ତି – ''ପ୍ରତିରୋଧ'ର ରୂପେରେଖ କ'ଣ ହେବ ବୋଲି ମୁଁ ଯେତେବେଳେ ଗାନ୍ଧିଜୀଙ୍କୁ ପଚାରିଲି, ତାଙ୍କର ସେତେବେଳେ ସେ ସମ୍ପର୍କରେ କୌଣସି ସ୍ପଷ୍ଟ ଧାରଣା ନଥିଲା । ଏ ସମ୍ପର୍କରେ ତାଙ୍କ ସହ ଅଧିକ ଆଲୋଚନା ବେଳେ ସେ ଗୋଟିଏ କଥା କହିଲେ ଯେ, ଆଗଭଳି ଏଥର ଲୋକେ ସ୍ୱେଚ୍ଛାରେ ଜେଲବରଣ କରିବେ ନାହିଁ, ଗିରଫର ପ୍ରତିରୋଧ କରିବେ ଓ ଶାରୀରିକ ବଳ ପ୍ରୟୋଗ ହେଲେ ଯାଇ ସେମାନେ ଗିରଫ ହେବେ ।''

ଆନ୍ଦୋଳନ ପାଇଁ ପ୍ରସ୍ତାବ ଗୃହୀତ ହେବାପରେ ଯଦି ଗାନ୍ଧିଜୀ ଗିରଫ ହୋଇନଥାନ୍ତେ, ତେବେ ସେ ହୁଏତ ଲୋକଙ୍କୁ ଅହିଂସ ଆନ୍ଦୋଳନ ପାଇଁ ପ୍ରବର୍ତ୍ତାଇଥାନ୍ତେ – ଲୋକେ ତାହା ମାନନ୍ତୁ ବା ନମାନନ୍ତୁ । ନେତାମାନଙ୍କୁ ଗିରଫ କରିନେଲେ ଲୋକେ ଯାହା ଠିକ୍ ମନେ କରିବେ ତାହାହିଁ କରିବେ ବୋଲି ଉଲ୍ଲେଖ କରି ଆଜାଦ ପୁଣି ଲେଖିଛନ୍ତି– (ବହୁ ଚିନ୍ତାକରି ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହେଲି ଯେ ଲୋକମାନଙ୍କର ମନୋବଳ ଦୃଢ଼ରଖିବାକୁ ନିଶ୍ଚୟ କିଛି କରିବାକୁ ହେବ । ଯଦି ଆନ୍ଦୋଳନକୁ ପରିଚାଳନା କରିବାକୁ ଗାନ୍ଧିଜୀଙ୍କୁ ସୁଯୋଗ ଦିଆଯାଏ ତେବେ ତାହା ସ୍ୱାଭାବିକ ଭାବେ ଅହିଂସା ରାସ୍ତାରେହିଁ ଚାଲିବ । କିନ୍ତୁ ଯଦି ଆମ ସମସ୍ତଙ୍କୁ ଆରେଷ୍ଟ କରାଯାଏ, ତେବେ ଲୋକଙ୍କୁ ଚୁପ୍‌ଚାପ୍ ରହିବାକୁ କୁହାଯାଇ ପାରିବ ନାହିଁ; ବରଂ ଯେତେ ଭଲଭାବେ ସମ୍ଭବ ଆନ୍ଦୋଳନ ଚଳାଇଯିବାକୁ ଉତ୍ସାହିତ କରାଯିବ – ତାହା 'ହିଂସା' ହେଉ ବା 'ଅହିଂସା' ହେଉ, ସେଥିପାଇଁ ଶିରୋବ୍ୟଥା ନକରି ।

ନିଜେ ଗାନ୍ଧିଜୀ ଯେଉଁଠି କହିଲେ ଯେ, 'ଗିରଫଦାରୀର ପ୍ରତିରୋଧ କର' (ଏପର୍ଯ୍ୟନ୍ତ ଗାନ୍ଧି-ଆନ୍ଦୋଳନରେ ଏହା ଶୁଣାଯାଇନଥିଲା) ଏବଂ ନିଜେ କଂଗ୍ରେସ ସଭାପତି ବା

ତତ୍କାଳୀନ ଭାଷାରେ ରାଷ୍ଟ୍ରପତି ଯେଉଁଠି କହିଲେ ଯେ— ହିଂସା ହେଉ ବା ଅହିଂସା ହେଉ ଲୋକେ ଆନ୍ଦୋଳନ କରନ୍ତୁ, ଲୋକେ ଆଉ କ'ଣ କରିଥାନ୍ତେ ?

ନେତାଜୀ ଯଥାର୍ଥରେ କହିଲେ, "In the history of India's struggle 1942 will remain an unforgetable landmark indicating psychological transition form passive to active resistence. (ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ୪୨-ଆନ୍ଦୋଳନ ନିଷ୍କ୍ରିୟରୁ ସକ୍ରିୟ ପ୍ରତିରୋଧକୁ ରୂପାନ୍ତର ଭାବରେ ଅବିସ୍ମରଣୀୟ ହୋଇ ରହିବ ।)



## ଅଧ୍ୟାୟ - ଅଠତିରିଶ

# ଶେଷର ଆରମ୍ଭ : କର ବା ମର

'କର ବା ମର' (Do or Die) 'କରେଙ୍ଗେ ୟା ମରେଙ୍ଗେ' ଗାନ୍ଧିଜୀଙ୍କ ଶେଷ ଆହ୍ୱାନ ଅଗଷ୍ଟ ୯ ତାରିଖ ସକାଳେ ଆରେଷ୍ଟ ହେବା ପୂର୍ବରୁ ମାତ୍ର ପାଞ୍ଚଗୋଟି ଅକ୍ଷର ସ୍ୱାଧୀନତା ପାଇଁ ସଂଗ୍ରାମ କର, ସଂଗ୍ରାମ କରି ସ୍ୱାଧୀନତା ଅର୍ଜନ କର; ନଚେତ୍ ସଂଗ୍ରାମ କରୁ କରୁ ପ୍ରାଣ ବିସର୍ଜନକର— ଏପଟ ନଚେତ୍ ସେପଟ, ମଝିରେ ଅନ୍ୟ ପନ୍ଥା ନାହିଁ ।

କେଉଁ ଅସ୍ତ୍ରରେ ଏ ଯୁଦ୍ଧ ? ଅହିଂସା ନା ହିଂସା ? ଶାନ୍ତିପୂର୍ଣ୍ଣ ଅସହଯୋଗ ନା ବିପ୍ଳବ ? ସାମ୍ବିଧାନିକ ଗଣତାନ୍ତ୍ରିକ ସଂଗ୍ରାମ ନା ଉଗ୍ରଜାତୀୟତାବାଦ ? ସବିନୟ ଆଇନ-ଅମାନ୍ୟ ଆନ୍ଦୋଳନ ନା ସର୍ବାତ୍ମକ ଗଣବିପ୍ଳବ ?— କ'ଣ ଏହି ସ୍ଲୋଗାନ୍‌ର ଅର୍ଥ ? ଏହାର ଏତିକି ମାତ୍ର ଅର୍ଥ — 'କର ବା ମର' । ସଂଗ୍ରାମ କର, ସଂଗ୍ରାମ କରି ସ୍ୱାଧୀନତା ଅର୍ଜନ କର; ନଚେତ୍ ସଂଗ୍ରାମ କରୁ କରୁ ମୃତ୍ୟୁବରଣ କର । ବେଶ୍ ଏତିକି ଏହାର ଅର୍ଥ — କରେଙ୍ଗେ ୟା ମରେଙ୍ଗେ । ଏହି ସ୍ଲୋଗାନର ପ୍ରତିଧ୍ୱନିରେ ଆକୁମାରୀ-ହିମାଚଳ ଗର୍ଜିଉଠିଲା । ଏଇଆ ତ ଦରକାର ଥିଲା ? ଏହି ତ ବିପ୍ଳବ ? ଏହି ତ ସଂଗ୍ରାମ ! ଶେଷ ଲଢ଼େଇ ଆମର । ଜାତିର ଜୀବନ-ମରଣ ସଂଗ୍ରାମ, 'ଇଂରେଜ ଭାରତ ଛାଡ଼'— ଦୂର ହଟୋ ଏ ଦୁନିଆ-ଓ୍ୱାଲେ ହିନ୍ଦୁସ୍ଥାନ ହମାରା ହେ ।''

ଇଥରକୁ ଥରହର କରି ଗର୍ଜିଉଠିଲା ବର୍ଲିନରୁ ଆଜାଦ ହିନ୍ଦ ରେଡ଼ିଓ ''ମୁଁ ସୁଭାଷ କହୁଛି- ଏଣିକି ଭାରତର ମୁକ୍ତି-ସଂଗ୍ରାମ ଦୁର୍ବାର ଗତିରେ ଆଗେଇଚାଲିବ । ଦବାଗ୍ନି ଭଳି ଏହି ସଂଗ୍ରାମ ବିଛୁଡ଼ି ହୋଇଯାଉ ସହରରୁ ପଲ୍ଲୀକୁ । ଆଗେ ବ୍ରିଟିଶ ସରକାରର ଅତ୍ୟାଚାର କାହାଣୀ ଭାରତ ବାହାରକୁ ଯାଇପାରୁନଥିଲା; ଆଜି ଆଉ ସେ ସମସ୍ୟା ନାହିଁ । ଭାରତରେ ଆଜି ଯାହା ଘଟୁଛି, ତାହା ପୃଥିବୀରେ ସର୍ବତ୍ର ପ୍ରଚାରକରି ମୁଁ ସମସ୍ତଙ୍କଠାରୁ ସାହାଯ୍ୟ ସହାନୁଭୂତି ସଂଗ୍ରହ କରିବାକୁ ବ୍ରତୀ ହୋଇଛି । ଆପଣମାନେ ଯଦି ନିଜ ଆଖିରେ ଦେଖନ୍ତେ ବା ଶୁଣନ୍ତେ ଯେ ଭାରତ ଆଜି ବ୍ରିଟିଶର ଶତ୍ରୁମାନଙ୍କ ଆଗରେ କେତେ ସମ୍ମାନ ଅର୍ଜନ କରୁଅଛି ସ୍ୱାଧୀନତା ଅର୍ଜନ ପାଇଁ ଆମେ ଯେତେ ବେଶୀ ଆତ୍ମବଳୀ ଦେବା, ଯେତେ ବେଶୀ ଉତ୍ପୀଡ଼ନ ଓ ଅତ୍ୟାଚାର ସହ୍ୟକରିବା, ବିଶ୍ୱ-ସମକ୍ଷରେ ସେତେ ବେଶି ଭାରତର ସମ୍ମାନ ବଢ଼ିବ ।

''ଇଂଲାଣ୍ଡର ଆଜି ଦୁର୍ଦ୍ଦିନ । ସେମାନଙ୍କ ଦେଶରେ ଯେଉଁ ଆମେରିକାନ୍ ଅଛନ୍ତି, ସେମାନଙ୍କ ଉପରେ ଇଂଲାଣ୍ଡର ଆଇନ-କାନୁନ ଲାଗୁ ହେବ ନାହିଁ ବୋଲି ଘୋଷଣା

କରାଯାଇଛି । ମାର୍କିନ୍ ସୈନ୍ୟମାନେ ଆଜି ବ୍ରିଟିଶ ସେନାନାୟକମାନଙ୍କ ଅଧୀନରେ ଯୁଦ୍ଧ କରିବକୁ ନାରାଜ; ଫଳରେ ବ୍ରିଟିଶ ଓ ତା'ର ସାମ୍ରାଜ୍ୟ ଆଜି ଆମେରିକାର ନୂଆ ସାମ୍ରାଜ୍ୟର ଉପନିବେଶରେ ପରିଣତହୋଇଛି ।

''ଏଥିମଧ୍ୟରୁ କୌଣସିଟା ଆମର କାମ୍ୟ ନୁହେଁ- ନା ଇଂଲାଣ୍ଡର ପୁରୁଣା ସମ୍ରାଜ୍ୟବାଦ ବା ରୁଜ୍‌ଭେଲଟର ନୂଆ ସାମ୍ରାଜ୍ୟବାଦ । ନୂଆ ପୁରୁଣା ଉଭୟ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆମକୁ ଲଢ଼ିବାକୁ ପଡ଼ିବ । ସଂଗ୍ରାମର ଶେଷଆଡ଼କୁ ଆମର ଦୁଃଖ ଓ ବେଦନାର ଅନ୍ତ ରହିବ ନାହିଁ । ଅତ୍ୟାଚାର, ଉତ୍ପୀଡ଼ନ ଓ ହତ୍ୟାକାଣ୍ଡ ସବୁ କିଛି ଚାଲିବ ବାଧାହୀନ ଭାବରେ । ସ୍ୱାଧୀନତା ପାଇଁ ଆମ୍ଭମାନଙ୍କୁ ଏହି ମୂଲ୍ୟ ଦେବାକୁ ପଡ଼ିବ । ଏହା ସ୍ୱାଭବିକ ଯେ, ଏହି ଚରମ ମୂହୂର୍ତ୍ତରେ ଇଂରେଜ ଆମକୁ ଏକ ମରଣ- କାମୁଡ଼ା ଦେବ । କିନ୍ତୁ ମନେରଖନ୍ତୁ, ସେ କାମୁଡ଼ା ମୁମୂର୍ଷ ସିଂହର; ସୁତରାଂ ସେହି କାମୁଡ଼ାରେ ଆମେ ମରିବା ନାହିଁ ।

''ନେତୃବୃନ୍ଦ କାରାଗାରରେ । କିନ୍ତୁ ସେଥିପାଇଁ ଭୀତ ବା ହତାଶ ହେବାର କିଛି ନାହିଁ; ବରଂ ସେମାନଙ୍କର ଦୁଃଖ, ବେଦନା ଓ ନିର୍ଯାତନା ଇତିହାସରେ ସବୁ ଜାତି ପାଇଁ ପ୍ରେରଣାଦେବ । ଏହି ସଂକଟଜନକ ମୁହୂର୍ତ୍ତରେ ଫଳାଫଳକୁ ନଦେଖି ସ୍ୱାଧୀନତା-ଯୁଦ୍ଧ ଚଳାଇଯିବାହିଁ ହେବ ଆମର ବର୍ତ୍ତମାନର ରଣନୀତି । ଆମ୍ଭମାନଙ୍କର ଚୂଡ଼ାନ୍ତ ଜୟ ଆସିବ କେବଳ ମାତ୍ର ଆମ୍ଭମାନଙ୍କର ସାଧନାବାଟରେ ।

''ଭାରତ ଓ ବ୍ରିଟିଶ ସରକାରର ଗୋଏନ୍ଦାମାନଙ୍କର ତତ୍‌ପରତା ସତ୍ତ୍ୱେ ମୁଁ ବିଭିନ୍ନ ଉପାୟରେ ମୋ'ର ଦେଶବାସୀଙ୍କ ସହ ସମ୍ପର୍କ ରକ୍ଷା କରିଚାଲିଛି । ତା'ର ପ୍ରମାଣ ଆପଣମାନେ ଗତ କେତେ ମାସ ଭିତରେ ଭଲଭାବରେ ପାଇସାରିଛନ୍ତି ।

''ବର୍ଲିନରେ ଆଜାଦ ହିନ୍ଦ୍ ରେଡ଼ିଓ ଏବଂ ମୋ ସମ୍ପର୍କରେ ଭାରତ ସରକାରର କେତେକ ଗୋପନୀୟ ରିପୋର୍ଟ ମୋର ହସ୍ତଗତ ହୋଇଛି । ସେଗୁଡ଼ିକ ଦେଖି ମୁଁ ନହସି ରହିପାରୁନି । ବ୍ରିଟିଶ ସରକାର ଯଦି ଭାବୁଥାଏ ଯେ ସେମାନେ ମୋ ସମ୍ପର୍କରେ ସମସ୍ତ ବିଷୟ ଅବଗତ ଅଛନ୍ତି, ତାହାହେଲେ ମୁଁ ନାଚାର; ତେବେ ସେମାନଙ୍କ ସହ ମୋର ଦିନେ ଜୀବନ-ମରଣ ସଂଗ୍ରାମ ହେବ ।

''ଭାରତବର୍ଷରେ ଆଜି ଯେଉଁ ଲଢ଼େଇ ଆରମ୍ଭ ହେବାକୁ ଯାଉଛି, ତାକୁ ମୁଖ୍ୟତଃ ଗରିଲା ଯୁଦ୍ଧ ବୋଲି କୁହାଯାଇପାରେ । ଏହି ଗରିଲା ଯୁଦ୍ଧରେ ଆମକୁ ଛତ୍ରଭଙ୍ଗ ନୀତି ଅବଲମ୍ବନ କରିବାକୁ ହେବ, ଅର୍ଥାତ ଆମର କାର୍ଯ୍ୟାବଳୀ ସାରା ଦେଶରେ ଏଭଳି- ଭାବରେ ବିଛୁଡ଼ି ଦେବାକୁ ହେବ, ଯେପରି କି ପୋଲିସ ବା ମିଲିଟାରୀ ଗୋଟିଏ ଜାଗାରେ ସେମାନଙ୍କର ଶକ୍ତି ଏକାଠି କରିନପାରନ୍ତି । ସରକାରୀ ପକ୍ଷ ଯେପରି ଜାଣିନପାରେ ଆମର ପରବର୍ତ୍ତୀ ଆକ୍ରମଣ କେଉଁଠାରେ ହେବ । ଗରିଲା ଯୁଦ୍ଧ-କୌଶଳ ସମ୍ପର୍କରେ ମୁଁ ଏଠାରେ ଗରିଲା ଯୁଦ୍ଧ-ବିଶେଷଜ୍ଞମାନଙ୍କ ପରାମର୍ଶ ନେଇଛି । ସେଥିପାଇଁ ମୁଁ ଆପଣମାନଙ୍କୁ ଏଭଳି କେତେକ ପରାମର୍ଶ ଦେଇପାରିବି; ତାହା ଅନୁସରଣ କରି- ପାରିଲେ ଆପଣମାନେ ସଂଗ୍ରାମକୁ ସାଫଲ୍ୟମଣ୍ଡିତ କରିପାରିବେ ।

ଗରିଲାଯୁଦ୍ଧର ମୂଳ ଉଦ୍ଦେଶ୍ୟ ହେବ ଦୁଇଟି : ପ୍ରଥମତଃ ବ୍ରିଟିଶର ଯୁଦ୍ଧ ଯୋଜନକୁ ଧ୍ୱଂସକରିବା ଏବଂ ଦ୍ୱିତୀୟତଃ ଶାସନକଳକୁ ଅଚଳ କରିଦେବା । ଏତଦ୍‌ବ୍ୟତୀତ (୧) ସରକାରକୁ ସବୁପ୍ରକାର ଟ୍ୟାକ୍ସ ଦେବା ବନ୍ଦ କରିଦେବାକୁ ହେବ । (୨)ଶ୍ରମିକମାନେ ଅବସାନ ଧର୍ମଘଟ କରିବେ କିମ୍ବା ଇଚ୍ଛାକରି କାମରେ ଢିଲା କରିବେ ଏବଂ ସେଥିସହ ନଟ୍‌ବୋଲଟ୍ ଖୋଲି ଧ୍ୱଂସାତ୍ମକ କାର୍ଯ୍ୟ କରିବାକୁ ହେବ । (୩)ଦେଶ ଭିତରେ ଗୋପନ ଧ୍ୱଂସାତ୍ମକ କାର୍ଯ୍ୟପାଇଁ ଛାତ୍ରମାନଙ୍କର ଗରିଲାବାହିନୀ ଗଠନ କରିବାକୁ ହେବ । (୪) ଗୁପ୍ତ ସମ୍ବାଦ-ପରିବହନ ଓ ପଳାତକ ଫେରାର ବିପ୍ଳବୀମାନଙ୍କୁ ଆଶ୍ରୟଦାନ କାର୍ଯ୍ୟରେ ନାରୀମାନଙ୍କୁ ଓ ଛାତ୍ରମାନଙ୍କୁ ଆଗେଇଆସିବାକୁ ହେବ । (୫) ଯେଉଁ ସବୁ କର୍ମଚାରୀମାନଙ୍କର ସଂଗ୍ରାମରେ ସହାୟତା କରିବାକୁ ଇଚ୍ଛା ସେମାନେ ପଦତ୍ୟାଗ ନକରି ଭିତରୁ ଯୁଦ୍ଧ-ପ୍ରଚେଷ୍ଟା ସଂକ୍ରାନ୍ତୀୟ ଗୋପନୀୟ ସମ୍ବାଦ ବିପ୍ଳବୀମାନଙ୍କୁ ଯୋଗାଇବେ ।

ଏତଦ୍‌ବ୍ୟତୀତ ଜନସାଧାରଣଙ୍କୁ ମୁଁ ନିମ୍ନଲିଖିତ କାର୍ଯ୍ୟଗୁଡ଼ିକ କରିବାକୁ ପରାମର୍ଶ ଦେଉଅଛି ।

(କ) ବ୍ରିଟିଶ ଦ୍ରବ୍ୟ ବର୍ଜନ, ବ୍ରିଟିଶ ଓ ସରକାରୀ ଦୋକାନପତ୍ର ପୋଡ଼ିବା । (ଖ) ବ୍ରିଟିଶ ସମର୍ଥକମାନଙ୍କୁ ବାସନ୍ଦ କରିବା । (ଗ) ନିଷେଧ ଆଇନ ଅମାନ୍ୟ କରି ସଭା ଓ ଶୋଭାଯାତ୍ରା କରିବା । (ଘ) ଗୋପନ ପ୍ରଚାରପତ୍ର ବାଣ୍ଟିବା ଓ ଗୋପନ ବେତାର କେନ୍ଦ୍ର ସ୍ଥାପନ କରିବା । (ଙ) ବ୍ରିଟିଶ କର୍ମଚାରୀମାନଙ୍କ ଘରକୁ ପ୍ରସେସନରେ ଯାଇ ସେମାନଙ୍କୁ ଭାରତ ଛାଡ଼ି ଚାଲିଯିବାକୁ ଦାବି କରିବା । (ଚ) ପ୍ରସେସନରେ ସରକାରୀ ଅଫିସ ଓ ଅଦାଲତ ଗୃହରେ ପ୍ରବେଶକରି ସରକାରୀ କାର୍ଯ୍ୟରେ ବାଧା ସୃଷ୍ଟି କରିବା । (ଛ) ଯେଉଁ ଜେଲ କର୍ମଚାରୀମାନେ ସଂଗ୍ରାମୀମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି, ସେମାନଙ୍କ ପ୍ରତି ଶାସ୍ତିବିଧାନ କରିବା । (ଜ) ଯେଉଁ ସବୁ ରାସ୍ତାରେ ପୋଲିସ ଓ ମିଲିଟାରୀର ଯାତାୟାତର ସମ୍ଭାବନା ରହିଛି, ସେ ସବୁ ରାସ୍ତାରେ ଅବରୋଧ ସୃଷ୍ଟି କରିବା । (ଝ) ଯେଉଁ ସବୁ ସ୍ଥାନରେ ସାମରିକ ସରଞ୍ଜାମ ତିଆରି ହୁଏ, ସେଗୁଡ଼ିକ ନଷ୍ଟ କରିବା । (ଞ) ଡାକ-ତାର ବ୍ୟବସ୍ଥା ବାରମ୍ବାର ବିଚ୍ଛିନ୍ନ କରିବା । (ଟ) ଯୁଦ୍ଧ ସରଞ୍ଜାମ ସରବରାହରେ ବାଧାଦେବାକୁ ରେଲରାସ୍ତା ଅଚଳ କରିବା । (ଠ) ଥାନା, ରେଲଷ୍ଟେସନ ଓ ଜେଲଖାନା ଧ୍ୱଂସ କରିବା ।

''ବନ୍ଧୁଗଣ, ମୁଁ ନିଃସନ୍ଦେହ ଯେ, ଉପରୋକ୍ତ କର୍ମସୂଚୀ ଗ୍ରହଣ କଲେ ଶାସନକଳ ଅଚଳହୋଇପଡ଼ିବ । ଏହି ପ୍ରସଙ୍ଗରେ ମୁଁ ଆପଣମାନଙ୍କୁ ସ୍ମରଣ କରାଇଦେବାକୁ ଚାହେଁ ଯେ, ଗରିଲାଯୁଦ୍ଧରେ କୃଷକମାନଙ୍କ ଅଂଶ ଗ୍ରହଣ ଅପରିହାର୍ଯ୍ୟ । ମୁଁ ଲକ୍ଷ୍ୟ କରି ଖୁସିହୋଇଛି ଯେ, ବିହାର ଓ ମଧ୍ୟପ୍ରଦେଶ ଇତ୍ୟାଦି କେତୋଟି ସ୍ଥାନରେ କୃଷକମାନେ ଇତିମଧ୍ୟରେ ଆନ୍ଦୋଳନର ପୁରୋଭାଗରେ ଠିଆହୋଇଛନ୍ତି । ଆମ୍ଭେମାନେ ଜନସାଧାରଣଙ୍କ ପାଇଁ ହିଁ ସ୍ୱରାଜ୍ୟ ଚାହୁଁ, କୃଷକ ଓ ଶ୍ରମିକମାନଙ୍କ ପାଇଁ ଚାହୁଁ । ଶ୍ରମିକ ଓ କୃଷକମାନଙ୍କ କର୍ତ୍ତବ୍ୟ ଜାତୀୟବାହିନୀ ଆଗରେ ଠିଆହେବା । ଯେଉଁମାନେ ଯୁଦ୍ଧ କରି ସ୍ୱାଧୀନତା ଅର୍ଜନ କରିବେ, ସେହିମାନେହିଁ ଲାଭ କରିବେ କ୍ଷମତା ଓ ଦାୟିତ୍ୱ; ତାହାହିଁ ପ୍ରକୃତିର ନିୟମ ।

''ଆପଣମାନେ ଗତ କେତେ ମାସ ହେବ ନିଶ୍ଚୟ ଲକ୍ଷ୍ୟ କରିଥିବେ ଯେ, ବ୍ରିଟିଶ ସାମ୍ରାଜ୍ୟବାଦ ଅନ୍ଧକାର ଭିତରେ ଗତିକରୁଅଛି । ସେ ଦିନ ଚାଲିଯାଇଛି ଯେତେବେଳେ ଲଣ୍ଡନ ସହର ସାରା ବିଶ୍ୱର ରାଜଧାନୀ ଭଳି ପରିଗଣିତ ହେଉଥିଲା ସେ ଦିନ ଚାଲିଯାଇଛି, ଯେତେବେଳେ ରାଜା ମହାରାଜାମାନେ ନିଜ ନିଜ ସମସ୍ୟା ସମାଧାନ କରିବାକୁ ଲଣ୍ଡନ ସହରକୁ ଦୌଡୁଥିଲେ । ସେଦିନ ଚାଲିଯାଇଛି, ଯେତେବେଳେ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କୁ ଭେଟିବାକୁ ଆମେରିକା ରାଷ୍ଟ୍ରପତିଙ୍କୁ ୟୁରୋପ ଆସିବାକୁ ପଡୁଥିଲା । ଜନୈକ ଇଂରେଜ କବି ଟେନିସନ ଯଥାର୍ଥରେ କହିଥିଲେ, 'ନୂଆ ବିଚାରଧାରାକୁ ସ୍ଥାନ ଦେବାକୁ ପୁରୁଣା ବିଚାରଧାରାର ଯୁଗ ଚାଲିଯାଏ । ନାନା ଉପାୟରେ ଭଗବାନ୍ ତାଙ୍କର ଇଚ୍ଛା ପୂର୍ଣ୍ଣ କରନ୍ତି ।' ଫଳସ୍ୱରୂପ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କୁ ବର୍ତ୍ତମାନ ନିଉୟର୍କ ଓ ଓ୍ୟାସିଂଟନ୍‌କୁ ଦୌଡ଼ିବାକୁ ପଡୁଛି । ବ୍ରିଟିଶ ସାମ୍ରାଜ୍ୟବାଦର ସବୁଠାରୁ ଉଲ୍ଲେଖଯୋଗ୍ୟ ରୂପାନ୍ତର ଏହା ହେଉଅଛି ଯେ, ସାମ୍ରାଜ୍ୟବାଦର ମୁଖ୍ୟ ପୁରୋଧା, ଭାରତୀୟ ଜାତୀୟତାବାଦର ଘୋର ଶତ୍ରୁ, ସାମ୍ୟବାଦର କଟ୍ଟର ବିରୋଧୀ ବ୍ରିଟିଶ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ ଚର୍ଚ୍ଚିଲ ସାମ୍ରାଜ୍ୟବାଦର ସମସ୍ତ ଗର୍ବ ଅହଙ୍କାରକୁ ଗଳାଧଃକରଣ କରି ମସ୍କୋର କ୍ରେମ୍‌ଲିନ ପ୍ରାସାଦର ଫାଟକ ସମ୍ମୁଖରେ ଆଜି ଉପସ୍ଥିତ ।

''ସର୍ବଶେଷରେ ମୋର କହିବାର କଥା ଯେ, ଏ ସଂଗ୍ରାମ ସପ୍ତାହ ପରେ ସପ୍ତାହ, ମାସ ପରେ ମାସ ଚଳାଇଯିବାକୁ ହେବ । ଏଥିସହ ଆପଣମାନଙ୍କୁ ସମସ୍ତ ଦୁଃଖ, ଯନ୍ତ୍ରଣା ଓ ଉତ୍ପୀଡ଼ନ ସହ୍ୟ କରିବାକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଭାରତର ପୂର୍ବ ମୁହୂର୍ତ୍ତ ସବୁଠାରୁ ବେଶୀ ଅନ୍ଧକାର ।

''ଆପଣମାନଙ୍କର ଏକମାତ୍ର ବାଣୀ ହେଉ — 'ହୁଏତ ବର୍ତ୍ତମାନ, ନଚେତ୍ କେବେଁ ନୁହେଁ । ଡୁ ଅର୍ ଡାଏ— କରେଙ୍ଗେ ୟା ମରେଙ୍ଗେ' । ଜୟ ହିନ୍ଦ ।''

(ବର୍ଲିନ, ୩୧-୮-୧୯୪୨) (୧)

ଏ ତ ଗଲା ନେତାଜୀଙ୍କର ପରାମର୍ଶ ଓ ନିର୍ଦ୍ଦେଶ । ଗାନ୍ଧିଜୀ ତେବେ କିଭଳି ପରାମର୍ଶ ଦେଇଥିଲେ ? ସେ ସାମ୍ବାଦିକ, ରାଜନ୍ୟବର୍ଗ, ସୈନ୍ୟବାହିନୀ ଓ ଛାତ୍ରମାନଙ୍କୁ ଆନ୍ଦୋଳନ ସମୟରେ କ'ଣ କ'ଣ କରିବାକୁ ହେବ ପରାମର୍ଶ ଦେଇଥିଲେ । ସେ ସ୍ପଷ୍ଟ କରି କହିଥିଲେ— ପ୍ରସ୍ତାବ ପାଶ୍ ହେବା ଅର୍ଥ ଏହା ନୁହେଁ ଯେ, ସଙ୍ଗେ ସଙ୍ଗେ ଆନ୍ଦୋଳନ ଆରମ୍ଭହୋଇଯିବ । ସେ ବାରମ୍ବାର କହୁଥିଲେ ଯେ, ତାଙ୍କ ହୃଦୟ ଭିତରେ ଥିବା ଭଗବାନ୍‌ଙ୍କର ଏହା ନିର୍ଦ୍ଦେଶ ଅଟେ । ଆବଶ୍ୟକ ହେଲେ ସମଗ୍ର ବିଶ୍ୱ ବିରୁଦ୍ଧରେ ମୁଁ ଛିଡ଼ାହେବାକୁ ପ୍ରସ୍ତୁତ ଅଛି । ସମଗ୍ର ବିଶ୍ୱ ତୁମକୁ ରକ୍ତଚକ୍ଷୁ ଦେଖାଇଲେ, ତୁମେ ତା'ର ମୁଖମଣ୍ଡଳକୁ ନିରୀକ୍ଷଣ କର । ତୁମେ ଭୟକରନାହିଁ, ତୁମର ହୃଦୟକନ୍ଦରରେ ବାସକରୁଥିବା ସେହି ଶକ୍ତିକୁ ବିସ୍ମୃତ ହୁଅ ନାହିଁ; ସେହି ଶକ୍ତି ତୁମକୁ ଆହ୍ୱାନ ଦେଉଛି— ନିଜର ପ୍ରିୟଜନ ସ୍ତ୍ରୀ-ପୁତ୍ରଙ୍କୁ ପରିତ୍ୟାଗକର ଏବଂ ତୁମର ଆଦର୍ଶ ପାଇଁ ତୁମେ ଆତ୍ମ-ବିସର୍ଜନକର ।

1. ଆମି ସୁଭାଷ ବଲ୍‌ଛି - (ବଙ୍ଗଳା) ୩ୟ ଭାଗ - ଶୈଳେଶ ଦେ - ପୃ ୨୪୫ ଏବଂ "Subhas Chandra Bose" - Girija Mookejee - pg.125

'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହେବାର ପୂର୍ବଦିନ କଂଗ୍ରେସ କାର୍ଯ୍ୟକାରୀ କମିଟି ସମ୍ମୁଖରେ ଗାନ୍ଧିଜୀ କେତେଗୁଡ଼ିଏ ପରାମର୍ଶ-ସମ୍ବଳିତ ନୋଟ୍ ଦାଖଲକରିଥିଲେ । ସତ୍ୟାଗ୍ରହୀମାନଙ୍କର କର୍ତ୍ତବ୍ୟ ସମ୍ପର୍କରେ ଏହି ପରାମର୍ଶଗୁଡ଼ିକ ଉଦ୍ଦିଷ୍ଟ ଥିଲା । ସେଥିରେ ଗୋଟିଏ ନିର୍ଦ୍ଦିଷ୍ଟ ଦିନ (ଯାହା ଗାନ୍ଧିଜୀ ନିଜେ ସ୍ଥିରକରିବେ) ହରତାଳ କରିବାକୁ ପଡ଼ିବ । ହରତାଳ ଦିନ ସମସ୍ତେ ଉପବାସ ଓ ପ୍ରାର୍ଥନା କରିବେ । କିନ୍ତୁ କୌଣସି ଦୋକାନୀକୁ ହରତାଳରେ ଯୋଗଦେବାକୁ ବାଧ କରାଯିବ ନାହିଁ । ସେ ଦିନ ଶୋଭାଯାତ୍ରା ହେବ ଏବଂ ସାଧାରଣ ସଭାରେ ସତ୍ୟାଗ୍ରହର ଉଦ୍ଦେଶ୍ୟ ବ୍ୟାଖ୍ୟାନ କରାଯିବ । ଲୋକେ ନିଜର ବ୍ୟବହାର ପାଇଁ ଆଇନଭଙ୍ଗ କରି ଲୁଣ ମାରିବେ, ଖଜଣା ବନ୍ଦକରାଯିବ । ସରକାର ପକ୍ଷରୁ ଅତ୍ୟଧିକ ବଳପ୍ରୟୋଗହେଲେ ତାକୁ ବରଦାସ୍ତ କରାଯିବ ନାହିଁ ।'' (Excess by the Government should not be tolerated)(1)

ଗାନ୍ଧିଜୀଙ୍କ ନିଜ ରଚନାବଳୀରୁ ଏ ସମ୍ପର୍କରେ ଉଲ୍ଲେଖ କରିବା ଅଧିକ ଯୁକ୍ତିଯୁକ୍ତ ହେବ – ସ୍ୱରାଜ ହାସଲ ନହେବାଯାଏ ଲଢ଼ିବାକୁ ପଡ଼ିବ । 'ମୁଁ ସ୍ୱାଧୀନ ହେବି, ନହେଲେ ମରିବି'– ଏହି ଶପଥ ଗ୍ରହଣକରି ତାକୁ କାମ କରିବାକୁ ହେବ.... ସରକାର ଯଦି କୌଣସି ସ୍ଥାନରେ କିଛି ଅତ୍ୟାଚାର କରିବେ, ତେବେ ଲୋକେ ତାର ପ୍ରତିରୋଧ କରିବେ ଓ ଦଣ୍ଡ ସହିବେ ।(୨)

ଗାନ୍ଧିଜୀଙ୍କର ପରାମର୍ଶଗୁଡ଼ିକୁ ବିଶ୍ଳେଷଣକଲେ ଦେଖାଯାଏ ଯେ, ସେହି ପରାମର୍ଶଗୁଡ଼ିକ ଅହିଂସ ଉପାୟରେ ପାଳନକରିବା ହୁଏତ କେବଳ ଗାନ୍ଧିଜୀଙ୍କଦ୍ୱାରା ସମ୍ଭବ ହୋଇପାରେ । ଉଦାହରଣ ସ୍ୱରୂପ, ହରତାଳ, ଧର୍ମଘଟ ଓ କାମବନ୍ଦ ଆନ୍ଦୋଳନ ବେଳେ ଗାନ୍ଧିନୀତି ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ପ୍ରୟୋଗକରାଯାଇପାରେ । କିନ୍ତୁ କୌଣସି ଅତ୍ୟାଚାର ହେଲେ ଲୋକେ ତା'ର ପ୍ରତିରୋଧ କରିବେ ବା ସେହିଭଳି ଅତ୍ୟଧିକ ବଳପ୍ରୟୋଗକୁ ବରଦାସ୍ତ କରାଯିବନାହିଁ ପ୍ରଭୃତି ପ୍ରୟୋଗ କରାଯିବା ଅହିଂସାନୀତିରେ ସମ୍ଭବ ନୁହେଁ ।

ତତ୍କାଳୀନ କଂଗ୍ରେସ ସଭାପତି ଆଜାଦ, ଯେ କି ମୂଳରୁ ଏହି ଆନ୍ଦୋଳନର ବିରୋଧ କରିଥିଲେ ଏବଂ ଶେଷରେ ଗାନ୍ଧିଜୀଙ୍କ ସହ ଏକମତ ହେଲେ, ସେ ଅତି ସ୍ପଷ୍ଟଭାଷାରେ କହିଥିଲେ ଯେ– ଲୋକେ 'ହିଂସା ହେଉ ବା ଅହିଂସା ହେଉ' ଏ ଆନ୍ଦୋଳନ ଚଳାଇଯିବେ । However, if the Government arrested Gandhiji and other congress leaders, the people would be free to adopt any method, violent or non-violent, to oppose the violence of the Government in every possible way.(3) ଅର୍ଥାତ୍ ସରକାର ଯଦି ଗାନ୍ଧିଜୀଙ୍କୁ ଓ ଅନ୍ୟ କଂଗ୍ରେସ ନେତାମାନଙ୍କୁ ଗିରଫକରିନିଏ, ତେବେ ଲୋକେ ହିଂସା ହେଉ ବା ଅହିଂସା ହେଉ ଯେକୌଣସି ଉପାୟରେ ସରକାରୀ ହିଂସାର ପ୍ରତିରୋଧ କରିବେ ।

---

1. Tarachand - History of Freedom Movement in India - Vol. IV
2. ଗାନ୍ଧୀ ରଚନାବଳୀ (୩) ପୃ.୫୨୩-୫୨୫
3. M.K.Azad - India Wins Freedom, Pg. 81

ଏହିଭଳି ଭାବରେ ଗାନ୍ଧିଜୀଙ୍କ ଡାକରାରେ ହୋଇଥିବା ଏହି ଆନ୍ଦୋଳନ କ୍ରମେ ଏକ ସଶସ୍ତ୍ର ବିପ୍ଳବର ରୂପ ନେଲା । 'କର ବା ମର' ଆହ୍ୱାନର ଅର୍ଥ ଯେ ଯେମିତି ବୁଝିଲା ସେ ସେମିତି କଲା । କୌଣସି କେନ୍ଦ୍ରୀୟ ନେତୃତ୍ୱ ନଥିବାରୁ ମୁଖ୍ୟତଃ ପ୍ରାଦେଶିକ ସ୍ତର, ଏପରିକି ଆଞ୍ଚଳିକ ସ୍ତରର ନେତୃତ୍ୱ ଓ ସଙ୍ଗଠନଦ୍ୱାରା ଏହି ଆନ୍ଦୋଳନ ପରିଚାଳିତହେଲା ।

ଗାନ୍ଧିଜୀ ଗିରଫ ହେବା ଦିନ ସକାଳେ ବମ୍ବେରେ ଥିବା କଂଗ୍ରେସ ସୋସଲିଷ୍ଟ ପାର୍ଟିର କେତେକ ନେତୃସ୍ଥାନୀୟ ବ୍ୟକ୍ତି ୟୁସୁଫ ମେହେରେଲୀଙ୍କ ବାସଭବନରେ ବସି ଆନ୍ଦୋଳନର ଏକ ନକ୍ସା ବା 'ବ୍ଲୁ ପ୍ରିଣ୍ଟ' ତିଆରିକଲେ । ସେହି ବ୍ଲୁ ପ୍ରିଣ୍ଟ'ହିଁ ଊଣା- ଅଧିକେ 'ଅଗଷ୍ଟ-ବିପ୍ଳବ'ର ମୂଳନୀତି ହେଲା ଏବଂ ଘଟନାକ୍ରମେ କଂଗ୍ରେସ ସୋସଲିଷ୍ଟମାନେହିଁ ଅଗଷ୍ଟ-ବିପ୍ଳବକୁ ପରିଚାଳନା କରିଥିଲେ ।

କେତେକ କଂଗ୍ରେସ କର୍ମୀ ୪୨ ଆନ୍ଦୋଳନରେ ଯୋଗନଦେଇ ନୀରବ ରହିଲେ । ପ୍ରଥମତଃ ସେମାନଙ୍କ ମନରେ ଭୟଜାତହେଉଥାଏ; ଦ୍ୱିତୀୟତଃ ସେମାନଙ୍କ ଭିତରେ ଆଉ ଆନ୍ଦୋଳନ ପାଇଁ ସ୍ପୃହା ନଥାଏ । ସେମାନେ ଜେଲ, ନିର୍ଯାତନା କିମ୍ବା ଅନ୍ୟ କୌଣସି ପ୍ରକାର କଷ୍ଟ ବରଣକରିବାକୁ ପ୍ରସ୍ତୁତ ନଥିଲେ; ଏପରିକି କେତେଜଣ ବିପ୍ଳବ ସମ୍ପର୍କରେ 'ବୁଲେଟିନ୍' ନେଇ ଥାନାରେ ହାଜର ହୋଇଯାଆନ୍ତି ।

"The leaderlless masses were moved hither and thither by a multiplicity of influence—the terrorists, the revolutionist, the Forward Block of Subhas Bose who had fled to Berlin, the socialisit followers of Jayaprakash Narayan who were in the Congress but were opposed to non-violence." (1)

ନେତୃତ୍ୱବିହୀନ ଜନତା ବିଭିନ୍ନ ଶକ୍ତିର ପ୍ରଭାବରେ ପ୍ରଭାବିତ ହେଲେ— ସନ୍ତ୍ରାସବାଦୀ, ବିପ୍ଳବବାଦୀ, ସୁଭାଷଙ୍କ ଫରୱାର୍ଡ଼ ବ୍ଲକ ଓ ଜୟପ୍ରକାଶଙ୍କ ସୋସଲିଷ୍ଟ ବନ୍ଧୁଗଣ, ଯେଉଁମାନେ କଂଗ୍ରେସରେ ଥିଲେ ମଧ୍ୟ କଂଗ୍ରେସର ଅହିଂସା ନୀତି ପ୍ରତି ଆସ୍ଥାବାନ୍ ନଥିଲେ ।



1. Tarachand - History of Freedom Movement in India - Vol. IV, Pg. 402

## ଅଧ୍ୟାୟ - ଅଣଚାଳିଶ

# ବିସ୍ଫୋରଣ

**ଓଡ଼ିଶା —**

''ଅଗଷ୍ଟ ମାସ ଶେଷ ଆଡ଼କୁ ଓଡ଼ିଶାରେ ଆଇନ-ଅମାନ୍ୟ ଆନ୍ଦୋଳନ ଭୀଷଣ ଆକାର ଧାରଣକଲା । ସରକାରୀ କର୍ତ୍ତୃତ୍ୱର ପ୍ରକାଶ୍ୟ ଅବମାନନା କରି ସାରା ପ୍ରଦେଶରେ ପ୍ରବଳ ଆନ୍ଦୋଳନ ଆରମ୍ଭ ହୋଇଗଲା । ଏହି ସମୟ ଭିତରେ ଯାହା ସବୁ କାଣ୍ଡ ଘଟିଲା, ତା'ର ବିଶେଷତ୍ୱ ହେଉଛି— ଚାରିଆଡ଼େ ହିଂସାତ୍ମକ କାଣ୍ଡ । କଂଗ୍ରେସ ଆନ୍ଦୋଳନରେ କେଉଁ ଏମିତି ହୋଇନଥିଲା । ଦେଶରେ ପ୍ରତିଷ୍ଠିତ ନେତାମାନଙ୍କ ଗିରଫଦାରି ଯୋଗୁଁ ଲୋକଙ୍କ ମନରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହେଲା । କଂଗ୍ରେସ ସଙ୍ଗଠନ ବିରୁଦ୍ଧରେ ଲୋକମାନଙ୍କ ଭିତରେ ଜଳୁଥିବା ନିଆଁ ଦ୍ୱିଗୁଣିତ ହୋଇଉଠିଲା । ସ୍ଥାନୀୟ ନେତାମାନେ ଲୋକମାନଙ୍କ ଭିତରେ ଏକ ବିଶ୍ୱାସ ଜନ୍ମାଇଦେଲେ ଯେ, ସ୍ୱରାଜ ହେବା ନିଶ୍ଚିତ, ତେଣୁ ଯେକୌଣସି ପ୍ରକାର ବେ-ଆଇନ କାର୍ଯ୍ୟ ସେମାନେ କରିପାରନ୍ତି । ଲୋକେ ସବୁ କଟକଣା ଭାଙ୍ଗିଲେ । ସରକାରୀ କର୍ତ୍ତୃତ୍ୱକୁ ପ୍ରକାଶ୍ୟରେ ଅବମାନନାକଲେ ଏବଂ ନାନାପ୍ରକାର ବେ-ଆଇନ କାର୍ଯ୍ୟରେ ଲିପ୍ତ ରହିଲେ । ସେମାନଙ୍କର ବିଶ୍ୱାସ ହେଲା ଯେ, ଏପରି କାର୍ଯ୍ୟମାନ ଯେତେ ବେଶି ହେବ, ସେତେ ଶୀଘ୍ର ଲକ୍ଷ୍ୟ ସାଧିତ ହେବ । ଘରପୋଡ଼ି, ଲୁଟ୍, ଷଡ଼ଯନ୍ତ୍ରମୂଳକ ଭଙ୍ଗାରୁଜା କାମ ସମଗ୍ର ପ୍ରଦେଶର ବିଭିନ୍ନ ସ୍ଥାନରେ ହେବାକୁ ଲାଗିଲା । ବିରାଟ ଜନତା ଏ କାମ ପାଇଁ ବାହାରିଆସିଲେ । ସେମାନଙ୍କୁ ଆୟତ୍ତାଧୀନ କରିବା ମୁସ୍କିଲ ହେଲା । ପୁଣି ତା' ସାଙ୍ଗକୁ ସହରମାନଙ୍କରେ ଛାତ୍ରମାନେ ଆଇନଭଙ୍ଗ କାର୍ଯ୍ୟ କରିବାରେ ଲାଗିଲେ ।''

ଏହି ପରିପ୍ରେକ୍ଷୀରେ, ଅର୍ଥାତ୍ ସମୁଦାୟ ନେତୃତ୍ୱ ବନ୍ଦୀ ଥିଲାବେଳେ, ଓଡ଼ିଶାରେ 'ଅଗଷ୍ଟ-ବିପ୍ଳବ' ଆରମ୍ଭ ହୋଇଥିଲା; ଫଳରେ କୌଣସି ପ୍ରବୀଣ ନେତୃତ୍ୱ ନଥିଲା । ଓଡ଼ିଶାରେ ମୁଖ୍ୟତଃ ଛାତ୍ର ଓ ଯୁବକମାନେ ଏହି ଆନ୍ଦୋଳନ ପରିଚାଳନା କରିଥିଲେ । ଓଡ଼ିଶାବାସୀ ପୂର୍ବରୁ କେବେହେଲେ ଗୋପନ ସନ୍ତ୍ରାସମୂଳକ ଆନ୍ଦୋଳନ ସହ ପରିଚିତ ନଥିଲେ । ୧୯୦୬ର ସ୍ୱଦେଶୀ ଆନ୍ଦୋଳନ ସମୟରୁ ଭାରତବର୍ଷରେ ପ୍ରାୟ ସର୍ବତ୍ର ଯେଉଁ ଗୋପନ ସଶସ୍ତ୍ର ବିପ୍ଳବ କାର୍ଯ୍ୟ ନିରବଚ୍ଛିନ୍ନ ଭାବେ ଚାଲିଥିଲା, ସେହି ମହାଭାରତୀୟ ଗତିସ୍ରୋତରୁ ଓଡ଼ିଶା ସର୍ବଦା ଅଲଗା ଥିଲା । ଏପରି କି ପ୍ରତିବେଶୀ ବଙ୍ଗ ପ୍ରଦେଶରେ ଯେଉଁ ଉଗ୍ର ଜାତୀୟତାବାଦୀ ଆନ୍ଦୋଳନ ଚାଲିଥିଲା, ସେଥିରୁ ମଧ୍ୟ ଓଡ଼ିଶାବାସୀ ମୁକ୍ତ ଥିଲେ । ଅନ୍ୟାନ୍ୟ ବହୁ କାରଣ ମଧ୍ୟରୁ ତା'ର ପ୍ରଧାନ କାରଣ ହେଉଛି ଏହା ଯେ, ଅନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରସାର ବହୁ ପଛରେ ହୋଇଥିଲା ।

ଦ୍ୱିତୀୟତଃ ଚୈତନ୍ୟଦେବଙ୍କ ଅମଳରୁ ଓଡ଼ିଶା ଲୋକେ ସାଧାରଣତଃ ଶାନ୍ତିପ୍ରିୟ ହୋଇଯାଇଥିଲେ; ସଶସ୍ତ୍ର ବିପ୍ଳବ ଭଳି ଏକ ଅତି କଠିନ କଷ୍ଟସାପେକ୍ଷ କୌଶଳପୂର୍ଣ୍ଣ ଚତୁର ଆନ୍ଦୋଳନ ଚଳାଇବାକୁ ସମର୍ଥ ନଥିଲେ । ଓଡ଼ିଶାର ତତ୍‌କାଳୀନ ନେତୃବୃନ୍ଦ ସ୍ୱାଧୀନତା ସଂଗ୍ରାମ ଅପେକ୍ଷା ଓଡ଼ିଶାର ସ୍ୱାତନ୍ତ୍ର୍ୟରକ୍ଷା କରିବାକୁ, ବିଶେଷତଃ ଇଂରେଜ ଅମଳରେ ଓଡ଼ିଶାରେ ପ୍ରଭାବ ବିସ୍ତାର କରିଥିବା ଶିକ୍ଷିତ ବଙ୍ଗାଳୀ ଓ ତେଲଙ୍ଗାଙ୍କ ଏକାଧିପତ୍ୟରୁ ରକ୍ଷାକରିବାକୁ ଅଧିକ ତତ୍‌ପର ଥିଲେ । ସେତେବେଳେ ହୁଏତ ତାହା ଦରକାର ଥିଲା, କିମ୍ବା ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନର ନେତୃମଣ୍ଡଳୀ ମୁଖ୍ୟତଃ ଅଭିଜାତ ଓ ରାଜନ୍ୟମଣ୍ଡଳୀ ଭିତରୁ ଆସିଥିବାରୁ ସେମାନେ ସନ୍ତ୍ରାସବାଦୀ ଆନ୍ଦୋଳନ ଅପେକ୍ଷା ସାମ୍ବିଧାନିକ ଶାନ୍ତିପୂର୍ଣ୍ଣ ଆନ୍ଦୋଳନକୁ ଅଧିକ ପସନ୍ଦ କରୁଥିଲେ । ଓଡ଼ିଶାର ଜନସାଧାରଣ ଅଧିକାଂଶ ସ୍ଥାନୀୟ ସାମନ୍ତବାଦୀ ଶାସନ ଅଧୀନରେ ଏଭଳି ପିଷ୍ଟ ହୋଇ ରହିଥିଲେ ଯେ, କୌଣସି ସଶସ୍ତ୍ର ଆନ୍ଦୋଳନ କଥା ଚିନ୍ତା କରିବା ମଧ୍ୟ ସେମାନଙ୍କ ପକ୍ଷରେ ସମ୍ଭବ ହୋଇନଥିଲା । ଫଳରେ କଂଗ୍ରେସର ଶାନ୍ତିପୂର୍ଣ୍ଣ ଆନ୍ଦୋଳନରେ ଓଡ଼ିଶାବାସୀ ଭାରତବର୍ଷର ଅନ୍ୟ ଯେକୌଣସି ପ୍ରଦେଶ ତୁଳନାରେ ବହୁ ଗୌରବମୟ ତ୍ୟାଗ ଓ କୃତିତ୍ୱର ଅଧିକାରୀ ହୋଇଥିଲେ ମଧ୍ୟ, ଅଳ୍ପ କେତେଗୋଟି ଘଟଣା ଛାଡ଼ିଦେଲେ ସଶସ୍ତ୍ର ବିପ୍ଳବ କ୍ଷେତ୍ରରେ ଓଡ଼ିଶା ସେଭଳି କୌଣସି ଉଲ୍ଲେଖଯୋଗ୍ୟ ଅବଦାନ ଯୋଗାଇ ପାରିଲା ନାହିଁ । ସାଧାରଣ ଲୋକଙ୍କ କଥା ତେଣିକି ଥାଉ, ଯେଉଁମାନେ ଏହି ଆନ୍ଦୋଳନ ପରିଚାଳନା କରୁଥିଲେ ସେମାନଙ୍କର ମଧ୍ୟ ଏହି କାର୍ଯ୍ୟରେ ବିଶେଷ କିଛି ପୂର୍ବ ଟ୍ରେନିଂ ନଥିଲା । ଓଡ଼ିଶାରେ 'ଅଗଷ୍ଟ-ବିପ୍ଳବ' ପରିଚାଳନାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିବା ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ସ୍ୱୀକାର କରିଅଛନ୍ତି– ''ସତ କହିବାକୁ ଗଲେ, ଆମ ଓଡ଼ିଶାର କର୍ମୀମାନେ ନିଜର ଦୁର୍ବଳତାକୁ ଘୋଡ଼ାଇବାକୁ ହେଉ କିମ୍ବା ପ୍ରକୃତ ବିଶ୍ୱାସଯୋଗୁଁ ହେଉ, ମୋଟାମୋଟି ଭାବରେ ଗାନ୍ଧିଜୀଙ୍କ ଅହିଂସା ନୀତିକୁ ଅକ୍ଷରେ ଅକ୍ଷରେ ମାନି ଚଳିବା ବ୍ୟକ୍ତି ।''

ଏହିଭଳି ଦୁର୍ବଳମନୋଭାବାପନ୍ନ କଂଗ୍ରେସ କର୍ମୀ ଓ ଉଦାର ପରମ୍ପରାରେ ବଢ଼ିଥିବା ଓଡ଼ିଶାର ଯୁବସମାଜଠାରୁ ଅଧିକ ଉଗ୍ର ଓ ଚରମ ତ୍ୟାଗ ଆବଶ୍ୟକ କରୁଥିବା ସଶସ୍ତ୍ର ବିପ୍ଳବ ଆଶା କରିବା ବୃଥା । ଓଡ଼ିଶାରେ ତାହାହିଁ ହୋଇଥିଲା । ଫଳରେ ସମଗ୍ର ଆନ୍ଦୋଳନ ଭିତରେ ମାତ୍ର ଜଣେ ବିପ୍ଳବୀଙ୍କୁ ଫାଶୀହୋଇଥିଲା । କେହି ଦ୍ୱୀପାନ୍ତର କିମ୍ବା ଯାବଜ୍ଜୀବନ ଜେଲଦଣ୍ଡ ଭୋଗ କରିବାର ସୌଭାଗ୍ୟ ଅର୍ଜନ କରିପାରିଲେ ନାହିଁ ।

ଆନ୍ଦୋଳନ ଉକୁ ହେଲା କଟକରେ ଅଗଷ୍ଟ ୧୦ ତାରିଖରେ । ରେଭେନ୍ସା କଲେଜ ଛାତ୍ରମାନେ ଧର୍ମଘଟକଲେ । କଲେଜ ଅଫିସ ଓ ଲେବୋରେଟାରୀ ପୋଡ଼ିଦେଇଥିଲେ । ତିନିଦିନ ପରେ କଲେଜ ପିଲାଙ୍କ ଉପରେ ଗୌରୀଶଙ୍କର ପାର୍କରେ ପୋଲିସ ଲାଠି ଚାର୍ଯ କରିଥିଲା । ବରୀ ଆଶ୍ରମ ଉପରେ ପୋଲିସର ଦୃଷ୍ଟି ପଡ଼ିଲା ଅଗଷ୍ଟ ୧୬ ତାରିଖରେ । ଏହି ଆଶ୍ରମ ହେଉଛି ଓଡ଼ିଶାର ବିଶିଷ୍ଟ ଗାନ୍ଧିବାଦୀ ନେତା ଶ୍ରୀଯୁକ୍ତ ଚୌଧୁରୀ ଓ ତାଙ୍କ ପରିବାରର ପ୍ରଧାନ କର୍ମକ୍ଷେତ୍ର । ଏହି ଆଶ୍ରମ ଉପରେ ଚଢ଼ାଉ କରି ପୋଲିସ ବହୁ ମୂଲ୍ୟବାନ୍

ବହିପତ୍ର ପୋଡ଼ିପକାଇଲା । ଜଗତସିଂହପୁର ଓ ସାଲେପୁର ହାଇସ୍କୁଲ ଛାତ୍ରମାନେ ଧର୍ମଘଟ କରି ୪୨ - ଆନ୍ଦୋଳନରେ ଆଗୁଆ ହୋଇଥିଲେ । ସାଲେପୁର ଛାତ୍ରମାନଙ୍କ ସହ କେତେକ ଶିକ୍ଷକ ମଧ୍ୟ ସ୍ୱେଚ୍ଛାରେ ଜେଲ-ବରଣ କରିଥିଲେ । ସେଠାରେ ଲାଠିଚାଳନା ମଧ୍ୟ ହୋଇଥିଲା । କଟକର ପ୍ୟାରିମୋହନ ଏକାଡ଼େମୀ, ଭିକ୍ଟୋରିଆ ସ୍କୁଲ (ଭକ୍ତ ମଧୁ ବିଦ୍ୟାପୀଠ) ଓ ମିସନ ସ୍କୁଲ ଛାତ୍ରମାନେ ମଧ୍ୟ ଅଗଷ୍ଟ ୧୮ ତାରିଖରେ ଧର୍ମଘଟରେ ଯୋଗଦେଇଥିଲେ । ସେହି ଦିନ ରମ୍ଭା ଡାକବଙ୍ଗଳାର ଆସବପତ୍ରରେ ଜନତା ନିଆଁଲଗାଇଦେଇଥିଲେ । ଏହା ପରେ ପରେ ଓଡ଼ିଶାରେ ବହୁ ଜାଗାରେ ପୋଡ଼ାଜଳା କାମ ଆରମ୍ଭ ହୋଇଯାଇଥିଲା । ଅଗଷ୍ଟ ମାସ ଭିତରେ ଧର୍ମଶାଳା କେନାଲ ବିଭାଗ ଅଫିସ, ଗୋପାଳପୁର ଡାକବଙ୍ଗଳାର ଆସବାବପତ୍ର, ବାଲିଚନ୍ଦ୍ରପୁର ତହସିଲଦାର ଅଫିସ ଓ ପୋଷ୍ଟ ଅଫିସ, ଦଶରଥପୁର କେନାଲ ବିଭାଗ ଅଫିସ, ସରକାରୀ ଟ୍ରେନିଂ ସ୍କୁଲ, କାଇପଦା ପୋଷ୍ଟ ଅଫିସ, ମନ୍ଦାରଖଣ୍ଡ ତହସିଲ ଅଫିସ ଓ ଅଫିମ ଦୋକାନର କାଗଜପତ୍ର ପୋଡ଼ାଯାଇଥିଲା । କାଇପଦାଠାରେ ଜନତା- ପୋଲିସ ମଧ୍ୟରେ ସଂଘର୍ଷ ବଡ଼ ଭୟାବହ ରୂପ ଧରିଥିଲା । ଗିରଫ ହୋଇଥିବା ଲୋକମାନଙ୍କୁ ପୋଲିସହାତରୁ ଛଡ଼ାଇନବାକୁ ଚେଷ୍ଟା କରି ଲୋକେ ପୋଲିସ ଗୁଳିର ଶିକାରହେଲେ; ପୋଲିସ ଏସ୍: ପି: ଆହତ ହେଲେ । ୨୧ ରାଉଣ୍ଡ ଗୁଳି ଫାୟାର ହୋଇଥିଲା ଏବଂ ସେଠାରେ ପାଞ୍ଚଜଣ ପ୍ରାଣହରାଇଥିଲେ । ରାମବାଗ ପୋଷ୍ଟ ଅଫିସର କାଗଜପତ୍ର ଏବଂ ଆସବାସପତ୍ର ଓ ସୁକିନ୍ଦା ତହସିଲ ଅଫିସ, ଚଖୁଣାର ଜଳକର ଅଫିସକୁ ଲୋକେ ପୋଡ଼ିଦେଇଥିଲେ । ଜେନାପୁରଠାରେ ଟେଲିଗ୍ରାଫ ଖୁଣ୍ଟ ଉପୁଡ଼ା ଓ ଟେଲିଗ୍ରାଫ ତାର କଟାହୋଇଥିଲା । ସେପ୍ଟେମ୍ବର ମାସରେ ମେରାମଣ୍ଡଳୀ ଓ ତାଳଚେର ଷ୍ଟେସନ ମଧ୍ୟରେ ରେଲଧାରଣା କାଢ଼ିନିଆଯାଇଥିଲା । କେତେକ ରେଳ ପୋଲ ଓ ଟେଲିଗ୍ରାଫ୍ ତାର ମଧ୍ୟ ନଷ୍ଟକରାଯାଇଥିଲା । ଫଳରେ ଗୋଟିଏ ମାଲଗାଡ଼ି ଓଲଟିପଡ଼ିଥିଲା । ବାଲେଶ୍ୱର ଜିଲ୍ଲାର ଭଣ୍ଡାରିପୋଖରି ଥାନା ପୋଡ଼ାହୋଇଥିଲା । ଅଗଷ୍ଟ ୧୭ ତାରିଖରେ ଧାମନଗରରେ କେତେକ ଚୌକିଦାରଙ୍କର ପୋଷାକପତ୍ର ପୋଡ଼ାଯାଇଥିଲା । ଏତଦ୍‌ବ୍ୟତୀତ ବିପ୍ଳବୀମାନେ ଯୋବ୍ରା ନିକଟରେ ତାର ଲାଇନ କାଟିଦେଇଥିଲେ । କେନ୍ଦ୍ରାପଡ଼ା ନିକଟବର୍ତ୍ତୀ ଜଉତରା ଗ୍ରାମରେ ଟେଲିଗ୍ରାଫ ତାର କଟାଯାଇଥିଲା । ଭୁବନେଶ୍ୱରରେ ମଧ୍ୟ ତାର ଲାଇନ କଟାହୋଇଥିଲା ।

ସେହି ବର୍ଷ ସେପ୍ଟେମ୍ବର ମାସରେ ତିର୍ତ୍ତୋଲ ଥାନାର ନୂଆପଡ଼ା ରେଭିନ୍ୟୁ ଅଫିସ ଓ ଜଗନ୍ନାଥପୁର ପି. ଡବ୍ଲୁ. ଡ଼ି. ରେଷ୍ଟସେଡ଼ ପୋଡ଼ିଦିଆଯାଇଥିଲା । ଏରସମା ଥାନାର କାଗଜପତ୍ର ଓ ଏରସମା ପୋଷ୍ଟ ଅଫିସ, ଧର୍ମଗଡ଼ପୁର ଖଜଣା ଆଦାୟ ଅଫିସ ମଧ୍ୟ ଲୋକେ ପୋଡ଼ିଦେଇଥିଲେ ।

କଟକ ଜିଲ୍ଲା କାଇପଦା ଗୁଳିକାଣ୍ଡ ବ୍ୟତୀତ ଓଡ଼ିଶାରେ ଅନ୍ୟାନ୍ୟ ବହୁ ଅଞ୍ଚଳରେ 'ଅଗଷ୍ଟ-ବିପ୍ଳବ' ସମୟରେ ପୋଲିସପକ୍ଷରୁ ଗୁଳିଚାଳନା ହୋଇଥିଲା । ଯାଜପୁର- ଠାରେ ଏ ଅବସ୍ଥା ଖୁବ୍ ଭୟାବହ ହୋଇଥିଲା । ଶ୍ରୀ ପଦ୍ମନାଭ ରାୟଙ୍କ ନେତୃତ୍ୱରେ ଏକ ବିରାଟ

ଜନତା (ପ୍ରାୟ ୩୦ ହଜାର) ବରୀ ଆଶ୍ରମକୁ ପୋଲିସ ହାତରୁ ଛଡ଼ାଇନେଇଥିଲେ ଏବଂ ଯାଜପୁର ଏସ. ଡ଼ି. ଓ. ଅଫିସ ଉପରେ ଚଢ଼ାଉ କରିଥିଲେ । ହଜାର ହଜାର ଲୋକ ଏକତ୍ରିତ ହୋଇ ଏକ ଅଭୂତପୂର୍ବ ପରିସ୍ଥିତି ସୃଷ୍ଟି କଲେ । ରାସ୍ତାଘାଟ ସବୁ ଅବରୁଦ୍ଧ ହୋଇଥିବାରୁ ଉଡ଼ାଜାହାଜରୁ ଲୋକମାନଙ୍କ ଉପରକୁ ନିଆଁ ଓ ଡିନାମାଇଟ ନିକ୍ଷେପ କରିଥିଲେ ।

ଅଗଷ୍ଟ ମାସରେ ଯେମିତି ଅସଙ୍ଗଠିତ ଭାବରେ ଆନ୍ଦୋଳନ ଚାଲିଥିଲା, ସେପ୍ଟେମ୍ବର ଆଡ଼କୁ ସେମିତି ଅବସ୍ଥା ରହିଲା ନାହିଁ । ଶ୍ରୀଯୁକ୍ତ ଦ୍ୱିବେଦୀଙ୍କ ପରିଚାଳନାରେ ଯେଉଁ ଗୋପନ ପ୍ରଚାରପତ୍ରସବୁ ବିପ୍ଳବୀମାନଙ୍କ ମଧ୍ୟରେ ବଣ୍ଟା- ଯାଉଥିଲା, ତାହା ଫଳରେ ଆନ୍ଦୋଳନରେ ତୀବ୍ରତା ଦେଖାଦେଲା । ସେପ୍ଟେମ୍ବର ମାସରେ କଟକ ଜିଲ୍ଲାର ଜଗତସିଂହପୁର, ତିର୍ତ୍ତୋଲ, ଏରସମା ଓ ବାଲିକୁଦା ଥାନାରେ ଆନ୍ଦୋଳନ ଖୁବ୍ ତୀବ୍ର ହୋଇଥିଲା । ଥାନା ଓ ଅନ୍ୟାନ୍ୟ ସରକାରୀ ଅଫିସ ସବୁ ପୋଡ଼ାହୋଇଥିଲା । କଟକ ମେଡ଼ିକାଲ କଲେଜ ଓ ଇଂଜିନିୟରିଂ ସ୍କୁଲ ଧର୍ମଘଟ କଟକ ଅବସ୍ଥାକୁ ଅତିଶୟ ଗୁରୁତର କରିଦେଲା । ଧାମନଗର ଥାନାରେ ଅଗଷ୍ଟ ୧୧ ତାରିଖରେ ଗୁଳି ହୋଇଥିଲା । ବିପ୍ଳବୀମାନଙ୍କୁ ଆରେଷ୍ଟ କରିବା ପାଇଁ ସଶସ୍ତ୍ର ପୋଲିସ ଧାମନଗର ଥାନାର କଟସାହି ଗ୍ରାମକୁ ଯିବାରୁ ଜନତା ଉତ୍ୟକ୍ତ ହୋଇ ପୋଲିସକୁ ଆକ୍ରମଣ କଲେ ଏବଂ ଫଳରେ ଗୁଳିଚାଳନା ହେଲା । ଏହି ଗୁଳିକାଣ୍ଡରେ ଦଶଜଣ ଲୋକ ପ୍ରାଣ ହରାଇଥିଲେ ।

ଏହାର ଠିକ୍ ଏକ ସପ୍ତାହ ପରେ ବାଲେଶ୍ୱର ଜିଲ୍ଲା ଖଇରାରେ ଗୁଳି ହୋଇଥିଲା । ପୋଲିସ ଆସିବା ଖବର ପାଇ ହଜାର ହଜାର ଜନତା ଏକାଠିହେଲେ । ପୋଲିସ ଜଣେ ବିପ୍ଳବୀଙ୍କୁ ଆରେଷ୍ଟ କରିବାକୁ ଗୋଟିଏ ଘର ଖାତତଲାସ କଲାବେଳେ ଲୋକେ ସେ ଘରେ ନିଆଁଲଗାଇଦେଲେ ଓ ଧନୁଶର ନେଇ ପୋଲିସକୁ ଆକ୍ରମଣ କଲେ । ଫଳରେ ପୋଲିସ ପକ୍ଷରୁ ଗୁଳିଚାଳନା ହେଲା । ଏଠାରେ ୨ଜଣ ସହିଦ ହେଲେ । ସେହି ଦିନ ତୁଡ଼ିଗଡ଼ିଆଠାରେ ମଧ୍ୟ ଗୁଳି ହୋଇଥିଲା ଏବଂ କେତେ ଜଣ ମୃତ୍ୟୁବରଣ କରିଥିଲେ ।

ଭଦ୍ରକ ସବ୍‌ଡ଼ିଭିଜନର ଇରମଠାରେ ଯେଉଁ ଗୁଳିକାଣ୍ଡ ହୋଇଥିଲା, ତାହା ସବୁଠାରୁ ବେଶୀ ଲୋମହର୍ଷଣକାରୀ । ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଏହାକୁ ଓଡ଼ିଶାର "ଜାଲିଓ୍ୱାନାଓ୍ୱାଲାବାଗ୍" ବୋଲି ବର୍ଣ୍ଣନା କରିଅଛନ୍ତି । ଶ୍ରୀଯୁକ୍ତ ମହତାବଙ୍କ ବିବରଣୀ ଅନୁସାରେ ଏଠାରେ ଦୁଇଥରରେ ୧୦୩ ରାଉଣ୍ଡ ଗୁଳିବର୍ଷଣ ହୋଇଥିଲା ଏବଂ ଏହା ଫଳରେ ଛବିଶଜଣ ନିହତ ଓ ୫୫ ଜଣ ଆହତ ହୋଇଥିଲେ । କିନ୍ତୁ ଶ୍ରୀଯୁକ୍ତ ଦ୍ୱିବେଦୀଙ୍କ ମତରେ ମୃତସଂଖ୍ୟା ୩୫ ଓ ଆହତଙ୍କ ସଂଖ୍ୟା ୧୦୩ ହୋଇଥିଲା । ସେ ଯାହାହେଉ, ୪୨-ଆନ୍ଦୋଳନରେ ଇରମ ଲୋକଙ୍କର ଆତ୍ମତ୍ୟାଗ ଇତିହାସରେ ଚିରସ୍ମରଣୀୟ ଏବଂ ସେଥିପାଇଁ ପ୍ରତ୍ୟେକ ଓଡ଼ିଆ ଗର୍ବିତ ।

ପୁରୀ ଜିଲ୍ଲାରେ ନିମାପଡ଼ା ଲୋକଙ୍କର ଦାନ ମଧ୍ୟ କମ୍ ନୁହେଁ । ହଜାର ହଜାର ଲୋକ ନିମାପଡ଼ା ଥାନା ଉପରେ ଚଢ଼ାଉକରିଥିଲେ ଓ ଥାନା ଉପରେ ଜାତୀୟ ପତାକା

ଉଡ଼ାଇବାକୁ ଉଦ୍ୟମ କରିଥିଲେ; ଫଳରେ ପୋଲିସ ସହ ସେମାନଙ୍କର ସଂଘର୍ଷ ହେଲା । ପୋଲିସଗୁଳିରେ ଜଣେ ସହିଦ ହେଲେ; ଅନ୍ୟ କେତେକ ଆହତ ହୋଇଥିଲେ ।

'ଅଗଷ୍ଟ' ଆନ୍ଦୋଳନକୁ କୋରାପୁଟ ଜିଲ୍ଲାର ଅବଦାନ ସମ୍ଭବତଃ ସର୍ବାଧିକ ଗୌରବମୟ, କାରଣ 'ଅଗଷ୍ଟ ବିପ୍ଳବ'ରେ ଓଡ଼ିଶାର ଏକମାତ୍ର ଫାଶୀ ପାଇଥିବା ସହିଦ ହେଉଛନ୍ତି ଲକ୍ଷ୍ମଣ ନାୟକ । ଗାନ୍ଧିଜୀ ଆରେଷ୍ଟ ହେବା ପରେ ପରେ ଗାନ୍ଧିଜୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ପ୍ୟାରେଲାଲ ଯେଉଁ ନିର୍ଦ୍ଦେଶନାମା ବିଭିନ୍ନ କଂଗ୍ରେସ କମିଟି ଅଫିସକୁ ପଠାଇଥିଲେ, ପ୍ରାୟ ସେସବୁ ପୋଲିସ ଜବତ କରିନେଇଥିଲା; କାଁ-ଭାଁ କେଉଁଠି କେମିତି ଖଣ୍ଡେ-ଅଧେ ନିର୍ଦ୍ଦେଶନାମା ଲୋକଙ୍କ ହାତରେ ପଡ଼ିଥିଲା । ଖଣ୍ଡେ ନକଲ ପହଞ୍ଚିଯାଇଥିଲା କୋରାପୁଟରେ ଏବଂ ଏହାହିଁ ହେଲା କୋରାପୁଟ ବିପ୍ଳବୀମାନଙ୍କ ପ୍ରଧାନ ଅବଲମ୍ବନ । କୋରାପୁଟ ଆଦିବାସୀମାନଙ୍କ ଭିତରେ ସୃଷ୍ଟିହୋଇଥିଲା ଅଭୂତପୂର୍ବ ଜାଗରଣ । ଦଳ ଦଳ ହୋଇ ଲୋକମାନେ ମାତିଲିଥାନା ଓ ପାପଡ଼ାହାଣ୍ଡି ଥାନା ଆକ୍ରମଣ କରିଥିଲେ । ଆଦିବାସୀ ନେତା ପ୍ରଚାର କଲେ – ''ଆମେ ସବୁ ସୈନିକ । ଇଂରେଜ ସରକାର ଆଉ ନାହିଁ । ଜୟପୁର ମହାରାଜା ବି ଗଲେଣି । ବ୍ରିଟିଶ ରଜା ମଲାଣି । ଏ ଦେଶ ଆମର । ଆମେ ସ୍ୱାଧୀନ ହୋଇଛୁଁ । ଉଠ, ଜାଗ ଭାଇଭଉଣୀ, ଆସ ସମସ୍ତେ ଏ ଯୁଦ୍ଧରେ ଝାସଦେବା । ''ମହାତ୍ମା ଗାନ୍ଧି କୀ ଜୟ ।''

ଲୋକେ ଥାନା ଉପରେ ଚଢ଼ାଉକରିବାରୁ ପୋଲିସ ଗୁଳି ଚଳାଇଲା । ଗୁଳି ଚାଳନାରେ ୫ଜଣ ମଲେ, ୧୭ ଜଣ ଆହତ ହେଲେ (ଶ୍ରୀଯୁକ୍ତ ମହତାବଙ୍କ ମତରେ ମୃତ ୪; ଆହତ ୪) ଲକ୍ଷ୍ମଣ ନାୟକ ପ୍ରଭୃତି ବନ୍ଦୀ ହେଲେ । ଜଣେ ଫରେଷ୍ଟ ଗାର୍ଡ଼କୁ ହତ୍ୟାକରିଥିବା ଏକ ମିଥ୍ୟା ଅଭିଯୋଗ ଲକ୍ଷ୍ମଣ ନାୟକଙ୍କ ବିରୁଦ୍ଧରେ ହୋଇଥିଲା । କିନ୍ତୁ ବାସ୍ତବରେ ଉକ୍ତ ଗାର୍ଡ଼ଜଣକ ଅତ୍ୟଧିକ ମଦ୍ୟପାନ କରି ଏକ ଖାଲରେ ପଡ଼ି ମୃତ୍ୟୁମୁଖରେ ପଡ଼ିଥିଲା । ସେହି ଅଭିଯୋଗରେ ୧୯୪୩ ଅଗଷ୍ଟ ୨୯ ତାରିଖରେ ବ୍ରହ୍ମପୁର ଜେଲରେ ବୀର ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଯାଇଥିଲା । ଓଡ଼ିଶା ମାଟିକୁ ପବିତ୍ର କରି ଲକ୍ଷ୍ମଣ ଦେହରକ୍ଷାକଲେ । ପାପଡ଼ା ହାଣ୍ଡିରେ ୧୯ ଜଣ ମରିଥିଲେ ।

ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲା ମଧ 'ଅଗଷ୍ଟ-ବିପ୍ଳବ'ରେ ପଛରେ ପଡ଼ିନଥିଲା । ଆସ୍କା ଓ ରସୁଲକୁଣ୍ଡାରେ ବିଦ୍ରୋହୀମାନେ ଟେଲିଗ୍ରାଫ୍ ତାର କାଟିଦେଇ ସମ୍ବାଦ ସରବରାହରେ ବାଧା ସୃଷ୍ଟି କରିଥିଲେ । ବ୍ରହ୍ମପୁର ଜେଲ ଭିତରେ ମଧ ରାଜନୈତିକ ବନ୍ଦୀମାନେ ଗଣ୍ଡଗୋଳ ସୃଷ୍ଟିକରି ଜେଲ ଭିତରେ ଥିବା ଏକ ଚାଳଘରେ ନିଆଁ ଲଗାଇ ଦେଲେ । ବ୍ରହ୍ମପୁର ଓ ରସୁଲକୁଣ୍ଡା ଜେଲରେ ପୋଲିସ ଲାଠି ଚାର୍ଯ କରିଥିଲା ।

ଶ୍ରୀ ବଳରାମ ମହାନ୍ତିଙ୍କ ଲିଖିତ 'ଅଗଷ୍ଟ-ବିପ୍ଳବ'ର ହିସାବ ଅନୁସାରେ କାଇପଦା ପୋଷ୍ଟ ଅଫିସ ପୋଡ଼ା, ବିଂଝାରପୁରରେ ଧ୍ରୁବଚରଣଙ୍କ ଦାଦା ଗିରଫ ହେଲାବେଳେ ତାଙ୍କର ଛ' ବର୍ଷର ଝିଅ ତାଙ୍କ ସଙ୍ଗେ କାନ୍ଦି କାନ୍ଦି ଯାଉଥିବାବେଳେ ଗୋଟିଏ ଖାଲରେ ପଡ଼ି ପ୍ରାଣହରାଇଥିଲା । ବରୀ ସେବାଘରକୁ ରକ୍ଷାକରିବାକୁ ଯାଇ

ଶ୍ରୀମତୀ ମଙ୍ଗଳା ଦେବୀ (ସେନଗୁପ୍ତା) ବନ୍ଦୀ ହୋଇଥିଲେ । ମୌଳିକ ସ୍କୁଲର ୧୭ ଜଣ ଶିକ୍ଷକ ଗିରଫ ହୋଇଥିଲେ ।

ସେପ୍ଟେମ୍ବର ୨୨ ତାରିଖରେ ଚାନ୍ଦିବାଲିରେ ପୋଲିସ ଏସ. ଆଇ. ଓ ପୋର୍ଟ ଅଫିସର ରାଜକନିକାର ଗୁହାଳିଗାଁ ଗ୍ରାମରେ ଲୁଚିଥିବା ବିଷୟ ଏକ ସରକାରୀ ବିବରଣୀରୁ ଜଣାଯାଏ । ସେମାନଙ୍କୁ ବିଦ୍ରୋହୀମାନେ ଧରିନେଇ ଚାନ୍ଦବାଲି ଥାନା ପଡ଼ିଆରେ ଏକ ସାଧାରଣ ସଭାରେ ଗାନ୍ଧିଟୋପି ପିନ୍ଧାଇଥିଲେ ଏବଂ ସେମାନେ 'ବନ୍ଦେ ମାତରମ୍‌', 'ମହାତ୍ମା ଗାନ୍ଧି କୀ ଜୟ' ସ୍ଲୋଗାନ ଦେବାରୁ ସେମାନଙ୍କୁ ଛାଡ଼ିଦିଆ ଯାଇଥିଲା । (୧)

ଧୁଷୁରୀହାଟଠାରେ ହୋଇଥିବା ଗୁଳିକାଣ୍ଡରେ ମୃତ୍ୟୁବରଣ କରିଥିବା କାଳି ମହାଳିକ କହିଥିଲେ- '' ମୁଁ ପୁଣି ସ୍ୱାଧୀନ ଭାରତରେ ଜନ୍ମଗ୍ରହଣ କରିବି ।'' ସେଠାରେ ନିଧି ମହାଳିକ, ଚିନ୍ତା ଦାସ, ଶ୍ୟାମ ମଳିକ, କୃଷ୍ଣ ମହାଳିକ, ଗୋପୀ ଜେନା, ଶଙ୍କର ବେହେରା, ଅଗଣି ସାହୁ ମଧ ସହିଦତ୍ୱ ବରଣ କରିଥିଲେ । ଖଇରା ଥାନାର ଖଇରାଡ଼ିହ, କୁଡ଼ିଗଡ଼ିଆ, ଲକ୍ଷ୍ମଣନାଥ ରୋଡ଼ରେ ମଧ ଗୁଳି ହୋଇଥିଲା । ସେଠାରେ ରଙ୍ଗ ବେହେରା, ମକର ଲେଙ୍କା, ବେନୁ ସାହୁ, ସାବନ ଜେନା ମରିଥିଲେ । ଢେଙ୍କାନାଳରେ ବୈଷ୍ଣବ ପଟ୍ଟନାୟକଙ୍କ ନେତୃତ୍ୱରେ ଆନ୍ଦୋଳନ ହୋଇଥିଲା । ଅଗଷ୍ଟ ୨୬ ତାରିଖରେ ମଢ଼ି ଥାନା ଦଖଲ ହୋଇଥିଲା ଏବଂ ସେଠାରୁ ୧୬ଟି ରାଇଫଲ ଓ ପାଞ୍ଚଶହ ରାଉଣ୍ଡ ଗୁଳି ଦଖଲ ହୋଇଥିଲ । ସିପାହୀମାନଙ୍କୁ ଗିରଫ କରାଯାଇଥିଲା ଓ ବିଦ୍ରୋହୀମାନେ ଥାନାକୁ ପୋଡ଼ିଦେଇଥିଲେ। । ତା'ପରେ ଢେଙ୍କାନାଳ ରଜାଙ୍କ ଧାନ ଅମାର ଲୁଟ ଓ ମଢ଼ି ଏସ. ଡ଼ି. ଓ. କୋର୍ଟ ଦଖଲ ଓ ପୋଡ଼ା, ମଢ଼ି ଜେଲ ମଧ ଦଖଲ ହୋଇଥିଲା । ପରଜଙ୍ଗଠାରେ ପାଞ୍ଚ ହଜାର ବିପ୍ଳବୀ ୩୦ଟା ବନ୍ଧୁକ, ୧୮ଟା ରଇଫଲ ଓ ଖଣ୍ଡାସହ ୪୦ ଜଣ ସଶସ୍ତ୍ର ସୈନ୍ୟଙ୍କ ସହ ମୁହାଁମୁହିଁ ସଂଘର୍ଷ ହୋଇଥିଲା । ଶ୍ରୀଯୁକ୍ତ ବଳରାମ ମହାନ୍ତି ଏହାକୁ 'ଜଲାଲବାଦ' ଲଢ଼େଇ ସହ ତୁଳନା କରିଅଛନ୍ତି । ତାଳଚେରରେ ପବିତ୍ରମୋହନ ପ୍ରଧାନ 'ଅଗଷ୍ଟ-ବିପ୍ଳବ'ର ପୁରୋଭାଗରେ ଥିଲେ ।

'ଅଗଷ୍ଟ-ବିପ୍ଳବ'ରେ ଓଡ଼ିଶାର ବିପ୍ଳବୀଙ୍କ ବିରୁଦ୍ଧରେ ଯେତେଗୁଡ଼ିଏ ମକଦ୍ଦମା ହୋଇଥିଲା, ସେଥିମଧ୍ୟରୁ ଦ୍ୱିବେଦୀ ପ୍ରଭୃତିଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା । ଏଥିରେ ଦ୍ୱିବେଦୀ, ନିଶାମଣି ଖୁଣ୍ଟିଆ, ନାରାୟଣ ପ୍ରସାଦ ମହାନ୍ତି, ନରସିଂହ ମହାନ୍ତି, ଲୋକନାଥ ମିଶ୍ର, ନବଘନ ବେହେରା, ପ୍ୟାରିମୋହନ ଦାସ, ରମାକାନ୍ତ ଦାସ ଓ ଗୌରଚନ୍ଦ୍ର ଦାସ ଅଭିଯୁକ୍ତ ହୋଇଥିଲେ । ଭାରତୀୟ ପିଙ୍ଗଳ କୋର୍ଡ଼ର ୨୧୦ ଦଫାରେ ମକଦ୍ଦମା ହୋଇଥିଲା । ଏଥିରେ ଦ୍ୱିବେଦୀଙ୍କୁ ଛ' ବର୍ଷ ସଶ୍ରମ କାରାଦଣ୍ଡ ଓ ଅନ୍ୟମାନଙ୍କୁ ପାଞ୍ଚବର୍ଷ ଲେଖାଁଏ ସଶ୍ରମ କାରାଦଣ୍ଡ ଦିଆଯାଇଥିଲା ।

ବମ୍ବେ —

'ଅଗଷ୍ଟ-ବିପ୍ଳବ' ଅନ୍ୟାନ୍ୟ ପ୍ରଦେଶ ଓ ଅଞ୍ଚଳ ଅପେକ୍ଷା ବମ୍ବେରେହିଁ ସର୍ବ- ପ୍ରଥମ ଓ ସମ୍ଭବତଃ ଅଧିକ ସଙ୍ଗଠିତ ଭାବରେ ପରିଚାଳିତ ହୋଇଥିଲା, କାରଣ ବମ୍ବେ ନଗରହିଁ

1. Amrit Bazar Patrika - Independence Number - 1947 Pg.122

'ଭାରତ-ଛାଡ଼' ପ୍ରସ୍ତାବ ଗ୍ରହଣ କରିବାର ସୌଭାଗ୍ୟ ଅର୍ଜନ କରିଥିଲା । ୯ ତାରିଖ ସକାଳୁ ଗାନ୍ଧିଜୀ ପ୍ରଭୃତିଙ୍କ ଆରେଷ୍ଟ ହେବା ଖବର ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ସାରା ସହରରେ ଘୋର ଉତ୍ତେଜନା ସୃଷ୍ଟିହୋଇଥିଲା । କଂଗ୍ରେସ- ସୋ ସେସଲିଷ୍ଟମାନଙ୍କ ଗୁପ୍ତ ଯୋଜନା ଅନୁସାରେ ଗୁପ୍ତକାର୍ଯ୍ୟ ଚାଲିଲା । ବମ୍ବେର ପତଲାଧୀଶମଲର ଦ୍ୱିତୀୟ ମହଲାର ୩୦ ନମ୍ବର କୋଠିରେ କଂଗ୍ରେସର ଗୁପ୍ତ ଅଫିସ ଖୋଲାଯାଇଥିଲା । ଏମ. ଏ. ଛାତ୍ରୀ ଶ୍ରୀମତୀ ଉଷା ମେହେଟ୍ଟାଙ୍କ ଦାୟିତ୍ୱରେ ରଖାଯାଇଥିଲା ଏକ ଗୋପନ ବେତାର କେନ୍ଦ୍ର । ଏହା ଜରିଆରେ ପ୍ରାୟ ଦୁଇମାସକାଳ ବିଦ୍ରୋହ ବାର୍ତ୍ତା ପ୍ରଚାର କରାଯାଇଥିଲା । ପ୍ରଚାରରେ କେନ୍ଦ୍ରର ନାମ ପ୍ରକାଶ କରା ନ ଯାଇ ଭାରତର କୌଣସି ଏକ ସ୍ଥାନରୁ "Somewhere in India" ବୋଲି କୁହାଯାଉଥିଲା ।

ଆନ୍ଦୋଳନ ବଡ଼ ବ୍ୟାପକ ଏବଂ ଭୀଷଣ ଆକାର ଧାରଣ କରିଥିଲା । ପ୍ରଥମ ଦିନହିଁ ପୋଲିସ ଗୁଳିରେ ପାଞ୍ଚଜଣ ସହିଦ ହୋଇଥିଲେ ଓ ୨୦ ଜଣ ଆହତ ହୋଇଥିଲେ । ଅହମଦାବାଦ ଓ ପୁନାରେ ମଧ୍ୟ ଉତ୍ୟକ୍ତ ଜନତା ଉପରେ ପୋଲିସ ଗୁଳି କରିଥିଲା । ପୁନାରେ ଦୁଇଜଣ ପ୍ରାଣ ହରାଇଥିଲେ । ଅଗଷ୍ଟ ୧୧ ତାରିଖରେ ପୋଲିସ ଗୁଳିରେ ୧୦ଜଣ ସହିଦ ହୋଇଥିଲେ । ଅଗଷ୍ଟ ୧୨ରେ ଜଣେ ନାରୀ ଓ ଗୋଟିଏ ଶିଶୁ ପୋଲିସ ଗୁଳିର ଶିକାର ହୋଇଥିଲେ । ବମ୍ବେ ସହରର ଅଧିକାଂଶ ସରକାରୀ ଗୃହ, ଥାନା ଓ ପୋଷ୍ଟ ଅଫିସ ପୋଡ଼ି ଛାରଖାର କରିଦିଆଯାଇଥିଲା । ସଂଧାତି ଜେଲକୁ ବିଦ୍ରୋହୀମାନେ ଦଖଲକରି ଅଧିକାଂଶ ବନ୍ଦୀଙ୍କୁ ମୁକ୍ତିଦେଇଥିଲେ । ହୁବୁଲି ଷ୍ଟେସନ ସମେତ ସର୍ବମୋଟ ୨୭ଟା ରେଲଷ୍ଟେସନ ବିଦ୍ରୋହୀମାନେ ଧ୍ୱଂସ କରିଦେଇଥିଲେ । ବହୁତ ସରକାରୀ ଖଜଣାଖାନା ଲୁଟ୍ ହୋଇଥିଲା । ଗୋଟିଏ ଦିନ ଭିତରେ ସାରା ପ୍ରଦେଶରେ ବହୁସଂଖ୍ୟକ ସରକାରୀ ଡାକବଙ୍ଗଳା ପୋଡ଼ି ଛାରଖାର କରିଦିଆଯାଇଥିଲା ।

ସବୁଠାରୁ ଅଧିକ ଗୌରବଜନକ ଭୂମିକା ଗ୍ରହଣ କରିଥିଲା ସାତାର ଜିଲ୍ଲା । ସେଠାରେ ବହୁଦିନ ପର୍ଯ୍ୟନ୍ତ ଇଂରେଜ ସରକାରର ସମସ୍ତ ପ୍ରକାର ଅସ୍ତିତ୍ୱ ଲୋପ ପାଇଯାଇଥିଲା ଏବଂ ଗଠିତ ହୋଇଥିଲା ସ୍ୱାଧୀନ ସରକାର । ନାନା ପଟିଲ ଥିଲେ ସେହି ସରକାରର ମୁଖ୍ୟ । ଅନ୍ୟ ଯେଉଁ ବିପ୍ଳବୀମାନେ ସେହି ବିପ୍ଳବୀ ସରକାରର ବିଭିନ୍ନ ବିଭାଗର ଦାୟିତ୍ୱ ନେଇଥିଲେ, ସେମାନେ ହେଲେ ପାଣ୍ଡୁ ମାଷ୍ଟର, କିଷାନ ବୀର, ଆପ୍‌ପା ମାଷ୍ଟର, ଶ୍ରୀନାଥ ଲାଲ ଓ ଡାକ୍ତର ଉତ୍ତମ ରାଓ ପ୍ରଭୃତି । କେବଳ ଯେ ଶାସନ କ୍ଷେତ୍ରରେ ଏହି ବିପ୍ଳବୀ ସରକାରର ଆଦର୍ଶ କାର୍ଯ୍ୟକାରୀ ହୋଇଥିଲା ତାହା ନୁହେଁ; ସାରା ସାତାର ଜିଲ୍ଲାରେ ନାନା ସଂସ୍କାରମୂଳକ ଓ ଗଠନମୂଳକ କାମରେ ମନୋନିଶେଷ କରିଥିଲେ ପାତିଲ ସରକାର । ଇଂରେଜ ପୋଲିସ ମିଲିଟାରୀ ହାତରୁ ବିପ୍ଳବୀ ସରକାରକୁ ନିରାପଦ ରଖିବାକୁ ଗଠିତ ହୋଇଥିଲା ତୋଫାନୀ ସୈନ୍ୟ ବାହିନୀ । ଗାଁଗହଳରୁ ବାଲ୍ୟବିବାହ, ଯୌତୁକ, ମଦ୍ୟପାନ ପ୍ରଭୃତି ଲୋପ ପାଇ- ଯାଇଥିଲା । ଦୈବାତ୍ ପାଣ୍ଡୁ ମାଷ୍ଟର ଆରେଷ୍ଟ ହୋଇଥିଲେ ଏବଂ ଇଂରେଜ ତାଙ୍କୁ ୟାରଭେଡ଼ା ଜେଲରେ ରଖିଥିଲା । କିନ୍ତୁ ଅଳ୍ପଦିନ ମଧ୍ୟରେ ପାଣ୍ଡୁ ମାଷ୍ଟର

ଜେଲରୁ ପଳାଇଆସିଥିଲେ । ମାଷ୍ଟରଜୀ ଜଣେ ଆଦର୍ଶ ପ୍ରଶାସକ ଥିଲେ । ତାଙ୍କର ଦକ୍ଷତା ଯୋଗୁଁ ଗାଁଗହଳରୁ କଳାବଜାର, ଚୋରି ଡକାୟତି ମଧ୍ୟ ଲୋପପାଇଯାଇଥିଲା । ଏଇଭଳିଭାବରେ ସାତାରା ଜିଲ୍ଲାରୁ କିଛିଦିନ ପାଇଁ ଇଂରେଜ ସରକାର ହୁକୁମତ୍ ଲୋପପାଇଗଲା ।

ଗୁଜୁରାଟରେ ମଧ ପ୍ରାୟ ୬ ମାସ କାଳ ସବୁ ସ୍କୁଲ କଲେଜ ବନ୍ଦହୋଇଗଲା । ବିପ୍ଳବୀ ବିନୋଦ କିର୍ନାରଓ୍ୱାଲା ଜାତୀୟ ପତାକାର ସମ୍ମାନ ରକ୍ଷାକରିବାକୁ ଯାଇ ପୋଲିସ ଗୁଳିରେ ଆତ୍ମ ବିସର୍ଜନ କରି ଗୁଜୁରାଟର ପ୍ରଥମ ସହିଦ ହେବାର ଗୌରବ ଅର୍ଜନ କରିଥିଲେ ଏବଂ ତାଙ୍କ ପଛେ ପଛେ ସହିଦ ହୋଇଥିଲେ ରସିକ ଜାନି, ପୁଷ୍ପବଦନ, ଗୋବର୍ଦ୍ଧନସାହା ଓ ଲାଲକାଦିଆ । ଅଗଷ୍ଟ ୧୮ ତାରିଖରେ ଇଂରେଜ ପୋଲସିର ନିର୍ମମତାର ଏକ ଲୋମହର୍ଷଣକାରୀ ଉଦାହରଣ ଦେଖିବାକୁ ମିଳିଲା । ଅହମଦାବାଦର ୩୪ ଜଣ ଛାତ୍ର ଟ୍ରେନରେ ବିପ୍ଳବୀ ପୋଷ୍ଟର ମାରି ସ୍ଲୋଗାନ ଦେଇ ଆସିବାବେଳେ ପୋଲିସ ସେମାନଙ୍କୁ ଘେରାଉକରି କାବୁକରିନେଲା ଓ ୫ଜଣ ଛାତ୍ର ନେତାଙ୍କୁ ସେହିଠାରେ ପ୍ଲାଟଫର୍ମରେ ବସାଇ ଆଲିସ ନାମକ ପୋଲିସ ଅଫିସର ଗୁଳିକରି ହତ୍ୟା କରିଥିଲା ।

ଏହାର ପ୍ରତିବାଦରେ ଫାଟିପଡ଼ିଲା ସାରା ଗୁଜୁରାଟ । ଅହମଦାବାଦର ଅଧିକାଂଶ ଶ୍ରମିକ ଧର୍ମଘଟ କଲେ । ଦିନେ-ଓଳିଏ ନୁହେଁ, ଦୀର୍ଘ ଚାରିମାସ କାଳ ଏହି ଧର୍ମଘଟ ଚାଲିଥିଲା ଏବଂ ଏହା ଫଳରେ ଶ୍ରମିକମାନେ ହରାଇଥିଲେ ଚାରି କୋଟି ଟଙ୍କାର ମଜୁରି । କେବଳ ସେତିକି ନୁହେଁ, ଉତ୍ତ୍ୟକ୍ତ ଜନତା ତିନି-ଚାରି ଜାଗାରେ ଚଳନ୍ତା ଟ୍ରେନ୍‌କୁ ଓଲଟାଇଦେଇଥିଲେ । ସେହି ଟ୍ରେନ୍‌ଗୁଡ଼ିକରେ ଯୁଦ୍ଧ ସରଞ୍ଜାମ ବୁହାଯାଉଥିଲା । ଖଇରା ଜିଲ୍ଲାରେ ୩୦ଟି ପୋଷ୍ଟ ଅଫିସ ଲୋକମାନେ ନଷ୍ଟକରିଦେଇଥିଲେ । ଅହମଦାବାଦରେ ହାତବୋମା ପକାଇ ବହୁ ସରକାରୀ ସମ୍ପତ୍ତି ନଷ୍ଟକରାଯାଇଥିଲା । ଜଲାଲପୁରଠାରେ ମଧ ଥାନାକୁ ଦଖଲ କରି ବିପ୍ଳବୀମାନେ ୩୪ଟା ବନ୍ଧୁକ ଜବଦ କରିଥିଲେ । ସିନ୍ଧୁ ପ୍ରଦେଶର ସୁକୁର ହାଇସ୍କୁଲର ୧୯ ବର୍ଷ ବୟସ୍କ ଛାତ୍ର ହେମୁ କଲ୍ୟାଣ ରେଳଲାଇନ ଉଠାଇଥିବା ଅଭିଯୋଗରେ ଫାଶୀ ପାଇଥିଲେ ।

**ଦକ୍ଷିଣ-ଭାରତ —**

ଅଗଷ୍ଟ ୧୪ ତାରିଖରେ ମାନ୍ଦ୍ରାଜର ଉତ୍ତ୍ୟକ୍ତ ଜନତାଙ୍କୁ ଛତ୍ରଭଙ୍ଗ କରିବାକୁ ପୋଲିସ ଯେଉଁ ଗୁଳିଚାଳନା କରିଥିଲା, ସେଥିରେ ଚାରିଜଣ ବିପ୍ଳବୀ ସହିଦ ହୋଇଥିଲେ; କିନ୍ତୁ ତାହା ଫଳରେ ଆନ୍ଦୋଳନ ଅଧିକ ହିଂସାତ୍ମକ ହୋଇଉଠିଲା । ଶହ ଶହ ସଂଖ୍ୟାରେ ସରକାରୀ ଘରବାଡ଼ି ଓ ଥାନା ପୋଡ଼ାହୋଇଥିଲା । ପୋଲିସ ଗୁଳିରେ ବାଙ୍ଗାଲୋରରେ ୭ଜଣ, ରାମନାଦରେ ୬ଜଣ, ଗୋଦାବରୀରେ ୫ଜଣ, ନୀଳଗିରିରେ ଜଣେ ଓ ମଦୁରାଇରେ ତିନିଜଣ ବିପ୍ଳବୀ ସହିଦ ହୋଇଥିଲେ । ରାମନାଦ ଗୁଳିକାଣ୍ଡ ପରେ ଉତ୍ତ୍ୟକ୍ତ ଜନତା ରାମନାଦ ଜେଲଖାନା ଭାଙ୍ଗିଦେଇ କଇଦୀମାନଙ୍କୁ ମୁକ୍ତ କରିଦେଇଥିଲେ ଏବଂ ସରକାରୀ ଟ୍ରେଜେରୀ ଲୁଟ୍ ହୋଇଯାଇଥିଲା । ପ୍ରଦେଶର ବହୁ ସ୍ଥାନରେ ଇଂରେଜ ସରକାରର ଅସ୍ତିତ୍ୱ

ଲୋପପାଇଗଲା । ସରକାରୀ ଲୋକେ ଭୟରେ ସହର ଛାଡ଼ି ଗାଁଗଣ୍ଡାରେ ଲୁଚିଲେ । ଆନ୍ଧ୍ର ଅଞ୍ଚଳର ବହୁସ୍ଥାନରେ ରେଲଲାଇନ ଉଠାଇ ଦିଆଯାଇଥିଲା । ଭୀମାବରସଠାରେ ବିପ୍ଳବୀମାନେ ବୋମା ଓ ଡିନାମାଇଟ ସାହାଯ୍ୟରେ ବହୁ ସରକାରୀ ଅଫିସ ଧ୍ୱଂସ କରିଦେଇ ଥିଲେ । ଏଗାରଟା ରେଳଷ୍ଟେସନ ଧ୍ୱଂସ ଓ ସାତ ଜାଗାରେ ରେଳଲାଇନ ଉଠାଇଦିଆଯାଇଥିଲା । ବିଭିନ୍ନ ଅଭିଯୋଗରେ ଷୋଳ ଜଣ ବିପ୍ଳବୀ ଫାଶୀକାଠରେ ଆତ୍ମବିସର୍ଜନ କରିଥିଲେ ।

କେରଳ ଲୋକେ ମଧ୍ୟ ଏହି ଚରମ ସଂଗ୍ରାମରେ ପଛରେ ପଡ଼ିନଥିଲେ । କେରଳ ବା ତତ୍କାଳୀନ କ୍ରିଭାଙ୍କୁଡ଼ ରାଜ୍ୟର ୧୯୨୦ ମସିହାରୁ ଜାତୀୟ ଆନ୍ଦୋଳନର ଅଭିଜ୍ଞତା ଥିଲା । ମାଲବାରର ମୋପଲା ବିଦ୍ରୋହ ସ୍ୱାଧୀନତା ସଂଗ୍ରାମର ଉଷାକାଳର ଘଟଣା । ସେଠାରେ ଏକ ଜାତୀୟ ସରକାର ଗଠିତହୋଇଥିଲା । ଶ୍ରୀ କେଲାପାନ ଥିଲେ କେରଳ ବିପ୍ଳବର ମୁଖ୍ୟ ନାୟକ । ସହରମାନଙ୍କରେ ଧର୍ମଘଟ, ହରତାଳ ଓ ସରକାରୀ ଗୃହର ଧ୍ୱଂସସାଧନ ଏକ ମାମୁଲି ଘଟଣାରେ ପରିଣତ ହେଲା । ବିପ୍ଳବୀମାନେ ଏର୍ଣ୍ଣାକୁଲମ୍‌ରେ ଥିବା ଲାଟ୍‌ଭବନ ଧ୍ୱଂସକରିଦେଇଥିଲେ । ଜେଲ ଭିତରେ ଥିଲାବେଳେ ଗୁଜୁରାଟୀ ଛାତ୍ର ନବୀନ ଚନ୍ଦ୍ର ସ୍ରଫ ସହିଦହୋଇଥିଲେ ।

**ବିହାର –**

କେତେକଙ୍କ ମତରେ ଭାରତର 'ଅଗଷ୍ଟ-ବିପ୍ଳବ' ଇତିହାସ 'ବିହାର ବିପ୍ଳବର ଇତିହାସ'; ଅର୍ଥାତ୍ 'ଅଗଷ୍ଟ-ବିପ୍ଳବ'ରେ ବିହାର ପ୍ରଦେଶର ଅବଦାନ ପର୍ଯ୍ୟାଲୋଚନା କଲେ ସମଗ୍ର ଦେଶର ଅଗଷ୍ଟ-ବିପ୍ଳବ ସମ୍ପର୍କରେ ସମ୍ୟକ ଧାରଣା କରିହେବ । କାରଣ ଅଗଷ୍ଟ-ବିପ୍ଳବ ପ୍ରଧାନ ସେନାପତି ଜୟପ୍ରକାଶ ହେଉଛନ୍ତି ବିହାରର ଅଧିବାସୀ । ସୁତରାଂ ଏହା ସ୍ୱାଭାବିକ ଯେ, ବିହାରରେ ଅଗଷ୍ଟ-ବିପ୍ଳବ ଆନ୍ଦୋଳନ ସର୍ବାପେକ୍ଷା ବ୍ୟାପକ ଓ ଉଗ୍ର ଆକାର ଧରିଥିଲା । ଆନ୍ଦୋଳନ ଆରମ୍ଭ ହେବାର ଅଳ୍ପଦିନ ଭିତରେ ଜୟପ୍ରକାଶଙ୍କୁ ଆରେଷ୍ଟ କରିବାକୁ ପୋଲିସ ସମର୍ଥ ହୋଇପାରିଥିଲା ଏବଂ ଦିନେ- ଓଳିଏ ନୁହେଁ, ଦୀର୍ଘ ଅଢ଼େଇବର୍ଷକାଳ ଗୋପନ ଆନ୍ଦୋଳନ ଚଳାଇବାକୁ ଲୋକେ ସମର୍ଥ ହୋଇଥିଲେ । ଜୟପ୍ରକାଶଙ୍କର ସହଧର୍ମିଣୀ ଶ୍ରୀମତୀ ପ୍ରଭାବତୀ ଦେବୀଙ୍କର ମଧ ଅଗଷ୍ଟ-ବିପ୍ଳବ ପ୍ରତି ବିଶେଷ ଅବଦାନ ରହିଛି । ବିଶେଷତଃ ବିଭିନ୍ନ ବିପ୍ଳବ କେନ୍ଦ୍ର ଓ ବିପ୍ଳବୀମାନଙ୍କ ଭିତରେ ସମ୍ବାଦ ସରବରାହ ଓ ଗୋପନ ପ୍ରଚାରପତ୍ର ବାଣ୍ଟିବାରେ ପ୍ରଭାବତୀ ଦେବୀଙ୍କର ଅବଦାନ ଅବିରସ୍ମରଣୀୟ । ବସ୍ତୁତଃ ଏହିଭଳି କାର୍ଯ୍ୟ କରିବା ସମୟରେ ଧରାପଡ଼ି ସେ ଜେଲବରଣ କରିଥିବା ଜଣାଯାଏ ।

ଜେଲରୁ ପଳାଇଆସିବା ପରେ ଜୟପ୍ରକାଶ ଭାରତ-ନେପାଳ ସୀମାରେ ଘନ ଜଙ୍ଗଲ ଭିତରେ ଖୋଲିଥିଲେ ଏକ ଗୁପ୍ତ ବୋମାତିଆରି କାରଖାନା ଏବଂ ସେହିଠାରୁ ସାରା ଦେଶରେ ଥିବା ବିପ୍ଳବୀମାନଙ୍କୁ ଏହି ସବୁ ମାରଣାସ୍ତ୍ର ଓ ବିସ୍ଫୋରକ ଦ୍ରବ୍ୟ ଯୋଗାଇଦିଆଯାଉଥିଲା । ବିଭିନ୍ନ ସନ୍ତ୍ରାସମୂଳକ ଭଙ୍ଗାରୁଜା କାମ କରିବାକୁ ବିପ୍ଳବୀମାନଙ୍କୁ ଟ୍ରେନିଂ ଦେବା ପାଇଁ

ଜୟପ୍ରକାଶ "A. B. C. of Dislocation." ନାମରେ ଖଣ୍ଡିଏ ବହି ପ୍ରକାଶକରିଥିଲେ ଏବଂ ସେହି ବହିଖଣ୍ଡିକ 'ଅଗଷ୍ଟ-ବିପ୍ଳବୀ' ଙ୍କୁ ଖୁବ୍ ସାହାଯ୍ୟ କରିଥିଲା । ୧୧ ତାରିଖ ଅଗଷ୍ଟରୁହିଁ ବିହାରର ଆନ୍ଦୋଳନ ସୁସଙ୍ଗଠିତ ଓ ବ୍ୟାପକ ଭାବରେ ଆରମ୍ଭ ହୋଇଥିଲା । ସେହି ଦିନ ହଜାର ହଜାର ଲୋକ ଏକତ୍ରିତ ହୋଇ ପାଟନା ହାଇକୋର୍ଟ ଓ ଆସେମ୍ବ୍ଲି ଦଖଲ ପାଇଁ ଉଦ୍ୟମ କରିଥିଲେ; ଫଳରେ ପୋଲିସ ବାହିନୀ ସହ ସେଠାରେ ଜନତାର ସଂଘର୍ଷ ହୋଇଥିଲା ଏବଂ ପୋଲିସ- ଗୁଳିରେ ୭ଜଣ ପ୍ରାଣ ହରାଇଥିଲେ । ଭାଗଲପୁର ଜିଲ୍ଲାର ପ୍ରାୟ ସବୁ ଥାନା ବିପ୍ଳବୀମାନେ ଦଖଲକରିଯାଇଥିଲେ । ଉତ୍ତର-ବିହାରରେ ତ ଦୀର୍ଘ ଦିନ ପର୍ଯ୍ୟନ୍ତ ଇଂରେଜ ସରକାରର କୌଣସି ଅସ୍ତିତ୍ୱ ନଥିଲା । ଅଧିକାଂଶ ସ୍ଥାନରେ ପୋଲିସ ସହ ଜନତାର ସଂଘର୍ଷ ହୋଇଥିଲା । ପ୍ରତ୍ୟେକ ସ୍ଥାନରେ ବହୁଲୋକ ସହିଦ ହୋଇଥିଲେ, ବିପୁଳ କ୍ଷତି ଓ ବହୁସଂଖ୍ୟକ ସରକାରୀ ଲୋକ ହତାହତ ହୋଇଥିଲେ । ପୀରପଞ୍ଜୀରେ ୭ଜଣ, ସୁଲତାନଗଞ୍ଜରେ ୬୭ ଜଣ, ଦ୍ୱାରଭଙ୍ଗାରେ ୩୮ଜଣ, କାଡିହାରରେ ୫ଜଣ, ବିଜିପୁରରେ ୮ଜଣ, ସାହାବାଦରେ ୮ଜଣ, ଲାହୋରିଆ ସରାଇରେ ୯ଜଣ, ଚମ୍ପାରଣରେ ୨ଜଣ ବିପ୍ଳବୀ ସହିଦ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ଅଗଷ୍ଟ ୧୬ ତାରିଖରେ ବିଦ୍ରୋହୀମାନେ ମିନାପୁର ଥାନା ଆକ୍ରମଣକରି ଏ. ଏସ. ଆଇ.ଙ୍କୁ ହତ୍ୟା କରିଥିଲେ । ସୀତାମଢ଼ିରେ ବିପ୍ଳବ ବଡ଼ ଭୟଙ୍କର ରୂପ ଗ୍ରହଣ କରିଥିଲା । ସୀତାମଢ଼ିର ଜିଲ୍ଲା ମାଜିଷ୍ଟ୍ରେଟ ଜିପରେ ବସି ବିଦ୍ରୋହ ଅଞ୍ଚଳ ଗ୍ରସ୍ତ କରିବାକୁ ଯାଇଥିଲେ । ଉକ୍ତ ଗାଡ଼ିରେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଛଡ଼ା ପୋଲିସ ଇନ୍ସପେକ୍ଟର, ହେଡ୍ କନଷ୍ଟେବଲ ଓ ଜଣେ ଅର୍ଦ୍ଦଳି ମଧ୍ୟ ବସିଥିଲେ । ଏ ଖବର ସୀତାମଢ଼ିରେ ପହଞ୍ଚିବା ସଙ୍ଗେ ସେଙ୍ଗ ହଜାର ହଜାର ଉତ୍ତ୍ୟକ୍ତ ଜନତା ଜିପକୁ ଘେରାଉକଲେ । କ୍ରମେ ଲୋକସଂଖ୍ୟା ଏତେ ବଢ଼ିଲା ଯେ, ଶେଷରେ ମାଜିଷ୍ଟ୍ରେଟଙ୍କ ଗାଡ଼ିକୁ ଲୋକେ ଜବତକରିନେଲେ ଓ ସମସ୍ତ ଆରୋହୀ ଜନତାର କ୍ରୋଧ ଓ ଅସନ୍ତୋଷର ଶିକାର ହେଲେ । ଲୋକେ ସେମାନଙ୍କୁ ମାରି ଟିକି ଟିକି କରିଦେଲେ । ସେଦିନ ରୁଷୌଲି ଥାନା ପୋଡ଼ାହେଲା ଏବଂ ଜଣେ ପୋଲିସ ଏସ. ଆଇ. ଓ. ଦୁଇଜଣ ପୋଲିସବାଲା ସେଇଠି ପୋଡ଼ି ମଲେ । କାଟରା ଥାନାରେ ଜଣେ ପୋଲିସ ମଧ୍ୟ ନିହତ ହୋଇଥିଲା । ଅନ୍ୟ କେତେ ଜଣ ପୋଲିସ ଲୋକଙ୍କ ମାଡ଼ରେ ସଂଜ୍ଞାହୀନ ହୋଇପଡ଼ିଲେ । କୌଣସି କାରଣରୁ ଲୋକେ ସେମାନଙ୍କ ପ୍ରାଣ ନେଇନଥିଲେ ।

ଅଗଷ୍ଟ ୧୯ ତାରିଖରେ ସେହି କାଟରା ଥାନା ଅଞ୍ଚଳରେ ପାଞ୍ଚଜଣ ଇଂରେଜ ସୈନ୍ୟ କିପରି ଲୋକଙ୍କ ହାବୁଡ଼ରେ ପଡ଼ିଥିଲେ, ତାହା ଜନତାର ବୀରତ୍ୱ ଓ ସାହସର ଏକ ଅଭୁଲା କାହାଣୀ । ସେହି ଦିନ ଏକ ଉଡ଼ାଜାହାଜର ଇଂଜିନ ଖରାପ ହେବାରୁ ଚାଳକ ବାଧହୋଇ ତାକୁ ଗୋଟିଏ ଧାନବିଲରେ ଓହ୍ଲାଇଥିଲା । ସେତେବେଳେ ଯୁଦ୍ଧଜନିତ ପରିସ୍ଥିତି ଯୋଗୁଁ ସରକାର ଯେମିତି ଚାରିଆଡ଼େ ଛାନିଆ ଓ ଆତଙ୍କ ସୃଷ୍ଟି କରିଥିଲେ, 'ଅଗଷ୍ଟ ଆନ୍ଦୋଳନ' ପାଇଁ ସେମିତି ଉତ୍ତେଜନା ସୃଷ୍ଟି ହୋଇଥାଏ । ଫଳରେ ଉଡ଼ଜାହାଜ ପାଖରେ ପହଞ୍ଚି ଯେତେବେଳେ ଦେଖିଲେ ଯେ ଆରୋହୀ ୭ଜଣ ସମସ୍ତେ ବ୍ରିଟିଶ କର୍ମଚାରୀ, ସେତେବେଳେ ଜନତାର କ୍ରୋଧର ସୀମା ରହିଲା ନାହିଁ । ମାରହୋୟାର ନାମକ ସେହି ସ୍ଥାନରେ

ଆରୋହୀମାନଙ୍କୁ ଉଡ଼ାଜାହାଜରୁ ଟାଣିଆଣି ହତ୍ୟାକଲେ । ଦେଖାଗଲା, ସେଥିମଧ୍ୟରୁ ୫ଜଣ ବ୍ରିଟିଶ ସୈନ୍ୟ ଓ ଦୁଇ ଜଣ କ୍ୟାନିଡ଼ିଆନ କର୍ମଚାରୀ ।

ଭାଗଲପୁର ଜେଲ ଭିତରେ ବିପ୍ଳବୀ ବନ୍ଦୀ ଓ ପୋଲିସ ମଧ୍ୟରେ ବାରମ୍ବାର ସଂଘର୍ଷ ହେଉଥିଲା ଏବଂ ସେହି ସଂଘର୍ଷରେ ୩ଜଣଙ୍କୁ ଫାଶୀ ଓ ୭ ଜଣଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ହୋଇଥିଲା । ପାଞ୍ଚଗଣ ମିଲିଟାରୀ ଲୋକଙ୍କୁ ହତ୍ୟାକରିଥିବା ଅଭିଯୋଗରେ ଛାପରାରେ ୧୦ ଜଣ ବିପ୍ଳବୀଙ୍କୁ ଫାଶୀ ଓ ୫ ଜଣଙ୍କୁ ଦ୍ୱୀପାନ୍ତରଦଣ୍ଡ ହୋଇଥିଲା । ଭାଗଲପୁର ଜେଲ ଭିତରେ ମହେନ୍ଦ୍ର ଚୌଧୁରୀଙ୍କ ଫାଶୀ ଏକ ସ୍ମରଣୀୟ ଘଟଣା ।

ବିହାରର ସାନ୍ତାଳ ପ୍ରଗନ୍ନାରେ 'ସାରଙ୍ଗ ବାବା' ଓ 'ସାନ୍ତାଳମାତା' ଙ୍କୁ ଜାଣିନଥିବା ଲୋକ ସେ ଯୁଗରେ ବିହାରରେ ମିଳିବା କଷ୍ଟ । 'ବାବା' ଓ 'ମାତା' ହେଉଛନ୍ତି ବିପ୍ଳବୀ ଲମ୍ବୋଦର ମୁଖାର୍ଜୀ ଓ ତାଙ୍କର ପତ୍ନୀ ଉଷାରାଣୀ ମୁଖାର୍ଜି । ସାନ୍ତାଳ ପ୍ରଗନ୍ନାରେ ଗଠିତ ହୋଇଥିବା 'ଫରୱାଡ଼ ବ୍ଲକ୍' ସଭାପତି ହେଉଛନ୍ତି ଲମ୍ବୋଦରବାବୁ । ତାଙ୍କର ଅସାଧାରଣ ସାଙ୍ଗଠନିକ ଶକ୍ତି ଫଳରେ ହଜାର ହଜାର ଆଦିବାସୀ ଜାତୀୟ ଆନ୍ଦୋଳନରେ ଝାସଦେଇଥିଲେ । ପ୍ରାୟ ପଚିଶ ହଜାର ସାନ୍ତାଳଙ୍କୁ ଗରିଲା ଟ୍ରେନିଂ ଦେଇ ସେ ବାରମ୍ବାର ଇଂରେଜ ସୈନ୍ୟଙ୍କର ସମ୍ମୁଖୀନ ହେଉଥିଲେ । ଉଭୟ ପକ୍ଷରୁ ବହୁ ମୃତାହତ ହେଉଥିଲେ ମଧ୍ୟ ପୋଲିସ 'ବାବା' ଓ 'ମାତା'ଙ୍କର କୌଣସି ସନ୍ଧାନ ପାଇଲେନାହିଁ ।

ଯେଉଁମାନେ 'ବାବା' ଓ 'ମାତା'ଙ୍କ ପ୍ରେରଣାରେ ଦେଶ ପାଇଁ ପ୍ରାଣପାତ କଲେ ସେମାନେ ହେଲେ କାଦୁ ମୁର୍ମୁ, ଗେରୁଆଧାରୀ ସନ୍ନ୍ୟାସୀ ବାବା ନିମଚାନ୍ଦ, ଚରଣ ମୁର୍ମୁ, ଭାଦୋ ହେମ୍ବରମ, ଲାଲ ହେମ୍ବରମ, ବରିଆର ହେମ୍ବରମ, ପାଗଲ ମୁର୍ମୁ, ଶୁକୁ ମୁର୍ମୁ, ତାଲାରୀ ମାଝି, ରସନା ଦେହୁରୀ ଓ ଜମିଦାର ଭଗବାନଚନ୍ଦ୍ର ଦାସ । ବିହାରର ଏଭଳି ଅବସ୍ଥା ହୋଇଥିଲା ଯେ ସାଧାରଣ ଡାକ କଥା ତେଣିକି ଥାଉ, ସରକାରୀ ଡାକ ମଧ୍ୟ ଆକାଶପଥରେ ଯାତାୟାତ କରୁଥିଲା । ଛାତ୍ର, ଯୁବକ, କୃଷକ ଓ ଆଦିବାସୀଙ୍କ ବ୍ୟତୀତ ଅନ୍ୟ ଯେଉଁ ଶ୍ରେଣୀ ବିହାର-ବିପ୍ଳବର ଆଗ ଧାଡ଼ିରେ ଠିଆ- ହୋଇଥିଲେ, ସେମାନେ ହେଉଛନ୍ତି — ଶ୍ରମିକ । ଟାଟା କାରଖାନାର ଶ୍ରମିକମାନେ ଦେଶର ଏହି ଜୀବନ-ମରଣ ସଂଗ୍ରାମରେ ଝାସ ଦେଇ ଧର୍ମଘଟ କଲେ । ଦୀର୍ଘ ତେରଦିନ ପର୍ଯ୍ୟନ୍ତ ଧର୍ମଘଟ ଚାଲିଥିଲା । ଶ୍ରମିକମାନଙ୍କୁ ଦମନ କରିବାକୁ ସରକାର ବହୁ ଉଦ୍ୟମ କରିଥିଲା; କିନ୍ତୁ ସମସ୍ତ ପ୍ରକାର ଉଦ୍ୟମ ପଣ୍ଡହେଲା । ଏପରି କି ଶେଷକୁ ପୋଲିସ ବାହିନୀ ଉପରିସ୍ଥ କର୍ମଚାରୀଙ୍କର ଆଦେଶ ଅମାନ୍ୟ କରିବାକୁ ଲାଗିପଡ଼ିଲେ । ପୋଲିସ ବାହିନୀରେ ବିଦ୍ରୋହ ସୃଷ୍ଟି ହେଲା । ଶ୍ରମିକମାନଙ୍କ ଉପରେ ଲାଠି ଚାର୍ଯ କରିବାକୁ ମନାକରିଦେଇଥିବାରୁ କନଷ୍ଟେବଳ ଶ୍ରୀ ରାମାନନ୍ଦ ତିୱାରି ଚାକରିରୁ ସସପେଣ୍ଡ ହୋଇ ଗିରଫହୋଇଥିଲେ ।

**ବଙ୍ଗଳା —**

ସଶସ୍ତ୍ର ବିପ୍ଳବର ମହାନ୍ ତୀର୍ଥ ବଙ୍ଗ ଦେଶରେ ଏହି ଚରମ ସଂଗ୍ରାମ ମଧ୍ୟ ସଂପୂର୍ଣ୍ଣ ସଫଳତା ଅର୍ଜନ କରିଥିଲା । ସଶସ୍ତ୍ର ବିପ୍ଳବର ପରମ୍ପରାପୁଷ୍ଟ ବଙ୍ଗଳାର ବିଭିନ୍ନ ସ୍ଥାନରେ ସରକାରୀ କଳକୁ ଏକାବେଳକେ ଅଚଳ କରିଦିଆଯାଇଥିଲା ।

'ଅଗଷ୍ଟ-ବିପ୍ଳବ'ରେ ବଙ୍ଗଳାର ଛାତ୍ରସମାଜ ଓ ଯୁବଶକ୍ତିହିଁ ଅଗ୍ରଣୀ ହୋଇଥିଲେ । ଅଗଷ୍ଟ ୧୦ ତାରିଖରେ ବେଙ୍ଗଲ ପି. ସି. ସି. କୁ ସରକାର ବେଆଇନ ଘୋଷଣା କଲା ପରେ ଚାରିଆଡ଼େ ଘୋର ଉତ୍ତେଜନା ସୃଷ୍ଟି ହେଲା । ୧୧ ତାରିଖରେ ଅଧିକାଂଶ ସ୍କୁଲ, କଲେଜ ବନ୍ଦହୋଇଗଲା । କଲିକତାର ୱେଲିଂଟନ ସ୍କୋୟାରରେ ହୋଇଥିଲା ଏକ ବିରାଟ ସଭା । ସେଠାରେ ପୋଲିସ ପକ୍ଷରୁ ପ୍ରଥମେ ଲାଠି ଚାର୍ଜ ପରେ ଗୁଳି ଚାଲିଲା । ସହିଦ ହେଲେ ବିପ୍ଳବୀ ବୈଦ୍ୟନାଥ ସେନ । ପରଦିନ ଭବାନୀପୁରଠାରେ ଗୁଳି ଚାଲି ଛ'ଜଣ ନିହତ ଓ ୩୩ ଜଣ ଆହତ ହୋଇଥିଲେ । ଧର୍ମତଳାରୁ ଭବାନିପୁର ପର୍ଯ୍ୟନ୍ତ ମାଟି ସହିଦଙ୍କ ରକ୍ତରେ ଲାଲହୋଇଗଲା । ଦିଲ୍ଲୀପ ଘୋଷ ନାମକ ଜଣେ ଛାତ୍ର ନିଜ ଭଉଣୀର ବିବାହ ପାଇଁ ବଜାର ସଉଦା କରିବାକୁ ଯାଇ ପୋଲିସ ଗୁଳିର ଶିକାର ହେଲେ । କିନ୍ତୁ ପୁତ୍ରର ମୃତ୍ୟୁ ସମ୍ବାଦରେ ସଂଜ୍ଞାହୀନ ପିତା ମଧ୍ୟ ମୃତ୍ୟୁବରଣ କଲେ ପୋଲିସର ଗୁଳିରେ । ଉତ୍ୟକ୍ତ ଜନତା ବହୁ ପରିମାଣରେ ସରକାରୀ ସମ୍ପତ୍ତିର ଧ୍ୱଂସ ସାଧନ କଲେ । ସମ୍ବାଦପତ୍ରଗୁଡ଼ିକରେ ବିପ୍ଳବ ସଂକ୍ରାନ୍ତୀୟ ସମ୍ବାଦ ପ୍ରକାଶ ପାଇବନାହିଁ ବୋଲି ସରକାର ନିଷେଧାଜ୍ଞା ଜାରିକରିବାରୁ ତା'ର ପ୍ରତିବାଦରେ ବହୁ ସମ୍ବାଦପତ୍ର ସେମାନଙ୍କ ପ୍ରକାଶନ ବନ୍ଦକରିଦେଇଥିଲେ । କଲିକତାରେ ପ୍ରତିଷ୍ଠିତ ଏକ ଗୁପ୍ତ ବେତାର କେନ୍ଦ୍ରରୁ ବିପ୍ଳବ ସମ୍ବାଦ ପ୍ରଚାରିତ ହେଉଥିଲା । ଢ଼ାକାରେ ଛ' ଜଣ, ମୁନ୍ସିଗଞ୍ଜରେ ୪ଜଣ ଓ ତାଲତାଲା ବଜାରରେ ୩ ଜଣ ବିପ୍ଳବୀ ପ୍ରାଣ ହରାଇଥିଲେ । ତେଣେ ଉତ୍ୟକ୍ତ ଜନତା ହାତରେ ଜଣେ ପୋଲିସ କନଷ୍ଟେବଲ ମଧ୍ୟ ପ୍ରାଣ ଦେଇଥିଲା । ରାଣାଘାଟ ଲୋକେ ବିପ୍ଳବୀଙ୍କୁ ସାହାଯ୍ୟ କରୁଥିବାରୁ ସେମାନଙ୍କ ଉପରକୁ ଆକାଶମାର୍ଗରୁ ମେସିନ୍ ଗନ୍ ଚାର୍ଯ କରାଯିବା ଏକ ଉଲ୍ଲେଖଯୋଗ୍ୟ ଘଟଣା ।

ଯୁଦ୍ଧ ଲାଗି ଯେଉଁ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତି ସୃଷ୍ଟିହୋଇଥିଲା (ଅଗଷ୍ଟ-ବିପ୍ଳବ ଆରମ୍ଭ ହେବା ବେଳକୁ ଜାପାନୀ ସୈନ୍ୟ ଆଣ୍ଡାମନ ଦଖଲ କରି ସାରିଥିଲେ ଏବଂ କଲିକତା 'ଡାଇମଣ୍ଡ ହାର୍ବର' ଉପରେ ବୋମାବର୍ଷଣ ହୋଇସାରିଥିଲା), ତା' ସାଙ୍ଗକୁ ସରକାରୀ ଅବିମୃଷ୍ୟକାରିତା ପରିସ୍ଥିତିକୁ ଆହୁରି ଭୟାବହ କରିଦେଇଥିଲା । ପୂର୍ବ ଉପକୂଳ ଅଞ୍ଚଳରେ ଯେକୌଣସି ମୁହୂର୍ତ୍ତରେ ଜାପାନୀମାନେ ଓହ୍ଲେଇପଡ଼ିବେ ବୋଲି ପ୍ରଚାର କରି ସରକାର ଉପକୂଳ ଅଞ୍ଚଳରେ ଅମାନୁଷିକ ଶାସନ ଚଳାଇଲେ । ଏହି ଅଞ୍ଚଳରେ ସବୁ ସାଇକେଲ, ରିକ୍ସା, ଲଞ୍ଚ ଓ ନୌକା ଜବତ କରିନିଆଗଲା । ଲୋକେ ଘୋର ଅସୁବିଧାଜନକ ଅବସ୍ଥାରେ ପଡ଼ିଲେ । ଜନତା ଅଧିକ ଉତ୍ୟକ୍ତ ହେଲା । ବିପ୍ଳବୀ ମେଦିନୀପୁର ଜିଲ୍ଲା କ୍ରୋଧରେ ଫାଟିପଡ଼ିଲା । ଏକ ଉପକୂଳ ଜିଲ୍ଲା ହୋଇଥିବାରୁ ଏହି ଜିଲ୍ଲାଟି ସରକାରୀ ଅନ୍ୟାୟ ଆଦେଶର ଜବାବ ଦେବା ବାଟ ଭଲରୂପେ ଜାଣନ୍ତି । ବିଶେଷତଃ ତମଲୁକ, ପାଁଶକୁଡ଼ା, ନନ୍ଦୀଗ୍ରାମ, ସୂତାହାଟ, ମହୀଷାଦଳ ଓ ମୟନା ଥାନା ପ୍ରଭୃତି ସେ ଯେତେବେଳେ 'ଇଭାକ୍ୟେସନ' (ଲୋକ ଅପସାରଣ) ଅର୍ଡ଼ର ଦିଆଗଲା, ସେତେବେଳେ ଉତ୍ତେଜନା ଚରମ ସୀମାରେ ପହଞ୍ଚିଗଲା । ସତୀଶ ସାମନ୍ତ, ଅଜୟ ମୁଖାର୍ଜି (ପରେ ସ୍ୱାଧୀନ ପଶ୍ଚିମ ବଙ୍ଗର ମୁଖ୍ୟମନ୍ତ୍ରୀ

ହେଲେ), ସୁଶୀଲ ଧାଂଡ଼ା ଓ ବରଦା କୁଇତି ପ୍ରଭୃତି ବିପ୍ଳବୀଙ୍କ ନେତୃତ୍ୱରେ ଲୋକ ସଙ୍ଗଠିତ ହେଲେ । ଦାନିପୁର ଚାଉଳ କଳର ମାଲିକ ଇଂରେଜ ସୈନ୍ୟବାହିନୀ ପାଇଁ ପ୍ରଚୁର ଚାଉଳ ଯୋଗାଉଥିଲା । ବଙ୍ଗଳା ସେତେବେଳେ ଘୋର ଦୁର୍ଭିକ୍ଷର ସମ୍ମୁଖୀନ । ବିଶେଷତଃ ସାମୁଦ୍ରିକ ଜଳୋଚ୍ଛ୍ୱାସରେ ମେଦିନୀପୁର ଜିଲ୍ଲାର ବିସ୍ତୃତ ଅଞ୍ଚଳରେ ଲୁଣିପାଣି ମାଡ଼ିଯାଇ ଦୁର୍ବିସହ ପରିସ୍ଥିତି ସୃଷ୍ଟି କରିଥାଏ । ତା ସାଙ୍ଗକୁ ଯୁଦ୍ଧ ପାଇଁ ସରକାରୀ ଆୟୋଜନ ତଥା ଲୋକଙ୍କ ବିରୁଦ୍ଧରେ ଯାବତୀୟ ଜନବିରୋଧୀ ଆଇନ ଓ ସରକାରୀ ଅର୍ଡ଼ର ଲୋକଙ୍କୁ ପ୍ରାୟ ଶେଷ କରି- ଦେବାକୁ ବସିଥାଏ ।

ପ୍ରାୟ ଅଢ଼େଇହଜାର ଲୋକ ଏକ ଶୋଭାଯାତ୍ରାରେ ଯାଇ ଚାଉଳ କଳ ମାଲିକକୁ ଧମକ ଦେଲେ– "ଆମେ ଅଭୁକ୍ତ, ସୁତରାଂ ରପ୍ତାନି ବନ୍ଦ କର ।" ସେଠାରେ ପୋଲିସ ଓ ଜନତା ଭିତରେ ସଂଘର୍ଷ ହେଲା । ପୋଲିସ ଗୁଳିରେ ତିନିଜଣ ପ୍ରାଣ ବିସର୍ଜନ କଲେ ଏବଂ ଶବଗୁଡ଼ିକୁ ଗଙ୍ଗା ନଦୀରେ ଭସାଇ ଦିଆଗଲା । ଦେଶପ୍ରେମୀ ମେଦିନୀପୁରବାସୀ ସହିଦମାନଙ୍କ ପ୍ରତି ଏହି ଅପମାନ ସହ୍ୟ କରିବାକୁ ପ୍ରସ୍ତୁତ ନଥିଲେ । ଦୌଡ଼ି ଦୌଡ଼ି ଆସିଲେ ଦୁଇ ହଜାର ଲୋକ । ଉଚ୍ଛୁଳା ନଈରେ ପହଁରି ପହଁରି ଉଦ୍ଧାରକଲେ ସେହି ତିନିଗୋଟି ମୃତଦେହ । "ଦେଶର ଏହି ଚରମ ସଂଗ୍ରାମରେ ଆତ୍ମବଳୀ ଦେଇଥିବା ମହାପୁରୁଷମାନଙ୍କୁ ଆମେ ଉପଯୁକ୍ତ ସମ୍ମାନ ଦେବୁଁ ।"– ଏହାହିଁ ଥିଲା ଜନତାର ଅଭିଳାଷ । ପୋଲିସ କିନ୍ତୁ ଶେଷ ପର୍ଯ୍ୟନ୍ତ ତାହା କରାଇଦେଲା ନାହିଁ । ଦାନିପୁରଠାରୁ ବହୁ ଦୂରରେ ନଦୀର ତଳପଟରେ ଶବଗୁଡ଼ିକ ଉଦ୍ଧାରକଲାବେଳେ ସେଠାରେ ଅଧିକ ଲୋକ ନଥିଲେ । ଏହି ସୁଯୋଗରେ ପୋଲିସ ସେମାନଙ୍କ ହାତରୁ ଶବ ତିନିଗୋଟିକୁ ଛଡ଼ାଇ ନେଇ ଏକତ୍ର କରି ଜାଳିଦେଲେ ଏବଂ ୧୮ ଜଣ ଲୋକଙ୍କୁ କାରାଦଣ୍ଡ ଦିଆଗଲା । ପୋଲିସର ଏହି କାର୍ଯ୍ୟ ଲୋକମାନଙ୍କୁ ଅଧିକ ଉତ୍ତେଜିତ କରିଦେଲା ।

ଲୋକେ ପୁଣି ଏକାଠି ହେଲେ ବହୁସଂଖ୍ୟାରେ । ଜନତାଅଦାଲତ ବସିଲା; ଦଣ୍ଡ ଦିଆଗଲା କଳମାଲିକକୁ । ତା' ଦୋଷରୁ ୩ଜଣ ବିପ୍ଳବୀ ପୋଲିସ ଗୁଳିରେ ପ୍ରାଣ ଦେଇଥିବାରୁ ପ୍ରତ୍ୟେକ ସହିଦ ପରିବାରକୁ ଦୁଇ ହଜାର ଲେଖାଁଏ ଟଙ୍କା କ୍ଷତି ପୂରଣ ଦେବାକୁ ହେବ ବୋଲି ଜନତା ଅଦାଲତ ରାୟ ଦେଲା ଏବଂ ସୈନ୍ୟବାହିନୀକୁ ଚାଉଳ ଯୋଗାଇବା ବନ୍ଦ କରିବାକୁ ମଧ୍ୟ କୁହାଗଲା । ଉଲ୍ଲେଖ ନିଷ୍ପ୍ରୟୋଜନ ଯେ ମିଲ ମାଲିକର ଜନତା ଅଦାଲତର ଏହି ରାୟ ମାନିବା ଛଡ଼ା ଅନ୍ୟ ଉପାୟ ନଥିଲା, କାରଣ ପୋଲିସ ବା ମିଲିଟାରୀ ତାକୁ ସାହାଯ୍ୟ କରିବାର ବାଟ ନଥିଲା । କ୍ରମବର୍ଦ୍ଧମାନ ଜନଶକ୍ତି ପାଖରେ ଗୋଟାଏ ବିଦେଶୀ ଶାସକର ଦଲାଲୀ ଆଉ କେତେ ବାଟ ଯାଇଥାନ୍ତା !

'ଜନତା ଅଦାଲତ'ର କାର୍ଯ୍ୟ ସେତିକିରେ ଶେଷହୋଇନଥିଲା । ତାମଲୁକରୁ ଇଂରେଜ ଶାସନ ଲୋପକରିଦେବାକୁ ସ୍ଥିର ହେଲା ଏବଂ ଗଠିତ ହେଲା ଏକ ସ୍ୱାଧୀନ ସରକାର । ସଙ୍ଗେ ସଙ୍ଗେ ତମଲୁକ, ମହିଷାଦଳ ଓ ପାଁଶକୁଡ଼ାକୁ ନେଇ ସ୍ୱାଧୀନ ସରକାର ବିଧିବଦ୍ଧ କାର୍ଯ୍ୟ ଆରମ୍ଭ କଲା । ଏହି ତିନି ଥାନାକୁ ଦେଶର ଅନ୍ୟ ଅଞ୍ଚଳରୁ ସଂପୂର୍ଣ୍ଣ

ବିଚ୍ଛିନ୍ନକରିଦିଆଗଲା । ଏହି ଜାତୀୟ ସରକାରର ମୁଖ୍ୟ ହେଲେ ଶ୍ରୀ ଅଜୟ ମୁଖାର୍ଜି । ଏଥିରେ ସ୍ୱରାଷ୍ଟ୍ର, ଶିକ୍ଷା, ଚିକିତ୍ସା, ଜେଲଖାନା, ଡାକ, ସମ୍ବାଦପତ୍ର ଓ ଦେଶରକ୍ଷା ପ୍ରଭୃତି ବିଭିନ୍ନ ବିଭାଗ ରହିଥିଲା । ବିଦ୍ୟୁତ୍‌ବାହିନୀ ଓ ଭଗିନୀ ସେନା ଥିଲେ ସୈନ୍ୟବାହିନୀର ମୁଖ୍ୟ ଦୁଇଟି ବିଭାଗ । ଇଂରେଜ ସରକାରକୁ ଅଚଳ କରିଦେବାକୁ ୩୨ଟା ପୋଲ ଭାଙ୍ଗିଦିଆଯାଇଥିଲା । ୨୭ ମାଇଲ ଲମ୍ବ ଟେଲିଗ୍ରାମ ଲାଇନ ଉଠାଇ ଦିଆଯାଇଥିଲା ଓ ୧୯୫ଟା ଟେଲିଗ୍ରାମ ଟେଲିଫୋନ ଖୁଣ୍ଟି ଉପାଡ଼ି ଦିଆଗଲା । ଫଳରେ ସରକାରର କୌଣସି ଶାସନ ଆଉ ଚଳିଲା ନାହିଁ । ସେପ୍ଟେମ୍ବର ୨୯ ତାରିଖରେ ମେଦିନୀପୁର ଥାନା ଉପରେ ଚଢ଼ାଉକଲା ଏକ ବିରାଟ ଜନତା । ଚାରିଦିଗରୁ ଚାରିଟା ପ୍ରସେସନ ଆସିଲା । ବିଦ୍ୟୁତ୍ ବାହିନୀର ଆଠହଜାର ସୈନ୍ୟ ଥାନାକୁ ଦଖଲ କରିବାକୁ ଆଗେଇଆସିଲେ । ଗୁର୍ଖା ଓ ଗୋରା ସୈନ୍ୟଙ୍କ ସହ ଜାତୀୟ ସେନାମାନଙ୍କର ସଂଘର୍ଷ ହେଲା । ପୋଲିସ ଗୁଳିରେ ଆଠ ଜଣ ପ୍ରାଣହରାଇଲେ । ରାମଚନ୍ଦ୍ର ବେରା କ୍ଷତ- ବିକ୍ଷତ ହୋଇ ଥାନା ଆଗରେ ପଡ଼ିଥିଲେ । ତଥାପି ସେହି କ୍ଷତ ବିକ୍ଷତ ଅବସ୍ଥାରେ ଗୁରୁଣ୍ଡି ଗୁରୁଣ୍ଡି ବିପ୍ଳବୀ ରାମଚନ୍ଦ୍ର ଥାନା ବାରଣ୍ଡାକୁ ଉଠିଯାଇ ଚିତ୍କାର କଲେ ‘‘ଥାନା ଦଖଲ ହେଲା, ଥାନା ଦଖଲ ହେଲା’’ । କିନ୍ତୁ ସେତିକି କହି ଢ଼ଳିପଡ଼ିଲେ ରାମଚନ୍ଦ୍ର ଓ ତାଙ୍କର ଦେହରକ୍ଷାହେଲା ।

ଆଉ ଗୋଟିଏ ଦଳ ଆସିଲା ୭୩ ବର୍ଷ ବୟସ୍କା ମାତଙ୍ଗିନୀ ହାଜ୍ରାଙ୍କ ନେତୃତ୍ୱରେ । ତାଙ୍କର ଗୋଟିଏ ହାତରେ ଥିଲା ଜୟଶଙ୍ଖ ଓ ଅନ୍ୟ ହାତରେ ଥିଲା ଜାତୀୟପତାକା । ପୋଲିସର ଧମକ ସତ୍ତ୍ୱେ ଆଗେଇଗଲେ ମାତଂଗିନୀ । ହାତରେ ପୋଲିସର ଗୁଳି ବାଜିଲା; ତଥାପି ସେ ହଟିଲେ ନାହିଁ । ଦ୍ୱିତୀୟ ଗୁଳିରେ ଢଳିପଡ଼ିଲେ ମାତଂଗିନୀ । କିନ୍ତୁ ଶେଷପର୍ଯ୍ୟନ୍ତ ସେ ଜାତୀୟପତାକାକୁ ଧରିଥାନ୍ତି ଏବଂ କଣ୍ଠରେ ତାଙ୍କର ‘ବନ୍ଦେ...ମା... ତ... ରମ୍ ।’’ କୋଟି କୋଟି ପ୍ରଣାମ ତୁମଙ୍କୁ ମା’ ମାତଂଗିନୀ ଦେବୀ ! ଆଜିର ଝିଅମାନେ ହୁଏତ ବୁଝିପାରିବେନି ତାଙ୍କର ସେହି ଅପୂର୍ବ ଆତ୍ମତ୍ୟାଗ; ସେ ଅଚିନ୍ତନୀୟ ଦମ୍ଭ, ସାହସ ଓ ସେହି ପବିତ୍ର ଦେଶପ୍ରେମ । ଆଜିର ଯୁବକ କ’ଣ ଉପଲବ୍ଧି କରିପାରିବେ ଜଣେ ୧୩ ବର୍ଷ ବୟସର କିଶୋର ଲକ୍ଷ୍ମୀନାରାୟଣ ଦାସଙ୍କର ଦେଶାତ୍ମବୋଧ— ଯେ କି ସେହି ଥାନା ଆଗରେ ପୋଲିସର ବାୟନଟ୍ ଆଘାତରେ ପ୍ରାଣ ବିସର୍ଜନ କରିଥିଲେ ।

ଦକ୍ଷିଣପଟୁ ଆସିଲା ଆଉ ଏକ ବିରାଟ ଜନତା । ନେତା ନିରଞ୍ଜନ ଜାନା ଓ ପୂର୍ଣ୍ଣଚନ୍ଦ୍ର ମାଇତି । ଆହତ ହେଲେ ଦୁଇଜଣ । ସେମାନଙ୍କର ଶୁଶ୍ରୂଷା କରିବାକୁ ଧାଇଁଗଲେ ଭଗିନୀ ସେନାର ସ୍ୱେଚ୍ଛାସେବିକାଗଣ ।

ଦକ୍ଷିଣ-ପଶ୍ଚିମ ଦିଗରୁ ମଧ ମାଡ଼ିଆସିଲା ଗୋଟାଏ ପ୍ରସେସନ । ପ୍ରାୟ ୩୦ ହଜାର ଲୋକଙ୍କର ବିରାଟ ଜନତା ଥାନା ଉପରେ ଝାମ୍ପଦେଲେ । ଲାଗିଲା ଜନତା ସହ ପୋଲିସର ସଂଘର୍ଷ— ଶେଷରେ ଥାନା ଦଖଲ ହେଲା ।

ମହୀଷାଦଳ ଥାନାରେ ମଧ ସେହି ଅବସ୍ଥା । ବେଲକାନୀ, ବୃନ୍ଦାବନ, ଭଗବାନପୁର ଓ କେଶପୁର ଥାନା ଉପରେ ଚଢ଼ାଉହେଲା । ବିଦ୍ୟୁତ୍ ବାହିନୀ ଓ ଭଗିନୀ ସେନା ଦଖଲକଲେ

ସୂତାହାଟ ଥାନା । ସବୁ ପୋଲିସଙ୍କୁ ଗିରଫ କରାଗଲା । ୬ଟା ରାଇଫେଲ ଓ କେତେକ ତରବାରି ଜବତ ହେଲା; ଶେଷରେ ଥାନାକୁ ପୋଡ଼ି- ଦିଆଗଲା । ଅନ୍ୟ କୌଣସି ଉପାୟ ନପାଇ ସରକାର ସେଠାରେ ବୋମାବର୍ଷଣ କଲା; କିନ୍ତୁ ଅଧିକାଂଶ ବୋମା ପଡ଼ିଲା ମହୀଷାପାଟ ପୋଖରୀରେ । ରାଗରେ ଲୋକେ ଖାସମାହାଲ ଓ ୟୁନିୟନ ବୋର୍ଡ଼ ଅଫିସରେ ନିଆଁ ଲଗାଇ ଦେଲେ । ନନ୍ଦୀପୁର, କାନ୍ଥୀ, ଖେଜୁରୀପଦା, ଭଗବାନପୁର ଥାନା ଦଖଲ କରିଗଲେ ବିପ୍ଳବୀମାନେ । ପଟାଶପୁର ଥାନାର ପୋଲିସ ଦାରୋଗା ସ୍ତ୍ରୀବେଶରେ ପଳାଇଯାଇଥିଲେ । ଖେଜୁରି ଓ ଭଗବାନପୁର ଥାନାର ୧୧ ଜଣ ପୋଲିସଙ୍କୁ ନିରସ୍ତ୍ର କରି ଜାତୀୟ ସରକାର ସେମାନଙ୍କୁ ଜେଲଦଣ୍ଡ ଦେଇଥିଲା ।

ଡେବରା, ପିଙ୍ଗଲା, ଗଡ଼ଦେବତା ଓ ଖଡ୍‌ଗପୁର ଥାନାରେ ସମାନ ଅବସ୍ଥା । ଏହିଭଳି ଭାବରେ ଦୀର୍ଘଦିନଧରି ମେଦିନୀପୁର ଜିଲ୍ଲାର ଅଧିକାଂଶ ଅଞ୍ଚଳରୁ ଇଂରେଜ ଶାସନ ଲୋପପାଇଗଲା । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଅଜୟ ମୁଖାର୍ଜୀ ଇସ୍ତଫା ଦେବା ପର୍ଯ୍ୟନ୍ତ ଜାତୀୟ ସରକାର ବିଧିବଦ୍ଧ ଭାବରେ ଚାଲିଥିଲା ।

**ଆସାମ –**

କ୍ଷୁଦ୍ର ଏବଂ ଶିକ୍ଷାଦିଗରେ ଅନୁନ୍ନତ ବୋଲି କୁହାଯାଉଥିଲା ଆସାମ ପ୍ରଦେଶ 'ଅଗଷ୍ଟ-ବିପ୍ଳବ'ରେ ଯେଉଁ ଅଭୂତପୂର୍ବ ଆତ୍ମତ୍ୟାଗ ଓ ସାହସ ପ୍ରଦର୍ଶନ କରିଥିଲା, ତାହା ଜାଣିଲେ ଯେକୌଣସି ଭାରତୀୟ ଗର୍ବବୋଧକରିବ ।

ଆସାମର ଗୋଆଲପଡ଼ା ଠାରେ ପ୍ରଥମେ ଶୁଣାଗଲା ବିପ୍ଳବର ପ୍ରତିଧ୍ୱନି । ଛାତ୍ରମାନଙ୍କର ଏକ ବିରାଟ ସଭାରେ ସେଦିନ ଆଲୋଚନା ହେଲା ବିପ୍ଳବର ପ୍ରସ୍ତୁତି ସମ୍ପର୍କରେ । ସଭାଟି ସଂପୂର୍ଣ୍ଣରୂପେ ଶାନ୍ତିପୂର୍ଣ୍ଣ ଥିଲା; କିନ୍ତୁ ଅଦୂରଦର୍ଶୀ ପୋଲିସ ହଠାତ୍ ଅତର୍କିତ ଭାବରେ ସଭା ଉପରକୁ କୁଦିପଡ଼ିଲେ ଲାଠି, ବନ୍ଧୁକ ଓ ସଂଗୀନ ଦେଖାଇ । ଫଳରେ ଆହତ ହେଲେ ୯ଜଣ ଛାତ୍ର ।

ପ୍ରତିବାଦରେ ଗର୍ଜିଉଠିଲା ଆସାମର ଗାଁଗହଳ । ପୋଲିସର ଲାଠି ବନ୍ଧୁକକୁ ବେଖାତିର କରି ବିଦ୍ରୋହୀ ଜନତା ଦରଂଗ ଜିଲ୍ଲର ଅଧିକାଂଶ ଥାନା ଦଖଲ କରିଯାଇ- ଥିଲେ । ୨୦ ଅଗଷ୍ଟରେ ବେଜବି ଗ୍ରାମରେ ମିଲିଟାରୀ ଚଢ଼ାଉକଲା । ଦୁଇଜଣ ଗ୍ରାମବାସୀ ସହିଦହେଲେ । ପ୍ରାୟ ୪୦୦ ନରନାରୀଙ୍କୁ ବନ୍ଧୁକ ଦେଖାଇ ପୋଲିସ ୯ ମାଇଲ ଦୂର ଥାନାକୁ ଯିବା ପାଇଁ ବାଧ୍ୟକଲା । ସେମାନଙ୍କ ମଧ୍ୟରୁ ଜଣେ ଥିଲେ ସଦ୍ୟ-ପ୍ରସୂତୀ ଜନନୀ ଏବଂ ତାଙ୍କର ତିନିଦିନର ଗୋଟିଏ ଶିଶୁ । ଶିଶୁଟି ରାସ୍ତାରେ ମୃତ୍ୟୁବରଣ କରି 'ଅଗଷ୍ଟ-ବିପ୍ଳବ'ରେ ସମ୍ଭବତଃ କନିଷ୍ଠତମ ସହିଦ ହେବାର ଗୌରବ ଅର୍ଜନ କରିଥିଲା । ପୋଲିସର ଏହି ଅମାନୁଷିକ କାର୍ଯ୍ୟରେ ଲୋକେ ଅଧିକ ଉତ୍ତ୍ୟକ୍ତ ହୋଇଗଲେ । ୨-୩ ଦିନ ଭିତରେ ପ୍ରସ୍ତୁତ ହୋଇ ଲୋକେ ସରଭୋଗ ବିମାନଘାଟିକୁ ସଂପୂର୍ଣ୍ଣରୂପେ ଧ୍ୱଂସକରିଦେଲେ । ଖାଲି ସେତିକି ନୁହେଁ, କେତେ ଡାକବଙ୍ଗଳା ଓ ସରକାରୀ ବାସଭବନ ବିଦ୍ରୋହୀମାନଙ୍କ ହାତରେ ଧ୍ୱଂସସ୍ତୂପରେ ପରିଣତ ହେଲା ।

ସେପ୍‌ଟେମ୍ବର ୧୬ ତାରିଖରେ ଲୋକେ ଏକତ୍ରିତ ହେଲେ ବହରମପୁର ସହରରେ । ଶୋଭାଯାତ୍ରା ଚାଲିଲା । ଆଗରେ ଥିଲେ ଭଉଣୀ ରତ୍ନମାଳା ଓ ଅନ୍ୟ- କେତେକ ବୀରାଂଗନା । ମିଲିଟାରୀ ସହ ସଂଘର୍ଷହେଲା । ଆଶ୍ଚର୍ଯ୍ୟର କଥା, ବ୍ରିଟିଶ ମିଲିଟାରୀର ଦୁର୍ଦ୍ଧର୍ଷ ଆକ୍ରମଣକୁ ଅବଜ୍ଞାକରି ଆଗେଇଚାଲିଥାନ୍ତି ରତ୍ନମାଳା ଓ ତାଙ୍କର ସାଥୀମାନେ । ଗୁଳିରେ ଆହତ ହେଲେ ରତ୍ନମାଳା । କିନ୍ତୁ ହାତରୁ ଜାତୀୟ ପତାକା ଛାଡ଼ିଲେନି । ବୃଦ୍ଧା ଜଣେ ମଧ୍ୟ ଆତ୍ମତ୍ୟାଗ କଲେ ସେଇଠି ।

ଧାଇଁଆସିଲେ ଯୁବଗୋଷ୍ଠୀ, ଅଗଷ୍ଟ-ବିପ୍ଳବର ପାୟୋନିୟର ତରୁଣଦଳ । ଗୁଳିରେ ପ୍ରାଣଦେଲେ ଦୁଇ ଭାଇ ବାଲ୍ଲରାମ ଓ ଥାନୁରାମ । ଲକ୍ଷ୍ମୀରାମ ହେଉଛନ୍ତି ଆଉ ଜଣେ ତେଜୀୟାନ୍ ଯୁବକ, କିନ୍ତୁ ଗରିବ ଓ ନିଃସ୍ୱ । ସେ ଦେଶପାଇଁ କେବଳ ଜୀବନ ଦେଇ ନଥିଲେ, ମୃତ୍ୟୁ ପୂର୍ବରୁ କହିଗଲେ- ''ପକେଟରେ ମୋର ଯଥାସର୍ବସ୍ୱ ଛ'ଟି ପଇସା ମାତ୍ର ଅଛି । ସେତକ ଦେଶକାମରେ ଲଗାଇଦେବ ।'' ମାତ୍ର ଛ'ଟି ପଇସା- କିନ୍ତୁ କେତେ ପ୍ରାଣବନ୍ତ, କେତେ ଦରଦ, କେତେ ମୂଲ୍ୟ ସେ ଛ'ଟି ପଇସାରେ !

ବର୍ମା ସୀମାନ୍ତକୁ ଯାଉଥିବା ବ୍ରିଟିଶ ମିଲିଟାରୀକୁ ଲୋକେ ବାସନ୍ଦକରିଥିଲେ । ନେତାଜୀଙ୍କ ନିର୍ଦ୍ଦେଶ, ''ଯୁଦ୍ଧ ଆୟୋଜନକୁ ବିକଳକରିଦିଅ ।'' ସୁତରାଂ ମିଲିଟାରୀକୁ ଖାଦ୍ୟଦ୍ରବ୍ୟ, ଏପରି କି ପିଇବା ପାଣି ଯୋଗାଣ ମଧ୍ୟ ବନ୍ଦକରିଦିଆଯାଇଥିଲା ଗ୍ରାମବାସୀଙ୍କ ପକ୍ଷରୁ । ଉତ୍ୟକ୍ତ ସୈନ୍ୟମାନେ ଅତ୍ୟାଚାରକଲେ ଲୋକମାନଙ୍କ ଉପରେ । ପୋଲିସ ବୟନଟ୍‌ର ଆଘାତରେ ଶହ ଶହ ଲୋକ ଅକର୍ମଣ୍ୟ ହେଲେ, କିନ୍ତୁ ଓହରିଗଲେ ନାହିଁ ଅଟଳ ପ୍ରତିଜ୍ଞାରୁ ।

ଅଗଷ୍ଟ ୨୦ ତାରିଖରେ ଗୋହପୁର ଥାନା ଦଖଲବେଳେ କୁମାରୀ କନକଲତା ନାମ୍ନୀ ବିପ୍ଳବିଣୀ ପ୍ରାଣଦେଲେ । ତାଙ୍କ ପରେ ପ୍ରାଣଦେଲେ ମୁକୁନ୍ଦ କାକତି । ସେହିଦିନ ଢେକିଆଝୁଲି ଥାନା ଆକ୍ରମଣ ବେଳେ ସହିଦ ହେଲେ ୧୨ ବର୍ଷର ଝିଅ ଫୁଲେଶ୍ୱରୀ ଏବଂ ତାଙ୍କ ସହ ସହିଦହେଲେ ଆଉ କୋଡ଼ିଏଜଣ । ସ୍ଥାନୀୟ ବଜାରରେ ମିଲିଟାରୀ ପକ୍ଷରୁ ଗୁଳିବର୍ଷଣ ହେଲା । ୧୬ ଜଣ ସହିଦ ହେଲେ ଏବଂ ସେମାନଙ୍କ ମଧ୍ୟରୁ ତିନିଜଣ ହେଉଛନ୍ତି ମହିଳା ।

୨୧ ତାରିଖରେ ତେଜପୁର ମଇଦାନରେ ହେଲା ପ୍ରତିବାଦ ସଭା । ଜନତା ସମସ୍ତ ରାସ୍ତା ଅବରୋଧ କରିଦେଇଥିଲେ । ତଥାପି ମିଲିଟାରୀ ଅବରୋଧ ଭାଙ୍ଗି ସଭା ଉପରେ ଗୁଳି ବର୍ଷଣ କଲେ ଓ ଶତାଧିକ ହେଲେ ମୃତାହତ । ଜୋରହାଟ ଜେଲ ଭିତରେ ଲାଠିଚାର୍ଯ ହୋଇଥିଲା ରାଜନୈତିକ ବନ୍ଦୀମାନଙ୍କ ଉପରେ; ଫଳରେ ଖୁବ୍ କମ୍‌ରେ ୧୮୧ ଜଣ ବନ୍ଦୀ ଆହତ ହୋଇଥିଲେ ।

ଏହି ଦୁଇମାସ ଭିତରେ ଗଢ଼ାସରିଥିଲା 'ମୃତ୍ୟୁବାହିନୀ' ଏବଂ ସେହି ବାହିନୀ ନେତୃତ୍ୱରେ ଆରମ୍ଭହେଲା ପାଲଟା ଆକ୍ରମଣ । ରେଳଲାଇନ, ସରକାରୀ ବଙ୍ଗଲୋ, ପୋଷ୍ଟ ଅଫିସ, ଏପରିକି ସେନାନିବାସ ଓ ବିମାନଘାଟି ମଧ୍ୟ 'ମୃତ୍ୟୁବାହିନୀ' ଧ୍ୱଂସ କରିଦେଇଥିଲେ ।

ଯୁଦ୍ଧ-ସରଞ୍ଜାମ ନେଇ ଯାଉଥିବା ଚଳନ୍ତା ଟ୍ରେନ୍‌କୁ ମଧ୍ୟ 'ମୃତ୍ୟୁବାହିନୀ' ଓଲଟାଇଦେଇଥିଲେ ।

ପାହାଡ଼ିଆ ଜାତିର ନେତା କମଲମିରି ଜେଲରେ ଅସୁସ୍ଥ ହୋଇପଡ଼ିଲେ । ବଣ୍ଡ୍ ଲେଖି ଖଲାସ ହେବାକୁ ତାଙ୍କୁ କୁହାଯାଇଥିଲା । ତାଚ୍ଛଲ୍ୟ ଭାଷାରେ ସେ ସେହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ଶେଷରେ ବିନା ଚିକିତ୍ସାରେ ସେ ଜେଲ ଭିତରେ ମୃତ୍ୟୁବରଣ କରିଥିଲେ ।

ଆସାମର ଅନ୍ୟତମ ବିପ୍ଳବୀ କୋଶଲ୍ କାନଓ୍ୱାରଙ୍କର ତ୍ୟାଗ ସ୍ୱର୍ଣ୍ଣାକ୍ଷରରେ ଲିଖିତ ହୋଇ ରହିଅଛି । ତାଙ୍କର ସେହି ଜେଲ ଭିତରେ ଫାଶୀ ହୋଇଥିଲା । ମୃତ୍ୟୁପୂର୍ବରୁ ସେ ଯେଉଁ ଆଗ୍ନେୟ ବାଣୀ ଶୁଣାଇଥିଲେ, ତାହା ସବୁ ଯୁଗରେ, ସବୁ ଦେଶରେ, ସବୁ ବିପ୍ଳବୀଙ୍କ ପକ୍ଷରେ ଚିରସ୍ମରଣୀୟ "ମୃତ୍ୟୁ ମନୁଷ୍ୟର ଅନିବାର୍ଯ୍ୟ ପରିଣତି । ମୁଁ ଭାଗ୍ୟବାନ୍ ଯେ, ଦେଶପାଇଁ ପ୍ରାଣ ଦେବାର ସୌଭାଗ୍ୟ ଅର୍ଜନ କରିଛି । ଈଶ୍ୱରଦତ୍ତ ଏହି ଅଶେଷ କରୁଣା ମୁଁ ନମ୍ର ଭାବରେ ଗ୍ରହଣ କରୁଅଛି । ତୁମ୍ଭେମାନେ ଯେପରି ଅଟକି ନଯାଅ । ସଂଗ୍ରାମ ଚଳାଅ ।"

**ଉତ୍ତରଭାରତ —**

ଉତ୍ତର ପ୍ରଦେଶର ବାଲିଆଠାରେ ପ୍ରତିଷ୍ଠିତ ଜାତୀୟ ସରକାର 'ଅଗଷ୍ଟ-ବିପ୍ଳବ'ର ଏକ ଉଲ୍ଲେଖନୀୟ ଅବଦାନ । ବିପ୍ଳବୀମାନଙ୍କର ସଙ୍ଗଠିତ ଆନ୍ଦୋଳନ ଓ ସରକାରୀ ଭବନଗୁଡ଼ିକ ଉପରେ ଅଚାନକ ଚଢ଼ାଉ ଫଳରେ ଇଂରେଜ ସରକାରର ଅସ୍ତିତ୍ୱ ଲୋପପାଇଯାଇଥିଲା । ଅଗଷ୍ଟ ୧ ୯ ତାରିଖ ଦିନ ବାଲିଆ ମାଜିଷ୍ଟ୍ରେଟଙ୍କୁ ବିଦ୍ରୋହୀମାନେ ବନ୍ଦୀକରିଥିଲେ । ତା' ପୂର୍ବରୁ ଜିଲ୍ଲା ମାଜିଷ୍ଟ୍ରେଟ ବିପ୍ଳବୀମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ଲୋକେ ସାରା ଜିଲ୍ଲାରେ ଖଜଣାବନ୍ଦ କରିଦେଇଥିଲେ ଓ ଜଙ୍ଗଲ-ଆଇନ ଅମାନ୍ୟ କରିଥିଲେ ।

ମଧ୍ୟ ପ୍ରଦେଶର ଅଷ୍ଟି ଓ ଚିମୁରଠାରେ ସରକାରପକ୍ଷରୁ ଯେଉଁ ପୈଶାଚିକ ଅତ୍ୟାଚାର ହୋଇଥିଲା, ତାହା ଯେକୌଣସି ଦେଶପକ୍ଷରେ ଏକ ଦୁଃଖଦାୟକ ଘଟଣା ଓ ଯେକୌଣସି ଅତ୍ୟାଚାରୀ ଶାସକପକ୍ଷରେ ଏକ ଲଜ୍ଜାଜନକ କାର୍ଯ୍ୟ । ଏହି ଅମାନୁଷିକ ଅତ୍ୟାଚାର ବିରୁଦ୍ଧରେ ସମଗ୍ର ଜାତି ସେଦିନ ପ୍ରତିବାଦରେ ମୁଖର ହୋଇଉଠିଲା । ଦେଶର ସମସ୍ତ ସମ୍ବାଦପତ୍ର ଏହାର ପ୍ରତିବାଦରେ ଗୋଟିଏ ଦିନ ପ୍ରକାଶନ ବନ୍ଦ କରିଦେଇଥିଲେ । ଅଧ୍ୟାପକ ଭାନ୍ସାଲି ୬୩ ଦିନ କାଳ ଅନଶନ କରି ଶେଷରେ ଆତ୍ମବିସର୍ଜନ କରିଥିଲେ । ଡାକ୍ତର ମୁଞ୍ଜେ ଓ ଘାଟେଙ୍କ ନେତୃତ୍ୱରେ ଗଠିତ ତଦନ୍ତ କମିଟି ଅନୁସନ୍ଧାନ କରି ଯେଉଁ ରିପୋର୍ଟ ଦେଇଥିଲେ, ତାହା ପାଠକଲେ ଲୋମ ଟାଙ୍କୁରିଉଠେ । ୧୩୦ ଜଣ ବିପ୍ଳବୀଙ୍କୁ ଗୋଟିଏ ଛୋଟ ଘରଭିତରେ ଆବଦ୍ଧ ରଖାଯାଇଥିଲା; ଫଳରେ କ୍ଲାଇବଙ୍କ 'ଅନ୍ଧକୂପହତ୍ୟା' ଭଳି ସକାଳୁ ଅଧିକାଂଶ ବିପ୍ଳବୀଙ୍କୁ ମୃତ ଅବସ୍ଥାରେ ବାହାରକରାଗଲା । ନାରୀମାନଙ୍କ ଉପରେ ପାଶବିକ ଅତ୍ୟାଚାର ଆହୁରି ଲୋମହର୍ଷଣକାରୀ ।

ଉତ୍ତ୍ୟକ୍ତ ଜନତା ରାମଟେକ ଷ୍ଟେସନକୁ ଆକ୍ରମଣକରି ଧ୍ୱଂସ କରିଦେଇଥିଲେ । ଜଣେ ପୋଲିସ ଏ.ଏସ୍. ଆଇ.କୁ ଲୋକେ ଗିରଫକରିଥିଲେ । ଏହି ସମୟରେ ନାଗପୁରରୁ ଜଣେ ପୋଲିସ ଏ.ଏସ୍. ଆଇ. ଆସି ପହଞ୍ଚିଗଲେ । ଲୋକେ ତାଙ୍କୁ ମଧ୍ୟ କାବୁକରିନେଇଥିଲେ । ଉଭୟ ପୋଲିସବାଲାଙ୍କ ମୁଣ୍ଡରେ ଗାନ୍ଧିଟୋପି ପିନ୍ଧାଇ ଏବଂ ହାତରେ ଜାତୀୟପତାକା ଧରାଇଦେଇ ଚଲାଇଥିଲେ । ସେମାନଙ୍କୁ 'ମହାତ୍ମା ଗାନ୍ଧି କୀ ଜୟ' ସ୍ଲୋଗାନ ଦେଇ ଶୋଭାଯାତ୍ରାର ନେତୃତ୍ୱ ନେବାକୁ ପଡ଼ିଥିଲା । କଚେରି ଦଖଲହେଲା ଏବଂ ଲୁଟ୍ ହେଲା ସରକାରୀ ଖଜଣାଖାନା । ଚିମୁରଠାରେ ଉତ୍ତ୍ୟକ୍ତ ଜନତା ଜଣେ ପୋଲିସ ଏସ୍. ଆଇ., ଜଣେ କନେଷ୍ଟବଳ, ଚିମୁରର ଏସ. ଡି. ଓ. ଓ ନାଏବ ତହସିଲଦାରଙ୍କୁ ହତ୍ୟାକରିଥିଲେ । ସରକାର ନିରୁପାୟ ହୋଇ ଉଡ଼ାଜାହାଜରୁ ବୋମାବର୍ଷଣ କଲା । ଅଷ୍ଟୀ ଓ ଚିମୁରଠାରେ ଥରେ ୧୩ ଜଣଙ୍କୁ ଫାଶୀଦଣ୍ଡ, ୨୬ ଜଣଙ୍କୁ ଦ୍ୱୀପାନ୍ତର ଓ ଅନ୍ୟ ଦଫାରେ ୧୬ ଜଣଙ୍କୁ ଫାଶୀଦଣ୍ଡ ଓ ୧୭ ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା ।

ନାଗପୁର ସହର ତିନିଦିନ ପାଇଁ ଜାତୀୟ ସରକାର ଅଧୀନକୁ ଆସିଥିଲା । ଯୁକ୍ତ-ପ୍ରଦେଶର ଆଲିଗଡ଼ଠାରେ ଦୁଇଜଣ, ବନାରସରେ ଜଣେ, ମୁଜାଫରପୁର ଜେଲ ସଂଘର୍ଷରେ ୬ ଜଣ ବନ୍ଦୀ ଓ ୨ ଜଣ ପୋଲିସ ନିହତ ହୋଇଥିଲେ । ଯୁକ୍ତପ୍ରଦେଶରେ ସର୍ବ ମୋଟ ୧୬ଜଣ ପୋଲିସ ଅଫିସର ବିପ୍ଲବୀମାନଙ୍କ ହାତରେ ପ୍ରାଣଦେଇଥିଲେ ଓ ୩୨ ଜଣ ଆହତ ହୋଇଥିଲେ । ସର୍ବମୋଟ ୧୫ଟି ରେଳ ଷ୍ଟେସନ ଧ୍ୱଂସ ହୋଇଥିଲା । ୧୬ଟି ସ୍ଥାନରେ ରେଳଲାଇନ ଓଲଟାହୋଇଥିଲା ଏବଂ ଅନ୍ୟୂନ ୫୨୪ଟି ପୋଷ୍ଟ ଅଫିସ ପୋଡ଼ାହୋଇଥିଲା । ନାଗପୁରରେ ମଧ୍ୟ ୬ ଜଣ ଓ ୱାର୍ଦ୍ଧାରେ ୫ଜଣ ପୋଲିସ- ଗୁଳିରେ ପ୍ରାଣଦେଇଥିଲେ ।

ଏତଦ୍‌ବ୍ୟତୀତ ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ ମଧ୍ୟ 'ଅଗଷ୍ଟ-ବିପ୍ଲବ' ବ୍ୟାପକ ଭାବେ ହୋଇଥିଲା । ଆକୁମାରୀ ହିମାଳୟ କୌଣସି ପ୍ରଦେଶ ବା ସହର 'ବିପ୍ଲବ'ରୁ ବାଦ୍ ପଡ଼ିନଥିଲା ।



## ଅଧ୍ୟାୟ - ଚାଳିଶ

# ଦୁର୍ଭାଗ୍ୟଜନକ

ଦେଶଭିତରେ ଚାଲିଥିବା ଜୀବନ-ମରଣ ସଂଗ୍ରାମରେ ପ୍ରବାସୀ ଭାରତୀୟମାନେ ଚୁପ୍ ହୋଇ ବସିନଥିଲେ । ବର୍ଲିନରୁ ନେତାଜୀ ଓ ପୂର୍ବ-ଏସିୟାରୁ ରାସବିହାରୀ ରେଡ଼ିଓରେ ବାରମ୍ବାର ୪୨-ଆନ୍ଦୋଳନ ସମ୍ପର୍କରେ ଦେଶବାସୀଙ୍କୁ ପରାମର୍ଶ ଦେଇ ଆସୁଥିବା କଥା ପୂର୍ବ ଅଧ୍ୟାୟମାନଙ୍କରେ ବର୍ଣ୍ଣନାକରାଯାଇଅଛି ।

କିନ୍ତୁ ସେତିକିରେ ରାସବିହାରୀ ସନ୍ତୁଷ୍ଟ ନ ଥିଲେ । 'ଆଜାଦ ହିନ୍ଦ୍ ବାହିନୀ'ର ସମର-ପ୍ରସ୍ତୁତି ଏବଂ ପ୍ରବାସୀ ଭାରତୀୟ ଆନ୍ଦୋଳନ ସମ୍ପର୍କରେ ଇଂରେଜର ଅପପ୍ରଚାରର ପ୍ରତିକାର କରିବାକୁ କେତେକ ବିପ୍ଳବୀଙ୍କୁ ଭାରତ ପଠାଇବା ଦରକାର ବୋଲି ସେ ଅନୁଭବକଲେ । ଏହି ଦୁଃସାହସିକ ଅଭିଯାନରେ ଅଂଶ ଗ୍ରହଣ କରିବାକୁ ଚଉଦ ଜଣ ଯୁବ-ବିପ୍ଳବୀଙ୍କୁ ବଛାଯାଇଥିଲା । ସେମାନେ ସ୍ଥଳପଥ ଓ ଜଳପଥରେ ଚାରିଗୋଟି ଦଳରେ ବିଭକ୍ତ ହୋଇ ଯିବା କଥା ସ୍ଥିରହୋଇଥିଲା । ସମସ୍ତ ଅଭିଯାନର ନେତୃତ୍ୱ ଦିଆଯାଇଥିଲା କ୍ୟାପ୍ଟେନ ମୋହନ ସିଂଙ୍କର ଏକାନ୍ତ ବନ୍ଧୁ ମେଜର ମହାବୀର ସିଂ ଧିଲନଙ୍କୁ । ସ୍ଥଳପଥରେ ଯାଉଥିବା ଦୁଇଟି ଦଳ ବର୍ମା ଭିତର ଦେଇ ବଙ୍ଗଳା ଓ ଆସାମରେ ପହଞ୍ଚିବେ ଓ ଜଳପଥରେ ପଶ୍ଚିମ ଭାରତୀୟ ଉପକୂଳରେ ପହଞ୍ଚି ଅଭ୍ୟନ୍ତରକୁ ଯିବେ । ସ୍ଥଳପଥର ପ୍ରଥମ ଦଳ କାଲେୟା ଓ ଚୀନ ପାହାଡ଼ ଦେଇ ଇମ୍ଫାଲରେ ପହଞ୍ଚିବେ ଓ ଅନ୍ୟ ଦଳଟି ଆରାକାନ ଓ ଆକାୟବ ବାଟେ ପୂର୍ବ-ବଙ୍ଗର କକ୍ସ ବଜାରରେ ପହଞ୍ଚିବାର ଯୋଜନା ହୋଇଥିଲା ।

ସ୍ଥଳପଥରେ ନେତୃତ୍ୱ ନେଇଥିଲେ ମେଜର ଧିଲନ୍ ଏବଂ ତାଙ୍କ ଅଧୀନରେ ଥିଲେ ଆଉ ଛ'ଜଣ ବିପ୍ଳବୀ । ଚାରିଜଣିଆ ଦଳଟି ୧୯୪୨ ଅକ୍ଟୋବର ୬ ତାରିଖରେ ଚିଟାଗଞ୍ଜରେ ପହଞ୍ଚିଥିଲେ । କିନ୍ତୁ ମେଜର ଧିଲନ ଚରମ ବିଶ୍ୱାସଘାତକତାକଲେ । ଯିବା ରାସ୍ତାରେ ସେ ଇଂରେଜ ସୈନ୍ୟ ଶିବିରରେ ଆଶ୍ରୟନେଇ ରାସବିହାରୀଙ୍କର ସବୁ ପ୍ଲାନ୍ ପ୍ରୋଗ୍ରାମ କଥା ଇଂରେଜ କର୍ତ୍ତୃପକ୍ଷଙ୍କୁ ଜଣାଇଦେଲେ । ତେଣୁ ଅନ୍ୟ ଦଳଟି ଆକାୟବ ବନ୍ଦର ବାଟେ କକ୍ସ ବଜାରରେ ପହଞ୍ଚିବାବେଳକୁ ସେମାନଙ୍କୁ ଧରିବା ସହଜ ହେଲା । ଏ ସମ୍ପର୍କରେ ମେଜର ଜେନେରାଲ ଏ.ସି. ଚାଟାର୍ଜି ଲେଖିଛନ୍ତି, ''ଯେଉଁମାନେ ମେଜର ଧିଲନଙ୍କ ପ୍ରରୋଚନାରେ ବିଶ୍ୱାସଘାତକତା କରିଥିଲେ ସେହିମାନଙ୍କଠାରୁ ସମ୍ବାଦ ପାଇ ଇଂରେଜ ସୈନ୍ୟମାନଙ୍କ ପକ୍ଷରେ ବିପ୍ଳବୀମାନଙ୍କୁ ଧରିବା ସହଜ ହୋଇଥିଲା ।''(1)

---

1. A.C. Chhaterji - India's Struggle for Freedom , Pg. 102

ପଶ୍ଚିମ ଉପକୂଳକୁ ଯାଇଥିବା ଗୋଟିଏ ଦଳରେ ଥିଲେ ଏମ.ଏ. କାଦିର, ଏସ. ଏ. ଆନନ୍ଦନ ଏବଂ ଅନ୍ୟ ତିନିଜଣ ବିପ୍ଲବୀ ଓ ଅନ୍ୟ ଦଳରେ ଥିଲେ ସତ୍ୟେନ ବର୍ଦ୍ଧନ ଓ ଅନ୍ୟ ଚାରିଜଣ । ସେମାନଙ୍କୁ ସବ୍‌ମ୍ୟାରିନରେ-ବର୍ମାରୁ ଭାରତ ମହାସାଗର ଦେଇ ସିଂହଳର ଦକ୍ଷିଣ ପଟ ବାଟେ ଆରବ ସାଗରର କାଥିଆୱାଡ଼ ଉପକୂଳରୁ ପାଞ୍ଚମାଇଲ ଦୂରରେ ରବର ବୋଟ୍‌ରେ ଓହ୍ଲେଇ ଦିଆଯାଇଥିଲା । ବିପ୍ଲବୀମାନେ ନିର୍ବିଘ୍ନରେ ସବ୍‌ମାରିନ୍‌ଯାତ୍ରା ସମାପ୍ତକରି ରବର ବୋଟଗୁଡ଼ିକରେ ଭାସିଚାଲିଲେ ନୀଳ ସମୁଦ୍ର ଭିତରେ । ସମ୍ମୁଖରେ ମାତୃଭୂମି ଭାରତର ନୀଳଚକ୍ରବାଳ । ମାତୃଭୂମିର ମୁକ୍ତିସାଧନ ପାଇଁ ସମସ୍ତଙ୍କ ମନରେ ଭୀଷ୍ମ ପ୍ରତିଜ୍ଞା । ଆସିଛନ୍ତି ସେମାନେ 'ଅଗଷ୍ଟ-ବିପ୍ଳବ'-ବିକ୍ଷୁବ୍ଧ ଭାରତବାସୀଙ୍କୁ ଶୁଣାଇବେ ପ୍ରବାସୀ ଭାରତୀୟମାନଙ୍କର ଅଭିନନ୍ଦନ ବାର୍ତ୍ତା— ''ବନ୍ଧୁଗଣ, ନିଜକୁ ଏକୁଟିଆ ମନେକରନାହିଁ । ତୁମମାନଙ୍କ ପଛରେ ଆମେ ଛିଡ଼ାହୋଇଛୁ ପୂର୍ବ-ଏସିଆର ୩୦ ଲକ୍ଷ ମୁକ୍ତିପାଗଳ ପ୍ରବାସୀ ଭାରତୀୟ; ଛିଡ଼ାହୋଇଛି ଅର୍ଦ୍ଧଲକ୍ଷ ସୁଶିକ୍ଷିତ 'ଆଜାଦ ହିନ୍ଦ୍ ବାହିନୀ'ର ଉଦ୍ୟତ ତରବାରି ଓ ଉଦ୍ୟତ କମାଣ, ବନ୍ଧୁକ ।''

ହୃଦୟ ସେ ଏଭଳି ଉତ୍କଣ୍ଠା ଓ ଉତ୍ସାହ ଭରି ଭାସିଚାଲିଛନ୍ତି ବିପ୍ଲବୀଗଣ ସେହି ଦିଗ୍‌ବଳୟଚୁମ୍ବୀ ଉତ୍ତାଳ ଆରବସାଗର ବୁକୁରେ । ଦୀର୍ଘଦିନ ବିଚ୍ଛେଦ ପରେ ସେମାନେ ଫେରୁଛନ୍ତି ମାତୃଭୂମିର ପବିତ୍ର କ୍ରୋଡ଼କୁ ଏବଂ ତା' ପୁଣି ମାତୃଭୂମିର ମୁକ୍ତି ଉଦ୍ଦେଶ୍ୟରେ । କେତେ ଭାଗ୍ୟମାନ୍ ସେମାନେ ! ଦେଶ୍‌ବାସୀ ଚରମ ସଂଗ୍ରାମରେ ଜୀବନ-ମରଣ ଯୁଦ୍ଧରେ ବ୍ୟାପୃତ । ଏହି ପବିତ୍ର ଯଜ୍ଞପୀଠରେ ନିଜକୁ ବଳିଦେଇପାରିଲେ ସେମାନଙ୍କର ଜୀବନ ଧନ୍ୟ ହେବ । କଣ୍ଠରେ ସେମାନଙ୍କର ସେଥିପାଇଁ ବଜ୍ର ଗମ୍ଭୀର ଘୋଷଣା— ''ହେ ଦେଶବାସୀ, ଆମେ ବର୍ମାଠାରୁ ଜାପାନ ପର୍ଯ୍ୟନ୍ତ, ବର୍ଲିନଠାରୁ ଆଫଗାନିସ୍ଥାନ ପର୍ଯ୍ୟନ୍ତ ପ୍ରବାସୀ ଭାରତୀୟମାନେ ପ୍ରତିଜ୍ଞା କରିଛୁ, ଇଂରେଜଶକ୍ତି ତୁମ୍ଭମାନଙ୍କୁ ବଳେଇଗଲେ ଆମେ ସେମାନଙ୍କୁ ଖତମ୍ କରିଦେବୁ । 'ଆଜାଦ ହିନ୍ଦ ବାହିନୀ' ଯଥାଶୀଘ୍ର ବର୍ମା ସୀମାନ୍ତ ଅତିକ୍ରମ କରି ଆସାମରେ ପ୍ରବେଶକରିବେ । ଆପଣମାନେ ନିରସ୍ତ୍ର, କିନ୍ତୁ 'ଆଜାଦ ହିନ୍ଦ୍ ବାହିନୀ' ସଶସ୍ତ୍ର ଅଭିଯାନ କରିବ । ଆମେ ଆସିବୁ ଆସାମ ଦେଇ ଏବଂ ଉତ୍ତର-ପୂର୍ବ ସୀମାନ୍ତ ପ୍ରଦେଶ ଦିଗରୁ ଆସିବେ ସ୍ୱୟଂ ନେତାଜୀ । ଆପଣମାନେ ଅପେକ୍ଷା କରନ୍ତୁ । ଚଳାଇଯାଆନ୍ତୁ ଏ ଲଢ଼େଇ ।'' 'ରାସବିହାରୀ ଭାରତର ଶତ୍ରୁ, ନେତାଜୀ ଭାରତର ଶତ୍ରୁ' ବୋଲି ଯେଉଁ ପ୍ରଚାର ଇଂରେଜ ସରକାର ଚଳାଇଛି, ତା'ର ଉପଯୁକ୍ତ ଜବାବ ଦିଅନ୍ତୁ ଆପଣମାନେ । ଇଂରେଜ ଦ୍ୱାରା ପ୍ରତାରିତ ହୋଇ ଯଦି ଆପଣମାନେ ପଥଚ୍ୟୁତ ହୁଅନ୍ତି, ତେବେ ଆସନ୍ତା ବହୁ ବର୍ଷ ପର୍ଯ୍ୟନ୍ତ 'ଭାରତର ସ୍ୱାଧୀନତା' ମରୀଚିକାରେ ପରିଣତ ହେବ । 'ବନ୍ଦେ ମାତରମ୍, ଜୟ ହିନ୍ଦ ।'

ରବର ବୋଟ ଚାଲିଛି । କ୍ରମେ ସନ୍ଧ୍ୟା ହୋଇଆସୁଛି । ଏହାହିଁ ଉପଯୁକ୍ତ ସମୟ ଉପକୂଳରେ ଓହ୍ଲେଇବା ପାଇଁ; କେହି ଦେଖିପାରିବେ ନାହିଁ, କେହି ଜାଣିପାରିବେ ନାହିଁ ।

''କ'ଣ ଏଗୁଡ଼ିକ ଭାସିଆସୁଛି ଉପକୂଳ ଆଡ଼କୁ ?'' ସମୁଦ୍ରକୂଳରେ ଛିଡ଼ା ହୋଇଥିବା ଗ୍ରାମବାସୀ ଦୁଇଜଣଙ୍କ ମନରେ ପ୍ରଶ୍ନ ! ''ସେମାନେ ଏ ଆଡ଼କୁ ଆସୁଛନ୍ତି କାହିଁକି ? କଣ ଏମାନଙ୍କର ମତଲବ ?'' ଅଶିକ୍ଷିତ ଗ୍ରାମବାସୀ ଦୁଇଜଣ ଡରିଗଲେ । ''ଲଢ଼େଇ ତ ଲାଗିଛି ବ୍ରିଟିଶର ଜର୍ମାନୀ ସଙ୍ଗରେ – ଏମାନେ କ'ଣ ସେହି ଜର୍ମାନୀ ସୈନ୍ୟ ନା ଡକାୟତ ? ହେ ଭଗବାନ୍ !'' ଗ୍ରାମବାସୀ ଦୁହେଁ ଦୌଡ଼ିଲେ ଗାଁ ଭିତରକୁ । ଗାଁଲୋକେ ଏକାଠି ହୋଇ ଦୌଡ଼ିଲେ ଥାନାକୁ ଖବର ଦେବେ– 'ଜର୍ମାନୀ ଆସିଛି । ଡକାୟତ ଆସୁଛନ୍ତି ।' ଖବରଟା ଥାନାରେ ପହଞ୍ଚିବାକୁ ବେଶୀ ସମୟ ଲାଗିଲା ନାହିଁ । ଖାଲି ପୋଲିସ ନୁହେଁ, ଦଳେ ସଶସ୍ତ୍ର ସୈନ୍ୟ ମଧ୍ୟ ପହଞ୍ଚିଗଲେ ସମୁଦ୍ରକୂଳରେ । ବିପ୍ଳବୀମାନେ ନିରୁପାୟ । ସମସ୍ତେ ଧରାହେଲେ ।

ପୂର୍ବ ଉପକୂଳ ଓ ପଶ୍ଚିମ ଉପକୂଳରେ ଧରାହୋଇଥିବା ସମସ୍ତ ବିପ୍ଳବୀଙ୍କୁ ମାନ୍ଦ୍ରାଜ ଫୋର୍ଟରେ ବନ୍ଦୀକରାଯାଇଥିଲା । ମାର୍ଚ୍ଚ ୮ ତାରିଖ ୧୯୪୩ରେ ସେମାନଙ୍କର ବିଚାର ହେଲା । ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧକରିବା ଓ ଶତ୍ରୁପକ୍ଷର ଗୁପ୍ତଚର ବୃତ୍ତି କରୁଥିବା ଅଭିଯୋଗରେ ସେମାନେ ଦଣ୍ଡିତହେଲେ । ତ୍ରିଭାଙ୍କୁଡ଼ର ଅବଦୁଲ କାଦିର, ବଙ୍ଗଳାର ଆନନ୍ଦନ ଓ ସତ୍ୟେନ ବର୍ଦ୍ଧନ, ପଞ୍ଜାବର ଫୌଜ ସିଂ ପ୍ରଭୃତିଙ୍କୁ ଫାଶୀଦଣ୍ଡ ଆଦେଶ ଦିଆଯାଇଥିଲା । ବିପ୍ଳବୀ କାଳୀଚରଣ ଘୋଷଙ୍କ ବିବରଣୀରେ ଏ ସମ୍ପର୍କରେ ଉଲ୍ଲେଖ ଅଛି– ''୧୯୪୩ ସେପ୍‌ଟେମ୍ବର ୧୦ ତାରିଖ ଫାଶୀର ପୂର୍ବ ରାତ୍ରୀ ସମଗ୍ର ଜେଲ 'ବନ୍ଦେ ମାତରମ୍' ସଙ୍ଗୀତରେ ମୁଖରିତ ହୋଇଥିଲା । କଣ୍ଠରେ 'ବନ୍ଦେ ମାତରମ୍' ଧ୍ୱନି ସହ ପ୍ରତ୍ୟେକ ବିପ୍ଳବୀ ଫାଶୀମଞ୍ଚକୁ ଆରୋହଣ କରିଥିଲେ । ଅବଦୁଲ କାଦିରଙ୍କ କଣ୍ଠ ଗର୍ଜିଉଠିଲା ''ସୁଭାଷବାବୁ କୀ ଜୟ, ବ୍ରିଟିଶ ସରକାର ମୁର୍ଦ୍ଦାବାଦ, ସ୍ୱାଧୀନ ଭାରତ ଜିନ୍ଦାବାଦ ।''(1)

ବିପ୍ଳବୀ ସତ୍ୟେନ୍ ବର୍ଦ୍ଧନ ଓ ଅବଦୁଲ କାଦିର ଫାଶୀପୂର୍ବରୁ ଯଥାକ୍ରମେ ବଡ଼ ଭାଇ ଓ ପିତାଙ୍କ ନିକଟକୁ ଯେଉଁ ପତ୍ର ଦେଇଥିଲେ, ତାହା ଯେଭଳି ବୈପ୍ଳବିକ ପ୍ରେରଣା- ସଂପନ୍ନ, ତତୋଧିକ ହୃଦୟଗ୍ରାହୀ ।

ସତ୍ୟେନ୍ ଲେଖିଥିଲେ– ''ଆପଣଙ୍କୁ ମୋର ବିଶେଷ କିଛି ଲେଖିବାର ନାହିଁ । ମାତୃଭୂମିର ପବିତ୍ର ବେଦୀରେ ଆତ୍ମଦାନ କରିବାକୁ ଭଗବାନ୍ ମୋତେ ସୁଯୋଗ ଦେଇଛନ୍ତି । ସେଥିପାଇଁ ମୁଁ ଗର୍ବିତ ଓ ଆନନ୍ଦିତ । ଯଦି କେବେ ସୁଯୋଗ ଆସେ, ଏହାର ପ୍ରତିଶୋଧ ନେବେ । ସ୍ୱାଧୀନତା ପାଇଁ ଆତ୍ମବିସର୍ଜନ ବଙ୍ଗଜାତି ପକ୍ଷରେ କିଛି ନୂଆ କଥା ନୁହେଁ । ଇତି ।

ଭାଗ୍ୟବାନ 'କାନ୍ନୁ'

ଅବଦୁଲ କାଦିର ଲେଖିଥିଲେ –

ମାନ୍ଦ୍ରାଜ ଜେଲ, ୯-୯-୧୯୪୩

''ମାନନୀୟ ଆବାଜାନ୍,

ଏହି ଶେଷଥର ପାଇଁ ଆପଣଙ୍କୁ ଚିଠି ଲେଖୁଛି । ବହୁସମୟରେ ଆମ୍ଭେମାନେ ବିଭିନ୍ନ ପ୍ରକାର ପରିସ୍ଥିତିର ସମ୍ମୁଖୀନ ହେଉଁ; ଯାହା କି ଖୁବ୍ ଯନ୍ତ୍ରଣାଦାୟକ ଓ ହୃଦୟ- ବିଦାରକ

1. Roll of Honour - K.C. Ghose Pg. 578

ହୁଏ । ଆମର ମନେରଖିବା ଉଚିତ ଯେ, ଆମକୁ ପରୀକ୍ଷା କରିବାକୁ ଖୋଦା ସେହି ପରିସ୍ଥିତି ସୃଷ୍ଟିକରିଥାନ୍ତି । ଜୀବନର ଚଲାପଥରେ ଆମ୍ଭେମାନେ ବାରମ୍ବାର ଦୁଃଖ, ଦାରିଦ୍ର୍ୟ, ହତାଶା ଓ ନୈରାଶ୍ୟର ସମ୍ମୁଖୀନ ହେଉ; ଯେଉଁଥିରେ କି ଆମ୍ଭମାନଙ୍କର ଅସ୍ତିତ୍ୱ ମଧ୍ୟ ବିପନ୍ନ ହୁଏ । ଏହା ଆଲ୍ଲାଙ୍କ ଆଶୀର୍ବାଦ ମନେକରି ଗ୍ରହଣ କରିବାକୁ ହେବ; ଆମ୍ଭମାନଙ୍କୁ ଅମ୍ଳାନ ବଦନରେ ସେଗୁଡ଼ିକୁ ସ୍ୱାଗତ କରିବାକୁ ହେବ । ପବିତ୍ର କୋରାନ୍ ଆମ୍ଭମାନଙ୍କୁ ସେହି ଶିକ୍ଷା ଦେଉଅଛି । ଏଭଳି ବିପଦର ଆମେ ଯେତେବେଳେ ମୁହାଁମୁହିଁ ହେଉ, ସେତେବେଳେ ସେଗୁଡ଼ିକୁ ସହ୍ୟ କରିବା ପାଇଁ ସେ ଆମକୁ ଶକ୍ତି ପ୍ରଦାନ କରନ୍ତି । ସେ ଏତେ ଦୟାମୟ ଯେ, ଆମ୍ଭମାନଙ୍କୁ ଏଭଳି ବିପଦ ଦିଅନ୍ତି ନାହିଁ ଯାହାକୁ ଆମେ ସହିପାରିବା ନାହିଁ ।

ପୂଜ୍ୟ ଆବାଜାନ, ମୁଁ ଆଲ୍ଲାଙ୍କ ନିକଟରେ ବିଶେଷ କୃତଜ୍ଞ ଯେ, ସେ ମୋତେ ସମସ୍ତ ପ୍ରକାର ଦୈହିକ ଦୁଃଖକୁ ସହ୍ୟକରିବାର ଶକ୍ତି ଦେଇଅଛନ୍ତି । ଆମେ ଯେତେବେଳେ କଠିନତମ ପରୀକ୍ଷାର ସମ୍ମୁଖୀନ ହେଉ, ସେତେବେଳେ ସେଥିପାଇଁ ଅନ୍ୟକୁ ଦୋଷ ନ ଦେଇ ବା ଆଲ୍ଲାଙ୍କର ସେହି ଅବଦାନକୁ ଅବଜ୍ଞା ନ କରି ଗ୍ରହଣ କରିବା ଉଚିତ । ଏହା ମୋ' ଜୀବନର ଶ୍ରେଷ୍ଠତମ ମୁହୂର୍ତ୍ତ, ଯେତେବେଳେ ମୁଁ ତାଙ୍କର ଇଚ୍ଛାକୁ ଗ୍ରହଣକରିନେବି ଏବଂ ତାଙ୍କର ବେଦୀତଳେ ମୋର ଚରମତ୍ୟାଗ ନୈବେଦ୍ୟ ଦେଇପାରିବି । ପ୍ରତି ମୁହୂର୍ତ୍ତରେ ମୋର ମନ ଦେବଦତ୍ତ ଶକ୍ତି, ଚିରନ୍ତନ ଆନନ୍ଦ ଓ ସ୍ୱର୍ଗୀୟ ଶାନ୍ତିରେ ପରିପୂର୍ଣ୍ଣ ହୋଇଯାଉଛି ।

ମୁଁ ନିଶ୍ଚିତରୂପେ ଜାଣେ ଯେ, ମୋର ଏହି ପତ୍ର ଆପଣଙ୍କର ଦୁଃଖକୁ ବହୁ ପରିମାଣରେ ବଢ଼ାଇଦେବ । ମୁଁ ଯେତେବେଳେ ଭାବେ, ଆପଣ ମୋ' ପାଇଁ ଅସରନ୍ତି ଅଶ୍ରୁ ବିସର୍ଜନ କରୁଅଛନ୍ତି, ସେତେବେଳେ ହୃଦୟ ମୋର ଦୁଃଖରେ ଫାଟିପଡ଼େ । ଆପଣ ହୁଏତ ଆଶାକରିଥିଲେ ଯେ, ମୁଁ ମାଲୟରେ ପହଞ୍ଚିସାରିବା ପରେ ମୋର ପାଗଳାମି ଛାଡ଼ିଯାଇଥିବ ଏବଂ ମୁଁ ଆପଣଙ୍କର ଯତକିଞ୍ଚିତ କାର୍ଯ୍ୟରେ ଲାଗିପାରିବି । ଆପଣ ଆଲ୍ଲାଙ୍କୁ ପଚାରନ୍ତୁ, ତାଙ୍କଠାରୁ ଏହାର ଉତ୍ତର ପାଇପାରିବେ । ଅନ୍ୟାନ୍ୟ ପ୍ରାଣୀମାନଙ୍କ ଭଳି ମନୁଷ୍ୟ ଏକ ସୀମିତ ସମୟ ପାଇଁ ଦୁନିଆରେ ବଂଚିରହେ; କିନ୍ତୁ ସେଥିରେ ମଧ୍ୟ କେତେକ ପାର୍ଥକ୍ୟ ରହିଅଛି । ମନୁଷ୍ୟ ତାର ଜୀବନକାଳ ମଧ୍ୟରେ ତା'ର ଜୀବନର କିଛି ସାର୍ଥକତା ଓ କିଛି ଆଦର୍ଶ ପୋଷଣକରେ, ଯାହା କି ଅନ୍ୟ ପ୍ରାଣୀ ଓ ତା'ମଧ୍ୟରେ କିଛି ପାର୍ଥକ୍ୟ ଆଣିଦିଏ । ଉଦାହରଣର ଅଭାବ ନାହିଁ ଯେ, ସେହି ଆଦର୍ଶକୁ ଜାବୁଡ଼ିଧରି ଏବଂ ସେହି ଆଦର୍ଶକୁ ରକ୍ଷାକରିବାକୁ ପ୍ରାଣବିସର୍ଜନ କରିବାକୁ ମଧ୍ୟ ସେ ପରାଙ୍ମୁଖ ହୁଏନାହିଁ । ସଂପୂର୍ଣ୍ଣ ନିଃସ୍ୱାର୍ଥପରତା ସହ ଓ ଆଦର୍ଶ ପ୍ରତି ଅନନ୍ୟ ନିଷ୍ଠା ସହ ସେ ସବୁପ୍ରକାର ପରିସ୍ଥିତିର ସମ୍ମୁଖୀନ ହେବାକୁ ସମର୍ଥ ହୁଏ । ପବିତ୍ର ରମଜାନ ମାସର ସପ୍ତମ ଦିବସରେ ମୋର ଏ ଜୀବନଦୀପ ନିର୍ବାପିତ ହେବ ।"

ଏକ ଉଜ୍ଜ୍ୱଳ ସମ୍ଭାବନା ନେଇ ଆସିଥିବା ଏକ ବିରାଟ ଦୁଃସାହସିକ ଅଭିଯାନର ପରିଣତି କେତେକ ଦେଶଦ୍ରୋହୀ ବିଶ୍ୱାସଘାତକଙ୍କର ଅବିମୃଷ୍ୟକାରିତା ଯୋଗୁଁ ଏହିଭଳି ଦୁଃଖଦାୟକ ହୋଇଥିଲା ।

ବିପ୍ଳବୀ ସତ୍ୟେନ ପ୍ରଭୃତିଙ୍କ ଫାଶୀଦଣ୍ଡର ଠିକ୍ ଆଠଦିନ ପରେ ଭାରତୀୟ ନୌବାହିନୀରେ ବିଦ୍ରୋହ ସୃଷ୍ଟିହେଲା । ଏହି ବିଦ୍ରୋହ ଫଳରେ ପୁଣି ଥରେ ଇଂରେଜମାନେ ଅନୁଭବ କଲେ ଯେ, ସେମାନଙ୍କୁ ଗୋରା ସୈନ୍ୟମାନଙ୍କ ଉପରେ ନିର୍ଭର କରି ଭାରତରେ ସାମ୍ରାଜ୍ୟ ରକ୍ଷା କରିବାକୁ ପଡ଼ିବ । କିନ୍ତୁ ଏତେବଡ଼ ଦେଶକୁ କେବଳ ମୁଷ୍ଟିମେୟ ଗୋରା ସୈନ୍ୟ କଦାପି ରକ୍ଷା କରି ପାରିବେ ନାହିଁ ।

ଏପ୍ରିଲ ୧୮ ତାରିଖ ସରକାର ଗୋୟେନ୍ଦା ବିଭାଗ ଖବରଦେଲେ ଯେ, ଫୋର୍ଥ ମାଡ୍ରାସ କୋଷ୍ଟାଲ ଡିଫେନ୍ସ ବ୍ୟାଟେରୀର କେତେକ ସୈନ୍ୟ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିପାରନ୍ତି । ସେମାନେ ଯେକୌଣସି ମୁହୂର୍ତ୍ତରେ ପୋଡ଼ାଜଳା ବା ଅନ୍ତର୍ଘାତୀ କାର୍ଯ୍ୟ କରି ଯୁଦ୍ଧ-ଆୟୋଜନକୁ ବିକଳାଙ୍ଗ କରିପାରନ୍ତି । ଏ ସମ୍ବାଦରେ ଆତଙ୍କିତ ହୋଇ ମିଲିଟାରୀ ପୋଲିସ ସେହିଦିନ ମାଡ୍ରାସ ବ୍ୟାଟେରୀର କେତେକଙ୍କୁ ସରକାର ବିରୋଧୀ କାର୍ଯ୍ୟ ଓ ସମରାୟୋଜନକୁ ବିପନ୍ନ କରୁଥିବା ଅଭିଯୋଗରେ ଗିରଫ କଲେ । ୧୯୪୩ ମସିହା ଜୁଲାଇ ୬ ତାରିଖରୁ ଅଗଷ୍ଟ ୫ ତାରଖ ପର୍ଯ୍ୟନ୍ତ ବିଚାର ହୋଇ ନ'ଅ ଜଣ ଅଫିସରଙ୍କୁ ପ୍ରାଣଦଣ୍ଡ ହୁକୁମ ଦିଆଯାଇଥିଲା । ଆଉ ଦୁଇଜଣଙ୍କୁ ଦ୍ୱୀପାନ୍ତର ଓ ଜଣେ ବିପ୍ଳବୀଙ୍କୁ ୭ ବର୍ଷ ସଶ୍ରମ କାରାଦଣ୍ଡ ଆଦେଶ ଦିଆଯାଇଥିଲା । ୧୯୪୩ ମସିହା ସେପ୍‌ଟେମ୍ବର ୨୭ ତାରିଖରେ ଭାରତ-ମାତାର ଏହି ଅମର ସନ୍ତାନଗଣ 'ବନ୍ଦେ ମାତରମ୍' ସ୍ଲୋଗାନ ଦେଇ ପରମ ଆନନ୍ଦ-ସହକାରେ ଫାଶୀମଞ୍ଚକୁ ଚୁମ୍ବନ ଦେଲେ ।

**ନିୟତିର ଉପହାସ —**

'ଅଗଷ୍ଟ-ବିପ୍ଳବ'ର ଦୁର୍ବାର ଅଗ୍ରଗତି ଯେତେବେଳେ ଭାରତବର୍ଷର ଆକୁମାରୀ ହିମାଚଳ ଉଦ୍‌ବେଳିତ କରିଥିଲା, ସେତେବେଳେ ରାସବିହାରୀ, ସତ୍ୟେନ, କାଦିର ପ୍ରଭୃତି ବିପ୍ଳବୀମାନଙ୍କୁ କେବଳ ଭାରତକୁ ଆଗୁଆ ଦଳରେ ପଠାଇଦେଇ କଣ ନୀରବରେ ବସିଥିଲେ; ନା, 'ଅଗଷ୍ଟ-ବିପ୍ଳବ' ସାରା ଦେଶରେ ଯେଉଁ ଅଶାନ୍ତ ଓ ବୈପ୍ଳବିକ ପରିସ୍ଥିତି ସୃଷ୍ଟିକରିଥିଲା ତାହାର ସୁଯୋଗ ନେବାର ଉଦ୍ୟମ କରିଥିଲେ ?

ନିରସ୍ତ୍ର ଭାରତବାସୀଙ୍କର 'ସଶସ୍ତ୍ର ବିପ୍ଳବ' ଯାହା କି 'ଅଗଷ୍ଟ ବିପ୍ଳବ'ର ସବୁଠାରୁ ବଡ଼ ବିଶେଷତ୍ୱ ଥିଲା ବୋଲି କୁହାଯାଇପାରେ, ତାହା ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଭାରତର ମୁକ୍ତିବାହିନୀର ସାହଚର୍ଯ୍ୟ ପାଇଥିଲେ ଇତିହାସର ଗତି ନିଶ୍ଚିତରୂପେ ଅନ୍ୟରୂପ ନେଇଥାନ୍ତା । ଏକ ବିରାଟ ସୁସଜ୍ଜିତ ସୈନ୍ୟବାହିନୀ ଯେ ଭାରତର ମୁକ୍ତି-ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ପାଇଁ ଭାରତସୀମାର ଅପରପାର୍ଶ୍ୱରେ ପ୍ରସ୍ତୁତ ହେଉଅଛି, ଏହି ସମ୍ବାଦ ଭାରତବାସୀଙ୍କୁ ଦେବା ଉଦ୍ଦେଶ୍ୟରେହିଁ ଦୂରଦର୍ଶୀ ରାସବିହାରୀ ଆଗୁଆ ଦଳର ବିପ୍ଳବୀ ଯୁବକମାନଙ୍କୁ ପଠାଇଥିଲେ । ବସ୍ତୁତଃ 'ଅଗଷ୍ଟ-ବିପ୍ଳବ'ର ପ୍ରଥମ ତୂରୀ ବାଜିବାର ୮ ମାସ ପୂର୍ବରୁ 'ଆଜାଦ ହିନ୍ଦ୍ ଫୌଜ' ଗଢ଼ାସରିଥିଲା ଏବଂ ଆଣ୍ଡାମାନର ପତନ ହୋଇଥିଲା ୪ ମାସ ପୂର୍ବରୁ । ସୁତରାଂ ସେତେବେଳକୁ ଭାରତର ପୂର୍ବସୀମା ସେପଟେ ଇଂରେଜ ସରକାରର ଅସ୍ତିତ୍ୱ ନଥିଲା । ରାସବିହାରୀଙ୍କର ବିଚାର ଥିଲା ଯେ, 'ଅଗଷ୍ଟ-ବିପ୍ଳବୀ' ଭାରତବାସୀ 'ଆଜାଦ

ହିନ୍ଦ ଫୌଜ'ର ପ୍ରତ୍ୟକ୍ଷ ସାହାଯ୍ୟ ପାଇଲେ ଇଂରେଜ ଶକ୍ତି ଭାରତୀୟମାନଙ୍କର ଏହି ମିଳିତ ଅଭିଯାନର ମୁକାବିଲା କରି ପାରିବ ନାହିଁ ଏବଂ ଗାନ୍ଧିଜୀଙ୍କ କହିବା ଅନୁଯାୟୀ ଇଂରେଜମାନଙ୍କର 'ଭାରତ ପରିତ୍ୟାଗ'କୁ ପୃଥିବୀର କୌଣସି ଶକ୍ତି ଆଉ ଅଟକାଇ ପାରିବ ନାହିଁ । ଯଦି ଏହାହିଁ ପ୍ରବାସୀ ଭାରତୀୟମାନଙ୍କର ବା ରାସବିହାରୀଙ୍କର ଯୋଜନା ଥିଲା, ତେବେ ତାହା କାର୍ଯ୍ୟକାରୀ କାହିଁକି ହୋଇପାରିଲା ନାହିଁ । ସେ ସମ୍ପର୍କରେ ଆଲୋଚନା କଲେ, ତାକୁ ନିୟତିର କ୍ରୂର ଉପହାସ ଛଡ଼ା ଆଉ କିଛି କୁହାଯାଇ ପାରିବ ନାହିଁ ।

'ବ୍ୟାଙ୍କକ୍ ସମ୍ମିଳନୀ'ର ସିଦ୍ଧାନ୍ତ ଅନୁସାରେ 'ଭାରତୀୟ ସ୍ୱାଧୀନତା ଲିଗ୍' ଓ 'ଜାତୀୟ ବାହିନୀ'କୁ ନିୟନ୍ତ୍ରଣ କରିବାର ସର୍ବୋଚ୍ଚ ଦାୟିତ୍ୱ ଥିଲା 'କାଉନସିଲ ଅଫ ଆକ୍ସନ' ଓ ଏହାର ସଭାପତି ରାସବିହାରୀଙ୍କ ଉପରେ । ପୂର୍ବ ଏସିୟାର ସର୍ବତ୍ର ଲିଗ୍‌ର ଶାଖା ଖୋଲିବା ଏବଂ ଅଧିକରୁ ଅଧିକ ଯୁଦ୍ଧବନ୍ଦୀଙ୍କୁ ଜାତୀୟ ବାହିନୀର ଅନ୍ତର୍ଭୁକ୍ତ କରିବା ଏବଂ ଭାରତ ଅଭିଯାନ ପାଇଁ ପ୍ରସ୍ତୁତି ଚଳାଇବାର୍ କାଉନ୍ସିଲର ମୁଖ୍ୟ କାର୍ଯ୍ୟ ଥିଲା । କାର୍ଯ୍ୟ ଆଗେଇଚାଲିଲା ଠିକ୍; କିନ୍ତୁ 'ବ୍ୟାଙ୍କକ୍ ସମ୍ମିଳନୀ'ର ଛ'ମାସ ପରେ କେତେକ ଦୁର୍ଭାଗ୍ୟଜନକ ଘଟଣା ଘଟିଲା ଯାହା କି 'ମୁକ୍ତି-ସଂଗ୍ରାମ'ର ଦୁର୍ବାର ଗତିପଥରେ ସୃଷ୍ଟି କଲା ଅଲଂଘନୀୟ ବାଧା ।

ଇଂରେଜମାନଙ୍କର ସଇତାନି କୂଟନୀତି ଏଥିରେ କେଉଁ ଭୂମିକା ନେଇଥିଲା ବା ଏଥିରେ ଇଂରେଜମାନଙ୍କ ଅବଦାନ କେତେ, ସେ ବିଷୟରେ ବିଶେଷ ମତଭେଦ ନାହିଁ । କିନ୍ତୁ 'ଆଜାଦ ହିନ୍ଦ ଫୌଜ'ର ସ୍ରଷ୍ଟାମାନେ ଯେଉଁ କଳଙ୍କିତ ଭୂମିକା ନେଇଥିଲେ ବୋଲି ପ୍ରମାଣ ରହିଛି, ତାହା ଏକ ବିବାଦୀୟ ବିଷୟ ଏବଂ ଏହା ଏଭଳି ପରସ୍ପର- ବିରୋଧୀ ତଥ୍ୟ ଓ ବିବରଣୀରେ ପୂର୍ଣ୍ଣ ଯେ ତା'ର ବିଚାର ଭବିଷ୍ୟତ୍ ଐତିହାସିକମାନଙ୍କ ଉପରେ ଛାଡ଼ିଦେବା ଅଧିକ ନିରାପଦ ହେବ ।

ଏ ସମ୍ପର୍କରେ ଏସ. ଏ. ଆୟାର (ନେତାଜୀ ସୁଭାଷଙ୍କର 'ଆଜାଦ ହିନ୍ଦ୍ ସରକାର'ର ପ୍ରଚାର ବିଭାଗ ମନ୍ତ୍ରୀ) କହନ୍ତି ଯେ, ''ବ୍ୟାଙ୍କକ୍ ଓ ଟୋକିଓ ସମ୍ମିଳନୀ'ର ପ୍ରସ୍ତାବ ଅନୁସାରେ ଜାପାନ ସରକାର ଏକ ଆନୁଷ୍ଠାନିକ ଘୋଷଣା କରିବାର କଥା ଥିଲା । ଏହି ଘୋଷଣା କରିବାରେ ଅସ୍ୱାଭାବିକ ବିଳମ୍ବ ହେବା ଫଳରେ 'ଜାତୀୟ ବାହିନୀ'ର ମୁଖ୍ୟ ମୋହନ ସିଂହ ଓ ରାସବିହାରୀଙ୍କ ଭିତରେ ମତଭେଦ ସୃଷ୍ଟି ହେଲା । ଜାପାନ ସରକାର ଓ ଜାତୀୟ ବାହିନୀ ଭିତରେ ଯୋଗସୂତ୍ର ଅଫିସର ବା 'ହିକାରୀ କିକାନ' ଥିଲେ କର୍ଣ୍ଣେଲ ଇଓ୍ୱାକୁରୋ । ଏହି ବିଳମ୍ବର କାରଣ ସମ୍ପର୍କରେ ସେ ଯେଉଁ କୈଫିୟତ ଦେଲେ ତାହା ରାସବିହାରୀଙ୍କର ପରିସ୍ଥିତିକୁ ଆହୁରି ଦୁର୍ବଳ କରିଦେଲା । ଜାପାନ 'ଜାତୀୟ ବାହିନୀ'କୁ ଯେଉଁ ସାହାଯ୍ୟ କରୁଥିଲା, ତାହାର ଉଦ୍ଦେଶ୍ୟ ସମ୍ପର୍କରେ ସନ୍ଦେହ ସୃଷ୍ଟି ହେଲା । ରାସବିହାରୀଙ୍କ ଅନାବିଳ ଦେଶପ୍ରେମ ବିଷୟରେ କାହାରି କିଛି କହିବାର ନଥିଲା, କିନ୍ତୁ ତାଙ୍କର ପରିଣତ ବୟସ, ଦୁର୍ବଳ ସ୍ୱାସ୍ଥ୍ୟ ଓ ସରଳ ଅମାୟିକ ବ୍ୟବହାର ଦୃଷ୍ଟିରୁ ସେ ଜାପାନ ସରକାରଠାରୁ କାମ ଆଦାୟ କରିବାରେ କେତେଦୂର ସମର୍ଥ ହୋଇପାରିବେ ଏ ସମ୍ପର୍କରେ ସମସ୍ତଙ୍କ ମନରେ

ପ୍ରଶ୍ନ ଉଠୁଥିଲା । ଫଳରେ ମୋହନ ସିଂହ ଓ ରାସବିହାରୀଙ୍କ ଭିତରେ ବ୍ୟବଧାନ ବୃଦ୍ଧି ପାଇବାକୁ ଲାଗିଲା ଓ ଜାପାନ ସରକାର ଓ 'କାଉନ୍ସିଲ ଅଫ ଆକ୍ସନ' ମଧ୍ୟ ପରସ୍ପରଠାରୁ ଦୂରେଇଗଲେ । ଶେଷକୁ ରାସବିହାରୀ ଓ ରାଘବନ୍‌ଙ୍କ ବ୍ୟତୀତ ଅନ୍ୟମାନେ କାଉନ୍ସିଲରୁ ଇସ୍ତଫା ଦେଲେ । ମୋହନ ସିଂହଙ୍କର ଅଭିଯୋଗ ଯେ, ତାଙ୍କର ବିନା ପରାମର୍ଶରେ ଜାପାନ ସରକାର 'ଜାତୀୟ ବାହିନୀ'କୁ କେତେକ ନିର୍ଦ୍ଦେଶ ଦେଲେ । ଏଥିରେ ମୋହନ ସିଂ ଘୋର ଅସନ୍ତୋଷ ପ୍ରକାଶକଲେ; ଫଳରେ ୧୯୪୨ ଡିସେମ୍ବର ୨୯ ତାରିଖରେ ଜାପାନ ସରକାର ମୋହନ ସିଂଙ୍କୁ ଗିରଫକଲେ । ମୋହନ ସିଂ ପୂର୍ବରୁ 'ଜାତୀୟ ବାହିନୀ' ସୈନ୍ୟମାନଙ୍କୁ ପରାମର୍ଶ ଦେଇଥିଲେ ଯେ, ତାଙ୍କୁ ଗିରଫ କରାଗଲେ 'ଜାତୀୟ ବାହିନୀ' ଭାଙ୍ଗିଗଲା ବୋଲି ଧରିନେବାକୁ ପଡ଼ିବ । ସୁତରାଂ ତାଙ୍କ ଗିରଫ ପରେ ସେଇଆ ହେଲା । ଡାକ୍ତର ଗିରିଜା ମୁଖାର୍ଜି ଏ ସମ୍ପର୍କରେ ତାଙ୍କର ମତାମତ ଦେଇଅଛନ୍ତି । ଗିରିଜାବାବୁ ସେତେବେଳେ ଜର୍ମାନୀରେ ସୁଭାଷଙ୍କର ପ୍ରଧାନ ସହକର୍ମୀ ଥିଲେ । ପୂର୍ବ-ଏସିଆରେ ଘଟୁଥିବା ଘଟଣାବଳୀ ସମ୍ପର୍କରେ ତାଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତା ନଥିଲେ ମଧ୍ୟ ସୁଭାଷ ଓ ଜାତୀୟ ବାହିନୀର ଇତିହାସ ସମ୍ପର୍କରେ ଯେ ସେ ଜଣେ ଦକ୍ଷ ବ୍ୟାଖ୍ୟାକାର ଥିଲେ, ଏଥିରେ ସନ୍ଦେହ ନାହିଁ । ସେ ରାସବିହାରୀଙ୍କୁ ସେ ଯୁଗର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ଦେଶ-ବତ୍ସଳ ବୋଲି ବର୍ଣ୍ଣନା କରିଅଛନ୍ତି ଏବଂ ରାସବିହାରୀଙ୍କର ଅନନ୍ୟ ନିଷ୍ଠା ଓ ଅଧ୍ୟବସାୟ ଫଳରେ ଦୀର୍ଘ ପଚିଶବର୍ଷକାଳ ପୂର୍ବ-ଏସିଆରେ 'ଭାରତ ସ୍ୱାଧୀନତା ସଂଗ୍ରାମ'ର ପ୍ରଦୀପ ପ୍ରଜ୍ୱଳିତ ହୋଇ ରହିଥିଲା ବୋଲି କହିଛନ୍ତି ।

କିନ୍ତୁ ଦୀର୍ଘଦିନ ଭାରତ ବାହାରେ ରହିବା ଫଳରେ ରାସବିହାରୀ ଯୁବ-ଭାରତର ଆଶା ଓ ଆକାଙ୍‌କ୍ଷାକୁ ଉତ୍ତମ ରୂପେ ଉପଲବ୍ଧି କରିପାରିନଥିଲେ । ଭାରତର ନୂତନ ଯୁଗର ଯୁବକମାନଙ୍କର ଚାଲିଚଳନ, ବିଶେଷତଃ ଇଂରେଜ ଅଧୀନସ୍ଥ ଭାରତୀୟ ସୈନ୍ୟ ଯେଉଁମାନେ କି ଜାପାନୀମାନଙ୍କର ଦ୍ୱାରା ବନ୍ଦୀହୋଇଥିଲେ, ସେମାନଙ୍କର ମନୋଭାବ ଠିକ୍ ରୂପେ ବୁଝିନଥିଲେ । ବ୍ରିଟିଶ ମିଲିଟାରି ଆଦର୍ଶରେ ଟ୍ରେନିପ୍ରାପ୍ତ ଅଫିସରମାନଙ୍କର କାର୍ଯ୍ୟ କରିବାର ଢଙ୍ଗ ଏବଂ ଜାପାନୀ ଓ ଇଂରେଜ ସରକାର ପ୍ରତି ସେମାନଙ୍କର ଆଭିମୁଖ୍ୟ ସମ୍ପର୍କରେ ରାସବିହାରୀଙ୍କର କୌଣସି ସ୍ପଷ୍ଟ ଧାରଣା ନଥିଲା । ବନ୍ଦୀ ସୈନ୍ୟମାନଙ୍କର ମଧ୍ୟ ଜାପାନୀମାନଙ୍କ ପ୍ରତି ସ୍ପଷ୍ଟ ଧାରଣା ନଥିଲା । ଫଳରେ ସେମାନଙ୍କ ସହ ରାସବିହାରୀଙ୍କ ମତଭେଦ ହେବା ସ୍ୱାଭାବିକ ଥିଲା ଏବଂ ଏହି ମତଭେଦ ଗୁରୁତର ଆକାର ଧାରଣକରି 'ଜାତୀୟ ବାହିନୀ', ଯାହାକୁ ସେ ଏତେ ଯତ୍ନ ଓ ଅଧ୍ୟବସାୟ ଦେଇ ଗଠନ କରିଥିଲେ, ତାହା ଭାଙ୍ଗିଯିବାକୁ ଲାଗିଲା ବୋଲି ଗିରିଜାବାବୁଙ୍କ ମତ ।

କିନ୍ତୁ 'ଜାତୀୟ ବାହିନୀ' ସହ ଓତପ୍ରୋତ ଜଡ଼ିତ ଅନ୍ୟମାନଙ୍କର ମତ ଏ ସମ୍ପର୍କରେ ସଂପୂର୍ଣ୍ଣ ଅଲଗା । ସେମାନ କହନ୍ତି– ''ଏହା ଆମକୁ ସ୍ୱୀକାର କରିବାକୁ ହେବ ଯେ, ଜାପାନ ସରକାରର ସମର୍ଥନ ବିନା 'ଜାତୀୟ ବାହିନୀ' ଗଠନ ସମ୍ଭବ ହୋଇନଥାନ୍ତା । ପ୍ରବାସୀ ଭାରତୀୟ ବା ବ୍ରିଟିଶ ଉପନିବେଶରେ ଥିବା ଭାରତୀୟମାନେ ବ୍ରିଟିଶ ନାଗରିକ ହୋଇଥିବାରୁ

ବ୍ରିଟିଶ-ବିରୋଧୀ ଜାପାନୀମାନଙ୍କ ଦୃଷ୍ଟିରେ ସେମାନେ ଶତ୍ରୁରୂପେ ବିବେଚିତ ହେବା କଥା । କିନ୍ତୁ ଜାପାନ ତାହା କରିନଥିଲା; ବରଂ ଓଲଟା ଭାରତୀୟମାନଙ୍କୁ 'ବନ୍ଧୁ' ରୂପେ ଗ୍ରହଣ କରିଥିଲା । ଜାପାନ ହାତରେ ବନ୍ଦୀହୋଇଥିବା ଭାରତୀୟ ସୈନ୍ୟମାନଙ୍କୁ ନେଇ ଏକ 'ଜାତୀୟ ବାହିନୀ' ଗଢ଼ିବାକୁ ସେ ଯେ କେବଳ ଅନୁମତି ଦେଇଥିଲା ସେତିକି ନୁହେଁ, ତା'ର ସାମରିକ ଅଫିସରମାନେ ବନ୍ଦୀ ଶିବିରରେ ବୁଲି ବୁଲି ଭାରତୀୟମାନଙ୍କୁ ଜାତୀୟ ବାହିନୀରେ ଯୋଗଦେବାକୁ ମଧ୍ୟ ପ୍ରବର୍ତ୍ତାଉଥିଲେ । ସେମାନଙ୍କୁ ଖାଦ୍ୟପେୟ, ପୋଷାକପରିଚ୍ଛଦ ଓ ଯୁଦ୍ଧ-ସରଞ୍ଜାମ ଯୋଗାଇବା ସଙ୍ଗେ ସଙ୍ଗେ ସେମାନଙ୍କର କାର୍ଯ୍ୟକଳାପ ପ୍ରତି କୌଣସି ପ୍ରକାର ନିୟନ୍ତ୍ରଣ ମଧ୍ୟ ରଖିନଥିଲେ । ଜାପାନ ସରକାରଠାରୁ ଏହିପ୍ରକାର ସୁବିଧା-ସୁଯୋଗ ପାଇଁ ହିଁ 'ଇଣ୍ଡିୟାନ୍ ଇଣ୍ଡିପେଣ୍ଡନ୍ସ ଲିଗ' ଓ 'ଆଜାଦ ହିନ୍ଦ୍ ଫୌଜ' ଗଠିତ ହୋଇଥିଲା । ଅବଶ୍ୟ ଏତିକି ସୁଯୋଗ ଗୋଟିଏ ମୁକ୍ତିବାହିନୀ ପାଇଁ ଯଥେଷ୍ଟ ନଥିଲା । ସୁତରାଂ 'କାଉନ୍ସିଲ' ଚାହିଁଥିଲା ଯେ, ଭାରତର ସ୍ୱାଧୀନତା ସମ୍ପର୍କରେ ଜାପାନ ସରକାର ଆନୁଷ୍ଠାନିକ ଘୋଷଣା କରୁ । କାଉନ୍ସିଲର ଏହି ଆଗ୍ରହ ଅତ୍ୟନ୍ତ ସ୍ୱାଭାବିକ ଅଟେ; କିନ୍ତୁ କୂଟନୈତିକ ନିୟମ, ଶୃଙ୍ଖଳା ଓ ଜଟିଳ ଅନୁଶାସନ ଦୃଷ୍ଟିରୁ ଏଥିରେ ବିଳମ୍ବ ହେବା ମଧ୍ୟ ସେହିଭଳି ସ୍ୱାଭାବିକ ଏବଂ ସେଥିପାଇଁ ଧୈର୍ଯ୍ୟ ଧରିବା ଏକାନ୍ତ ଆବଶ୍ୟକ । ରାସବିହାରୀ ଯେ ଏହି 'ପ୍ରତିଶ୍ରୁତି' ଆଦାୟ କରିବାକୁ ଅସମର୍ଥ ଥିଲେ, ତାହା ନୁହେଁ; କିନ୍ତୁ ସେଥିପାଇଁ ସେ ଆଉ କିଛିଦିନ ଅପେକ୍ଷା କରିବାକୁ ଚାହୁଁଥିଲେ । କାରଣ ବସ୍ତୁତଃ ଜାପାନ ସରକାର ଆରମ୍ଭରୁ (ଟୋକିଓ ସମ୍ମିଳନୀ ବେଳୁ) ଏଭଳି ଘୋଷଣା କରିସାରିଥିଲେ ପ୍ରଧାନମନ୍ତ୍ରୀ ଟୋଜୋଙ୍କର ଶୁଭେଚ୍ଛା ବାର୍ତ୍ତା ମାଧ୍ୟମରେ । ଅଥଚ ଆଇ.ଏନ୍.ଏ.ର ଜି.ଓ.ସି. ମୋହନ ସିଂହ ଯେମିତି ଅନ୍ୟ କିଛି ଭାବୁଥିଲେ । ସେ ଏହି ଘୋଷଣା ଯଥାଶୀଘ୍ର ପ୍ରକାଶ କରିବାକୁ ଦାବିକରିଥିଲେ । ମେଜର ଫୁଜିୟାରା ଯେତେବେଳେ 'ହିକାରୀ କିକାନ' ଦାୟିତ୍ୱରେ ଥିଲେ, ସେତେବେଳେ ଜାପାନ ସରକାର ଓ କାଉନ୍ସିଲ ମଧ୍ୟରେ ଚମତ୍କାର ବୁଝାମଣା ରକ୍ଷାକରିପାରିଥିଲେ । କିନ୍ତୁ ୟାକୁରୁ (Iwakuru) ଫୁଜିୟାରାଙ୍କ ସେହି ବୁଝାମଣା ରକ୍ଷାକରିପାରିଲେନାହିଁ । ଏକଦିଗରେ ଏକ ଜୀବନ-ମରଣ ଯୁଦ୍ଧରେ ବ୍ୟାପୃତ ଜାପାନ ଏବଂ ଅନ୍ୟ ଦିଗରେ ତାହାର ସମର୍ଥନରେ ଗଠିତ ଏକ 'ମୁକ୍ତିବାହିନୀ' - ସୁତରାଂ ସେମାନଙ୍କ ସମ୍ପର୍କ କଦାପି ମାମୁଲି ନୁହେଁ; ବରଂ ଖୁବ୍ ସୂକ୍ଷ୍ମ । ଦୁଃଖର କଥା, ୟାକୁରୁ ସେଭଳି ସମ୍ପର୍କ ରକ୍ଷାକରିବାକୁ ସମର୍ଥ ହୋଇ ପାରିଲେ ନାହିଁ; ଫଳରେ ଲିଗର ସଦସ୍ୟମାନଙ୍କ ଭିତରେ ଭୁଲ ବୁଝାମଣା ସୃଷ୍ଟିହେଲା । ଜାତୀୟ ବାହିନୀ ଭିତରେ ମଧ୍ୟ ଏକ ସନ୍ଦେହର ବାତାବରଣ ଦେଖାଦେଲା ଏବଂ ଜାପାନ ସରକାର ଯେ ଭାରତର ସ୍ୱାଧୀନତା ପାଇଁ ବାସ୍ତବରେ ଆଗ୍ରହୀ, ଏଥିରେ ସନ୍ଦେହ ସୃଷ୍ଟି ହେଲା । ପରିସ୍ଥିତିକୁ ଅଧିକ ଜଟିଳ କରିଦେଲା ମୋହନ ସିଂଙ୍କର ଏକ ଦୁର୍ଭାଗ୍ୟଜନକ ପତ୍ର । ରାସବିହାରୀଙ୍କ ବାରଣ ସତ୍ତ୍ୱେ ସେ ଏ ପତ୍ରଟି ଜାପାନ ସରକାରଙ୍କ ନିକଟକୁ ପଠାଇଦେଲେ । ଉକ୍ତ ପତ୍ରଟିରେ ମୋହନ ସିଂ ଜାପାନ ସରକାରଙ୍କୁ ଧମକଦେଲାଭଳି

ଭାଷାରେ ଲେଖିଥିଲେ ଯେ, ''ଆସନ୍ତା ଏକ ସପ୍ତାହ ମଧ୍ୟରେ ଜାପାନ ସରକାର ଉକ୍ତ ଘୋଷଣା ପ୍ରକାଶ ନକଲେ 'ଜାତୀୟ ବାହିନୀ'କୁ ଭାଙ୍ଗିଦିଆଯିବ ।'' ଏଥିରେ ରାସବିହାରୀ ବିଶେଷ ଦୁଃଖିତ ହୋଇଥିଲେ ଏବଂ ଜାପାନ ସରକାରଙ୍କୁ ଅଯଥା ସନ୍ଦେହ ନ କରିବାକୁ ଅନୁରୋଧ କରିଥିଲେ । ଜାପାନ ସରକାରର ସାମର୍ଥ୍ୟ ସମ୍ପର୍କରେ ସେ କହିଥିଲେ ଯେ– " They can even smash Britain's inadequate defence in India wihtout as much crossing the borders. But they are holding thier hands off in the hope that Indians themselves will rise and drive the alien forces out of the country and establish a free India without their intervention"(1)

କିନ୍ତୁ ମୋହନ ସିଂ କୌଣସି କଥା ଶୁଣିବାକୁ ପ୍ରସ୍ତୁତନଥିଲେ । ମେଜର ଜେନେରାଲ ଏ. ସି. ଚାଟାର୍ଜି ଏ ସମ୍ପର୍କରେ ଯେଉଁ ମତାମତ ଦେଇଛନ୍ତି, ସେଥିରୁ ମୋହନ ସିଂଙ୍କର ଚରିତ୍ର ସମ୍ପର୍କରେ କେତେକ ଆଭାସ ମିଳେ । ମେଜର ଜେନେରାଲ ଚାଟାର୍ଜି ଆଜାଦ ହିନ୍ଦ୍ ସରକାରଙ୍କର୍ ଅର୍ଥମନ୍ତ୍ରୀ ଥିଲେ । ସେ ଲେଖିଛନ୍ତି, ''ଜେନେରାଲ ମୋହନ ସିଂ ରାସବିହାରୀଙ୍କୁ ଏକ ଦୁର୍ଭାଗ୍ୟଜନକ ପତ୍ର ଏବଂ ସୈନ୍ୟମାନଙ୍କ ପ୍ରତି ଏକ ନିର୍ଦ୍ଦେଶନାମା ଏକ ଜଉମୁଦା ଲଫାପାରେ ରଖିଦେଲେ । ସେହି ନିର୍ଦ୍ଦେଶନାମାରେ ଉଲ୍ଲେଖ ଥିଲା ଯେ ଯଦି ସେ ଗିରଫ ହୁଅନ୍ତି ଅନ୍ୟାନ୍ୟ ଅଫିସରମାନେ 'ବାହିନୀ'କୁ ଭାଙ୍ଗିଦେବେ ଏବଂ ସମସ୍ତ ରେକର୍ଡ଼ପତ୍ର ନଷ୍ଟକରିଦେବେ । ସେ ଅଫିସର ଓ ସୈନ୍ୟମାନଙ୍କୁ ମଧ୍ୟ ଅନୁରୋଧ କରିଥିଲେ ଯେ, ଭବିଷ୍ୟତ୍‌ରେ କୌଣସି 'ମୁକ୍ତିବାହିନୀ' ଗଠନହେଲେ ସେମାନେ ଯେପରି ସେଥିରେ ଯୋଗନଦିଅନ୍ତି । ଏହା ତାଙ୍କର କ୍ଷମତା-ବହିର୍ଭୂତ ଓ ସୈନ୍ୟବାହିନୀ ଶୃଙ୍ଖଳା-ବିରୋଧୀ ଥିଲା ।'' (2), (3), (4)

ମୋହନ ସିଂଙ୍କର ଏଭଳି କାର୍ଯ୍ୟକଳାପ ରାସବିହାରୀଙ୍କୁ ସନ୍ଦେହଜନକ ମନେହେଲା । ସେ ଅନୁଭବ କଲେ ଯେ, ତାଙ୍କୁ ଏତେବଡ଼ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱରେ ଅଧିକ ଦିନ ରଖିବା ବିପଜ୍ଜନକ ଅଟେ; ରଖିଲେ ତାଙ୍କର ଏତେ ସାଧନା ଓ ସଂଗ୍ରାମରେ ଗଢ଼ା ସଂସ୍ଥା ଅକାଳରେ ଧ୍ୱଂସହୋଇଯିବ । ଏଭଳି ପରିସ୍ଥିତିରେ ମୋହନ ସିଂଙ୍କୁ ଜି.ଓ.ସି. ପଦରୁ ବରଖାସ୍ତ କରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ସଙ୍ଗେ ସଙ୍ଗେ ଜାପାନ ସରକାର ମୋହନ ସିଂଙ୍କୁ ଗୁପ୍ତଚର ବୃତ୍ତି ଅଭିଯୋଗରେ ଗିରଫକରିନେଲେ । ଏହି ଅପ୍ରୀତିକର ଘଟଣା ଫଳରେ 'ଅଜାଦ ହିନ୍ଦ୍ ଫୌଜ' ଭିତରେ ନୈରାଶ୍ୟ, ହତାଶା ଓ ବିଭ୍ରାଟ ସୃଷ୍ଟି ହେଲା ଏବଂ ମୋହନ ସିଂଙ୍କର ପୂର୍ବ ନିର୍ଦ୍ଦେଶଦ୍ୱାରା ପ୍ରଭାବିତ ବହୁସଂଖ୍ୟକ ସୈନ୍ୟ ଫଉଜ ପରିତ୍ୟାଗକଲେ ।

---

1. Rashbehari, the great Resistance Leader - P.32
2. India's struggle for Freedom - A.C. Chottery
3. ଆମି ସୁବାଷ ବଲ୍‌ଛି - ଶୈଳେଶ ଦେ
4. ଭାରତର ସଶସ୍ତ୍ର ବିପ୍ଳବ - ଭୂପେନ୍ଦ୍ର କିଶୋର ରକ୍ଷିତରାୟ

ମୋହନ ସିଂଙ୍କ ଗୁପ୍ତଚର ବୃତ୍ତି ସମ୍ପର୍କରେ ଜାପାନ ସରକାରଙ୍କ ହାତରେ କେତେକ ପ୍ରମାଣ ଥିଲା । ଏ ସମ୍ପର୍କରେ 'ଦିଲ୍ଲୀଚଲୋ' ପୁସ୍ତକରେ ଲେଖାଅଛି—

''ନଭେମ୍ବର ୧୮ ତାରିଖରେ ୬ଜଣ ବ୍ରିଟିଶ ଅଫିସର ପାରାଚୁଟରେ 'ପଗୁ'ଠାରେ ଓହ୍ଲାଇଥିଲେ ଏବଂ ସଙ୍ଗେ ସଙ୍ଗେ ଗିରଫହେଲେ । ବ୍ରିଟିଶ 'ଠାର' (Code)କୁ ଅର୍ଥ କରିବାରେ ଜଣାଗଲା ଯେ, କର୍ଣ୍ଣେଲ ଗିଲ୍ ଜଣେ ବ୍ରିଟିଶ ଗୋଏନ୍ଦା ଥିଲେ । ସେହି ୬ଜଣ ପାରୁଚୁଟ ସୈନ୍ୟ ସ୍ୱୀକାର କରିଥିଲେ ଯେ, ସେମାନଙ୍କର ତିନିଗୋଟି ଉଦ୍ଦେଶ୍ୟ ଥିଲା— (୧) କର୍ଣ୍ଣେଲ ଗିଲ୍ ଓ ମେଜର ଏମ. ଏସ. ଧିଲନଙ୍କୁ ଭେଟିବା, (୨) ଜାପାନ ଏବଂ ଜାତୀୟ ବାହିନୀ ଭିତରେ ଅବିଶ୍ୱାସ ସୃଷ୍ଟି କରିବା, (୩) ଜାପାନୀମାନଙ୍କ ଯୁଦ୍ଧ-ଯୋଜନା ସମ୍ପର୍କରେ ସମ୍ବାଦ ସଂଗ୍ରହ କରିବା ।

ଏହି ଦୁର୍ଘଟଣା ଫଳରେ ଆଜାଦ ହିନ୍ଦ୍ ଫୌଜ ପ୍ରାୟ ଭାଙ୍ଗିଗଲା କହିଲେ ଚଳେ । ସୁତରାଂ 'ଅଗଷ୍ଟ-ବିପ୍ଳବ' ବେଳେ ବର୍ମାପଟୁ ଭାରତ ଉପରେ ସଶସ୍ତ୍ର ଅଭିଯାନ କରିବାର ଯେଉଁ ପରିକଳ୍ପନା ହୋଇଥିଲା, ତାହା କାର୍ଯ୍ୟକାରୀ ହେବାର ସମସ୍ତ ଆଶା ଧୂଳିସାତ ହୋଇଗଲା । ଏହାକୁ ନିୟତିର କ୍ରୁର ଉପହାସ ଛଡ଼ା ଆଉ କଣ କୁହାଯାଇପାରେ ? 'ଅଗଷ୍ଟ-ବିପ୍ଳବ' ଭାରତକୁ ଯେତେବେଳେ ଏକ ଜ୍ୱଳନ୍ତ ଅଗ୍ନିକୁଣ୍ଡରେ ପରିଣତ କରିଥିଲା, ସେତିକିବେଳେ ଭାରତ ବାହାରୁ ଏକ ସଶସ୍ତ୍ର ଅଭିଯାନ ହୋଇଥିଲେ ଭାରତର ଇତିହାସ ଯେ ବଦଳିଯାଇଥାନ୍ତା, ଏଥିରେ ତିଳେ ହେଲେ ସନ୍ଦେହ ନାହିଁ ।

ଭାରତ-ବନ୍ଧୁ ଜାପାନୀ ସେନାପତି ମେଜର ଫୁଜିଆରା ଏ ସମ୍ପର୍କରେ ଯାହା ଲେଖିଛନ୍ତି, ତାହା ବିଶେଷ ପ୍ରଣିଧାନଯୋଗ୍ୟ — ''ମୁଁ ନିଶ୍ଚିତରୂପେ କହିପାରେ ଯେ, ଏହି ଘଟଣାଟି 'ଜାତୀୟ ବାହିନୀ'ର ବିକାଶକୁ ଓ ବହୁ ପରିମାଣରେ ଭାରତର ସ୍ୱାଧୀନତାକୁ ବହୁଦିନ ପଛେଇଦେଲା । ଫଳରେ ବର୍ମା ଭିତରକୁ ଜାତୀୟ ବାହିନୀର ଅଗ୍ରସର ହେବା ଯୋଜନାକୁ ଖୁବ୍ କମ୍‌ରେ ଗୋଟିଏ ବର୍ଷ ପଛକୁ ନେଇଗଲା ଏବଂ ଏହି ଅଗ୍ର ଅଭିଯାନ ଭାରତ ମୁକ୍ତି ସାଧନ ପାଇଁ ଏକାନ୍ତ ଅପରିହାର୍ଯ୍ୟ ଥିଲା । ଯଦି ବର୍ଷକ ଆଗରୁ ଇମ୍ଫାଲ ଅଭିଯାନ ସମ୍ଭବ ହୋଇପାରିଥାନ୍ତା, ତେବେ ଭାରତର ମୁକ୍ତି ସଂଗ୍ରାମ ନିଶ୍ଚୟ ସାଫଲ୍ୟମଣ୍ଡିତ ହୋଇପାରିଥାନ୍ତା । କାରଣ ସେତେବେଳେ ଭାରତ ଅରକ୍ଷିତ ଓ ଅପ୍ରସ୍ତୁତ ଅବସ୍ଥାରେ ରହିଥିଲା, ଯାହା କି ମିତ୍ରଶକ୍ତି (ଇଂରେଜ-ବନ୍ଧୁ ରାଷ୍ଟ୍ରଗୋଷ୍ଠୀ) ଏବଂ ବ୍ରିଟିଶ ଭାରତ ଶାସକବର୍ଗ ଯୁଦ୍ଧ ପରେ ସ୍ୱୀକାର କରିଅଛନ୍ତି ।''

ଯେଉଁମାନେ ଈଶ୍ୱରବିଶ୍ୱାସ କରନ୍ତି ସେମାନେ କହିବେ ଯେ, ଯାହା ଦୈବ- ନିର୍ଦ୍ଦେଶିତ ତାହା ଅବଶ୍ୟହିଁ ଘଟିବ । ହୁଏତ ୪୨-ଆନ୍ଦୋଳନ ପରେ ପରେ ଯଦି ଭାରତକୁ ସ୍ୱାଧୀନତା ମିଳିଥାନ୍ତା ଏବଂ ଯଦି ମୋହନ ସିଂଙ୍କର ଜାତୀୟ ବାହିନୀ ଅଗଷ୍ଟ ବିପ୍ଳବକୁ ଶକ୍ତି ଯୋଗାଇ 'ସ୍ୱାଧୀନତା' ଅର୍ଜନ କରିଥାନ୍ତେ, ତେବେ ସୁଭାଷଙ୍କର 'ଦିଲ୍ଲୀ ଚଲୋ' ଅଭିଯାନର ରୋମାଞ୍ଚକାରୀ ଇତିହାସ କିମ୍ବା ଲାଲକିଲ୍ଲାରେ ଜାତୀୟ ବାହିନୀର ବିଚାର ବେଳର ଦେଶବାସୀଙ୍କର ଉଦ୍‌ବେଳନରୁ ସ୍ୱାଧୀନତା ସଂଗ୍ରାମର ଇତିହାସ ନିର୍ମମଭାବରେ ବଞ୍ଚିତ

ହୋଇଥାନ୍ତା । ମୋହନସିଂକୃତ ଦୁର୍ଘଟଣାର ସମ୍ମୁଖୀନ ହୋଇ ନଥିଲେ ରାସବିହାରୀଙ୍କ ଦକ୍ଷତା ଓ ଯୋଗ୍ୟତା ବା ନେତାଜୀ ସୁଭାଷଙ୍କର ଅନନ୍ୟ ଅଧ୍ୟବସାୟ ଓ ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱର ସ୍ପର୍ଶ ଏ ଦେଶ ପାଇପାରିନଥାନ୍ତା ।

ଏହି ପରିସ୍ଥିତିକୁ ରାସବିହାରୀ ଯେଉଁଳି ଭାବରେ ସମ୍ଭାଳିନେଲେ ତା'ର ଭୂୟସୀ ପ୍ରଶଂସା କରି ଜନୈକ ବିଶିଷ୍ଟ ବିପ୍ଳବୀ ଓ ଇତିହାସକାର ଲେଖିଛନ୍ତି — ''ରାସବିହାରୀଙ୍କୁ ଛାଡ଼ି ଅନ୍ୟ ଯେକେହି ଭଗ୍ନ-ସ୍ୱାସ୍ଥ୍ୟ ବ୍ୟକ୍ତି ଏ ଅବସ୍ଥାରେ ସବୁ ପରିତ୍ୟାଗ କରିଦେଇଥାନ୍ତା, କିନ୍ତୁ ବ୍ରିଟିଶ-ଜାପାନ ଯୁଦ୍ଧ ଭାରତର ସ୍ୱାଧୀନତା ପାଇଁ ଯେଉଁ ସୁଯୋଗ ଆଣିଦେଇଥିଲା, ତାକୁ ହାତଛଡ଼ା କରିବାକୁ ରାସବିହାରୀ ପ୍ରସ୍ତୁତ ନଥିଲେ । ଅସାଧାରଣ ଧୈର୍ଯ୍ୟ ଓ ସାହସ ସହକାରେ ସେ ସେହି ପ୍ରଳୟଙ୍କରୀ ଝଡ଼ର ସମ୍ମୁଖୀନ ହେଲେ ।''

ଏହି ସଂସାର ଏଡ଼େ ବିଚିତ୍ର ଓ ମଣିଷର ଚରିତ୍ର ଏତେ ଦୁର୍ବୋଧ ଯେ ଆଜନ୍ମ ବିପ୍ଳବୀ ରାସବିହାରୀଙ୍କୁ ମଧ୍ୟ ଦଳେ ଜାପାନର ସଖୀକଣ୍ଢେଇ ବୋଲି ଆଖ୍ୟା ଦେବାକୁ ଛାଡ଼ି ନଥିଲେ । ରାସବିହାରୀଙ୍କୁ ଏହା ଆହତ କରିଥିଲେ ମଧ୍ୟ ସେ ବିଚଳିତ ହୋଇନଥିଲେ । ସେ ନମ୍ରତାସହକାରେ କହିଥିଲେ ଯେ ''ମୋ' ଦେଶବାସୀ ଯଦି ମୋତେ ସଖୀକଣ୍ଢେଇ ବୋଲି କହନ୍ତି, ସେମାନେ ତାହା କହିପାରନ୍ତି; କିନ୍ତୁ ଆପଣମାନେ ଭଲଭାବେ ଜାଣିରଖନ୍ତୁ ଯେ, ଏହା କହିବାଦ୍ୱାରା ଆପଣମାନେ ସେହି ଲୋକ ପ୍ରତି ପାପ କରୁଅଛନ୍ତି — ଯାହାର ଜୀବନର ଏକମାତ୍ର ଲକ୍ଷ୍ୟ ତା'ର ଜନ୍ମଭୂମିର ପୂର୍ଣ୍ଣସ୍ୱାଧୀନତା, ଯେ କି ଅନ୍ୟ ଯେକୌଣସି ଭାରତୀୟ ଭଳି ତା'ର ଜନ୍ମଗତ ଅଧିକାର ପାଇଁ ଗର୍ବବୋଧକରେ, ଯେ କି ତା'ର ମାତୃଭୂମିର ସ୍ୱାଧୀନତା ପାଇଁ ସବୁକିଛି ତ୍ୟାଗ କରିଅଛି ଓ ମାତୃଭୂମିର ସମ୍ମାନ ଓ ଗୌରବ ରକ୍ଷା କରିବା ପାଇଁ ତାହାର ଶେଷ ରକ୍ତ ବିନ୍ଦୁ ମଧ୍ୟ ଦାନ କରିବାକୁ ପ୍ରତିଜ୍ଞାବଦ୍ଧ । ମୁଁ ମୋ' ଜୀବନର ଲକ୍ଷ୍ୟସ୍ଥଳରେ ପହଞ୍ଚିବା ବ୍ୟତୀତ ଅନ୍ୟ କିଛି ଆଶାକରୁନାହିଁ । ଯଦି ମୋ' ଜୀବଦ୍ଦଶାରେ ସେହି ଲକ୍ଷ୍ୟସ୍ଥଳରେ ପହଞ୍ଚେ, ତେବେ ମୋର ସେହି ପ୍ରିୟ ମାତୃଭୂମି ବକ୍ଷରେ କୌଣସି ଏକ ନିଭୃତ କୋଣରେ ବିଶ୍ରାମ ନେବା ବ୍ୟତୀତ ମୋର ଅନ୍ୟ କୌଣସି ଅଭିଳାଷ ନାହିଁ । ମାତୃଭୂମିର ପୂର୍ଣ୍ଣସ୍ୱାଧୀନତା ଆମର ଏକମାତ୍ର ଲକ୍ଷ୍ୟ ହେଉ ଓ ବ୍ୟକ୍ତିଗତ ମନାନ୍ତର, ଜାତି ବା ଗୋଷ୍ଠୀଗତ ପାର୍ଥକ୍ୟ ଏହାର ଅନ୍ତରାୟ ନହେଉ ।''

ଭଙ୍ଗାଘରକୁ ଯୋଡ଼ିବାକୁ ରାସବିହାରୀ ପୁଣି ଅଣ୍ଟାଭିଡ଼ି ବାହାରିପଡ଼ିଲେ, କାରଣ ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ ସୁଭାଷ ଅଚିରେ ପୂର୍ବ-ଏସିଆକୁ ଆସି ଏହି ଗୁରୁଦାୟିତ୍ୱ ଗ୍ରହଣ କରିବେ । ସୁତରାଂ ସେ ଆଜାଦ ହିନ୍ଦ୍ ବାହିନୀ ଓ ସ୍ୱାଧୀନତା ଲିଗ୍‌କୁ ସଜାଡ଼ିବାକୁ ଲାଗିପଡ଼ିଲେ । ତାଙ୍କର ଇଚ୍ଛା, ସେ ସୁଭାଷଙ୍କ ହାତରେ ଏକ ଦୃଢ଼ ଅନୁଷ୍ଠାନ ଅର୍ପଣ କରିବେ, ଭଙ୍ଗା ଦଦରା ଅନୁଷ୍ଠାନ ନୁହେଁ । ସେଥିପାଇଁ ସେ ଦ୍ୱିଧା ଓ ସଂଶୟଗ୍ରସ୍ତ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ କଲେ ଏକ ଆକୁଳ ନିବେଦନ । ସେତେବେଳେ ସେ ଭୀଷଣ ଅସୁସ୍ଥ । ଶାରୀରିକ ଓ ମାନସିକ କ୍ଳେଶ ତାଙ୍କର ସୁନ୍ଦର ବଳିଷ୍ଠ ସ୍ୱାସ୍ଥ୍ୟକୁ ଏକା-ବେଳକେ ନଷ୍ଟକରିଦେଇଥିଲା; ଏପରି କି ତାଙ୍କର ଓଜନ ୧୫୦ ପାଉଣ୍ଡରୁ କମି ୧୦୦ ପାଉଣ୍ଡରେ

ପହଞ୍ଚିଲା । ସେ ଏକ ହୃଦୟସ୍ପର୍ଶୀ ଭାଷଣରେ ଭାରତୀୟମାନଙ୍କୁ କହିଲେ — "ମୁଁ କାଲି ମରିଗଲେ ଆପଣମାନଙ୍କ ଭିତରୁ କେହି ମୋର ଦାୟିତ୍ୱ ନେବାକୁ ପ୍ରସ୍ତୁତ ହେବାକୁ ପଡ଼ିବ ଏବଂ ସେ ଯେତେବେଳେ ମୃତ୍ୟୁମୁଖରେ ପଡ଼ିବ ଅନ୍ୟ ଜଣେ ସେହି ଦାୟିତ୍ୱ ନେବାକୁ ପ୍ରସ୍ତୁତ ହେବା ଉଚିତ । ଭାରତର ସ୍ୱାଧୀନତା ପାଇଁ ଶରୀରର ଶେଷ ରକ୍ତବିନ୍ଦୁ ସମର୍ପଣ କରିବାକୁ ପ୍ରତ୍ୟେକ ଭାରତବାସୀ ପ୍ରସ୍ତୁତ ହେଉ, ଭବିଷ୍ୟତ୍ ଭାରତ ସେଥିପାଇଁ ଗର୍ବିତ ହେବ । ଏହି ଯୁଦ୍ଧରେ ବିଜୟ ଲାଭ କଲେ ସେ ବୀରରୂପେ ପୂଜିତ ହେବ ଏବଂ ସଂଗ୍ରାମରେ ମୃତ୍ୟୁବରଣ କଲେ ଇତିହାସରେ ସହିଦରୂପେ ଗଣ୍ୟ ହେବ ।"

'କାଉନ୍ସିଲ ଅଫ୍ ଆକ୍ସନ'କୁ ପୁନର୍ଗଠନ କରାଗଲା ଓ ଡକ୍ଟର ଲକ୍ଷ୍ମିୟା ରାଘବନ୍‌ଙ୍କ ସ୍ଥାନରେ ସଭ୍ୟ ରହିଲେ ଓ ବାହିନୀର ପ୍ରତିନିଧିତ୍ୱ କଲେ ଲେଫ୍‌ଟନାଣ୍ଟ କର୍ଣ୍ଣେଲ ଜେ.କେ.ଭୋନ୍ସଲେ । ଲିଗ୍‌ର ମୁଖ୍ୟ ଅଫିସ୍ ବ୍ୟାଙ୍କକ୍‌ରୁ ସିଙ୍ଗାପୁରକୁ ଉଠାଇନିଆଗଲା । ଭୋନ୍ସଲେଙ୍କୁ ଆଇ. ଏନ. ଏ.ର ମିଲିଟାରୀ ବୁରୋର ଡାଇରେକ୍ଟର ଓ ଲେଫ୍‌ଟାନାଣ୍ଟ ଏମ. ଜେଡ୍. କିଆନିଙ୍କୁ 'ବାହିନୀ'ର କମାଣ୍ଡର କରାଯାଇଥିଲା ।

୧୯୪୩ ମସିହା ଏପ୍ରିଲ ୨୭ରୁ ୩୦ ପର୍ଯ୍ୟନ୍ତ ସିଙ୍ଗାପୁରଠାରେ ଭାରତୀୟମାନଙ୍କର ଏକ ସମ୍ମିଳନୀ ବସିଥିଲା । ସେଠାରେ ଗୃହୀତ ଏକ ପ୍ରସ୍ତାବରେ କୁହାଯାଇଥିଲା ଯେ– The Indian Army of the Indian Independence League and all officers and men of the I.N.A. as well as all members of the I.I.L. shall owe allegience to League" ଏବଂ "That the entire Indian Independence Movement be placed on a war footing immediately and its vital war duties with utmost speed and efficiency." (ଭାରତୀୟ ଜାତୀୟ ବାହିନୀ ଭାରତୀୟ ସ୍ୱାଧୀନତା ସଂଘର ସୈନ୍ୟବାହିନୀ ଅଟେ ଏବଂ 'ଜାତୀୟ ବାହିନୀ'ର ସମସ୍ତ ସୈନ୍ୟ ଓ 'ସ୍ୱାଧୀନତା ସଂଘ'ର ସମସ୍ତ ସଭ୍ୟଙ୍କର ଆନୁଗତ୍ୟ କେବଳ ଏହି 'ସଂଘ'ପ୍ରତିହିଁ ରହିବ । ଭାରତବର୍ଷରେ ସ୍ୱାଧୀନତା ପାଇଁ ସମସ୍ତ କାର୍ଯ୍ୟକଳାପକୁ ଯୁଦ୍ଧକାଳୀନ ଭିତ୍ତିରେ ଚଳାଇବାକୁ ହେବ ।")

ପତନୋନ୍ମୁଖୀ ଜାତୀୟ ବାହିନୀକୁ ଆସନ୍ନ ଧ୍ୱଂସରୁ ରକ୍ଷାକରିସାରି ରାସବିହାରୀ ପୁଣି ଟୋକିଓ ଗଲେ ଏବଂ ସେତେବେଳେ ତାଙ୍କର ଏକମାତ୍ର କାର୍ଯ୍ୟ ଥିଲା ସୁଭାଷଙ୍କୁ ଯଥାଶୀଘ୍ର ଜର୍ମାନୀରୁ ପୂର୍ବ-ଏସିଆକୁ ନେଇଆସିବା । ଜାପାନ ସରକାରଙ୍କ ଉପରେ ଚାପ ପକାଇଲେ ରାସବିହାରୀ ଏହାର ବ୍ୟବସ୍ଥା କରିବାକୁ ।

ଜାପାନର ଡିଫେନସ୍ ଫୋର୍ସର ଲେଫ୍‌ନାଣ୍ଟ ଜେନେରାଲ ସିଜୋ ଆର୍ସୁ (Siego Arisu) ରାସବିହାରୀଙ୍କୁ ପଚାରିଲେ "ସୁଭାଷବାବୁ ଆପଣଙ୍କଠାରୁ ବୟସରେ ବହୁତ କନିଷ୍ଠ । ସେ ଲିଗ୍ ଓ ଫୌଜର ନେତୃତ୍ୱ ନେଲେ ଆପଣଙ୍କୁ କେମିତି ଲାଗିବ ?" ରାସବିହାରୀ ଉତ୍ତର ଦେଲେ "ସେଥିପାଇଁ ଆପଣମାନେ ବିବ୍ରତ ହେବାର କିଛି ନାହିଁ । ମୁଁ ବୋଷଙ୍କର ଅଧୀନରେ ଆନନ୍ଦରେ ସେକାର୍ଯ୍ୟ କରିବି ।"(1)

---

1. ଆମି ସୁବାଷ ବଲ୍‌ଛି - ଶୈଲେଶ ଦେ

ଅବଶ୍ୟ ଭାରତୀୟ ବିପ୍ଲବୀମାନଙ୍କ ଚରିତ୍ର ସମ୍ପର୍କରେ କୌଣସି ଧାରଣା ନଥିବା ଜାପାନୀ ସାମରିକ ଅଫିସରମାନଙ୍କର ଏଭଳି ପ୍ରଶ୍ନ କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ରାସବିହାରୀ ଯେ ୧୯୪୦ ମସିହାରୁ ସୁଭାଷଙ୍କୁ ପୂର୍ବ-ଏସିଆକୁ ଆସିବାକୁ ନିମନ୍ତ୍ରଣ କରିଥିଲେ ଏବଂ ସେ ନିମନ୍ତ୍ରଣ ଅନ୍ୟତମ ବିପ୍ଲବୀ ବୀର ସଭରକରଙ୍କ ହାତରେ ସୁଭାଷଙ୍କ ନିକଟକୁ ପଠାଯାଇଥିଲା, ଏହା ଜାପାନୀ ସେନାପତିଙ୍କୁ କାହିଁକି ବା ଜଣା ଥିବ — ସେ ତ ସେନାବାହିନୀର 'ସିନିୟର' 'ଜୁନିୟର' କଥାରେ ଅଭ୍ୟସ୍ତ !

ସୁଭାଷ ରାସବିହାରୀଙ୍କର କନିଷ୍ଠ ଭ୍ରାତା ସଦୃଶ । କନିଷ୍ଠ ଯଦି ଜ୍ୟେଷ୍ଠ ଅପେକ୍ଷା ଅଧିକ ଯୋଗ୍ୟ ଓ ଦକ୍ଷ ହୁଏ, ତାହା ତ ଜ୍ୟେଷ୍ଠପକ୍ଷରେ ଗୌରବଜନକ ଓ ଗର୍ବର କଥା । ସୁତରାଂ ଜାପାନ ସେନାପତିଙ୍କର ଏହା ଏକ ଅବାନ୍ତର ପ୍ରଶ୍ନ ।

ଜାପାନ ସରକାର ପକ୍ଷରୁ ଜର୍ମାନୀ ସରକାରଙ୍କ ନିକଟକୁ ବାର୍ତ୍ତା ପଠାଗଲା । ହେଲା ବାର୍ତ୍ତାଟି — ମହାମାନ୍ୟ ସୁଭାଷଚନ୍ଦ୍ର ବୋଷ ଅତ୍ୟନ୍ତ ଦାୟିତ୍ୱଶୀଳ ବ୍ୟକ୍ତି । ତୁମ୍ଭେମାନେ ଯଦି ତାଙ୍କର ନିରାପତ୍ତା ସଂପର୍କରେ ପ୍ରତିଶ୍ରୁତି ଦେଇପାର, ତା'ହେଲେ ତାଙ୍କୁ ପଠାଇବାର ବ୍ୟବସ୍ଥା କର ।''

କିନ୍ତୁ ସୁଭାଷଙ୍କ ମନର ଅବସ୍ଥା ସେତେବେଳେ ଅତିଶୟ ଅସ୍ଥିର ଥିଲା । କାରଣ ସୁଭାଷ ଚିଠାକରିଥିବା ମିଳିତ ଘୋଷଣାପତ୍ର ପ୍ରତି ଇଟାଲୀର ମୁସୋଲିନୀ ଓ ଜାପାନର ଟୋଜୋ ସ୍ୱୀକୃତି ଦେଇଥିଲେ ସୁଦ୍ଧା ହିଟ୍‌ଲର ସେ ପର୍ଯ୍ୟନ୍ତ ତାର ସମ୍ମତ ଦେଇ ନଥିଲା । ହିଟଲର୍‌ର ଯୁକ୍ତି ଥିଲା ଯେ — ଯୁଦ୍ଧ ଏକ ସିଦ୍ଧାନ୍ତମୂଳକ ଅବସ୍ଥାକୁ ନ ଆସିଥିବାରୁ ଏଭଳି ଘୋଷଣାର କୌଣସି ଯଥାର୍ଥତା ନାହିଁ । ବିଶେଷତଃ ରୁଷିୟା ରଣକ୍ଷେତ୍ରରେ ନାଜୀ ସୈନ୍ୟମାନେ ବିଶେଷ କୃତିତ୍ୱ ହାସଲ କରି ପାରି ନଥିବାରୁ ସେ ବଡ଼ ବିବ୍ରତ ବୋଧ କରୁଥିଲେ । ସୁଭାଷ ଏହା ହେବ ବୋଲି ବହୁପୂର୍ବରୁ ଜାଣିଥିଲେ ଏବଂ ରୁଷିଆ ଉପରେ ଆକ୍ରମଣ ନ କରିବାକୁ ନାଜୀ ଦଳର ମୁଖ୍ୟ କର୍ମକର୍ତ୍ତାଙ୍କୁ ପରାମର୍ଶ ଦେଇଥିଲେ । କାରଣ ସୁଭାଷଙ୍କର ଅଶଙ୍କା ଥିଲା ଯେ, ଜର୍ମାନୀ ରୁଷିଆ ଉପରେ ଆକ୍ରମଣକଲେ ସାମ୍ରାଜ୍ୟବାଦୀ ବ୍ରିଟେନ ଓ ସାମ୍ୟବାଦୀ ରୁଷିୟାର ସ୍ୱାର୍ଥ ଏକହୋଇଯିବ ଏବଂ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ରୁଷିୟାର ସମର୍ଥନ ମିଳିବ ନାହିଁ । ଜର୍ମାନୀର ଏକ ଗୋୟେନ୍ଦା ରିପୋର୍ଟରେ ଅଛି — "You know as well as I do that German cannot win this war. But this time victorious Britain will lose India."(1)

ଜନୈକ ନାଜୀ ନେତାଙ୍କର ସୁଭାଷଙ୍କ ସହ ହୋଇଥିବା ଘରୋଇ କଥାବାର୍ତ୍ତାକୁ ନାଜୀ ଗୋଏନ୍ଦା 'ଗେଷ୍ଟାପୋ' ଏହିଭଳି ଭାବରେ ରିପୋର୍ଟ କରିଥିଲେ ।

ଜର୍ମାନୀର ବିପର୍ଯ୍ୟୟ ଓ ହିଟଲର୍‌ଙ୍କ ମନୋଭାବ ଦେଖି ସୁଭାଷ ନିରାଶ ହୋଇ ପଡ଼ିଥିଲେ । ଜର୍ମାନୀରେ ଗଠିତ "Indian Legion" ବା 'ମୁକ୍ତି-ଫୌଜ' ସାହାଯ୍ୟରେ ସେ ଭାରତର ସ୍ୱାଧୀନତା ପାଇଁ କିଛି କରିପାରିବେ ବୋଲି ଯେଉଁ କ୍ଷୀଣ ଆଶା ଥିଲା,

1. Linerkenhn German Military Tr. Intelligence, p.188

ତାହା କ୍ରମେ ନିଷ୍ପ୍ରଭ ହେବାକୁ ବସିଲା । ଜର୍ମାନୀ ସରକାର 'ମୁକ୍ତିଫୌଜ'କୁ ଆଫଗାନିସ୍ଥାନ ପର୍ଯ୍ୟନ୍ତ ପରିବହନ ଦେଇପାରିବ ବୋଲି ସେ ବିଶ୍ୱାସ କରିପାରିଲେ ନାହିଁ । ଏତଦ୍‌ବ୍ୟତୀତ ଆଉ ଏକ ବିଷୟ ସୁଭାଷଙ୍କ ମନକୁ ସର୍ବଦା ଭାରାକ୍ରାନ୍ତ କରି ରଖିଥିଲା, ତାହା ହେଉଛି, ପ୍ରତି କ୍ଷେତ୍ରରେ ବିଦେଶୀ ରାଷ୍ଟ୍ର ଉପରେ ଅଧିକରୁ ଅଧିକ ନିର୍ଭର କରିବା । ପିଲାଦିନୁ ତାଙ୍କର ଏ ମନୋଭାବ ଥିଲା । 'ଅନ୍ୟଠାରୁ ଋଣ କରିବା' ତାଙ୍କ ପକ୍ଷରେ ଆଦୌ ଆନନ୍ଦପ୍ରଦ ନଥିଲା । ଅବଶ୍ୟ ଜର୍ମାନୀଠାରୁ ଯେଉଁ ଆର୍ଥିକ ସାହାଯ୍ୟ ସେ ଆଣୁଥିଲେ, ତାକୁ ସେ ସାହାଯ୍ୟରୂପେ ଆଣୁନଥିଲେ, ଆଣୁଥିଲେ ଋଣ ରୂପରେ ଏବଂ ଦେଶ ସ୍ୱାଧୀନ ହେଲେ ତାହା ପରିଶୋଧ କରିବେ ବୋଲି ସେ ଅଙ୍ଗୀକାରବଦ୍ଧ ଥିଲେ । କିନ୍ତୁ ସର୍ବଦା ତାଙ୍କ ମନ ଭିତରେ ଥିଲା ଯେ, ସୁବିଧା ମିଳିବା ସଙ୍ଗେ ସଙ୍ଗେ ସେ ଋଣ ପରିଶୋଧ କରିବାକୁ ଚେଷ୍ଟାକରିବେ ।

ଅବଶ୍ୟ ଏହା ସେ ଭଲରୂପେ ଜାଣିଥିଲେ ଯେ, ବିଦେଶୀ ରାଷ୍ଟ୍ରରେ ଭାରତର ମୁକ୍ତିବାହିନୀ ଗଠିତ ହୋଇଥିବାରୁ ସେହି ରାଷ୍ଟ୍ରର ସହାୟତା ବ୍ୟତିରେକେ ତାହା ସମ୍ଭବ ନୁହେଁ । କିନ୍ତୁ ଭାରତବାସୀଙ୍କଠାରୁ ମଧ୍ୟ ଏ ଦିଗରେ ଯତ୍‌ପରୋନାସ୍ତି ସାହାଯ୍ୟ ସଂଗ୍ରହ କରିବା ଏକାନ୍ତ ବାଞ୍ଛନୀୟ । ଜର୍ମାନୀ ବା ୟୁରୋପରେ କେତେ ଜଣ ବା ଭାରତୀୟ ଅଛନ୍ତି, ଯେଉଁମାନେ ଏତେ ବଡ଼ ମୁକ୍ତିବାହିନୀକୁ ସାହାଯ୍ୟ କରିପାରିବେ ? ୧୯୪୦-୪୧ ମସିହା ଯୁଦ୍ଧର ଗତି ଯାହା ଥିଲା, ସେତେବେଳେ ଜର୍ମାନୀ ଛଡ଼ା ଅନ୍ୟ କେଉଁ ରାଷ୍ଟ୍ର ବା ଏକ ବ୍ରିଟିଶ-ବିରୋଧୀ ମୁକ୍ତି ସଂଗ୍ରାମକୁ ସାହାଯ୍ୟକରନ୍ତା ?

କିନ୍ତୁ ୧୯୪୧ ଶେଷ ଆଡ଼କୁ ସମୁଦାୟ ଯୁଦ୍ଧର ଗତି ବଦଳିଗଲା । ସେହି ବର୍ଷ ଡିସେମ୍ବର ମାସ ୭ ତାରିଖରେ ଜାପାନ ପାର୍ଲହାର୍ବର ଉପରେ ବୋମାମାଡ଼ କରି ଯୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ଯୋଗଦେଲା । ସୁଭାଷ ପୂର୍ବ-ଏସିୟା ଆଡ଼କୁ ଅଧୀର ଆବେଗରେ ଦୃଷ୍ଟି ନିକ୍ଷେପ କଲେ । ବର୍ଲିନରେ 'ଫ୍ରି ଇଣ୍ଡିଆ' ସେଣ୍ଟର ଗଢ଼ାଯିବାର ଠିକ୍ ଏକମାସ ପରେ ବ୍ରିଟିଶ-ଆମେରିକା ଶକ୍ତି ବିରୁଦ୍ଧରେ ଜାପାନ ଯୁଦ୍ଧ ଘୋଷଣା କଲା । ସେହି ସମୟରୁ ରାସବିହାରୀଙ୍କ ନିମନ୍ତ୍ରଣ ଓ ବ୍ୟାଙ୍କକ୍ ସମ୍ମିଳନୀ ପର୍ଯ୍ୟନ୍ତ ପ୍ରତ୍ୟେକ ଘଟଣାପ୍ରବାହକୁ ସେ ସର୍ତକତାସହକାରେ ଲକ୍ଷ୍ୟକରୁଥିଲେ । ସେ ଅନୁଭବ କଲେ ଯେ ପୂର୍ବ-ଏସିଆରେ ରହିଲେ ସେ ଦେଶଭିତରେ ରହିଲା ଭଳି ମନେକରିବେ ଏବଂ ସେଠାରେ ବାସକରୁଥିବା ତିରିଶ ଲକ୍ଷ ଭାରତୀୟଙ୍କର ସାହାଯ୍ୟ-ସହଯୋଗରେ 'ଜାତୀୟ ବାହିନୀ' ଗଢ଼ିତୋଳିବେ ଏକ ଦୁର୍ଦ୍ଧର୍ଷ ଓ ଦୁର୍ବାର ସୈନ୍ୟବାହିନୀରୂପେ ଏବଂ ତା' ସାହାଯ୍ୟରେ ବର୍ମା-ଆସାମ ସୀମାନ୍ତରୁ ବ୍ରିଟିଶ-ଭାରତ ଉପରେ ହୋଇପାରିବ ଏକ ସଫଳ ଅଭିଯାନ । ସୁଭାଷ ଅସ୍ଥିର ହୋଇପଡ଼ିଲେ । ଜର୍ମାନୀରେ ଥିବା ତାଙ୍କର ସହକର୍ମୀଙ୍କ ସହ ଆଲୋଚନା କରି ସ୍ଥିରକଲେ ଯେ, ରାସବିହାରୀଙ୍କ ନିମନ୍ତ୍ରଣ ରକ୍ଷାକରିବା ତାଙ୍କ ପକ୍ଷରେ ଏକାନ୍ତ ପ୍ରୟୋଜନ ଏବଂ ତାଙ୍କର ଯିବାର ବ୍ୟବସ୍ଥା କରିବାକୁ ଜର୍ମାନୀ ସରକାରକୁ ଅନୁରୋଧକଲେ ।

କିନ୍ତୁ ଜର୍ମାନୀ ସରକାର ଏ ବିପଜ୍ଜନକ ଦାୟିତ୍ୱ ଗ୍ରହଣକରିବାକୁ ଇତସ୍ତତଃ ହେଲେ; କାରଣ 'ନେତାଜୀଙ୍କୁ ଜର୍ମାନି ସରକାର ଏକ ମାମୁଲି ବ୍ୟକ୍ତି ବୋଲି ମନେକରୁ ନଥିଲା; ସ୍ୱାଧୀନ ଭାରତର ଜଣେ ମୁଖ୍ୟ ରୂପେ ବିଚାର କରୁଥିଲା ।

ସୁତରାଂ ତାଙ୍କୁ ନିରାପଦରେ ଜାପାନରେ ପହଞ୍ଚାଇବା ଆବଶ୍ୟକ ବୋଲି ଜର୍ମାନୀ ମନେକଲା । ସେତେବେଳେ ଯୁଦ୍ଧର ଘନଘଟା ଏତେ ତୀବ୍ର ଯେ, ଜର୍ମାନୀଠାରୁ ଜାପାନ ପର୍ଯ୍ୟନ୍ତ ହଜାର ହଜାର ମାଇଲ ଆକାଶପଥ ଗୁରୁତରଭାବରେ ବିପନ୍ନ । ଏହି ଦୃଷ୍ଟିରୁ ଜର୍ମାନୀ ସରକାର ନେତାଜୀଙ୍କୁ ପଠାଇବାକୁ ବିବ୍ରତ ହେବା ସ୍ୱାଭାବିକ । ଜର୍ମାନୀ ସରକାରଙ୍କୁ ଏହି ଦୁଶ୍ଚିନ୍ତାରୁ ମୁକ୍ତକରିବାକୁ ନେତାଜୀ ନିଜେ ଏଥିରେ ହସ୍ତକ୍ଷେପ କଲେ । ଡିସେମ୍ବର ୫ ତାରିଖରେ ନାଜୀସରକାରଙ୍କୁ ଏକ ନୋଟ୍ ଲେଖିଲେ, ''ମୋର ବିଶ୍ୱାସ ସବ୍‌ମ୍ୟାରିନ ଜାହାଜ ବା ବିମାନପଥରେ ମୋତେ ବର୍ତ୍ତମାନ ମଧ୍ୟ ଦୂର ପ୍ରାଚ୍ୟକୁ ପଠାଇବା ସମ୍ଭବ । ଏଥିରେ ଅବଶ୍ୟ ଯଥେଷ୍ଟ ବିପଦ ଅଛି, ମୁଁ ଜାଣେ । ସଂପୂର୍ଣ୍ଣ ସ୍ୱେଚ୍ଛାରେ ଏବଂ ଆନନ୍ଦସହକାରେ ମୁଁ ସେ ବିପଦ ମୁଣ୍ଡାଇବାକୁ ପ୍ରସ୍ତୁତ ଅଛି । ମୁଁ ଭାଗ୍ୟରେ ବିଶ୍ୱାସକରେ ଏବଂ ମୁଁ ଜାଣେ ଯେ ମୋର ଏ ପ୍ରଚେଷ୍ଟା ନିଶ୍ଚୟ ସଫଳ ହେବ । ଯେତେ ପ୍ରକାର ବିପଦ, ଦାୟିତ୍ୱ ଏବଂ ଯେତେ ପ୍ରକାର ଅସୁବିଧା ଥାଉନା କାହିଁକି, ଏ ଘଟଣାରେ ମୋତେ ସାହାଯ୍ୟକଲେ ମୁଁ କୃତଜ୍ଞ ରହିବି । ମୁଁ ଯେତେ ଶୀଘ୍ର ଯାଇପାରେ ଭାରତ ଓ ମୋ' ପକ୍ଷରେ ସେତେ ମଙ୍ଗଳ ହେବ ।''(1)

ରୁଷିୟାରେ ଜର୍ମାନୀର ପରାଜୟ ସେହି ସମୟର ଘଟଣା । ତେଣେ ଉତ୍ତର ଆଫ୍ରିକାର ରଣାଙ୍ଗନରେ ମଧ୍ୟ ନାଜୀସୈନ୍ୟମାନେ ପଛଘୁଞ୍ଚା ଦେଉଥାନ୍ତି । ସୁତରାଂ ନେତାଜୀଙ୍କ ଜାପାନ ଯିବା ପ୍ରଶ୍ନ ଉପରେ ନାଜୀ ସରକାର ଧ୍ୟାନ ଦେଇପାରିଲେ ନାହିଁ । ନେତାଜୀ ଭୀଷଣ ବିରକ୍ତ ହୋଇ ହିଟଲରଙ୍କୁ ଏକ ବ୍ୟକ୍ତିଗତ ପତ୍ର ଲେଖିଲେ — "For the shake of my country, I have risked my neck to come to Germany, for the same I am prepared to risk my neck to return to India. The Brisish C.I.D. is very efficient and just as I escaped inspite of it, I shall escape inspite of your Gestpo also."(2) (ମୋ ଦେଶର ସ୍ୱାର୍ଥ ପାଇଁ ଜୀବନକୁ ବିପନ୍ନ କରି ମୁଁ ଜର୍ମାନୀକୁ ଆସିଛି, ପୁଣି ଜୀବନକୁ ବିପନ୍ନ କରି ମୁଁ ଭାରତକୁ ପଳାଇଯିବାକୁ ପ୍ରସ୍ତୁତ ଅଛି । ବ୍ରିଟିଶ ଗୋଏନ୍ଦା ଖୁବ୍ ଦକ୍ଷ; ତା ସତ୍ତ୍ୱେ ମୁଁ ଯେମିତି ପଳାଇଆସିପାରିଲି, ତୁମର ଗେଷ୍ଟାପୋ (ନାଜୀ ଗୋଏନ୍ଦା)ଥିବା ସତ୍ତ୍ୱେ ମୁଁ ପଳାଇଯିବି ।)

ଯାହାହେଉ, ଶେଷରେ ଜର୍ମାନୀ ସରକାର ରାଜିହେଲେ । ସେତେବେଳେ ଇଂଲିଶ ଚାନେଲ ଓ ଭୂମଧ୍ୟସାଗରଠାରୁ ଆରମ୍ଭକରି ଆଟ୍‌ଲାଣ୍ଟିକା ଓ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ସବୁଆଡ଼େ ଇଂଲାଣ୍ଡ- ଆମେରିକା ଓ ଜର୍ମାନୀ- ଜାପାନର ଯୁଦ୍ଧଜାହାଜ ଭିତରେ ଅନବରତ ସଂଘର୍ଷ ଲାଗିଥାଏ । ତା'ରି ଭିତର ଦେଇ ଇଂଲାଣ୍ଡ- ଆମେରିକାର ପହିଲା ନମ୍ବର ଦୁସ୍‌ମନ,

1. Subhas Chandra Bose - Indian Struggle, Page. 203
2. Ganpulay - Netaji in Germany - Pg. 19

ଏ-ଓ୍ୱାନ- ଏନିମି ସୁଭାଷ ବୋଷଙ୍କୁ ନିରାପଦରେ ପହଞ୍ଚାଇବାକୁ ହେବ । ଅସାଧ ନହେଲେ ବି ଏହା ଯେ ଏକ ଦୁଃସାଧ କାର୍ଯ୍ୟ ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ନେତାଜୀଙ୍କର ଏହି ଯାତ୍ରାକୁ ସଂପୂର୍ଣ୍ଣ ଗୋପନ ରଖାଯାଇଥିଲା । ଶତ୍ରୁପକ୍ଷର ଗୁପ୍ତଚର, ବିଶେଷତଃ ନେତାଜୀଙ୍କର ଗତିବିଧିକୁ ଲକ୍ଷ୍ୟ କରିବାକୁ ନିଯୁକ୍ତ ହୋଇଥିବା ଶହ ଶହ ବ୍ରିଟିଶ-ଆମେରିକା ଗୋୟେନ୍ଦା, ସେତେବେଳେ ୟୁରୋପର ଅଧିକାଂଶ ସହରରେ ବିଛେଇ ହୋଇ ରହିଥାନ୍ତି । ଶତ୍ରୁପକ୍ଷର ଗୋୟେନ୍ଦା-ଜାଲ ଭେଦକରି ୧୯୪୩ ଫେବୃୟାରୀ ୭ ତାରିଖ ରାତ୍ରିର ଘନ ଅନ୍ଧକାର ଭିତରେ ନେତାଜୀ ତାଙ୍କର ଏକମାତ୍ର ସହକାରୀ ଆବିଦ ହାସାନଙ୍କ ସହ କିଏଭ ବନ୍ଦରରେ ଗୋଟିଏ ସବମାରିନ୍‌ରେ (ନମ୍ବର-V-109) ତାଙ୍କର ସେହି ଐତିହାସିକ ଯାତ୍ରା ଆରମ୍ଭକଲେ ।

ଆଲେକଜାଣ୍ଡର ଓ୍ୱାର୍ଥ ଲେଖିଛନ୍ତି- '' ନାମ୍ବିଅର,ଷ୍ଟେଟସେକ୍ରେଟାରୀ କେପଲର୍ ଓ ମୁଁ ୧୯୪୩ ଫେବୃୟାରୀ ୭/୮ ରାତିରେ ନେତାଜୀ ଓ ଆବିଦ ହାସାନଙ୍କୁ କିଏଭ ବନ୍ଦରକୁ ନେଇଥିଲୁଁ । ନାମ୍ବିଅର୍, କେପଲର୍, ମିଲିଟାରୀ ଆଟାଚି ଓ ମୋ ବ୍ୟତୀତ ଅନ୍ୟ କେହି ନେତାଜୀଙ୍କର ଗନ୍ତବ୍ୟ ସ୍ଥଳ ସମ୍ପର୍କରେ କିଛି ଜାଣିନଥିଲେ ।''(1)

□□□

1. Alexandar Werth - Netaji in Germany - P.19

## ଅଧ୍ୟାୟ - ଏକଚାଳିଶି

# କଦମ୍ କଦମ୍ ବଢ଼ାଏ ଯା

୧୯୪୩ ମସିହା ଏପ୍ରିଲ ୨୮ ତାରିଖ । ଭାରତ ମହାସାଗରର ମାଡ଼ାଗାସ୍କାର ଦ୍ୱୀପର ୪୦୦ ମାଇଲ ଦୂରରେ ଅତଳ ସମୁଦ୍ରଗର୍ଭରୁ ଉଠିଲା ଗୋଟିଏ ଜର୍ମାନି ସବମାରିନ୍ ନମ୍ବର V-୧୦୯ । ପ୍ରଥମେ ଦିଶିଲା ତାହାର ପେରିସ୍କୋପ । ଧୀରେ ଧୀରେ ସମୁଦାୟ ବୁଡ଼ାଜାହାଜଟା ଉପରକୁ ଉଠିଲା ଏବଂ ସେହି ବୁଡ଼ାଜାହାଜ ଭିତରୁ ବାହାରି ଅପେକ୍ଷମାଣ ଗୋଟିଏ ଜାପାନୀ ସବ୍‌ମାରିନ ଭିତରେ ପ୍ରବେଶକଲେ ପୁରୁଷସିଂହ ମହାନାୟକ ବଜ୍ରକଣ୍ଠ ନେତାଜୀ ସୁଭାଷ । ସଙ୍ଗରେ ତାଙ୍କର ଏକନିଷ୍ଠ ସହକର୍ମୀ ଆବିଦ ହାସନ । ଦୀର୍ଘ ୯୦ ଦିନର ବିପଦସଙ୍କୁଳ ଆଟଲାଣ୍ଟିକ ଓ ଭାରତ ମହାସାଗରରେ ସମୁଦ୍ରଯାତ୍ରା ନିର୍ବିଘ୍ନରେ ସମାପ୍ତ କରି ନେତାଜୀଙ୍କର ଯାତ୍ରା ଆରମ୍ଭ ହେଲା ପୂର୍ବ-ଏସିଆ ଅଭିମୁଖେ । ଅଶେଷ ଅଭିନନ୍ଦନ ଜର୍ମାନୀ ବୁଡ଼ାଜାହାଜର ସେହି ଦକ୍ଷ ଚାଳକମାନଙ୍କୁ । କୋଟି ଧନ୍ୟବାଦ ନେତାଜୀଙ୍କ ସେହି ଜର୍ମାନୀ ଦେହରକ୍ଷୀମାନଙ୍କୁ ଯେଉଁମାନେ ନିରାପଦରେ ତାଙ୍କୁ ହଜାର ହଜାର ମାଇଲ ସମୁଦ୍ରବକ୍ଷରେ ନେଇଆସିପାରିଲେ । ଏ ଜାତି ସେମାନଙ୍କ ନିକଟରେ ଚିରକୃତଜ୍ଞ ।

ନେତାଜୀଙ୍କ ଏହି ଐତିହାସିକ ଜଳଯାତ୍ରା ପୃଥିବୀର ସଇତାନୀ ଇଂରେଜ ସାମ୍ରାଜ୍ୟବାଦର ମୃତ୍ୟୁଘଣ୍ଟି ବଜାଇଦେଲା । ଭାରତ ସଶସ୍ତ୍ର ମୁକ୍ତି-ସଂଗ୍ରାମର ଚରମ ପର୍ଯ୍ୟାୟର ଅୟମାରମ୍ଭ ହେଲା ଏହି ଅଭିଯାନ ଫଳରେ । ବିପ୍ଳବର ପାଞ୍ଚଜନ୍ୟ ବାଜିଉଠିଲା ସମଗ୍ର ଏସିଆ ମହାଦେଶରେ । ପ୍ରତିଧ୍ୱନିତ ହେଲା ରାସବିହାରଙ୍କର ସେହି ବଜ୍ର-ଗମ୍ଭୀର ସ୍ଲୋଗାନ - ''ଏସିଆ ଏସିଆବାସୀଙ୍କର । ଇଂରେଜ ଏସିଆ ଛାଡ଼ ।''

ମଇ ୧୬ ତାରିଖରେ ନେତାଜୀ ଟୋକିଓଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ କାମରେ ଲାଗିଗଲେ । ଜାପାନ ପ୍ରଧାନମନ୍ତ୍ରୀ ଜେନେରାଲ ଟୋଜୋ ତାଙ୍କୁ ନିମନ୍ତ୍ରଣ କଲେ ଜାପାନ ପାର୍ଲିଆମେଣ୍ଟର ଏକ ବିଶେଷ ଅଧିବେଶନକୁ ଏବଂ ସେହିଠାରେହିଁ ଜାପାନୀ ସରକାରପକ୍ଷରୁ ଆନୁଷ୍ଠାନିକ ଭାବରେ ଘୋଷଣା କରାଗଲା "We are determined to extenk every possible assistance for the cause of India's Independence" ( ଭାରତର ସ୍ୱାଧୀନତା-ସ୍ୱାର୍ଥରେ ଆମେ ସମସ୍ତ ପ୍ରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛୁଁ ।)

ଜାପାନ ସରକାରର ଯେଉଁ ତଥାକଥିତ ଉଦାସୀନତାର 'ଅଭିଯୋଗ' କରି ମୋହନ ସିଂ ଛ' ମାସ ତଳେ ଫୌଜକୁ ଭାଙ୍ଗିଦେଇ ପଳାଇଯାଇଥିଲେ ଟୋଜୋଙ୍କର ଏହି ଘୋଷଣା ଫଳରେ ଜାପାନ ସେହି ଅଭିଯୋଗରୁ ମୁକ୍ତହେଲା ଏବଂ ୩୦ ଲକ୍ଷ ପ୍ରବାସୀ ଭାରତୀୟ,

୪୦ କୋଟି ଭାରତବାସୀଙ୍କୁ ଉଲ୍ଲସିତ କରି ଟୋକିଓ ରେଡ଼ିଓ ଗର୍ଜିଉଠିଲା– ''ନେତାଜୀ ସୁଭାଷଚନ୍ଦ୍ର ବୋଷ ଜାପାନରେ ପହଞ୍ଚିଅଛନ୍ତି ।'' ଏହି ସମ୍ବାଦରେ ବର୍ମାଠାରୁ ଜାପାନ ପର୍ଯ୍ୟନ୍ତ ପ୍ରବାସୀ ଭାରତୀୟମାନଙ୍କ ଭିତରେ ବିଦ୍ୟୁତ୍ ତରଙ୍ଗ ଖେଳିଗଲା ସତେ । ଉତ୍ସାହ, ଉଦ୍ଦୀପନାରେ ଯେମିତି ଉନ୍ମାଦ ହୋଇଗଲେ ଭାରତବାସୀ ।

ସମସ୍ତେ ଯେମିତି ସମସ୍ୱରରେ କହିଉଠିଲେ- ''ଆଉ ନିସ୍ତାର ନାହିଁ ତୁମକୁ ବ୍ରିଟିଶ ସରକାର; ସୁଭାଷ ଆସିଗଲେ । ଆମର ପ୍ରିୟ ନେତାଜ, ପ୍ରାଣର ସୁଭାଷ, ଭାରତମାତାର ଅମୂଲ୍ୟ ରତ୍ନ, ସାମ୍ରାଜ୍ୟବାଦର ଦୁସ୍‌ମନ, ତୁମର କାଳାନ୍ତକ ଯମ ସୁଭାଷ ଆସିଗଲେ । ଆଉ ରକ୍ଷା ନାହିଁ ।''

ଯୁଦ୍ଧବନ୍ଦୀ ଶିବିର ଓ ଆଜାଦ ହିନ୍ଦ୍ ବାହିନୀ ଭିତରେ ଆନନ୍ଦ ଓ ଉତ୍ତେଜନା । କେଉଁ ଭାରତୀୟ ସୈନ୍ୟ ବା ସୁଭାଷଙ୍କୁ ନ ଜାଣେ ? ଏହି ସେ ସୁଭାଷ, ଯାହାର ନାମ ସେମାନେ ପିଲାଦିନୁ ଶୁଣିଛନ୍ତି । ମହାତ୍ମା ଗାନ୍ଧିଙ୍କ ସହ ଟକ୍କର ଦେଇଥିବା ସୁଭାଷ, ମହାତ୍ମାଙ୍କ ପ୍ରାର୍ଥୀ ପଟ୍ଟାଭିଙ୍କୁ ଶୋଚନୀୟ ଭାବେ ପରାସ୍ତକରିଥିବା ସୁଭାଷ, ବ୍ରିଟିଶ ହୃତ୍‌କମ୍ପ ସୃଷ୍ଟିକରିଥିବା ସୁଭାଷ, ସରୋଜିନୀଙ୍କ ଭାଷାରେ "Flaming Sword" ଜ୍ୱଳନ୍ତ ତରବାରୀ ସୁଭାଷ, ରହସ୍ୟମୟ ସୁଭାଷ – ସେହି ସୁଭାଷ ଆସିଛନ୍ତି ଜାତୀୟ ବାହିନୀର ନେତୃତ୍ୱ ନେବେ ।

ଟୋକିଓ ରେଡ଼ିଓରେ ଜୁନ ୨୧ ତାରିଖରେ ନେତାଜୀ ତାଙ୍କର ପ୍ରଥମ ଭାଷଣରେ କହିଲେ – ''ଦେଶ ଭିତରେ ରହି ଇଂରେଜମାନଙ୍କ ଆଧୁନିକ ଅସ୍ତ୍ରଶସ୍ତ୍ର ସହ ଲଢ଼ିବା ସମ୍ଭବ ନୁହେଁ; ସୁତରାଂ ଏ ଦାୟିତ୍ୱ ଆଜି ପଡ଼ିଛି ପ୍ରବାସୀ ଭାରତୀୟଙ୍କ ଉପରେ; ଖାସ୍ କରି ପୂର୍ବ-ଏସିଆରେ ବାସକରୁଥିବା ଭାତରୀୟଙ୍କ କାନ୍ଧରେ । ସେ ମାହେନ୍ଦ୍ର କ୍ଷଣ ଆଜି ସମାଗତ । ଦେଶପ୍ରେମୀ ପ୍ରତ୍ୟେକ ଭାରତୀୟ ପକ୍ଷରେ ବର୍ତ୍ତମାନ ଯୁଦ୍ଧକ୍ଷେତ୍ରକୁ ଯିବା ସମୟ । ଯେତେବେଳେ ଲକ୍ଷ ଲକ୍ଷ ଭାରତୀୟଙ୍କ ରକ୍ତ ପ୍ରବାହିତ ହେବ, ସେତେବେଳେ ଯାଇ ମାତୃଭୂମିକୁ ମିଳିବ ତାହାର ସ୍ୱାଧୀନତା ।''

ଇଂରେଜୀପଢୁଆ ଯେଉଁ ଭାରତୀୟମାନେ ବ୍ରିଟିଶ ଅପପ୍ରଚାରର ଶିକାର ହୋଇଛନ୍ତି, ସେହିମାନଙ୍କ ଉଦ୍ଦେଶ୍ୟରେ ନେତାଜୀ ପୁଣି କହିଲେ – ''ମୋ' ଉପରେ ବିଶ୍ୱାସ ସ୍ଥାପନ କରନ୍ତୁ । ମୋତେ ସାରା ଜୀବନ୍ତ ଦଣ୍ଡିତ କରିଥିବା ଏବଂ ଏଗାର ଥର ବନ୍ଦୀ କରିଥିବା ବ୍ରିଟିଶ ସରକାର ମୋତେ ବଦଳାଇପାରିନାହିଁ । ପୃଥିବୀର କୌଣସି ଶକ୍ତି ମୋତେ ବଦଳାଇପାରିବ ନାହିଁ । ଯଦି ଧୂର୍ତ୍ତ ଓ କୌଶଳୀ ବ୍ରିଟିଶ କୂଟନୀତିଜ୍ଞମାନଙ୍କର ତୋଷାମଦ ମୋତେ ବଦଳାଇ ପାରିଲା ନାହିଁ, ତେବେ ପୃଥିବୀର ଆଉ କେହି ମୋତେ ବଦଳାଇପାରିବ ବୋଲି ଆଶଙ୍କା କରନ୍ତୁ ନାହିଁ । ଭାରତ ସୀମାନ୍ତର ଖୁବ୍ ନିକଟରେ ମୁଁ ଠିଆହୋଇଛି । ୧୯୪୧ ଜାନୁୟାରୀ ମାସରୁ ମୋର ଅବାରିତ ଗତିପଥକୁ କେହି ରୁଦ୍ଧ କରିପାରିନାହିଁ । ସୁତରାଂ ଆମର ଏହି ଶେଷ ସ୍ୱାଧୀନତା ସଂଗ୍ରାମରେ ଯେତେବେଳେ ସୀମାନ୍ତ ଅତିକ୍ରମ କରି ପୁନର୍ବାର ମୋର ମାତୃଭୂମିକୁ ମୁଁ ସ୍ପର୍ଶ କରିବି, ସେତେବେଳେ ମଧ୍ୟ ଦୁନିଆରେ କୌଣସି ଶକ୍ତି ମୋତେ ରୋକିପାରିବ ନାହିଁ ।''

ନେତାଜୀଙ୍କୁ ସଙ୍ଗରେ ଧରି ରାସବିହାରୀ ଜୁଲାଇ ୨ ତାରିଖରେ ଟୋକିଓରୁ ଯାଇ ସିଙ୍ଗାପୁରରେ ପହଞ୍ଚିଲେ । ସେହିଠାରେହିଁ ହେଲା ଲିଗ ଓ ଆଜାଦ ହିନ୍ଦ ଫୌଜର ନେତୃବୃନ୍ଦଙ୍କ ସହ ତାଙ୍କର ପ୍ରଥମ ସାକ୍ଷାତ । ଫୌଜର ଜବାନମାନେ ଜଣାଇଲେ ନେତାଜୀଙ୍କୁ ପ୍ରଥମ ସାମରିକ ଅଭିବାଦନ 'ଗାର୍ଡ୍ ଅଫ୍ ଅନର୍' । ପ୍ୟାରେଡ଼ ପରିଦର୍ଶନ କରି ନେତାଜୀଙ୍କ ଅଗ୍ନିଗର୍ଭ କଣ୍ଠ ଯେତେବେଳେ ଗର୍ଜନ କଲା– ''ସାଥି ଔର ଦୋସ୍ତୋ (Comarades and Friends)'', ସେତେବେଳେ ଜବାନମାନଙ୍କର ଆନନ୍ଦ କହିଲେ ନସରେ– ଏକ ନୂତନ ଜୀବନ, ନୂତନ ପ୍ରେରଣା ଓ ନୂତନ ସ୍ପନ୍ଦନର ଅନୁଭୂତି ସବୁରି ପ୍ରାଣରେ ।

ଜୁଲାଇ ୩ ତାରିଖ । ସିଙ୍ଗାପୁର କାଥେ ସିନେମା ହଲ୍ ଭରପୂର– ସୋରିଷ ପକାଇବାକୁ ସ୍ଥାନନାହିଁ । ପ୍ରାୟ ପାଞ୍ଚହଜାର ଲୋକ ଭରିଯାଇଛନ୍ତି ଚାରିଆଡ଼େ । ଏହି ଐତିହାସିକ ସମାବେଶରେ ପୁରୁଷସିଂହ ରାସବିହାରୀ 'ମୁକ୍ତି-ସଂଗ୍ରାମ'ର ଗୁରୁଦାୟିତ୍ୱ ସମର୍ପଣ କଲେ ମହାନାୟକ ନେତାଜୀ ସୁଭାଷଙ୍କ ହସ୍ତରେ । ସେହି ସୁବର୍ଣ୍ଣ ମୁହୂର୍ତ୍ତକୁ ଅପେକ୍ଷା କରି ରହିଥିଲେ ସେ ଏତେ ଦିନ ପର୍ଯ୍ୟନ୍ତ । ସୁତରାଂ ରାସବିହାରୀ ସବୁଠାରୁ ବେଶି ଆନନ୍ଦିତ । ଜାପାନୀ ସାମରିକ ଅଫିସରଙ୍କ ଭାଷାରେ ''କନିଷ୍ଠ ନେତୃତ୍ୱ ନେଲା ଜ୍ୟେଷ୍ଠର'' । ଜାପାନ ପ୍ରଧାନମନ୍ତ୍ରୀ ଟୋଜେ । ସଙ୍ଗେ ସଙ୍ଗେ ଅଭିନନ୍ଦନ ବାର୍ତ୍ତା ପଠାଇଲେ 'ନେତାଜୀ'ଙ୍କୁ ତାଙ୍କର ଏହି ନିର୍ବାଚନ ପାଇଁ ।

ଠିକ୍ ତା' ପରଦିନ 'ଆଜାଦ ହିନ୍ଦ୍ ଫୌଜ'ର ଏକ ବିରାଟ ସମାବେଶ ହେଲା ସିଙ୍ଗାପୁର ଟାଉନ ହଲ୍‌ର ଠିକ୍ ବିପରୀତ ପଡ଼ିଆରେ । ସେଠାରେ ନେତାଜୀ ସାଲ୍ୟୁଟ ଗ୍ରହଣକରି ଯେଉଁ ଆଗ୍ନେୟ ଭାଷଣ ଦେଇଥିଲେ, ତାହା ଭାରତୀୟ ମୁକ୍ତିବାହିନୀ କଣ୍ଠରେ ଦେଇଥିଲା ଏକ ନୂତନ ସ୍ଲୋଗାନ- 'ଦିଲ୍ଲୀ ଚଲୋ' । ଜଣେ ଐତିହାସିକ ସେହି ଭାଷଣକୁ ନେପୋଲିୟନ ବୋନାପାର୍ଟଙ୍କର "Orders of the day" ସହ ତୁଳନା କରିଅଛନ୍ତି ।

''ବନ୍ଧୁଗଣ ଏବଂ ମୋର ପ୍ରାଣପ୍ରିୟ ସୈନିକବୃନ୍ଦ ! ଆପଣମାନଙ୍କ ଯୁଦ୍ଧଡାକରା ହେଉ 'ଚଲୋ ଦିଲ୍ଲୀ' । ମୁଁ ଜାଣେନା, ଆମ୍ଭମାନଙ୍କ ଭିତରକୁ କିଏ ଏହି ସ୍ୱାଧୀନତା ସଂଗ୍ରାମରେ ବଞ୍ଚିରହିବା । କିନ୍ତୁ ମୁଁ ଏହା ଭଲରୂପେ ଜାଣେ ଯେ, ଆମେ ଶେଷରେ ନିଶ୍ଚୟ ଜିତିବୁ ଏବଂ ବ୍ରିଟିଶ-ଶକ୍ତିର ଅନ୍ୟତମ କବରଖାନା ଲାଲକିଲ୍ଲାରେ ଆମର ବିଜୟ ଶୋଭାଯାତ୍ରା ନ ହେବା ପର୍ଯ୍ୟନ୍ତ ଆମର କାର୍ଯ୍ୟ ଶେଷ ହେବ ନାହିଁ ।

''ମୁଁ ଆପଣଙ୍କ ନିକଟରେ ପ୍ରତିଜ୍ଞା କରୁଅଛି ଯେ, 'ଅନ୍ଧକାର ଓ ଆଲୋକରେ', 'ଆନନ୍ଦ ଓ ଦୁଃଖରେ' ଏବଂ 'ପରାଜୟ ଓ ବିଜୟ' ମଧ୍ୟରେ ସବୁବେଳେ ମୁଁ ଆପଣମାନଙ୍କ ପାଖରେ ରହିବି । ବର୍ତ୍ତମାନ ମୁଁ ଆପଣମାନଙ୍କୁ କ୍ଷୁଧା, ତୃଷା, ଯନ୍ତ୍ରଣା, ବାଧ୍ୟତା-ମୂଳକ ଯାତ୍ରା ଓ ମୃତ୍ୟୁ ବ୍ୟତୀତ ଆଉ କିଛି ଦେଇପାରୁନାହିଁ । ଆମମାନଙ୍କ ଭିତରୁ କିଏ କିଏ ସ୍ୱାଧୀନ ଭାରତ ଦେଖିବାକୁ ବଞ୍ଚିରହିବେ ସେଥିରେ କିଛି ଯାଏ-ଆସେନ । ଭାରତ ସ୍ୱାଧୀନ ହେବ ଏବଂ ଆମେ ଭାରତର ସ୍ୱାଧୀନତା ପାଇଁ ଆମର ସର୍ବସ୍ୱ ଦାନକରିବା, ଏତିକି ଆମପକ୍ଷରେ ଯଥେଷ୍ଟ । ଉଠନ୍ତୁ ! ନଷ୍ଟକରିବାକୁ ଆମର ସମୟ ନାହିଁ । ଆପଣମାନଙ୍କର

ଅସ୍ତ୍ର ଉତ୍ତୋଳନ କରନ୍ତୁ । ଆପଣମାନଙ୍କ ସମ୍ମୁଖରେ ଦେଖନ୍ତୁ, ସେହି ପଥ ଯାହାକୁ ଆମର ପୂର୍ବସୂରୀମାନେ ନିର୍ମାଣ କରିଅଛନ୍ତି । ଆମ୍ଭମାନଙ୍କୁ ସେହି ପଥରେହିଁ ଯିବାକୁ ହେବ । ଶତ୍ରୁ ଶିବିରକୁ ଅତିକ୍ରମ କରି ଆମକୁ ପଥ ପରିଷ୍କାର କରିବାକୁ ହେବ ଏବଂ ଭଗବାନ୍ ଯଦି ଚାହାନ୍ତି, ଆମ୍ଭେମାନେ ସହିଦ- ମୃତ୍ୟୁ ବରଣ କରିବା । ଆମ୍ଭମାନଙ୍କର ଶେଷ ଯାତ୍ରାରେ ଆମ୍ଭେମାନେ ଚୁମ୍ବନ କରିବା ସେହି ପଥକୁ, ଯେଉଁ ପଥ ଆମର ସେନାବାହିନୀକୁ ଦିଲ୍ଲୀରେ ପହଞ୍ଚାଇବ । ଦିଲ୍ଲୀର ପଥ ସ୍ୱାଧୀନତାର ପଥ– 'ଚଲୋ ଦିଲ୍ଲୀ' ।(1)

ଜୁଲାଇ ୯ ତାରିଖରେ ପ୍ରବାସୀ ଭାରତୀୟମାନଙ୍କର ଏକ ବିରାଟ ସମାବେଶରେ କହିଲେ, ''ସଶସ୍ତ୍ର ଜାତୀୟ ବାହିନୀ ଗଠିତ ହୋଇଗଲା । ବର୍ତ୍ତମାନ ଆବଶ୍ୟକ 'ସଂପୂର୍ଣ୍ଣ ଯୁଦ୍ଧ ପାଇଁ ସଂପୂର୍ଣ୍ଣ ପ୍ରସ୍ତୁତି, (Total mobilisation for a total War.) ମୁଁ ଚାହେଁ ତିନି ଲକ୍ଷ ସୈନ୍ୟ ଓ ତିନି କୋଟି ଟଙ୍କା । ମୁଁ ଚାହେଁ ହଜାର ହଜାର ଭାରତୀୟ ବୀରାଙ୍ଗନା ଯେଉଁମାନେ ବିପ୍ଳବିଣୀ ଝାନ୍ସି ରାଣୀଙ୍କର ମହାନ୍ ପରମ୍ପରାରେ ପୁଷ୍ଟ ଏକ ନାରୀବାହିନୀ ଗଠନ କରିବେ ।''

ସତକୁ ସତ ଗଠିତ ହେଲା 'ଝାନ୍ସୀରାଣୀ' ରେଜିମେଣ୍ଟ ଡାକ୍ତର ଲକ୍ଷ୍ମୀ ସ୍ୱାମୀନାଥନ୍‌ଙ୍କ ନେତୃତ୍ୱରେ । ଏସିଆ ସୈନ୍ୟବାହିନୀରେ ଏକ ନୂତନ ବିଶେଷତ୍ୱ ଯୁକ୍ତ ହେଲା । ଜାପାନୀମାନେ ଏହା ଶୁଣି ପ୍ରଥମେ ବିଶ୍ୱାସକରିପାରିନଥିଲେ; କିନ୍ତୁ ଅଳ୍ପ କେଇ ଦିନ ଟ୍ରେନିଂ ନେଇ ଏହି ରେଜିମେଣ୍ଟ ଯେଉଁ ଅପୂର୍ବ ଦକ୍ଷତା ଓ ନିପୁଣତା ପ୍ରଦର୍ଶନ କରିଥିଲେ, ତାହା ସମସ୍ତଙ୍କୁ ସ୍ତମ୍ଭିତ କରିଦେଲା ।

ନେତାଜୀ ପୂର୍ବ-ଏସିଆର ସମସ୍ତ ରାଷ୍ଟ୍ରରେ ଗସ୍ତ କରି ଶହ ଶହ ସାଧାରଣ ସଭାରେ ଯୋଗଦେଲେ ଏବଂ ଦେଶର ଏହି ଚରମ ସଂଗ୍ରାମରେ ପ୍ରତ୍ୟେକ ଭାରତୀୟ ଯୋଗ ଦେବାକୁ ଉଦ୍‌ବୋଧନ ଦେଲେ । ''ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି– Give me Blood, I shall give you Freedom'' ଏହାହିଁ ଥିଲା ତାଙ୍କର ଆଗ୍ନେୟ ଆହ୍ୱାନ । ଭାରତୀୟମାନଙ୍କ ମନରେ ଏଭଳି ଉତ୍ସାହ ଉଦ୍ଦୀପନା ସୃଷ୍ଟି ହେଲା ଯେ, ଏହା ଫଳରେ ହଜାର ହଜାର ଭାରତୀୟ ସର୍ବସ୍ୱ ତ୍ୟାଗକରି ମୁକ୍ତି-ସଂଗ୍ରାମରେ ଲମ୍ଫ ପ୍ରଦାନ କଲେ । ଏହି ଭାବରେ ନେତାଜୀ ପୂର୍ବ ଏସିଆରେ ପହଞ୍ଚିବାର ମାତ୍ର ତିନିମାସ ଭିତରେ ଜାପାନଠାରୁ ବର୍ମା ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଭାରତୀୟ 'ଆଜାଦ ହିନ୍ଦ ଫୌଜ'ର ପତାକାତଳେଏକତ୍ରିତ ହେଲେ । ସମସ୍ତଙ୍କ କଣ୍ଠରେ ଗୋଟିଏ ମାତ୍ର ସ୍ଲୋଗାନ୍- 'ଚଲୋ ଦିଲ୍ଲୀ' ।

ଏକତା, ବିଶ୍ୱାସ ଓ ତ୍ୟାଗ (Unity, Faith and Sacrifice) ହେଲା 'ଆଜାଦ ହିନ୍ଦ ଫୌଜ'ର ମୂଳମନ୍ତ୍ର ।

୧୯୪୩ ସେପ୍‌ଟେମ୍ବର ମାସରେ ଯେତେବେଳେ ନେତାଜୀ ଘୋଷଣା କଲେ, ''ସେ ଦିନ ଆଉ ଡେରି ନାହିଁ, ଯେଉଁ ଦିନ 'ଆଜାଦ ହିନ୍ଦ୍ ବାହିନୀ' ଭାରତର ସୀମା ପାରିହୋଇ ଭାରତରୁ ଇଂରେଜ ଶାସନ ଲୋପକରିବାକୁ କାର୍ଯ୍ୟ ଆରମ୍ଭ କରିବ ।''

---

1. K.C. Ghose - Roll of Honour - Pg.592

ଏହି ଘୋଷଣାରେ ଚାରିଆଡ଼େ ଯୁଗପତ୍ ଆନନ୍ଦ ସୃଷ୍ଟିହେଲା ଏବଂ ସମସ୍ତେ ଅଣନିଶ୍ୱାସୀ ହୋଇ ଅନାଇ ରହିଲେ ସେହି ମାହେନ୍ଦ୍ର କ୍ଷଣକୁ ।

ତା' ପର ଘଟଣାଗୁଡ଼ିକ ବିଦ୍ୟୁତ୍ ବେଗରେ ସିନେମା ଚିତ୍ରଭଳି ଘଟିବାକୁ ଲାଗିଲା । ସମଗ୍ର ଆନ୍ଦୋଳନକୁ ଯୁଦ୍ଧକାଳୀନ ଜରୁରୀ କାର୍ଯ୍ୟ ଭଳି କରାଗଲା ଏବଂ ସେହି ଛାଞ୍ଚରେ ପକାଇବାକୁ ନେତାଜୀ ହେଲେ 'ଆଜାଦ ହିନ୍ଦ ଫୌଜ'ର ସର୍ବୋଚ୍ଚ ସେନାପତି– ସୁପ୍ରିମ କମାଣ୍ଡର – 'ସିପାହି ସଲାର' – ଅଗଷ୍ଟ ୨୩ ତାରିଖ ୧୯୪୩ରେ ।

''ଭାରତର ସ୍ୱାଧୀନତା ସଂଗ୍ରାମ ଓ ଆଜାଦ ହିନ୍ଦ୍‌ର ସ୍ୱାର୍ଥଦୃଷ୍ଟିରୁ ମୁଁ ଆଜିଠାରୁ ସେନାବାହିନୀର ମୁଖ୍ୟ ଦାୟିତ୍ୱ ଗ୍ରହଣକଲି । ଏହା ମୋ ପକ୍ଷରେ ଅଶେଷ ଆନନ୍ଦ ଓ ଗୌରବର ବିଷୟ । 'ଭାରତର ମୁକ୍ତିବାହିନୀ'ର ସର୍ବୋଚ୍ଚ ସେନାପତି ହେବା ଅପେକ୍ଷା ଆଉ ଅଧିକ ଗୌରବ ବିଷୟ କଣ ହୋଇପାରେ ? ଯେଉଁ ଦାୟିତ୍ୱ ମୁଁ ମୁଣ୍ଡାଇଛି, ତାହାର ଗୁରୁତ୍ୱ ସମ୍ପର୍କରେ ମୁଁ ସଂପୂର୍ଣ୍ଣ ସଚେତନ ଏବଂ ଏ ଦାୟିତ୍ୱର ଭାରରେ ମସ୍ତକ ମୋର ଅବନତ । ମୁଁ ମୋର ଦାୟିତ୍ୱ ସୁଚାରୁରୂପେ ତୁଲାଇବାକୁ ବଦ୍ଧପରିକର; ଯେପରିକି ଭାରତର ୩୮ କୋଟି ନରନାରୀ ନିରାପଦରେ ରହିବେ ଏବଂ ପ୍ରତ୍ୟେକ ଭାରତୀୟ ମୋ' ଉପରେ ବିଶ୍ୱାସ ସ୍ଥାପନ କରିପାରିବେ ।

''ଆମେ ଆମର ସୈନ୍ୟବାହିନୀକୁ ଏଭଳି ଭାବରେ ଗଢ଼ିବା ଯେପରି କି ଆମ୍ଭମାନଙ୍କର ଏକମାତ୍ର ଧ୍ୟେୟ ହେବ- 'ଭାରତର ସ୍ୱାଧୀନତା' ଓ ଏକମାତ୍ର ଆଦର୍ଶ ହେବ 'କର ଅବା ମର' । ଆମେ ଯେତେବେଳେ ଛିଡ଼ାହେବ । ଛିଡ଼ାହେବା ହିମାଳୟ ଭଳି । ଯେତେବେଳେ ଚାଲିବା, ଚାଲିବା ଷ୍ଟିମ ରୋଲ୍‌ର ଭଳି ।(1)

**ବିପ୍ଳବୀ ଭାରତ ସରକାର –**

''ଭଗବାନ୍‌ଙ୍କ ନାମରେ ମୁଁ ଏହି ପବିତ୍ର ଶପଥ ଗ୍ରହଣ କରୁଅଛି ଯେ, ଭାରତ ଏବଂ ତାହାର ୩୮ କୋଟି ଅଧିବାସୀଙ୍କୁ ମୁକ୍ତି କରିବା ପାଇଁ...'' ନେତାଜୀଙ୍କ କଣ୍ଠ ରୁଦ୍ଧ ହୋଇଗଲା । ଝରିପଡ଼ିଲା ଅଜସ୍ର ଅଶ୍ରୁଧାରା । ଆଉ ସମ୍ଭାଳିପାରିଲେନାହିଁ ସେ । ତା' ପରେ ନିସ୍ତବ୍ଧତା, ଘୋର ନିସ୍ତବ୍ଧତା । ସମବେତ ଜନତା ମଧ୍ୟ ସମ୍ଭାଳିପାରିଲେ ନାହିଁ– ସମସ୍ତଙ୍କ ଆଖି ସଜଳ ହୋଇଗଲା । ନେତାଜୀ ନୀରବ । ଆଖିଆଗରେ ଭାସିଗଲା ଚଳଚ୍ଚିତ୍ର ପରି ଭାରତର ମୁକ୍ତି ସଂଗ୍ରାମର ଦେଢ଼ଶହ ବର୍ଷର ରକ୍ତରଂଜିତ ଇତିହାସ । ଅଗଣିତ ମୁକ୍ତିସଂଗ୍ରାମୀଙ୍କର ଆତ୍ମତ୍ୟାଗ, ଦୁଃଖ ଓ ନିର୍ଯାତନା । ବନ୍ଦିନୀ ଦେଶଜନନୀର ଶୋକସନ୍ତପ୍ତ ମୁଖଶ୍ରୀ ।

ଅଶ୍ରୁ ସମ୍ବରଣ କରି କିଛି ସମୟ ପରେ ନେତାଜୀ ପୁଣି ଆରମ୍ଭକଲେ– ''ଭଗବାନ୍‌ଙ୍କ ନାମରେ ମୁଁ ଏହି ପବିତ୍ର ଶପଥ ଗ୍ରହଣ କରୁଅଛି ଯେ, ଭାରତ ଓ ତାହାର ୩୮ କୋଟି ଅଧିବାସୀଙ୍କୁ ମୁକ୍ତ କରିବା ପାଇଁ ମୁଁ ସୁଭାଷଚନ୍ଦ୍ର ବୋଷ ମୋର ଶେଷ ରକ୍ତବିନ୍ଦୁ ଦେଇ ଏହି ପବିତ୍ର ଯୁଦ୍ଧ ଚଳାଇଯିବି । ମୁଁ ଚିରଦିନ ଭାରତର ଜଣେ ବିଶ୍ୱସ୍ତ ସେବକଭାବରେ କାର୍ଯ୍ୟ

1. K.C. Ghose - Roll of Honour - Pg. 372

କରିବି ଏବଂ ଭାରତବର୍ଷରେ ଥିବା ମୋର ୩୮ କୋଟି ଭାଇଭଉଣୀଙ୍କ କଲ୍ୟାଣସାଧନ ମୋ' ଜୀବନର ଶ୍ରେଷ୍ଠତମ କର୍ତ୍ତବ୍ୟ ହେବ । ସ୍ୱାଧୀନତାପ୍ରାପ୍ତି ପରେ ମଧ ଏହାକୁ ରକ୍ଷା କରିବା ପାଇଁ ଓ ମୋର ଶରୀରର ଶେଷ ରକ୍ତବିନ୍ଦୁ ଉତ୍ସର୍ଗ କରିବା ପାଇଁ ମୁଁ ସର୍ବଦା ପ୍ରସ୍ତୁତ ରହିବି ।''

ଅସ୍ଥାୟୀ (ବିପ୍ଳବୀ) ଭାରତ ସରକାରର (ଆଜାଦ ହିନ୍ଦ ସରକାର) ମନ୍ତ୍ରିବୃନ୍ଦ ଜଣ ଜଣ କରି ଅନୁରୂପ ଶପଥ ଗ୍ରହଣ କଲେ । ସିଙ୍ଗାପୁର ଐତିହାସିକ କାଥେ ସିନେମା ହଲରେ ଅନୁଷ୍ଠିତ ଉତ୍ସବରେ ପ୍ରତିଷ୍ଠିତ ହେଲା ଅସ୍ଥାୟୀ ଭାରତ ସରକାର (Provisional Government of India.)

୧୯୪୩ ମସିହାର ଅକ୍ଟୋବର ୨୩ ତାରିଖ ସେଥିପାଇଁ ଭାରତର ମୁକ୍ତିସଂଗ୍ରାମର ଇତିହାସରେ ଏକ ସ୍ୱର୍ଣ୍ଣଖଚିତ ଅଧ୍ୟାୟ । ୧୯୧୫ରେ ରାଜା ମହେନ୍ଦ୍ର ପ୍ରତାପ ଓ ବରକତଉଲ୍ଲା ଏହିଭଳି ଏକ ବିପ୍ଳବୀ ସରକାର ଗଠନ କରିଥିଲେ କାବୁଲରେ । ରାସବିହାରୀ ଓ ବାଘା ଯତୀନ୍‌ଙ୍କର ପରିକଳ୍ପିତ ବ୍ୟାପକ ବିଦ୍ରୋହ ପ୍ରଚେଷ୍ଟା ବିଫଳ ହେବାରୁ ତାହା ମଧ ବ୍ୟର୍ଥ ହେଲା (୨ୟ ଭାଗ ଦ୍ରଷ୍ଟବ୍ୟ) । ମୁକ୍ତି ଆନ୍ଦୋଳନକୁ ଆଗେଇ ନେବା ପାଇଁ ଏହିଭଳି ଏକ ବିପ୍ଳବୀ ସରକାର ଗଠନ କରିବାକୁ ଲାହୋର କଂଗ୍ରେସ (୧୯୩୦)ରେ ନେତାଜୀ ଏକ ପ୍ରସ୍ତାବ ଦେଇଥିଲେ । କିନ୍ତୁ ଗାନ୍ଧିଜୀଙ୍କ ବିରୋଧ ଫଳରେ ତାହା ଗୃହୀତ ହୋଇନଥିଲା । ତାହାର ଠିକ୍ ୧୩ ବର୍ଷ ପରେ ନେତାଜୀ ତାଙ୍କର ସେହି ପରିକଳ୍ପିତ ଅସ୍ଥାୟୀ ସ୍ୱାଧୀନ ସରକାର ଗଠନ କରିବାକୁ ସମର୍ଥ ହୋଇଛନ୍ତି ।

ବସ୍ତୁତଃ 'ଜାତୀୟ ବାହିନୀ' ଓ 'ସ୍ୱାଧୀନତା ଲିଗ'କୁ ସୁସଙ୍ଗଠିତ କରି ନେତାଜୀ ଅନୁଭବ କଲେ ଯେ, ଏହି ଦୁଇ ସଂସ୍ଥାକୁ ସୂଚାରୁରୂପେ ପରିଚାଳିତ କରିବାକୁ ହେଲେ ଏଥିରେ ଏକ ସରକାରୀ ଛାପର ଆବଶ୍ୟକତା ରହିଛି । ଦ୍ୱିତୀୟତଃ, ମୁକ୍ତିସଂଗ୍ରାମକୁ ସମର୍ଥନ କରୁଥିବା ସ୍ୱାଧୀନ ଦେଶଗୁଡ଼ିକ ସହ ସମାନ ମର୍ଯ୍ୟାଦାରେ କାର୍ଯ୍ୟ କରିବାକୁ ହେଲେ ଏକ ସରକାରୀ ଚେହେରା ମଧ ଆବଶ୍ୟକ । ତୃତୀୟତଃ, ପ୍ରବାସୀ ଭାରତୀୟମାନଙ୍କ ଭିତରେ ଏହି ଆନ୍ଦୋଳନ ପ୍ରତି ସମ୍ମାନଜନକ ଓ ଅନୁଶାସନ-ସମର୍ଥିତ ଆନୁଗତ୍ୟ ପ୍ରକାଶ କରିବାକୁ ଓ ମୁକ୍ତି-ଆନ୍ଦୋଳନକୁ ଅଧିକ ଶୃଙ୍ଖଳିତ କରିବାକୁ ହେଲେ ଏକ ଅସ୍ଥାୟୀ ସରକାର ଗଠନ କରିବା ଏକାନ୍ତ ପ୍ରୟୋଜନ । ଏହା ନେତାଜୀଙ୍କ ରାଜନୈତିକ ବିଚକ୍ଷଣତା ଓ ଦୂରଦର୍ଶିତାର ଅନ୍ୟତମ ନିଦର୍ଶନ । ସମସ୍ତ ପ୍ରକାର କୂଟନୈତିକ ମର୍ଯ୍ୟାଦାସମ୍ପନ୍ନ ଏକ ସରକାର ଅଧୀନରେ ଥିବା ଏକ ସେନାବାହିନୀ ଅନ୍ୟ ଯେକୌଣସି ସ୍ୱାଧୀନ ସରକାର ଭଳି ତା'ର ଶତ୍ରୁ- ଦେଶ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାକୁ ହକ୍‌ଦାର । ନେତାଜୀ ତାଙ୍କର 'ଜାତୀୟ ବାହିନୀ' ପାଇଁ ଏହି ଅଧିକାର, ବିପ୍ଳବୀ ସରକାର ଗଠନ କରିବା ଫଳରେ ସାବ୍ୟସ୍ତ ଓ ସୁରକ୍ଷିତ କରିଦେଲେ ।

କାଥେ ସିନେମା ହଲ୍ ସେଦିନ ମଧ ଭରପୁର ହୋଇଯାଇଛି ନେତାଜୀଙ୍କ ସେହି ଘୋଷଣା ଶୁଣିବାକୁ । ଘଣ୍ଟା-ଘଣ୍ଟାଧରି ଅପେକ୍ଷା କରିଥିବା ସେହି ଉତ୍କଣ୍ଠିତ ଭାରତୀୟଙ୍କୁ

ଶୁଣାଇଲେ ନେତାଜୀ ପନ୍ଦର ଶହ ଶବ୍ଦର ସେହି ଘୋଷଣାପତ୍ର । ସେଥିରେ ୧୭୫୭ ପଲାସୀ ଯୁଦ୍ଧଠାରୁ ଆରମ୍ଭକରି ଦୁଇ ଶହ ବର୍ଷର ପରାଧୀନତାର ଯନ୍ତ୍ରଣା- ଦାୟକ ଇତିହାସ ଓ ସେହି ପରାଧୀନତା ବିରୁଦ୍ଧରେ ଭାରତୀୟମାନଙ୍କର ନିରବଚ୍ଛିନ୍ନ ସଂଗ୍ରାମର ବର୍ଣ୍ଣନା କରାଯାଇଥିଲା ।

"ଭାରତର ପବିତ୍ର ମାଟିରୁ ଇଂରେଜ ଓ ତା'ର ସମର୍ଥକମାନଙ୍କୁ ନିର୍ମୂଳ କରିବାକୁ ମୁକ୍ତି-ସଂଗ୍ରାମ ପରିଚାଳନା କରିବା ଏହି ସରକାରର ହେବ ମୁଖ୍ୟ ଦାୟିତ୍ୱ । ଜନସାଧାରଣଙ୍କର ଆଶା-ଆକାଙ୍କ୍ଷା ଅନୁସାରେ ସ୍ୱାଧୀନ ଭାରତର ସ୍ଥାୟୀ ଜାତୀୟ ସରକାର ଗଠନକରିବା ମଧ୍ୟ ଏହି ସରକାରର ଅନ୍ୟତମ ଦାୟିତ୍ୱରୂପେ ପରିଗଣିତ ହେବ ।"

ଘୋଷଣାପତ୍ରର ଶେଷାଂଶରେ କୁହାଯାଇଥିଲା– "ଈଶ୍ୱରଙ୍କ ନାମରେ ଏବଂ ଯେଉଁମାନେ ଯୁଗଯୁଗଧରି ବିରାଟ ଭାରତୀୟ ଜାତି ପ୍ରତିଷ୍ଠା କରିଅଛନ୍ତି ସେମାନଙ୍କ ନାମରେ, ଏବଂ ଯେଉଁ ବୀର ସହିଦମାନେ ଆମ୍ଭମାନଙ୍କ ପାଇଁ ବୀରତ୍ୱ ଓ ଆତ୍ମତ୍ୟାଗର ମହନୀୟ ପରମ୍ପରା ରଖିଯାଇଅଛନ୍ତି ସେମାନଙ୍କ ନାମରେ ଆମେମାନେ ସମସ୍ତେ ଭାରତୀୟଙ୍କୁ ଆହ୍ୱାନ କରୁଅଛୁଁ, ସେମାନେ ଏହି ଜାତୀୟ ସରକାରର ପତାକାତଳେ ଏକତ୍ରିତ ହୋଇ ଜାତୀୟ ସଂଗ୍ରାମରେ ଝାସଦିଅନ୍ତୁ ।"

ଘୋଷଣାପତ୍ରରେ ଯେଉଁମାନେ ସ୍ୱାକ୍ଷର କଲେ ସେମାନେ ହେଉଛନ୍ତି –

(୧) ସୁଭାଷ ଚନ୍ଦ୍ର ବୋଷ– ରାଷ୍ଟ୍ରମୁଖ୍ୟ, ପ୍ରଧାନମନ୍ତ୍ରୀ, ଯୁଦ୍ଧ ଓ ବୈଦେଶିକ ବିଭାଗ ତଥା 'ଆଜାଦ ହିନ୍ଦ୍ ଫୌଜ'ର ସର୍ବୋଚ୍ଚ ନାୟକ ।

(୨) କ୍ୟାପ୍‌ଟେନ ଡକ୍ଟର ଶ୍ରୀମତୀ ଲକ୍ଷ୍ମୀସ୍ୱାମୀନାଥନ– ମହିଳା ବିଭାଗ ।

(୩) ଶ୍ରୀ ଏସ. ଏ. ଆୟାର– ପ୍ରଚାର ବିଭାଗ ।

(୪) ଲେଫ୍‌ଟନାଣ୍ଟ କର୍ଣ୍ଣେଲ ଏ. ସି. ଚାଟର୍ଜି– ଅର୍ଥ ବିଭାଗ ।

(୫) ଲେଫ୍‌ଟେନାଣ୍ଟ କର୍ଣ୍ଣେଲ ଅଜିବ ଅହମ୍ମଦ ଲେଫ୍‌ନାଣ୍ଟ କର୍ଣ୍ଣେଲ ଏନ. ଏସ. ଭଗତ, ଲେପ୍‌ଟାଣ୍ଟ ଏମ. ଜେଡ୍. କିଆନି, ଲେଫ୍‌ନାଂଣ୍ଟ କର୍ଣ୍ଣେଲ ସାନଓ୍ୱାଜ ଖାଁ– ସାମରିକ ପ୍ରତିନିଧିବୃନ୍ଦ ।

(୬) ଶ୍ରୀ ଏ. ଏମ. ସହାୟ– ସେକ୍ରେଟାରୀ (ମନ୍ତ୍ରୀପାହ୍ୟା)

(୭) ଶ୍ରୀ କରମ ଗନି, ଶ୍ରୀ ଦେବନାଥ ଦାସ, ଶ୍ରୀ ଡି. ଏସ. ଖାଁ, ଶ୍ରୀ ଏ. ଏଲାପ୍‌ପା, ଶ୍ରୀ ଜେ. ଥିରୁ, ଶ୍ରୀ ସର୍ଦ୍ଦାର ଈଶର ସିଂହ– ପରାମର୍ଶଦାତାବୃନ୍ଦ ।

(୮) ଶ୍ରୀ ଏ. ଏନ୍. ସରକାର– ଆଇନପରାପର୍ଶଦାତା ।

(୯) ଶ୍ରୀ ରାଂସବିହାରୀ ବୋଷ– ସର୍ବୋଚ୍ଚ ପରାମର୍ଶଦାତା (ସୁପ୍ରିମ ଆଡ଼ଭାଇଜର୍)

ଏହିଭଳି ଭାବରେ ମୁକ୍ତି-ଯୁଦ୍ଧ ସଙ୍ଗଠନ ଓ ପରିଚାଳନା ପାଇଁ ଏକ ବିଧିବଦ୍ଧ ସରକାର ଗଠିତ ହୋଇଗଲା । ନେତାଜୀ ୧୯୨୮ ମସିହାର କଲିକତା କଂଗ୍ରେସ ସମୟରେ 'ସେବାଦଳ' ମାଧ୍ୟମରେ ଯେଉଁ ବିରାଟ ସ୍ୱେଚ୍ଛାସେବକ ବାହିନୀ ଗଠନ କରିଥିଲେ ଏବଂ ୧୯୪୧ରେ ଜର୍ମାନୀରେ 'ଫ୍ରି ଇଣ୍ଡିଆ ସେଣ୍ଟର ଓ ଆର୍ମି' ଗଠନ କରି ଯେଉଁ ଅମୂଲ୍ୟ

ଅଭିଜ୍ଞତା ଅର୍ଜନ କରିଥିଲେ, ତାହା ଆଜି ଚରମ ସାର୍ଥକତା ଲାଭକଲା କହିଲେ ଅତ୍ୟୁକ୍ତି ହେବ ନାହିଁ । (୧)

ଠିକ୍ ତା' ପରଦିନ ଜାପାନ ସରକାର ଆଜାଦ ହିନ୍ଦ୍ ସରକାରଙ୍କୁ କୂଟନୈତିକ ସ୍ୱୀକୃତି ପ୍ରଦାନକଲେ । ଏହା ଫଳରେ ଆଜାଦ ହିନ୍ଦ୍ ସରକାର ସରକାରୀ କ୍ଷେତ୍ରରେ ଜାପାନ ସରକାର ସହ ସମାନ ମର୍ଯ୍ୟାଦା ଲାଭକଲା । ଅର୍ଥାତ୍ ଜାପାନ ପ୍ରଧାନମନ୍ତ୍ରୀ ତୋଜୋ ଓ ବିପ୍ଳବୀ ଭାରତ ସରକାରର ପ୍ରଧାନମନ୍ତ୍ରୀ ନେତାଜୀ ସୁଭାଷ ସମାନ କୂଟନୈତିକ ଓ ରାଜନୈତିକ ଆସନ ଲାଭକଲେ ।

ଅକ୍ଟୋବର ୨୩-୨୪ ତାରିଖ ରାତିରେ ନେତାଜୀଙ୍କ ଅଧ୍ୟକ୍ଷତାରେ ମନ୍ତ୍ରିମଣ୍ଡଳର ପ୍ରଥମ ବୈଠକ ବସିଲା ନେତାଜୀଙ୍କ କ୍ୟାମ୍ପରେ ଏବଂ ଉକ୍ତ ବୈଠକରେ ୨୪ ତାରିଖ ରାତି ୧୨ଟା ୧୫ ମିନିଟରେ ଅସ୍ଥାୟୀ ଭାରତ ସରକାରଙ୍କ ପକ୍ଷରୁ ଇଂଲାଣ୍ଡ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ-ଘୋଷଣା କରାଗଲା । ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା ସମ୍ପର୍କରେ କର୍ଣ୍ଣେଲ ଲୋଗନାଥନ୍ ଭିନ୍ନ ମତ ପୋଷଣ କରୁଥିଲେ । କିନ୍ତୁ ନେତାଜୀଙ୍କର ଯୁକ୍ତି ଥିଲା ଯେ, ଆମେରିକା ଏ ଯୁଦ୍ଧରେ ଇଂଲାଣ୍ଡକୁ ସବୁପ୍ରକାର ସାହାଯ୍ୟ କରୁଥିବାରୁ ଏବଂ ଭାରତମାଟିରେ ଆମେରିକା ସୈନ୍ୟମାନେ ରହିଥିବା ଦୃଷ୍ଟିରୁ ଭାରତ ନିକଟରେ ଉଭୟେ ସମାନ, ଉଭୟ ଭାରତର ଶତ୍ରୁ ।

ଏହି ଯୁଦ୍ଧ-ଘୋଷଣା ସାରା ବିଶ୍ୱରେ ଚମକ ଓ ଚାଞ୍ଚଲ୍ୟ ସୃଷ୍ଟିକଲା । ସାରା ବିଶ୍ୱ ଗଭୀର ଆଗ୍ରହସହକାରେ ଚାହିଁରହିଲେ ଭାରତୀୟ ସଶସ୍ତ୍ର ମୁକ୍ତି-ସଂଗ୍ରାମର ଏହି ନୂତନ ଅଧ୍ୟାୟକୁ ।

ବର୍ମା ସରକାର ଅକ୍ଟୋବର ୨୪ ତାରିଖରେ, କ୍ରୋସିଆ ୨୭ ତାରିଖରେ, ଜର୍ମାନୀ ୨୯ ତାରିଖରେ, ଚୀନ ଓ ମାଞ୍ଚୁରିଆ ନଭେମ୍ବର ପହିଲାରେ, ଇଟାଲି ସେହି ମାସ ୯ ତାରିଖରେ, ଥାଇଲାଣ୍ଡ ୧୯ ତାରିଖରେ ଆଜାଦ ହିନ୍ଦ୍ ସରକାରଙ୍କୁ ସେମାନଙ୍କ କୂଟନୈତିକ ସ୍ୱୀକୃତି ପ୍ରଦାନ କଲେ । ଏହା ଫଳରେ ବିଶ୍ୱର ଅନ୍ୟାନ୍ୟ ସ୍ୱାଧୀନ ରାଷ୍ଟ୍ର ଭଳି 'ସ୍ୱାଧୀନ ଭାରତ' ସରକାର ସମାନ ପାହ୍ୟାରେ ଅବସ୍ଥାପିତ ହେଲା ।

ନେତାଜୀ ଓ ତାଙ୍କ ସହକର୍ମୀମାନଙ୍କର ଦାୟିତ୍ୱ ମଧ୍ୟ ବଢ଼ିଗଲା ବହୁ ପରିମାଣରେ ଏହି ଘୋଷଣା ଫଳରେ । ଲାଗିପଡ଼ିରେ ସମସ୍ତେ ଏହି ଘୋଷଣାକୁ ବାସ୍ତବତାରେ ପରିଣତ କରିବାକୁ । ପୂର୍ବ-ଏସିଆରେ ଥିବା ତିରିଶ ଲକ୍ଷ ଭାରତୀୟଙ୍କ ଉଦ୍ଦେଶ୍ୟରେ ଏହି ଚରମ ସଂଗ୍ରାମ ପାଇଁ ପ୍ରସ୍ତୁତ ହେବାକୁ ସିଙ୍ଗାପୁର, ଟୋକିଓ, ବ୍ୟାଙ୍କକ, ରେଙ୍ଗୁନ ଓ ସାଇଗନ ରେଡ଼ିଓରୁ ଆହ୍ୱାନ ଦିଆଗଲା । ସିଙ୍ଗାପୁରଠାରେ ମଧ୍ୟ ସ୍ଥାପିତ ହେଲା 'ଆଜାଦ ହିନ୍ଦ୍ ରେଡ଼ିଓ' । ସେଠାରେ ଇଂରାଜୀ, ହିନ୍ଦୀ, ବଙ୍ଗଳା, ତାମିଲ, ତେଲୁଗୁ, କନ୍ନଡ଼ ମାଲୟାଲମ, ଗୁଜୁରାଟୀ, ମରାଠୀ, ପଞ୍ଜାବୀ, ଗୁର୍ଖାଲି ଓ ପୁସ୍ତୁ ପ୍ରଭୃତି ୧୨ଟି ଭାଷାରେ ପ୍ରଚାର ଆରମ୍ଭ କରାଗଲା । ଆଜାଦ ହିନ୍ଦ୍-ସରକାର ପକ୍ଷରୁ ନିମ୍ନଲିଖିତ ଭାଷାରେ ସମ୍ବାଦ ପତ୍ର ମଧ୍ୟ

୧. ଏହି ଗ୍ରନ୍ଥର ଦ୍ୱିତୀୟ ଭାଗ 'ପାର୍କ ସର୍କସର ସର୍କସ' ଦ୍ରଷ୍ଟବ୍ୟ

ପ୍ରକାଶିତ ହେଲା – Voice of India ଓ Azad Hind (ଇଂରାଜୀ ଦୈନିକ), ଆୱାଜ ହିନ୍ଦ ଓ ଆଜାଦ ହିନ୍ଦ ( ହିନ୍ଦୀ ଦୈନିକ) ଓ ସ୍ୱତନ୍ତ୍ର ଭାରତ ( ତାମିଲ) ।

କେବଳ ପଦାତିକ ସୈନ୍ୟ 'ଜାତୀୟ ବାହିନୀ' ପାଇଁ ଯଥେଷ୍ଟ ହୋଇନଥିବାରୁ ଆଜାଦ ହିନ୍ଦ ଫୌଜର ନୌବାହିନୀ ଓ ଆକାଶବାହିନୀ ଶାଖା ପାଇଁ ଯୋଜନା କଲେ ନେତାଜୀ । ଜାପାନ ସରକାର ସହ ଆଲୋଚନା କରି ଭାରତୀୟ ଯୁବକଙ୍କୁ ଜାପାନ ପଠାଗଲା ଏହି ଟ୍ରେନିଂ ପାଇଁ । ନେତାଜୀ ସ୍ନେହରେ ଏହି ଯୁବକମାନଙ୍କୁ ଟୋକିଓ ବୟଜ ( Tokyo Boys) ବୋଲି ଡାକୁଥିଲେ ।

ଅକ୍ଟୋବର ୨୮ ତାରିଖରେ ଟୋକିଓଠାରେ ବୃହତ୍ତମ ଏସିୟା ସମ୍ମିଳନୀ ଡକାଯାଇଥିଲା । ଅଧିକାଂଶ ଏସିୟା ରାଷ୍ଟ୍ର ଏହି ସମ୍ମିଳନୀରେ ଯୋଗଦେଇଥିଲେ । ଏସିଆର ଭବିଷ୍ୟତ୍ ହିଁ ଏହି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଭାରତପକ୍ଷରୁ ଆଜାଦ ହିନ୍ଦ୍ ସରକାରର ମୁଖ୍ୟରୂପେ 'ନେତାଜୀ' ଯୋଗଦେଇଥିଲେ; କିନ୍ତୁ ଜଣେକ ପର୍ଯ୍ୟବେକ୍ଷକ ରୂପେ । କାରଣ ନେତାଜୀଙ୍କର ବିଚାର ଥିଲା ଏହା ଯେ, ଏବଠାରୁ ଭାରତକୁ ଏକ ପକ୍ଷ କରିବା ଉଚିତ ହେବ ନାହିଁ । ଏହାର ଦାୟିତ୍ୱ ସଂପୂର୍ଣ୍ଣ ଭବିଷ୍ୟତ୍ ସ୍ୱାଧୀନ ଭାରତ ଉପରେ ସେ ଛାଡ଼ିଦେଇଥିଲେ ।

ବୃହତ୍ତର ଏସିୟା ସମ୍ମିଳନୀରେ ତୋଜୋ ଏକ ଗୁରୁତ୍ୱପୂର୍ଣ୍ଣ ଘୋଷଣା ପ୍ରକାଶ କରି କହିଲେ– '' ଜାପାନଅଧିକୃତ ଆଣ୍ଡାମାନ-ନିକୋବର ଦ୍ୱୀପପୁଞ୍ଜର ଶାସନ-ଦାୟିତ୍ୱ ଯଥାଶୀଘ୍ର ଆଜାଦ ହିନ୍ଦ ସରକାର ହସ୍ତରେ ଅର୍ପଣକରିଦିଆଯିବ ।''

ଏହା ଫଳରେ ନେତାଜୀ ଅଳ୍ପ କେଇଦିନ ପୂର୍ବରୁ ଯେଉଁ ଘୋଷଣା କରିଥିଲେ ଯେ ସ୍ୱାଧୀନ ଭାରତ ମାଟିକୁ ସ୍ପର୍ଶ କରିବାର ଆଉ ବିଳମ୍ବ ନାହିଁ – ସେହି ପ୍ରତିଶ୍ରୁତି ପୂରଣ ହେବାର ସୁଯୋଗ ପହଞ୍ଚିଗଲା ।

ଡିସେମ୍ବର ୨୯ ତାରିଖରେ ନେତାଜୀ ଆଣ୍ଡାମାନରେ ପହଞ୍ଚିଗଲେ । ସେ ଦିନଟି ମୁକ୍ତି-ସଂଗ୍ରାମର ଇତିହାସରେ ନିଶ୍ଚୟ ସ୍ମରଣୀୟ । କାରଣ ସେ ଦିନ ଭାରତର ଏକ ଅଂଶରୁ ଇଂରେଜ ପ୍ରଭୁତ୍ୱ ଲୋପପାଇ ସ୍ୱାଧୀନ ଭାରତ ସରକାରର ଶାସନ ପ୍ରତିଷ୍ଠିତ ହେଲା । ନେତାଜୀଙ୍କ ପକ୍ଷରେ ଏହି ଦିନଟି ଆହୁରି ଗରିମାମୟ ।

ଡିସେମ୍ବର ୩୦ ତାରିଖ ଦିନ ଆଣ୍ଡାମାନଠାରେ ନେତାଜୀ ଭାରତର ତ୍ରିରଙ୍ଗା ପତାକା ଉତ୍ତୋଳନକଲେ । ଏହା ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏକ ନୂତନ ଅଧ୍ୟାୟ । କାରଣ ମୁକ୍ତ ଭାରତର ଏକ ଅଂଶରେ ସ୍ୱାଧୀନ ଭାରତର ପତାକା ଉଡ଼ିଲା । ଖାଲି ସେତିକି ନୁହେଁ, ଏହି ଆଣ୍ଡାମାନରେ ଶହ ଶହ ଭାରତୀୟ ମୁକ୍ତି-ସଂଗ୍ରାମୀ ବ୍ରିଟିଶ ବିଚାରରେ 'କଳାପାଣି' ଦଣ୍ଡ ପାଇ ମୃତ୍ୟୁବରଣ କରିଅଛନ୍ତି । ସୁତରାଂ ପୂର୍ବସୂରୀମାନଙ୍କର ଆତ୍ମତ୍ୟାଗରେ ପବିତ୍ର ଆଣ୍ଡାମାନ ଦ୍ୱୀପପୁଞ୍ଜ ନେତାଜୀଙ୍କ ପକ୍ଷରେ ଏକ ମହାନ୍ ତୀର୍ଥ– କାଶୀ, ବୃନ୍ଦାବନ ବା ଗୟା ମଥୁରା ଅପେକ୍ଷା ଅଧିକ ପବିତ୍ର ।

ଆଣ୍ଡାମାନର କୁଖ୍ୟାତ ସେଲ୍ୟୁଲାର ଜେଲକୁ ଦେଖି ଆଖି ସଜଳ ହୋଇଉଠିଲା ନେତାଜୀଙ୍କ । " He then went round the historic Cellular jail, the Bastile

of India– when the wailing walls told him in silent voice the woes of the flesh of the prisoners under torture and the cool courage and undaunted spirit that braved the fury of the authorities like the ancient rocks lashed by the wind and the waves through the ages."(1) ରସ୍ ଆଇଲ୍ୟାଣ୍ଡରେ ଥିବା ବ୍ରିଟିଶ କମିସନର୍ ଅଫିସ ଉପରେ ଜାତୀୟ ପତାକା ଉତ୍ତୋଳନ କରି ନେତାଜୀ ଆଶା ପ୍ରକାଶ କରି କହିଥିଲେ ଯେ, ସେ ଦିନ ଆଉ ଦୂରରେ ନାହିଁ, ଯେତେବେଳେ କି ଦିଲ୍ଲୀର ବଡ଼ଲାଟ୍ ଭବନ ଉପରେ ୟୁନିୟନ ଜ୍ୟାକ୍ ବଦଳରେ ତ୍ରିରଙ୍ଗା ପତାକା ଉତ୍ତୋଳିତ ହେବ । ନେତାଜୀ କହିଲେ, "By the acquisition of this territory the provisional Government has now become a national entity in fact as well as in name. The liberation of the Andamans has symbolic signficance because the Andamans was always used by the British as a prison for political prisoners like the Bastile in Paris, which was liberated first in the French Revolution setting free Political Prisoners, the Adaman where our patriots suffered is the first to be liberated in India's fight for Independence. Part by part, Indian territory will be liberated but it is always the first, plot of land that hold the most significance."

ସେହି ମରଣଜୟୀ ସହିଦମାନଙ୍କର ପବିତ୍ର ସ୍ମୃତି ଉପଲକ୍ଷେ ଆଣ୍ଡାମାନ ଓ ନିକୋବର ଦ୍ୱୀପକୁ ଯଥାକ୍ରମେ 'ସହିଦ' ଓ 'ସ୍ୱରାଜ' ନାମରେ ନାମିତ କରାଗଲା । ଜାତୀୟ ବାହିନୀର ସୈନିକମାନଙ୍କର ଦୈନନ୍ଦିନ ଜୀବନ ଓ କାର୍ଯ୍ୟ କଳାପରେ ଏକ ଅନନ୍ୟ ଆଦର୍ଶ ଓ ଜାତୀୟ ସଂହତିର ବିଶେଷତ୍ୱ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ନେତାଜୀ ଜାତି-ଧର୍ମ-ନିର୍ବିଶେଷରେ ସୈନ୍ୟ ଶିବିରରେ ଗୋଟିଏ ମାତ୍ର ରନ୍ଧନଶାଳାର ବ୍ୟବସ୍ଥା କରି ଜାତୀୟ ମୈତ୍ରୀର ଶୁଭାରମ୍ଭ କରିଥିଲେ । ସଲାମ, ନମସ୍ତେ ଏବଂ ଓ୍ୟାଣେକସ ପରିବର୍ତ୍ତେ 'ଜୟ ହିନ୍ଦ' ହେବ ଭାରତୀୟମାନଙ୍କର ଅଭିନନ୍ଦନ ସଂକେତ । ଅରଟଚିହ୍ନିତ ତ୍ରିରଙ୍ଗା ହେବ ଜାତୀୟ ପତାକା, 'ଶୁଭ ସୁଖ ଚାହେଁ' ହେବ ଜାତୀୟ ସଙ୍ଗୀତ, 'ବ୍ୟାଘ୍ର' ହେବ ଜାତୀୟ ପଶୁ ଏବଂ ସ୍ୱାଧୀନତାପ୍ରାପ୍ତି ପର୍ଯ୍ୟନ୍ତ ଆହ୍ୱାନ "War cry" ହେବ 'ଚଲୋ ଦିଲ୍ଲୀ' । ବିପ୍ଳବର ଶେଷ ପର୍ଯ୍ୟନ୍ତ ସ୍ଲୋଗାନ ହେବ 'ଇନ୍‌କ୍ୱିଲାବ ଜିନ୍ଦାବାଦ' ଓ 'ବନ୍ଦେ ମାତରମ୍' ।

୧୯୪୪ ଜାନୁଆରୀ ମାସରେ ଆଜାଦ ହିନ୍ଦ ଫୌଜ, ଆଜାଦ ହିନ୍ଦ୍ ସରକାର ଓ ସୁପ୍ରିମ କମାଣ୍ଡରଙ୍କର ହେଡକ୍ୱାର୍ଟର ସିଙ୍ଗାପୁରରୁ ସ୍ଥାନାନ୍ତରିତ ହେଲା ରେଙ୍ଗୁନକୁ ।

ବର୍ମାର ରାଜଧାନୀ ରେଙ୍ଗୁନ । ବର୍ମା ଯେ କେବଳ ଇଂରେଜ ସାମ୍ରାଜ୍ୟବାଦର ଅନ୍ୟତମ ଉପନିବେଶ ହୋଇଥିଲା ତା' ନୁହେଁ; ଏହା ଅପେକ୍ଷା ଅଧିକ କିଛି ବିଶେଷତ୍ୱ ସେ ବହନକରୁଥିଲା । ବର୍ମା ସୀମାନ୍ତ ପାରହେଲେ ଭାରତବର୍ଷ, ଅର୍ଥାତ୍ ବର୍ମାରୁ କୁଦାଟିଏ

1. K.C. Ghose - Roll of Honour -
(ଆଣ୍ଡାମାନ୍‌ର ଅଧିକ ବିବରଣୀ ପାଇଁ ତୃତୀୟ ଭାଗର ମୁକ୍ତିଯୁଦ୍ଧ ଦେଖନ୍ତୁ)

ମାରିଲେ ଭାରତ । ବର୍ମାର ମାଣ୍ଡାଲେ ଜେଲ୍‌ରେ ଲାଲାଜୀଙ୍କଠାରୁ ଆରମ୍ଭ କରି ନେତାଜୀ ପର୍ଯ୍ୟନ୍ତ କେତେ ଭାରତର ସ୍ୱାଧୀନତା ସଂଗ୍ରାମୀ ଏକଦା ବନ୍ଦୀ-ଜୀବନ ଯାପନ କରିଅଛନ୍ତି । ଏହି ମାଣ୍ଡାଲେ ଜେଲରେ ଶେଷ ନିଶ୍ୱାସ ତ୍ୟାଗକରିଥିଲେ ଭାରତର ଶେଷ ସ୍ୱାଧୀନ ସମ୍ରାଟ୍ ଓ ମହାବିଦ୍ରୋହର ସର୍ବୋଚ୍ଚ ନେତା ମୋଗଲ ସମ୍ରାଟ୍ ବାହାଦୂର ସାହା । ଏହିଭଳି ଭାବରେ ବର୍ମା ଭାରତର ସ୍ୱାଧୀନତା ଯୁଦ୍ଧର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲା । ସୁତରାଂ ରେଙ୍ଗୁନ ରାଜପଥରେ ଯେତେବେଳେ ଆଜାଦ ହିନ୍ଦ୍ ଫୌଜର ଜବାନମାନେ ମାର୍ଚ୍ଚିଂ କରି, ଜାତୀୟ ସଙ୍ଗୀତ ଗାନକରି ଓ 'ଚଲୋ ଦିଲ୍ଲୀ' ଗର୍ଜନ କରି ଚାଲିଲେ, ସେତେବେଳେ ବର୍ମାବାସୀ ଭାରତୀୟମାନଙ୍କର ଉତ୍ସାହ ଉନ୍ମାଦନା କହିଲେ ନସରେ । ସମସ୍ତଙ୍କ ମନରେ ଦୃଢ଼ବିଶ୍ୱାସ ଜନ୍ମିଲା ଯେ, ସେ ଦିନ ଆଉ ବିଶେଷ ଦୂରରେ ନାହିଁ ଯେଉଁ ଦିନ ସତକୁ ସତ 'ମୁକ୍ତିବାହିନୀ' ବର୍ମା ସୀମାନ୍ତ ଅତିକ୍ରମ କରି ବିଜୟ ଅଭିଯାନ ଆରମ୍ଭକରିଦେବେ । ବର୍ମାବାସୀ ଭାରତୀୟମାନେ ପ୍ରାୟ ପାଗଳ ହୋଇଗଲେ । ମୁକ୍ତି-ପାଣ୍ଠିକୁ କିଏ କେତେ ଦାନକରିବ ସେଥିପାଇଁ ସେମାନଙ୍କ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହୋଇଗଲା । କେତେକ ତାଙ୍କର ସର୍ବସ୍ୱ ଦାନକରି ଶେଷରେ ନିଜକୁ ମଧ ମୁକ୍ତି-ସଂଗ୍ରାମରେ ଉତ୍ସର୍ଗକଲେ । ରେଙ୍ଗୁନର ଜନୈକ ଭାରତୀୟ ନାଗରିକ ଶେଖ ହବିବ ତାଙ୍କର ସମସ୍ତ ସମ୍ପତ୍ତି, ଘରବାଡ଼ି, ଗହଣା ଗାଣ୍ଠି ପ୍ରଭୃତି ଆଜାଦ ହିନ୍ଦ ପାଣ୍ଠିକୁ ଦାନକରିଥିଲେ, ଯାହାର ମୂଲ୍ୟ ଏକକୋଟି ଟଙ୍କାରୁ ମଧ ଅଧିକ ହେବ । ସେହିପରି ଶ୍ରୀମତୀ ହେମରାଜ ବେତାଇ ନାମ୍ନୀ ଭାରତୀୟ ମହିଳା ତାଙ୍କର ଲକ୍ଷାଧିକ ଟଙ୍କାର ସମସ୍ତ ସମ୍ପତ୍ତି ଦାନକରିଥିଲେ । ସାଧାରଣ ସଭାମାନଙ୍କରେ ନେତାଜୀଙ୍କୁ ଯେଉଁ ଫୁଲହାର ଦିଆଯାଉଥିଲା ତାହା ନେତାଜୀ ନିଜେ ପ୍ରକାଶ୍ୟରେ ନିଲାମ କରୁଥିଲେ । କିନ୍ତୁ ସେହି ସାମାନ୍ୟ ଫୁଲହାର ବିନିମୟରେ ସର୍ବସ୍ୱଦାନ କରିବା ଭାରତୀୟମାନଙ୍କର ଅଭାବ ନଥିଲା ସେଦିନ ବର୍ମାରେ । ଏହିଭଳି ଗୋଟିଏ ଫୁଲହାର ଥରେ ପାଞ୍ଚଲକ୍ଷ ଟଙ୍କାରେ ନିଲାମ ହୋଇଥିଲା । ସାମାନ୍ୟ ଅର୍ଥ ଏହି ଅମୂଲ୍ୟହାରର ଉପଯୁକ୍ତ ମୂଲ୍ୟ ନୁହେଁ ବୋଲି ଯେଉଁମାନେ ମନେକରୁଥିଲେ, ସେମାନେ ନିଜକୁ ଅର୍ଥାତ୍ ନିଜର ଜୀବନ ବି ନେତାଜୀଙ୍କର ପାଦତଳେ ସମର୍ପଣ କରିଦେଉଥିଲେ ।

ମାସ-ମାସଧରି ବର୍ମାରେ ସର୍ବତ୍ର ଏହିଭଳି ଅଭୂତପୂର୍ବ ଉତ୍ସାହ ଉଦ୍ଦୀପନା ସୃଷ୍ଟି ହୋଇଥିଲା । ଭାରତର ଚରମ ମୁକ୍ତି-ସଂଗ୍ରାମ ପାଇଁ ନେତାଜୀ ଭାରତୀୟମାନଙ୍କ ଭିତରେ କିଭଳି ବିଶ୍ୱାସ ସୃଷ୍ଟିକରିପାରିଥିଲେ ଏହି ଘଟଣାଗୁଡ଼ିକ ତାହାର ଗୋଟିଏ ଛୋଟ ଦୃଷ୍ଟାନ୍ତ ମାତ୍ର ।

ଆଜାଦ ହିନ୍ଦ୍ ସରକାରର କାର୍ଯ୍ୟ-ପରିସର ମଧ ବଢ଼ିଗଲା ବହୁପରିମାଣରେ । ସେହି ଦୃଷ୍ଟିରୁ ସିଙ୍ଗାପୁରରେ ଥିବାବେଳେ ସରକାରର ଯେଉଁ ବାରଟି ବିଭାଗ ଥିଲା ତାକୁ ସମ୍ପ୍ରସାରିତ କରାଯାଇ ଚବିଶ ଗୋଟି ବିଭାଗ ଖୋଲାଯାଇଥିଲା; ଯଥା— ଅର୍ଥ, ଅଡ଼ିଟ, ନେତାଜୀ-ଫଣ୍ଡ କମିଟି, ଯୋଗାଣ, କ୍ରୟବୋର୍ଡ଼, ରାଜସ୍ୱ, ରିକ୍ରୁଟିଂ ଓ ଟ୍ରେନିଂ, ମହିଳା ବିଭାଗ, ପ୍ରଚାର, ଶିକ୍ଷା, ସ୍ୱାସ୍ଥ୍ୟ ଓ ସମାଜକଲ୍ୟାଣ, ଜାତୀୟ ଯୋଜନା, ଗୋଏନ୍ଦା, ସମ୍ବାଦ-

ସରବରାହ, ଉତ୍ପାଦନ, ଟେକ୍ନିକାଲ, ଟେଲିକମ୍ୟୁନିକେସନ, କୃଷି ଓ ଶିଳ୍ପ, ପୁନର୍ଗଠନ, ଗୃହନିର୍ମାଣ ଓ ଯାତାୟାତ, ଦରିଆପାରି ଓ ଶ୍ରମ ।

ନେତାଜୀଙ୍କର ସେହି ମହା ଆହ୍ୱାନ ''ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି'' ପୂର୍ବ-ଏସିଆର ଆକାଶ ବତାସକୁ ପ୍ରତିଧ୍ୱନିତ କରିଦେଲା ।

ଆଜାଦ ହିନ୍ଦ ଫୌଜ– ଇଣ୍ଡିୟାନ ନ୍ୟାସନାଲ ଆର୍ମି – ଏହା କୌଣସି ମାମୁଲି ସେନା ନୁହେଁ । ବିଦେଶ ଭୂଇଁରେ ମାତୃଭୂମିଠାରୁ ଶହ ଶହ ମାଇଲ ଦୂରରେ ମାତୃଭୂମିର ସ୍ୱାଧୀନତା ଅର୍ଜନ ପାଇଁ ଏହା ଗଠିତ ହୋଇଥିଲା । ସୁତରାଂ ଆଜାଦ ହିନ୍ଦ୍ ଫୌଜ ବିଷୟରେ ଆଲୋଚନା କଲାବେଳେ ଆମକୁ ସର୍ବଦା ଏହି ଦୃଷ୍ଟିରୁହିଁ ବିଚାର କରିବାକୁ ହେବ । ଏକଦା ବ୍ରିଟିଶ ବେତନଭୋଗୀ ସୈନ୍ୟ ଥିବା ବିପ୍ଳବୀମାନଙ୍କୁ ନେଇ ସେହି ବ୍ରିଟିଶ ସରକାର ବିରୁଦ୍ଧରେ ଲଢ଼ିବାକୁ ଏହା ଗଠିତ । 'ରାଜାନୁଗତ୍ୟ' ବା 'ନିମକସଚ୍ଚା' ଶ୍ରେଣି ପାଇଥିବା ସୈନ୍ୟମାନେ ଏହି ସୈନ୍ୟଦଳର ଆଧାର । ଦ୍ୱିତୀୟତଃ ନେତାଜୀଙ୍କର ଅସାଧାରଣ ସଙ୍ଗଠନଶକ୍ତି ଓ ବ୍ୟକ୍ତିତ୍ୱ ବଳରେ ଏହା ଭାରତୀୟମାନଙ୍କଠାରୁ ଅକୁଣ୍ଠ ଓ ମୁକ୍ତହସ୍ତ ସାହାଯ୍ୟଦ୍ୱାରା ପରିପୁଷ୍ଟ ହୋଇଥିଲେ ମଧ୍ୟ ଜାପାନ ସରକାର ଉପରେ ଏହା ବହୁ ପରିମାଣରେ ନିର୍ଭରଶୀଳ । ସୁତରାଂ ଏହା ଏକାନ୍ତ ସ୍ୱାଭାବିକ ଯେ, ଜାପାନ ସରକାରର ମନୋଭାବକୁ ମଧ୍ୟ ବିଚାରକୁ ନେବାକୁ ପଡ଼ିବ ।

କିନ୍ତୁ ଅସାଧାରଣ ଦୂରଦୃଷ୍ଟିସମ୍ପନ୍ନ ସର୍ବାଧିନାୟକ ନେତାଜୀ ବହୁ ପୂର୍ବରୁ ଏସବୁ କଥା ବିଚାରକୁ ନେଇଥିଲେ ଏବଂ ଜାପାନ ସରକାର ସହ ସେ ସମ୍ପର୍କରେ ସ୍ପଷ୍ଟ ବୁଝାମଣା ହୋଇସାରିଥିଲା । ପ୍ରଥମ ପ୍ରଶ୍ନ ହେଲା- ଯୁଦ୍ଧକ୍ଷେତ୍ରରେ କେଉଁ ସୈନ୍ୟବାହିନୀ ନେତୃତ୍ୱ ନେବେ– ଆଜାଦ ହିନ୍ଦ୍ ନା ଜାପାନୀ ସୈନ୍ୟ ? ଅର୍ଥାତ କେଉଁ ସେନାପତି ଅଧୀନରେ ସୈନ୍ୟମାନେ ଯୁଦ୍ଧ କରିବେ ? ଦ୍ୱିତୀୟ ପ୍ରଶ୍ନ ହେଉଛି, ମୁକ୍ତ ଅଞ୍ଚଳଗୁଡ଼ିକ କାହା ଅଧୀନରେ ରହିବ– ଆଜାଦ ହିନ୍ଦ୍ ସରକାର ନା ଜାପାନ ସରକାର ? ଉଲ୍ଲେଖ ନିଷ୍ପ୍ରୟୋଜନ ଯେ, ଏହି ଦୁଇଟି ପ୍ରଶ୍ନ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । ନେତାଜୀ ଏକଥା ମୂଳରୁ ସ୍ପଷ୍ଟକରି ଦେଇଥିଲେ ଯେ, 'ଆଜାଦ ହିନ୍ଦ ଫୌଜ'ହିଁ ଏ ଯୁଦ୍ଧର ନେତୃତ୍ୱ ନେବେ । "The first drop of blood to be shed on Indian soil should be that of a member of the I.N.A. (ଭାରତର ମାଟିରେ ଯେଉଁ ପ୍ରଥମ ରକ୍ତବିନ୍ଦୁ ପଡ଼ିବ, ତାହା ଆଜାଦ ହିନ୍ଦ ସୈନ୍ୟର ରକ୍ତ ହେବ) ।''

ଏହା ଏକ ସାମ୍ରାଜ୍ୟବାଦୀର ଦେଶଜୟ ଯୁଦ୍ଧ ନୁହେଁ, ଏହା ଏକ ମୁକ୍ତି-ସଂଗ୍ରାମ । ଭାରତର ମୁକ୍ତି ପାଇଁ ଏହି ସଶସ୍ତ୍ର ଅଭିଯାନ ଅଭିପ୍ରେତ, ସୁତରାଂ ଭାରତୀୟମାନେହିଁ ଏହାର ନେତୃତ୍ୱ ନେବେ । ବାହାରର କୌଣସି ଶକ୍ତି ଆମପାଇଁ ଯୁଦ୍ଧ କରି ଆମକୁ ସ୍ୱାଧୀନତା ଦେଇ ନପାରେ କିମ୍ବା ଅନ୍ୟ କୌଣସି କମାଣ୍ଡରଙ୍କ ଅଧୀନରେ ରହି ମୁକ୍ତିବାହିନୀ ଯୁଦ୍ଧ କରିବେ ଏହା ମଧ୍ୟ ଚଳିବ ନାହିଁ । ଆମେ ଜାପାନଠାରୁ ବୈଷୟିକ ସାହାଯ୍ୟ ପାଉଥିଲେ ସୁଦ୍ଧା ଆମ ମୁକ୍ତିବାହିନୀର ପ୍ରଧାନ ପୁଞ୍ଜି ହେଉଛି ସେମାନଙ୍କର ଦେଶପ୍ରାଣତା ।

ଦେଶାତ୍ମବୋଧର ପ୍ରେରଣାହିଁ ସେମାନଙ୍କୁ ଏତେ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ଏକ ଦୁର୍ଦ୍ଧର୍ଷ ସାମରିକ ଶକ୍ତିରେ ପରିଣତ କରିଛି ।''

ଜାପାନୀ ସେନାଧ୍ୟକ୍ଷଙ୍କ ଯୁକ୍ତି ଥିଲା ଯେ, ''ଆଜାଦ ହିନ୍ଦର ଫୌଜ''ର ଅଧିକାଂଶ ଜବାନ ଏକଦା ବ୍ରିଟିଶର ବେତନଭୋଗୀ ଅନୁରକ୍ତ ସେବକ ଥିଲେ । ସେମାନେ ଆଜି ମୁକ୍ତିବାହିନୀରେ ଯୋଗଦେଇଥିଲେ ମଧ୍ୟ ବ୍ରିଟିଶ ଗୁପ୍ତଚରମାନଙ୍କର ପ୍ରଲୋଭନରେ ପଡ଼ି ସେମାନେ ଯେକୌଣସି ମୁହୂର୍ତ୍ତରେ ପୁଣି ବଦଳିଯାଇପାରନ୍ତି । ଅପରପକ୍ଷେ ଜାପାନୀମାନେ ଏକ ସ୍ୱାଧୀନ ଦେଶର ସୈନିକ । ସେମାନଙ୍କ ଦେଶର ଗୌରବ ରକ୍ଷା କରିବାକୁ ସେମାନେ ଯୁଦ୍ଧକରୁଛନ୍ତି । ସୁତରାଂ ସେମାନେ ଆଜାଦ ହିନ୍ଦ୍ ଅପେକ୍ଷା ଉତ୍କୃଷ୍ଟତର ।

କିନ୍ତୁ ନେତାଜୀ ଜାପାନୀମାନଙ୍କ ସହ ଏକମତ ହୋଇନଥିଲେ । ଶେଷରେ ସ୍ଥିର ହେଲା ଯେ ଭାରତୀୟ ସୈନ୍ୟମାନଙ୍କୁ ଗୋଟାଏ ବାଟାଲିୟନ ଅପେକ୍ଷା ଛୋଟ ଛୋଟ ଦଳରେ ଭାଗକରାଯିବ । ପ୍ରତ୍ୟେକ ଦଳ ଭାରତୀୟ କମାଣ୍ଡରଙ୍କର ଅଧୀନରେ ରହି ଯୁଦ୍ଧ କରିବେ । ନେତାଜୀ ଓ ଜାପାନୀ ସେନାଧ୍ୟକ୍ଷ ପରାମର୍ଶ କରି ଯେଉଁ ଯୁଦ୍ଧନୀତି ସ୍ଥିରକରିବେ, ଜାପାନୀ ଓ ଭାରତୀୟ ସୈନ୍ୟମାନେ ସେହି ଅନୁସାରେ ଯୁଦ୍ଧ କରିବେ । ଆଜାଦ ହିନ୍ଦ୍ ଫୌଜ କେତେକ କ୍ଷେତ୍ରରେ ଏକା ଏକା ମଧ୍ୟ ଯୁଦ୍ଧ କରିବ ।

ଦ୍ୱିତୀୟ ପ୍ରଶ୍ନଟି ମଧ୍ୟ ଅନୁରୂପ ଗୁରୁତ୍ୱପୂର୍ଣ୍ଣ ଥିଲା । ଜାପାନୀମାନେ ଅନୁଭବ କଲେ ଯେ, ମୁକ୍ତ ଅଞ୍ଚଳରେ ଆଜାଦ ହିନ୍ଦ୍ ସରକାରର ଗୁରୁତ୍ୱହିଁ ଅଧିକ । କିନ୍ତୁ ଜାପାନୀମାନଙ୍କର ମତ ଥିଲା ଯେ, ସମନ୍ୱୟ କମିଟିରେ ଜାପାନୀ ସେନାପତି ଚେୟାରମ୍ୟାନ ରହିବେ; କିନ୍ତୁ ନେତାଜୀ ରୋକଠୋକ ସେ ପ୍ରସ୍ତାବକୁ ପ୍ରତ୍ୟାଖାନ କରିଦେଇଥିଲେ । ସେ କହିଲେ, ''ହୁଏତ କେହି ଚେୟାରମ୍ୟାନ ରହିବେ ନାହିଁ; ନଚେତ୍ ଭାରତୀୟ ସେନାପତିହିଁ ଚେୟାରମ୍ୟାନ ରହିବେ ।'' ସହକର୍ମୀମାନଙ୍କ ସହ ଏ ସମ୍ପର୍କରେ ଆଲୋଚନାବେଳେ ନେତାଜୀ କହିଲେ ''ମୁଁ ବରଂ ବ୍ରିଟିଶ ଅଧୀନରେ ଭାରତର ଦାସତ୍ୱକୁ ଆହୁରି ଦୁଇ ଶତାବ୍ଦୀ ସହ୍ୟକରିବାକୁ ପ୍ରସ୍ତୁତ ଅଛି; କିନ୍ତୁ ବ୍ରିଟିଶକୁ ଲୋପକରିବାକୁ ଯାଇ ଜାପାନୀମାନଙ୍କୁ ପ୍ରଭୁ କରିବାକୁ ମୁଁ ପ୍ରସ୍ତୁତ ନୁହେଁ ।''

ଏ ସମ୍ପର୍କରେ ଆଜାଦ ହିନ୍ଦ୍ ସରକାରର ପ୍ରଚାରବିଭାଗ ମନ୍ତ୍ରୀ ଶ୍ରୀ ଏସ. ଏ. ଆୟାର କହିଛନ୍ତି- "Netaji made it clear to the Japanese that the Provisional Government would be Supreme from the moment the I.N.A. entered India and its writ alone would run in the liberated territory" (ନେତାଜୀ ଏହା ଜାପାନାମାନଙ୍କୁ ପରିଷ୍କାର କରି କହିଦେଇଥିଲେ ଯେ, ଆଇ. ଏନ. ଏ. ଯେଉଁ ମୁହୂର୍ତ୍ତରେ ଭାରତରେ ପ୍ରବେଶ କରିବ, ସେହି ମୁହୂର୍ତ୍ତରୁ ଆଜାଦ ହିନ୍ଦ୍ ସରକାର ହେବ ସର୍ବୋଚ୍ଚ ଏବଂ ମୁକ୍ତ ଅଞ୍ଚଳରେ କେବଳ ଏହାର ହିଁ ଆଇନକାନୁନ ଚାଲୁହେବ ।)

ନେତାଜୀ ମୁକ୍ତାଞ୍ଚଳ ଦାୟିତ୍ୱ ତୁଲାଇବାକୁ ମେଜର ଜେନେରାଲ ଏ. ସି. ଚାଟାର୍ଜିଙ୍କୁ ନିଯୁକ୍ତ କରିଥିଲେ । ଜାପାନ ସରକାର ସହ ଚୁକ୍ତି ହୋଇଥିଲା ଯେ, ମୁକ୍ତ ଅଞ୍ଚଳରେ

ଆର୍ଥନୀତିକ ସଙ୍ଗଠନ କରିବାର ଦାୟିତ୍ୱ ''ନ୍ୟାସନାଲ ବ୍ୟାଙ୍କ ଅଫ୍ ଆଜାଦ ହିନ୍ଦ୍'' ଉପରେ ନ୍ୟସ୍ତ ହେବ । ଅର୍ଥାତ୍ ମୁକ୍ତ ଅଞ୍ଚଳରେ ବ୍ରିଟିଶ ବା ଜାପାନୀ ମୁଦ୍ରା ପରିବର୍ତ୍ତେ 'ନ୍ୟାସନାଲ ବ୍ୟାଙ୍କ'ର ମୁଦ୍ରା ଓ ନୋଟ ପ୍ରଚଳନ ହେବ । ଏପରି କି ଡାକଟିକେଟ ମଧ୍ୟ 'ନ୍ୟାସନାଲ ବ୍ୟାଙ୍କ' ଛାପିବ । ୧୯୪୪ ଏପ୍ରିଲ ୫ ତାରିଖରେ ରେଙ୍ଗୁନଠାରେ 'ନ୍ୟାସନାଲ ବ୍ୟାଙ୍କ ଅଫ ଆଜାଦ ହିନ୍ଦ୍'ର ପ୍ରଥମ ବ୍ୟାଙ୍କ ସ୍ଥାପିତହେଲା ।

ମୁକ୍ତାଞ୍ଚଳର ଗଭର୍ଣ୍ଣର ଜେନେରାଲ ଏ. ସି. ଚାଟାର୍ଜି ସ୍ୱାଧୀନ ପ୍ରଶାସନ ପାଇଁ ପ୍ରସ୍ତୁତିରେ ଲାଗିପଡ଼ିଲେ । ବିଶେଷତଃ ଯୁଦ୍ଧବିଧ୍ୱସ୍ତ ମୁକ୍ତାଞ୍ଚଳର ପୁନର୍ଗଠନ ଓ କ୍ଷତିଗ୍ରସ୍ତ ଲୋକଙ୍କର ଥଇଥାନ ପାଇଁ ବ୍ୟାପକ ପ୍ରସ୍ତୁତି କରାଗଲା । ବେସାମରିକ ପ୍ରଶାସନର ସବୁ ବିଭାଗରେ ଦକ୍ଷତା ଅର୍ଜନ କରିଥିବା ଏକ ବିଶାଳ କୁଶଳୀ କର୍ମୀଦଳ ସଂଗୃହୀତ ହେଲା । କୃଷକ, କାଠମିସ୍ତ୍ରି, ରାଜମିସ୍ତ୍ରି, କମାର, ପୋଷ୍ଟମ୍ୟାନ, ଟେଲିଗ୍ରାମ ସିଗନାଲର୍, ବେତାର-ବିଶେଷଜ୍ଞ, ଟ୍ରକ ଡ୍ରାଇଭର, ରାସ୍ତାଘାଟ ଇଂଜିନିୟର ପ୍ରସ୍ତୁତ ରହିଲେ ।

ନେତାଜୀଙ୍କର ସବୁଠାରୁ ଅଧିକ ତୀକ୍ଷ୍ଣ ଦୃଷ୍ଟି ଥିଲା ଯେପରି କି ବିଦେଶୀ କର୍ତ୍ତୃତ୍ୱ ଲୋପ ହେବା ସଙ୍ଗେ ସଙ୍ଗେ ମୁକ୍ତାଞ୍ଚଳ ଅଧିବାସୀମାନେ ସ୍ୱାଧୀନ ସରକାରର ପ୍ରଶାସନ ଅନୁଭବ କରିପାରିବେ । ଏପରି କି ଶତ୍ରୁପକ୍ଷ ବ୍ରିଟିଶ ଯଦି ଜଳାପୋଡ଼ା ନୀତି ଧରନ୍ତି ଓ ପଳାୟନ କରିବା ପୂର୍ବରୁ ମୂଲ୍ୟବାନ୍ ଓ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନଗୁଡ଼ିକ ନଷ୍ଟକରିଦିଅନ୍ତି, ତେବେ କାଳବିଳମ୍ବନକରି ଯେପରି 'ପୁନର୍ନିର୍ମାଣକାରୀ ଦଳ' କାମରେ ଲାଗିଯାଆନ୍ତି, ସେମାନଙ୍କୁ ସେହି ଭଳି ଟ୍ରେନିଂ ଦିଆଯାଇଥିଲା । ସିଭିଲ ଇଂଜିନିୟରମାନେ ସଙ୍ଗେ ସଙ୍ଗେ ଅସ୍ଥାୟୀ ଶିବିର ଖୋଲି କିପରି ଶରଣାର୍ଥୀମାନଙ୍କୁ ଆଶ୍ରୟ ଦେବେ, ମେକାନିକାଲ ଇଂଜିନିୟରମାନେ ପମ୍ପ ବସାଇ ଫସଲକୁ ପାଣି ଯୋଗାଇବେ, ଇଲେକ୍ଟ୍ରିକାଲ ଇଂଜିନିୟରମାନେ ବିଦ୍ୟୁତ-ସରବରାହ ଚାଲୁକରାଇ ଜଳଯୋଗାଣ ବ୍ୟବସ୍ଥା ଚାଲୁ କରିବେ, ନଷ୍ଟହୋଇଥିବା ରାସ୍ତା ଶୀଘ୍ର ମରାମତି କରି ଯାତାୟାତର ସୁ-ବ୍ୟବସ୍ଥା କରାଯିବ, ମୁକ୍ତାଞ୍ଚଳରେ ଡାକ-ତାର ବ୍ୟବସ୍ଥା କେମିତି ଚାଲୁହେବ ଏବଂ ଆଜାଦ ହିନ୍ଦ୍ ବ୍ୟାଙ୍କ ପକ୍ଷରୁ ମୁକ୍ତାଞ୍ଚଳରେ କିପରି ଯଥେଷ୍ଟ ମୁଦ୍ରା ପ୍ରଚଳନ କରାଯିବାର ବ୍ୟବସ୍ଥା ହେବ— ଏସବୁ ବିଷୟରେ ନିଜେ ନେତାଜୀ ଟିକିନିଖି ଦୃଷ୍ଟି ଦେଉଥିଲେ ।



## ଅଧ୍ୟାୟ - ବୟାଳିଶି

# ଶେଷର ଆରମ୍ଭ (୨) : ଚଲୋ ଦିଲ୍ଲୀ

‘‘ଆଦର୍ଶ ପାଇଁ ଆପଣମାନେ ଆତ୍ମୋତ୍ସର୍ଗ କରିପାରିବେ କି ନା, ସେ ବିଷୟରେ ସିଦ୍ଧାନ୍ତ କରିନେବା ପାଇଁ ଯୁଦ୍ଧକ୍ଷେତ୍ରକୁ ଯିବାର ଏହି ଶେଷ ମୁହୂର୍ତ୍ତରେ ମଧ ମୁଁ ଆପଣମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଉଅଛି । ଆମର ମହାନ୍ ଆଦର୍ଶର ପବିତ୍ରତା ସମ୍ପର୍କରେ ଆପଣମାନଙ୍କ ମନରେ ଯଦି ସାମାନ୍ୟ ସନ୍ଦେହ ସୁଦ୍ଧା ଥାଏ, ତେବେ ଆପଣମାନେ ଏହି ମୁହୂର୍ତ୍ତରେ ମଧ ବାହିନୀରୁ ଓହରିଯାଇପାରନ୍ତି ବା ପଛକୁ ରହିଯାଇ ପାରନ୍ତି । ଏହା କରିବାରେ ଆପଣମାନେ ଇତସ୍ତତଃ ହୁଅନ୍ତୁ ନାହିଁ । ମୁଁ ଆପଣମାନଙ୍କୁ ଅନ୍ୟ ଦାୟିତ୍ୱ ଦେବାର ବ୍ୟବସ୍ଥା କରିବି । ସଂଖ୍ୟାକୁ ମୁଁ ପରବା କରିନାହିଁ । ଆଦର୍ଶ ପ୍ରତି ଉଦାସୀନ ଓ ଏହି ସଂଗ୍ରାମର ଚରମ ଲକ୍ଷ୍ୟ ବିଷୟରେ ସନ୍ଦିହାନ ଥିବା ବିପୁଳ ସଂଖ୍ୟକ ସୈନିକ ଅପେକ୍ଷା ଆଦର୍ଶନିଷ୍ଠ ଓ ଆତ୍ମ-ନିବେଦିତ ଅଳ୍ପ ସଂଖ୍ୟକ ସୈନିକ ମଧ ଯଥେଷ୍ଟ ଉତ୍କୃଷ୍ଟତର । ମୁଁ ଆପଣମାନଙ୍କୁ କ୍ଷୁଧା, ତୃଷା ଓ ମୃତ୍ୟୁ ଛଡ଼ା ଆଉ କିଛି ଦେଇପାରିବାର ପ୍ରତିଶ୍ରୁତି ଦେଇପାରିବିନାହିଁ । ଆପଣମାନେ ଆପଣମାନଙ୍କର ରାସ୍ତା ସ୍ଥିର କରିବାକୁ ସଂପୂର୍ଣ୍ଣ ସ୍ୱାଧୀନ । ଏହିଠାରୁ ହିଁ ଅଟକିଯିବାରେ ଲଜ୍ଜାର କଥା କିଛି ନାହିଁ । ସେଥିପାଇଁ ମୁଁ ଆପଣମାନଙ୍କୁ ଦୋଷ ଦେବି ନାହିଁ । ମୁଁ ଆପଣମାନଙ୍କର ସାଧୁତାକୁ ତାରିଫ କରିବି ଏବଂ ଆପଣମାନଙ୍କୁ ଅନ୍ୟ କୌଣସି କାର୍ଯ୍ୟରେ ଲଗାଇଦେବି ।’’

ଥରେ ନୁହେଁ, ଦୁଇଥର ନୁହେଁ, ପ୍ରତି ଥର ଯେତେବେଳେ ମୁକ୍ତିବାହିନୀର ଅଭିଯାନ ଆରମ୍ଭ ହୁଏ ଭାରତ ଅଭିମୁଖରେ, ତାହାର ପ୍ରାକ୍‌କାଳରେ ସୁପ୍ରିମ କମାଣ୍ଡର ନେତାଜୀ ଏହିଭଳି ଭାଷାରେ ସୈନିକମାନଙ୍କୁ ଆହ୍ୱାନ କରନ୍ତି । ପୃଥିବୀରେ ଅନ୍ୟ କୌଣସି ସେନାପତି ତା’ର ସେନାବାହିନୀକୁ ଯୁଦ୍ଧକ୍ଷେତ୍ରକୁ ଯିବାର ଠିକ୍ ପୂର୍ବ-ମୁହୂର୍ତ୍ତରେ ଏଭଳି ସ୍ପଷ୍ଟ ଓ ଅପ୍ରିୟ ଭାଷାରେ କହିବାର ଦୃଷ୍ଟାନ୍ତ ନାହିଁ । ଅଥଚ କାହିଁ ଜଣେ ହେଲେ ସୈନିକ ନେତାଜୀଙ୍କର ଏ ଭାଷଣ ଶୁଣି ପଛକୁ ରହୁନଥିଲେ । ଯୁଗ-ଯୁଗକୁ ନେତାଜୀଙ୍କର ଏହି ଆହ୍ୱାନ ଇତିହାସରେ ପ୍ରତିଧ୍ୱନିତ ହେବ, ଏଥିରେ ସନ୍ଦେହ ନାହିଁ ।

X X X X

ଆଜାଦ ହିନ୍ଦ୍ ଫୌଜର ଏହି ସମର-ଯୋଜନା ଭାରତର ରାଜନୈତିକ କ୍ଷେତ୍ରରେ ଘୋର ଆଲୋଡ଼ନ ସୃଷ୍ଟି କଲା । ‘ଆଜାଦ ହିନ୍ଦ’ ସମର ଆୟୋଜନ ସଂକ୍ରାନ୍ତୀୟ ସମ୍ବାଦ୍ ଭାରତୀୟ ଜନସାଧାରଣଙ୍କଠାରୁ ଗୋପନ ରଖିବାକୁ ସରକାରର ସମସ୍ତ ଅପଚେଷ୍ଟା ପଣ୍ଡହେଉଥିଲା, କାରଣ ଅସାମ ଓ ବଙ୍ଗଳା ସୀମାନ୍ତର ଅପରପାର୍ଶ୍ୱରେ ହେଉଥିବା ଏହି

ଆୟୋଜନ ସମ୍ବାଦ 'ତୁଣ୍ଡବାଇଦ'ରେ ଭାରତର ପୂର୍ବାଞ୍ଚଳରେ ଘରେ ଘରେ ପହଞ୍ଚିଯାଉଥିଲା । ଲୋକେ ଇଂରେଜ ସରକାରର ଅସାମର୍ଥ୍ୟ କଥା ଅଧିକରୁ ଅଧିକ ଉପଲବ୍ଧି କରିବାକୁ ଲାଗିଲେ । ଜାପାନ୍ ବା ଆଜାଦ ହିନ୍ଦ୍ ଫୌଜର ଆକ୍ରମଣର ଯେ ସଫଳ ମୁକାବିଲା କରିବାକୁ ସରକାର ଅସମର୍ଥ, ଏହା ଆଉ ଲୁଚିରହିଲା ନାହିଁ । ଆମେରିକା ପ୍ରେସିଡ଼େଣ୍ଟଙ୍କର ଦୂତ କଲୋନେଲ ଜନସନ ଓ ହେରିଙ୍ଗଟନ ଭାରତରେ ଯୁଦ୍ଧ ପରିସ୍ଥିତି ଏବଂ ସରକାରର ପ୍ରସ୍ତୁତି ସମ୍ପର୍କରେ ଯେଉଁ ରିପୋର୍ଟ ଦେଲେ, ସେଥିରେ ଆମେରିକାର ମଧ୍ୟ ହୃତ୍‌କମ୍ପ ସୃଷ୍ଟିହେଲା । ଏ ସମ୍ପର୍କରେ କାଲଭିନ ଓକ୍ସ ନାମକ ଅଫିସର ସ୍ପଷ୍ଟ ସ୍ୱୀକାର କରିଥିଲେ - "Lack of troops is aggravated by the poor quality of British officers in India. Wavel himself, however excellent a general he may once have been, is viewd as exhausted physically and nervously and is considered to be not only incompetent himself but too possesses an incompetent staff." ଅଯୋଗ୍ୟ ବ୍ରିଟିଶ ଅଫିସରମାନଙ୍କର ଉପସ୍ଥିତି ସୈନ୍ୟସଂଖ୍ୟାର ସ୍ୱଳ୍ପତାକୁ ଆହୁରି ଜଟିଳ କରି ଦେଉଅଛି । ଓ୍ୟାଭେଲ ତାଙ୍କ ଜୀବନରେ କେବେ ବଡ଼ ସେନାପତି ଥିଲେ ମଧ୍ୟ ବର୍ତ୍ତମାନ ଶାରୀରିକ ଦୃଷ୍ଟିରୁ ସଂପୂର୍ଣ୍ଣ କ୍ଳାନ୍ତ ଶ୍ରାନ୍ତ ଏବଂ କେବଳ ନିଜେ ଅଯୋଗ୍ୟ ନୁହନ୍ତି, ଗୁଡ଼ିଏ ଅଯୋଗ୍ୟ କର୍ମଚାରୀଙ୍କୁ ଧରି ବସିଛନ୍ତି ।"

ଉପରୋକ୍ତ ଦୁଇ ଆମେରିକାନ୍ ଅଫିସର ରୁଜଭେଲଟଙ୍କୁ ସୁପାରିଶ କରିଥିଲେ ଯେ– "ଜାପାନ ଓ ଆଇ. ଏନ. ଏ.ର ଆକ୍ରମଣରୁ ବ୍ରିଟିଶ-ଭାରତକୁ ରକ୍ଷାକରିବାକୁ ହେଲେ ଯଥାଶୀଘ୍ର ବହୁସଂଖ୍ୟକ ଆମେରିକାନ ସୈନ୍ୟ ଓ ଅନ୍ତତଃ ପାଞ୍ଚ ଶହ ବିମାନ ପଠାଇବାକୁ ହେବ; ନଚେତ୍ ଭାରତର ଆଶା ପରିତ୍ୟାଗ କରିବାକୁ ପଡ଼ିବ ।"

କଲୋନେଲ ଜନସନ ଆଜାଦ ହିନ୍ଦ୍ ଫୌଜର ଯୁଦ୍ଧ-ଆୟୋଜନ ସଂକ୍ରାନ୍ତୀୟ ଗୋଏନ୍ଦା ରିପୋର୍ଟ ଅନୁଧାନ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ଉତ୍ତର-ପୂର୍ବ ଦିଗରୁ ପ୍ରଥମେ ଆକ୍ରମଣ ହେବାର ସମ୍ଭାବନା ଅଧିକ । ଆଜାଦ ହିନ୍ଦ୍ ବାହିନୀ ତତ୍‌ପରେ ବଙ୍ଗଳା, ଅସାମ ଓ ଓଡ଼ିଶା ଦଖଲ କରି ଗାଙ୍ଗେୟ ଉପତ୍ୟକା ବାଟେ ଦିଲ୍ଲୀ ଓ ପଶ୍ଚିମରେ ବମ୍ବେ ପର୍ଯ୍ୟନ୍ତ ମାଡ଼ିଯିବେ ବୋଲି ସେ ରୁଜଭେଲ୍‌ଟଙ୍କୁ ଲେଖିଥିଲେ ।

ସରକାର ଆଜାଦ ହିନ୍ଦ ବାହିନୀର ଆସନ୍ନ ଅଭିଯାନରେ ଏଭଳି ଆତଙ୍କିତ ଅବସ୍ଥାରେ ଥିଲାବେଳେ 'ବଙ୍ଗଳାର ଦୁର୍ଭିକ୍ଷ' ଏହାକୁ ଆହୁରି ସଙ୍ଗୀନ କରିଦେଇଥିଲା । ଏହି ଦୁର୍ଭିକ୍ଷରେ ପ୍ରାୟ ୩୫ ଲକ୍ଷ ଲୋକ ଅକାଳମୃତ୍ୟୁ ବରଣ କରିଥିଲେ ବୋଲି ହିସାବ ହୋଇଥିଲା । ଏକ ଦିଗରେ ସ୍ୱାଧୀନତାର ଦୁର୍ବାର ଆକାଙ୍‌କ୍ଷା ଏବଂ ଅନ୍ୟ ଦିଗରେ ଲୋକଙ୍କୁ ବଞ୍ଚାଇବା ପାଇଁ ସରକାରୀ ଅସାମର୍ଥ୍ୟ ଯୋଗୁଁ ଅସନ୍ତୋଷ– ପୂର୍ବଭାରତର ଏହିଭଳି ଏକ ଉତ୍ତେଜନାମୂଳକ ପରିସ୍ଥିତିରୁ ରକ୍ଷାପାଇବା ପାଇଁ ସରକାର ବାଟ ଖୋଜୁଥିଲା । ଦିଲ୍ଲୀଠାରୁ ଲଣ୍ଡନ ପର୍ଯ୍ୟନ୍ତ ସରକାରୀ ମହଲ ଭୀଷଣ ବିବ୍ରତ ହୋଇପଡ଼ିଥିଲା । ୧୯୪୩ ମାର୍ଚ୍ଚ ୧୦ ତାରିଖ ବ୍ରିଟିଶ ମନ୍ତ୍ରିମଣ୍ଡଳ ଭାରତକୁ ଡୋମିନିୟନ ଷ୍ଟାଟସ ବା ଔପନିବେଶିକ ସ୍ୱାଧୀନତା ଦେବା ପାଇଁ ଏକ ପ୍ରସ୍ତାବ ଘୋଷଣା କରିଥିଲେ । କିନ୍ତୁ ସେଥିରେ ମଧ୍ୟ ସେହି ସାମ୍ପ୍ରଦାୟିକତା ଓ ଦେଶ-

ବିଭାଜନର ବିଷାକ୍ତ ଗନ୍ଧ ଥିଲା ଏବଂ ତାହା ଯେ ଜନସାଧାରଣଙ୍କଦ୍ୱାରା ଅଗ୍ରାହ୍ୟ ହେବ ଏହା ଜଳଜଳ ଦିଶୁଥିଲା । ସରକାର କ୍ରମେ ଉପଲବ୍ଧି କଲେ ଯେ, ନେତାମାନଙ୍କୁ ଜେଲ ଭିତରେ ଆବଦ୍ଧ ରଖି ଜନସାଧାରଣଙ୍କ ସହଯୋଗ ଆଶା କରିବା ବିଡ଼ମ୍ବନା ମାତ୍ର । ଯଦିଓ ୱାଭେଲ ଭଳି ଜାତ୍ୟଭିମାନୀ ଭାବପୂର୍ଣ୍ଣ ଜେନେରାଲମାନଙ୍କ ମନରୁ କଂଗ୍ରେସ ପ୍ରତି ଘୃଣା ଦୂରହୋଇନଥିଲା, ତଥାପି ଏକପ୍ରକାର ବାଧହୋଇ ଗାନ୍ଧିଜୀ ପ୍ରଭୃତିଙ୍କୁ ଜେଲରୁ ଯଥାଶୀଘ୍ର ମୁକ୍ତ କରିବା ଆବଶ୍ୟକ ବୋଲି ସେ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କୁ ସୁପାରିଶ କଲେ । ଏହାଦ୍ୱାରା ଦୁଇଟା ଲାଭ ହେବ ବୋଲି ସରକାର ବିଚାର କରୁଥିଲା । ପ୍ରଥମତଃ ଗାନ୍ଧିଜୀ ଜେଲ ବାହାରକୁ ଆସିଲେ ଜନସାଧାରଣଙ୍କ ମନରେ ସରକାର ପ୍ରତି ଆସ୍ଥା ଓ ବିଶ୍ୱାସ ସୃଷ୍ଟି ହେବ । ଦ୍ୱିତୀୟତଃ ତଥାକଥିତ ସ୍ୱାଧୀନତା ପ୍ରସ୍ତାବ ସମ୍ପର୍କରେ ଆଲୋଚନା ଆରମ୍ଭ ହେଲେ ଜନସାଧାରଣଙ୍କ ଦୃଷ୍ଟି ପୂର୍ବ-ସୀମାନ୍ତରେ ପ୍ରସ୍ତୁତ ଥିବା ଆଇ. ଏନ. ଏ. ଆଡ଼େ ଆବଦ୍ଧ ନହୋଇ ସରକାର ଆଡ଼କୁ ଆକୃଷ୍ଟ ହେବ । କାରଣ ସରକାର ଭଲଭାବରେ ଜାଣିଥିଲେ ଯେ, ଆଜାଦ ହିନ୍ଦ୍ ଫୌଜର ସମର ଅଭିଯାନ ସହ ଭାରତର ଜନ-ଅସନ୍ତୋଷ ମିଶିଗଲେ ତାହା ଏକ ଦୁର୍ବାର ପରିସ୍ଥିତି ସୃଷ୍ଟି କରିବ, ଯାହା କି 'ଶହେ ରୁଜଭେଲଟ ବା ହଜାରେ ଚର୍ଚ୍ଚିଲ ରୋକିପାରିବେନାହିଁ ।'

ନେତାଜୀଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଓ ସଶସ୍ତ୍ର ଅଭିଯାନର ସାଫଲ୍ୟ ବିଷୟରେ ଭାରତରେ କାହାରି ଟିକେହେଲେ ସନ୍ଦେହ ନଥିଲା । ତାଙ୍କର ଏହି କ୍ରମବର୍ଦ୍ଧିଷ୍ଣୁ ଜନପ୍ରିୟତା ସରକାରର ହୃତ୍‌କମ୍ପ ସୃଷ୍ଟି କରିଥିଲା ଏବଂ ୧୯୪୦ ମସିହାରୁ ଚାଲିଥିବା ଅପପ୍ରଚାର ମାତ୍ରା ସରକାର ବଢ଼େଇଦେଲା । ବ୍ରିଟିଶ ପ୍ରଚାରବିଭାଗ ଦିନରାତି ପ୍ରଚାର କରିବାରେ ଲାଗିଲା ଯେ ''ସୁଭାଷ ଜାପାନର ବନ୍ଧୁ ସାଜି ଭାରତକୁ ଧ୍ୱଂସ କରିବାକୁ ବସିଛି ।'' ଏପରି କି ଆଣ୍ଡାମାନ ଦଖଲ ପରେ ପରେ କଲିକତା ଉପରେ ଯେଉଁ ବୋମାମାଡ଼ ହେଲା, ତାହା ସୁଭାଷଦ୍ୱାରା ହୋଇଛି ବୋଲି ପ୍ରଚାର କରାଗଲା । ଅଥଚ ଯେଉଁମାନେ ଇତିହାସ ସମ୍ପର୍କରେ ଅଭିଜ୍ଞ, ସେମାନେ ଜାଣନ୍ତି ଯେ, ସେତେବେଳେ ଆଜାଦ ହିନ୍ଦ୍ ଫୌଜ ପ୍ରାଥମିକ ଅବସ୍ଥାରେ ଥିଲା । ବଙ୍ଗାଳୀମାନେ ଏହା ଆଦୌ ବିଶ୍ୱାସ କରୁନଥିଲେ । ଜଣେ ବିଶିଷ୍ଟ ବଙ୍ଗୀୟ ନେତା ମତ ପ୍ରକାଶ କରିଥିଲେ ଯେ, ''ସୁଭାଷ କଦାପି କଲିକତା ସହର ଉପରେ ବୋମା ପକାଇ ପାରିବ ନାହିଁ । କାରଣ ଏପର୍ଯ୍ୟନ୍ତ ଅନ୍ତତଃ ସୁଭାଷର ମା' କଲିକତାରେହିଁ ବାସକରନ୍ତି । ପରମ ମାତୃଭକ୍ତ ସୁଭାଷ ଏହି ବୋମାମାଡ଼କୁ ସମର୍ଥନ ସୁଦ୍ଧା କରିପାରିବ ନାହିଁ ।''

ଭାରତୀୟଙ୍କ ମନୋବଳ ଭାଙ୍ଗିଦେବାକୁ ଏବଂ ସୁଭାଷଙ୍କ ପ୍ରତି ଘୃଣାଭାବ ସୃଷ୍ଟି କରିବାକୁ ପ୍ରଚାର କରାଗଲା ଯେ, ''ସୁଭାଷ ବିଶ୍ୱାସଘାତକ, ସୁଭାଷ ଭାରତର ଶତ୍ରୁ, କାରଣ ସେ ଜାପାନର ବନ୍ଧୁ । ସୁଭାଷ ନିର୍ଲଜ୍ଜ ଭାବେ ଜାପାନଠାରୁ ସାହାଯ୍ୟ ଆଣୁଛି ।'' ଏହାର ଜବାବରେ ସୁଭାଷ 'ଆଜାଦ ହିନ୍ଦ୍ ରେଡ଼ିଓ'ରେ ଗର୍ଜନକଲେ –

''ମୁଁ ଜାପାନଠାରୁ ସାହାଯ୍ୟ ଗ୍ରହଣ କରିଥିବାରୁ ଆଦୌ ଲଜ୍ଜିତ ନୁହେଁ, କାରଣ ଜାପାନ ଭାରତର ପୂର୍ଣ୍ଣ ସ୍ୱାଧୀନତାକୁ ମାନିନେଇଛି ଏବଂ ଆଜାଦ ହିନ୍ଦ୍ ସରକାରକୁ ସ୍ୱୀକୃତି ଦେଇଛି ।

ଜାପାନ ଆମକୁ ଅସ୍ତ୍ରଶସ୍ତ୍ର ସାହାଯ୍ୟ ଦେଇଥିଲେ ମଧ୍ୟ ଆଜାଦ ହିନ୍ଦ୍ ଫୌଜ ଆପାଦମସ୍ତକ ଏକ ଭାରତୀୟ ସୈନ୍ୟ ବାହିନୀ । ଏହି ଆଜାଦ ହିନ୍ଦ୍ ବାହିନୀର ସୈନ୍ୟମାନେ ଭାରତୀୟ ଭାଷାରେ ଭାରତୀୟ ଯୁଦ୍ଧ-ଶିକ୍ଷକମାନଙ୍କଦ୍ୱାରା ଟ୍ରେନିଂ ପାଇଅଛନ୍ତି । ଏହି ବାହିନୀ ଭାରତୀୟ ଜାତୀୟପତାକା ବହନ କରୁଅଛନ୍ତି ଏବଂ ଭାରତୀୟ ଜାତୀୟ ସ୍ଲୋଗାନ୍‌ମାନ ଗାନକରୁଅଛନ୍ତି । ଏହି ବାହିନୀରେ ନିଜସ୍ୱ ଭାରତୀୟ ଅଫିସର ଓ ଅଫିସର-ଟ୍ରେନିଂ ସ୍କୁଲ ରହିଅଛି । ଯୁଦ୍ଧକ୍ଷେତ୍ରରେ ଏହି ବାହିନୀ ଭାରତୀୟ ସେନାପତିମାନଙ୍କ ଅଧୀନରେ ଯୁଦ୍ଧକରନ୍ତି; ଯେଉଁମାନଙ୍କ ମଧ୍ୟରୁ ଅନେକ ବର୍ତ୍ତମାନ ସୁଦ୍ଧା ଜେନେରାଲଶ୍ରେଣୀକୁ ପ୍ରମୋସନ ପାଇସାରିଲେଣି । ଯଦି ଏମାନଙ୍କୁ ଭଡ଼ାଟିଆ ସୈନ୍ୟଦଳ ବୋଲି କୁହାଯିବ, ତେବେ ତାହା ବ୍ରିଟିଶ-ଭାରତୀୟ ସୈନ୍ୟବାହିନୀ ପ୍ରତି ପ୍ରଯୁଜ୍ୟ, କାରଣ ସେମାନେ ବ୍ରିଟିଶ ଅଫିସରମାନଙ୍କ ଅଧୀନ୍‌ରେ ବ୍ରିଟିଶର ସାମ୍ରାଜ୍ୟବାଦୀ ଯୁଦ୍ଧ ଚଳାଇଅଛନ୍ତି । ଆଜାଦ ହିନ୍ଦ୍ ଫୌଜ ଲଢୁଛି ଭାରତର ସ୍ୱାଧୀନତା ଯୁଦ୍ଧ ।

''ମୁଁ ଜାପାନଠାରୁ ସାହାଯ୍ୟ ଗ୍ରହଣ କରିଥିବାରୁ ଲଜ୍ଜିତ ନୁହେଁ । ମୁଁ ଏହା ମଧ୍ୟ କହିଦେବାକୁ ଚାହେଁ ଯେ, ଯଦି ଏକଦା ମହାବିକ୍ରମୀ ବ୍ରିଟିଶ ସରକାର ହାତରେ ଭିକ୍ଷାଥଳି ଧରି ସାରା ପୃଥିବୀର ଦ୍ୱାରସ୍ଥ ହୋଇପାରୁଛି ଏବଂ ଆଣ୍ଠୁମାଡ଼ି ମସ୍ତକ ଅବନତ କରି ଆମେରିକାଠାରୁ ଅସ୍ତ୍ରଶସ୍ତ୍ର ଭିକ୍ଷା ଆଣିପାରୁଛି, ଆମେ ଯେ କି ଏକ ପରାଧୀନ ଓ ନିରସ୍ତ୍ର ଦେଶ, ଆମର ଏକ ବନ୍ଧୁଠାରୁ ସାହାଯ୍ୟ ନ ଆଣିବାର କୌଣସି କାରଣ ନାହିଁ । ଆଧୁନିକ ଇତିହାସପୃଷ୍ଠାରେ ମୁଁ ଏପର୍ଯ୍ୟନ୍ତ ଗୋଟିଏ ଦୃଷ୍ଟାନ୍ତ ପାଇନାହିଁ ଯେଉଁଥିରେ କି ଏକ ପରାଧୀନ ଦେଶ ଅନ୍ୟଠାରୁ ଅସ୍ତ୍ରଶସ୍ତ୍ର ସାହାଯ୍ୟ ନନେଇ ସ୍ୱାଧୀନତା ସଂଗ୍ରାମ କରିପାରିଛି । ଭାରତ ଭଳି ଏକ ପରାଧୀନ ଦେଶ ପକ୍ଷରେ ବ୍ରିଟିଶ ରାଜନୀତିଜ୍ଞମାନଙ୍କୁ କାକୁତିମିନତି ବା ଖୋସାମତ କରିବା ଅପେକ୍ଷା ବ୍ରିଟିଶ ସାମ୍ରାଜ୍ୟବାଦର ଶତ୍ରୁମାନଙ୍କ ସହ ହାତ ମିଳାଇବା ସହସ୍ର ଗୁଣ ସମ୍ମାନଜନକ ।''

ଭାରତର ମୁକ୍ତି-ଚିନ୍ତାରେ ଆଜାଦ ହିନ୍ଦ୍ ଫୌଜର ଜବାନମାନେ ପାଗଳ । ଅଳ୍ପ ନୁହେଁ, ଅନ୍ୟୂନ କୋଡ଼ିଏ ହଜାର ଜବାନଙ୍କର ଅସ୍ତ୍ରଶସ୍ତ୍ର ଝଙ୍କାରରେ ବର୍ମା-ଭାରତର ଆକାଶ-ବତାସ ସେ ଦିନ ଭାରାକ୍ରାନ୍ତ ! ଜାତିର ଏ ଶେଷ ଲଢ଼େଇ । 'ଅଗଷ୍ଟ-ବିପ୍ଳବ'ର କ୍ଷତବିକ୍ଷତ ବ୍ରିଟିଶ-ଶକ୍ତିକୁ ଏଥର ମରଣମାଡ଼ହେବ । ସମସ୍ତଙ୍କ କଣ୍ଠରେ ଗୋଟିଏ କଥା, ''ହେ ଭାରତବାସୀ, ଦୀର୍ଘ ଦୁଇଶହ ବର୍ଷ ହେବ ନିରବଚ୍ଛିନ୍ନ ସଂଘର୍ଷ କରୁଥିବା ହେ ଭାରତର ସ୍ୱାଧୀନତା-ସଂଗ୍ରାମୀ, ଉଠ, ଜାଗ ଏବଂ ସଂଗ୍ରାମ ଶେଷ ନହେବା ପର୍ଯ୍ୟନ୍ତ ବିଶ୍ରାମ ନିଅ ନାହିଁ ।''

ବର୍ମା-ଭାରତ ସୀମାନ୍ତରେ ଛିଡ଼ାହୋଇ ମାତୃଭୂମି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ ନେତାଜୀ ୧୯୪୪ ଜାନୁୟାରୀ ୭ ତାରିଖରେ— ''ଅଦୂରରେ ସେହି ନଦୀର ଆରପାରିରେ ସେହି ଅରଣ୍ୟର ଅତି ପାଖରେ ଆମର ପ୍ରାଣର ମାତୃଭୂମି; ଯେଉଁ ମାଟିରୁ ଆମ୍ଭମାନଙ୍କର ଜନ୍ମ; ଯେଉଁ ଦେଶକୁ ଆମ୍ଭମାନେ ଫେରିଯିବା । କାନଡ଼େରି ଶୁଣ— ଭାରତ ଆମ୍ଭମାନଙ୍କୁ

ଆହ୍ବାନଦେଉଛି; ରକ୍ତ ରକ୍ତକୁ ଆହ୍ବାନ ଦେଉଛି । ଜାଗ୍ରତ ହୁଅ, ଆଉ ସମୟ ନାହିଁ ନଷ୍ଟକରିବାକୁ । ଅସ୍ତ୍ର ଧର, ଶତ୍ରୁବ୍ୟୂହକୁ ଭେଦକରି ଆମର ପଥ ପରିଷ୍କୃତ ହେଉ ଏବଂ ଭଗବାନ୍ ଯଦି ଚାହାନ୍ତି, ଆମ ଭାଗ୍ୟରେ ଆସିବ ସହିଦର ମୃତ୍ୟୁ ଏବଂ ଆମର ଅନ୍ତିମ ଶୟନ ହେବ ଦିଲ୍ଲୀ-ପଥକୁ ଚୁମ୍ବନକରି । ଦିଲ୍ଲୀର ପଥ ସ୍ୱାଧୀନତା ପଥ- 'ଚଲୋ ଦିଲ୍ଲୀ' ।''

ବ୍ରିଟିଶ ଗୋଏନ୍ଦାମାନେ ଠିକ୍ ଖବର ପାଇଥିଲେ— ''ଆଜାଦ ହିନ୍ଦ୍ ଫୌଜ ବଙ୍ଗଳା-ଆସାମରୁ ସିଧା ଦିଲ୍ଲୀ ଅଭିଯାନ କରିବେ । ବ୍ରିଟିଶ ସରକାର ବିବ୍ରତ । S O S,ବାର୍ତ୍ତା (ଆମକୁ ବଞ୍ଚାଅ) ପଠାଇଲେ ରୁଜଭେଲ୍ଟଙ୍କୁ- ''ସୈନ୍ୟ ପଠାଅ, ଆମେରିକାନ୍ ସୈନ୍ୟ; ଆଉ ଭାରତୀୟ ସୈନ୍ୟଙ୍କ ଉପରେ ଭରସା ନାହିଁ । ସେମାନେ ବିଶ୍ୱାସଘାତକ । ଡିଭିଜନ, ଡିଭିଜନ ସୈନ୍ୟ ପଠାଅ । ଜାହାଜ ପଠାଅ । ଉଡ଼ାଜାହାଜ ପଠାଅ । ଟ୍ୟାଙ୍କ୍ ପଠାଅ । କମାଣ ପଠାଅ । ମାଇନ୍ ପଠାଅ । ଆମକୁ ବଞ୍ଚାଅ । "Save Our Soul" ଏସ: ଓ: ଏସ: ।''

ଆଜାଦ ହିନ୍ଦ୍ ବାହିନୀର ପ୍ରଥମ ଡିଭିଜନ ସୈନ୍ୟର ସେନାପତି ଥିଲେ ମେଜର ଜେନେରାଲ ଜାମାନ କିଆନି ଓ ୨ୟ ଡିଭିଜନ ସୈନ୍ୟର ସେନାପତି ଥିଲେ ଜେନେରାଲ ସାନଓ୍ୱାଜ ଖାଁ । କାରଣ କର୍ଣ୍ଣେଲ ଅଦିଜ ଅହମ୍ମଦ ଯୁଦ୍ଧକ୍ଷେତ୍ରକୁ ଯିବାର ଅବ୍ୟବହିତ ପୂର୍ବରୁ ଶତ୍ରୁ ପକ୍ଷର ଏକ ବୋମାମାଡ଼ରେ ସାମାନ୍ୟ ଆହତ ହୋଇଥିଲେ ।

୧୯୪୪ ମସିହା ଫେବୃୟାରୀ ୪ ତାରିଖରେ ବର୍ମା-ଆସାମ ସୀମାନ୍ତ ଆରାକାନ ଜଙ୍ଗଲ ଅଞ୍ଚଳରେ ଥିବା ବ୍ରିଟିଶ ଯୁଦ୍ଧ ଘାଟି ଉପରେ ଜାତୀୟ ବାହିନୀର ପ୍ରଥମ ମୁହାଁ-ମୁହିଁ ସଂଘର୍ଷ ହେଲା । ସେ ଦିନ ସଶସ୍ତ୍ର ମୁକ୍ତି-ସଂଗ୍ରାମର ଇତିହାସରେ ଏକ ସ୍ମରଣୀୟ ଦିବସ, କାରଣ ମୁକ୍ତିସଂଗ୍ରାମର ଶେଷ ପର୍ଯ୍ୟାୟରେ ଏହା ହେଉଛି ବ୍ରିଟିଶ ସଶସ୍ତ୍ର ବାହିନୀ ସହ ସଶସ୍ତ୍ର ମୁକ୍ତିବାହିନୀର ପ୍ରଥମ ମୁକାବିଲା । ସେହି ଗୋଟାଏ ପାହାରରେ ଅଧିକୃତ ହେଲା 'ତଙ୍ଗ ବଜାର' । ଆଗେଇଚାଲିଲେ ମୁକ୍ତି-ଫୌଜ ବିଜୟୋଲ୍ଲାସରେ । ''ଘାଟି ପରେ ଘାଟି ଦଖଲକର । ଦଖଲ କର ସୈନ୍ୟ-ଛାଉଣି । ଦଖଲ କର ଅସ୍ତ୍ରଶସ୍ତ୍ର । ଦଖଲ କର ସରବରାହ ପଥ । ଦିଲ୍ଲୀର ପଥ ସ୍ୱାଧୀନତାର ପଥ 'ଚଲୋ ଦିଲ୍ଲୀ ।' ମାଡ଼ିଚାଲିଲେ ମୁକ୍ତି-ସେନାନୀ । ମାର୍ଚ୍ଚ ମାସ ପହିଲାରେ କାଲାଦାନ ସେକ୍ଟରରେ ଲଢ଼େଇ ହେଲା ଏବଂ ସେହି ଦିନ ଦଖଲ ହେଲା ସୈତାବିନ ଯୁଦ୍ଧ ଘାଟି । ସୈତାବିନ ପରେ ପରେ ସଇତାନ ବ୍ରିଟିଶ ଫୌଜ ପଛଘୁଞ୍ଚା ଦେଲେ । ମାର୍ଚ୍ଚ ୫ ତାରିଖରେ କାଲାଦାନ ଅଧିକୃତ ହେଲା । ମାର୍ଚ୍ଚ ୮ ତାରିକରେ ଫୋର୍ଟ ଓ୍ୱାଇଟ ଓ ମାର୍ଚ୍ଚ ୧୨ରେ ଲାନା କୋଟ୍‌ରେ ବ୍ରିଟିଶ ସୈନ୍ୟ ଆଜାଦ ହିନ୍ଦ୍ ଫୌଜ ପାଖରେ ଆତ୍ମସମର୍ପଣ କଲେ । ମାର୍ଚ୍ଚିଂ କରି ଚାଲିରେ ଆଗକୁ ଆଗକୁ । ଆସାମ ସୀମାନ୍ତର ଦୁର୍ଭେଦ୍ୟ ଅରଣ୍ୟ, ଦୁର୍ଲଙ୍ଘ୍ୟ ନାଗା- ଖାସି, ଗାରୋ- ଜୈନ୍ତିଆ ପର୍ବତଶ୍ରେଣୀ କେହି ସେମାନଙ୍କ ମାର୍ଚ୍ଚିଂକୁ ରୋକିପାରିଲାନାହିଁ । ଆସିପହଞ୍ଚିଲେ କେନେଡ଼ି ଶୃଙ୍ଗ ପାଖରେ । ଲାଗିଲା ଲଢ଼େଇ ବ୍ରିଟିଶ ଫୌଜ ସହ । ମାର୍ଚ୍ଚ ୧୮ ତାରିଖ କେନେଡ଼ି ଶୃଙ୍ଗରେ ଥିବା ଯୁଦ୍ଧଘାଟି ମଧ୍ୟ ଦଖଲ ହେଲା । 'କେନେଡ଼ି ଶୃଙ୍ଗ' ଉପରେ ଠିଆହେଲେ ଦିଶୁଛି 'ପବିତ୍ର ଭାରତଭୂମି' । ମୁକ୍ତିବାହିନୀ

ମାତୃଭୂମିକୁ ଦେଖି ସତକୁ ସତ ପାଗଳହୋଇଗଲେ । ମାର୍ଚ୍ଚିଂର ଗତି ବଢ଼ିଗଲା ସମସ୍ତଙ୍କର । ମାତୃଭୂମିର ପବିତ୍ର ମାଟିକୁ କିଏ ଆଗେ ସ୍ପର୍ଶ କରିବ, ସେଥିପାଇଁ ରୀତିମତ ପ୍ରତିଯୋଗିତା ଲାଗିଗଲା । ଠିକ୍ ତା' ପରଦିନ ଫୌଜ ପହଞ୍ଚିଲା ଭାରତର ମାଟିରେ । ବନ୍ଧୁକ ତଳେ ଥୋଇଦେଇ ସମସ୍ତେ ଗଡ଼ିଲେ ସେ ମାଟିରେ– ''ମା'- ମା'- ମା'- ଦୁଃଖିନୀ ମା' ମୋର, ବହୁ ଯନ୍ତ୍ରଣା, ବହୁ ନିର୍ଯାତନା ତୁ ସହିଲୁଣି । ଆମେ ଜୀବନକୁ ବାଜିରଖିଛୁ; ଏଥର ତୋ'ର ମୁକ୍ତି ସୁନିଶ୍ଚିତ । 'ଶହେ ଚର୍ଚ୍ଚିଲ, ହଜାରେ ରୁଜଭେଲଟ' କେହି ଆମକୁ ଅଟକାଇ ପାରିବେ ନାହିଁ ।'' ଧ୍ୱନି ଶୁଭିଲା ସବୁରି ପାଟିରୁ– ''ବନ୍ଦେ ମାତରମ୍, ଚଲୋ ଦିଲ୍ଲୀ'' ସ୍ଲୋଗାନରେ ସେ ଦିନ ଯେମିତି ଭୂମିକମ୍ପ ସୃଷ୍ଟି ହେଲା ଆସାମ ମାଟିରେ । ନେତାଜୀ ସେ ଦିନଟିକୁ ଭାରତର ଜାତୀୟ ଦିବସରୂପେ ଘୋଷଣାକଲେ । ପ୍ରୋଥିତହେଲା ଭାରତର ଜାତୀୟପତାକା ଭାରତ ମାଟିରେ ପ୍ରଥମ ଥର ପାଇଁ । ''ମୁକ୍ତ ଅଞ୍ଚଳ କାହା ଅଧିକାରରେ ରହିବ – ଜାପାନ ଅଧୀନରେ ନା ଜାତୀୟ ବାହିନୀ ଅଧୀନରେ ?' –ଏହି ପ୍ରଶ୍ନ ଭାରତରେ କେତେକଙ୍କ ମନରେ । ବ୍ରିଟିଶର ପ୍ରଚାରବିଭାଗ ପ୍ରଚାର ଆରମ୍ଭକଲେ 'ଦେଖ, ସୁଭାଷ କହୁଛି ଜାପାନର ଏ ଯୁଦ୍ଧରେ କୌଣସି ସ୍ୱାର୍ଥ ନାହିଁ । କିନ୍ତୁ ଯେଉଁ ଅଞ୍ଚଳରୁ ଆମେ ହଟିଆସିଲୁ ସେଠାରେ କିଏ ମାଲିକ ହେବ ପଚାର ତୁମେ ସୁଭାଷକୁ ।'' ନେତାଜୀ ଏହାର ଜବାବ ଦେବାର ଆବଶ୍ୟକତା ଥିବାର ମନେ କଲେ ନାହିଁ; କାରଣ ବହୁପୂର୍ବରୁ ସେ ଏହାର ଫୟସଲା କରିସାରିଥିଲେ । କିନ୍ତୁ ଜାପାନର ପ୍ରଧାନମନ୍ତ୍ରୀ ତୋଜୋ ଏହାର ଜବାବ ଦେଲେ ଟୋକିଓ ରେଡ଼ିଓରେ ମାର୍ଚ୍ଚ ୨୨ ତାରିଖ ୧୯୪୪– "It is natural that all areas over which Indian National Army marches within India must be placed compteley under the administration of the Provisional Government." ( ଏହା ଅତି ସ୍ୱାଭାବିକ କଥା ଯେ, ଯେଉଁ ଅଞ୍ଚଳ ଜାତୀୟ ବାହିନୀ ଦ୍ୱାରା ଅଧିକୃତ ହେଉଛି, ସେ ଅଞ୍ଚଳଗୁଡ଼ିକ ସଂପୂର୍ଣ୍ଣରୂପେ ଆଜାଦ ହିନ୍ଦ ସରକାରଙ୍କ ଦ୍ୱାରା ଶାସିତ ହେବ ।)

ମାର୍ଚ୍ଚ ୨୧ ତାରିଖରେ ରେଙ୍ଗୁନଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ନିଜେ ନେତାଜୀ ଘୋଷଣାକଲେ ଯେ, ଆଜାଦ ହିନ୍ଦ ଫୌଜ ବର୍ମା ଆସାମ ସୀମାନ୍ତର ବ୍ରିଟିଶ ଯୁଦ୍ଧଘାଟି ସବୁ ଦଖଲ କରି ମାର୍ଚ୍ଚ ୧୮ ତାରିଖରେ ଖାସ୍ ଭାରତରେ ପ୍ରବେଶ କରି ଅଛନ୍ତି । ସାରା ବିଶ୍ୱ ସ୍ତମ୍ଭିତ ଓ ଚକିତ ହେଲା ଏ ସମ୍ବାଦରେ । ବିଶେଷତଃ ଭାରତରେ ଯେଉଁମାନେ 'ଅହିଂସା– ଅହିଂସା' ମିଥ୍ୟା ପ୍ରତାରଣାର ସୁଯୋଗରେ ନେତାଜୀଙ୍କର ଏହି ସଶସ୍ତ୍ର ଯୁଦ୍ଧ ଆୟୋଜନକୁ ଉପହାସ ଓ ପିଲାଳିଆ ବୋଲି ମନେକରୁଥିଲେ ସେମାନେ ଯୁଗପତ୍ ବିସ୍ମୟରେ ସ୍ତବ୍ଧହୋଇଗଲେ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମାଡ଼ିଚାଲିଲେ ମୁକ୍ତି-ଫୌଜ । ବିଭିନ୍ନ ସେକ୍ଟରରେ ପ୍ରାୟ ସାତଟି ଦଳ ହୋଇ ବିଭିନ୍ନ ଯୁଦ୍ଧଘାଟି ଉପରେ ହେଲା ଆକ୍ରମଣ । ମାର୍ଚ୍ଚ ୨୦ ତାରିଖରେ ତଙ୍ଗଜନ ଓ ୨୧ ତାରିଖରେ ଅକ୍ରୁଲ ଯୁଦ୍ଧଘାଟି ମୁକ୍ତିବାହିନୀର ଅଧିକାରକୁ ଆସିଲା । ଆସାମର ସଂପୂର୍ଣ୍ଣ ଅଭ୍ୟନ୍ତରରେ ଟିଡ଼ିକ ଓ ମଲନ ନାମକ ଦୁଇଟି ଯୁଦ୍ଧଘାଟି ମାର୍ଚ୍ଚ ମାସ ୨୨ ତାରିଖରେ ମୁକ୍ତିବାହିନୀ ଦଖଲ

କରିନେଲେ । ସଙ୍ଗକ ଦଖଲ ହେଲା ୨୪ ତାରିଖରେ ଏବଂ ତା'ର ମାତ୍ର ଏକ ସପ୍ତାହ ଭିତରେ ପ୍ରାଣମୂର୍ଚ୍ଛା ଲଢ଼େଇ କରି ବ୍ରିଟିଶ ସୈନ୍ୟମାନେ ମୋରସ ଛାଡ଼ି ପଛକୁ ହଟିପଳେଇଲେ; ଅଳ୍ପ କେତେକ ସୈନ୍ୟ ବନ୍ଦୀ ମଧ୍ୟ ହେଲେ 'ଜାତୀୟ ବାହିନୀ ହାତରେ । 'ବାହିନୀ' ମନରେ ଅପୂର୍ବ ଉତ୍ସାହ । ବ୍ରିଟିଶ ସୈନ୍ୟ ଛାଡ଼ିପଳାଉଥାନ୍ତି ପ୍ରାଣବିକଳରେ; ଗୋଡ଼େଇଥାନ୍ତି 'ମୁକ୍ତିବାହିନୀ' । ସ୍ଥାନୀୟ ଅଧିବାସୀଙ୍କ ମନରେ ଅଫୁରନ୍ତ ଆନନ୍ଦ, ଉଦ୍ଦୀପନା ! ଭାଗ୍ୟବାନ୍ ସେମାନେ; କାରଣ ପ୍ରତ୍ୟକ୍ଷ ସଂଗ୍ରାମରେ ମୁକ୍ତହୋଇଥିବା ଅଞ୍ଚଳର ସେମାନେ ଅଧିବାସୀ । ଗାଁ ଗାଁ ଘରେ ଘରେ ଉଡ଼ିଲା ତ୍ରିରଙ୍ଗା ପତାକା । 'ନେତାଜୀ କୀ ଜୟ'; 'ମହାତ୍ମା ଗାନ୍ଧି କୀ ଜୟ', 'ବନ୍ଦେ ମାତରମ୍' ଧ୍ୱନିରେ ମୁକ୍ତାଞ୍ଚଳ ମୁଖରିତ ହୋଇଉଠିଲା । ଆଜାଦ ହିନ୍ଦ୍ ଜବାନମାନଙ୍କୁ ପାଛୋଟି ନେବାକୁ ସ୍ଥାନୀୟ ଅଧିବାସୀମାନେ ଉନ୍ମାଦ ହୋଇଉଠିଲେ । ଆସାମର ଗାଁଗହଳରେ ନୂତନ ଉତ୍ସାହ, ନୂତନ ଜୀବନ । ଗ୍ରାମବାସୀଙ୍କ ସହ କଣ୍ଠ ମିଳାଇ ଜବାନମାନେ ସ୍ଲୋଗାନ ଦେଲେ— 'ଚଲୋ ଦିଲ୍ଲୀ', ଗାଇଲେ ସେହି ସମର ସଙ୍ଗୀତ – '' କଦମ କଦମ ବଢ଼ାଏ ଯା, ଖୁସିକା ଗୀତ ଗାଏ ଯା ...'' ।

ଏପ୍ରିଲ ପହିଲା ଦିନ ଟାମୁ ଓ କାବୁ ନାମକ ଦୁଇଟି ସ୍ଥାନରୁ ବ୍ରିଟିଶ ଶାସନ ମୂଳପୋଛହେଲା ଏବଂ ୫ ତାରିଖରେ ହେଙ୍ଗଟାନ ସହର ଦଖଲ କଲା ମୁକ୍ତି-ଫୌଜ । ରେଙ୍ଗୁନଠାରେ ନେତାଜୀଙ୍କ ହେଡ୍‌କ୍ୱାର୍ଟରରେ 'ଜାତୀୟ ବାହିନୀ'ର ଏହି ସବୁ ବିଜୟ ସମ୍ବାଦ ପହଞ୍ଚିବା ସଙ୍ଗେ ସଙ୍ଗେ ରେଙ୍ଗୁନରେ ପାଳିତହେଲା ସ୍ୱତଃସ୍ଫୂର୍ତ୍ତ ଉତ୍ସବ । ରେଙ୍ଗୁନରେ ସେହି ଦିନ ଉଦ୍‌ଘାଟିତ ହେଲା 'ଆଜାଦ ହିନ୍ଦ ବ୍ୟାଙ୍କ' ଏବଂ ଉଦଘାଟନ ଉତ୍ସବ ସାଙ୍ଗ ହେବା ପରେ ନେତାଜୀ 'ଝାନ୍ସୀରାଣୀ ରେଜିମେଣ୍ଟ'ର ଗୋଟିଏ ଦଳ ଧରି ଯୁଦ୍ଧକ୍ଷେତ୍ରକୁ ବାହାରିପଡ଼ିଲେ ।

ମଣିପୁର କୋହିମାଦୁର୍ଗ ଇଂରେଜମାନଙ୍କର ଏକ ଶକ୍ତିଶାଳୀ ଯୁଦ୍ଧଘାଟି । ସେହି ଦୁର୍ଗ ଏବଂ କୋହିମା-ଦିନାପୁର ରାସ୍ତା ଉପରେ ଅବସ୍ଥିତ ବ୍ରିଟିଶ ସୈନ୍ୟ-ଛାଉଣୀ ଦଖଲ କରିବାକୁ ଲାଗିଗଲା ରକ୍ତକ୍ଷୟୀ ସଂଗ୍ରାମ । ଏପ୍ରିଲ ୮ ତାରିଖରେ ଉଭୟ ସ୍ଥାନରେ ବ୍ରିଟିଶ ସୈନ୍ୟ ପରାଜିତହେଲେ । ବହୁସଂଖ୍ୟକ ସୈନ୍ୟ ବନ୍ଦୀହେଲେ ସେଠାରେ । ମୁକ୍ତି-ଫୌଜର ମନୋବଳ ବଢ଼ିଗଲା ବହୁ ପରିମାଣରେ ।

କର୍ଣ୍ଣେଲ ଏସ. ଏ. ମାଲିକଙ୍କ ନେତୃତ୍ୱରେ ଲଢୁଥିବା 'ମୁକ୍ତି-ଫୌଜ' ଦଳଟି ବ୍ରିଟିଶ ସୈନ୍ୟଙ୍କୁ ଠେଲି ଠେଲି ମଣିପୁରର ମଇରାଂଗ ପର୍ଯ୍ୟନ୍ତ ନେଇଗଲେ ଏବଂ ଏପ୍ରିଲ ୧୪ ତାରିଖରେ ମଇରାଂଗ ସହରର ପତନ ହେଲା ।

କୋହିମା ଓ ମଇରାଂଗରୁ ଇଂରେଜ କର୍ତ୍ତୃତ୍ୱ ଲୋପପାଇବା ସମ୍ବାଦରେ ସମଗ୍ର ବ୍ରିଟିଶ ଯୁଦ୍ଧକଳ ବିବ୍ରତ ହୋଇପଡ଼ିଲା । ସରକାର କିଂକର୍ତ୍ତବ୍ୟବିମୂଢ଼ । ବିଲାତ ପାର୍ଲିଆମେଣ୍ଟ ମଧ୍ୟ ହୁଲସ୍ଥୁଲ ହୋଇଗଲା । ଏପର୍ଯ୍ୟନ୍ତ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ପ୍ରେସିଡ଼େଣ୍ଟ ରୁଜଭେଲ୍‌ଟଙ୍କଠାରୁ ପ୍ରକୃତ ସମ୍ବାଦ ଗୋପନରଖିଥିଲେ । କିନ୍ତୁ ବର୍ତ୍ତମାନ ଆଉ କାହାକୁ ଅଛପା ରହିଲା ନାହିଁ ଯେ, ଜାତୀୟ ବାହିନୀର ଦୁର୍ଦ୍ଧର୍ଷ ଆକ୍ରମଣର ମୁକାବିଲା କରିବାକୁ ବ୍ରିଟିଶ ସୈନ୍ୟବାହିନୀ

ସଂପୂର୍ଣ୍ଣ ଅସମର୍ଥ । ମାତ୍ର ଦୁଇମାସ ଭିତରେ ଯଦି ସୁଭାଷଙ୍କ ଜାତୀୟ ବାହିନୀ ଆସାମ-ବର୍ମା ସୀମାନ୍ତର ଦୁର୍ଭେଦ୍ୟ ଜଙ୍ଗଲ-ପାର୍ବତ୍ୟ ଅଞ୍ଚଳକୁ ଭେଦକରି ଆସାମର ସମତଳ ଅଞ୍ଚଳକୁ ପ୍ରବେଶ କରିବାକୁ ସମର୍ଥ ହୋଇପାରିଲା, ତେବେ ଦିଲ୍ଲୀ ଆଉ କେତେ ଦୂର ? ଯେକୌଣସି ମତେ ସୁଭାଷ ବାହିନୀର ଅଗ୍ରଗତିକୁ ରୋକିବାକୁ ପଡ଼ିବ – ଏହାହିଁ ଥିଲା ଦିଲ୍ଲୀ ଠାରୁ ଲଣ୍ଡନ ପର୍ଯ୍ୟନ୍ତ ସରକାରର କଳ୍ପନା । କିନ୍ତୁ ଆମେରିକାର ବିନା ସାହାଯ୍ୟରେ ଏହା ସମ୍ଭବ ନୁହେଁ । ରୁଜଭେଲ୍‌ଟଙ୍କୁ ନିବେଦନ କରାଗଲା ।

ଏ ସମ୍ପର୍କରେ ଚର୍ଚ୍ଚିଲ ଓ ରୁଜଭେଲ୍‌ଟଙ୍କ ଭିତରେ ଆଲୋଚନା ହୋଇ ଚାରିଗୋଟି ବିଷୟ ସ୍ଥିର ହେଲା । ପ୍ରଥମ କଥା ହେଲା, ଜାପାନ ପକ୍ଷରୁ ଜାତୀୟ ବାହିନୀକୁ ଯେଉଁ ଯୁଦ୍ଧ ସରଞ୍ଜାମ, ଟ୍ୟାଙ୍କ, ଉଡ଼ାଜାହାଜ ସାହାଯ୍ୟ ଦିଆଯାଉଛି, ତାକୁ ଯେକୌଣସି ପ୍ରକାରେ କମାଇବାକୁ ପଡ଼ିବ । ତାହାର ଏକମାତ୍ର ଉପାୟ ହେଉଛି ପ୍ରଶାନ୍ତ ମହାସାଗରରେ ଜାପାନର ଯୁଦ୍ଧଘାଟି ଉପରେ ଆକ୍ରମଣ ବଢ଼ାଇଦେବା । ସେଠାରେ ଆକ୍ରମଣର ମୁକାବିଲା କରିବାକୁ ହେଲେ ଜାପାନ ଜାତୀୟ ବାହିନୀକୁ ଅଧିକ ସାହାଯ୍ୟ କରିପାରିବନାହିଁ ।

ଦ୍ୱିତୀୟତଃ, ଅଧିକ ସୈନ୍ୟସାମନ୍ତ ସାହାଯ୍ୟ ଦେଇ ଆସାମର ଯୁଦ୍ଧାୟୋଜନ ବ୍ୟବସ୍ଥାକୁ ଅଧିକ ଦୃଢ଼ କରିବାକୁ ହେବ । ତୃତୀୟତଃ, ଜାତୀୟ ବାହିନୀର ଅଗ୍ରଗତି ସମ୍ବାଦ ଯେପରି ଭାରତବାସୀ, ବିଶେଷତଃ ଆସାମ ଓ ବଙ୍ଗଳା ଲୋକେ ନ ପାଆନ୍ତି, ତାହାର ବ୍ୟବସ୍ଥା କରିବାକୁ ହେବ । ଏହାକୁ ସରକାର ଖୁବ୍ ଗୁରୁତ୍ୱପୂର୍ଣ୍ଣ ବୋଲି ବିଚାର କରୁଥିଲା; କାରଣ କଲିକତା ଅବସ୍ଥା ଆଦୌ ଭଲନଥିଲା । ଘୋର ଉତ୍ତେଜନା ଓ ସଂଶୟ ଭିତରେ କଲିକତାର ଜନସାଧାରଣ ଦିନ ଯାପନ କରୁଥିଲେ । ଆଜାଦ ହିନ୍ଦ୍ ରେଡ଼ିଓର ପ୍ରଚାର ଯେପରି କଲିକତା ଲୋକେ ଶୁଣିନପାରନ୍ତି, ତା'ର କଠୋର ବ୍ୟବସ୍ଥା କରାଗଲା । ଚତୁର୍ଥତଃ, ଜନସାଧାରଣଙ୍କ ମନରେ ସରକାର ପ୍ରତି ବିଶ୍ୱାସ ଓ ଆସ୍ଥା ସୃଷ୍ଟି ପାଇଁ କଂଗ୍ରେସ ଓ ଜେଲରେ ଥିବା କଂଗ୍ରେସ ନେତାମାନଙ୍କ ପ୍ରତି ନରମ ନୀତି ଅବଲମ୍ବନ କରିବା ଉଚିତ ବୋଲି ରୁଜଭେଲ୍‌ଟ ଜୋର୍‌ଦେଲେ ।

ସିଦ୍ଧାନ୍ତ ଅନୁଯାୟୀ କାର୍ଯ୍ୟ ମଧ୍ୟ ଆରମ୍ଭକରାଗଲା । ୧୯୪୩ ମସିହା ଶେଷ ଆଡ଼କୁ ଦକ୍ଷିଣ ପ୍ରଶାନ୍ତ ମହାସାଗରସ୍ଥ ନିଉଗିନି ଏବଂ ଉତ୍ତର ପ୍ରଶାନ୍ତ ମହାସାଗରର ଆଲୁଏସିଆନ ଏବଂ କୁରିଲ ଦ୍ୱୀପ ଉପରେ ଆମେରିକାପକ୍ଷରୁ ବିମାନ ଆକ୍ରମଣକୁ ତୀବ୍ର କରିଦିଆଗଲା । ଜାପାନ ମଧ୍ୟ ତା'ର ମୁକାବିଲା କରୁଥାଏ ଖୁବ୍ ସଫଳତାସହକାରେ । ଉଭୟ ପକ୍ଷରୁ ବହୁ ବିମାନ ଧ୍ୱସ୍ତ-ବିଧ୍ୱସ୍ତ ହେଲା; ଫଳରେ ଆମେରିକାର ଏହି ନୂତନ ଆକ୍ରମଣ ଜାପାନର ଏକ ଚିନ୍ତାର କାରଣ ହୋଇପଡ଼ିଲା ।

୧୯୪୩ ମସିହାରେ ରୁଜଭେଲ୍‌ଟଙ୍କ ବିଶେଷ ଦୂତ ଭାରତର ରାଜନୈତିକ ପରିସ୍ଥିତି ଓ ଯୁଦ୍ଧ ସମ୍ପର୍କରେ ଯେଉଁ ରିପୋର୍ଟ ଦେଇଥିଲେ, ତାହା ଏପର୍ଯ୍ୟନ୍ତ ଆମେରିକାନ୍ ପ୍ରେସିଡେଣ୍ଟଙ୍କର ପ୍ରଧାନ ଚିନ୍ତାର କାରଣ ହୋଇଥିଲା । ଭାରତର ତତ୍‌କାଳୀନ ଆମେରିକାନ୍ ରାଷ୍ଟ୍ରଦୂତ ଉଇଲିଅମ ଫିଲିପହିଁ ଏହି ରିପୋର୍ଟ ଦେଇଥିଲେ । ସେଥିରେ ସେ ଲେଖିଥିଲେ,

(୧) ପ୍ରଥମ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ହେଉଛି ଯୁଦ୍ଧ ପ୍ରତି ସହାନୁଭୂତିଶୀଳ ଭାରତ। (୨) ଇଂରେଜମାନେ ଯୁଦ୍ଧ ପାଇଁ କେବଳ ପ୍ରତୀକ ସାହାଯ୍ୟ ଦେବା ବ୍ୟତୀତ ଅଧିକ କିଛି କରିବା ଅବସ୍ଥାରେ ନାହାନ୍ତି। (୩) ଭାରତୀୟମାନେ କ୍ରମେ ଗଭୀର ଭାବରେ ଅନୁଭବ କରୁଅଛନ୍ତି ଯେ ଏହି ଯୁଦ୍ଧରେ ସେମାନଙ୍କର ଇଂରେଜମାନଙ୍କୁ ବିଶେଷ କିଛି ସାହାଯ୍ୟ କରିବାର ନାହିଁ; କାରଣ ଏହି ଯୁଦ୍ଧର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସେମାନଙ୍କ ପ୍ରତି ଆଦୌ ପ୍ରଯୁଜ୍ୟ ନୁହେଁ। (୪) ବ୍ରିଟିଶ ଭାରତୀୟ ସୈନ୍ୟମାନଙ୍କର ମନୋବଳ ଆଦୌ ଦୃଢ଼ ନାହିଁ। ସେମାନଙ୍କ ଉପରେ ଆଉ ଭରସା କରି ରହିହେବ ନାହିଁ। (୫) ଜନସାଧାରଣଙ୍କର ମନୋଭାବ ଆହୁରି ଦୁଃଖଦାୟକ। ରାଜନୀତି କ୍ଷେତ୍ରରେ ସୃଷ୍ଟିହୋଇଥିବା ଅଚଳ ଅବସ୍ଥାର ସମାଧାନ ହେଉନଥିବାରୁ ସବୁଆଡ଼େ ସରକାର ପ୍ରତି ଅବିଶ୍ୱାସ ଓ ଘୃଣା ସୃଷ୍ଟିହୋଇଅଛି।

ଏହାର ପ୍ରତିକାର ସଦୃଶ ଉଇଲିଅମ ଫିଲିପ୍ ରୁଜଭେଲ୍ଟଙ୍କୁ ଲେଖିଥିଲେ ଯେ, ଆମର କାର୍ଯ୍ୟକଳାପଦ୍ୱାରା ଭାରତୀୟମାନଙ୍କ ଭିତରେ ପ୍ରତ୍ୟୟ ସୃଷ୍ଟି କରିବାକୁ ହେବ ଯେ, ଏହି ଯୁଦ୍ଧରେ ମିତ୍ରଶକ୍ତି ଜିତିବା ସେମାନଙ୍କର ସ୍ୱାର୍ଥ-ଅନୁକୂଳ ଏବଂ ଯୁଦ୍ଧୋତ୍ତର ପୃଥିବୀର ପୁନଃନିର୍ମାଣ କାର୍ଯ୍ୟରେ ଭାରତ ମଧ୍ୟ ଫଳପ୍ରଦ ଅଂଶ ଗ୍ରହଣ କରିବ। ଫିଲିପ୍‌ଙ୍କର ଉପରୋକ୍ତ ରିପୋର୍ଟ ଗୋପନୀୟ ହୋଇଥିଲେ ମଧ୍ୟ ତା'ର ବିଷୟବସ୍ତୁ କୌଣସିମତେ ପ୍ରକାଶିତହୋଇଗଲା ଏବଂ ଏହା ଫଳରେ ବ୍ରିଟିଶ ସରକାର ବଡ଼ ଅଡୁଆରେ ପଡ଼ିଗଲେ। ଫିଲିପ୍ ଏକ ବିବାଦୀୟ ବ୍ୟକ୍ତି ହୋଇପଡ଼ିଲେ।

କିନ୍ତୁ ସରକାରର ନିଜ ଅଫସିରମାନେ ଜନସାଧାରଣଙ୍କର ମନୋଭାବ ସମ୍ପର୍କରେ ଯେଉଁ ରିପୋର୍ଟ ଦେଇଥିଲେ, ତାହା ମଧ୍ୟ ସରକାର ପକ୍ଷରେ ଆଦୌ ଉତ୍ସାହପ୍ରଦ ନଥିଲା। ଖୋଦ ଘରୋଇ ବିଭାଗର ଅଣ୍ଡରସେକ୍ରେଟାରୀ ଭାଇସରୟଙ୍କୁ ରିପୋର୍ଟ ଦେଲେ ଯେ, ''ଯେଉଁ ଜମିଦାର ଓ ବଡ଼ ବଡ଼ ଭୂମିମାଲିକମାନଙ୍କୁ ସରକାରଙ୍କ ବନ୍ଧୁ ବୋଲି ମନେକରାଯାଉଥିଲା, ସେମାନେ ଆମର ବନ୍ଧୁ-ପଦବାଚ୍ୟ ନୁହନ୍ତି। ଦେଶ ଭିତରେ ବା ବାହାରେ ଯେଉଁ ବିପ୍ଳବ ଚାଲିଛି, ସେ ସବୁ ପ୍ରତି ଏହି ବନ୍ଧୁମାନଙ୍କର ଗୋପନ ସମର୍ଥନ ରହିଛି। ସେମାନେ କେବଳ ସୁଖଦିନରେ ବନ୍ଧୁ (Fair weather friends)।

ବଙ୍ଗଳାର ଗଭର୍ଣ୍ଣର କେସି ୧୯୪୪ରେ ରିପୋର୍ଟ ଦେଇଥିଲେ- ''ସତ ଘଟଣା ହେଉଛି ଏହା ଯେ, ସଂଖ୍ୟାଗରିଷ୍ଠ ହିନ୍ଦୁବୁଦ୍ଧିଜୀବୀମାନେ ଆମର ଅନିଷ୍ଟ ଚିନ୍ତା କରୁଛନ୍ତି। ଯଦିବି ସଶସ୍ତ୍ର ବିପ୍ଳବୀମାନଙ୍କ ସଂଖ୍ୟା ଖୁବ୍ କମ୍, ତଥାପି ସେମାନଙ୍କ ପଛରେ ସଂଖ୍ୟାଗରିଷ୍ଠ ହିନ୍ଦୁ ଅଧିବାସୀଙ୍କର ସମର୍ଥନ ରହିଛି।''

ଛୋଟିଆ ବ୍ରିଟିଶ କର୍ମଚାରୀଠାରୁ ଆରମ୍ଭକରି ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କ ପର୍ଯ୍ୟନ୍ତ ଉପଲବ୍ଧି କଲେ ଯେ, 'ସୁଭାଷ-ବାହିନୀ'ର ଅଚିନ୍ତନୀୟ ଅଗ୍ରଗତି ପ୍ରତି ଜନସମର୍ଥନ ବନ୍ଦ କରିବାକୁ ହେଲେ ଦେଶର ସ୍ୱାଧୀନତା ଓ ଜେଲରେ ଥିବା ନେତାମାନଙ୍କ ପ୍ରତି ଅନମନୀୟ ମନୋଭାବ ବଦଳାଇବାକୁ ହେବ।

୧୯୪୪ ମସିହା ପ୍ରଥମଭାଗରେ ସରକାର ନିକଟରେ ଗୋୟେନ୍ଦା ରିପୋର୍ଟ ପହଞ୍ଚିଲା ଯେ, କଲିକତାଠାରେ ଆଜାଦ ହିନ୍ଦ୍ ଫୌଜର ଏକ ଗୁପ୍ତ ପ୍ରଚାରକଦଳ ଆଜାଦ ହିନ୍ଦ୍ ରେଡ଼ିଓରୁ ସମ୍ବାଦ ସଂଗ୍ରହକରି ଜନସାଧାରଣଙ୍କ ନିକଟରେ ପ୍ରଚାର କରୁଅଛନ୍ତି, ଏପରି କି ଜାତୀୟବାହିନୀର ଅଗ୍ରଗତି ସମ୍ପର୍କରେ ଟିକିନିଖି ସଂବାଦ ସରକାରୀ ମହଲ ପାଇବା ପୂର୍ବରୁ ମଧ ଜନସାଧାରଣଙ୍କ ନିକଟରେ ଯହଞ୍ଚିଯାଉଛି । ରାସ୍ତାଘାଟ କାନ୍ଥ-ବାଡ଼ ଚାରିଆଡ଼େ ପୋଷ୍ଟର ଓ ପ୍ରଚାରପତ୍ର ପ୍ରକାଶିତ ହେବା ଦେଖି ସରକାରର ଆଉ ଟିକିଏ ହେଲେ ସନ୍ଦେହ ରହିଲା ନାହିଁ ଯେ ଏକ ସୁପ୍ରତିଷ୍ଠିତ ଗ୍ରୁପ୍ ଏହି କାର୍ଯ୍ୟ କରୁଅଛନ୍ତି ଏବଂ ସେ ଗ୍ରୁପ୍‌ଟିର ଆଡ୍ଡା ସ୍ଥାନ କେଉଁଠି ତାହା ସନ୍ଧାନ କରିବାକୁ ପୋଲିସ ଲାଗିପଡ଼ିଲେ ।

ଆମେରିକାନ୍ ଟ୍ୟାଙ୍କ, ଉଡ଼ାଜାହାଜ ଓ ଅନ୍ୟାନ୍ୟ ଯୁଦ୍ଧ ସରଞ୍ଜାମ ଯଥେଷ୍ଟ ପରିମାଣରେ ନ ପହଞ୍ଚିଲେ 'ସୁଭାଷ-ବାହିନୀ'ର ଅଗ୍ରଗତି ରୋକିବା ଅସମ୍ଭବ ହୋଇ-ପଡ଼ିବ ବୋଲି ଆମେରିକାର ଯୁଦ୍ଧବିଶେଷଜ୍ଞମାନେ ପ୍ରେସିଡେଣ୍ଟ ରୁଜଭେଲ୍‌ଟଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ, ଆମେରିକା ସରକାର ତାକୁ ବର୍ତ୍ତମାନ ସକ୍ରିୟ ଭାବେ ବିଚାର କଲେ । ବିଶେଷତଃ କୋହିମା ଦୁର୍ଗର ପତନ ପରେ ପରେ ଏ ସମ୍ପର୍କରେ ସରକାରୀ ତତ୍ପରତା ବୃଦ୍ଧିପାଇଲା । ଦେଖିବାକୁ ଗଲେ, ୧୯୪୨ ଆରମ୍ଭରେ ଆମେରିକା ଯୁଦ୍ଧ-ସରଞ୍ଜାମ ଭାରତରେ ପହଞ୍ଚିବାକୁ ଆରମ୍ଭକରିଥିଲା । କିନ୍ତୁ 'ସୁଭାଷ-ବାହିନୀ'ର ଅକଳ୍ପନୀୟ ବିଜୟ ଦେଖି ସମସ୍ତେ ଅନୁଭବ କଲେ ତାହା ଯଥେଷ୍ଟ ନୁହେଁ । ଆମେରିକା ସରକାର ଭାରତର ସ୍ୱାଧୀନତାପାଇଁ ବ୍ରିଟିଶ ସରକାର ଉପରେ ଚାପପକାଉଥିଲେ ମଧ ଏକ ସଶସ୍ତ୍ର ଅଭ୍ୟୁତ୍‌ଥାନ ଜରିଆରେ ଭାରତର ସ୍ୱାଧୀନତାକୁ ସେ ବରଦାସ୍ତ କରୁନଥିଲେ । ଆମେରିକା ଭଳି ଏକ ପୁଞ୍ଜିବାଦୀ ରାଷ୍ଟ୍ରପକ୍ଷରେ ଏହା ଏକାନ୍ତ ସ୍ୱାଭାବିକ ଥିଲା । ନେତାଜୀ ଏହା ଭଲରୂପେ ଜାଣିଥିବାରୁହିଁ ପ୍ରଥମରୁ ସେ ଇଂଲଣ୍ଡ ଓ ଆମେରିକା ଉଭୟଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ଆମେରିକା ସରକାର ଚାହୁଁଥିଲା ଯେ, କଂଗ୍ରେସର ସାଲିସନୀତି ଅନୁଯାୟୀ 'ସ୍ୱାଧୀନତା' କଥା ଯେତେ ବାଟ ଯାଉଛି ଯାଉ; ଗାନ୍ଧିଜୀଙ୍କର ଅହିଂସ ମିଳାମିଶା ନୀତି ଆମେରିକାପକ୍ଷରେ ଅଧିକ ସ୍ପୃହଣୀୟ । କାରଣ ସୁଭାଷଙ୍କ ନୀତି ଅନୁସାରେ ଯଦି ଏକ ସଶସ୍ତ୍ର ବିପ୍ଳବଦ୍ୱାରା ଭାରତର ସ୍ୱାଧୀନତା ପ୍ରାପ୍ତି ସମ୍ଭବ ହୁଏ, ତେବେ ତାହା ଏଭଳି ଏକ ପରମ୍ପରା ସୃଷ୍ଟି କରିବ, ଯାହା କି ପୁଞ୍ଜିବାଦୀ ସାମ୍ରାଜ୍ୟବାଦୀ ଦେଶଗୁଡ଼ିକ ପକ୍ଷରେ ଏକ ବୋଝ ସ୍ୱରୂପ ହେବ ବୋଲି ଆମେରିକା ପ୍ରେସିଡେଣ୍ଟ ବିଚାରକଲେ । ଆମେରିକାନ୍ ସୈନ୍ୟ ଓ ଅଫିସରମାନଙ୍କ ସଂଖ୍ୟା ୫୧,୯୯୨ରୁ ୧,୫୦,୧୩୪ ପର୍ଯ୍ୟନ୍ତ ବଢ଼ାଇଦିଆଯିବାକୁ ସ୍ଥିରହେଲା । ୧୯୪୪ ଫେବୃୟାରୀ ପହିଲା ଦିନ ଦକ୍ଷିଣ-ପୂର୍ବ ଏସିଆ ଓ ଭାରତ ସେ ବ୍ରିଟିଶ ଓ ଆମେରିକାନ ଯୁଦ୍ଧବିମାନସଂଖ୍ୟା ମିଶି ୪୨୧୫ଟି ଥିଲା । କିନ୍ତୁ ଜାତୀୟ ବାହିନୀର ଅଭିଯାନ ଆରମ୍ଭ ହେବା ପରଠାରୁ ଖାସ ପୂର୍ବ-ଭାରତ ପାଇଁ ବହୁସଂଖ୍ୟକ ଆମେରିକାନ ଯୁଦ୍ଧ ବିମାନ ଯୋଗାଇଦେବାକୁ ଆରମ୍ଭକରାଗଲା ।

ରାଜନୈତିକ କ୍ଷେତ୍ରରେ ଯେଉଁ ଅସ୍ଥିରତା ଓ ଅଚଳ ଅବସ୍ଥା ସୃଷ୍ଟିହୋଇଥିଲା, ତା'ର ସମାଧାନ ପାଇଁ ଇଂଲାଣ୍ଡ ଓ ଆମେରିକାର ଉଚ୍ଚ ସରକାରୀମହଲରେ ତନାଘନା ମନ୍ତ୍ରଣା ଆରମ୍ଭ ହୋଇଗଲା । ଏହାର ପ୍ରଥମ ପଦକ୍ଷେପ ସ୍ୱରୂପ ନେତାମାନଙ୍କୁ ଜେଲରୁ ଖଲାସ କରିବା କଥା ସକ୍ରିୟ ଭାବରେ ବିଚାରକରାଗଲା ।

ତେଣେ କୋହିମା ଦୁର୍ଗରୁ ଇଂରେଜ କର୍ତ୍ତୃତ୍ୱ ଲୋପହେବା ଫଳରେ ଜାତୀୟ ବାହିନୀର ଜବାନମାନଙ୍କ ଭିତରେ ବିପୁଳ ଉତ୍ସାହ, ଉଦ୍ଦୀପନା ସୃଷ୍ଟିହେଲା । କାଙ୍ଗ୍ରାଟୋଙ୍ଗି ଦଖଲ ହୋଇଥିଲା ଏପ୍ରିଲ ୭ ତାରିଖରେ । ୨୦ ତାରିଖରେ ପାଚେଡ୍ୱା ଓ ଟେଙ୍ଗନାପାଲ ଯୁଦ୍ଧଘାଟି ଜାତୀୟ ବାହିନୀ ଦଖଲକଲେ । ରେଙ୍ଗୁନସ୍ଥ ଆଜାଦ ହିନ୍ଦ୍ ରେଡ଼ିଓରୁ ନେତାଜୀ ଭାରତବାସୀଙ୍କୁ ତାଙ୍କ ଅଭିଯାନର ପ୍ରଧାନ ଉଦ୍ଦେଶ୍ୟ ବୁଝାଇ କହିଲେ, "The only lawful Government of India has only one mission to fulfil. That mission is to expel the Anglo-American armies from the sacred soil of India by armed forces and then to bring about the establishment of permanent National Government of Azad India, in accordance with the will of the Indian people," (ଭାରତର ଏକମାତ୍ର ଆଇନସିଦ୍ଧ ସରକାର ହେଉଛି 'ଆଜାଦ ହିନ୍ଦ୍ ସରକାର' ଏବଂ ତା'ର ଗୋଟିଏ ମାତ୍ର କାର୍ଯ୍ୟ ରହିଅଛି । ସେ କାର୍ଯ୍ୟଟି ହେଉଛି ସଶସ୍ତ୍ର ସୈନ୍ୟଶକ୍ତି ସାହାଯ୍ୟରେ ଭାରତର ପବିତ୍ର ମାଟିରୁ ଇଂଲାଣ୍ଡ-ଆମେରିକା ସୈନ୍ୟମାନଙ୍କୁ ବିତାଡ଼ିତ କରିବା ଏବଂ ଜନସାଧାରଣଙ୍କ ମତାନୁସାରେ ସେଠାରେ ସ୍ୱାଧୀନ ସରକାର ଗଠନ କରିବା) । ୧୮ ତାରିଖରେ ଇମ୍ଫାଲକୁ ଘେରାଉକରାଗଲା । ଉତ୍ତରଦିଗରୁ ମୁକ୍ତିବାହିନୀର ଗୋଟିଏ ଦଳ ମଧ୍ୟ ଇମ୍ଫାଲ ଆଡ଼କୁ ଧସେଇପଶିଲେ । ୨୨ ତାରିଖ ଦିନ ଯୁଦ୍ଧ ଏକ ଚରମ ସୀମାରେ ପହଞ୍ଚିଲା । 'ଦିଲ୍ଲୀ ଚଲୋ', 'ଇନକ୍ଳିଲାବ' ଧ୍ୱନିରେ ଇମ୍ଫାଲର ବଣ-ପର୍ବତ ଥରହର ହୋଇଗଲା । ଇମ୍ଫାଲ ରାସ୍ତାଘାଟ ସହିଦର ରକ୍ତରେ ଲାଲହୋଇଗଲା । ଇମ୍ଫାଲ ଦଖଲ ପାଇଁ ମୁକ୍ତିବାହିନୀର ଆକ୍ରମଣ ଯେତିକି ତୀବ୍ର ହେଲା, ଏହାକୁ ରକ୍ଷା କରିବା ପାଇଁ ବ୍ରିଟିଶ ସରକାରର ଉଦ୍ୟମ ମଧ୍ୟ ସେହି ପରିମାଣରେ ତେଜିଉଠିଲା । ବ୍ରିଟିଶ ପ୍ରଧାନ ସେନାପତି ଲର୍ଡ଼ ମାଉଣ୍ଟବ୍ୟାଟେନଙ୍କ ନିର୍ଦ୍ଦେଶରେ ଶତ୍ରୁପକ୍ଷ ଇମ୍ଫାଲ ଉପରେ ସମସ୍ତ ଶକ୍ତି ନିୟୋଜିତକଲା । ମୁକ୍ତିବାହିନୀର ଅସାଧାରଣ ସମରକୌଶଳ ସମ୍ମୁଖରେ ମହାଶକ୍ତିଶାଳୀ ବ୍ରିଟିଶ-ଆମେରିକା ମିଳିତ ସାମରିକ ଶକ୍ତିର ଶୋଚନୀୟ ବିପର୍ଯ୍ୟୟ ସମଗ୍ର ବ୍ରିଟିଶ ସାମ୍ରାଜ୍ୟବାଦକୁ ଥରହର କରିଦେଲା । ସାରା ବିଶ୍ୱବାସୀଙ୍କୁ ମୁକ୍ତିବାହିନୀର ଏହି ଅଚିନ୍ତନୀୟ ଅଗ୍ରଗତି ସ୍ତମ୍ଭିତ ଓ ଚମତ୍କୃତ କରିଦେଲା ।

ଜାତୀୟ ବାହିନୀକୁ ଆହୁରି ଦୃଢ଼ ଓ ଶକ୍ତିଶାଳୀ କରିବା ପାଇଁ ନେତାଜୀ ପ୍ରବାସୀ ଭାରତୀୟମାନଙ୍କୁ ପୁଣି ଥରେ ଆହ୍ୱାନ କଲେ । ରେଙ୍ଗୁନର ଏକ ଜନସଭାରେ ନେତାଜୀ ବଜ୍ରକଣ୍ଠରେ ଘୋଷଣା କଲେ- " କରୋ ସବ୍ ନିଛାବର, ବନୋ ସବ୍ ଫକିର– Sacrifice your all and become beggers, ସର୍ବସ୍ୱ ତ୍ୟାଗକରି, ସମସ୍ତେ ଫକିର ହୁଅ । ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି ।"

ଜାତୀୟ ବାହିନୀର ଅଲୌକିକ ବୀରତ୍ୱ କାହାଣୀ ଶ୍ରବଣକରି 'ନେତାଜୀ ଯୁଦ୍ଧପାଣ୍ଠିକୁ' ଦାନକରିବାକୁ ଭାରତୀୟମାନଙ୍କ ଭିତରେ ରୀତିମତ ପ୍ରତିଯୋଗିତା ଲାଗିଗଲା । କିଶୋର-କିଶୋରୀ, ତରୁଣ ତରୁଣୀ, ଏପରିକି ଗୃହବଧୂମାନେ ସର୍ବସ୍ୱ ତ୍ୟାଗକରି ସତକୁ ସତ ଫକିର ହୋଇଯିବାକୁ ପ୍ରସ୍ତୁତହୋଇଗଲେ । ସୁନା, ରୁପା, ହୀରା, ଜହରତ, ଅଳଙ୍କାରର ମୋହ ତ୍ୟାଗକରି ନିରାଭରଣ ହୋଇ ଘରକୋଣର ବୋହୂମାନେ ଯେତେବେଳେ ତାହା ଯୁଦ୍ଧପାଣ୍ଠିକୁ ସମର୍ପଣକଲେ, ତାହା ନେତାଜୀଙ୍କର ଆଖିରେ ଭରିଦେଲା ଆନନ୍ଦାଶ୍ରୁ । ଏହିଭଳି ଭାବରେ ନେତାଜୀ ସୁଭାଷ ଚନ୍ଦ୍ରଙ୍କର ଅସାଧାରଣ ସାଙ୍ଗଠନିକ ଦକ୍ଷତା, ନେତୃତ୍ୱର ପରାକାଷ୍ଠା, ରାଜନୈତିକ ବିଚକ୍ଷଣତା ଓ ପ୍ରବାସୀ ଭାରତୀୟ ତଥା ବନ୍ଦୀ ବ୍ରିଟିଶ ସୈନ୍ୟମାନଙ୍କର ତାଙ୍କ ଉପରେ ଅଗାଧ ଆସ୍ଥା ଓ ବିଶ୍ୱାସ ସେଦିନ ପୂର୍ବ-ଭାରତରେ ରଚନାକରୁଥିଲା ଏକ ଅବିଶ୍ୱାସ୍ୟ ଇତିହାସ ଏବଂ ସାରା ବିଶ୍ୱର ପରାଧୀନ, ଦଳିତ ଓ ଅବହେଳିତ ଜାତିମାନଙ୍କ ମନରେ କରୁଥିଲା ଆଶା- ଭରସାର ସଂଚାର ।

ସତକୁ ସତ ପ୍ରବାସୀ ଭାରତୀୟ ତାଙ୍କୁ ରକ୍ତଦେଲେ ,ସର୍ବସ୍ୱ ଦେଲେ, ସ୍ୱାଧୀନତା ଯଜ୍ଞରେ ଖଣ୍ଡ ଖଣ୍ଡ କରି ନିଜନିଜକୁ ଆହୁତି ଦେଲେ– ''କରୋ ସବ୍ ନିଛାବର, ବନୋ ସବ୍ ଫକିର ।''

ମଇ ୫ ତାରିଖ ୧୯୪୪ ମସିହା । ଗାନ୍ଧିଜୀଙ୍କ ବନ୍ଦିଶାଳାରେ ଉପସ୍ଥିତ ହେଲେ ପୋଲିସ ଆଇ. ଜି. ଏବଂ ଗାନ୍ଧିଜୀଙ୍କୁ ସରକାର ବନ୍ଦୀରୁ ମୁକ୍ତକରିଛନ୍ତି ବୋଲି ଜଣାଇ ଦିଆଗଲା । ଗାନ୍ଧିଜୀଙ୍କର ଏହି ମୁକ୍ତି ସମ୍ପର୍କରେ ଡକ୍ଟର ତାରାଚାନ୍ଦ ତାଙ୍କର 'ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ'ରେ ଇଲ୍ଲେଖ କରି ମତ ପ୍ରକାଶ କରିଅଛନ୍ତି ଯେ ''ଗାନ୍ଧିଜୀଙ୍କର ଜେଲଜୀବନର ଅବସାନ ସଙ୍ଗେ ସଙ୍ଗେ ଗାନ୍ଧି-ଯୁଗର ମଧ୍ୟ ଅବସାନ ହେଲା । ଏହା ଦ୍ୱାରା ଗତ ଦୁଇବର୍ଷର ଘଟଣାବଳୀ, ବିଶେଷତଃ ଶେଷ ଆଇନ-ଅମାନ୍ୟ ଆନ୍ଦୋଳନ, ପରିଣତିଦୃଷ୍ଟିରୁ ଭାରତର ସ୍ୱାଧୀନତା ସଂଗ୍ରାମରେ ଏକ ନୂତନ ପର୍ଯ୍ୟାୟର ଅୟମାରମ୍ଭହେଲା । 'ଅହିଂସ ସତ୍ୟାଗ୍ରହ' ଦେଶର ସ୍ୱାଧୀନତା ଯୁଦ୍ଧ ପାଇଁ ତାର ଯଥାଶକ୍ତି ଦେଇସାରି ବର୍ତ୍ତମାନ ତା'ର ଉପଯୋଗିତା ହରାଇସାରିଥିଲା । ବିଶ୍ୱଯୁଦ୍ଧ ଚାରିଆଡ଼େ ହିଂସାର ବାତାବରଣ ସୃଷ୍ଟିକରିଥିଲା ଓ ଭାରତୀୟ ଜାତୀୟତାବାଦୀମାନେ କ୍ରମେ ଅଧିକରୁ ଅଧିକ ଉପଲବ୍ଧି କରୁଥିଲେ ଯେ (ସ୍ୱାଧୀନତା) ସମସ୍ୟାର ସମାଧାନ ପାଇଁ ଗାନ୍ଧି-ନୀତିର ପୁନର୍ବିଚାର କରିବାକୁ ପଡ଼ିବ । ସୁଭଷ ଚନ୍ଦ୍ର ବୋଷଙ୍କ ଭଳି ନେତାହିଁ ଏହି ନୂତନ ଯୁଗର ପଥପ୍ରଦର୍ଶକ ହେଲେ । ଗାନ୍ଧି-ନୀତିର 'ସାଧ୍ୟ ସହ ସାଧନାର ସାମଞ୍ଜସ୍ୟ' ଆଦର୍ଶର ଆଉ କୌଣସି ମୂଲ୍ୟ ରହିଲା ନାହିଁ । ସ୍ୱାଧୀନତାପ୍ରାପ୍ତି ପାଇଁ ଇତିହାସ ଯେଉଁ ପଥ ପ୍ରଦର୍ଶନ କରିଅଛି ଏବଂ ଯେଉଁ ପଥରେ ଅଗ୍ରଗତି କରିବା ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ, ସେହି ପଥରେ ଆଗେଇଯିବା ଆବଶ୍ୟକ ବୋଲି ଅନୁଭବ କରାଗଲା ।''(1)

1. Tarachand - History of Freedom Movement in India, Vol - IV, Pg. 398

ଇମ୍ଫାଲ ରଣକ୍ଷେତ୍ରରେ ପ୍ରତି ଇଞ୍ଚ ଜାଗା ପାଇଁ ଚାଲିଥାଏ ପ୍ରାଣମୂର୍ଚ୍ଛା ଲଢ଼େଇ । ଏଗ ଦିଗରେ ମୁମୂର୍ଷୁ ସାମ୍ରାଜ୍ୟବାଦୀ ଶକ୍ତିର ନାଭିଶ୍ୱାସ ବାହାରୁଥାଏ । ଆଜାଦ ହିନ୍ଦ୍ ଫୌଜର ବଜ୍ରାଘାତରେ ଖଣ୍ଡ ଖଣ୍ଡ ହୋଇ ଭୁଶୁଡ଼ିପଡୁଥାଏ ବ୍ରିଟିଶ ସାମ୍ରାଜ୍ୟବାଦର ଅଟ୍ଟାଳିକା ତାସର ଘରଭଳି । ତଥାପି ମରଣ-ପଣ କରି ଲଢୁଥାଏ ବ୍ରିଟିଶ ସେନାପତି ମାଉଣ୍ଟବାଟେନ ଏବଂ ଅନ୍ୟ ଦିଗରେ ଲଢୁଥାଏ ମୁକ୍ତିସେନାନୀ ଭାରତର ମୁକ୍ତି ପାଇଁ । ଯେ କି ତା'ର ସବୁ କିଛିର ପ୍ରତିଦାନରେ ଚାହେଁ ସ୍ୱାଧୀନତା, ଚାହେଁ ବ୍ରିଟିଶ-ଶକ୍ତିର ଧ୍ୱଂସସାଧନ ।

ପ୍ରତ୍ୟେକ ଭାରତବାସୀ ପକ୍ଷରେ ଏହା ଭାଗ୍ୟ ଓ ପୁରୁଷକାର ଭିତରେ ସଂଗ୍ରାମ— ଦେଖାଯାଉ, ଏ ସଂଗ୍ରାମରେ କିଏ ଜିତୁଛି — ବ୍ୟବସାୟ କରିବାର ବାହାନା କରି ବିରାଟ ଭାରତବର୍ଷକୁ ଦୀର୍ଘ ଦୁଇଶହବର୍ଷକାଳ କୁକ୍ଷିଗତ ଓ ପଦଦଳିତ କରି ରଖିଥିବା ବ୍ରିଟିଶ ସରକାର ନା ଜୀବନକୁ ବାଜି ରଖି ସେହି ପାଶବିକ ଶକ୍ତି ବିରୁଦ୍ଧରେ ବିପ୍ଳବର ଶାଣିତ ଖଡ୍‌ଗ ଉତ୍ତୋଳନ କରିଥିବା ତିରିଶ ଲକ୍ଷ ପ୍ରବାସୀ ଭାରତୀୟ ଓ ଚାଳିଶ କୋଟି ଭାରତବାସୀ ।

ମଇ ମାସ ଶେଷ ପର୍ଯ୍ୟନ୍ତ ଇମ୍ଫାଲ ଅବରୋଧକୁ ଆହୁରି ଦୃଢ଼କରିଦିଆଗଲା । ଜୁନ ମାସ ପ୍ରଥମ ସପ୍ତାହରୁ ଆରମ୍ଭହେଲା ଅବିଶ୍ରାନ୍ତ ବର୍ଷା । ଉନ୍ମତ୍ତ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁ ଯେମିତି ସମୁଦାୟ ବଙ୍ଗୋପସାଗରକୁ ଆସାମ ଉପରେ ଓଜାଡ଼ି- ଦେବାକୁ ବସିଲା । ପୃଥିବୀର ସର୍ବାଧିକ (ବାର୍ଷିକ ୫ଶହ ଇଞ୍ଚ) ବର୍ଷାହେଉଥିବା ଆସାମରେ ସେଥର ଯେମିତି ବୃଷ୍ଟିପାତର ସବୁ ରେକର୍ଡ଼ ଭାଙ୍ଗିଦେବାକୁ ବଦ୍ଧପରିକର; ପୁରୁଷକାରକୁ ଉପହାସ କରି ଭାଗ୍ୟର ଅଟ୍ଟହାସ୍ୟ । ଦୁର୍ଗମ ପାହାଡ଼, ଦୁର୍ଭେଦ୍ୟ ଅରଣ୍ୟ ଓ ଦୁର୍ଲଂଘ୍ୟ ବର୍ମା-ଆସାମ ଗିରିପଥକୁ ଆହୁରି ଦୁର୍ଗମ ଓ ଦୁର୍ଭେଦ୍ୟ କରିଦେବାକୁ ପ୍ରକୃତି ଯେମିତି ପ୍ରତିଜ୍ଞାବଦ୍ଧ । କ୍ରମେ ରୁଦ୍ଧହୋଇଗଲା ସମସ୍ତ ସରବରାହ ପଥ । ବନ୍ୟା-ପ୍ଳାବିତ ହୋଇଗଲା ରେଙ୍ଗୁନ ସହ ଥିବା ଏକମାତ୍ର ଯୋଗସୂତ୍ର; ଫଳରେ ଖାଦ୍ୟ, ରସଦ, ଗୁଳିବାରୁଦ ସୈନ୍ୟସାମନ୍ତ ଯୁଦ୍ଧକ୍ଷେତ୍ରକୁ ପଠାଇବା କ୍ରମେ ଅସମ୍ଭବ ହୋଇପଡ଼ିଲା ଆଜାଦ୍ ହିନ୍ଦ୍ ସରକାର ପକ୍ଷରେ । ଯୁଦ୍ଧକ୍ଷେତ୍ରରେ ଆହତ ମୁକ୍ତି ସୈନ୍ୟମାନଙ୍କୁ ଚିକିତ୍ସା କେନ୍ଦ୍ରକୁ ପଠାଇବା କଷ୍ଟକର ହୋଇପଡ଼ିଲା ।

ଐତିହାସିକ ତାରାଚାନ୍ଦ ଏ ସମ୍ପର୍କରେ ଲେଖିଛନ୍ତି ଯେ, ଜାତୀୟ ବାହିନୀ ସେ ସମୟରେ ଜାପାନର ଯୁଦ୍ଧ ପରିସ୍ଥିତି ବିଷୟରେ ସଂପୂର୍ଣ୍ଣ ଅନ୍ଧକାରରେ ଥିଲେ । ପ୍ରଶାନ୍ତ ମହାସାଗରରେ ଥିବା ଜାପାନର ଯୁଦ୍ଧଘାଟିଗୁଡ଼ିକ ଉପରେ ଆମେରିକା ପକ୍ଷରୁ ଆକ୍ରମଣ ତୀବ୍ର ହୋଇଯାଇଥିବାରୁ ଜାପାନ ତା'ର ମୁକାବିଲା କରିବାକୁ ବର୍ମାରୁ ଅଧିକରୁ ଅଧିକ ଯୁଦ୍ଧବିମାନ ପ୍ରତ୍ୟାହାର କରିନେଉଥିଲା । ଏହା ଫଳରେ 'ଜାତୀୟ ବାହିନୀ'ର ସହାୟକ ଯୁଦ୍ଧବିମାନଗୁଡ଼ିକ ଆଉ ବର୍ମାରେ କାର୍ଯ୍ୟ କରିପାରିଲାନାହିଁ । ସ୍ଥଳପଥ ବ୍ୟତୀତ ଅନ୍ୟ କୌଣସି ଉପାୟରେ ଜାତୀୟ ବାହିନୀକୁ ସାହାଯ୍ୟ କରିବା ସମ୍ଭବ ହେଲାନାହିଁ । ସ୍ଥଳପଥ ସର୍ବଦା ଆଙ୍ଗ୍ଲୋ-ଆମେରିକାନ ମିଳିତ ବିମାନ ଆକ୍ରମଣର ଶିକାରହେଉଥିଲା । ଜୁନ ମାସ ଆରମ୍ଭରେ ପ୍ରବଳ ବର୍ଷାଯୋଗୁଁ ସ୍ଥଳପଥରେ ଜାତୀୟ ବାହିନୀକୁ ସାହାଯ୍ୟ କରିବା ମଧ୍ୟ ଜାପାନପକ୍ଷରେ ଅସମ୍ଭବ ହେଲା । ଜୁନ ୭ ତାରିଖ ଜାତୀୟ ବାହିନୀର ପ୍ରତିରୋଧ ବ୍ୟବସ୍ଥା ଏକାବେଳକେ ଭାଙ୍ଗିପଡ଼ିଲା

କହିଲେ ଚଳେ । ବ୍ରିଟିଶ୍ ମେଜର ଜେନେରାଲ ଜେ. ଏଫ. ସି. ଫୁଲର ଲେଖିଛନ୍ତି, "Heavy losses amounting to 50% of the attacking troops coupled with the diffculties of road supply during the monsoon and the dangerous situation which was developing in the Mytkyina (Chinese border) area proved too much." (ଆକ୍ରମଣକାରୀ ଜାତୀୟ ବାହିନୀର ଶତକଡ଼ା ପଚାଶ ଭାଗ କ୍ଷତିଗ୍ରସ୍ତ ହେବା, ବର୍ଷା ଋତୁଯୋଗୁଁ ସରବରାହର ଘୋର ଅସୁବିଧା, ଚୀନ ସୀମାନ୍ତ ମିଟକିଆନର ଭୟାବହ ପରିସ୍ଥିତି ମିଶି ଅବସ୍ଥାକୁ ଅତିଶୟ ଖରାପ କରିଦେଲା ।)

ତେଣେ ସମତଳ ଅଞ୍ଚଳରୁ ସରକାରୀ ପକ୍ଷ ଅଧିକରୁ ଅଧିକ ଯୁଦ୍ଧ-ସରଞ୍ଜାମ ନେଇ ଇମ୍ଫାଲ ରଣକ୍ଷେତ୍ରରେ ଜମାକରିବାକୁ ଲାଗିଲା । ଏହି ସମୟ ମଧ୍ୟରେ ଆମେରିକାପକ୍ଷରୁ ବିପୁଳ ପରିମାଣରେ ଯୁଦ୍ଧ-ସରଞ୍ଜାମ ଆସିଲା, ଯାହାର ମୂଲ୍ୟ ଛ' ଶହ ପଚାଶ କୋଟି ଟଙ୍କାରୁ ଅଧିକ ହେବ । ଅଧିକ ୧୬ ସ୍କ୍ୱାର୍ଡ଼ନ ବ୍ରିଟିଶ ଯୁଦ୍ଧଜାହାଜ ଓ ୨୪ ସ୍କ୍ୱାର୍ଡ଼ନ ଆମେରିକା ଯୁଦ୍ଧଜାହାଜ ଯୋଗେଇଦିଆଗଲା । ଅର୍ଥାତ୍ ଗୋଟିଏ ମାସ ଭିତରେ ଅଧିକ ନଅଶହ ବୋମାବର୍ଷୀ ଉଡ଼ାଜାହାଜ 'ଜାତୀୟ ବାହିନୀ' ବିରୁଦ୍ଧରେ ପ୍ରୟୋଗ କରାଗଲା ।

ସପ୍ତାହ-ସପ୍ତାହଧରି ସୂର୍ଯ୍ୟ ଦିଶିଲେ ନାହିଁ । ଦୁର୍ଯୋଗ ଆବହାୱା ଟିକେହେଲେ ବଦଳିଲା ନାହିଁ । ଯୁଦ୍ଧକ୍ଷେତ୍ରରେ କ୍ରମେ ଖାଦ୍ୟ ଓ ଗୁଳିଗୁଳାର ଅଭାବ ପଡ଼ିଲା । ଅନବରତ ବୃଷ୍ଟିପାତ ସତ୍ତ୍ୱେ ବ୍ରିଟିଶ ଫୌଜର ସରବରାହ ପଥ ବିଶେଷ କ୍ଷତିଗ୍ରସ୍ତ ହୋଇନଥିଲା; କାରଣ ତାହା ମୁଖ୍ୟତଃ ସମତଳ ଅଞ୍ଚଳ ସହ ସଂଯୁକ୍ତ ଥିଲା । ଅଧିକନ୍ତୁ ଆକାଶପଥରେ ସୈନ୍ୟ ଓ ଯୁଦ୍ଧ-ସରଞ୍ଜାମ ଯୋଗାଣରେ ବ୍ରିଟିଶ ଫୌଜର ସମସ୍ତ ସୁବିଧା ଥିଲା । ଅପରପକ୍ଷରେ ଜାତୀୟ ବାହିନୀ ସଂପୂର୍ଣ୍ଣ ନିର୍ଭରକରୁଥିବା ଆସାମ- ବର୍ମା ରାଜପଥ ଜଳପୂର୍ଣ୍ଣ ହୋଇଯାଇଥିଲା ଏବଂ ଜାପାନ ବିମାନବାହିନୀରୁ ସାହାଯ୍ୟ ମିଳିବା ଆଶା ମଧ୍ୟ କ୍ରମେ କ୍ଷୀଣହୋଇଯାଇଥିଲା ।

ଜାତୀୟ ବାହିନୀ ଉତ୍କଟ ଖାଦ୍ୟାଭାବର ସମ୍ମୁଖୀନ ହେଲା । ଗଛପତ୍ର ଓ ଫଳ ଏବଂ ବର୍ଷାଜଳ ହେଲା ସେମାନଙ୍କର ଆହାର । ଆସାମ ଜଙ୍ଗଲର ବିଷାକ୍ତ ମଶା, ଡାଆଁଶ ଓ କଲେରା, ଡିସେଣ୍ଟ୍ରି ଓ ମ୍ୟାଲେରିଆର ସେମାନେ ହେଲେ ଶିକାର । ତଥାପି ଭାଙ୍ଗିପଡ଼ିନଥିଲେ ସେମାନେ । ଯେଉଁ ଅପୂର୍ବ ସାହସ, ବୀରତ୍ୱ ଏବଂ ଅନନ୍ୟ ନିଷ୍ଠା ସହକାରେ ଆଙ୍ଗ୍ଲୋ-ଆମେରିକାନ୍ ମିଳିତ ଫୌଜର ସମ୍ମୁଖୀନ ହେଲେ, ତାହାର ପଟାନ୍ତର ନାହିଁ ବିଶ୍ୱର ଯୁଦ୍ଧ ଇତିହାସରେ । ଚରମ ବିଜୟର ମାତ୍ର କେଇ ଇଞ୍ଚ ଦୂରରେ ସେମାନେ କରୁଥିଲେ ଯୁଦ୍ଧ । ମଇରାଙ୍ଗର ପତନ ହୋଇଥିଲା । କୋହିମା ଦୁର୍ଗ ସେମାନଙ୍କର ଅଧିକାରରେ ଥିଲା । ଇମ୍ଫାଲ ଯିବା ଉପରେ ଥିଲା । ଦିଲ୍ଲୀ ଆଉ ବା କେତେ ଦୂରରେ ?

''ଯଦି ଇମ୍ଫାଲ ଦଖଲ ହୋଇଥାନ୍ତା, ବଙ୍ଗଳା ଓ ଆସାମର ଅଭ୍ୟନ୍ତରକୁ ଜାତୀୟ ବାହିନୀର ବିଜୟ ଅଭିଯାନକୁ ରୋକିବାକୁ କେହି ସମର୍ଥ ହୋଇନଥାନ୍ତା । ସାରା ଭାରତର ଲୋକ ଗୋଟାଏ ମଣିଷ ଭଳି ଛିଡ଼ାହୋଇଯାଇଥାନ୍ତେ ଓ ଦିଲ୍ଲୀ ଅଭିଯାନ ପାଇଁ ପଥ ପରିଷ୍କାର ହୋଇଯାଇଥାନ୍ତା ।''(1)

1.S.A.Ayer - The Story of the INA, Pg. 60

ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମୀ ଯେତେବେଳେ ଏହି ପ୍ରତିକୂଳ ପରିସ୍ଥିତିରେ ବ୍ରିଟିଶ ଓ ଆମେରିକା ଭଳି ପୃଥିବୀର ଦୁଇ ମହାଶକ୍ତିଶାଳୀ ସାମରିକ ଶକ୍ତି ବିରୁଦ୍ଧରେ ଜୀବନ-ମରଣ ସଂଗ୍ରାମରେ ବ୍ୟାପୃତ ଥିଲା, ସେତେବେଳେ ଗାନ୍ଧିଜୀ ଓ ତାଙ୍କର ସହକର୍ମୀମାନେ କ'ଣକରୁଥିଲେ— ଏ ପ୍ରଶ୍ନ ଉଠିବା ଏକାନ୍ତ ସ୍ୱାଭାବିକ । ବ୍ରିଟିଶ ସରକାର ଯେଉଁ ରାଜନୈତିକ ଅଭିସନ୍ଧି ପୋଷଣ କରି ଗାନ୍ଧିଜୀ ଓ ନେତାମାନଙ୍କୁ ଜେଲରୁ ଖଲାସ କରିଥିଲା, ସେ ଅଭିସନ୍ଧି ସଂପୂର୍ଣ୍ଣ ସଫଳ ହେବାକୁ ଯାଉଥିଲା । ଜେଲରୁ ମଇ ମାସରେ ଖଲାସ ହେବା ସଙ୍ଗେ ସଙ୍ଗେ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ସହ 'ପାକିସ୍ଥାନ ପ୍ରସ୍ତାବ ଓ ସ୍ୱାଧୀନତା' ସମ୍ପର୍କରେ କଥାବାର୍ତ୍ତା ଆରମ୍ଭକରିଦେଲେ । ଏହା ଏକ ନିରର୍ଥକ ଆଲୋଚନା ବୋଲି ଗାନ୍ଧିଜୀ ବୁଝିବା ଉଚିତ୍ ଥିଲା; କାରଣ କଂଗ୍ରେସ ଓ ଜିନ୍ନାଙ୍କର ଦୃଷ୍ଟିକୋଣ ପରସ୍ପରବିରୋଧୀ ଥିଲା । ଗାନ୍ଧିଜୀ କହୁଥିଲେ, ''ଆଗେ ସ୍ୱାଧୀନତା ଆସୁ, ତା' ପରେ ବିଭାଜନ କଥା ଚିନ୍ତା କରାଯିବ'।'' ଜିନ୍ନା କହୁଥିଲେ, ''ସ୍ୱାଧୀନତା କଥା ଯାହା ହେଉଛି ହେଉ, ଆଗେ ଆମକୁ 'ପାକିସ୍ଥାନ' ଦିଆଯାଉ ।'' ବ୍ରିଟିଶ ସରକାରଙ୍କୁ ଏହି ଅବସ୍ଥାଟା ସୁହାଉଥିଲା; କାରଣ 'ପାକିସ୍ଥାନ' କଥାଟାର ସ୍ରଷ୍ଟା ଓ ପୃଷ୍ଠପୋଷକ ହେଉଛି ବ୍ରିଟିଶ । ବ୍ରିଟିଶର 'ଦୁଇଜାତି ନୀତି' (Divid and rule) '' ଦୁଇଭାଗ କର ଓ ରାଜତ୍ୱ ଚଳାଇଯାଅ'' ନୀତିରୁହିଁ ପାକିସ୍ଥାନ ସୃଷ୍ଟି । ସେମାନେ କହୁଥିଲେ ''କଂଗ୍ରେସ ଓ ମୁସ୍‌ଲିମ ଲିଗ୍ ଏକମତ ନ ହେଲେ ସ୍ୱାଧୀନତା ଆମେ କାହାକୁ ଦେବୁ ?'' ତେଣେ ଜିନ୍ନାଙ୍କୁ ଏମିତି ମତେଇରଖିଥିଲେ ଯେ, କଂଗ୍ରେସ ସହ ଏକମତ ହେବାର ବାଟ ନାହିଁ । ଏ ପରିସ୍ଥିତିରେ ଗାନ୍ଧିଜୀ ତଥା କଂଗ୍ରେସର ଉଚିତ ଥିଲା ଯୁଦ୍ଧ ଯେଉଁ ପରିସ୍ଥିତି ସୃଷ୍ଟି କରିଛି, ବିଶେଷତଃ ତା'ର ସୁଯୋଗ ନେଇ ଆଜାଦ ହିନ୍ଦ୍ ଫୌଜ ଯେଉଁ ସଶସ୍ତ୍ର ଅଭିଯାନ ଆରମ୍ଭକରିଛି, ତାକୁ ସବୁମତେ ସାହାଯ୍ୟ କରି ସାଫଲ୍ୟମଣ୍ଡିତ କରିବା ।

କିନ୍ତୁ କେତେକ କଂଗ୍ରେସ ନେତାଙ୍କର ନେତାଜୀଙ୍କ ପ୍ରତି ଈର୍ଷା ଓ ସତକୁ ସତ ଯଦି ନେତାଜୀ ତାଙ୍କର ଅଭିଯାନରେ ଜୟଯୁକ୍ତ ହୋଇ ଭାରତବର୍ଷର ରାଜନୈତିକ ରଙ୍ଗମଞ୍ଚରେ ଉପସ୍ଥିତ ହୁଅନ୍ତି, ସେମାନେ ଜନତାର ବିରୋଧ ଓ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବେ ବୋଲି ଆଶଙ୍କା କରି 'ଜାତୀୟ ବାହିନୀ'ର ଅଗ୍ରଗତିକୁ ପସନ୍ଦ କରୁନଥିଲେ; ବରଂ ବିରୋଧକରୁଥିଲେ । କିନ୍ତୁ ନେତାଜୀଙ୍କର ସେତେବେଳେ ମଧ୍ୟ ଗାନ୍ଧିଜୀଙ୍କ ପ୍ରତି ଅକୃତ୍ରିମ ବିଶ୍ୱାସ, ସମ୍ମାନ ଓ କିଛିଟା ଭରସା ରହିଥିଲା । ସେଥିପାଇଁ ଜୁଲାଇ ୪ ତାରିଖ ୧୯୪୪ରେ ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ସେ ରେଙ୍ଗୁନ ଆଜାଦ ହିନ୍ଦ୍ ରେଡ଼ିଓରେ ଏକ ଭାଷଣ ଦେଇ କହିଲେ – ''ପୂଜ୍ୟ ବାପୁଜୀ, ଶ୍ରୀମତୀ କସ୍ତୁରବା'ଙ୍କର ବିୟୋଗ ପରେ ସମଗ୍ର ଦେଶବାସୀ ଆପଣଙ୍କର ସ୍ୱାସ୍ଥ୍ୟ ପାଇଁ ଚିନ୍ତିତ ହୋଇପଡ଼ିଥିଲେ । ଆପଣଙ୍କ ଉତ୍ତମ ସ୍ୱାସ୍ଥ୍ୟ ଏବଂ ଦୀର୍ଘଜୀବନ ସବୁ ଭାରତୀୟଙ୍କର ଏକମାତ୍ର କାମନା । ସ୍ୱାଧୀନତା ସଂଗ୍ରାମର ନୀତି ନେଇ ଯେଉଁ ମତଭେଦ ରହିଅଛି ତାହା ଏକ ପାରିବାରିକ ମତଭେଦ ବୋଲି ପ୍ରବାସୀ ଭାରତୀୟମାନେ ମନେକରନ୍ତି । ୧୯୩୦ରେ ଲାହୋର କଂଗ୍ରେସରେ ଆପଣଙ୍କ ଦ୍ୱାରା 'ପୂର୍ଣ୍ଣ ସ୍ୱରାଜ' ପ୍ରସ୍ତାବ ଆଗତ ହେବା ପରେ କଂଗ୍ରେସର ସମସ୍ତ ସଭ୍ୟଙ୍କର ତାହା ତ

ଏକମାତ୍ର ଲକ୍ଷ୍ୟଭାବେ ଗ୍ରହଣକରାଯାଉଅଛି । ଆପଣଙ୍କୁ ପ୍ରବାସୀ ଭାରତୀୟଗଣ ବର୍ତ୍ତମାନର ଜାତୀୟ ଚେତନାର ଏକମାତ୍ର ସ୍ରଷ୍ଟା ବୋଲି ବିଚାର କରନ୍ତି । ପ୍ରବାସରେ ଥିବା ଦେଶପ୍ରେମୀ ଭାରତୀୟଗଣ ବା ଭାରତ ସ୍ୱାଧୀନତାର ବିଦେଶୀ ସମର୍ଥକମାନଙ୍କର ଆପଣଙ୍କ ପ୍ରତି ଥିବା ସମ୍ମାନ ୧୯୪୨ 'ଭାରତ ଛାଡ଼' ପ୍ରସ୍ତାବ ପରେ ଶହେଗୁଣ ବଢ଼ିଯାଇଛି ।

''ବ୍ରିଟିଶ ଅଧିବାସୀ ଓ ବ୍ରିଟିଶ ସରକାର ଭିତରେ କୌଣସି ପାର୍ଥକ୍ୟ ଅଛି ବୋଲି ଆପଣ ବିଚାରକଲେ ତାହା ମସ୍ତବଡ଼ ଭୁଲ ହେବ । ଏଥିରେ ଅବଶ୍ୟ କୌଣସି ସନ୍ଦେହ ନାହିଁ ଯେ, ଇଂଲଣ୍ଡ ଓ ଆମେରିକାରେ କେତେକ ଆଦର୍ଶବାଦୀ ଅଛନ୍ତି, ଯେଉଁମାନେ କି ଭାରତବର୍ଷର ସ୍ୱାଧୀନତାକୁ ସମର୍ଥନକରନ୍ତି । କିନ୍ତୁ ଏହି ଆଦର୍ଶବାଦୀମାନଙ୍କୁ ସ୍ୱ-ସ୍ୱ ଦେଶରେ ପାଗଳ ବୋଲି ମନେକରାଯାଏ ଏବଂ ସେମାନଙ୍କର ସଂଖ୍ୟା ମଧ ଖୁବ୍ କମ୍ । ଭାରତ ଯେତେଦୂର ସଂପୃକ୍ତ, ବାସ୍ତବତାଦୃଷ୍ଟିରୁ ବ୍ରିଟିଶ ଅଧିବାସୀ ଓ ବ୍ରିଟିଶ ସରକାର ଭିତରେ କୌଣସି ପାର୍ଥକ୍ୟ ନାହିଁ । ଆମେରିକାର ଯୁଦ୍ଧ ଲକ୍ଷ୍ୟ ସମ୍ପର୍କରେ ମୁଁ କହିପାରେ ଯେ, ଆମେରିକାର ଶାସକମାନେ ସମଗ୍ର ବିଶ୍ୱରେ ପ୍ରଭୁତ୍ୱ ଚାହାନ୍ତି । ସେଠାରେ ଶାସକ ଓ ବୁଦ୍ଧିଜୀବୀମାନେ 'ଆମେରିକା ଶତାବ୍ଦୀ' କଥା ଖୋଲାଖୋଲି କହିଲେଣି । ଶାସକବର୍ଗ ଭିତରେ କେତେକ ଚରମପନ୍ଥୀ ଅଛନ୍ତି, ଯେଉଁମାନେ ବ୍ରିଟେନ୍‌କୁ ଆମେରିକାର ୪୯ତମ ରାଜ୍ୟ ବୋଲି କହିବା ପର୍ଯ୍ୟନ୍ତ ଗଲେଣି ।

''ମୁଁ ଆପଣଙ୍କୁ ଦୃଢ଼ତାସହକାରେ କହୁଅଛି ଯେ, ମୁଁ ବର୍ତ୍ତମାନର ବିପଦପୂର୍ଣ୍ଣ ଅଭିଯାନ ଆରମ୍ଭକରିବାପୂର୍ବରୁ ସପ୍ତାହ-ସପ୍ତାହ, ମାସ-ମାସ ଧରି ଏହାର ଭଲ- ମନ୍ଦ ଦିଗ ବିଷୟରେ ଯତ୍ନସହକାରେ ଚିନ୍ତାକରୁଅଛି । ମୋର ସାଧ୍ୟମତେ ଦୀର୍ଘ ଦିନ ଧରି ଦେଶବାସୀଙ୍କର ସେବା କରିବା ପରେ ଜଣେ ବିଶ୍ୱାସଘାତକ ହେବାକୁ କିମ୍ବା ମୋତେ ଏହିଭଳି ଭାବିବାକୁ ସୁଦ୍ଧା ସୁଯୋଗ ଦେବାକୁ ମୁଁ କଦାପି ଇଚ୍ଛାକରିନପାରେ ।

''ଜଣେ ଭାରତୀୟ ଯେଉଁ ସର୍ବୋଚ୍ଚ ସମ୍ମାନଜନକ ଆସନ ଲାଭକରିପାରେ ସେହି ଆସନରେ ମୋତେ ଅଧିଷ୍ଠିତ କରିଥିବାରୁ ମୁଁ ସେମାନଙ୍କର ଉଦାରତା ଓ ସ୍ନେହକୁ ଶତଧନ୍ୟବାଦ ଜଣାଉଅଛି । ନିଷ୍ଠାପର ଦେଶପ୍ରେମୀମାନଙ୍କର ଯେଉଁ ଦଳଟି ମୁଁ ଗଠନକରିଅଛି, ସେମାନଙ୍କର ମୋ' ଉପରେ ଅଗାଧ ବିଶ୍ୱାସ ରହିଅଛି ।

''ଏକ ବିପଜ୍ଜନକ ଅଭିଯାନର ଉଦ୍ୟମ କରି ମୁଁ ଯେ କେବଳ ମୋର ଜୀବନ ବା ଭବିଷ୍ୟତ୍‌କୁ ବାଜିରଖିଛି ସେତିକି ନୁହେଁ; ମୋର ଦଳର କ୍ଷତି ଲାଭ ମଧ ଏଥିରେ ଜଡ଼ିତ । ବିଦେଶ ଭୂଇଁରୁ ଉଦ୍ୟମ ବିନା ଯଦି ଭାରତର ସ୍ୱାଧୀନତା ମିଳିବାର ସାମାନ୍ୟ ଆଶା ମୁଁ ଦେଖିଥାନ୍ତି, ତେବେ ମୁଁ ଏହି ବିପଜ୍ଜନକ ଅଭିଯାନରେ କଦାପି ହାତ ଦେଇ ନଥାନ୍ତି କିମ୍ବା ସେହି ବିପଜ୍ଜନକ ମୁହୂର୍ତ୍ତରେ ଦେଶ ତ୍ୟାଗ କରି ନଥାନ୍ତି । ସ୍ୱାଧୀନତା- ପ୍ରାପ୍ତି ପାଇଁ ବର୍ତ୍ତମାନର ଯୁଦ୍ଧକାଳ ଭିତରେ ଯେଉଁ ସୁବର୍ଣ୍ଣ ସୁଯୋଗ ଆସିଛି, ସେଭଳି ସୁଯୋଗ ଆମ ଜୀବଦ୍ଦଶାରେ ଆଉ ଥରେ ଆସିବ ବୋଲି ଯଦି ମୋର ସାମାନ୍ୟତମ ଆଶା ଥାଆନ୍ତା, ମୁଁ ଗୃହତ୍ୟାଗ କରିନଥାନ୍ତି ।

''ଅକ୍ଷ-ଶକ୍ତି ସମ୍ପର୍କରେ ଉଠୁଥିବା ଗୋଟିଏ ପ୍ରଶ୍ନର ଉତ୍ତର ମୋତେ ଦେବାକୁ ହେବ । ଏହା କ'ଣ ସମ୍ଭବ ହୋଇପାରେ ଯେ, ସେମାନେ ମୋତେ ଠକାଇଦେଇଛନ୍ତି ? ଏହା ବିଶ୍ୱବାସୀ ଜାଣନ୍ତି ଯେ, ଇଂରେଜମାନେ ସର୍ବାଧିକ ଧୂର୍ତ୍ତ ଓ ଚତୁର ରାଜନୀତିଜ୍ଞ । ଯେ ଜୀବନସାରା ଇଂରେଜମାନଙ୍କ ସହ କାର୍ଯ୍ୟ କରି ଆସିଲା ଓ ଲଢ଼ି ଆସିଲା; ତାକୁ ପୃଥିବୀର ଆଉ କିଏବା ପ୍ରତାରିତ କରିପାରିବ ? ଯଦି ଇଂରେଜମାନେ ମୋତେ ପ୍ରତାରିତ କରିନପାରିଲେ, ଆଉ କେହି ରାଜନୀତିଜ୍ଞ ସେଥିରେ ସଫଳକାମ ହୋଇପାରିବେ ନାହିଁ ।

''ଗୋଟାଏ ସମୟ ଥିଲା, ଯେତେବେଳେ ଜାପାନ ଆମର ଶତ୍ରୁର ବନ୍ଧୁ ଥିଲା । ବ୍ରିଟେନର ଜାପାନ ସହ ବନ୍ଧୁତା ଥିବା ପର୍ଯ୍ୟନ୍ତ ମୁଁ ଜାପାନ ଆସିନଥିଲି । ସେ ଦୁଇ ଦେଶ ଭିତରେ କୂଟନୈତିକ ସମ୍ପର୍କ ଥିବା ପର୍ଯ୍ୟନ୍ତ ମୁଁ ଜାପାନ ଆସି ନଥିଲି । ଜାପାନ ଯେତେବେଳେ ବ୍ରିଟେନ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା, ଯାହା କି ଜାପାନ ଇତିହାସରେ ଏକ ସ୍ମରଣୀୟ ଘଟଣା— ସେତେବେଳେ ଯାଇ ମୁଁ ମୋ' ନିଜ ଇଚ୍ଛାରେ ଜାପାନ ଆସିଲି । ଅନ୍ୟାନ୍ୟ ଭାରତୀୟଙ୍କ ଭଳି ୧୯୩୭-୧୯୩୮ରେ ମୋର ସହାନୁଭୂତି ଚୁକିଂ ପାଇଁ ରହିଥିଲା । ଆପଣଙ୍କର ସ୍ମରଣ ଥିବ, ମୁଁ କଂଗ୍ରେସ ସଭାପତି ଥିବାବେଳେ ୧୯୩୮ ମସିହା ଡିସେମ୍ବର ମାସରେ ଚୁକିଂକୁ ଡାକ୍ତରଦଳ ପଠାଇଥିଲି ।

''ଆମେ ଏଠାରେ ଯେଉଁ ଆଜାଦ ହିନ୍ଦ୍ ସରକାର ଗଠନକରିଅଛୁଁ, ସେ ସମ୍ପର୍କରେ କିଛି କହିବା ଆବଶ୍ୟକ ମନେକରୁଅଛି । ଏହାର ଏକମାତ୍ର ଉଦ୍ଦେଶ୍ୟ ହେଉଛି, ଏକ ସଶସ୍ତ୍ର ସଂଗ୍ରାମ କରିଆରେ ଭାରତର ସ୍ୱାଧୀନତା ଅର୍ଜନ କରିବା । ଭାରତରୁ ଶତ୍ରୁମାନେ ବିତାଡ଼ିତ ହୋଇଯିବା ସଙ୍ଗେ ସଙ୍ଗେ ଏବଂ ଶାନ୍ତି ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଏହାର କାର୍ଯ୍ୟ ଶେଷହୋଇଯିବ । ଆମର ଉଦ୍ୟମ, ଆମର ନିର୍ଯାତନା ଓ ଆମର ତ୍ୟାଗର ଏକମାତ୍ର ପୁରସ୍କାର ସ୍ୱରୂପ ଆମେ ଚାହୁଁ ଭାରତରେ ସ୍ୱାଧୀନତା । ଦେଶ ସ୍ୱାଧୀନ ହେବା ମାତ୍ରେ ରାଜନୀତିରୁ ଅବସର ନେବା ଆମ ଭିତରୁ ଅନେକଙ୍କର ଅଭିଳାଷ ଅଟେ । ଆମର ଦେଶବାସୀ ସେମାନଙ୍କ ଉଦ୍ୟମ ଫଳରେ କିମ୍ବା ଆପଣଙ୍କର 'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହେବା ଫଳରେ ଯଦି ଦୈବାତ୍ ସ୍ୱାଧୀନତା ପାଆନ୍ତି, ତେବେ ସେଥିପାଇଁ ମୋ ଅପେକ୍ଷା ଅନ୍ୟ କେହି ଅଧିକ ଖୁସି ହେବ ନାହିଁ । ଯାହା ହେଉ, ଏଭଳି କିଛି ହେବାର ସମ୍ଭାବନା ନାହିଁ ଓ ଏକ ସଶସ୍ତ୍ର ସଂଗ୍ରାମ ଅବଶ୍ୟମ୍ଭାବୀ ବୋଲି ଆମର ଦୃଢ଼ବିଶ୍ୱାସ । ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଯାଇଛି । ଆଜାଦ ହିନ୍ଦ୍ ଫୌଜର ବୀର ଜବାନମାନ ବର୍ତ୍ତମାନ ଭାରତ-ମାଟିରେ ଲଢୁଅଛନ୍ତି ଏବଂ ଘୋର ଅଭାବ, ଅନଟନ ଓ ଅସୁବିଧା ସତ୍ତ୍ୱେ ଧୀରେ ଅଥଚ ଦୃଢ଼ତାସହକାରେ ଆଗେଇଅଛନ୍ତି । ଶେଷ ବ୍ରିଟିଶ ଲୋକ ଭାରତରୁ ନିକ୍ଷିପ୍ତ ନହେବା ପର୍ଯ୍ୟନ୍ତ ଏବଂ ଆମର ତ୍ରିରଙ୍ଗା ଜାତୀୟପତାକା ନୂଆଦିଲ୍ଲୀର ବଡ଼ଲାଟ୍ ଭବନରେ ଉଡ୍ଡୀନ ନହେବା ପର୍ଯ୍ୟନ୍ତ ଏହି ସଶସ୍ତ୍ର ଯୁଦ୍ଧ ଚାଲୁରହିବ ।

''ହେ ଜାତିର ପିତା, ଭାରତର ଏହି ପବିତ୍ର ମୁକ୍ତି-ସଂଗ୍ରାମରେ ଆମ୍ଭେମାନେ ଆପଣଙ୍କର ଆଶୀର୍ବାଦ ଓ ଶୁଭେଚ୍ଛା ଭିକ୍ଷାକରୁଅଛୁଁ ।''

ଅତୀତରେ ବହୁ ନିଷ୍ଫଳ ନିବେଦନ ଭଳି ନେତାଜୀଙ୍କର ଏହି ନିବେଦନ ମଧ୍ୟ ଗାନ୍ଧିଜୀଙ୍କ ଉପରେ କୌଣସି ପ୍ରଭାବ ପକାଇଥିବାର ପ୍ରମାଣ ନାହିଁ; ପଡ଼ିଥିଲେ ସେ ଦେଶବାସୀଙ୍କୁ 'ଜାତୀୟ ବାହିନୀ'କୁ ସମର୍ଥନ କରିବାକୁ ଡାକରାଦେଇପାରିଥାନ୍ତେ ଏବଂ ଭାରତ ଇତିହାସର ଗତି ଅନ୍ୟ ରୂପରେ ପ୍ରକଟିତ ହୋଇଥାନ୍ତା ।

ଆଜାଦ ହିନ୍ଦ୍ ରେଡିଓରୁ ସମ୍ବାଦ ସଂଗ୍ରହ କରି କଲିକତା ସହରରେ ପ୍ରଚାର କରୁଥିବା ବିପ୍ଳବୀ ଦଳଟିକୁ ଧରିବାକୁ ଦୀର୍ଘଦିନ ହେବ ପୋଲିସ ଯେଉଁ ଉଦ୍ୟମ କରିଥିଲା ତାହା ସଫଳ ହେଲା ଜୁଲାଇ ୨୨ ତାରିଖରେ । ପୋଲିସ ଖବର ପାଇଲା ଯେ, କଲିକତାର ୪୬ ନମ୍ବର ଶିବଠାକୁର ଲେନ୍‌ରେ ଏହିଭଳି ଏକ ଗୋପନ ପ୍ରଚାର କେନ୍ଦ୍ର ରହିଅଛି ଏବଂ ଘେରାଉହେଲା ତିନିମହଲା କୋଠା । ପ୍ରଚାରର ମୁଖ୍ୟ ଦାୟିତ୍ୱ ଥିଲା ବିପ୍ଳବୀ ଗୋପାଳଚନ୍ଦ୍ର ସେନ୍‌ଙ୍କ ଉପରେ । ପୋଲସ ଆସିବା ଖବର ପାଇ ଗୋପାଳ ଅନନ୍ୟୋପାୟ ହୋଇ ସବୁ ରେକର୍ଡ଼ପତ୍ର ପୋଡ଼ିଦେଲେ ଏବଂ ତାଙ୍କୁ ପୋଲିସ ଆରେଷ୍ଟ କରିବା ପୂର୍ବରୁ ସେ ସେହି ତିନିମହଲା କୋଠାଉପରୁ ଲମ୍ଫ ପ୍ରଦାନକଲେ ଏବଂ ସଙ୍ଗେ ସଙ୍ଗେ ତାଙ୍କର ମୃତ୍ୟୁହୋଇଥିଲା । ଅନ୍ୟ ଏକ ବିବରଣୀ ଅନୁସାରେ ଜଣେ ପୋଲିସ କନେଷ୍ଟବଳ ଗୋପାଳଙ୍କୁ କୋଠା ଉପରୁ ତଳକୁ ନିକ୍ଷେପ କରି ଦେଇଥିଲା ଏବଂ ସେ ସଙ୍ଗେ ସଙ୍ଗେ ମୃତ୍ୟୁବରଣ କରିଥିଲେ । ଗୋପାଳ ସେନଙ୍କର ଦେହରକ୍ଷା ପରେ ଆଜାଦ ହିନ୍ଦ୍ ଫୌଜର ଅଗ୍ରଗତି ସମ୍ପର୍କରେ ସଠିକ ସମ୍ବାଦ ମିଳିବା କଷ୍ଟକର ହୋଇପଡ଼ିଲା । ଇମ୍ଫାଲ ରଣକ୍ଷେତ୍ରରେ ଏକ ଦିଗରେ ନିରବଚ୍ଛିନ୍ନ ବର୍ଷା, ଜଳପ୍ଳାବନ ଓ ଦୁର୍ଗମ ସରବରାହ ପଥ ଓ ଯୁଦ୍ଧ ସରଞ୍ଜାମ ଅଭାବ ଏବଂ ଅନ୍ୟ ଦିଗରେ ବ୍ରିଟିଶ-ଆମେରିକାର ମିଳିତ ଓ ଦ୍ରୁତ ବର୍ଦ୍ଧମାନ ସାମରିକ ସରଞ୍ଜାମ ଓ ବୋମାବର୍ଷୀ ଯୁଦ୍ଧବିମାନ ଯୋଗାଣ ଜାତୀୟ ବାହିନୀକୁ ଏକ ପ୍ରତିକୂଳ ପରିସ୍ଥିତିରେ ପକାଇ- ଦେଲା । ନେତାଜୀ ଅନୁଭବ କଲେ ଯେ, ଅନୁକୂଳ ପରିସ୍ଥିତି ନ ଆସିବାଯାଏ ଇମ୍ଫାଲ ଅବରୋଧକୁ ଚାଲୁରଖିବା ସାମରିକ ବୁଦ୍ଧିମତ୍ତା ହେବନାହିଁ । ସେହି ଦୃଷ୍ଟିରୁ ଜୁନ ୨୬ ତାରିଖରେ ଇମ୍ଫାଲ ଅବରୋଧ ଉଠାଇନିଆଗଲା । ଏହି ପାଞ୍ଚ ମାସର ଘୋର ଯୁଦ୍ଧ ସମ୍ପର୍କରେ ବର୍ଣ୍ଣନା ଅଛି ଯେ, ''ଏହି ପାଞ୍ଚ ମାସର ଭୟାବହ ଯୁଦ୍ଧ ପ୍ରଦର୍ଶନ କରି ଆଇ. ଏନ. ଏ. ତା'ର ଉତ୍କୃଷ୍ଟ ଯୁଦ୍ଧକୌଶଳ, ଚିରସ୍ମରଣୀୟ ସାହସ ଓ କର୍ତ୍ତବ୍ୟ- ନିଷ୍ଠାର ପ୍ରମାଣ ରଖିଯାଇଅଛି ।''

ଅଗଷ୍ଟ ୧୪ ତାରିଖରେ ନେତାଜୀ ସୈନ୍ୟବାହିନୀ ପ୍ରତି ଏକ ନିର୍ଦ୍ଦେଶନାମା (Special order of the day)ରେ କହିଲେ, ''ଶତାବ୍ଦୀଧରି ଭାରତକୁ ନିର୍ମମ ଭାବରେ ଶୋଷଣ କରି ଏବଂ ସେମାନଙ୍କ ପାଇଁ ଯୁଦ୍ଧ କରିବାକୁ ବିଦେଶରୁ ବହୁସଂଖ୍ୟକ ସୈନ୍ୟ ଆଣି ଇଂରେଜମାନେ ଆମ୍ଭମାନଙ୍କ ବିରୁଦ୍ଧରେ ଅଧିକ ଶକ୍ତିଶାଳୀ ସୈନ୍ୟବାହିନୀ ପ୍ରୟୋଗ କରିବାକୁ ସମର୍ଥ ହୋଇଅଛନ୍ତି । ଭାରତ-ବର୍ମା ସୀମାନ୍ତ ଅତିକ୍ରମ କରି ଆମ୍ଭେମାନେ ଆମ ଅପେକ୍ଷା ଅଧିକ ସଂଖ୍ୟକ ଓ ଅଧିକ ସଶସ୍ତ୍ର କିନ୍ତୁ ବିଭେଦଗ୍ରସ୍ତ ସୈନ୍ୟବାହିନୀର ସମ୍ମୁଖୀନ ହୋଇଥିଲେ ଏବଂ ପ୍ରତ୍ୟେକ ଯୁଦ୍ଧକ୍ଷେତ୍ରରେ ସେମାନଙ୍କୁ ପରାଜିତ କରିବାକୁ ସମର୍ଥ ହୋଇଥିଲେ । ଆମର ସୈନ୍ୟବାହିନୀ ସେମାନଙ୍କର ଉତ୍କୃଷ୍ଟତର ଟ୍ରେନିଂ ଓ ଶୃଙ୍ଖଳାଜ୍ଞାନ ଏବଂ 'କର ବା ମର'

ଆଦର୍ଶ ପ୍ରତି ଅକୁଣ୍ଠ ନିଷ୍ଠା ଯୋଗୁଁ ଅନତିବିଳମ୍ବେ ଶତ୍ରୁ ପକ୍ଷ ଉପରେ ସେମାନଙ୍କର କର୍ତ୍ତୃତ୍ୱ ପ୍ରତିଷ୍ଠା କରିପାରିଛନ୍ତି । ଘୋର ଅସୁବିଧାଜନକ ପରିସ୍ଥିତିରେ ଯୁଦ୍ଧ କରି ସାମରିକ ଅଫିସର ଓ ସୈନ୍ୟଗଣ ଏଭଳି ସାହସିକତା ଓ ବୀରତ୍ୱ ପ୍ରଦର୍ଶନ କରିଅଛନ୍ତି ଯେ, ତାହା ସମସ୍ତଙ୍କର ପ୍ରଶଂସନୀୟ ହୋଇପାରିଛି । ନିଜର ରକ୍ତଦାନ କରି ସେହି ବୀରମାନେ ଏଭଳି ମହନୀୟ ପରମ୍ପରା ସୃଷ୍ଟିକରିଯାଇଛନ୍ତି, ଯାହାକୁ ଭାରତର ଭବିଷ୍ୟତ୍‌ର ସୈନ୍ୟମାନେ ସ୍ମରଣ କରିବେ । ଇମ୍ଫାଲ ଉପରେ ଶେଷ ଆକ୍ରମଣ କରିବାକୁ ସମସ୍ତ ପ୍ରସ୍ତୁତି ଶେଷହୋଇସାରିଥିଲା । କିନ୍ତୁ ନିରବଚ୍ଛିନ୍ନ ଓ ମୂଷଳଧାରା ବୃଷ୍ଟି ଯୋଗୁଁ ଇମ୍ଫାଲକୁ ଅଧିକାର କରିବା ଅସମ୍ଭବ ହୋଇପଡ଼ିଲା । ଏହି ସବୁ ଅସୁବିଧାଦୃଷ୍ଟିରୁ ଆମ୍ଭେମାନେ ଆକ୍ରମଣରୁ ବିରତ ହେବା ପାଇଁ ବିଚାର କରାଯାଇଅଛି । ଆଉ ଏକ ଅନୁକୂଳ ପରିସ୍ଥିତିରେ ଆକ୍ରମଣର ପ୍ରସ୍ତୁତି ପାଇଁ ଆମ୍ଭମାନଙ୍କୁ ଏହି ଯୁଦ୍ଧ ବିରତି ସମୟର ଉପଯୋଗ କରିବାକୁ ପଡ଼ିବ ଏବଂ ପାଗ ଓ ଆବହାଓ୍ୱା ଅନୁକୂଳ ହେଲେ ଆମେ ପୁନର୍ବାର ଆକ୍ରମଣ ଆରମ୍ଭ କରିବା । ବିଭିନ୍ନ ଯୁଦ୍ଧଘାଟିରେ ଶତ୍ରୁ ପକ୍ଷକୁ ବହୁବାର ପରାଜିତ କରିବାଫଳରେ ଆଙ୍ଗ୍ଲୋ- ଆମେରିକାନ୍ ବିରୁଦ୍ଧରେ ଚରମ ବିଜୟ ସମ୍ପର୍କରେ ଆମେ ନିଶ୍ଚିତ ହୋଇପାରିଛେଁ । ଆମର ସମର ପ୍ରସ୍ତୁତି ଶେଷହୋଇଯିବା ସଙ୍ଗେ ସଙ୍ଗେ ଆମ୍ଭେମାନେ ଶତ୍ରୁ ବିରୁଦ୍ଧରେ ଶେଷ ଚଢ଼ାଉ ଆରମ୍ଭକରିଦେବା । ଆମର ଉତ୍କୃଷ୍ଟତର ଯୁଦ୍ଧକୌଶଳ, ଅମିତ ବିକ୍ରମ ଓ କର୍ତ୍ତବ୍ୟ ପ୍ରତି ଅବିଚଳିତ ନିଷ୍ଠା ଫଳରେ ଆମର ଚରମ ବିଜୟ ସୁନିଶ୍ଚିତ ଅଟେ ।

''ଯେଉଁ ମହାନ୍ ଜୀବନଗୁଡ଼ିକ ଏହି ଅଭିଯାନରେ ଆତ୍ମ-ବିସର୍ଜନ କରିଅଛନ୍ତି, ଭାରତର ମୁକ୍ତି ଯୁଦ୍ଧର ଚରମ ପର୍ଯ୍ୟାୟରେ ସେମାନେ ଆମକୁ ଅଧିକ ତ୍ୟାଗ, ଅଧିକ ମହନୀୟ କୃତିତ୍ୱ, ବୀରତ୍ୱ ଓ ସାହସ ପ୍ରଦର୍ଶନ କରିବାକୁ ଉଦ୍‌ବୁଦ୍ଧ କରନ୍ତୁ ।''

**ଦୀପ ଲିଭିଗଲା –**

ଆଜାଦ ହିନ୍ଦ୍ ଫୌଜ ଯେତେବେଳେ ଭାରତ-ମାଟିରେ ଏହିଭଳି ଜୀବନମୂର୍ଚ୍ଛା ଲଢ଼େଇରେ ବ୍ୟାପୃତ ଥିଲା, ପ୍ରାୟ ଠିକ୍ ସେତିକିବେଳେ ଏହାର ସ୍ରଷ୍ଟା ମହାନାୟକ ରାସବିହାରୀ ଟୋକିଓର ଏକ ହାସପାତାଳରେ ରୋଗଶଯ୍ୟାରେ ଶାୟିତ । ଯେଉଁ ଦିନ ସେ ଫୌଜର ଦାୟିତ୍ୱ ନେତାଜୀଙ୍କ ହାତରେ ସମର୍ପଣ କରିଥିଲେ, ସେହି ଅବସରରେ ନେତାଜୀ ଯଥାର୍ଥରେ କହିଥିଲେ, ଗତ ସ୍ୱାଧୀନତା ଯୁଦ୍ଧରେ ନିଜ ଜୀବନକୁ ବିପନ୍ନକରି ସେ ଯେଉଁ ଅଲୌକିକ କୃତିତ୍ୱ ଅର୍ଜ୍ଜନ କରିଥିଲେ, ତାହା ଯେ କେବଳ ଆମର ସ୍ମୃତିରେ ଚିରଜାଗ୍ରତ ହୋଇ ରହିଅଛି ସେତିକ ନୁହେଁ, ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ରେକର୍ଡ଼ପତ୍ରରେ ମଧ ତାହା ଚିରଜାଜ୍ଜ୍ୱଲ୍ୟମାନ ।

ରାସବିହାରୀ ଆଜାଦ ହିନ୍ଦ୍ ସରକାରର ସର୍ବୋଚ୍ଚ ପରାମର୍ଶଦାତା (Supreme Adviser) ଦାୟିତ୍ୱରେ ଥାଇ କଠିନ ପରିଶ୍ରମ ଏବଂ ଜୀବନସାରା ବହୁ ବାଧାବିଘ୍ନ ଘାତ-ପ୍ରତିଘାତରେ କ୍ରମେ ଦୁର୍ବଳ ଓ ରୁଗ୍‌ଣ ହୋଇପଡ଼ିଲେ । ବିଶେଷତଃ ତାଙ୍କର ଚିରଶତ୍ରୁ ଡାଇବେଟିକ୍ସ ତାଙ୍କୁ ଶଯ୍ୟାଶାୟୀ କରିଦେଲା । ପତ୍ନୀବିୟୋଗ ପରେ ତାଙ୍କର ଏକମାତ୍ର

ପୁତ୍ର ମାସେହିତ୍ରୋର ଯୁଦ୍ଧରେ ମୃତ୍ୟୁ ମଧ୍ୟ ସେହି ସମୟର ଘଟଣା । ରାସବିହାରୀଙ୍କର ଏହି ଅସୁସ୍ଥତା ସମୟରେ ଜାପାନ ସମ୍ରାଟ୍ ତାଙ୍କୁ ସେ ଦେଶର ସର୍ବୋଚ୍ଚ ରାଷ୍ଟ୍ରୀୟ ସମ୍ମାନ 'Second Order of Meirt of the Rising Sun with Double Ray' ଉପାଧିରେ ଭୂଷିତକଲେ । କିନ୍ତୁ ବିଧିର ବିଡ଼ମ୍ବନା ଯେ, ଜାପାନ ସରକାରଙ୍କର ସର୍ବୋତ୍କୃଷ୍ଟ ଚିକିତ୍ସା ସତ୍ତ୍ୱେ ୧୯୪୫ ଜାନୁୟାରୀ ୨୧ ତାରିଖରେ ଆଜୀବନ ସଂଗ୍ରାମୀ ଭାରତର ସ୍ୱାଧୀନତା ସଂଗ୍ରାମର ସାଲିସହୀନ ସେନାପତି ମହାନାୟକ ରାସବିହାରୀ ଶେଷ ନିଶ୍ୱାସ ତ୍ୟାଗକଲେ । ସଶସ୍ତ୍ର ସଂଗ୍ରାମର ଏକ ଦେଦୀପ୍ୟମାନ ପ୍ରଦୀପ ନିର୍ବାପିତହେଲା ।

ରାସବିହାରୀଙ୍କର ପରଲୋକ ସମ୍ବାଦ ଆଜାଦ ହିନ୍ଦ୍ ଫୌଜର ଶିବିରରେ ପହଞ୍ଚିବା ସଙ୍ଗେ ସଙ୍ଗେ ଚାରିଆଡ଼େ ଶୋକୋଚ୍ଛ୍ୱାସ ଖେଳିଗଲା । ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ନେତାଜୀ କହିଲେ, ରାସବିହାରୀଙ୍କର ଦୁଃଖଦ ବିୟୋଗ କେବଳ ମୋର ଓ ମୋର ସହକର୍ମୀମାନଙ୍କ ପକ୍ଷରେ ଏକ ଅପୂରଣୀୟ କ୍ଷତି ନୁହେଁ, ଭାରତୀୟ ସ୍ୱାଧୀନତା ପକ୍ଷରେ ମଧ୍ୟ ଏକ ଗୁରୁତର କ୍ଷତି ।

ନିଜର ବାଲ୍ୟ-ସ୍ମୃତିକୁ ମନେପକାଇ ନେତାଜୀ କହିଲେ, ''ମୋର ଶୈଶବ- କାଳରେ ମୁଁ ଭାରତରେ ତାଙ୍କର ଦୁଃସାହସିକ ବୈପ୍ଳବିକ ଅଭିଯାନ କଥା ଶୁଣି ରୋମାଞ୍ଚ ଅନୁଭବ କରୁଥିଲି । ଆଜି ତିରିଶ ବର୍ଷ ପରେ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସି ତାଙ୍କର ହୃଦୟର ଜାଜ୍ଜ୍ୱଲ୍ୟମାନ ଦେଶପ୍ରେମରେ ମୁଁ ଉଦ୍‌ବୁଦ୍ଧ ହୋଇଯାଇଛି । ତାଙ୍କର ପରିଣତ ବୟସ କିମ୍ବା ଭଗ୍ନ ସ୍ୱାସ୍ଥ୍ୟ କେହି ତାଙ୍କର ସଂଗ୍ରାମୀ ହୃଦୟକୁ ଦବେଇ ଦେଇ ପାରିନଥିଲା । କବିଗୁରୁ ରବୀନ୍ଦ୍ରନାଥ ଜାପାନ ଗସ୍ତରୁ ଫେରି ଭାରତର ସ୍ୱାଧୀନତା ପାଇଁ ରାସବିହାରୀଙ୍କ ଐକାନ୍ତିକ ପ୍ରଚେଷ୍ଟାର କିଭଳି ଭୂୟସୀ ପ୍ରଶଂସା କରିଥିଲେ ତାହା ଉଲ୍ଲେଖ କରି ନେତାଜୀ ପୁଣି କହିଲେ, ରାସବିହାରୀଙ୍କୁ ଯଥାର୍ଥରେ ପୂର୍ବ-ଏସିୟାରେ ଭାରତର ସ୍ୱାଧୀନତା ସଂଗ୍ରାମର ଜନକ ବୋଲି କୁହାଯାଇଛି ଏବଂ ତାଙ୍କ ସମ୍ପର୍କରେ ଏହା ନିଃସନ୍ଦେହରେ କୁହାଯାଇପାରିବ ଯେ, ସେ ଭାରତର ସ୍ୱାଧୀନତା ପାଇଁ ବଞ୍ଚିଥିଲେ ଏବଂ ସେଥିପାଇଁ ପ୍ରାଣ ବିସର୍ଜନ କଲେ । ଶେଷରେ ନେତାଜୀ ଭାବଗଦ୍‌ଗଦ କଣ୍ଠରେ କହିଲେ, ''ରାସବିହାରୀ ଆଉ ନାହାନ୍ତି ସତ୍ୟ, କିନ୍ତୁ ତାଙ୍କର ଅଦମନୀୟ ଆତ୍ମଶକ୍ତି ଆମ ହୃଦୟରେ ଅମର ହୋଇ ରହିବ ଏବଂ ଭାରତମାଟିରୁ ଶେଷ ବ୍ରିଟିଶ ସୈନ୍ୟ ବିତାଡ଼ିତ ନହେବା ପର୍ଯ୍ୟନ୍ତ ଓ ତାଙ୍କ ଜୀବନର ସ୍ୱପ୍ନ ଭାରତର ସ୍ୱାଧୀନତା ହାସଲ ନହେବା ପର୍ଯ୍ୟନ୍ତ ତାହା ଆମ୍ଭମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ ।''

ରାସବିହାରୀଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଦିବସରେ ସର୍ବତ୍ର ଶୋକସଭା କରିବାକୁ ଭାରତୀୟ ସ୍ୱାଧୀନତା ସଂଘର ସମସ୍ତ ଶାଖାକୁ ନିର୍ଦ୍ଦେଶ ଦିଆଯାଇଥିଲା । ମହାମାନ୍ୟ ସୁଭାଷ ଚନ୍ଦ୍ର ବୋଷଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଶୋକସଭାରେ ଆଜାଦ ହିନ୍ଦ୍ ସରକାର ଏକ ଶୋକପ୍ରସ୍ତାବ ଗ୍ରହଣକରିଥିଲେ । ସେଥିରେ ଆଜାଦ ହିନ୍ଦ୍ ସରକାରଙ୍କର ସର୍ବୋଚ୍ଚ ପରାମର୍ଶଦାତା ସ୍ୱର୍ଗତ ରାସବିହାରୀଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରାଯାଇ କୁହାଯାଇଥିଲା-

"The meeting of the council of ministers and advisers of the Provisional Government of Azad Hind records its profound grief at the sad and untimely demise of Sri Rashbeheri Bose and further places on record its appreciation of the manifold out-standing service rendered by him to the cause of Independence throughout his life. As the only fitting trubute to the beloved memory of late Sri Bose the council reiterate once again his resolve to carry on the fight for India's Independence with unrelenting vigour until complete Independence is achieved and the life mission of Sri Rashbeheri Bose in thereby fulfilled."

(ଆଜାଦ ହିନ୍ଦ୍ ସରକାରର ମନ୍ତ୍ରିମଣ୍ଡଳ ତଥା ପରାମର୍ଶଦାତାବୃନ୍ଦ ଶ୍ରୀ ରାସବିହାରୀ ବୋଷଙ୍କର ଅକାଳ ବିୟୋଗରେ ଗଭୀର ଦୁଃଖ ପ୍ରକାଶ କରୁଅଛନ୍ତି ଓ ଭାରତର ସ୍ୱାଧୀନତା ପାଇଁ ସେ ଆଜୀବନ କରିଥିବା ବହୁ ଅଲୌକିକ ସେବା ଓ ତ୍ୟାଗକୁ ଗଭୀର ଶ୍ରଦ୍ଧାସହକାରେ ସ୍ମରଣକରୁଛନ୍ତି । ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ 'ଭାରତର ପୂର୍ଣ୍ଣ ସ୍ୱାଧୀନତାପ୍ରାପ୍ତି' ପାଇଁ ଅସୀମ ଉତ୍ସାହ ଉଦ୍ଦୀପନା ସହ ସଂଗ୍ରାମ ଚଳାଇଯିବା ସକାଶେ ପ୍ରତିଜ୍ଞାବଦ୍ଧ ହେଉଅଛି; କାରଣ ଏହାହିଁ ତାଙ୍କର ଏକମାତ୍ର ଉପଯୁକ୍ତ ସ୍ମୃତି ।)

ଏତଦ୍‌ବ୍ୟତୀତ ଆଜାଦ ହିନ୍ଦ୍ ସରକାରଙ୍କ ପକ୍ଷରୁ "Oder of Tamgh E- Azad Hind" ନାମକ ଏକ ନୂତନ ଉପାଧି ସୃଷ୍ଟିକରାଯାଇ ସ୍ୱର୍ଗତ ରାସବିହାରୀଙ୍କୁ ମରଣୋତ୍ତର ଉପାଧିରେ ଭୂଷିତକରାଗଲା । ଖାଲି ସେତିକି ନୁହେଁ, ଟୋକିଓ ମିଲିଟାରୀ ସ୍କୁଲରେ ଟ୍ରେନିଂ ନେଉଥିବା ଭାରତୀୟ ଯୁବକମାନଙ୍କ ଭିତରୁ ସର୍ବୋତ୍କୃଷ୍ଟ କାଡ଼େଟ୍‌କୁ 'ରାସବିହାରୀ ବୋଷ ମେଡ଼ାଲ' ଦିଆଯିବା ମଧ୍ୟ ସିଦ୍ଧାନ୍ତ ହେଲା ।

ଏହିଭଳି ଭାବରେ ଅଗ୍ନି-ଯୁଗରେ ବୈପ୍ଳବିକ ଦୀକ୍ଷା ନେଇ ପ୍ରାୟ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ ସଶସ୍ତ୍ର ସଂଗ୍ରାମରେ ନିଜକୁ ତିଳ ତିଳ କରି ଆହୁତି ଦେଇଥିବା ମହାନ୍ ନେତା ରାସବିହାରୀଙ୍କୁ ପ୍ରବାସୀ ଭାରତୀୟ ବିପ୍ଳବୀମାନେ ସେମାନଙ୍କର ସୀମିତ ଶକ୍ତି ଓ ସମୟ ଭିତରେ ଶ୍ରଦ୍ଧାଞ୍ଜଳି ଓ ସମ୍ମାନ ପ୍ରଦର୍ଶନ କରିଥିଲେ ।

X X X X

ନେତାଜୀଙ୍କ ନିର୍ଦ୍ଦେଶରେ 'ଜାତୀୟ ବାହିନୀ' ଇମ୍ଫାଲ ଅବରୋଧ ପ୍ରତ୍ୟାହାର କରି ଅଧିକ ନିରାପଦ ସ୍ଥାନକୁ ଅନୁକୂଳ ପରିସ୍ଥିତି ଅପେକ୍ଷାରେ ଚାଲିଆସିଲେ ସତ୍ୟ; କିନ୍ତୁ ସେତେବେଳେ ଜର୍ମାନୀ ରଣକ୍ଷେତ୍ରରେ ବ୍ରିଟିଶ ପକ୍ଷର ବିଜୟ ଫଳରେ ଯୁଦ୍ଧ ପରିସ୍ଥିତି ସଂପୂର୍ଣ୍ଣ ବଦଳିଯାଇଥିଲା । ଫଳରେ ବ୍ରିଟିଶ ଫୌଜ ଆସାମ ସୀମା ଅତିକ୍ରମ କରି ଅଚିରେ ବର୍ମା ଭିତରେ ପ୍ରବେଶକଲେ । ୧୯୪୪ ଜୁନ-ଜୁଲାଇଠାରୁ ୧୯୪୫ ଏପ୍ରିଲ ମାସ ପର୍ଯ୍ୟନ୍ତ ଅସଂଖ୍ୟ ବୋମାବର୍ଷୀ ବିମାନ ଓ ବିପୁଳ ଯୁଦ୍ଧସମ୍ଭାର ସାହାଯ୍ୟରେ ବ୍ରିଟିଶ ଫୌଜ ବର୍ମାକୁ ପୁନର୍ଦ୍ଦଖଲ କଲେ । ଏପ୍ରିଲ ୨୪ ତାରିଖରେ ବର୍ମା ତ୍ୟାଗର ଅବ୍ୟବହିତ ପୂର୍ବରୁ ନେତାଜୀ ଜାତୀୟ ବାହିନୀ ଉଦ୍ଦେଶ୍ୟରେ ଯେଉଁ ନିର୍ଦ୍ଦେଶନାମା ଜାରିକରିଥିଲେ, ସେଥିରେ ସେ

କହିଲେ, ''ବନ୍ଧୁଗଣ, ଆମ ସଂଗ୍ରାମର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ମୋର ଆପଣମାନଙ୍କୁ ଗୋଟିଏ ମାତ୍ର କହିବାର କଥା ଯେ, ଯଦିଓ ଆପଣମାନଙ୍କୁ ସ୍ୱଳ୍ପକାଳ ପାଇଁ ପରାଜୟ ବରଣ କରିବାକୁ ପଡ଼ିଛି, ତଥାପି ଆପଣମାନଙ୍କୁ ଶେଷ ପର୍ଯ୍ୟନ୍ତ ତ୍ରିରଙ୍ଗା ପତାକାକୁ ଊର୍ଦ୍ଧ୍ୱରେ ଉତ୍ତୋଳନ କରି ରଖିବାକୁ ପଡ଼ିବ ଏବଂ ସମ୍ମାନ ଓ ଶୃଙ୍ଖଳାସହକାରେ ଏହା କରିବାକୁ ହେବ । ମୁଁ ଜଣେ ଆଜନ୍ମ ଆଶାବାଦୀ ଏବଂ ମୋ' ମନରେ ସାମାନ୍ୟ ସନ୍ଦେହ ସୁଦ୍ଧା ନାହିଁ ଯେ ଆମ୍ଭର ଚରମ ବିଜୟ ସୁନିଶ୍ଚିତ ।''

ସେହି ବର୍ଷ ମଇ ମାସ ମଧ୍ୟଭାଗରେ ଜର୍ମାନୀର ପରାଜୟ ହେଲା ଏବଂ ଠିକ୍ ତା'ପରେ ପରେ ଭାରତର ବଡ଼ଲାଟ୍ ସଭାରେ ଅଧିକ ସଂଖ୍ୟକ ଭାରତୀୟଙ୍କୁ ସଭ୍ୟ ରୂପେ ନେବାପାଇଁ ଭାଇସ୍‌ରୟ ୱାଭେଲ ଏକ ପ୍ରସ୍ତାବ ଘୋଷଣାକଲେ, ଯାହା କି 'ୱାଭେଲ ପ୍ରସ୍ତାବ' ନାମରେ ଇତିହାସରେ ପରିଚିତ ।

ନେତାଜୀ କାଳବିଳମ୍ବ ନକରି ବ୍ୟାଙ୍କକ ରେଡିଓରେ କଂଗ୍ରେସ ନେତାମାନଙ୍କୁ 'ୱାଭେଲ ପ୍ରସ୍ତାବ'କୁ ଅଗ୍ରାହ୍ୟ କରିବାକୁ ନିବେଦନକଲେ । ନେତାଜୀ କହିଲେ, ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ନଦେଇ ଭାରତୀୟଙ୍କ ଦୃଷ୍ଟିକୁ ଏକ ସଂକୀର୍ଣ୍ଣ ପ୍ରତିଶ୍ରୁତି ଉପରେ ଆବଦ୍ଧ ରଖିବାକୁ କଂଗ୍ରେସ ଯଦି ବ୍ରିଟିଶର ଫାନ୍ଦରେ ପଡ଼ିଯାଏ, ପୂର୍ଣ୍ଣ-ସ୍ୱାଧୀନତା ଆହୁରି ପଛେଇଯିବ । ଅନ୍ତତଃ ବ୍ରିଟେନର ପରବର୍ତ୍ତୀ ନିର୍ବାଚନ ପର୍ଯ୍ୟନ୍ତ କଂଗ୍ରେସ ଅପେକ୍ଷା କରୁ ବୋଲି ନେତାଜୀ ଅନୁରୋଧ କରିଥିଲେ । ମିଳାମିଶାରେ ରାଜିନହୋଇ ସ୍ୱାଧୀନତା ଯୁଦ୍ଧ ଚଳାଇଗଲେ ଭାରତର ସ୍ୱାଧୀନତା ବ୍ରିଟିଶର ଘରୋଇ ବ୍ୟାପାରରେ ପରିଣତ ନ ହୋଇ ଏକ ଆନ୍ତର୍ଜାତିକ ପ୍ରଶ୍ନରେ ପରିଣତ ହେବ ଏବଂ ଏହା ଭାରତ-ପକ୍ଷରେ ଅଧିକ ଲାଭଦାୟକ ହେବ ବୋଲି ନେତାଜୀ ପରାମର୍ଶ ଦେଲେ । ସୌଭାଗ୍ୟ ବଶତଃ କଂଗ୍ରେସ ୱାଭେଲ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନକଲା ।

ଜାତୀୟ ବାହିନୀର ସଶସ୍ତ୍ର ଅଭିଯାନ ଭାରତର ସ୍ୱାଧୀନତାକୁ ଏକ ବାସ୍ତବ ସତ୍ୟରେ ପରିଣତ କରିସାରିଥିଲା । ବ୍ରିଟିଶ ଶକ୍ତି ଆଉ ସାମାନ୍ୟ ଗୋଟାଏ ଧକ୍କା ଆବଶ୍ୟକ କରୁଥିଲା । ସେହି ଧକ୍କା ଦେବାକୁ ଭାରତବାସୀ ମଧ୍ୟ ପ୍ରସ୍ତୁତ ହୋଇସାରିଥିଲେ । ସୁତରାଂ ଏଭଳି ପରିସ୍ଥିତିରେ ଲାଟସଭାରେ ଆଉ ଅଧିକ କେତୋଟି ସିଟ୍ ପାଇବାର ଲାଳସା ଗାନ୍ଧିଜୀ ସମ୍ବରଣ କରିନଥିଲେ କଂଗ୍ରେସ ଇତିହାସରେ ନିନ୍ଦିତ ହୋଇ ଥାନ୍ତେ । 'ୱାଭେଲ ପ୍ରସ୍ତାବ' ପ୍ରତ୍ୟାଖ୍ୟାନ ସମ୍ବାଦରେ ନେତାଜୀ ବିଶେଷ ଆନନ୍ଦିତ ହୋଇଥିଲେ ।

ଜାପାନର ଆସନ୍ନ ପରାଜୟର ଅବଶ୍ୟମ୍ଭାବୀ ପରିଣତି ଓ ଜାତୀୟ ବାହିନୀର ଭବିଷ୍ୟତ୍ ସମ୍ପର୍କରେ ଦୂରଦ୍ରଷ୍ଟା ନେତାଜୀଙ୍କର ଟିକିଏ ହେଲେ ସନ୍ଦେହ ନଥିଲା । 'ଜାତୀୟ ବାହିନୀ'ର ମହାନ୍ ତ୍ୟାଗ ଭବିଷ୍ୟତ୍ ବଂଶଧରଙ୍କୁ ପଥପ୍ରଦର୍ଶନ କରିବ ବୋଲି ଭବିଷ୍ୟତ୍‌ବାଣୀ କରିଥିଲେ ନେତାଜୀ—

''ଆପଣମାନଙ୍କର ମହାନ୍ ତ୍ୟାଗ ଯୋଗୁଁ ଭାରତର ଆଗାମୀ ବଂଶଧର ଦାସ ନହୋଇ ସ୍ୱାଧୀନ ନାଗରିକ ଭାବରେ ଜନ୍ମଗ୍ରହଣ କରିବେ ଓ ଆପଣମାନଙ୍କୁ କୃତଜ୍ଞତା ସହକାରେ ସ୍ମରଣକରିବେ । ସେମାନେ ବିଶ୍ୱସମକ୍ଷରେ ସଗର୍ବେ ଘୋଷଣା କରିବେ ଯେ, ସେମାନଙ୍କର

ପୂର୍ବପୁରୁଷ ମଣିପୁର, ଆସାମ ଓ ବର୍ମାରେ ସ୍ୱଳ୍ପକାଳ ପାଇଁ ପରାଜୟ ବରଣ କରିଥିଲେ ମଧ୍ୟ ସେମାନଙ୍କ ପାଇଁ ସ୍ୱାଧୀନତାର ପଥ ପରିଷ୍କାର କରିଯାଇଥିଲେ । ମୋ' ମନରେ ସାମାନ୍ୟ ସନ୍ଦେହ ସୁଦ୍ଧା ନାହିଁ ଯେ, ଆପଣମାନଙ୍କ ହାତରେ ଭାରତର ଜାତୀୟପତାକାର ସମ୍ମାନ ସଂପୂର୍ଣ୍ଣ ନିରାପଦ ରହିବ ଏବଂ ଏଥିପାଇଁ ଆପଣମାନେ ଜୀବନ ବିସର୍ଜନ କରିବାକୁ ମଧ୍ୟ ପରାଙ୍ମୁଖ ହେବେ ନାହିଁ ଓ ଯେଉଁ ସ୍ୱାଧୀନତା ସଂଗ୍ରାମୀଗଣ ଅନ୍ୟତ୍ର ଲଢୁଛନ୍ତି ସେମାନଙ୍କୁ ଆପଣମାନଙ୍କ ବୀରତ୍ୱ ଉଦ୍‌ବୁଦ୍ଧ କରିବ ।

''ମୋ' ନିଜ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିବାର ଅଧିକାର ଯଦି ମୋର ଥାନ୍ତା ମୁଁ ଆପଣମାନଙ୍କ ସାଙ୍ଗରେ ରହିଥାନ୍ତି । କିନ୍ତୁ ଆଗାମୀ ଯୁଦ୍ଧର ପ୍ରସ୍ତୁତି ପାଇଁ ମୁଁ ଏଠାରେ ନରହିବାକୁ ମୋର ଦାୟିତ୍ୱସମ୍ପନ୍ନ ସହକର୍ମୀବୃନ୍ଦ ଓ ଉଚ୍ଚ ସାମରିକ ଅଫିସରମାନଙ୍କର ପରାମର୍ଶ ମୋତେ ଗ୍ରହଣ କରିବାକୁ ପଡ଼ିଛି । ପୂର୍ବ-ଏସିଆ ଓ ଭାରତ ଭିତରେ ଥିବା ମୁକ୍ତି-ସଂଗ୍ରାମୀମାନଙ୍କର ଆଦର୍ଶ, ନିଷ୍ଠା ମୁଁ ଭଲରୂପେ ଜାଣିଥିବାରୁ ଏହା ଦୃଢ଼ତା- ସହକାରେ କହିପାରେ ଯେ, ସେମାନେ ସ୍ୱାଧୀନତା ସଂଗ୍ରାମକୁ ନିରବଚ୍ଛିନ୍ନ ଭାବରେ ଚଳାଇଯିବେ । ମୋ' କଥା କହିବାକୁ ଗଲେ, ମୁଁ ୧୯୪୩ ମସିହା ଅକ୍ଟୋବର ୨ ତାରିଖରେ ଯେଉଁ ଶପଥ ନେଇଥିଲି ସେଥିପ୍ରତି ଚିରଦିନ ମୋର ଆନୁଗତ୍ୟ ରହିଛି ଓ ମୋର ମୃତ୍ୟୁ ପର୍ଯ୍ୟନ୍ତ ମୁଁ ଭାରତର ସ୍ୱାଧୀନତା ପାଇଁ ସର୍ବଦା ଚେଷ୍ଟାକରିଯିବି ।''

ଜାପାନ ଓ ଜର୍ମାନୀର ଆସନ୍ନ-ପରାଜୟ ପରିପ୍ରେକ୍ଷୀରେ ଜାତୀୟ ବାହିନୀ ଓ ନେତାଜୀଙ୍କର ଭବିଷ୍ୟତ୍ କର୍ମଯୋଜନା ସମ୍ପର୍କରେ ବିଶଦ ଆଲୋଚନା ହୋଇଥିଲା । ନେତାଜୀ ସୋଭିଏତ୍ ରୁଷିଆରୁ ଶେଷ ସ୍ୱାଧୀନତା ଯୁଦ୍ଧ ଚଳାଇବେ ବୋଲି ଚିନ୍ତା କରୁଥିଲେ । ଏପର୍ଯ୍ୟନ୍ତ ରୁଷିଆରୁ କୌଣସି ପ୍ରକାର ସାହାଯ୍ୟ ସେ ପାଇନଥିଲେ; ବରଂ ନେତାଜୀ ଜର୍ମାନୀର ସାହାଯ୍ୟ ଗ୍ରହଣ କରିଥିବାରୁ ରୁଷିୟା ନେତାଜୀଙ୍କୁ ନାଜୀ ଓ ଫାସୀବାଦର ସମର୍ଥକ ବୋଲି ପ୍ରଚାରକରୁଥିଲା ଏବଂ ରୁଷିୟାର ପ୍ରରୋଚନାରେ ଭାରତର କେତେକ କମ୍ୟୁନିଷ୍ଟ ମଧ୍ୟ ସେହି ଭଳି ପ୍ରଚାର କରୁଥିଲେ । କିନ୍ତୁ ନେତାଜୀଙ୍କର ରୁଷିୟା ପ୍ରତି କୌଣସି ବୈରଭାବ ନଥିଲା; ତା ଥିଲେ ସେ ଭାରତରୁ ପଳାୟନ କଲାବେଳେ ଓ କାବୁଲରୁ ମସ୍କୋ ଯିବା ପାଇଁ ତାଙ୍କର ଉଦ୍ୟମ ସଫଳ ହୋଇଥିଲେ, ସେ ଜର୍ମାନୀ ଯାଇ ନଥାନ୍ତେ (ତାହା ଏହି ଗ୍ରନ୍ଥର ଅନ୍ୟ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି) । ନେତାଜୀ ଜାପାନ ସାହାଯ୍ୟରେ ରୁଷିୟାର ମାଞ୍ଚୁରିଆରେ ପହଞ୍ଚିବାକୁ ଚାହିଁଥିଲେ; କାରଣ ଜାପାନ ସେ ପର୍ଯ୍ୟନ୍ତ ରୁଷିୟା ସହ ଶତ୍ରୁତା ଆଚରଣ କରିନଥିଲା ଏବଂ ମାଞ୍ଚୁରିଆ ଯିବା ପାଇଁ ଜାପାନ ତାଙ୍କୁ ସାହାଯ୍ୟ କରିବ ବୋଲି ସେ ଆଶାକରୁଥିଲେ ।

ନେତାଜୀ ତାଙ୍କର ବିଶ୍ୱସ୍ତ ସହକର୍ମୀମାନଙ୍କ ସହ ଆଲୋଚନାପ୍ରସଙ୍ଗରେ ଜାତୀୟ ବାହିନୀର ଭବିଷ୍ୟତ୍ ସମ୍ପର୍କରେ ମଧ୍ୟ ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲେ-

"The I.N.A. may stop fighting for want of military hardware, but it shalll never surrender. The I.N.A. may be taken prisoner, but the

officers and men would not admit defeat or show the white flag. The I.N.A. would keep the flame of patriotism burning bright."

(''ଯୁଦ୍ଧ ସରଞ୍ଜାମ ଅଭାବରେ 'ଜାତୀୟ ବାହିନୀ' ଯୁଦ୍ଧ ବନ୍ଦକରିଦେଇପାରେ; କିନ୍ତୁ କୌଣସି ପରିସ୍ଥିତିରେ ଆତ୍ମସମର୍ପଣ କରିବନାହିଁ । ଜାତୀୟ ବାହିନୀକୁ ବନ୍ଦୀ କରାଯାଇପାରେ; କିନ୍ତୁ ଅଫିସର ଓ ସୈନ୍ୟମାନେ କୌଣସି ପ୍ରକାରେ ପରାଜୟ ସ୍ୱୀକାର କରିବେ ନାହିଁ କିମ୍ବା ଧଳାପତାକା ଦେଖାଇବେ ନାହିଁ । ଜାତୀୟ ବାହିନୀ ଚିରଦିନ ଦେଶାତ୍ମବୋଧର ଉଜ୍ଜ୍ୱଳ ବର୍ତ୍ତିକା ଜ୍ୱଳନ୍ତ ରଖିବେ ।'')

କଂଗ୍ରେସ ସରକାରର ବରାଦୀ ଐତିହାସିକମାନେ ବିଭିନ୍ନ ପୁସ୍ତକରେ ଜାତୀୟ ବାହିନୀ ବ୍ରିଟିଶ ଫୌଜ ପାଖରେ ଆତ୍ମସମର୍ପଣ କରିଥିଲେ ବୋଲି ଉଲ୍ଲେଖ କରିଅଛନ୍ତି; କିନ୍ତୁ ଏହା ସତ୍ୟର ଅପଳାପମାତ୍ର । କାରଣ ନିରପେକ୍ଷ ଇତିହାସକାରମାନେ କହନ୍ତି ଯେ ଜାତୀୟ ବାହିନୀର ଅଧିକାଂଶ ଜବାନଙ୍କୁ ବନ୍ଦୀକରାଯାଇଥିଲା; କାଁ-ଭାଁ ଜଣେ- ଅଧେ କେଉଁଠି ଆତ୍ମସମର୍ପଣ କରିପାରିଥାନ୍ତି; କିନ୍ତୁ ତାହାକୁ 'ଜାତୀୟ ବାହିନୀ'ର ଆତ୍ମସମର୍ପଣ ବୋଲି କୁହାଯାଇ ପାରିବ ନାହିଁ ।

ପ୍ରତିକୂଳ ପରିସ୍ଥିତି, ଯୁଦ୍ଧସରଞ୍ଜାମର ଅଭାବ ଓ ଭାରତର ମିତ୍ରଶକ୍ତିମାନଙ୍କର ଯୁଦ୍ଧରେ ପରାଜୟ ଫଳରେ 'ଜାତୀୟ ବାହିନୀ'ର ସାମୟିକ 'ପରାଜୟ' ହୋଇଥିଲେ ମଧ୍ୟ, ସେମାନଙ୍କ ଭିତରେ ସ୍ୱାଧୀନତା ପିପାସା, ବ୍ରିଟିଶଶକ୍ତିକୁ ଧ୍ୱସ୍ତବିଧ୍ୱସ୍ତ କରିବାର ପ୍ରତିଜ୍ଞା ରହିଥିଲା ଅଦମନୀୟ ଓ ଦୁର୍ବାର ଏବଂ ପ୍ରତ୍ୟେକ ଜବାନର ଦୃଢ଼ବିଶ୍ୱାସ ଥିଲା ଯେ, ଦିନେ ନା ଦିନେ ଏହି 'ପରାଜୟ'ର ପ୍ରତିଶୋଧ ନେବେ ।

ନେତାଜୀ ଯଥାର୍ଥରେ କହିଲେ- "We have lost only the first round of our fight. ( ଆମ୍ଭେମାନେ ପ୍ରଥମ ଯୁଦ୍ଧରେ ପରାସ୍ତ ହୋଇଛୁଁ ମାତ୍ର )'। ଆହୁରି ବହୁବାର ଆମକୁ ଯୁଦ୍ଧ କରିବାକୁ ପଡ଼ିବ । ସୁତରାଂ ଆମ୍ଭେମାନେ ସେଥିପାଇଁ ଭାଙ୍ଗିପଡ଼ିବାର କିଛି ନାହିଁ । ଭାରତର ସ୍ୱାଧୀନତା ପାଇଁ ମୁଁ ଆପଣମାନଙ୍କୁ ନିବେଦନ କରୁଅଛି– ସେହି ନିଷ୍ଠା ଓ ମନୋବଳକୁ ଅତୁଟରଖନ୍ତୁ ଏବଂ ସେହି ଶୁଭଦିନର ଅପେକ୍ଷାରେ ରହନ୍ତୁ, ଯେତେବେଳେ ଭାରତର ସ୍ୱାଧୀନତା ପାଇଁ ଶେଷ ସଂଗ୍ରାମ କରିବାର ଡାକରା ଓ ସୁଯୋଗ ଆସିବ ।''

ବିଜୟୋଲ୍ଲାସରେ ଉନ୍ମତ୍ତ ବ୍ରିଟିଶ-ଆମେରିକା ସୈନ୍ୟମାନେ ସୁବିଧା ପାଇବାର ପ୍ରଥମ ସୁଯୋଗରେ ଯେ 'ଜାତୀୟ ବାହିନୀ'କୁ ବନ୍ଦୀକରିବେ ଏବଂ 'ବ୍ରିଟିଶ ସମ୍ରାଟ୍‌ଙ୍କ ବିରୁଦ୍ଧରେ ଘୋଷଣା' କରିଥିବା ତଥାକଥିତ ଅଭିଯୋଗରେ ସେମାନଙ୍କ ଉପରେ ଆରମ୍ଭ କରିଦେବେ ନାରକୀୟ ଅତ୍ୟାଚାର, ତାହା ଦୂରଦ୍ରଷ୍ଟା ନେତାଜୀଙ୍କୁ ଅଜ୍ଞାତ ନଥିଲା । କିନ୍ତୁ ଏହା ମଧ୍ୟ ସେ ଭଲଭାବରେ ଜାଣିଥିଲେ ଯେ 'ଜାତୀୟ ବାହିନୀ'ର ଅପୂର୍ବ ଦେଶପ୍ରେମ, ଅସାଧାରଣ ବୀରତ୍ୱ ଓ ବ୍ରିଟିଶ-ଆମେରିକା ସୈନ୍ୟମାନଙ୍କ ବିରୁଦ୍ଧରେ ସେମାନଙ୍କର ବିଜୟ ଓ ସାଫଲ୍ୟ ସମ୍ବାଦ ଭାରତରେ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ସରକାର ବିରୁଦ୍ଧରେ ଭାରତୀୟ ଜନମତ ନିଶ୍ଚିତ ଭାବରେ ବିକ୍ଷୁବ୍ଧ ହେବ । 'ଜାତୀୟ ବାହିନୀ'ର ଅବଶିଷ୍ଟ କାର୍ଯ୍ୟ ଭାରତୀୟ ଜାଗ୍ରତ ଜନତା ହିଁ ସମ୍ପନ୍ନ କରିବେ ।

ସେ ଦେଶବାସୀଙ୍କ ଉଦ୍ଦେଶ୍ୟରେ କହିଥିଲେ–

"If our country men at home take up this matter and carry on a raging and tearing campaign in-side India, I am absolutely sure that the British Government will be brought to their senses........."

ରେଙ୍ଗୁନର ପୁନଃ ଦଖଲ ଅବଶ୍ୟମ୍ଭାବୀ ଜାଣି ଆଜାଦ ହିନ୍ଦ୍ ସରକାରର ପରାମର୍ଶ ଅନୁସାରେ ନେତାଜୀ ଓ ଅନ୍ୟ ମନ୍ତ୍ରୀମାନେ 'ଝାନ୍ସୀରାଣୀ'ର ଝିଅମାନଙ୍କ ସହିତ ଦୀର୍ଘ ୨୧ ଦିନର ଦୁର୍ଗମ ପଥ ଅତିକ୍ରମ କରି ବ୍ୟାଙ୍କକରେ ପହଞ୍ଚିରେ । ଅଗଷ୍ଟ ମାସ ୧୧ ତାରିଖରେ ଜାପାନର ହିରୋସୀମା ଓ ନାଗାସାକି ଉପରେ ଆମେରିକା ପରମାଣୁ ବୋମା ନିକ୍ଷେପ କରିବାରୁ ଅଗଷ୍ଟ ୧୫ ତାରିଖରେ ଜାପାନ ଆତ୍ମସମର୍ପଣ କଲା ।

ସୁତରାଂ ପୂର୍ବ-ଏସିଆରେ ରହି 'ସ୍ୱାଧୀତନା ସଂଗ୍ରାମ' ଚଳାଇବା ଅସମ୍ଭବ ହୋଇ ପଡ଼ିଲା ଏବଂ ଅନ୍ୟ ଏକ ମିତ୍ର-ରାଜ୍ୟରୁ 'ସଂଗ୍ରାମ'ର ନୂତନ ସାମ୍ମୁଖ୍ୟ ଗଢ଼ିବାକୁ ନେତାଜୀ ସ୍ଥିରକଲେ । ସେହି ସ୍ମରଣୀୟ ଅଗଷ୍ଟ ପନ୍ଦରରେ ନେତାଜୀ ପୂର୍ବ-ଏସିଆର ଭାରତୀୟମାନଙ୍କ ଉଦ୍ଦେଶ୍ୟରେ ତାଙ୍କର 'ଶେଷ ବାର୍ତ୍ତା' ଦେଇ ଆବେଗପୂର୍ଣ୍ଣ କଣ୍ଠରେ କହିଲେ– ''ଭାଇ ଓ ଭଉଣୀମାନେ, ଭାରତର ସ୍ୱାଧୀନତା ଯୁଦ୍ଧର ଏକ ମହାନ୍ ଅଧ୍ୟାୟର ବର୍ତ୍ତମାନ ପରିସମାପ୍ତି ଘଟିଛି । ପୂର୍ବ-ଏସିଆରେ ବାସକରୁଥିବା ଭାରତୀୟ ପୁତ୍ର-କନ୍ୟାଗଣ ଏହି ମହନୀୟ ଅଧ୍ୟାୟରେ ଏକ ଉଜ୍ଜ୍ୱଳ ସ୍ଥାନ ଅଧିକାର କରିଅଛନ୍ତି । ଭାରତୀୟ ସ୍ୱାଧୀନତା ଯୁଦ୍ଧରେ ଆପଣମାନେ ଧନ, ଜନ ଓ ଅନ୍ୟାନ୍ୟ ସକଳ ପ୍ରକାର ଦାନ ଦେଇ ଦେଶାତ୍ମବୋଧ ଏବଂ ତ୍ୟାଗର ଏକ ଉଦାହରଣ ରଖିଯାଇଅଛନ୍ତି । 'ସର୍ବାଧିକ ପ୍ରସ୍ତୁତି' ପାଇଁ ମୋର ଆହ୍ୱାନର ଯେଉଁ ଚମତ୍କାର ଜବାବ ଆପଣମାନେ ଦେଇଅଛନ୍ତି, ତାହା ମୁଁ କଦାପି ଭୁଲିପାରିବି ନାହିଁ । ଏକ ଚିରପ୍ରବହମାନ ନିର୍ଝର ଭଳି ଆପଣମାନେ ନିଜେ ନିଜର ପୁତ୍ରକନ୍ୟାଙ୍କୁ ଆଜାଦ୍ ହିନ୍ଦ୍ ଫୌଜ ଏବଂ ଝାନ୍ସୀରାଣୀ ରେଜିମେଣ୍ଟ ପାଇଁ ଯୋଗାଇଦେଇଅଛନ୍ତି । ଆଜାଦ ହିନ୍ଦ ଯୁଦ୍ଧ-ପାଣ୍ଠିକୁ ଆପଣମାନେ ଅକାତରେ ଦାନକରିଅଛନ୍ତି । ମୁଁ ଆପଣମାନଙ୍କ ଅପେକ୍ଷା ଅଧିକ ଦୁଃଖିତ ଯେ, ଆପଣମାନଙ୍କ ମହନୀୟ ତ୍ୟାଗ ସଙ୍ଗେ ସଙ୍ଗେ ଫଳପ୍ରସୁ ହୋଇପାରିନାହିଁ । ''କିନ୍ତୁ ଏହା କଦାପି ନିଷ୍ଫଳ ହୋଇନାହିଁ । କାରଣ ଏହା ଆମର ମାତୃଭୂମିର ମୁକ୍ତି-ପଥ ଉନ୍ମୁକ୍ତ କରିଦେଇଛି ଏବଂ ସାରା ପୃଥିବୀରେ ସମସ୍ତ ଭାରତୀୟଙ୍କୁ ଅଶେଷ ପ୍ରେରଣା ଓ ଆଶା-ଆକାଙ୍କ୍ଷା ଦାନକରିଅଛି । ଭବିଷ୍ୟତ୍ ଆପଣମାନଙ୍କୁ ଆଶୀର୍ବାଦ କରିବ ଏବଂ ସ୍ୱାଧୀନତା ବେଦୀରେ ଆପଣମାନଙ୍କର ଆତ୍ମତ୍ୟାଗ ଓ ବାସ୍ତବ ସାଫଲ୍ୟକୁ ଗର୍ବ- ସହକାରେ ସ୍ମରଣ କରିବ ।

''ଇତିହାସର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ମୋର ଆପଣମାନଙ୍କୁ ଗୋଟିଏ ମାତ୍ର କଥା କହିବାର ଅଛି– ଆପଣମାନଙ୍କ ସାମୟିକ ପରାଜୟରେ ହତାଶ ହୁଅନ୍ତୁ ନାହିଁ; ଆଶବାଦୀ ହୁଅନ୍ତୁ ଓ ପ୍ରଫୁଲ୍ଲ ହୁଅନ୍ତୁ । ସର୍ବୋପରି ଭାରତ-ମାତାର ଭାଗ୍ୟ ବିଷୟରେ ନିରାଶ ହୁଅନ୍ତୁ ନାହିଁ । ଭାରତକୁ ଆଉ ଦାସତ୍ୱବନ୍ଧନରେ ବାନ୍ଧିରଖିବାକୁ କାହାରି ହେଲେ ଶକ୍ତି ନାହିଁ । ଜୟ ହିନ୍ଦ୍ ।''

''ଦିଲ୍ଲୀରେ ପହଞ୍ଚିବାକୁ ଅସଂଖ୍ୟ ପଥ ରହିଅଛି ଏବଂ ବର୍ତ୍ତମାନ ମଧ୍ୟ ଆମ୍ଭମାନଙ୍କର ଏକମାତ୍ର ଲକ୍ଷ୍ୟସ୍ଥଳ ହେଉଛି ଦିଲ୍ଲୀ ।'' ଏହାହିଁ ଥିଲା ନେତାଜୀଙ୍କର ଶେଷ ଆହ୍ୱାନ ।

ଅଗଷ୍ଟ ୧୬ ତାରିଖ, ୧୯୪୫ । ନେତାଜୀ ଅଫିସ କାମ ଶେଷ କରିବା ସଙ୍ଗେ ସଙ୍ଗେ ନିଜର ସ୍ୱଳ୍ପ ଜିନିଷପତ୍ର ବନ୍ଧାବନ୍ଧିକଲେ ଏବଂ ଆଉ ଏକ ଛୋଟ ଲୁଗା-ପୁଡ଼ିଆ ଯାହାକୁ ସେ 'ଅଜ୍ଞାତ ଗନ୍ତବ୍ୟ ସ୍ଥାନ ଉଦ୍ଦେଶ୍ୟରେ ଅଭିଯାନ' ବୋଲି ଅଭିହିତ କରିଥିଲେ, ତାକୁ ମଧ୍ୟ ସଙ୍ଗରେ ନେଲେ । ସେହି ଶେଷ ଯାତ୍ରାବେଳେ ତାଙ୍କର ସାଥୀ ହେଲେ କଲୋନେଲ ହବିବୁର ରହମନ, ଡେପୁଟି ଚିଫ ଅଫ୍ ଷ୍ଟାଫ୍, କଲୋନେଲ ପ୍ରୀତମ ସିଂ ଓ ଏସ. ଏ. ଆୟାର । ସକାଳ ୧୦ଟା ପରେ ସମସ୍ତେ ଏକ ବୋମାବର୍ଷୀ ବିମାନରେ ବ୍ୟାଙ୍କକରେ ପହଞ୍ଚିଲେ । ବ୍ୟାଙ୍କକରେ ପହଞ୍ଚିବା ସଙ୍ଗେ ସଙ୍ଗେ ଏହି ସମ୍ବାଦ ବିଦ୍ୟୁତ୍ ଗତିରେ ପ୍ରଚାରିତ ହୋଇଗଲା । ନେତାଜୀଙ୍କର ପରବର୍ତ୍ତୀ ଗନ୍ତବ୍ୟ ସ୍ଥାନ ସମ୍ପର୍କରେ ଜାଣିବାକୁ ସମସ୍ତେ ଉତ୍କଣ୍ଠିତ । ସେ ସାରାରାତି ସ୍ଥାନୀୟ ନେତୃସ୍ଥାନୀୟ ବ୍ୟକ୍ତିବୃନ୍ଦ ଓ ସାମରିକ ଅଫିସରମାନଙ୍କ ସହ ତାଙ୍କର ଆଲୋଚନା ଚାଲିଲା ।

୧୭ ତାରିଖ ଦିନ ବଡ଼ିସକାଳୁ ନେତାଜୀ ବ୍ୟାଙ୍କକ ବିମାନଘାଟି ଉଦ୍ଦେଶ୍ୟରେ ସମସ୍ତଙ୍କଠାରୁ ବିଦାୟନେଲେ । ସଙ୍ଗରେ ଗଲେ କର୍ଣ୍ଣେଲ ହବିବୁର ରହମନ, କର୍ଣ୍ଣେଲ ଗୁଲଜାର ସିଂ, କର୍ଣ୍ଣେଲ ପ୍ରୀତମ ସିଂ, ଜର୍ମାନୀରୁ ସବମାରିନ୍‌ରେ ତାଙ୍କ ସାଥିରେ ଆସିଥିବା ମେଜର ଆବିଦ ହାସାନ, ରେଙ୍ଗୁନର ଲିଗ୍ ହେର୍ଡ଼କ୍ୱାର୍ଟର ସାଧାରଣ ସମ୍ପାଦକ ଓ ପରାମର୍ଶଦାତା ଦେବନାଥ ଦାସ ଓ ଏସ. ଏ. ଆୟାର । ଜାପାନର ଜେନେରାଲ ଇସୋତା ହାଚିୟା ଏବଂ ନେତାଜୀଙ୍କର ଜାପାନୀ ବ୍ୟାଖ୍ୟାକାର ନେଗିସ ମଧ୍ୟ ସେମାନଙ୍କ ସହ ଥିଲେ । ଦୁଇଟି ଉଡ଼ାଜାହାଜରେ ସମଗ୍ର ଦଳଟି ସକାଳ ୧୦ଟା ସୁଦ୍ଧା ସାଇଗନରେ ପହଞ୍ଚିଲେ ।

ଏହି ସାଇଗନଠାରୁହିଁ ନେତାଜୀଙ୍କର ଶେଷ ଯାତ୍ରା ଆରମ୍ଭହେଲା । ଜାପାନ ସରକାର ପ୍ରଥମେ ବୋମାବର୍ଷୀ ବିମାନରେ ମାତ୍ର ଗୋଟିଏ ସ୍ଥାନ ଦେବାକୁ ରାଜି ହୋଇଥିଲେ । ନେତାଜୀଙ୍କ ସହକର୍ମୀଙ୍କ ଭିତରେ ଘୋର ଉଦବେଗ୍ ସୃଷ୍ଟିହେଲା; କାରଣ ନେତାଜୀଙ୍କୁ ଏକା ଛାଡ଼ିବାକୁ କେହି ରାଜିନଥିଲେ । ଯାହାହେଉ, ବହୁ ଚେଷ୍ଟାରେ ଉକ୍ତ ବିମାନରେ ଦୁଇଟି ଆସନ ଯୋଗାଡ଼ହେଲା । ବହୁ ଆଲୋଚନା ପରେ କର୍ଣ୍ଣେଲ ହବିବୁର ରହମନ ନେତାଜୀଙ୍କ ସହ ଯିବା ପାଇଁ ସ୍ଥିର ହେଲା । ସେହି ୧୭ ତାରିଖରେ ନେତାଜୀ ଓ ହବିବ ଅନ୍ୟ ବନ୍ଧୁମାନଙ୍କୁ 'ଜୟ ହିନ୍ଦ୍' ଜଣାଇ ବିମାନରେ ଆରୋହଣକଲେ । କଥାହୋଇଥିଲା ଅନ୍ୟମାନଙ୍କୁ ଯଥାଶୀଘ୍ର ଟୋକିଓ ନେଇଯିବାର ବ୍ୟବସ୍ଥା କରାଯିବ; କିନ୍ତୁ ୧୯ ତାରିଖ ପର୍ଯ୍ୟନ୍ତ କୌଣସି ବ୍ୟବସ୍ଥା ହୋଇପାରିଲା ନାହିଁ । ୧୯ ତାରିଖ ଦିନ ଚାରିଜଣଙ୍କୁ ହାନୋଇ ଏବଂ ଜଣକୁ ଟୋକିଓ ନେଇଯିବାର ବନ୍ଦୋବସ୍ତ ଜାପାନ ସରକାର କରିପାରିଥିଲେ । ସମସ୍ତେ ନେତାଜୀଙ୍କୁ ଟୋକିଓରେ ଭେଟିବେ ବୋଲି କଥାହୋଇଥିଲା । ଶ୍ରୀ ଏସ. ଏ. ଆୟାର ଟୋକିଓଗାମୀ ବିମାନରେ ଓ ଅନ୍ୟ ଚାରିଜଣ ହାନୋଇଗାମୀ ବିମାନରେ ବସିଲେ । ଆୟାରଙ୍କ ବିମାନ ଠିକ୍ ଦିନ ୧୧ଟାରେ ସାଇଗନ ଛାଡ଼ିଲା । ଠିକ୍ ସେହି ସମୟରେ ଜଣେ ଜାପାନୀ ଅଫିସରଙ୍କ

ହାବଭାବରୁ ଆୟାର ସୂଚନା ପାଇଲେ ଯେ, କୌଣସି ଅଘଟଣ ଘଟିଛି । ଏହାପରେ ଯାହା ଘଟିଲା, ତାହା ସ୍ୱୟଂ ଏସ. ଏ. ଆୟାରଙ୍କ ମୁହଁରୁ ଶୁଣାଯାଉ—

"When my plane landed at Canton airport for refuelling in the evening, the Japanese colonel who was escorting me broke to me the stunning news that Netaji has died as a result of a crash on Formoza Island the day after he had left Saigan, I told the colonel point blank that no Indian in East Asia or India would beleive the Japanese story of Netaji's fatal plane crash, unless they took Netaji's body to Singapore or at least ot Tokyo. When I reached Tokyo on August 22, 1945, Japanese foreign office Ministry official with tears in their eyes repeated the story of the crash and sought my help in drafting an announcement of Nejaji's plane crash over Tokyo Radio for the first time. Indians in East Asia heard the news with a shock but refused to beleive it, just as I had warned the Japanese, (earlier)"

ଏହି ତଥାକଥିତ ଉଡ଼ାଜାହାଜ ଦୁର୍ଘଟଣା ଆଜି ପର୍ଯ୍ୟନ୍ତ ଏକ ବିବାଦୀୟ ବିଷୟ ହୋଇ ରହିଅଛି । ପ୍ରଧାନମନ୍ତ୍ରୀ ନେହେରୁଙ୍କ ଅମଳରେ ଏ ସମ୍ପର୍କରେ ବସିଥିବା 'ସାନୱାଜ କମିଟି' ଓ ଇନ୍ଦିରାଙ୍କ ଅମଳରେ ବସିଥିବା 'ଖୋସଲା କମିଟି'ର ରିପୋର୍ଟ ପକ୍ଷପାତମୂଳକ ବୋଲି ଅଭିଯୋଗକରି ଭାରତୀୟ ଜନତା ଏହାକୁ ବିଶ୍ୱାସ କରିବାକୁ ରାଜିନୁହନ୍ତି । ନେହେରୁ-ପରିବାର ନେତାଜୀଙ୍କ ପ୍ରତି ଈର୍ଷା-ପ୍ରଣୋଦିତ ବୋଲି ବହୁ ପ୍ରମାଣ ଥିବାରୁ ଉପରୋକ୍ତ ରିପୋର୍ଟଗୁଡ଼ିକୁ 'ବରାଦୀ' ରିପୋର୍ଟ ବୋଲି କୁହାଯାଉଛି । ଉଲ୍ଲେଖ ନିଷ୍ପ୍ରୟୋଜନ ଯେ, ଉଭୟ ରିପୋର୍ଟରେ ନେତାଜୀ ବିମାନ ଦୁର୍ଘଟଣାରେ ପ୍ରାଣହରାଇଛନ୍ତି ବୋଲି ଦୃଢ଼ଭାବରେ କୁହାଯାଇଅଛି ।

ଭାରତ ସରକାରଙ୍କଦ୍ୱାରା ପ୍ରକାଶିତ ଏକ ପୁସ୍ତକରେ ଯଦିଓ ଲେଖାଯାଇଅଛି ଯେ, 'ଭାରତରେ ବହୁ ଲୋକ ଏହାକୁ ବିଶ୍ୱାସ କରୁନାହାନ୍ତି' ତଥାପି ବିମାନ ଦୁର୍ଘଟଣାକୁ ଖୁବ୍ ଦୃଢ଼ତାସହକାରେ ପ୍ରତିପାଦିତ କରାଯାଇଅଛି । ଏକ ଅର୍ଦ୍ଧ-ସରକାରୀ ପୁସ୍ତକ ପ୍ରକାଶନ ସଂସ୍ଥା (ନ୍ୟାସନାଲ ବୁକ ଟ୍ରଷ୍ଟ) ଦ୍ୱାରା ପ୍ରକାଶିତ 'ଭାରତର ସ୍ୱାଧୀନତା ସଂଗ୍ରାମ' ପୁସ୍ତକରେ ନେତାଜୀଙ୍କ ମୃତ୍ୟୁ ସତ୍ୟ ବୋଲି ଉଲ୍ଲେଖ ଅଛି ।



## ଅଧ୍ୟାୟ - ତେୟାଳିଶ

# ଶେଷ ପାହାର

### ଲାଲ କିଲ୍ଲା ଖୋଲ୍ ଦୋ –

ସଶସ୍ତ୍ର ମୁକ୍ତି-ସଂଗ୍ରାମ ଶେଷ ଲଢ଼େଇ ଆରମ୍ଭହେଲା ୧୯୪୫ ମସିହାରେ; ଅର୍ଥାତ୍ ପଲାସୀ ଯୁଦ୍ଧର ପ୍ରାୟ ଦୁଇ ଶହ ବର୍ଷ ପରେ । ଏହି ଯୁଦ୍ଧକ୍ଷେତ୍ର ପୂର୍ବଏସିଆରୁ ସ୍ଥାନାନ୍ତରିତ ହେଲା ଖୋଦ୍ ଭାରତର ମାଟି ଉପରକୁ । ୧୯୪୫ ଅଗଷ୍ଟ ୨୦ ତାରିଖରେ ନେହେରୁ ଏକ ପ୍ରେସ୍ ବିବୃତିରେ ପ୍ରକାଶକଲେ ଯେ, ଜାତୀୟ ବାହିନୀର ବହୁସଂଖ୍ୟକ ଜବାନ ବର୍ତ୍ତମାନ ଦିଲ୍ଲୀର ଲାଲକିଲ୍ଲା ଠାରେ ବନ୍ଦୀ । ସେମାନଙ୍କ ଭିତରୁ ଅନ୍ତତଃ ଛ' ଜଣ ବୀରଙ୍କୁ ହତ୍ୟାକରାଯାଇସାରିଲାଣି । ଅନ୍ୟ ସମୟ କଥା ଅଲଗା, କିନ୍ତୁ ଆଜି ଯେତେବେଳେ ଭାରତବର୍ଷରେ ବହୁତ ବଡ଼ ବଡ଼ ଘଟଣା ଘଟିଯାଉଛି, ସେତେବେଳେ ଏମାନଙ୍କ ପ୍ରତି ଦୁର୍ବ୍ୟବହାରର ପରିଣତି ଭୟାବହ ହୋଇପାରେ; ବିଶେଷତଃ ସେମାନଙ୍କୁ ଯଦି ସାଧାରଣ ବିଦ୍ରୋହୀଙ୍କ ଭଳି ବ୍ୟବହାର କରାଯାଏ । ସେମାନଙ୍କୁ ଯଦି କୌଣସି ଦଣ୍ଡ ଦିଆଯାଏ ତେବେ ତାହା କୋଟି କୋଟି ଭାରତବାସୀଙ୍କ ପ୍ରତି ଦଣ୍ଡଭାବରେ ବିବେଚିତହେବ ।

ସେତେବେଳକୁ ପ୍ରାୟ କୋଡ଼ିଏ ହଜାର 'ଜାତୀୟ ବାହିନୀ'ର ମୁକ୍ତି-ସଂଗ୍ରାମୀଙ୍କୁ ବ୍ରିଟିଶ ସରକାର ଆସାମ, ବର୍ମା, ସିଙ୍ଗାପୁର ଓ ବ୍ୟାଙ୍କକଠାରୁ ଆଣି ଦିଲ୍ଲୀର ଲାଲ କିଲ୍ଲାରେ ବନ୍ଦୀ କରି ରଖିଥିଲା । ଏହି ସମ୍ବାଦରେ ସାରା ଦେଶରେ ଯେମିତି ନିଆଁ ଲାଗିଗଲା । ଦଳମତ-ନିର୍ବିଶେଷରେ 'ଜାତୀୟ ବାହିନୀ ମୁକ୍ତ କର' ଆନ୍ଦୋଳନରେ ଦେଶର ଜନତା ଝାସଦେଲେ । ପ୍ରତିବାଦରେ ଫାଟିପଡ଼ିଲା ଆକୁମାରୀ ହିମାଚଳ । ସ୍କୁଲ-କଲେଜ ଓ ଶିକ୍ଷାନୁଷ୍ଠାନରେ ବ୍ୟାପକ ଧର୍ମଘଟ ଆରମ୍ଭହେଲା । ଚାରିଆଡ଼େ ଗୋଟିଏ ମାତ୍ର ଦାବି 'ଲାଲ କିଲ୍ଲା ଖୋଲଦୋ', 'ଜାତୀୟ ବାହିନୀ ଛୋଡ଼ଦୋ ।''

'ବ୍ରିଟିଶ ସମ୍ରାଟ୍‌ଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା' କରିଥିବାର ଏକ ତଥାକଥିତ ଅଭିଯୋଗରେ ଅହଂକାରୀ ବ୍ରିଟିଶ ସରକାର ଯେତେବେଳେ ସତକୁ ସତ ଜାତୀୟ ବାହିନୀର ବିଚାର ଆରମ୍ଭକଲା, ସେତେବେଳେ ଜନତାର କ୍ରୋଧ ଓ ଉତ୍ତେଜନା ଚରମ ସୀମାରେ ପହଞ୍ଚିଗଲା । ଲାଲ କିଲ୍ଲା ଭିତରେ ଆରମ୍ଭହୋଇଥିବା ସେହି ବିଚାରାଳୟରେ ବାସ୍ତବରେ ବ୍ରିଟିଶ ସରକାରରହିଁ ବିଚାର ଆରମ୍ଭହେଲା । ବିଚାରକ ହେଲେ— ୩୮ କୋଟି ଭାରତବାସୀ ଓ ୩୦ ଲକ୍ଷ ପ୍ରବାସୀ ଭାରତୀୟ । ଭାରତବାସୀଙ୍କର ଯୁକ୍ତି— ''ତୁମେ କିଏ ଆମର ବିଚାରକରିବ ? ଆମ ଦେଶକୁ ସ୍ୱାଧୀନ କରିବାକୁ ଗଠିତ ଆମର 'ମୁକ୍ତିବାହିନୀ' ତୁମର ବିଚାର କରିବ । ଆମର ଦାବି- 'ଇଂରେଜ ଭାରତ ଛାଡ଼' Britishers, quit India."

ଲାଲ କିଲ୍ଲା ଭିତରେ ଭାରତବାସୀଙ୍କ ପକ୍ଷରୁ ଗର୍ଜନ କଲେ ପ୍ରସିଦ୍ଧ ଓକିଲ ଓ ସ୍ୱାଧୀନତା ସଂଗ୍ରାମୀ ବୁଲାଭାଇ ଦେଶାଇ – ''କୌଣସି ଦେଶକୁ ବିଦେଶୀ ଶାସନରୁ ମୁକ୍ତ କରିବା ପାଇଁ ସେହି ଦେଶବାସୀଙ୍କ ପକ୍ଷରୁ ଯେଉଁ ଯୁଦ୍ଧ କରାଯାଏ ତାହା ଆନ୍ତର୍ଜାତିକ ଆଇନାନୁସାରେ ସଂପୂର୍ଣ୍ଣ ଯୁକ୍ତିଯୁକ୍ତ ଏବଂ ଆମକୁ ଯଦି କୁହାଯାଏ ଯେ, ଭାରତୀୟ ସୈନ୍ୟ ଇଂଲାଣ୍ଡର ସ୍ୱାଧୀନତା ରକ୍ଷାକରିବାକୁ ଜର୍ମାନୀ ବିରୁଦ୍ଧରେ ବା ଇଟାଲୀ ବିରୁଦ୍ଧରେ ବା ଜାପାନ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯିବା ନ୍ୟାୟସଙ୍ଗତ; ଅଥଚ ଭାରତକୁ ଅନ୍ୟ ଏକ ଶାସନରୁ ମୁକ୍ତ କରିବାକୁ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯିବା ଏକ ଅପରାଧ– ତାହା ବିଚାର ଆଦର୍ଶର ଅପଳାପ ମାତ୍ର । ସୁତରାଂ ମୁଁ ଦୃଢ଼ତା ସହକାରେ ଘୋଷଣା କରୁଅଛି ଯେ, ଏହି ମୁକ୍ତିଯୁଦ୍ଧ ପାଇଁ ଯୁକ୍ତିତର୍କ ଅନାବଶ୍ୟକ ଅଟେ । ଦୁଇ ଦେଶ ଭିତରେ ହେଉଥିବା ଯୁଦ୍ଧ ଭିତରେ ଗୁଳି ବିନିମୟଫଳରେ କାହାର ମୃତ୍ୟୁ ହେଲେ ତାକୁ 'ନରହତ୍ୟା' କହିବା ଏକ ହାସ୍ୟାସ୍ପଦ ବ୍ୟାପାର ।''

ବୁଲାଭାଇ ପୁଣି କହିଲେ, '' ଏହା ନିଃସନ୍ଦେହ ଯେ, ଏକ ଅସ୍ଥାୟୀ ଭାରତ ସରକାର ଗଠିତହୋଇଥିଲା । ଏହା ପୃଥିବୀର ବହୁ ସ୍ୱାଧୀନ ଦେଶଠାରୁ କୂଟନୈତିକ ସ୍ୱୀକୃତି ଲାଭ କରିଥିଲା । ଏହି ସରକାରର ଏକ ସୁସଙ୍ଗଠିତ ସୈନ୍ୟବାହିନୀ ରହିଥିଲା । ଏହି ସରକାରର ସୈନ୍ୟବାହିନୀ ପାଇଁ ନିଜସ୍ୱ ବ୍ୟାଜ ଓ କ୍ୟାଡ଼ର ଥିଲା ଏବଂ ଆଇ.ଏନ. ଏ. ଆଇନ ଅନୁସାରେ ଏହା ନିୟନ୍ତ୍ରିତ ହେଉଥିଲା । ସୁତରାଂ ପ୍ରଚଳିତ ଆନ୍ତର୍ଜାତିକ ଆଇନଦୃଷ୍ଟିରୁ ଏହି ସରକାରର ସୈନ୍ୟବାହିନୀର ବିଚାରକରିବାକୁ ଅନ୍ୟ ଏକ ସରକାରର କୌଣସି ଅଧିକାର ବା କ୍ଷମତା ନାହିଁ । ବିଶେଷତଃ ଯେହେତୁ ଯେକୌଣସି ସରକାର ଅନ୍ୟ ଏକ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାର ଅଧିକାର ଅଛି, ସେହିଭଳି ଆଜାଦ୍ ହିନ୍ଦ୍ ସରକାର ବ୍ରିଟିଶ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ମଧ୍ୟ ସଂପୂର୍ଣ୍ଣ ଅଧିକାର ରହିଛି । ପ୍ରତ୍ୟେକ ସରକାରର ସୈନ୍ୟବାହିନୀ ଯେହେତୁ ସେହି ସରକାରର ନିର୍ଦ୍ଦେଶ ମାନିବାକୁ ବାଧ୍ୟ ଏବଂ ସେଥିପାଇଁ ସୈନ୍ୟମାନେ ଦୋଷୀ ନୁହନ୍ତି, ସେହିଭଳି ଆଜାଦ ହିନ୍ଦ୍ ସରକାରର ନିର୍ଦ୍ଦେଶ ମାନିବାକୁ ଆଜାଦ ହିନ୍ଦ୍ ବାହିନୀ ବାଧ୍ୟ ଏବଂ ତାହା ସେମାନଙ୍କର ଅପରାଧ ନୁହେଁ ।'' ବୁଲାଭାଇଙ୍କ ଭାଷାରେ -"What is on trial before the court now is the right to wage with impunity on the part of a subject race for their liberation."

ବୁଲାଭାଇଙ୍କ ଆଗ୍ନେୟ ଯୁକ୍ତି ଏବଂ ଅକାଟ୍ୟ ଜବାବ-ସୁଆଲ ସାଙ୍ଗକୁ ମିଳିଗଲା ମେଜର ଜେନେରାଲ ସାନୱାଜ ଖାଁ, କର୍ଣ୍ଣେଲ ସାହାଗଲ ଓ କର୍ଣ୍ଣେଲ ଧୀଲନଙ୍କର ଦୃପ୍ତ ଜମାନବନ୍ଦୀ । ସାନୱାଜ କହିଲେ, ''ବ୍ରିଟିଶ ପ୍ରତି ରାଜଭକ୍ତିର ପରମ୍ପରାରେ ବଢ଼ିଥିବାରୁ ମୁଁ ବ୍ରିଟିଶ ସରକାର ଦୃଷ୍ଟିରେହିଁ ଭାରତକୁ ଦେଖିଥିଲି । କିନ୍ତୁ ମୁଁ ଯେଉଁ ଦିନ ନେତାଜୀଙ୍କର ଭାଷଣ ଶୁଣିଲି, ସେଦିନ ପ୍ରଥମ ଥର ପାଇଁ ଜଣେ ଭାରତୀୟ ଦୃଷ୍ଟିରେ ଭାରତବର୍ଷକୁ ଦେଖିବାକୁ ଶିଖିଲି । ତାଙ୍କ ଭିତରେ ମୁଁ ମୋର ନେତାଙ୍କୁ ଖୋଜି ପାଇଥିଲି । ମୋ ଆଗରେ ଦୁଇଟି ପ୍ରଶ୍ନ ଦେଖାଦେଲା– ରାଜା ନା ଦେଶ ? ମୁଁ ଦେଶକୁ ହିଁ ବାଛିନେଲି ।''

କର୍ଣ୍ଣେଲ ସାହାଗଲ କହିଲେ- ''ମୁଁ ଅନୁଭବ କଲି ଯେ, ଯେଉଁ ବନ୍ଧନ ମୋତେ ବ୍ରିଟିଶ ସରକାର ସହ ବାନ୍ଧିରଖିଥିଲା, ତାହା ସରକାର ନିଜେ ଛିନ୍ନକରିଛି ଏବଂ ମୋତେ ସମସ୍ତ ଆନୁଗତ୍ୟରୁ ମୁକ୍ତକରିଛି । ମୁଁ ଦୃଢ଼ଭାବରେ ବିଶ୍ୱାସ କରିଛି ଯେ, ଯେଉଁ ସରକାର ମୋର ନିରାପତ୍ତା ପାଇଁ କୌଣସି ବ୍ୟବସ୍ଥା କରିପାରିଲାନାହିଁ, ସେହି ସରକାର ମୋଠାରୁ ଆନୁଗତ୍ୟ ଆଶା କରିବାର ଅଧିକାର ହରାଇବସିଛି ।''

କର୍ଣ୍ଣେଲ ଧୀଲନଙ୍କ ଜମାନବନ୍ଦି ଆହୁରି ତେଜୋଦୀପ୍ତ । ସେ କହିଲେ– ''ଡେରାଡୁନ ମିଲିଟାରୀ କଲେଜର କାନ୍ଥରେ ଖୋଦିତ ଅଛି – ତୁମ ଦେଶର ସମ୍ମାନ, ମଙ୍ଗଳ ଓ ନିରାପତ୍ତାହିଁ ସର୍ବପ୍ରଥମ ବିଚାର୍ଯ୍ୟ । ମୁଁ ଅନୁଭବ କଲି ଯେ, ଇତିହାସର ସେହି ଘଡ଼ିସନ୍ଧିବେଳେ ଯଦି ଏକ ଦୃଢ଼ ଜାତୀୟ ବାହିନୀ ସଙ୍ଗଠିତ କରାଯାଏ, ତେବେ ତା' ସାହାଯ୍ୟରେ ଯେ କେବଳ ଭାରତକୁ ମୁକ୍ତ କରିବା ସହଜ ହେବ ସେତିକି ନୁହେଁ; ଜାପାନୀମାନେ ଯଦି ସେମାନଙ୍କର ପ୍ରତିଶ୍ରୁତି ଭଙ୍ଗକରନ୍ତି, ତେବେ ଏହି ବାହିନୀ ସାହାଯ୍ୟରେ ସେମାନଙ୍କୁ ମଧ୍ୟ ସଫଳଭାବରେ ପ୍ରତିରୋଧ କରିହେବ ।''

**ସାମରିକ ବିଦ୍ରୋହ –**

ନେତାଜୀ ଯଥାର୍ଥରେ ଭବିଷ୍ୟତ୍‌ବାଣୀ କରି କହିଥିଲେ ଯେ, ଆଜାଦ୍ ହିନ୍ଦ୍ ଫୌଜର ଅସାଧାରଣ ସାଫଲ୍ୟ ଓ ଦୁଃସାହସିକ ସଶସ୍ତ୍ର ଅଭିଯାନ ସମ୍ବାଦ ଦେଶବାସୀଙ୍କ ପାଖରେ ପହଞ୍ଚିଲେ ଦେଶବାସୀଙ୍କ ଉପରେ ତାହାର ପ୍ରଚଣ୍ଡ ପ୍ରଭାବ ପଡ଼ିବ ଏବଂ ତା'ଫଳରେ ଯେଉଁ ବିକ୍ଷୋଭ ସୃଷ୍ଟିହେବ ତାକୁ ଶହେ ଚର୍ଚ୍ଚିଲ ବା ରୁଜଭେଲ୍‌ଟ ରୋକିପାରିବେ ନାହିଁ । ନେତାଜୀଙ୍କର ଏହି ଭବିଷ୍ୟତ୍‌ବାଣୀ ଅକ୍ଷରେ ଅକ୍ଷରେ ସତ୍ୟରେ ପରିଣତ ହେଲା । ଲାଲ କିଲ୍ଲା ବିଚାରର ଦୈନନ୍ଦିନ ବିବରଣୀକୁ ଲୋକେ ଗଭୀର ଆବେଗ ଓ ଉତ୍କଣ୍ଠାସହକାରେ ପାଠକରୁଥିଲେ ଏବଂ ନେତାଜୀ ଓ ଜାତୀୟ ବାହିନୀର ଅବିଶ୍ୱାସ୍ୟ ସାଫଲ୍ୟ ଓ କୃତିତ୍ୱ ପାଇଁ ଭାରତର ଆବାଳବୃଦ୍ଧବନିତା ଗର୍ବ ଅନୁଭବ କଲେ ଏବଂ ବ୍ରିଟିଶ ପ୍ରଚାରଯନ୍ତ୍ରର ଅପପ୍ରଚାର ଓ ସୁଭାଷ-ବିରୋଧୀ ଭାରତୀୟ ନେତୃବୃନ୍ଦଙ୍କର ନାନା ଅପଚେଷ୍ଟା ସତ୍ତ୍ୱେ ସୁଭାଷ ହେଲେ ଭାରତବାସୀଙ୍କର 'ପ୍ରାଣର ନେତାଜୀ' । ଫଳରେ ନେତାଜୀଙ୍କ ତଥାକଥିତ ମୃତ୍ୟୁସମ୍ବାଦରେ ଦେଶବାସୀଙ୍କ ଦୁଃଖ ଦୁର୍ବାର କ୍ରୋଧରେ ପରିଣତ ହେଲା । ନେତାଜୀଙ୍କ ଜୀବନୀ (The Springing Tiger) ଲେଖକ ହ୍ୟୁଟୋୟେଙ୍କ ଭାଷାରେ 'ଏହା ଫଳରେ ବ୍ରିଟିଶ ସାମ୍ରାଜ୍ୟବାଦର' thunderous disentegration ଆରମ୍ଭହେଲା; ଅର୍ଥାତ୍ ଭାରତରେ ବ୍ରିଟିଶ ସରକାର ଖଣ୍ଡ ଖଣ୍ଡ ହେବାକୁ ଲାଗିଲା । ଭାରତ ସରକାରଙ୍କଦ୍ୱାରା ପ୍ରକାଶିତ "Who's Who of Indian Martyrs'ରେ ଏସମ୍ପର୍କରେ ଉଲ୍ଲେଖ ଅଛି– The I.N.A. was not successful in winning freedom of the country ( in the battlefield) but they certainly hastened the dissolution of the British Empire in India. ( ଆଜାଦ୍ ହିନ୍ଦ୍ ଫୌଜ ଯୁଦ୍ଧକ୍ଷେତ୍ରରେ ଭାରତର ସ୍ୱାଧୀନତା ଅର୍ଜନ କରିପାରିଲା ନାହିଁ ସତ୍ୟ, କିନ୍ତୁ ଏହା ଭାରତର ବ୍ରିଟିଶ ସାମ୍ରାଜ୍ୟବାଦର ଧ୍ୱଂସସାଧନକୁ ନିଶ୍ଚିତରୂପେ ତ୍ୱରାନ୍ୱିତ କଲା ।)

ଜନ-ଅସନ୍ତୋଷ ଚରମ ଉତ୍ତେଜନା ଓ ବିକ୍ଷୋଭରେ ପରିଣତହେଲା । ଦେଶ- ବ୍ୟାପୀ ଧର୍ମଘଟ ଓ ହରତାଳ ଏବଂ ହିଂସାତ୍ମକ ଆନ୍ଦୋଳନ ମାଧ୍ୟରେ ଜନସାଧାରଣ ସେମାନଙ୍କର କ୍ରୋଧ ପ୍ରକାଶକଲେ । କିନ୍ତୁ ଏସବୁର ପ୍ରତିକ୍ରିୟା ଅନ୍ୟ କ୍ଷେତ୍ରରେ ଏଭଳି ଅଭାବନୀୟ ପରିସ୍ଥିତି ସୃଷ୍ଟିକଲା, ଯାହା ସଶସ୍ତ୍ର ମୁକ୍ତିସଂଗ୍ରାମର ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ; ତାହା ହେଉଛି— ସେନାବାହିନୀରେ ବ୍ୟାପକ ବିଦ୍ରୋହ । ଯୁଦ୍ଧ ସମୟରେ ଆବଶ୍ୟକ ହୋଇଥିବା ଅଧିକ ସୈନ୍ୟ-ଚାହିଦା ପୂରଣ କରିବାକୁ ଯେଉଁ ନୂତନ ସୈନ୍ୟ ସଂଗ୍ରହକରାଯାଇଥିଲା, ସେମାନଙ୍କର ଚିନ୍ତାଧାରା ପୂର୍ବାପେକ୍ଷା ଅଧିକ ପ୍ରଗତିଶୀଳ ଥିଲା । କାରଣ ସେହି ନୂତନ ଯୁବଗୋଷ୍ଠୀ ଜାତୀୟ ଆନ୍ଦୋଳନର ପରମ୍ପରାରେହିଁ ବଢ଼ିଥିଲେ । ସୁତରାଂ ଯୁଦ୍ଧରେ ବ୍ରିଟେନ୍‌ର ବିଜୟ ପରେ ସେମାନେ ଆଶା କରିବା ସ୍ୱାଭାବିକ ଯେ, କାଳବିଳମ୍ବ ନକରି ଇଂରେଜମାନେ ଭାରତ ପରିତ୍ୟାଗ କରିବେ । ତାହା ତ ହେଲା ନାହିଁ; ବରଂ ସେମାନେ ଅନୁଭବ କଲେ ଯେ, ବିଭିନ୍ନ ଆଳ ଦେଖାଇ ଇଂରେଜମାନେ ଭାରତ ଛାଡ଼ିବାକୁ ନାରାଜ । କଂଗ୍ରେସ ଓ ମୁସ୍ଲିମଲିଗ କ୍ଷମତା କନ୍ଦଳର ସେମାନେ ପୂର୍ଣ୍ଣ ଫାଇଦା ଉଠାଇବାକୁ ତିଆର । ତେଣେ ଜାତୀୟ ବାହିନୀର ମୁକ୍ତି ପାଇଁ ଦେଶବ୍ୟାପୀ ଯେଉଁ ଜନବିକ୍ଷୋଭ ସୃଷ୍ଟିହେଲା, ବିଶେଷତଃ 'ଜାତୀୟ ବାହିନୀର ସେନାପତି ତଥା ଜବାନମାନେ ସେମାନଙ୍କର ଦେଶପ୍ରାଣତା ପାଇଁ ଦେଶବାସୀଙ୍କଠାରୁ ଯେଉଁ ସମ୍ମାନ ଓ ଗୌରବ ଅର୍ଜନ କଲେ, ତାହା ମଧ୍ୟ ସୈନ୍ୟ- ବାହିନୀରେ ପ୍ରତିକ୍ରିୟା ସୃଷ୍ଟିକଲା । ସେମାନେ ଦେଖିଲେ ଯେ, ଯେଉଁମାନେ ବ୍ରିଟିଶ ସୈନ୍ୟବାହିନୀରେ ଦିନେ ଚାକିରି କରିଥିଲେ, ସେମାନେ ଆଜି ମୁକ୍ତିବାହିନୀରେ ଯୋଗଦେଇଥିବାରୁ ପ୍ରଭୂତ ସମ୍ମାନର ଅଧିକାରୀ ହୋଇଥିବା ସ୍ଥଳେ ଯେଉଁମାନେ ସେ ପର୍ଯ୍ୟନ୍ତ ବ୍ରିଟିଶ ସେନାଦଳରେ ଚାକିରି କରି ରହିଅଛନ୍ତି, ସେମାନେ ଜାତୀୟ ଇତିହାସରସେହି ଘଡ଼ିସନ୍ଧି ମୁହୂର୍ତ୍ତରେ ନୀରବ-ଦର୍ଶକ ଏବଂ ବେଳେବେଳେ ଜାତୀୟତାବିରୋଧୀ ଭୂମିକା ନେବା ଲଜ୍ଜା ଓ ଘୃଣାର କଥା । ତା ସାଙ୍ଗକୁ ସୈନ୍ୟଛାଉଣୀରେ ଥିବା ଜାତିଆଣ ପାତର-ଅନ୍ତର ବ୍ୟବହାର ମଧ୍ୟ ସେମାନଙ୍କୁ କ୍ଷୁବ୍ଧ କରିଥିଲା । ଜାତୀୟ ଆନ୍ଦୋଳନରେ ସାମିଲହୋଇ ଏକ ସଶସ୍ତ୍ର ଅଭ୍ୟୁତ୍‌ଥାନ ଜରିଆରେ ବିଦେଶୀ ଶକ୍ତିକୁ ନିକାଲିଦେବା ସେମାନଙ୍କର ପବିତ୍ର କର୍ତ୍ତବ୍ୟ ବୋଲି ସେମାନେ ବିଚାର କଲେ । ତା' ଫଳରେ ୧୯୪୬ ଜାନୁୟାରୀ- ଫେବୃୟାରୀ ମାସରେ ଆତ୍ମପ୍ରକାଶ କଲା ସର୍ବାତ୍ମକ ସାମରିକ ବିପ୍ଳବ । ପ୍ରାୟ ଏକସମୟରେ ପଦାତିକ, ନୌବାହିନୀ ଏବଂ ଆକାଶବାହିନୀରେ ଥିବା ଭାରତୀୟ ସୈନ୍ୟମାନେ ସେମାନଙ୍କ ଗୋରା ଅଫିସରମାନଙ୍କ ବିରୁଦ୍ଧରେ ସମ୍ମୁଖ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ । ଆଗରୁ ଏମିତି କେବେ ହୋଇନଥିଲା (୧ମ ଭାଗରେ 'ମହାବିଦ୍ରୋହ' ଏବଂ ୨ୟ ଭାଗରେ 'ସାରା ଭାରତରେ ବିଦ୍ରୋହ' ଦ୍ରଷ୍ଟବ୍ୟ) । ଜାନୁୟାରୀ ୨୦ ତାରିଖରେ କରାଚୀରେ ଥିବା ବିମାନବାହିନୀ ବିଦ୍ରୋହ ଘୋଷଣାକଲା । ତାହୁଁ ତାହୁଁ ବମ୍ବେ, ଅମ୍ବାଲା, ଲାହୋର, ଦିଲ୍ଲୀ ଓ କଲିକତାରେ ଅବସ୍ଥାପିତ ବିମାନବାହିନୀରେ ମଧ୍ୟ ବିଦ୍ରୋହର ସୂତ୍ରପାତ ହେଲା । ଫେବୃୟାରୀ ମାସରେ ବମ୍ବେ ନୌବାହିନୀର ଧର୍ମଘଟ ଫଳରେ ଅବସ୍ଥା ସାଂଘାତିକ

ହୋଇଗଲା । ଆରବ ସାଗରରେ ଥିବା 'ତଲବାର' ନାମକ ଯୁଦ୍ଧଜାହାଜରେ ଥିବା ଭାରତୀୟ ସୈନ୍ୟମାନେ ପ୍ରତ୍ୟକ୍ଷ ସଂଗ୍ରାମର ଡାକରା ଦେଲେ । ଛାତିରେ ଆଜାଦ ହିନ୍ଦ୍ ଫୌଜର ବ୍ୟାଜ ଲଗାଇ ଓ 'ଭାରତ ଛାଡ଼' ସ୍ଲୋଗାନ ଦେଇ ବିଦ୍ରୋହୀ ନୌ-ସେନା ଯେତେବେଳେ ତ୍ରିରଙ୍ଗା ପତାକାତଳେ ସମବେତ ହେଲେ ସେତେବେଳେ ବ୍ରିଟିଶ ସରକାର କିଂକର୍ତ୍ତବ୍ୟବିମୂଢ଼ । କାରଣ ଆମର ଦୁଇଶହ ବର୍ଷ-ବ୍ୟାପୀ ସଶସ୍ତ୍ର ସ୍ୱାଧୀନତା ଯୁଦ୍ଧରେ ଏଭଳି ଘଟଣା କେବେ ଘଟିନଥିଲା । ଫେବୃୟାରୀ ୧୯ ତାରିଖରେ ବମ୍ବେର ଫୋର୍ଟ ଅଞ୍ଚଳ ସତକୁ ସତ ଏକ ରକ୍ତାକ୍ତ ଯୁଦ୍ଧକ୍ଷେତ୍ରରେ ପରିଣତ ହୋଇଗଲା । ବିଦ୍ରୋହୀ ନୌ-ସୈନ୍ୟମାନେ ଅସ୍ତ୍ରଶସ୍ତ୍ର ଧରି ପଦାକୁ ବାହାରିପଡ଼ିଲେ । ବମ୍ବେ ସହରରେ ଯେତେ ବ୍ରିଟିଶ ୟୁନିୟନ ଜ୍ୟାକ ପତାକା ଉଡୁଥିଲା, ତା'ବଦଳରେ ଉଡ଼ାଗଲା ଭାରତୀୟ ଜାତୀୟ ପତାକା । ବିଦ୍ରୋହୀ ସୈନ୍ୟଙ୍କ ହାତରେ ବହୁ ଗୋରା ସୈନ୍ୟ ନିହତହେଲେ । ଗୋଟିଏ ହିସାବ ଅନୁସାରେ ଏହି ଯୁଦ୍ଧ ପ୍ରାୟ ସାତ ଘଣ୍ଟା ଚାଲିଥିଲା ଏବଂ ଏଥିରେ ସର୍ବମୋଟ ସାତଶହ ପଚାଶ ଗୋରା ସୈନ୍ୟ ନିହତ ହୋଇଥିଲେ । ଯେଉଁ ଅଳ୍ପ କେଇଜଣ ମରାଠା ସୈନ୍ୟ ସେ ପର୍ଯ୍ୟନ୍ତ ସରକାର ସପକ୍ଷରେ ଥିଲେ, ବିଶେଷତଃ କମାଣ ଦାୟିତ୍ୱରେ ଥିଲେ, ସେମାନଙ୍କୁ ବିଦ୍ରୋହୀ ସୈନ୍ୟମାନେ ଛତ୍ରପତି ଶିବାଜୀଙ୍କ ନାମରେ ଆହ୍ୱାନ୍ କରିବାରୁ ମ୍ୟାଜିକ ଭଳି ସେମାନେ ମଧ୍ୟ ବିଦ୍ରୋହରେ ଯୋଗଦେଲେ । 'ସିନ୍ଧୁ' ନାମରେ ଅନ୍ୟ ଏକ ଯୁଦ୍ଧଜାହାଜ ସମୁଦ୍ର ଭିତରୁ ଗୋରା ସୈନ୍ୟମାନଙ୍କ ଉପରକୁ କମାଣ ଚଳାଇଲା । ସେ ସମୟରେ ହଂକଂ ଅଭିମୁଖେ ଯାଉଥିବା 'କଳାବତୀ' ନାମକ ଅନ୍ୟ ଏକ ଯୁଦ୍ଧଜାହାଜ ବେତାରଯୋଗେ ବିଦ୍ରୋହ ସମ୍ବାଦ ଶୁଣି ସଙ୍ଗେ ସଙ୍ଗେ ଫେରନ୍ତା ସମ୍ବାଦଦେଲେ- ''ସାବାସ୍, ହମଭି ଆପ୍ କୀ ସହାୟତା କେ ଲିୟ ହିନ୍ଦୁସ୍ଥାନ କୀ ଓର ଲୌଟ ରହେ ହୈ ।'

ବମ୍ବେ ସହରର ଜନସାଧାରଣ ସ୍ୱାଧୀନତା ସଂଗ୍ରାମର ସେହି ଗୌରବମୟ ପର୍ଯ୍ୟାୟ ଅଭିନୀତ ହେଉଥିବାବେଳେ ନୀରବ-ଦର୍ଶକ ହୋଇ ବସିନଥିଲେ । ''ଅଗଷ୍ଟ ବିପ୍ଳବ''ର ଜନ୍ମଦାତା ବମ୍ବେସହରବାସୀ ବିଦ୍ରୋହୀ ସୈନ୍ୟମାନଙ୍କୁ ସର୍ବାତ୍ମକ ସାହାଯ୍ୟ କରିବାକୁ ବାହାରିପଡ଼ିଲେ । ଏହାର ନେତୃତ୍ୱ ନେଇଥିଲେ ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲୀ । ବିଦ୍ରୋହୀମାନଙ୍କୁ ବିପୁଳ ସମ୍ବର୍ଦ୍ଧନା ଜଣାଇବା ସଙ୍ଗେ ସଙ୍ଗେ ପ୍ରତ୍ୟକ୍ଷ ଯୁଦ୍ଧରେ ମଧ୍ୟ ସାହାଯ୍ୟ କରିବାକୁ ସେମାନେ ପଛେଇଲେ ନାହିଁ । ଏଥିରେ ପ୍ରାୟ ଦୁଇଶହ ପଚାଶଜଣ ସାଧାରଣ ନାଗରିକ ପ୍ରାଣବଳି ଦେଇଥିଲେ । ବିଦ୍ରୋହୀମାନଙ୍କୁ ସ୍ଥଳପଥ ବା ଜଳପଥରେ ମୁକାବିଲା କରିବାକୁ ଅସମର୍ଥ ହୋଇ ଆକାଶମାର୍ଗରୁ ବୋମାବର୍ଷଣ କରିବାକୁ ଧମକ ଦିଆଗଲା । ଏହି ଧମକରେ ନେତାମାନେ ଡରିଗଲେ ସୁଦ୍ଧା, ନା ବିଦ୍ରୋହୀ ସୈନ୍ୟ ନା ସାଧାରଣ ନାଗରିକ ଟିକିଏ ହେଲେ ଦବିନଥିଲେ, କାରଣ ସେତେବେଳେ ଆକାଶବାହିନୀ ମଧ୍ୟ ବିଦ୍ରୋହରେ ଯୋଗଦେଇସାରିଥିଲେ, ତା' ଉପରେ ଇଂରେଜମାନଙ୍କର ଆଉ ଭରସା ନଥିଲା । କଲିକତା ଓ ମାନ୍ଦ୍ରାଜ ଆକାଶ- ବାହିନୀ ମଧ୍ୟ ବିଦ୍ରୋହକୁ ସମର୍ଥନକଲେ । କରାଚୀ ସମୁଦ୍ରରେ ଥିବା 'ହିନ୍ଦୁସ୍ଥାନ' ଓ 'ହିମାଳୟ' ଯୁଦ୍ଧଜାହାଜଗୁଡ଼ିକ ବିଦ୍ରୋହ ଘୋଷଣା କଲେ । ଜବଲପୁରରେ

ଥିବା ବୃହତ୍ତର ଅସ୍ତ୍ର ତିଆରି କାରଖାନାର ଶ୍ରମିକମାନେ ନୌ-ବିଦ୍ରୋହକୁ ସମର୍ଥନ କରି ଧର୍ମଘଟ ଆରମ୍ଭକଲେ । ଠିକ୍ ସେହି ସମୟରେ ବିହାର ଓ ଦିଲ୍ଲୀ ପୋଲିସ ବାହିନୀରେ ମଧ୍ୟ ବିଦ୍ରୋହ ହେଲା ।

ଜନ-ଅସନ୍ତୋଷ ସାଙ୍ଗକୁ ଏହି ସାମରିକ ବିଦ୍ରୋହ ସୃଷ୍ଟିହୋଇ ଯେଉଁ ସୁବର୍ଣ୍ଣ ସୁଯୋଗ ଆଣିଥିଲା, ତା'ର ଠିକ୍ ଉପଯୋଗ ହୋଇପାରିଥିଲେ ବ୍ରିଟିଶ ଶକ୍ତିକୁ ତଣ୍ଡିଆ ଦେଇ ବାହାରକରାଯାଇପାରିଥାନ୍ତା ଏବଂ ତାହା ହୋଇଥିଲେ ୧୯୪୭ ଅଗଷ୍ଟର ପ୍ରାୟ ବର୍ଷକ ଆଗରୁ ଦେଶ ସ୍ୱାଧୀନତ ହୋଇଥାନ୍ତା । ତତ୍‌କାଳୀନ ରାଜନୈତିକ ନେତାମାନେ ଏହି ବିଦ୍ରୋହକୁ ଆଉ ଟିକେ ଆଗେଇଦେଇଥିଲେ ଟିକେ ନେତୃତ୍ୱ ଦେଇଥିଲେ ଅଳ୍ପଦିନ ମଧ୍ୟରେ ଦିଲ୍ଲୀ ଦଖଲ ହୋଇଥାନ୍ତା ଏବଂ ବନ୍ଦୀହୋଇଥାନ୍ତେ ଭାଇସରୟ ଲର୍ଡ଼ ଓ୍ୟାଭେଲ ଓ ପ୍ରଧାନ ସେନାପତି ସାର୍ କ୍ଲଡ଼ ଅଚିନଲେକ୍ । ବମ୍ବେ ପ୍ରାୟ ଦଖଲହୋଇସାରିଥିଲା । ଦିଲ୍ଲୀ ଆଉ କେତେଦୂର ? ଏହିଭଳି ଏକ ସଶସ୍ତ୍ର ବିଦ୍ରୋହ ଜରିଆରେ ଯେଉଁ ସ୍ୱାଧୀନତା ମିଳିଥାନ୍ତା, ତା'ର ଚେହେରା ଓ ସ୍ୱାଦ ହୋଇଥାନ୍ତା ସଂପୂର୍ଣ୍ଣ ଭିନ୍ନ ଧରଣର । ଧର୍ମ ଓ ସଂପ୍ରଦାୟ ଭିତ୍ତିରେ ସେ ଭାରତ ଦୁଇ ଖଣ୍ଡ ହୋଇନଥାନ୍ତା କିମ୍ବା ଭ୍ରାତୃରକ୍ତରେ ହୋଇ ନଥାନ୍ତା କଳଙ୍କିତ କିମ୍ବା ଜାତିର ଜନକଙ୍କୁ ହତ୍ୟାକରି ଏକ ବିରାଟ ପାପ ଓ କଳଙ୍କର ବୋଝ ଚିରଦିନ ଏ ଜାତିକୁ ବହନ କରିବାକୁ ପଡ଼ିନଥାନ୍ତା । ସେ ଭାରତରେ ଆଜିର ଦୁଃଖ ଦୈନ୍ୟ, ଶୋଷଣ, ନିର୍ଯାତନା, ଜୁଲୁମ ଓ ଅତ୍ୟାଚାର ସ୍ୱପ୍ନର ବସ୍ତୁ ହୋଇଥାନ୍ତା । ମୁଷ୍ଟିମେୟର ଶୋଷଣରେ ସଂଖ୍ୟାଗରିଷ୍ଠ ଲୋକ ସେ ଭାରତରେ ଆଜି ଭଳି ହାହାକାର କରୁନଥାନ୍ତେ । ହୋଇପାରେ— ସେଥିପାଇଁ ଦେଶବାସୀଙ୍କୁ ଆହୁରି ରକ୍ତ, ଆହୁରି ପ୍ରାଣ ବିସର୍ଜନ କରିବାକୁ ପଡ଼ିଥାନ୍ତା । ସେଥିପାଇଁ ଦେଶବାସୀ ସଂପୂର୍ଣ୍ଣରୂପେ ପ୍ରସ୍ତୁତ ଥିଲେ, କାରଣ ଏହା ଲଜ୍ଜା ବା ଘୃଣାର କଥା ହୋଇନଥାନ୍ତା; ବରଂ ହୋଇଥାନ୍ତା ଗର୍ବ ଓ ଗୌରବର ବିଷୟ ।

କିନ୍ତୁ ତାହା ହେଲା ନାହିଁ; ହୋଇପାରିଲାନାହିଁ । ତତ୍‌କାଳୀନ ନେତୃବୃନ୍ଦଙ୍କର କ୍ଷମତା-ଲାଳସା, ଅବିମୃଷ୍ୟକାରିତା, ହଠକାରିତା, ବିପ୍ଳବକୁଣ୍ଠ ମନୋଭାବ, ସଶସ୍ତ୍ର ବିପ୍ଳବୀମାନଙ୍କ ପ୍ରତି ଈର୍ଷା ଓ ଦ୍ୱେଷଭାବ ଏବଂ ଇଂରେଜମାନଙ୍କ ଉପରେ ଥିବା ସେମାନଙ୍କର ଅଶେଷ ଶ୍ରଦ୍ଧା ଓ ବିଶ୍ୱାସଯୋଗୁଁ ଏହି ସାମରିକ ଅଭ୍ୟୁତ୍‌ଥାନରେ ସେମାନେ ରୀତିମତ ଆତଙ୍କିତ ହୋଇଯାଇଥିଲେ । ବସ୍ତୁତଃ ୧୯୩୦ ମସିହା ପରେ ଦୀର୍ଘ ୧୬ ବର୍ଷକାଳ ଦେଶର ସ୍ୱାଧୀନତା ଅର୍ଜନ ପାଇଁ କଂଗ୍ରେସ ଦଳ କୌଣସି ବିପ୍ଳବାତ୍ମକ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରିନଥିଲା କିମ୍ବା ସେଥିପାଇଁ କୌଣସି ତ୍ୟାଗ ବା କଷ୍ଟ ବରଣ କରି ନଥିଲା । ସଶସ୍ତ୍ର ବିପ୍ଳବୀଙ୍କ ଚାପରେ କଣ୍ଠାଗ୍ରତ ହୋଇ ଇଂରେଜମାନେ କ୍ରିପ୍‌ସ ବା ପରେ ଓ୍ୱାଭେଲ ଜରିଆରେ ଯେଉଁ ସବୁ ତଥାକଥିତ ସ୍ୱାଧୀନତା ପ୍ରସ୍ତାବ ବିଭିନ୍ନ ସମୟରେ ଦେଇଥିଲେ, ସେଥିରେ Bargaining ବା ଦରକଷାକଷି ପ୍ରସ୍ତାବ ବା ଦଲାଲୀ କରିବା ଛଡ଼ା କଂଗ୍ରେସ ଆଉ କ'ଣ କରିଥିଲା ? ଅଥଚ ଇଂରେଜମାନେ ସେହି ନେତୃବୃନ୍ଦଙ୍କ ହାତକୁ ଶାସନ କ୍ଷମତା ବଢ଼ାଉଥିଲେ ? ଏଭଳି ଏକ ସୁବର୍ଣ୍ଣ ସୁଯୋଗକୁ ହାତଛଡ଼ା କରି ସେମାନେ

ସଶସ୍ତ୍ର ବିଦ୍ରୋହକୁ ବା କାହିଁକି ସମର୍ଥନ କରିଥାନ୍ତେ ? କଂଗ୍ରେସ ସଭାପତି ଆଜାଦଙ୍କ କଥାରୁ ଠିକ୍ ଏହି ମନୋଭାବହିଁ ପ୍ରକାଶପାଇଲା । ପଟେଲଙ୍କୁ ସେ ଟେଲିଫୋନରେ ଜଣାଇଲେ, ''ନୌବାହିନୀ ଭୁଲ କାର୍ଯ୍ୟ କରୁଛନ୍ତି । ସେମାନେ ଯଥାଶୀଘ୍ର ଇଂରେଜମାନଙ୍କ ନିକଟରେ ଆତ୍ମସମର୍ପଣ କରନ୍ତୁ ।'' "The future of India is under discussion." ( ଭାରତର ଭବିଷ୍ୟତ୍ ସମ୍ପର୍କରେ ବର୍ତ୍ତମାନ ଆଲୋଚନା ଚାଲିଛି ।) କଂଗ୍ରେସ ନେତାମାନଙ୍କର ପ୍ରକାଶ୍ୟ ବିରୋଧ ଫଳରେ ବିଦ୍ରୋହୀସୈନ୍ୟମାନଙ୍କ ଭିତରେ ଘୋର ବିସ୍ମୟ ଓ ନୈରାଶ୍ୟ ପ୍ରକାଶପାଇଲା ଏବଂ ତାର ପରିଣତି ଯାହା ହେବାର କଥା ସେଇଆ ହେଲା ।

'୪୨ ପାହାରରେ ମୁମୂର୍ଷୁ ଇଂରେଜ ସଇତାନ ଜାତୀୟ ବାହିନୀର ଶାଣିତ ତରବାରି ଓ ନୌ-ବାହିନୀ ବିଦ୍ରୋହୀଙ୍କ ତୋପମାଡ଼ରେ ମୃତ୍ୟୁବରଣ କଲା ଏବଂ ୧୯୪୬ ଫେବୃୟାରୀ ୧୯ ତାରିଖରେ ଅଟଲୀ ବାଧ୍ୟହୋଇ ଘୋଷଣା କଲେ ଯେ, ଭାରତକୁ ୧୯୪୭ରେ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବ ।

ସଂଗ୍ରାମର ଏହି ଶେଷ ଦୃଶ୍ୟର ଯବନିକା ପତନ ହେବା ଅବସରରେ ନନ୍ଦକୁମାର, ବା ମଙ୍ଗଳ ପାଣ୍ଡେଠାରୁ ଆରମ୍ଭକରି ଚାପେକାର, ଧିଂଡ଼ା, ବାଘା, ରାସବିହାରୀ, ମାଷ୍ଟରଦା', ବାଜି ରାଉତ, ଲକ୍ଷ୍ମଣ ନାୟକ ଓ ନେତାଜୀ ପ୍ରଭୃତି ଅଗଣିତ ଜ୍ଞାତ-ଅଜ୍ଞାତ, ଶ୍ରୁତ-ଅଶ୍ରୁତ ବୀର ସଶସ୍ତ୍ର ବିପ୍ଲବୀଙ୍କୁ ଭାରତବାସୀଙ୍କର ସଶ୍ରଦ୍ଧ ଅଭିନନ୍ଦନ ଓ କୋଟି କୋଟି ନମସ୍କାର ଜଣାଇବା ବେଳେ ସ୍ୱତଃ ମନେପଡ଼େ ନେତାଜୀଙ୍କର ସେହି ଚିରସ୍ମରଣୀୟ ଉକ୍ତି – "Let us make History, Let others write it" (ଆମେ ଇତିହାସ ସୃଷ୍ଟି କରିବା, ଅନ୍ୟମାନେ ତାହା ଲେଖିବେ)

ଜୟ ହିନ୍ଦ୍ ! ବନ୍ଦେ ମାତରମ୍ !

ଇନକ୍ୱିଲାବ- ଜିନ୍ଦାବାଦ !



## ସହାୟକ ଗ୍ରନ୍ଥ ସୂଚୀ


(ଏହି ଗ୍ରନ୍ଥ-ପ୍ରଣୟନରେ ନିମ୍ନଲିଖିତ ଗ୍ରନ୍ଥଗୁଡ଼ିକର ସହାୟତା ନିଆଯାଇଛି ।)

୧. ଓଡ଼ିଶା ଇତିହାସ– ଡକ୍ଟର ହରେକୃଷ୍ଣ ମହତାବ

୨. ଭାରତର ସ୍ୱାଧୀନତା ସଂଗ୍ରାମ– ଦେବ ଚନ୍ଦ୍ର ତ୍ରିପାଠୀ

୩. ଅଗଷ୍ଟ ବିପ୍ଳବ– ବଳରାମ ମହାନ୍ତି

୪. ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସ– ଓଡ଼ିଶା ସରକାର

୫. ମୋ' ଜୀବନର ଗୋଟିଏ ଅଧ୍ୟାୟ– ସୁରେନ୍ଦ୍ର ନାଥ ଦ୍ୱିବେଦୀ

୬. ଗାନ୍ଧି ରଚନାବଳୀ

୭. ଦୁଃଖିନୀ କନିକା– ଆନନ୍ଦ ଚନ୍ଦ୍ର ଜେନା

୮. ବନ୍ଦୀର ଆତ୍ମକଥା– ଉତ୍କଳମଣି ଗୋପବନ୍ଧୁ

୯. ଭାରତ ମେ ଅଙ୍ଗରେଜୀ ରାଜ (ହିନ୍ଦୀ)– ସୁନ୍ଦର ଲାଲ

୧୦. ଆଣ୍ଡାମାନ ଦ୍ୱୀପସମୂହ (ହିନ୍ଦୀ)– ସୁଶୀଲ ଚତୁର୍ବେଦୀ

୧୧. ଆମି ସୁଭାଷ ବଲ୍‌ଛି (ବଙ୍ଗଳା)– ଶୈଳେଶ ଦେ

୧୨. କାରାକାହାନୀ (ବଙ୍ଗଳା)– ଅରବିନ୍ଦ

୧୩. ଭାରତରେ ସଶସ୍ତ୍ର ବିପ୍ଳବ (ବଙ୍ଗଳା)– ଭୂପେନ୍ଦ୍ର କିଶୋର ରକ୍ଷିତରାୟ

୧୪. ଶ୍ରୀଅରବିନ୍ଦ ଓ ବାଂଲାର ସ୍ୱଦେଶୀଯୁଗ (ବଙ୍ଗଳା)– ଗିରିଜାଶଙ୍କର ରାୟଚୌଧୁରୀ

୧୫. ଆତ୍ମକଥା (ବଙ୍ଗଳା)– ବାରୀନ୍ଦ୍ର କୁମାର ଘୋଷ

୧୬. ଆତ୍ମକଥା (ବଙ୍ଗଳା)– ଉପେନ୍ଦ୍ର ନାଥ ବନ୍ଦୋପାଧ୍ୟାୟ

୧୭. ଅଗ୍ନିଯୁଗର ଗୋଟିଏ ଅଧ୍ୟାୟ (ବଙ୍ଗଳା)– ଅନନ୍ତଲାଲ ସିଂହ

୧୮. ଜେଲେ ତ୍ରିଶ ବସର (ବଙ୍ଗଳା)– ତୈଲୋକନାଥ ଚକ୍ରବର୍ତ୍ତୀ

୧୯. ମୁକ୍ତିତୀର୍ଥ ଆଣ୍ଡାମାନ (ବଙ୍ଗଳା)– ଗଣେଶ ଘୋଷ

20. Gita Rahashya– B.G. Tilak; Translated by Sukthanker.

21. The Histroy of the Freedom Movement in India (4-Vols)–Tarachand.

22. The Doctrine of Passive Restistence– Aurobindo.

23. Mahatma Gandhi Last Phase– Pyarelal

24. The History of Indian National Congres– P. Sitaramaya.

25. Last Years of British Rule in India– W. Coupland.

26. Three Phases of India's Struggle for Freedom– Dr. R.C. Majumdar.

27. Selected Works of Marx and Englės.
28. A. Sketch of Political History of India– J. Malcolm
29. The Roll of Honour– K.C. Ghose
30. The History of India– James Mill
31. The Indian Mussalmans– W. W. Hunter
32. A short History of our own Time– Justin Macrthy
33. The Indian Rebellion– A. Duff
34. The Mutiny of the Begal Army– G.B. Mallson
35. The Histroy of Indian Mutiny – Kaye & Malleson.
36. The Causes of India Mutiny– S. Ahamad
37. Eighteen Fifty Seven– S.N. Sen
38. From Sepoy to Subedar– Sitaram
39. My Indian Mutiny Diary– M. Edsewards
40. A History of the Sepoy War– Kaye
41. New Spirit in India– H.W. Nevinson
42. Indian Unrest– Chirol Valentine
43. Sri Aurobindo's Political Thoughts– Prof. Uma Mookherji & Prof Haridas Mookherji
44. Sri Aurobindo and New Political Thoughts in Indian. Politics– Do
45. Tilak– D.V. Tahamanker
46. Indian Politics since Mutiny– C.Y. Chintamoni
47. Mahatma– D.G. Tendulkar
48. Communal Unity– M. K. Gandhi
49. Mahamneed Alli Jinah– E. H. Sayed
50. Lala Lalpat Rai– V. C. Joshi
51. The Last Years of British India– M. Edwards
52. An Indian Pilgrim– S. C. Bose
53. An Autobiography– J. L. Nehru
54. India WIns Freedom– M. A. K. Azad
55. The Story of my Experiment with Truth– Gandhiji
56. The History of Freedom Movement in India– Dr. R.C. Majumdar.
57. When Bose was Ziauddin– Uttam Chand

58. The Story of the I.N.A.– S. A. Ayer
59. The Advent of Independence– A.K. Majumdar
60. Netaji in Germany– N.G. Ganpulay
61. Netaji in Germany– Alexander Werth & Walter Arbish
62. Netaji the great Resistence Leader– Girija Mookherji
63. Chalo Delhi– S.A. Das– K. B. Subaya
64. Transfer of Power– Mansaregh & Lumby
65. Spontaneous Revolution– F. G. Hutchins
66. A. B. Patrika- Special Independence Day– Number, 1947
67. Subhash Chandra Bose– Girija Mookherji
68. Second World War– Major F.C. Fuller
69. Who's Who of Indian Martyrs– Ed. Chhopra
70. Footprints on Roads to Indian Independence– K.C. Ghose
71. Penal Settlement in the Andamans– Dr. R. C. Majumdar
72. India from Curzon to Nehru & After. Dugadas
73. The Springing Tiger– Hugh Toye
74. In Andamans, the Indian Bastile– B. P. Sinha– etc. etc.

======



ଗାନ୍ଧିବାଦୀ ଜୀବନଚର୍ଯ୍ୟା, ସାମ୍ୟବାଦୀ ଜୀବନାଦର୍ଶରେ ଶାଣିତ ପ୍ରଫୁଲ୍ଲ ଦାସଙ୍କର ବିପ୍ଳବବାଦୀ ସଂଗ୍ରାମ ସାହିତ୍ୟ ଓଡ଼ିଆ ଭାଷାରେ ଅନନ୍ୟ । ତାଙ୍କର ଛାତ୍ର ଜୀବନରୁ ଆରମ୍ଭ ହୋଇଥିବା ରାଜତନ୍ତ୍ର ଓ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ଆଜି ମଧ୍ୟ ଅବ୍ୟାହତ ।

ଦଶଗୋଟି ସମରାଶ୍ରିତ ପୁସ୍ତକ ସମେତ ସର୍ବମୋଟ ତେରଗୋଟି ପୁସ୍ତକ ପ୍ରକାଶିତ । 'ଭାରତର ସଶସ୍ତ୍ର ମୁକ୍ତିସଂଗ୍ରାମ' ତାଙ୍କର ସର୍ବଶ୍ରେଷ୍ଠ କୃତି । ଜନ୍ମ - ୧୯୨୭, ସେପ୍ଟେମ୍ବର ୩୦ ତାରିଖ, ଅଗ୍ନିଯୁଗ ଆଶ୍ରମ, ଜରିସାହି, ରାଜକନିକା, ଜି. - କେନ୍ଦ୍ରାପଡ଼ା ।